# କାହ୍ନୁଚରଣ ଗ୍ରନ୍ଥାବଳୀ

ପ୍ରଥମ ଖଣ୍ଡ

ଶ୍ରୀ କାହ୍ନୁଚରଣ ମହାନ୍ତି

ପ୍ରକାଶକ

ଗ୍ରନ୍ଥ ମନ୍ଦିର

KANHUCHARAN GRANTHABALI : Vol. I

By.

Sri Kanhucharan Mohanty.

Publishers :

GRANTHA MANDIR

Cuttack : Berhampur

First Edition :

March, 1966.

Price : Rs. 13.00



ପ୍ରକାଶକ :

ଶ୍ରୀ ଅଭିରାମ ମହାପାତ୍ର

ଗ୍ରନ୍ଥ ମନ୍ଦିର

କଟକ-୨ : ବ୍ରହ୍ମପୁର

ମୁଦ୍ରକ :

ଶ୍ରୀ ଜୟରାମ ମହାପାତ୍ର

ଗ୍ରନ୍ଥ ପ୍ରକାଶିନୀ

ଖୁଣ୍ଟାହାଟ, କଟକ-୧

ପ୍ରଥମ ମୁଦ୍ରଣ :

ମାର୍ଚ୍ଚ, ୧୯୬୬

ମୂଲ୍ୟ :

ଟ ୧୧.୦୦

ବୋର୍ଡବନ୍ଧେଇ

ଅତିରିକ୍ତ ଟ ୨.୦୦

# ସୂଚୀ

# ଉତ୍ସର୍ଗ

ମୋହନ ଚରଣ,

ସଂସାରରେ ଯିଏ ଜନ୍ମ ହୁଏ ସେ ପୁଣି ଦିନେ ତାର ଅତି ପ୍ରିୟ ସଂସାରକୁ ଛାଡ଼ି ଚାଲିଯାଏ । ଜୀବନ କାଳ ମଧ୍ୟରେ ସେ ଯେଉଁ ବନ୍ଧନ ସୃଷ୍ଟି କରିଥାଏ ସେ ବନ୍ଧନ ଆପେ ଆପେ ଛିନ୍ନ ହୁଏ, ରହିଯାଏ ଖାଲି ତାର ଅପୂର୍ଣ୍ଣ ବାସନା । ଯେଉଁ ଆତ୍ମୀୟ ସ୍ୱଜନ ଓ ବନ୍ଧୁ ବାନ୍ଧବଙ୍କୁ ସେ ଛାଡ଼ିଯାଏ, ସେମାନଙ୍କ ମନରେ ସୁଖ ଦୁଃଖର ସ୍ମୃତି ଲାଗି ରହେ । କାଳକ୍ରମେ ସେ ସ୍ମୃତି ମଧ୍ୟ କ୍ଷୀଣରୁ କ୍ଷୀଣତର ହୁଏ ଏବଂ ସମୟର ଅତଳ ଅନ୍ଧାରି ଗହ୍ୱରରେ ଲୁଚି ଛପି ନିଶ୍ଚିହ୍ନ ହୁଏ ।

ସମସ୍ତେ ଏହା ଜାଣନ୍ତି, ତଥାପି ଆତ୍ମୀୟ ସ୍ୱଜନ ଓ ପ୍ରିୟଜନଙ୍କର ତିରୋଧାନରେ ମର୍ମାହତ ହୁଅନ୍ତି । ଗୁଣ ସ୍ମରି କ୍ରନ୍ଦନ କରନ୍ତି । ସ୍ମୃତି-ମନ୍ଦିର ନିର୍ମାଣ କରନ୍ତି । ଛାଡ଼ି ଚାଲିଯାଇଥିବା ଆତ୍ମୀୟଙ୍କୁ ଚିରଦିନ ସ୍ମୃତି ରୂପରେ ବଞ୍ଚାଇ ରଖିବାକୁ ଚେଷ୍ଟା କରନ୍ତି । ମରଣ ପରେ ମଣିଷର ଦେହଟିକୁ ପୋଡ଼ି ଜାଳି ପାଉଁଶ କରାଯାଏ, ବିଗତ ଆତ୍ମାର ଅତି ପ୍ରିୟ ମର-ଦେହ ସଙ୍ଗେ ଥିବା ସବୁ ମମତା ନିଶ୍ଚିହ୍ନ କରି ତାକୁ ମୁକ୍ତ କରିବାକୁ ।

ସତେ, ଏ ଦେହରେ ଆତ୍ମା ବୋଲି ଅବିନଶ୍ୱର କେଉଁ ଚେତନ ଶକ୍ତି ଅଛି ଓ ଦେହ ଜରା-ଜୀର୍ଣ୍ଣ ହୋଇ ଅବା ଅନ୍ୟ କେଉଁ କାରଣରୁ ଜୀବନ-ଶକ୍ତି ହରାଇଲେ, ଜୀର୍ଣ୍ଣବାସ ପରିତ୍ୟାଗ କରି ନର ନୂତନ ବାସ ଗ୍ରହଣ କଲାପରି, ନଷ୍ଟ ଦେହ ଛାଡ଼ି ସେଇ ଅବିନଶ୍ୱର ସ୍ୱତନ୍ତ୍ର ଆତ୍ମା ଜୀବନ କାଳର ଅପୂର୍ଣ୍ଣ-ବାସନା-ଭାରାକ୍ରାନ୍ତ ହୋଇ କର୍ମଫଳ ଭୋଗ କରିବାକୁ ନୂତନ ଦେହ ଧରି ଜନ୍ମ ହେଉଛି ? ଅଥବା, କେବଳ ମନୁଷ୍ୟ କାହିଁକି ସବୁ ଜୀବିତ ଓ ନିର୍ଜୀବ ବସ୍ତୁ ସ୍ଥୂଳ ଚକ୍ଷୁରେ ସ୍ୱତନ୍ତ୍ର ପ୍ରକାଶ ପରି ଦିଶିଲେ ମଧ୍ୟ ଅନନ୍ତ ଅସୀମ ଅତି-ଚେତନ ବିଶ୍ୱ-ଆତ୍ମା ଭିତରେ ସ୍ୱାଭାବିକ ପ୍ରକ୍ରିୟାରେ ସମ୍ଭବିଛନ୍ତି, ଜଳ ଉପରେ ଭାସମାନ ତୁଷାର ଖଣ୍ଡପରି ? ସ୍ଥୂଳ ଓ ସୂକ୍ଷ୍ମ ଓତପ୍ରୋତ ଭାବେ ଜଡ଼ିତ, ଭେଦାଭେଦ ନାହିଁ, ସ୍ୱତନ୍ତ୍ର ଆତ୍ମା—ସ୍ଥୂଳ ଦେହ, ସୂକ୍ଷ୍ମ ଦେହ, ସୂକ୍ଷ୍ମତର, ସୂକ୍ଷ୍ମତମ ଇତ୍ୟାଦି ଦେହ କେବଳ କଳ୍ପନା ମାତ୍ର ?

ସେ ଯାହା ହେଉ, ମଣିଷ ତାର ବିଶ୍ୱାସକୁ ଭଲ ପାଏ ଓ ତାର ବିଶ୍ୱାସ କେବଳ ମନରେ ଆନନ୍ଦ ଦିଏ ନାହିଁ, ତାର ବିଚଳିତ ଚଞ୍ଚଳ ମନରେ ଶାନ୍ତି

ଆଗେ, କର୍ମ କ୍ଷେତ୍ରରେ ଆଗେଇ ଯିବାକୁ ପ୍ରେରଣା ଯୋଗାଏ, ମନକୁ ଉତ୍ସାହିତ କରେ। ମୁଁ ବିଶ୍ବାସ କରୁଛି, ସବୁ ପ୍ରାଣୀଙ୍କ ଦେହରେ ଅନାଦି କାରଣ ନାରାୟଣଙ୍କର ସ୍ବତନ୍ତ୍ର ପ୍ରକାଶ ଅଛି ଓ ସେଇ ସ୍ବତନ୍ତ୍ର ନାରାୟଣ ହିଁ ସ୍ବତନ୍ତ୍ର ଅବିନଶ୍ବର ଆତ୍ମା, ଯିଏ ଦିବା ଓ ରାତ୍ରି ପରି ବାସନା-ଭାରାକ୍ରାନ୍ତ ହୋଇ ଜୀବନ-ମରଣର ଖେଳ ଖେଳୁଛି।

ଏଇ ବିଶ୍ବାସ ମୋ ମନରେ ଧାରଣା ଆଣୁଛି, ହେ ମୋହନ୍ ଚରଣ, ତୁମେ ତୁମର ଜଡ଼ଜୀର୍ଣ୍ଣ ଶରୀର ତ୍ୟାଗ କରି ଚାଲି ଯାଇଛ ସତ, ତୁମର ସୂକ୍ଷ୍ମ ଶରୀର ଆଖିକୁ ଦେଖା ନ ଯାଉ ପଛେ, ଏବେ ବି ତୁମର ଆତ୍ମା ସ୍ବତନ୍ତ୍ରତା ଧରି ଆତ୍ମୀୟ ସ୍ବଜନ, ବନ୍ଧୁ ବାନ୍ଧବ ଓ ଅନ୍ୟାନ୍ୟ ପ୍ରିୟଜନମାନଙ୍କର ପାଖରେ ଘୁରି ବୁଲୁଛି, ଅପୂର୍ଣ୍ଣ-ବାସନା ଓ ଭବିଷ୍ୟତ ଯୋଜନାର ଫର୍ଦ୍ଦ ବର୍ଣ୍ଣନା କରୁଛି, ଅନୁନୟ କରୁଛି, ଦେହରେ ଥାଇ ଯେଉଁ ସବୁ କର୍ମ ଅଧା ରହି ଯାଇଛି ସେତକ ସେମାନେ ପୂର୍ଣ୍ଣ କରିବେ; ତୁମର ଆତ୍ମା ସନ୍ତୁଷ୍ଟ ହେବ। ଅପୂର୍ଣ୍ଣ କାମନାର ଭାରମୁକ୍ତ ହୋଇ ତୁମର କଷ୍ଟଳଙ୍କ ଆତ୍ମା ସୂକ୍ଷ୍ମ ଦେହ ଛାଡ଼ି ସୂକ୍ଷ୍ମତର ହେବ, ଊର୍ଦ୍ଧ୍ବଗାମୀ ହୋଇ ସଦ୍‌ଗତି ଲଭିବ, ଆଶୀର୍ବାଦର ଅଶରୀରୀ ଅମୃତ ସିଞ୍ଚିବ ସେହିମାନଙ୍କ ଶିରରେ—'ସତ୍‌ପଥ ଗାମୀ ହୁଅ, ଯଶସ୍ବୀ ହୁଅ—'

ଅଠରଶ ତେୟାନବେ ସାଲ, ବାହୁଡ଼ା ଦଶମୀ ପବିତ୍ର ଦିନ ଶୁଭ-ମୁହୂର୍ତ୍ତିରେ ତୁମେ ଜନମ ଲଭିଥିଲ ରାଧାରାଣୀଙ୍କ କୋଳରେ, ପିତା ଶମ୍ଭୁନାଥଙ୍କର ଚତୁର୍ଥ ଓ କନିଷ୍ଠ ପୁତ୍ର ହୋଇ। ତୁମର ପିତାମହ ଫକୀରଚରଣ ଆଶାରାମଙ୍କର ପୁତ୍ର। ତୁମେ ଜାଣ ଓ ଜାଣିବା କଥା ପ୍ରକାଶ କରିଛ ଯେ ତୁମର ପୂର୍ବ ପୁରୁଷର କେହି ଜଣେ ବଙ୍ଗ ଦେଶରୁ ଉତ୍କଳକୁ ଆସିଥିଲେ ଓ କାଳକ୍ରମେ ଏ ଦେଶରେ ରହି ବନ୍ଧୁ ବାନ୍ଧବ କରି ଉତ୍କଳୀୟ ହୋଇଥିଲେ। ତୁମେ କବି ଥିଲ। ନିଜ ଭାଷାରେ ସାତଖଣ୍ଡ ରାମାୟଣ ରଚନା କରିଛ। ତାଆରି ଭଣିତାରେ, ତୁମେ ନିଜେ ତୁମ ହୃଦୟର କଥା, ଦେଶପ୍ରାଣତାର ବାର୍ତ୍ତା ଦେଇ ଯାଇଛ—

"ମୁହିଁ ଯେ ଓଡ଼ିଆ ମୋର ଜନ୍ମ ଓଡ଼ିଶାରେ,  
କଟକେ ଚୁଦିନଚୌକ ନଗରପଡ଼ାରେ।

*　　*　　*

ପ୍ରବାସୀ ଓଡ଼ିଆଙ୍କର ସେବାରେ ମୋ ମନ  
ଶିକ୍ଷାର ବିସ୍ତାର ସଙ୍ଗେ ଧନ ଉପାର୍ଜ୍ଜନ।"

*　　*　　*

ତୁମର ପୂର୍ବ ପୁରୁଷମାନେ ବଙ୍ଗ ଦେଶରୁ ଆସିଥାଇ ପାରନ୍ତି, କିନ୍ତୁ ତୁମେ **ଯେ ଖାଣ୍ଟି ଓଡ଼ିଆ** ଏବଂ ପରେ ପେଠ ପାଠଶାଳାର ବ୍ୟବସ୍ଥା କରିବାକୁ ଦିଙ୍ଗ

ଦେଶରୁ ଗୃହସ୍ଥ କରିବାକୁ ଓ ବ୍ୟବସାୟ କରିବାକୁ ଯାଇ, ତୁମର ନିଜର ପରିସ୍ଥିତି ମଧ୍ୟରେ ଥାଇ ପ୍ରବାସୀ ଓଡ଼ିଆଙ୍କର ସେବାରେ ଓ ଶିକ୍ଷାବ୍ୟବସ୍ଥାରେ ମନ ଦେଇଥିଲ, ଏ କଥା ତୁମେ ହୃଦୟର ବ୍ୟାକୁଳତା ସହକାରେ ପ୍ରକାଶ କରିଛ । ତୁମ ସଙ୍ଗେ ଓ ତୁମର ପରିବାର ବର୍ଗଙ୍କ ସଙ୍ଗେ ବହୁ ବର୍ଷର ଘନିଷ୍ଠ ସମ୍ପର୍କ ସତ୍ତ୍ୱେ ମୋ ମନରେ ଭୁଲରେ ବି କେବେ ଧାରଣା ହୋଇ ନ ଥିଲା ଯେ ତୁମେ ଓଡ଼ିଆ ନ ହୋଇ ଅନ୍ୟ କଣ ହୋଇପାର ।

ସର୍ବ-ସମତାର ପ୍ରତୀକ ଶ୍ରୀ ଜଗନ୍ନାଥ-ଦେଶ ଏଇ ମୁଖ୍ୟ ଭୂମି ଉତ୍କଳ ଦେଶରେ ଭାରତର ଅନ୍ୟାନ୍ୟ ପ୍ରଦେଶମାନଙ୍କରୁ କିଏ କେବେ ଆସି ବସତି ସ୍ଥାପନ କରିଥିଲେ କେହି କହି ପାରିବେ ନାହିଁ । ମୋର ପୂର୍ବ ପୁରୁଷ ଏଇ ଭାରତ-ବର୍ଷର ଉତ୍କଳ ଭୂମିର ଲୋକ କି ପଶ୍ଚିମର କାସ୍ପିୟାନ ହ୍ରଦ କୂଳରୁ ପଞ୍ଜାବ ବାଟେ ଆସିଥିଲେ ଅଥବା ଆଫ୍ରିକା କି ଅଷ୍ଟ୍ରେଲିଆରୁ ଆସିଥିଲେ ସେ କଥା ମୋତେ ଜଣା ନାହିଁ । ମୋର ଘର ଏଇ ଓଡ଼ିଶାରେ । ମୁଁ ଓଡ଼ିଆ ଓ ମୋର ମାତୃଭାଷା ଓଡ଼ିଆ । ସେଥିପାଇଁ ମୁଁ ଗର୍ବ ଅନୁଭବ କରେ । ହେ ଅଶରୀରୀ ମୋହନ-ଚରଣ, ତୁମେ ବି ସେଥିପାଇଁ ଆନନ୍ଦ ଓ ଗର୍ବ ଅନୁଭବ କରୁଥିଲ ।

କିନ୍ତୁ, ଦେଖି ଯାଇଛ ତ ମୋହନ ଚରଣ, ଏଇ ଓଡ଼ିଶା ଭୂଇଁରେ ଶହ ଶହ ବର୍ଷ ବାସ କରି, ଦଶ ପୁରୁଷ, କୋଡ଼ିଏ ପୁରୁଷଙ୍କୁ ଓଡ଼ିଶା ମାଟି ଉପରେ ଜଳାଇ, ଏଇ ଦେଶର ପାଣି, ପବନ, ମାଟି ଖାଇ ତମ ପୂର୍ବ ପୁରୁଷଙ୍କ ଆଗରୁ ସେଇ ବଙ୍ଗ ଦେଶରୁ ଆସିଥିଲେ ଯେଉଁ କୁଟୁମ୍ବମାନେ କେବଳ ସହର ବଜାରରେ ନୁହନ୍ତି, ଦୂର ମଫସଲରେ ଯେଉଁମାନେ ଘର କରି ରହିଛନ୍ତି, ସେମାନେ କି ଭାଷା କହନ୍ତି ଓ ନିଜକୁ କଅଣ ବୋଲି ପରିଚୟ ଦିଅନ୍ତି ?

ତୁମେ ଆଜି ସେ ପୁରରେ ଅଛ । ଗୌରୀଶଙ୍କର, ରାମଶଙ୍କର, ପ୍ୟାରୀମୋହନ, ଅଶ୍ୱିନୀକୁମାର ହେରିକାଙ୍କ ସ୍ୱର୍ଗତ ଆତ୍ମା ପ୍ରଭୃତିଙ୍କ ସଙ୍ଗେ ତୁମର ଭେଟ ହୋଇପାରେ । ସେମାନଙ୍କୁ କହିବାକୁ ଭୁଲିବ ନାହିଁ, ତାଙ୍କର ଏ ପୁରର ଦାୟାଦମାନେ ଏବେ ବି ଭାଷା, ଭାବ ଓ ଚଳନରେ ତୁମ ପରି କି ମୋ ପରି ଓଡ଼ିଆ ହୋଇ ପାରି ନାହାନ୍ତି । ଏବେ ବି ବଙ୍ଗ ଦେଶ ଆଡ଼କୁ ଆଙ୍ଗୁଠି ଦେଖାଇ କହୁଛନ୍ତି, ଆମ ଘର ସେଇଠି ଥିଲା, ଆମ ମାତୃଭାଷା ସେଇଆ । ଭୁଲିବ ନାହିଁ ମୋହନ ଚରଣ ନିଶ୍ଚେ ସେମାନଙ୍କୁ ଥରେ କହିବ, ସେମାନଙ୍କର ପ୍ର-ପରିନାତିମାନେ, ଭାରତ ସ୍ୱାଧୀନ ହେଲାପରେ ମଧ୍ୟ ଓଡ଼ିଶା ଭୂଇଁରେ, ନିଜକୁ ଅଣଓଡ଼ିଆ ଓ ଏକାଧାରିଆ କରି ରଖିଛନ୍ତି ।

ଊଣେଇଶ ତେଷଠି ସାଲ ସେପ୍ଟେମ୍ବର ମାସ ଛଅ ତାରିଖ ଶୁକ୍ରବାର ଦିନ ସକାଳ ସାଢ଼େଦଶଟା ସମୟରେ ତୁମେ ତୁମର ଦୁଇ ପତ୍ନୀ, ଗୃହପୁତ୍ର ଓ

ପାଞ୍ଚଟି କନ୍ୟାଙ୍କୁ ଛାଡ଼ି ଏ ଦୁନିଆରେ ସତୁରିଟି ବର୍ଷ ଅତିବାହିତ କରି ଏକାତ୍ତର ବର୍ଷ ବୟସ-ପଥରେ ଚାଲି ଚାଲି ମୃଣ୍ମୟ ଦେହ ପକାଇ ଊର୍ଦ୍ଧ୍ୱଗତି କଲ । ପ୍ରାୟ ଛଅଟି ମାସ ମରଣ ସଙ୍ଗେ ରଣ କରିଥିଲ ଏବଂ ହେ କର୍ମବୀର, ପରାଜୟ ସୁନିଶ୍ଚିତ ଜାଣି ବିବେଧାନର ଦିନଘଣ୍ଟା ପୂର୍ବରୁ ତୁମର ନାଣଥିବା ଜ୍ୟେଷ୍ଠପୁତ୍ର ଆଗରେ ସେ କଥା ପ୍ରକାଶ କରିଥିଲ । ଯେଉଁ ସ୍ଥାନରେ ତୁମେ ଅନ୍ତିମ ଶଯ୍ୟାରେ ଶୟନ କରି ଶେଷ ନିଶ୍ୱାସ ତ୍ୟାଗ କରିଥିଲ ସେହିଠାରେ ବହୁବର୍ଷ ପୂର୍ବେ ତୁମର କର୍ମ-ଜୀବନ ଆରମ୍ଭ କରିଥିଲ । ସେହି ସ୍ଥାନରେ ସେହି କାଳରେ ପ୍ରତିଷ୍ଠିତ ହୋଇଥିବା "ପେଟ୍ରିୟଟ୍ ପ୍ରେସ୍"ରେ ମାତ୍ର ମାସିକ ଦୁଇ ଟଙ୍କା ବେତନରେ କମ୍ପୋଜିଟର ରୂପେ କେତେ ମାସ କାର୍ଯ୍ୟ କରିଥିଲ । ପେଟ୍ରିୟଟ୍ ପ୍ରେସ୍ କେବେଠୁଁ ଲୁପ୍ତ ହେଲଣି; କିନ୍ତୁ ତା ସ୍ଥାନରେ ତୁମର ଗୋଟିଏ ପ୍ରେସ୍ ଏବେ ପ୍ରତିଷ୍ଠିତ । ଯେଉଁଠି ତୁମର କର୍ମମୟ ଜୀବନ ଆରମ୍ଭ ହୋଇଥିଲା, ସେଇଠି ସେ ଜୀବନର ଅନ୍ତ ହେଲା । ଯେଉଁ ଗୃହର କର୍ମଚାରୀ ରୂପେ ତୁମ୍ଭେ କର୍ମମୟ ଜୀବନ ଆରମ୍ଭ କରିଥିଲ ସେ ଗୃହଟି ଦିନେ ତୁମର ହେଲା । ସେହି ଗୃହର ନାମ ରଖିଲ "ମୋହନ-ନିକେତନ" ଓ ସେହି ସ୍ଥାନରେ ମା କନକ ଦୁର୍ଗା ଏବଂ ରାଧାକୃଷ୍ଣଙ୍କର ମନ୍ଦିର ଓ ବିଗ୍ରହମାନ ପ୍ରତିଷ୍ଠା କରିବାର ପରମ ସୌଭାଗ୍ୟ ଲାଭ କଲ ।

ମାସିକ ମାତ୍ର ଦୁଇଟଙ୍କା ବେତନରେ ତ କର୍ମମୟ ଜୀବନ କଟକରେ ଆରମ୍ଭ କରିଥିଲ; କିନ୍ତୁ ତୁମର ଉନ୍ନତିକାମୀ ମନ କଣ ସେହି କ୍ଷୁଦ୍ର ପରିସ୍ଥିତି ମଧ୍ୟରେ ଆବଦ୍ଧ ହୋଇ ରହି ପାରିଲା ? ନା, ତୁମର ଦୃଷ୍ଟି ପଡ଼ିଲା ମହାନଗରୀ କଲିକତା ଉପରେ । ମନ କହିଲା, ଜୀବନ ପଥରେ ଆଗେଇ ଯିବାର କ୍ଷେତ୍ର କଟକ ନୁହେଁ, କଲିକତା । ସେଠାରେ ସୁବିଧା ଓ ସୁଯୋଗ ମିଳିବ ଏବଂ ସାଧୁତା ଓ ନିଷ୍ଠାର ସହିତ କର୍ମ କଲେ ଅବସ୍ଥାର ଉନ୍ନତି ହେବ, ନିଜର ମଙ୍ଗଳ ସଙ୍ଗେ ସଙ୍ଗେ ଦଶ ଓ ଦେଶର ମଧ୍ୟ ଉପକାର ହେବ ।

ଅଳ୍ପ ବୟସରେ ତୁମେ ଉପସ୍ଥିତ ହେଲ କଲିକତା ନଗରୀରେ । ପ୍ରକୃତରେ ତୁମର କର୍ମମୟ ଜୀବନ ଆରମ୍ଭ ହେଲା ସେଇଠି । ପୁସ୍ତକ ବ୍ୟବସାୟ ଆରମ୍ଭ । ଅକ୍ଳାନ୍ତ ପରିଶ୍ରମ, କର୍ମନିଷ୍ଠା, ସାଧୁତା ଭଦ୍ରତା ଓ ଧୈର୍ଯ୍ୟ କର୍ମକ୍ଷେତ୍ରରେ ତୁମକୁ ଆଗେଇ ନେଲା । ଦେଶ ଓ ଜାତିପ୍ରୀତି ତୁମକୁ ଉଦ୍‌ବୁଦ୍ଧ କରିଥିଲା । ତୁମେ ଥିଲ ନୀରବ କର୍ମୀ ଓ ନୀରବ ସାଧକ । କଲିକତାର ଓଡ଼ିଆ ଅନୁଷ୍ଠାନମାନଙ୍କୁ ଯଥାସାଧ୍ୟ ସାହାଯ୍ୟ କରି ତୁମେ ଉତ୍ସାହିତ କରୁଥିଲ ।

କଟକରେ ସୁବିଖ୍ୟାତ ମନମୋହନ ପ୍ରେସ୍ ସ୍ଥାପନ କଲ । ପୁସ୍ତକବ୍ୟବସାୟ ସଙ୍ଗେ ବାଲ୍ୟକାଳରୁ ସଂପୃକ୍ତ ଥାଇ ଲୋକସାଧାରଣ କିପରି ପୁସ୍ତକ ପଢ଼ିବାକୁ ଭଲ ପାଆନ୍ତି ସେ କଥା ଭଲକରି ହୃଦୟଙ୍ଗମ କରିଥିଲ । ତୁମର ତ ଅନ୍ୟାନ୍ୟ ଅନେକ

ପ୍ରକାର ବ୍ୟବସାୟ ଥିଲା । ତାଛଡ଼ା ପ୍ରକାଶକ ରୂପେ ତୁମେ ଓଡ଼ିଆ ସାହିତ୍ୟକୁ ଅନେକ ଉପାଦେୟ ପୁସ୍ତକ ଦାନ କରିଯାଇଛ । ତୁମରି ପ୍ରେରଣାରେ ତୁମରି ସୁଯୋଗ୍ୟ ପୁତ୍ର ପ୍ରଫୁଲ୍ଲଚନ୍ଦ୍ର ବିଶ୍ୱ-ସାହିତ୍ୟର କେତୋଟି ବିଶ୍ୱ ବିଖ୍ୟାତ ସାହିତ୍ୟିକଙ୍କର ଶ୍ରେଷ୍ଠ କୃତୀଗୁଡ଼ିକୁ ପୃଥିବୀର ବିଭିନ୍ନ ଭାଷାରୁ ଅନୁବାଦ ଓ ପ୍ରକାଶ କରିଲ ଓଡ଼ିଆ ପାଠକମାନଙ୍କର ଜ୍ଞାନ-ପିପାସା ମେଣ୍ଟାଇବାରେ ସକ୍ଷମ ହୋଇଛନ୍ତି ।

ମୋହନ ଚରଣ, ତୁମ ସଙ୍ଗେ ମୋର ପ୍ରଥମ ପରିଚୟ ୧୯୪୧ ସାଲରେ । ଆବାଲ୍ୟରୁ ସାହିତ୍ୟ ସାଧନାକୁ ମୁଁ ଜୀବନର ବ୍ରତ କରିଥିଲି । ବ୍ୟାସ କବି ଫକୀରମୋହନଙ୍କର ସାମାନ୍ୟ କେଇଖଣ୍ଡି ଉପନ୍ୟାସ ଛାତ୍ର-ଜୀବନରେ ମୋର ଦୃଷ୍ଟିରେ ପଡ଼ିଲା ୧୯୨୨ ସାଲରେ । ସେତେବେଳେ ମୁଁ କଟକର ପି. ଏମ୍. ଏକାଡେମୀର ଦଶମ ଶ୍ରେଣୀର ( ସେ ସମୟରେ ୨ୟ ଶ୍ରେଣୀ ) ଛାତ୍ର ଥିଲି । ସ୍କୁଲର ତ୍ରୈମାସିକ ପତ୍ରିକା "ସାହିତ୍ୟ-ସୋପାନ" ରେ ମୋର କେତୋଟି କବିତା ପ୍ରକାଶିତ ହୋଇଥିଲା । ପିଲାଦିନରୁ ମୋର ଉଚ୍ଚାଶା ଥିଲା, ମୁଁ ଗୋଟିଏ କବି ହେବି । କାବ୍ୟ କବିତା ସଙ୍ଗେ ମୋର ପରିଚୟ ହୋଇଥିଲା ରାମାୟଣ ଓ ମହାଭାରତ ପାଠରୁ । ମୁଁ ଗୁଣୁଗୁଣୁ ହୋଇ କବିତା ରଚନା କରୁଥିଲି ବୋଲି ସ୍ନେହରେ ମୋର ବାପ ଦାଦା ଓ ଅନ୍ୟ ଅଭିଭାବକମାନେ ବେଳେ ବେଳେ ମୋତେ 'କି ହେ କବି' ବୋଲି ଡାକୁଥିଲେ ।

ଧରଣୀବନରେ ଛାତ୍ରାବସ୍ଥାରେ ମୁଁ ବୁଝି ପାରିଥିଲି, କବି ହେବାର ପ୍ରତିଭା ଓ ଯୋଗ୍ୟତା ମୋର ନାହିଁ । ଜ୍ଞାନର ପରିଧି ମୋର ସଙ୍କୀର୍ଣ୍ଣ । ଏପରି ଧାରଣା ହେବାର ପ୍ରଧାନ କାରଣ ହେଲା, ସେତେବେଳେ ମୁଁ ବୁଝିଥିଲି ଯେ ଉପେନ୍ଦ୍ର ଭଞ୍ଜ, ରାଧାନାଥ ଓ ମଧୁସୂଦନଙ୍କପରି ସଂସ୍କୃତିଆ ଭାଷାରେ କବିତା ନ ଲେଖିଲେ ସାହିତ୍ୟ ହୋଇ ପାରେ ନାହିଁ । ଅଧିକନ୍ତୁ ମଧ୍ୟ ମୋର ଧାରଣା ହୋଇଥିଲା ଯେ ସାହିତ୍ୟ କେବଳ ଲେଖା ହୁଏ, ସ୍କୁଲ କଲେଜର ପ୍ରଫେସର୍, ମାଷ୍ଟର ଓ ଛାତ୍ରମାନଙ୍କ ପାଇଁ । ଗାଁ ଗହଳର ଲୋକଙ୍କ ପାଇଁ ସାହିତ୍ୟ ଲେଖାଯାଏ ନାହିଁ । ସେମାନଙ୍କ ପାଇଁ ଅଗକାର କବିମାନେ ରାମାୟଣ, ମହାଭାରତ, ଭାଗବତ, ଦାର୍ଢ୍ୟତା ଭକ୍ତି, ମଥୁରାମଙ୍ଗଳ ଲେଖି ଯାଇଛନ୍ତି । ସେମାନେ ସେଇଯା ପଢ଼ିବେ । ରାଧାନାଥ ଓ ମଧୁସୂଦନଙ୍କ ଠାଣିଆ କବିତା ସେମାନଙ୍କ ପାଇଁ ନୁହେଁ ।

୧୯୨୨ ସାଲର କଥା କହୁଥିଲି । ମୋର ବୟସ ଷୋହଳ । ତୁମର ବୟସ ଅଣନିଶ ହୋଇଥିବ । ତୁମ ସଙ୍ଗେ ମୋର ଦେଖା ସାକ୍ଷାତ କି ପରିଚୟ ନାହିଁ । ହୁଏତ କଲିକତାର ଅନ୍ଧ-କନ୍ଦରେ ପିଠିରେ ବହି-ଦୋକାନ ବୋହି ଗରିବ ଓଡ଼ିଆ କୁଲିଙ୍କର ଜ୍ଞାନ ପିପାସା ମେଣ୍ଟାଇବାକୁ ଓ ନିଜର ପେଟ ପୋଷିବାକୁ

ତୁମେ ଦିନ ରାତି ଅକ୍ଳାନ୍ତ ପରିଶ୍ରମ କରୁଥିବ । ସେତେବେଳେ ମୁଁ ଦରିଦ୍ର-ଛାତ୍ରଟିଏ ତ । ମୋର ବଡ଼ ଭାଇ ଯଦୁନାଥଙ୍କ ସଙ୍ଗେ ଆମ ଗ୍ରାମ ନାଗବାଲିରୁ ଚାରିକୋଶ ବାଟ ଚାଲି ଚାଲି ଆସି ପିଆରୀ ମୋହନ ଏକାଡେମିରେ ପାଠ ପଢୁଥିଲି । ପ୍ରତିଦିନ ସନ୍ଧ୍ୟାରେ ଆମେ ଦିହେଁ ନାଗବାଲି ଫେରି ଯାଉଥିଲୁ । ଆମ୍ଭେ ଦୁହେଁଭାଇ ପ୍ରତିଦିନ ଆଠକୋଶ ବାଟ ଅତିକ୍ରମ କରୁଥିଲୁ । ପେଟ ପୋଷିବାକୁ ଆମେ ବି ଅକ୍ଳାନ୍ତ ପରିଶ୍ରମ କରିଥିଲୁ ।

ସେତିକିବେଳେ ବ୍ୟାସ କବି ଫକୀର ମୋହନଙ୍କର ଗଳ୍ପ-ଉପନ୍ୟାସ ସଙ୍ଗେ ପରିଚୟ ହେଲା । ବାଃ, ଗଦ୍ୟରେ ବି ସାହିତ୍ୟ ଓଡ଼ିଆ ଭାଷାରେ ସୃଷ୍ଟି କରାଯାଇ ପାରିବ ! ସଂସ୍କୃତ ସାହିତ୍ୟରେ ଜ୍ଞାନ ନ ଥିଲେ ବି ଯେଉଁ ଓଡ଼ିଆ ଭାଷାରେ ଆମ ଗାଁ ଗହଳରେ ବାପ ଦାଦି, ମଉସା ପିଉସା ଓ ଭାଇମାନେ ଏବଂ ମା, ଖୁଡ଼ୀ, ମାଉସୀ, ଓ ଅପାମାନେ କଥା ଭାଷା ହୋଇ ଭାବ ପ୍ରକାଶ କରି ପାରୁଛନ୍ତି, ସେ ଭାଷାରେ ଗଳ୍ପ ଉପନ୍ୟାସ ଲେଖି ହେବ । ତା ଯଦି ସମ୍ଭବ ହୁଏ, ମୁଁ କବିତା ଲେଖି ଅକ୍ଷର ଗଣି ପାଦ ଓ ପଦ ମିଳାଇ ଉପଧା ପକାଇ ଏତେ ସମୟ ନଷ୍ଟ କରିବି କାହିଁକି ? ପୁଣି, ପଦ ମିଳାଇବାକୁ ଚେଷ୍ଟା କରି ଶବ୍ଦଟିମାନ ବାଛି ବସାଇଲା ବେଳକୁ ମୌଳିକ ଭାବ କୁଆଡ଼େ ଉଡ଼ି ହୋଇ ଯାଉଛି, ଆଉ କଣ ହୋଇ ଯାଉଛି । ପ୍ରତିଭା ତ ନାହିଁ, ଜ୍ଞାନ ଓ ଦକ୍ଷତା ନାହିଁ, କାହିଁକି ଏ କସରତ୍ ? ବିଦାୟ ମା କବିତା, ନମସ୍କାର କରୁଛି ।

୧୯୨୩ ସାଲରେ କବିତା ଛାଡ଼ି ଗଳ୍ପ ଲେଖିବାକୁ ଆରମ୍ଭ କଲି । ପ୍ରଥମ ଗଳ୍ପଟିକୁ ସେ ସମୟର 'ସାହିତ୍ୟ-ସୋପାନ'ର ସମ୍ପାଦକ ନା-ପସନ୍ଦ କରି ମୋତେ ଫେରାଇ ଦେଲେ । ମୁଁ ଦବିଲି ନାହିଁ । ମୁଁ ଆହୁରି ଅନେକ ଗଳ୍ପ ଲେଖିଲି; କିନ୍ତୁ ଅଭିମାନ କରି ସାହିତ୍ୟ-ସୋପାନର ସମ୍ପାଦକଙ୍କୁ ପ୍ରକାଶ କରିବାକୁ ଦେଲି ନାହିଁ । ସେହି ବର୍ଷ ମୁଁ ମୋର ପ୍ରଥମ ଉପନ୍ୟାସ ଲେଖାଆରମ୍ଭ କଲି । ୧୯୨୪ ସାଲରେ ସେ ଉପନ୍ୟାସ ଶେଷ ହେଲା । ମୁଁ ବାଙ୍କିପୁର ପାଟଣାର ବି: ଏନ୍: କଲେଜରେ ଆଇ: ଏସ୍: ସି: ପଢୁଥିଲି । ମୁଁ ପ୍ରତିଜ୍ଞା କରିଥିଲି, ଯେଉଁଦିନ ମୋର ଗୋଟିଏ ଉପନ୍ୟାସର ଲେଖା ସରିବ, ସେହିଦିନ ନୂତନ ଉପନ୍ୟାସ ଲେଖା ଆରମ୍ଭ ହେବ । ଦ୍ୱିତୀୟ ଉପନ୍ୟାସଟି ସରିଲା ୨୦-୫-୧୯୨୬ ତାରିଖରେ । ସେହିଦିନ ମୋର ତୃତୀୟ ଉପନ୍ୟାସ 'ବାଳରାଜା'ର ଲେଖା ଆରମ୍ଭ ହେଲା । ସେହି ଉପନ୍ୟାସର ଲେଖା ସରିଲା ୧୯୨୯ ସାଲରେ ।

ଅଶାନ୍ତି ମୋହନ ଚରଣ, ମୋର ପ୍ରଥମ ଦିଓଟି ଉପନ୍ୟାସ ପ୍ରକାଶିତ ହୋଇ ନାହିଁ । ବାଳରାଜା ଲେଖା ସରିଲା ପରେ ବହିଗୁଡ଼ିକ ଛପିବାକୁ ମୋ ମନରେ ଉତ୍କଣ୍ଠା ଆସିଲା ; ପ୍ରକାଶକ ନ ଥିଲେ । ସେତେବେଳର ମୁଷ୍ଟିମେୟ

ପ୍ରକାଶକ ପାଞ୍ଜି, ପୁରାଣ ଓ ପାଠ୍ୟପୁସ୍ତକ ଛାପିବାକୁ ଅଧିକ ଆଗ୍ରହୀ । କେବଳ କେତେଜଣ ଲବ୍ଧ-ପ୍ରତିଷ୍ଠିତ ଲେଖକ ଲେଖିକାଙ୍କର ଗଳ୍ପ ଏ, ଖଣ୍ଡିଏ କାବ୍ୟ-କବିତା ଛାପିବାକୁ ପ୍ରସ୍ତୁତ ହେଉଥିଲେ । ସେତେବେଳେ ତୁମକୁ ୩୫ ବର୍ଷ । ତୁମେ ହୁଏତ କଲିକତାରେ ବହି ଦୋକାନ ଖୋଲି ସାରିବଣି । କଟକରେ ମନମୋହନ ପ୍ରେସ୍ ପ୍ରତିଷ୍ଠିତ ହୋଇଥିଲା କି ନାହିଁ ମୁଁ ଜାଣେ ନାହିଁ । ଯଦି ହୋଇଥାଏ, ଉପନ୍ୟାସ ଛାପିବାର ଧାରଣା ତୁମ ମନକୁ ଆସି ନ ଥିଲା ।

୧୯୨୯ ସାଲରେ ରେଭେନ୍‌ସା କଲେଜରୁ ବି. ଏ. ପାସ କଲି । କେତେ ମାସ ଲ-କଲେଜରେ ଅଧ୍ୟୟନ କରିଥିଲି । ଟିଉସନ୍ କରି ପେଟ ପୋଷିବା ଓ ଆଇନ ଅଧ୍ୟୟନ କରିବା ମୋ ପକ୍ଷରେ ସମ୍ଭବ ହୋଇ ପାରିଲା ନାହିଁ । ୧୯୩୦ ସାଲରେ ଏକାଉଣ୍ଟସ୍ ପାସ କରି କଟକରେ ଗୋଟିଏ ସରକାରୀ ଅଫିସରେ କିରାଣୀ ହେଲି । ଲ-କଲେଜ ଛାଡ଼ିଲି । ସେତେବେଳେ ମୋର ଚତୁର୍ଥ ଉପନ୍ୟାସ 'ଅରୁଣା' ଓ ପଞ୍ଚମ ଉପନ୍ୟାସ 'ପଲାତକ' ଲେଖି ସାରିଥିଲି । ୧୯୩୦ ରେ ମୋର ପଞ୍ଚମ ଉପନ୍ୟାସର ପ୍ରଥମ ପ୍ରକାଶ ।

ଯିଏ ମୋର ପ୍ରଥମ ଉତ୍ସାହଦାତା, ସେ ଅନେକ ଦିନରୁ ସ୍ୱର୍ଗାରୋହଣ କଲେଣି । ସେ ଥିଲେ ଦେଶର ସ୍ୱାଧୀନତା ଆନ୍ଦୋଳନର ଜଣେ ଅତି ନିଷ୍ଠାପର କର୍ମୀ । ସେ ଜାତୀୟ-କଂଗ୍ରେସର ଜଣେ ସଦସ୍ୟ । ପ୍ରବଳ-ପ୍ରତାପୀ ବ୍ରିଟିଶ ସରକାରଙ୍କର ସବୁ ଅତ୍ୟାଚାର ସେ ସହିଥିଲେ । ଜେଲ୍ ବି ବରଣ କରିଥିଲେ । ସେହି ମହାତ୍ମାଙ୍କର ନାମ କୃଷ୍ଣଚନ୍ଦ୍ର ପ୍ରଧାନ । କଲେଜ ପାଠ ଛାଡ଼ି ସେ ସତ୍ୟାଗ୍ରହ ଆନ୍ଦୋଳନରେ ଯୋଗ ଦେଇଥିଲେ । କାହିଁକି ମୋତେ ଓ ମୋ ଲେଖାକୁ ସେ ଏତେ ସ୍ନେହ କରୁଥିଲେ, ମୁଁ କହି ପାରିବି ନାହିଁ । ସେଇ ପୁଣି ୧୯୩୧-୩୨ ସାଲରେ ମୋର ତୃତୀୟ ଉପନ୍ୟାସ 'ବାଲିରାଜା'ର ଛଅଗୋଟି ପାର୍ଟକୁ ଦୁଇଟି ବହି କରି ଛପାଇଥିଲେ । ସେ ମୋର ପ୍ରଥମ ପ୍ରକାଶକ । ଅଳ୍ପ ବୟସରେ ସେ ସ୍ୱର୍ଗାରୋହଣ କଲେ । ତାଙ୍କର ନିର୍ମଳ ପବିତ୍ର ଆତ୍ମା ସଙ୍ଗେ ଯଦି ତୁମର ଦେଖା ହୁଏ, ତାଙ୍କୁ ମୋର ପ୍ରଣତି ଜଣାଇବ ମୋହନ ଚରଣ; ତୁମରି ପରି ସେ ମଧ୍ୟ ମୋତେ ସ୍ନେହ କରୁଥିଲେ ।

'ନିଷ୍ପତ୍ତି' ମୋର ଷଷ୍ଠ ଉପନ୍ୟାସ । ୧୯୩୧ ସାଲରେ ଏହାକୁ ଲେଖିଥିଲି । ସେତେବେଳେ ସ୍ୱର୍ଗତ ବାଳକୃଷ୍ଣ କର ତାଙ୍କର "ସାରସ୍ୱତ" ପ୍ରେସ୍ ପ୍ରତିଷ୍ଠା କରିଥାନ୍ତି । ସେ ତୁମରି ପରି କର୍ମବୀର । ସେ ସୁପଣ୍ଡିତ, ସୁ-ସାହିତ୍ୟିକ, ଲେଖକ, ସରଳ, ସ୍ନେହୀ, ସ୍ୱାଧୀନଚେତା ଓ ସ୍ପଷ୍ଟବାଦୀ ଥିଲେ । ସେ ଲକ୍ଷ୍ମୀନାରାୟଣ ସାହୁଙ୍କ 'ସହକାର'ର ସମ୍ପାଦକତ୍ୱର ଦାୟିତ୍ୱ ଗ୍ରହଣ କରି ସହକାରକୁ ନୂତନ ଜୀବନ, ନୂତନ ରୂପ ଓ ନୂତନ ସ୍ପନ୍ଦନ ଦେଇଥିଲେ । ନିରଳସ-କର୍ମୀ ବାଳକୃଷ୍ଣ,

ଓଡ଼ିଆ ଉପନ୍ୟାସର ପ୍ରକାଶ ଓ ବହୁଳ ପ୍ରଚାର ପାଇଁ "ଆନନ୍ଦ-ଲହରୀ-ଉପନ୍ୟାସ" ସିରିଜ୍ ଆରମ୍ଭ କଲେ । ସେହି ଉପନ୍ୟାସ ମାଳାରେ ମୋର ଚାରୋଟି ଉପନ୍ୟାସ ପ୍ରକାଶିତ ହୋଇଥିଲା—ନିଷ୍ପତ୍ତି ୧୯୩୨, ସ୍ୱପ୍ନ-ନା-ସତ୍ୟ ୧୯୩୩, ଦୁନିଆର-ଦାଉ ୧୯୩୪ ଏବଂ ହା-ଅନ୍ନ-୧୯୩୫ । ବାଳକୃଷ୍ଣ ବାବୁ "ଶିଶୁ-ସଖାଙ୍କ" ଗ୍ରନ୍ଥ ଶିଶୁମାନଙ୍କ ପାଇଁ ଆରମ୍ଭ କଲେ ଓ "ଆନନ୍ଦ-ଲହରୀ ଉପନ୍ୟାସ ମାଳା"ର ପ୍ରକାଶ ସ୍ଥଗିତ ରହିଲେ ।

ବାଳକୃଷ୍ଣ ବାବୁଙ୍କ ପ୍ରକାଶିତ 'ହା-ଅନ୍ନ' ଛଅ ବର୍ଷ ପରେ ତୁମକୁ ଓ ମୋତେ ଏକାଠି କରିଥିଲା । ବାଳକୃଷ୍ଣ ବାବୁଙ୍କର ପବିତ୍ର ଆତ୍ମା ଆଜି ସ୍ୱର୍ଗରେ । ଓଡ଼ିଆ-ସାହିତ୍ୟର ଉନ୍ନତି ପାଇଁ ତାଙ୍କର ଆଦ୍ୟଜୀବନରେ ସେ ବହୁତ କଷ୍ଟ କରି ଯାଇଛନ୍ତି । ମୋର ଦ୍ୱିତୀୟ ପ୍ରକାଶକ ରୂପେ ମୋତେ ସେ ଉତ୍ସାହିତ କରି ଯାଇଛନ୍ତି । ସେ ମୋର ଭକ୍ତି-ଭାଜନ । ସେ-ପୁରରେ ତାଙ୍କ ସଙ୍ଗେ ଦେଖା ହେଲେ ମୋର ପ୍ରଣତି ଜଣାଇଁ ଦେବ । କେବେ ମୁଁ ଯାଇ ତାଙ୍କ ସଙ୍ଗେ ଦେଖା କରିବ ମୁଁ ତ ଜାଣେ ନାହିଁ; ତୁମେ ଆଗରୁ ଯାଇଛ । ମୋର ହୋଇ କହିଦେବ, 'ଆନନ୍ଦ-ଲହରୀ-ଉପନ୍ୟାସ ମାଳା'ର ପ୍ରକାଶ ବନ୍ଦ କରିବା ପରେ କେତେ ତରୁଣ ଔପନ୍ୟାସିକଙ୍କର ଉତ୍ସାହ ଭାଙ୍ଗିଲା, ପ୍ରେରଣା ହଜିଲା ଓ କେତେ କଲମ ଛାଡ଼ିଲେ ।

ମୁଁ କଲମ ଛାଡ଼ି ନ ଥିଲି । ପୂର୍ବର ଅଭ୍ୟାସ ପ୍ରକାରେ ଗୋଟିଏ ଉପନ୍ୟାସ ଶେଷ କରି ଆଉ ଗୋଟିଏ ଆରମ୍ଭ କରୁଥିଲି । ସେ ସବୁ ଉପନ୍ୟାସ ଛପା ହେବ କିପରି ? ପ୍ରକାଶକମାନଙ୍କ ପାଖକୁ ଧାଇଁ ନ ଥିଲି ଏପରି ନୁହେଁ, କିନ୍ତୁ ବିଶେଷ ଉତ୍ସାହିତ ହୋଇ ନ ଥିଲି । ଅନ୍ୟର ଚାରିଜଣ ପ୍ରକାଶକ ମୋର ଚାରୋଟି ଉପନ୍ୟାସ ୧୯୩୬ ରୁ ୧୯୪୦ ମଧ୍ୟରେ ପ୍ରକାଶ କରିଥିଲେ । କେତେଦିନ ଏପରି ଚାଲିଥାନ୍ତା କିଏ ଜାଣେ ? ୧୯୪୧ ସାଲରେ ଉତ୍କଳ-ବିଶ୍ୱ ବିଦ୍ୟାଳୟ ମୋର "ହା-ଅନ୍ନ"କୁ ଆଇ. ଏ. କ୍ଲାସର ପାଠ୍ୟପୁସ୍ତକ ରୂପେ ମନୋନୀତ କଲେ । ସେହି ବର୍ଷ ମୁଁ ସବ୍ ଡେପୋଟି ହୋଇ କଟକ କଲେକ୍ଟରେଟ୍‌ରେ ଯୋଗ ଦେଇଥିଲି ।

୧୯୩୫ ସାଲରେ ବାଳକୃଷ୍ଣ ବାବୁ ଯେଉଁ "ହା-ଅନ୍ନ" ପ୍ରକାଶ କରିଥିଲେ ସେହି ପ୍ରକାଶିତ ପୁସ୍ତକଗୁଡ଼ିକ କେବଠୁଁ ଶେଷ ହୋଇଥିଲା । ଦ୍ୱିତୀୟ ସଂସ୍କରଣ ଛଅ ବର୍ଷ ମଧ୍ୟରେ ହୋଇ ପାରି ନ ଥିଲା । ୧୯୪୧ରେ ବହିଟି ପାଠ୍ୟ-ପୁସ୍ତକ ରୂପେ ମନୋନୀତ ହେବାରୁ ତୁମେ ତାର ଦ୍ୱିତୀୟ ସଂସ୍କରଣ କରିବାକୁ ଆଗ୍ରହୀ ହୋଇ ମୋ ପାଖକୁ ପ୍ରସ୍ତାବ ପଠାଇଲ । ମୁଁ ସମ୍ମତ ହେଲି । ତୁମ ସଙ୍ଗେ ସେହି ମୋର ପ୍ରଥମ ସାକ୍ଷାତ । ସେହି ଶୁଭ ମୁହୂର୍ତ୍ତ କେଉଁ ମାସ ଓ କେଉଁ

ତାରିଖରେ ଅସିଥିଲି ଆଜି ମୋର ମନେ ନାହିଁ; କିନ୍ତୁ ବାଇଶି ବର୍ଷ ପୂରି ତେଇଶି ବର୍ଷ ଚାଲିଥିଲା । ଦୁଇଟି ଯୁଗ ଶେଷ ହେବାକୁ ବସିଥିଲା । ତୁମର ଓ ମୋର ସମ୍ପର୍କ କେବେ କିପରି ଏତେ ଘନିଷ୍ଠ ହୋଇ ଉଠିଲା ଠିକ୍ କହି ହେବ ନାହିଁ । ଆମର ସ୍ନେହ ସମ୍ପର୍କ ଛିନ୍ନ କରି ତୁମେ ସେ-ପୁରକୁ ଚାଲି ଯାଇଛ ସତ, କିନ୍ତୁ ତୁମର ସ୍ନେହ ସମ୍ମାନର ସ୍ମୃତି ମନରେ ଜାଗ୍ରତ ରହିଛି ଓ ରହିବ ।

୧୯୪୧ ରୁ ୧୯୬୩ ସାଲ ଯାଏ କାର୍ଯ୍ୟ ଉପଲକ୍ଷରେ ଓଡ଼ିଶାର ବିଭିନ୍ନ ସ୍ଥାନକୁ ମୁଁ ବଦଳି ହୋଇଛି । ଶାସନ ବିଭାଗରେ ଛୋଟ ବଡ଼ ବିଭିନ୍ନ ଦାୟିତ୍ୱ ମୁଣ୍ଡାଇଛି । ଏହି ସୁଦୀର୍ଘ ବାଇଶି ବର୍ଷ ମଧ୍ୟରେ ଦେଶ, ଜାତି ଓ ସମାଜ ଉପରେ ବହୁ ଝଡ଼-ଝଞ୍ଜା ବହି ଯାଇଛି । ସରକାରୀ କର୍ମଚାରୀ ରୂପେ ବ୍ରିଟିଶ ସରକାର ଅଧୀନରେ ଓ ତା ପରେ ଜାତୀୟ ସରକାରଙ୍କ ଅଧୀନରେ କାର୍ଯ୍ୟ କରିଛି, ଏବେ ମଧ୍ୟ କରୁଛି । ପରିଶ୍ରମ କରିବାରେ ହେଳା କରିନାହିଁ, କର୍ମ କ୍ଷେତ୍ରରେ ମୋର ଅଗ୍ରଗତି ହୋଇଛି । ଦାୟିତ୍ୱ ବଢ଼ିବା ସଙ୍ଗେ ସଙ୍ଗେ ସରକାରୀ କାର୍ଯ୍ୟ କରିବାକୁ ଅଧିକ ସମୟ ବ୍ୟୟ କରିଛି । ସାହିତ୍ୟର ସେବା କରିବାକୁ ପ୍ରଚୁର ସମୟ ପାଇ ନାହିଁ । ଏଣେ ଗୃହ ସଂସାରର ଦାୟିତ୍ୱ ବଢ଼ିବା ସଙ୍ଗେ ସଙ୍ଗେ ନାନା କାରଣରୁ ମନ ବିଚଳିତ ହୋଇଛି । ମାସ ମାସ ଧରି କଲମ ଅଟକି ରହିଛି । ଗୋଟିଏ ବହିର ଲେଖା ସରିବା ଦିନ ଆଉ ଗୋଟିଏ ବହି ମୁଁ ଆରମ୍ଭ କରିବି, ଏ ପ୍ରତିଜ୍ଞା ଭାଙ୍ଗିଛି । କେତେଥର ମୋର ମନରେ ଆଶଙ୍କା ହୋଇଛି, ଏଇଟି ମୋର ଶେଷ ପୁସ୍ତକ ସରି ! ଲେଖିବାକୁ ଆଉ ବେଳ ମିଳିବ ନାହିଁ ।

ଦବି ଯାଉଥିବା ମନକୁ ମୋର କିଏ ପୁଣି ସଜାଗ କରେ ? ତୁମେ ତ ମୋ ପାଖରୁ ବହୁ ଦୂରରେ ଥାଅ କଲିକତା ନଗରୀରେ । ଆଉ ମୁଁ ଥାଏ ଓଡ଼ିଶାର କେଉଁ ସୁଦୂର ଛୋଟ ସହର କି ମଫସଲରେ, ଅବା କେଉଁ ବଣ ପାହାଡ଼ ନଦୀ ନାଳରେ ବୁଲୁଥାଏ । ତୁମେ ଥାଅ ଆଧୁନିକତାର ବାତାବରଣ ମଝିରେ; ମୁଁ ଥାଏ ହାସ୍ୟମୟୀ ପ୍ରକୃତିର କୋଳରେ । ତୁମେ ବାସ୍ତବତାକୁ ନେଇ ଖେଳ କରୁଥାଅ; ମୋ ଖେଳ ସ୍ୱପ୍ନମୟୀ ଅଥଚ ପ୍ରକୃତିର ଅତି ବାସ୍ତବ କୋଳରେ । ତୁମର ଓ ମୋର ଦ୍ୱୈତ ଦେଖାହୁଏ । ଚିଠି ଆସେ, "ଓଡ଼ିଆ ପାଠକେ ଆପଣଙ୍କର ନୂତନ ଉପନ୍ୟାସକୁ ଚାହିଁ ବସିଛନ୍ତି; ପ୍ରେସ୍‌କୁ କେବେ ପଠାଉଛନ୍ତି ?"

ସେମାନେ ଚାହିଁ ବସିଛନ୍ତି କି ତୁମେ ଚାହିଁ ବସିଥାଅ, ତୁମକୁ ଜଣା ମୋହନ ଚରଣ, କିନ୍ତୁ ତୁମେ ପୁଣି ମୋତେ ତପସ୍ୟା କରାଅ, କାର୍ଯ୍ୟରେ ବ୍ରତୀ କରାଅ । କର୍ମକ୍ଳାନ୍ତ ଦେହ ଘେନି ବସାକୁ ଫେରି ଅଧା ଉପନ୍ୟାସକୁ ଆଗେଇ ନିଏ । ରାତି ଅଧ ହୁଏ । ନିଦ୍ରା ଆକ୍ରମଣ କରେ, କଲମ ରଖାଏ । ଘରେ ଲେଖେ, ବାହାରେ କେଉଁ ଦୂର ଦୁର୍ଗମ ଅରଣ୍ୟ ଘେରା ପାହାଡ଼ ତଳ ଏକୁଟିଆ ବଙ୍ଗଳାରେ

ଲେଖେ । ରାତିରେ ଲେଖେ, ଦିନରେ ବି ଲେଖେ, ଯେତେବେଳେ ସମୟ ପାଏ ।
ବହି ସରିଲେ ପ୍ରେସ୍‌କୁ ପଠାଇ ତୁମକୁ ଜଣାଇ ଦିଏ । ପ୍ରେସ୍‌କୁ ତୁମେ ନିର୍ଦ୍ଦେଶ
ଦିଅ, "ଅଡ଼ି ସବୁ କାମ ପଛେ ହେବ, ନୂଆ ଉପନ୍ୟାସ ଆରମ୍ଭ କର । କାଗଜ
କଣା ସରିଛି ।"

ଓଡ଼ିଆ ସାହିତ୍ୟର ସେବାରେ ତୁମ ସଙ୍ଗେ ସମ୍ପର୍କ ସ୍ଥାପନ ହେଲାଦିନୁ
ଯେତେ ସମୟ ମୁଁ ବ୍ୟୟ କରିଛି, ତାର ପଛରେ ତୁମର ପ୍ରଚ୍ଛନ୍ନ ପ୍ରେରଣା ଅବଶ୍ୟ
ଥିଲା । ଗତ ବାଇଶି ବର୍ଷ ମଧ୍ୟରେ ବହି ଛପାଇବା ପାଇଁ ଅନ୍ୟ କୌଣସି
ପ୍ରକାଶକଙ୍କର ଦ୍ୱାରସ୍ଥ ମୁଁ ହୋଇନାହିଁ । ବହି ଛପା ହୋଇ ପାରିବ ନାହିଁ,
ହେଲେ କେବେ ହେବ, କିଏ ଛାପିବ, ଇତ୍ୟାଦି ଭାବନା ଆଜି କେବେ ମୋ
ମନରେ ପଶିନାହିଁ । ମୋ ମନରେ ନିର୍ଦ୍ୱନ୍ଦ ନିଶ୍ଚିତ ଧାରଣା ତୁମେ ହିଁ ଦୃଢ଼ୀଭୂତ
କରିଥିଲ ମୋହନ ଚରଣ,—ଅକ୍ଷର, କାଗଜ, କର୍ମୀ ସବୁ ପ୍ରସ୍ତୁତ ଅଛି । ଯାହା
ଯେତେବେଳେ ଲେଖି ପ୍ରେସ୍‌କୁ ପଠାଇବ ସେ ଛପା ହେବ । ଲେଖିବାର ଦାୟିତ୍ୱ
ମୋର । ଏହି ନିଶ୍ଚିତ ଓ ନିଶ୍ଚିନ୍ତ ଧାରଣା ପ୍ରକାରାନ୍ତରରେ ତୁମେ ମୋ ମନରେ
ଆଣିଥିଲ ।

ଏହି ଧାରଣାର ପ୍ରଭାବ ମୋ ଲେଖା ଉପରେ ପଡ଼ିଥିଲା; ମୋର ଦାୟିତ୍ୱ
ସମ୍ବନ୍ଧରେ ମୋତେ ସଚେତନ କରାଇଥିଲା—ଧୀର ସ୍ଥିର ହୋଇ ଲେଖ, ଭାବି
ଚିନ୍ତି ସାବଧାନ ହୋଇ ଲେଖ, ବିଷ କି ଅମୃତ ଯାହା ତୁମେ ପରିବେଷଣ
କରିବ ତୁମର ସହସ୍ର ସହସ୍ର ପାଠକ ପାଠିକା ତାକୁ ଗ୍ରହଣିବେ । ସାବଧାନ !
ଯାହା ଲେଖିବ ସେ ଛପା ହେବ ।

ମୋର ବୁଦ୍ଧି, ବିଦ୍ୟା, ଜ୍ଞାନ ଓ ଦକ୍ଷତାର ସମଷ୍ଟିକୁ ପ୍ରୟୋଗ କରି
ଉପନ୍ୟାସ ଲେଖିଛି । ଗୋଟିକ ପରେ ଗୋଟିଏ ପାଣ୍ଡୁଲିପି ତୁମର ହାତକୁ
ଟେକି ଦେଇଛି । ଛୋଟ ବହି କି ବଡ଼ ବହି ସେ ପ୍ରଶ୍ନ କାହାରିକୁ ପଚାରି ନାହିଁ ।
ଛାପିଛ ଓ ସହସ୍ର ସହସ୍ର ପାଠକଙ୍କ ଆଗରେ ଥୋଇ ଦେଇଛ । କେଉଁ ବହିର
କେଉଁ ଅଂଶ ପାଇଁ କେତେ ପାଠକ, ଲେଖକ ଓ ପତ୍ରପତ୍ରିକା କେବେ କେବେ
ସମାଲୋଚନା କରିଛନ୍ତି । ଗ୍ରହଣ କରେ କି ନ କରେ ମନ୍ଦ ସମାଲୋଚନାର ପ୍ରଭାବ
ମୋ ଉପରେ ପଡ଼ିଛି । ମୁଁ ସତର୍କ ହେବାକୁ ଚେଷ୍ଟା କରିଛି ।

ତୁମେ ସେ ସବୁକୁ ଦୃଷ୍ଟି ଦେଇନାହଁ । ଗୋଟିଏ ପୁସ୍ତକ ପ୍ରକାଶିତ ହେବା
ସଙ୍ଗେ ସଙ୍ଗେ ପଚାରିଛ, ନୂଆ ବହି କେତେ ଦୂର ଗଲା ? ନୂଆ ନାମଟିତ ବିଜ୍ଞାପିତ
ହେଲା, ପାଠକେ ମାଗିଲେଣି ଯେ । ବାଇଶି ବର୍ଷ ଭିତରେ ନୂଆ ଓ ପୁରୁଣା ବହି
ମିଶି ତୁମେ ମୋର ପଚାଶଟି ଉପନ୍ୟାସ ପ୍ରକାଶ କରିଛ । ପୁନର୍ମୁଦ୍ରଣ ତ ସଙ୍ଗେ

ସଙ୍ଗେ ଗ୍ଭଲିଥାଏ,। କେତେଗୁଡ଼ିଏ ଉପନ୍ୟାସର ଷଷ୍ଠ ଓ ସପ୍ତମ ସଂସ୍କରଣ ମଧ୍ୟ କରି ପାରିଛ । ସବୁ ତୁମେ ଜାଣିଛ, ତେଣୁ ସେ ସବୁ ଉପନ୍ୟାସର ନାମ ତୁମକୁ ଶୁଣାଇବା ନିଷ୍ପ୍ରୟୋଜନ । ତୁମର ଅଣାୟତ୍ତ ଆତ୍ମା ପାଖରେ ମୁଁ କୃତଜ୍ଞତା ଜଣାଉଛି ।

ମନେ ପଡ଼ୁଛି ମୋର ଶେଷ ଉପନ୍ୟାସ 'ତେଜ ତେଜକା' କଥା । ମୋଟେ ମାସକ ତଳେ ସେହି ଉପନ୍ୟାସଟି ପ୍ରକାଶିତ ହେଲା । କିନ୍ତୁ ତୁମର ଦେହର ଅସୁସ୍ଥତା ହେତୁ ଓ ଅନ୍ୟାନ୍ୟ କେତେକ କାରଣ ହେତୁ ପାଣ୍ଡୁଲିପି ଅନେକ ଦିନ ହେଲା ପ୍ରେସ୍‌ରେ ପଡ଼ିରହିଥିଲା । ମୁଁ ଦୂରରେ ଥିବାରୁ ସବୁଗୁଡ଼ିକ ଫର୍ମାର ପେଜ୍-ପ୍ରୁଫ୍ ଦେଖି ପାରି ନ ଥିଲି । ବୋଧହୁଏ ଗତ ମେ ମାସରେ, ମୋହନ ନିକେତନରେ ଯେତେବେଳେ ଶେଷ ଫର୍ମା ଦିଓଟି, ଯାହା କି ଛପା ସରିଥିଲା, ମୁଁ ପଢ଼ିଲି, ଗୋଟିଏ ଫର୍ମାରେ କେତେଗୁଡ଼ିଏ ଭୁଲ ଦେଖିକି ଓ ଠାଏ ଠାଏ କେତୋଟି ଶବ୍ଦ ଛପା ନ ହୋଇ ଥିବାର ଦେଖିଲି । ତୁମକୁ ଦେଖାଇଲି । ତୁମେ ଦୁଃଖିତ ହେଲ ଓ କର୍ମଚାରୀଙ୍କୁ ଆଦେଶ ଦେଲ ଯେ ସେଇ ଫର୍ମାଟି ଆଉଥରେ ଛପା ହେବ । "ତେଜ ତେଜକା" ର କଭର ଡିଜାଇନ୍ ତୁମରି କଳ୍ପନା ।

ତୁମେ ଦେହ ଛାଡ଼ି ଚାଲି ଯାଇଛ । ତୁମର ମୋ ପ୍ରତି ସ୍ନେହ-ସମ୍ମାନର କଥା ମୁଁ ଭୁଲି ପାରିନାହିଁ । ତୁମ ପ୍ରକାଶିତ ମୋର "କା" ଉପନ୍ୟାସ ଯେତେବେଳେ ସାହିତ୍ୟ ଏକାଡ଼େମି ଦ୍ୱାରା ପୁରସ୍କୃତ ହେଲା, ଅତି ଆନନ୍ଦରେ ୫-୩-୧୯୫୯ ତାରିଖରେ କଲିକତାରୁ ଲେଖିଥିଲି—"କା' ବହି ଛପା ହେବା ପୂର୍ବରୁ ଆପଣଙ୍କୁ ଅନ୍ୟାନ୍ୟ ଲୋକେ ସେ ବହିଟି ନେବାପାଇଁ ଅନୁରୋଧ କରିଥିଲେ । ଆପଣ ସେଥିପାଇଁ ଦୟା କରି ମୋତେ ପଚାରିଥିଲେ; କିନ୍ତୁ ଆପଣଙ୍କୁ କହିଥିଲି—'ମୋ' ଥିବାଯାକେ 'କା' ବାହାରକୁ ଯାଇ ନ ପାରେ । ଆପଣ କହିଲେ, ମୋର ଆଉ କିଛି କହିବାର ନାହିଁ " ଆପଣଙ୍କର ଚିଠି ପାଇ ପରମ ଆନନ୍ଦ ଅନୁଭବ କଲି ।

'ମୋ' ମୋହନ, ତୁମେ ମର ଦେହ ଛାଡ଼ି ଚାଲି ଯାଇଛ । ମୋ ପ୍ରତି ତୁମର ଯେଉଁ ଶ୍ରଦ୍ଧା ଥିଲା ସେଇ କଥା ତୁମର ସୂକ୍ଷ୍ମ ଦେହରେ ମନେ ପକାଇ ଦେଉଛି । ଦିନେ ଥିଲି କର୍ତ୍ତବ୍ୟନିଷ୍ଠ । ସେହି କାରଣରୁ ବୋଧହୁଏ ସ୍ନେହ ପଦରେ ମୋର କର୍ତ୍ତବ୍ୟ ସମ୍ବନ୍ଧରେ ତୁମେ ମୋତେ ସଚେତନ କରାଇବାକୁ ଲେଖିଥିଲ—ଦଣ୍ଡକାରଣ୍ୟର ଲ୍ୟାଣ୍ଡ ଅଫିସର ହେବା ଅବଶ୍ୟ ସୁଖର କଥା । ଚାକିରିରେ ଉନ୍ନତି ହେଉ ବା ନ ହେଉ ଆଶ୍ରୟହୀନ ଲୋକଙ୍କର, ପ୍ରକାରାନ୍ତରରେ ଜନହିତକର କାର୍ଯ୍ୟ କରି, ଅକୁଣ୍ଠିତ ମନରେ ସାହାଯ୍ୟ କରିବେ । ନିରାଶ୍ରୟଙ୍କୁ ଆଶ୍ରୟ ଦେବା ସରକାରଙ୍କର ମହତ୍ କାର୍ଯ୍ୟ । କିନ୍ତୁ ଉପଯୁକ୍ତ ସେବାବ୍ରତୀଙ୍କ

ଅଭାବରେ, କ୍ୱଚିତ୍ ହେବାର ଦେଖା ଯାଉଛି । ଏ ସ୍ଥଳରେ ସରକାର ପ୍ରକୃତି ଯୋଗ୍ୟଲୋକ ନିଯୁକ୍ତ କରିଛନ୍ତି । ଏପରି ଭାବୁକ-ଲେଖକ ଓ କବିଙ୍କର ଦଣ୍ଡକା- ରଣ୍ୟରୁ ଅନେକ କିଛି ତଥ୍ୟ ଲେଖା ଆବିଷ୍କାର କରିବାର ସୁଯୋଗ ମଧ୍ୟ ଅଛି ।”

ଏବେ ମଧ୍ୟ ମୁଁ ସେହି ଦଣ୍ଡକାରଣ୍ୟ ଯୋଜନାରେ କାମ କରୁଛି । ତୁମର ସଦିଚ୍ଛା ଓ ପ୍ରକାରାନ୍ତରେ ତୁମର ଶିକ୍ଷା ମୋର ବେଳେ ବେଳେ ମନେ ପଡ଼େ । ମୁଁ ଜୁଲାଇ ମାସରେ କଟକ ଯାଇଥିଲି । ତୁମର ଦେହ ବିଶେଷ ଅସୁସ୍ଥ ଥିବାର ଜାଣି ତୁମକୁ ଦେଖିବାକୁ ‘ମୋହନ-ନିକେତନ’କୁ ଯାଇଥିଲି । ମୋ ସ୍ତ୍ରୀ ମଧ୍ୟ ମୋ ସଙ୍ଗରେ ଯାଇଥିଲେ । ଖବର ପାଇ ରୋଗଶଯ୍ୟାରୁ ଉଠି ତୁମେ ମୋ ପାଖକୁ ଆସିଲ । ଦେହ ତ ଅତି ଦୁର୍ବଳ ହୋଇଥାଏ; ତୁଣ୍ଡରୁ ଯେଉଁ କଥା ବାହାରୁ ଥାଏ ସେ ମଧ୍ୟ ଦୁର୍ବଳ ଓ ରହି ରହିକା । ଏତେ ଦୁର୍ବଳତା ସତ୍ତ୍ୱେ ସବୁଦିନ ପରି କେତେ କଥାଭାଷା !

କିପରି ମୁଁ ଜାଣିବି ଯେ, ଏ ଜନ୍ମରେ ତୁମ ସଙ୍ଗେ ସେହି ମୋର ଶେଷ ଦେଖା ? ତୁମେ ବୋଧ ହୁଏ ସେହିପରି କିଛି ଅନୁମାନ କରିଥିଲ । ଆମ ଦୁହିଁଙ୍କୁ ଆର ଘରେ ଗୋଟିଏ ଟେବୁଲ ଉପରେ ପାଖାପାଖି ଦଉଟି ଚେୟାରରେ ବସାଇ ଜଳଯୋଗ କରାଇଲ । ମୋ ସ୍ତ୍ରୀ ଲାଜ ଲାଜ ହେବାରୁ ପଦାକୁ ଗଲା । ତାଙ୍କ ସଙ୍ଗେ ତ ତୁମର ସେହି ପ୍ରଥମ ଓ ଶେଷ ଦେଖା । ଆମ ଦୁହିଁଙ୍କୁ ଏକାଠି ପୁଣି ପାଖାପାଖି ବସିଥିବାର ଦେଖି ତୁମର ଦୁର୍ବଳ ଓ ଜ୍ୟୋତିହୀନ ଚକ୍ଷୁରେ କି ଆନନ୍ଦର ଆଭା ଫୁଟି ଉଠିଥିଲା ! ଶେଷ ଦେଖା ଓ ଶେଷ ବିଦାୟର ଦୃଶ୍ୟଟି ମୁଁ ଭୁଲିପାରି ନାହିଁ ।

ହେ କର୍ମବୀର, କର୍ମନିଷ୍ଠ ମୋହନଚରଣ, ତୁମର ନରଦେହ ଛାଡ଼ି ଅମର ଆତ୍ମା ସେ ପୁରକୁ ଚାଲି ଯାଇଛି; କିନ୍ତୁ ତୁମର ସ୍ମୃତି ଅନେକଙ୍କ ମନରେ ସଜାଗ ରହିଛି । ତୁମର ଅଶରୀରୀ ଆତ୍ମା ସ୍ୱର୍ଗଗାମୀ ହେଉ, ଏହାହିଁ ଆମର କାମନା । ତୁମର ପବିତ୍ର-ମଧୁର ସ୍ମୃତି ମନରେ ଜାଗ୍ରତ ରହୁ ।

ମୋର ପ୍ରିୟବନ୍ଧୁ, ସୁପଣ୍ଡିତ, ସୁ-ସାହିତ୍ୟିକ, କବି ଓ ଔପନ୍ୟାସିକ, ପ୍ରକାଶକ, ସର୍ବ-ଜନପ୍ରିୟ ଶ୍ରୀ ରାମନାଥ ପଣ୍ଡା! ତୁମର ତିରୋଧାନରେ ଦୁଃଖିତ । ସେ ମଧ୍ୟ ତୁମର ସ୍ନେହୀ ଥିଲେ । ମୋର ଦ୍ୱିତୀୟ ଉପନ୍ୟାସ ‘ତଥାସ୍ତୁ’ ଯାହାକୁ ମୁଁ ୧୯୨୪-୧୯୨୭ ସାଲରେ ଲେଖିଥିଲି, ତାର ପାଣ୍ଡୁଲିପି ଜରାଜୀର୍ଣ୍ଣ ପୃଷ୍ଠାଗୁଡ଼ିକୁ ମୋର ସାହାଯ୍ୟରେ ପୁନରୁଦ୍ଧାର କରି ସେ ପ୍ରକାଶ କରୁଛନ୍ତି । ସେଥିପାଇଁ ସେ ମୋର ଧନ୍ୟବାଦର ପାତ୍ର । ଜୁଲାଇ ମାସରେ ତୁମକୁ ଏ କଥା କହିଥିଲି । ତୁମେ

ଆନନ୍ଦ ପ୍ରକାଶ କରିଥିଲ । ମନମୋହନ ପ୍ରେସରେ ସୁ-ପରିଚାଳନାରେ ବ୍ୟାଘାତ ଘଟିଛି, ଏହା କହି ଦୁଃଖ ପ୍ରକାଶ ମଧ୍ୟ କରିଥିଲ । ଆଶାଥିଲି ଥିଲ, ସବୁ ସ୍ୱାର୍ଥ ନଜେ ଦେଖି ଶୁଣି ବ୍ୟାହତକୁ ସୁଧାରି ପାରିବି । କିନ୍ତୁ ଦୈବର ଇଚ୍ଛା ଅନ୍ୟରୂପ ହେଲା । ସେ ତୁମକୁ ନେଇଗଲେ ।

ମୋର ଏହି ନୂତନୀକୃତ ଦ୍ୱିତୀୟ ଉପନ୍ୟାସ 'ତଥାସ୍ତୁ'କୁ ତୁମର ସ୍ମୃତି ଉପଲକ୍ଷେ, ତୁମର ଅଶରୀରୀ ହାତରେ ଅର୍ପଣ କରୁଛି ।

ପ୍ରଣତ ନାଥ ।

ଜୟପୁର
ତା ୨୨-୯-୬୩

କାହ୍ନୁଚରଣ ।

କିଛି ନଥିଲା, ଦିନେ ସାଙ୍ଗ ମେଳରେ ଯାଇ ବଷି-ସାଗର ବନ୍ଧ ପାଣିରେ ଗାଧୋଇଲେ । ବଷି-ସାଗରର ନାଁ'ଟା ଯେପରି ଗୁଣ ମଧ୍ୟ ଠିକ୍ ସେହିପରି । ପାଣି ସତକୁ ସତ ଖାଲି ବିଷଗୁଡ଼ାଏ । ଏହା ଜାଣିଶୁଣି ମଧ୍ୟ ସେ ଗାଧୋଉଛନ୍ତି, ସେଥିକି କିଏ କ'ଣ କରିବ ?

ପିଲା ନୁହନ୍ତି କି ଛୁଆ ନୁହନ୍ତି; ବୁଦ୍ଧିସୁଦ୍ଧି ଅଛି । ପିଲା ଛୁଆ ହୋଇଥିଲେ ହିକିଏ ଆଖି ଦେଖାଇ ଦେଲେ କଥା ମାନିଯିବେ । ଏ ହେଲେ ମୁରବି ଲୋକ, କଥା କାହିଁକି ମାନିବେ ?

ଅଗୋ, ମୋ ସାନ କୁହା ମାନ, ଯାଅନା, ପାଣି କାଚକେନ୍ଦୁ ପରି ଦିଶୁଛି, ହେଲେ କଣ ହେବ, ଖାଲି ଗରଳ ଗୁଡ଼ାକ । ଯାଅନା, ସେଠି ଗାଧୁଅନା, ପାଣି ଧରିବ । ଅରେ ମୁଁ ବୁଢ଼ୀ ହେଲିଣି ଦେଖି ଦେଖି, ସେଠି ଯେ ଗାଧୁଏ ତାକୁ ପାଣି ଧରି ପକାଏ ।

ସେ ବା କାହିଁକି ଶୁଣନ୍ତେ ? ବୁଢ଼ୀ ଚମାରୁଣୀର ଇଚ୍ଛା ହେଲା, ସେ ଠିଆ ହୋଇ ଗୁଡ଼ାଏ ବକି ଦେଇଗଲା ହିତେଇ ନାଗଙ୍କ ପରି, ପାଗଳାଙ୍କ ପରି । ସେଥିରୁ ତାଙ୍କୁ କଣ ମିଳିବ ? ଦିସ ଆଜି ପନ୍ଦରିରେ ପାଣିକୁ ଦି ଭାଗ କରୁଛନ୍ତି । ସେ ଦିନ ଦ୍ୱି ପ୍ରହର ଯାଏ ଗାଧୋଇ ଅଛନ୍ତି ।

ପାଣିରୁ ଉଠି ଲୁଗାପଟା ବଦଳି ଆସି ଘରେ ପହଞ୍ଚିଲେ । କୁମ୍ଭାଟୁଆ ଆଖିପରି ଆଖି ଲାଲ୍ ଲାଲ୍ ଦିଶୁଛି । ଭାତ ଖାଇ ଶୋଇଲେ ଯେ, ଉଠିଲେ ସଞ୍ଜବେଳେ । ସରିଦିଆ ହେଲା ବୋଲି ଜଣା ପଡ଼ୁଥିଲା । ସେଇଠୁ ଆରମ୍ଭ ହେଲା ଛିଙ୍କି ଦରଜ, ରାତିକୁ ଦେହ ତାତିଲା । ଖାତର ନ କରି ଭାତ ଦି ଗୁଣ୍ଡା ଖାଇଦେଲେ । ସେଇଠୁ ଅଧ ରାତିକୁ ଆରମ୍ଭ ହେଲା କମ୍ପ ଜର ।

ଆଖି ଫିଟାଇ ପାରୁନେଲେନି । ସକାଳ ହେଲା । ଆଉ ସମ୍ଭାଳେ କିଏ ? ଦେହର ତାତିରେ ଖଇ ଫୁଟୁଥିଲା ।

ବଣିଆ ଖଦାଳ ପିଲାଟି ବେଳୁ ତାଙ୍କର ଘରେ ବଢ଼ି ଆସିଛି । ବାବୁଙ୍କର ଖବର ଶୁଣି ସେ ରାଜବୈଦ୍ୟ କାଶୀନାଥଙ୍କୁ ଡାକି ଆଣିଲା । ଅଗ ଅଣ୍ଟାରେ କିଛି ଖୋସା ନ ହେଲେ ସେ ଆସିବାର ଲୋକ ନୁହନ୍ତି । ତୁମେ ପଛେ ମରି

ଯାଉଥା, ସେ ତୁମକୁ ପାଣି ମୁନ୍ଦେ ମଧ ଦେବେନ । ତାଙ୍କ ଅଣ୍ଡାଂଗରମ ନ ହେଲେ ସେ ସେଇଠି ହୁଁ ହାଁ ମାରୁଥିବେ, ପାଦେ ଉହୁଁକିବେ ନାହିଁ । ଔଷଧ ବଟୁଆ ଥିବ ବୈଦ୍ୟଘର ପିଣ୍ଡା ଉପରେ ।

ବଂଶୀ ସବୁ କଥା ଆଗରୁ ଜାଣିଥିଲା । ସେ ସଂଧ୍ୟାରୁ କାଢ଼ି କବିରାଜଙ୍କ ନିକଟରେ ଦୁଇଟି କଖାରୁ ଦେଇ ଆସିଥିଲା । ସେତିକିବେଳୁ କବିରାଜ ଔଷଧ ଦେଇ ଆସୁଥିଲେ ।

ଚାରି ଦିନ ପରେ ମନା କରି ଦେଇଗଲେ । କହିଲେ, ଦେଖ, ଆଜି ରାତିରେ ସାବଧାନ ଥିବ । ଯଦି ଖଲାସ ପାଇ ଯାଆନ୍ତି, ତେବେ କିଏ କହିବ ଯେ କାଶୀ କବିରାଜେ ଟଙ୍କା ଜାଟିନେଲେ ? ଟଙ୍କା ତ ଇମିତି ପଡ଼ିନ ଯେ ଚାଲିଗଲେ ବେଟିଅଣିବ । ଅରେ ବାପ, ଟଙ୍କା ଦେଲେ କଣ ଭଲ ଭଲ ଔଷଧ ମିଳିବନି ?

କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା । ଗଜା ବୟସରେ ଭୀମ ପରାକ୍ରମୀ କାର୍ତ୍ତିକ ମୂର୍ତ୍ତି ସୁନ୍ଦର ବହିଦାର ଯୁବତୀ ଘରଣୀ ଲକ୍ଷ୍ମୀ ରୂପିଣୀ ସାବିତ୍ରୀ ଦେବୀ, ବୃଦ୍ଧାମାତା ଓ ଚାକର ଠୋକା ବଂଶିଆ ଖଦାଲଙ୍କୁ ଛାଡ଼ି ସେ ପୁରକୁ ଚାଲିଗଲେ । ଅତି ଅନ୍ତରଙ୍ଗ ବାଲ୍ୟବନ୍ଧୁ ରଘୁନାଥ ସାମନ୍ତ ପାଖରେ ବସି ମୁଣ୍ଡ ଆଉଁସୁ ଥିଲେ । ତାଙ୍କୁ କଣି କହିବେ କହିବେ ବୋଲି ସୁନ୍ଦର ବାବୁ ତ ଓଠ ଥରାଉ ଥିଲେ, କିନ୍ତୁ କିଛି କହି ପାରିଲେ ନାହିଁ । ଆଖି ବୁଜିଲେ । ରଘୁନାଥ ଥରେ ସାବିତ୍ରୀଙ୍କ ଆକୁଳ ବ୍ୟାକୁଳ ମୁହଁକୁ ଅନାଇଁ ନିର୍ବାକ ହୋଇ ସୁନ୍ଦର ବାବୁଙ୍କ ପ୍ରାଣହୀନ ମୁହଁକୁ ଚାହିଁ କାନ୍ଦି ଉଠିଲେ । ତାଙ୍କ ସ୍ତ୍ରୀଙ୍କର ମରଣ ତ ଏହିପରି ହୋଇଥିଲା । ମନେ ପଡ଼ିଗଲା ।

**ସ**ଞ୍ଜ ବୁଡ଼ିଲା, ଜହ୍ନି ଫୁଲ ପରି ତୋରା ଜହ୍ନ ଆଲୁଅ ଏଣେ ତେଣେ ବିଞ୍ଚି ହୋଇ ପଡ଼ିଲା । ଖାଲି ଉପର ପଡ଼ିଆରୁ ଡୁଡୁ ଖେଳ ଭାଙ୍ଗି ପିଲେ ଧୋଡ଼ାଧାଡ଼ି ପଡା ଆଡ଼କୁ ପଡ଼ିଥିବା ରାସ୍ତାରେ ଚାଲିଲେ । ପଡ଼ିଆ ପାଖରୁ କିଛି ଦୂର ରାସ୍ତାରେ ଚାଲିଗଲେ ଗୋଟିଏ ବଡ଼ ତେନ୍ତୁଳି ଗଛ । ବାଦୁଡ଼ିରେ ସଦାବେଳେ ପୂର୍ଣ୍ଣଥାଏ । ପିଲାଙ୍କର ତଙ୍ଗତାଙ୍ଗ ସମସ୍ତଙ୍କୁ ଜଣା । ତାଙ୍କର ଗୋଡ଼ହାତ ସବୁବେଳେ କଥା କହୁଥାଏ । ଯାଉ ଯାଉ ବାଟରେ କେଉଁଠି ହୁଙ୍କାଠାଏ ଦେଖିଲେ ତାକୁ ଗୋଇଠାଏ ପକା, ଗଛରେ କେଉଁଠି ଚଢ଼େଇଟାଏ ବସିଥିଲେ ତା ଉପରକୁ ଟେକା ମାର, କେଉଁଠି ବୁଢ଼ୀ ମାଙ୍କଡ଼ିଟିଏ ଦେଖିଲେ

ତାକୁ ଦାନ୍ତ ଦେଖାଇ ଖତେଇ ହ ଏଇଆ ଥିଲା ତାଙ୍କର ପେଷା । ନିଜ ନିଜ ମଧ୍ୟରେ ଖୁବ୍ ଖେଳିବ ତ ଜମାରୁ ଯାଏନି । କେଉଁଠି ଗାଈଟିଏ ଚରୁଥିଲେ ତା ଲାଙ୍ଗୁଡ଼ ଟାଣିଦେଇ ବଜାଯ୍ଯ୍ୀ ବୀର ପରି ଅଗଣି ଥିଲେ ।

ହାବୁଡ଼େ ପଡ଼ିଗଲା ସେହି ତେନ୍ତୁଳି ଗଛ । ମାଇଲେ ଠେକା ବାଦୁଡ଼ିଙ୍କର ଚାଁ ଚାଁ ଶବ୍ଦରେ ତାଙ୍କର ହିଁ ହିଁ ହସ ମିଶିଗଲା । ସମସ୍ତେ ୯ ଏକ ରଙ୍କମର ପିଲା ନୁହନ୍ତି । ସେଇମାନଙ୍କ ଭିତରେ ରତ୍ନ ମଧ୍ୟ ଥାଆନ୍ତି । ସମସ୍ତେ ଯେତେବେଳେ ଠେକା ଫୋପାଡ଼ିବାରେ ବ୍ୟସ୍ତ ତାଙ୍କ ଭିତରୁ ଜଣେ ରାସ୍ତା ଉପରେ ଠିଆ ହୋଇ ବାଦୁଡ଼ିଙ୍କ କାତର କ୍ରନ୍ଦନ ଶୁଣୁଥିଲା—କପରି ସେମାନେ ଠେକାମାଡ଼ ଖାଇ ଅସ୍ତବ୍ୟସ୍ତ ହୋଇ ଇତସ୍ତତଃ ପଳାଉଛନ୍ତି; ଶୁଣୁଥିଲା, ବାଦୁଡ଼ିଙ୍କର କରୁଣ ଚିତ୍କାର ଏବଂ ଶୁଣୁଥିଲା ସବୁ ପିଲାଙ୍କର ହସ ।

ତାହାର ଛୋଟ ମୁଣ୍ଡଟି ଠେକି ଜଣଙ୍କର ନାଁ ଧରି ଧୀର ଭାବରେ ଡାକିଲା । କିନ୍ତୁ ଆନନ୍ଦ ଛଡ଼ ଯ୍ଯ୍ୀର ଡାକ ଶୁଣୁଛି କିଏ ? ଅନେକ ବାର ଡାକିଲେ ସୁଦ୍ଧା ଯେତେବେଳେ ପିଲାମାନେ ନ ଶୁଣିଲେ, ବାଦୁଡ଼ିଙ୍କର କାତର ଧ୍ୱନିରେ ତାର କ୍ଷୁଦ୍ର ହୃଦୟ ବିଗଳିତ ହେଲା । ସେ ଆଉ ସମ୍ଭାଳି ପାରିଲାନି । ଉଚ୍ଚ ସ୍ୱରରେ କାନ୍ଦିବାକୁ ଲାଗିଲା । ଦୁର୍ବଳ ବାଳକର ଦଲ କାନ୍ଦଣା । କାନ୍ଦ ଶୁଣି ପିଲାଏ ଚମକି ପଡ଼ିଲେ । କଣ ହେଲା, ତାର ମୁଣ୍ଡରେ ଠେକା ବାଜିଲା କି ? ଜଣେ ଦି ଜଣ ଏକାଥରକେ ଦୌଡ଼ି ଦୌଡ଼ି ନିଜ ନିଜ ଘରକୁ ଧାଇଁଲେ । ଆଉ କେଇଜଣ ଆସି ତାର ଚାରି ପାଖରେ ଘେରିଗଲେ ।

କାରଣ ପଚାରିବାରୁ ସାତ ବର୍ଷର ପିଲାଟି କହିଲା, କାନ୍ଦିଲି ବେଶ୍ କଲି, ଭଲ କଲି, ତୋର କଣ ଗଲା ? ତୁମେ କାହିଁକି ଠେକା ଫୋପାଡ଼ିଲ ? ତୁମକୁ ଯେବେ କେହି ଠେକା ଫୋପାଡ଼ନ୍ତା ତୁମେ କାନ୍ଦନ୍ତ ନାହିଁ ? ତମେ କାହିଁକି ବାଦୁଡ଼ିଗୁଡ଼ାକୁ ଠେକା ଫୋପାଡ଼ିଲ ? ସିଏ କଣ ତୁମକୁ ଖାଇବାକୁ ମାଗୁଥିଲେ ? ତୁମର ପାପ ହେବ । ମୁଁ ସେଇଥି ପାଇଁ କାନ୍ଦିଲି । ତୁମେତ ଖେଳ ସାରିଲ, ଘରକୁ ଯାଉନ ।

ସେ ଭିତରୁ ଅନ୍ଦାଜ ଏଗାର ବର୍ଷର ପିଲାଟାଏ କର୍କଶ କଣ୍ଠରେ କହିଲା— ଚାଲ୍ ବେ, ଏଟା ପାଗଳଟାଏ । ଚାଲ୍, ଆଉ ଠେକା ଫୋପାଡ଼ିବା ।

ସମସ୍ତେ ହସି ହସି ହାତରେ ଢେଲା ଧରି ଫୋପାଡ଼ିବାକୁ ବସିଲେ । ସାତ ବର୍ଷର ପିଲା ନବୀନ ଆଉ ଅଧିକ କଣ କରି ପାରିବ ସେଇଆ ଭାବୁ ଭାବୁ କିଏ ଜଣେ ପଛରୁ ଆସି ତାକୁ କାଖେଇ ପକାଇଲେ; ଏପରି ଗୋଟିଏ ବଜ୍ରଗମ୍ଭୀର ଗର୍ଜନ ଛାଡ଼ିଲେ ଯେ ପିଲାଏ ତାଙ୍କ ପାଖରେ ଯିଏ ଯୁଆଡ଼େ ଭୂତଙ୍କ ପରି ଭାଗ୍ ।

ନବୀନକୁ ଆଲିଙ୍ଗନ କରି ରଘୁନାଥ ତାର ମୁଖରେ ବାରମ୍ବାର ବୋକ ଦେବାକୁ ଲାଗିଲେ। ବାପ ପୁଅ ଠାରୁ କଥା ଶେଷ। କହନ୍ତି ପରା, ପୁତ୍ର ଗାତ୍ରସ୍ୟ ସଂସ୍ପର୍ଶଂ ଚନ୍ଦନାଦତିରିଚ୍ୟତେ। ପୁତ୍ର ମୁଖ ଚୁମ୍ବନ ସୁଖଠାରୁ ପିତାର ଅଧିକ ସୁଖ ଆଉ କଣ ଥାଇପାରେ? ପୁତ୍ରର ମୁଖରେ ହସ ଦେଖି କେଉଁ ପିତାର ପ୍ରାଣ ଆନନ୍ଦରେ ଅଧୀର ନ ହୁଏ? ପୁତ୍ରକୁ ଜ୍ଞାନବାନ୍ ଦେଖି କେଉଁ ପିତାର ହୃଦୟ ଗର୍ବରେ ସ୍ଫୀତ ନ ହୁଏ? କବିଙ୍କ କଥାରେ କହିବାକୁ ଗଲେ—କେଉଁ ପିତା ପୁତ୍ରେ ଦେଖି କୀର୍ତ୍ତିବନ୍ତ, ନ ମଣେ ବା ସ୍ୱର୍ଗ-ସୁଖ କରଗତ।

ସାତବର୍ଷର ପୁଅ ଏତେଗୁଡ଼ିଏ ପିଲାଙ୍କୁ ଜ୍ଞାନ ବତାଉଛି। ଯାହା ରଘୁନାଥଙ୍କ ପରି ପ୍ରୌଢ଼ ଲୋକ ମଧ୍ୟ ବେଳେ ବେଳେ ଭାବି ପାରନ୍ତିନି। କଣ କହିଲା, ଆହା, ତୁମ ଉପରକୁ ଢେଲା ଫୋପାଡ଼ିଲେ ତୁମେ କାନ୍ଦନ୍ତ ନାହିଁ? ପର ପାଇଁ! ପର, ସେ ପୁଣି ପକ୍ଷୀ। ପକ୍ଷିଗୁଡ଼ାଙ୍କର ଚେଁ ଚାଁକୁ ସେ କାନ୍ଦଣା ମନେ କରି ଏପରି କହିଥିଲା କିନା। ପର ପାଇଁ ସେ ଏତେ ଭାବିପାରେ? ଏତେ ପିଲା ଦିନୁ ସେ ଏ ଭାବ ପାଇଲା କେଉଁଠୁ?

ରଘୁନାଥ ନବୀନର ଆଖିରୁ ଲୁହ ପୋଛି ସଜୋରେ ତାକୁ ହୃଦୟରେ ଭିଡ଼ି ଧରିଲେ। ସେ କିନା ନବୀନର ଆଖିରୁ ଲୁହ ପୋଛିଦେଲେ କିନ୍ତୁ ତାଙ୍କରି ଆଖିରେ ବଉଦ ମାଳ ପରି ଲୁହ ଜମା ହୋଇ ପଡ଼ିଲା। ଶେଷକୁ ଦୁଇ ବୁନ୍ଦା ଅଶ୍ରୁ ପୁତ୍ରର ମସ୍ତକ ଉପରେ ଖସି ପଡ଼ିଲା। ସେ ଅଶ୍ରୁ ବିନ୍ଦୁ ଯୋଡ଼ିକ ଶୋକର ନୁହେଁ, କ୍ଷୋଭର ନୁହେଁ, ତାହା ଆନନ୍ଦର, ସ୍ନେହର।

ରଘୁନାଥ ନବୀନକୁ କାଖକରି ଘୋଡ଼ାଧାଡ଼ି ପଡ଼ା ଭିତରକୁ ପଡ଼ିଥିବା ରାସ୍ତା ଉପରେ ବୁଲିବାକୁ ଲାଗିଲେ। ଯାଉ ଯାଉ ପଚାରିଲେ, ନବି, ତତେ କିଏ ମାରିଲା କିରେ? ତୁ ଏତେ ପାଟିରେ କାନ୍ଦୁଥିଲୁ କାହିଁକି?

ନବୀନ ମୁହଁ ଟେକି ଥରେ ବାପାଙ୍କ ଆଗେ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ କହିଲା, ନାଇଁମ, ମୋତେ କେହି ମାରି ନାହିଁ—

ରଘୁନାଥ କହିଲେ, ତେବେ କାନ୍ଦୁଥିଲୁ କାହିଁକି ବାପ, କିଏ ଗାଳି ଦେଲା?

ନବୀନ ବାପାର ବେକର ଗୁଡ଼େପଟେ ନିଜର କଅଁଳିଆ ହାତରେ ଗୁଡ଼ିଧରି କହିଲା, ନାଇଁମ ବୁଅ, କେହି ମାରି ନାହିଁ, କେହି ବୁଡ଼ ନାହିଁ । କଣ ହେଲା କି, ଖେଳ ସାରି ଆମେ ଆସୁଥିଲୁ । ସିଠିତ ବାବା ମୁଁ ଖେଳ ନାହିଁ । ମୁଁ ସେଠି ଠିଆ ହୋଇଥିଲି । ଖେଳ ଭାଙ୍ଗିଲାରୁ ସମସ୍ତେ ଅଇଲେ, ମୁଁ ବି ଅଇଲି । ସେଇ ତେନ୍ତୁଳି ଗଛ ପାଖରେ ଠିଆ ହୋଇ ବାଦୁଡ଼ିଙ୍କୁ ଢେଲା ଫୋପାଡ଼ିଲେ । କହିଲୁ ବାବା, ତୁ କହିଲୁ, ଢେଲା ଫୋପାଡ଼ିଲେ ଯାହାକୁ ବାଜିବ ତାକୁ କାଟିବ ନାହିଁ ?

ରଘୁନାଥ ଟିକିଏ ହସିଦେଇ କହିଲେ, ହଁ କାଟେ; ସମସ୍ତେ କହନ୍ତି, କାଟେ ବୋଲି । ମୁଁ ବି କହେ, କାଟେ । କେମିତି ?

ନବୀନ ହସି ଉଠି ଉଚ୍ଚସ୍ୱରରେ କହିଲା, ଧେତ୍, ବାପା, ତୁ ତା ଜାଣିନୁ ? ତୁ ଓଲୁ । ମୁଁ ଜାଣେ । ମୋତେ ଦିନେ ସମା ଢେଲା ଫୋପାଡ଼ିଥିଲା । ମୁଁ କାନ୍ଦିଥିଲି ମୋତେ କାଟିବ ବୋଲି । କାଟିଲେ ମୁଣ୍ଡ ଫୁଲିଯାଏ, ତୁ ଯା ଜାଣିନୁ ?

ରଘୁନାଥ ନବୀନର ସରଳତାରେ ସନ୍ତୁଷ୍ଟ ହୋଇ କହିଲେ, ହଁ, ଢେଲା ଫୋପାଡ଼ିଲେ, ସେଇଠୁ ?

ନବୀନ କହିଲା, ସେଇଠୁ କଣ ହେଲା କି ବାଦୁଡ଼ିଙ୍କୁ କାଟିଲା, ସେ କାନ୍ଦିଲେ । ଇଆଡ଼େ ସିଆଡ଼େ ଉଡ଼ି ଉଡ଼ିକା ପଳାଇଲେ । ସେଇଠୁ ସମା କହୁଛି, ବାଦୁଡ଼ି ନହନହକା, ଯେଉଁ ଫଳ ଖାଇଲେ ସେଇ ଫଳ ପିତା । କହିଲୁ ବାପା, ବାଦୁଡ଼ିଙ୍କୁ ମାରିଲେ, ପୁଣି ସେ କହିଲେ କି ଯେଉଁ ଫଳ ଖାଇବୁ ସେଇ ଫଳ ପିତା । ସେ ଚଢ଼େଇ ଜାତି କଣ କରିବେ, ମାଡ଼ ଖାଇବେ ପୁଣି ଯୋଉ ଫଳ ଖାଇବେ, ସେଇ ଫଳ ତାଙ୍କୁ ପିତା ଲାଗିବ । ସେମାନେ ଓପାସରେ ରହିଲେ, ତାଙ୍କୁ ଭୋକ କରିବନି ?

ହଁ ହଁ ଠିକ୍ କଥା । ତୁ ମନ କରି କାନ୍ଦିଲୁ ନା ?

ବାଦୁଡ଼ି କାନ୍ଦିଲେ, ତେଣୁ ମୋତେ ବିକଳ ଲାଗିଲା । ସେଇଥି ପାଇଁ କାନ୍ଦିଲି । ବାପା, ତୁ ହୋଇଥିଲେ କଣ କାନ୍ଦି ନଥାନ୍ତୁ ?

ରଘୁନାଥ ପୁଅର ମୁଣ୍ଡରେ ହାତ ବୁଲାଇ କହିଲେ, ବାଦୁଡ଼ିଙ୍କ ସାଙ୍ଗେ ମୋର ସମ୍ପର୍କ କଣ ଯେ ମୁଁ ତାଙ୍କପାଇଁ କାନ୍ଦନ୍ତି । ସେ ଚଢ଼େଇଗୁଡ଼ାକ । ତାଙ୍କର ସେ କାନ୍ଦନ୍ତେ, ମୋର କଣ ଗଲା ଯେ ମୁଁ କାନ୍ଦନ୍ତି ?

ବାପା, ଯୋଉଦିନ ମୋ ଗୋଡ଼ ପଣିକିରେ କାଟି ହୋଇଗଲା, ମୋତେ କାଟିଗଲା ବୋଲି ସିନା ମୁଁ କାନ୍ଦିଲି । ତୋତେ ତ କାଟି ନ ଥିଲା । ତେବେ ତୁ କାହିଁକି ଆସି ମୋତେ ଧରି କାନ୍ଦିଲୁ, କହ ।

ରଘୁନାଥ କଣ କହିବେ କିଛି ଭାବି ପାରିଲେ ନାହିଁ । ସେ ନୀରବ ରହି ବାଟେ ବାଟେ ବୁଲିବାକୁ ଲାଗିଲେ । ମନରେ ତାଙ୍କର ଚିନ୍ତାସ୍ରୋତ ବହିବାକୁ ଲାଗିଲା । ଦେଖୁ ଦେଖୁ ଚିନ୍ତାସ୍ରୋତର ବକ୍ଷଦେଶରେ ଶତ ଶତ ସ୍ମୃତିର ଛାୟା ଭାସି ଆସି ଦୁଇକୂଳରେ ଲାଗିଲା । ଅତୀତର ଶତ ଦୁଃଖ-ସୁଖ, ଆଶା-ନିରାଶାର ଚିତ୍ର ବଉଦମାଳ ସେହି ସ୍ରୋତରେ ଚନ୍ଦ୍ରର ମୁଖ ଘୋଡ଼ାଇ ଦେଲା ପରି ଘୋଡ଼ାଇ ଦେଲା ତାଙ୍କ ଆନନ୍ଦର ମୁଖକୁ । ବାଲ୍ୟକାଳଠାରୁ ଆରମ୍ଭ କରି ସେଦିନ ପର୍ଯ୍ୟନ୍ତ ଜୀବନରେ ଯାହା ଯାହା ଘଟିଥିଲା ପଲକ ମାତ୍ରକେ ଆସି ତାଙ୍କର ମନ ରାଇଜକୁ ଅଧିକାର କଲା । ତୁଳନା କରି ଦେଖିଲେ ଅବଶ୍ୟ ସୁଖାତିବାହିତ ସମୟଗୁଡ଼ିକର ସଂଖ୍ୟା ଦୁଃଖାତିବାହିତ ସମୟଠାରୁ ଅଧିକ ହୋଇଛି ।

ପ୍ରିୟତମା ପତ୍ନୀର ମୃତ୍ୟୁଶଯ୍ୟା ନିକଟରେ ଦୁଇବର୍ଷ ପୂର୍ବେ ଯେତେବେଳେ ଠିଆ ହୋଇଥିଲେ ଦୁଇଆଖିରୁ ଧାର ଧାର ଲୁହ ନୀରବରେ ବହି ଯାଉଥିଲା । ଶିଶୁ ସନ୍ତାନ ନବୀନ ନିକଟରେ ଠିଆ ହୋଇଥାଏ । ସେ ନୀରବତା କିଏ ଭଙ୍ଗ କଲା ? ନବୀନ ! ସେ ମା ମା ହୋଇ ଯାଇ ତାର ଜନନୀର ବକ୍ଷଦେଶରେ ନିପତିତ ହେଲା । ଶିଶୁ ଜାଣେ ନାହିଁ ମୃତ୍ୟୁ କଣ ! ଆନନ୍ଦରେ, ସ୍ଫୁର୍ତ୍ତିରେ, ହସି ହସି ଖେଳରେ ସମୟ କଟାଇବାକୁ ଜାଣେ । ମା ମା କହି ଯେତେବେଳେ ତାଙ୍କର ରକ୍ତମାଂସହୀନ ଦୁର୍ବଳ ବକ୍ଷରେ ନିପତିତ ହେଲା, ସେ ବେଦନାରେ ଥରେ ମୁଖ ବିକୃତ କଲେ । କିନ୍ତୁ ନବୀନର ମୁହଁକୁ ଅନାଇ, ମୃତ୍ୟୁର ତୀବ୍ର ଯନ୍ତ୍ରଣାରେ ମଧ୍ୟ ତାଙ୍କର ଶୁଖିଲା ଓଠରେ ଧୀରେ ଧୀରେ ଗୋଟିଏ ହସର ଢେଉ ଖେଳି ଯାଇଥିଲା । ନିଜର ଦୁର୍ବଳ ବକ୍ଷରେ ନବୀନକୁ ଚାପିଧରି ଚକ୍ଷୁ ଓ ଚିବୁକକୁ ଲୋତକରେ ଭସାଇ ଦେଇଥିଲେ । ପରେ ନିଜେ ତାକୁ ବକ୍ଷରୁ ଉଠାଇ ଦେବାକୁ ନିଜର ଦୁର୍ବଳ ହସ୍ତକୁ ବଢ଼ାଇ ଦେଲେ । କିନ୍ତୁ ବିଫଳ ସେ ଚେଷ୍ଟା । ଶିଶୁ କଣ ବୁଝିବ ଅନ୍ୟର ବେଦନା ?

ରଘୁନାଥ ନବୀନକୁ ତାଙ୍କର ବକ୍ଷରୁ ଉଠାଇ ଆଣିଲେ । ନିରୀକ୍ଷଣ କଲେ, ଥରେ ତାଙ୍କର କୋଟରଗତ ଚକ୍ଷୁ ଦ୍ୱୟକୁ । କଣ ଦେଖିଲେ ? ଜ୍ୟୋତିହୀନ ଚକ୍ଷୁ ଦୁଇଟି ନୂତନ ଜ୍ୟୋତିରେ ଉଦ୍ଭାସିତ ହେଲା. ଚିର ଦିନ ନିମନ୍ତେ ମଳିନ ହେବା ପୂର୍ବରୁ, ଚିର ଦିନ ନିମନ୍ତେ ମୁଦ୍ରିତ ହେବା ପୂର୍ବରୁ । ନବୀନର ମାତା ହସ୍ତ ଦୁଇଟିକୁ ଯୋଡ଼ି ନମସ୍କାର କରିବାକୁ ମସ୍ତକରେ ଲଗାଇଲେ । କହିଲେ, ନବୀନ, ମୋ ନବୀନ—; ତାଙ୍କର ଓଠ ଦୁଇଟି ଥରିବାକୁ ଲାଗିଲା । କଣ

କହୁଥିଲେ କହି ପାରିଲେ ନାହିଁ । ତାଙ୍କର ଶୀତଳ ହାତ ଦିଓଟି ଥରିବାକୁ ଲାଗିଲା । ସେ କାହାକୁ ପ୍ରଣାମ କରିବାକୁ ଯାଉଥିଲେ, କିନ୍ତୁ କରି ପାରିଲେ ନାହିଁ । କଣ ହେଲା, ସେ ଏପରି ବିବର୍ଣ୍ଣ ଦିଶିଗଲେ କାହିଁକି ?

ଆଉ ସେ କାହାନ୍ତି, କା-ହା-ନ୍ତି ?

ନବୀନ ପିତାଙ୍କର ଥର ଥର କଣ୍ଠରେ ଉଚ୍ଚାରିତ କାହାନ୍ତି ଶବ୍ଦ ଶୁଣି ପିତାଙ୍କର ମୁଖାବଲୋକନ କରି ତାହାଙ୍କର ଚକ୍ଷୁରେ ଦୁଇ ଧାର ଲୋତକ ଦେଖି କାତର ହୋଇ ପଚାରିଲା, ବାପା, କିଏ, କିଏ କାହାନ୍ତି ।

ରଘୁନାଥ ଚମକି ଉଠି ନବୀନକୁ ଅନାଇଲେ । ତାଙ୍କର କାନ୍ଧରେ ପଡ଼ିଥିବା ଗାମୁଛା ଖଣ୍ଡିକରେ ମୁହଁ ବୁଲାଇ ବିନା ହସ୍ତ ପ୍ରୟୋଗରେ ଆଖି ପୋଛିଲେ ।

ନବୀନ କହିଲା, ବାପା କାନ୍ଦୁଛ ? ଛି, ତୁ କଣ ପିଲା ହୋଇଛୁ ? ମୋତେ କାଖେଇଛୁ ବୋଲି ତୋତେ କାନ୍ଦୁଛି ପରା । ଓହ୍ଲେଇ ଦେଉନୁ । ମୁଁ କଣ ତୋତେ କାଖ ବୋଲି କହୁଥିଲି ?

ରଘୁନାଥ ନବୀନକୁ କାଖରୁ ଓହ୍ଲାଇଲେ । ସୁନ୍ଦରଙ୍କର ଘର ମଧ୍ୟ ଆଉ ବେଶି ଦୂର ନ ଥିଲା ।

ରାଜପ୍ରାସାଦରୁ ଆରମ୍ଭ ହୋଇ ଯେଉଁ ରାସ୍ତା ଘୋଡ଼ାଧାଡ଼ ପଡ଼ିଆକୁ ପଡ଼ିଛି, ସେହି ରାସ୍ତାରେ ପଡ଼ିଆ ଭିତରକୁ ପଶି କିଛି ଦୂର ଗଲେ ସେ ରାସ୍ତାର ବାଁ-ହାତ ଗୋଟିଏ ଛୋଟ ଗଳି । ସେ ଗଳିର ଆରମ୍ଭରୁ ଦିଓଟି ବଡ଼ ବଡ଼ ତିବାଘର ଛାଡ଼ିଦେଲେ ଡାହାଣ-ହାତ ବଡ଼ ଚଉରା ପାଖକୁ ଆଉ ଗୋଟିଏ ବଡ଼ ତିବା ଘର । ଚଉରା ପାଖକୁ ପାହାଚ ପାହାଚ ହୋଇ ଅକର୍ମ ଶିଳାର ଦଶଟା ପାହାଚ ପାର ହୋଇଗଲେ ସାମନା ଘରର ଦରଜା । ଦରଜାକୁ ମୁହଁ କରି ଠିଆ ହେଲେ ଡାହାଣ-ହାତ ଓ ବାଁ-ହାତ ଦୁଇ ପାଖେ ପିଣ୍ଡା । ଡାହାଣ-ହାତ ପିଣ୍ଡା ଓ ପାହାଚର ସଂଲଗ୍ନ ସ୍ଥାନରୁ ଦଶ ହାତ ଛାଡ଼ି ଯୁରୁପେ ଉଚ୍ଚର ଚଉରା । ଚଉରାର ଚାରି ପାଖରେ ଗୃହଦଣ୍ଡୀ ବନ୍ଧା ହୋଇଛି । ଏ ସବୁ କାମ ପକ୍କା । ସୁନ୍ଦର ବହିଦାରଙ୍କର ବାପା ଏତିକ କରି ଯାଇଥିଲେ । ସେ ପରମାର୍ଥିଆ ମାଲ ଗଡ଼ା ଲୋକ ଥିଲେ କିନା, ସେ ସେକଥି ପାରିଛି ।

ରାଜାଙ୍କ ଦୟାରୁ ସୁନ୍ଦର ବହିଦାରଙ୍କର ଘର । ପାଞ୍ଚିଆଁ କାମ କରି କରି ସେ ଯଥେଷ୍ଟ କମେଇ ଥିଲେ । ବେତନ ଟ ୨୫/ବୋଲି ପ୍ରଚାର ଥିଲା । ସେ କେତେ ଯେ କଣ ଉପରେ ହାତ ଚଳାନ୍ତି ତାର ଠିକ୍ ଠିକଣା ନ ଥିଲା । ଝୁଠ୍ ଛାଠ୍ କଥା ଯାଇ ରାଜାଙ୍କ କାନରେ ବାଜିବାରୁ ସେ ଦିନେ ରାତିବେଳା ବହିଦାରଙ୍କ ଘରେ ପହଞ୍ଚିଲେ । ଦେଖିଲେ ବହିଦାରେ ଧୋଷେ ହେବ ମୁଢ଼ି ଚୋବାଉଛନ୍ତି, ରାତିରେ କୁଆଡ଼େ ଭାତ ନାହିଁ ବୋଲି । ବହିଦାରେ ଚମକିରେ ବକା ପଡ଼ିଲେ । ତହିଁ ଆର ଦିନ ବହିଦାରଙ୍କୁ ଡକାଇ ଦଶ ଖଣ୍ଡ ଗାଁ ପୁରସ୍କାର ଦେଇ ତାଙ୍କୁ ଗଉଁତିଆ କଲେ ।

ଏ ଆନନ୍ଦ ବେଶି ଦିନ ରହିଲା ନାହିଁ । ବୁଢ଼ା ମଧ୍ୟ ଦୁଃଖୋପାର୍ଜିତ ଧନ ଭୋଗର ସୁଖରେ ସୁଖୀ ହୋଇ ବେଶି ଦିନ ରହି ପାରିଲେ ନାହିଁ । ଘରର ସମସ୍ତ ବ୍ୟବସ୍ଥା କରି ପୁତ୍ର ସୁନ୍ଦରଙ୍କୁ ଉପଯୁକ୍ତ କନ୍ୟାପାତ୍ରୀ ସହିତ ବାହାଚୁଡ଼ା କରାଇ ବୁଢ଼ୀଙ୍କୁ ଛାଡି ଦୁଇ ବର୍ଷ ହେଲା ଚାଲି ଗଲେଣି ।

ବୁଢ଼ୀଙ୍କର ବୟସ ଅନ୍ଦାଜ ଷାଠିଏ । ସେ ପୁଅ ଶୋଇଥିବା କନ୍ଦର ସମ୍ମୁଖରେ ବସିପଡ଼ି ଅଶ୍ରୁ ବିସର୍ଜନ କରୁଥିଲେ । ମନ ମଧ୍ୟରେ ଗୋଟି ଗୋଟି ହୋଇ ଅତୀତର ସୁଖ-ଦୁଃଖର କେତେ କଥା ଆସିଲା ଗଲା ତାର କଳନା ନାହିଁ । "ଅଙ୍ଗଂ ଗଳିତଂ ପଳିତଂ ମୁଣ୍ଡଂ, ଦନ୍ତ ବିହୀନଂ ଜାତଂ ତୁଣ୍ଡଂ" ହୋଇ ସୁଦ୍ଧା ତାଙ୍କର "କରଧୃତ କମ୍ପିତ ଶୋଭିତ ଦଣ୍ଡଂ" ନ ଥିଲା । "ଆଶା ଭାଣ୍ଡ"କୁ ତ ମୃତ୍ୟୁ ଆକ୍ରମଣ କରିବା ଉପରେ ଥାଏ ।

ବୁଢ଼ୀଙ୍କର ଗୋଟିଏ ବଡ଼ ଆଶା ଥିଲା । ସେ ଭାବୁଥିଲେ ତାଙ୍କ କପାଳରେ ମୃତ୍ୟୁ ଲେଖା ନାହିଁ । ଭଗବାନଙ୍କର ଦୟା ଅଛି । ସେ ନାତି ନାତୁଣୀଙ୍କୁ ଦେଖାଇବା ପାଇଁ ତାଙ୍କୁ ବଞ୍ଚେଇ ରଖିଛନ୍ତି । କିନ୍ତୁ କିଏ ଜାଣିଥିଲା ଯେ ବୁଢ଼ୀ ବୟସରେ ତାଙ୍କ କପାଳରେ ଏତେ କଷ୍ଟ ସୁରେଶ୍ୱରୀ ଠାକୁରାଣୀ ଲେଖିଛନ୍ତି ?

ମା ଗୋ, ଏତିକି ବେଳେ ମୋ ଜୀବନ ନେଇ ଯା । ପୁତ୍ରର ଏ କଷ୍ଟ ମୁଁ ଆଉ ସମ୍ଭାଳି ପାରିବି ନାହିଁ । ଓଃ, ହୃଦୟ ମୋର କେଡ଼େ କଠିଣ । ଏ ବୁଢ଼ୀ ବୟସରେ ଏ କଷ୍ଟ, ଏ ଯନ୍ତ୍ରଣା ମୋତେ ଆଉ ଦେଅନା । ଏଗାର ବର୍ଷ ବାଞ୍ଝ ରହି, କେତେ ଦିଅଁ ଦେବତା ପୂଜି, ଉପାସ ବାର ବ୍ରତ କରି, ସୁରେଶ୍ୱରୀଙ୍କ ନିକଟରେ ମୁଣ୍ଡିଆ ମାରି ମାରି ମୁଣ୍ଡରେ ବଣି ହୋଇ ବହୁତ କଷ୍ଟରେ ମୋର ଦୁଖିଧନକୁ ପାଇଛି । ହେ ଭଗବାନ୍, ତାର କଷ୍ଟ ଦେଖି ମୋର ହୃଦୟ ସମ୍ଭାଳି ରହିଛି ଯାହା । ଛ'ଟା ନୁହେଁ କି ନ'ଟା ନୁହେଁ । ମୋଟେ ସେଇ ଜଣକ । ହେ ଦଇବ, ତାର ଦୁଃଖ କଷ୍ଟ ମୁଁ କେମିତି ସମ୍ଭାଳି ପାରିବି । ମୋର ଦିନ କାଲି ତା ଆଗରେ ସରି ଯାଉନାହିଁ କାହିଁକି ?

ଏଇଆ ଭାବି ଭାବି ତାଙ୍କ ଶୁଷ୍କ ଚକ୍ଷୁରୁ ଲୋତକ ଧାର ଧାର ହୋଇ ବୋହି ଆସିଲା । ସେ ଖଣ୍ଡେ ପଥରରେ ଢୁ କରି ମୁଣ୍ଡ ପିଟିବାକୁ ଗଲାବେଳେ କଣାକର ହାତ ପଥର ଏବଂ ବୁଢ଼ୀଙ୍କର ମୁଣ୍ଡ ମଝିରେ ରହି ତାଙ୍କୁ ସେଥିରୁ କ୍ଷାନ୍ତ କଲା । ସେ ଆଉଥରେ ଚେଷ୍ଟା କଲେ, ବିଫଳ ହେଲା । ତୃତୀୟ ଥର ଚେଷ୍ଟା କଲେ କିନ୍ତୁ ଏଥର ମଧ୍ୟ ସେହି ହାତ ଆସି ବାଧା ହେଲା । ସେ ରୋଷ-କଷାୟିତ ନେତ୍ରରେ ସମ୍ମୁଖକୁ ଅନାଇ ଦେଖିଲେ କ୍ଷୀଣ-ଅଙ୍ଗୀ, ନିରକ୍ତ ଆନନା, ତାଙ୍କର ସ୍ନେହର—ଅତି ସ୍ନେହର, ଏକମାତ୍ର କୁଳବଧୂ !

**ସା**ବିତ୍ରୀ ଦେବୀଙ୍କର ବୟସ ଯେତେବେଳେ ଅଠର ସେତେବେଳେ ତାଙ୍କର ଶୁଭ ପରିଣୟ ହୋଇଥିଲା । ସେ ଜଣେ ମଧ୍ୟବିତ୍ତ ପରିବାରର ଝିଅ । ରାଜାଙ୍କର ପାଣ୍ଡିଆଙ୍କର ପୁତ୍ର ସଙ୍ଗେ ସାଧାରଣ ଜଣେ ଗାଉଁଲି ଲୋକର ଝିଅର ବାହାଘର ହେବ ଏହା କେହି ବିଶ୍ବାସ କରି ନଥିଲେ । ତେବେ ପ୍ରଜାପତିଙ୍କ ଯୋଗ ତ । ତହିଁରେ ହାତ ଦେବ କିଏ । ସାବିତ୍ରୀ ସୁନ୍ଦର ଓ ଗୁଣର ଝିଅ ବୋଲି ସମସ୍ତେ ଜାଣିଥିଲେ । ସେଥିପାଇଁ ସୁନ୍ଦରଙ୍କ ବାପେ ବୋହୂ କଲେ ।

ସାବିତ୍ରୀ ଘରେ ଗୋଡ଼ ଦେଉ ନ ଦେଉଣୁ ବୁଢ଼ା ବେମାର ପଡ଼ିଲେ । ପାଚେଲା ଆମ୍ବ କେତେବେଳେ ଗଛରୁ ଖସି ପଡ଼ିବ ତାର କଣ ଠିକ୍ ଅଛି । ଛଅ ମାସ ନ ଯାଉଣୁ ସତକୁ ସତ ତାଙ୍କର ଜୀବନ ଗଲା । ଲୋକେ କହିଲେ, ବୋହୂ ପଦଷା ଖାଇ ବୁଢ଼ାକୁ ଅଜୀର୍ଣ୍ଣ ହୋଇଗଲା । ସେଇଥିରେ ଶେଷ ! ଆଉ କେତେ ମାଇପେ କହିଲେ, ଦେଖ ଗୋ, ବୋହୂଟା କେଡ଼େ ଅଲକ୍ଷଣୀ ଟାଏ । ଘରେ ଗୋଡ଼ ଦେଇଛି କି ନାହିଁ ବୁଢ଼ା ଚାଲିଗଲେ । ସମସ୍ତେ ସେଇଆ କହିଲେ । କିନ୍ତୁ ସୁନ୍ଦର ବାବୁ ଟିକିଏ ହସିଦେଲେ । ତାଙ୍କ ହସ ଦେଖି ସାବିତ୍ରୀ ମଧ୍ୟ ହସ ସମ୍ଭାଳି ପାରି ନଥିଲେ । କିନ୍ତୁ ବୁଢ଼ୀ ସେଇ ଦିନଠୁ ତାଙ୍କ ଉପରେ ଗୁରୁ ଗୁରୁ ହେଉଥାନ୍ତି । ବେଶି ଦିନ ଅତୀତ ନ ହେଉଣୁ ତାଙ୍କ ଗଉଁଡ଼ିର ଧାନ ଘରେ କିଏ ଦାଗୀ ଲୋକ ନିଆଁ ଲଗାଇ ଦେଲା ତା କେହି ଜାଣି ପାରିଲେ ନାହିଁ । ସବୁ ଶେଷ । ମାଣେ କି ଡାହିଏ ପୋଡ଼ା ଖଇ ମଧ୍ୟ ମିଳିଲା ନାହିଁ । କିଏ ନିଆଁ ଲଗେଇଲା ତାହା ବି ଜଣା ପଡ଼ିଲା ନାହିଁ, ଦୋଷଟା ଠେଲି ପଡ଼ିଲା ସାବିତ୍ରୀଙ୍କ ମୁଣ୍ଡ ଉପରକୁ । ଅଘର-ଦୁଆର ସମସ୍ତେ ଭୁଟ୍‌ଭାଟ୍ ହେଲେ । ସମସ୍ତେ କହିଲେ, ସେଇ ବୋହୂ ଗୋ, ସେହି ବୋହୂଟି । ଘରେ ଗୋଡ଼ ଦେଉ ନ ଦେଉଣୁ ଏତେ ଏତେ କାଣ୍ଡ ! ବୁଢ଼ୀ ମଧ୍ୟ ଦି ପଦ ଶୁଣାଇ ଦେବାକୁ ଅମଙ୍ଗ ହେଲେନାହିଁ । ତାଙ୍କ ପାଟିକୁ ଯାହା ଆସିଲା ଦି

ଗୃହ ପଦ ଠାଣୁଅ ଠାଣୁଅ କରି ଗାଳିଦେଲେ । ସାବିତ୍ରୀ ଏଥର ହସିଲେ ନାହିଁ । ମୁହଁଟାର ଘୋଡ଼ାଏ ଚୁପ୍ ହୋଇ ବସି ପଡ଼ିଲେ ।

ସେଇ ଦିନଠାରୁ ସାବିତ୍ରୀଙ୍କ ଉପରେ ବୁଢ଼ୀଙ୍କର ଅତ୍ୟାଚାର ଆରମ୍ଭ ହେଲା । ସାବିତ୍ରୀ ଯାହା ଭଲ କରନ୍ତି ତାହା ବୁଢ଼ୀଙ୍କ ଆଖିରେ ମନ୍ଦ, ଆଉ ଯାହା ଖରାପ କରନ୍ତି ସେଇଟା ତ ଖରାପ ହେବାର କଥା । ସମସ୍ତେ ଭାବିଥିଲେ ଭଲ ଲଢ଼େଇ ପାଲା ଆରମ୍ଭ ହେବ; କିନ୍ତୁ ସେମାନଙ୍କର କଥାରେ ପଡ଼ିଲେ ସିନା ! ସାବିତ୍ରୀ ବୁଢ଼ୀଙ୍କର ଅତ୍ୟାଚାର ସହ୍ୟ କରି ନେଉଥିଲେ । ସୁନ୍ଦରଙ୍କ କାନରେ ଏ କଳିର ବିନ୍ଦୁ ବିସର୍ଗ ପଡ଼େ ନାହିଁ । ସାବିତ୍ରୀ ତ କହନ୍ତି ନାହିଁ, କହିବ କିଏ ? କାହା ନାଁରେ ବା କହିଥାଆନ୍ତେ ? ନିଜର ଶାଶୁଙ୍କ ନାମରେ ପୁଣି ସ୍ୱାମୀଙ୍କ ପାଖରେ ଅଭିଯୋଗ ! କରଣ ଘରର ବୋହୂ, ଦାଣ୍ଡରେ ଘାଟରେ ନାଁ ପଡ଼ିବ । ଏଇଟା କଣ ଉଚିତ ହେବ ? ଶେଷରେ କଥାଟା ସୁନ୍ଦରଙ୍କ କାନକୁ ଆସିଲା । ସେ ମା'ଙ୍କୁ ମନାକଲେ ।

ବୁଢ଼ୀ ପୁଅଠୁଁ ଏପରି କଥା ଶୁଣି ସାବିତ୍ରୀଙ୍କୁ ଦୋଷ ଦେଲେ । ଚଗମେଲି କହି ବୁଲିଲେ କଣ ନା, ପାଖରେ ଶୁଏ, କାନରେ କୁହେ, ତା କଥା କେବେ ଅନ୍ୟଥା ହୁଏ ? ସେ ଦିନ ବୁଢ଼ୀ ଯେତେ ଛଟିଗୁଲେଇ ବଗୁଲେଇ ହୋଇ କାନ୍ଥକୁ ଦେଖେଇ ବାଡ଼କୁ ଦେଖେଇ ସାବିତ୍ରୀଙ୍କ ଉପରେ ଗାଳି ବର୍ଷଣ କଲେ, ସାବିତ୍ରୀ ସେ କାଳର ବୋହୂ ବୋଲି ସବୁ ସହିଗଲେ । ଯଦି ଆଧୁନିକ ଯୁଗର କୋମଳପ୍ରାଣା ହୋଇଥାନ୍ତେ, ତେବେ ଅବସ୍ଥା ଭୀଷଣ ଆକାର ଧାରଣ କରି ଆଆନ୍ତା ।

ଭଲ ମନ୍ଦ ଦଇବ ଜାଣେ । ନିଜ କାମ ସେ ନିଜେ କରିଯାଏ । ପଛରେ ଆଉ ଲୋକଙ୍କ କଥା ଶୁଣି ହସୁଥାଏ । ହସି ହସିକା ଦିନେ ସେ ସୁନ୍ଦର ବାହାଦାରଙ୍କୁ ଗେଣ୍ଡା କରି କୋଳକୁ ଟାଣି ନେଲା । ଲୋକେ ବୁଝିଲେ, ସୁନ୍ଦରଙ୍କର ମରଣ ହେଲା । ମା ବୁଢ଼ୀ ମଣିଲେ, ବୋହୂଟିର ନାମ ସାବିତ୍ରୀ ହେଲେ କଣ ହେବ, ସେ ଅଲକ୍ଷଣୀ ଡଣ୍ଟେଇ, ମୋ ପୁଅଟାକୁ ଖାଇ ଦେଲା । ଗାଁ ମାଇପେ ସେଇଆ କହିଲେ ।

ସାବିତ୍ରୀ ଭାବିଲେ, ସତ କି ? ତେବେ, ଏ ଜୀବନ ରଖିବ କାହିଁକି ? ଏ ଦେହକୁ ଏଇଠି ଫେପାଡ଼ି ତାଙ୍କ ପାଖକୁ ଚାଲିଯିବି ।

ବାପା, ସେ ଦିନ ପାହାଡ଼ାନ୍ତାରେ ତୁମେ ସବୁ କାନ୍ଦିଲ କାହିଁକି ?

କୋଉ ଦିନ ?

ଯେଉଁ ଦିନ ତୁ ମତେ କାଖ କରି ନେଇଗଲୁ । ପିଲାଏ ସବୁ ଠେକା ପକାଉଥିଲେ ପଛରୁ । ମୁଁ କାନ୍ଦିଲି ଯେ, ଘୋଡ଼ାଘାଟ ପଡ଼ାକୁ ମ । ଯେଉଁ ଘରେ ମଉସା ଖଟ ଉପରେ ଶୋଇଥିଲେ । ଆଉ ତୁ ତାଙ୍କୁ ଔଷଧ ଦେଉଥିଲୁ । କାଶୀ କବିରାଜେ ବି ଥିଲେ । ମନେ ପଡ଼ିଲା ?

ନବୀନର ପ୍ରଶ୍ନ ଶୁଣି ରଘୁନାଥ କିଛି ସମୟ ନୀରବ ରହିଲେ । ଗୋଟିଏ ଭାବନା ତାଙ୍କ ମନ ଭିତରେ ପଶିଗଲା । ସେ ଉପରକୁ ଅନାଇ ରହିଲେ । ଜଣାଗଲା ଯେପରି କିଛି ଭାବୁଛନ୍ତି ।

ମନେ ପଡୁନାହିଁ ? ଯୋଉ ଦିନ ସୁନ୍ଦର ମଉସାଙ୍କ ସ୍ତ୍ରୀ ମୋତେ ଧରିଥିଲେ । ବାପା, ସେ କାହିଁକି କାନ୍ଦିଲେ ? ସେ କାହିଁକି ମୁଣ୍ଡ ବାଡ଼େଇ ହେଲେ ? ତାଙ୍କ ମୁଣ୍ଡରୁ ରକ୍ତ ବୋହିଗଲା । ତାଙ୍କୁ କଣ କାଟି ନ ଥିବ ? ତାଙ୍କ ମୁଣ୍ଡ କଣ ପଥର ଯେ ତାଙ୍କୁ କାଟିଲା ନାହିଁ ?

ତଥାପି ରଘୁନାଥ ନୀରବ । ସେ ତାଳପତ୍ର ବିଡ଼ାକ ଏବଂ ଲେଖଣୀଟି ତଳେ ଥୋଇ ନବୀନର ମୁହଁକୁ ଅନାଇଲେ । କିନ୍ତୁ ତାଙ୍କର ଭାବନା ଅନ୍ୟ ଆଡ଼େ ଧାଇଁଥାଏ । ନବୀନ ଭାବିଲା, ବୋଧହୁଏ ବାପା ତାର କଥା ଭାବୁଅଛି । ତାର ପ୍ରଶ୍ନର ଉତ୍ତର ଦେବାକୁ ଚିନ୍ତା କରୁଅଛି । ସେ ପଚାରିଲା ବାପା, ତୁମେ ସମସ୍ତେ କାନ୍ଦିଲ ଯେ କଣ ସମସ୍ତଙ୍କୁ କାଟିଲା ? କାହିଁ ମୋତେ ତ କାଟି ନାହିଁ ?

ରଘୁନାଥ ପୁଅକୁ ନିଜ ଆଡ଼କୁ ଟାଣି ଆଣିଲେ । ତାର ମୁଖ ଚୁମ୍ବନ କରି କୋଡ଼ରେ ବସାଇଲେ । ତାର ସ୍ମରଣ ଶକ୍ତିକୁ ପ୍ରଶଂସା କରି କହିଲେ, ବାପ, ତୋର ଆଜିଯାଏ ସେହି କଥା ମନେ ଅଛି ! ଆସି ପାଞ୍ଚମାସ ହେଲାଣି, ତଥାପି ତୁ ସବୁ କଥା ମନେ ରଖିଛୁ ? ଭଗବାନ ତତେ ଆଇସ ନିହାତି ଦିଅନ୍ତୁ ।

ନବୀନ ବାପାର କୋଡ଼ରୁ ଉଠି ଆସି ସାମନାରେ ଠିଆହୋଇ କହିଲା, ବାପା, ପାଞ୍ଚ ମାସ କଣ ? ଭଗବାନ କିଏ ? ଆଉ ଆଇସ ନିହାତ ଗୋଟିଏ କଣ ?

ରଘୁନାଥ ହସି ହସି କହିଲେ, ଅରେ ତୁ ପିଲା ଲୋକ, ସେଥିରୁ କଣ ବୁଝିବୁ । ତେବେ ଶୁଣ, ଦିନ ଦିନ ହୋଇ ତିରିଶ ଦିନରେ ଗୋଟିଏ ମାସ ହୁଏ, ସେମିତି ମାସ ମାସ ହୋଇ ପାଞ୍ଚ ମାସ ହେଲାଣି ।

ନାଇଁ ମ ବାବା, ମୁଁ ତା ପଚାରୁ ନାହିଁ । ତୁ ଏତେଗୁଡ଼ାଏ କଣ କହିଗଲୁ ମୋ ମନେ ରହିଲା ନାହିଁ । ହଁ, ତୁ କହିଲୁ ଦିନ ଦିନ ହୋଇ ତିରିଶ ଦିନରେ ମାସେ ହୁଏ । ଦିନ କଣ ଆଗ ବୁଝାଇ ଦେ । ଦିନକୁ କିଏ ଗଢ଼ିଛି ? ସେ ଦିନ ରାମ ଯୋଉ କଣ୍ଢେଇଟି ଆଣିଥିଲା, ତାକୁ ପଚାରିଲି ଯେ ସେ କହିଲା ତା ମା କଣ୍ଢେଇଟିକୁ ଗଢ଼ିଥିଲା । କାହିଁରେ ଗଢ଼ିଛି ବୋଲି ମୁଁ ପଚାରିବାରୁ ମାଟିରେ ଗଢ଼ିଛି ବୋଲି କହିଲା । ଦିନକୁ କିଏ ଗଢ଼ିଛି ? କାହିଁରେ ଗଢ଼ିଛି ?

ରଘୁନାଥଙ୍କୁ ଏ ସବୁ ପ୍ରଶ୍ନ ଅଡ଼ୁଆ ଲାଗିଲା । ସେ ବିରକ୍ତ ହୋଇ କହିଲେ, କେଜାଣି, ମୁଁ ଜାଣିନାହିଁ । ପରେ ଯେତେବେଳେ ନବୀନକୁ ଅନାଇଲେ ସେତେବେଳେ ଦେଖିଲେ ସେ ମୁହଁ ଶୁଖେଇ ତୁନି ହୋଇ ଠିଆ ହୋଇଛି । ତାଙ୍କ ମନ ଆଉ ସମ୍ଭାଳି ପାରିଲା ନାହିଁ । ସେ ନିଜ ବିରକ୍ତ ଭାବକୁ ଘୋଡ଼ାଇ କହିଲେ, ଦିନକୁ ଆଉ ଗଢ଼ିବ କିଏ ? ଭଗବାନ ଗଢ଼ିଛନ୍ତି । ସଂସାରରେ ଯାହା ସବୁ ଦେଖୁଛୁ, ତାହାକୁ ସେହି ଭଗବାନ ଗଢ଼ିଛନ୍ତି । ଦିନ କାହିଁରେ ତିଆରି ହୋଇଛି, ତାହା ମୁଁ କହି ପାରିବି ନାହିଁ । ତମ ମାଷ୍ଟରଙ୍କୁ ପଚାରିବୁ ।

ତୁ କହିଲୁ ଦିନକୁ ଭଗବାନ ଗଢ଼ିଛନ୍ତି । ସେ କେଉଁଠି ଥାଆନ୍ତି ? ମୁଁ ତ ତାଙ୍କୁ ଦେଖିନାହିଁ । ମୁଁ ରାମ ବୋଉକୁ ଦେଖିଛି । ବାପା, ତୁ ତାଙ୍କୁ ଦେଖିଛୁ ?

ମୁଁ ତାଙ୍କୁ ଦେଖିନାହିଁ ।

ତୁ ତ ତାଙ୍କୁ ଦେଖିନାହୁଁ, କେମିତି ଜାଣିଲୁ ଯେ ସେ ଦିନକୁ ଗଢ଼ିଛନ୍ତି ? ତତେ କିଏ କହିଥିଲା ?

ସମସ୍ତେ କହନ୍ତି ସେଇ ଗଢ଼ିଛନ୍ତି । ସେଇଥିପାଇଁ ମୁଁ କହିଦେଲି, ଆଉ ତୁ ପଚାରିଲୁ ଭଗବାନଙ୍କର ଘର କେଉଁଠି ? ସମସ୍ତେ କହନ୍ତି ସ୍ୱର୍ଗରେ ।

ସ୍ୱର୍ଗ ଏଠିକି କେତେ ବାଟ ? ଦୁଇ କୋଶ ହେବ ?

ରଘୁନାଥ ଟିକିଏ ହସିଦେଇ କହିଲେ, ତା ଏବେ କିଏ କେମିତି ଜାଣିବ ? ଲୋକେ କହନ୍ତି ସ୍ୱର୍ଗ ଏଠାରୁ ଅନେକ ଦୂର ।

ସେଠିକି କିଏ କେବେ ଯାଇଥିଲା ବାପା ?

– ମନୁଷ୍ୟ ହୋଇ କିଏ କେବେ ଯାଇନାହିଁ । ସେଇଠିକି ବାଟ ପଡ଼ିଛି ଶୂନ୍ୟରେ । ଏଇ ଯୋଉ ଆକାଶଟା ଦେଖୁଛୁ ନା, ତା ଉପରେ ସ୍ୱର୍ଗ ଅଛି । ସୂର୍ଯ୍ୟ, ଚନ୍ଦ୍ର ଯେଉଁଠୁ ଉଠନ୍ତି ସେଇଠି ଅଛି ସ୍ୱର୍ଗ । ସେଇଠିକି କିଏ ଯାଇପାରେ ? ଅସମ୍ଭବ ।

ବାପା, ଉଡ଼େଇମାନେ ତ ଯାଇ ପାରୁଥିବେ । ସେମାନେ ଉଡ଼ ମାରନ୍ତି । ଏଇ ଶୂନ୍ୟରେ, ଉଡ଼ ଉଡ଼କା ଯାଇ ଭଗବାନଙ୍କୁ ଦେଖି ପାରୁଥିବେ । ପାଗ ଝୁଲ୍ ଉଇଲୁ ଉଠେ, ସେ ତ ସ୍ୱର୍ଗ ଦେଖିଥିବ ?

ନାଇଁ, ନାଇଁ, ମନୁଷ୍ୟ ବଞ୍ଚିଥିବାଯାକେ ସେଠିକି ଯାଇପାରେ ନାହିଁ, ମୃତ୍ୟୁପରେ ସମସ୍ତେ ସେଠିକି ଯାଆନ୍ତି । ତେବେ କିଏ କେମିତି ଜାଣିବ ଭଗବାନ କେମିତିକା ? କେବଳ ଯୋଗୀ ସନ୍ନ୍ୟାସୀମାନେ ତା ଜାଣନ୍ତି ।

ମୋର ଇଚ୍ଛା ହେଉଛି ମୁଁ ତାଙ୍କୁ ଦେଖିବା, ତୁ ମୋତେ ନେଇ ସେଠିକୁ ଯିବୁ ? ତୁ କହିଲୁ ମୃତ୍ୟୁ ପରେ ସମସ୍ତେ ସେଠାକୁ ଯାଆନ୍ତି । ମୁଁ ତ ମୃତ୍ୟୁପରେ ସେଠିକି ଯିବି, ତାଙ୍କୁ ସେଇଠି ଦେଖିବି ତ ?

କୌଣସି ମତେ ନବୀନର ପ୍ରଶ୍ନରୁ ରକ୍ଷାପାଇବା ପାଇଁ ରଘୁନାଥ କହିଲେ,– ହଁ, ତୁ ଯିବୁ, ମୁଁ ଯିବି, ସମସ୍ତେ ଯିବା । ତୁ ପରା ପଚାରୁଥିଲୁ ସେ ଦିନ ଆମେ ସବୁ କାହିଁକି କାନ୍ଦୁଥିଲୁ ବୋଲି । ତାର କାରଣ ତୋ ସୁନ୍ଦର ମଉସା ମରିଗଲେ ।

ସୁନ୍ଦର ମଉସା ମରିଗଲେ ? ମରିଗଲେ କଣ ମ ?

ମରିଗଲେ ମାନେ ସ୍ୱର୍ଗକୁ ଚାଲିଗଲେ ।

ନବୀନ ଆନନ୍ଦ ପ୍ରକାଶ କରି କହିଲା, ତେବେ ସେ ତ ଭଗବାନଙ୍କୁ ଦେଖି ପାରିବେ । ବାପା, ତୁ ଆଜି ମୋତେ ତାଙ୍କ ଘରକୁ ନେଇକରି ଯିବୁ । ମୁଁ ତାଙ୍କୁ ପଚାରିବି । ଅଚ୍ଛା ବାପା ଯେ ସ୍ୱର୍ଗକୁ ଯାଏ ସେ କଣ ଖଟ ଉପରେ ଲୁନହୋଇ ଶୋଇପଡ଼େ ? ତେବେ ମୁଁ ଆଉ ତାଙ୍କ ଘରକୁ କାହିଁକି ଯିବି ? ଯାଉଛୁ, ଆମ ଖଟ ଉପରେ ମାଠ ଘୋଡ଼ହୋଇ ଶୋଇ ପଡ଼ିବି । ବାପା, ସ୍ୱର୍ଗକୁ ଯେ ଯାଏ ତା ପାଖରେ ଯେଉଁମାନେ ଥାଆନ୍ତି ସେମାନେ କାନ୍ଦନ୍ତି କାହିଁକି ?

ନବୀନ ଯିବାକୁ ଉଦ୍ୟତ ହେବାରୁ ତାର ହାତ ଧରି ଅଟକାଇ ରଖିଲେ । କହିଲେ ତୁ କେତେ ଓଲୁ, କେତେ ନିର୍ବୋଧ । ସଞ୍ଜ ବୁଡ଼ ଆସୁଛି । ତୋ ପାଇଁ ମୁଁ ମିଠେଇ ଆଣି ରଖିଛି, ଖାଇବୁ ଯା ।

ନବୀନ କହିଲା, ନାଇଁ ବାପା, ମୁଁ ଯାଉଛି ସ୍ୱର୍ଗକୁ ଯିବି, ଭଗବାନଙ୍କୁ ଦେଖିବି ।

ଅଚ୍ଛା ହଉ, ଯଦି ଯିବୁ ତେବେ ଭଗବାନଙ୍କୁ ଦେଖିଲେ କଣ କହିବୁ ?

ନବୀନ କହିଲା, ଆଉ କହିବି କଣମ ? କିଛି କହିବି ନାହିଁ । ତାଙ୍କ ପାଖରେ ଯାଇ ଠିଆ ହେବି । ସେ ଯାହା ପଚାରିବେ ତାର ଉତ୍ତର ଦେବି ତାଙ୍କୁ

ଗୋଟିଏ କଥା ମାଗିବ ବାପା । ଖମସ୍ତଙ୍କର ତ ମା ଅଛ ମୋର ନାହିଁ । ମୋ ମା କୁଆଡ଼େ ଗଲ ? ସେ ଦିନ ବୁଢ଼ୀ ଚମୋରୁଣୀ କହୁଥିଲା ସେ ମରଗଲ । ମୁଁ ତାକୁ ପଚ୍ଛରଲ ମରଗଲ କଣ ? ସେ କହିଲି ସ୍ୱର୍ଗକୁ ଗଲା । ଆଉ ଯେତେ ଯାହା ପଚ୍ଛରଲ କାଛ କହଲ ନାହିଁ, ଖାଲ କହଲ, ଆଉ ମା କେଉଁଠୁ ପାଇବୁ ? କିଏ ଦେବ ? ଦେବା ଲୋକ ଜଣେ—ଯେ ହେଉଛନ୍ତି ଭଗବାନ—ତା ପୁଣି ଅସମ୍ଭବ । ବାପା, ମୋ ମାକୁ ଫେରାଇ ଦେବାକୁ ମୁଁ ତାଙ୍କୁ କହବ । ସେ ଦେବେ ନାଇ କଣ ? ମା ତ ସ୍ୱର୍ଗକୁ ଗଲ, କାଇଁ ସେ ତ ଖଟ ଉପରେ ମାଠ ଘୋଡ଼ି ହୋଇ ଶୋଇନାଇଁ । ସେ କଣ ଏକା ଥରକେ ଶୂନ୍ୟେ ଶୂନ୍ୟେ ଉଡ଼ିଗଲ । ସୁନ୍ଦର ବାବୁ ତ ସ୍ୱର୍ଗକୁ ଗଲେ । ମୁଁ ନିଜେ ଦେଖିଛ ଯେ ସେ ମାଠ ଘୋଡ଼ି ହୋଇ ଖଟ ଉପରେ ଶୋଇଥିଲେ, ଆଉ ସେ ସ୍ୱର୍ଗକୁ ଗଲେ କେମିତ ମ ?

ରଘୁନାଥ କହଲେ, ନବୀନ, ତୁ ସେ ସବୁ ଯୋଗୀ ମହାଯୋଗୀମାନଙ୍କର ଅଜ୍ଞାତ କଥା ବୁଝିବାକୁ ଚାହୁଁ । ତା କିଏ କହ ପାରବ ? ତୁ ପିଲା ଲୋକ, ତୋର ସେ ସବୁ ଜାଣିବାରେ କଣ ଅଛ ? ଖାଇବା, ପଢ଼ିବା, ଖେଳବା ବିଷୟ ଛଡ଼ା ପିଲାମାନଙ୍କର ଅନ୍ୟ ବିଷୟ ଜାଣିବାରେ କଣ ହେବ ? ତୁ ପାଗଲ ପର ଗୁଡ଼େ ବକୁଛୁ କାହିଁକି ? ଯା ଖେଳବୁଲ କରବୁ, ସଞ୍ଜ ବୁଡ଼ିଲାଣି ।

ନବୀନ କହିଲା, ହଁ ବାପା ମୁଁ ଯିବ ଯେ, ତୁ ଆଗ କହଲୁ ମୁଁ ଯାଇ ଠାକୁରଙ୍କୁ ମୋ ମାଆକୁ ମାଗିଲେ ଭଲ ହେବ ନାହିଁ ? ସେ କଣ ଦେବେ ନାହିଁ ?

ନାଇରେ ଧନ, ଆଜି କାଲ ଯୁଗରେ ଯିଏ ସ୍ୱର୍ଗକୁ ଯାଏ ସେ ଆଉ ଫେର ଆସି ପାରେ ନାହିଁ । ମା ଯାଇଛ, ସେ ଆଉ ଫେର ଆସିବ ନାହିଁ । ସୁନ୍ଦର ବାବୁ ଯାଇଛନ୍ତି ସେ ମଧ ଫେରିବେ ନାହିଁ ।

ମୁଁ ଯଦି ମରଯାଏଁ—

ସେ ଗୁର କଣ ପାଟିରେ ଅଣୁଛୁରେ ପୁଅ । ପୁଣି ଭାବଲେ, ମନୁଷ୍ୟର ଜଞ୍ଜାଳ, ଜ୍ୱାଳା ମୃତ୍ୟୁ ସଙ୍ଗେ ଉଭେଇ ଯାଏ । ମନୁଷ୍ୟର ଦୁଃଖ କଷ୍ଟ ଏକାଥରେ ଚାଲିଯାଏ । ତଥାପି ମୃତ୍ୟୁର ନାମ କେଡ଼େ ଭୟଙ୍କର । ଶୁଣିରେ ଧରଲେ ଭୟ ହୁଏ । ଭଗବାନ ! ମାତୃହୀନ ନବୀନକୁ ଆୟୁଷ ଦିଅ । ତା ଆଗରେ ଯେପର ମୋ ଜୀବନ ଚାଲିଯାଉ ।

ନବୀନ କେତେ ଥର ମା, ମା, କହି ସାରଲାଣି । ତଥାପି ରଘୁନାଥଙ୍କର ସେଥିପ୍ରତି ନଜର ନ ଥିଲା । ଶେଷ ଥର "ଯେଉଁଠି ମା ଅଛ ତାକୁ ଦେଖିବା" ଏହି ଖଣ୍ଡ ବାକ୍ୟଟି ତାଙ୍କ ହୃଦୟରେ ଛୁରିକାଘାତ କଲା । ସଂସାରରେ ମାଠାରୁ ବଳି ମୂଲ୍ୟବାନ ଶିଶୁର କଣ ଅଛ । ଧନ ଥିଲେ ସବୁ ମୂଲ୍ୟବାନ ପଦାର୍ଥ ହାତରେ

ପଡ଼ିପାରେ; କିନ୍ତୁ ମାକୁ କିଏ କେଉଁଠୁ ଅଣି ପାରିବ ? ମାତୃ ସୁଖରୁ ନବୀନ ବଞ୍ଚିତ । ଏହି କଥା ଭାବି ରଘୁନାଥ ଦୁଃଖରେ ଅଧୀର ହୋଇ ପଡ଼ୁଥିଲେ । କରିବେ କଣ ? ସେ ସବୁ ବୃଥା କଥା ଭାବି ଲାଭ କଣ ? କୌଣସି ପ୍ରକାରେ ନବୀନକୁ ବୁଝାଇ ତାକୁ ସାନ୍ତ୍ୱନା ଦେବା ଉଚିତ । ସେ ଯଦି ଦ୍ୱିତୀୟ ସ୍ତ୍ରୀଟିଏ ଗ୍ରହଣ କରନ୍ତି ନବୀନ ତାଙ୍କୁ ପାଇଲେ ନିଜର ମା ବୋଲି ମନେ କରି କଥାକରେ ଭୁଲିଯାଇ ପାରେ । ଏହି ଆଶା ତାଙ୍କ ମନ ମଧ୍ୟରେ ଉଦିତ ହେଲା । କିନ୍ତୁ ସଂସାରର ଢଙ୍ଗ ଦେଖି, ସାବତ ମାମାନଙ୍କର ବ୍ୟବହାର ଦେଖି ପୁଣି କାହିଁକି ମନ ମାନିଲା ନାହିଁ ।

ପ୍ରଧାନ କଥା ହେଲା ନବୀନର ମନ ପରିବର୍ତ୍ତନ । ଏକମାତ୍ର ସନ୍ତାନ ନିମନ୍ତେ ଯାହା କରିବା କର୍ତ୍ତବ୍ୟ ଏବଂ ସମ୍ଭବପର, କରିବା ଉଚିତ । ଯଦି ଅଗ ମା ନବୀନର ମନରେ ଥାଏ ତେବେ ସେ ତ ନୂତନକୁ ଆଦରିବ ନାହିଁ । ନବୀନର ମନ ଏବଂ ସ୍ମରଣ ଶକ୍ତି ବଡ଼ି ନେବାକୁ ରଘୁନାଥ ପଚାରିଲେ, ନବି, ତୋ ମା କେମିତିକା ତୋ ମନେ ଅଛି ପରା କହିଲୁ ।

ପ୍ରାତଃ କାଳ ପୂର୍ବରୁ ଅଥବା ସନ୍ଧ୍ୟାର ଠିକ୍ ପରେ ଦୂରାଗତ ବ୍ୟକ୍ତିର ରୂପ ଯେପରି ପ୍ରତୀୟମାନ ହୁଏ, ସୂର୍ଯ୍ୟ ବାଦଲାବୃତ ଥିଲାବେଳେ ଛାୟା ଯେପରି ଦେଖାଯାଏ ସେହିପରି ନବୀନର ମନରେ ସମୟେ ସମୟେ ତାର ଜନନୀର ରୂପର ଛାୟାପାତ ହୁଏ । ସେ ଛାୟା କିପରି ତାହା ସେ ନିଜେ କହିପାରେ ନାହିଁ । ପିତାଙ୍କର ପ୍ରଶ୍ନ ଶୁଣି ନବୀନ କହିଲା, ମୋର ମନେ ନାହିଁ ।

ରଘୁନାଥ କିଛି ସମୟ ନୀରବ ରହି ମନେ ମନେ କଣ ଭାବିବାକୁ ଲାଗିଲେ । ଶେଷରେ ଗୋଟିଏ ବୁଦ୍ଧି ପାଞ୍ଚି କହିଲେ, ନବି, ତୋର କିଛି ଭାବିବା ଦରକାର ନାହିଁ । ଯଦି ତୁ ତୋ ମା କୁ ଦେଖିବାକୁ ଏତେ ବ୍ୟସ୍ତ ତେବେ କିଛି ଦିନ ଅପେକ୍ଷା କର । ଆମେ ତାଙ୍କୁ ଅଣିବାକୁ ଚେଷ୍ଟା କରିବା ।

ନବୀନ ବାଧା ଦେଇ କହିଲା, କେଉଁଠୁ ଅଣିବୁ, ବାପା ! ତୁ କଣ ସ୍ୱର୍ଗକୁ ଯିବୁ ? ମୋତେ ସାଙ୍ଗରେ ନେବୁ ନାହିଁ ? ଯେ ସ୍ୱର୍ଗକୁ ଯାଏ ସେ ପରା ଆଉ ଫେରେ ନାହିଁ ? ତୁ ତେବେ ଅଣିବୁ କେମିତି ? ମୋ ମା ପରା ସ୍ୱର୍ଗରେ ଅଛି ?

ରଘୁନାଥ କଣ ଉତ୍ତର ଦେବେ ଭାବିବାକୁ ଲାଗିଲେ । ପରେ କହିଲେ, ତୁ ସେଥିରୁ କ'ଣ ପାଇବୁ ? ତୁ ତୋର ମାଆକୁ ପାଇଲେ ଗଲା । ମୁଁ କେମିତି ଅଣିବି ତୋତେ କାହିଁକି କହିବି ।

ରଘୁନାଥ ଭାବି ନ ଥିଲେ ଯେ ନବୀନ ତାଙ୍କ ଉତ୍ତରରେ ସନ୍ତୁଷ୍ଟ ହେବ ।

ତାଙ୍କ କପାଳ ଭଲ । ନବୀନ ଅନ୍ୟମନସ୍କ ଥିଲା । ନହୁବା ରଘୁନାଥଙ୍କୁ ଯୁଗୀ ବଜର ବଜର କରାଇଥାନ୍ତା । ସେତକ କହି ରଘୁନାଥ ପୋଥି ପତର ବାନ୍ଧି ଘର ଭିତରକୁ ଖୁଲିଗଲେ । ନବୀନ ଦୁଇ ତିନିଟା ପ୍ରଶ୍ନ ପଚାରି ମଧ୍ୟ ଉତ୍ତର ନ ପାଇବାରୁ ପଛକୁ ଅନାଇ ଦେଖିଲା ତାର ବାପା ନାହାନ୍ତି ।

ନବୀନ ଏଣେ ତେଣେ ଅନାଇ କେଉଁ ସ୍ଥାନକୁ ଯିବାକୁ ଉଦ୍ୟତ ହେଉଥିଲା, ଏତିକିବେଳେ କିଏ ଜଣେ ଆସି ପଛରୁ ତାର ଆଖି ବୁଜି ଧରିଲା । ଆଖି ଛାଡ଼ିଦେଇ ରାମ କହିଲା, ନବ, ତତେ ମୁଁ କେତେ ଜାଗାରୁ ଖୋଜି ଆଇଲିଣି । ତୁ କୋଉଠି ଥିଲୁ କି ? ଆ ଯିବା, ଆଜି ଯୁବରାଜଙ୍କର ଜନ୍ମ ଦିନ। ସେ ନହର ପାଖରେ କେତେ ଲୋକ ଜମା ହୋଇଛନ୍ତି । ମିଠେଇ ବଣ୍ଟା ହେଉଛି, ଚାଲ୍, ସେଠିକି ଯିବା । ଯା, ସଫା ଲୁଗା ପିନ୍ଧି ଆସିବୁ । ଦେଖ୍, ମୋତେ ମା କିମିତି ପାଠ ପିନ୍ଧେଇ ଦେଇଛି । ହରି ଯାଇଛି, ପ୍ରସନ୍ନ ଯାଇଛି, ପରମାନନ୍ଦ ଯାଇଛି, ଆଉରି ଅନେକ ପିଲା ଯାଇଛନ୍ତି । ଆରେ ଜଲ୍ଦି ଯାଇ ପିନ୍ଧି ଆସେ, ନ ହେଲେ ମିଠେଇ ସରିଯିବ ଯେ ।

ନବୀନ କହିଲା, ତାଙ୍କର ଜନମ ଦିନ ହୋଇଛି, ନା ? ମିଠେଇ କାହିଁକି ବାଣ୍ଟୁଛନ୍ତି ? ଜନମ ଦିନ ହେଲେ କଣ ମିଠେଇ ବାଣ୍ଟନ୍ତି ?

ରାମ ବିରକ୍ତ ହୋଇ ମୁଖ ବିକୃତ କରି କହିଲା, ଧେତ୍ ଓଲୁ । ମୁଁ କେମିତି ଜାଣିଲି ? ତୁ ଯିବୁ ଯଦି ଆ, ନଇଲେ ମୁଁ ଯାଉଛି । କିଛି ଦୂର ଦୌଡ଼ିଯାଇ ପୁଣି ଫେରିଆସି କହିଲା, ଆପଣେ ବି ଯାଇଛନ୍ତି । ସେ ସେଠି ଅଛନ୍ତି । ତୁ ଚାଲିଲୁ, ତାଙ୍କୁ ପଚାରିବୁ ଜନମ ଦିନରେ କାହିଁକି ମିଠେଇ ବାଣ୍ଟନ୍ତି । ସେ ତ ତତେ ସବୁ କଥା କହନ୍ତି । ଏ କଥା ମଧ୍ୟ କହିବେ । ଜଲ୍ଦି ଆ, ଜଲ୍ଦି ଆ । ନଇଲେ ସବୁ ସରିଯିବ ।

ନବୀନ ରାମ ସଙ୍ଗେ ଗଲା !

ରାଜ ଭବନର ଅନତି ଦୂରରେ ସଭା ମଣ୍ଡପ । ବିସ୍ତୃତ ପଡ଼ିଆର ମଧ୍ୟସ୍ଥାନ ଅଧିକାର କରିଛି । ପଡ଼ିଆ ଚାରିପାଖେ ନାନା ଜାତିର ଆମ୍ବ ଗଛ । ବୁଢ଼ାରଜା ନିଜ ଅମଳରେ ସେ ସବୁ ଲଗାଇଛନ୍ତି । ତାଙ୍କ ପୁଅ ଭୋଗ କରିବେ । ସଭା ମଣ୍ଡପର ଚାରିକୋଣରୁ ଚାରିଗୋଟି ରାସ୍ତା ସହର ଭିତରକୁ ପଡ଼ିଛି । ରାସ୍ତାର ଦୁଇ ପାଖେ ଦେବଦାରୁ ଗଛମାଳ । ପାଖ ପାଖ ହୋଇ ଲଗା ହୋଇଛି । ଦୂରରୁ ଦେଖିଲେ ଦର୍ଶକଙ୍କୁ ସବୁଜ ବର୍ଣ୍ଣର ପ୍ରାଚୀର ପରି ପ୍ରତୀୟମାନ ହୁଏ ।

ସନ୍ଧ୍ୟା । କୃଷ୍ଣ ରାତି । ପ୍ରକୃତି ହାସ୍ୟମୟୀ । ସଭା ମଣ୍ଡପ ସମ୍ମୁଖସ୍ଥ ରାଜ ପଥରୁ ଅନତି ଦୂରରେ ଉଭୟ ପାର୍ଶ୍ୱରେ ଅସ୍ଥିକଙ୍କାଳସାର ନରନାରୀ ସମବେତ । କେହି ଜନ୍ମାନ୍ଧ, କେହି ଖଞ୍ଜ, କେହି ବା ଏ ସମସ୍ତର ଅଧିକାରୀ ।

ସମବେତ ହୋଇ ଏକ ସ୍ଥାନରେ, ଗୋଟିଏ କ୍ଷୁଦ୍ର ପ୍ରାଚୀର ପରି ସଭା ଭବନ ଆଡ଼କୁ ଅନାଇ ରହିଛନ୍ତି । ନିକଟରେ ବାରବର୍ଷିଆ ଗଛ । ଲୋକେ ବେଳେବେଳେ ଆସି ସେହି ଗଛ ପତ୍ରକୁ ସଦ୍‌ବ୍ୟବହାର କରିଥାଆନ୍ତି । ଅଗରୁ କଣ୍ଟା ଭାଙ୍ଗି ପତ୍ରର ଉପରେ ନାମ ଲେଖି ଯାଆନ୍ତି । ସେହି ସବୁ ଗଛରେ ତୋପ-ବାଜି ପ୍ରଭୃତି କେତେକ ବାଣ ବନ୍ଧା ହୋଇଛି । ବାଣୁଆ ଭ୍ରମର ଦାସେ ବୁଦା ପାଖରେ ପହୁଣ୍ଡ ପକାଇ ଠହଲୁ ଅଛନ୍ତି । ସନ୍ଧ୍ୟା ହେଲେ ସୁଦ୍ଧା ଦେବଦାରୁ ଗଛ-ମାନଙ୍କରେ ବନ୍ଧା ହୋଇଥିବା ଆଲୋକମାଳା ଲାଗିନାହିଁ । କେତେଜଣ କର୍ମଚାରୀଙ୍କ ଛଡ଼ା ସଭା ଭବନରେ ଆଉ କାହାରି ଦେଖାନାହିଁ । ସଭାଭବନର ଚାରିପାଖେ ସାଧାରଣ ନାଗରିକ ଏବଂ ପଲ୍ଲୀବାସୀଙ୍କର ଉପବେଶନ ପାଇଁ ଛାମୁଣ୍ଡିଆ ବନ୍ଧା-ହୋଇଛି । ତଳେ ଦରି ପରା ହୋଇଛି ।

ଆଲୋକ ଜଳି ଉଠିଲା । ଆକାଶରେ ତାରକାରାଜି ଅବଲୋକନ କରି ଦୀପାବଳୀ ଲଜ୍ଜିତ ହୋଇ ନିଜର ସ୍ୱଳ୍ପାଲୋକ ଏଣେ ତେଣେ ବିଛୁଡ଼ି ପକାଇଲେ । ତିନିଗୋଟି ତୋପବାଜି ଘଡ଼ଘଡ଼ି ଗର୍ଜ୍ଜନ କରି ଜନମାନଙ୍କୁ ଜଣାଇଦେଲା ଯେ ଶୁଭ ରଜନୀର କର୍ମ ଆରମ୍ଭ ହେବ । ନିକଟସ୍ଥ ପାହାଡ଼ ଉପରେ ହିଂସ୍ରଜନ୍ତୁ ଭୟରେ ଗହ୍ୱରରେ ଆଶ୍ରୟ ଗ୍ରହଣ କଲେ । କେତେକ ମର୍କଟ ଦାନ୍ତ କଡ଼ମଡ଼ କରି ଏ ଗଛରୁ ସେ ଗଛ, ସେ ଗଛରୁ ଏ ଗଛକୁ ଲମ୍ଫ ପ୍ରଦାନ କଲେ ।

ଆଷାଢ଼ ମାସର ବର୍ଷା ଜଳ ପରି ଆନନ୍ଦ ଉତ୍ସାହମତ୍ତ ନାଗରିକ ଏବଂ ପଲ୍ଲୀବାସୀମାନେ ସଭା ମଣ୍ଡପ ଆଡ଼କୁ ଧାଇଁ ଆସିଲେ । ସଭା ମଣ୍ଡପର ଛାମୁଣ୍ଡିଆ ଲୋକାରଣ୍ୟ ହୋଇଗଲା । ଜଳ ଆଧିକ୍ୟ ନଦୀ ମାଡ଼ିଗଲା ପରି ଲୋକାଧିକ୍ୟରୁ ଛାମୁଣ୍ଡିଆ ଲଙ୍ଘନ କରି ଲୋକେ ବିସ୍ତୃତ ପଡ଼ିଆର କେତେକ ଅଂଶ ଅଧିକାର କଲେ । କେତେ ଯାଇ ବାର ବରଷିଆ ଗଛ ପାଖରେ ତୋପବାଜି କିପରି ଫୁଟେ, ରସ କଦମ୍ବ କିପରି ସୁନ୍ଦର ଦିଶେ, ଘଡ଼ିବାଣ କିପରି ଗଛ ପରି ଉପରକୁ ଉଠେ ସେଇଯା ଦେଖିବାରେ ଲାଗିଲେ ।

ସେତେବେଳ ଯାଏ ରାଜବଂଶରୁ କେହି ଉପସ୍ଥିତ ନ ଥିଲେ । ରାଜ୍ୟର ବଡ଼ ବଡ଼ ଜମିଦାର ମଧ୍ୟରୁ କେହି କେହି ଆସି ନିଜ ନିଜର ସ୍ଥାନ ଅଧିକାର କରି ସାରିଲେଣି ।

ନବୀନର ପିତା ରଘୁନାଥ ମିଶ୍ର ସେହି ସବୁ ଆସନ ମଧ୍ୟରୁ ଗୋଟିକରେ ଉପବେଶନ କଲେ ।

ମହାରାଜ ପ୍ରଶାନ୍ତହୃଦୟ ସିଂହଙ୍କର ବୟସ ତେପନ । ବୃଦ୍ଧ ବୟସରେ ତାଙ୍କର ଏକମାତ୍ର ପୁତ୍ର ବିଶାଳହୃଦୟ ସିଂହଙ୍କର ଆଜି ପଞ୍ଚମ ବାର୍ଷିକ ଜନ୍ମୋତ୍ସବ । ପୁରବାସୀଗଣଙ୍କ ଗହଣରେ ଦିବା ସମୟରେ ସମସ୍ତ ବିଧେୟ କାର୍ଯ୍ୟ ଶେଷ ହୋଇଥିଲା । ରାଜପୁତ୍ର ନବ-ବସନ-ଭୂଷଣରେ ପରିହିତ ହୋଇ ରାଣୀଙ୍କ ଚକ୍ଷୁର ଆନନ୍ଦ ବର୍ଦ୍ଧନ କରୁଥିଲେ । ବାଳକ ସୁଲଭ ଖେଳବସର କଥା କହି ଯୁବରାଜ ରାଣୀଙ୍କଠାରୁ ଚୁମ୍ବନ ପାଉଥିଲେ । ବାତାବରଣ ଚେଟୀମାନଙ୍କର ହାସ୍ୟରୋଳରେ ପୂରି ଉଠୁଥିଲା ।

ଏଣେ ମହାରାଜ ସ୍ୱୟଂ ସଭାର ଆୟୋଜନ ପାଇଁ ଆଦେଶ ଦେଉଥିଲେ । ସନ୍ଧ୍ୟା ସମୟ ଉପସ୍ଥିତ ହେବାରୁ ରାଜା, ରାଣୀ, ଯୁବରାଜ, ପୁରୋହିତ ଓ ଅନ୍ୟାନ୍ୟ ରାଜ କର୍ମଚାରୀ ଏବଂ ବିଶିଷ୍ଟ ଲୋକବୃନ୍ଦ ସଜ୍ଜିତ ହୋଇ ସନ୍ଧ୍ୟାପରେ ସଭା ଭବନ ମଣ୍ଡନ କଲେ । ବନ୍ଦୀମାନଙ୍କର ମୁକ୍ତି, ଦରିଦ୍ର ଭିକ୍ଷୁକବୃନ୍ଦଙ୍କୁ ବସ୍ତ୍ର ଦାନ, ନାଗରିକ ଏବଂ ପଲ୍ଲୀବାସୀଙ୍କୁ ମିଷ୍ଟାନ୍ନ ବଣ୍ଟନ ପରେ ସଭା ମଣ୍ଡପ ପ୍ରାୟ ଶୂନ୍ୟ ହୋଇଗଲା ଲୋକେ ମୁଖ ରବରେ ସଭାଗୃହକୁ କମ୍ପାଇ ଦେଲେ । କିଏ କାହାର ଭାଇକୁ, କିଏ କାହାର ବାପ, ପୁଅଙ୍କୁ ନାମ ଧରି ଉଚ୍ଚ ସ୍ୱରରେ ଡାକୁ ଡାକୁ ଲୋକ ଗହଳୀ ଭେଦ କରି ଏଣେତେଣେ ଧାଇଁଲେ; କିଏ ନିଜର ଶଳାକୁ ଗାଆଁରୁ ନିମନ୍ତ୍ରଣ କରି ଆଣିଥିଲା, ଏବେ ଅଗଣିତ ଲୋକ ଭିତରେ ହଜି ଯାଇଛି, ସେଥି ନିମନ୍ତେ 'ମଧୁଆ' 'ମଧୁଆ' ରଡ଼ି ଛାଡ଼ି ଏଣେତେଣେ ହେଉଛି । ଶ୍ୟାଳକ ମହୋଦୟ ଜଣେ 'ବଶି ଭାଇ' 'ବଶି ଭାଇ' ବୋଲି ଯାକୁ ତାକୁ ପଚାରିବା ବେଳେ ନିଜ ଭଣୋଇର ଚେହେରା ବର୍ଣ୍ଣନା କରୁଛି । କିଏ ଶୁଣୁଛି ତ କିଏ ନାହିଁ । ଜଣେ କେତେ ସିପାହୀ ଶାନ୍ତିରକ୍ଷା କରିବା ପାଇଁ 'ସେ ଯେଣୁ ଅଟନ୍ତି ଶିବଙ୍କର ସାପ, ଗରୁଡ଼ ଉପରେ ଦେଖାନ୍ତି ପ୍ରତାପ' ଆଖ୍ୟାର ସତ୍ୟତା ପ୍ରମାଣ କରୁଛନ୍ତି । ଦୋଷୀ କି ନିର୍ଦ୍ଦୋଷ କିଛି ନ ମାନି ଯା ଉପରେ ପାହାରେ, ତା ଉପରେ ପାହାରେ ପକାଇ ଚୁପ୍ ଚୁପ୍ ବୋଲି ଘୋର ଗର୍ଜନ କରୁଅଛନ୍ତି । ତାଙ୍କଦ୍ୱାରା ଶାନ୍ତି ରକ୍ଷା ପରିବର୍ତ୍ତେ ଶାନ୍ତି ଭଙ୍ଗହିଁ ହେଉଛି ।

କିଛି ସମୟ ପରେ ଗୋଳମାଳ ଭାଙ୍ଗିଗଲା—ଯେପରି ମଜା ସରିଗଲେ ଶାପୁଣା । ଅଧିକାଂଶ ଲୋକ ସିଏ ଯାଆନ୍ତେ ଚାଲିଗଲେଣି । ବାକୀ ଯେତେ ଥିଲେ ସେମାନେ ନାମ୍ବୁଡ଼ିଆ ଭିତର ବନ୍ଲେଇ ଗଲେ ନାହିଁ । ଅବଧାନେ କିନ୍ତୁ ଗୋଟିଏ ଚଉପଟ ଟେକା ପକାଇ ଛାତ୍ରଗଣ ବେଷ୍ଟିତ ହୋଇ ଝୁମୁଡ଼ିଆର ସମ୍ମୁଖ ସ୍ଥାନ ଅଧିକାର କରିଥିଲେ ।

ଗୋଳମାଳ ଶେଷ ହେବା ପରେ ମହାରାଜ ନିଜର ଅର୍ଦ୍ଧ ଶୁକ୍ଳ ଶ୍ମଶ୍ରୁ ପୂର୍ଣ କରି ସଭା ଗୃହର ଗୃହଅଡ଼କୁ ଅନାଇଲେ । ସ୍ୱର୍ଣ୍ଣମୟ ସିଂହାସନର ବାମ ପାର୍ଶ୍ୱସ୍ଥ ସ୍ୱର୍ଣ୍ଣ-ସିଂହର ମସ୍ତକରେ ନିଜର ବାମ ହସ୍ତ ସଞ୍ଚାଳନ କରି ମନ୍ଦ ହାସ୍ୟ କରୁ କରୁ ମନ୍ତ୍ରୀ ମହୋଦୟଙ୍କୁ ମଧୁର କଣ୍ଠରେ କହିଲେ, 'ମନ୍ତ୍ରୀ ପ୍ରବର !'

ମନ୍ତ୍ରୀ ବଳରାମ ତ୍ରିପାଠୀ ରାଜାଙ୍କର ସମ ବୟସ୍କ । ସେ ଜଣେ ସୁଚତୁର, କାର୍ଯ୍ୟଦକ୍ଷ ନିଷ୍ଠାପର ବ୍ରାହ୍ମଣ । ରାଜାଙ୍କର ବାଲ୍ୟସଙ୍ଗୀ । ପ୍ରତ୍ୟେକ ବିଷୟରେ, ତାହା ଘରୋଇ କିମ୍ବା ରାଜକାର୍ଯ୍ୟ ସମ୍ବନ୍ଧୀୟ ଯାହା ହେଉନା କାହିଁକି ରାଜା ମନ୍ତ୍ରୀଙ୍କୁ କିମ୍ବା ମନ୍ତ୍ରୀ ରାଜାଙ୍କୁ ନ ପଚାରି ହଠାତ୍ କରନ୍ତି ନାହିଁ ।

ରାଜା ମନ୍ତ୍ରୀଙ୍କ ଆଡ଼କୁ ଅନାଇ 'ମନ୍ତ୍ରୀ ପ୍ରବର' ଉଚ୍ଚାରଣ କରୁ କରୁ ବୃଦ୍ଧ ମନ୍ତ୍ରୀ ରାଜାଙ୍କ ସମ୍ମୁଖକୁ ଆସି ହଜୁର୍ ବୋଲି କହି ଦକ୍ଷିଣ ହସ୍ତରେ ଧରିଥିବା ତାଳପତ୍ର ପୋଥିକୁ ବାମ ହସ୍ତରେ ଲଗାଇ ଟିକିଏ ନଇଁପଡ଼ି ଜୁହାର କଲେ ଏବଂ ଗୋଟିଏ କଡ଼କୁ ପାଖେଇଗଲେ । ମହାରାଜ ଆରମ୍ଭ କଲେ, "ଯୁବରାଜଙ୍କ ପଞ୍ଚମ ବାର୍ଷିକ ଜନ୍ମୋତ୍ସବ ନିମନ୍ତେ ରାଜ୍ୟର ବିଶିଷ୍ଟ ଲୋକଙ୍କ ମଧ୍ୟରୁ କେହି 'କିଛି ଉପହାର ଦେଇଛନ୍ତି କି ? ଯଦି ଦେଇଛନ୍ତି, ସେମାନେ କିଏ ଆମ୍ଭେ ଜାଣିବାକୁ ଚାହୁଁ ।"

ରାଜ୍ୟର ପ୍ରଥାନୁଯାୟୀ ପୁଣ୍ୟ ପର୍ବମାନଙ୍କରେ ଇଚ୍ଛାନୁଯାୟୀ ଧନୀ ଏବଂ ବିଶିଷ୍ଟ ପ୍ରଜାମାନେ କିଛି କିଛି ଧନ ରାଜାଙ୍କୁ ପ୍ରଦାନ କରିଥାଆନ୍ତି । ସେ ଧନ ରାଜା ନିଜର ଘରୋଇ ଖର୍ଚ୍ଚରେ ନ ଲଗାଇ ସର୍ବସାଧାରଣଙ୍କ ମଙ୍ଗଳ ପାଇଁ ତାହା ବିନିଯୋଜିତ କରନ୍ତି । ଗତ ଚାରିବର୍ଷ ନିମନ୍ତେ ଯୁବରାଜାଙ୍କର ବାର୍ଷିକ ଜନ୍ମୋତ୍ସବରେ କେହି କିଛି ଉପହାର ଦେଇ ନ ଥିଲେ । ଏହାର ବିଶେଷ କାରଣ ଏହି ଯେ ସ୍ୱୟଂ ଶ୍ରୀ ହଜୁର ବାରଣ କରି ଦେଇଥିଲେ, ପ୍ରତି ବର୍ଷ ସାମାନ୍ୟ ଧନ ଦେବା ଦ୍ୱାରା କୌଣସି ମହତ୍ କାର୍ଯ୍ୟ ସମ୍ପାଦିତ ହୋଇ ନ ପାରେ। ତେଣୁ ଯାହାର କିଛି ଦେବାର ଇଚ୍ଛା ସେ ପଞ୍ଚମ ବର୍ଷରେ ଶକ୍ତି ମୁତାବକ ଉପହାର ଖଜଣା ଖାନାରେ ଅଥବା ମନ୍ତ୍ରୀଙ୍କ ହାତରେ ଦାଖଲ କରୁ । ପାଞ୍ଚ ବର୍ଷ ଶେଷରେ ତାହା ହିସାବ ହୋଇ କୌଣସି ଜନହିତକର କାର୍ଯ୍ୟରେ ଖର୍ଚ୍ଚ କରାଯିବ । ସେହି କାର୍ଯ୍ୟଟି ରାଜା, ରାଣୀ କିମ୍ବା ମନ୍ତ୍ରୀଙ୍କ ଦ୍ୱାରା ନିର୍ବାଚିତ ହେବ ନାହିଁ । ପାଞ୍ଚବର୍ଷ ଶେଷରେ ତାହା ସଭା ମଣ୍ଡପ ନିକଟରେ ଉପସ୍ଥିତ ଭଦ୍ର ଲୋକଙ୍କ ମତାନୁଯାୟୀ ନିର୍ବାଚିତ ହେବ । ତାହାହେଲେ ଧନ ଯେ ଉପଯୁକ୍ତ ପନ୍ଥାରେ ଖର୍ଚ୍ଚ ହେଉଛି ଏଥିରେ କାହାର ସନ୍ଦେହ ରହିବ ନାହିଁ । କେହି ମଧ୍ୟ ପଛରେ ଆମର ନିନ୍ଦା କରି ପାରିବେ ନାହିଁ । ମନ୍ତ୍ରୀ ଏହା କହି ସାରିବା ପରେ ତାଳ ପତ୍ର ପୋଥି ଖଣ୍ଡିକ ଫିଟାଇଲେ । ନିକଟସ୍ଥ ଅଲୋକ ନିକଟକୁ ଧୀର ପଦରେ ଦୁହିଁ ଆସି ଚକ୍ଷୁ କୁଞ୍ଚିତ କରି ଦତ୍ତ ଉପହାରର ପରିମାଣ ଏବଂ ଦାତାଙ୍କର ନାମ ଧୀରେ ଧୀରେ

ପାଠକଲେ । ମନ୍ତ୍ରୀଙ୍କର ମୁଖକୁ ସମସ୍ତେ କିଛି ସମୟ ପର୍ଯ୍ୟନ୍ତ ଚାହିଁ ରହିଲେ । ପଠନ୍‌ କାର୍ଯ୍ୟ ଶେଷ କରି ସେ କହିଲେ, ସର୍ବ ମୋଟ ସାତ ସହସ୍ର ପାଞ୍ଚଶତ ବତିଶ ଟଙ୍କା ଜମା ହୋଇଛି ।

ମହାରାଜ କିଛି ସମୟ ଭାବି କହିଲେ, ଲୋକମାନଙ୍କୁ ଜଣାଇଦିଆଯାଉ ଯେ ମହାରାଜ ଯୁବରାଜଙ୍କର ନାମରେ ଦୁଇ ସହସ୍ର ଚାରିଶତ ଅଠଷଠି ରୌପ୍ୟ ମୁଦ୍ରା ପାଣ୍ଠିକୁ ଦାନ କରି ପାଣ୍ଠିର ମୋଟ ଧନ ଦଶସହସ୍ର ମୁଦ୍ରା କରିଅଛନ୍ତି । ବର୍ତ୍ତମାନ ସାଧାରଣଙ୍କ ଇଚ୍ଛାନୁସାରେ ଧନ ଶୁଭ କାର୍ଯ୍ୟରେ ବ୍ୟୟିତ ହେବ । ତାହାର ମୀମାଂସା କରାଯାଉ । ଆମ୍ଭର ଏହି ବିଷୟରେ କଣ ଇଚ୍ଛା ମନ୍ତ୍ରୀ ମହାଶୟ, ଏହି ସ୍ଥଳରେ ପ୍ରକାଶ କରନ୍ତୁ !

ମନ୍ତ୍ରୀ ରାଜାଙ୍କର ଇଚ୍ଛା ପ୍ରକାଶ କରିବା ପୂର୍ବରୁ ହାତ ଯୋଡ଼ି ବିନୀତ ଭାବରେ ପ୍ରଶ୍ନ କଲେ, ଶ୍ରୀଛାମୁଙ୍କ ସଦାନୁଗତ ଭୃତ୍ୟ ଏହି ବୃଦ୍ଧ ମନ୍ତ୍ରୀ ଶ୍ରୀଛାମୁଙ୍କ ଅନ୍ନରେ ପ୍ରତିପାଳିତ । ସେ ଗଭୀର କୃତଜ୍ଞତାର ଚିହ୍ନ ସ୍ୱରୂପ ପ୍ରଭୁଦତ୍ତ ଧନରୁ କିଛି ପାଣ୍ଠିକୁ ଦାନ କରିବାକୁ ଅନୁମତି ପାଇ ପାରେ କି ?

ଶ୍ରୀ ଛାମୁ ଉତ୍ତର ଦେଲେ, ଯୁବରାଜ କଣ ତୁମର କେହି ନୁହନ୍ତି । ତୁମେ କଣ ଆମର ପ୍ରଜା ନୁହଁ । ବିନା ଆପତ୍ତିରେ ଦତ୍ତ ଉପହାର ଗ୍ରହଣ କରାଯିବ । ପୁଣି ଧନ ପରି ପଦାର୍ଥକୁ ଜଣେ ଦେଲେ ନେବାକୁ କିଏ କାହିଁକି ଅମଙ୍ଗ ହେବ ।

ଶ୍ରୀଛାମୁଙ୍କ ଚଉପାଖରେ ଛଅ ସାତ ଜଣ ଭିତରିଆ ଠିଆ ହୋଇଥିଲେ । ଭିତରିଆଙ୍କର ଜାତକରେ ଲେଖା, ମହାରାଜ ଯାହା କହିବେ, ସେଥିରେ ସେମାନେ 'ଡଠୋ' ମାରିବେ । ନିଜର ପ୍ରକୃତି କିଏ କେବେ ଛାଡ଼େ ନାହିଁ । ରାଜା ଯଦି କଳାକୁ ଧଳା କହିବେ ତେବେ 'ହଁ', ପାଣିକୁ ନିଆଁ ବୋଲି କହିଲେ 'ହଁ', ଭିତରିଆଙ୍କର ବାପାମାନଙ୍କୁ ଭୂତ କହିଲେ 'ହଁ' ମାରିବେ, କିନ୍ତୁ ପ୍ରଶାନ୍ତ-ହୃଦୟ ସିଂହ ଏ ସବୁକୁ ଆଦୌ ଭଲ ପାଆନ୍ତି ନାହିଁ । ସେ ଚାହାନ୍ତି ସାଫ୍ ସାଫ୍ କଥା । ସେ ଅନ୍ୟାନ୍ୟ ରାଜାଙ୍କ ପରି ଚାହାନ୍ତି ନାହିଁ ଯେ ଲୋକେ ସେମାନଙ୍କର ଇଚ୍ଛା ବିରୁଦ୍ଧରେ ବାଧ୍ୟ ହୋଇ ତାଙ୍କ କଥାରେ ହଁ ମାରନ୍ତୁ ।

ରାଜାଙ୍କର କଥା ଶେଷ ନ ହେଉଣୁ ଦୁଇ ତିନି ଜଣ ଭିତରିଆ ଏକା ସ୍ୱରରେ କହି ଉଠିଲେ, ହଜୁର୍, ମା ବାପ, ଠିକ୍ କହୁଛନ୍ତି ।

ମହାରାଜା ରୋଷ କଷାୟିତ ନେତ୍ରରେ ସେମାନଙ୍କ ଆଡ଼କୁ ଥରେ ଅନାଇବାରୁ ସେମାନେ ଚୁପ୍ ହୋଇଗଲେ । କିନ୍ତୁ "ଠିକ୍ କହୁଛନ୍ତି" ପଦଟା ଲୋକଙ୍କ କାନରେ ମୁହୂର୍ତ୍ତିକ ପାଇଁ ଲାଗି ରହିଲା । ନଦୀ ଗର୍ଭକୁ ଖଣ୍ଡିଏ ଲୋଷ୍ଟ୍ର ନିକ୍ଷେପ କଲେ, ଯେପରି ତାହା ପାଣିରେ ପଡ଼ିଲା ପରେ ପାଣି ଟିକିଏ ଅସ୍ଥିର

ହୋଇଯାଏ, କିନ୍ତୁ କିଛି ସମୟ ପରେ ସେ ଅସ୍ଥିରତା ଲୋପ ପାଇଯାଏ; କେବଳ ଛୋଟ ଛୋଟ ଲହରୀଗୁଡ଼ିକ କୂଳ ଆଡ଼କୁ ଧାଇଁଥାଏ । ଠିକ୍ ତାହାରି ପରେ ଯଦି ଖଣ୍ଡିଏ ବଡ଼ ପଥରକୁ ଜଳ ମଧ୍ୟକୁ ନିକ୍ଷେପ କରାଯାଏ, ତେବେ ପୂର୍ବୋକ୍ତ ଲହରୀଗୁଡ଼ିକ ବଡ଼ ବଡ଼ ଲହରୀ ମାଳ ମଧ୍ୟରେ ନିଜ ସତ୍ତା ହରାଇଥାଏ । ସେହିପରି ଭିତରିଆଙ୍କ କଥା ଲୋକଙ୍କ କାନରୁ ଉଭେଇବା ପୂର୍ବରୁ ମନ୍ତ୍ରୀ ମହୋଦୟ କହିଲେ, 'ତେବେ ଏହି ଦଶ ସହସ୍ର ଧନ ସଙ୍ଗେ ମୋର ସ୍ୱଳ୍ପ ଉପହାର ଏକ ସହସ୍ର ଯୋଗ କରାଯାଉ ।

ମନ୍ତ୍ରୀଙ୍କ କଥା ଶେଷ ନ ହେଉଣୁ ସଭା ଗୃହରେ ଏକା ସାଙ୍ଗରେ ଅନେକଗୁଡ଼ିଏ ସ୍ୱର ମିଳିଗଲା । କିଏ କହିଲା ମୋର ପାଞ୍ଚଶତ ଯୋଗ କରାଯାଉ, କିଏ କହିଲା ମୋର ସାତଶହ ଯୋଗ କରାଯାଉ । ଶେଷରେ ଦେଖାଗଲା ଯେ ଧନର ପରିମାଣ ପନ୍ଦର ହଜାର ରୌପ୍ୟମୁଦ୍ରା ହୋଇଛି ।

ସ୍ୱଳ୍ପକ୍ଷଣ ନୀରବତା ପରେ ମହାରାଜ କହିଲେ, ତେବେ ମନ୍ତ୍ରୀ ସର୍ବସାଧାରଣଙ୍କ ଆଗରେ ମୋର ଇଚ୍ଛା ପ୍ରକଟ କର । ଏଥିରେ ଯଦି କାହାର ଆପତ୍ତି ଥାଏ, ସେ ଶୀଘ୍ର ଜଣାଇଲେ ଉପଯୁକ୍ତ ପରାମର୍ଶ ଅନୁଯାୟୀ କାର୍ଯ୍ୟ ଆରମ୍ଭ କରାଯିବା ପାଇଁ ବିଚାର ଦିଆଯିବ ।

ବୃଦ୍ଧ ମନ୍ତ୍ରୀ ନିଜର ଅଭ୍ୟାସ ଅନୁଯାୟୀ ହାତ ହଲାଇ କହିଲେ, ଶ୍ରୀ ଶ୍ରୀମୁଙ୍କ ଇଚ୍ଛା ସହର ନିକଟସ୍ଥ ପର୍ବତ ଉପରେ ଶିବ ମନ୍ଦିର ସ୍ଥାପନ କରାଯିବ । ଶିବଙ୍କ ପ୍ରସାଦରୁ ଯୁବରାଜଙ୍କର ଜନ୍ମ । ତେଣୁ ପର୍ବତ ଉପରେ ମନ୍ଦିର ତୋଳାଇ ଶିବଲିଙ୍ଗ ସ୍ଥାପନ କରିବା ପାଇଁ ଭାବିଛନ୍ତି । ଗଡ଼ ଭିତରେ ଶିବଙ୍କର ଉପଯୁକ୍ତ ମନ୍ଦିର ନାହିଁ । ଯୁବରାଜଙ୍କ କୀର୍ତ୍ତି ସ୍ୱରୂପ ମନ୍ଦିର ତୋଳାଯାଆନ୍ତା, ଅଥଚ ସମସ୍ତଙ୍କର ଉପକାର ହୁଅନ୍ତା । ପର୍ବତର ଉପରିଭାଗ ପରି କମନୀୟ ସ୍ଥାନ ଦେଶରେ ଦେଖିବାକୁ ବିରଳ । ନାନା ଜାତିର ବୃକ୍ଷ ଲତାରେ ସ୍ଥାନଟି ପରିପୂର୍ଣ୍ଣ । ମୁଁ ନିଜେ କେବେ ତା ଉପରକୁ ଯାଇ ନ ଥିଲେ ମଧ୍ୟ ଶୁଣି ପାରିଛି ଯେ ସେହି ପର୍ବତରେ ଗୋଟିଏ ପାହାଡ଼ିଆ ଝରଣା ଅଛି । ପୁଣି ପନ୍ଦର ହଜାର ରୌପ୍ୟ ମୁଦ୍ରାରେ ଆମ ଦେଶରେ ମନ୍ଦିର ଛଡ଼ା ଆଉ କିଛି କରାଯାଇ ନପାରେ । ଦେଶରେ ତ କେବେ ପାଣିର ଅଭାବ ପଡ଼ିନାହିଁ ତେଣୁ କୂପ କିମ୍ବା ପୋଖରୀ ଖୋଳିବାର ପ୍ରଶ୍ନ ଉଠୁନି । ସେଠାରେ ମନ୍ଦିର ତୋଳିବା ପାଇଁ ଆଉ ଗୋଟିଏ ବିଶେଷ ସୁବିଧା ହେଉଛି ପର୍ବତର ଉପରି ଭାଗରେ ଯଥେଷ୍ଟ ପଥର ରହିଛି । ତେଣୁ ନିମ୍ନଦେଶରୁ ପଥର ବୋହି ଅଯଥା ଖର୍ଚ୍ଚାନ୍ତ ହେବାର ଆଶଙ୍କା ନାହିଁ । ଏଥିରେ ମୋର ମତ ପୁଚ୍ଛିଲେ ମୁଁ କହିବି ଯେ ଏଥିରେ ମୋର ଟିକେମାତ୍ର ଆପତ୍ତି ନାହିଁ । ମୁଁ ଏହି ପ୍ରସ୍ତାବଟିକୁ ଅନ୍ତରର ସହିତ ଅନୁମୋଦନ କରେ ।

ଠିକ୍ ଏହି ସମୟରେ ଭିତରଆମାନେ ଉଚ୍ଚସ୍ୱରରେ କହି ଉଠିଲେ, ଠିକ୍ କହୁଛନ୍ତି ମନ୍ତ୍ରୀ ମହୋଦୟ, ଠିକ୍ କହୁଛନ୍ତି ।

ସମସ୍ତଙ୍କର ମତ ପଚରାଗଲା । ଉପସ୍ଥିତ ଭଦ୍ର ମଣ୍ଡଳୀ ଭାବିଲେ, ମହାରାଜ ଓ ମନ୍ତ୍ରୀ ଉଭୟେ ବୃଦ୍ଧ । ସେମାନଙ୍କର ଜ୍ଞାନଗରିମା ତୁଳନାରେ ଆମର ଜ୍ଞାନ ଅଳ୍ପ । ପୁଣି ମହାରାଜା ପ୍ରଜାଙ୍କର ମଙ୍ଗଳ ବ୍ୟତୀତ କେବେ ମନ୍ଦ ଚାହାଁନ୍ତି ନାହିଁ । ଏପରି ମହାରାଜାଙ୍କ ସାଧୁ ଉଦ୍ଦେଶ୍ୟରେ ବାଧା ଦେବା ଆମର ଅନୁଚିତ । ଏହା ଭାବି ସେମାନେ କହିଲେ ପ୍ରକୃତରେ ଉଦ୍ଦେଶ୍ୟଟି ମହତ୍ । ଆମ୍ଭେମାନେ ଏହି ଉଦ୍ଦେଶ୍ୟ ଅନୁମୋଦନ କରୁଛୁ । ଏତଦ୍ଦ୍ୱାରା ସର୍ବସାଧାରଣଙ୍କର ମଙ୍ଗଳ ହେବ । ପର୍ବତ ଉପରେ ଶିବ ମନ୍ଦିର ଠିକ୍ ମାନିବ ।

ଆଉ କେତେକ ଭାବିଲେ, ମହାରାଜଙ୍କର ଉଦ୍ଦେଶ୍ୟ ଯାହା ହେଉ, ମନ୍ତ୍ରୀ ଯାହା କହନ୍ତୁ ହରଗାଁର ଜମିଦାର, ରାମଗଡ଼ର ଜମିଦାର, ପଞ୍ଚୁରର ଗଉଁତିଆ ଯେତେବେଳେ କଥାଟାକୁ ମାନିଗଲେଣି ଆମେ ବା କେଉଁ ଲୋକ । ତା ପରେ ବଣି ବେହେରା, ଘନ ମହାନ୍ତିଙ୍କ ପରି ଲୋକେ ଯେତେବେଳେ ସ୍ୱୀକାର କରୁଛନ୍ତି ଆମେ ମଧ୍ୟ ସ୍ୱୀକାର କରିବାକୁ ବାଧ୍ୟ ତେଣୁ ଉଚ୍ଚସ୍ୱରରେ କହିଲେ, ଗଡ଼ରେ ଉପଯୁକ୍ତ ଶିବ ମନ୍ଦିର ନାହିଁ । ଶିବ ହେଉଛନ୍ତି ତିନି ପ୍ରଧାନ ଦେବଙ୍କ ମଧ୍ୟରୁ ଜଣେ । ତେଣୁ ତାଙ୍କର ମନ୍ଦିର ରହିବା ଆବଶ୍ୟକ ।

ଅନ୍ୟ ଏକପ୍ରକାର ଲୋକ ଅଛନ୍ତି, ସେମାନେ ତୃତୀୟଶ୍ରେଣୀ ଭୁକ୍ତ । ସେମାନଙ୍କ ମନରେ ନାନା ପ୍ରକାର ଭାବ ଥିଲେ ମଧ୍ୟ ସେ ସବୁ ଭାବଭଙ୍ଗୀକୁ ଲୁଚାଇ ସେମାନେ ମଧ୍ୟ କହିଲେ ଉଦ୍ଦେଶ୍ୟ ମହତ୍ । କାରଣ କେହି ଯଦି ନିଜର ଉଦ୍ଦେଶ୍ୟ ଜଣାଇବ ରାଜା ତାକୁ ଆଦରର ସହିତ ଗ୍ରହଣ କଲେ ମଧ୍ୟ ଅନ୍ୟାନ୍ୟ ରାଜଭକ୍ତ ପ୍ରଜା ହସିବେ । ଶେଷରେ "ଉଦ୍ଦେଶ୍ୟ ମହତ୍" କୋଳାହଳରେ ସଭାଗୃହ କମିଉଠିଲା ।

ରାମ ସଙ୍ଗେ ନବୀନ ଅଧବାଟରେ ନ ହେଉଣୁ ତୋପ ଫୁଟିବାର ଶବ୍ଦ ଶୁଭିଲା । ତୋପବାଜାର ଆବାଜରେ ରାମ ଚମକିପଡ଼ିଲା । ଦୁଇ ଚାରି ପାଦ ଆଗକୁ ଧାଇଁଗଲା । ନବୀନ ତାର ବନ୍ଧୁ ନିକଟରୁ ଦୂରରେ ରହିବ ନାହିଁ ସନେଇକରି ରାମ ସଙ୍ଗରେ ମିଶିଗଲା । ସଭାଗୃହ ନିକଟରେ ପହଞ୍ଚି ଦେଖିଲା, ଚାରିଆଡ଼ୁ ପଲ ପଲ ହୋଇ ଲୋକେ ସଭାଗୃହାଭିମୁଖେ ଧାଉଁଥିଲେ । ରାମ ସଭାଗୃହର ସୌନ୍ଦର୍ଯ୍ୟ ଅବଲୋକନ କଲା । ନବୀନର ସେ ଆଡ଼କୁ ଆଖି ନାହିଁ ।

ସେ ଗୃହଅଙ୍ଗନ ଅନାଇ ମନେ ମନେ ଅବଧାନଙ୍କୁ ଖୋଜିବାରେ ଲାଗିଲା । ଖୋଜି ଖୋଜି ଭିକ୍ଷୁକମାନଙ୍କ ନିକଟରେ ପହଞ୍ଚିଲା । ଦେଖିଲା ସେମାନେ ଜୀର୍ଣ୍ଣଶୀର୍ଣ୍ଣ ଶରୀର ଧାରଣ କରି ବସ୍ତାଭାଙ୍ଗରେ ଦେବଦାରୁ ବୃକ୍ଷର ତଳରେ ବସିଛନ୍ତି ।

ନବୀନ ପୂର୍ବରୁ ଏହି ଭିକ୍ଷୁକମାନଙ୍କ ବିଷୟରେ ଜାଣିଥିଲା । ଏଥିପୂର୍ବେ ଦିନେ ସେ ହୋତାଙ୍କୁ ପଚାରିଥିଲା, ଆଜ୍ଞା, ସମସ୍ତେ ତ ଅତି ଆନନ୍ଦରେ ଚାଲିଯାଉଛନ୍ତି, ଏ ଦୁଇଟି ଲୋକ ମୁହଁ ଶୁଖେଇ, ଯିଏ ଯାଉଛି ତାକୁ ହାତ ପତେଇ ମାଗୁଛନ୍ତି କାହିଁକି ? ସମସ୍ତେ ତ ଘରକୁ ଶୋଇବାକୁ ରାତିରେ ଯାଆନ୍ତି, ଏମାନେ ଏହି ରାସ୍ତାପାଖ ଗଛମୂଳର ଧୂଳି ଉପରେ କାହିଁକି ଶୋଇଥାଆନ୍ତି ? ଏ ସବୁର କାରଣ କଣ ? ସେ ଦିନ ଜଣେ ଅନ୍ଧ ଆମ ଘରକୁ ଯାଇ ବାବୁ ବାବୁ ବୋଲି ଡାକିଲା । ବାପା ପଦାକୁ ଆସି ତାକୁ ଦଇଟା ପଇସା ଦେଲା । ଆଉ ଦିନେ ଜଣେ ଆସି ବାପାକୁ ଖଣ୍ଡେ ଲୁଗା ମାଗିଲା । ସେଦିନ ବାପା ତାକୁ ଛିଣ୍ଡା ଲୁଗା ଖଣ୍ଡେ ଦେଲା । ସେମାନେ ମାଗିଲେ ଲୋକେ ଦିଅନ୍ତି କାହିଁକି ?

ହୋତାଆଜ୍ଞା ନବୀନକୁ ସ୍ନେହ କରନ୍ତି । ତାର ବିଚକ୍ଷଣ ସ୍ମରଣ ଶକ୍ତି, ବୁଦ୍ଧି ଏବଂ ପରଦୁଃଖକାତରତା ଦେଖି ସେ ଅବାକ୍ ହୋଇଯାଆନ୍ତି । ତାର ପ୍ରଶ୍ନର ଉତ୍ତର ଦେଇ ତାକୁ ସମସ୍ତ ବିଷୟ ବୁଝାଇ ଦିଅନ୍ତି ।

ସେଦିନ ସେ ପ୍ରଶ୍ନର ଉତ୍ତର ସ୍ୱରୂପ ଯାହା କହିଥିଲେ ତହିଁରେ ନବୀନର ତରଳ ମନ ଆନ୍ଦୋଳିତ ହୋଇଥିଲା । ସେ ବୁଝି ପାରିଥିଲା ଯେ ଏହି ଭିକ୍ଷୁକମାନଙ୍କର ଘର ଦ୍ୱାର କିଛି ନାହିଁ। ତାଙ୍କର ବନ୍ଧୁବାନ୍ଧବ ନାହାନ୍ତି । ଯେଉଁମାନେ ବା ଅଛନ୍ତି, ସେମାନେ ଏମାନଙ୍କୁ ଅକର୍ମଣ୍ୟ ଏବଂ ନାନାଦି ରୋଗାକ୍ରାନ୍ତ ଦେଖି ତ୍ୟାଗ କରିଅଛନ୍ତି । ଏମାନେ ପରିଶ୍ରମ କାତର ନୁହନ୍ତି; କିନ୍ତୁ ବାଧ୍ୟ ହୋଇ ହେବାକୁ ପଡ଼ୁଛି । କାରଣ ଏମାନେ ଅନ୍ଧ, କେମ୍ପା, ଲୁଳା, ଛୋଟା ଏବଂ କୁଷ୍ଠରୋଗୀ ହୋଇଥିବାରୁ କିଛି କରିପାରୁନାହାନ୍ତି । ବାଧ୍ୟହୋଇ ହାତ ପତାଇ ଯାକୁ ତାକୁ ପଇସାଏ ବା ଅଧିଲାଏ ଦାନ୍ତ ନିକୁଟିହୋଇ ଗୋଡ଼ତଳେ ପଡ଼ି ମାଗନ୍ତି । କେହି ଦେଲେ ଦିଏ, କେହି ନ ଦେଲେ ନାହିଁ, ଯାହା ପାଆନ୍ତି ସେଇଆ ଖାଆନ୍ତି । ଖରା, ବର୍ଷା, ଶୀତ ସବୁ ସହନ୍ତି । କାହାକୁ କହିବେ ? କିଏ ଅଛି ତାଙ୍କର ? ଯଦି କିଏ କେବେ ଖଣ୍ଡେ ଛିଣ୍ଡାଲୁଗା ଦେଲେ ସେଇଥିରେ ଦିନାକେତେ କଟେଇଦିଅନ୍ତି ।

ନବୀନ ପଚାରିଥିଲା, ଏମାନଙ୍କୁ କଣ କଷ୍ଟ ହେଉ ନଥିବ ? ମାଷ୍ଟ୍ରଙ୍କ ଉତ୍ତରରୁ ସେ ବୁଝିପାରିଲା ଯେ ଏମାନଙ୍କୁ ଖରା, ବର୍ଷା, ଶୀତ ସବୁ କାଟେ ।

ଶୀତଦିନେ ସାଧାରଣ ଲୋକେ ଦେହରୁ ଲୁଗା କାଢ଼ି ପାରନ୍ତି ନାହିଁ । ଥଣ୍ଡାରେ ଦାନ୍ତକୁ ଦାନ୍ତ ବାଡ଼େଇ ହୋଇଯାଏ । ଦେହ ହାତ ଥରିଉଠେ । ତଥାପି ଏମାନେ ତାହା ସହ୍ୟ କରିଥାଆନ୍ତି । ଲୋକେ ଓଳିଟାଏ ଭୋକରେ ରହିଲେ ତାଙ୍କର ପେଟ ପୋଡ଼ି ଜଳିଉଠେ । ଏମାନେ ବହୁଦିନ ଧରି ଉପାସରେ କଟାଇଥାଆନ୍ତି ।

ନବୀନ ପୁଣି ପଚାରିଥିଲା, ଏହାର କଣ କିଛି ପ୍ରତିକାର ନାହିଁ ?

ହୋତା ବୁଝେଇ କହିଥିଲେ, ପ୍ରତିକାର ଅଛି । କେହି ଧନୀ ଲୋକ ଯଦି ସେମାନଙ୍କୁ ପ୍ରତିଦିନ ଖାଇବାକୁ ଦିଏ, ପିନ୍ଧିବାକୁ ଦିଏ, ତେବେ । ଦେଶରେ କେତେଜଣ ଲୋକ ଅଛନ୍ତି ଯିଏ ଦୁଃଖୀ ଦରିଦ୍ରଙ୍କୁ ଏତେ ଦୟା ଦେଖାଇବ ? କାହାର ହୃଦୟ ଏହି ଦରିଦ୍ର ନାରାୟଣଙ୍କ ପାଇଁ ତରଳିଯାଏ ? ଦେବା ପୂର୍ବରୁ ଲୋକେ ଭାବନ୍ତି ଯାହାକୁ ଦେବେ ତାଠାରୁ ସେ କିଛି ପାଇପାରିବେ କି ନାହିଁ । ଏହି ନିଃସ୍ୱ ଭିକାରୀଙ୍କଠାରୁ ସେମାନେ କଣ ବା ପାଇବେ ଯେ ଦେବେ ? ଯିଏ ଏମାନଙ୍କର ଦୁଃଖ କଷ୍ଟ ବୁଝେ, ଯାହାର ଇଚ୍ଛା ହୁଏ କିଛି ଦେବାକୁ ସେମାନେ ହେଉଛନ୍ତି ଦରିଦ୍ର । ଧନ ବସ୍ତ୍ର ସେମାନେ କେଉଁଠୁ ପାଇବେ ଯେ ଦେବେ ? ତାକୁ ଯାହା ମିଳେ ତାହା ଦିଏ । ତାପରେ ରାଜା, ସେ ଧନୀ । ତଥାପି ଆମ ରାଜା ଦୟାଳୁ । ଦାନ ଧର୍ମ କରନ୍ତି । ପରର ଦୁଃଖରେ ନିଜେ ଦୁଃଖିତ ହୁଅନ୍ତି । ପରର କଥା ବୁଝନ୍ତି । ସେ ମନୁଷ୍ୟ । ନିଜେ ନିଜକୁ ମନୁଷ୍ୟଠାରୁ ଉପରେ ଅଛନ୍ତି ବୋଲି ଭାବନ୍ତି ନାହିଁ । ସେ ଜାଣନ୍ତି, ତାଙ୍କର ଭଣ୍ଡାର ଏହି ଦରିଦ୍ରର ଧନରେ ପୂର୍ଣ୍ଣ । ସେ ଏହି ଦୁଃଖୀ ଦରିଦ୍ରଙ୍କର ଦୁଃଖ ବୁଝିବେ । ସେ ଯଦି ନ ବୁଝନ୍ତି ବୁଝିବ କିଏ ? କିଏ ବୁଝାଇବ ? ଯଦି ସେ ଏହି ଦୁଃଖୀ ରଙ୍କିଙ୍କ ପାଇଁ ଘର ତୋଳାଇଦେବେ, ଧର୍ମଶାଳା ସ୍ଥାପନ କରିବେ ତେବେ କେଜାଣି ଏହାଙ୍କର ଦୁଃଖ କିଞ୍ଚିତ୍ ପରିମାଣରେ ହ୍ରାସ ହୁଅନ୍ତା । ରାଜା ପ୍ରଜାର ପିତା-ମାତା । ତାହାର ଏହା କର୍ତ୍ତବ୍ୟ । ଯୁବରାଜଙ୍କ ପଞ୍ଚମ ବାର୍ଷିକ ଜନ୍ମୋତ୍ସବ ପାଇଁ ଲବ୍ଧ ଧନ ଦ୍ୱାରା ମହାରାଜ ଯଦି ଅନ୍ୟ କିଛି ନ କରି ଏହି ଦୁଃଖୀ ଦରିଦ୍ରଙ୍କ ନିମନ୍ତେ ଧର୍ମଶାଳା ପ୍ରସ୍ତୁତ କରନ୍ତେ ତେବେ ତାଙ୍କର ନାମ ଦେଶ ଦେଶରେ ପଡ଼ନ୍ତା । ଉପରେ ଈଶ୍ୱର ମଧ୍ୟ ସନ୍ତୁଷ୍ଟ ହୁଅନ୍ତେ । କିନ୍ତୁ କହିବ କିଏ ?

ଆଜି ଯୁବରାଜଙ୍କର ଜନ୍ମଦିନ । ନବୀନ କିନ୍ତୁ ଏଥିରେ ଆନନ୍ଦିତ ହେଉନାହିଁ । ତାହାର ମନ ଭିନ୍ନ ଉପାଦାନରେ ଗଢ଼ା । ଦରିଦ୍ର ଭିକ୍ଷୁକଙ୍କୁ ଦେଖିନାମାତ୍ରେ ଅନେକଦିନ ପୂର୍ବେ ଶିକ୍ଷକଙ୍କଠାରୁ ଶୁଣିଥିବା କଥା ତାର ମନେପଡ଼ିଲା । ସେ ଅତି ଶୀଘ୍ର ଭିକ୍ଷୁକମାନଙ୍କ ନିକଟରୁ ଚାଲିଆସିଲା । ହୋତାଙ୍କୁ ଖୋଜିଲା । ଏଣେତେଣେ ବୁଲିଲା । ମିଠେଇ ବଣ୍ଟାହେଲା । ତାକୁ ମଧ୍ୟ ଦିଆଗଲା । ସେ ଆନନ୍ଦରେ ସେତକ ଗ୍ରହଣ କରି ଭିକ୍ଷୁକଙ୍କୁ ଦେଇଦେଲା ।

ପିତାଙ୍କର ପଛପଟେ ଆସି ଦଣ୍ଡାୟମାନ ହେଲା । ସଭାର କାର୍ଯ୍ୟ ସମାପ୍ତ ହେବାରୁ ସମସ୍ତେ ଉଦ୍ଦେଶ୍ୟ ମହତ୍ ବୋଲି ଉଚ୍ଚ ସ୍ୱରରେ କହୁଉଠିଲେ । ପିତାଙ୍କୁ ସେହି ଚିତ୍କାରରେ ଯୋଗଦେବାର ଦେଖି ନବୀନ ଟିକାଏ ଚଞ୍ଚଳ ଦେଖାଗଲା । ରଘୁନାଥ ଜାଣିନାହାନ୍ତି ଯେ ତାଙ୍କର ସ୍ନେହର ଏକମାତ୍ର ପୁଅ ଘର ଛାଡ଼ି ଏକୁଟିଆ ଆସି ତାଙ୍କ ପଛରେ ଠିଆହୋଇଛି ।

ହୋଟାଏ ସେତେବେଳକୁ ନବୀନକୁ ଦେଖି ସାରିଥିଲେ । ସେ ଏ କୋଳାହଳରେ ଯୋଗ ଦେଇ ନ ଥିଲେ । ନବୀନ ଏହା ଜାଣିପାରିଥିଲା । କିଛି ସମୟ ପରେ କୋଳାହଳ ବନ୍ଦ ହୋଇ ଯାଇଥିଲା । ସଭା ଭଙ୍ଗ କରିବାକୁ ମନ୍ତ୍ରୀ ମହାଶୟ ଆଦେଶ ଦେବାପାଇଁ ପ୍ରସ୍ତୁତ ହେଉଥିଲେ । ମହାରାଜ ସିଂହାସନ ତ୍ୟାଗ କରିବାପାଇଁ ଡାହାଣ ହାତକୁ ସ୍ୱର୍ଣ୍ଣ-ସିଂହର ମୁଣ୍ଡ ଉପରେ ସ୍ଥାପନ କରି ଉଠିଲେ । ଏହି ସମୟରେ ନବୀନ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲା ।

ନବୀନ ପଚାରିଲା, ତୋ ନା ରାଜା ?

ବାଳକର ପରିଚ୍ଛଦ ମଧ୍ୟରେ ଖଣ୍ଡିଏ ମଠା ଓ ବେକରେ ଗୁଦର ।

ସଭାଗୃହର ସମସ୍ତେ ଦେଖିଲେ ସାତ ଆଠ ବର୍ଷର ପିଲାଟିଏ ଶ୍ରୀ ଛାମୁଙ୍କ ସମ୍ମୁଖରେ ଠିଆହୋଇଛି । ସଭାର ସବୁ ଆଖି ସେହି ବାଳକ ଉପରେ ନ୍ୟସ୍ତ । ଜଣେ ସିପାହୀ ହାଁ ହାଁ କରି ଧାଇଁ ଆସୁଥିଲା । ଦେଖିଲା ଶ୍ରୀ ଛାମୁ ହସ ହସ ହୋଇ ପିଲାଟାକୁ ଚାହିଁଛନ୍ତି । ସିପାହୀ ଦୂରେଇଗଲା ।

ନବୀନ ମହାରାଜ ଓ ପାଟରାଣୀଙ୍କ ନିକଟକୁ ଯାଇ ପଚାରିଲା, ତୋ ନା ରଜା ?

ମହାରାଜ କହିଲେ, ହଁ, ମୋତେ ଲୋକେ ରଜା ବୋଲି ଡାକନ୍ତି । ମୁଁ ରଜା ।

ନବୀନ ଆହୁରି ନିକଟକୁ ଯାଇ ସ୍ୱର୍ଣ୍ଣ-ସିଂହାସନର ସିଂହ ଉପରେ ହାତ ପକାଇଲା । ପଚାରିଲା, ରଜା, ଆଜି ତୁ ମିଠେଇ ବାଣ୍ଟୁଥିଲୁ କାହିଁକି ?

ରାଜା ପଚାରିଲେ, ତୋତେ କଣ ଦିଆଯାଇନାହିଁ ?

ନବୀନ କହିଲା, ନାଇଁମ, ମୁଁ ମିଠେଇ ମାଗୁନାହିଁ । ମୁଁ ପଚାରୁଛି କାହିଁକି ମିଠେଇ ବଣ୍ଟାଉଥିଲୁ ?

ମହାରାଜ କହିଲେ, ଆଜି ଯୁବରାଜଙ୍କର ଜନ୍ମଦିନ । ସେଥିପାଇଁ ମିଠେଇ ବଣ୍ଟାଉଥିଲି, ନେବୁ କି ?

ନବୀନ କହିଲା, ମୋର ସିଠେଇ ଲୋଡ଼ା ନାହିଁ । ମୁଁ ଆସିଛି ତୋତେ ଦେଖିବାକୁ । ଲୋକେ କହନ୍ତି, ରାଜା ବଡ଼ଲୋକ, ତା ପାଖକୁ କିଏ ଯିବ ? ରାଜାଙ୍କ ନାଆଁ ପଡ଼ିଲେ ଡରନ୍ତି କାହିଁକି ? ତୁ ମଣିଷଟି ?

ମହାରାଜ ସଭାଗୃହର ଗୃହଅଡ଼କୁ ଥରେ ଅନାଇ ଦେଖିଲେ ସମସ୍ତେ ଭୟରେ ବାଳକଟିର କଥା ଶୁଣୁଛନ୍ତି ।

ମହାରାଜ ସହାସ୍ୟମୁଖରେ କହିଲେ, ହଁ, ମୁଁ ମଣିଷ । ମୁଁ ବାଘ ନୁହେଁ କି ଭାଲୁ ନୁହେଁ । ମୋତେ ଲୋକେ ଡରନ୍ତି, ତୁ ତ ଡରୁନୁ ?

ନବୀନ କହିଲା, ମୁଁ ଡରେ ନାହିଁ, ଆଛା ରଜା , ଲୋକେ କହନ୍ତି ତୁ ପ୍ରଜାଙ୍କର ବାପ, ତୁ ତାଙ୍କର ସୁଖ ଦୁଃଖପାଇଁ ଦାୟୀ ।

ମହାରାଜ ବାଳକର ପ୍ରଶ୍ନରେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ତାର ରୂପ ନିରୀକ୍ଷଣ କଲେ । କିଛି ସମୟ ପରେ କହିଲେ, ହଁ, ମୁଁ ତାଙ୍କର ସୁଖଦୁଃଖପାଇଁ ଦାୟୀ ।

ନବୀନ କହିଲା, ରଜା, ଏ ଯେଉଁ କଣା, ଛୋଟା, କୁଜା, ଅନ୍ଧ ଭିକାରୀ ବାଟରେ ବୁଲି ଭିକ ମାଗନ୍ତି, ସେମାନେ ତୋର ପ୍ରଜା ତ ?

ରାଜା ଜାଣି ନ ଥିଲେ ଯେ, ସରଳ ବାଳକର ମୁଣ୍ଡରେ ଏତେ କଥା ପଶିଛି । ତେଣୁ ଉତ୍ତର ଦେଲେ, ହଁ, ଧନୀ, ଦରିଦ୍ର, ଚକ୍ଷୁଷ୍ମାନ, ଅନ୍ଧ, କୁଜା, ଛୋଟା ଯେ ମୋ ରାଜ୍ୟରେ ରହନ୍ତି ସେମାନେ ସମସ୍ତେ ମୋ ପ୍ରଜା ।

ରାଜା ସବୁ ପ୍ରଜାର ବାପା !

ହଁ, ରାଜା ପ୍ରଜାର ସବୁ ଏବଂ ପ୍ରଜା ରାଜାର ସବୁ । ତୁ ବାଳକ, ତୋର ଏ ବିଷୟରେ ଥାଏ କଣ ? ତୋତେ କଣ ଭୋକ କରୁନି ?

ନବୀନ କହିଲା, ଯାହା କହୁଛ, ସତ କହୁ ନା କାହିଁକି ? ତୁମେ ପ୍ରଜାଙ୍କର ବାପ ନୁହଁ । ଯଦି ମୋତେ ଭୋକ କରେ, ମୋର ବାପା ମୋତେ ଖୁଆଇ ଦିଅନ୍ତି । ଥଣ୍ଡା ହେବ ବୋଲି କାନ ଘୋଡ଼ାନ୍ତି । ଖରାଦିନରେ ତତଲା ଭୂଇଁରେ ଗୋଡ଼ ତାତିଯିବ ବୋଲି ବାପା ମୋତେ କାଖକରି ନିଅନ୍ତି । ମୁଁ ଦେଖେ, ପ୍ରତିଦିନ ଏହି ଦୁଃଖୀ ଦରିଦ୍ର ଭିକ୍ଷୁକଗୁଡ଼ିକ ଭୋକ କଲେ କାନ୍ଦନ୍ତି, ଯାକୁ ତାକୁ ମୁଠାଏ ଖାଇବାକୁ ମାଗନ୍ତି । କାହିଁ ମୁଁ ତ କେବେ ତୋତେ ସେମାନଙ୍କ ପାଖକୁ ଯିବାର ଦେଖି ନାହିଁ । ଖରାଦିନରେ ତତଲା ଭୂଇଁରେ ଗୁଲୁ ଗୁଲୁ ଗୋଡ଼ ଫୋଟକା ହୋଇଗଲେ, ସେମାନେ ବିକଳ ହୋଇ କାନ୍ଦନ୍ତି; ମୁଁ ତ କେବେ ତୋତେ ସେମାନଙ୍କ ପାଖରେ ଦେଖି ନାହିଁ । ରାତିରେ ଶୀତବେଳେ ଗଛମୂଳରେ ପଡ଼ି ଲୁଙ୍ଗା ଦେହରେ ଥରଚାଲି ଲାଗନ୍ତି । ମୁଁ ତ ତୋତେ ସେଠି ଦେଖି ନାହିଁ ? ତୁ

ତେବେ ପ୍ରଜାମାନଙ୍କର ବାପ ହେଲୁ କେମିତି ? ତୁ ତୋର ପୁଅମାନଙ୍କୁ ଭଲ ପାଉନୁ ? ତୁ ସେମାନଙ୍କ ପାଇଁ ଘର ତୋଳଦେଉନୁ ?

ମହାରାଜ ବାଳକର କଥା ଶୁଣି ବିସ୍ମିତ ହେଲେ । ତାର ସୁନ୍ଦର ମୁହଁଟିକୁ ଚାହିଁ ରହିଲେ ।

ରଘୁନାଥ ଭୀତ ହେଲେ । ଭାବିଲେ, ଯଦି ମହାରାଜ ବିରକ୍ତ ହୁଅନ୍ତି, ତେବେ ସର୍ବନାଶ । ରଘୁନାଥ ଧୀରେ ଡାକିଲେ, ନବୀନ !

ମହାରାଜଙ୍କୁ ନୀରବ ଦେଖି ବାଳକ କହିଲା, ଯଦି ପ୍ରଜାଙ୍କୁ ନିଜର ପୁଅ ପରି ଦେଖୁଥାଉ, ତେବେ ଦୁଃଖୀ ଦରିଦ୍ରଙ୍କୁ କାହିଁକି ସେହି ଆଖିରେ ଦେଖୁନୁ । ଯେଉଁ ଗରୀବ ପୁଅମାନଙ୍କର ହାତ ଗୋଡ଼ ଚଳୁ ନାହିଁ, ସେମାନଙ୍କ ପାଇଁ ଘର ତୋଳି ଦେଉନୁ । ସେମାନେ ଦୁଃଖକଷ୍ଟ ଭୋଗୁଛନ୍ତି । ମୋ ଶିକ୍ଷକ କହୁଥିଲେ, ଯଦି କିଏ ଯାଇ ରାଜାଙ୍କୁ କହନ୍ତା, ଆଉ ସେ ଦରିଦ୍ରମାନଙ୍କ ପାଇଁ ଘର ତୋଳାଇ ଦିଅନ୍ତେ, ତେବେ ଭଲ ହୁଅନ୍ତା; ଆଉ ଏହି ଭିକାରୀମାନେ ଏତେ କଷ୍ଟ ପାଆନ୍ତେ ନାହିଁ ।

ହୋତାଏ ଭୀତ ହେଲେ । ନବୀନ ଉପରେ ମନେ ମନେ ରାଗିଗଲେ । କିନ୍ତୁ ପରେ ଭାବିଲେ, ଯଦି ରାଜା ମୋତେ ଡାକନ୍ତି, ମୁଁ ନିର୍ଭୟରେ ତାଙ୍କୁ ମୋର ପ୍ରକୃତ ମତ ଜଣାଇବି ।

ଯୁବରାଜ ଆସି ନବୀନ ପାଖରେ ଠିଆ ହେଲେ । ମହାରାଜ ସିଂହାସନରୁ ବାହାର ଆସିଲେ । ସ୍ୱର୍ଣ୍ଣମୟ ବସନରେ କୋଟରଗତ ଚକ୍ଷୁରୁ ଲୋତକ ବିନ୍ଦୁ ଦିଓଟି ପୋଛି ପକାଇଲେ । ଗୋଟିଏ ହାତରେ ନବୀନକୁ ଏବଂ ଅନ୍ୟ ଗୋଟିଏ ହାତରେ ନିଜର ସନ୍ତାନକୁ ଧରି ସ୍ନେହରେ ଟିକିଏ ହଲାଇ ଦେଲେ । ପରେ ବାମ ହସ୍ତରେ ଉଭୟଙ୍କର ହାତ ମିଶାଇ ଦେଇ କହିଲେ, ବାଳକ, ତୋର କହିବା-ମତେ ଏହି ଧନରେ ଦରିଦ୍ରମାନଙ୍କ ପାଇଁ ଧର୍ମଶାଳା ତୋଳା ହେବ । ତୋର କଣା ଛୋଟା ଭାଇମାନେ ଆଉ କଷ୍ଟ ପାଇବେ ନାହିଁ । ସଭାଗୃହର ଚତୁର୍ଦ୍ଦିଗକୁ ଅନାଇ ପୁଣି କହିଲେ, ମୋର ଏହି ଉଦ୍ଦେଶ୍ୟରେ ବାଧା ଦେବାକୁ କେହି ସାହସ କରି ପାରିବେ ନାହିଁ ।

"ସମସ୍ତଙ୍କର ଏହାହିଁ ଇଚ୍ଛା" ବାକ୍ୟଟି ଭିତରିଅଙ୍କଠାରୁ ଆରମ୍ଭ କରି ଅନ୍ୟମାନେ ଉଚ୍ଚାରଣ କରିବା ପୂର୍ବରୁ ମହାରାଜ ନବୀନ ଆଡ଼କୁ ମୁହଁ ବୁଲାଇ ସ୍ନେହମିଶ୍ରିତ ମୃଦୁକଣ୍ଠରେ କହିଲେ, ବାଳକ, ତୋର କହିଲା କଥା ରହିଛି । ତୋର ନାମ କଣ ? ତୋ ବାପାଙ୍କର ନାମ କଣ ?

ନବୀନ କହିଲା, ମୋ ନା ନବୀନ । ମୋ ବାପାଙ୍କୁ ଲୋକେ ରଘୁ ବନ୍ଧୁଦାର ଢୋଲ୍ ଡାକନ୍ତି ।

ମହାରାଜ ଯୁବରାଜଙ୍କ ଗଳାରୁ ରତ୍ନଖଚିତ ସ୍ୱର୍ଣ୍ଣ ହାରଟିଏ ବାହାର କରି ନବୀନ ବେକରେ ଲମ୍ବାଇ ଦେଲେ । ମହାରାଣୀଙ୍କ ଆଡ଼କୁ ମୁହଁ ବୁଲାଇ ପ୍ରଫୁଲ୍ଲ ବଦନରେ କହିଲେ, ଆଜି ପୁତ୍ରର ଜନ୍ମୋତ୍ସବ ବୋଲି ଆନନ୍ଦରେ ଅଧୀର ହେଉଥିଲ । ନିଅ, ଭଗବାନ ତୁମକୁ ଆଉ ଗୋଟିଏ ପୁତ୍ର ଦେଇଅଛନ୍ତି ।

**ସ୍ୱା**ମୀଙ୍କର ମୃତ୍ୟୁପରେ ସାବର୍ନୀଙ୍କର ବୃଦ୍ଧାଶାଶୁ ପୁତ୍ର-ଶୋକାକୁଳ ହୋଇ ଅଧୀର ଭାବରେ ହୃଦୟରେ କରାଘାତ କରୁଥିଲେ । ସାବର୍ନୀ ସଂଜ୍ଞାହୀନା ହୋଇ ଭୂଶାୟିନୀ ହୋଇଥିଲେ । ଯେ ଚାଲିଯାଇଛି, ସେ ଆଉ ଫେରିବ ନାହିଁ ଜାଣି ମଧ୍ୟ ବୃଦ୍ଧା ଏଡ଼େ ଅଧୀର । ତାଙ୍କ ଜୀବନ କାଳରେ ସେ କେତେ ମୃତ୍ୟୁ ସମ୍ବାଦ ଶୁଣିଥିଲେ । କାହିଁ ଗୋଟିକ ଛଡ଼ା ଅନ୍ୟଥିରେ ତ ସେ ଏଡ଼େ ଅଧୀର ହୋଇ ନାହାନ୍ତି ? ପୁତ୍ର ! ଅନ୍ତ ଫାଡ଼ି କେତେ ବେଦନା ସହ୍ୟକରି ସେ ଜନ୍ମ ଦେଇଥିଲେ ! ଅଧୀର ହୁଅନ୍ତେ ନାହିଁ ?

ସାବର୍ନୀ ପରଘର ଝିଅ । ସେ ଯେ ଦିନେ ଅନ୍ୟ ଜଣକୁ ନିଜର ଜୀବନରୁ ଅଧିକ ମୂଲ୍ୟବାନ୍ ଭାବି ଭଲ ପାଇବେ, ଏହା କେବେ ଭାବି ନ ଥିଲେ । ସେ ଭାବି-ଥିଲେ, ରମଣୀର ସ୍ନେହ ତାର ବାପା, ମା ଏବଂ ଭାଇ ଓ ଭଉଣୀଙ୍କ ମଧ୍ୟରେ କେନ୍ଦ୍ରୀଭୂତ । ଯେଉଁଦିନ ହାତଗଣ୍ଠି ପଡ଼ିଲା ପରେ ପିତୃଗୃହ ଛାଡ଼ି ନୂତନ ସଂସାର କରିବାକୁ ଆସିଲେ, ସେ ଦିନ ସେ କେତେ ଆତୁର ହୋଇ ବାପ, ମା, ଭାଇ ଓ ଭଉଣୀଙ୍କୁ ଧରି କାନ୍ଦି କାନ୍ଦି ଆସିଥିଲେ । ସମୟ ଅତୀତ ହେଲା, ଯାହାକୁ ପର ବୋଲି ଭାବିଥିଲେ, ସେହି ମୂର୍ତ୍ତି ଆପଣାର ହୋଇଗଲା । ଯାହା ସଙ୍ଗେ ଆଗରୁ କୌଣସି ସମ୍ପର୍କ ନ ଥିଲା ପରେ ତାଙ୍କ ସଙ୍ଗରେ ଘନିଷ୍ଠତା ବଢ଼ିଲା ।

ସାବର୍ନୀ ବୁଝି ପାରିଥିଲେ ଯେ ରସାଳଦ୍ରୁମ ଭାଙ୍ଗି ପଡ଼ିଛି ।

ମାଧବୀ ଲତା ସେ, ଆଜି ଭୂଶାୟିନୀ ।

ସୁନ୍ଦରଙ୍କର ମୃତ୍ୟୁ ଦିବସରେ ବୃଦ୍ଧା ଜନନୀ ହୃଦୟରେ କରାଘାତ କରି କେଶହୀନ ମସ୍ତକକୁ ବାରମ୍ବାର ଭୂମିରେ ପ୍ରହାର କରୁଥିଲେ । ଉଚ୍ଚ ସ୍ୱରରେ କ୍ରନ୍ଦନ କରି ସୁନ୍ଦରଙ୍କର ଗୁଣଗୁଡ଼ିକୁ ସ୍ମରଣ କରି ତାଙ୍କ ଜୀବନ କିପରି ଶୀଘ୍ର ଚାଲିଯିବ, ସେଥି ନିମନ୍ତେ ଧର୍ମ ଦେବତାଙ୍କୁ ଡାକୁଥିଲେ । ନିକଟରେ ଗର୍ଭବତୀ

ପୁତ୍ରବଧୂ ସାବର୍ନୀ ଜ୍ଞାନଶୂନ୍ୟା ହୋଇ ପଡ଼ିଥିଲେ। ମଧ୍ୟ ତାଙ୍କର ସେଥିପ୍ରତି ଭ୍ରୁକ୍ଷେପ ନାହିଁ ।

ବୃଦ୍ଧା ପୁତ୍ରବଧୂଙ୍କୁ ଅଜ୍ଞାନାବସ୍ଥାରେ ଦେଖି ମଧ୍ୟ କୋପ ସମ୍ବରଣ କରି ପାରୁ ନ ଥିଲେ । ତାଙ୍କର ମନରେ ପୁତ୍ରବଧୂ ପ୍ରତି ମନ୍ଦ ଭାବନା ବଦ୍ଧମୂଳ ସ୍ଥାନ ମାଡ଼ି ବସିଛି । ସେ ଜାଣନ୍ତି ପୁତ୍ରର ବିବାହ ଦିନଠାରୁ ତାଙ୍କ ଘରେ ଗୋଟି ଗୋଟି ହୋଇ ବିପଦ ପଡ଼ୁଛି । ଘରେ ପୁତ୍ରବଧୂର ପାଦ ପଡ଼ିବାରୁ ତାଙ୍କ ସୁନାର ସଂସାର ଚୂନା ହୋଇଗଲା । ସେ ଅଲକ୍ଷଣୀ, ଡାଆଣୀ । ତାଙ୍କ ଘରକୁ ଆସି ସମସ୍ତଙ୍କୁ ଖାଇଲା ।

ସମସ୍ତଙ୍କୁ ତ ଖାଇଲା, ନିଜର ସ୍ୱାମୀକୁ କିପରି ଖାଇଲା, ରାଗରେ ହତାହତ ଜ୍ଞାନ ହରାଇ ତଳେ ପଡ଼ିଥିବା ସଂଜ୍ଞାହୀନା ସାବର୍ନୀଙ୍କ ଦେହରେ ବୃଦ୍ଧା ପଦ ପ୍ରହାରିଲେ । କୋଧରେ ତାଙ୍କ ଦୁଃଖ ଉଭେଇ ଗଲା । ଗୋଇଠା ମାଡ଼ ଖାଇ ସାବର୍ନୀଙ୍କ ଜ୍ଞାନ ହେଲା । ସେ ଆଖି ଖୋଲି ଉଠିବାକୁ ଚେଷ୍ଟା କଲେ; କିନ୍ତୁ ଆଗରେ ସ୍ୱାମୀଙ୍କର ମୃତଦେହ ଏବଂ ନିକଟରେ ମା'ଙ୍କର ଚଣ୍ଡୀମୂର୍ତ୍ତି ଦେଖି ସେ ଅଧିକ ଭୀତା ହେଲେ ।

ରଘୁନାଥ ଓ ନବୀନ ସେତେବେଳକୁ ଚାଲି ଯାଇଥିଲେ । ବଣିଆ ମଧ୍ୟ ପାଖରେ ନ ଥିଲା ।

ବୃଦ୍ଧା ଗୋଟିଏ ଗିଲାସରେ ସାବର୍ନୀଙ୍କ ମସ୍ତକକୁ ପ୍ରହାର କଲେ । ସାବର୍ନୀଙ୍କ ମସ୍ତକ ଫାଟି ରକ୍ତ ବାହାରିବାକୁ ଲାଗିଲା । ବୃଦ୍ଧା କହିଲେ, ଅଲକ୍ଷଣୀ ସବୁ ସତ୍ୟାନାଶ କରି ମଧ୍ୟ ତୋର ମନ ମାନିଲା ନାହିଁ ଯେ, ଶେଷରେ ମୋର ଏକୋଇର ବଳାକୁ ଖାଇଲୁ ? ପୋଡ଼ାପାଉ ତୋର ଜନମ ଜାତକ-ନିଜର ଘଇତାକୁ ପୁଣି ଖାଇବାକୁ ଇଚ୍ଛା ହେଲା ? ମୋର ଏ ବୁଢ଼ୀଟିମ ହେଲେ ଖାଆନ୍ତୁ ।

ସାବର୍ନୀ ବୃଦ୍ଧାଙ୍କ ପଦତଳେ ମସ୍ତକ ରଖି କାନ୍ଦିବାକୁ ଲାଗିଲେ । ମାତାଙ୍କର କଥାରେ ତାଙ୍କର ଅବିଶ୍ୱାସ ହେଲାନି । ସେ ଭାବିଲେ, ହୋଇଥିବ; ମୁଁ ଡାଆଣୀ ହୋଇଥିବି । ସାବର୍ନୀ ଭଗ୍ନକଣ୍ଠରେ କହିଲେ, ମା' ମୁଁ ଦୋଷୀ; ମୁଁ ଅଲକ୍ଷଣୀ । ମା' ଆଉ ଡେରି କର ନା । ଶୀଘ୍ର ଏ ପୋଡ଼ା ଜୀବନକୁ କାଢ଼ିନିଅ, ମୁଁ ତାଙ୍କର ସାଙ୍ଗରେ ଚାଲିଯିବି । ମା, ମୁଁ ବିଧବା ହୋଇ ରହି ପାରିବି ନାହିଁ । ମୋତେ ମାରିପକା । ତୁମର ଏକମାତ୍ର ପୁଅକୁ ମୁଁ ଡାଆଣୀ ଖାଇଛି । ତମର ସର୍ବନାଶ କରିଛି । ମୋର ନିଜର ସର୍ବନାଶ କରିଛି ।

ବୁଢାଙ୍କ ମନରେ ସନ୍ଦେହ ରହିଲାନି । ଅଜ୍ଞା ପ୍ରମାଣ ମିଳିଛି । ଦୋଷୀ ନିଜର ଦୋଷ ସ୍ୱୀକାର କରିଛି । ମଣିଷ ମାତ୍ର ଦୋଷ ସ୍ୱୀକାର କଲେ, କଣ ତା'ର ଦଣ୍ଡ ନାହିଁ ?

ବୁଢା ନିକଟରେ ପଡ଼ିଥିବା ଖଣ୍ଡିଏ ପଥର ଉଠାଇ ପୁତ୍ରଘାତକୀ ଉପରେ ପ୍ରତିଶୋଧ ନେବାକୁ ବସିଲେ । ତାଙ୍କୁ ଚତୁର୍ଦ୍ଦିଗ ଅନ୍ଧାର ଦେଖାଗଲା । କ୍ରୋଧାନ୍ଧ ହୋଇ ପଥରଟିକୁ ବୋହୂର ମୁଣ୍ଡରେ ପ୍ରହାର କରିବା ସମୟରେ ଅର୍ଦ୍ଧପଥରେ କିଏ ତାଙ୍କର ହାତ ଧରି ପକାଇଲା ।

ବଶିଆ ମାଲଭାଇମାନଙ୍କୁ ଡାକି ଆଣିଛି । ଶବ ଉଠା ହେବ । ସେ ବୁଢାଙ୍କ ହାତ ଧରି କହିଲା, ଏ କଣ କରୁଛ ମା ? ତୁମେ ନିଜେ କହୁଥିଲ, ସା'ନ୍ତଙ୍କର ପୁଅ କି ଝିଅଟିଏ ହେବ ବୋଲି ।

ବୁଢାଙ୍କ ହାତରୁ ପଥର ଖସି ପଡ଼ିଲା ।

ଦିନୁଦିନ ଶାଶୁଙ୍କର ଅତ୍ୟାଚାର ବଢ଼ିବାକୁ ଲାଗିଲା । ଗଲେ ପଦେ, ଆସିଲେ ପଦେ । ବୁଢାଙ୍କର ଅତ୍ୟାଚାର ସାବିତ୍ରୀଙ୍କର ସଂସାରରୁ ମାୟା ମମତା ଛଡ଼ାଇନେଲା । ସରଳା ସାବିତ୍ରୀ ନିଜକୁ ସବୁ ଅମଙ୍ଗଳର ମୂଳ ବୋଲି ମନେକଲେ । କପାଳକୁ ଶତବାର ଧିକ୍କାର କଲେ । ସ୍ୱାମୀଙ୍କ ମୃତ୍ୟୁ ଦିବସରୁ ସେ ଦିନେ ହେଲେ କାହାର ମୁହଁରୁ ପଦେ ମଧୁର କଥା ଶୁଣିନାହାନ୍ତି ।

ବୁଢାଙ୍କଠାରୁ ଉତ୍ପୀଡ଼ନ ପାଇ ସୁଦ୍ଧା ସେ ତାଙ୍କୁ ଅମାନ୍ୟ କରନ୍ତିନାହିଁ । ଘରର କାମ ସାରିବା ପରେ ସେ ଶାଶୁଙ୍କର ପଦସେବା କରିବାକୁ ଭୁଲନ୍ତିନାହିଁ । ଶାଶୁଙ୍କର ପଦସେବାହିଁ ତାଙ୍କ ମନରେ ଶାନ୍ତି ଦେଉଥିଲା । ଦିନେ ସନ୍ଧ୍ୟା ସମୟରେ ସାବିତ୍ରୀ ଶାଶୁଙ୍କର ପଦସେବା କରୁଛନ୍ତି, ବୁଢ଼ୀ କହିଲେ, ଜାଣେ, ଏତେ ଖାଇ ଖାଇ କଣ ମନବୋଧ ହୋଇନାହିଁ ଯେ ପୁଣି ଏ ବୁଢ଼ୀ ଚମରେ ଆଶା ରଖିଛୁ ?

ବୁଢ଼ୀଙ୍କର କଥାକୁ ସେ ଧରି ବସନ୍ତି ନାହିଁ । ସେ ସବୁ ତାଙ୍କର ଦେହସୁହା ହୋଇଗଲାଣି । ଦିନେ ସକାଳେ ସାବିତ୍ରୀ ଘରର ଦୁଆରମୁହଁରେ ଛିଡ଼ା ହୋଇଛନ୍ତି, ନାନୁକୁର ମା ଗୁଡ଼ିଆଣୀ ତା ପୁଅ ନାନୁକୁକୁ କାଖେଇ ସେହି ବାଟେ ଯାଉଥିଲା । ସାବିତ୍ରୀଙ୍କୁ ଦେଖି ଲୁଗାକାନିରେ ନାନୁକୁକୁ ଘୋଡ଼ାଇ

ଚୁପ୍ ଚୁପ୍ କହୁଛି, ଖବରଦାର ବଜର ବଜର 'ହଁ' ନା କି ପାଟିକରନା, ବୃଢ଼ୀ ଘର ତଣ୍ଡେଇ ବୋହୂ ବାଟରେ ଠିଆହୋଇଛନ୍ତି !

ବାଳକଟି କୁଁକ୍ କରି କାଁ କାଁ ହୋଇ ମାର କାଖରେ ଲାଗି ରହିଲା । ନାନ୍‌କୁର ମା ଲମ୍ବ ପାଦ ପକାଇ ଚାଲିଗଲା ।

ସାବର୍ଣ୍ଣୀଙ୍କ ମନରେ ଅତୀତର ଗୋଟିଏ ଦୃଶ୍ୟର ଛାୟାପାତ ହେଲା । ସାବର୍ଣ୍ଣୀ ନୂଆ ବୋହୂ ହୋଇ କବାଟ କୋଣରେ ବସିଥାଆନ୍ତି । ପଡ଼ାର ଲୋକେ ଆସି ବୋହୂ ମୁହଁ ଦେଖି କେତେ ପ୍ରକାର କଥା କହୁଥାଆନ୍ତି । ନାନ୍‌କୁର ମା ଯେତେବେଳେ ବୋହୂର ମୁହଁ ଦେଖେ, ଆନନ୍ଦରେ ଅଧୀର ହୋଇ କହୁଥିଲା ବୋହୂଟି ଗୋଟିଏ ଗୃଉଲରେ ଗଢ଼ା । ଲକ୍ଷ୍ମୀପରି ଦିଶୁଛି । ଏତେ ବୋହୂ ଦେଖିଲିଣି କିନ୍ତୁ ଏହାପରି ସୁନ୍ଦରୀ ବୋହୂ କେଉଁଠି ଦେଖିନାହିଁ । ସାବର୍ଣ୍ଣୀ ସେତେବେଳେ ଥିଲେ ଲକ୍ଷ୍ମୀ, ଏବେ ଅଲକ୍ଷ୍ମୀ ହୋଇଯାଇଛନ୍ତି ।

ଦିନେ ସକାଳୁ ଉଠି ସାବର୍ଣ୍ଣୀ ବାଡ଼ିଆଡ଼ ପୋଖରୀକୁ ଗାଧୋଇ ଯାଇଥିଲେ । ପୋଖରୀରେ ପହଞ୍ଚି ଦେଖିଲେ ସାଧୁଆ ମା ସୁନାରୁଣୀ ଓ ହାରା ପାନଚାଣୀ ଗାଧୋଉଅଛନ୍ତି । ସାବର୍ଣ୍ଣୀ ତାଙ୍କୁ ଦେଖିବା ପୂର୍ବରୁ ସେମାନେ ସାବର୍ଣ୍ଣୀଙ୍କୁ ଦେଖି ସାରିଥିଲେ ଏବଂ ତାଙ୍କର ବିଷୟରେ ପ୍ରସଙ୍ଗ ପକାଇଲେ ।

ସାଧୁଆ ମା ବ୍ୟସ୍ତ ହୋଇ କହିଲା, ଭଉଣୀ ଲୋ, ଆଜି କି ଯୋଗରେ ରାତି ପାହିଥିଲା କେଜାଣି ଉଠୁ ଉଠୁ ତୋ ମୁହଁ ଦେଖିଲି । ଭାବିଥିଲି ଆଜି ଦିନଟା ସୁଖରେ ଆନନ୍ଦରେ କଟିଯିବ । ଦଇବର ପାଞ୍ଚ କଅଣ ମଣିଷର ପାଞ୍ଚ ପରି ?

ହାରା ପାନଚାଣୀ ବାଧାଦେଇ କହିଲା, "ଦଇବ ଦଉଡ଼ି ମଣିଷ ଗାଈ, ଯେଣେ ଓଟାରିଲେ ତେଣିକି ଯାଇ ।"

ସାଧୁଆ ମା ତୀର୍ଯ୍ୟକ୍ ନେତ୍ରରେ ଥରେ ସାବର୍ଣ୍ଣୀଙ୍କ ଆଡ଼କୁ ଅନାଇଁ ଫୁସ୍-ଫାସ୍ କରି କହିଲା, ହଁ ବା, ମୁଁ ପରା ସେଇଆ କହୁଛି । ଆଜି ସକାଳୁ ତୋ ମୁହଁ ଦେଖିଥିଲି ଯେ ଭାବିଥିଲି ଦିନଟି ସୁଖରେ କଟିଯିବ । କିଏ ଜାଣିଥିଲା ଆଜି ଏ ବୁଢ଼ା ବହିଦାରଙ୍କର ଅଲଇହୁଣୀ ବୋହୂର ମୁହଁ ଦେଖିବି ବୋଲି । କଣ୍ଢା ଡାହାଣୀଟା ପରା । ସକା-ଆ-ଆ-ଆଳୁ ହତଲଇକ୍ଷ୍ମୀଟା କୁଆଡ଼ୁ ଆଇଲା ମ ?

ହାରା ପାନଚାଣୀ କହିଲା, ଅଗୋ, ଆଉ ଆସିବ କୋଉଠୁ ? ରାତପାକ ଧୁଆ ଚରେ ଚରେ ଆସିଛି, ଗାଧୋଇପାଧୋଇ ଭଲଲୋକ ପରି ଘରେ ହାଜର ହେବ । ଶାଶୁତ ବୁଢ଼ୀଲୋକ, ଏସବୁ କାହୁଁ ଜାଣିବେ ? ଅହା, ପୋଡ଼ାମୁହିଁ କଣ ନ କଲା ରେ ? ସୁନ୍ଦର ବାବୁପରି ପୁଅ, ହେଲେ ପାଣିକୁ ହାତ ବଢ଼ାଏ ନାହିଁ, ତାକୁ ପୁଣି ଖାଇଛି । ରାଣ୍ଡ, ଘଇତାକୁ ଖାଇ କୋଉ ସୁଖ ପାଇଲା ମ ?

ସାଧୁଆ ମା ହା'ରି ପାନବାଣୀ ନିକଟକୁ ଧାଇଁଆସି ତୁନି ତୁନି କଣ ଦି'ପଦ କହିଲା । ସାଧୁଆ ମାର ପାଟିଟା ଗୋଟିଏ ଢୋଲ । ସେ ଯଦି ଥରେ ଥରେ ଦିପଦ କଥା କହିବ, କଥାଟା ଶୁଭିବ କୋଶକ ବାଟକୁ ।

ସାଧୁଆ ମାର କଥା ସାବିତ୍ରୀଙ୍କ କାନରେ ପଡ଼ିଲା । ସେ ଚମକି ପଡ଼ି କିଛି ସମୟ ସ୍ତମ୍ଭୀଭୂତ ହୋଇ ଠିଆ ହେଲେ । ଆଖିରୁ ଲୋତକ ଝରିଲା । ମୁଣ୍ଡରେ ହାତ ମାରି ସେ ଉପରକୁ ଅନାଇଲେ । କହିଲେ, ହେ ଠାକୁରେ, ସତୀସ୍ତ୍ରୀ ସବୁ ସହ୍ୟ କରିପାରେ; କିନ୍ତୁ ଅପବାଦ ସହିପାରେ ନାହିଁ । ତୁମକୁ କଣ ଅଜଣା ? ମୋର ଏ ପୋଡ଼ା ପ୍ରାଣରେ ଆଉ କି ପ୍ରୟୋଜନ ଅଛି ?

ସୁନ୍ଦରଙ୍କର ମୃତ୍ୟୁପରେ ତାଙ୍କ ଘରର ଖବର ଅନ୍ତର ବୁଝିବାର ଭାର ପଡ଼ିଲା ବଣିଆ ଉପରେ । ବଣିଆ ଯେତେ ଭଲ ହେଲେ ସୁଦ୍ଧା ରଘୁନାଥଙ୍କର ତା' ଉପରେ ବିଶ୍ୱାସ ହେଲା ନାହିଁ । ନ ହେବାର କଥା । ଛାର ଚାକରଟାଏ । ତାହାରି ଉପରେ ଘରର ସମସ୍ତ ଭାର ଲଦିଦେଇ ଯେତେବେଳେ ରଘୁନାଥଙ୍କର ବନ୍ଧୁ ସୁନ୍ଦର ଚାଲି ଯାଇଅଛନ୍ତି, ରଘୁନାଥ ସେଥିରେ ସନ୍ତୁଷ୍ଟ ରହନ୍ତେ କିପରି ? କାଳେ ସୁନ୍ଦରଙ୍କର ବୃଦ୍ଧା ମା ଏବଂ ବିଧବା ପତ୍ନୀ ହତାଶ ହୋଇଯିବେ, କାଳେ ସେମାନଙ୍କର ସମ୍ପତ୍ତି ନଷ୍ଟ ହୋଇଗଲେ, ସେମାନେ ନିଜର ଅବଶିଷ୍ଟ ବ୍ୟର୍ଥ ଜୀବନ କଷ୍ଟରେ କଟାଇବେ, ସେଥିପାଇଁ ସେ ସମୟେ ସମୟେ ଯାଇ ଘରର ଖବର ବୁଝି ଆସୁଥିଲେ । ବଣିଆକୁ ଘରଦ୍ୱାର, ଜମିବାଡ଼ି ବିଷୟରେ ଉପଦେଶ ଦେଉଥିଲେ । ବନ୍ଧୁଙ୍କର ଜନନୀ ଏବଂ ପତ୍ନୀଙ୍କ ଦୁଃଖରେ ନିଜେ ଦୁଃଖ ପ୍ରକାଶ କରୁଥିଲେ । କେତେ ଉପହାର ଦେଇ ଯାଉଥିଲେ । ବନ୍ଧୁର ଦୁଃଖରେ ଆଉ କିପରି ସାହାଯ୍ୟ କରିବା କଥା ? ବନ୍ଧୁର ଦୁଃଖରେ ବନ୍ଧୁ ସାହାଯ୍ୟ ନ କଲେ, ଆଉ କରିବ କିଏ ?

ରଘୁନାଥ ଧୀର ପ୍ରକୃତିର ଲୋକ ଥିଲେ । ତାଙ୍କ ମନ ଯେପରି ପବିତ୍ର, ତାଙ୍କର ହୃଦୟ ସେହିପରି ସରଳ । ତାଙ୍କର ଚରିତ୍ର ଯେପରି ଧୂଳିମଳିବିହୀନ, ସେ ସମସ୍ତଙ୍କୁ ସେହିପରି ଭାବନ୍ତି । ସୁନ୍ଦରଙ୍କ ପରିବାରକୁ ନିଜର କୁଟୁମ୍ବରୁ ବାହାର ବୋଲି ଭାବିବାକୁ ସେ ଇଚ୍ଛା କରନ୍ତି ନାହିଁ ।

ରଘୁନାଥ ବିପତ୍ନୀକ । ସାବିତ୍ରୀ ପତିହୀନା । ରଘୁନାଥ ବେଳେ ବେଳେ ସୁନ୍ଦରଙ୍କ ଘରକୁ ଯାଉଥିବାର ଦେଖି ଆଖପାଖ କେଇଜଣ ସ୍ତ୍ରୀଙ୍କ ମନରେ ସନ୍ଦେହ ହେଲା । ସେମାନେ ପ୍ରକୃତ ଘଟଣା ବୁଝିବାକୁ ଚେଷ୍ଟା କଲେ । କିନ୍ତୁ ବୁଝିବେ ବା କଣ ? ରଘୁନାଥ ପବିତ୍ର ବିଶୁଦ୍ଧ ଚରିତ୍ରର ଲୋକ, ସାବିତ୍ରୀଙ୍କ ପରି ସତୀ ସ୍ତ୍ରୀ କେଇଜଣ ଅଛନ୍ତି । ଏମାନଙ୍କର ଆଚରଣରେ ଦାଗ ଲଗାଇବ କିଏ ?

ନଗର ବ୍ରାହ୍ମଣଙ୍କ ପକ୍ଷରେ ଅସମ୍ଭବ କଣ ? ସେମାନେ କଳାକୁ ଧଳା ଏବଂ ଧଳାକୁ କଳା କରି ପାରନ୍ତି । ଦିନକୁ ରାତି ଏବଂ ରାତିକୁ ଦିନ କରି ପାରନ୍ତି ।

ସାଧୁଅ ମା ଏବଂ ହାରି ପାନଚାଣୀ ଠିକ୍ ସେହି ପ୍ରକୃତିର ଲୋକ । ରଘୁନାଥ ଏବଂ ସାବିତ୍ରୀଙ୍କର ଆଚରଣରେ ସେମାନେ ତ୍ରୁଟି ଦେଖିଲେ ନାହିଁ । ତଥାପି ନିନ୍ଦା ରଟାଇଲେ ।

**ସେ**ଦିନ ସକାଳେ ସାଧୁଅ ମା ଏବଂ ହାରି ପାନଚାଣୀ ମଧ୍ୟରେ ଯେଉଁ ଆଳାପ ହୋଇଥିଲା, ତାହାର ପ୍ରତି ପଦ ସାବିତ୍ରୀ ଦେବୀଙ୍କ କାନରେ ପଡ଼ିଥିଲା । ସେ ଅବାକାବା ହୋଇ ନିକଟବର୍ତ୍ତୀ ଗୋଟିଏ ଗଛମୂଳେ ବସି ବିଗତ ଜୀବନ କଥା ଭାବିବାକୁ ଲାଗିଲେ । ଅତୀତ ଗଲା, ବର୍ତ୍ତମାନ ପହଞ୍ଚିଲା । ବର୍ତ୍ତମାନ ତାଙ୍କର ଅବସ୍ଥା ଯେ ଅତି ଶୋଚନୀୟ ହୋଇ ନାହିଁ ତାହା ସେ ବେଶ ବୁଝି ପାରିଲେ । ଭବିଷ୍ୟ ଆସି ମନରାଜ୍ୟ ଅଧିକାର କଲା । ସେ ବୁଝିପାରିଲେ ଯେ ତାଙ୍କ ନାମରେ ଯେଉଁ କଳଙ୍କ ସାଧୁଅ ମା ଲଗାଇଛି, ଦିନେ ତାହା ସଂସାର ସାରା ଖେଳିଯିବ । ପତ୍ନୀ ଯୁବତୀ ଥାଉଣୁ ସ୍ୱାମୀ ଚାଲିଗଲେ; ଖଳଲୋକ ନାନାପ୍ରକାର ମନ୍ଦକଥା ବାହାର କରିବେ । ଆଜି ସାଧୁଅ ମା ମୁହଁରୁ ଯାହା ଶୁଣିଲେ, ଯଦି ତାହାର ପ୍ରତିକାର ନ କରନ୍ତି, ତେବେ କାଲି ସମସ୍ତଙ୍କ ମୁହଁରୁ ସେହି କଥା ଶୁଣିବାକୁ ପାଇବେ । ଯଦି ଜଣକର ଅପବାଦ ସହି ହୁଏ ନାହିଁ, ତେବେ ସହସ୍ରଙ୍କର ନିନ୍ଦା ଅପବାଦ ସହି ହେବ କିପରି ? ସାବିତ୍ରୀ ଭାବିଲେ, ସାଧୁଅ ମା କହିଲା, ସେ କୁଅଡ଼େ ଷଡ଼ଯନ୍ତ୍ର କରି ସ୍ୱାମୀଙ୍କୁ ମାରିଛି, କେବଳ ନିଜର ପାପାଭିଳାଷ ଚରିତାର୍ଥ ପାଇଁ ।

ସାବିତ୍ରୀଙ୍କୁ ହସ ମାଡ଼ିଲା । ସେ ହସ ସମ୍ଭାଳି ନ ପାରି ହସିଦେଲେ ।

ମନରେ ପୁନର୍ବାର ଭବିଷ୍ୟତ ଚିନ୍ତା ଉପସ୍ଥିତ ହେଲା । ପୁନର୍ବାର ମୁଖମଣ୍ଡଳ ମଳିନ ହୋଇଗଲା । ବର୍ତ୍ତମାନର ଚିନ୍ତା ମନ-ରାଜ୍ୟକୁ ଗ୍ରାସ କଲା । ବର୍ତ୍ତମାନର ଅବସ୍ଥା କଥା ଭାବି ନିଜକୁ ନିଜେ ଘୃଣା କଲେ । ଅତୀତର ଦୁଃଖ ସୁଖ ମିଶି କେବଳ ଦୁଃଖଭାବ ମନରେ ଜାଗି ଉଠିଲା । ଭବିଷ୍ୟତ୍ ଦୁଃଖର ଉପଶମ ପାଇଁ ପ୍ରତିକାର ଚିନ୍ତା କରିବାକୁ ଲାଗିଲେ । ପ୍ରତିକାର ଆଉ କଣ ହୋଇପାରେ ?

ସୁଧନୀ ସ୍ଥିର କଲେ, ଆତ୍ମହତ୍ୟା କରିବେ ।

ନିଜର ଭାବନାକୁ ନିଜେ ବିଶ୍ୱାସ କରି ପାରିଲେ ନାହିଁ । ନିଜେ ଭାବି ନିଜେ ଚମକି ଉଠିଲେ । ପୁଣି ଭାବିଲେ, ଆତ୍ମହତ୍ୟା ମହାପାପ । ପ୍ରେତିନୀର ଜୀବନ କଥା ମନେ ପଡ଼ିଲା । ପ୍ରଚଳିତ ପ୍ରବାଦ ଅନୁଯାୟୀ ଯେଉଁ ସ୍ତ୍ରୀ ଗର୍ଭାବସ୍ଥାରେ ଆତ୍ମହତ୍ୟା କରେ, ତାର ଆତ୍ମା ଅମୋକ୍ଷ ହୋଇ ଏଣେତେଣେ ବୁଲେ । ସେହି ଆତ୍ମା ପ୍ରେତିନୀର ରୂପ ଧରେ । ପ୍ରେତିନୀର କଥା ତାଙ୍କ ମନରେ ଭୟ ସଞ୍ଚାର କଲା । ଯଦି ସେ ଆତ୍ମହତ୍ୟା କରନ୍ତି, ତେବେ ତାଙ୍କର ଆତ୍ମା ପ୍ରେତିନୀ ହୋଇ ଚିରକାଳ କଷ୍ଟ ପାଇବ । ତାଙ୍କର ଆତ୍ମା ଚିରକାଳ ଅମୋକ୍ଷ ହୋଇ ଏଣେତେଣେ ବୁଲିବ । ଶୀତ ଖରା ବର୍ଷା ସବୁ ସହ୍ୟ କରିବ । ପୁଣି ଭାବିଲେ, ବଞ୍ଚିରହି ଅପବାଦ ସହିବା-ଠାରୁ ଆତ୍ମହତ୍ୟା କରି ପ୍ରେତିନୀ ହେବା ବରଂ ଭଲ । କିଏ ଜାଣେ, ମୃତ୍ୟୁ ପରେ ଆତ୍ମାର ଗତି କଣ ହୁଏ ? ଆତ୍ମା ମୋକ୍ଷ ହୋଇ ସୁଖରେ ରହେ କି ପ୍ରେତିନୀ ହୋଇ କଷ୍ଟ ପାଏ ।

ସେ ନିଜପାଇଁ ଭୟ କଲେ ନାହିଁ । ଅତି ଉଦାର ଓ ସ୍ନେହୀ ବାବୁ ରଘୁନାଥଙ୍କର ପବିତ୍ର ନାମରେ କଳଙ୍କ ଲାଗିବ; ଲୋକଙ୍କ ମୁଖରେ ରହିବ ଅପବାଦ । ସେତିକି ତାଙ୍କର ଦୁଃଖ ଓ ଭୟ ।

ପୁଣି ଭାବିଲେ, ଯଦି ସେ ଆତ୍ମହତ୍ୟା କରନ୍ତି କେବଳ ଜଣକର ମରଣ ହେବନାହିଁ ତ; ଗର୍ଭସ୍ଥ ଶିଶୁ ମଧ୍ୟ ତାଙ୍କର ସାଙ୍ଗରେ ଚାଲିଯିବ । ତାଙ୍କର ମୃତ୍ୟୁ ପରେ ବୃଦ୍ଧା ଶାଶୁଙ୍କର ଖବର ଅନ୍ତର କିଏ ବୁଝିବ ? ପୁତ୍ର ଶୋକାକୁଳା ହୋଇ ସେ କଷ୍ଟ ପାଉଛନ୍ତି । ତାଙ୍କର ଆଶା ଅଛି, ଏ ଗର୍ଭରୁ ପୁତ୍ର ସନ୍ତାନ ଜାତହେବ ଏବଂ ତାହାର ମୁହଁ ଦେଖି ସେ ଇହ ଜଗତ୍ ତ୍ୟାଗକରି ଯିବେ । ଅବଶ୍ୟ ପୁତ୍ର ଶୋକରେ ଅଧୀର ହୋଇ ତାଙ୍କ ଉପରେ ଯେଉଁ ଉତ୍ପୀଡ଼ନ କରନ୍ତି ତାହା ଅସହନୀୟ । ସେ ପୁଣି ଭାବିଲେ, "ମୁଁ ଅଲକ୍ଷଣୀ, ମୁଁ ଡାଆଣୀ । ସେ ଅତ୍ୟାଚାର ମୁଁ ସହିବି ନାହିଁ ତ ସହିବ କିଏ ? ଯଦି ଆତ୍ମହତ୍ୟା କରେଁ, ବୃଦ୍ଧାଙ୍କର ଆଶା ଲୋପ ପାଇବ । ସେ ମଧ୍ୟ ବଞ୍ଚିବେ ନାହିଁ । ଏତେ ଭାବିବା ଦରକାର କଣ ଅଛି ? ଆତ୍ମହତ୍ୟା କଲେ ମୁଁ ସେ ପୁରକୁ ଯିବି । ତାଙ୍କର ପଦତଳେ ମସ୍ତକ ରଖି ଦୋଷ ମାଗିନେବି । ତାଙ୍କ ବିନା ଏ ସଂସାରରେ ରହିଲେ କେବଳ ଅପବାଦ ଏବଂ ଯନ୍ତ୍ରଣା ଛଡ଼ା ଆଉ କିଛିନାହିଁ । ଯେତେହେଲେ ମୁଁ ତାଙ୍କର ଦାସୀ । ଦାସୀକୁ ସେ କଣ କ୍ଷମା ଦେଇ ପାରିବେ ନାହିଁ ?"

ସୁଧନୀଙ୍କ ଚକ୍ଷୁରୁ ଲୋତକଧାର ଝରିବାକୁ ଲାଗିଲା । ସେ ଧୀରେ ଧୀରେ ଉଠି ଥରେ ଚତୁର୍ଦ୍ଦିଗକୁ ଅନାଇଲେ । ଦେଖିଲେ କେବଳ କେତେଗୁଡ଼ିଏ

ଆମ୍ବଗଛ ଏବଂ ବୁଦା । ଗୋଟିଏ ବୁଦାର ପଛଆଡ଼େ ସାଧୁଆ ମା ଏବଂ ହାରା ପାନରାଣୀ ଗୃହକୁ ଯାଉଛନ୍ତି । ଏହାହିଁ ଉପଯୁକ୍ତ ସମୟ । ସାବିତ୍ରୀ ଧୀରେ ଧୀରେ ପଦ ସଞ୍ଚାଳନ କରି ପୋଖରୀ କୂଳକୁ ଯିବାକୁ ବସିଲେ । ତାଙ୍କର ଗୋଡ଼ ହାତ ଥରିବାକୁ ଲାଗିଲା । କିନ୍ତୁ ସେ ଦୃଢ଼ ଭାବରେ ପଦ ସଞ୍ଚାଳନ କରି ପୋଖରୀ କୂଳରେ ପହଞ୍ଚିଲେ ।

ବଣିଆ ଖଦାଳ ବଡ଼ ସକାଳୁ ଉଠି ମହାନଦୀ କୂଳକୁ କାର୍ଯ୍ୟ ବଶତଃ ଯାଇଥିଲା । କାର୍ଯ୍ୟ ସମାପନ କରି ବାଟପଥ ଦେଇ ଫେରୁ ଫେରୁ ଗୋଟିଏ ବୁଦାର ଅଢ଼ୁଆଳରେ ଶୁଣିପାରିଲା, ସାଧୁଆ ମା ଏବଂ ହାରା ପାନରାଣୀଙ୍କ ଗଳ୍ପ । ସେମାନଙ୍କର କଥୋପକଥନ ବେଶୀ ସମୟ ଶୁଣିବାକୁ ତାର ଇଚ୍ଛା ହେଲାନାହିଁ । ଯେତିକି ଶୁଣିଛି ସେତିକିରେ ତାର କ୍ରୋଧାନଳ ଜଳିଉଠିଲା । ପ୍ରଥମେ କଣ କରିବ କିଛି ବୁଝିପାରିଲା ନାହିଁ । ଭାବିଲା, ଯଦି ପ୍ରତିକାର ନ କରାଯାଏ ତେବେ ଏମାନଙ୍କର ତୁଣ୍ଡ ବଢ଼ିଯିବ ଏବଂ ଅପବାଦିଆ କଥା ଦାଣ୍ଡରେ ପଡ଼ିବ । ପ୍ରତିକାର ନିମନ୍ତେ ନିକଟସ୍ଥ ବାସଙ୍ଗ ବୁଦାକୁ ଅନାଇଲା । ଟିପେଇ ଟିପେଇ ଦୌଡ଼ିଯାଇ ଦୁଇଟି ସରୁ ବାସଙ୍ଗ ବାଡ଼ି ଭାଙ୍ଗି ଆଣିଲା । ସାଧୁଆ ମା ଓ ହାରା ପାନରାଣୀଙ୍କ ପଛକୁ ଆସି ଦୁହିଙ୍କୁ କସି କସି ପାହାର ପକାଇଲା ।

ସେମାନଙ୍କ ମିଷ୍ଟାଳାପ ଭାଙ୍ଗିଗଲା । ସାଧୁଆ ମା ବିଳବିଳେଇ ଉଠିଲା ପରି କହିଲା, ତୋ ମୁଣ୍ଡ ଭୁଉଁଛିରେ ସାଧୁଆ, ମୁଁ କିଛି କହିନାହିଁ । ଏହି ନିଅଂଶୀ ରାଣ୍ଡି ପାନରାଣୀ ସବୁ ବାହାର କରିଛି ।

ବଣିଆର ଆହୁରି ଅଧିକ ରାଗହେଲା । ତାଆରି ଉପରେ ପୁଣି ଦୁଇ ପାହାର ବସେଇଲା । ହାରା ବଣିଆକୁ ଅନାଇଁ ମାଡ଼ ଡରରେ ହାତ ବଢ଼ାଇ କହିଲା, ତୋ ମୁଣ୍ଡ ଖାଉଛିରେ ବଣିଆ, ଏହି ଡବଡବୀ ସାଧୁଆ ମା ମୋତେ ଡାକି ତା ମନକୁ ଏ ସବୁ କଥା କହୁଛି ।

ବଣିଆ ହସିଦେଇ କହିଲା, ଆଗ ଦକ୍ଷିଣା ଖାଇସାରି ପଛେ ମୋ ମୁଣ୍ଡ ଖାଇବୁ ।

ହାରା ପାନରାଣୀ ଉପରେ ପ୍ରହାର ବସିବାର ଦେଖି ସାଧୁଆ ମା ନିଜେ ଦବିଗଲା ଭାବି ବଣିଆ ପକ୍ଷ ନେଇ ପିଠି ଆଉଁସି କହିଲା, ବାପମା'ର ଗୋଟିଏ ବୋଲି ପୁଅ । ତାକୁ ଏମିତି କହିବାକୁ ତୋ ମନ ବଳିଲା କିମିତି ମ ?

ସ୍ୱ ଭଉଣୀ ସ୍ଥିର କଲେ, ଆତ୍ମହତ୍ୟା କରିବେ ।

ନିଜର ଭାବନାକୁ ନିଜେ ବିଶ୍ୱାସ କରି ପାରିଲେ ନାହିଁ । ନିଜେ ଭାବି ନିଜେ ଚମକି ଉଠିଲେ । ପୁଣି ଭାବିଲେ, ଆତ୍ମହତ୍ୟା ମହାପାପ । ପ୍ରେତଣୀର ଜୀବନ କଥା ମନେ ପଡ଼ିଲା । ପ୍ରଚଳିତ ପ୍ରବାଦ ଅନୁଯାୟୀ ଯେଉଁ ସ୍ତ୍ରୀ ଗର୍ଭାବସ୍ଥାରେ ଆତ୍ମହତ୍ୟା କରେ, ତାର ଆତ୍ମା ଅମୋକ୍ଷ ହୋଇ ଏଣେତେଣେ ବୁଲେ । ସେହି ଆତ୍ମା ପ୍ରେତଣୀର ରୂପ ଧରେ । ପ୍ରେତଣୀର କଥା ତାଙ୍କ ମନରେ ଭୟ ସଞ୍ଚାର କଲା । ଯଦି ସେ ଆତ୍ମହତ୍ୟା କରନ୍ତି, ତେବେ ତାଙ୍କର ଆତ୍ମା ପ୍ରେତଣୀ ହୋଇ ଚିରକାଳ କଷ୍ଟ ପାଇବ । ତାଙ୍କର ଆତ୍ମା ଚିରକାଳ ଅମୋକ୍ଷ ହୋଇ ଏଣେତେଣେ ବୁଲିବ । ଶୀତ ଖରା ବର୍ଷା ସବୁ ସହ୍ୟ କରିବ । ପୁଣି ଭାବିଲେ, ବଞ୍ଚିରହି ଅପବାଦ ସହିବା-ଠାରୁ ଆତ୍ମହତ୍ୟା କରି ପ୍ରେତଣୀ ହେବା ବରଂ ଭଲ । କିଏ ଜାଣେ, ମୃତ୍ୟୁ ପରେ ଆତ୍ମାର ଗତି କଣ ହୁଏ ? ଆତ୍ମା ମୋକ୍ଷ ହୋଇ ସୁଖରେ ରହେ କି ପ୍ରେତଣୀ ହୋଇ କଷ୍ଟ ପାଏ ।

ସେ ନିଜପାଇଁ ଭୟ କଲେ ନାହିଁ । ଅତି ଉଦାର ଓ ସ୍ନେହୀ ବାବୁ ରଘୁନାଥଙ୍କର ପବିତ୍ର ନାମରେ କଳଙ୍କ ଲାଗିବ; ଲୋକଙ୍କ ମୁଖରେ ରହିବ ଅପବାଦ । ସେଥିଲାଗି ତାଙ୍କର ଦୁଃଖ ଓ ଭୟ ।

ପୁଣି ଭାବିଲେ, ଯଦି ସେ ଆତ୍ମହତ୍ୟା କରନ୍ତି କେବଳ ଜଣକର ମରଣ ହେବନାହିଁ ତ; ଗର୍ଭସ୍ଥ ଶିଶୁ ମଧ୍ୟ ତାଙ୍କର ସାଙ୍ଗରେ ଚାଲିଯିବ । ତାଙ୍କର ମୃତ୍ୟୁ ପରେ ବୁଢ଼ା ଶାଶୁଙ୍କର ଖବର ଅନ୍ତର କିଏ ବୁଝିବ ? ପୁତ୍ର ଶୋକାକୁଳା ହୋଇ ଯେ କଷ୍ଟ ପାଉଛନ୍ତି । ତାଙ୍କର ଆଶା ଅଛି, ଏ ଗର୍ଭରୁ ପୁତ୍ର ସନ୍ତାନ ଜାତହେବ ଏବଂ ତାହାର ମୁହଁ ଦେଖି ସେ ଇହ ଜଗତ୍ ତ୍ୟାଗକରି ଯିବେ । ଅବଶ୍ୟ ପୁତ୍ର ଶୋକରେ ଅଧୀରା ହୋଇ ତାଙ୍କ ଉପରେ ଯେଉଁ ଉତ୍ପୀଡ଼ନ କରନ୍ତି ତାହା ଅସହନୀୟ । ସେ ପୁଣି ଭାବିଲେ, "ମୁଁ ଅଲକ୍ଷଣୀ, ମୁଁ ଡାଆଣୀ । ସେ ଅତ୍ୟାଚାର ମୁଁ ସହିବ ନାହିଁ ତ ସହିବ କିଏ ? ଯଦି ଆତ୍ମହତ୍ୟା କରେଁ, ବୁଢ଼ୀଙ୍କର ଆଶା ଲୋପ ପାଇବ । ସେ ମଧ୍ୟ ବଞ୍ଚିବେ ନାହିଁ । ଏତେ ଭାବିବା ଦରକାର କଣ ଅଛି ? ଆତ୍ମହତ୍ୟା କଲେ ମୁଁ ସେ ପୁରକୁ ଯିବି । ତାଙ୍କର ପଦତଳେ ମସ୍ତକ ରଖି ଦୋଷ ମାଗିନେବି । ତାଙ୍କ ବିନା ଏ ସଂସାରରେ ରହିଲେ କେବଳ ଅପବାଦ ଏବଂ ଯନ୍ତ୍ରଣା ଛଡ଼ା ଆଉ କିଛିନାହିଁ । ଯେତେହେଲେ ମୁଁ ତାଙ୍କର ଦାସୀ । ଦାସୀକୁ ସେ କଣ କ୍ଷମା ଦେଇ ପାରିବେ ନାହିଁ ?"

ସାବିତ୍ରୀଙ୍କ ଚକ୍ଷୁରୁ ଲୋତକଧାର ବହିବାକୁ ଲାଗିଲା । ସେ ଧୀରେ ଧୀରେ ଉଠି ଥରେ ଚତୁର୍ଦ୍ଦିଗକୁ ଅନାଇଲେ । ଦେଖିଲେ କେବଳ କେତେଗୁଡ଼ିଏ

ଅସ୍ତଗଲା ଏବଂ ବୁନ୍ଦା । ଗୋଟିଏ ବୁଦାର ପଛଆଡ଼େ ସାଧୁଆ ମା ଏବଂ ହାବ୍ଲା ପାନବାଣୀ ଲୁଚିଯାଇଛନ୍ତି । ଏହାହିଁ ଉପଯୁକ୍ତ ସମୟ । ସାବିତ୍ରୀ ଧୀରେ ଧୀରେ ପଦ ସଞ୍ଚାଳନ କରି ପୋଖରୀ କୂଳକୁ ଯିବାକୁ ବସିଲେ । ତାଙ୍କର ଗୋଡ଼ ହାତ ଥରିବାକୁ ଲାଗିଲା । କିନ୍ତୁ ସେ ଦୃଢ଼ ଭାବରେ ପଦ ସଞ୍ଚାଳନ କରି ପୋଖରୀ କୂଳରେ ପହଞ୍ଚିଲେ ।

ବଶିଆ ଖଦାଳ ବଡ଼ ସକାଳୁ ଉଠି ମହାନଦୀ କୂଳକୁ କାର୍ଯ୍ୟ ବଶତଃ ଯାଇଥିଲା । କାର୍ଯ୍ୟ ସମାପନ କରି ବାରପଥ ଦେଇ ଫେରୁ ଫେରୁ ଗୋଟିଏ ବୁଦାର ଅଢ଼ୁଆଳରେ ଶୁଣିପାରିଲା, ସାଧୁଆ ମା ଏବଂ ହାବ୍ଲା ପାନବାଣୀଙ୍କ ଗଳ୍ପ । ସେମାନଙ୍କର କଥୋପକଥନ ବେଶୀ ସମୟ ଶୁଣିବାକୁ ତାର ଇଚ୍ଛା ହେଲାନାହିଁ । ଯେତିକ ଶୁଣିଛି ସେତିକରେ ତାର କ୍ରୋଧାନଳ ଜଳିଉଠିଲା । ପ୍ରଥମେ କଣ କରିବ କିଛି ବୁଝିପାରିଲା ନାହିଁ । ଭାବିଲା, ଯଦି ପ୍ରତିକାର ନ କରାଯାଏ ତେବେ ଏମାନଙ୍କର ତୁଣ୍ଡ ବଢ଼ିଯିବ ଏବଂ ଅପବାଦଆ କଥା ଦାଣ୍ଡରେ ପଡ଼ିବ । ପ୍ରତିକାର କ୍ରମରେ ନିକଟସ୍ଥ ବାସଙ୍ଗ ବୁଦାକୁ ଅନାଇଲା । ଟିପେଇ ଟିପେଇ ଦୌଡ଼ିଯାଇ ଦୁଇଟି ସରୁ ବାସଙ୍ଗ ବାଡ଼ି ଭାଙ୍ଗି ଆଣିଲା । ସାଧୁଆ ମା ଓ ହାବ୍ଲା ପାନବାଣୀଙ୍କ ପଛକୁ ଆସି ଦୁହିଙ୍କୁ କସି କସି ପାହାର ପକାଇଲା ।

ସେମାନଙ୍କ ମିଷ୍ଟାଳାପ ଭାଙ୍ଗିଗଲା । ସାଧୁଆ ମା ବଳିବଳେଇ ଉଠିଲା ପରି କହିଲା, ତୋ ମୁଣ୍ଡ ଛୁଉଁଛିରେ ସାଧୁଆ, ମୁଁ କିଛି କହିନାହିଁ । ଏହି ନିଅଂଶୀ ରାଣ୍ଡି ପାନବାଣୀ ସବୁ ବାହାର କରିଛି ।

ବଶିଆର ଆହୁରି ଅଧିକ ରାଗହେଲା । ତାଆର ଉପରେ ପୁଣି ଦୁଇ ପାହାର ବସେଇଲା । ହାବ୍ଲା ବଶିଆକୁ ଅନାଇ ମାଡ଼ ଡରରେ ହାତ ବଢ଼ାଇ କହିଲା, ତୋ ମୁଣ୍ଡ ଖାଉଛିରେ ବଶିଆ, ଏହି ଡବଡବୀ ସାଧୁଆ ମା ମୋତେ ଡାକି ତା ମନକୁ ଏ ସବୁ କଥା କହୁଛି ।

ବଶିଆ ହସିଦେଇ କହିଲା, ଆଗ ଦକ୍ଷିଣା ଖାଇସାର ପଛେ ମୋ ମୁଣ୍ଡ ଖାଇବୁ ।

ହାବ୍ଲା ପାନବାଣୀ ଉପରେ ପ୍ରହାର ବସିବାର ଦେଖି ସାଧୁଆ ମା ନିଜେ ବଞ୍ଚିଗଲା ଭାବି ବଶିଆ ପାଖ ନେଇ ପିଠି ଆଉଁସି କହିଲା, ବାପମା'ର ଗୋଟିଏ ବୋଲି ପୁଅ । ତାକୁ ଏମିତି କହିବାକୁ ତୋ ମନ ବଳିଲା କିମିତି ମ ?

ବଣିଆ ବୁଲପଡ଼ି ସାଧୁଆ ମା ଉପରେ ଅହୁରି ଦୁଇଁ ପାହାର ପକେଇ ଝଟେଇ ହୋଇ କହିଲା, ହଁ ବେ, ତୋ ମନ କେମିତି ବଳିଲା ମ ଆମ ସାଆନ୍ତାଣୀଙ୍କ ନାଆଁରେ ଏମିତି କଥା କହିଲୁ ?

ହାଡ଼ି ପାନରାଣୀ ବଣିଆକୁ ଖୁସି କରି ପାରିବ ବୋଲି କହିଲା, ହଁ ଟି ପୁଅ, ସେଇଆ କହୁଚି; ପର ଘର ବୋହୂ ନାଆଁରେ ଏମିତି କଥା କହିବାକୁ ତା ତୁଣ୍ଡ ପଇଁଚିଲା କିପରି ?

ବଣିଆର ରାଗ ଶାନ୍ତ ପଡ଼ିଗଲା । ଏମାନଙ୍କର କହିବାର ଶୈଳୀ ଦେଖି ସେ ନ ହସି ରହିପାରିଲା ନାହିଁ । ମାଇପିଙ୍କ ଉପରକୁ ହାତ ଉଠାଇବା ବଣିଆର ଏହା ପ୍ରଥମ । ସେ ଦରଭଙ୍ଗା ବାସଙ୍ଗ ବାଡ଼ି ଦିଖଣ୍ଡ ଦୂରକୁ ଫିଙ୍ଗି ପାଟିରେ ଯା' ଆସିଲା କହି ଗାଳିଦେଲା ।

ବଣିଆ ବାଡ଼ି ଦିଖଣ୍ଡ ଫୋପାଡ଼ିଦେବାର ଦେଖି ଉଭୟେ ଦ୍ରୁତ-ପଦରେ ନିଜ ନିଜ ମଧ୍ୟରେ ଗାଳି ଦିଆ ଦେଇ ହୋଇ ପଳାଇଲେ । ସେମାନେ ଯିବା ସମୟରେ ବଣିଆ ଉଚ୍ଚସ୍ୱରରେ କହିଲା, ବୁଝି ଖବରଦାର, ଆଉ ଦିନେ ଯଦି ଏପରି କଥା ଶୁଣେ ତେବେ ତମ ପିଠି ଚହ୍ଲେ କି ମୋ ପାଞ୍ଚଣ ଚହ୍ଲେ । ସେ ଦିନ ତମର ମୋର କଥାବାର୍ତ୍ତା ।

ସାଧୁଆ ମା ଏବଂ ହାଡ଼ି ପାନରାଣୀ ଏକ ସ୍ୱରରେ କହିଲେ, ନାଇଲୋ ମା ନାଇଁ ।

ନିଜ ନିଜ ମଧ୍ୟରେ ବିବାଦ କରି ଦୁହେଁ ଚାଲିଗଲେ ।

ବଣିଆ ବାରିଆଡ଼ ପୋଖରୀ ଆଡ଼କୁ ଚାଲିଲା ।

ସାଧୁଆ ମା ଏବଂ ହାଡ଼ି ପାନରାଣୀଙ୍କ କଥା ତା ମନକୁ ଘାଣ୍ଟି ପକାଇଲା । ମନ ପାପ ଛୁଇଁଲା । ହଠାତ୍ ଭାବିଲା, ହୋଇଥିବ । କିନ୍ତୁ ନିଜ ଚିନ୍ତାକୁ ସେ ନିଜେ ବିଶ୍ୱାସ କରି ପାରିଲାନାହିଁ । ପୁନର୍ବାର ମନରେ ଆସିଲା ହୋଇଥିବ, ଅସମ୍ଭବ କଣ ? ନରମାୟା ନାରାୟଣଙ୍କୁ ଅଗୋଚର । କାହା କଥା କିଏ ଜାଣୁଛି ? ନା, ନା, ତା କଦାପି ହୋଇ ନପାରେ । ଆମ ସାଆନ୍ତାଣୀ ସେପରି ନୁହନ୍ତି । ରଘୁବାବୁ ଭଲ ଲୋକ ବୋଲି ରାଜ୍ୟଯାକ ପ୍ରଚାର । ମାଇପିଙ୍କୁ ଦେଖିଲେ ମୁହଁ ପୋତି ନିଜେ ଆଡ଼ ହୋଇଯାଆନ୍ତି । ସେ ଯେ କେବେ ଏପରି ହେବେ ତାହା ବିଶ୍ୱାସ କରିବ କିଏ ?

ବଣିଆର ମନ ଭିତରୁ କିଏ ଜଣେ କହିଉଠିଲା, ଆରେ, ସଂସାରରେ ବିରାଡ଼ି ବୈଷ୍ଣବ ପରି ଅନେକ ଲୋକ ଅଛନ୍ତି । ଦେଖିବାକୁ ଗୋଟାଛଏଁ ସାଧୁ,

କେଡ଼େ କଅଁଳ କଥା, ଗମ୍ଭୀର ପ୍ରକୃତ, କିନ୍ତୁ ବାଗ ପଡ଼ିଲେ, ଛାଡ଼ ସେ କଥା । ବଣିଆର ଛାତି ଦାଉଁ ଦାଉଁ ପଡ଼ିଲା । ତେବେ ଆମର ଅଶା କଣ ଦୁରାଶା ମାତ୍ର ? କିଛି ଦିନ ପରେ ସାଆନ୍ତଙ୍କର ପ୍ରତିମୂର୍ତ୍ତି ଧରି ଆସୁଥିବା ଆଉ ଗୋଟିଏ ସାଆନ୍ତଙ୍କୁ ପାଇବୁ ବୋଲି ଯେଉଁ ଅଶା ଥିଲା ତାହା ତେବେ ଭ୍ରମ ମାତ୍ର ? ବଣିଆର ମୁଣ୍ଡ ବୁଲେଇଗଲା । ସେ କେବଳ ଏହି କଥା ଭାବି ଭାବି ପୋଖରୀ-କୂଳ ରାସ୍ତା ଦେଇ ଚାଲିଥାଏ । ଭାବନାଚକ୍ରର ଘୂର୍ଣ୍ଣନରେ ପଡ଼ି ତାହାର ବିବେକ ହଜି ଯାଇଥିଲା । ବେଦନାରେ ବିବେକହିଁ ତାକୁ କହିଲା, ତୁ କାହାକୁ କଣ ବୋଲି ଭାବୁଛୁ ? ବଣିଆ ଚମକି ଉଠିଲା ।

ନିଜକୁ ନିଜେ ଧିକ୍କାର କଲା । ସେ ବୁଝିପାରିଲା ତାହାର ଭାବନା ସ୍ୱପ୍ନରେ ସ୍ୱପ୍ନ । ପ୍ରତିଜ୍ଞା କରିଛି, ଯଦି ଆଉଥରେ ସାଧୁଆ ମା କମ୍ବା ହାବୀ ପାନବାଣୀଙ୍କୁ ଏହି ଗଳିର ପୁନରାବୃତ୍ତି କରିବାର ଦେଖେ, ସେ ଖୁଣ୍ଡ୍ କରିବ । ପ୍ରଭୁ-ବିରୋଧୀର ଉପଯୁକ୍ତ ପ୍ରତିଶୋଧ ନେବ ।

ଗୋଟିଏ ବୁଦାର ପଛଆଡୁ ଶୁଣିପାରିଲା, 'ଆତ୍ମହତ୍ୟା, ମିଳନ ହେବ—'

ସେ ଦ୍ରୁତପଦରେ ପୋଖରୀ କୂଳକୁ ଧାଇଁ ଆସିଲା । କିଛିଦୂରରୁ ଦେଖି ପାରିଲା ସାବିତ୍ରୀଙ୍କୁ । ମୁଖ ମଣ୍ଡଳ ମଳିନ, ଚକ୍ଷୁ ବିସ୍ଫାରିତ, ଆଖିରୁ ଲୋତକର ଧାର ବହୁଛି, ତାଙ୍କର ଦୃଷ୍ଟି ଊର୍ଦ୍ଧ୍ୱକୁ । ଯୋଡ଼ହସ୍ତ ମସ୍ତକ ଉପରେ ରହିଛି । କେଶ ଅର୍ଦ୍ଧ ମୁକୁଳିତ । ସେ କି କାତର ଦୃଷ୍ଟି ! ସେ କି ଅକୁଳ ପ୍ରାର୍ଥନା ! !

ବଣିଆ ନୀରବରେ ନିଜ ଚକ୍ଷୁରୁ ଦୁଇ ବୁନ୍ଦା ଅଶ୍ରୁ ପୋଛିପକାଇ ସାବିତ୍ରୀଙ୍କ ଆଡକୁ ଦୌଡିଆସିଲା । ଶୀଘ୍ର, ଅତିଶୀଘ୍ର, ମୁହୂର୍ତ୍ତେ ବିଳମ୍ବ କରିଲେ ସର୍ବନାଶ ହୋଇଯିବ ।

ସାବିତ୍ରୀ ଦେଖିଲେ, ପାଦତଳେ ସ୍ନେହଧାଳିତ ବଣିଆର ମସ୍ତକ । ଦେଖିଲେ, ତାଙ୍କର ପଦ ଯୁଗଳ ବଣିଆର ଲୋତକ ଜଳରେ ସିକ୍ତ ।

ସେ ଲଜ୍ଜିତା ହେଲେ । ଦୁଇପାଦ ପଛକୁ ଘୁଞ୍ଚିଆସିଲେ ।

ବଣିଆ ସ୍ୱର କମାଇ କାତର ଭାବରେ କହିଲା, ମା, କଣ କରିବାକୁ ଯାଉଥିଲ ? ଆତ୍ମହତ୍ୟା ! ଆମର ଆଶାକୁ ଅତଳ ସାଗରରେ ପକାଇଦେବାକୁ ଯାଉଥିଲ ? କାହା କଥାରେ ମା ଏଡ଼େ ହୀନ କାମ କରିବାକୁ ଯାଉଛ ? କାହା ହାତରେ ଆମକୁ ସବୁ ସମର୍ପି ଦେଇ ଯାଇଥାଆନ୍ତି ? ଆମକୁ ତମର ହାତରେ ସମର୍ପି-ଦେଇ ବାବୁ ଚାଲିଯାଇଛନ୍ତି । ତୁମେ ରାଗ, ଅଭିମାନ ଓ ଘୃଣାରେ ଆମକୁ ଫୋପାଡ଼ ଦିଅନା ମା !

ସାବିତ୍ରୀ ବଶିଆର କଥା ଶୁଣି ସବୁ ଭୁଲିଗଲେ । ତାଙ୍କର ଜ୍ଞାନ ହେଲା । ସେ ବଶିଆର ହାତ ଧରି ତଳୁ ଉଠାଇଦେଲେ । ସେ ଭାବିଲେ,' ବଶିଆ କଣ ତାଙ୍କର ପୁଅ ନୁହେଁ ?

ସ୍ନେହ ଚକ୍ଷୁରେ ବଶିଆର ମୁହଁକୁ ଚାହିଁ ମାତୃତ୍ୱର କୋମଳ ଗମ୍ଭୀର ସ୍ୱରରେ ହୃଦୟ ଖୋଲି କହିଲେ, ବଶୁ—

ସେ ଯଦି ଅତି ପିଲା ହୋଇଥାଆନ୍ତା ତେବେ କେଜାଣି ତା ମନରେ ବିଶ୍ୱାସ ଜନମି ଥାଆନ୍ତା । ଆଠ ବର୍ଷର ପୁଅ, ପୁଣି ନବୀନ ପରି ବିଚକ୍ଷଣ, ତାକୁ ଭୁଲାଇ ପାରିବ କିଏ ? ରଘୁନାଥ କେବଳ ନବୀନର ମାତାଙ୍କୁ ଫେରାଇ ଆଣିବାକୁ ପୁଣି ଥରେ ଦାର ଗ୍ରହଣ କଲେ । ଦିନେ ତାକୁ କାଖକରି ମୁଖରେ ଚୁମ୍ବନ ଦେଇ କହିଲେ, ବାପ, ଏବେ ତ ତୋର ମା ଆସିଗଲେଣି, ତାଙ୍କୁ ତୋର ମନର ସବୁ କଥା ଖୋଲି କହିବୁ । ତାଙ୍କୁ ମା ବୋଲି ଡାକିବୁ ।

ନବୀନ ଗେଲରେ ପାଟିକୁ ପାଟି ଲଗେଇ କହିଲା, ବାପା, ତୁ କଣ ମାକୁ ସରଗରୁ ଆଣିଲୁ ? ସରଗରୁ ଆଇଲେ କଣ ବାଜା ବାଜେ ? ସେ ଦିନ କେତେ ତୋଲ ମହୁରୀ ବାଜିଲା; ତୁ ତା ହୋଇ ବାଣ ଫୁଟିଲା । ସରଗରୁ ଆସିଲେ ବାଜା ବାଜେ ? ବାଣ ଫୁଟେ ?

ରଘୁନାଥ ଲଜ୍ଜିତ ହେଲେ । ମନେ ମନେ ବିରକ୍ତ ହେଲେ । ପୁଣି ଭାବିଲେ, ଯାହା ପାଇଁ ଏତେ କଥା ତାହା ଉପରେ ବିରକ୍ତି ? ନବୀନ ଗପୁଚି, କେତେ କଥା ପଚାରିବ, ଉତ୍ତର ନଦେବା ଭଲ ।

ନବୀନ ପଚାରିଲା, ବାପା, ସେଦିନ ମୋତେ ଘରେ ପୂରେଇ କବାଟ କାହିଁକି ବନ୍ଦ କରିଦେଲେ ? ମୁଁ କେତେ ଡାକିଲି, କେହିହେଲେ କବାଟ ଫିଟାଇଲେ ନାହିଁ । ବାପା, ସରଗରୁ ମୋ ମାଆ ଆସୁଥିଲା ବୋଲି କଣ ମୋତେ ବନ୍ଦକରି ରଖିଥିଲେ ?

ରଘୁନାଥ ଅଳ୍ପକରେ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ, ହଁ ।

ନବୀନକୁ ରଘୁନାଥ କାଖରୁ ଓହ୍ଲାଇ ଠିଆକଲେ । ସେ ଅନ୍ୟମନସ୍କ ହୋଇ ବାପାର ଲୁଗାକାନି ଟାଣି କହିଲା, ବାପା, ସାଧୁଆ ମା ମୋତେ କହିଲା, ତୋ ବାପା ବାହା ହେଲା, ମୋତେ ମିଠାଇ ଦେବୁନି ? ତୋର ନୂଆ ମା ଆସିଛି । ମୁଁ କହିଲି ତୁ ବାପାଙ୍କୁ ମାଗ ।

ସାଧୁଆ ମାଁ ଉପରେ ରଘୁନାଥ ମନେ ମନେ ବିରକ୍ତ ହେଲେ । ଯଦି ତାର 'ମିଠେଇ ଖାଇବାକୁ ମନ ତେବେ ସେ ନିଜେ ଆସି ମୋତେ ମାଗିଲୁନାହିଁ କାହିଁକି?

ରଘୁନାଥ କହିଲେ, ତୁ ଠିକ୍ କହୁଛୁ, ମିଠେଇ ତୁ କାହୁଁ ପାଇବୁ ? ସେ ମୋତେ ମାଗିଲେ ତାକୁ ଦେବ ।

ନବୀନ ପୁଣି କହିଲା, ହରି ପାନରାଣୀ ସାଧୁଆ ମା ପାଖରେ ଠିଆ ହୋଇଥିଲା । ସେ କହିଲା ଯେ ଏଥର ଏହି ପିଲାଟିର କପାଳ ମନ୍ଦ ହୋଇ ଉଠିବ । ବାପ କେଡ଼େ ସ୍ନେହରେ ପାଳି ଆଣିଥିଲେ । ବୁଢ଼ା ଦିନରେ ବାହା ହେଉଛନ୍ତି କେବଳ ପୁଅକୁ ଅବସ୍ଥା ଦେବାକୁ । ସାବତ ମା ଠା । ବାପା, ସାବତ ମା କଣ ?

ରଘୁନାଥ ଚମକି ଉଠିଲେ; ପ୍ରକୃତରେ ସାବତ ମା ତ ? ଯେଉଁ ସାବତ ମା ପାଇଁ ସାତଖଣ୍ଡ ରାମାୟଣ ଲେଖିବାକୁ ପଡ଼ିଲା, ନବୀନର ସେହି ସାବତ ମା ! ତେବେ । ସତରେ କଣ ମୋ ନବୀନ କଷ୍ଟ ପାଇବ ? ଆଖି ଆଗରେ ଦେଖୁଛି କେତେ ଜ୍ୱଳନ୍ତ ଦୃଷ୍ଟାନ୍ତ, ସାବତ ମାମାନଙ୍କର କାଣ୍ଡ । ନବୀନ କାଳେ କଷ୍ଟ ପାଇବ, ସେଇଥିପାଇଁ କେତେ ବନ୍ଧୁଙ୍କର ଉପଦେଶକୁ ଏଡ଼ିଦେଇ ଆଉଥରେ ବିବାହ କରୁନଥିଲି; ଏଡ଼େ ଭୁଲ୍ କଲି କାହିଁକି ?

ସେ ଧୀରେ ଧୀରେ ପିଣ୍ଡା ଉପରେ ପଡ଼ିଥିବା ସଅପ ଉପରେ ବସି ପୁଣି ଭାବିବାକୁ ଲାଗିଲେ, ନବୀନ କେତେଥର ତାର ମାକୁ ଖୋଜିଛି, କେତେଥର ପଚାରିଛି ମା କାହିଁ । ପିଲାଥିଲାବେଳେ ମା'କୁ ଦେଖିବା ପାଇଁ ଅଝଟ ଲଗାଇଛି; କେତେ କାନ୍ଦିଛି । ତାହାର ମା'ର ଅଭାବ ପୂରଣ କରିବା ପାଇଁ ମୁଁ ପୁଣି ଥରେ ବିବାହ କରିବି । ପିତାର ଉପସ୍ଥିତିରେ ସନ୍ତାନ କଷ୍ଟ ପାଇବ ? ମୁଁ ବଞ୍ଚିଥାଉଣୁ ନବୀନର କେଉଁ କଷ୍ଟ ? ସାବତ ମା ତାର କରିବ କଣ ? ସବୁ ସାବତ ମା ସମାନ ନୁହନ୍ତି ।

ନବୀନ ପଚାରିଲା, ମା ସ୍ୱର୍ଗରୁ ଆସିଲେ କଣ ବାହା ହୁଅନ୍ତି ?

ରଘୁନାଥ କହିଲେ, ଯାଉନ୍ତୁ, ତୋ ମା ପାଖକୁ, ସେ ତୋତେ କେତେ ଖୋଜୁଛନ୍ତି ।

ତୁ ଆଗ କହ, ସାବତ ମା କଣ ଆଉ, ତୁ ବାହା ହେଲୁ କାହିଁକି ?

ହଁ ବାହା ହୁଅନ୍ତି । ନୂଆ ମା ଆସିଲେ ବାହା ହୁଅନ୍ତି । ଆରେ, ଯିଏ ମା, ତାହାକୁ ସାବତ ମା ବୋଲି କହନ୍ତି । ତୁ ତୋର ମା'କୁ ସାବତ ମା ବୋଲି କହିବୁ ନାହିଁ, ମା ବୋଲି ଡାକିବୁ ।

ସାବତ୍ରୀ ବଶିଆର କଥା ଶୁଣି ସବୁ ଭୁଲିଗଲେ । ତାଙ୍କର ଜ୍ଞାନ ହେଲା । ସେ ବଶିଆର ହାତ ଧରି ତାକୁ ଉଠାଇଦେଲେ । ସେ ଭାବିଲେ,' ବଶିଆ କଣ ତାଙ୍କର ପୁଅ ନୁହେଁ ?

ସ୍ନେହ ଚକ୍ଷୁରେ ବଶିଆର ମୁହଁକୁ ଚାହିଁ ମାତୃତ୍ୱର କୋମଳ ଗମ୍ଭୀର ସ୍ୱରରେ ହୃଦୟ ଖୋଲି କହିଲେ, ବସ୍—

ସେ ଯଦି ଅଳ୍ପ ପିଲା ହୋଇଥାଆନ୍ତା ତେବେ କେଜାଣି ତା ମନରେ ବିଶ୍ୱାସ ଜନମି ଥାଆନ୍ତା । ଆଠ ବର୍ଷର ପୁଅ, ପୁଣି ନବୀନ ପରି ବିଚକ୍ଷଣ, ତାକୁ ଭୁଲାଇ ପାରିବ କିଏ ? ରଘୁନାଥ କେବଳ ନବୀନର ମାତାଙ୍କୁ ଫେରାଇ ଆଣିବାକୁ ପୁଣି ଥରେ ଦାର ଗ୍ରହଣ କଲେ । ଦିନେ ତାକୁ କାଖକରି ମୁଖରେ ଚୁମ୍ବନ ଦେଇ କହିଲେ, ବାପ, ଏବେ ତ ତୋର ମା ଆସିଗଲେଣି, ତାଙ୍କୁ ତୋର ମନର ସବୁ କଥା ଖୋଲି କହିବୁ । ତାଙ୍କୁ ମା ବୋଲି ଡାକିବୁ ।

ନବୀନ ଗେଲ୍ହାରେ ପାଟିକୁ ପାଟି ଲଗେଇ କହିଲା, ବାପା, ତୁ କଣ ମାକୁ ସରଗରୁ ଆଣିଲୁ ? ସରଗରୁ ଅଇଲେ କଣ ବାଜା ବାଜେ ? ସେ ଦିନ କେତେ ଢୋଲ ମହୁରୀ ବାଜିଲା; ଦୁ ଟା ହୋଇ ବାଣ ଫୁଟିଲା । ସରଗରୁ ଆସିଲେ ବାଜା ବାଜେ ? ବାଣ ଫୁଟେ ?

ରଘୁନାଥ ଲଜ୍ଜିତ ହେଲେ । ମନେ ମନେ ବିରକ୍ତ ହେଲେ । ପୁଣି ଭାବିଲେ, ଯାହା ପାଇଁ ଏତେ କଥା ତ ହା ଉପରେ ବିରକ୍ତି ? ନବୀନ ପଚାରୁଚି, କେତେ କଥା ପଚାରିବ, ଉତ୍ତର ନଦେବା ଭଲ ।

ନବୀନ ପଚାରିଲା, ବାପା, ସେଦିନ ମୋତେ ଘରେ ପୂରେଇ କବାଟ କାହିଁକି ବନ୍ଦ କରିଦେଲେ ? ମୁଁ କେତେ ଡାକିଲି, କେହିହେଲେ କବାଟ ପିଟାଇଲେ ନାହିଁ । ବାପା, ସରଗରୁ ମୋ ମାଆ ଆସୁଥିଲା ବୋଲି କଣ ମୋତେ ବନ୍ଦକରି ରଖିଥିଲେ ?

ରଘୁନାଥ ଅଳ୍ପକରେ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହିଲେ, ହଁ ।

ନବୀନକୁ ରଘୁନାଥ କାଖରୁ ଓହ୍ଲାଇ ଠିଆକଲେ । ସେ ଅନ୍ୟମନସ୍କ ହୋଇ ବ୍ୟାପାର ଲୁଗାକାନ ଟାଣି କହିଲା, ବାପା, ସାଧୁଆ ମା ମୋତେ କହିଲା, ତୋ ବାପା ବାହା ହେଲା, ମୋତେ ମିଠାଇ ଦେବୁନି ? ତୋର ନୂଆ ମା ଆସିଛି । ମୁଁ କହିଲି ତୁ ବାପାଙ୍କୁ ମାଗ ।

ସାଧୁଆ ମା'ଉପରେ ରଘୁନାଥ ମନେ ମନେ ବିରକ୍ତ ହେଲେ । ଯଦି ତାର ମିଠେଇ ଖାଇବାକୁ ମନ ତେବେ ସେ ନିଜେ ଆସି ମୋତେ ମାଗିଲାନାହିଁ କାହିଁକି ?

ରଘୁନାଥ କହିଲେ, ତୁ ଠିକ୍ କହିଛୁ, ମିଠେଇ ତୁ କାହୁଁ ପାଇବୁ ? ସେ ମୋତେ ମାଗିଲେ ତାକୁ ଦେବି ।

ନବୀନ ପୁଣି କହିଲା, ହାରି ପାନିରାଣୀ ସାଧୁଆ ମା ପାଖରେ ଠିଆ ହୋଇଥିଲା । ସେ କହିଲା ଯେ ଏଥର ଏହି ପିଲାଟିର କପାଳ ମନ୍ଦ ହୋଇ ଉଠିବ । ବାପ କେଡ଼େ ସ୍ନେହରେ ପାଳି ଆଣିଥିଲେ । ବୁଢ଼ା ଦିନରେ ବାହା ହେଉଛି କେବଳ ପୁଅକୁ ଅବସ୍ଥା ଦେବାକୁ । ସାବତ ମା ଠା । ବାପା, ସାବତ ମା କଣ ?

ରଘୁନାଥ ଚମକି ଉଠିଲେ; ପ୍ରକୃତରେ ସାବତ ମା ତ ? ଯେଉଁ ସାବତ ମା ପାଇଁ ସାତଖଣ୍ଡ ରାମାୟଣ ଲେଖିବାକୁ ପଡ଼ିଲା, ନବୀନର ସେହି ସାବତ ମା ! ତେବେ । ସତରେ କଣ ମୋ ନବୀନ କଷ୍ଟ ପାଇବ ? ଆଖି ଆଗରେ ଦେଖୁଛି କେତେ ଜ୍ୱଳନ୍ତ ଦୃଷ୍ଟାନ୍ତ, ସାବତ ମାମାନଙ୍କର କାଣ୍ଡ । ନବୀନ କାଲେ କଷ୍ଟ ପାଇବ, ସେଇଥିପାଇଁ କେତେ ବନ୍ଧୁଙ୍କର ଉପଦେଶକୁ ଏଡ଼ିଦେଇ ଆଉଥରେ ବିବାହ କରୁନଥିଲି; ଏଡ଼େ ଭୁଲ୍ କଲି କାହିଁକି ?

ସେ ଧୀରେ ଧୀରେ ପିଣ୍ଡା ଉପରେ ପଡ଼ିଥିବା ପଟଅଧ ଉପରେ ବସି ପୁଣି ଭାବିବାକୁ ଲାଗିଲେ, ନବୀନ କେତେଥର ତାର ମାକୁ ଖୋଜିଛି, କେତେଥର ପଚାରିଛି ମା କାହିଁ । ପିଲାଥିଲାବେଳେ ମା'କୁ ଦେଖିବା ପାଇଁ ଅଝଟ ଲଗାଇଛି; କେତେ କାନ୍ଦିଛି । ତାହାରି ମା'ର ଅଭାବ ପୂରଣ କରିବା ପାଇଁ ମୁଁ ପୁଣି ଥରେ ବିବାହ କରିଛି । ପିତାର ଉପସ୍ଥିତିରେ ସନ୍ତାନ କଷ୍ଟ ପାଇବ ? ମୁଁ ବଞ୍ଚିଥାଉଣୁ ନବୀନର କେଉଁ କଷ୍ଟ ? ସାବତ ମା ତାର କରିବ କଣ ? ସବୁ ସାବତ ମା ସମାନ ନୁହନ୍ତି ।

ନବୀନ ପଚାରିଲା, ମା ସ୍ୱର୍ଗରୁ ଆସିଲେ କଣ ବାହା ହୁଅନ୍ତି ?

ରଘୁନାଥ କହିଲେ, ଯାଉନୁ, ତୋ ମା ପାଖକୁ, ସେ ତୋତେ କେତେ ଖୋଜୁଛନ୍ତି ।

ତୁ ଆଗ କହ, ସାବତ ମା କଣ ଆଜେ, ତୁ ବାହା ହେଲୁ କାହିଁକି ?

ହଁ ବାହା ହୁଅନ୍ତି । ନୂଆ ମା ଆସିଲେ ବାହା ହୁଅନ୍ତି । ଆରେ, ଯିଏ ମା, ତାହାକୁ ସାବତ ମା ବୋଲି କହନ୍ତି । ତୁ ତୋର ମା'କୁ ସାବତ ମା ବୋଲି କହିବୁ ନାହିଁ, ମା ବୋଲି ଡାକିବୁ ।

ନବୀନ ମୁଣ୍ଡ ହଲାଇ ସମ୍ମତି ପ୍ରକାଶକଲା । କିଛି ସମୟ ପରେ କହିଲା, ତେବେ ମୁଁ ବାହା ହେଲିନାହିଁ କାହିଁକି ? ବାପା, ତୁ ବାହା ହେଲୁ, ମୁଁ ମଧ୍ୟ ବାହା ହେବି ।

ରଘୁନାଥ ହସିଲେ । କହିଲେ, ତୁ ତୋ ମା ପାଖକୁ ଯା ।

ସେତେବେଳେ ମୁଁ ଯାଇଥିଲି, ମା କବାଟ କୋଣରେ ଚୁପ୍‌ହୋଇ ବସିଥିଲା, ମୁଁ ଫେରିଆସିଲି ।

କାହିଁକି ଫେରିଆସିଲୁ ?

ସେ ତ ବସିଛି, କାହାକୁ କିଛି କହୁନାହିଁ, ମୋତେ କିଛି କହିଲା ନାହିଁ ?

ତୁ କିଛି କହିଲୁନାହିଁ ?

ମୁଁ କଣ କହିବି ? ରାମକୁ ଦେଖିଲେ ତା ମା ତାକୁ ଗେଲକରେ । ମୋ ମା ମୋତେ କାହିଁକି ଗେଲ କଲାନାହିଁ ?

ତୋ ମା'ଙ୍କୁ କଷ୍ଟ ହୋଇଛି । ଦେଖୁନୁ ସେ କାନ୍ଦୁଛନ୍ତି । ଆଉ ଦିନେ ଦୁଇଦିନ ଗଲେ ସେ ବଳେ କାଖେଇବେ ଯେ; ତୋତେ କେତେ ଗେହ୍ଲା କରିବେ । ତୁ ଯା, ତାଙ୍କ ପାଖରେ ବସିବୁ ।

ମୁଁ କଣ ପଢ଼ିବାକୁ ଯିବିନାହିଁ ? ଆଜି ପରା ଭାଗବତ ଆରମ୍ଭ କରିବି ? ମାଷ୍ଟ୍ରେ କହିଛନ୍ତି ମୁଁ ପୂଜା ନେଇ ଗଲେ ସେ ପଢ଼ା ଆରମ୍ଭ କରିବେ ।

ସକାଳବେଳେ ଭାଗବତ ପଢ଼ନ୍ତିନାହିଁ । ସକାଳଓଳି ଅଙ୍କ କରନ୍ତି । ଉପରଓଳି ଭାଗବତ ପଢ଼ନ୍ତି । ଉପରଓଳି ପୂଜା ସିଧା ଦିଆଯିବ । ମୁଁ ମହାନଦୀ-କୂଳ ଆଡ଼କୁ ଯାଉଛି । ତୁ ଘର ଭିତରକୁ ଯା, ଏଇ ଦେଖ୍ ଘନଶ୍ୟାମ ଆସୁଅଛନ୍ତି ।

ରଘୁନାଥ ପିଣ୍ଡାରୁ ଉଠି ପାହାଚ ଓହ୍ଲାଇଲେ । ଗାମୁଛା ଟିକିଏ ମୁଣ୍ଡରେ ପକାଇ ଘନଶ୍ୟାମ ଆସୁଥିବା ରାସ୍ତାରେ ଗଲେ । ନବୀନ ଠିଆ ହୋଇ କିଛି ସମୟ କଣ ଭାବିଲା । ପରେ ଘର ଭିତରକୁ ଗଲା ।

ଘନଶ୍ୟାମ ରଘୁନାଥଙ୍କୁ ଦୂରରୁ ଦେଖି ମୁଣ୍ଡରେ ହାତ ଦେଇ ଉଚ୍ଚ ସ୍ୱରରେ କହିଲେ, ସଲାମ ଅଲେକୁ ଭାଇ ସାହେବ । ମୁଣ୍ଡ ଠେକି, ମୁରୁକି ହସି,

ଛଡ଼ ଫୁଲେଇ ଅଣ୍ଟା ବଙ୍କାକରି ପାଦଦଣ୍ଡା ତଳେ ବାଡ଼େଇ ଚାରି ଛଅ ପାଦ ଆଗକୁ ଚାଲିଗଲେ ।

ରଘୁନାଥ ଘନଶ୍ୟାମଙ୍କ ଅଭ୍ୟର୍ଥନାର ଉତ୍ତର ନ ଦେଇ କେବଳ ଟିକିଏ ହସିଦେଲେ ।

ଘନଶ୍ୟାମ କହିଉଠିଲେ, ଦାନ୍ତ୍ ଦେଖାଓ, ନହିଁତୋ ମାଛି ଅନ୍ଦର୍ ଘୁସ୍‌ଯାଏଗା । ଅରେ, ଦାନ୍ତ୍ ଦେଖାଓ ।

ରଘୁନାଥ କହିଲେ, ଭାଇ ଘନ, ତୁମର ସେ ରୋଗ ଆଉ ଯିବନି ଦେଖୁଛି । ସବୁଦିନେ ଏପରି କଥା ଭଲ ଲାଗେ ନାହିଁ । ପିଲାଦିନ ଗଲା, ଯୌବନ ଗଲା, ପୌଢ଼ାବସ୍ଥା ଶେଷହେବା ଉପରେ; ତଥାପି ତମର ସେହି ପିଲାଦିନର କଥା ରହିଛି । ଆଉ ଦୁଇ ପାଦ ଯଦି ଆଗକୁ ଯିବ, ତେବେ ସମସ୍ତେ ତୁମକୁ ବୁଢ଼ା ବୋଲି କହିବେ । ବୁଢ଼ାଦିନେ କଣ ଏ ସବୁ ସୁନ୍ଦର ଦିଶେ ଭାଇ ? ନିଜେ ଭାବିଲ ?

ଘନଶ୍ୟାମ ରଘୁନାଥଙ୍କ କଥାରେ ଆନନ୍ଦ ଉପଭୋଗ କରି ଦୁଇ ପାଦ ଆଗକୁ ଚାଲିଆସିଲେ । ବୁଢ଼ୀ ମାଇପଙ୍କ ଭଳି ନଇଁ ନଇଁ ଆଖି ମିଞ୍ଜି ମିଞ୍ଜି କରି ବିଦ୍ରୂପ ଛଳରେ କହିଲେ, ଭାଇ ସାହେବ୍, ଲଙ୍କା ମରିଚ ଖାଡା ହୈ ? ରାଗ୍ ହୁଅ ? ନା ରାଗୋ, ନା ରାଗୋ ।

ନାଇଁରେ ଭାଇ, ମୁଁ ରାଗିବି ନାହିଁ । ରାଗିବି କାହିଁକି ? ତମେ କଣ କହୁଛ କି ? ତେବେ ବୁଢ଼ା ଦିନଟାରେ ଏପରି ଥଟ୍ଟା ତୁମକୁ ସୁନ୍ଦର ଦିଶିବ ନାହିଁ ?

ଘନଶ୍ୟାମ କୃତ୍ରିମ ରାଗ ଦେଖାଇ ବାହାସ୍ଫୋଟ ମାରି, ନିଶରେ ହାତ ପକାଇ କହିଲେ, କ୍ୟାରେ, ମୁଁ କ୍ୟା ବୁଢ଼ାରେ ? ଅରେ ଇଚ୍ଛା ହେଲେ କାଲି ଆଉ ଗୋଟାଏ ବାହା ହୋଗା । ଆମ ସାଙ୍ଗକା ଭେଣ୍ଡିଆ ସବୁ ବାହା ହୋତା । ମୋତେ ତୁମ୍ ବୁଢ଼ା କାହେ କହତାରେ । ଅଚ୍ଛା-ଅଚ୍ଛା ।

ଏ କଥା ଯେ ରଘୁନାଥଙ୍କୁ ଛଳେଇ ଘନଶ୍ୟାମ କହୁଛନ୍ତି ଏଥିରେ ସନ୍ଦେହନାହିଁ ।

ରଘୁନାଥ ଲଜ୍ଜିତହେଲେ । ବୁନ୍ଦା ବୁନ୍ଦା ହୋଇ ଝାଳ ତାଙ୍କ ମୁହଁରେ ଦେଖାଗଲା । ଗାମୁଛରେ ଝାଳ ପୋଛି ପୂର୍ବବତ୍ ଚାଲିବାକୁ ଲାଗିଲେ ।

ସମୟ ଆଠଟା, ସୂର୍ଯ୍ୟକିରଣ ପଡ଼ି ସଡ଼କର ବାଲିଧୂଳି ଗରମ ନ ହେଲେ ମଧ୍ୟ ଉଷୁମ ହୋଇଗଲାଣି । ଚୈତ୍ରମାସ, ସଡ଼କର ଦୁଇପାଖେ ଦୋକାନ ଘର । ସେ ସମୟରେ ଆଜିକାଲି ପରି ସହରମାନଙ୍କରେ ଏତେ ପକ୍‌କାଘର

ନଥିଲା । ରାଜଜପାକରେ ଖୋଜି ଆସିଲେ କାଁ ଭାଁ ପକ୍ଷୀଘର ଦେଖିବାକୁ ମିଳିବ ।

ରଘୁନାଥ ସିଧା ସିଧା ରାସ୍ତାରେ ଚାଲିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା, ଘନଶ୍ୟାମଙ୍କ ସହ ମହାନଦୀ କୂଳକୁ ଯିବେ । ଆଜି ଘନଶ୍ୟାମଙ୍କର ଉପହାସପୂରଣ ପିଟିଥିବାରୁ ତାଙ୍କ ସଙ୍ଗେ ଯିବାକୁ ତାଙ୍କର ଆଗ୍ରହ ହେଲା ନାହିଁ । ସେ ଧୀର ପଦକ୍ଷେପରେ ମହାନଦୀ କୂଳକୁ ଯିବେ ବୋଲି ମନସ୍ଥ କଲେ । ରଘୁନାଥଙ୍କୁ ନୀରବ ଦେଖି ଘନଶ୍ୟାମ ବିପରୀତ ଦିଗକୁ ଚାଲିଗଲେ ।

କିଛି ଦୂର ଯାଇ ରଘୁନାଥ ଦେଖିଲେ ଯେଉଁ ସ୍ଥାନରେ ରାସ୍ତାରୁ ଗୋଟିଏ ଗଳି ବାହାରିଛି ତାହାରି ନିକଟରେ ଘନଶ୍ୟାମ ଠିଆ ହୋଇ ହସୁଛନ୍ତି । ଘନଶ୍ୟାମଙ୍କୁ ଥରେ ବିରକ୍ତିପୂର୍ଣ୍ଣ ଆଖିରେ ଅନାଇଁ ଚକ୍ଷୁ ଫେରାଇ ଆଣି ଚାଲିଯିବାକୁ ଉଦ୍ୟତ ହେଲେ । କିନ୍ତୁ ଘନଶ୍ୟାମ ଆସି ତାଙ୍କ ଆଗରେ ଠିଆହେଲେ । ଚାଲିଯିବାକୁ ଚେଷ୍ଟା କରିବାରୁ ତାଙ୍କର ଗୋଡ଼ ଘନଶ୍ୟାମଙ୍କ ଅଣ୍ଠୁରେ ବାଜିଲା । ରଘୁନାଥ 'ଓହୋ' କହି ଅନାଇବା ପୂର୍ବରୁ ରଘୁନାଥ ଉଚ୍ଚ ସ୍ୱରରେ ଚିତ୍କାର କରି 'ବସ୍ତୁ' ବୋଲି କହିଉଠିଲେ ।

ଘନଶ୍ୟାମଙ୍କୁ ପୁନର୍ବାର ସମ୍ମୁଖରେ ଦେଖି ସେ କହିଲେ, କହୋ, ଯେତେବେଳେ ପାଟିରେ ଅଲ୍ଲା ବସିଥିଲେ ଏବେ ବସ୍ତୁ କୁଆଡୁ ଆସିଲେ ମ ?

ଆରେ ଭାଇ ଅଲ୍ଲା କଣ କୁଆଡୁ ଗଛ ଅଗରେ ଫଳନ୍ତି; ବସ୍ତୁ କନ୍ଦମୂଳ ପରି ମୂଳରେ ଫଳନ୍ତି ? ତାହା ତ ନୁହେଁ, ଅଲ୍ଲା ଯେଉଁଠୁ ଆସିଲା, ବସ୍ତୁ ବି ସେଇଠୁ ଆସିଲା ।

ସତ !

ଘନଶ୍ୟାମ କହିଲେ, ସେ ସବୁ କଥା ଛାଡ଼ । ତମେ ନହରକୁ ଯାଉଛ ତ ? ଚାଲ ମୁଁ ବି ଯାଉଛି ।

ରଘୁନାଥ କହିଲେ, ନହରକୁ ଯାଉନାହିଁକି କେଉଁଠିକି ଯାଉନାହିଁ ସକାଳେ ମନ ଖରାପ ହେଲା, ସେଇଥିପାଇଁ ବାହାରିପଡ଼ିଛି । ବୁଲିବୁଲି କରି ଗଲେ ମନ ବଦଳିଯାଇପାରେ । ମହାନଦୀ କୂଳଆଡ଼େ ଯାଉଛି ।

ବେଶ୍ କରିଛ, ଭଲ କରିଛ, ବୁଦ୍ଧିମାନର କାର୍ଯ୍ୟ କରିଛ । ଗୋଟିଏ କଥା ଶୁଣିଲଣି ?

କଣ ?

ରାଜାଙ୍କଠାରୁ ହୁକୁମ୍ ପାଇ ଅଜାଙ୍କ ପନ୍ଦର ଦିନ ହେଲା କେତେଜଣ ଖଲାସୀ ପର୍ବତ ସଫା କରିବାରେ ଲାଗିଛନ୍ତି ।

କେଉଁ ପର୍ବତ ?

ଅଙ୍ଗୁଳି ଦେଖାଇ, ଏହି ପର୍ବତ ।

କାହିଁକି ?

ମୁଁ ଦୁଇଦିନ ତଳେ ବଡ଼ ସକାଳୁ ବୁଲିଯାଇଥିଲି । ଲୋକଙ୍କୁ ପଚାରିବାରୁ ସେମାନେ କହିଲେ, ଶ୍ରୀ ଛାମୁ ହୁକୁମ୍ ଦେଇଛନ୍ତି ସେ ପର୍ବତ ଉପରେ ଶିବ ମନ୍ଦିର ତୋଳାହେବ । ଯୁବରାଜଙ୍କ ଜନ୍ମୋତ୍ସବ ଉପଲକ୍ଷେ ଯେଉଁ ଧନ ସଂଗୃହୀତ ହୋଇଥିଲା, ତହିଁରେ ଧର୍ମଶାଳା ତୋଳାହୋଇ କେତେ ଟଙ୍କା ବଳିଛି । ଖଜଣା ଖାନାରୁ ହୁକୁମ୍ ଅନୁଯାୟୀ ଆହୁରି ଟଙ୍କା ତହିଁରେ ମିଶାଯାଇ ସାଧାରଣଙ୍କର ରୁଚି ଅନୁଯାୟୀ ଲୋକଙ୍କ ଉପକାର ନିମନ୍ତେ ଶିବ ମନ୍ଦିର ତୋଳାହେବ । ରାଜା ବୁଢ଼ା ହେଲେଣି, କେତେବେଳେ କେଉଁ କଥା । ଆଗରୁ ସାବଧାନ ହୋଇ ସେ ପରଲୋକ ପାଇଁ ଧର୍ମ ସଞ୍ଚୟ କରି ରଖୁଛନ୍ତି । ଏଥିରେ ସମସ୍ତଙ୍କର ମଙ୍ଗଳ ହେବ, ସନ୍ଦେହ ନାହିଁ ।

ନିଶ୍ଚୟ ।

ଧର୍ମଶାଳା ଦେଖିବାକୁ ଯାଇଥିଲି । ଶ୍ରୀଛାମୁ ଉପସ୍ଥିତ ଥିଲେ । ବୁଲିବୁଲି କରି ତୋର ପୁଅ ବିଷୟରେ ମନ୍ତ୍ରୀଙ୍କୁ କହୁଥିଲେ ।

କଣ କହୁଥିଲେ ?

କହୁଥିଲେ, ଛୁଆ ଖଣ୍ଡିକର ଅଜହୁଁ କେଡ଼େ ବୁଦ୍ଧି । ଯଦି ଭଗବାନ ଆୟୁଷ ଦେଇଥିବେ, ବଡ଼ ଦିନକୁ ସେ ଜଣେ ଅସାଧାରଣ ଲୋକ ହୋଇ ଉଠିବ । ତୁଳସୀ ଦୁଇ ପତ୍ରରୁ ବାସେ ।

ରଘୁନାଥ ଉଦ୍‌ବିଗ୍ନ ହୋଇ ପଚାରିଲେ, ମୋ ବିଷୟରେ କଣ କହୁଥିଲେ କି ?

ନା ।

ରଘୁନାଥ ପଚାରିଲେ, ମନ୍ତ୍ରୀ କିଛି କହିନାହାନ୍ତି ତ ?

ନା, ହଁ ହଁ ତୁମର ବିବାହ ବିଷୟରେ କହୁଥିଲେ ।

ରଘୁନାଥ ପଚାରିଲେ, ବିବାହ ବିଷୟରେ ? କଣ କହୁଥିଲେ ?

ତୁମର ନାମ ଧରି ମନ୍ତ୍ରୀ କହୁଥିଲେ ଯେ ସେ ଆଜି ଗୋଟିଏ ବାହା ହୋଇଛନ୍ତି ।

ମହାରାଜ କଣ କହିଲେ ?

କିଛି କହି ନାହାନ୍ତି । ଶୁଣି ନଶୁଣିଲା ପରି ହୋଇ କାର୍ଯ୍ୟ ଦେଖିବାକୁ ଗଲେ । ମୁଁ ତାଙ୍କର ପଛରେ ଚାଲିଥାଏ । କିଛି ଦୂର ଯାଇ ମହାରାଜ କହୁଥିଲେ ଯେ ଯେତେ ଶତ୍ରୁ ହେଉ ପଛେ ନବୀନଙ୍କୁ ଦେଖିଲେ ମିତ୍ରଠାରୁ ବଳିପଡ଼ିବ ।

ହଉରେ ଭାଇ ହଉ । ଛମୁଙ୍କ ତୁଣ୍ଡ ସୁତୁଣ୍ଡ ହେଉ ।

ଗ୍ରୀଷ୍ମ ହେତୁ ମହାନଦୀ କ୍ଷୀଣାଙ୍ଗୀ ହୋଇ ଶାନ୍ତ ଭାବରେ ବହିଯାଉଛି । କେବଳ ସ୍ଥାନେ ସ୍ଥାନେ ଖଣ୍ଡେ ଖଣ୍ଡେ ଅକର୍ମଶିଳା ଦେହରେ ବାଜି ଜଳ ଖଣ୍ଡ ଭାଜିଲା ପରି ବିଛୁଡ଼ିହୋଇ ପଡ଼ୁଛି । ନଦୀ ଗର୍ଭର ପ୍ରସ୍ଥ ସେ ସ୍ଥାନରେ ପ୍ରାୟ ଏକ ମାଇଲରୁ ଅଧିକ ହେବ ।

ନୌ ବାଣିଜ୍ୟ ଏ ରାଜ୍ୟର ପ୍ରଧାନ ବ୍ୟବସାୟ ହେଲେ ମଧ୍ୟ ଗ୍ରୀଷ୍ମ କାଳରେ ନୌକା ଚଳାଚଳରେ ବ୍ୟାଘାତ ଘଟେ । ନଦୀ ମଧ୍ୟରେ ଅସଂଖ୍ୟ ପ୍ରସ୍ତର ଖଣ୍ଡ ଜଳ ପତନର ଉପରକୁ ଉଠିଛି । ଅନେକ ପଥର ଜଳ ମଧ୍ୟରେ ଲୁଚି ରହିଛନ୍ତି । ପ୍ରସ୍ତରମାନଙ୍କ ଉପର ଭାଗରେ ଅଥବା ନିମ୍ନ ଦେଶରେ ନାନା ଜାତିର ମତ୍ସ୍ୟଜୀବୀ ପକ୍ଷୀ ବାସ କରି ରହିଥାଆନ୍ତି । ସେମାନଙ୍କ ମଳରେ ଗୋଟିଏ ଗୋଟିଏ ପଥର ଏକାଥରେ ଧଳା ହୋଇ ଦୂରରୁ ଦର୍ଶକକୁ ଖଡ଼ୀ ପାହାଡ଼ ପରି ଦେଖାଯାଏ । ବର୍ଷାଋତୁ ସଙ୍ଗେ ସଙ୍ଗେ ପକ୍ଷୀମାନେ କେଉଁ ଅଜଣା ଦେଶକୁ ଚାଲିଯାଆନ୍ତି । ଜଳରେ ନଦୀ ପୂର୍ଣ୍ଣ ହୋଇଯାଏ । ଦରିଦ୍ର ଧନୀ ହୋଇ ଯେପରି ଚନ୍ଦ୍ର-ସୂର୍ଯ୍ୟମାନେ ନାହିଁ, ଜଳ ପ୍ରଭାବରେ ମହାନଦୀ ସେହିପରି ବାଧା ବନ୍ଧ, ଅତିକ୍ରମି ଧାଇଁଯାଏ । ଅକର୍ମଶିଳାଗୁଡ଼ିକ ଜଳ ମଧ୍ୟରେ ବୁଡ଼ି ରହି ନୌ-ଚାଳକର ଆଶଙ୍କାର ପ୍ରଧାନ କାରଣ ହୋଇ ଉଠନ୍ତି । ତେବେ ଗୋଟିଏ କଥା ହେଉଛି "ଯାହାର ମାଙ୍କଡ଼କୁ ସିଏ କେବଳ ନଚାଇ ଜାଣେ ।" ଯେଉଁମାନେ ପିଲାଦିନରୁ ମହାନଦୀର ସେହି ସ୍ଥାନରେ ଚଳି ଆସୁଛନ୍ତି ତାଙ୍କୁ ଭୟ ହେବ ବା କାହିଁକି ? ନିଜର କାର୍ଯ୍ୟକୁ କିଏ କେବେ ଡରେ ନାହିଁ ।

ରଘୁନାଥ ଏବଂ ଘନଶ୍ୟାମ ଯେଉଁ ଘାଟରେ ପହଞ୍ଚିଲେ ତାହାର ନାଁ ରଜା ଘାଟ । ରାଜପ୍ରାସାଦରୁ ଗୋଟିଏ ଦରଜା ମହାନଦୀ ଆଡ଼କୁ ଅଛି । ଦରଜା ପାଖରୁ ପାହାଚ ପାହାଚ ହୋଇ ପଥର ଜଳ ନିକଟରେ ପହଞ୍ଚିଛି । ଏ ଦରଜାକୁ ପାଣି ଦରଜା କହନ୍ତି । ଯଦି କେହି ରଜା ବା ରାଣୀ ମରିଯାଆନ୍ତି ତାଙ୍କୁ ସିଂହ ଦରଜା ବାଟେ ନିଅନ୍ତି ନାହିଁ । ଏହି ପାଣି ଦରଜା ବାଟେ ନିଅନ୍ତି । ସେଥିନିମନ୍ତେ ପାଣି ଦରଜା ସବୁବେଳେ ଖୋଲାଥାଏ । ଟିକିଏ ଦୂରକୁ ରାଣୀ ଘାଟ । ଏଠାରେ ନାରୀମାନେ ସ୍ନାନ କରନ୍ତି । ଖରାଦିନେ ମହାନଦୀରେ ସ୍ନାନ କରିବା ଲୋକଙ୍କ ଇଚ୍ଛା । ନିଜର ଇଚ୍ଛା ପୂରଣ ପାଇଁ ପ୍ରତ୍ୟହ ଶହ ଶହ ଲୋକ ଏହି ରାଜ ଘାଟକୁ ଆସନ୍ତି । କୁଙ୍କୁମଦିଆ ଗାମୁଛାକୁ ଅଣ୍ଟାରେ ଭିଡ଼ି କେତେ ଲୋକ ଏ ପଥରରୁ ସେପଥର ଏବଂ ସେପଥରରୁ ଏପଥର ହୋଇ ପହଁରି ପହଁରି କରୁଥାଆନ୍ତି । ବଡ଼ ପଥର ନାମରେ ଗୋଟିଏ ବିଶାଳ ଅକର୍ଦ୍ଧଶିଳା କୂଳରୁ ପ୍ରାୟ ହଜାର ହାତ ଦୂରରେ ଅବସ୍ଥିତ । ବର୍ଷା କାଳରେ ମହାନଦୀ ଯେତେ ବଢ଼ିଲେ ମଧ୍ୟ ଏହାର ଶିଖରକୁ ବୁଡ଼ାଇ ପାରେ ନାହିଁ । ଲୋକେ କହନ୍ତି ଯେଉଁଦିନ ବଡ଼ ପଥରର ମୁଣ୍ଡି ବୁଡ଼ିଯିବ, ସେ ଦିନ ସହର ଭାସିଯିବ । କେହି କେହି ବୁଢ଼ା କହନ୍ତି ସେମାନଙ୍କର ଅଜାଙ୍କ ଅମଳରେ ଥରେ ବଡ଼ ପଥର ବୁଡ଼ିଥିଲା ଯେ ଲୋକେ ଘର ଦ୍ୱାର ଛାଡ଼ି ପର୍ବତରେ ଆଶ୍ରୟ ଗ୍ରହଣ କରିଥିଲେ ।

ଏହି ବଡ ପଥର ଦେହରେ ଦହିଦହିକା ଲଟା ମାଡିଥାଏ । ବର୍ଷାଦିନେ ଏହା ନ ଥାଏ; କିନ୍ତୁ ଖରାଦିନେ ଏହି ଲତା ମାଡ଼ିଯାଏ । ପଥରରେ ଅନେକ ଛୋଟ ବଡ଼ ଗାତ ଅଛି । ଯେଉଁମାନେ ବଡ ପଥର ନିକଟକୁ ସନ୍ତରଣ କରି ଯାଆନ୍ତି ସେମାନେ ଏହି ଗାତରୁ ଗୋଟିଏ ଗାତ ସଫା କରି ଦହିଦହିକା ପତରରୁ ପୁଳାଏ ଛିଣ୍ଡାଇ ଖଣ୍ଡେ ପରିଷ୍କାର ପଥର ଉପରେ ଭଲଭାବେ ବାଟି ଗାମୁଛାରେ ଛାଣି ସେହି ଗାତରେ ପାଣି ପୂରାଇ ତାକୁ ରଖନ୍ତି । ସୂର୍ଯ୍ୟକିରଣ ପାଇ ତାହା ଶୀତଳିଆ ଯେଜ ପରି ଥଳ ଥଳ ହୋଇ ବସିଯାଏ । ତାକୁ ସେମାନେ ଆନନ୍ଦରେ ଖାଆନ୍ତି । ଲୋକେ କହନ୍ତି ଦହିଦହିକା ଦହି ଖାଇଲେ ପେଟ ଥଣ୍ଡା ରହେ ।

ରଘୁନାଥ ଓ ଘନଶ୍ୟାମ ନଦୀ କୂଳରେ ପହଞ୍ଚି ମହାନଦୀର ଆନନ୍ଦ ପ୍ରଦାୟକ ଦୃଶ୍ୟ ଦେଖିଲେ । ଆର୍ଦ୍ର ବସନ ପରିହିତ, ସଦ୍ୟସ୍ନାତ ବଣିଆ ଖଦାଲ ଆସି ଉପସ୍ଥିତ ହେଲା । ସେମାନଙ୍କୁ ଯଥାବିଧି ଅଭିବାଦନ କଲା । ରଘୁନାଥ ବହୁତ ଦିନ ହେଲା ସୁନ୍ଦରଙ୍କ ଘରକୁ ଯାଇ ନ ଥିଲେ । ତାହାର ବିବାହ ଘରର ଗୋଳମାଳ, କାରଣର ଘରର ମଙ୍ଗଳାମଙ୍ଗଳ ବିଷୟରେ ରଘୁନାଥ ଏବଂ ବଣିଆଙ୍କ ମଧ୍ୟରେ କଥୋପକଥନ ଚାଲିଲା । ଇତି ମଧ୍ୟରେ ଘନଶ୍ୟାମ ଧୀରେ ଧୀରେ ସେମାନଙ୍କ ନିକଟରୁ ଅଜ୍ଞାତରେ ଖସିଯାଇ ପାଣି କୂଳକୁ ଆସିଲେ ।

ବଣିଆ ବଦାୟ ନେଇ ଚାଲି ଅସିଲା । ରଘୁନାଥ ବଣିଆକୁ କହିଲେ, ସେ ସନ୍ଧ୍ୟାରେ ତାଙ୍କ ଘରକୁ ଯିବେ । ଘନଶ୍ୟାମ ଉପସ୍ଥିତ ଅଛନ୍ତି ଭାବି କହିଲେ, ଘନ, ତେଲ ନ ଲଗାଇ ଦିନେ ଗାଧୋଇ ପଡ଼ିଲେ କ୍ଷତି କଣ ? ଉତ୍ତର ନ ପାଇ ପଛର ଆଡ଼କୁ ଅନାଇ ଦେଖିଲେ ଘନଶ୍ୟାମ ନାହାନ୍ତି । ନଦୀ ଆଡ଼କୁ ଅନାଇ ଦେଖିଲେ ଘନଶ୍ୟାମ ବଡ଼ ପଥର ଉପରେ ଠିଆ ହୋଇ ଫୁଲାଏ ପଥର ହାତରେ ଧରି ରଘୁନାଥଙ୍କୁ ଠାରୁ ଅଛନ୍ତି ।

ରଘୁନାଥ ପାହାଚ ଉତୁରି ନଦୀ କୂଳକୁ ଗଲେ ।

ନବୀନ ଘର ଭିତରକୁ ଗଲା । ପୁନର୍ବାର ଫେରି ଅସିଲା । ଦାଣ୍ଡ କବାଟକୁ ଆଉଜି ଛିଡ଼ା ହେଲା । ବିସ୍ମାରିତ ଚକ୍ଷୁରେ ସଡ଼କ ଆଡ଼କୁ ଅନାଇ ରହିଲା । ତାର ମନ ମଧ୍ୟରେ ଅଜାତର, ଅସ୍ପଷ୍ଟ ସ୍ମୃତି ଜାଗି ଉଠିଲା । ସେ ଭାବିଲା, ମୋ ମା କଣ ଇଏ ? ମା ପରି ତ ଦିଶୁନାହିଁ ? ମା ମୋର କିପରି ମୋର ମନେ ପଡ଼ୁନାହିଁ; ହେଲେ ଏ ତ କାହିଁକି ମୋ ମା ପରି ଦିଶୁନାହିଁ । ବାପା କହିଲା, ଏଇ ମୋର ମା । ସେ କଣ ମିଛରେ କହୁଛି ? ସେ ତ ମୋତେ କେବେ ମିଛ କହେ ନାହିଁ । ତେବେ ସେ କଣ ମୋର ମା ? ହଁ, ସେ ମୋର ମା ।

ମୋ ମା କାହାକୁ କିଛି କହୁନାହିଁ ।

ନବୀନ ଖଞ୍ଜା ଭିତରକୁ ଗଲା । ଯେଉଁ ଘରେ ତା'ର ମା ଅଛି, ସେଇ ଘରର କାନ୍ଥକୁ ଆଉଜି କିଛିକ୍ଷଣ ଠିଆ ହେଲା । ଧୀରେ ଧୀରେ ଯାଇ ସେହି ଘରର ଚଉକାଠ ଉପରେ ଠିଆ ହୋଇ ଘର ଭିତରକୁ ଅନାଇଲା । ଉଦ୍ଦେଶ୍ୟ, ତାର ମାଙ୍କୁ ଦେଖି ପାରିବ । କିନ୍ତୁ ସେ ସୁଯୋଗ ତାକୁ ମିଳିଲା ନାହିଁ । ମାର ଦୁଇ ପାଖରେ ଦୁଇ ଜଣ ସ୍ତ୍ରୀ ଲୋକ । ସେମାନଙ୍କର ନଜର ନବୀନ ଉପରେ ପଡ଼ିନାହିଁ । ଏଥିପାଇଁ ନିର୍ଭୟରେ କେତେ କଣ କହି ଯାଉଛନ୍ତି । ନବୀନ ସେ ସବୁ ଶୁଣିବାକୁ ମନ କଲା ନାହିଁ । ସେମାନଙ୍କର କଥା ଶୁଣିବାକୁ ସେ ଯାଇ ନଥିଲା । ଏମାନଙ୍କ କଥା ତା କାନରେ ପଡ଼ିଲା ।

ସାଧୁଆ ମା ନବୀନର ନା ଫୁସ୍ ଫୁସ୍ କରି ଦୁଇ ଥର ଉଚ୍ଚାରଣ କଲା । ନବୀନ ନିଜର ନାମ ଉଚ୍ଚାରିତ ହେବାର ଶୁଣି ଦ୍ୱାରବନ୍ଧ ଉପରେ ବସି ପଡ଼ିଲା ।

ସାଧୁଆ ମା ଓ ହାରି ପାନବଣୀ ତା ମା କାନରେ କଅଣ କହୁଛନ୍ତି । ସାଧୁଆ ମା ଓ ହାରି ପାନବଣୀ ପ୍ରଥମେ ଅସି ରଘୁନାଥଙ୍କର ନବ-ବିବାହିତା

ପତ୍ନୀଙ୍କ ନିକଟରେ ବସିଲେ । କେତେ ଅନ୍ତୁ କେଇଁତ ମାଇପେ ଆସି ଘରେ ରୁଣ୍ଡ ହୋଇଥିଲେ । ବୋହୂ ମୁହଁ ଦେଖିବେ । ତାଙ୍କ ଘରକୁ ତ ସେ ମୁରବୀ । ଆଉ ଯିଏ ଗୃହକର୍ତ୍ତ୍ରୀ ଅଛନ୍ତି ସେମାନେ ସେତେବେଳଣି ନୁହନ୍ତି । ଏତେ ଲୋକଙ୍କୁ ବୋହୂ ମୁହଁ ଦେଖାଇବ କିଏ ? ରଘୁନାଥଙ୍କ ସମ୍ପର୍କୀୟା କେହି ନାହାନ୍ତି ।

ମାଇପେ ଠିଆ ହୋଇ ଅଧୀର ହୋଇଗଲେ । ଜଣେ କହିଲା, ଅଗୋ, ବୋହୂ ମୁହଁ ତ କେହି ଦେଖାଇଲେ ନାହିଁ, ଆଉ ଠିଆ ହୋଇ ଲାଭ କଣ ? ଚାଲ ଗୋ ଯିବା । ବଡ଼ପଡ଼ାର ଦାମା ମାଇପର ମୁହଁ ଦେଖି ଆସିବା । ଅପା କହୁଥିଲେ, ଦାମା ମାଇପ ପରି ସୁନ୍ଦରୀ ଆଉ ଦୁନିଆରେ ନାହିଁ ନଥିବ । ଚାଲ ଗୋ ଯିବା ଚାଲ ।

ତାଙ୍କର କଥାରେ କେତେ ଜଣ ସ୍ତ୍ରୀ ବ୍ୟସ୍ତ ଭାବରେ ଉଠି ଚାଲିଯିବାକୁ ବସିଲେ ।

ସ୍ତ୍ରୀମାନେ ଭାବନ୍ତି ତାଙ୍କଠୁଁ ସୁନ୍ଦରୀ ଦୁନିଆରେ କେହି ନାହାନ୍ତି । ଯେତେବେଳେ ଦର୍ପଣ ଖଣ୍ଡିକ ଆଗରେ ରଖି ତେଲିଆ ଖଣ୍ଡିକରେ ଆଖି ନାକ ପୋଛୁ ଥାଆନ୍ତି, ଯେତେବେଳେ ଧାନଟାଏ ଧରି ଆଖି ପତାରୁ ବାଳ ଛିଣ୍ଡାଉ ଥାଆନ୍ତି, ସେତେବେଳେ ଭାବନ୍ତି ସେଇମାନେ ହିଁ ଦୁନିଆରେ ସବୁଠୁଁ ସୁନ୍ଦରୀ । ଯଦି କିଏ ତାଙ୍କ ଆଗରେ ଅନ୍ୟର ପ୍ରଶଂସା କରିବ ସେମାନେ ରାଗି ଉଠିବେ । ଆଉ ଯଦି କହିବ ସେଇମାନେ ହିଁ ସବୁଠୁ ସୁନ୍ଦରୀ ତେବେ ସେମାନେ ଖୁସି ହେବେ ।

ରଘୁନାଥଙ୍କର ନବ-ବିବାହିତା ପତ୍ନୀ ଦରିଦ୍ରର କନ୍ୟା ହେଲେ ମଧ୍ୟ ସବୁଠୁଁ ସୁନ୍ଦରୀ ବୋଲି ନିଜକୁ ମନେ କରୁଥିଲେ । ଯେତେବେଳେ ସ୍ତ୍ରୀ ଲୋକଟି କହିଲା ଦାମା ମାଇପ ପରି ସୁନ୍ଦରୀ ଆଉ ଦୁନିଆରେ ନଥିବ, ସେ ଭାବିଲେ, ମୋଠୁଁ ସୁନ୍ଦରୀ ? ଆମ ଗାଁରେ ତ ମୋଠୁ ସୁନ୍ଦରୀ ଆଉ କେହି ନାହାନ୍ତି ! ତେବେ ଏଠି କଣ ଅଛନ୍ତି ? ନା, ମୋ ପରି ଆଉ ସୁନ୍ଦରୀ ହେବ କିଏ ? ଏମାନେ ମୋ ମୁହଁ ଦେଖି ନାହାନ୍ତି ବୋଲି ସେପରି କହୁଛନ୍ତି ।

ରୁକ୍ମଣୀ ମୁଣ୍ଡରୁ ଓଢ଼ଣା କାଢ଼ି ସମସ୍ତଙ୍କୁ ନିଜର ମୁହଁଟି ଦେଖେଇବାକୁ ବସିଥିଲେ । ଠିକ୍ ସେହି ସମୟରେ ସାଧୁଆ ମା କହି ଉଠିଲା, ଅଗୋ, ତମମାନଙ୍କର ମନ କେମିତି ମ ? ବୋହୂ ଦେଖିବାକୁ ଆସିଲେ ଏମିତି କଣ ହେବ ? ତମ ଗୋଡ଼ରେ ଘୋଡ଼ା ବନ୍ଧା ହୋଇଛି କି ଲୋ ? ତାର ଶାଶୁ ନାହାନ୍ତି କି ନଣନ୍ଦ ନାହିଁ; କିଏ ପୁଣି ମୁହଁ କାଢ଼ି ଦେଖେଇ ଦେବ ? ସେ ତ ଆଉ ସବୁ ବୋହୂଙ୍କ ପରି ଅଲାଜୁକୀ କି ବେଢଙ୍ଗୀ ନୁହେଁ ଯେ, ନିଜ ମୁହଁରୁ ଓଢଣା କାଢ଼ି

ନଜେ ଦେଖେଇ ଦେଇ କହିବ ଦେଖ, ଦେଖ, "ମୋ ମୁହଁ ଦେଖ । ଯେମିତ ଝିଲରୁ ଆସିଛ, ସେମିତ ଘରର ନା ଡାକ । ଆଗୋ ପଳଉଛ କାହିଁକ ? ଆସ ଆସ, ମୁଁ ପଛକେ ମୁହଁ ଦେଖେଇ ଦେଉଛ ।

ରୁକ୍ମଣୀ ଓଢ଼ଣା ଭିତରୁ ବକ୍ସାକୁ ଭଲ ଭାବରେ ଦେଖି ନେଲେ । ତାଙ୍କର ମନକୁ ସାଧୁଆମା'ର କଥା ପାଇଲା । ସେ ତା ଉପରେ ଖୁସୀ ହୋଇଗଲେ । ଯାହାହେଉ, ମା ମଙ୍ଗଳାଙ୍କ ଦୟାରୁ ଏ ମୁଲକରେ ମଧ୍ୟ ଆମ ଗାଁର ବୁଢ଼ୀ ପରି ବୁଢ଼ୀଟିଏ ଅଛି । ସେ ଯଦି ପାଖରେ ରହିବାକୁ ମଞ୍ଜୁର କରେ ତେବେ ମୋର ଆଉ କିଛି ଚିନ୍ତା ନାହିଁ ।

ସାଧୁଆ ମା "ଆସିବନି ଗୋ ବୋହୂ" କହି ଧୀରେ ଧୀରେ ଉଠି ବୋହୂଙ୍କ ପାଖକୁ ଗଲା । ରୁକ୍ମଣୀଙ୍କୁ ଧରି ନୁଆଁଇ ନୁଆଁଇ ଦ୍ୱାରବନ୍ଧ ପାଖକୁ ଆଣିଲା । ନବୀନ ଏହା ଦେଖି ସେଠୁ ଉଠିଯାଇ ଦୂରରେ କବାଟ ପାଖରେ ଠିଆ ହୋଇ ମା ଆଡ଼କୁ ଅନାଇ ରହିଲା । ସାଧୁଆ ମା "ଦେଖ ଗୋ, ଲବଣୀ ପିତୁଳା ବୋହୂ ଦେଖ" କହି ରୁକ୍ମଣୀଙ୍କ ମୁଣ୍ଡରୁ ଲୁଗା କାଢ଼ି ଦେଲା । ସମସ୍ତେ ଥରେ ଥରେ ବୋହୂ ମୁହଁ ଦେଖିଲେ । ମନରେ ଶାନ୍ତି ଆସିଲା ନାହିଁ । କିଏ ଜଣେ ସ୍ତ୍ରୀ କହିଲା, ଆଗୋ, ମୁହଁଟା ଟେକି ଦେଲେ ସିନା ଦେଖିବେ ।

ସାଧୁଆ ମା ମୁହଁ ଟେକି ଦେଲା । ସମସ୍ତେ ଆଉ ଥରେ ଦେଖିଲେ । ନବୀନ ମଧ୍ୟ ଦେଖିଲା ।

ସମସ୍ତେ ପ୍ରଶଂସା କରି କହିଲେ, ବୋହୂଟି ବେଶ୍ ସୁନ୍ଦର ।

କେତେକ ସ୍ତ୍ରୀ ଭୁଟୁଭୁଟୁ ହୋଇ ଟିପ୍ପଣି ବାଢ଼ିଲେ, ଯେତେହେଲେ ଦାମା ଭଉଜା ପରି ନୁହେଁ ।

ଏତିକ ଅଉ କାହା କାନରେ ବାଜୁ ବା ନବାଜୁ ବୋହୂଙ୍କ କାନରେ ପଡ଼ିଲା । ମାଇପେ ଅଳଙ୍କାର ଦେଖିବାକୁ ଚାହିଁଲେ । ବାପଘରୁ କଣ ଆଣିଛ ଦେଖିବାକୁ କହିବାରୁ ସାଧୁଆ ମା ବେକରୁ, ମୁଣ୍ଡରୁ, ହାତରୁ, ଗୋଡ଼ରୁ ଲୁଗା କାଢ଼ି ଅଳଙ୍କାର ଦେଖାଇଦେଲା । କେତେ ସ୍ତ୍ରୀ ଛି ଛି କରି କହିଲେ, ଆଗୋ, କିଛି ଦେଇନାହିଁ; ଆଗ ଭଉଜା କେତେ କ'ଣ ଆଣିଥିଲା । ଦାମା ଭଉଜା ତ ଦୁଇ ସାରି ଗହଣା ଆଣିଛି । ସୁନା ସାରେ, ରୁପା ସାରେ । ଆଉ ଇଏ ତ କିଛି ଆଣିନାହିଁ ।

ଦାମା ଭଉଜାର ନା ଶୁଣି ରୁକ୍ମଣୀଙ୍କର ଯେତିକ ରାଗ ନ ହେଲା, ଆଗ ଭଉଜାର ନାମ ଶୁଣି ତାହିଁ ବଳି ରାଗ ହେଲା ।

ହାରି ପାନରାଣୀ କହୁଥିଲା, ହଇଲେ, କିଏ ବେଶୀ ଗହଣା ଆଣିଛି ? ଦାମୀ ଭରଜା ? ହଁ ଗୋ, କହିବ ନାହିଁ କାହିଁକି ? ଅଳଙ୍କାର ତ ଆଜି ଅଛି କାଲିକି ନଥିବ, ହେଲେ ରୂପ କୋଉଠୁ ଆସେ ଲୋ ? ଏ ଚନ୍ଦ୍ରଉଦିଆ ରୂପ ସେ କାହୁଁ ପାଇବ ?

ହାରି ପାନରାଣୀ ତୁନି ହେବାରୁ ସାଧୁଆ ମା ପାଟିକରି, ହାତ ହଲାଇ କହିଲା, ଆଗୋ, କିଏ କହିଲା ଆଗ ଭରଜା ବେଶୀ ଆଣିଥିଲା ବୋଲି ? ଆସୁ ତ ମୋ ଆଗକୁ, ତା ପାଟିରେ ଚଅଁ ନଦେଇ ଛାଡ଼ିଦେବ ? ମୁଁ ଦେଖି ନାହିଁ କି ଲୋ ? ଆର ଭରଜା ଦେଖିବାକୁ ଯିମିତି ଅପରଛନିଆ, ସିମିତି ଝିଅଣିଆ କରି ଦିଖଣ୍ଡ କଣ ଆଣିଥିଲା ।

ସାଧୁଆ ମା ଏବଂ ହାରି ପାନରାଣୀଙ୍କ କଥା ଶୁଣି ପରଘରର ବୋହୂମାନେ ନିଜ ନିଜ ସମ୍ମାନ ରଖି ଚାଲିଗଲେ । ସାଧୁଆ ମା ଏବଂ ହାରି ପାନରାଣୀ ଜୟଲାଭ କରି ପରସ୍ପର ମୁହଁକୁ ଅନାଅନି ହୋଇ ହସିଦେଲେ ।

ରୁକ୍ମଣୀ ଓଢ଼ଣା ତଳୁ ସେ ବୁଢ଼ୀଙ୍କ ଆଡ଼କୁ ଅନାଇଲେ । କବାଟକୁ ଆଉଜି ଠିଆ ହୋଇଥିବା ପିଲାକୁ ଚାହିଁଲେ । ସେ ନବୀନକୁ ଆଗରୁ ଚହ୍ନିଥିଲେ । ସେଥିନିମନ୍ତେ ତା ଉପରୁ ଆଖି ଫେରାଇ ଆଣିଥିଲେ । ଆଖି ଫେରାଇ ଆଣିଲାବେଳେ ପିଲାର ଆଖିରେ ଦୁଇବୁନ୍ଦା ଲୁହ ଦେଖିଲେ ।

**ସା**ଧୁଆ ମା ଓ ହାରି ପାନରାଣୀ ଯେ ଅତି ଭଲ ଲୋକ ଏହା ରୁକ୍ମଣୀଙ୍କୁ କେହି ନକହିଲେ ମଧ୍ୟ ସେ ବୁଝି ପାରିଲେ । କବାଟ କୋଣକୁ ପୁଣି ଘୁଞ୍ଚି ଆସିଲେ । ଭାବିଲେ, ଏଠି ତ ଏତେ ଲୋକ ଠିଆ ହୋଇଥିଲେ, ମୋ ପାଇଁ କାହାରି ମନ ତରଳିଲା ନାହିଁ । କେହି ମୋ ପକ୍ଷ ନେଇ କିଛି କହିଲେ ନାହିଁ । ଏକା ଦେଖିଲି ଏଇ ଦିଜଣଙ୍କୁ । କିଏ ଏମାନେ ? କଥା କେଡ଼େ ସୁନ୍ଦର । ଘର ଦେଶକୁ ଆସିଲେ ବି ଯଦି ଏମାନଙ୍କ ପରି ଲୋକ ପାଖରେ ରହନ୍ତି ମନରେ ଆଦୌ ବାଧା ହେବନି ସେମାନେ ସବୁ କଥା ଚଳାଇନେବେ ।

ରୁକ୍ମଣୀ ଅତି ଖୁସିରେ ପାନ ବଟା ଟାଣି ଆଣି ଦୋକତା ଦେଇ ଅଠ ଖଣ୍ଡ ପାନ ଭାଙ୍ଗିଲେ । ଚାରି ଚାରି ଖଣ୍ଡ ପ୍ରତ୍ୟେକଙ୍କ ହାତକୁ ବଢ଼ାଇଦେଲେ ।

ସାଧୁଆ ମା ଖୁସୀ ହୋଇ ଖଣ୍ଡେ ପାନ ଚୋବାଇଲା । ମସଲାରେ ପାଟି ମହ ମହ ହୋଇ ବାସିଲା । ପ୍ରଶଂସା କରି ହାରୁ ପାନବାଣୀ କହିଲା, ବଡ଼ ଘର ଝିଅଙ୍କ ବଡ଼ କଥା । ଯ୍ୟାଙ୍କର ଆଉ ଖରଜା ଏତେ କାହିଁ ଯେ କହିଲେ ନ ସରେ ।

ନବୀନ ବାଟଘର କବାଟ ପାଖରେ ଠିଆ ହୋଇଥିଲା । ବୋହୂ ଦେଖିବାକୁ ଯେଉଁମାନେ ଯାଇଥିଲେ, ସେମାନଙ୍କର ଦୃଷ୍ଟି ନବୀନ ଉପରେ ପଡ଼ିଥିଲା । କେହି କିଛି ନକହି ଚାଲିଗଲେ । ଯେତେବେଳେ ମୁକୁନ୍ଦ ସେ ବାଟେ ଗଲା, ନବୀନକୁ ଦେଖି ଥଟ୍ଟାରେ ହେଉ କି ଭଲରେ ହେଉ କହିଲା, କିରେ, ଯାଉନୁ ତୋ ମା ପାଖକୁ ।

ନବୀନ ସତ ମନେକରି ଆଖିରୁ ଲୁହ ଦି ବୁନ୍ଦା ପୋଛିପକାଇ ତାର ମା ଥିବା ଘରର ଦ୍ୱାରବନ୍ଧ ପର୍ଯ୍ୟନ୍ତ ଗଲା । ପରେ ଘର ଭିତରେ ପଶି ଏକାଥରେ ପହଞ୍ଚିଲା ରୁକ୍ମଣୀଙ୍କ ନିକଟରେ । ସାଧୁଆ ମା ଓ ହାରୁ ପାନବାଣୀ ଠରାଠରି ହୋଇ ହସିଲେ ।

ସାଧୁଆ ମା କହିଲା, ଦେଖ ଗୋ, ଏଇ ତମର ସାବତ ପୁଅ । ଟୋକାକୁ କଣ ଏମିତି ଦେଖିଛ ? ଇଯ୍ୟା ଗୁଣ ଶୁଣିଲେ କାବା ହେବ । ଦେଖିବାକୁ ସିନା ମଉନମୁହାଁ, ହେଲେ ତାର ଗୁଣ କଣ ଅଳପ କି ? ଠିକ୍ ତା ମା ପରି ।

ନବୀନ ରୁକ୍ମଣୀଙ୍କ ପିଠିରେ ଲଉ ହୋଇ ସାଧୁଆ ମା କୁ ବଲବଲ କରି ଅନାଇ ରହିଲା । ତାର କଥା ଶୁଣୁଥାଏ ।

ହାରୁ ପାନବାଣୀ କହିଲା, କିରେ ନବୀନ, ତୋତେ ଆଉ କୋଉଠି ଜାଗା ମିଳିଲା ନାହିଁ ? ଯାଉନୁ, ଦାଣ୍ଡରେ ଖେଳିବୁ ? ଆରେ, ତାଙ୍କ ପିଠିରୁ ଉଠୁ । ସେ ପିଲା ମଣିଷ, ତାଙ୍କୁ କାଟୁଥିବ ମ, ଉଠୁ ।

କାଟୁଥିବା ଶବ୍ଦଟିକୁ ନବୀନ ଭଲକରି ଜାଣେ । କାଳେ ତା ମା କୁ କାଟିବ, ସେ ପିଠିରୁ ଉଠି ଆସି ପାଖରେ ବସିଲା । ରୁକ୍ମଣୀ ଓଢ଼ଣା ଟେକି ତା ମୁହଁକୁ ଅନାଇଲେ । ରୁକ୍ମଣୀ ପରା ସାବତ ମା ! ନବୀନକୁ ଦେଖି ତ ତାଙ୍କର ରାଗ ହେଲା ନାହିଁ ? ନବୀନର ମୁହଁ ଦେଖି ସେ ଆନନ୍ଦିତ ହେଲେ । କିନ୍ତୁ ନୀରବରେ ପୂର୍ବପରି ବସିରହିଲେ ।

ନବୀନ ତା ମା କୁ ଭଲରୂପେ ଅନାଉଥାଏ । ଭାବୁଥାଏ, ଏଇ ତେବେ ମୋର ମା, ବାପା ଯାଙ୍କୁ ସ୍ୱର୍ଗରୁ ଆଣିଛି ମୋର ପାଇଁ । ତୁନିହୋଇ ବସିଛି କାହିଁକି ମ ?

ହାରି ପାନରାଣୀ ପୁଣି ଆରମ୍ଭକଲା, ହଇରେ ନବୀନ, ତୁ ସେଠାରେ କାହିଁକି ବସିଚୁ ? ଯାଉନୁ ଦାଣ୍ଡରେ ଖେଳିବୁ । ତାଙ୍କୁ ଗରମ ହେଉଥିବ ।

ସାଧୁଆ ମା ପୁଣି କହିଲା, ସତ କଥା ତାଙ୍କୁ ଗରମ ହେଉଥିବ, ପବନ ଛାଡ଼ଦେ ।

ନବୀନ କହିଲା, ମୁଁ କାହିଁକି ଦାଣ୍ଡକୁ ଯିବ, ତୁ ଯାଉନୁ ?

ସାଧୁଆ ମା ମୁଖ ବକଠାଲ କରି କହିଲା, ଦେଖ ଗୋ, ତମ ସାବତ ପୁଅକର ଗୁଣ । ତାକୁ କଣ ସେମିତ ଦେଖିଲ କମ ? ପିଲା ଖଣ୍ଡିକ ପକ୍କାଠାଏ । ଖାଲି ମଉନମୁହାଁ ବୋଲି ତାକୁ କଏ ଚିହ୍ନି ପାରନ୍ତନାହିଁ । ଦେଖୁନ ମୁଁ ବୁଢ଼ୀ ମାଇପିଠା, ମୋତେ ଚଢ଼ପକାଉଛି ।

ଚୁକୁଣୀ ଓଢ଼ଣା ଭିତରେ ହିକିଏ ହସିଲେ । ତାଙ୍କର ହସ ଅଉ କାଏ ଦେଖିଲେ ନାହିଁ କି ଜାଣିଲେ ନାହିଁ ।

ହାରି ପାନରାଣୀ ପୁଣି କହିଲା, କି ରେ ନବୀନ ତୁ ଯାଉନୁ, ତମ ଚଟ୍ଟିହାଲକୁ ଯାଉନୁ ପାଠ ପଢ଼ିବୁ । ରହଥା, ମାଷ୍ଟରଙ୍କୁ କହି ମାଡ଼ ଖୁଆଇବ ଏଠି କେମିତ ବସିଚୁ ।

ନବୀନ କହିଲା, ମୋ ମାଷ୍ଟର ମୋତେ କଣ ମାରେ କି ?

ହାରି କହିଲା, ତେବେ ତୋ ବାପାକୁ କହିବ, ନିଶ୍ଚେ କହିବ ।

ମୋ ବାପା କୁଆଡ଼େ ବୁଲି ଯାଇଛି ।

ହାରି କହିଲା, ତୋ ବାପା ଆସିଲେ କହିବ, ମାଡ଼ ଖୋଇବ ।

ନବୀନ କହିଲା, ମୋ ବାପା ମୋତେ ମାରେ ନାହିଁ । ମୁଁ ତ କାହା ପୋଥି ଚିରେନାହିଁ କି କାହାକୁ ଠେକା ପକାଇ ନାହିଁ, କାହା ବାଡ଼ରୁ ପିଜୁଳି ଚୋରି କରନାହିଁ । ମୁଁ ମୋ ପାଠ ପଢ଼ୁଛି । ବାପା ମୋତେ ମାରିବ କାହିଁକି ? ତୁ ଯାଉନୁ କହିବୁ ଯାଆ । ମୁଁ ତ ମୋ ମା ପାଖରେ ବସିଛି, ସେ ମୋତେ ଖାଇବାକୁ ଦେବ ।

ସାଧୁଆ ମା କହିଲା, ଦେଖ ଗୋ ଦେଖ, ତମ ସାବତ ପୁଅକୁ ଦେଖ, କପରି କଥା କହୁଛି । ପିଲା ବୋଲି ବକଚେ । ମଉନମୁହାଁ ବୋଲି ତାକୁ କିଏ ଚିହ୍ନି ପାରନ୍ତି ନାହିଁ ସିନା, ମୁଁ ତାକୁ ଭଲଭାବେ ଚିହ୍ନେ । ଠିକ୍ ତା ମା ପରି ତ । ମା ଯିମିତ ଅଇଗୁଣିଆ ଥିଲେ ଏ ବି ସେମିତକା ।

ନବୀନ ରୁକ୍ମଣୀଙ୍କୁ ତାର କୋମଳ ହାତରେ ହଲାଇ କହିଲା, ମା ମ୍- ସାଧୁଆ ମା କହୁଛି ମୁଁ ତୋ ପରିକା । ମା, ତୁ କାହିଁକି କିଛି କହୁନାହୁଁ ?

ହାରି କହିଲା, ହଇରେ ନବୀନ, ତୋ ମା କାହିଁ ? ତୋ ମା କଣ ସିଏ କି ?

ଆଉ କିଏ ? ସେ ତ ମୋ ମା ।

ସାଧୁଆ ମା ଆଗ ବଳିପଡ଼ି କହିଲା, ତୋ ମା କେବେଠୁଁ ମଲାଣି । ତୁ କାହିଁକି ଏହାଙ୍କୁ ମା ବୋଲି ଡାକୁଛୁ ? ହଇରେ, ତୋର ଏଡ଼େ ସାହସ ? କାହା ସଙ୍ଗେ କାହାକୁ ତୁଳନା କରୁଛୁ ? ଯାଉନୁ ତୁ ତୋର ମା ପାଖକୁ । ସେଇଠି ତ ଲୋଡ଼ା । ତା ହେଲେ ଏ ଲାବଣ୍ୟ ପ୍ରତିମାର ତ କିଛି ଚିନ୍ତା ନ ଥିବ । କେଡ଼େ ସୁଖରେ ଘର କରିବ ।

ନବୀନ କହିଲା, ଆଉ କେଉଁଠିକି ଯିବ ? ମୋ ମା ତ ମରିଥିଲା । ସେ ସ୍ୱର୍ଗରେ ଥିଲା, ତାକୁ ବାପା ଆଣିଛି । ହେଇଟି ତ ମୋ ମା ବସିଛି । ମୁଁ ଆଉ କେଉଁଠିକି ଯିବ ?

ହାରି କହିଲା, ସେ ତୋର ମା ନୁହେଁ, ତୁ ଏଠୁ ପଳା ଯା ।

ନବୀନ ଆଉ କେବେ ଏପରି କଠୋର ଉକ୍ତି ଶୁଣି ନ ଥିଲା । ସେ ଆଉ ସମ୍ଭାଳି ପାରିଲା ନାହିଁ । ତାର ଚକ୍ଷୁରେ ଦୁଇବିନ୍ଦୁ ଲୁହ ଦେଖାଗଲା । ସେ ରୁକ୍ମଣୀଙ୍କର ହାତର ଅଙ୍ଗୁଳି ଧରି ପଚାରିଲା, ତୁ ତେବେ ମୋର ମା ନୋହୁ ?

ରୁକ୍ମଣୀଙ୍କୁ ନିରୁତ୍ତର ଦେଖି ତାର ଚକ୍ଷୁରୁ ଲୋତକ ଧାର ଧାର ହୋଇ ଗଡ଼ିପଡ଼ିଲା । ସେ ଧୀରେ ଧୀରେ ଠିଆ ହୋଇ ରୁକ୍ମଣୀଙ୍କର ମୁଣ୍ଡ ଧରି କାଇଁ କାଇଁ ହୋଇ କାନ୍ଦି ଉଠିଲା । ପୁଣି ପଚାରିଲା, ଏଁ, ତୁ ମୋର ମା ନୋହୁ ?

ରୁକ୍ମଣୀ ନିରୁତ୍ତର ।

ନବୀନ ଦୁଇପାଦ ଆଗେଇ ଆସି ରୁକ୍ମଣୀଙ୍କ କାନ୍ଧ ଧରି ଉଚ୍ଚସ୍ୱରରେ କାନ୍ଦି ଉଠି ଭଗ୍ନ କଣ୍ଠରେ କହିଲା, ମା, ତୁ ମୋର ମା ନୋହୁ ?

ରୁକ୍ମଣୀ ନିରୁତ୍ତର ରହିଲେ ସତ; କିନ୍ତୁ ତାଙ୍କର ମନ କାହିଁକି କେଜାଣି ଗୋଳେଇ ଘାଣ୍ଟି ହେଲା । ତାଙ୍କର ଇଚ୍ଛା ହେଲା ସେ ଯାଇ ନବୀନକୁ କାଖେଇ ଆଣି ତାର ମୁଖ ଚୁମ୍ବନ କରି କହିବେ, ହଁ ମୁଁ ତୋର ମା । କିନ୍ତୁ ତାଙ୍କୁ ଲାଜ ଲାଗିଲା । ଯେଉଁ ଦୁଇଜଣ ତାଙ୍କ ପାଇଁ ଏତେ ଲଢ଼ୁଛନ୍ତି, ସେମାନେ ଆଗରେ ବସିଛନ୍ତି । ତାଙ୍କୁ ଲାଜ ଦେଇ ସେ କିପରି ନବୀନକୁ ଡାକିବ ?

ନବୀନ ଘରୁ ବାହାର ଦ୍ୱାରବନ୍ଧ ପାଖରେ ଥରେ ଠିଆ ହୋଇ ଉଚ୍ଚ ସ୍ୱରରେ କାନ୍ଦି କାନ୍ଦି ରୁକ୍ମଣୀଙ୍କ ଅଡ଼କୁ ଅନାଇ ଶେଷଥର ପାଇଁ ପଚାରିଲା, "ତୁ ମୋର ମା ନୋହୁ ?

ନିରୁତ୍ତର ଦେଖି ଧୀରେ ଧୀରେ ଦାଣ୍ଡଅଡ଼େ ଚାଲିଗଲା ।

ରୁକ୍ମଣୀ ନବୀନର କଥା ଭାବି ଦୃଢ଼ଭାବେ ପ୍ରତିଜ୍ଞା କରିଥିଲେ ଯେ ଯଦି ନବୀନ ଅନ୍ତିପରେ ପଚାରେ ସେ ଉଠି ଯିବେ, କାଖକରି ଆଣିବେ ।

ନବୀନ ଡାକିଲା, ସେ କିନ୍ତୁ ଉଠିଲେ ନାହିଁ । ନବୀନ ଚାଲିଗଲା, ସେ ଉଠିଲେ ନବୀନକୁ କାଖକରି ଆଣିବାକୁ; କିନ୍ତୁ ନବୀନ ତ ନାହିଁ, ଚାଲିଗଲାଣି—

**ସା**ବିତ୍ରୀ ଯଦି ନିଜେ ଷଠୀ ଠାକୁରାଣୀ ହୋଇଥାଆନ୍ତେ ତେବେ ସିନା ପୁଅଟିଏ କୋଳକୁ ଆଣିଥାଆନ୍ତେ; କିନ୍ତୁ ସେ ତ ଠାକୁରାଣୀ ନୁହନ୍ତି । ତାଙ୍କର ଗୋଟିଏ କନ୍ୟା ହୋଇଛି, ବୁଢ଼ୀ ଶାଶୁ ଖପା ହୋଇଛନ୍ତି ।

ବଣିଆ ପଚାରିଲା, ବୁଢ଼ୀ ସାଆନ୍ତାଣୀ, ପୁଅ ନା ଝିଅ ?

ବୁଢ଼ୀ ମୁହଁ ଶୁଖାଇ କହିଲେ, ତୋ ମୁଣ୍ଡ ।

ବଣିଆ ଚୁପ୍ ରହିଲା । କହିବ କଣ ? ବୁଢ଼ୀ ପୁଣି କହିଲେ, ଅଲକ୍ଷଣୀ ବୋହୂଟା, ମୋର ସବୁ ସାଇଲା । ସମସ୍ତଙ୍କୁ ଖାଇ ପିଇ ମୋର ଘର ଚୂନାକଲା । ସେ ଡାଆଣୀ ପୁଣି ପୁଅ ଜନମ କରିବ ? ମୁଁ ସିନା ଖୁସି ହୋଇ ଦେଖିବାକୁ ଧାଇଁ ଅସିଥିଲି, ସ୍ୟା କଣ ମୁଁ ଆଗରୁ ଜାଣି ନ ଥିଲି କି ? ପୋଡ଼ପାଉ ତାଙ୍କ ଜନମ ଜାତକ । ଟିକିଏ ଆଶା ଥିଲା, ସେତକ ବି ଚୂଲିରେ ପଶିଲା ।

ବୁଢ଼ୀ ଦାଣ୍ଡକୁ ଉଠିଗଲେ ।

ବୁଢ଼ୀ ଚମାରୁଣୀ ଅନ୍ତୁଡ଼ିଶାଳର କର୍ମ ଶେଷ କରି ବୁଢ଼ୀଙ୍କୁ ବୁଝାଇବା ପାଇଁ ଦାଣ୍ଡକୁ ଗଲା ।

ସାବିତ୍ରୀ କହିଲେ, ପ୍ରକୃତ କଥା; ବୁଢ଼ୀ ଯାହା କହୁଛନ୍ତି ତା ଅକ୍ଷରେ ଅକ୍ଷରେ ସତ । କିଏ ଜାଣିଥିଲା ମୁଁ ଏଡ଼େ ଡାହାଣୀ ବୋଲି ? ଭଗବାନ ଯଦି ମୋତେ ସୁଦଶା ନ କରି କୁତ୍ସିତା କରିଥାଆନ୍ତେ ତେବେ ମୁଁ ଏଠାକୁ କାହିଁକି

ଆସିଥାଆନ୍ତି ? କାହିଁକି ଏ ଘରର ସମସ୍ତଙ୍କୁ ଖାଇଥାଆନ୍ତି ? ଶେଷରେ ସମସ୍ତଙ୍କର ଯେଉଁ ଚିକିକ ଅଂଶ ଥିଲା ତାକୁ ପୋଛି ପକାଇଥାଆନ୍ତି ? ହାରେ କପାଳ ! ମୁଁ ନ ମରି ରହିଛି ଯାହା । ପରଲୋକରେ ସେ କଣ କହୁଥିବେ ? ମୋତେ ଅଭିଶାପ ଦେଉଥିବେ ।

ନବଜାତ କନ୍ୟାଟି କୁଆଁ କୁଆଁ ହୋଇ କାନ୍ଦି ଉଠିଲା । ତାଙ୍କର ସବୁ ଭାବନା କୁଆଡ଼େ ଉଭେଇଗଲା । ସେ କନ୍ୟାଟିର ମୁହଁକୁ ଅନାଇଲେ । ଭାବିଲେ କନ୍ୟା ହୋଇଛି ବୋଲି ଶାଶୁ ଥରେ ହେଲେ ଅନାଇଲେ ନାହିଁ । ସୁନ୍ଦର ଦିଶୁଛି ତାର ମୁହଁଟା, କୁଳୁ କୁଳୁ ହୋଇ ଅନାଉଛି । କାନ ଦିଓଟି, ଆଖି ଭ୍ରୂଲତା ଏବଂ ନାକଟି ଠିକ୍ ତାର ବାପର ପରି ଦିଶୁଛି ।

ଦୁଇ ମାସ ଅତୀତ ହୋଇ ଗଲାଣି । କନ୍ୟାଟି ହସିବାକୁ ଆରମ୍ଭ କଲାଣି । ମା କିମ୍ବା ଅଈମା କୋଳରେ ଶୋଇ ଯଦି ହସିଦିଏ, ସେ ତାର ଛୋଟ ମୁହଁରେ ମୁହଁଟି ଲଗାଇ ଚୁମ୍ବନ ଦିଅନ୍ତି । ଶିଶୁ କନ୍ୟାର ମୁହଁରେ ହସ ଦେଖିଲେ ସାବିତ୍ରୀଙ୍କ ମୁହଁରେ ହସ ଉକୁଟିଉଠେ । ସେ ହାତରେ ଧରି କନ୍ୟାଟିକୁ ହଲାଇଦିଅନ୍ତି, ତା' ମୁହଁରେ ମୁହଁ ଲଗାଇ ଗେଲ କରନ୍ତି ।

ଏଥର ତ ସାବିତ୍ରୀ ଆତ୍ମହତ୍ୟା କରିବାକୁ ଥରେ ସୁଦ୍ଧା ମନେ କଲେନାହିଁ ।' ସେ ଭାବୁଛନ୍ତି, ଆଉ ଆତ୍ମହତ୍ୟାରେ ଲାଭ କଣ ? ଯେ ଯାଇଛି ସେ ତ ଆଉ ଫେରି ଆସି ଚାଣି ଓଟାରି ନେବ ନାହିଁ, ତେବେ ଆତ୍ମହତ୍ୟାରେ ପ୍ରୟୋଜନ କଣ ? ସଂସାରରେ ମୋ ପରି ଶହ ଶହ ପତିହୀନା ବିଧବା ନାରୀ ଅଛନ୍ତି, ସେମାନେ ତ ଆତ୍ମହତ୍ୟା କରୁନାହାନ୍ତି ? ମୁଁ ବା କାହିଁକି କରିବି ?

ବୁଢ଼ୀଙ୍କ ମୁହଁକୁ ଚାହିଁ ଚାହିଁ କନ୍ୟାଟି ହସିଦିଏ । ବୁଢ଼ୀ ପାକୁଆ ପାଟିରେ ଶିଶୁକୁ ଗେଲ କରି କହନ୍ତି, ହଁ ଲୋ, ତୁ ଥଟ୍ଟା ନ କରିବୁ ତ ଆଉ କିଏ କରିବ ? ଦେଖ ତ ଟୋକି ପାକୁଆ ପାଟିରେ କେତେ ହସୁଛି । ଆ, ତୋର ମୋର ବଉଳ ବସିବା । ତୋର ପାକୁଆ ପାଟିକୁ ମୋର ପାକୁଆ ପାଟି । ପୁଅଟିଏ ହୋଇଥାଆନ୍ତୁ ହେଲେ । ଏଁ, ଦେଖତ କିମିତି କିରି କିରି ହୋଇ ହସୁଛି । ଆଲୋ, ହସ ବନ୍ଦ କର । ହେଉଁସୀଟାଏ ହେବୁ କି ଲୋ ? ବାଛନ୍ଦ ପଡ଼ିଯିବୁ ଯେ. ମାଇକିନିଆ ଝିଅ ହୋଇ ଏତେ ହସନ୍ତି ? ଜ୍ୱାଇଁ ନେବ ନାଇ ମ ।

ଆଉ କେବେ ବୁଢ଼ୀ ଗେଲ କରୁ କରୁ କହିପକାନ୍ତି, ହଁ ଲୋ ହଁ, ତୁ ଝିଅଟିଏ ହେଲୁ ଭଲ ହେଲା । ତୁ ଆମର ଝିଅ ପୁଅ ସବୁ । ପୁଅଟିଏ ହୋଇଥିଲେ ସିଏ କହନ୍ତା ମୋର ନାତି, ଝିଅଟିଏ ହେଲୁ ସେ କହିବ ମୋର ନାତୁଣୀ । ତୁଳସୀ ମେର ଆଖି ପ୍ରତିଷ୍ଠା କଲୁ । ଏତେ ଦିନଯାଏ ଅନ୍ଧ ହୋଇଥିଲି ।

ଏଣେ ବୁଢ଼ୀ ନାତୁଣୀ ନିକଟରେ ବସି ତାକୁ ଗେଲ କରୁଛନ୍ତି । ଝିଅଟି ହସୁଛି । ସାବିତ୍ରୀ ଆସି ନିକଟରେ ଠିଆହେଲେ । ହାତରେ ବଇଠିକିଆ ଟାଟିଆରେ ଦୁଧ ଧରିଛନ୍ତି । କିଛିକ୍ଷଣ ଠିଆହେଲେ । ପରେ ନଇଁପଡ଼ି ଟାଟିଆ ଓ ଶାମୁକା ବୁଢ଼ୀଙ୍କ ଗୋଡ଼ ପାଖରେ ରଖିଦେଲେ ।

ବୁଢ଼ୀ ବୋହୂଙ୍କୁ ଥରେ ଘୃଣା ଚକ୍ଷୁରେ ଅନାଇଲେ । ଦଇବ କଣ କମ୍ ରହସ୍ୟ କରେ କି ? ଝିଅଟି ସେତିକିବେଳେ ଥାଁ କରି କାନ୍ଦିପକାଇଲା । ଦେଖ ବୁଢ଼ୀଙ୍କର ନାଟ ! ସେ କି ସ୍ଥିର ହେବା ଲୋକ ! ମେଘ ଘଡ଼ଘଡ଼ି ପରି ଗର୍ଜନ କରି କହିଲେ, ଏତେବେଳଯାଏ କୁଆଁଠା ହସୁଥିଲା, ଯେମିତି ଅଲକ୍ଷଣୀ, ପୋଡ଼ାମୁହିଁ, ଗାଡ଼ନଆଁ ପାଉଁଶ ଆସି ପହଞ୍ଚିଛି ଭେଁ କରି କାନ୍ଦିଉଠିଲା । ହଇ ଲୋ, ତୋ ପେଟରୁ ପୁଣି ଯିଏ ଜନମ ହୋଇଛି, ତା ଉପରେ କେମିତି ଆଖି ପକାଉଛୁ ମ ? ତୋ ଆଖି ଫୁଟିଯାଉ ଲୋ । ଯା, ଯା, ଝିଅ ପାଖରୁ ପଳା ।

ସାବିତ୍ରୀ ଚାଲିଗଲେ ।

କାଲେ ଦୁଧ ଉପରେ ସାବିତ୍ରୀଙ୍କର ଆଖି ପଡ଼ିଥିବ, ସେଥି ନିମନ୍ତେ ବୁଢ଼ୀ ଉଠିଯାଇ ତଳେ ପଡ଼ିଥିବା କଣ୍ଟା ଆଣି ଦୁଧରେ ପକାଇଲେ । ମାଇପେ କହନ୍ତି, ଦୁଧରେ କଣ୍ଟା ପଡ଼ିଥିଲେ ତହିଁରେ କାହାର ଦୃଷ୍ଟି ପଡ଼ିପାରେନାହିଁ ।

ବୁଢ଼ୀ ନିଜେ ସେ କଣ୍ଟାରେ ଅମ୍ଳ ଘୋଡ଼ୁଥିଲେ, ତାଙ୍କର ମନେ ନାହିଁ । ଦୁଧ ଗରମ ଥିବାରୁ କଣ୍ଟା ପଡ଼ିବା ସଙ୍ଗେ ସଙ୍ଗେ ଛିଣ୍ଡିଗଲା । ଏ କାଣ୍ଡ ଦେଖି ସେ ଆହୁରି ରାଗିଗଲେ । କ୍ରୋଧରେ ଡାକଲେ, ବୋହୂ ।

ସାବିତ୍ରୀ ନିକଟକୁ ଆସିଲେ । ବୁଢ଼ୀ ଅଙ୍ଗୁଳି ଟେକି କହିଲେ, ଦେଖି ମର ! କୁଆଁଠା ପାଇଁ ଦୁଧ ଟିକିଏ ଅଣାଇଥିଲି, ସେତିକ ବି ଛିଣ୍ଡିଗଲାଣି । ତୋ ଆଖି ଫୁଟିଯାଉ ଲୋ, ତୋ ଆଖି ଫୁଟିଯାଉ । ଜନମ କରିଛୁ ଯାହାକୁ ତାରି ପାଇଁ ଟିକିଏ ଦୁଧ ଆଣିଲି ଯେ ସେଥିରେ ପୁଣି ଆଶା ? କାହିଁକି ଲୋ ପୋଡ଼ାମୁହିଁ, ଯଦି ତୋର ଦୁଧ ଖାଇବାକୁ ଇଚ୍ଛା ହେଲା ତ ତୁ ଖାଇଲୁ ନାହିଁ ? ମୋ ଘରେ କଣ ଦୁଧ ନାହିଁ ? ଏଠା ଦୁହାଁଳୀ ଗାଈ । ଏବେ ନେ ଯାଆରୁ ଖାଇ ମର । ତୋ ପାଟି ଜଳିଯାଉ, ପୋଡ଼ିଯାଉ ।

ସାବିତ୍ରୀ ଦୁଧ ଛିଣ୍ଡିବାର କାରଣ ବୁଝି ନ ପାରି ଅବାକ୍ ହୋଇ ଠିଆ ହୋଇ ରହିଲେ । ନିମ୍ନକୁ ଦୃଷ୍ଟି ନିକ୍ଷେପ କଲେ ।

ବୃଦ୍ଧା ସାବିତ୍ରୀଙ୍କୁ ସମ୍ମୁଖରୁ ଚାଲି ନ ଯିବାର ଦେଖି ଦୁଧ ଟାଟିଆଟି ତାଙ୍କ ଉପରକୁ ଫିଙ୍ଗିଦେଲେ । କହିଲେ, ଏବେ ଖାଇ ମର । ସେ ଦାଣ୍ଡକୁ ଚାଲିଗଲେ ।

ଚାହିଁଥିଁଚି ତକ୍ତୁ ଉଠାଇଁ ସାବନ୍ତୀ ଧୋଇ ପକାଇଲେ । ହାଣ୍ଡିରୁ ଆଉ ଦୁଧ ଆଣି ଝିଅକୁ ପିଆଇ ବସିଲେ । ଝିଅ ସେତକ ସବୁ ପିଇଦେଲା । ଶୋଇପଡ଼ିଲା ।

ସାବନ୍ତୀ ଦେଖିଲେ ତା'ର ଗୋଡ଼ରେ ଗୋଟିଏ ପିମ୍ପୁଡ଼ି କାମୁଡ଼ିଦେଇ କେତେବେଳୁ ଚାଲିଗଲାଣି । ସେ ତା ଜାଣନ୍ତି ନାହିଁ । ସେଥିପାଇଁ ସେ ଜାଗାଟି ଫୁଲିଯାଇଛି । ସାବନ୍ତୀ ନଡ଼ିଆତେଲ ଆଣି ଫୁଲା ଜାଗାରେ ଲଗାଇଲେ । ଦଉଡ଼ିଆ ଖଟ ଉପରେ ଝିଅକୁ ଶୁଆଇଦେଇ ଅନ୍ୟ କାର୍ଯ୍ୟରେ ଚାଲିଗଲେ । ମନ ରହିଲା ଝିଅ ପାଖରେ ।

**ବ**ଣିଆ ସାବନ୍ତୀଙ୍କୁ ମା ପରି ଭକ୍ତି କରେ । ନିଜର ମା ନାହିଁ, ମାତୃସ୍ନେହ କଣ ସେ ଜାଣିବ କୁଆଡ଼ୁ ? ତଥାପି ସେ ଜାଣେ ସାବନ୍ତୀ ବେଳେ ବେଳେ ବଣୁର କଥା ଭାବନ୍ତି ।

ସ୍ୱାମୀଙ୍କର ମୃତ୍ୟୁ ପରେ ଚିନ୍ତା କରି କରି ତାଙ୍କର ଦେହ ଭାଙ୍ଗି ଯାଇଥିଲା । କେବଳ ହାଡ଼ ଦଖଣ୍ଡ ଉପରେ ଚମଡ଼ା ଘେରା ହୋଇଥିଲା । ମାଂସ ରକ୍ତ ସବୁ ଯାଇଥିଲା ଚିନ୍ତାରେ । ପ୍ରସବ ସମୟ ଆସିଲା । ତଥାପି ଦେହରେ କିଛି ନାହିଁ । ଯାହା ଥିଲା, ପ୍ରସବ ପରେ ତା'ହା ବି ଚାଲିଗଲା । ଫୁଙ୍କିଦେଲେ ଢଳିପଡ଼ିବେ । ଯେତେବେଳେ ସ୍ୱାସ୍ଥ୍ୟ ରହିଥିଲା, ସେ ସବଳା ଥିଲେ; ଏକା ଏକା ରନ୍ଧାବଢ଼ା-ଠାରୁ ଆରମ୍ଭ କରି ଘର ଲିପାପୋଛା, ବାସନ ମଜା ଇତ୍ୟାଦି କାମ ତୁଲାଇ ଦେଉଥିଲେ । ବର୍ତ୍ତମାନ ନୂଆ ଦେହ ଜଗିବେ କି କାମ କରିବେ ?

ସାବନ୍ତୀ ଭାବିଲେ, ଦେହରୁ କଣ ମିଳିବ ? ଝୁଅଟି ନାରଖାର ହେବ । ଯଦି ସ୍ନେହ ଗଳିପଡ଼ିଛି ବୁଢ଼ୀ ସକାଳୁ ସଞ୍ଜ ପର୍ଯ୍ୟନ୍ତ ଝୁଅ ପାଖରେ ବସିଥିବେ । ଯଦି ମନ ନାହିଁ, ତେବେ ଆଦୌ ଅନେଇବେ ନାହିଁ ।

ସାବନ୍ତୀ ଏତେ ଦିନର ବୋହୂ ହୋଇ ମଧ୍ୟ ବୁଢ଼ୀଙ୍କୁ କଥା କହିନାହାନ୍ତି । କହୁଥିଲେ ସିନା ନିଜର ଦୁଃଖ ଜଣାଇଥାନ୍ତେ । ଥରେ ଥରେ ଇଚ୍ଛା ହୁଏ କହିବେ । ପୁଣି ଭାବନ୍ତି, ମାନନ୍ତି ଲୋକ, କେତେବେଳେ ପାଟିରୁ କଣ ବାହାରିପଡ଼ିବ, ନକହିବା ଭଲ । ବଣିଆ ଚାଲାକ ପିଲା । ସାବନ୍ତୀ ତାକୁ କିଛି ନ କହିଲେ ମଧ୍ୟ ସେ ସବୁ ବୁଝିପାରେ । ସାବନ୍ତୀଙ୍କୁ ଘର କାମରେ ବେଳେ ବେଳେ ସାହାଯ୍ୟ କରେ ।

ବଣିଆ ଦିନେ ବୁଢ଼ୀ ସାଆନ୍ତାଣୀଙ୍କୁ କହିଲା, ସାଆନ୍ତାଣୀ, ମା ଦୁର୍ବଳ ହୋଇ ପଡ଼ିଛନ୍ତି, ଭିତରର କାମ ଧନ୍ଦା କରି ପାରୁନାହାନ୍ତି । ମୁଁ ହେଲେ ସାହାଯ୍ୟ କରନ୍ତି; କିନ୍ତୁ ବାହାରର କାମ କରୁ କରୁ ସମୟ ଚଳିଯାଉଛି । ଗୋଟିଏ ପିଲାକୁ ଯଦି ଘରେ ମାସେ ଦି ମାସ ପାଇଁ ରଖନ୍ତେ ତେବେ ଭଲ ହୁଅନ୍ତା । ଆଉ ଗୋଟିଏ କଥା ଶୁଣିଲଣି ସାଆନ୍ତାଣୀ । ଆମର ଯେଉଁ ଅମ୍ବ ଦି ଗଛ 'ଛୁଗୋଛୁଆ' ପାଖରେ ଅଛି ତାହା ଫଳରେ ଭାଙ୍ଗିପଡ଼ୁଛି । ଆମ ଗଛରେ ଯେତେ ଅମ୍ବ ଫଳିଛି କାହା ଗଛରେ ଆଉ ସେତେ ଫଳିନାହିଁ । ମୁଁ ସବୁ ଦିପହରରେ ଗଛ ମୂଳରେ ବସି ଜଗିଥାଏ । ଏଠିକାର ହିଂସ୍ର ଲୋକଙ୍କ କଥା । ବୁଛଠାରେ ଠେକା ମାରି ଜାଣନାହିଁ ଅମ୍ବ ଝାଡ଼ିଦେବେ । ସେଇଥିପାଇଁ କହୁଛି, ନୂକରଟିଏ ରଖ । ଘର କାମରେ ସାହାଯ୍ୟ କରିବ । ଅମ ଠିକା ଜୁଆକୁ ଧରିବ । ତମେ ନିଶ୍ଚିନ୍ତ ହୋଇ ହରି ନାମ କରିବ ।

ବୁଢ଼ୀ କହିଲେ, ହିଁ ହିଁ, ତୁ ଭାରି ଭଲ ପିଲା । ବଣିଆରେ, ତୋ କଥା ମୋ ମନକୁ ଆସିଲା । ବୁଢ଼ୀ ଲୋକ, କେତେବେଳେ କେଉଁ କଥା । ଏବେ ରାମ ନାମ ନନେଲେ ନେବ କେତେବେଳେ ? ନିଆଁଲଗା ଦଇବ, ନା, ନା, ଦଇବ କାହିଁକି ହେବ, ସେଇ ନିଆଁଲଗା ବୋହୂ ମୋର ସବୁ ମୁଖ ସାଇଲା । ହଇରେ, ପିଲାଟିଏ ଆଣିବାକୁ କହୁଛୁ ଯେ, ତୁ ଘରେ ଅଛୁ ବୋଲି ମୋର ଯୋଉ ଡର ତା କାହାକୁ କହିବି ? ଯେଉଁ ବୋହୂର ଆଖିରେ ସମସ୍ତେ ଗଲେ, ତା ଆଖି ଆଗକୁ ଆଉ ଗୋଟିଏ ପିଲାକୁ କପଟ ଆଣିବା ବତୁରି ବଳୁ ? ତୋ କପାଳ ଭଲ ବୋଲି ତୁ ତା ଆଖି ଆଗରେ ଚଳିଯାଉଛୁ । ଆଉ ଗୋଟିଏ ଛୁଆକୁ ମାସେ ଦିମାସ ରଖିବା ଯେ କାଲେ ଭଲ ମନ୍ଦ କଣ ହେବ । ଜାଣିଲୁ ନା, ବୁଢ଼ୀଦିନେ ମୋର ଅଧର୍ମ ହେବ । ଏତେଦିନ ଚଳିଗଲାଣି, ମାସେ ଦି ମାସ କଣ ସେମିତି ଚଳିଯିବ ନାହିଁ ?

ବଣିଆ ବୁଢ଼ୀଙ୍କର କଥାରେ ବିରକ୍ତ ହେଲା । ବୁଢ଼ୀ ସାବିତ୍ରୀଙ୍କୁ ତଣ୍ଟେଣି ବୋଲି କହିଲେ ବଣିଆର ରାଗ ହୁଏ । ଆଉ ଯଦି କିଏ କହୁଥାଆନ୍ତା, ସେ ଦୋସର କଥା । ଏ ହେଉଛନ୍ତି ବଡ଼ ସାନ୍ତାଣୀ । ତଥାପି ସେ କହିଲା, ବୁଝିଲଣି ସାନ୍ତାଣୀ, ମା ଅତି ଦୁର୍ବଳ ହୋଇ ପଡ଼ିଛନ୍ତି । ଦିନକୁ ଦିନ ଆହୁରି ଦୁର୍ବଳ ହୋଇଯିବେ । ସେ ଏବେ କୁଅଡ଼କୁ ହେବେ କହ । ତାଙ୍କର ଯେ କିଛି ଭଲ ମନ୍ଦ ନ ହେବ, ଏହା କିଏ କହି ପାରିବ ? ଆମ ଠିକ ଛିଅକୁ କିଏ ପାଳିବ ?

ବୁଢ଼ୀ ରାଗିଯାଇ କହିଲେ, ନୂକରଠାରୁ ତ ଦିମାକ୍ କମ୍ ନୁହେଁ । ହଇରେ, ମୋ ଘର କଥା ମୁଁ ଜାଣେନାହିଁ, ତୁ ବେଶୀ ଜାଣୁ ? ଯା ମୋ ଆଗରୁ । ମା, ମା, ଯାଙ୍କର ମା ଠାକୁରାଣୀ ? ଅଲକ୍ଷଣୀ, ଡାହାଣୀ ଅସୁରୁଣୀ ସବୁ ଖାଇଲା ।

ତାର ଭଲମନ୍ଦରେ କଣ ହେବ ? ହଉ, ଖରାପ ହେଉ । ମଲା ବେଳକୁ ହେଲେ ମୁଁ ଟିକିଏ ଶାନ୍ତିରେ ମରିବ । ସବୁ ଦୁଃଖ ଭୁଲିଯିବ ।

ବଣିଆ ଦୁଃଖରେ ମୁହଁ ଶୁଖାଇ ସେ ସ୍ଥାନରୁ ଚାଲିଗଲା । ଭାବିଲା, ହଁ, ସତକଥା, ଚାକର ଠୋକା ତ ! ଲୁଣିଆର କାନ୍ଥଆଉଜା କାହିଁକି ?

ଏତେ ଦିନ ହେଲା ରଘୁନାଥ କେଉଁଠି ଥିଲେ ? ଚାରିଦିନେ ଛ ଦିନେ ସେ ସୁନ୍ଦରଙ୍କ ଘରକୁ ଆସି ଘରର ଖବର ଅନ୍ତର ବୁଝୁଥିଲେ । ବଣିଆକୁ ଦୁଇ ଚାରିପଦ କହି କପର କଣ କାର୍ଯ୍ୟ କରିବାକୁ ହେବ ବତାଇଦେଇ ଯାଉଥିଲେ । ସାବିତ୍ରୀ ଗର୍ଭବତୀ ହୋଇଥିବାର ଶୁଣି ଆନନ୍ଦିତ ହୋଇ ପ୍ରକୃତ ଘଟଣା ବୁଝିବା ପାଇଁ ବୁଢ଼ୀ ପାଖକୁ ଧାଇଁ ଆସିଥିଲେ । ସାବିତ୍ରୀ କଷ୍ଟ ପାଉଛନ୍ତି ବୋଲି ଶୁଣି ସେ ନଆସିଲେ କାହିଁକି ? ବେଶ୍, ସେତେବେଳେ ନଆସିଲେ ନାହିଁ, କନ୍ୟା ଜନ୍ମ ପରେ ତ ପ୍ରସୂତୀ ଅଥବା କନ୍ୟାର ଭଲମନ୍ଦ ବୁଝିବାକୁ ଆସନ୍ତେ ? ସେ ଦିନେ ବଣିଆକୁ ଆସିବେ ବୋଲି କହିଥିଲେ । କାହିଁ, ଆସିଲେ ନାହିଁ ତ ?

ରଘୁନାଥଙ୍କ ପରି ହିତୈଷୀ ବନ୍ଧୁ କାହିଁକି ଅସୁନାହାନ୍ତି ଏ ବିଷୟରେ ବଣିଆ ଛଡ଼ା ସମସ୍ତେ ଭାବୁଛନ୍ତି । ସାବିତ୍ରୀ ଭାବିଲେ, ମିଥ୍ୟାପବାଦ ଯୁାଙ୍କ କାନରେ ପଡ଼ିଛି । ସେଥିପାଇଁ ଯିବା ଆସିବା ବନ୍ଦ କରିଦେଇଅଛନ୍ତି । ଦେହ ଅସୁସ୍ଥ ହୋଇଛି କି ? ଯଦି ନୂଆ ସ୍ତ୍ରୀ ମୋ ପରି ଡାଆଣୀ ହୋଇଥିବ, ତେବେ ସତ୍ୟାନାଶ ।

ନିଜର ଭାବନାକୁ ନିଜେ ତିରସ୍କାର କରନ୍ତି । ମୁଁ ପ୍ରକୃତରେ ଡାଆଣୀ । ମୋର କି ଅଧିକାର ଅଛି, ଅନ୍ୟମାନଙ୍କୁ ଡାହାଣୀ, ଅଲକ୍ଷଣୀ ବୋଲି ଭାବିବି ? ହେ ଭଗବାନ୍, ମୋତେ କ୍ଷମା କର । ତାଙ୍କୁ ଆନନ୍ଦରେ ରଖ । ସେ ସୁଖରେ ରହନ୍ତୁ । ତାଙ୍କର ନୂଆ ସ୍ତ୍ରୀ ଲକ୍ଷ୍ମୀ ସ୍ୱରୂପା ହେଉ ।

ବୁଢ଼ୀ ଭାବନ୍ତି, ସଂସାରରେ କିଏ କାହାର ? ସୁନ୍ଦର ଥିଲା ବୋଲି ଯା ଆସ କରୁଥିଲେ ସିନା, ଏବେ ଆଉ ଆସିବେ କାହିଁକି ? ଆଗେ ଚାରିଦିନେ ଛଦିନେ ଥରେ ଆସୁଥିଲେ, ସେତିକି ବନ୍ଦ । କୋଉଦିନ୍ତୁ କି, ବାହାଘର ଦିନ୍ରୁ ତ । ହଁ ହଁ, ବାହାଘର ଦିନୁ । ମୁଁ ଜାଣେ; ବାହା ହୋଇ ଏବ କାଳର ଲୋକମାନେ ଏକାଥରେ ବଦଳିଯାଉଅଛନ୍ତି । ଯା-ଆ-ଉ-ଉ-ନ୍ତୁ-ଉ. ଯାହାର କେହି ନାହିଁ, ତାର ଠାକୁରେ ଅଛନ୍ତି ।

ବଶିଆ ଭାବେ କଣ ? ବେଳେ ବେଳେ ରଘୁନାଥଙ୍କ ସଙ୍ଗେ ତାର ସାକ୍ଷାତ୍ ହୁଏ । ସେ ଦଣ୍ଡବତ କଲେ ରଘୁନାଥ ହସିଦଅନ୍ତି । ଘରର ଭଲ ମନ୍ଦ ପଚାରନ୍ତି । ବଶିଆ ଦେଖେ ତାଙ୍କ ମନରେ ପୂର୍ବପର ସୁଖ ନାହିଁ । ସବୁବେଳେ ସେ ଯେପରି କଣ ଭାବୁଛନ୍ତି, ଯେପରି କୌଣସି କାର୍ଯ୍ୟରେ ବ୍ୟସ୍ତ ଥିଲା ପରି ଜଣାଯାଉଛନ୍ତି । ଏ ସବୁର କାରଣ ସେ ବୁଝି ପାରେ ନାହିଁ । ଘରକୁ ଯିବାକୁ ଅନୁରୋଧ କରେନାହିଁ ।

ଦିନେ ଲଗଛିଆ ତୋଠା ପାଖରେ ଦେଖାହେବାରୁ ପଚାରିଥିଲେ, କି ରେ ବଶୁ, ଝିଅଟି କିପରି ହୋଇଛି ?

ବଶିଆ କହିଲା, ସୁନ୍ଦର ହୋଇଛି ଆଜ୍ଞା ।

ଭଲ ଅଛି ତ ?

ଆଜ୍ଞା ହଁ, ଭଲ ଅଛି । ଆଜିକାଲି ଖୁବ୍ ହସୁଛି ।

ମା ଆଉ ବୁଢ଼ୀ ?

ସମସ୍ତେ ଭଲ ଅଛନ୍ତି ।

ଝିଅଟିର ନାମ କଣ ଦିଆହୋଇଛି କିରେ ?

ବଶୁ ଦୁଃଖ ପ୍ରକାଶ କରି କହିଲା, କିଛି ନାହିଁ ।

କିଛି ନାହିଁ ? ଆଶ୍ଚର୍ଯ୍ୟ ହୋଇ ପଚାରିଲେ ରଘୁନାଥ ।

ତା ନାଁ ଦିଆହୋଇ ନାହିଁ ।

ତାକୁ କଣ ବୋଲି ଡାକୁଛ ?

ବାପ ମଲା ପରେ ଜନମ ହୋଇଛି ବୋଲି ବାରସିନ୍ଧି ହେଲା ନାହିଁ । ବୁଢ଼ୀ ମନାକଲେ । କହିଲେ ବାରସିନ୍ଧି ଗୋଟାଏ କଣ, ନାମରୁ କଣ ମିଳିବ ? ଭଗବାନ ତାକୁ ଅୟୁଷ ଦିଅନ୍ତୁ ।

ରଘୁନାଥ କହିଲେ, ସେଥିା ତ ଲୋଡ଼ା । ନାମରୁ କଣ ମିଳିବ ? ତେବେ ଗୋଟିଏ ଶ୍ରଦ୍ଧା ନାମ ଦେବା ଦରକାର ।

ବଶିଆ ହସ୍ତା-କରି କହିଲା, ହଁ ଆଜ୍ଞା, ମୁଁ ଛୋଟ ଘରର ପୁଅ; ମୋତେ ନା ଦେଇ ଆସେନାହିଁ । ମା କି ବୁଢ଼ୀ ସାନ୍ତାଣୀ କିଛି ଦେଇ ନାହାନ୍ତି । ଦବ କିଏ ? କିଛି ସମୟ ନୀରବ ରହି ପୁଣି କହିଲା, ଆପଣ ଯଦି ନାମ ବାଛି ଦିଅନ୍ତେ ତେବେ ହୁଅନ୍ତା । ହେଲେ ଏଡ଼େ ଭାଗ୍ୟ କଣ ଝିଅର ହେବ ନା ଆମର ହେବ ?

ରଘୁନାଥ କିଛି ନକହି ଚାଲିଗଲେ । ବଣିଆର ମନ ଆନନ୍ଦିତ ହେଲା । ସେ ଛୋଟିଆ ଗୋଟିଏ କଣ୍ଟା ଆମ୍ବ ଗୋଟାଇ ରଡ଼ ରଡ଼ କରି ଚୋବାଇଲା । ଖଟା ହେବାରୁ ମୁଖ ଭଙ୍ଗୀ କରି ଗଛ ମୂଳରେ ତୁନିହୋଇ ବସିପଡ଼ିଲା ।

**ସ**କାଳ ହେବାରୁ ବଣିଆ ବିଛଣା ଛାଡ଼ିଲା । ଆମ୍ବଗଛ ମୂଳକୁ ଯିବ ବୋଲି ଦାନ୍ତ ଘଷି ପୋଖରୀରୁ ଫେରି ଆସିଲା । ସାବିତ୍ରୀ ଅନେକ ଆଗରୁ ଉଠି ଟାଣି କାମ ସାରିଥିଲେ । ଗାମୁଛା ଖଣ୍ଡିକ ବେକରେ ପକାଇ ବଣିଆ ଡାକିଲା, ମା କବାଟ ଦିଅ, ମୁଁ ଆମ୍ବଗଛ ମୂଳକୁ ଯାଉଛି । ଫରଚା ହେଲାଣି, ଏଥର ଲୋକ ଆସିଯିବେ । ଯାହା ଗୋଟାଏ ଦିଟା ଆମ୍ବ ଝଡ଼ିଥିବ ସେତକ ଅକାରଣରେ ଯିବ !

ସାବିତ୍ରୀ ଘଷି ଠୋକେଇ ବୋଷ ଘରେ ଥୋଇ ପଦାକୁ ଆସିଲେ । ଦେଖିଲେ, ସେତେବେଳଯାଏ ବୁଢ଼ୀ ଉଠି ନାହାନ୍ତି । ଘର ଭିତରୁ ତାଙ୍କର ଅଳସ ଭାଙ୍ଗୁଥିବାର ଓହୋ ଶବଦ ଶୁଭୁଛି । ବଣିଆକୁ ଚାଲିଯାଉଥିବାର ଦେଖି ସାବିତ୍ରୀ ପଚାରିଲେ, ବଣୁ, କେତେବେଳେ ଫେରିବୁ ?

ବଣିଆ ମୁହଁ ଫେରାଇ ଉତ୍ତରଦେଲା, ଆସୁ ଆସୁ ଟିକିଏ ବେଳ ହୋଇଯିବ । ଏଣୁ ଯାଇ ଆମ୍ବ ଗୋଟାଇ ବସିବି । ଅନିରୁଦ୍ଧ ଗଣ୍ଡା ଆସିଲେ ତାକୁ ଗଛ ମୂଳରେ ବସାଇ ମୁଁ ଯିବି ଜଙ୍ଗଲକୁ କାଠ ଆଣିବାକୁ ।

ସାବିତ୍ରୀ କହିଲେ, ଏତେ ସକାଳୁ ନ ଗଲେ ଚଳିବ ନାହିଁ ?

ନାହିଁ ମା, ମୁଁ ତ ଏବେ ଜଙ୍ଗଲକୁ ଯାଉନି । ପ୍ରଥମେ ଆମ୍ବଗଛ ମୂଳକୁ ଯିବି ।

ଆସୁ ଆସୁ କେତେ ଡେରି ହେବ । ଅଖିଆ ଅପିଆ ଯିବୁ କିପରି ? ଦିଇଟା ଖାଇଦେଇ ଯାଇଥା ଯେ ନିଶ୍ଚିନ୍ତରେ କାମ କରୁଥିବୁ ।

ଡେରି ହୋଇଯିବ ମା, ଥାଉ, ଆସିଲେ ଖାଇବି । ନୋହିଲେ ଆମ୍ବ ଦିଟା ଉଜୁଡ଼ିଯିବ । ଏ ଛୋଟ ଆମ୍ବରେ ବେଶ୍ ଆମ୍ବୁଲ ହେଉଛି ।

ମୋ ସାନ ବୁଢ଼ା ମାନେ, ଦିଟା ପଖାଳ ଖାଇକରି ଯାଅ । କେତେବେଳ ଲାଗିବ ଯେ, —ଯାଏଁ ମୁଁ ବାଢ଼ି ଆଣେ ।

ସାବିତ୍ରୀ କାଁସାଟିଏ ପାଣି ପାଖ ଘରକୁ ଯିବା ସମୟରେ ଦାଣ୍ଡ କବାଟରେ ହାତ ମାରି କିଏ ଡାକିଲା, ବଣିଆ । ଆରି ଘରେ ବୁଢ଼ୀଙ୍କର "ହରି ହେ" ଶବ୍ଦ ଏବଂ ଝିଅର କାନ୍ଦଣା ସଙ୍ଗେ ସେ ଡାକଟି ମିଶିଯିବାରୁ ଆଗନ୍ତୁକ କିଏ ତାହା ସେ ସ୍ଥିର କରି ପାରିଲେନାହିଁ । କାନ ପାରିଲେ, କିଏ ଜଣେ ଡାକୁଛି, 'ବଣିଆ, ବଣିଆ ।'

ସାବିତ୍ରୀ ବଣିଆକୁ ଡାକି କହିଲେ, ଦେଖିଲୁ ବାପୁ, ଦାଣ୍ଡରେ କିଏ ଡାକୁଛି । ଏତେ ସକାଳୁ କିଏ କେବେ ଡାକେନି । ଭୂତ ନୁହେଁ ତ ? ମଣିଷ ରୂପ ଧରି ସେମାନେ ଡାକନ୍ତି ।

ସାବିତ୍ରୀଙ୍କର ମନେପଡ଼ିଲା, ତାଙ୍କ ପିଲାଦିନେ ଅଇମାଙ୍କଠାରୁ ଶୁଣିଥିବା କଥା । କହୁଥିଲେ, ଗୋଟିଏ ଗାଇଜରେ ଗୋଟିଏ ଲୋକକୁ ଭୂତ ତାର ସାଙ୍ଗ ବେଶ ଧରି ରାତି ଅଧରୁ ଉଠାଇ କାଠ କାଟିବା ଆଳରେ ଜଙ୍ଗଲକୁ ନେଇ ଗୋରୁ ହାଡ଼ରେ ପିଟି ପିଟି ଦରମରା କରିପକାଇଲା । ଆଜି ସେଇକଥା ତାଙ୍କର ମନେ ପଡ଼ିଗଲା । ତେଣୁ ସେ କବାଟ ଫିଟାଇବାକୁ ଦୋଦୋପାଞ୍ଚ ହେଲେ । କିନ୍ତୁ ଧୀରେ ଧୀରେ କିଳଣି ଫିଟାଇ କବାଟ ଦରମେଲା କରି ମୁଣ୍ଡ ପଦାକୁ କାଢ଼ି ଆଣାଇଲେ । ପ୍ରଥମେ ଲୋକଟିକୁ ଚିହ୍ନି ପାରିଲେ ନାହିଁ; କିନ୍ତୁ ନିରୀକ୍ଷଣ କରି ବୁଝିଲେ ସେ ରଘୁନାଥଙ୍କ ବ୍ୟତୀତ ଆଉ କେହି ନୁହନ୍ତି ।

ଲଜ୍ଜାରେ ମୁଣ୍ଡ ଭିତରକୁ ଆଣି କବାଟ ଭଲଭାବେ ମେଲା କରି ଖଞ୍ଜାକୁ ଗୁଞ୍ଜିଗଲେ । ବଣିଆକୁ କହିଲେ, ଆରେ ବାପୁ, ରଘୁବାବୁ ଆସିଛନ୍ତି ।

ବଣିଆ ରଘୁବାବୁଙ୍କୁ ପ୍ରଣାମ କରି ଘର ଭିତରକୁ ଆଣିଲା । ବୁଢ଼ୀ ଥିବା ଘର ପିଣ୍ଡାରେ ଖଣ୍ଡିଏ ସତରଞ୍ଜି ପକାଇଦେଲା । ରଘୁନାଥ କିଛି ସମୟ ବସିରହିଲେ । ଦୁଃଖ ପ୍ରକାଶ କଲେ ଯେ ସେ ନିଜେ ବହୁତ ଦିନ ହେଲା ଆସି ପାରିନାହାନ୍ତି । ସେ ଯେତେ ଦୁଃଖ ପ୍ରକାଶ କରିଥିଲେ, ପ୍ରକୃତରେ ତାର ସହସ୍ର ଗୁଣ ଦୁଃଖ ଜାତହେଲା ତାଙ୍କର ଅନ୍ତଃକରଣରେ । ବନ୍ଧୁଙ୍କର ମୃତ୍ୟୁ ଦିବସରୁ ଘର ବଣିଆ ଦ୍ୱାରା ଉତ୍ତମରୂପେ ଗୁଛିତ ହେଲେ ମଧ୍ୟ ପୂର୍ବର ସେ ସୌନ୍ଦର୍ଯ୍ୟ ଆଉ ନାହିଁ । ସୁନ୍ଦରଙ୍କ ସହିତ ସେହି ଆନନ୍ଦ, ସୌନ୍ଦର୍ଯ୍ୟ ସବୁ ତିରୋହିତ ହୋଇଯାଇଛି ।

ରଘୁନାଥଙ୍କ ମନରେ ବିଶେଷ ଦୁଃଖ ଜାତହେଲା ସାବିତ୍ରୀଙ୍କୁ ଦେଖି । ଯେତେବେଳେ ସୁନ୍ଦର ଥିଲେ ସେ ନିମନ୍ତ୍ରିତ ହୋଇ ଭୋଜନ ନିମନ୍ତେ ସେ ସ୍ଥାନକୁ ଆସିଛନ୍ତି । ଭୋଜନରେ ବସିଥିବା ବେଳେ ପରିବେଷଣରେ ବୁଦ୍ଧାଙ୍କୁ

ସାବିତ୍ରୀ ସାହାଯ୍ୟ କରନ୍ତି । ଫଳତଃ ସେ ଅନେକଥର ସାବିତ୍ରୀଙ୍କୁ ଦେଖିବାର ସୁଯୋଗ ପାଇଅଛନ୍ତି । ରଘୁନାଥ ତାଙ୍କ ଉପରେ ଆଖି ବୁଲେଇ ଆଣନ୍ତି । ସାବିତ୍ରୀଙ୍କ ରୂପକୁ ସେ ଅନ୍ୟ କାହା ସହିତ ତୁଳନା କରି ପାରନ୍ତି ନାହିଁ । କିନ୍ତୁ ଆଜି ସେ ରୂପ୍ କାହିଁ ? ଆଜି ସେ ସ୍ଫୁର୍ତ୍ତି କାହିଁ ? ଜଣକର ଅଭାବରୁ ଆଜି ତାଙ୍କର ଏ ଦଶା ।

ସାବିତ୍ରୀ ସେହି ଘରେ ବସିରହିଲେ । ବିଗତ ଦିନର କେତେ କଥା ତାଙ୍କର ମନେପଡ଼ିଲା । ବୁଢ଼ୀ ଅନ୍ୟ କାର୍ଯ୍ୟରେ ବ୍ୟସ୍ତଥିଲାବେଳେ ସ୍ୱାମୀ ନିମନ୍ତ୍ରିତ ରଘୁନାଥଙ୍କୁ ଗିଲାସେ ଜଳ ଦେବା ପାଇଁ ଡାକପକାନ୍ତି । ଟିକିଏ ଡେରି ହୋଇଗଲେ ସେ ସାବିତ୍ରୀଙ୍କ ଉପରେ ବିରକ୍ତ ହୁଅନ୍ତି, କିପରି ସେ ଓଢ଼ଣା ଟାଣି ପାଣି ଗିଲାସକ କାନ୍ଥ ଆଢୁଆଳରୁ ବଢ଼ାଇ ସେମାନଙ୍କ ନିକଟରେ ରଖିଦିଅନ୍ତି । ସ୍ୱାମୀ କେତେଥର ଅନୁରୋଧ କରିଛନ୍ତି, ସାବିତ୍ରୀ ନିଜେ ପରଷନ୍ତୁ । ସାବିତ୍ରୀ ଆଜ୍ଞା ପାଳନ କରିଛନ୍ତି ।

ଆଉ ଆଜି ! ପାନବଟାଟି ଆର ଘରେ ଥିବାରୁ ପାନ ଦିଖଣ୍ଡ ମଧ୍ୟ ଭାଙ୍ଗି ଦେଇ ପାରୁନାହାନ୍ତି । ଏହାର କାରଣ, ଲଜ୍ଜା । ରଘୁନାଥ ଇଆଡ଼କୁ ମୁହଁ କରି ବସିଛନ୍ତି । କିପରି ସେ ତାଙ୍କ ଆଗରେ ଅନ୍ୟ ଘରକୁ ଯିବେ ? ଭାବିଲେ, ସ୍ୱାମୀ ଥିଲାବେଳେ ସେ ଏପରି କୁଣ୍ଠିତ ହେଉ ନ ଥିଲେ, ଆଜି କାହିଁକି ?

ରଘୁନାଥ ଅନେକ ବେଳଯାଏ ବୁଢ଼ୀଆ ସହିତ ଗପସପ କଲେ । ଦୁଃଖ ସୁଖ କେତେ କଥା ପଡ଼ିଲା । ଏମାନଙ୍କ ଆଳାପରେ ବୁଢ଼ୀ ଘର ଭିତରୁ ଆସିଲେ । କହିଲେ, ଆଗୋ, ଏତେ ଦିନେ ଅପୂରୁବ କୁଆଡ଼େ ମ ?

ରଘୁନାଥ ଟିକିଏ ଲଜ୍ଜିତ ହୋଇ କହିଲେ, ଘରର କାମ ଧନ୍ଦାରେ ବ୍ୟସ୍ତ ଥିବାରୁ ଆସି ପାରୁନଥିଲି । ଆଜି ସମୟ ମିଳିବାରୁ ଆସିଛି ।

ହଉ ପୁଅ, ଟିକିଏ ଆସିଛ, ଭଲ କରିଛ । ଆମର ଆଉ କିଏ ଅଛି । ଘରେ ସମସ୍ତଙ୍କର ଦେହପାଆ ଭଲ ତ ?

ହଁ, ତମ କଲ୍ୟାଣରୁ ସବୁ ଭଲ ।

ବୋହୂଟି କେମିତି ? ଦେଖିବାକୁ ଯାଇଥାଆନ୍ତି ଯେ ପୁଅରେ ଗଦାଏ ବାଟ ଚାଲିକରି ଯିବାକୁ ସାହସ ହେଉନି । ବସି ବସି କରି ହେଲେ ଯାଆନ୍ତି, ବୋହୂଟାଙ୍କୁ ଏକା ଛାଡ଼ି କିପରି ଯିବି କହିଲୁ ପୁଅ । ବୋହୂଟି ଦେଖିବାକୁ କିମିତି, ବାହାଘର ଚାରିମାସ ହୋଇଯିବ ପରା ।

ରଘୁନାଥ ଉତ୍ତର ଦେଲେ ନାହିଁ । ତାଙ୍କର ମୁହଁ ନାଲ୍ ହୋଇଗଲା । ସେ ମୁହଁ ପୋତି ତଳକୁ ଅନାଇଲେ । ବଶିଆ ଉତ୍ତରଦେଲା, ଏ ବୁଢ଼ୀ ସାଆନ୍ତାଣୀ, ମୁଁ ଦିନେ ବୋହୂ ଦେଖିବାକୁ ଯାଇଥିଲି । ସାଆନ୍ତାଣୀ ଦେଖିବାକୁ ଅତି ସୁନ୍ଦର ।

ବୁଢ଼ୀ କଟମଟ କରି ଥରେ ବଶିଆକୁ ଅନାଇଲେ । ଚକ୍ଷୁ ଫେରାଇ ନାଇଁପଡ଼ି ପଚାରିଲେ, ହଇରେ ପୁଅ, ବୋହୂ ନବକୁ ଭଲ ପାଉଛି ତ ? ନବ ତାହାକୁ ଆଦର କରୁଛି କି ନାହିଁ ? ସକୁଅର ଛ ନବ ତୋ ସଙ୍ଗେ ଆସେ, ଆଜି କାହିଁ ଆସିନି ? ନଦୀ ଭାଙ୍ଗି ନ ଥିଲା କି ?

ରଘୁନାଥ କଣ ଉତ୍ତର ଦେବେ ସ୍ଥିର କରି ପାରିଲେ ନାହିଁ । ଯେଉଁଥିପାଇଁ ସେ ଆଜପର୍ଯ୍ୟନ୍ତ ସୁନ୍ଦରଙ୍କ ଘରକୁ ଆସୁ ନ ଥିଲେ, ଆଜି ସେଇଯା ଘଟିଲା । ସେ ପୂର୍ବରୁ ଭାବିଥିଲେ ବୁଢ଼ୀ ଏପରି ଗୋଟିଏ ପ୍ରଶ୍ନ ପଚାରିବେ । ଉତ୍ତର ଠିକ୍ କରି ପାରି ନ ଥିଲେ ବୋଲି ଆସୁ ନ ଥିଲେ । କେତେ ଦିନଯାଏ ନ ଆସନ୍ତେ ? କହିଲେ, ହଁ—ଅଁ — ।

ଉତ୍ତରରୁ ବୁଢ଼ୀ କିଛି ବୁଝି ପାରିଲେ ନାହିଁ । ସାବିତ୍ରୀ କିନ୍ତୁ ଅନୁମାନ କରି ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲେ ।

ବୁଢ଼ୀ ନୀରବ ହେବାରୁ ରଘୁନାଥ କନ୍ୟାଟିକୁ ଦେଖିବାକୁ ଇଚ୍ଛା ପ୍ରକାଶ କଲେ । କନ୍ୟାଟିକୁ ଆଣି ତାଙ୍କ କୋଳରେ ଦେବାରୁ ସେ ହାଲେ ସୁନାଖଡ଼ୁ ବାହାର କରି ପିନ୍ଧାଇଦେଇ ପଚାରିଲେ, ଝିଅର ନା କଣ ଦେଇଛ ?

ଆଜଯାଏ କିଛି ଦେଇନୁ । ନାଆଁରୁ କଣ ମିଳିବରେ ପୁଅ, ଭଗବାନ ତାକୁ ଆୟୁଷ ଦେଇଥାଆନ୍ତୁ । ସେଇଯା ଲୋଡ଼ା, ସୁରେଶ୍ୱରୀ ଠାକୁରାଣୀ ତାକୁ ଆଖି ଆଗରେ ରଖିଥାଆନ୍ତୁ । ମାଆ ତ ଡାଆଣୀ—

କଣ କହିବାକୁ ଯାଉଥିଲେ କହି ପାରିଲେ ନାହିଁ । ତେଣେ ସାବିତ୍ରୀଙ୍କ ଆଖିରୁ ଲୁହ ଖସିପଡ଼ିଲା । ଯେତେହେଲେ ବନ୍ଧୁବାନ୍ଧବ ଲୋକ, ତାଙ୍କ ଆଗରେ ବୋହୂର ଅବଗୁଣ କହିବେ କିପରି ? ବଶିଆ କଥାଟିକୁ ବାଁରେଇ ଦେଇ ପଚାରିଲା, ବୁଢ଼ୀ ସାଆନ୍ତାଣୀ ଝିଅର ନା ନ ଦେଲେ ତାକୁ ଆଉ କଣ ବୋଲି ଡାକିବା ? ରଘୁ ସାଆନ୍ତେ ଭଲ ନାଆଁଟିଏ ବାଛିଦିଅନ୍ତୁ ।

ବୁଢ଼ୀଙ୍କ ଆଖି ସୁନାଖଡ଼ୁ ଉପରେ ପଡ଼ି ନ ଥିଲା । ପଡ଼ିଯିବାରୁ ଆନନ୍ଦିତା ହୋଇ ବଶିଆ କଥାରେ ହଁ କରି ଉଚ୍ଚସ୍ୱରରେ କହିଲେ, ହଇ ଗୋ ବୋହୂ, ତମଦେଇ ପାନ ଦିଖଣ୍ଡ ହେଲା ନାହିଁ ? ପୁଅ କେତେବେଳୁ ବସିଲାଣି, ପାଟିରେ କିଛି ନାହିଁ, ପାନ ଭାଙ୍ଗି ଆଣିଦିଅ । ରଘୁନାଥଙ୍କ ଆଡ଼କୁ ମୁହଁ ଫେରାଇ କହିଲେ,

ହଁ ରେ ପୁଅ, ବାପ ଛେଉଣ୍ଡ, ତା ଉପରେ ଦୟା ଦେଖେଇଥିବା ସେ କଣ ତମର ଝିଅ ନୁହେଁ ? ତମେ ଗୋଟିଏ ସୁନ୍ଦର ନାମ ବାଛିଦିଅ ।

ବୁଢ଼ୀଙ୍କ ଆଦେଶ ପାଇ ସାବତ୍ରୀ ଅନିଚ୍ଛା ସତ୍ତ୍ୱେ ବାଧ୍ୟ ହୋଇ ଦେଖ ଘରୁ ନିକଟସ୍ଥ ଘରକୁ ଗଲେ । ପାନ ଭାଙ୍ଗି କମ୍ପିତ ପଦରେ କାନ୍ଥ କଡ଼େ କଡ଼େ ଆସି ବୁଢ଼ୀଙ୍କ ହାତକୁ ପାନ ବଢ଼ାଇଦେଲେ । ଫେରିଯିବା ସମୟରେ ଦାଣ୍ଡ ଦ୍ୱାରବନ୍ଧ ପାଖ କବାଟ ଅଢ଼ୁଆଳରେ ଜଣେ ସ୍ତ୍ରୀ ଲୋକକୁ ଠିଆ ହୋଇଥିବାର ଦେଖିଲେ । ତାକୁ ଠିକ୍ ଚହ୍ନି ପାରିଲେ ନାହିଁ । ମନରେ ସନ୍ଦେହ ହେଲା । କାହାକୁ କହିବେ, ଚାଲିଗଲେ ।

ରଘୁନାଥ କନ୍ୟାକୁ ଗେଲ କରୁ କରୁ କହିଲେ, କନ୍ୟାର ନା ଦେବା, ଅଶୋକଲତା । କେତେ ଲୋକଙ୍କର ଆଶା ଫଳିଛି । ମୁଁ ଶୁଣିଲି ଝିଅଟିଏ ହେଲା ବୋଲି ତମ ମନରେ କଷ୍ଟ ହୋଇଛି । ମନ କଷ୍ଟ କରି ଲାଭ ନାହିଁ । ସେଇ ତମର ଝିଅ ଆଉ ସେଇ ତୁମର ପୁଅ ।

ସମସ୍ତେ କହୁଥିଲେ ପୁଅ ହେବ, ସେଇ ଅନ୍ନପୂର୍ଣ୍ଣା ତ—

ରଘୁନାଥ କନ୍ୟାଟିକୁ ବୁଢ଼ୀଙ୍କୁ ଦେଇ କହିଲେ, ସୂର୍ଯ୍ୟ ଉଦୟ ହେବଣି, ମୁଁ ଯାଉଛି ।

ଆଉ କେବେ ତୁମ ପାଦ ଆମ ଘରେ ପଡ଼ିବରେ ପୁଅ ?

କେତେଦିନ ହେଲା ଆସି ପାରୁ ନ ଥିଲି ବିଶେଷ କାର୍ଯ୍ୟ ଥିଲା ବୋଲି । ସମୟ ପାଇଲେ ମଝିରେ ମଝିରେ ଆସୁଥିବି ଯେ ।

ରଘୁନାଥ ଦାଣ୍ଡପଟକୁ ଅଗେଇଗଲେ । କିଛି ଦୂରରେ ଦୁଇଜଣ ସ୍ତ୍ରୀ କଥାବାର୍ତ୍ତା ହୋଇ ଯାଉଥିବାର ଦେଖିଲେ ।

ଗରିବ ଲୋକଙ୍କର ତୋଟା ବାଡ଼ି ନ ଥାଏ । ସେମାନେ ଆମ୍ବ ଖାଇବେ କିପରି ? ଗରିବଙ୍କର ମୁକ୍ତି ତ ଜଙ୍ଗଲ ଅଛି । କଥାରେ ଅଛି, ମାଗୁଣୀ ଘରେ ପିଠା ବହୁତ । ଯା ଘରୁ ତା ଘରୁ ମାଗି ଜଣେ ଜଣେ ମହାଜନ ହୋଇଯାଆନ୍ତି । ଦୁଆରେ ଯଦି ଅଣାକୁ ତିନିଟା ଆମ୍ବ ବିକି ହେଉଥାଏ, ଏମାନେ ଦେବେ ପାଞ୍ଚଟା । ସାଧୁଆ ମା ବିଶୁଖା ଏପରି ଦୁଇବେଟା ଆମ୍ବ ଜମେଇଥିଲା । ସାଧୁଆ ଯଦି ଜାଣେ ଘରେ ରଖେଇ ଦେବ ନାହିଁ । ସେଥିପାଇଁ ଆମ୍ବ ସବୁ ହାଣ୍ଡି ପାଣିରେ

ଘରେ ଥାଏ । ସେ ଭଇସା ଏ ଅଧଲାଏ ଯାହା ଲୁଗୁଇ ଛପାଇ ବିକି କରେ ସେଥିରୁ ଅଧେ ନିଜ ଅଣ୍ଟାରେ ଖୋସି ଅଉ ଅଧକ ସାଧୁଅ ମାକୁ ଦେଇଦିଏ । ଅଣା ଡ, ପୁଣି କେତେ କାହାକୁ ମାଗିବ ? ଥରେ ଦେବେ ଦଥର ଦେବେ; ତୃତୀୟଥର ବେଳକୁ ସଫା ମନାକରିଦେଇ କହିବେ, ଏଠି ତୋ ବାପାଘର ମାଲ ଜମା ହୋଇନାହିଁ । ଅନ୍ୟଆଡ଼େ ଚେଷ୍ଟା କର ।

ସାଧୁଅ ମା ଏବଂ ହାଗ ପାନଗ୍ରଣୀଙ୍କର ଠିକ୍ ତାହାହିଁ ଘଟିଛି । ଆଉ କାହାକୁ ମୁହଁ ଖୋଲି ପଦେ ମାଗିବାକୁ ଇଛା ହେଉନାହିଁ । କିନ୍ତୁ ନମାଗିଲେ ଅଣ୍ଟାକୁ ହାତ ଯାଉନାହିଁ । ସାଧୁଅ ମାର ବେଶୀ ବୁଦ୍ଧି । ସେ ଦିନେ ଖୁବ ଚିନ୍ତା କହିଲା, ଅଲୋ, ନେଇ ଅଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ ।

ସେଦିନ ବଡ଼ ଭୋର୍ରୁ ଉଠି ସାଧୁଅ ମା ହାଗ ପାନଗ୍ରଣୀ ସହିତ ଛଗଛଆ ଆଡେ ଗଲେ । ଉଦ୍ଦେଶ୍ୟ, ଅନ୍ଧାରୁ ଗଲେ କେହି ଲୋକ ନଥିବେ; ତଳେ ଯାହା ପଡ଼ିଥିବ, ସେତକ ସହଜରେ ଗୋଟାଇହେବ । ଯଦି ପଡ଼ିନଥାଏ, ତେବେ, ହାଗ ପାନଗ୍ରଣୀର ହାତ ଟୁବ୍ ସଲଖ । ସେଦିନ ଗୋଟାଏ ଠେକାରେ ଅଧଗଣ୍ଡା ଆମ୍ବ ଝାଡ଼ିଦେଇଥିଲା ।

ଆସୁ ଆସୁ ଦୂରରୁ ରଘୁନାଥଙ୍କୁ ସୁନ୍ଦରଙ୍କ ଘରୁ ଆସୁଥିବାର ଦେଖିଲେ । ଦୁହେଁ ଠଗଠଗ ହେଲେ । ଜଣେ ଅଉ ଜଣକ କାନରେ କଣ କହିଦେଲା; ଉଭୟେ ଦ୍ରୁତ ପଦରେ ଗଲେ । ଯେତେବେଳେ ସାବିତ୍ରୀ କବାଟ ପିଟାଇ ମୁଣ୍ଡ ପଦାକୁ କାଢ଼ି କିଏ ବୋଲି ଅନାଉଥିଲେ, ହାଗ ପାନଗ୍ରଣୀର ନଜର ପଡ଼ିଗଲା । ସେ ଗଳିର ଗୋଟିଏ ଘର ଉହାଡ଼ରେ ଲୁଚି ଦେଖୁଥାଏ । କେତେବେଳ ପରେ ବଣିଆ ଆସି ରଘୁନାଥଙ୍କୁ ଘର ଭିତରକୁ ନେଲା । ସାଧୁଅ ମା କହିଲା, ଅଲୋ, ଜାଣିଲୁ କି ମ, ଏଥିରେ ବଣିଆ ହେଉଛି ମଧ୍ୟସ୍ଥ ।

ଉଭୟେ ହସିଉଠିଲେ । କିନ୍ତୁ ଉଚ୍ଚସ୍ୱରରେ ନୁହେଁ । କାଳେ କିଏ ଶୁଣିଦେବ । ରଘୁନାଥ ଭିତରକୁ ଗଲେ । ସ୍ତ୍ରୀ ଦିଓଟି ଦରଜାର ଦୁଇ କବାଟ ଅଢୁଆଳରେ ଠିଆ ହୋଇ କଣ ଶୁଣିବାକୁ ଲାଗିଲେ । ଛାତି ଦାଉଁ ଦାଉଁ ପଡ଼ିଲା । କାଳେ ସେ ଦାଉଁ ଦାଉଁ କିଏ ଶୁଣିବ, ସେଇଥିପାଇଁ ଉଭୟେ ଛାତିକୁ ଚୁପି ଧରିଲେ । ଗୋଡ଼ ଥରିବାକୁ ଲାଗିଲା । କବାଟକୁ ଆଉଜି ଠିଆହେଲେ । ନିଶ୍ୱାସ ଘନ ଘନ ଯିବା ଆସିବା କଲା । ଚେଷ୍ଟା କଲେ ତାହା ଯେପରି ଧୀରେ ଧୀରେ ଯା ଆସ କରେ । କିଛି ସମୟ ସେହିପରି ଠିଆହୋଇ ରଘୁନାଥଙ୍କୁ ଫେରିବାର ଦେଖି ଭୁନ ହୋଇ ଖସି ଚାଲି । ହେଲେ ବଣିଆର ଆଖିରେ ଧୂଳି ପକାଇ ଚାଲିଯିବା ତାଙ୍କ ପକ୍ଷେ ସମ୍ଭବ ହେଲାନି ।

ହଁ ରେ ପୁଅ, ବାପ ଛେଉଣ୍ଡ, ତା ଉପରେ ଦୟା ଦେଖାଇବ । ସେ କଣ ତମର ଝିଅ ନୁହେଁ ? ତମେ ଗୋଟିଏ ସୁନ୍ଦର ନାମ ବାଛିଦିଅ ।

ବୃଦ୍ଧାଙ୍କ ଆଦେଶ ପାଇ ସାବନ୍ତୀ ଅନିଚ୍ଛା ସତ୍ତ୍ୱେ ବାଧ୍ୟ ହୋଇ ଖେଷ ଘରୁ ନିକଟସ୍ଥ ଘରକୁ ଗଲେ । ପାନ ଭର୍ତ୍ତି କମ୍ପିତ ପଦରେ କାନ୍ଥ କଡ଼େ କଡ଼େ ଆସି ବୃଦ୍ଧାଙ୍କ ହାତକୁ ପାନ ବଢାଇଦେଲେ । ଫେରିଯିବା ସମୟରେ ଦାଣ୍ଡ ଦ୍ୱାରବନ୍ଧ ପାଖ କବାଟ ଅଢ଼ୁଆଳରେ ଜଣେ ସ୍ତ୍ରୀ ଲୋକକୁ ଠିଆ ହୋଇଥିବାର ଦେଖିଲେ । ତାକୁ ଠିକ୍ ଚିହ୍ନି ପାରିଲେ ନାହିଁ । ମନରେ ସନ୍ଦେହ ହେଲା । କାହାକୁ କହିବେ, ଚାଲିଗଲେ ।

ରଘୁନାଥ କନ୍ୟାକୁ ଗେଲ କରୁ କରୁ କହିଲେ, କନ୍ୟାର ନା ଦେବା, ଅଶାଲତା । କେତେ ଲୋକଙ୍କର ଆଶା ଫଳିଛି । ମୁଁ ଶୁଣିଲି ଝିଅଟିଏ ହେଲା ବୋଲି ତମ ମନରେ କଷ୍ଟ ହୋଇଛି । ମନ କଷ୍ଟ କରି ଲାଭ ନାହିଁ । ସେଇ ତମର ଝିଅ ଆଉ ସେଇ ତୁମର ପୁଅ ।

ସମସ୍ତେ କହୁଥିଲେ ପୁଅ ହେବ, ସେଇ ଅଲକ୍ଷଣୀ ତ—

ରଘୁନାଥ କନ୍ୟାଟିକୁ ବୃଦ୍ଧାଙ୍କୁ ଦେଇ କହିଲେ, ସୂର୍ଯ୍ୟ ଉଦୟ ହେବେଣି, ମୁଁ ଯାଉଛି ।

ଆଉ କେବେ ତୁମ ପାଦ ଆମ ଘରେ ପଡ଼ିବରେ ପୁଅ ?

କେତେଦିନ ହେଲା ଆସି ପାରୁ ନ ଥିଲି ବିଶେଷ କାର୍ଯ୍ୟ ଥିଲା ବୋଲି । ସମୟ ପାଇଲେ ମଝିରେ ମଝିରେ ଆସୁଥିବି ଯେ ।

ରଘୁନାଥ ଦାଣ୍ଡପଟକୁ ଆଗେଇଗଲେ । କିଛି ଦୂରରେ ଦୁଇଜଣ ସ୍ତ୍ରୀ କଥାବାର୍ତ୍ତା ହୋଇ ଯାଉଥିବାର ଦେଖିଲେ ।

ଗରିବ ଲୋକଙ୍କର ତୋଟା ବାଡ଼ି ନ ଥାଏ । ସେମାନେ ଆମ୍ବ ଖାଇବେ କିପରି ? ଗରିବଙ୍କର ପୁଞ୍ଜି ତ ଜିଭ ଅଛି । କଥାରେ ଅଛି, ମାଗୁଣୀ ଘରେ ପିଠା ବହୁତ । ଯା ଘରୁ ତା ଘରୁ ମାଗି ଜଣେ ଜଣେ ମହାଜନ ହୋଇଯାଆନ୍ତି । ଦୁନିଆରେ ଯଦି ଅଣାକୁ ତିନିଟା ଆମ୍ବ ବିକି ହେଉଥାଏ, ଏମାନେ ଦେବେ ପାଞ୍ଚଟା । ସାଁଧୁଆ ମା ବଗିଚା ଏପରି ଦୁଇବେତା ଆମ୍ବ ଜମେଇଥିଲା । ସାଧୁଆ ଯଦି କାଣେ ଘରେ ରଖେଇ ଦେବ ନାହିଁ । ସେଥିପାଇଁ ଆମ୍ବ ସବୁ ହାଟ ପାନବାଣୀ

ଘରେ ଥାଏ । ସେ ଭଇସାଏ ଅଧଲାଏ ଯ ହା ଲୁଚାଇ ଛପାଇ ବନ୍ଦ କରେ ସେଥିରୁ ଅଧେ ନିଜ ଅଣ୍ଟାରେ ଖୋସି ଅଳ୍ପ ଅଧିକ ସାଧୁଆ ମାକୁ ଦେଇଦେଏ । ଅଣା ତ, ପୁଣି କେତେ କାହାକୁ ମାଗିବ ? ଥରେ ଦେବେ ଦଥର ଦେବେ; ତୃତୀୟ ଥର ଦେଲାକୁ ସଫା ମନାକରିଦେଇ କହିବେ, ଏଠି ତୋ ବାପାଘର ମାଲ ଜମା ହୋଇନାହିଁ । ଅନ୍ୟଆଡ଼େ ଚେଷ୍ଟା କର ।

ସାଧୁଆ ମା ଏବଂ ହାବ୍ଯ ପାନୱାଣୀଙ୍କର ଠିକ୍ ତାହାହିଁ ଘଟିଛି । ଆଜ କାହାକୁ ମୁହଁ ଖୋଲି ପଦେ ମାଗିବାକୁ ଇଚ୍ଛା ହେଉନାହିଁ । କିନ୍ତୁ ନମାଗିଲେ ଅଣ୍ଟାକୁ ହାତ ଯାଉନାହିଁ । ସାଧୁଆ ମାର ବେଶୀ ବୁଦ୍ଧି । ସେ ଦିନେ ଖୁବ ଚିନ୍ତା କହିଲା, ଆଲୋ, ନେଇ ଆଣି ଥୋଇ ଜାଣିଲେ ଚୋରି ବିଦ୍ୟା ଭଲ ।

ସେଦିନ ବଡ଼ ଭୋରରୁ ଉଠି ସାଧୁଆ ମା ହାବ୍ଯ ପାନୱାଣୀ ସହିତ ଛଗଛଆ ଆଡ଼େ ଗଲେ । ଉଦ୍ଦେଶ୍ୟ, ଅନ୍ଧାରୁ ଗଲେ କେହି ଲୋକ ନଥିବେ; ତଳେ ଯାହା ପଡ଼ିଥିବ, ସେତକ ସହଜରେ ଗୋଟାଇହେବ । ଯଦି ପଡ଼ିନଥାଏ, ତେବେ, ହାବ୍ଯ ପାନୱାଣୀର ହାତ ଖୁବ୍ ସଳଖ । ସେଦିନ ଗୋଟାଏ ଠେକାରେ ଅଧଗଣ୍ଡା ଆମ୍ବ ଝାଡ଼ିଦେଇଥିଲା ।

ଆସୁ ଆସୁ ଦୂରରୁ ରଘୁନାଥଙ୍କୁ ସୁନ୍ଦରଙ୍କ ଘରୁ ଆସୁଥିବାର ଦେଖିଲେ । ଦୁହେଁ ଠରାଠରି ହେଲେ । ଜଣେ ଆଉ ଜଣକ କାନରେ କଣ କହିଦେଲା; ଉଭୟେ ଦ୍ରୁତ ପଦରେ ଗଲେ । ଯେତେବେଳେ ସାବିତ୍ରୀ କବାଟ ଫିଟାଇ ମୁଣ୍ଡ ପଦାକୁ କାଢ଼ି କିଏ ବୋଲି ଅନାଉଥିଲେ, ହାବ୍ଯ ପାନୱାଣୀର ନଜର ପଡ଼ିଗଲା । ସେ ଗଳିର ଗୋଟିଏ ଘର ଉହାଡ଼ରେ ଲୁଚି ଦେଖୁଥାଏ । କେତେବେଳ ପରେ ବଣିଆ ଆସି ରଘୁନାଥଙ୍କୁ ଘର ଭିତରକୁ ନେଲା । ସାଧୁଆ ମା କହିଲା, ଆଲୋ, ଜାଣିଲୁ କି ମ, ଏଥିରେ ବଣିଆ ହେଉଛି ମଧ୍ୟସ୍ଥ ।

ଉଭୟେ ହସିଉଠିଲେ । କିନ୍ତୁ ଉଚ୍ଚସ୍ୱରରେ ନୁହେଁ । କାଳେ କିଏ ଶୁଣିଦେବ । ରଘୁନାଥ ଭିତରକୁ ଗଲେ । ସ୍ତ୍ରୀ ଦୁଇଟି ଦରଜାର ଦୁଇ କବାଟ ଅଢୁଆଳରେ ଠିଆ ହୋଇ କଣ ଶୁଣିବାକୁ ଲାଗିଲେ । ଛାତି ଦାଉଁ ଦାଉଁ ପଡ଼ୁଛି । କାଳେ ସେ ଦାଉଁ ଦାଉଁ କିଏ ଶୁଣିବ, ସେଇଥିପାଇଁ ଉଭୟେ ଛାତିକୁ ଚିପି ଧରିଲେ । ଗୋଡ଼ ଥରିବାକୁ ଲାଗିଲା । କବାଟକୁ ଆଉଜି ଠିଆହେଲେ । ନିଶ୍ୱାସ ଘନ ଘନ ଯିବା ଆସିବା କଲା । ଚେଷ୍ଟା କଲେ ତାହା ଯେପରି ଧୀରେ ଧୀରେ ଯା ଆସ କରେ । କିଛି ସମୟ ସେହିପରି ଠିଆହୋଇ ରଘୁନାଥଙ୍କୁ ଫେରିବାର ଦେଖି ତୁନି ହୋଇ ଖସି ଚାଲ୍ । ହେଲେ ବଣିଆର ଆଖିରେ ଧୂଳି ପକାଇ ଚାଲିଯିବା ତାଙ୍କ ପକ୍ଷେ ସମ୍ଭବ ହେଲାନି ।

ରଘୁନାଥଙ୍କଠାରୁ ବିଦାୟ ଗ୍ରହଣ କରି ବଣିଆଁ ଅଣିଆ ଅପିଆ ଧାଇଁ ଦୂରରେ ଯାଉଥିବା ସ୍ତ୍ରୀ ଲୋକ ଦୁଇଜଣ ପଛରେ ଲାଗିଗଲା । ସେମାନଙ୍କ ପଛରେ ଥାଇ ଚୁପ୍ ହୋଇ ତାଙ୍କ କଥାବାର୍ତ୍ତା ଶୁଣିବାକୁ ଲାଗିଲା ।

ସାଧୁଆ ମା ଥରେ ଦିଥର ଗଳା ସାଫ୍ କରି କହିଲା, ଜାଣିଲୁ ଲୋ ଅପା ଆମେ ଯାହା କହୁଥିଲେ ସେଇଆ । ହେଲେ ଏଥିରେ ଯେ ବଣିଆର ହାତ ଅଛି, ମୁଁ ଜାଣିନଥିଲି । ନହେଲେ କି ଆମକୁ ସେଦିନ ହଡ଼ା ବଳଦ ପରି ବାସଙ୍ଗ ବାଡ଼ିରେ ପିଟିଥାଆନ୍ତା ?

ହାବି ପାନବାଣୀ ବାହାରୁ ଠେକାଟିଏ ଗୋଟାଇ ହାତରେ ଧରି ଏ ହାତରୁ ସେ ହାତକୁ କରୁ କରୁ କହିଲା, ଅଲୋ, କେମିତି ମ, ଛେଳି ଗୋବିନ୍ଦିଆ ବଇଁଶଠା ମ । ତୁ ଭାବୁଚୁ ଏଥିରେ କଣ ବୁଢ଼ୀ ନାହିଁ କି ? ବୁଢ଼ୀ ଜାଗି ଶୁଣି ସବୁ କରାଇଛନ୍ତି ମ । ଶୁଣିଲୁ ନାହିଁ କଣ କହିଲେ ।

ସାଧୁଆ ମା ପଚାରିଲା, କଣ ?

ହାବି ପାନବାଣୀ କହିଲା, କାନ ଦିଟା ଅଣ୍ଟାରେ ଖୋସିଥାଉ କି ଲୋ ? ବୁଢ଼ୀ ଟିକି ନାତୁଣୀକୁ ଦେଖାଇ କହିଲେ ଯେ ଇଏ କଣ ତୁମ ଝିଅ ନୁହେଁ କି ? କଥାର ମରମ ବୁଝିପାରିଲୁ ଟି ?

ସାଧୁଆ ମା କହିଲା, ରଘୁନାଥଙ୍କର ସେ ଯେବେ ଝିଅ ହୋଇ ନ ଥାନ୍ତା, ସୁନାଖଡ଼ୁ ଦେଇଥାଆନ୍ତେ କାହିଁକି ? କିଏ ଦେଖିବ ବୋଲି, ଦେଖିଲୁ ନା, କେଡ଼େ ବଡ଼ ସକାଳୁ ଆସିଛନ୍ତି ।

ହାବି ପାନବାଣୀ ଆଉ କଣ କହିବାକୁ ଯାଉଥିଲା, ହଠାତ୍ ପଛଆଡ଼କୁ ମୁହଁ ବୁଲାଇ ତୁନିହେଲା । ସାଧୁଆ ମା କୁ ଛାଡ଼ି ଶୀଘ୍ର ଶୀଘ୍ର ଆଗେଇଗଲା । ସାଧୁଆ ମା କାରଣ ବୁଝି ନପାରି ଡାକିଲା, ରହ ଲୋ ରହ, ତର ତର ହୋଇ ଗଲେ କଣ ବେଶୀ ଅମ୍ବ ଗୋଟାଇବୁ ? କଥା ନଶୁଣି ହାବି ଧାଇଁ ଧାଇଁ ଯିବାକୁ ଲାଗିଲା । କେବଳ ଥରେ ଥରେ ପଛକୁ ଫେରି ଚାହୁଁଥାଏ । ବଣିଆ ପଛରେ ଦଉଡ଼ୁଛି ପରା ।

ସାଧୁଆ ମା ପଛକୁ ଅନେଇଲା । ତାର ହାଲ୍କା ଶୁଖିଗଲା । ମୋ ବାପ ଲୋ ବୋଲି କହି ଦଉଡ଼ିଲା ଯେ ଯାଇ ଶିଳପୁଆ ଅମ୍ବଗଛ ପାଖରେ ପହଞ୍ଚିଲା ।

ବଣିଆ ଏମାନଙ୍କ କଥା ଭାବୁଥିଲା । କି ଦଣ୍ଡ ଦେଲେ ଏମାନଙ୍କର ଆଉ ପାଟି ଫିଟିବ ନାହିଁ । ଯେ ମାଡ଼କୁ ଡରେ ନାହିଁ ତାକୁ ଆଉ କଣ କରିବ ?

ସେଦିନ ପ୍ରତିଜ୍ଞା କରିଥିଲି ଏ ଦୁହିଁଙ୍କୁ ଖୁସି କରିବି । ନଗର ନାଉଥିଲି ଦିଠା ଧାଇଁ ଧାଇଁ ଚମ୍ପଟ୍ ଦେଲେ । ଅଛ ଯାଆନ୍ତୁ । ଆଉ ଦିନେ ହାତୁଡ଼ିରେ ଧଡ଼ିଲେ ବଗିଆ ହାତର କରାମତି ଭଲଭାବେ ବୁଝିବେ । ବଞ୍ଚିଥିବାଯାଏ ମନେପକାଉଥିବେ । ଅଖୋ ଧୋଉଥିବେ ଗୁଣ ଗାଉଥିବେ ।

ନବୀନ ଆଉ ପାଖକୁ ଆସେନାହିଁ । ପିଲାଙ୍କର ମନ ଥରେ ବାହୁଡ଼ିଲେ ତାହାକି ଆଉ ସହଜରେ ଫେରେ ? ସେମାନେ ଯାହା ବୁଝିଥିବେ ସେଇଯା ।

ସେଦିନ ନବୀନ ମା ମା ବୋଲି କେତେଥର ରୁକ୍ମିଣୀଙ୍କୁ ଡାକୁଥିଲା । ଭାବିଥିଲା, ରମା ମା ଯେପରି ରମାକୁ କୋଳ କରନ୍ତି ସେହିପରି ତାଙ୍କ ମାଁ ତାକୁ କୋଳ କରିବ । କିନ୍ତୁ ଫଳ ଯାହା ହୋଇଥିଲା, ତାହା ପାଠକଙ୍କୁ ଉତ୍ତମରୂପେ ଜଣା । ରୁକ୍ମିଣୀଙ୍କର ମନର ଭାବକୁ ସେ ବା କାହୁଁ ଜାଣିବ ?

ରୁକ୍ମିଣୀ ପ୍ରତିଜ୍ଞା କରିଥିଲେ, ଯଦି ନବୀନ ତାଙ୍କୁ ଆଉଥରେ ପଚାରେ, ସେ ଧାଇଁ ଆସି ତାକୁ କାଖ କରିବେ, ଆଉ କହିବେ, ହଁ ମୁଁ ତୋର ମା । ନବୀନ ଯଦି ଏତିକି ଜାଣିପାରିଥାନ୍ତା, ସେ ଥରେ କାହିଁକି ସହସ୍ର ଥର ପଚାରିବାକୁ ଟିକେ ମାତ୍ର କୁଣ୍ଠିତ ହୋଇ ନ ଥାନ୍ତା ।

ନବୀନ କାନ୍ଦି କାନ୍ଦି ଚାଲିଆସିବା ପରେ ରୁକ୍ମିଣୀଙ୍କ ମନ ଖରାପ ହେଲା । ସାଧୁଆ ମା ଓ ହାରା ପାନରାଣୀଙ୍କ ପରି ମନ୍ଥୀ ଯେଉଁଠି ଉପସ୍ଥିତ ମନ ଖରାପ ଭାବ କେତେବେଳଯାଏ ରହନ୍ତା ? ଜୀବନରେ ଏ ଦୁଇ ଜଣ କେତେ ଘର ଭଙ୍ଗାଇଛନ୍ତି ତାହାର କଳନା ନାହିଁ । ଏପରି ଘୃଣ୍ୟ କାର୍ଯ୍ୟରେ ଏମାନେ ଲିପ୍ତ ଥିଲେ ଯାହା ଜାଣିଲେ ଲୋକେ ଚମକି ଉଠିବେ । ଦୁଇଜଣଙ୍କ ମଧ୍ୟରେ ବନ୍ଧୁତା କିପରି ସ୍ଥାପିତ ହେଲା ତାହା ଅଜଣା । ଦିନା କେତେ ଯଦି ବନ୍ଧୁତା ଅଭେଦ୍ୟ ହୁଏ ଯେ ପାଣି ଗଳେ ନାହିଁ, ଦିନା କେତେ ଦୁହେଁ ପରସ୍ପରର ପରମ ଶତ୍ରୁ ହୋଇ ଉଠନ୍ତି । ଯେତେ କଜିଆ ଲାଗିଲେ ସୁଦ୍ଧା କେହି କେବେ ଅନ୍ୟ ଜଣକର ଗୋପନୀୟ କଥା କାହାକୁ କହନ୍ତି ନାହିଁ ।

ପଡ଼ାରେ ଯଦି ଦୁଇଜଣ ସ୍ତ୍ରୀଙ୍କର କଜିଆ ଲାଗେ ଏବଂ ସେଥିମଧ୍ୟରୁ ଜଣେ କଜିଆ କରିବାକୁ ଅପାରଗ, ଦୁଇଫଡ଼ା ଅଁଳ ଦେଇ ହାରା ପାନରାଣୀକୁ କଜିଆର କାରଣ ଜଣାଇଦେଲେ ସେ ଲଢ଼ିବାକୁ ସମ୍ମତ ହୁଏ । ହାରା ପାନରାଣୀ ସଙ୍ଗେ

ସମାନ ହେବାକୁ ସାଧୁଆ ମା ବ୍ୟତୀତ ଆଉ ଦୁନିଆରେ କେହି ନାହିଁ । ତେଣୁ ବାଧ୍ୟ ହୋଇ ଅନ୍ୟ ପକ୍ଷ ସାଧୁଆ ମାକୁ ନିମନ୍ତ୍ରଣ କରି ନିଏ ।' ସାଧୁଆ ମାର ଫିକ୍ ତଦାଖଣ୍ଡି ଠାକୁଆ ଅମ୍ବୁଲ ଅଓବା ପାମ୍ପଠି ଦକ୍ଷିଣି ଲଙ୍କା । ଦୁଇ ଘଣ୍ଟାଯାଏ ଲଢ଼ାଇ ପାଲି ଗ୍ଲେ ।

ଦୁଇ ଘଣ୍ଟା ପରେ ପୁଣି ଯେଉଁ କଥାକୁ ସେଇକଥା । ସାଧୁଆ ମାକୁ ହାସ୍ୟପାନସ୍ୱଣୀ ଆଦରରେ ଡାକେ, ଅଧା ଲୋ, ଆ ଲୋ ଯା ଲୋ । କେତେ କଜିଆପ୍ରିୟ ଦୁଷ୍ଟ ଲୋକ କେବଳ ଚଣ୍ଡିପାଲି ଶୁଣିବେ ବୋଲି ଉତ୍ସାହରେ ନିଜ ଭିତରେ କଜିଆ କରି ଏ ଦୁଇ ଜଣଙ୍କୁ ନିଯୋଜିତ କରି ଉଭୟ ହୋଇ ଅପେକ୍ଷା କରି ରହିଥାନ୍ତି ।' ପାଲି ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ବେଶ୍ ସାବାସ୍ ଠିକ୍ କହି ମୁରୁକି ହସି ତାଳି ମାରୁଥାଆନ୍ତି । କଜିଆ ଲାଗିଲେ ଏମାନଙ୍କର ଆନନ୍ଦ ହୁଏ । କେହି ଏ ଦୁଇଜଣଙ୍କୁ ମଶାଣି ଚଣ୍ଡୀ ବୋଲି କହୁଥାଆନ୍ତି । କାରଣ ଏମାନେ ମଶାଣି ଚଣ୍ଡୀ ପରି କେତେବେଳେ କଜିଆ କରୁଥାଆନ୍ତି, କେତେବେଳେ ବା ଏକାଠି ରହୁଥାଆନ୍ତି ।

ନବୀନ ଗ୍ଲଗଲା ପରେ ସାଧୁଆ ମା ରୁକ୍ମଣୀଙ୍କ ନିକଟକୁ ଧାଇଁ ଆସି କହିଲା,- ଆଗୋ, ଟୋକାଟାକୁ ଏମିତ ଦେଖିଲ କି, ବଡ଼ ଖଣ୍ଡେ ଅଁ । ମଉନାମୁହାଁ ବୋଲି ସିନା ତାକୁ କେହି ଠଉରେଇ ପାରନ୍ତି ନାହିଁ, ମାଠୁଁ ସବୁ ଗୁପ୍ତ ଅଣିଛି । ଛାତେଣି ଏତକ ହିଂସା, ଏତକ ବାଦ, ଗାଇ ବସିଲେ ଭାରତ ପରି ପୋଥି ହେବ । ଦୁନିଆରେ ଏତେ ପୁଅ ଦେଖିଛି, ହେଲେ ଇଯ୍ୟାପରି ବାଲୁଙ୍ଗା କେଉଁଠି ଦେଖିନାହିଁ । କିଛିକ୍ଷଣ ପରେ ହାସ୍ୟର ଗୋଡ଼ ହଲାଇଦେଇ କହିଲା, ଅଲୋ ଦେଖ୍,- ସାକ୍ଷାତ୍ ଦେବୀ ପ୍ରତିମା । ମୁଁ ଦୁନିଆପାକରେ ଯାଙ୍କପରି ସୁନ୍ଦର ବୋହୂଟାଏ କେଉଁଠି ଦେଖି ନାହିଁ । ତୁ କେଉଁଠି ଦେଖିଛୁ ନା ଦେଖିବୁ ?

ଅପା, ମାଇପେ କହୁଛନ୍ତି ଦାମା ଭାରିଯା କୁଆଡ଼େ ବେଶୀ ସୁନ୍ଦରୀ ।

ସାଧୁଆ ମା ଠେକିହୋଇ ବସି, ଜିଭଟା ଗୃଖଣ୍ଡେ ଲମ୍ବେଇ କହିଲା,- ଅ-ଅ-ଅ ଥୁ, ରଖ ତୋର ଦାମା ଭାରିଜାକୁ । କିଏ ପୁଣି ଏହା କହିବ ? କୋଉ ଗୁଣକୁ ସରି ବା ?

ହାସ୍ୟ ପାନସ୍ୱଣୀ କହିଲା, ହଁ, ସତ କହିଲୁ । ହଇ ଗୋ ଅପା, ଯାଙ୍କ ମାଙ୍କ ମନ କେମିତ ମ ? ଏଡ଼େ ସୁନ୍ଦର ଝିଅକୁ ବୁଡ଼େଇ ମାଇଲେ ।

ଏଁ, ବୁଡ଼େଇ ମାଇଲେ, କାହିଁକି ?

ନୁହେଁ କଣ ମ ? କେମିତି କଥା କହୁଛୁ ? ଜାଣି ଶୁଣି ଦୋବେଢ଼ ବର ହାତରେ ଦେଲେ । ଖାଲି ସେତିକି ହୋଇଥିଲେ ଗୋଟାଏ କଥା ହୋଇଥାଆନ୍ତା । ତହିଁରେ ପୁଣି ଗୋଟାଏ ସଉତୁଣୀ ପୁଅ । ସେ ଯଦି କୋଳର ପିଲା ହୋଇଥାଆନ୍ତା, ମା ପରି ମାନି ଚଳନ୍ତା । ଏଡ଼େ ପିଲାଟାଏ ସବୁ ଜାଣିଲାଣି, ସବୁ ଶିଖିଲାଣି । ତୁ କଣ ସଉତୁଣୀ ପୁଅଙ୍କ କଥା ଶୁଣିନୁ ? କେତେ ଭଲ ଘରର ବୋହୂ ନାରଖାର ହୋଇଛନ୍ତି, ଏଇ ବା କେତେ ? ସେଇଥିପାଇଁ କହୁଛି, ଜାଣି ଶୁଣି ବୁଡ଼େଇଦେଲେ ।

ଆଲୋ ହଁ, ତୁ ଯାହା କହୁଛୁ ସବୁ ସତ । ହେଲେ ତାଙ୍କର କି ଦୋଷ । ସେ ତ ଏତେ କଥା ଜାଣି ନ ଥିଲେ । ଲୋକଙ୍କ କଥାରେ ଭୁଲିଗଲେ ।

ଏମାନଙ୍କର କଥାବାର୍ତ୍ତା ଶୁଣି ରୁକ୍ମଣୀ ଯତ୍‌ପରୋନାସ୍ତି ଆନନ୍ଦିତା ହେଲେ । ସେ ପୂର୍ବରୁ ଜାଣିଥିଲେ ପର ଘରକୁ ଆସିଲେ ସମସ୍ତେ ପର । କିନ୍ତୁ ପର ଘରେ ଯେ ଆତ୍ମୀୟଙ୍କଠାରୁ ବଳି ଅଧିକ ଶୁଭାକାଂକ୍ଷୀ ଅଛନ୍ତି ଏହା ସେ ସ୍ୱପ୍ନରେ ଭାବି ନ ଥିଲେ । ଦୋବେଢ଼ ବରର ହାତ ଧରି ମନରେ ଯେତେ ଦୁଃଖ ଥିଲା ଦୁହିଁଙ୍କର କଥାରେ ତାହା ଶତଗୁଣ ବଢ଼ିଗଲା । ନବୀନ ପାଇଁ ଯେ ତାଙ୍କୁ ଜୀବନରେ କଷ୍ଟ ସହିବାକୁ ପଡ଼ିବ, ସେ ଏହା ବୁଝି ପାରିଲେ । ମନରେ ଆଶା ହେଲା ଯେ ଏ ଦୁଇଜଣ ସ୍ତ୍ରୀ କେବଳ ବାକ୍ୟବୀର ନୁହନ୍ତି, ଯାହା କୁହନ୍ତି ତାହା କରନ୍ତି ମଧ୍ୟ ।

ସେ ଭାବିଲେ, ଏମାନଙ୍କର ଉପଦେଶ ଗ୍ରହଣ କଲେ ତାଙ୍କର କୌଣସି ଦୁଃଖ ରହିବ ନାହିଁ । ଉପଦେଶ ଗ୍ରହଣ କରିବେ କିପରି ? ସେ ତ ଏମାନଙ୍କୁ କଥା କହୁନାହାନ୍ତି, ପଚାରିବେ କିପରି ?

ଭାବିଲେ ନିଜେ କଥା କହିପକାଇବେ । ଯେଉଁ ସ୍ତ୍ରୀଟି ସବୁବେଳେ ତାଙ୍କର ପଟ ନେଇ କଥା କହୁଛି ତା ହାତକୁ ଧରି ତାକୁ ଧର୍ମର ମା କରିବେ ।

ମୁଣ୍ଡର ଓଢ଼ଣାଟି ଘୁଞ୍ଚାଇ ଦୀର୍ଘଶ୍ୱାସ ତ୍ୟାଗ କଲେ । ତାଙ୍କ ମନ ମଧ୍ୟରେ ଜାଗି ଉଠିଲା ଗୋଟିଏ ପ୍ରଶ୍ନ, କଣ କହିବେ ? ବର୍ତ୍ତିମାନ ବେଳ ଆସିନାହିଁ ।

ସାଧୁଆ ମା ଓ ହାରି ଯାନରାଣୀ କଥୋପକଥନରେ ଲାଗିଗଲେ । ଝିଅ ମୁଣ୍ଡରେ ଖୋସାଟା କିଏ ବାନ୍ଧିଦେଇଛି ମ, ଆଲୋ ହାରି ଦେଖିଲୁ, ଓହ୍ଳାଣ ଅଡ଼କୁ ବଙ୍କା ହୋଇଛି । ମୁହଁଟି ଯେତିକି ସୁନ୍ଦର, ମୁଣ୍ଡଟି ସେତିକି ସୁନ୍ଦର । ତହିଁକି ଗଛେଇ ଖୋସା ପକାଇ ପାରିନାହିଁ । ନାଇଁ କି ମ ହାରି ?

ହଁ, ଖୋସାଟା ବଙ୍କା ହୋଇଛି । ତୋ ପରି ଖୋସା କିଏ ବାନ୍ଧିବ ମ ?' ଯନ୍ତ୍ର ବାନ୍ଧୁଥାଆନ୍ତେ ରାଇଜରେ ତୋତେ ଏତେ ଖୁସାମତ କରୁଥାଆନ୍ତେ କାହିଁକି ?

ସାଧୁଆ ମା ବାଧ୍ୟ ହୋଇ କହିଲା, ମୋ ହାତର ପରଶଂସା ସବୁବେଳେ ତୋ ତୁଣ୍ଡରେ ଅଛି । ଅଣ୍ଡି ଦେ ନା ଲୋ, ଅଣ୍ଡି ଦେ ନା ।

ଆଉ କେତେ ସମୟ ଯାଏ ଏମାନେ ଏହିପରି ଆଳାପ କରିଥାଆନ୍ତେ କେଜାଣି, ଦାଣ୍ଡରେ କାହାର ପଦ ଶବ୍ଦ ଶୁଣି ଦୁହେଁ ଉଠିଲେ । ହାରି ପାନବାଣୀ ଗୃହ ମଧ୍ୟରୁ ବାହାରି ଯିବାକୁ ବସିଲାବେଳେ ସାଧୁଆ ମା ପୁଣି ରୁକୁଣୀଙ୍କ ନିକଟରେ ବସିପଡ଼ିଲା । ହାରି ଏହା ଦେଖି କହିଲା, ଆଲୋ ଅପା, ତୋର ଆଉ ଗରଜ ନାହିଁ କି ମ ? ଏଇଠି କେତେବେଳଯାଏ ବସିଥିବୁ ? ଦିନ ଆସି ଏଠି ହେଲଣି । ଏ ମା ଗୋ—

ତୋ ଗରଜ ମୁଣ୍ଡରେ ଗୁଣ୍ଡ । ଆଲୋ, ଦିନ ଏଠି ହେଉ କି ସେଠି ହେଉ ଯେଉଁଠି ହେଲେ କଣ ହେଲା । ଯାଙ୍କ ପରି ଝିଅ ପାଖରେ ବସିଥିଲେ ଉଠି ଯିବାକୁ ମନ ହୁଏ ନାହିଁ । ତୁମେ ସବୁ କେମିତି ଲୋ—

ତା ବୋଲି କଣ ଏଠି ଦିନ ରାତି ବସିଥିବ । ନିଜର ପେଟପାଟଣା କଣ ନାହିଁ ? କାମଧନ୍ଦା ନ କଲେ ଖାଇବ କଣ ମ ? ଶୂନ୍ୟରେ ତ ଚଳିବ ନାହିଁ ।

ମୁହଁକୁ ଅନ୍ଧିଲେଇ ସାଧୁଆ ମା କହିଲା, ହଁ, ଶୂନ୍ୟରୁ ଚଳିବ ନା ।

ତେବେ ତୁ ଥା, ଏଇଠି ବସିଥା ମୁଁ ଯାଉଛି ।

ଯାଉନୁ, ଯା । ତୋତେ କିଏ ବାନ୍ଧି ରଖିଛି କି ?

ହାରି ପାନବାଣୀ ଚାଲିଗଲା । ସାଧୁଆ ମା କିଛି ସମୟ ଅପେକ୍ଷା କରି ଚାରିଆଡ଼କୁ ଅନାଇ ରୁକୁଣୀଙ୍କ କାନରେ କହିଲା, ଆଗୋ ହାରି, ପାନବାଣୀକି କିଛି ମନେ କରିବ ନାହିଁ । ସେ ଏଡ଼କି ନାନ୍ଦୁଣୀ ମୋ ଆଗରେ ଗୋଟିଏ କଥା ତ ତା ଆଗରେ ଗୋଟିଏ କଥା । ତମେ ପାଞ୍ଚ କଥା କହିଥିଲେ ସେ ପଚିଶି କଥା ଲଗାଇ କହିବ । ହଁ, ତାକୁ ଭଲେ ପରତେ କରିବ ନାହିଁ ଟି । ଏତିକି କହି ସାଧୁଆ ମା ଉଠିଲା, କାରଣ ରଘୁନାଥଙ୍କର ପଦ ଶବ୍ଦରେ ଟିକିଏ ଥୋଡ଼ା ହେଲା । କହିଲା, କେତେବେଳେ କେଉଁ କଥା । ଆଗରୁ ବାଟ କାଟିଥିଲେ ଭଲ । ପ୍ରକାଶ୍ୟରେ କହିଲା, ଯାଉଛି ଗୋ, ଯାଉଛି, ଦିନ ଆସି ଏଠି ହେଲଣି ।

ରୁକ୍ମଣୀଙ୍କ କାନକୁ ସାଧୁଅ ମାଆର କଥା ଭଲ ଲାଗୁଥାଏ । ସାଧୁଅ ମା ଚାଲିଗଲେ ସେ ନିଜର ପ୍ରଶଂସା ଆଉ ଶୁଣିବେ ନାହିଁ । ପଥର ପରି ବସି ରହିବେ । ସାଧୁଅ ମାଆକୁ ଉଠିବାର ଦେଖି ସେ ତାର ଲୁଗାର-କାନି ଟାଣି ଧରିଲେ । ସାଧୁ ମା କହିଲା, ହଁ, ତମ ପାଖରେ ବସିବାକୁ ମୋର ଆପତ୍ତି ନାହିଁ । ଏଣେ ସମୟ ଅଧିକ ହୋଇଗଲାଣି, ମୁଁ ଯାଉଛି । ତୁମେ ତ ପଦେ କଥା କହିଲ ନାହିଁ । ମୁଁ ଖାଲିଟାରେ ବସି କଣ କରିବ ?

ରୁକ୍ମଣୀ ସାଧୁଅ ମାଆର କାନି ଛାଡ଼ିଦେଲେ । ତାଙ୍କର ଇଚ୍ଛା ହେଲା ସେ ତାକୁ କଥା କହିବେ । ପୁଣି ମନରେ ପ୍ରଶ୍ନ ଉଠିଲା, କଣ କହିବେ ?

ସାଧୁଅ ମା ଚାଲିଯିବା ସମୟରେ କହିଲା, ମୁଁ ସଞ୍ଜକୁ ଆସିବ ଯେ । ନିଶ୍ଚେ ଆସିବ । ଆଜି ଦେଖିବ ତୁମ ମୁଣ୍ଡ କିମିତି ବାନ୍ଧିଦେବ; ତମ ମୁହଁକୁ କେମିତି ମାନିବ । କଥା ତ କହିଲ ନାହିଁ । ତେବେ ଯାଉଛି, ପଛେ ଆସିବ ।

ରୁକ୍ମଣୀ ଜାଣନ୍ତି ନାହିଁ, ତାଙ୍କ ପାଟିରୁ ହଉ ବୋଲି ପଦେ କଥା ବାହାରି ଗଲା ।

ରଘୁନାଥ ମହାନଦୀରେ ସ୍ନାନ କରି ଓଦା ଲୁଗାରେ ଘରକୁ ଫେରି ଆସିଲେ । ଓଦା ଗାମୁଛାଟିକୁ ଦୁଆରେ ବନ୍ଧା ହୋଇଥିବା ଦଉଡ଼ି ଉପରେ ପକାଇଲେ । ଗୁଣୁ ଗୁଣୁ ହୋଇ ଶ୍ଳୋକ ପାଠ କରି ବାଡ଼ି କୂଅଁରୁ ଲୋଟାଏ ପାଣି କାଢ଼ି ତୁଳସୀ ଚଉରାରେ ଦେଲେ । ସୂର୍ଯ୍ୟଙ୍କ ଆଡ଼କୁ ଅନାଇ ଲୋଟାଟି ହାତରେ ଧରି ବଙ୍କା କରି ତିନି ଚାରିଥର ମୁନ୍ଦାଏ ମୁନ୍ଦାଏ ପାଣି ତାଳି ଘର ଭିତରକୁ ଗଲେ । ଓଦା ଲୁଗା ପାଲଟି ପୁନର୍ବାର ପୂର୍ବୋକ୍ତ ଦଉଡ଼ି ଉପରେ ଶୁଖାଇ ଚନ୍ଦନ ଘୋରିଲେ । କୋଣ ଘର ଚଉକି ଉପରେ ଅନେକଗୁଡ଼ାଏ ପୋଥି ରଖାହୋଇଥିଲା । ସେଥିରୁ ଗୋଟିଏ କାଢ଼ି ପିତ୍ତଳ ନିର୍ମିତ କୃଷ୍ଣ ପ୍ରତିମା ଦେହରେ ଚନ୍ଦନ ବୋଳି ବୋଳି ପୋଥିଟିରୁ ଗୋଟିଏ ଶ୍ଳୋକ ଗାଉଥିଲେ । ଶ୍ଳୋକର ପ୍ରଥମ ଅଂଶ ଉଚ୍ଚସ୍ୱରରେ ଗାଉଥିଲେ; କିନ୍ତୁ ଅବଶିଷ୍ଟାଂଶ ଏପରି ଧୀରେ ଧୀରେ ଗାଉଥିଲେ ଯେ ନିଜର କାନକୁ ମଧ୍ୟ ଶୁଭୁ ନ ଥିଲା । ଶ୍ଳୋକଟିର ପ୍ରଥମାଂଶ, ଚନ୍ଦନ ଚର୍ଚ୍ଚିତ ନୀଳ କଳେବର ପୀତ ବସନ ବନମାଳୀ...... ।

ପୂଜା ନସରୁଣୁ ରାଜୁଣୀ ଭାତଥାଳୀ ଆଣି ସେଇ ଘରେ ଥୋଇଦେଇ ଗଲା । ରଘୁନାଥ ଏକେ କ୍ଷୁଧାର୍ତ୍ତ ହୋଇଥିଲେ, ଦ୍ୱିତୀୟରେ ସେଦିନର ବଡ଼

ମାଛ ତରକାରୀର ଗନ୍ଧ ଅତି ମଧୁର ଏବଂ ଲାଳସ୍ରାବୀ ହୋଇଥିବାରୁ ପୂଜା ଶେଷ କରି ଆସନ ଖଣ୍ଡି ଭାତଥାଳି ପାଖକୁ ଘୁଞ୍ଚାଇ ଆଣିଲେ । ଚେକା ପକାଇ ବସିଲେ । ତାହାକୁ କିଛି ନ ପଚାରି ଗୁର ଛୁଆ ଗୁଣ୍ଡା ଠକ୍ ଠାକ୍ କରି ଗିଳିଦେଲେ । ଭୋକ ଉପଶମ ହେଲା । ଏତେବେଳେ ନବୀନ କଥା ରଘୁନାଥଙ୍କ ମନରେ ପଡ଼ିଲା । ପ୍ରତିଦିନ ନବୀନର ଖାଇବା ଖବର ନ ବୁଝି ସେ ନିଜେ ଖାଉ ନ ଥିଲେ । ନବୀନ ଯେତେ ଖାଉଥାଉ ପଛେ ସେ ତାକୁ ବାଧ୍ୟ କରି ନିଜ ପାଖରେ ବସାଇଲେ । ସେ ଅଉ ନ ଖାଇ ଖାଲି ହାତଠା ଅଇଁଠା ନ କଲେ ବାପାଙ୍କ ମନରେ ଶାନ୍ତି ଆସିବ ନାହିଁ । କିନ୍ତୁ ସେଦିନ ନବୀନକୁ ସାଙ୍ଗରେ ବସାଇବା ଦୂରେ ଥାଉ ତାର ନାମ ପାଟିରେ ଧରି ନ ଥିଲେ ।

କାହିଁକି ? ଭୋକ । ଭୋକ କଣ କରେ ନାହିଁ ? ସେଦିନ ବିଶେଷ ଡେରି ହୋଇଥିବାରୁ ତାଙ୍କର ପେଟରେ ଜ୍ୱାଳା ବଢ଼ି ଯାଇଥିଲା । କହନ୍ତି, ରଘୁବାବୁ ଭୋକ ସମ୍ଭାଳି ପାରନ୍ତି ନାହିଁ । ସେଇଥିପାଇଁ ସେଦିନ ଏତେ ତରତର କରି ଗୁଣ୍ଡା ଗିଳି ପକାଇଲେ । ଏହା ଏବେ ପର ଜାଣିବେ କୁଆଡ଼ୁ ?

ରାନ୍ଧୁଣୀ ବଗୃର ଦୂରରେ ଠିଆ ହୋଇଥିଲା । ଦେଖିଲା, ଭାତଥାଳି ପାଖରେ ନବୀନ ନାହିଁ ଅଥଚ ରଘୁନାଥ ଖାଉଛନ୍ତି । ଭାବିଲା, ଦିନେ ତ ଏହା ଦେଖା ନ ଥିଲା । ନବୀନକୁ ନ ଦେଖିଲେ, ବାବୁ କେବେ ପାଣି ମୁନ୍ଦାଏ ପିଉ ନ ଥିଲେ । ଆଜି କାହିଁକି ନବୀନ ପଦେ ପଡ଼ିଲା ନାହିଁ ? ସେ ପୁଣି ଆଜି ଅଖିଆ ଅପିଆ କୁଆଡ଼େ ଚାଲି ଯାଇଛି । ଗଲାବେଳେ କାନ୍ଦି କାନ୍ଦି ଯାଇଛି ।

ରାନ୍ଧୁଣୀ ଏହିପରି ଭାବୁଥିବା ସମୟରେ ରଘୁନାଥ ଡାକିଲେ, ନବୀନ, ନବୀନ—

ନବୀନ ଉତ୍ତର ଦେଲା ନାହିଁ ।

ପୁଣି ଡାକିଲେ, ନବ, ଖାଇବୁ ଆ ! ରାନ୍ଧୁଣୀ ଆଡ଼କୁ ଅନାଇ ପଚାରିଲେ, ନବୀନକୁ ଦେଖିଛ ? ସେ କାହିଁ, ଡାକିଦେବଟି !

ରାନ୍ଧୁଣୀ କଣ କହିବ ବୋଲି ରଘୁନାଥଙ୍କ ଆଡ଼କୁ ଘୁଞ୍ଚି ଆସିଲା । ଓଢ଼ଣା ମୁଣ୍ଡ ଉପରକୁ ଟାଣି କାନ୍ଥକୁ ଆଉଜି କହିଲା, ସେ ତ ଏଝଣି ଏଇଠି ଠିଆ ହୋଇଥିଲା ।

ନାହିଁ ତ, କୁଆଡ଼େ ଗଲା ?

ମୁଁ ଜାଣେ ନାହିଁ ।

ଦେଖିଲ, ଦାଣ୍ଡରେ ଥିବ ସଙ୍ଗ । ଡାକ ଦଅ ।

ନବୀନ ଯେ କାନ୍ଦ କାନ୍ଦ ଯାଇଥିଲା, ଏ.ବିଷୟଟି ରୁକ୍ମିଣୀ ରଘୁନାଥଙ୍କଠାରୁ ଗୁପ୍ତ ରଖି ଦାଣ୍ଡକୁ ଗଲା ।

ଖାଦ୍ଧୁର୍ଣ୍ଣୀର ଫେଡବାରେ ଡେର ହେବାରୁ ଭାତଥାଳ ପାଖରୁ ରଘୁନାଥ ଜର୍ଜେ ନବୀନ୍, ନବୀନ ବୋଲି ଡାକ ଛାଡ଼ିଲେ । କିଛିକ୍ଷଣ ମାରବ ରହି କହିଲେ, କୁଆଡ଼େ ଗଲା । ସାଙ୍ଗରେ ନ ବସିଲେ, ମୁଁ ଖାଇବ ନାହିଁ । ଦେଖେ—

ରଘୁନାଥ ଉଠିବାବେଳେ କିଏ ଦୁଆରବନ୍ଧ ପାଖରୁ ଧୀରେ ଧୀରେ କହିଲା, ବଗୁଲିଆଅଛି, କୁଆଡ଼େ ଯାଇଥିବ, ଆସିବ ବଳେ ।

ରଘୁନାଥ ଲୋକଟି ଆଡ଼କୁ ଅନାଇବା ପୂର୍ବରୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, ବଗୁଲିଆ ମୋ ନବୀନ, ଆଜ ସୁଧାର ଭଲ କିଏ ? ସେ ଦେଖିଲେ ଯେ, ତାଙ୍କର ନବ ବିବାହିତା ପତ୍ନୀ ଦୁଆରବନ୍ଧ ପାଖରୁ ଅଡଜ ହାତରେ ଖଣ୍ଡେ କଂସା ଧରି ଠିଆ ହୋଇଛନ୍ତି । ସେ ମୁହଁ ତଳକୁ ପୋତିଲେ । ତାଙ୍କର ଦେହରୁ ନିଆଁ ଖସି ପଡ଼ିଲା । ପୁନର୍ବାର ଅନାଇଲେ, ସେହି ମୂର୍ତ୍ତି । ପୁଣି ଚକ୍ଷୁ ଫେରାଇ ଆଣିଲେ ।

ଭାତଥାଳ ଛାଡ଼ି ନବୀନକୁ ଖୋଜିବାକୁ ଗୃହଗଲେ ନାହିଁ । ସେ ଯେପରି ବସି ରହିଥିଲେ, ଠିକ୍ ସେହିପରି ବସି ରହିଲେ । ଥରେ ଚେଷ୍ଟା କଲେ ଉଠି ଯିବାକୁ, କିନ୍ତୁ ବୋଧ ହେଲା, ଯେପରି କିଏ ତାଙ୍କର କାନ୍ଧରେ ହାତ ଚିପି ବସାଇ ଦେଉଛି ।

ରଘୁନାଥ ରୁକ୍ମିଣୀଙ୍କୁ ଅନାଇଲେ । ରୂପ ଯୌବନର ପ୍ରଜ୍ଜ୍ୱଳିତ ଶିଖା । ଭାବିଲେ, ଏହି ମୋର ନବବିବାହିତା ପତ୍ନୀ !

ରୁକ୍ମିଣୀଙ୍କୁ ବିବାହ କରି ମନରେ ସୁଖ ନ ଥିଲା ନବୀନ ପାଇଁ । ବିବାହ ଦିନଠାରୁ ରୁକ୍ମିଣୀଙ୍କୁ ସେ ଏପରି ଦେଖି ନ ଥିଲେ । ଆଜି ସିଧା ସଳଖ ପ୍ରଥମ ଦେଖା । ଆଜ ତାଙ୍କର ମନର ଗତି କେଉଁ ଏକ ଅଜଣା ଦେଶକୁ ଧାବିତ ।

ରଘୁନାଥ ଧୀରେ ଧୀରେ ମୁଣ୍ଡ ଟେକି ଅନ୍ୟମନ ଚକ୍ଷୁ ନିକ୍ଷେପ କରି କହିଲେ, ବଗୁଲିଆଅଛି ଆସିବ ଯେ ।

ରୁକ୍ମିଣୀ ଓଢ଼ଣା ଟାଣି କଂସାଖଣ୍ଡି ଧରି ରଘୁନାଥଙ୍କୁ ପରଷିବାକୁ ଗଲେ । ତାଙ୍କ ଗୋଡ଼ ଥରି ଉଠିଲା । କମ୍ପିତହସ୍ତ ବଢ଼ାଇ ପୂର୍ଣ୍ଣ ହୋଇଥିବା ମାଛ କଂଟାଳିରେ ଡାଲି ଅଜାଡ଼ି ଦେଲେ ।

ରଘୁନାଥ ବାରଣ କଲେ ନାହିଁ କିଛି ଗ୍ରହଣ କରିବାକୁ ।  କିଛି କହିବାକୁ ସାହସ କଲେ ନାହିଁ ତ ! ବିରକ୍ତ ମଧ୍ୟ ହୋଇ ନାହାନ୍ତି ।

ରୁକ୍ମଣୀ ବୁଢ଼ାଅରବଙ୍କ ନିକଟକୁ ଫେରି ଆସିଲେ । କାନ୍ଥ ଅଢ଼ୁଆଳରେ ଠିଆ ହୋଇ ରହିଲେ । ଥାଳରେ ଦହି ହାତ ଛନ୍ନ ଯାଇଥିଲା ।

ରଘୁନାଥ ଭୋଜନ ଆରମ୍ଭ କଲେ । ଆଜି ନବୀନକୁ ଖୋଜିଲେ ନାହିଁ । ସବ୍ଦୁଣୀ ଫେରିଆସି ରୁକ୍ମଣୀଙ୍କୁ ଭାଗବତ ଘରର କାନ୍ଥକୁ ଅଉଜି ଠିଆ ହୋଇଥିବାର ଦେଖି ମୁହଁ ମୋଡ଼ିଦେଲା । ଭାବିଲା, ଏ କି ବେହିଆପଣ ? ବର୍ଷେ କରୁ ବୋହୂ ନୁହେ, କେଡ଼େ ସାହସ ମ ?

ବାବୁଙ୍କୁ ଭୋଜନରେ ରତ ଥିବାର ଦେଖି ସେ ନବୀନର କୌଣସି ସମ୍ବାଦ ଦେବାକୁ ସାହସ କଲା ନାହିଁ । ଗୋଟିଏ ଦୀର୍ଘଶ୍ୱାସ ତ୍ୟାଗକରି ମନକୁ ମନ କହିଲା, ଧନ୍ୟ ରେ ସଂସାର ! ଏ ପୁଣି ବାପା !

ଭୋଜନ ପରେ ବିଶ୍ରାମ ଗ୍ରହଣ ନ କରି ନବୀନକୁ ଖୋଜିବା ଉଦ୍ଦେଶ୍ୟରେ ଯିବାକୁ ପ୍ରସ୍ତୁତ ହେଲେ । କାନ୍ଧରେ ଖଣ୍ଡେ ଗାମୁଛା ପକାଇ ଘରୁ ବାହାରିବା ସମୟରେ ରୁକ୍ମଣୀ ମଧୁର କଣ୍ଠ ନିନାଦିତ କରି କହିଲେ, କି ନିଘାଟ ଖରା ! ଖାଇସାରି କୌଣସି ସ୍ଥାନକୁ ଯିବା ଉଚିତ ନୁହେ । ଶରୀର ଅସୁସ୍ଥ ହେବ, ଟିକିଏ ବିଶ୍ରାମ କରି ଗଲେ ଭଲ ହୁଅନ୍ତା ।

ଆହା, କି ସୁନ୍ଦର କଥା ! କାଲିକାର ବୋହୂଟି ସିନା, ବୁଦ୍ଧି କମ ନୁହେ ।: ଅନ୍ୟ କିଏ ଶୁଣିଥିଲେ କହି ଥାଆନ୍ତେ, ହଁ, ସାବତ ମା, ସେଇଥିପାଇଁ ପୁଅର ମଲା ହଜିଲା ଖବର ରଖିବାକୁ ଚାହେଁ ନା ।  ତେଣୁ ବାପକୁ ମନା କରୁଛି ।

ରୁକ୍ମଣୀଙ୍କ ମନରେ ହିଂସାର ସ୍ଥାନ ନାହିଁ । ସେ ରଘୁନାଥଙ୍କ ମଙ୍ଗଳ ନିମନ୍ତେ କହିଲେ । ନ ହେଲେ ତାଙ୍କର ଯାଏ କେତେ ଆସେ କେତେ ? କାହିଁକି ବା କହି ଥାଆନ୍ତେ ?

ରଘୁନାଥ ଖଟ ଉପରେ ବସିଲେ । ଟିକିଏ ବିଶ୍ରାମ ନେଇ ସେ ଉଠିଲେ ।। ଆଜି ରୁକ୍ମଣୀ ବାଧ କଲେ ନାହିଁ । ସେ ତ ବାଧାଦେଇ ନାହାନ୍ତି, ଅନୁରୋଧ କରିଥିଲେ । ରଘୁନାଥ ଯିବାବେଳେ ରୁକ୍ମଣୀ ବ୍ୟସ୍ତ ହୋଇ କହିଲେ, ଛତାଟା ଭୁଲିଗଲ ? ଖରାରେ ବୁଲିବୁଲି କଷ୍ଟ ହେବ ପରା !

ରଘୁନାଥ ଚାଲିଗଲେ । ତାଙ୍କ ମନରେ ସ୍ତ୍ରୀଙ୍କର ଶେଷୋଚ୍ଚାରିତ ବାକ୍ୟଟି ଲାଗି ରହିଲା । ପ୍ରକୃତ କଥା, ସବୁ ସାବତ ମା ସମାନ ନୁହନ୍ତି । ତାଙ୍କ ମଧ୍ୟରେ

ଗୋଟିଏ ଗୋଟିଏ ରତ୍ନ ତ ପୁଣି ଥାଆନ୍ତି । ଏ ନିଶ୍ଚୟ ସେମାନଙ୍କ ମଧ୍ୟରୁ ଜଣେ । ଯାହା ହେଉ, ଏବେ ବିବାହ କରି ଏପରି ସୁନ୍ଦରୀ ସ୍ତ୍ରୀ ପାଇ ମୁଁ ସୁଖୀ । ଦୟାବତୀ ଜନନୀ ପାଇ ନବୀନ ମଧ୍ୟ ସୁଖୀ । ଏବେ ତାର ସେହି ମାତୃ ଅଭାବ ପୂର୍ଣ୍ଣ ହେଲା । ଆମର ସଂସାର ସୁଖରେ କଟିଯିବ ।

ରୁକ୍ମଣୀ ଭାବିଥିଲେ, ସବୁ ସାବତପୁଅ ଖରାପ ହୁଅନ୍ତି ନାହିଁ । ବୁଢ଼ୀ ସାଧୁଆ ମା ଯାହା କହିଲେ, ସବୁ ସତକଥା । ମୋ ମନକୁ ପାଇଲା । କିନ୍ତୁ ନବୀନଟି ଆହା, କେଡ଼େ ପିଲାଦିନୁ ତା'ର ମା ନାହିଁ । ମୋତେ ମା ମା ବୋଲି ଡାକିଲା । ମୁଁ ନ ଶୁଣିଲି କାହିଁକି ? ବୁଢ଼ୀ କହିଲେ, ସେ ବଗୁଲିଆ । ତାହାର ବଗୁଲିଆପଣ ତ କିଛି ଜଣାପଡ଼ୁ ନାହିଁ । ହୋଇଥିବ, ମୁଁ ନୂଆବୋଲି କେଜାଣି ବା ସେ ବଗୁଲିଆମି କରୁ ନ ଥିବ । ଯେତେବେଳେ ଯାଏ ତା'ର ବଗୁଲିଆପଣ ନ ଦେଖିଛି, ମୁଁ କାହା କଥାରେ ବିଶ୍ୱାସ କରିବି ନାହିଁ । କିନ୍ତୁ ବୁଢ଼ୀଙ୍କ ପରି ଲୋକର କଥାରେ ବିଶ୍ୱାସ ନ କରି ଚଳି ହେଉ ନାହିଁ । ସେ ଯେପରି ମୋତେ ଭଲ ପାଆନ୍ତି, ଆଜି ତାଙ୍କରି କଥାରୁ ତାହାର ପ୍ରମାଣ ମିଳିଛି । ତାଙ୍କପରି ଲୋକର କଥା ନ ମାନି ଚଳିବାକୁ ସାହସ ହେଉ ନାହିଁ । କିନ୍ତୁ ନବୀନ ଦୁଷ୍ଟ ଭଳି ଜଣାପଡ଼ୁ ନାହିଁ । ଭଗବାନ ତା ନ କରନ୍ତୁ । ଯଦିବା କିଛି ହୁଏ, ତେବେ ମୋତେ ବୁଢ଼ୀ ସାହା ହେବେ । ମା ମଙ୍ଗଳା ତାଙ୍କୁ ପଠାଇଛନ୍ତି । ସେ ମୋର ଧର୍ମର ମା ।

ନବୀନ ରାମେଶ୍ୱର ମଶାଣି ଘାଟରେ ପହଞ୍ଚିଲା । ନିରାଟ ଖରାରେ ଧୂଳି ଏପରି ତାତି ଯାଇଥିଲା ଯେ, ଯାହା କହନ୍ତି ଧାନ ପକାଇଲେ, ଖଇ ଫୁଟିବ । ତାର ଗୋଡ଼ରେ ପାଣ୍ଡୋଇ ନ ଥିଲା । ମୁଣ୍ଡରେ ଗାମୁଛା ନ ଥିଲା ।

ମଶାଣିର ଦୃଶ୍ୟ ଭୟପ୍ରଦ । ଉଦୁଉଦିଆ ଦ୍ୱିପ୍ରହର ।

ସେଠାରେ ମହାନଦୀ ସଙ୍ଗେ ତେଲନଦୀ ମିଶିଛି । ମହାନଦୀର ଅଙ୍ଗ ବିଶାଳ ପ୍ରସ୍ତର ଖଣ୍ଡମାନଙ୍କରେ ପୂର୍ଣ୍ଣ । ଶଯ୍ୟା ଶିକତାମୟ । ଗ୍ରୀଷ୍ମ କାଳରେ ଏଥିରେ ଜଳ ନ ଥାଏ । ମୃଗତୃଷ୍ଣାର ସ୍ୱଚ୍ଛ ନିର୍ମଳସଲିଳ ତରଙ୍ଗାୟିତ ହୁଏ । ଭୂତ ପ୍ରେତଙ୍କର ବସତି ସ୍ଥାନ ମଶାଣି ଭୂଇଁ ରାମେଶ୍ୱର । ସୃଷ୍ଟି ଆରମ୍ଭରୁ ସହସ୍ର ସହସ୍ର ଲୋକଙ୍କର ମୃତ-ପିଣ୍ଡ ଏହି ଘାଟରେ ଦଗ୍ଧ କରାହୋଇଅଛି । ସେମାନଙ୍କର ଆତ୍ମା ଭୂତ ପ୍ରେତ ରୂପେ ଏଗଛରୁ ସେଗଛ ବୁଲୁଥାଆନ୍ତି ପରା ! ଲୋକଙ୍କ ଧାରଣା ଦିନ ଦ୍ୱିପହରରେ ଏବଂ ରାତ୍ରି ଦ୍ୱିପହରରେ ସେମାନଙ୍କର କାଣ୍ଡ କାରଖାନା ଅନେକେ ନିଜ ଆଖିରେ ଦେଖିଛନ୍ତି । ଶରଗୁଣୀ ଅଲୁଅ ତ ପ୍ରତି ରାତିରେ ଦେଖାଯାଏ । ସେଠାରେ

ଗୋଟିଏ ବେଲଗଛ ମୂଳରେ ଶିବଲିଙ୍ଗ ପ୍ରତିଷ୍ଠିତ । ଲୋକେ କହନ୍ତି, ରାତିରେ ଭୂତ ପ୍ରେତମାନେ ରୋଷଣୀ ଜାଳି ଶିବଙ୍କୁ ଶ୍ମଶାନ ଭୂମି ଦର୍ଶନ କରାଇବାକୁ ନିଅନ୍ତି । ସେହି ରୋଷଣୀ ଆଲୁଅ ଲୋକଙ୍କ ଆଖିକୁ ଚିରଗୁଣୀ ପରି ଦେଖାଯାଏ । ଖଣ୍ଡିଆ ଭୂତର ସେଠାରେ ନିତ୍ୟ କ୍ରୀଡ଼ା ।

ଶ୍ମଶାନଟି ବୃକ୍ଷ ବିହୀନ ନୁହେଁ । ପୃଷ୍ଠଭଙ୍ଗ ଦେଇଥିବା ସୈନ୍ୟ ପରି ଅନେକଗୁଡ଼ିଏ ଆମ୍ବଗଛ ନଦୀତୀରରେ ବହୁ ଦୂର ପର୍ଯ୍ୟନ୍ତ ବିକ୍ଷିପ୍ତ । ସେନାପତି ସୈନ୍ୟଙ୍କୁ ଉତ୍ସାହିତ କରି ବକ୍ତୃତା ଦେଲା ପରି ଝଙ୍କା ବରଗଛ ପବନରେ ତାଳ ପତ୍ର ହଲାଉଛି । ଏହି ଗଛଟି ନଦୀ ତୀରର ଅତି ନିକଟରେ । ମାଲି ଭାଇମାନେ ଶ୍ମଶାନକୁ ଶବ ଦାହ କରିବାକୁ ଆଣି ସେହି ଗଛ ମୂଳରେ ରଖିଦିଅନ୍ତି । ଦାହ ଶେଷ କରି ମହାନଦୀରେ ସ୍ନାନ କରି ବାହୁଡ଼ନ୍ତି ।

ନବୀନ ସେହି ଗଛ ମୂଳରେ ବସି ମହାନଦୀ ଆଡ଼କୁ ଏକ ଚକ୍ଷୁରେ ଅନାଇ ରହିଲା । ବାଳକ ଚିନ୍ତାମଗ୍ନ । ରୌଦ୍ର ତାପରେ ମୁଖ ମଳିନ । ଖଣ୍ଡିଆ ଭୂତର ଧୂଳିରେ ଅଙ୍ଗ ଧୂସର । ବାଳକ ଦେଖୁଥିଲା ଗୋଟିଏ ଅଦ୍ଭୁତ ଦୃଶ୍ୟ ପେଜଗଲା ପଥର ଉପରେ । ଲୋକେ କହନ୍ତି ରାମଚନ୍ଦ୍ର ବନବାସକରୁ ଥିବା ସମୟରେ ସୀତା ସେହି ଶିଳା ଉପରେ ପେଜ ଗାଳିଥିଲେ । ପେଜ ବହିଗଲାପରି ଚିହ୍ନ ପଥର ଉପରେ ଥିବା ଲକ୍ଷ୍ୟ କରାଯାଏ । ଲୋକେ ସ୍ନାନ ସାରି ସେହି ପବିତ୍ର ଶିଳାକୁ ନମସ୍କାର କରିଥାନ୍ତି । ଶିଳାଟିର ଉଚ୍ଚତା ପ୍ରାୟ କୋଡ଼ିଏ ହାତ । ଦେଖିବାକୁ କଳା ଏବଂ ଗଡ଼ାଣିଆ ।

ଅନେକ ଗୃଧ୍ର ଶିଳା ଉପରେ ପକ୍ଷ ଶୁଖାଉଅଛନ୍ତି । କେହି କେହି ମୁଣ୍ଡ ବଙ୍କା କରି ପକ୍ଷ ହଲାଇ ଆନନ୍ଦରେ ନାଚୁଛନ୍ତି । ନିକଟରେ ଶୁଷ୍କ ରକ୍ତ ଲେପିତ ଦୁଇ ଚାରିଖଣ୍ଡ ହାଡ଼ ନିମନ୍ତେ କେହି କେହି ନିଜ ନିଜ ମଧ୍ୟରେ କଳହ କରି ଚିତ୍କାର କରୁଅଛନ୍ତି । କୃଷ୍ଣବର୍ଣ୍ଣର ଶିଳାଖଣ୍ଡି ସେମାନଙ୍କ ମଳରେ ଧବଳ କୋଷ୍ଠିର ଅଙ୍ଗ ପରି ଛଉଛଉକା ଦେଖାଯାଉଛି ।

ଚଟାଣ ଉପରେ ଚାରି ପାଞ୍ଚଟା କୁମ୍ଭୀର ରୌଦ୍ର ତାପରେ ଛଟପଟ ହେଉଅଛନ୍ତି । କେହି କେହି ବା ଅବୁଲରେ ଜଳମଧ୍ୟକୁ ପଶିଯାଇ ଉଷ୍ଣତାରୁ ରକ୍ଷା ପାଇ ପାରିବେ ବୋଲି ପୁନର୍ବାର ବାହାରି ଆସି ଚଟାଣ ଉପରେ ପଡ଼ୁଛନ୍ତି । ଜଳ ସ୍ଥଳ ଉଭୟେ ସମଦଶାପନ୍ନ । କେହି କେହି ମୁହଁ ଖୋଲି ଆଖି ବୁଜି ପାଟି ଠାକୁଠାକୁ କରୁଛନ୍ତି । ଭୟର ଆଶଙ୍କା ନଥିଲେ ମଧ୍ୟ ମୁଖ ବ୍ୟାଦାନ ଦେଖି ଗୋଟିଏ ଗୃଧ୍ର ଶବ୍ଦ କରି ଚଟାଣ ଉପରୁ ଉଡ଼ି ଆସି ଖଣ୍ଡି ଉପରେ ବସୁଛି ।

ଏଣେ ଟଠାଣ ତଳେ ଖଣ୍ଡେ ହାଡ଼ ନିମନ୍ତେ ଛଅଟା କୁକୁର ବିବାଦ କରୁଅଛନ୍ତି । ଶାଗୁଣା ଟିଏ କଳଅରେ ଛଦ୍ର ବୁଝି ହାଡ଼ଖଣ୍ଡି ଝାମ୍ପି ନେବା ନିମନ୍ତେ ବଡ଼ ହୁସିଆରରେ ଉଡ଼ି ଆସୁଛି । କିନ୍ତୁ ଗୋଟିଏ ଶ୍ୱାନ ହାଡ଼ରେ ଆଶା ଛାଡ଼ି ତାକୁ ଅନେକ ଦୂରଯାଏ ତଡ଼ିନେଉଛି । ଶୃଗାଳ କେତୋଟି ଗାତରୁ ମୁଣ୍ଡ କାଢ଼ି କାତର ଦୃଷ୍ଟିରେ ପଦାକୁ ଅନାଇଛନ୍ତି । ସାହସ କରି ପଦାକୁ ବାହାରି ପାରୁନାହାନ୍ତି । ଗୋଟିଏ କୋକି ନିଜର ମୋଟା ଲାଙ୍ଗୁଡ଼ିଟି ଫୁଲାଇ ଏପାଖ ସେପାଖ ହେଉଛି । ସମୟ ସମୟରେ ତଳେ ଲାଙ୍ଗୁଡ଼ ପିଟି ଭୂମିକୁ ନଖରେ ବିଦାରିପକାଉଛି । ଦୁଇଟି ପେଚା ବେଲଗଛ ଉପରେ ନିସ୍ତବ୍ଧ ହୋଇ ବସିଛନ୍ତି । ସୂର୍ଯ୍ୟଦେବଙ୍କ ଭୟରେ ପଦାକୁ ବାହାରି ପାରୁନାହାନ୍ତି । ପକ୍ଷୀଏ କାଉ କା କା କରି ନଦୀ ସେ ପାଖକୁ ଉଡ଼ି ଆସୁଛନ୍ତି ।

ନବୀନ ଶିଳାକୁ ଏକ ଚକ୍ଷୁରେ ଅନାଇ ରହିଛି । ପଚା ମାଂସର ଗନ୍ଧ ପବନ ଉଡ଼ାଇ ଆଣି ତାର ନାକରେ ଲଗାଉଛି । ଉତ୍କଟ ଗନ୍ଧ ! ! ଖଣ୍ଡିଆ ଭୂତ କାହାର ଛିଣ୍ଡା କତରା ଖଣ୍ଡେ, କାହାର ମସ୍ତକରୁ ମୃତ କେଶ ଗୁଚ୍ଛେ ଉଡ଼ାଇ ଆଣି ବହୁ ଉଚ୍ଚକୁ ଉଠାଉଛି । କେତେବେଳେ ବା ଧୂଳିକଣା ଆଣି ନବୀନର କୋମଳ ଅଙ୍ଗରେ ପିଟିଦେଉଛି । ତଥାପି ନବୀନର ଦୃଷ୍ଟି ସ୍ଥିର ।

ସ୍ଥାନ ନିର୍ଜନ ହୋଇଛି ।

ସୂର୍ଯ୍ୟଦେବ ଅଗ୍ନି ଚୂର୍ଣ୍ଣ ବର୍ଷଣ କରୁଛନ୍ତି । ବିଶ୍ରାମ ନାହିଁ । ବେଲଗଛର ଛାଇ ନବୀନ ମୁଣ୍ଡରୁ ଅନ୍ତର୍ହିତ ହୋଇଗଲା । ନବୀନର ମସ୍ତକସ୍ଥ କେଶଗୁଚ୍ଛ ସୂର୍ଯ୍ୟ କିରଣରେ ଫୁରୁ ଫୁରୁ ହୋଇ ଉଡ଼ିବାକୁ ଲାଗିଲା । ତଥାପି ତାହାର ଚକ୍ଷୁ ପେଳା- ଗଲା ଶିଳା ଉପରୁ ଫେରିଲା ନାହିଁ । ସେ ପୂର୍ବବତ୍ ଆସୀନ । ଦେଖିଲେ ବୋଧ ହେବ ଯେପରି କଣ ଚିନ୍ତା କରୁଛି । କ୍ରମ ଛାୟାର ବୃଦ୍ଧି ସଙ୍ଗେ ସଙ୍ଗେ ନବୀନର କ୍ଷୁଧା ମଧ୍ୟ ବଢ଼ିବାକୁ ଲାଗିଲା । ତଥାପି ସେ ନୀରବ, ନିଶ୍ଚଳ ।

କିଏ ବାବା ତୁ ? ଏ ଠାଇଁ ଠାଇଁ ଖରାରେ ଭୀଷଣ ଶ୍ମଶାନରେ ଏକାକୀ ? ବୃଦ୍ଧ ଶୁକ୍ଳ କେଶ, ଈଷତ୍ ରକ୍ତିମ ମସ୍ତକର ଜଟା । ଉଜ୍ଜ୍ୱଳ ଚକ୍ଷୁ ଦ୍ୱୟ ବିସ୍ତୀର୍ଣ୍ଣ । ଲଲାଟର ଦୀପ୍ତି ଉଜ୍ଜ୍ୱଳ । ପରିଧେୟ କଷାୟ ବସନ । ଗାମ୍ଭୀର୍ଯ୍ୟ ମଧ୍ୟ ଦେଇ ହାସ୍ୟର ସ୍ୱଳ୍ପାଲୋକ ଫୁଟି ଉଠୁଥିଲା । ଧୀରେ ଧୀରେ ନବୀନର ମସ୍ତକରେ ହସ୍ତ ସ୍ଥାପନ କରି କହିଲେ, କିଏ ବାବା ତୁ ? ଏ ଠାଇଁ ଠାଇଁ ଖରାରେ ଭୀଷଣ ଶ୍ମଶାନରେ ଏକାକୀ ?

ନବୀନ ଚକ୍ଷୁ ଫେରାଇ ଦେଖିଲା ଜଣେ ବାବାଜୀ ନିକଟରେ ଠିଆ ହୋଇ ତାହାର ମସ୍ତକରେ ହାତ ରଖି ପଚାରୁଛନ୍ତି । ସେ ତାଙ୍କୁ ଆଉ କେବେ ଦେଖି ନ ଥିଲା । ତାଙ୍କର ପାଦ ତଳେ ମୁଣ୍ଡ ଲଗାଇ ଉଠିଲା । ବାବାଜୀ ପଚାରିଲେ, କିଏ ବାବା ତୁ ?

ତାର କ୍ଷୁଦ୍ର ମୁଖଟି ଉତ୍ତୋଳନ କରି ସେ ବାବାଜୀଙ୍କୁ ଉତ୍ତମରୂପେ ଅନାଇଲା । ତଥାପି ନୀରବ ରହିଲା । ବାବାଜୀ ପୁନର୍ବାର ଜିଜ୍ଞାସା କଲେ । ଏଥର ନବୀନ ଧୀର ବାକ୍ୟରେ ଉତ୍ତର ଦେଲା, ମୁଁ ନବୀନ ।

ଉଦୁଉଦିଆ ଦ୍ୱିପହରରେ ରାମେଶ୍ୱର ଶ୍ମଶାନରେ ବାବାଜୀଙ୍କୁ ଦେଖିଲେ ମନେ ହେଉଥିଲା ଯେପରି ନିଜେ ଶିବ ଆସି ଦଣ୍ଡାୟମାନ ହୋଇଅଛନ୍ତି । ନବୀନର ଉତ୍ତରରେ ବାବାଜୀ ଚିନ୍ତା କରି କହିଲେ, ହଁ, ଠିକ୍ ନବୀନ । ନବୀନ ନ ହୋଇଥିଲେ ଏତେ ସାହସ ଅନ୍ୟ କାହାର ହୋଇ ନ ଥାନ୍ତା । ଜଗତରେ ନବୀନହିଁ ସୁଖୀ । ସେ ସଂସାରର କିଛି ଜାଣେ ନାହିଁ, ତେଣୁ ନିର୍ଭୀକ । ନବୀନରୁ ଯେତିକି ପୁରାତନ ହୁଏ ମାନବ ସଂସାରର ଦୁଃଖ ସୁଖରେ ସେତିକି ଘାଣ୍ଟି ଚକଟି ହୁଏ । ସେ ହୁଏ ଜଟିଳ । ସେ ହୁଏ ଭୀରୁ ।

ବାବାଜୀଙ୍କ କଥା ନବୀନ ମନଯୋଗ ଦେଇ ଶୁଣୁଥିଲା । କିଛି ବୁଝି ପାରିଲା ନାହିଁ । କେବଳ ତାଙ୍କର ମୁହଁକୁ ଅନାଇ ରହିଲା ।

ବାବାଜୀ ପଚାରିଲେ, ଏ ନିରାଟ ଖରାରେ ଏକାକୀ ଶ୍ମଶାନରେ କାହିଁକି ବସିଛୁ ବାପ ?

ନବୀନ ମୁଣ୍ଡ ଝାଡ଼ି ଝାଡ଼ି କଣ କହିବାକୁ ଯାଉଥିଲା; କିନ୍ତୁ ତାର କଣ୍ଠ ରୁଦ୍ଧ ହୋଇଯିବାରୁ ତୁନି ରହିଲା । ବାବାଜୀ ନିଜର ପ୍ରବଳ ବୁଦ୍ଧି ପ୍ରଭାବରେ ଏବଂ ସଂସାର ଜ୍ଞାନ ବଳରେ ଅତି ଶୀଘ୍ର ବୁଝି ପାରିଲେ ବାଳକର ମନର ଦୁଃଖମାନ। ଅତ୍ୟଧିକ ଯୋଗୁଁ କିଛି କହି ପାରୁ ନାହିଁ । କେଉଁ ବିଷୟରେ ତା ମନରେ ଦୁଃଖ ହୋଇଛି ଜାଣିବା ପାଇଁ ପଚାରିଲେ, ବାପ, କଣ କହିବାକୁ ବସିଥିଲୁ କହିଲୁ ନାହିଁ କାହିଁକି ?

ନବୀନ ତାଙ୍କ କଥାରେ କାନ ନ ଦେଇ ପଚାରିଲା, ତୁମେ କିଏ ?

ବାବାଜୀ ସ୍ମିତ ହସି କହିଲେ, ମୁଁ କିଏ ? ତୁ ଏ ସଂସାରରେ କାହାକୁ ଚିହ୍ନୁ ବାପ ? ମୋର ପରିଚୟ ଦେଲେ ତୁ ଚିହ୍ନି ପାରିବୁ ନାହିଁ । ମୁଁ କିଏ ମୁଁ ନିଜେ ତ ଜାଣିନାହିଁ ତୋତେ ବା କଣ କହି ପରିଚୟ ଦେବି ?

ତୁମେ ବଡ଼ା ବାବାଜୀ ?

ଆଗନ୍ତୁକ ବିସ୍ମିତ ହୋଇ କହିଲେ, ମୁଁ ବୁଢ଼ା ନୁହେଁ, ମୁଁ ଅଜ୍ଞାନ ବାଳକ । ମୁଁ ବାବାଜୀ ମାନେ । ତୁ କେଉଁଥିପାଇଁ ଏକାକୀ ଏ ନିର୍ଜନ ସ୍ଥାନରେ ?

ବୃଦ୍ଧ ଏତକ କହି ହସିଦେଲେ । ନବୀନ ବୃଦ୍ଧଙ୍କୁ ପାଗଳ ମନେକରି ଆଶ୍ଚର୍ଯ୍ୟ ହୋଇ ପଚାରିଲା, ଆଚ୍ଛା ବାବାଜୀ, ଲୋକେ କହନ୍ତି ତୁମେ ସବୁ କଥା ଜାଣ ; କହି ପାରିବ କି ସ୍ୱର୍ଗ କେଉଁଠି ? ଏଠିକି କେତେ ବାଟ ?

ବାବାଜୀ ବାଳକର କଥା ଶୁଣି ଭାବିଲେ, କ୍ଷୁଦ୍ର ବାଳକର ଏ ପ୍ରଶ୍ନ ପଚାରିବାର ପ୍ରୟୋଜନ କଣ ? ଉତ୍ତର ଦେଲେ, ସ୍ୱର୍ଗ କେଉଁଠି ନାହିଁ, ପୁଣି ସ୍ୱର୍ଗ ବୋଲି ଯେଉଁ ସ୍ଥାନଟି ସେ ସବୁଠାରେ ପୂର୍ଣ୍ଣ ରହିଛି ।

ବୁଢ଼ା ବାବାଜୀ, ତୁମେ କଣ କହୁଛ ମୁଁ ବୁଝି ପାରୁ ନାହିଁ ।

ସ୍ୱର୍ଗ ତୋର ଘର ନୁହେଁ କି ?

ତେବେ ?

ଯେଉଁ ଘରେ ସ୍ନେହ, ଭକ୍ତି, ପ୍ରେମ ପୂର୍ଣ୍ଣ ରହିଛି ସେହି କେବଳ ସ୍ୱର୍ଗ । କାହିଁକି ବାପ ସ୍ୱର୍ଗ ବିଷୟରେ ଜାଣିବାକୁ ତୁ ଆଜିଠାରୁ ଏଡ଼େ ପିଲା ବୟସରୁ ଆତୁର ?

ବାବାଜୀ, ତୁମେ ଠିକ୍ କହୁନ, ଭୁଲ୍ କହୁଛ । ଆମ ଘର ସ୍ୱର୍ଗ ନୁହେଁ ।

କାହିଁକି ବାପ ?

ଆମ ଘରେ ତ ମୋର ମା ନାହାନ୍ତି । ବାପା କହନ୍ତି ମୋ ମା ସ୍ୱର୍ଗକୁ ଯାଇଛି । ଆଚ୍ଛା, ଯେ ସ୍ୱର୍ଗକୁ ଯାଏ ସେ କଣ ଆଉ ଫେରେ ନାହିଁ ?

ନବୀନର ଚକ୍ଷୁ ଲୋତକରେ ତଳ ତଳ ହେବାକୁ ଲାଗିଲା । ବାବାଜୀ ବୁଝି ପାରିଲେ ତାର ମନର ବେଦନା । ସେ କଣ କହି ସାନ୍ତ୍ୱନା ଦେବେ ? ଗମ୍ଭୀର ମୁଖଟିକୁ ଗମ୍ଭୀରତର କରି ନୀରବ ରହିଲେ ।

ନବୀନର ଚକ୍ଷୁରୁ ଲୋତକ ଝରିଲା । ସେ ଦୁଇ ହାତରେ ଆଖି ପୋଛି କହିଲା, ମୁଁ ମୋର ମାଆକୁ ଦେଖି ପାରିବି ନାହିଁ ?

ହଁ ଦେଖି ପାରିବୁ ଯେ ଅତି ସହଜରେ ନୁହେଁ ।

ତୁମେ ବାଟ ଜାଣି କହି ପାରିବ ? କେଉଁ ବାଟରେ ଗଲେ ମୁଁ ସେ ଦେଶରେ ପହଞ୍ଚି ପାରିବି ?

ନବୀନ ଚକ୍ଷୁ ଫେରାଇ ଦେଖିଲା ଜଣେ ବାବାଜୀ ନିକଟରେ ଠିଆ ହୋଇ ତାହାର ମସ୍ତକରେ ହାତ ରଖି ପଚାରୁଛନ୍ତି । ସେ ତାଙ୍କୁ ଆଉ କେବେ ଦେଖି ନ ଥିଲା । ତାଙ୍କର ପାଦ ତଳେ ମୁଣ୍ଡ ଲଗାଇ ଉଠିଲା । ବାବାଜୀ ପଚାରିଲେ, କିଏ ବାବା ତୁ ?

ତାର କ୍ଷୁଦ୍ର ମୁଖଟି ଉତ୍ତୋଳନ କରି ସେ ବାବାଜୀଙ୍କୁ ଉତ୍ତମରୂପେ ଅନାଇଲା । ତଥାପି ନୀରବ ରହିଲା । ବାବାଜୀ ପୁନର୍ବାର ଜିଜ୍ଞାସା କଲେ । ଏଥର ନବୀନ ଧୀର ବାକ୍ୟରେ ଉତ୍ତର ଦେଲା, ମୁଁ ନବୀନ ।

ଜଦୁଜଦିଆ ଦ୍ୱିପହରରେ ରାମେଶ୍ୱର ଶ୍ମଶାନରେ ବାବାଜୀଙ୍କୁ ଦେଖିଲେ ମନେ ହେଉଥିଲା ଯେପରି ନିଜେ ଶିବ ଆସି ଦଣ୍ଡାୟମାନ ହୋଇଅଛନ୍ତି । ନବୀନର ଉତ୍ତରରେ ବାବାଜୀ ଚିନ୍ତା କରି କହିଲେ, ହଁ, ଠିକ୍ ନବୀନ । ନବୀନ ନ ହୋଇଥିଲେ ଏତେ ସାହସ ଅନ୍ୟ କାହାର ହୋଇ ନ ଥାନ୍ତା । ଜଗତରେ ନବୀନହିଁ ସୁଖୀ । ସେ ସଂସାରର କିଛି ଜାଣେ ନାହିଁ, ତେଣୁ ନିର୍ଭୀକ । ନବୀନରୁ ଯେତିକି ପୁରାତନ ହୁଏ ମାନବ ସଂସାରର ଦୁଃଖ ସୁଖରେ ସେତିକି ଘାଣ୍ଟି ଚକଟି ହୁଏ । ସେ ହୁଏ ଜଟିଳ । ସେ ହୁଏ ଭୀରୁ ।

ବାବାଜୀଙ୍କ କଥା ନବୀନ ମନଯୋଗ ଦେଇ ଶୁଣୁଥିଲା । କିଛି ବୁଝି ପାରିଲା ନାହିଁ । କେବଳ ତାଙ୍କର ମୁହଁକୁ ଅନାଇ ରହିଲା ।

ବାବାଜୀ ପଚାରିଲେ, ଏ ନିରାଟ ଖରାରେ ଏକାକୀ ଶ୍ମଶାନରେ କାହିଁକି ବସିଛୁ ବାପ ?

ନବୀନ ମୁଣ୍ଡ ଝାଡ଼ି ଝାଡ଼ି କଣ କହିବାକୁ ଯାଉଥିଲା; କିନ୍ତୁ ତାର କଣ୍ଠ ରୁଦ୍ଧ ହୋଇଯିବାରୁ ଚୁପ ରହିଲା । ବାବାଜୀ ନିଜର ପ୍ରବଳ ବୁଦ୍ଧି ପ୍ରଭାବରେ ଏବଂ ସଂସାର ଜ୍ଞାନ ବଳରେ ଅତି ଶୀଘ୍ର ବୁଝି ପାରିଲେ ବାଳକର ମନର ଦୁଃଖମାନ। ଅତ୍ୟଧିକ ଯୋଗୁଁ କିଛି କହି ପାରୁ ନାହିଁ । କେଉଁ ବିଷୟରେ ତା ମନରେ ଦୁଃଖ ହୋଇଛି ଜାଣିବା ପାଇଁ ପଚାରିଲେ, ବାପ, କଣ କହିବାକୁ ବସିଥିଲୁ କହିଲୁ ନାହିଁ କାହିଁକି ?

ନବୀନ ତାଙ୍କ କଥାରେ କାନ ନ ଦେଇ ପଚାରିଲା, ତୁମେ କିଏ ?

ବାବାଜୀ ସ୍ମିତ ହସି କହିଲେ, ମୁଁ କିଏ ? ତୁ ଏ ସଂସାରରେ କାହାକୁ ଚିହ୍ନୁ ବାପ ? ମୋର ପରିଚୟ ଦେଲେ ତୁ ଚିହ୍ନି ପାରିବୁ ନାହିଁ । ମୁଁ କିଏ ମୁଁ ନିଜେ ତ ଜାଣିନାହିଁ ତୋତେ ବା କଣ କହି ପରିଚୟ ଦେବି ?

ତୁମେ ନା । ବାବାଜୀ ?

ଆଗନ୍ତୁକ ବିସ୍ମିତ ହୋଇ କହିଲେ, ମୁଁ ବୁଢ଼ା ନୁହେଁ, ମୁଁ ଅଜ୍ଞାନ ବାଳକ ! ମୁଁ ବାବାଜୀ ମାତ୍ର । ତୁ କେଉଁଥିପାଇଁ ଏକାକୀ ଏ ନିର୍ଜନ ସ୍ଥାନକୁ ?

ବୃଦ୍ଧ ଏତିକି କହି ହସିଦେଲେ । ନବୀନ ବୃଦ୍ଧଙ୍କୁ ପାଗଳ ମନେକରି ଆଶ୍ଚର୍ଯ୍ୟ ହୋଇ ପଚାରିଲା, ଅଚ୍ଛା ବାବାଜୀ, ଲୋକେ କହନ୍ତି ତୁମେ ସବୁ କଥା ଜାଣ ; କହି ପାରିବ କି ସ୍ୱର୍ଗ କେଉଁଠି ? ଏଠିକି କେତେ ବାଟ ?

ବାବାଜୀ ବାଳକର କଥା ଶୁଣି ଭାବିଲେ, କ୍ଷୁଦ୍ର ବାଳକର ଏ ପ୍ରଶ୍ନ ପଚାରିବାର ପ୍ରୟୋଜନ କଣ ? ଉତ୍ତର ଦେଲେ, ସ୍ୱର୍ଗ କେଉଁଠି ନାହିଁ, ପୁଣି ସ୍ୱର୍ଗ ବୋଲି ଯେଉଁ ସ୍ଥାନଟି ସେ ସବୁଠାରେ ପୂର୍ଣ୍ଣ ରହିଛି ।

ବୁଢ଼ା ବାବାଜୀ, ତୁମେ କଣ କହୁଛ ମୁଁ ବୁଝି ପାରୁ ନାହିଁ ।

ସ୍ୱର୍ଗ ତୋର ଘର ନୁହେଁ କି ?

ତେବେ ?

ଯେଉଁ ଘରେ ସ୍ନେହ, ଭକ୍ତି, ପ୍ରେମ ପୂର୍ଣ୍ଣ ରହିଛି ସେହି କେବଳ ସ୍ୱର୍ଗ ! କାହିଁକି ବାପ ସ୍ୱର୍ଗ ବିଷୟରେ ଜାଣିବାକୁ ତୁ ଆଜିଠାରୁ ଏଡ଼େ ପିଲା ବୟସରୁ ଆତୁର ?

ବାବାଜୀ, ତୁମେ ଠିକ୍ କହୁନ, ଭୁଲ୍ କହୁଛ । ଆମ ଘର ସ୍ୱର୍ଗ ନୁହେଁ ।

କାହିଁକି ବାପ ?

ଆମ ଘରେ ତ ମୋର ମା ନାହାଁନ୍ତି । ବାପା କହନ୍ତି ମୋ ମା ସ୍ୱର୍ଗକୁ ଯାଇଛି । ଅଚ୍ଛା, ଯେ ସ୍ୱର୍ଗକୁ ଯାଏ ସେ କଣ ଆଉ ଫେରେ ନାହିଁ ?

ନବୀନର ଚକ୍ଷୁ ଲୋତକରେ ଜଳ ଜଳ ହେବାକୁ ଲାଗିଲା । ବାବାଜୀ ବୁଝି ପାରିଲେ ତାର ମନର ବେଦନା । ସେ କଣ କହି ସାନ୍ତ୍ୱନା ଦେବେ ? ଗମ୍ଭୀର ମୁଖଟିକୁ ଗମ୍ଭୀରତର କରି ନୀରବ ରହିଲେ ।

ନବୀନର ଚକ୍ଷୁରୁ ଲୋତକ ଝରିଲା । ସେ ଦୁଇ ହାତରେ ଆଖି ପୋଛି କହିଲା, ମୁଁ ମୋର ମାଆକୁ ଦେଖି ପାରିବି ନାହିଁ ?

ହଁ ଦେଖି ପାରିବୁ ଯେ ଅତି ସହଜରେ ନୁହେଁ ।

ତୁମେ ବାଟ ଜାଣ କହି ପାରିବ ? କେଉଁ ବାଟରେ ଗଲେ ମୁଁ ସେ ଦେଶରେ ପହଞ୍ଚି ପାରିବି ?

ବାବାଜୀ କହିଲେ, ବାପ, ମୁଁ ବାଟ ଜାଣେ; କିନ୍ତୁ ତୁ ଏତେ ଅଳ୍ପ ବୟସରେ ସେ ବାଟରେ ଚାଲି ପାରିବୁ ନାହିଁ । ତୋର ସାହସ ଅଛି, ଶକ୍ତି ନାହିଁ ।

ଚାଲି ପାରିବି ନାହିଁ, କାହିଁକି ? ଥରେ ବାଟ ବତାଇଦିଅ, ମୁଁ ମୋ ମା ପାଖକୁ ଯିବି ।

ତୋ ପରି ବାଳକ ପାଇଁ ସେ ବାଟର ଦରଜା ବନ୍ଦ । ତୁ ବଡ଼ ହେଲେ ଦେଖିବୁ । ଏବେ ନୁହେ ।

ଦରଜା କେଉଁଠି ଅଛି ? ଯଦି ଆମେ ଦରଜା ଜାଣି ପାରିବା, ଦରଓ୍ୱାନକୁ କହିଲେ ସେ ଛାଡ଼ିଦେବ ।

ଦରଓ୍ୱାନ କାହାରିକୁ ମନା କରେ ନାହିଁ । କିନ୍ତୁ ବିନା ଆଜ୍ଞାରେ ପ୍ରବେଶ କଲେ ସେ ଧରିପକାଇବ, ଛାଡ଼ିବ ନାହିଁ ।

ନବୀନ ମୁହଁ ଶୁଖାଇ କହିଲା, ତେବେ ଯେ ସ୍ୱର୍ଗକୁ ଯାଇଛି ତା ସଙ୍ଗେ ଆଉ ଦେଖା ହେବ ନାହିଁ ? ମୁଁ ମୋର ମାଆକୁ ଆଉ ପାଇ ପାରିବି ନାହିଁ ?

ନବୀନର ମୁଖକୁ ବାରମ୍ବାର ଅନାଇ ତାର ଚକ୍ଷୁର ଆଲୋକ ନିରୀକ୍ଷଣ କରିବାକୁ ଲାଗିଲେ ।

ଏହି ସମୟରେ ନବୀନ ଅନ୍ୟ ମନସ୍କ ହୋଇ ପଚାରିଲା, ବାବାଜୀ ତୁମେ କିଏ ? ତୁମ ଘର କେଉଁଠି ?

ବାପ, ମୁଁ କିଏ ମୁଁ ନିଜେ ଜାଣେ ନାହିଁ । ତୋତେ କଣ ବୋଲି କହିବି ? ମୋର ଘର ନାହିଁ । ଦୁନିଆ ସାରା ମୋର ଘର । ମୁଁ ପଥିକଟିଏ ।

ପଥିକ କଣ ?

ବାଟୋଇ । ଏ ସଂସାରରେ ସମସ୍ତେ ବାଟୋଇ ।

ଏତିକି କହି ବାବାଜୀ ନବୀନକୁ ଛାଡ଼ି ତେଲନଦୀ ଅଭିମୁଖେ ଚାଲିଗଲେ । ନବୀନ ଫେରିଗଲା ନାହିଁ । ଏକ ଦୃଷ୍ଟିରେ ବାବାଜୀଙ୍କୁ ଅନାଇଁ ରହିଲା । ବାବାଜୀ ତେଲନଦୀର ମୃଗତୃଷ୍ଣା ମଧ୍ୟରେ ପ୍ରବେଶ କଲେ; ଅଦୃଶ୍ୟ ହେଲେ । ନବୀନର ଚକ୍ଷୁ ଫେରିଲା । ବେଲଗଛ ମୂଳରୁ ଉଠି ଧୀରେ ଧୀରେ ଗୋଠା ଆଡ଼କୁ ଗଲା । ବର୍ତ୍ତମାନ ତାର ମଳିନ ମୁଖ କିଞ୍ଚିତ ଉଜ୍ଜ୍ୱଳ ଦେଖାଯାଉଛି । ଗାମ୍ଭୀର୍ଯ୍ୟ ଲୁପ୍ତ ହୋଇଛି । ସେ ଭାବୁଛି ବାବାଜୀଙ୍କ ବିଷୟରେ ସେ କିଏ, କାହିଁକି ତାହା ସଙ୍ଗେ ଏତେ ସମୟ ଆଳାପ କଲେ ?

ରଘୁନାଥ ହରିପୁରର ନାନା ସ୍ଥାନ ଖୋଜି ନବୀନକୁ ନ ପାଇ ହତାଶ ହୋଇଗଲେଣି । ଦିନେ ନାହିଁ କାଲେ ନାହିଁ ହଠାତ୍ ନବୀନ ଏପରି ଭାବରେ ଗଲା କେଉଁଠି କି ? ଘରେ ତ କେହି କିଛି କହୁନାହାନ୍ତି ।

ରଘୁନାଥ ସହରର କେତେ ସ୍ଥାନ ଖୋଜି କ୍ଲାନ୍ତ ହୋଇଗଲେ । ସେ ଧୈର୍ଯ୍ୟବାନ୍ । ଏତେ ଶୀଘ୍ର ହତାଶ ହୁଅନ୍ତି ନାହିଁ । କୁଆଡ଼େ ଯାଇଥିବ ବଗୁଲିଆଟା କୋଉଠି ଖିଆଲରେ ଖେଳୁଥିବ ।

ଖରା କମିଗଲା ଛାଇ ନେଉଟିଲା । ତାହାଣିଆ ଖରା ଆସି ସହରର କାନ୍ଥରେ ବାଡ଼ରେ ପଡ଼ି ନୂତନ ରଙ୍ଗରେ ରଞ୍ଜିତ କଲା । ଲୋକେ ରାମେଶ୍ୱର ଘାଟଆଡ଼େ ଗଲେ । ବୁଢ଼ୀ ଚମାରୁଣୀ ରାମେଶ୍ୱର ଅମ୍ବ ତୋଟାକୁ ଅମ୍ବ ଗୋଟାଇବାକୁ ଯାଇଥିଲା । ଫେରିବା ବେଳେ ରଘୁନାଥଙ୍କ ସଙ୍ଗେ ସାକ୍ଷାତ୍ ହେବାରୁ ସେ ପଚାରିଲେ, ମାଉସୀ, ସେଆଡ଼େ ନବୀନକୁ ଦେଖିଥିଲୁ କି ?

ବୁଢ଼ୀ ଚମାରୁଣୀ ହାତ ହଲାଇ କହିଲା, ନାହିଁରେ ପୁଅ, ଅମ୍ବ ଦଟା ଗୋଟାଇବାକୁ ଯାଇଥିଲି ଯେ, ମୁରୁଦାର ଖାନାଟାକୁ ଦମ୍ଭରେ କେମିତି ଯିବି ସେଇଥିପାଇଁ ଟିକିଏ ଦୂରରେ ବସିଥିଲି, ଛାଇ ଆଡ଼ୁଆଳରେ । ଟିକିଏ ଢୁଳେଇ ପଡ଼ିଲି । ଆଖି ମେଲେଇ ଦେଖିଲା ବେଳକୁ ବେଲଗଛ ମୂଳରେ ନିଜେ ମହାଦେବ ଠିଆ ହୋଇଛନ୍ତି ବାବାଜୀ ବେଶରେ । ଆଉ ପାଖରେ ନବୀନ ପରି ପିଲାଟିଏ ବସିଛି । ମୋର ସାହସ ହେଲା ନାହିଁ ଯିବାକୁ । ପୁଣି ଟିକିଏ ଢୁଳେଇ ପଡ଼ିଲି । ଉଠିଲା ବେଳକୁ ଦୁଇଜଣଯାକ ଅନ୍ତର୍ଦ୍ଧାନ । କାହିଁକି, ପୁଅ କୁଆଡ଼େ ଯାଇଛି କି ?

ରଘୁନାଥ ବୁଢ଼ୀର କଥା ଶୁଣିବାକୁ ଅପେକ୍ଷା କଲେ ନାହିଁ । ଦ୍ରୁତ ପଦରେ ରାମେଶ୍ୱର ଘାଟକୁ ଗଲେ । ବେଶୀ ଦୂର ନ ଯାଉଣୁ ଦେଖିଲେ ନବୀନ ରାମେଶ୍ୱର ତୋଟାଆଡ଼ୁ ଧୀରେ ଧୀରେ ଆସୁଛି । ଏ କି ରୂପ, ମୋ ନବୀନର ଏ କି ରୂପ !

ନବୀନର ଚେହେରା ଦେଖି ରଘୁନାଥଙ୍କର ହୃଦୟ ମଧ୍ୟରୁ ବେଦନାର ଆର୍ତ୍ତନାଦ ଉଠିଲା । ସେ ଦଉଡ଼ିଯାଇ ନବୀନକୁ ଆଲିଙ୍ଗନ କଲେ । ତାଙ୍କର ଚକ୍ଷୁରୁ ଲୋତକ ବର୍ଷିତ ହେଲା । ନବୀନର ଅଙ୍ଗ ନିଜର ଗାମୁଛାରେ ଝାଡ଼ିଦେଲେ । ହାତ ଧରି ଘରକୁ ଆଣିଲେ ।

ପଥରେ ନବୀନ ପଚାରିଲା, ବାପା ତୁ କାନ୍ଦୁଚୁ କାହିଁକି ?

'ରଘୁନାଥ ଉତ୍ତର ଦେଲେ ନାହିଁ ।

ନବୀନ କହିଲା, ବାପା ତୁ ମିଚ୍ଛୁଆ । ସେ ତ ମୋ ମା ନୁହେଁ । ତୁ ମିଛରେ କହିଲୁ କାହିଁକି ?

ରଘୁନାଥ ଅଧୀର ହୋଇ ପଚାରିଲେ, କାହିଁକି ବାପ, ସେ ପରା ତୋର ମା, ନାହିଁ କରୁଚୁ କାହିଁକି ?

ମୁଁ ତାକୁ କେତେଥର ପଚାରିଲି, ସେ ଶୁଣିଲା ନାହିଁ । ମୋତେ ସେ ଗେଲ କଲା ନାହିଁ ।

ରଘୁନାଥ ନବୀନର ଅନୁପସ୍ଥିତିର କାରଣ ବୁଝି ପାରିଲେ । ଆଉ କିଛି ପଚାରିବାକୁ ଇଚ୍ଛା ହେଲା ନାହିଁ । କହିଲେ, ସେହି ତୋର ମା । ତୋତେ ସେ ଗେଲ କରିବେ ଯେ ।

ବାବାଜୀ କହୁଥିଲେ ମୁଁ ଟିକିଏ ବଡ଼ ହୋଇଗଲେ ମୋର ମାଆକୁ ପାଇବାର ଉପାୟ ସେ କହିଦେବେ । ମା ମୋର ସ୍ୱର୍ଗରେ । ଇଏ ମୋର ମା ନୁହେଁ ।

ରଘୁନାଥ ପୁଣି କହିଲେ, ସେ ତୋର ମା । ତୋତେ ସେ ସ୍ନେହ କରିବେ ।

ଉଭୟେ ଘରେ ପହଞ୍ଚିଲେ । ସୂର୍ଯ୍ୟଦେବ ଅସ୍ତାଚଳ ତଳକୁ ଅବତରଣ କରୁଥିଲେ । ସାଧୁଆ ମା ରୁକ୍ମଣୀଙ୍କର ମୁଣ୍ଡ ଅତି ଯତ୍ନରେ ବାନ୍ଧିଦେଉଥିଲା । ନବୀନର ମାଆର ଅବଗୁଣ ଏବଂ ପୁତ୍ରର ମାଆଙ୍କ ସଙ୍ଗେ ସାମଞ୍ଜସ୍ୟ ଦେଖାଇ କେତେ କଥା କହୁଥିଲା । ରୁକ୍ମଣୀ ସାଧୁଆ ମାଆକୁ ଧର୍ମର ମା କରି ସାରିଥିଲେ ।

ସେ କହିଲା, ଝିଅ ଲୋ, ତାକୁ କଣ ଏମିତି ଦେଖିଲୁ କି ମ, ଠୋକା ବଡ଼ ଖଣ୍ଡେ । ମଉନମୁହାଁ ସିନା...... ।

ରୁକ୍ମଣୀ କେବଳ ହୁଁ କହି ବାକ୍ୟଟିର ଉତ୍ତର ଦେଲେ ।

ନବୀନ ଘରେ ପହଞ୍ଚିବା ମାତ୍ରେ ରଘୁନାଥ ତାକୁ ରୁକ୍ମଣୀଙ୍କ ନିକଟକୁ ଯିବାକୁ କହିଲେ । ଆଜିଯାଏ ନବୀନ ତାର ବାପାର ଅବାଧ ହୋଇ ନ ଥିଲା । ସେଥିନିମନ୍ତେ ତାକୁ ରୁକ୍ମଣୀଙ୍କ ନିକଟକୁ ଯିବାକୁ ପଡ଼ିଲା । ସେ ଯାଇ ରୁକ୍ମଣୀଙ୍କ

ନିକଟରେ ଠିଆ ହେଲା । ରୁକ୍ମଣୀ ନବୀନକୁ ଦେଖିବା ମାତ୍ରେ ମୁଣ୍ଡବନ୍ଧା ଅଧା କରି ଉଠି ଗଲେ । ନବୀନର ହାତ ଧରି ପାଖକୁ ନେଲେ । ସ୍ନେହରେ ତାଙ୍କରି ମସ୍ତକରେ ବାରମ୍ବାର ଚୁମ୍ବନ କଲେ ।

ନବୀନ କହିଲା, ତୁ କଣ ମୋ ମା ?

ରୁକ୍ମଣୀ କହିଲେ, ହଁ, ମୁଁ ତୋର ମା ।

ନବୀନ ବିଶ୍ୱାସ କଲା ନାହିଁ । ଭାବିଲା, ମୋ ମା ତ ସ୍ୱର୍ଗରେ । ଯେ ସ୍ୱର୍ଗକୁ ଯାଏ ସେ ଆଉ ଫେରେ ନାହିଁ । କିନ୍ତୁ ନୀରବ ରହିଲା ।

ନବୀନର ମନ ବଦଳିଲା ନାହିଁ । ସେହିଦିନ ଯେତେ ଆଦର ପାଇଲେ ମଧ୍ୟ ତାର ମନରେ କଦାପି ଆସିଲା ନାହିଁ ଯେ ଏଇ ତାର ମା । ପିଲାଙ୍କ ମନ ଥରେ ବଦଳିଲେ ଆଉ ପାରି ହୁଏ ନାହିଁ । ନଦୀ ପ୍ରଥମରେ ଯେଉଁଆଡ଼କୁ ମାଡ଼ି ଯାଇଥାଏ ତାର ସେଇ ଆଡ଼ର ସ୍ରୋତ ଆଉ କେହି ବଦଳାଇ ପାରନ୍ତି ନାହିଁ । ସେହିପରି ନବୀନର ମନର ଗତି ଆଉ କେହି ବଦଳାଇ ପାରିଲେ ନାହିଁ । ରୁକ୍ମଣୀ ଯେତେ ଆଦର କଲେ ମଧ୍ୟ ସେ ପ୍ରତିଦିନ ଦ୍ୱିପ୍ରହରେ ରାମେଶ୍ୱର ଘାଟକୁ ଯାଇ ବସିଥାଏ । ଯେପରି କାହାର ପ୍ରତୀକ୍ଷା କରୁଥାଏ । ନବୀନ ବସୁଥାଏ ଯଦି ବାବାଜୀଙ୍କର ଦେଖାପାଏ ତାଙ୍କୁ ପଚାରିବ, ସେ ବଡ଼ ହେଲାଣି କି ନାହିଁ ।

ରଘୁନାଥ ଚାରି ଛଅ ଦିନଯାଏ ନବୀନର ଖୋଜ ନେଇ ତାକୁ ଆଣିବାକୁ ଗଲେ । କେତେ ବୁଝାଇଲେ ସୁଝାଇଲେ କିନ୍ତୁ କିଛି ଫଳ ହେଲା ନାହିଁ । ଶିକ୍ଷକ ଦ୍ୱାରା ଜବତ୍ କରିବାକୁ ବସିଲେ । ତଥାପି ନବୀନର ପ୍ରକୃତି ବଦଳିଲା ନାହିଁ ।

ଏହିପରି ଦିନ ପରେ ଦିନ କଟିଗଲା । ସାଧୁଆ ମାଆର ଗାରେଡ଼ି ମନ୍ତ୍ର କୌଣସି କାର୍ଯ୍ୟକର ହେଲା ନାହିଁ । କିନ୍ତୁ ସେ ହତାଶ ହେଲା ନାହିଁ । ଭାବିଲା, ସାପର ବହୁତ ବିଷ; ହେଉ, ଦିନେ ଝଡ଼ିଯିବ ଯେ ।

ରଘୁନାଥ ମଧ୍ୟ ଧୀରେ ଧୀରେ ନବୀନକୁ ଖୋଜିବାରେ ହେଳା କଲେ । ଦିନେ ନୁହେଁ, ଦି ଦିନ ନୁହେଁ, ସପ୍ତାହ ସପ୍ତାହ କଟୁଛି । ନିଜ ଘରର କର୍ମରେ ବ୍ୟସ୍ତ ଥାଇ ସେ ପ୍ରିୟ ବନ୍ଧୁ ସୁନ୍ଦରଙ୍କର ଘରକୁ ମଧ୍ୟ ଟିକିଏ ପାଇ ପାରିନଥିଲେ ।

ପଥରେ ନବୀନ ପଚାରିଲା, ବାପା ତୁ କାନ୍ଦୁଛୁ କାହିଁକି ?

ରଘୁନାଥ ଉତ୍ତର ଦେଲେ ନାହିଁ ।

ନବୀନ କହିଲା, ବାପା ତୁ ମିଛୁଆ । ସେ ତ ମୋ ମା ନୁହେଁ । ତୁ ମିଛରେ କହିଲୁ କାହିଁକ ?

ରଘୁନାଥ ଅଧୀର ହୋଇ ପଚାରିଲେ, କାହିଁକ ବାପ, ସେ ପରା ତୋର ମା, ନାହିଁ କରୁଛୁ କାହିଁକ ?

ମୁଁ ତାକୁ କେତେଥର ପଚାରିଲି, ସେ ଶୁଣିଲା ନାହିଁ । ମୋତେ ସେ ଗେଲ କଲା ନାହିଁ ।

ରଘୁନାଥ ନବୀନର ଅନୁପସ୍ଥିତର କାରଣ ବୁଝି ପାରିଲେ । ଆଉ କିଛି ପଚାରିବାକୁ ଇଚ୍ଛା ହେଲା ନାହିଁ । କହିଲେ, ସେହି ତୋର ମା । ତୋତେ ସେ ଗେଲ କରିବେ ଯେ ।

ବାବାଜୀ କହୁଥିଲେ ମୁଁ ଟିକିଏ ବଡ଼ ହୋଇଗଲେ ମୋର ମାଆକୁ ପାଇବାର ଉପାୟ ସେ କହିଦେବେ । ମା ମୋର ସ୍ୱର୍ଗରେ । ଇଏ ମୋର ମା ନୁହେଁ ।

ରଘୁନାଥ ପୁଣି କହିଲେ, ସେ ତୋର ମା । ତୋତେ ସେ ସ୍ନେହ କରିବେ ।

ଉଭୟେ ଘରେ ପହଞ୍ଚିଲେ । ସୂର୍ଯ୍ୟଦେବ ଅସ୍ତାଚଳ ତଳକୁ ଅବତରଣ କରୁଥିଲେ । ସାଧୁଆ ମା ରୁକ୍ମଣୀଙ୍କର ମୁଣ୍ଡ ଅତି ଯତ୍ନରେ ବାନ୍ଧିଦେଉଥିଲା । ନବୀନର ମାଆର ଅବଗୁଣ ଏବଂ ପୁତ୍ରର ମାଆଙ୍କ ସଙ୍ଗେ ସାମଞ୍ଜସ୍ୟ ଦେଖାଇ କେତେ କଥା କହୁଥିଲା । ରୁକ୍ମଣୀ ସାଧୁଆ ମାଆକୁ ଧର୍ମର ମା କରି ସାରିଥିଲେ ।

ସେ କହିଲା, ଝିଅ ଲୋ, ତାକୁ କଣ ଏମିତ ଦେଖିଲୁ କି ମ, ଟୋକା ବଡ଼ ଖଣ୍ଡେ । ମଉନମୁହାଁ ସିନା...... ।

ରୁକ୍ମଣୀ କେବଳ ହୁଁ କହି ବାକ୍ୟଟିର ଉତ୍ତର ଦେଲେ ।

ନବୀନ ଘରେ ପହଞ୍ଚିବା ମାତ୍ରେ ରଘୁନାଥ ତାକୁ ରୁକ୍ମଣୀଙ୍କ ନିକଟକୁ ଯିବାକୁ କହିଲେ । ଆଜିଯାଏ ନବୀନ ତାର ବାପାର ଅବାଧ ହୋଇ ନ ଥିଲା । ସେଥିନିମନ୍ତେ ତାକୁ ରୁକ୍ମଣୀଙ୍କ ନିକଟକୁ ଯିବାକୁ ପଡ଼ିଲା । ସେ ଯାଇ ରୁକ୍ମଣୀଙ୍କ

ନିକଟରେ ଠିଆ ହେଲା । ରୁକ୍ମଣୀ ନବୀନକୁ ଦେଖିବା ମାତ୍ରେ ମୁଣ୍ଡବନ୍ଧା ଅଧା କରି ଉଠି ଗଲେ । ନବୀନର ହାତ ଧରି ପାଖକୁ ନେଲେ । ସ୍ନେହରେ, ତାହାରି ମସ୍ତକରେ ବାରମ୍ବାର ଚୁମ୍ବନ କଲେ ।

ନବୀନ କହିଲା, ତୁ କଣ ମୋ ମା ?

ରୁକ୍ମଣୀ କହିଲେ, ହଁ, ମୁଁ ତୋର ମା ।

ନବୀନ ବିଶ୍ୱାସ କଲା ନାହିଁ । ଭାବିଲା, ମୋ ମା ତ ସ୍ୱର୍ଗରେ । ଯେ ସ୍ୱର୍ଗକୁ ଯାଏ ସେ ଆଉ ଫେରେ ନାହିଁ । କିନ୍ତୁ ନୀରବ ରହିଲା ।

ନବୀନର ମନ ବଦଳିଲା ନାହିଁ । ସେହିଦିନ ଯେତେ ଆଦର ପାଇଲେ ମଧ୍ୟ ତାର ମନରେ କଦାପି ଆସିଲା ନାହିଁ ଯେ ଏଇ ତାର ମା । ପିଲାଙ୍କ ମନ ଥରେ ବଦଳିଲେ ଆଉ ପାରି ହୁଏ ନାହିଁ । ନଦୀ ପ୍ରଥମରେ ଯେଉଁଆଡ଼କୁ ମାଡ଼ି ଯାଇଥାଏ ତାର ସେଇ ଆଡ଼ର ସ୍ରୋତ ଆଉ କେହି ବଦଳାଇ ପାରନ୍ତି ନାହିଁ । ସେହିପରି ନବୀନର ମନର ଗତି ଆଉ କେହି ବଦଳାଇ ପାରିଲେ ନାହିଁ । ରୁକ୍ମଣୀ ଯେତେ ଆଦର କଲେ ମଧ୍ୟ ସେ ପ୍ରତିଦିନ ଦ୍ୱିପ୍ରହରେ ସିମେଣ୍ଟର ଘାଟକୁ ଯାଇ ବସିଥାଏ । ଯେପରି କାହାର ପ୍ରତୀକ୍ଷା କରୁଥାଏ । ନବୀନ ବସୁଥାଏ ଯଦି ବାବାଜୀଙ୍କର ଦେଖାପାଏ ତାଙ୍କୁ ପଚାରିବ, ସେ ବଡ଼ ହେଲାଣି କି ନାହିଁ ।

ରଘୁନାଥ ଘରୁ ଛଅ ଦିନଯାଏ ନବୀନର ଖୋଜ ନେଇ ତାକୁ ଆଣିବାକୁ ଗଲେ । କେତେ ବୁଝାଇଲେ ସୁଝାଇଲେ କିନ୍ତୁ କିଛି ଫଳ ହେଲା ନାହିଁ । ଶିକ୍ଷକ ଦ୍ୱାରା ଜବତ୍ କରିବାକୁ ବସିଲେ । ତଥାପି ନବୀନର ପ୍ରକୃତି ବଦଳିଲା ନାହିଁ ।

ଏହିପରି ଦିନ ପରେ ଦିନ କଟିଗଲା । ସାଧୁଆ ମାଆର ଗାରେଡ଼ି ମନ୍ତ୍ର କୌଣସି କାର୍ଯ୍ୟକର ହେଲା ନାହିଁ । କିନ୍ତୁ ସେ ହତାଶ ହେଲା ନାହିଁ । ଭାବିଲା, ସାପର ବହୁତ ବିଷ; ହଉ, ଦିନେ ଝଡ଼ିଯିବ ଯେ ।

ରଘୁନାଥ ମଧ୍ୟ ଧୀରେ ଧୀରେ ନବୀନକୁ ଖୋଜିବାରେ ହେଳା କଲେ । ଦିନେ ନୁହେଁ, ଦି ଦିନ ନୁହେଁ, ସପ୍ତାହ ସପ୍ତାହ କଟୁଛି । ନିଜ ଘରର କର୍ମରେ ବ୍ୟସ୍ତ ଥାଇ ସେ ପ୍ରିୟ ବନ୍ଧୁ ସୁନ୍ଦରଙ୍କର ଘରକୁ ମଧ୍ୟ ଟିକିଏ ଯାଇ ପାରିନଥିଲେ ।

ନବୀନର ତ ମନ ବଦଳିଲା ନାହିଁ । ରୁକ୍ମଣୀ ଯେତେ ଆଦର କରୁଥିଲେ ଆଜକାଲି ଟିକିଏ ତାହିଁରୁ କମ୍ ହେବାର ଦେଖାଗଲା ।

ମହାରାଜ କଠିଣ ପ୍ରସ୍ତର ଖଣ୍ଡ ଉପରେ ଉପବେଶନ କରି ମହାନଦୀ ବକ୍ଷ ଉପରେ ଗ୍ରୀଷ୍ମ କାଳର ରଜନୀ ଆଗମନର ଦୃଶ୍ୟ ଦେଖୁଥିଲେ ।

ଧୀରେ ଧୀରେ ସୂର୍ଯ୍ୟଦେବ ପଶ୍ଚିମ ଆକାଶରୁ ଅବତରଣ କରି ବହୁ ଦୂରରେ ପର୍ବତ ଅନ୍ତରାଳରେ ଲୁଚିଯାଇଛନ୍ତି । ତାଙ୍କର ଶେଷ କିରଣ ପ୍ରାସାଦ ପୃଷ୍ଠରେ ଏବଂ ବୃକ୍ଷମାନଙ୍କର ମସ୍ତକରେ ପଡ଼ି ସୁନେଲି ବର୍ଣ୍ଣର ଫଗୁ ପାଣି ଚାଳୁଛି । ମହାନଦୀ ଜଳରେ ସୂର୍ଯ୍ୟଙ୍କର କିରଣ ଆଉ ପଡୁନାହିଁ । ଜଳ ବର୍ତ୍ତମାନ ସୁଦ୍ଧା ଉଜ୍ଜ୍ୱଳ, ଉଷ୍ଣ । କାଉ ଦଳ ନଦୀର ଅପରପାର୍ଶ୍ୱରୁ କା କା କରି ଉଡ଼ି ଆସୁଛନ୍ତି । ବାଦୁଡ଼ିଗୁଡ଼ିକ ଘୋଡ଼ାଘାଟ ପଡ଼ା ତେନ୍ତୁଳି ଗଛରୁ ବାହାରି, ଚେଁ ଚେଁ ହୋଇ ପିଜୁଳି ଗଛ ଅନ୍ୱେଷଣରେ ବାହାରିଲେ । ଧାଣିଖିଆ ତୁଠରେ ଗାଈ ବାଛୁରୀ ପାଣି ପିଉଛନ୍ତି, ଆନନ୍ଦରେ ଚିତ୍କାର କରୁଛନ୍ତି । ଘୋଡ଼ା କେତୋଟି ହ୍ରେସାରବ କରି ତୁଠରେ ଡେଉଁଛନ୍ତି ରକ୍ଷକଙ୍କ ପାଖରୁ ପଳାଇଯିବାକୁ । ନଦୀ ମଧ୍ୟରେ ବଡ଼ ଚଟାଣ ଉପରୁ ଦୁଇ ଚାରୋଟି ପିଲା ବାଳିରେ ଲଡ୍ଡୁ ତିଆରି କରି ଜଳ ଦେବତାଙ୍କୁ ଉପହାର ଦେବା ସଙ୍ଗେ ସଙ୍ଗେ ଦୁମ୍ ଦାମ୍ ହୋଇ କୋଡ଼ିଏ ହାତ ଉପରୁ ପାଣି ଭିତରକୁ ଡେଇଁପଡୁଛନ୍ତି । କିଛି ସମୟ ଅଦୃଶ୍ୟ ହୋଇ ସନ୍ତରଣ କରି ପୁନର୍ବାର କୂଳକୁ ଫେରି ଆସୁଛନ୍ତି । କୁଙ୍କୁମରେ ରଙ୍ଗା ହୋଇଥିବା ଗାମୁଛା କାନ୍ଧରେ ପକାଇ ବେକରେ ମଲ୍ଲୀ ଫୁଲର ମାଳ ପିନ୍ଧି କେଇଜଣ ରସିକ ପୁରୁଷ ଗୁଣୁ ଗୁଣୁ ହେଉ ଛନ୍ତି ସ୍ତ୍ରୀ ଗାଧୁଆ ଘାଟ ଉପରେ ।

ସନ୍ଧ୍ୟା ହେଲା । ଏ ଆନନ୍ଦମୟ ଦୃଶ୍ୟ ଊଣା ହେବାକୁ ଲାଗିଲା । ରାତ୍ରି ଏକ ପ୍ରହର ସମୟରେ କେବଳ କେତୋଟି ବାଦୁଡ଼ିଙ୍କର ଚିତ୍କାର ଏବଂ ନଦୀ ଗର୍ଭରୁ କାହିଁ କ୍ଷୁଦ୍ର ଜଳପ୍ରପାତର ଶବ୍ଦ ବ୍ୟତୀତ ଆଉ କିଛି ଶୁଣାଗଲା ନାହିଁ ।

ମହାରାଜ ଏ ସବୁ ଦୃଶ୍ୟ ପ୍ରତି ଭ୍ରୂକ୍ଷେପ କରୁ ନ ଥିଲେ । ତାଙ୍କର ଚକ୍ଷୁ ପଶ୍ଚିମ ଗଗନର ଛବିରେ ସ୍ଥିର ରହିଥିଲା ପରି ଦେଖାଯାଉଥିଲେ ସୁଦ୍ଧା ସେ କିଛି ଦେଖୁ ନ ଥିଲେ ବାହ୍ୟ ଚକ୍ଷୁରେ । କିନ୍ତୁ ଅନ୍ତରର ଚକ୍ଷୁରେ ଦେଖୁଥିଲେ, ଅତୀତର ଚିତ୍ରରାଜି । ତାଙ୍କର ମନ ମଧ୍ୟରେ ଶତ ଶତ ଭବିଷ୍ୟତ୍ ଶଙ୍କା ଦାଉ ଦାଉ କରି ଜଳି ଉଠୁଥିଲା । ସେ ଭାବୁଥିଲେ, ମୁଁ ଆଜି ବୃଦ୍ଧ । କାଲି ପୁନି ଅଭାବରୁ ,ଏତେ ଅତୁର ହୋଇ ଦେବାଦେବୀଙ୍କର ଉପାସନରେ ସମୟ

କଟାଇଥିଲି । ପରମ ପିତାଙ୍କର କୃପାରୁ ସେ ବିଷୟରେ ମୋର ଭାବିବାର କିଛି କାରଣ ନାହିଁ । କିନ୍ତୁ ମୁଁ ବୃଦ୍ଧ, ମୃତ୍ୟୁ ରାଜ୍ୟର ନିକଟରେ । ତଥାପି ବୁଝି ପାରୁନାହିଁ କେତେ ଦୂରରେ । ସେ ରାଜ୍ୟରେ ପଦାର୍ପଣ କରିବା ପୂର୍ବରୁ ନିଜର ଆତ୍ମାକୁ ପରିଷ୍କାର କରିବା ବିଧେୟ । କରି ପାରୁ ନାହିଁ ତ । କିପରି, କରିବାକୁ ହୁଏ ଜାଣେ ନାହିଁ । ଯଦି ଆଜି ମୋର ମୃତ୍ୟୁ ହୁଏ, ମୋ ନିମନ୍ତେ କେଉଁଜଣ କାନ୍ଦିବେ ? ମୋର ପୁତ୍ର ତ କାନ୍ଦିବ ନାହିଁ । ଆତ୍ମାରୁ ଅଂଶ ଭିନ୍ନ କରି ଯାହାକୁ ଗଠନ କରିଛି ତାହାର ଚକ୍ଷୁରୁ ଲୋତକଧାରଟିଏ ଗଡ଼ିବନାହିଁ ତ ? ସେ ଆନନ୍ଦରେ ଅଧୀର ହୋଇଯିବ, ସିଂହାସନର ଅଧିକାରୀ ହୋଇଛି ବୋଲି । ମୋର ମୃତପିଣ୍ଡଟିର କି ଦଶା ହେବ ? ଲୋକେ ପାଣି ଦରଜା ବାଟେ ଶ୍ମଶାନକୁ ନେବେ । ଏହି ସେ ପାଣି ଦରଜା । ଏହି ପଥରେ ମୋର ପୂର୍ବ ପୁରୁଷଙ୍କର ମୃତପିଣ୍ଡ ଯାଇଛି, ମୋର ମଧ୍ୟ ଯିବ ! ସେଥିନିମନ୍ତେ ଭାବନା ନାହିଁ । କିନ୍ତୁ ମନୁଷ୍ୟର ସ୍ୱାର୍ଥକୁ ଧିକ୍ । ଯେତେ ଦିନ ନିମନ୍ତେ ମୁଁ କର୍ମଦକ୍ଷ ଥିବି, ଯେତେ ଦିନ ନିମନ୍ତେ 'ରାଜା' ଏହି ଉପାଧି ମୋର ଥିବ, ରାଜ୍ୟ ଲୋକେ ମୋତେ ମାନ୍ୟ କରୁଥିବେ । କିନ୍ତୁ ମୃତ୍ୟୁ ପରେ କି ଦଶା ହେବ ମୋର ପିଣ୍ଡର ?

ଏ ସଂସାର ମାୟାମୟ ! ରାଜାର ସଂସାର ହୀନ । ପିତାର ମୃତ୍ୟୁରେ ପୁତ୍ରର ଆନନ୍ଦ ! ତେବେ ସ୍ନେହ କଣ ଏ ସଂସାରରେ ନାହିଁ ? ଯହିଁ ଧନର ପ୍ରାଚୁର୍ଯ୍ୟ ତହିଁ ସ୍ନେହର ଅଭାବ । କୁଟୀରବାସୀ ସାମାନ୍ୟ ପ୍ରଜା ମୋର ସୁଖୀ । ସ୍ନେହର ସ୍ରୋତ ଯେଉଁ ସଂସାରରେ ବାହି ଯାଉଛି ସେ ସଂସାର ସାମାନ୍ୟ ସଂସାର ନୁହେଁ, ସ୍ୱର୍ଗ । ପ୍ରକୃତ ସୁଖର ରାଜତ୍ୱ କେବଳ ସେପରି ସ୍ୱର୍ଗରେ ସମ୍ଭବେ, ରାଜଭବନରେ ନୁହେଁ । ନା, ସ୍ନେହ ଏ ସଂସାରରେ ନାହିଁ ।

ଭଗବାନ୍ ଏ ସଂସାର ସୃଷ୍ଟି କରିଛନ୍ତି କାହିଁକି ? ବୃଥାରେ ? ଅଜ୍ଞାନ ଆମ୍ଭେ କାହିଁ ବୁଝିବୁ ତାଙ୍କର ଉଦ୍ଦେଶ୍ୟ ?

ମୁଁ ବୃଦ୍ଧ । ବୃଦ୍ଧର ଗତି ଏ ଜଗତରେ କଣ । ସେ କଣ ଦିନ ରାତି କେବଳ ଚିନ୍ତା କରୁଥିବ ? ମୋର ମୃତ୍ୟୁ କେବେ, କଣ ସବୁବେଳେ ମୃତ୍ୟୁର ଅପେକ୍ଷାରେ ବସିଥିବ ? ଅଥବା ମାଳା ଧରି 'ହରେ ରାମ କୃଷ୍ଣ' ଜପ କରୁଥିବ, ହରେ ରାମ କୃଷ୍ଣ ଜପ କରିବା ଦ୍ୱାରା କଣ ବୃଦ୍ଧର ଆତ୍ମା ଶୁଦ୍ଧି ହୁଏ ? ଯୌବନରେ ପଦାର୍ପଣ କରି ମାନବ ନାନାଦି ପାପ କାର୍ଯ୍ୟରେ ଲିପ୍ତ ଥାଇ ନିଜର ଆତ୍ମାକୁ କଳୁଷିତ କରିଥାଏ । ସେ କଳୁଷ କଣ କେବଳ ହରେ ରାମ କୃଷ୍ଣ ଜପି ଆତ୍ମାରୁ ମନୁଷ୍ୟ ଧୋଇଦେଇ ପାରେ ? ହୋଇ ପାରେ । କିନ୍ତୁ ହରେ ରାମ କୃଷ୍ଣ ସ୍ଥିର ମନରେ ଜପ କରିବ କିପରି ? ଏ ସଂସାରର କୋଳାହଳ ମଧ୍ୟରେ ଥାଇ ! ନିର୍ଜ୍ଜନ ସ୍ଥାନ ଦରକାର । ତେଣୁ ଯୋଗୀ ଓ ମହାପୁରୁଷମାନେ ଅରଣ୍ୟକୁ

ତପସ୍ୟାର ଉପଯୁକ୍ତ ସ୍ଥାନ ବୋଲି ସ୍ଥିର କରିଅଛନ୍ତି । ସେହି ଭଲ । ରାଜ୍ୟ ଛାଡ଼ି ବନସ୍ଥଳୀକୁ ଗଲେ ଉତ୍ତମ ହେବ । ତାଙ୍କର ଦେଖା ପାଇ ପାରିବି ? ଯେ ଅନନ୍ତ, ଯାହାର ରୂପ ନାହିଁ ତାହାଙ୍କୁ ଦର୍ଶନ କରିବାକୁ ହେଲେ ସୂକ୍ଷ୍ମ ଚକ୍ଷୁ ଆବଶ୍ୟକ । ସେ ସୂକ୍ଷ୍ମ ଚକ୍ଷୁ କେବଳ ଭଗବତ୍ ଚିନ୍ତା ଆଣି ଦେବ ।

ମାୟା ଡୋରି ବୃଦ୍ଧରାଜାଙ୍କୁ ଟାଣିଲା । ତାଙ୍କର ଚିନ୍ତା ସଂସାର ଆଡ଼କୁ ଛୁଟିଲା । ଦୀର୍ଘ ଶ୍ୱାସ ତ୍ୟାଗ କରି ସେ ଚିନ୍ତା କଲେ, ମୋର ପୁତ୍ର ବାଳକ, ରାଜ୍ୟ ରକ୍ଷା କରିବାକୁ ଅକ୍ଷମ । ଯଦି ତାକୁ ଛାଡ଼ି ଚାଲିଯାଏ ଅରଣ୍ୟକୁ, ଶତ୍ରୁ ରାଜ୍ୟ ଆକ୍ରମଣ କରିବେ । କିମ୍ବା ପ୍ରଜା ଯାହାଙ୍କ ଅନ୍ନରେ ପ୍ରତିପାଳିତ ଏ ମୋର ପିଣ୍ଡ, ଭାଗ୍ୟକୁ ଆଦରି ରହିବେ । ଶୁଣୁଛି ବର୍ଗୀମାନେ ଲୁଣ୍ଠନ କରିବାକୁ ଆମ ରାଜ୍ୟ ଆଡ଼କୁ ମୋହିଁଲେଣି । ଓଡ଼ିଶାର ଅନ୍ୟ ଗଡ଼ଜାତମାନଙ୍କରେ ବର୍ଗୀ ଉତ୍ପାତର କାହାଣୀ ଶୁଣାଗଲାଣି । ହରିପୁର ପରି କ୍ଷୁଦ୍ର ରାଜ୍ୟରେ ଉତ୍ପାତ କରିବା ସହଜ ।

ମୋର ବାଳକ ପୁତ୍ର, ଏକମାତ୍ର ପୁତ୍ରକୁ ଛାଡ଼ି, ରାଜ୍ୟର ପ୍ରଜାଙ୍କୁ ଛାଡ଼ି, ଅରଣ୍ୟ ଯାତ୍ରା ବୃଥା । ବୃଦ୍ଧ ବୟସରେ କାନନକାନ୍ତାର ଭ୍ରମଣ କରି ଶରୀରକୁ କଷ୍ଟ ଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । କାହିଁ ପଥର ଖଣ୍ଡ, କାହିଁ ଗଭୀର ନଦୀ, କାହିଁ ବା ବୃହତ୍ ପାହାଡ଼ ଅତିକ୍ରମ କରି କେଉଁ ଭବିଷ୍ୟତ୍ ଆଶାରେ ଶରୀରକୁ କଷ୍ଟ ଦେବି ? ମୁଁ କ୍ଷତ୍ରିୟ । କ୍ଷତ୍ରିୟର କାର୍ଯ୍ୟ ତପସ୍ୟା ନୁହେଁ, ରାଜ୍ୟ ରକ୍ଷା । ରାଜ୍ୟ ପାଳନ, ପ୍ରଜା ପାଳନ ତାର ଧର୍ମ ।

ବୃଦ୍ଧଙ୍କର ମନ ମଧ୍ୟରେ ଯେତେ ଚିନ୍ତା ଖେଳିଗଲା ସେ କେଉଁଟିର ସମାଧାନ କରି ପାରିଲେ ନାହିଁ । ରାତ୍ରି ଅଧିକ ହେବାକୁ ଲାଗିଲା । ପ୍ରାସାଦ ମଧ୍ୟରୁ ଦୁଇଜଣ ରକ୍ଷୀ ଓ ତିନିଜଣ ଭିତରିଆ ଆସି ରାତ୍ରି ଅଧିକ ହେବାର ସମ୍ବାଦ ଜଣାଇଦେଲେ ।

ଭୋଜନାଦି କାର୍ଯ୍ୟ ଶେଷ କରି ମହାରାଜ ଏକୁଟିଆ ଗୋଟିଏ ଘରେ ରାତ୍ରି କଟାଇବେ ବୋଲି ଆଦେଶ ଦେଲେ । ରାଜପ୍ରାସାଦର ପଛଆଡ଼େ ଅନେକ ଦିନରୁ ଗୋଟିଏ ବଖରା ପକ୍କା ଘର ଅଛି । ଏକୁଟିଆ ଘର ବୋଲି ଅପରିଷ୍କାର । କେତେ ବର୍ଷରୁ ଉହିଁରେ ଚୂନ ବୋଳାହୋଇନଥିବାରୁ ଦୂରରୁ ଦେଖିବାକୁ ଅସୁନ୍ଦର ଦିଶେ । କୌଣସି ଲୋକ ଅଦ୍ୟାବଧି ସେ ଗୃହ ମଧ୍ୟରେ କଣ ଅଛି ଦେଖିନାହାନ୍ତି । ଲୋକଙ୍କର ବିଶ୍ୱାସ, ପୂର୍ବ କାଳରେ ସେ ଘରେ ଗୋଟିଏ କାପାଳିକ ରହୁଥିଲା, ଲୋକଙ୍କୁ ମାରି ତାଙ୍କର ମୁଣ୍ଡ ଆଣି ସେହି ଘରେ ପୂଜା କରି ଯଜ୍ଞ କରେ । ଯଜ୍ଞ ସିଦ୍ଧ ହେବାରୁ ରାଜ୍ୟ ଛାଡ଼ି ଚାଲିଯାଇଛି । ମଲା ଲୋକଙ୍କର ଆତ୍ମା ଭୂତ ବେଶ ଧରି ସେହି ଘରେ ରହିଛନ୍ତି ।

ନମସ୍କାର କରିବାରୁ ସେ ମହାରାଜାଙ୍କୁ ଉପଦେଶ ପ୍ରଦାନ କରି କହିଲେ, ତୁମେ କିଏ ? ନିଜକୁ ନିଜେ ଚିହ୍ନ କି ? ଏ ଜଗତରେ ତମର କେହି ନାହିଁ । ରାଜ୍ୟର ଲୋକଙ୍କଠାରୁ ସ୍ତ୍ରୀ ପୁତ୍ର ପର୍ଯ୍ୟନ୍ତ ସମସ୍ତେ ଉତ୍ତମ ଭାବରେ ଜାଣନ୍ତି ଏ ଘରେ ଭୂତ ଅଛି, ଯେ ଆସିବ ତାର ଜୀବନ ସଂଶୟ । ତୁମେ ଆସିଛ; ପ୍ରବାଦ ଅନୁରୂପ ତୁମର ମୃତ୍ୟୁ ନିଶ୍ଚୟ । ଯଦି ପତ୍ନୀ ପୁତ୍ର ତୁମର ହୋଇଥାନ୍ତେ ସେମାନେ ଗୋଡ଼ାଇ ଆସିଥାନ୍ତେ । ତମର ବିଶ୍ୱସ୍ତ ଅନୁଚର ମଧ୍ୟରୁ ତ କେହି ଆସିଲେ ନାହିଁ । କ୍ଷତ୍ରିୟ କୁଳରେ ରାଜବଂଶରେ ଜନ୍ମଗ୍ରହଣ କରିଥିଲ । ଭଗବାନ ତୁମକୁ ରାଜ୍ୟଶାସନ କରିବାକୁ ପଠାଇଥିଲେ । ସଂସାରର ମଙ୍ଗଳ କରିବାକୁ ପଠାଇଥିଲେ । ପଥିକ ଯେଉଁ ପଥାଶ୍ରମରେ ରାତ୍ରିଟିଏ ରହେ ତାର ଉଚିତ ନୁହେଁ କି ପଥାଶ୍ରମର ମଙ୍ଗଳ କାମନା କରିବା ? ସେହିପରି ତୁମେ ତୁମର ରାଜ୍ୟର ମଙ୍ଗଳ କଲ । ଅନେକ କାର୍ଯ୍ୟ କରିଛ । ବର୍ତ୍ତମାନ ଆଉ ଏ ବୃଦ୍ଧ ବୟସରେ ରାଜ୍ୟ ବିଷୟରେ ଚିନ୍ତା କରିବା ଅନାବଶ୍ୟକ । ରାଜ୍ୟ ଶାସନ ଦାୟିତ୍ୱ ଅନ୍ୟ ଉପରେ ନ୍ୟସ୍ତ କରି ବର୍ତ୍ତିବ ନ ଯାଅ, ଆତ୍ମାର ଉନ୍ନତି ସାଧନ କର । ଆତ୍ମାର ଉନ୍ନତି ସାଧନ କରାଯାଇ ପାରେ ଏ ସଂସାରରେ; କିନ୍ତୁ ସଂସାରକୁ ଗଲେ ପୁନର୍ବାର ମାୟା ଜାଲରେ ପଡ଼ିବାକୁ ହେବ । ଅତଏବ ଚାଲିଯାଅ, ମଣିଭଦ୍ରା ପର୍ବତକୁ, ଯୋଗୀ ଋଷିଙ୍କର ସ୍ଥାନକୁ ।

ପ୍ରଶାନ୍ତ-ହୃଦୟ ସିଂହଙ୍କର ସ୍ୱପ୍ନ ଶେଷ ହେଲା । ନିଦ୍ରାଭଙ୍ଗ ହେଲା । କାନ୍ଥ ଉପରେ ନଜର ପକାଇଲେ । ଦେଖିଲେ କାନ୍ଥରେ ଖଣ୍ଡେ କଳା ପୋତା ହୋଇଛି । କଳା ଦେହରେ ଗେରୁଆ ରଙ୍ଗର ଲୁଗା । ଚଉକୀ ଉପରୁ ଉଠି ଆସି ଲୁଗା ଖଣ୍ଡି କାନ୍ଥରୁ କାଢ଼ି ନେଲେ । କେବଳ ଲୁଗା ନୁହେଁ, ଲୁଗା ତଳେ ଦୁଇଖଣ୍ଡି କୌପିନ ମଧ୍ୟ ଦେଖିବାକୁ ପାଇଲେ । ସେ ସମସ୍ତ ଚଉକୀ ଉପରେ ରଖି ଘରର ଏପାଖରୁ ସେପାଖ, ସେପାଖରୁ ଏପାଖ ଚାଲିଲେ ।

ସେ ଗମ୍ଭୀର ଚିନ୍ତାମଗ୍ନ । ଚିନ୍ତା କରୁଥିଲେ, ସତ୍ୟ ହେଉ ବା ସ୍ୱପ୍ନ ହେଉ, ବାବାଜୀଙ୍କ ଉପଦେଶ ଏବଂ ରାଜ୍ୟର ହାଲଚାଲ । ପୁତ୍ର ବାଳକ ହେଲେ ମଧ୍ୟ ରାଜ୍ୟର ଖବର ଅନ୍ତର ବୁଝି ପାରିବ ଯଦି ମନ୍ତ୍ରୀ ସାହାଯ୍ୟ କରିବେ । ରାଣୀ ତାଙ୍କ ପୁତ୍ରର ସମସ୍ତ ଭାର ଗ୍ରହଣ କରିବେ । ପୁତ୍ର ପାଇଁ ପୁତ୍ର ନାମରେ ସେ ରାଜକାର୍ଯ୍ୟ ଚଳାଇବେ ।

ରାତ୍ରି ଶେଷ ହେବାକୁ ବସିଲା । ମହାରାଜ ଧର୍ମ ବିଷୟରେ ଭାବିବାକୁ ଲାଗିଲେ । ରାତ୍ରି ଅନିଦ୍ରାରେ ଦୂର ଆସିଲା । ଭାବିଲେ, ଲୋକେ କହନ୍ତି ଏ ଘରେ ଭୂତ ଅଛି । ସେ ମଣିଷ ଖାଇପାଏ । କାହିଁ ମୁଁ ତ ଜାଗ୍ରତ । ଭୂତ କାହିଁ ଦେଖିଲି ନାହିଁ ? ଅଛ, ଏ କଳସୀ ଏ ଘରକୁ କାହୁଁ ଆସିଲା ? ଗୃହ ମଧ୍ୟରେ

କୂପ କାହିଁକି ଖୋଲା ହୋଇଛି ? କୂପର ପତନ ଭୂମି ପତନର ଉପରକୁ ଉଠି ନାହିଁ ? ବେଦାସନ ଦୁଇଟି ଆସିଲା କାହୁଁ ?

ଏ ବାବାଜୀ କିଏ ? ସେ କେଉଁଠି ଥାଆନ୍ତି ? ସେ ସ୍ୱପ୍ନରେ ଯାହା କହି ଯାଇଛନ୍ତି ମୋତେ ସତ୍ୟ ପରି ଲାଗୁଛି । ଅଥବା ସେ ପ୍ରକୃତରେ ଯାହା କହି ଯାଇଛନ୍ତି ମୋତେ ସ୍ୱପ୍ନ ପରି ଲାଗୁଛି ।

ଏହାପରେ ଭାବୁ ଭାବୁ ବାହାରୁ କାଉଁର କା କା ଶବ୍ଦ ଶୁଣାଗଲା । ରାତି ଶେଷ ହେଲାଣି । ଘର ଭିତରେ ଅମାବାସ୍ୟାର ଅନ୍ଧକାର । ମହାରାଜାଙ୍କର ନିଦ୍ରା ଭାଙ୍ଗିଗଲା । ସେ ଶୁଣିଲେ ପଦାରୁ କିଏ ଉଚ୍ଚସ୍ୱରରେ ଡାକୁଛି ଦରଜା ଖୋଲି ଦେଖିବା ମହାରାଜାଙ୍କୁ ।

ଅନ୍ୟ ଜଣେ ଥଟ୍ଟା କରି କହୁଛି, ଆରେ ମନ୍ତ୍ରୀ ସିନା ଲୋକ ଆଣୁଛନ୍ତି ରାଜାଙ୍କୁ ଉଦ୍ଧାର କରିବାକୁ, ରାଜା ଆଉ ଅଛନ୍ତି ଯେ ! ସେ ଥିବେ ଭୂତର ପେଟରେ ।

ଅନ୍ୟ ଜଣେ କହୁଛି, ଭଲ ହେଲା ପ, ବୁଢ଼ା ମଲା, ପାପ ଗଲା । ଆମର ଶ୍ରେଷ୍ଠ ରାଜା ଆଜି ରାଜା ହେବେ ।

ମହାରାଜ ମନକୁ ମନ କହିଲେ, ଭଲ ହେଲା, ବୁଢ଼ା ମଲା ପାପ ଗଲା । ପୁନର୍ବାର ହସି ହସି ଧୀର ସ୍ୱରରେ ନିଜକୁ କହିଲେ, ଆଉ ନୁହେଁ; ଆଉ ମୁଁ ସଂସାରର ମୁଖ ଦର୍ଶନ କରିବ ନାହିଁ । ନମସ୍କାର ତୋର ମାୟାର ଖେଳକୁ । ଶ୍ରେଷ୍ଠ ରାଜା ରାଜା ହେବେ ସେଥିନିମନ୍ତେ ଆନନ୍ଦ । ହଁ ମୋର ମଧ୍ୟ ଆନନ୍ଦ ।

କେଉଁ ପଥରେ ଯିବାକୁ ହେବ ? ସ୍ୱପ୍ନରେ ବାବାଜୀ କହିଥିଲେ, ପଥ ଏହି କୂପ, ତେବେ ଏହି କୂପରେ ପଡ଼ି ଆତ୍ମହତ୍ୟା କରିବାକୁ ହେବ । ତାହାହିଁ ହେଉ ।

ମହାରାଜ କୂପ ମଧ୍ୟକୁ ଡେଇଁପଡ଼ିଲେ ।

କୂପ ଗଭୀର ନୁହେଁ, ଜଳଶୂନ୍ୟ । ପାହାଚ ପରେ ପାହାଚ, ଏହିପରି ଲମ୍ବିଯାଇଅଛି କେତେ ତଳକୁ । ଗୋଟିକ ପରେ ଗୋଟିଏ ଅବତରଣ କରି ଆସିଲେ । ଶେଷରେ ତାଙ୍କର ଗୋଡ଼ରେ ଗୋଲ ହୋଇ କଣ ବାଜିଲା । ସେ ଚମକି ଉଠି ସେହି ପଦାର୍ଥଟିକୁ ତଳୁ ଉଠାଇ ବାମ ହସ୍ତରେ ଧରିଲେ ।

ତପସ୍ୟାର ଉପଯୁକ୍ତ ସ୍ଥାନ ବୋଲି ସ୍ଥିର କରିଅଛନ୍ତି । ସେହି ଭଲ । ରାଜ୍ୟ ଛାଡ଼ି ଦେଇଥିଲେ ଗଲେ ଉତ୍ତମ ହେବ । ତାଙ୍କର ଦେଖା ପାଇ ପାରିବ ? ଯେ ଅନନ୍ତ, ଯାହାର ରୂପ ନାହିଁ ତାହାଙ୍କୁ ଦର୍ଶନ କରିବାକୁ ହେଲେ ସୂକ୍ଷ୍ମ ଚକ୍ଷୁ ଅବଶ୍ୟକ । ସେ ସୂକ୍ଷ୍ମ ଚକ୍ଷୁ କେବଳ ଭଗବତ୍ ଚିନ୍ତା ଆଣି ଦେବ ।

ମାୟା ଡୋର ବୃଦ୍ଧରାଜାଙ୍କୁ ଟାଣିଲା । ତାଙ୍କର ଚିନ୍ତା ସଂସାର ଆଡ଼କୁ ଛୁଟିଲା । ଦୀର୍ଘ ଶ୍ବାସ ତ୍ୟାଗ କରି ସେ ଚିନ୍ତା କଲେ, ମୋର ପୁତ୍ର ବାଳକ, ରାଜ୍ୟ ରକ୍ଷା କରିବାକୁ ଅକ୍ଷମ । ଯଦି ତାକୁ ଛାଡ଼ି ଚାଲିଯାଏ ଅରଣ୍ୟକୁ, ଶତ୍ରୁ ରାଜ୍ୟ ଆକ୍ରମଣ କରିବେ । ନିରୀହ ପ୍ରଜା ଯାହାଙ୍କ ଅଳରେ ପ୍ରତିପାଳିତ ଏ ମୋର ପିଣ୍ଡ, ଭାଗ୍ୟକୁ ଆଦରି ରହିବେ । ଶୁଣୁଛି ବର୍ଗୀମାନେ ଲୁଣ୍ଠନ କରିବାକୁ ଆମ ରାଜ୍ୟ ଆଡ଼କୁ ମୋହିଁଲେଣି । ଓଡ଼ିଶାର ଅନ୍ୟ ଗଡ଼ଜାତମାନଙ୍କରେ ବର୍ଗୀ ଉତ୍ପାତର କାହାଣୀ ଶୁଣାଗଲଣି । ହରିପୁର ପରି କ୍ଷୁଦ୍ର ରାଜ୍ୟରେ ଉତ୍ପାତ କରିବା ସହଜ ।

ମୋର ବାଳକ ପୁତ୍ର, ଏକମାତ୍ର ପୁତ୍ରକୁ ଛାଡ଼ି, ରାଜ୍ୟର ପ୍ରଜାଙ୍କୁ ଛାଡ଼ି, ଅରଣ୍ୟ ଯାତ୍ରା ବୃଥା । ବୃଦ୍ଧ ବୟସରେ କାନନକାନ୍ତାର ଭ୍ରମଣ କରି ଶରୀରକୁ କଷ୍ଟ ଦେବା ବୁଦ୍ଧିମାନର କାର୍ଯ୍ୟ ନୁହେଁ । କାହିଁ ପଥର ଖଣ୍ଡ, କାହିଁ ଗଭୀର ନଦୀ, କାହିଁ ବା ବୃହତ୍ ପାହାଡ଼ ଅତିକ୍ରମ କରି କେଉଁ ଭବିଷ୍ୟତ୍ ଆଶାରେ ଶରୀରକୁ କଷ୍ଟ ଦେବି ? ମୁଁ କ୍ଷତ୍ରିୟ । କ୍ଷତ୍ରିୟର କାର୍ଯ୍ୟ ତପସ୍ୟା ନୁହେଁ, ରାଜ୍ୟ ରକ୍ଷା । ରାଜ୍ୟ ପାଳନ, ପ୍ରଜା ପାଳନ ତାର ଧର୍ମ ।

ବୃଦ୍ଧଙ୍କର ମନ ମଧ୍ୟରେ ଯେତେ ଚିନ୍ତା ଖେଳିଗଲା ସେ କେଉଁଟିର ସମାଧାନ କରି ପାରିଲେ ନାହିଁ । ରାତ୍ରି ଅଧିକ ହେବାକୁ ଲାଗିଲା । ପ୍ରାସାଦ ମଧ୍ୟରୁ ଦୁଇଜଣ ରକ୍ଷୀ ଓ ତିନିଜଣ ଭିତରିଆ ଆସି ରାତ୍ରି ଅଧିକ ହେବାର ସମ୍ବାଦ ଜଣାଇଦେଲେ ।

ଭୋଜନାଦି କାର୍ଯ୍ୟ ଶେଷ କରି ମହାରାଜ ଏକୁଟିଆ ଗୋଟିଏ ଘରେ ରାତ୍ରି କଟାଇବେ ବୋଲି ଆଦେଶ ଦେଲେ । ରାଜପ୍ରାସାଦର ପଛଆଡ଼େ ଅନେକ ଦିନରୁ ଗୋଟିଏ ବଖରା ପକ୍କା ଘର ଅଛି । ଏକୁଟିଆ ଘର ବୋଲି ଅପରିଷ୍କାର । କେତେ ବର୍ଷରୁ ତହିଁରେ ଚୂନ ବୋଳାହୋଇନଥିବାରୁ ଦୂରରୁ ଦେଖିବାକୁ ଅସୁନ୍ଦର ଦିଶେ । କୌଣସି ଲୋକ ଅଦ୍ୟାବଧି ସେ ଗୃହ ମଧ୍ୟରେ କଣ ଅଛି ଦେଖିନାହାନ୍ତି । ଲୋକଙ୍କର ବିଶ୍ବାସ, ପୂର୍ବ କାଳରେ ସେ ଘରେ ଗୋଟାଏ କାପାଳିକ ରହୁଥିଲା, ଲୋକଙ୍କୁ ମାରି ତାଙ୍କର ମୁଣ୍ଡ ଆଣି ସେହି ଘରେ ପୂରାଇ କଣ ଯଜ୍ଞ କରେ । ଯଜ୍ଞ ସିଦ୍ଧି ହେବାରୁ ରାଜ୍ୟ ଛାଡ଼ି ଚାଲିଯାଇଛି । ମଲା ଲୋକଙ୍କର ଆତ୍ମା ଭୂତ ବେଶ ଧରି ସେହି ଘରେ ରହିଛନ୍ତି ।

ମହାରାଜ ଆଦେଶ ଦେଲେ, ସେହି ଘରଟି ପରିଷ୍କାର କର। କିନ୍ତୁ ନିକଟରେ ଠିଆ ହୋଇଥିବା ଭିତରିଆ ଆଦେଶରେ ବିଶ୍ୱାସ କରି ପାରିଲା ନାହିଁ। ପଚାରିଲା, ହଜୁର ମା ବାପ, ସେ ଭୂତ ଘରେ ଆଦେଶ କଲେ।

ରାଜା କହିଲେ, ହଁ, ଶୀଘ୍ରପରିଷ୍କାର କରାଇ ମୋତେ ସମ୍ବାଦ ଦିଅ।

ବିଚାରା କରେ କଣ ? ଯାହାକୁ କହିଲା ସେ ମୁହଁ ନେଫେଡ଼ିଦେଇ ଗଲା।

ଜଣେ କହିଲା, ହୁଁ, ଜୀବନ ବଡ଼ ନା ଚାକିରୀ ବଡ଼ ରେ ? ଆରେ ଜୀବନ ଥିଲେ ସିନା ଚାକିରୀ।

ରାଜାଙ୍କୁ ସମ୍ବାଦ ଦିଆଗଲା ଯେ ଘର ସଫା କରିବାକୁ କେହି ମଙ୍ଗିଲେ ନାହିଁ। ରାଜା ନିଜେ ବାଧ୍ୟ ହୋଇ ଏକାକୀ ସେ ଘର ମଧ୍ୟରେ ପଶିଲେ। ହାତରେ ଗୋଟାଏ ଘିଅର ଦୀପ। ରାଜାଙ୍କର ଏପରି ଢଙ୍ଗ ଡାଙ୍ଗରେ ସମସ୍ତେ ଅବାକ୍ ହୋଇଗଲେ। ନିଜେ ମହାରାଣୀ ଆସି ବାରଣ କଲେ, ସେ ଭୂତ ଘରକୁ ଯାଅ ନାହିଁ। ରାଜା ମାନିଲେ ନାହିଁ।

ଏକୁଟିଆ ଘରେ ପଶିଲେ। କାହିଁ, ତାଙ୍କ ସାଙ୍ଗରେ ତ ଆଉ କେହି ସେ ଘର ଭିତରକୁ ପଶିଲେ ନାହିଁ ?

ଗୃହ ମଧ୍ୟରେ ପ୍ରବେଶ କରି ଦ୍ୱାର ବନ୍ଦ କଲେ। ଆଲୋକ ସାହାଯ୍ୟରେ ଦେଖିଲେ ଯେ ଗୃହର ମଧ୍ୟ ସ୍ଥଳରେ ଗୋଟିଏ କୂପ। ପ୍ରଶାନ୍ତ ହୃଦୟ ସିଂହଙ୍କର ମନରେ ଭୟ ହେଲା, ସେ ଚମକିପଡ଼ିଲେ। ପରେ ନିଜେ ନିଜକୁ ସମ୍ଭାଳିନେଇ ଆଲୋକଟି ନିକଟର କାନ୍ଥରେ ଖୋଲା ହୋଇଥିବା ଠଣାରେ ରଖି ଚତୁର୍ଦ୍ଦିଗ ନିରୀକ୍ଷଣ କରିବାକୁ ଲାଗିଲେ। ଭିତର ବେଶ୍ ପରିଷ୍କାର। ନିକଟରେ ଦୁଇଟି ଚଉକୀ ଅଦ୍ୟାବଧି ରାଜପ୍ରାସାଦର ନୂତନ ବ୍ୟବହୃତ ପରି ଦେଖାଯାଉଛି। କାନ୍ଥ କୋଣରେ କଳସୀ, ଜଳ ଶୂନ୍ୟ। ମୁହଁ ମାଡ଼ି ପଡ଼ିଛି।

ମହାରାଜ ଚଉକୀରେ ଉପବେଶନ କରି ଦ୍ୱିତୀୟଟି ଉପରେ ପଦ ସ୍ଥାପନ କରି କିଛି ସମୟ ଚୁପ୍ ରହିଲେ। ଘର ମଧ୍ୟରେ ଅନ୍ୟାନ୍ୟ କି କି ପଦାର୍ଥ ଅଛି ଦେଖିବା ପୂର୍ବରୁ ତାଙ୍କର ଇଚ୍ଛା ହେଲା ସେ ବିଶ୍ରାମ ଗ୍ରହଣ କରିବେ।

ଅର୍ଦ୍ଧରାତ୍ର ଗଡ଼ିଯାଇଥିଲା। ଆଖି ବୁଜି ଟିକିଏ ଘୁମାଇବାକୁ ଚେଷ୍ଟା କଲେ। କୋମଳ ଶଯ୍ୟାରେ ଯାହାର ନିଦ୍ରା ହୁଏ ନାହିଁ, ଆଜି ଏ କଠିଣ ବେତାସନ ଉପରେ ତାହାର ନିଦ୍ରା ! ମୁଣ୍ଡ ବଙ୍କାକରି, ନାସାରେ ଘଡ଼ଘଡ଼ ଗର୍ଜନ କରୁ କରୁ ସ୍ୱପ୍ନ-ରାଜ୍ୟରେ ବିଚରଣ କଲେ। ସ୍ୱପ୍ନ-ରାଣୀ ଅନେକ ଦୃଶ୍ୟ ତାଙ୍କୁ ଦେଖାଇଦେଲେ। ପରେ ଜଣେ ସନ୍ନ୍ୟାସୀଙ୍କ ନିକଟକୁ ନେଇ ଗଲେ। ସନ୍ନ୍ୟାସୀଙ୍କୁ

ନମସ୍କାର କରିବାରୁ ସେ ମହାରାଜାଙ୍କୁ ଉପଦେଶ ପ୍ରଦାନ କରି କହିଲେ, ତୁମେ କିଏ ? ନିଜକୁ ନିଜେ ଚିହ୍ନ କି ? ଏ ଜଗତରେ ତମର କେହି ନାହିଁ । ରାଜ୍ୟର ଲୋକଙ୍କଠାରୁ ସ୍ତ୍ରୀ ପୁତ୍ର ପର୍ଯ୍ୟନ୍ତ ସମସ୍ତେ ଉତ୍ତମ ଭାବରେ ଜାଣନ୍ତି ଏ ଘରେ ଭୂତ ଅଛି, ଯେ ଆସିବ ତାର ଜୀବନ ସଂଶୟ । ତୁମେ ଆସିଛ; ପ୍ରବାଦ ଅନୁରୂପ ତୁମର ମୃତ୍ୟୁ ନିଶ୍ଚୟ । ଯଦି ପତ୍ନୀ ପୁତ୍ର ତୁମର ହୋଇଥାନ୍ତେ ସେମାନେ ଗୋଡ଼ାଇ ଆସିଥାନ୍ତେ । ତମର ବିଶ୍ୱସ୍ତ ଅନୁଚର ମଧ୍ୟରୁ ତ କେହି ଆସିଲେ ନାହିଁ । କ୍ଷତ୍ରିୟ କୁଳରେ ରାଜବଂଶରେ ଜନ୍ମଗ୍ରହଣ କରିଥିଲ । ଭଗବାନ ତୁମକୁ ରାଜ୍ୟଶାସନ କରିବାକୁ ପଠାଇଥିଲେ । ସଂସାରର ମଙ୍ଗଳ କରିବାକୁ ପଠାଇଥିଲେ । ପଥିକ ଯେଉଁ ପଥାଶ୍ରମରେ ରାତ୍ରି ଟିଏ ରହେ ତାର ଉଚିତ ନୁହେଁ କି ପଥାଶ୍ରମର ମଙ୍ଗଳ କାମନା କରିବା ? ସେହିପରି ତୁମେ ତୁମର ରାଜ୍ୟର ମଙ୍ଗଳ କଲ । ଅନେକ କାର୍ଯ୍ୟ କରିଛ । ବର୍ତ୍ତମାନ ଆଉ ଏ ବୃଦ୍ଧ ବୟସରେ ରାଜ୍ୟ ବିଷୟରେ ଚିନ୍ତା କରିବା ଅନାବଶ୍ୟକ । ରାଜ୍ୟ ଶାସନ ଦାୟିତ୍ୱ ଅନ୍ୟ ଉପରେ ନ୍ୟସ୍ତ କରି ବର୍ତ୍ତମାନ ଯାଅ, ଆତ୍ମାର ଉନ୍ନତି ସାଧନ କର । ଆତ୍ମାର ଉନ୍ନତି ସାଧନ କରାଯାଇ ପାରେ ଏ ସଂସାରରେ; କିନ୍ତୁ ସଂସାରକୁ ଗଲେ ପୁନର୍ବାର ମାୟା ଜାଲରେ ପଡ଼ିବାକୁ ହେବ । ଅତଏବ ଚାଲିଯାଅ, ମଣିଭଦ୍ରା ପର୍ବତକୁ, ଯୋଗୀ ଋଷିଙ୍କର ସ୍ଥାନକୁ ।

ପ୍ରଶାନ୍ତ-ହୃଦୟ ସିଂହଙ୍କର ସ୍ୱପ୍ନ ଶେଷ ହେଲା । ନିଦ୍ରାଭଙ୍ଗ ହେଲା । କାନ୍ଥ ଉପରେ ନଜର ପକାଇଲେ । ଦେଖିଲେ କାନ୍ଥରେ ଖଣ୍ଡେ କଳା ପୋତା ହୋଇଛି । କଳା ଦେହରେ ଗେରୁଆ ରଙ୍ଗର ଲୁଗା । ଚଉକୀ ଉପରୁ ଉଠି ଆସି ଲୁଗା ଖଣ୍ଡି କାନ୍ଥରୁ କାଢ଼ି ନେଲେ । କେବଳ ଲୁଗା ନୁହେଁ, ଲୁଗା ତଳେ ଦୁଇଖଣ୍ଡି କୌପୀନ ମଧ୍ୟ ଦେଖିବାକୁ ପାଇଲେ । ସେ ସମସ୍ତ ଚଉକୀ ଉପରେ ରଖି ଘରର ଏପାଖରୁ ସେପାଖ, ସେପାଖରୁ ଏପାଖ ଚହଲିଲେ ।

ସେ ଗଭୀର ଚିନ୍ତାମଗ୍ନ । ଚିନ୍ତା କରୁଥିଲେ, ସତ୍ୟ ହେଉ ବା ସ୍ୱପ୍ନ ହେଉ, ବାବାଜୀଙ୍କ ଉପଦେଶ ଏବଂ ରାଜ୍ୟର ହାଲଚାଲ । ପୁତ୍ର ବାଳକ ହେଲେ ମଧ୍ୟ ରାଜ୍ୟର ଖବର ଅନ୍ତର ବୁଝି ପାରିବ ଯଦି ମନ୍ତ୍ରୀ ସାହାଯ୍ୟ କରିବେ । ରାଣୀ ତାଙ୍କ ପୁତ୍ରର ସମସ୍ତ ଭାର ଗ୍ରହଣ କରିବେ । ପୁତ୍ର ପାଇଁ ପୁତ୍ର ନାମରେ ସେ ରାଜକାର୍ଯ୍ୟ ଚଳାଇବେ ।

ରାତ୍ରି ଶେଷ ହେବାକୁ ବସିଲା । ମହାରାଜ ଘରଟି ବିଷୟରେ ଭାବିବାକୁ ଲାଗିଲେ । ରାତ୍ରି ଅନିଦ୍ରାରେ ଦୁମ ଆସିଲା । ଭାବିଲେ, ଲୋକେ କହନ୍ତି ଏ ଘରେ ଭୂତ ଅଛି । ସେ ମଣିଷ ଖାଇପାଏ । କାହିଁ ମୁଁ ତ ଜାଗ୍ରତ । ଭୂତ କାହିଁ ଦେଖିଲି ନାହିଁ ? ଆଛା, ଏ କଲସୀ ଏ ଘରକୁ କାହୁଁ ଆସିଲା ? ଗୃହ ମଧ୍ୟରେ

କୂପ କାହିଁକି ଖୋଲା ହୋଇଛି ? କୂପର ପତନ ଭୂମି ପତ୍ତନର ଉପରକୁ ଉଠି ନାହିଁ ? ବେଦାସନ ଦୁଇଟି ଅସିଲା କାହିଁ ?

ଏ ବାବାଜୀ କିଏ ? ସେ କେଉଁଠି ଥାଆନ୍ତି ? ସେ ସ୍ୱପ୍ନରେ ଯାହା କହି ଯାଇଛନ୍ତି ମୋତେ ସତ୍ୟ ପରି ଲାଗୁଛି । ଅଥବା ସେ ପ୍ରକୃତରେ ଯାହା କହି ଯାଇଛନ୍ତି ମୋତେ ସ୍ୱପ୍ନ ପରି ଲାଗୁଛି ।

ଏହିପରି ଭାବୁ ଭାବୁ ବାହାରୁ କାଉର କା କା ଶବ୍ଦ ଶୁଣାଗଲା । ରାତି ଶେଷ ହେଲାଣି । ଘର ଭିତରେ ଅମାବାସ୍ୟାର ଅନ୍ଧକାର । ମହାରାଜାଙ୍କର ନିଦ୍ରା ଭାଙ୍ଗିଗଲା । ସେ ଶୁଣିଲେ ପଦାରୁ କିଏ ଉଚ୍ଚସ୍ୱରରେ ଡାକୁଛି ଦରଜା ଖୋଲ ଦେଖିବା ମହାରାଜାଙ୍କୁ ।

ଅନ୍ୟ ଜଣେ ଅଟ୍ଟହାସ କରି କହୁଛି, ଆରେ ମନ୍ତ୍ରୀ ସିନା ଲୋକ ଆଣୁଛନ୍ତି ରାଜାଙ୍କୁ ଉଦ୍ଧାର କରିବାକୁ, ରାଜା ଆଉ ଅଛନ୍ତି ଯେ ! ସେ ଥିବେ ଭୂତର ପେଟରେ ।

ଅନ୍ୟ ଜଣେ କହୁଛି, ଭଲ ହେଲା ମ, ବୁଢ଼ା ମଲା, ପାପ ଗଲା । ଆମର ଜ୍ୟେଷ୍ଠ ରାଜା ଆଜି ରାଜା ହେବେ ।

ମହାରାଜ ମନକୁ ମନ କହିଲେ, ଭଲ ହେଲା, ବୁଢ଼ା ମଲା ପାପ ଗଲା । ପୁନର୍ବାର ହସି ହସି ଧୀର ସ୍ୱରରେ ନିଜକୁ କହିଲେ, ଆଉ ନୁହେଁ; ଆଉ ମୁଁ ସଂସାରର ମୁଖ ଦର୍ଶନ କରିବି ନାହିଁ ! ନମସ୍କାର ତାର ମାୟାର ଖେଳକୁ । ଜ୍ୟେଷ୍ଠ ରାଜା ରାଜା ହେବେ ସେଥିନିମନ୍ତେ ଆନନ୍ଦ । ହଁ ମୋର ମଧ୍ୟ ଆନନ୍ଦ ।

କେଉଁ ପଥରେ ଯିବାକୁ ହେବ ? ସ୍ୱପ୍ନରେ ବାବାଜୀ କହିଥିଲେ, ପଥ ଏହି କୂପ, ତେବେ ଏହି କୂପରେ ପଡ଼ି ଆତ୍ମହତ୍ୟା କରିବାକୁ ହେବ । ତାହାହିଁ ହେଉ ।

ମହାରାଜ କୂପ ମଧ୍ୟକୁ ଡେଇଁପଡ଼ିଲେ ।

କୂପ ଗଭୀର ନୁହେଁ, ଜଳଶୂନ୍ୟ । ପାହାଚ ପରେ ପାହାଚ, ଏହିପରି ଲମ୍ବିଯାଇଅଛି କେତେ ତଳକୁ । ଗୋଟିକ ପରେ ଗୋଟିଏ ଅବତରଣ କରି ଆସିଲେ । ଶେଷରେ ତାଙ୍କର ଗୋଡ଼ରେ ଗୋଲ ହୋଇ କଣ ବାଜିଲା । ସେ ଚମକି ଉଠି ସେହି ପଦାର୍ଥଟିକୁ ତଳୁ ଉଠାଇ ବାମ ହସ୍ତରେ ଧରିଲେ ।

ଶରୀରରୁ ଘର୍ମ ନିର୍ଗତ ହୋଇ ପାରିଥିଲୁ ବସ୍ତ୍ର ଭିଜାଇଦେଲା । ନିଶ୍ୱାସ ରୁଦ୍ଧ ହେବାକୁ ବସିଲା । ଅନ୍ତର ଗୋଟିଏ ପାହାଚ ଅବତରଣ କରି ଦେଖିଲେ ପଥ ବନ୍ଦ । ଦକ୍ଷିଣ ହସ୍ତରେ ଏଣେତେଣେ ହାତ ମାରି ଦାଉଣ୍ଡିଲେ । କିନ୍ତୁ ସେ ଘୋର ଅନ୍ଧାର ମଧ୍ୟରେ କିଛି ଦେଖି ପାରିଲେ ନାହିଁ, କେବଳ ଶିଉଳୀ ବସି କାନ୍ଥ ଚିକ୍‌କଣ ହୋଇଥିବାରୁ ହାତ ଖସିଯାଉଛି । ଥରେ ଦୁଇଥର ମୁଣ୍ଡ କାନ୍ଥରେ ବାଜିଲା । ସେ ଘୋର ଅନ୍ଧାର ଭିତରେ ଚକ୍ଷୁ ଜଳକା ହୋଇଯାଉଛି । ଚକ୍ଷୁ ବନ୍ଦ କଲେ । ଗମଗ୍ଧ ଗନ୍ଧ ଓଃ, ନାକଫଟା ଗନ୍ଧ । ଗମ୍ଭୀରତାର ମଧ୍ୟରେ ଗୋଟାଏ ଶବ୍ଦ ତାଙ୍କର କାନ ଦୁଇଟିକୁ ବଧିର କଲା ।

ମହାରାଜ ବାଧ୍ୟ ହୋଇ ପୁନର୍ବାର କୂପ ମଧ୍ୟରୁ ବାହାରି ଆସିଲେ । ହାତରେ ଧରିଥିବା ପଦାର୍ଥଟି ଆଲୋକରେ ଦେଖିଲେ । ଦୀପର ଆଲୋକ ସେହି ଅନ୍ଧକାରମୟ ଘରଟିର ମଧ୍ୟଭାଗକୁ ଆଲୋକିତ କରୁଥିଲା । କୂପ ମଧ୍ୟକୁ ଆଲୋକର ସରଳ ରଶ୍ମି ପ୍ରବେଶ କରି ପାରୁ ନ ଥିଲା । ଆଲୋକ ସାହାଯ୍ୟରେ ଦେଖିଲେ, ହସ୍ତସ୍ଥିତ ଗୋଲାକାର ପଦାର୍ଥ, ରକ୍ତ-ମାଂସ-ଚର୍ମହୀନ ନର ମୁଣ୍ଡ । ମୁଣ୍ଡଟି ଭୂପତିତ ହେଲା । ମହାରାଜାଙ୍କର ଦେହ ରମ୍ଭା ପତ୍ର ପରି ଥରିବାକୁ ଲାଗିଲା । ସେ ସ୍ଥିର ହୋଇ ଚଉକୀ ଉପରେ ବସିପଡ଼ିଲେ ।

ନିଜକୁ ନିଜେ ପ୍ରବୋଧନା ଦେଇ କହିଲେ, ଭୟ, ଭୟ କାହାକୁ ? ବୃନ୍ଦର ଭୟ କାହାକୁ । ନିଜର ହୃଦୟରେ ହସ୍ତ ସ୍ଥାପନ କରି କହିଲେ, ଭୟ ନାହିଁ । ମନୁଷ୍ୟର ଭୟ କାହିଁକି ହୁଏ ? ଜୀବନ ପାଇଁ ତ । ମନୁଷ୍ୟ ଯଦି ଅମର ହୋଇ ଥାନ୍ତା ତେବେ ତାହାର ତିଳେ ମାତ୍ର ଭୟ ରହନ୍ତା ନାହିଁ ।

ସଂସାରରେ ଭୂତ ବୋଲି କଣ ଅଛି ? ନିଶ୍ଚୟ ଅଛି । ଏହି ଘର ମଧ୍ୟରେ ଅଛି; ନଭୁବା ନର ମୁଣ୍ଡ ଆସିଲା କାହୁଁ ? ତେବେ, ମୋର ମୃତ୍ୟୁ ସୁନିଶ୍ଚିତ । ଭୟ ନାହିଁ, ପୁନର୍ବାର ଯିବି କୂପ ମଧ୍ୟକୁ । ଆଲୋକ ନେବି । ମରିବା ପୂର୍ବରୁ ଥରେ ଦେଖିବି ଭୂତ କିପରି ।

ତାଙ୍କର ଆଖିରେ ପଡ଼ିଲା ବିଛଣାରେ ରଖା ହୋଇଥିବା ଗେରୁଆ ଲୁଗା ଓ ଦୁଇଖଣ୍ଡି କୌପୀନ । ମନେ ହେଲା ଯେପରି କିଏ ଅଟ୍ଟହାସ କରି ହସି ତାଙ୍କ କାନରେ କହୁଛି, ଭୂତ ଏ ଘରେ କେହି ନାହିଁ, କେବଳ ତୁମେ ଅଛ । କୌପୀନ ପରିଧାନ କର । ରାଜ ବେଶ ତ୍ୟାଗ କର । ନର ମୁଣ୍ଡ ତାହାର ଉପରେ ରଖ । ଆଲୋକ ନେଇ କୂପ ମଧ୍ୟରେ ପଶ, ପଥ ପାଇ ପାରିବ ।

ମହାରାଜ ଚତୁର୍ଦ୍ଦିଗ ନିରୀକ୍ଷଣ କରି କାହାକୁ ନ ଦେଖି ଭାବିଲେ, କେହି ନାହିଁ, କେବଳ ମୋର ଭାବନା । ଠିକ୍ ଯଦି ରାଜ ବେଶ ଉପରେ ନର ମୁଣ୍ଡ

ରଖେ, ଦ୍ୱାର ଖୋଲି ଲୋକେ ଦେଖି ଭାବବେ ରାଜାଙ୍କୁ ଭୂତ ଖାଇଛି । ଠିକ୍ କଥା ମନକୁ ଗଲା । କିନ୍ତୁ କୂପର ତଳୁ ଅଳ୍ପ ଦୂରଯାଏ ପାହାଚ ଅଛି । ତା ପରେ ଦ୍ୱାର ବନ୍ଦ । ବୋଧହୁଏ କବାଟ ଅଛି । ଦେଖାଯାଉ ।

ମହାରାଜ ରାଜବେଶ ତ୍ୟାଗ କରି, ଦ୍ୱାର ନିକଟରେ ଲମ୍ବ କରି ଶୁଆଇ ଦେଲେ । ନର ମୂର୍ତ୍ତିଟି ତା ଉପରେ ରଖି ରାଜପ୍ରାସାଦ ପାଖ କବାଟର କିଳଣୀ ଖୋଲିଦେଲେ । ଟିକିଏ ଅଟକାଇ ରଖିଲେ । ସନ୍ନ୍ୟାସୀ ବେଶ ଧରି ଶ୍ମଶ୍ରୁରେ ହାତ ମାରି ଟିକିଏ ହସି କହିଲେ, 'ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକିର ।' ମୁଁ ଜାଣି ଜାଣି ମୋତେ ଫକୀର କରିଛି ।

ରାଜପ୍ରାସାଦ ଆଡ଼ୁ ମନ୍ତ୍ରୀଙ୍କର ସ୍ୱର ଶୁଭିଲା । ସେ ଜଣେ ଭୃତ୍ୟକୁ ଆଦେଶ ଦେଉଛନ୍ତି, ମହାରାଜଙ୍କୁ ଡାକ । ଯଦି ସେ ଶବ୍ଦ ନ କରନ୍ତି, ଦ୍ୱାର ଖୋଲି ପଶିବା । ଦେଖିବା ଭିତର କ'ଣ ।

ସମସ୍ତେ ନୀରବ ।

ମହାରାଜ କୂପ ମଧ୍ୟରେ ପଶିଲେ ।

ପାହାଚ ଅବତରଣ କରି ପୁଣି ସେହି ସ୍ଥାନରେ ପହଞ୍ଚିଲେ, ଯେଉଁଠାରେ ଦ୍ୱାର ବନ୍ଦ । କବାଟ ଲାଗିଛି । ଆଲୋକ ସାହାଯ୍ୟରେ ଦେଖିଲେ କବାଟରେ କିଳଣୀ ଅଛି । ଲୁହାର କିଳଣୀ । କବାଟ ଖୋଲିବାକୁ ଚେଷ୍ଟା କଲେ । ଖୋଲିଲା ନାହିଁ । ଲୁହା କିଳଣୀରେ କଳଙ୍କି ଲାଗିଥିବାରୁ କଷ୍ଟ ସାଧ୍ୟ ହେଲା । ତଥାପି ମହାରାଜ କିଳଣୀ ଖୋଲିବାକୁ ଚେଷ୍ଟା କଲେ ।

ଏଣେ ମନ୍ତ୍ରୀ ମହୋଦୟଙ୍କ ଆଦେଶ ବ୍ୟର୍ଥ ହେଲା । କୌଣସି ଲୋକ କବାଟ ଖୋଲିବାକୁ ମଙ୍ଗିଲେ ନାହିଁ । ମନ୍ତ୍ରୀ କହିଲେ, ଯେଉଁ ଲୋକ କବାଟ ଖୋଲି ମହାରାଜାଙ୍କୁ ଉଦ୍ଧାର କରି ପାରିବ, ତାକୁ ପୁରସ୍କାର ଏକଶତ ଟଙ୍କା ଦିଆଯିବ ।

ମନ୍ତ୍ରୀଙ୍କର କଥାରେ କେହି ଜଣେ ଉତ୍ତର ଦେଲା, ସେ ବଞ୍ଚିଥିଲେ ସିନା ଉଦ୍ଧାର କରିବ ?

ମନ୍ତ୍ରୀ ନିଜର ଭୁଲ ବୁଝି ପାରିଲେ । କହିଲେ, ଯଦି କିଏ ଠିକ୍‌କରି କହି ପାରିବ, ରାଜା ବର୍ତ୍ତମାନ କେଉଁ ଅବସ୍ଥାରେ, ତେବେ ସେ ପୁରସ୍କାର ପାଇବ ।

ଲୋକମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ଏକୁଟିଆ ଘରଆଡ଼େ ଅନାଇ ରହିଲେ । ଦୁଇଜଣ ଲୁଗା ଭିଡ଼ ପୁଣି ଖୋଲି ପକାଇଲେ । ଜଣେ କିଛିଦୂର ଆଗେଇ ଯାଇ ଫେରି ଆସିଲା । କହିଲା, ଆରେ ବାପରେ, ଜୀବନ ବଡ଼ ନା ଟଙ୍କା ବଡ଼ ? ଟଙ୍କାପାଇଁ କିଏ ଭୂତମୁହଁକୁ ଯିବ ?

ମନ୍ତ୍ରୀ ମହୋଦୟ ନିଜେ ସେ କାର୍ଯ୍ୟ କରିବେ ବୋଲି ମନସ୍ଥ କଲେ । ମନ୍ତ୍ରୀ ଏକୁଟିଆ ଘର ଭିତରକୁ ଯିବା ସମୟରେ ନିକଟରେ ଥିବା ଲୋକଙ୍କୁ କହିଲେ, ତୁମ୍ଭେମାନେ ଏ ସ୍ଥାନରୁ ଚାଲିଯାଅ । ଏ କାର୍ଯ୍ୟ କରିବାକୁ ଯଦି କେହି ଇଚ୍ଛୁକ ନ ହେଲ ତ ବୃଥାରେ ଠିଆହୋଇ ଲାଭ ନାହିଁ । ମୋର ଗୋଟିଏ ଅନୁରୋଧ ରକ୍ଷା କରିବ । ମହାରାଜ ଭୂତଘରେ ରାତି ଯାପନ କରିଥିଲେ ବୋଲି କାହାକୁ କହିବ ନାହିଁ ।

ଲୋକମାନେ ସେ ସ୍ଥାନ ତ୍ୟାଗ କରିବା ପରେ ମନ୍ତ୍ରୀ କିଛିକ୍ଷଣ ନୀରବରେ ଠିଆହୋଇ କେତେକଥା ଭାବିଲେ; ଯଦି ମହାରାଜାଙ୍କର କିଛି ଅନିଷ୍ଟ ହୋଇଥିବ ତ ଏ ବୃଦ୍ଧ ବୟସରେ ରାଜ୍ୟର ଭାର ତାଙ୍କର ମୁଣ୍ଡରେ ଲଦା ହେବ ।

ମନ୍ତ୍ରୀ ମନସ୍ଥ କଲେ, ନିଜେ ଯାଇ ରାଜାଙ୍କୁ ଦେଖି ଆସିବେ । ପୁଣି ଭାବିଲେ, ଯଦି ଭୂତ ମୋତେ ଧରେ, ତେବେ ରାଜ୍ୟର ଖବର ବୁଝିବ କିଏ ? ରାଜପୁତ୍ର ନିତାନ୍ତ ପିଲା । ରାଣୀ ସ୍ତ୍ରୀଲୋକ । ତଥାପି ମନ୍ତ୍ରୀ ଏକୁଟିଆ ଘରଆଡ଼େ ଚାଲିଲେ ।

କବାଟରେ ହାତଦେବା ସଙ୍ଗେ ସଙ୍ଗେ କବାଟ ଖୋଲିଗଲା । ଦୁଇପାଦ ଘର ଭିତରକୁ ପଶିଯାଇ ଯାହା ଦେଖିଲେ, ତହିଁରେ ସେ ଭୟଭୀତ ହେଲେ । ଛାତି ଦାଉଁ ଦାଉଁ ପଡ଼ିଲା, ଘର ମଧ୍ୟରୁ ଦୁଇପାଦ ପଛକୁ ଘୁଞ୍ଚିଆସି ଆଉ ଥରେ ସେ ଦୃଶ୍ୟ ଦେଖିଲେ । ଚକ୍ଷୁରେ ଜଳ ଟଳଟଳ ହେଲା । ଧୀରେ ଧୀରେ କବାଟ ପୁନର୍ବାର ଅଉଜାଇ ଆଣି ବାହାରୁ ବନ୍ଦ କଲେ । ଭାବିଲେ, ସତେ ଏ ସଂସାରରେ ଭୂତ ଅଛନ୍ତି ! ଭୂତଥିବା କଥାକୁ ହସରେ ଉଡ଼ାଇ ଦେଉଥିଲୁଁ । କିନ୍ତୁ ଭୂତ ସତ୍ୟ । ସେ ଦେହ ଧରେ । ଅତଯାତ ହୁଏ । ମହାରାଜାଙ୍କୁ ଭୂତ ଖାଇଛି । ଅହା, ଜାଣୁ ଜାଣୁ ସେ ଏ ସାହସ କରିବାକୁ ଗଲେ କାହିଁକି ? ମୋର ଏ ବୃଦ୍ଧ ବୟସରେ ଆଉ ଶାନ୍ତି ଆସିବ ନାହିଁ । ରାଜ୍ୟର ଭାର ଅଜଠାରୁ ମୁଣ୍ଡରେ ବୋହିବାକୁ ପଡ଼ିବ ।

ମନ୍ତ୍ରୀ ମନ ଦୁଃଖରେ ସେଠାରୁ ଫେରିଗଲେ ।

ମହାରାଜାଙ୍କର ଚେଷ୍ଟା ସଫଳ ହେଲା । କବାଟ ଖୋଲିଲେ । ଦୀପଟି ହାତରେ ଧରି ସୁଡ଼ଙ୍ଗ ମଧ୍ୟରେ ପ୍ରବେଶ କଲେ । ତେଣିକି ଆଉ ପାହାଚ ନାହିଁ । ସମତଳ ନିମ୍ନଭାଗ । ଶିଉଳିରେ ପିଚ୍ଛିଳ । ସ୍ଥାନେ ସ୍ଥାନେ କାନ୍ଥ ଦେହରେ ଗୋଟିଏ, ଗୋଟିଏ ଠଣା । ଗୋଟିଏ ହାତରେ ଆଲୋକ ଧରି ଅନ୍ୟଟି କାନ୍ଥରେ ଭରାଦେଇ କିଛିଦୂର ଯିବାପରେ ଦେଖିଲେ ତେଣିକି ଆଉ ରାସ୍ତା ନାହିଁ । କେବଳ ମାଟି । ଭିତରେ ସୁଡ଼ଙ୍ଗ ଖୋଳା ହୋଇଛି । ଚାଲିବାରେ ସୁବିଧା ହେଲା । ଆଉ କାନ୍ଥ ଧରି ଚାଲିବାକୁ ପଡ଼ିଲା ନାହିଁ । କିନ୍ତୁ ତଳ ଅମସୃଣ । ଅବଡ଼ା ଖାବଡ଼ା ପଥରମୟ ।

କିଛିଦୂର ଅଗ୍ରସର ହୋଇ ଦେଖିଲେ ପଟେ ଖଣ୍ଡା । କଳଙ୍କି ଲାଗି ଖଣ୍ଡାର ଅନେକ ଅଂଶ ନଷ୍ଟହୋଇ ଯାଇଛି । ଖଣ୍ଡାଟିକୁ ଦକ୍ଷିଣ ହସ୍ତରେ ଧରିଲେ । ଚାଲିଲେ । ଧୀରେ ଧୀରେ ହସ୍ତସ୍ଥିତ ଆଲୋକର ରଶ୍ମି କମିଗଲା । କିଛିଦୂର ଆସି ଦେଖିଲେ, ପଥର ମଧ୍ୟସ୍ଥଳରେ ଅନେକ ହାଡ଼ ପଡ଼ିଛି । ଏପରି ଭାବରେ ସେଗୁଡ଼ିକ ଖଞ୍ଜା ହୋଇଛି, ଦେଖିଲେ ମନେ ହେଉଥିଲା ରକ୍ତ ମାଂସ ଚର୍ମବିହୀନ ଅସ୍ଥିନିର୍ମିତ ମନୁଷ୍ୟ ।

ଆଲୋକର ରଶ୍ମି କମିବାକୁ ଲାଗିଲା । ଭାବିଲେ, ଏଥର ଦୀପଟି ଲିଭିଗଲେ ଅନ୍ଧାରରେ ଯିବାକୁ ପଡ଼ିବ । କେଜାଣି କାହିଁକି ହସ୍ତସ୍ଥିତ ଅସିଖଣ୍ଡି ତଳେ ଥୋଇ ଦେଲେ । ଦୀପ ଲିଭିବା ପୂର୍ବରୁ ଥରେ ଜଳି ଉଠିଲା । ମହାରାଜାଙ୍କର ହାତ ଟାଣିଗଲା । ସେ ଦୀପଟିକୁ ଫୋପାଡ଼ିଦେବାକୁ ବାଧ୍ୟ ହେଲେ । ତାଙ୍କର ଆଗରେ ପଡ଼ିଲା ଖଣ୍ଡେ ପଥ, ଅନ୍ଧାର, ଘୋର ଅନ୍ଧାର । ମହାରାଜାଙ୍କୁ ଅଧୀର କରି ପକାଇଲା । ସେ ଭାବିଲେ, ସତେ କି ସୁଡ଼ଙ୍ଗରେ ସେ ସାତଦିନ ରହିଲେଣି । ଅଣ୍ଡାଳି ଅଣ୍ଡାଳି ଚାଲିଲେ । କିଛିଦୂର ଆସି ଦେଖିଲେ, ବାଟ ବନ୍ଦ । କବାଟ କଳଣୀ ଖୋଜି ଖୋଜି ନ ପାଇ ଆଖି ବୁଜି ଅନେକ ସମୟ ବସି ରହିଲେ । ଫେରି ଯିବା ଅସମ୍ଭବ, ଦ୍ୱାର ଖୋଲିବା ଅସମ୍ଭବ ! ଚେଷ୍ଟା ଓ ପରିଶ୍ରମ କରିବ ।

କବାଟ ଖୋଲିଗଲା । ପୁଣି ପାହାଡ଼ ଉପରକୁ ଉଠିଲେ । ସଂଖ୍ୟା ତ କମ ନୁହେ । ଅବତରଣ ସମୟରେ ଯେତେ ପାହାଚ ଥିଲା ବର୍ତ୍ତମାନ ତା'ର କେତେ ଗୁଣ ଉଠିଲେଣି । ଆହୁରି ଉପରକୁ ଉଠି ଦେଖିଲେ, ସେ ପାହାଡ଼ ଉପରେ । ଦେବ ମନ୍ଦିର ଯେଉଁ ପାହାଡ଼ ଉପରେ ନିର୍ମିତ ହେଉଛି, ଏ ତ ସେଇ ପାହାଡ଼ ।

ସୂର୍ଯ୍ୟ ମଧ୍ୟ-ଆକାଶ ତ୍ୟାଗକରି ଧୀରେ ଧୀରେ ଓହ୍ଲାଇ ଆସୁଛନ୍ତି । ପାହାଡ଼ ଉପରୁ ହରିପୁର ସହରର ଦୃଶ୍ୟ ଉତ୍ତମରୂପେ ଦେଖିଲେ । ପରିବର୍ତ୍ତନ ଲକ୍ଷିତ ହେଲା ନାହିଁ ।

ପାହାଡ଼ରୁ ଓହ୍ଲାଇ ସେ ରାମେଶ୍ୱର ଘାଟକୁ ଗଲେ । ନବୀନ ସଙ୍ଗେ ସାକ୍ଷାତ ହେଲା । ତେଲନଦୀର ମୃଗତୃଷ୍ଣା ମଧ୍ୟଦେଇ ସ୍ୱ ଉଦ୍ଦେଶ୍ୟ ସାଧନ ନିମିତ୍ତ ବାବାଜୀ ଚାଲିଲେ ଅନିର୍ଦ୍ଦିଷ୍ଟ ପଥରେ ।

ଏ ମଧ୍ୟରେ ଛଅଟି ବର୍ଷ ଗତ ହୋଇଗଲାଣି । ନବୀନ ଆଉ ପିଲା ନୁହେ । ସଂସାରର ଭଲ ମନ୍ଦ କେତେକ ପରିମାଣରେ ବୁଝି ପାରିଲାଣି । ଏଣିକି ଆଉ କାହାକୁ ତାର ମା ବିଷୟରେ କିଛି ପଚାରେ ନାହିଁ । ଯେଉଁଦିନ ଶ୍ମଶାନରେ ତାର ବାବାଜୀଙ୍କ ସଙ୍ଗେ ସାକ୍ଷାତ ହୋଇଥିଲା, ବାବାଜୀ ତାକୁ କହି ଯାଇଥିଲେ, ପରେ ସାକ୍ଷାତ ହେବ । ବାବାଜୀଙ୍କ ସଙ୍ଗେ କିପରି ସାକ୍ଷାତ ହେବ, ସେଥିନିମନ୍ତେ ପ୍ରତ୍ୟହ ସେ ରାମେଶ୍ୱର ଶ୍ମଶାନକୁ ଯାଉଥିଲା । କିନ୍ତୁ ଅନେକ ଦିନ ନିରାଶ ହୋଇ ଫେରିଲା ପରେ ରାମେଶ୍ୱରକୁ ଯିବା ବନ୍ଦ କରିଦେଲା ।

ରଘୁନାଥ ଦିନେ ଦୁଇଦିନ ତାକୁ ଖୋଜିଥିଲେ । ପରେ ଆଉ ଖୋଜିଲେ ନାହିଁ । ସେ ଜାଣି ପାରିଲେ, ନବୀନ ପ୍ରତିଦିନ ରାମେଶ୍ୱର ଘାଟକୁ ଯାଉଛି । ଅନ୍ୟନ୍ୟ ଖୋଜିବାର ଲୋଡ଼ା ନାହିଁ ।

ରଘୁନାଥ ନବୀନକୁ ବାରଣ କରିଥିଲେ । ସେ ମାନି ନ ଥିଲା । ବିଦ୍ୟାଳୟର ଶିକ୍ଷକଙ୍କୁ କହିଥିଲେ, ନବୀନକୁ ଆଖି ଦେଖାଇ ବାରଣ କରିବ । ଶିକ୍ଷକ ବାରଣ କଲେ । ସେ ମାନି ନ ଥିଲା । ରାମେଶ୍ୱର ଘାଟକୁ ଯିବାର କାରଣ ନବୀନଠାରୁ ଶୁଣି ଶିକ୍ଷକ ଦୁଃଖିତ ହୋଇଥିଲେ । ମାତୃହୀନ ବାଳକ ନିମନ୍ତେ ମନରେ ଆହା ଭାବ ଆସିଥିଲା । ସେ ବୁଝାଇ ଥିଲେ, କିନ୍ତୁ ନବୀନ ବୁଝି ନ ଥିଲା ।

ସମୟ ଅତୀତ ହେଲା ।

ନବୀନ ବିଦ୍ୟାଳୟର ପାଠ ଶେଷ କରି ସଂସ୍କୃତ ପଢ଼ିବା ପାଇଁ ଅନ୍ୟ ଶିକ୍ଷକଙ୍କ ନିକଟକୁ ଯା ଆସ କଲା । ତାକୁ କେହି କେବେ ଅଧିକ ବେଳ ଘରେ ରହିବାର ଦେଖି ନାହିଁ । ସେ ଗୁରୁ ଗୃହରେ ସଂସ୍କୃତ ପାଠ କରେ କିମ୍ବା ଧର୍ମଶାଳାରେ ଦରିଦ୍ର ଲୋକଙ୍କର ଦୁଃଖମୟ ଜୀବନର କାହାଣୀ ଶୁଣେ ଅବା ହରିପୁର ପଥରେ

ଭିକ୍ଷା କରୁଥିବା କୁଷ୍ଠ ରୋଗୀଙ୍କ ସଙ୍ଗେ ଆଳାପ କରେ । ଖିଅପିଅ କ ଲୁଗାପଟା ଆଡ଼କୁ ନଜର ନାହିଁ । ଆଜି ଖାଇଛି ତ କାଲି ଉପବାସ । ଆଜି ବହୁମୂଲ୍ୟ ବସନ ପରିଧାନ ତ କାଲି ଛିଣ୍ଡାଲୁଗା ।

କେବେ କେବେ ନବୀନ ଉପବାସରେ ଧର୍ମଶାଳାରେ କଟାଇଁ ଦେଇଛି ଅବା କୁଷ୍ଠରୋଗୀ ନିକଟରେ ବସି ବଙ୍ଗସାଗର ବନ୍ଧ ଉପରେ ଆଳାପ କରୁଛି; ରାତି ପାହିଯାଇଛି । ଜମିଦାରର ପୁତ୍ର ହୋଇ ଏପରି ଭାବରେ ସମୟ କଟାଇବାର ଦେଖି ଲୋକେ ତାକୁ ନିନ୍ଦା କରନ୍ତି । କେହି କେହି ବା ପ୍ରଶଂସା କରି ବୁହନ୍ତି ! ଅନ୍ୟ କେହି ରୁକ୍ମଣୀଙ୍କର ବୈମାତୃକ ପଣ ଘୋଷଣା କରନ୍ତି ।

ଏବେ ଆଉ ରଘୁନାଥ ପୁଅ ପାଇଁ କାତର ହୋଇ ପଡ଼ନ୍ତି ନାହିଁ । ରୁକ୍ମଣୀଙ୍କ ଗର୍ଭଜାତ ପୁତ୍ରଟିର ବୟସ ପାଞ୍ଚ । ସ୍ନେହରେ ତାହାର ନାମ ଧୂଳିଆ ଦେଇଛନ୍ତି । ସେହି ଧୂଳିଆ ବାଇଆ ପଛରେ ସେ ସବୁବେଳେ ଲାଗିଥାନ୍ତି ।

ଦିନେ ରଘୁନାଥ ଧୂଳିଆକୁ ସଙ୍ଗେ ନେଇ ରାଜ ପଥରେ ଯାଉଥିବା ସମୟରେ ଘନଶ୍ୟାମଙ୍କ ସଙ୍ଗେ ଦେଖା ହେଲା । ଘନ କହିଲେ, କାଲି ରାତି ୨ଟା ବେଳେ ମୁଁ ଉଠି ସଡ଼କ ଉପରକୁ ବାହାରିପଡ଼ିଲି । ଦେଖିଲାବେଳକୁ ଆମ ପିଣ୍ଡା ଉପରେ ଜଣେ କିଏ ଶୋଇଛି । ପିଣ୍ଡା ତଳେ ଆଉ ଜଣେ । ଭଲ କରି ଦେଖି ଚିହ୍ନିଲି । ପିଣ୍ଡା ଉପରେ ଯିଏ ସେ ହେଉଛି ନବୀନ । ପିଣ୍ଡା ତଳେ ଯିଏ ଶୋଇଛି ସେଜଣକ ସେଇ କୁଷ୍ଠରୋଗୀ । ମଣିଷ ପୁଣି ଏପରି ବଦଳିଯାଏ ? ତୁ ଆଉ ନବୀନର ଖବର ବୁଝୁନୁ ?

ରଘୁନାଥଙ୍କର ମୁହଁ ଲାଲ ହୋଇଗଲା । ସେ ପଚାରିଲେ, କଣ କହୁଛୁ ?

ଘନ କହିଲେ, ଠିକର କଥା । ତମେ ମୋ ଉପରେ ରାଗ କରିପାର, ସେଥିପାଇଁ ମୁଁ ଖାତିର କରି ନାହିଁ । ମୁଁ ପଚାରିଲି ଭୋକ କରୁଛି କି ନାହିଁ । ସେ ହଁ ବୋଇଲାରୁ ଜଳଖିଆ ଦେଲେ ରାମ ବୋଉ । ସେ ନଖାଏ । କାହିଁକି ଖାଉ ନାହୁଁ ପଚାରିବାରୁ ସେ କହିଲା, ପିଣ୍ଡା ତଳେ ଯେ ଅଛି ତାକୁ ନଦେଲେ ସେ ଖାଇବ ନାହିଁ । କୁଷ୍ଠରୋଗୀର ଦୁଇଦିନ ହେବ ଆହାର ହୋଇ ନାହିଁ ।

ରାମ ବୋଉ ଦୁହିଁଙ୍କୁ ଖାଇବାକୁ ଦେଲା । ନବୀନ ରାମ ପାଖରେ ଶୋଇଥିଲା । ସକାଳୁ ଉଠି କୁଆଡ଼େ ଗଲା ମୁଁ କହି ପାରିବ ନାହିଁ ।

ରଘୁନାଥ କହିଲେ, ତୋର ଦୟା ପାଇଁ ମୁଁ କୃତଜ୍ଞ ହେଲି; କିନ୍ତୁ କଣ କରିବ ତୁ କହ । କେତେ ଖବର ନେବ । ମୁଁ ବିରକ୍ତ ହୋଇଗଲଣି । କେତେ ବାରଣ କଲେ ମାନିଲା ନାହିଁ । ଯେତେଥର ଖୋଜି ଆଣିଲି ପୁଣି ତହିଁ ଆର

ଦାନକୁ ସେହି କଥା । ମୋ ସ୍ୱାମୀଙ୍କର ବା ଏଥିରେ ଦୋଷ କଣ ? ସେ ତ ନବୀନକୁ ଗାମ କି କୃଷ୍ଣ କିଛି କହନ୍ତି ନାହିଁ ।

ଘନଶ୍ୟାମ କହିଲେ, ସେଇଆ ତ ରାମ କି କୃଷ୍ଣ କିଛି କହନ୍ତି ନାହିଁ ବୋଲି ଏ ଦଶା । ଯଦି ଟିକିଏ ଆଦର କରି କଥା କହୁଥାନ୍ତେ, ବୁଝାଉଥାନ୍ତେ, ତେବେ ନବୀନ ଏପରି ହୁଅନ୍ତା ନାହିଁ ।

ଦିନେ ରଘୁନାଥ ନବୀନକୁ ପାଖରେ ବସାଇ ଅତି ଆଦରର ସହିତ ତାର ପିଠିରେ ହାତ ବୁଲାଇ ପଚାରିଲେ, କହିଲୁ ବାପ, ତୋର ପାଗଲା ବୁଦ୍ଧି ଛାଡ଼ିବୁ କି ନାହିଁ ? ମୋର ଏତେ ସମ୍ପତ୍ତିର ଜ୍ୟେଷ୍ଠାଧିକାରୀ ତୁ । ତୋର କେଉଁ କଥାର ଅଭାବ ଯେ ଯା ଘରେ ତା ଘରେ ଖାଉଛୁ, ଏଠି ସେଠି ଶୋଉଛୁ ?

ଏହି ସମୟରେ ବୁଢ଼ୀ ଚମାରୁଣୀ ନିକଟକୁ ଆସି ହାତ ହଲାଇ କହିଲା, ଆରେ ପୁଅ, କେଉଁ କଥାର ଅଭାବ ତୁ ଜାଣୁ ନାହିଁ ? ଧନ ଦଉଲତରୁ ପିଲାଙ୍କୁ କଣ ମିଳେ ? ଧନ ଦଉଲତ କଣ ସେମାନେ ତ ଜାଣନ୍ତି ନାହିଁ । ତାଙ୍କର ସବୁ ଧନ ଦଉଲତ ମା । ମା ଯାହାର ନାହିଁ ତାର କଣ ଅଛି କହ ?

ରଘୁନାଥ ଚମାରୁଣୀ ବୁଢ଼ୀକି ଏପରି ଭାବରେ ଅନାଇଲେ ଯେ, ସେ ସ୍ଥାନ ତ୍ୟାଗ କଲା ।

ରଘୁନାଥ ପଚାରିଲେ, କହି ନବ, ଆଉ ଏଣିକି ବୁଆଡ଼କୁ ଯିବୁ ନାହିଁ ତ ? ତୋର କଣ ଅଭାବ ?

ନବୀନ କହିଲା, ନା ବାପା କିଛି ଅଭାବ ନାହିଁ । ତେବେ……

ତେବେ ?

ତେବେ ସୁଦ୍ଧା କହି ପାରୁ ନାହିଁ କେଣିକି ଯିବି କି ନାହିଁ ।

- କାହିଁକି ? ଘରେ ଥିଲେ କଣ ତୋତେ ଅଡୁଆ ଲାଗେ ?

ନାହିଁ ତ ଅଡୁଆ କାହିଁକି ଲାଗିବ ?

ଘରେ ରହୁନାହୁଁ କାହିଁକି ? ଏଠି ସେଠି ବୁଲିବାରେ ତୋତେ ମିଳେ କଣ ? ଶୁଣିଲି, ସେଦିନ ତୁ କାହା ପିଣ୍ଡାରେ ଶୋଇଥିଲୁ । କେବେ କେବେ ରାତିରେ ତୁ ଘରକୁ ନ ଆସି ଏଠି ସେଠି ରହିଯାଉ କାହିଁକି ?

ଅନେକ ଲୋକଙ୍କୁ ତ ଏଠି ସେଠି ରହିବାର ଦେଖିଛୁ । ସେମାନଙ୍କର ଘର ନାହିଁ, ରହିବେ କେଉଁଠି ? ତାଙ୍କୁ ତ କଷ୍ଟ ହୁଏ ନାହିଁ, ମୋତେ କାହିଁକି କଷ୍ଟ ହେବ ?

ସେମାନେ ଦରିଦ୍ର, ତାଙ୍କର ଘର ଦ୍ୱାର ନାହିଁ । ତେଣୁ ଯା ପିଣ୍ଡା ତା ପିଣ୍ଡା ହୁଅନ୍ତି । ଯାହାର ଘର ଅଛି, ଯେ ଜମିଦାରର ପୁଅ ସେ କାହିଁକି ସେମାନଙ୍କ ସଙ୍ଗେ କଷ୍ଟ ପାଇବ ?

ବାପା, ମୋତେ କଷ୍ଟ ହୁଏ ନାହିଁ ।

ମୋତେ କଷ୍ଟ ହୁଏ । ତୋ ପରି ପୁଅ ଯଦି ଏପରି ଢଙ୍ଗ ଧରେ, କେଉଁ ବାପର ମନରେ କଷ୍ଟ ନହେବ କହିଲୁ ? ତୋର ବାପର ମନରେ କଷ୍ଟ ଦେବାକୁ କଣ ତୋର ଇଚ୍ଛା ହୁଏ ?

ଏହି ସମୟରେ ଧୂଳିଆ ଆସି ନବୀନର ପିଠିରେ ଲାଗି ହେଲା । ନବୀନ ଅଡ଼ ନେତ୍ରରେ ତା ଆଡ଼କୁ ଅନାଇଁ ବାଧ କରି ମୁହଁରୁ ଗୋଟାଏ ହସ ବାହାର କଲା । ପିଲାଟି କିରି କିରି ହୋଇ ହସି ରଘୁନାଥଙ୍କର କୋଳରେ ଆଶ୍ରୟ ନେଲା । ରୁକ୍ମଣୀ କାହିଁ ଥିଲେ, ଦାଣ୍ଡକୁ ଆସି କଅଁଳ ସ୍ୱରରେ ଡାକିଲେ, ଧୂଳି, ଧୂଳି ଆ ଖାଇବୁ ।

ଉଭୟଙ୍କର ଚକ୍ଷୁ ତାଙ୍କର ଆଡ଼କୁ ଆକର୍ଷିତ ହେଲା । ରଘୁନାଥ ଆଖିରୁ ଲୋଦେର କାଢ଼ି କହିଲେ, ନବ ମା, ନବକୁ କଣ ଖାଇବାକୁ ଦିଅ । ନବୀନ ଆଡ଼କୁ ମୁହଁ ବୁଲାଇ କହିଲେ, ଯା ବାପ ତୋର ମା ସଙ୍ଗେ, ଖିଆ ପିଆ କର । ଦେଖ ବାପ, ଆଉ କାହିଁ ଯିବୁ ନାହିଁ । ନିଜର ଘରେ ବସି ଯାହା କରିବାର କରୁଥା ।

ନବୀନ ଧୂଳିର ହାତ ଧରି ଭିତରକୁ ଗଲା । ରୁକ୍ମଣୀ ନବୀନକୁ ଦେଖି ମୁହଁ ମୋଡ଼ି ଧୂଳିଆକୁ ତା ହାତରୁ ନେଇ କାଖ କରି ଆଗେ ଆଗେ ଚାଲିଗଲେ ।

ବୁଝିଲୁ ଗୋ ଝିଅ, ପିଲାଖଣ୍ଡକ କମ ନୁହେଁ ମ, ମଉଜମୁହାଁ ବୋଲି କେହି ତାକୁ ଚହି ପାରନ୍ତି ନାହିଁ । ଅଲୋ, ମୁଁ କଣ ଚହ୍ନେ ନାହିଁ ? ସାଧୁଅ ମା ଧନେ ସଙ୍କୁଚେ ରୁକ୍ମଣୀଙ୍କର ମୁଣ୍ଡ ବାଙ୍କୁ ବାଙ୍କୁ କହିପକାଇଲା, ଜାଣିଲୁ ଗୋ, ତାର କଣ ହିସାବାଦ କମ କି ? ସାକ୍ଷାତେ ତା ମା ପରିକା । ଅକାଶରୁ କଥା ତୋଳି ଆଣି ଥୋଇଦବ । ସେ ଯେତିକି ବଡ଼ ହଉଛି, ତାର ବୁଦ୍ଧି ସେତିକି ଚୂଲିକି ଯାଉଛି ।

କିଏ ସେ ?

ଅଗୋ ସେଇ ମ, ତମର ସଉତୁଣୀଙ୍କ ପୁଅ ନବୀନ । ଏଡ଼େ ଅପବାଦ ଗୋ, ଏଡ଼େ ଅପବାଦ ।

କି ଅପବାଦ ?

ଏଁ ଜାଣିନୁ ? ଫୁଲେଇ ହଉଛୁ କି ? ଛେପରିଠା କି ? ଦେଶରେ ହୁରି ପଡ଼ିଲାଣି; ମାଇପେ ତୋରି କଥା ଧରି ବସିଛନ୍ତି । ତୋରି ନିନ୍ଦା କରୁଛନ୍ତି । ମୋର ଧିଅ କାହୁଁ ସହିବ କହିଲୁ ? ଲିଙ୍ଗରାଜଙ୍କର ଧଣ୍ଡା ଦେଇ ମା କରିଛୁ, ଏହି ସହିବ କେମିତି ?

ରୁକ୍ମଣୀ କହିଲେ, ମୁଁ ତ କାହାର କିଛି ଦୋଷ କରି ନାହିଁ ?

ଅଲୋ, ଦେଶରେ ତ ତୋପରି ସମସ୍ତେ ଭଲ ମାଇପୀ ନାହାନ୍ତି, କିଏ କେମିତି ଢଙ୍ଗରେ କିଏ ଜାଣୁଛି ? ତମର ସେଇ ସଉତୁଣୀ ପୁଅଟା କଥା ପଡ଼ିଲେ ହାଡ଼ରେ ନିଆଁ ଲଗେ । ସେଇ ତୋ ନାଆଁରେ ଯାକୁ ତାକୁ କେତେ କଥା କହୁଛି । ମୁଁ ଶୁଣିକରି କାନରେ ହାତ ନ ଦେଇ ଯିବି କୁଆଡ଼େ ?

କଣ କହୁଛି, ମୁଁ ତ ତାର କିଛି ଅନିଷ୍ଟ କରି ନାହିଁ ?

କାଲି ରାତି ଅଧରେ ଘନଶ୍ୟାମଙ୍କ ଘରେ ପହଞ୍ଚିଲା । ରାମା ମା ଦଉଡ଼ି ଆସି ପଚାରିଲେ, କି ରେ କାନ୍ଦୁଛୁ କାହିଁକି ? ସେ କହିଲା, ମୋତେ ଭୋକ କରୁଛି । ରାମା ମା କହିଲେ ଖାଇନୁ କି ? ସେ କହିଲା, କିଏ ଖାଇବାକୁ ଦବ ? ଖାଇବାକୁ ମାଗିଲାରୁ ଭୁ କୁଆଡ଼େ ତାକୁ ଗୃପୁଡ଼ା ମାରି କହିଲୁ, ଏଇଠା ମୋର କିଏ ଲୋ, ଯାକୁ ମୋର କିଏ ଖାଇବାକୁ ଦେବ, ଯା, ଯା । ରାମା ମା କଂସାଏ ପଖାଳ ବାଢ଼ି

ଥୋଇଦେଲେ । ମୁଁ ଏତିକି ଶୁଣିଲି । ବୁଝିଲୁ ଝିଅ, ମୋର ଦେହ କି ସହନ୍ତା ? ପଚାରିଲି, ଅଗୋ, ତମର ଏ କଥାରେ ପତିଆରା ହେଲା ? ଯଦି ସେ ତାକୁ ଗାଳି-ଦେଲା କି ମାରିଲା, ସେ ତା ବାପାକୁ ନକହି ଏଠିକି ଧାଇଁ ଆସିଲା କାହିଁକି ? ସାମା ମା କହିଲେ, କେଜାଣି ଗୋ ।

ନବୀନ କହୁଥିଲା, ତୁ ବୁଆଡ଼େ କୋଉଁକି ମନ୍ତର କରି ରଖିଛୁ ଯେ, ସେ ତୋତେ ଆଉ ଧୂଳିଆକୁ ଭଲ ପାଆନ୍ତି ନବୀନକୁ ଭଲ ପାଆନ୍ତି ନାହିଁ । ଏ କଥା କିଏ କହିବ ଗୋ, ଏ କଥା କିଏ କହିବ ? ତୁ ବୋଲି ସିନା ଏ କଥା ସହୁଛୁ ।

ରୁକ୍ମଣୀ ଭାବିଲେ, ମାତୃହୀନ ବାଳକ ବୋଲି ତାକୁ ମୁଁ କିଛି କହେ ନାହିଁ; ତଥାପି ସେ ମୋର ନିନ୍ଦା କଲା ? କାଳର ଦୋଷ । ଏ କାଳରେ ଭଲ ନାହିଁ, ଯିଏ ଭଲ କରିବ, ତାକୁ ସମସ୍ତେ ନିନ୍ଦା କରିବେ । ସେ ମୋର ଧର୍ମର ମା ବୋଲି ସିନା ମୋ ପାଇଁ ପଦେ ଅଧେ କହିଲା, ନୋହିଲେ କହନ୍ତା କାହିଁକି ?

ସାଧୁଆ ମାଆର କଥା ଶୁଣି ରୁକ୍ମଣୀଙ୍କ ମନ ନବୀନ ଉପରେ ଦି'କଡ଼ା ହେଲା ।

ପିତାଙ୍କର ଅନୁରୋଧ ରକ୍ଷା କରି ଓ ନିଜର ପ୍ରତିଜ୍ଞା ପାଳନ କରି ନବୀନ ଦିନା କେତେ ଘରେ ରହିଲା । ତାହାର ମନ ବଦଳିବା କଠିଣ । କାଳେ ପିତାଙ୍କର ମନରେ କଷ୍ଟ ହେବ ସେଇଥି ନିମନ୍ତେ ସିନା ବାଧ୍ୟ ହୋଇ ତାକୁ ଘରେ ରହିବାକୁ ପଡ଼ିଲା, ନୋହିଲେ କାହିଁ ଘର, କାହିଁ ନବୀନ । ଦିନା କେତେ ପରେ ପୁନର୍ବାର ଯେଉଁ କଥାକୁ ସେହି କଥା । ପୁନର୍ବାର ନବୀନ ଗୃହତ୍ୟାଗୀ । ଆଜି ଧର୍ମଶାଳାରେ ରାତିଟି କଟାଇଲେ କାଲି ବିଷସାଗର ଆଡରେ । ଧର୍ମଶାଳାରେ କାହାର କେଉଁ ରୋଗ ହୋଇଛି, ଚିକିତ୍ସା ନିମନ୍ତେ ବୈଦ୍ୟ କାଶୀନାଥଙ୍କ ଘରକୁ ଦଉଡ଼ । କାହାର ମୁଣ୍ଡ ବଥାଉଛି ମୁଣ୍ଡ ଚିପି ଧରି, ରାତିରେ କାହାର ଗୋଡ଼ କଣ ହେଉଛି ଗୋଡ଼ ଉପରେ ଠିଆ ହ, ଏଇଆ ତାର କାର୍ଯ୍ୟ । ଦିନେ ଅକସ୍ମାତ ରଘୁନାଥଙ୍କ ହାବୁଡ଼େ ପଡିଲେ, ସେ ତାକୁ ବୁଝାବୁଝି କରି ଘରକୁ ନେଇ ଆସନ୍ତି । ଦିନେ ଦୁଇଦିନ ବାନ୍ଧି କରି ରଖନ୍ତି; କିନ୍ତୁ ହାତରୁ ଖସିଲେ ଯେଉଁ କଥାକୁ ସେଇ କଥା ।

ହୀରା ପାନରାଣୀକୁ ବୋଧ ହୁଏ ପାଠକ ମହାଶୟ ଭୁଲି ଯାଇଥିବେ । ଅନେକ ଦିନ ପରେ ଆଜି ତା ସଙ୍ଗେ ଦେଖା । ଆଠ ମାସ ଜରରେ ଭୋଗି ସେ ରହିଗଲାଣି । ପ୍ରଥମେ ଉଠାଉଠି କରି ପାରୁନଥିଲା, କିନ୍ତୁ ଏବେ ବାଡ଼ି ଖଣ୍ଡେ ଧରି ଯା ଆସ କଲାଣି । ରୋଗରେ ପଡ଼ିବା ପୂର୍ବରୁ ସାଧୁଆ ମା ସଙ୍ଗେ

ଥରେ ଟଙ୍କାପଇସା ଝଗଡ଼ା ଲଗିଥିଲା । ତାହାର କାରଣ ସାହି କେନାର ଛୋଟ ଝିଅଟିକୁ ହରି ଗୁଡ଼ିଆର ଛଅ ବର୍ଷର ପୁଅ ଗୃପୁଡ଼ାଟାଏ ମାରି ପଳେଇଗଲା । ହାରି ସେଠାରେ ମିଳି ଝିଅଟା କାନ୍ଦୁଥିବାର ଦେଖି ତାର ପକ୍ଷରେ ହରି ଗୁଡ଼ିଆ ବଂଶର ଗୋଡ଼ କାଢ଼ିଲା । ସାଧୁଆ ମା କାହିଁଥିଲା ଯୋଗକୁ ପହଞ୍ଚିଗଲା । ସେ ନେଲା ହରି ଗୁଡ଼ିଆର ପୁଅ ପକ୍ଷ । ଦୁଇ ଘଣ୍ଟା ବାକ୍‌ଯୁଦ୍ଧ ପରେ ହାରି ପରାଜିତ ହେଲା । ଯେତେ ଝଗଡ଼ା ଲଗିଲେ ହେଲେ ହାରି ଜରରେ ପଡ଼ିଥିବା ବେଳେ ସାଧୁଆ ମା ଥରେ ଅଧେ ତା ଘରକୁ ଯାଇ ଅଶ୍ୱାସନା ଦେଇ ଆସେ । ସୁବିଧା ପଡ଼ିଲେ ଝିଅ ଘରର ଠାକୁଆ ଅମ୍ବୁଲ ଫଡ଼ାଏ ଦଫଡ଼ା ମଧ୍ୟ ଦେଇ ଆସେ ।

**ଆ**ଶାଟି ଥାକୁଲ ଥାକୁଲ ହୋଇ ଭଲ ସୁନ୍ଦର ଝିଅଟିଏ । ଛଅ ବର୍ଷର ଝିଅ । ଚମ୍ପା ଫୁଲ ପରି ରଙ୍ଗ । ଆଖିର ଡୋଳା ଦିଓଟି କଳା । ବୁଢ଼ୀ କହନ୍ତି ଯୋଡ଼ାଏ କଳା ଭଅଁର ବସିଛନ୍ତି । ଖଣ୍ଡା ଦାଢ଼ ପରି ନାକ । ମୁଣ୍ଡରେ କେରାଏ ନାଆକୁ ବାଳ ଯେ ବୁଢ଼ୀ ତାକୁ କେତେ ଯତ୍ନରେ ବାନ୍ଧିଦେଇଥାନ୍ତି । ଗୁଲୁଗୁଲୁ କରି ଟେଙ୍କେଇ ଟେଙ୍କେଇ କଥା କହେ । ଆଶାଟି ବୁଢ଼ୀ ଆଈକୁ ଆଉରେଇଛି । ସବୁବେଳେ ତାଙ୍କରି ପାଖରେ ବସି କଥା ଶୁଣୁଥାଏ । କେଉଁଦିନ ପ୍ରେତନୀ କଥା, କେଉଁଦିନ ଭୂତ କଥା, କେଉଁ ଦିନ ବା ଡାଆଣୀ କଥା । ଖାଲି କଥା ଶୁଣିଲେ ତ ହେବ ନାହିଁ । କରଣ ଘର ଝିଅ, କିଛି ପଢ଼ିଥିବା ଦରକାର । ପାଠ ପଢ଼ିଲେ ଯିନା ବୁଢ଼ୀ ଶାଶୁକୁ ଭାଗବତ ଶୁଣାଇବ ।

ଏ ଭାବନା ସାବିତ୍ରୀଙ୍କ ମନକୁ ଆସିଲା । ଶାଶୁଙ୍କୁ ନ ଜଣାଇ କିଛି କରିବାର ଅଧିକାର ନାହିଁ ।

କିଛି ଦିନ ଚାଲିଗଲା । ଦିନେ ସାବିତ୍ରୀ ଦାଣ୍ଡକୁ ଯାଇ ଦେଖିଲେ, କାଖରେ ପୋଥି ଧରି ହରି ବହିଦାରଙ୍କର ଆଠ ବର୍ଷର ଝିଅଟି ଚାଟଶାଳୀରୁ ଫେରୁଛି । ହରି ବହିଦାରଙ୍କ ଘର ପାଖରେ ନହେଲେ ମଧ୍ୟ ଦୂରରେ ନୁହେ । ସୁନ୍ଦରଙ୍କ ବଂଶରେ ସ୍ତ୍ରୀ ଦେଖାନ୍ତି ନାହିଁ । ତାଙ୍କ ଘରେ ବଳେଇ ଛୁଆଟି ଦେହରେ ହଂସା ଭିଡି ହୋଇଛି । ସାବିତ୍ରୀ ହାନାକୁ ଦେଖି ହାତ ଠାରି ଡାକିଲେ । ହାନା ହରି ବହିଦାରଙ୍କ ଝିଅ ହେଲେବି ତାଙ୍କ ବଂଶରୁ ବାହାର । ଯାହାକୁ ଦେଖେ କହିବ ଆଖିର ଭ୍ରୂଲତା ଠେକି ହସିଦିଏ । ବାପ ମା ଆଈଙ୍କର ବାରମ୍ବାର ମନା, ସୁନ୍ଦରଙ୍କ ଘରକୁ ଯିବ ନାହିଁ । ତାଙ୍କ ଘରେ କଣ୍ଟା ଡାଆଣୀ ଅଛି । ହାନା ବାରଣ ମାନିଲା ନାହିଁ, ସୁନ୍ଦରଙ୍କ ଘରକୁ ଗଲା । ପଚାରିଲା, କାହିଁକି ଡାକୁଛ ?

ସାବତ୍ରୀ ହାନା ହାତରୁ ପୋଥିଖଣ୍ଡି ନେଇ ଦେଖିଲେ । ପଚ୍ଚାରିଲେ, 'ତୁମେ ଏ ପୋଥି ପଢ଼ିଲଣି ?

ହାନା ମୁଣ୍ଡ ହଲେଇ କହିଲା, ହଁ ।

ସେଥି କଣ ଲେଖା ହୋଇଛି ପଢ଼ିଲ ହାନା ?

କହନ୍ତି ମାଏ ଗୋ ଶ୍ରୀକୃଷ୍ଣ ଅଗେ, କଥା ଶୁଣ ବାବୁ—

ତମୁକୁ କଣ ପଢ଼ି ଅଇଲାଣି ? କେଡ଼େ ସୁନ୍ଦର ପଢ଼ୁଛୁ । ଆସ ଆମ ଘର ଭିତରକୁ ଯିବା, ତେମେ ପାନ ଖାଅ ?

ହଁ ମୁଁ ପାନ ଖାଏ । ମା ମତ୍ତ ମନା କରିଛି ତମ ଘରକୁ ଆସିବାକୁ ।

କାହିଁକି ?

ହାନା ନୀରବ ରହିଲା । କିଛିକ୍ଷଣ ପରେ ସେଠାରୁ ଚାଲିଗଲା ।

ସେଦିନ ସନ୍ଧ୍ୟା ସମୟରେ ହାନା ଘରେ ପହଞ୍ଚି ତା ମା'ଠାରୁ କେତେ ଗାଳି ଖାଇଲା । ସାବିତ୍ରୀଙ୍କ ସଙ୍ଗେ ଆଳାପ କରିଥିବା ସମ୍ବାଦ ତା ମା ନିକଟରେ ପୂର୍ବରୁ ପହଞ୍ଚିଥିଲା । ହାନା ଜାଣି ନାହିଁ, ସେ ସମ୍ବାଦ କିଏ ଆଣିଥିଲା । ଭାବିଲା, ବୋଧ ହୁଏ ବାପା ଦେଖିଥିବେ । ପ୍ରକୃତରେ, ହାନା ସାବତ୍ରୀଙ୍କ ସଙ୍ଗେ ଆଳାପ କଲା ବେଳେ ସାଧୁଆ ମା ଛଡ଼ା ତାକୁ ଆଉ କେହି ଦେଖି ନାହିଁ । ସମସ୍ତେ ଭାବିଥିଲେ, ସେଦିନ ରାତିରେ ହାନାକୁ ଜର ହେବ; କିନ୍ତୁ ତା ଦେହ କିଛି ହୋଇ ନାହିଁ ।

ସାବତ୍ରୀ ସେଦିନ ହାନାକୁ ଦେଖି ଭାବିଲେ, ହାନା ତ କେତେ ପାଠ ପଢ଼ିଗଲାଣି ମୋ ଆଶା ଯଦି ପଢ଼ୁଥାନ୍ତା ସେ ତ କେତେ ପାଠ ପଢ଼ନ୍ତାଣି । କିଏ ପଢ଼େଇବ ? କିଏ କହିବ ବୁଢ଼ୀଙ୍କି ? ତେବେ ଆଶାଟି କଣ ମୂରୁଖ ହୋଇ ରହିବ ? ବାପ ଛେଉଣ୍ଡ ବୋଲି ସିନା । ଯାହା ହେବାର ହେଉ ପଛେ ଆଜି ବୁଢ଼ୀଙ୍କି କହିବ । ଗାଳିଦେବେ, ଦେଉନ୍ତୁ । ଆଜିଯାଏ ଗାଳି ଖାଇ ଖାଇ ତ ମୋର ଗଣ୍ଡିରୁ କିଛି ନଷ୍ଟ ହୋଇ ନାହିଁ । ଆଜି ହୁଏତ ଗାଳି ଖାଇବ, ଯାଉ କଣ ? ଯେବେ ମଙ୍ଗନ୍ତି ସବୁଦିନେ ବଣିଆ ନେଇ ଚାହାଳରେ ଛାଡ଼ିଦେଇ ଆସିବ । ପାଠ ପଢ଼ି ସାରିଲେ ମୁଣି ନେଇ ଆସିବ ।

ସେଦିନ ରାତିରେ ସାବତ୍ରୀ ଦେଖିଲେ ଆଶା ତାର ଆଈ କୋଳରେ ବସି ଭୂତ କଥା ଶୁଣୁଛି । କାମ କାର୍ଯ୍ୟ ଶେଷ କରି ବଣିଆ ପିଣ୍ଡାରେ ଗଡ଼ିତ ପଡ଼ିଛି

ହେଉଛି । ସାବିତ୍ରୀ ଶେଷ ଘରର କାର୍ଯ୍ୟ ଶେଷ କରି ଆସି ଶାଶୁଙ୍କ ପାଖରେ ବସିଗଲେ । ଶାଶୁଙ୍କର ଭୂତ କଥା ଶୁଣିଲେ ।

କଥା ନସରୁଣୁ ସାବିତ୍ରୀ ଅଶାକୁ ଡାକି କହିଲେ, ଅଲୋ ଅଶା, ତୁ ଏତେ ବଡ଼ ହେଲୁଣି, ଅଜିଙ୍କି ପଚାରି ତୋତେ ଗୃହୀଣୀଙ୍କ ପାଠ ପଢ଼େଇବାକୁ ପଠେଇବେ କି ନାହିଁ । ତୋ ସାଙ୍ଗର ହାନା କେତେ ପଢ଼ିଲାଣି, ଗୀତ ବୋଲିଲାଣି । ତୁ ଆଉ କଣ ପଢ଼ିବୁ ନାହିଁ ?

ସାବିତ୍ରୀ ବୁଢ଼ୀଙ୍କୁ କଥା କହୁ ନ ଥିଲେ । ଅଶା ଜନମ ହେବା ଦିନରୁ ତାଙ୍କୁ ସୁବିଧା ମିଳିଲା । ସେ ବୁଢ଼ୀଙ୍କୁ ନ ପଚାରି ଅଶାକୁ ପଚାରନ୍ତି ଯେପରି ବୁଢ଼ୀ ଶୁଣି ପାରିବେ । ଅଶା କିଛି ବୁଝି ପାରେ ନାହିଁ; କିନ୍ତୁ ବୁଢ଼ୀ ଉତ୍ତର ଦିଅନ୍ତି ।

ବୁଢ଼ୀ କହିଲେ, ପାଠ ପଢ଼ିବ ? ଗୃହୀଣୀରେ ତଳେ ବସିବ ? ଅବଧାନଠୁଁ ମାଡ଼ ଖାଇବ ? ସତେ ତା ବୁଢ଼ୀ ଆଇ ମରିଗଲାଣି କି ? ନା, ସେ ପାଠ ପଢ଼ିବ ନାହିଁ ।

ବଣିଆକୁ ନିଦ ହୋଇ ନଥିଲା । ସେ ବୁଢ଼ୀଙ୍କର କଥା ଶୁଣି କହିଲା, ବୁଢ଼ୀ ସାନ୍ତାଣି, ପାଠ ପଢ଼ିଲେ କଣ ଜାତି ଯାଏ ? ଆମ ଦେଇ କାହିଁକି ପଢ଼ିବେ ନାହିଁ ? କାଲି ଅବଧାନଙ୍କୁ ଡାକି ଆଣି ଅଶାକୁ ଗୃହୀଣୀ ପଠେଇବା, ମୁଁ ତାକୁ ନେଇ ଛାଡ଼ିଦେଇ ଆସୁଥିବି । ଛୁଟି ହେଲେ ପୁଣି ଯାଇ ନେଇ ଆସୁଥିବି ।

ବୁଢ଼ୀ ରାଗିଯାଇ କହିଲେ, ଗୁଳକର ଠୋକାଠାର ଦିମାକ ଦେଖଗୋ, ବଢ଼ି ବଢ଼ି କଥା କହୁଛି ।

ବଣିଆ ଉଠି ବସି କହିଲା, ଏ ବୁଢ଼ୀ ସାନ୍ତାଣି, ତେମେ କେଇଟା ଭୂତ ଗଳପ ଜାଣ ମ । ଗୋଟାଏ କି ଯୋଡ଼ାଏ । ସେଇଆକୁ ଘୋରଡେଇ ସବୁଦିନେ କହୁଛ । ପୁରୁଣା କଥା ଭଲ ଲାଗେ ନାହିଁ । ତାକୁ କିଏ ଶୁଣୁଛି । ଆମର ଅଶାଦେଈ ପାଠ ପଢ଼ିଲେ କେତେ ଭୂତ କଥା ପଢ଼ି ଆମକୁ କହିବେ । ସେ ଅବଧାନ ମାରେ ନାହିଁ, ପାଠ ପଢ଼େଇଲା ବେଳେ ଗେହ୍ଲା କରେ ।

ବୁଢ଼ୀ କହିଲେ, ପୁରୁଣା କଥା ଯେପରି ତୋତେ ଭଲ ନ ଲାଗେ ପୁରୁଣା ଗୁଳକର କି ମୋତେ ଭଲ ଲାଗେ ନାହିଁ । ନା, ଆଉ ହେବ ନାହିଁ, ଗୁଳକର ଠୋକାର ଦିମାକ୍ ବଢ଼ିଗଲାଣି । ରହ ଚୁଲିପଶା, ତୋତେ ଘରୁ ବାହାର କରୁଛି ।

ବଶିଆ କହିଲା, ତୁମେ ଯେତେ କହ ହେବ ନାହିଁ । ମୋତେ ଘରୁ ବାହାର କରିଦେବ ? ଦିଅ, ମୁଁ ଯାଉଛି । ହେଲେ କାଲିଠୁଁ ଆଶାଦେଈ ଗୃହାଳକୁ ଯିବେ ।

ବୁଢ଼ୀ କହିଲେ, ବଶିଆର ଦୋଷ ନାହିଁ । ସବୁ ସେହି ପୋଡ଼ାମୁହାଁ ହୋହୁଙ୍କର । ଆଗରୁ ତାକୁ ଶିଖେଇ ଆଣିଛି ।

ଆଶା କହିଲା, ପାଠ ପଢ଼ିଲେ ପରା ପୋଥି ପଢ଼ନ୍ତି । ପୋଥିରେ କେତେ ଭୂତ କଥା ଲେଖା ହୋଇଥାଏ । ମୁଁ ପଢ଼ିବି, ଆଇ ମା ମୁଁ ପାଠ ପଢ଼ିବି । ସଞ୍ଜ ବୁଡ଼େ ତୋ କୋଳରେ ବସି ଭୂତ କଥା କହିବି ।

ବୁଢ଼ୀ ଚୁପ ରହିଲେ ।

ଆଶା ପାଠ ପଢ଼ିଲା । ପ୍ରଥମ ଫଳା ଶେଷ କଲାଣି । ଅବଧାନେ ସ୍ନେହ କରନ୍ତି । ଆଶା ଘରେ କାହା ସଙ୍ଗେ ଖେଳିବାକୁ ପାଏ ନାହିଁ, କିନ୍ତୁ ବିଦ୍ୟାଳୟରେ ଅନେକ ବାଳକ ବାଳିକା । ଅବଧାନେ ଖେଳେଇ ଖେଳେଇ ଏପରି ଭାବରେ ପଢ଼ାନ୍ତି, ପିଲା ବୁଝି ପାରେ ନାହିଁ ସେ ପଢ଼ୁଛି କି ଖେଳୁଛି । ଧୂଳିଆ ଓ ହାନା ସାଙ୍ଗେ ତାର ସାଙ୍ଗ ।

କେବେ କେବେ ନବୀନ ଆସି ଶିକ୍ଷକଙ୍କ ନିକଟରୁ ସଂସ୍କୃତ ଶିକ୍ଷା କରେ । ଧୂଳିଆ ତାର ବାମ ହାତକୁ ଧରି ଟାଣିଲେ, ଆଶା ଡାହାଣ ହାତ ଧରି ଟାଣେ । ଟିକିଏ ସଙ୍କୋଚ ନାହିଁ । ନବୀନ ଦୁଇଜଣଙ୍କଠାରୁ ହାତ ଟାଣି ଆଣେ । ଦୂରରେ ଠିଆ ହୋଇ ହାନା ବଲ ବଲ କରି ଏମାନଙ୍କୁ ଅନାଉଁଥାଏ । ଆଶା ନବୀନକୁ ଚିହ୍ନେ, କାରଣ ନବୀନ ବେଳେ ବେଳେ ରଘୁନାଥଙ୍କ ସଙ୍ଗେ ତାଙ୍କ ଘରକୁ ଯା ଆସ କରେ । ରଘୁନାଥ ଧୂଳିଆକୁ କାଖରୁ ଓହ୍ଲାଇ ଆଶାକୁ କାଖ କରନ୍ତି । ନବୀନ ନୀରବରେ ଅନାଇଁ ରହିଥାଏ ।

ଲୋକେ କହନ୍ତି ବଶିଆ ପାଇଁ ସୁନ୍ଦରଙ୍କ ଘର । ତାଅରି ଯତ୍ନରେ ଅଦ୍ୟାପି ସେ ଘରର କିଛି ନଷ୍ଟ ହୋଇ ନାହିଁ, ବରଂ ବୃଦ୍ଧି ପାଉଛି । ଲୋକେ ଆଶ୍ଚର୍ଯ୍ୟ ହୁଅନ୍ତି । କହନ୍ତି, ଖଦାଲ କୁଳରେ ଜନମ ହୋଇଛି ସିନା, ଢଙ୍ଗ ତାଙ୍ଗ ତାର ଭଲ ଘର ପିଲା ପରି । ସେ ଧୀର, ଶାନ୍ତ ।

ବୟସ ହେଲା, ଅଜାଡ଼ା ରହିଲେ ତ ଚଳିବ ନାହିଁ । ହାତକୁ ହାତ ଛନ୍ଦ ହେବା ଦରକାର । ଦରିଦ୍ର ବଣିଆର କିଏ ଅଛି ? ନା ବାପ, ନା ମା ।

ଦିନେ ସାବିତ୍ରୀ ଠାକୁରଘରେ ଏକାକୀ ବସି ଚିନ୍ତା କରୁଥିଲେ, ବଣିଆର ଅଛି କିଏ । ଖୋରାକ ମୁଠାକ ଛଡ଼ା କାହିଁରେ ହାତ ଦିଏ ନାହିଁ । ବାହା ହୋଇ ରହିବ କେଉଁଠି ? ଯାହାକୁ ଘରେ ଘରଣୀ କରି ଆଣିବ ତା ନିମନ୍ତେ କିଛି ବନ୍ଦୋବସ୍ତ କରିବା ଦରକାର । କି ବନ୍ଦୋବସ୍ତ କରାଯାଇ ପାରେ ? ଅହା ଖଦାଲ ପିଲାଟି, ଏ ଘରକୁ ନିଜର ଘର ମନେକରି ଚଳି ଆସୁଛି । ଘରର କପରି ମଙ୍ଗଳ ହେବ, ରାତି ଦିନ ତାର ସେଇ ଚିନ୍ତା । ଆମର ସବୁବେଳେ ମଙ୍ଗଳ କାମନା କରେ ସେ । ଆମେ ଯଦି ତାର ମଙ୍ଗଳ କାମନା ନ କରିବା ଭଗବାନଙ୍କ ପାଖରେ ଦୋଷୀ ହେବା ।

ବଣୁ ଭାଇ, ମୁଁ ଆଜି କେତେ ପାଠ ପଢ଼ିଛି ।

ଅଶା ବଣିଆକୁ ବଣୁଭାଇ ବୋଲି ଡାକେ । ଏ ଡାକ ଶୁଣିଲେ ବୁଢ଼ୀ ଅଶା ଉପରେ ବିରକ୍ତ ହୁଅନ୍ତି । ଉପଦେଶ ଦିଅନ୍ତି, ବଣୁଭାଇ ନ ଡାକି ବଣିଆ ଡାକ । ତଥାପି ଅଶାର ବଣୁଭାଇ ଡାକ ବନ୍ଦ ହେଲା ନାହିଁ । ଦୋଷ ଚାଲି ପଡ଼ିଲା ବୋହୂଙ୍କ ଉପରେ । ସେଇ ପୋଡ଼ାମୁହାଁ ଜାଆଣୀ ବଢାଉଛି, ମୋ କଥା ଅଶା କାହିଁକି ମାନିବ ? ଅଗୋ, ଖଦାଲ ପିଲାଟାକୁ ଭାଇ ଡାକ କଣ ?

ଅଶା ମାନେ ନାହିଁ । ବଣିଆର ସ୍ନେହରେ ସେ କଣା ।

ସାବିତ୍ରୀ କବାଟ ଖୋଲିଲେ । ଅଶା ବଣିଆର କାଖକୁ ଓହ୍ଲାଇଲା । କହିଲା, ବୋଉ ଅଜି ମୁଁ କେତେ ପାଠ ପଢ଼ିଛି । ଭୋକ ହେଲାଣି ।

ସାବିତ୍ରୀ ଦୁଇ କଂସାରେ ଭାତ ବାଢ଼ି ଗୋଟିକରେ ବଣୁକୁ ପିଣ୍ଡାରେ ଦେଲେ । ଦୂରେଇ ବସି ନିଜେ ଅଶାକୁ ଖୁଆଇ ବସିଲେ । ଅଶା ଖାଉ ଖାଉ କେତେବେଳେ ଉଠିଯାଇ ବଣୁ ପାଖରେ ହାଜର । ବଣିଆର କଂସାରୁ ନିଜେ ଭାତ ଆଣି ପାଟିରେ ଦେଇ କହିଲା, ବଣୁଭାଇ, ମୁଁ ତୋ ପାଖେ ଖାଇବି ।

ବଣିଆ ଅନାଇ ରହିଲା । ସାବିତ୍ରୀ ହସିଦେଇ କହିଲେ, ହଁ ଭାଇ ସାଙ୍ଗେ ଖାଇଲେ ତୁ ପିଲାଲୋକ କିଛି କ୍ଷତି ନାହିଁ ।

ବଣିଆର ଏଥିଠାରୁ ବଳି ଅଧିକ ଆନନ୍ଦ କଣ ହୋଇପାରେ ?

'ବୁଢ଼ୀ ଘରୁ ବାହାରି କଠୋର ବାକ୍ୟ ପ୍ରୟୋଗ କରି ଉଭୟ ସାବିତ୍ରୀ ଓ ବଣିଆକୁ ଗାଳିଦେଲେ । କହିଲେ, ବୋହୂ, ପୋଡ଼ଯାଉ ତମ ଜନମ ଜାତକ ।

ହଇ ଗୋ, ସମସ୍ତଙ୍କୁ ଖାଇଲ, ଶେଷକୁ ଜାତ ବୁଡ଼େଇଲ ! ହାୟରେ କପାଳ; ଯୁଆ ପୁଣି ଅଖି ଦେଖିଲା ? ଅଃଗୋ, ଖଦାଳ ପିଲାକୁ କୁଳି ଯୋଗାଏ ନାହିଁ ।

ବୁଢ଼ା ଚାଲିଗଲା ପରେ ସାବନ୍ତୀ ଡାକଲେ, ବଣୁ—

ମା

ଗୋଟିଏ କଥା ପଚାରିବି, ମାନିବୁ ? ମୋ କଥା ଭାଙ୍ଗିବୁ ନାହିଁ ?

ପଚାରନ୍ତୁ । ତୋର କେଉଁ କଥାରେ କେବେ ଅମଙ୍ଗ ହୋଇଛି ? କେବେ କଥା ଭାଙ୍ଗିଛି ମା ?

ସାବନ୍ତୀ କହିଲେ, ତୁ ଆଉ କେତେଦିନ ଯାଏ ଏକୁଟିଆଟା ଥିବୁ ?

ମୁଁ ତ ଏକୁଟିଆ ନାହିଁ ?

ନା, ମୁଁ ତା କହୁ ନାହିଁ । ତୋର ବୟସ ହେଲା, କେତେଦିନ ଯାଏ ଅଭିଆଡ଼ା ରହିଥିବୁ ? ମୋର ମନ ମାନୁନାହିଁ । ମୋର ଇଚ୍ଛା ତୋ ହାତକ ଦହାତ କରଦେବ ।

ଲଜ୍ଜାରେ ବଣିଆର ମୁହଁ ରଙ୍ଗ ପଡ଼ଗଲା ।

ସାବନ୍ତୀ କହିଲେ, ତୋର ଘର ନାହିଁ, ସମ୍ପତ୍ତି ନାହିଁ । ସେଥିକ କିଛି ଭୟ ନାହିଁ । ଏ ଘର କଣ ତୋର ନୁହେ ? ଅଣା ବ୍ୟତୀତ ଆଉ ମୋର କିଏ ଅଛି ? ଅଣା ତୋର ଭଉଣୀ । ଯଦି ଘରପାଇଁ ଭାବୁଥାଉ, ଘର ତୋଲାଇ ଦିଆଯିବ । ଯଦି ଜମିବାଡ଼ି ପାଇଁ ଭାବୁଥାଉ, ତୋର ତ ସବୁ । ବୁଢ଼ୀଙ୍କି ଭୟ ନାହିଁ, ତୁ ମାଗିଲେ ହେଲା ।

ବଣିଆ ଭୋଜନ ଶେଷକରି କଂସାଖଣ୍ଡି ହାତରେ ଧରି ଚାଲିଯିବାବେଳେ ନତମସ୍ତକ କରି କହିଲା, ମା, ତୋର ଯାହା ଇଚ୍ଛା । କିନ୍ତୁ ··· ···

ଆଉ କିନ୍ତୁ କଣ ?

ମା, ମୋର ଗୋଟିଏ ଅନୁରୋଧ ରକ୍ଷା କର । ସେ କଥା ଏବେ ଉଠା ନା ।

ସାବନ୍ତୀ ଯେବେ ପଚାରନ୍ତି, ସେ ଏଇ ଅନୁରୋଧ କରେ । ଅସ୍ଥିରତାର ସହିତ ଦିନେ ପଚାରିଲେ, ବଣୁ, ତେବେ କେବେ ?

ବଣିଆ ସଙ୍କୋଚରେ ସାବିତ୍ରୀଙ୍କୁ କହିଲା, ମା, ତୁ ଚାହୁଁ ମୁଁ ସୁଖୀ ହେବି । ଏଠାରେ ଥାଇ ଯେପରି ଆନନ୍ଦରେ ଅଶା ସାଙ୍ଗେ ଖେଳି ଖେଳି ମୋର ଦିନ କଟୁଛି, ତାଠାରୁ ବେଶୀ ସୁଖରେ ରହିବାକୁ ମୁଁ ଚାହେଁ ନା । ମୁଁ ଜାଣେ, ପର ଘରର ଝିଅଟାକୁ ମୋରି ଗଳାରେ ବାନ୍ଧିଲେ, ମୁଁ ସୁଖୀ ହୋଇ ପାରିବି ନାହିଁ । ଏଣିକି ତୋର ଇଚ୍ଛା ।

ତେବେ କଣ ତୁ ଚିରଜୀବନ ଏହିପରି ଅଭିଆଡ଼ା ଥିବୁ ?

ବଣିଆ ଆଉ ଉତ୍ତର ଦେଲା ନାହିଁ ।

ଛୁଅବର୍ଷ ତଳର କଥା ।

ମନ୍ତ୍ରୀଙ୍କ ଆଦେଶମତେ ନଗରରେ ପ୍ରଚାରିତ ହେଲା ଗତରାତ୍ରିର ସମସ୍ତ ଘଟଣା,—ରାଜାଙ୍କର ମୃତ୍ୟୁ । ନଗରବାସୀ ଘଟଣାଟିର ଅର୍ଥ ବୁଝି ପାରିଲେ ନାହିଁ । ମନ୍ତ୍ରୀ ପ୍ରଚାର କଲେ ଯୁବରାଜଙ୍କର ଅଭିଷେକୋତ୍ସବରେ ଯୋଗଦାନ କରିବାକୁ ନଗରବାସୀ ମହାମଣ୍ଡପକୁ ଶୀଘ୍ର ଆଗମନ କରନ୍ତୁ । କେହି କେହି ଭ୍ରମବଶତଃ ଭାବିଥିଲେ, ବୋଧ ହୁଏ ଆଜି ଯୁବରାଜଙ୍କର ଜନ୍ମୋତ୍ସବ ।

ସଭା ମଣ୍ଡପରେ ଉପସ୍ଥିତ ହୋଇ ମନ୍ତ୍ରୀଙ୍କ ନିକଟରୁ ସମସ୍ତ ଘଟଣା ଉତ୍ତମ ରୂପେ ବୁଝି ଭ୍ରମ ସଂଶୋଧିତ ହୋଇଗଲା । କେତେ ଲୋକ ରାଜପ୍ରାସାଦାଭିମୁଖେ ଧାଇଁ ପ୍ରହରୀର ବିନାନୁମତିରେ ପ୍ରାସାଦ ମଧ୍ୟରେ ପ୍ରବେଶ କରି ଏକୁଟିଆ ଘରେ ରାଣୀଙ୍କର ଦଶା ଦେଖିବେ ବୋଲି ଅଗ୍ରସର ହେଲେ । ସନ୍ଧ୍ୟା ସମୟରେ ଦୂତରି ନାମ ତାଙ୍କୁ ଏତେଦୂର ଭୀତ କରାଇଲା ଯେ, ମା ଗୋ, କହି ଫେରି ଆସିଲେ ସଭା ମଣ୍ଡପକୁ । ମ୍ଳାନ ବଦନ ଏବଂ ବିକମ୍ପିତ ଅଙ୍ଗ ।

ଯୁବରାଜଙ୍କ ଅଭିଷେକ ଉତ୍ସବରେ ଆନନ୍ଦିତ ହେଉଥିବା ଲୋକଙ୍କ ଅପେକ୍ଷା ବୃଦ୍ଧ ରାଜାଙ୍କର ମୃତ୍ୟୁରେ ଦୁଃଖିତ ହେଉଥିବା ଲୋକଙ୍କର ସଂଖ୍ୟା ବଳି ପଡ଼ିଲା ।

ଅଭିଷେକୋତ୍ସବ ସନ୍ଧ୍ୟାରେ ରଘୁନାଥ ଉତ୍ସାହର ସହିତ ଛନ୍ଦିରେ ଯୋଗଦାନ କରିଥିଲେ । ନବୀନ ନୂରଖୀ ଦରିଦ୍ରଙ୍କ ନିକଟରେ ଥାଇ ଦେଖୁଥିଲା ସେମାନଙ୍କର ଉପଯୁକ୍ତ ଚର୍ଚ୍ଚା କରାଯାଉଛି କି ନାହିଁ । ରାଜମଣ୍ଡପ ନିକଟରେ ଦଣ୍ଡାୟମାନ ହୋଇ ଯୁବରାଜଙ୍କର ମୁହଁକୁ ଅନାଇ ରହିଥିଲା ।

ଅଭିଷେକୋତ୍ସବ ପରେ ରାଜକାର୍ଯ୍ୟ କିପରି ସୁଚାରୁରୂପେ ଚାଲିବ, ସେଥି ନିମନ୍ତେ ଚିନ୍ତିତ ହେଲେ ବୃଦ୍ଧମନ୍ତ୍ରୀ । କୌଣସି ବିଷୟ ସ୍ଥିର କରିବା ପୂର୍ବରୁ ସେ ବୃଦ୍ଧାରାଣୀଙ୍କର ମତ ଗ୍ରହଣ କରନ୍ତି । ଶିବ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ପରେ ଶିବମୂର୍ତ୍ତି ପ୍ରତିଷ୍ଠା ନିମନ୍ତେ ନିଜେ ରାଣୀ ଅପରିମିତ ସ୍ୱର୍ଣ୍ଣ ମୁଦ୍ରା ଦାନ କରିଥିଲେ ।

ଯୁବରାଜ ଗାଦିରେ ବସି ଅଭିଷେକ ହେଲେ; କିନ୍ତୁ ରାଜା ଉପାଧି ପାଇଲେ ନାହିଁ । ଅବିବାହିତଙ୍କୁ ରାଜା ଡାକିବା ସେ ରାଜ୍ୟର ପ୍ରଥା ବିରୁଦ୍ଧ ।

ଧନଶ୍ୟାମଙ୍କର ଏକମାତ୍ର ପୁତ୍ର ରାମ ଯୁବରାଜଙ୍କର ଅତି ଆପଣାର ସଙ୍ଗୀ । ଯୁବରାଜ ରାମ ସଙ୍ଗେ ମିଳାମିଶା କରନ୍ତି । ରାମ ମଧ୍ୟ ଯୁବରାଜଙ୍କୁ ମାନିଥାଏ ।

ଆଜି ଛଅବର୍ଷ ପରେ ରାମର ଧନସ୍ପୃହା ଏତେ ବଢ଼ିଗଲାଣି ଯେ, ସେ ଯୁବରାଜଙ୍କୁ ଯୁବରାଜ ପରି ମାନେ ନାହିଁ, ମଣେ ସେ ଯେପରି ନିଜର ଜଣେ ସାଧାରଣ ବନ୍ଧୁ । ନବୀନ ସଙ୍ଗେ ଯୁବରାଜଙ୍କର ପଡ଼େ ନାହିଁ, କାରଣ ନବୀନ ଖୋସାମଦ କରି ଜାଣେ ନାହିଁ ।

ମହିପଡ଼ାରେ ହୋତାଏ ବିଦ୍ୟାଳୟ କରିଥିବା ସମୟରେ ଲୋକଙ୍କର ଆପତ୍ତି ଉଠିଲା । ଘୋଡ଼ାଘାଟ ପଡ଼ାର ଲୋକେ କହିଲେ, ପାଠଶାଳା ଏତେ ଦୂରରେ ପିଲାଏ ପଢ଼ିବେ କିପରି ? ଯାଉ ଆସୁ ତ ସମୟ କଟୁଛି । ପିଲାଏ ଏତେ ବାଟ ଯାଇ ପାରିବେ ନାହିଁ ।

ଘୋଡ଼ାଘାଟ ପଡ଼ାରୁ ପିଲାଏ ଆଉ ଆସିଲେ ନାହିଁ । ମହିପଡ଼ାର ଲୋକେ କହିଲେ, ପାଠଶାଳାଟା ଥାଉ ଯାଉ ନ ଥାଉ ସେଇଆ । ଏତେ ପାଖରେ ହେଲେ କଣ ପିଲାଏ ପାଠ ପଢ଼ନ୍ତି ? ହୋତା ଆଖି ଛେପ ପକେଇ ବାହାରିଲେ ପିଲାଏ ଆସି ଘରେ ହାଜର ।

ପାଠ ପଢ଼ିବାକୁ ମହିପଡ଼ାର ପିଲେ ଆସିଲେ ନାହିଁ । ହୋତାଏ ଏବେ କଣ କରିବେ ?

ହୋତାଏ ଗୋଟିଏ ବୁଦ୍ଧି ପାଇଥିଲେ । ପାଠଶାଳାଟି ଏକ ନିର୍ଦ୍ଦିଷ୍ଟ ପଡ଼ାରେ କଲେ ଲୋକଙ୍କର ଆପତ୍ତି ଉଠିବ । ଏପରି ସ୍ଥାନ ଠିକ୍ କରିବା ଉଚିତ, ଯାହା କୌଣସି ପଡ଼ାରେ ନୁହେଁ, ଅଥଚ ସବୁ ପଡ଼ାରୁ ସମାନ

ଦୂରରେ । ଏପରି ସ୍ଥଳ ପର୍ବତର ନିମ୍ନ ଭାଗରେ ଥିବା ବୁଦବୁଦିଆ ଜଙ୍ଗଲ । ପର୍ବତ ଉପରେ ଶିବ ମନ୍ଦିର । ଶିବ ମନ୍ଦିରରୁ ପକ୍କା ରାସ୍ତା ସର୍ପ ଗତିରେ ନିମ୍ନ ଦେଶକୁ ଆସିଛି । ନିମ୍ନ ଦେଶରୁ ସମତଳରେ ସିଧା ସଭା ମଣ୍ଡପ ନିକଟରେ ଦୁଇ ଧାଡ଼ି ଦେବଦାରୁ ଗଛର ମଧ୍ୟ ଦେଇ ରାସ୍ତା ରାଜପ୍ରାସାଦର ସମ୍ମୁଖ ବାଟେ ମହାନଦୀ କୂଳରେ ପଡ଼ିଛି । ପର୍ବତର ନିମ୍ନ ଦେଶରେ ଏହି ରାସ୍ତାର ଡାହାଣ ପାଖେ ଜଙ୍ଗଲ । ଜଙ୍ଗଲରେ ସେପାଖକୁ କ୍ଷୁଦ୍ର ଝରଣା । ଝରଣା ଉପରେ ବିଶାଳ ପଥର ଖଣ୍ଡ ।

ହୋତାଏ ଦେଖିଲେ, ଝରଣାରୁ ନାଳଟିଏ ଜଙ୍ଗଲ ମଧ୍ୟରୁ ଯାଇ ଗୋଟିଏ ଖାଲରେ ପଡ଼ିଛି, ତାହା ଦେଖାଯାଉଛି ପୋଖରୀ ପରି । ନିକଟରେ ନାନା ଜାତି ଫୁଲର ଗଛ । ଏହାହିଁ ପାଠଶାଳା କରିବାର ସ୍ଥାନ । ତେବେ ମନ୍ତ୍ରୀଙ୍କ ଅନୁମତି ଲୋଡ଼ା ।

ତୁମିର ରାସ୍ତାରେ କିଛି ଦୂର ଅଗ୍ରସର ହେଲେ ଧର୍ମଶାଳାକୁ ରାସ୍ତା । ରାସ୍ତା ବସ୍ତିସାଗର ଅଡ଼ୀ ଦେଇ ଘୋଡାଘାଟ ପଡ଼ାକୁ ଯାଇଛି । ଆଉ ତିନୋଟି ରାସ୍ତା ଏହି ରାସ୍ତାରୁ ବାହାରି ଯଥାକ୍ରମେ ଗଡ଼ ଭିତର, ମଝିପଡ଼ା ଏବଂ ବଡ଼ ପଡ଼ାକୁ ପଡ଼ିଛି । ପିଲାଙ୍କର ଯା ଆସ କରିବାକୁ କଷ୍ଟ ହେବ ନାହିଁ ।

ମନ୍ତ୍ରୀ ଅନୁମତି ଦେଲେ । ହୋତାଙ୍କ ଅନୁରୋଧରେ କାମ କରିବାକୁ ପଚିଶ ଜଣ ବେଠିଆ ମିଳିଲେ । ହୋତାଏ କାର୍ଯ୍ୟ ଆରମ୍ଭ କଲେ ।

ଅଳ୍ପରେ ମାସେ ଗତ ହେଲା । ପଥରର ହତା ବୁଲିଲା । ଭିତରେ ଛୋଟ ପୋଖରୀଟି । ପୋଖରୀରେ ପଡ଼ୁଥିବା ନାଳ ଉପରେ ପୋଲ ବନ୍ଧା । ଛୋଟ ପାହାଡ଼ଟି ମଧ୍ୟ ହତା ଭିତରେ ରହିଲା ।

ସ୍କୁଲ ଘର ତୋଳା ହେଲା ।

ପାଠଶାଳାରେ ପାଠ ଆରମ୍ଭ ହେଲା । ପିଲାଏ ଆସିଲେ । ପିଲାଙ୍କୁ ହୋତାଏ ଏପରି ଭାବରେ ଖେଳେଇ ଖେଳେଇ ପଢ଼ାଇ ଜାଣନ୍ତି ଯେ ଦୁଇ ମାସ ମଧ୍ୟରେ ଛୋଟ ସହରର ପ୍ରାୟ ସବୁ ପିଲା ଆସିଲେ ପଢ଼ିବାକୁ । ପିଲାଙ୍କର ସଂଖ୍ୟା ଏତେ ବଢ଼ିଗଲା ଯେ, ପୋଖରୀ ପାଖର ବଡ଼ ବଡ଼ ଘର ଦି ବଖରା ପୂର୍ଣ୍ଣ ହୋଇଗଲା । ଏତେ ପିଲାଙ୍କୁ ପଢ଼ାଇବାରେ ଅସୁବିଧା ହେବାରୁ ସେ ଆଉ ଜଣେ ଶିକ୍ଷକ ରଖିଲେ ।

ଦିନେ ସେ ଭାବିଲେ, ଭଗବାନ ଆମକୁ ମନୁଷ୍ୟ କରି ଜନ୍ମ ଦେଇଛନ୍ତି । ଗଣ୍ଡା ଦାସିମାନେ ବି ମନୁଷ୍ୟ । ସେମାନେ ମଧ୍ୟ ପଢ଼ିବେ ।

ହୋତାଏ ଗଣ୍ଡା ଘାସି ପିଲାଙ୍କୁ ମଧ୍ୟ ପାଠ ପଢ଼ାଇଲେ । କେତେ ଦିନ ପରେ ଏ ସମ୍ବାଦ ସହରର ଲୋକେ ଜାଣିଲେ । ସେମାନେ ପ୍ରତିବାଦ କଲେ ।

ହୋତାଏ ଗୋଟିଏ ବୁଦ୍ଧି ପାଞ୍ଚିଲେ । ଦୁଇଦିନ ମଧ୍ୟରେ ଅଲଗା ସ୍ଥାନରେ ଛୋଟ ଘର ତୋଳାଇଲେ । ସାଣ୍ଟଦ ଗଣ୍ଡାର ବଡ଼ ପୁଅ କାହ୍ନୁ ଗଣ୍ଡା କୋଳିଲ ଓ ଗୋପୀଭୁଷା ବୋଲି ଜାଣେ । ତାକୁ ଆଣି ସେହି ଛୋଟ ଘରେ ବସାଇଲେ । ସେ ନାମକୁ ମାତ୍ର ବସିଥାଏ କିନ୍ତୁ ହୋତାଏ ନିଜେ ଅଛିଆ ପିଲାଙ୍କୁ ପାଠ ପଢ଼ାନ୍ତି ।

ତିନି ଧାଡ଼ି ଘର । ପୋଖରୀ ପାଖ ଧାଡ଼ି ଘରେ ପିଲାମାନେ ପଢ଼ନ୍ତି । ମଝି ଧାଡ଼ିରେ ଖୋଲ କରତାଳ, ଧନୁଶର, ହୋତାଙ୍କର ହାତଗଢ଼ା କଣ୍ଢେଇ, ଖଣ୍ଡେ ଜାଲ, ଠାଙ୍ଗିଆ, କୋଡ଼ି, କାଙ୍କ, ପାଣି ବୋହିବା ନିମନ୍ତେ ଲୁଣ୍ଡି (ସେଣୋ), ମାଠିଆ ଇତ୍ୟାଦି ରଖା ହୋଇଥାଏ । ମଝି ଧାଡ଼ି ସିଧା କିଛି ଦୂର ଗଲେ କେନ୍ଦୁଗଛ ମୂଳରେ ଅଛିଆ ଜାତି ପିଲାମାନଙ୍କ ପାଇଁ ପଢ଼ିବା ଘର ।

ଡାହାଣିଆ ଖରା ଗଛ ଅଗ ପତ୍ରରେ ପଡ଼ି ଜଣାଇଁ ଦେଉଛି ସବିତାଙ୍କର ଶତାଗ୍ନି ପ୍ରସ୍ତୁତ । ବିହଗ ମୁଖରିତ ବିଦ୍ୟାଳୟ ପାର୍ଶ୍ୱସ୍ଥିତ ବନ ପ୍ରଦେଶ । ଖୁଦ୍ର ପୁଷ୍କରିଣୀ ମୁଖରିତ ମତ୍ସ୍ୟଜୀବୀ ବକଙ୍କ କୋଳାହଳରେ । ବିଦ୍ୟାଳୟ ମୁଖରିତ; ବାଳକ ବାଳିକାଙ୍କର କୋମଳ କଣ୍ଠ ନିନାଦିତ ପଦ୍ୟରେ; ତେଣେ ପର୍ବତ ଉପରସ୍ଥ ଶିବ ମନ୍ଦିର ମୁଖରିତ ପଣ୍ଡାଙ୍କର ଶ୍ଳୋକ ପାଠରେ ।

ହୋତାଏ ଆଦେଶ ଦେଲେ, ପିଲାମାନଙ୍କର ଛୁଟି ।

ଖଡ଼ିଧୂଳି ଅଙ୍ଗରେ ବୋଳି ବାଳକ ବାଳିକାଗଣ କୋଳାହଳ କରି ବିଦ୍ୟାଳୟ ଗୃହ ମଧ୍ୟରୁ ପଦାକୁ ବାହାରି ଆସିଲେ । କେତେ ସିଧା ସିଧା କ୍ଷୁଧାତୁର ହୋଇ ଗୃହାଭିମୁଖେ ଧାବମାନ ହେଲେ । କେତେ ହୋତାଙ୍କୁ ବେଷ୍ଟନ କରି କ୍ରୀଡ଼ନକ ନିମନ୍ତେ ପ୍ରାର୍ଥନା କଲେ । କେତେ ହୋତାଙ୍କ ପିଠିରେ ଲଉ ହେବେ ବୋଲି ନିଜ ନିଜ ମଧ୍ୟରେ କଳହ କଲେ । ଅନ୍ୟ କେତେ ଗୁରୁ ଭକ୍ତି ଦେଖାଇ ହୋତାଙ୍କର ହସ୍ତ ପଦ ମର୍ଦ୍ଦନ କଲେ । ଜଣେ ହୋତାଙ୍କୁ ଅଉଜି ତାଙ୍କର ଚୁଟିରେ ହାତ ମାରି ଜଣାଇଲା, ମୋତେ ଆଜି ଧନୁଶର ଦିଅ । ଜଣେ ହୋତାଙ୍କ କୋଡ଼ରେ ବସି ତାଙ୍କର ପଇତା ଟାଣି କହିଲା, ମୁଁ ଆଜି ବେଶୀ ପାଠ ପଢ଼ିଛି, ମୋତେ ବଡ଼ କଣ୍ଢେଇଟି ଦେବ । ଅନ୍ୟ ଜଣେ ହୋତାଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି କହିଲା, ଆଜ୍ଞା, ମୋ ଆଖିରେ ଗୋପିଆ ଏମିତି ଆଙ୍ଗୁଠି ଗୁଞ୍ଜିଦେଲା ।

ହୋତାଏ ଛାତ୍ର ଛାତ୍ରୀଙ୍କର ଅଶଙ୍କିତ ଭାବ ଦେଖି ଆନନ୍ଦିତ ହେଲେ । ସହକାରୀ ଶିକ୍ଷକଙ୍କୁ ଆଦେଶ ଦେଲେ, ଯାଅ ମଝି ଧାଡ଼ିରୁ ଏମାନଙ୍କୁ ଖେଳନା

ଦେଇ ଆସ । ସହକାରୀ ମନ୍ତ୍ରୀ ଧାଉଡ଼ ଆଡ଼େ ଚାଲିଲେ । ହୋତାଙ୍କୁ ଘେରି ଛାତ୍ର-ମାନେ ତାଙ୍କର ଅନୁଗମନ କଲେ । କିଛି ସମୟପରେ ହୋତାଏ ମଧ୍ୟ ସେ ସ୍ଥାନରୁ ଉଠିଗଲେ । ପଥରେ ତାଙ୍କର ସହକାରୀଙ୍କୁ ଆଦେଶ ଦେଲେ, ପିଲାଏ ଖେଳିବାକୁ ଯାଉଛନ୍ତି, ତାଙ୍କ ପ୍ରତି ନଜର ରଖିଥିବ ।

ଛାତ୍ରଛାତ୍ରୀ ଖେଳ ସାମଗ୍ରୀ ନେଇ ଖେଳରେ ମାତିଲେ । ହୋତାଏ ମନ୍ତ୍ରୀ ଧାଉଡ଼ିର ସମୁଖସ୍ଥ କେନ୍ଦୁଗଛ ମୂଳେ ବସି ସେମାନଙ୍କର ଖେଳ ଦେଖୁଥିଲେ । ଥୋକାଏ ପିଲା ଲୁଚକାଳି ଖେଳିଲେ; ହୋତାଏ ହେଲେ ବୁଢ଼ିଆଣୀ । ଅନ୍ୟ ଥୋକେ ବୋହୂ ବୋହୂକା ଖେଳିଲେ, ହୋତାଏ ହେଲେ ମଧ୍ୟସ୍ଥ । ଅଣା ଏବଂ ହାନା କଣ୍ଢେଇ ବାହାଘର କଲେ; ହୋତାଏ ହେଲେ ଉଭୟ ପକ୍ଷର କୁଣିଆଁ । ଅଣା ଅଳ୍ପାକର ତାର ସୁନ୍ଦର ମୁହଁଟି ହଲାଇ କହିଲା, ନାଇଁମ ଆଜ୍ଞା, ତେମେ କଣ କୁଣିଆଁ କି ତେମେ ବାପା ନା । ଧୂଳିଆ ପାଖରେ ଥିଲା, ଧାଇଁ ଆସି ହୋତାଙ୍କର ହାତ ଛୁଇଁ ସଇଁ ସଇଁ ହୋଇ କହିଲା, ମୁଁ ବୁଢ଼ିଆଣୀ ଛୁଇଁଛି ଆଗ । ନବୀନ କାହୁଁ ଆସି ପୋଥି ଖୋଲି ପଚାରିଲା, ଆଜ୍ଞା, ଏ ଶ୍ଳୋକଟିର ଅର୍ଥ କଣ ?

ହାନାକୁ ଏଗାର ବର୍ଷ ହେଲାଣି । ସେ କଣ୍ଢେଇ ଧରି ଖେଳୁଛି । ତେବେ ସୁଦ୍ଧା ତାର ପିଲା ଖେଳ ଛାଡ଼ିଲା ନାହିଁ । ହୋତାଏ ଭାବିଲେ, ବୋଧ ହୁଏ ହାନାର ବାହାଘର ଆଉ ଦୁଇ ତିନି ବର୍ଷପରେ ହେବ । ଆଉ ତାର ଅଧିକ ପାଠର ପ୍ରୟୋଜନ ନାହିଁ । ଯେତିକ ଶିଖିଛି ସେଇ ଢେର । ତାର କର୍ତ୍ତବ୍ୟ, ଘରେ ରହି ଘରଧନ୍ଦା ଶିଖିବ । ତେବେ ପର ଘରକୁ ଗଲେ କେହି କୌଣସି କଥାରେ ବାଛି ପାରିବେ ନାହିଁ । ତାର ପିତାଙ୍କୁ ଏହା ଜଣାଇବା ଆବଶ୍ୟକ ।

ହୋତାଏ ଦେଖିଲେ, କିଛି ଦୂରରେ ଅନ୍ୟ ଏକ କଣ୍ଟେଇକୋଳି ଗଛ ମୂଳରେ ଅଣା ଏବଂ ଧୂଳିଆ କୋଳି ତୋଳୁଛନ୍ତି । କୋଳି ତୋଳୁ ତୋଳୁ କେତେବେଳେ ଯଦି ଗୋଟାଏ କଣ୍ଟା ଲୁଗାରେ କି ହାତରେ ଲାଗି-ଗଲା, ଉଚ୍ଚସ୍ୱରରେ ଚିତ୍କାର କରି ଉଠୁଛନ୍ତି । କଣ୍ଟା ଗଛରୁ ଲୁଗା ଟାଣି ଆଣୁଛନ୍ତି ।

ହାନା ଯେଉଁ ଗଛ ମୂଳରେ ବସି କଣ୍ଢେଇ ସଜାଉଥିଲା, ସେହି ଗଛର ନିକଟରେ ସେପାଖକୁ ବୁଦାଟିଏ । ବୁଦାର ଉଢ଼ୁଆଳରେ କିଏ ଜଣେ ଠିଆ ହେଲା ପରି ହୋତାଙ୍କୁ ଦେଖାଗଲା । ହୋତା ନିରୀକ୍ଷଣ କରି ଜାଣିଲେ ଯେ ଠିଆ ହୋଇଛି ସେ ବାଳକ ନୁହେ । ଷୋଳ ସତର ବର୍ଷର ତରୁଣ । ଭାବିଲେ ବୋଧ

ହୁଏ ତାଙ୍କର ଅଧୀନସ୍ଥ ଯୁବକ ଶିକ୍ଷକ । ସେଠାରେ ଠିଆ ହୋଇ କଣ କରୁଛନ୍ତି ? କିନ୍ତୁ ଅଦୂର ଉତ୍ତମ ଭାବରେ ଅନାଇଁଲାରୁ ଜାଣିଲେ, ପିଲାଟା ହାନାକୁ ଅନାଇଁ ରହିଛି ।

ହୋତାଏ କୋମଳ ସ୍ୱରରେ ଡାକିଲେ, ହାନା ।

ତାଙ୍କର ଡାକ ହାନାର କାନରେ ପ୍ରବେଶ କଲା ନାହିଁ । ଦଣ୍ଡାୟମାନ ଯୁବକ ଚମକିପଡ଼ି ଥରେ ହୋତାଙ୍କ ଆଡ଼କୁ ଅନାଇଁ ସେ ସ୍ଥାନ ତ୍ୟାଗ କରି ଚାଲିଗଲା । ହୋତା ପୁଣି କଅଁଳ ସ୍ୱରରେ ଡାକିଲେ, ହାନା !

ହାନା ହୋତାଙ୍କୁ ଦେଖି ଦେହରେ ଲୁଗା ଆବୃତ କରି କହିଲା, କାହିଁକି ଡାକୁଛ, ମୁଁ ପସି କଣ୍ଢାଇ ସଜାଡ଼ୁଛି ।

ହୋତାଏ ଡାକିଲେ, ଅଇଲା ମା ଇଆଡ଼େ ।

ହୋତାଏ ପଚାରିଲେ, ତୋ ପାଖରେ କିଏ ଠିଆ ହୋଇଥିଲା କି ?

କାଇଁ ନାଇ ତ କେଉଁଠି ?

ହୋତା ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, ସେ ବୁଦାର ଅଢ଼ୁଆଳରେ ।

ମୁଁ କାହାକୁ ଦେଖି ନାହିଁ । କଣ୍ଢାଇ ସଜାଡ଼ୁଥିଲି । ଆଜି ଆମର କଣ୍ଢେଇ ବାହାଘର । ହେଇ ଦେଖ, ଆଶା ଆଉ ଧୂଳିଆ କଣ୍ଢେଇ କୋଳି ତୋଳୁଛନ୍ତି । କୋଳି ଆଣିଲେ ଆମେ ଭାତ ଡାଲିକରି ଖାଇବୁ ।

ହୋତାଏ ସ୍ନେହପୂର୍ଣ୍ଣ ନେତ୍ରରେ ଥରେ ହାନାକୁ ଅନାଇ ଭାବିଲେ, ତେବେ ସେ କିଏ ? ମୁଁ ହାନାକୁ ଯେପରି ଡାକିଛି, ସେ ମୁହୂର୍ତ୍ତେ ବିଳମ୍ବ ନ କରି ଚାଲିଗଲା । ସେ ଯିଏ ହେଉ, ହାନା ଆଉ କାଲିଠାରୁ ପାଠଶାଳାକୁ ଆସିବ ନାହିଁ । ବଡ଼ଝିଅ ହେଲାଣି । ଏଥର ପଦାକୁ ଆସିଲେ ଭଲ ଦିଶିବ ନାହିଁ । ଘରେ ରହି ପର ଘରେ କିପରି ଚଳିବାକୁ ହେବ, ସେଇ ସବୁକାର୍ଯ୍ୟ ଶିଖୁ ।

ତମର ବ୍ରାହ୍ମଣ ଭୋଜନ ହେବଟି ? ବାହାଘର ପସି କରୁଛ ?

ହଁ—ଅଁ ।

କିଏ ବ୍ରାହ୍ମଣ ଆସିଛି ? ମୋତେ ନିମନ୍ତ୍ରଣ କରୁନ ?

ଧୂଳିଆ ବ୍ରାହ୍ମଣ ହୋଇଛି । ହେଉ, ତମକୁ ବି ନିମନ୍ତ୍ରଣ କରିବା ।

ହୋତାଏ କହିଲେ, ହଉ । ହାନା, କାଲି ତୁ ପାଠ ପଢ଼ିବାକୁ ଆସିବୁ ନାହିଁ । ତୋ ବାପାକୁ କହିଦେବୁ, ମୁଁ ତାଙ୍କୁ ଡକେଇଛି ।

କାହିଁକି ? ମୁଁ କାହିଁକି କାଲି ଆସିବି ନାହିଁ ?

କାଲି ତତେ ଛୁଟିଦେଲି । ସନ୍ଧ୍ୟା ହେବ, ଆଜି ତମର ଖେଳ ସେତିକି ଥାଉ । କାଲି ପୁଣି ଖେଳିବ ।

କାଲି ପରି ମୋର ଛୁଟି ?

ତେବେ ପହିର ଦିନ । ଏଇ ଦେଖ ପିଲାଏ ସବୁ ଘରକୁ ଯାଉଛନ୍ତି ତୁ ଯା । କିଏ ତତେ ଘରେ ଛାଡ଼ିଦେବ ? ମୁଁ ତୋ ସଙ୍ଗରେ ଯିବି ?

ନା, ମୁଁ ଏକା ଯିବି । ସବୁଦିନେ ତ ଯାଏଁ । ଅଶା ଓ ଧୂଳିଆ ଆସି କେତେବେଳେ ନବୀନର ଦୁଇହାତ ଧରି ଟାଣୁଛନ୍ତି । ଧୂଳିଆ କହୁଛି, ମୋ ନବୀନ ଭାଇ । ଅଶା କହୁଛି, ମୋ ନବୀନ ଭାଇ ।

ନବୀନ ନୀରବ ।

କିଛି ସମୟ ପରେ ବଶିଆ ଅଶାକୁ ନେବାକୁ ପହଞ୍ଚିଲା ।

ସମସ୍ତେ ନିଜ ନିଜର ଘରକୁ ଗଲେ । କେବଳ ନବୀନ ଏବଂ ହୋତାଏ ଦରଜା ପାଖ ଧାଉଡ଼ି ଆଡ଼େ ଜଣେ ବାବାଜୀଙ୍କୁ ଦେଖି ତାଙ୍କର ଅଭ୍ୟର୍ଥନା କରିବାକୁ ଗଲେ ।

ଅତିଥି ଅଭ୍ୟାଗତଙ୍କ ନିମନ୍ତେ ଯେଉଁ ଦୁଇ ବଖରା ଘର ତୋଳା ହୋଇଛି ସେ ପ୍ରାୟ ଖାଲି ପଡ଼ିଥାଏ । ଘର ଦି ବଖରା ବୃଥାରେ ତୋଳା ହେଲା ବୋଲି ହୋତାଏ ଦୁଃଖିତ ହୁଅନ୍ତି । ଯଦି ଅକସ୍ମାତ କୌଣସି ବ୍ୟକ୍ତି ପ୍ରାର୍ଥନା କରେ, ରାତିଟି ସେ ଘରେ ଯାପନ କରିବ, ହୋତାଏ ଆଦର କରି ତାଙ୍କୁ ସେ ଘରେ ରଖାନ୍ତି । ତାଙ୍କର ଯେପରି କଷ୍ଟ ନ ହୁଏ ସେଥି ନିମନ୍ତେ ବିଶେଷ ଚେଷ୍ଟିତ ହୁଅନ୍ତି । ଦୁଇଦିନ ପୂର୍ବେ ଜଣେ ଅଳ୍ପ ବୟସ୍କ ବାବାଜୀ ଆସି ସେ ଘରେ ବସା କରିଥିଲେ । କିନ୍ତୁ ଆଜିକାଲି ସେ ଆଉ ଏ ସ୍ଥାନରେ ରହୁନାହାନ୍ତି । ସହରରେ ତାଙ୍କର ଅନେକ ଭକ୍ତ, ସେହିମାନଙ୍କ ଘରେ ରହନ୍ତି ।

ସହରର ଅନେକ ଲୋକ ଚଳମ ରଖିଲେଣି । ଠୋକା ବାବାଜୀ ଆସିଲେ ତାଙ୍କୁ ପ୍ରସାଦ ଦେବେ ।

ଆଗନ୍ତୁକ ବୃଦ୍ଧ ଶୁକ୍ଳକେଶ, ଜଟାଧାରୀ, ଉଜ୍ଜ୍ୱଳ ଚକ୍ଷୁଦ୍ୱୟ, ପ୍ରଶସ୍ତ ଲଲାଟର ଦୀପ୍ତି ଉଜ୍ଜ୍ୱଳ, ପରିଧେୟ କଷାୟ ବସନ । ଗାମ୍ଭୀର୍ଯ୍ୟର ମଧ୍ୟ ଦେଇ ହାସ୍ୟର ସ୍ନିଗ୍ଧାଲୋକ ଫୁଟି ଉଠୁଥିଲା ଅଧର ଯୁଗଳରେ ।

ବୃଦ୍ଧ ନବୀନର ମସ୍ତକରେ ହସ୍ତ ସ୍ଥାପନ କରି ଈଷତ୍ ହାସ୍ୟ ଧ୍ୱନି ପଚାରିଲେ, ବାବା, ଏଠି ରାତ୍ରିଯାପନ କରିବାକୁ କାହାର କିଛି ଆପତ୍ତି ଅଛି ?

ନବୀନ ଉତ୍ତର ଦେବା ପୂର୍ବରୁ ହୋତା ଏ ଆଗବଢ଼ିପଡ଼ି କହିଲେ, ନା ନା, କାହାର କିଛି ଆପତ୍ତି ନାହିଁ । ରାତିକ ପାଇଁ କାହିଁକି ଅନେକ ରାତି ରହିଲେ ବି ଆପଣଙ୍କୁ କେହି ବାରଣ କରିବେ ନାହିଁ ।

ବୃଦ୍ଧ ଚକ୍ଷୁ ଫେରାଇ ହୋତାଙ୍କୁ ଅନାଇଁ କହିଲେ, ଈଶ୍ୱରଙ୍କୁ ଧନ୍ୟବାଦ ।

ନବୀନ ପଚାରିଲା, ତୁମେ କଣ ମୋର ସେଇ ବୁଢ଼ା ବାବାଜୀ ?

ବାବାଜୀ ମୁରୁକି ହସିଲେ । ଗୁଣୁ ଗୁଣୁ ହୋଇ ଗୀତ ବୋଲିଲେ—

ଆସ ମୋ ଜୀବନ ଧନ
ଆସ ମୋ ମନ କାନନେ
ସଜାଇ ରଖିଛି ହୃଦ-
ବିପିନ ଅତି ଯତନେ ॥

ତୁମେ ମୋ ପରାଣ ନିଧି
ଅପାର ଦୟା ବାରିଧି
ତୁମ ରୂପ ପ୍ରତିଛବି
ରହିଛି ଲାଗି ମୋ ମନେ ॥

କେତେ ପ୍ରଲୋଭନେ ଠକି,
ପଠାଇଲ ଏତେ ଦୂରେ,
ସବୁ ଛାୟା ସବୁ ମାୟା
ତେଣୁ ମୁଁ ତୁମକୁ ଝୁରେ ॥

କେତେ ବା ପୂଜିବ ଶୂନ୍ୟ,
ନ ଘେନେ ତା ଆଉ ମନ,
ପ୍ରଲୋଭନ ଅଣ୍ଟା କରି ?
ଆସ, ଡାକୁଛି ଆତୁରେ ॥

ଆସ ମୋ ଜୀବନ ଧନ
ଆସ ମୋ ପରାଣ ପୁରେ,
ସଜାଇ ରଖିଛି ହୃଦ-
ଆସନ, ନ ରହ ଦୂରେ ।

ବାବାଜୀଙ୍କର ନେତ୍ର ଯୁଗଳରୁ ବାରିଧାରା ଝରି ଆସିଲା । ହୋତାଏ ଓ ନବୀନ ତାଙ୍କର ଚରଣ ଯୁଗଳ ତଳେ ପ୍ରଣାମ କଲେ ।

ଦିନେ ଅଣା ଧୂଳିଆ ସଙ୍ଗରେ ତାଙ୍କ ଘରକୁ ଯାଇଥିଲା । ସଞ୍ଜ ବୁଡ଼ି ଆସୁଥାଏ । ଅଣାକୁ ଦେଖି ରଘୁନାଥ ଆନନ୍ଦିତ ହୋଇ କାଖ କଲେ । ସ୍ୱର୍ଗୀୟ ବନ୍ଧୁ ସୁନ୍ଦରଙ୍କ ଏକମାତ୍ର ସନ୍ତାନ, ସ୍ନେହର କନ୍ୟା ସେ । ଗୋଟିଏ କାଖରେ ଅଣାକୁ ଏବଂ ଅନ୍ୟଟିରେ ଧୂଳିଆକୁ ଧରି ସେ ଦୁହିଁଙ୍କୁ ଚୁମ୍ବନ କଲେ । ରୁକ୍ମଣୀଙ୍କ ନିକଟରେ ଛାଡ଼ିଲେ । ପଚାରିଲେ, ଦେଖିଲ, ଭାଇ ଭଉଣୀ ପରି ଦିଶୁନାହାନ୍ତି ?

ରୁକ୍ମଣୀ ସ୍ମିତ ହାସ୍ୟ କରି ଦୁଇ ହାତରେ ଦୁଇ ଜଣଙ୍କୁ ଟାଣି ନେଇ କୋଳରେ ବସାଇଲେ ।

ସାଧୁଆ ମାଆର କାର୍ଯ୍ୟ ଶେଷ ହୋଇଥିଲା । ସେ ତା ଘରକୁ ଫେରିଯାଇ ନ ଥିଲା, ନିକଟରେ ବସିଥିଲା । ରଘୁନାଥଙ୍କର କଥା ଶୁଣି ମୁହଁରେ ଲୁଗା ଦେଇ ମୁଣ୍ଡ ଟୁଙ୍ଗାରି ହସିଲା । ତାର ହସ ରୁକ୍ମଣୀଙ୍କ ଚକ୍ଷୁ ଏଡ଼ି ପାରିଲା ନାହିଁ । ରୁକ୍ମଣୀ ହସର କାରଣ ପଚାରି ପାରିଲେ ନାହିଁ । ମୁହଁ ଫେରାଇ ନେଲେ ।

ବଣିଆ କେତେ ସ୍ଥାନ ଖୋଜି ରଘୁନାଥଙ୍କ ଘରେ ପହଞ୍ଚିଲା । ବଣିଆର ଡାକ ଶୁଣି ଅଣା ଘରକୁ ଯିବ ବୋଲି କହିଲା । ରୁକ୍ମଣୀ ସ୍ନେହ ମିଶ୍ରିତ ସ୍ୱରରେ କହିଲେ, ତୋ ବୋଉକୁ ମୋର ବହୁତ ବହୁତ କହିବୁ । କାଲି ପୁଣି ଆସିବୁ ।

ସେଦିନ କଣ୍ଟେଇ କୋଳି ଗଛରେ ଲାଗି ଅଣାର ମାଳି ଛିଣ୍ଡିଯାଇଥିଲା । ପିନ୍ଧିଥିବା ଲୁଗା ମଧ୍ୟ ଚିରିଯାଇଥିଲା । ରଘୁନାଥ ଅଣାର ବେକ ଲଙ୍ଗଳା ଦେଖି ପଚାରିଲେ, ମାଳି ତୋ ବେକରେ ନାହିଁ ଅଣା, ତୋ ବେକଟା ଲଙ୍ଗଳା ଦିଶୁଛି । ମାଳି କଣ କଲୁ ?

ଅଣା ଉତ୍ତର ଦେବା ଆଗରୁ ବଣିଆ ବିନୀତ ଭାବରେ କହିଲା, ପ୍ରତିଦିନ ମୁଁ କେଣ୍ଡାଏ ମାଳି ଦେଉଛି, ମା ପିନ୍ଧାଇ ଦେଉଛନ୍ତି, ସଞ୍ଜକୁ ଦେଖିଲା ବେଳେ ସେ ମାଳି ତା ବେକରେ ନାହିଁ । କେତେ ଲୁଗା ଚିରୁଛି ।

ଅଇଲୁ ଅଣା, ମୁଁ ତତେ ମାଳ ପିନ୍ଧାଇ ଦେବ, କହି ନିଜେ ରଘୁନାଥ ଅଣାକୁ ବଣିଆ ପାଖରୁ କାଢ଼ି କରି ନେଲେ । ଗୃହ ଆଣି ଖଣ୍ଡେ ଛୋଟ ଦାମିକା ବାଚ ପେଡ଼ିରୁ କାଢ଼ିଲେ । ନବୀନକୁ ବୁଢ଼ାରାଜା ଉପହାର ଦେଇଥିବା ରତ୍ନ ଖଚିତ ସୁନାହାରଟି ମଧ୍ୟ କାଢ଼ିଲେ । ରୁକ୍ମଣୀଙ୍କୁ ଦେଇ କହିଲେ, ନିଅ, ଅଣାକୁ ପିନ୍ଧାଇ ଦିଅ ।

ରଘୁନାଥ ହସିହସିକା ପୁଣି ଅଣାକୁ କୋଳ କରି ପଦାକୁ ବାହାରିଗଲେ ।

ରୁକ୍ମଣୀ ସେପରି ବହୁମୂଲ୍ୟ ହାର କେବେ ଦେଖିନଥିଲେ । ହାରକୁ ଦେଖି ଚହିଁରେ ଖଚିତ ରତ୍ନଗୁଡ଼ିକର ଦୀପ୍ତିରେ ତାଙ୍କର ଚକ୍ଷୁ ଝଲସି ଉଠିଲା । ଅଣାକୁ ପିନ୍ଧାଇଦେବା ପରିବର୍ତ୍ତେ ହାରଟିକୁ ନିରୀକ୍ଷଣ କଲେ । ଯେତିକି ଦେଖୁଥାନ୍ତି ତାଙ୍କର ଲୋଭ ସେତିକି ବଢ଼ୁଥାଏ । ନିଜେ ରଘୁନାଥ ଦେଇ ଯାଇଛନ୍ତି, ଅଣାକୁ ପିନ୍ଧାଇ ନଦେବା ଉଚିତ ନୁହେ । ତଥାପି ମନରେ ଲୋଭ ଆସିଲା ।

ସାଧୁଆ ମା ହସି ଉଠିଲା । ରୁକ୍ମଣୀ କାରଣ ପଚାରିବାରୁ ସେ ଥରେ ଧୂଳିଆ ଏବଂ ଅଣାକୁ ଅନାଇଁ କହିଲା, ଆଲୋ ଝିଅ, ତୁ ସିନା ଅଣାକୁ ପର ମଣୁଛୁ ତାଙ୍କର ସେ ପର ନୁହେଁ ।

ରୁକ୍ମଣୀ କହିଲେ, ତୋ କଥା ମୁଁ ବୁଝି ପାରୁନାହିଁ ।

ସାଧୁଆ ମା ଗୁନ ଗୁନ କହିଲା, ଆଲୋ, ତୁ କିଅଲୁ ବୁଝିବୁ ? ତୁ ସଙ୍ଗ ସାବନୀ । ତୋପରି କିଏ ଦୁନିଆରେ ସଭିଏଁ ଅଛନ୍ତି ?

ତୁ କଣ କହୁଛୁ ଖୋଲିକରି କହ । ଡେରି ହେଉଛି ପରା । ଏ ପିଲାଙ୍କ ଆଡ଼କୁ ଅନାଉଛୁ କାହିଁକି ? ସେ କିଛି ବୁଝି ପାରିବେ ନାହିଁ ।

ସାଧୁଆ ମା କହିଲା, ଶୁଣିବୁ ? ଆଲୋ ଝିଅ, ଶୁଣିବୁ, ? ପାପ କଥା ଭୁଣ୍ଡରେ ଧରି ଯୋଗାଏ ନାହିଁ ।

ରୁକ୍ମଣୀ ପଚାରିଲେ, ପାପ କଥା କଣ ?

ସାଧୁଆ ମା କହିଲା, ଭୁଣ୍ଡରେ ଧରିଲେ ନରକ ଯୋଗ ।

ଶୀଘ୍ର କହ ।

ଆଲୋ, ଯାଙ୍କର ଅଗ ଭରିଯା ନବୀନର ମା ଯେମିତି ମରିଗଲା, କେତେ ଲୋକ ଆସି ଶିଖେଇଲେ ଲ୍ୟାଇଁକି ଅଉ ଗୋଟିଏ ବାହା ହ, ପିଲା ବୟସ ତ ।

ଜ୍ୱାଇଁ ମଙ୍ଗିଲେ ନାହିଁ । ଲୋକେ କହିଲେ ତମ ସଂସାର କେମିତି ଚଳିବ ? ସେଥିରୁ କାନ ଦେଲେ ନାହିଁ । ସ୍ୱାଙ୍କର ଜଣେ ସଙ୍ଗାତ, ତାଙ୍କ ନାମ ସୁନ୍ଦର । ଘୋଡ଼ାଘାଟ ପଡ଼ାରେ ଘର । ତାଙ୍କ ଘରକୁ ଦିବ୍ୱବର ଯା ଆସ କରନ୍ତି । ସୁନ୍ଦରଙ୍କ ଭାରିଯା କଥା ମୁଁ ତତେ କହୁଛି । ସେ ଡାଆଣୀ । ଆଗ ବୁଢ଼ା ଶଶୁରକୁ ଖାଇଲା । ସେଇଠୁ ଖାଇଲା ତା ବର ସୁନ୍ଦରଙ୍କୁ । ରଘୁନାଥ ତାଙ୍କର ଖବର ଅନ୍ତର ବୁଝିଲେ । ସୁନ୍ଦରଙ୍କ ଭାରିଜାଙ୍କ ନାମ ସାବିତ୍ରୀ । ହଁ ହଁ, ସେ କୁଆଡ଼େ ସତୀ ସାବିତ୍ରୀ । ପାନ ଭିତରେ କଣ ଔଷଧ ପୂରାଇ ସ୍ୱାଙ୍କୁ ଖାଇବାକୁ ଦେଲା । ସ୍ୱେ ସେ ସବୁ କିଛି ଜାଣନ୍ତି-ନାହିଁ । ଔଷଧ ଖାଇ ତାଙ୍କ ଘରେ ମନ ଏମିତି ଲାଗିଗଲା, ଛାଡ଼ । ଯେତେବେଳେ ଦେଖିବ, ସେ ସେଇଠି । ଅଣା ପେଟରେ ରହିଲା । ଅଣା ଜନମିଲା । ଦୁନିଆଁ ଲୋକେ ଜାଣିଲେ, ସ୍ୱାମୀ ମଲା ବେଳକୁ ଅଣା ପେଟରେ ଥିଲା । ମୁଁ ଜାଣେ, ଅଣା ଧୂଳିଆର ଭଉଣୀ ।

ମନରେ ବଡ ଚଦ୍ରଠାଇ ସାଧୁଆ ମା ଚାଲିଗଲା ।

ରୁକ୍ମଣୀ କିପରି ହାରଟିକୁ ରକ୍ଷା କରିବେ, ସେଇଆ ଚିନ୍ତା କରିବାକୁ ଲାଗିଲେ । ଅଣା ଏବଂ ଧୂଳିଆ ଆଗରେ ଠିଆ ହୋଇ ତାଙ୍କ ମୁହଁକୁ ଅନାଇଁ ଥିଲେ । ସେମାନେ କେତେବେଳୁ ପଦାକୁ ଚାଲିଯାଇଛନ୍ତି ରୁକ୍ମଣୀଙ୍କୁ ଜଣା ନାହିଁ । ରଘୁନାଥ ଅଣାକୁ ଧରି ପୁନର୍ବାର ଘର ଭିତରକୁ ଆସି ରୁକ୍ମଣୀଙ୍କ ପାଖରେ ଛିଡ଼ ଗଲେ । ଶୀଘ୍ର ହାର ଏବଂ ଲୁଗା ପିନ୍ଧାଇଦେବାକୁ କହି ଗଲେ ।

ରଘୁନାଥ ଯିବା ପରେ ରୁକ୍ମଣୀ ବହୁମୂଲ୍ୟର ହାରଟି ନିଜର ବେକରେ ପକାଇଲେ । ନିଜେ ପିନ୍ଧିଥିବା ଅଳ୍ପ ଦାମର ହାରଟି ଅଣାକୁ ପିନ୍ଧାଇଦେଲେ । ଅଣା ହାର ଏବଂ ପାଠ ପିନ୍ଧି ପଦାକୁ ଗଲା । ମନ ଆନନ୍ଦରେ ବସ୍ତିଆକୁ କହିଲା, ଦେଖ୍, ମୁଁ କେମିତି ପାଠ ପିନ୍ଧିଛି, କେମିତି ହାର ନାଇଛି ।

ରଘୁନାଥ ଅଣାର ବେକରେ ପୁରୁଣା ହାର ଦେଖି ଦୁଃଖିତ ହେଲେ । ଘଟଣାଟି ଅନୁମାନ କଲେ । ହାର ଖୋଲି କହିଲେ, ବଶୁ, ଏ ହାରଟା ମୋ ମନକୁ ଆସୁ ନାହିଁ । ଅଣା ପାଇଁ ଭଲ ହାର ମୁଁ ଗଢ଼ାଇ ଦେବି । ଏଇଟା ଥାଉ ।

ତ୍ରୟୋଦଶୀର ଜହ୍ନ ଆକାଶରେ ।

ରଘୁନାଥ ଘର ଭିତରକୁ ଆସିବାକୁ ମୁହଁ ଫେରାଇଲେ । ତାଙ୍କୁ ଶୁଭିଲା ଫେଫର ନବୀନ ଅନ୍ୟ କାହା ସଙ୍ଗେ କଥା ଭାଷା ହୋଇ ରାଜପଥରେ ଗମନ 'କରୁଛି । ହାକଲେ, କିଏ ନବୀନ ?

ନବୀନ ଉତ୍ତର ଦେଲା, ଆଜ୍ଞା ।

ରଘୁନାଥ ତା ପାଖକୁ ଯାଇ କହିଲେ, ଘରକୁ ଆ । ଏତେ ରାତିରେ କୁଆଡ଼େ ଯାଉଛୁ ? ସେ କିଏ ତୋ ସଙ୍ଗରେ ?

ନବୀନ କହିଲା, ବାବାଜୀ ।

ରଘୁନାଥ ବାବାଜୀଙ୍କୁ ପ୍ରଣାମ କଲେ । ବାବାଜୀ ଅପେକ୍ଷା ନ କରି ଆଗକୁ 'ଚାଲିଲେ । ଗୋଟିଏ ହାତରେ ଆଶା ବାଡ଼ି ଅନ୍ୟଟିରେ କମଣ୍ଡଳୁ, ମୁଦ୍ରା ପୂର୍ଣ୍ଣ ।

ରଘୁନାଥ ନବୀନର ହାତ ଧରି ଘରକୁ ଆଣିଲେ ।

ପିତା ପୁତ୍ରଙ୍କର କଥୋପକଥନ ।

ନବୀନ, ଏ ବାବାଜୀ କିଏ ?

ଆଜ୍ଞା କିଏ ? ଜଣେ ବାବାଜୀ ତ । ଲୋକେ କହନ୍ତି ଏ ପ୍ରକୃତ ବାବାଜୀ । ଆଉ ପାଠଶାଳାରେ ଯେ ଅଛନ୍ତି ସେ ଭଣ୍ଡ । କିନ୍ତୁ ମୋର ବିଶ୍ୱାସ ଠିକ୍ ଓଲଟା । ତଥାପି ଲୋକେ କହନ୍ତି ବୋଲି ଥରେ ଥରେ ଯାଙ୍କ ସଙ୍ଗେ ଆଳାପ କଲି । ଏ କହନ୍ତି ଯଦି ମାଆକୁ ଦେଖିବାକୁ ଇଚ୍ଛା, ସ୍ୱର୍ଗକୁ ଯିବାକୁ ପଡ଼ିବ । ସ୍ୱର୍ଗକୁ ଯିବାକୁ ହେଲେ ସାଧନା ଲୋଡ଼ା । ସାଧନା କରିବାକୁ ହେଲେ, ପବନ ଠେକିବାକୁ ଧୂମ୍ର ପାନ କରିବା ଆବଶ୍ୟକ । ଗୃହ ତ୍ୟାଗ କରି ଘୋର ଜଙ୍ଗଲକୁ ଯିବାକୁ ପଡ଼ିବ । ସେ ପ୍ରାତଃ କାଳରେ ମଣିଭଦ୍ରା ପର୍ବତରେ ନିଜର ଆଶ୍ରମକୁ ପ୍ରତ୍ୟାବୃତ୍ତ ହେବେ । ମୁଁ ତାଙ୍କର ସଙ୍ଗେ ଯିବାକୁ ମନସ୍ଥ କରିଛି ।

ତୁ ? ନାହିଁ ଧନ, ଆମକୁ ଛାଡି ତୁ ଆଉ କୁଆଡ଼େ ଚାଲିଯାଆନା ।

ବାବାଜୀ କହିଲେ, ସଂସାରରେ କେହି କାହାର ନୁହେଁ । ବାପା, ତେବେ ଆପଣ ମୋର କିଛି ନୁହନ୍ତି ? ମୁଁ ଆପଣଙ୍କର କେହି ନୁହେଁ ? ମୁଁ ଗୃହ ତ୍ୟାଗ କଲେ ଆପଣଙ୍କର କଣ କ୍ଷତି ହେବ ମୁଁ ବୁଝି ପାରୁ ନାହିଁ ।

କେଉଁ ବାବାଜୀ ଏ କଥା କହିଲେ ? ବାପ ପୁଅର କାଛ ନୁହେଁ ?

ସେଇ ବୁଢ଼ା ବାବାଜୀ କହିଲେ ।

ସେ ଭୁଲ କହିଛନ୍ତି ।

ବାବାଜୀମାନେ ଭୁଲ କହନ୍ତି ? ସେମାନେ ଯାହା କହନ୍ତି ସବୁ ପରା ସତ୍ୟ ।

କଦାପି ନୁହେ । ପିତା ପୁତ୍ରର ସମ୍ପର୍କ ସେମାନେ ବୁଝିବେ ନାହିଁ । ଏହା ଅତି ମହତ୍ ।

ଆହାରାଦି କାର୍ଯ୍ୟ ଶେଷ କରି ରଘୁନାଥ ନବୀନକୁ ଶୟନ କରିବାକୁ ତାର ପ୍ରକୋଷ୍ଠକୁ ପଠାଇଲେ । ନିଜର ପ୍ରକୋଷ୍ଠକୁ ଆସି ଦେଖିଲେ, ରୁକ୍ମଣୀ ପଲଙ୍କ ଉପରେ ବସି କାନ୍ଦୁଛନ୍ତି । ଆଲୋକଟି ଉଜ୍ଜ୍ୱଳ ଭାବରେ ଜଳୁଛି । ଆଲୋକର ରଶ୍ମି ଗୃହର ଚତୁର୍ଦ୍ଦିଗରେ ପଡ଼ୁଛି । ଆଲୋକଟି ରୁକ୍ମଣୀଙ୍କ ସୁନ୍ଦର ମୁହଁରେ ପଡ଼ି ମୁଖକୁ ସୁନ୍ଦରତର କରୁଛି । ଦୁଇଧାର ଅଶ୍ରୁ ଚକ୍ଷୁ ପ୍ରାନ୍ତରୁ ଗଡ଼ି ପଡ଼ୁଛି । ଆଲୋକ ପଡ଼ି ଝଲସି ଉଠୁଛି । ରାଜଦତ୍ତ ବହୁମୂଲ୍ୟର ହାରଟି ବେକରେ ପଡ଼ିଛି । ରୁକ୍ମଣୀ ଦେବୀ ନା ମାନବୀ ସେ ବୁଝି ପାରିଲେ ନାହିଁ ।

କିପରି ଭାବରେ ଏତେ ଗୋପନୀୟ କଥାଟା ପଦାରେ ପଡ଼ିଲା କିଏ କହିବ ? ଯେତେବେଳେ ସାଧୁଆ ମା ରୁକ୍ମଣୀଙ୍କୁ ରଘୁନାଥଙ୍କ ଚରିତ୍ର ବିଷୟରେ ଏବଂ ଆଶାର ଜନ୍ମ ରହସ୍ୟ ସମ୍ବନ୍ଧେ କହୁଥିଲା, ନିକଟରେ ଆଶା ଏବଂ ଧୁଳିଆ ଛଡ଼ା ଆଉ କେହି ନଥିଲେ । କଥାଟା ପଦାକୁ ଗଲା କିପରି ?

ମୁହଁରୁ ମୁହଁ କଥା ଡେଇଁ ଦିନେ ହରିପୁର ଗଡ଼ରେ ବ୍ୟାପିଗଲା । କେତେ ଲୋକ ଏ କଥା ବିଶ୍ୱାସ କଲେ, ଅନ୍ୟ କେତେ ହସି କଥା ବିଶ୍ୱାସ କରିବା ଦୂରେ ଥାଉ କହିଲା ଲୋକକୁ ଥଟ୍ଟା କରି ଚସିଲେ ।

ଘନଶ୍ୟାମଙ୍କ କାନରେ ପଡ଼ିଲା । ଦିନେ ରଘୁନାଥ କେଉଁ ବିଷୟରେ ଚିନ୍ତା କରି ଯାଉଥିଲେ ଜଗନ୍ନାଥ ଗୁଡ଼ିର ସମ୍ମୁଖସ୍ଥ ରାସ୍ତାରେ । ଅପରାହ୍ଣ ସ୍ନାନ ଶେଷ କରି ଘନଶ୍ୟାମ ଫେରିଲେ ବେଳେ ନଜର ପଡ଼ିଗଲା । ଚିତ୍କାର କରି ଡାକିଲେ, ସଲାମ୍ ଭାଇ ସାହେବ, ସଲାମ୍ ।

ରଘୁନାଥ ଘନଶ୍ୟାମଙ୍କର ବାକ୍ୟ ବାଣରୁ ରକ୍ଷା ପାଇବେ ବୋଲି ନ ଜାଣିଲା ପରି ତରତର ହୋଇ ପଳାଇ ଯିବାକୁ ବସିଲେ । ଘନଶ୍ୟାମ ଧାଇଁ ଆସି ତାଙ୍କ ହାତ ଧରି କହିଲେ, ହଜୁର୍, ମୋର ଡାକ ନାହିଁ ଶୁଣିବାକେ ?

ରଘୁନାଥ ମୁଖ ଗମ୍ଭୀର କରି ଚାଲିଯିବାକୁ ଲାଗିଲେ । ଘନଶ୍ୟାମ ବାକ୍ୟଟି ପୁନରାବୃତ୍ତି କରି ବାଁ ପାଖ ନାଶରେ ହାତ ରଖି କହିଲେ, "ହାତ୍କା ଅଲସୁଆମେ ନାଶ୍ ବଙ୍କା ରହତା ।"

ରଘୁନାଥଙ୍କର ସହସ୍ର ଚେଷ୍ଟା ସତ୍ତ୍ୱେ ସେ ହାସ୍ୟ ସମ୍ବରଣ କରି ପାରିଲେ ନାହିଁ । କହିଲେ, ହଉ ଭାଇ ଘନ, ତୋ ଅଟ୍ଟା ଆଜି ସେତିକି ଥାଉ । ଆଗ କହିଲୁ ଏ ଅବେଳାଟାରେ ଗାଧୋଉଛୁ କାହିଁକି ?

ଘନ ଗୋଡ଼ ବଙ୍କା କରି କହିଲେ, ଅଜା ଆଜି ରାମ ନାମ ସତ୍ୟ ହୁଅ ।

ଆରେ ଭାଇ, ଯଦି ତୋର ରାମ ନାମ ସତ୍ ହୁଏ ?

ମୁଁ ମଲେ କଣ ଆଉ କେହି ନାହାନ୍ତି ମୋ ସ୍ଥାନ ପୂରଣ କରିବାକୁ ? ତୁ ତ ଅଛୁ । ସୁନ୍ଦର ବଗ୍ଭୃରି ମଲା ତୁ କଣ ତା ସ୍ଥାନ ପୂର୍ଣ୍ଣ କଲୁ ନାହିଁ ?

ରଘୁନାଥ ନିଜ ନାମରେ ଉଠିଥିବା ଅପବାଦ ଖବର ପାଇଛନ୍ତି । ସେ ଘନଶ୍ୟାମଙ୍କଠାରୁ ଅହିରି ଭଲ ଭାବରେ ଅପବାଦ ଉଠିବା କଥା ଜାଣି ପାରିଥିଲେ । ସେ ଜାଣିଥିଲେ ଯେ ଦିନେ ସେ ଗୋଟାଏ ବୃଥା ଏବଂ ଅସତ୍ୟ ଅପବାଦର ଲକ୍ଷ୍ୟ ସ୍ଥଳ ହେବେ । ପ୍ରତିକାର କରି ନ ଥିଲେ । କାହିଁକି କରନ୍ତେ ? ନିଜକୁ ସେ ବିଶ୍ୱାସ କରନ୍ତି । ଭାବିଲେ, ମୁଁ ସିନା ପୁରୁଷ, ଅପବାଦକୁ ହସରେ ଉଡ଼େଇଦେବି, କିନ୍ତୁ ନବୀନା ସାବଜୀ, ପତିହୀନା, ନିଃସହାୟା, ସର୍ବଦା ଶାଶୁଙ୍କଠୁଁ ଗଞ୍ଜଣା, ଏପରିକି ପ୍ରହାର ପାଇ ନିର୍ଦ୍ଦୋଷ ହୋଇ ମଧ୍ୟ କେବଳ ମୋ ନିମନ୍ତେ ଏତେ ବଡ଼ ଅପମାନ ସହିବେ ସିନା ? ସତ ସେ, ଅପମାନ ଅପବାଦ ସହି ନ ପାରି ଆତ୍ମହତ୍ୟା କରି ପାରନ୍ତି । କାହିଁକି ଏହା ହେବ ? ଘରର ଖବର ଅନ୍ତର ନେବାରୁ ସିନା କେବେ କପରି ସୁନ୍ଦରଙ୍କ ଘରକୁ ଯା ଆସ କରୁଥିଲି, ଏ ମିଥ୍ୟା ଅପବାଦରୁ ରକ୍ଷା ପାଇବାକୁ ହେଲେ ନବୀନ ସଙ୍ଗେ ଅଶାର ହାତ ଛାଡ଼ିବାକୁ ହେବ । ତା'ହେଲେ ଯାଇଁ ଏ ବୃଥା ଅପବାଦରୁ ରକ୍ଷା ମିଳିବ ।

ଘନଶ୍ୟାମଙ୍କର ଅଟ୍ଟାଳିସ୍ଥା କଥାର ମର୍ମ ବୁଝି ରଘୁନାଥ ଲଜ୍ଜିତ ହେଲେ । ତାଙ୍କର ହାତ ଧରି କହିଲେ, ଭାଇ, ତୁ କଣ ଏ ସବୁ ଅପବାଦରେ ବିଶ୍ୱାସ କରୁ ?

ଘନଶ୍ୟାମ ପଚାରିଲେ, କି ଅପବାଦ ?

ଆଉ ଥଟ୍ଟା କରନା । ସବୁବେଳେ ଥଟ୍ଟା ନକଲ ଭଲ ଲାଗେ ନାହିଁ ମୋ ଉପରେ ତୋର ସନ୍ଦେହ ହଉଛି କି ? ଏ ଅପବାଦକୁ ବିଶ୍ୱାସ କରୁଛୁ ?

ଦୁନିଆର ଲୋକ ବିଶ୍ୱାସ କରୁଛନ୍ତି, ମୁଁ କାହିଁକି କରିବି ନାହିଁ ? ମୁଁ ସମ୍ବାଦ ପାଉଛି ମନ୍ତ୍ରୀ ତମର ଆଚରଣ ନିମନ୍ତେ ତମୁକୁ ଓଲଟଗଧ ଚଢ଼ାଇ ସହରରେ ଢେଙ୍ଗୁରା ଦେଇ ବୁଲାଇବେ ।

ହଉ ଭାଇ, ସନ୍ଦେହ କର, ସେଥିରେ ମୋର ଯାଏ ଆସେ କଣ ? ଅପମାନ ପାଇବାକୁ ହେବ ପାଇବି । ମୁଁ ଜାଣେ ମୁଁ ନିର୍ଦ୍ଦୋଷ, ସାବିତ୍ରୀ ସତୀ ସାଧ୍ୱୀ ।

ସେ ମୁଣ୍ଡ ପୋତି ଆଗକୁ ଚାଲିଲେ । ଘନଶ୍ୟାମ ଖାଲି ହସିଦେଇ ତାଙ୍କର ବିପରୀତ ଦିଗକୁ ଗଲେ । ଉଚ୍ଚସ୍ୱରରେ କହିଲେ, ତୋ କଥା ତୁ ସିନା ଜାଣିଲୁ, ସାବିତ୍ରୀ ସତୀ କି ସାଧ୍ୱୀ ବୋଲି ଜାଣିଲୁ କିପରି ? କହୁଥିଲେ କି ସେ ତୋ କାନରେ ?

ଘନଶ୍ୟାମ ଉତ୍ତର ନ ଦେଇ ଆଗକୁ ଚାଲିଲେ ।

**ମି**ଛ କଥା—

ମିଛ କଥା ହେବ କାହିଁକି ? ଆଗୋ, ମୁଁ ଘରୁ ନିଜେ କେତେ ଥର ଦେଖିଥିବି । ରାତି ଅଧରେ କ୍ୱାଇଁ ଆମର ତାଙ୍କ ଘରୁ ବାହାରି ଆସୁଥିବା ବେଳେ ସାବିତ୍ରୀ କବାଟ ପାଖରେ ଠିଆ ହୋଇ ପଦାକୁ ଅନେଇଁଥାନ୍ତି ।

ରୁକ୍ମଣୀ କହିଲେ, ସେ ତ ନଅ ବର୍ଷ ତଳର କଥା । ଏବେ କାହିଁକି ନିନ୍ଦା ଅପବାଦ ବାହାରୁଛି ? ତା ଛଡା ମନ୍ତ୍ରୀ ଯଦି ସେପରି ଲୋକ ହୋଇଥାନ୍ତେ, ଭାଇ ଭଉଣୀ ବାହାଘର କରାଇବାକୁ କହନ୍ତେ କିପରି ?

ସାଧୁଆ ମା' କହିଲା, ବୁଝିଲ ନାହିଁ କି ? ମଇଳାକୁ ଘୋଡ଼ାଇ କେତେ ଦିନ ରଖିବ ? ଯେଉଁ ଦିନ ଖୋଲିବ ସେଦିନ ଦେଖ ଗନ୍ଧେଇ ଉଠିବ । କଥାଟା ଭଲ ଭାବରେ ଜଣାପଡ଼ୁନଥିଲା । କିଛି ପରମାଣ ନ ଥିଲା । ଏବେ ଯେମିତି ପରମାଣ ମିଳିଲା ଆଉ ଘୋଡ଼େଇ ରଖିବ କିଏ ?

ସାଧୁଆ ମା ଚିନ୍ତା କରି ପୁଣି କହିଲା, ନିନ୍ଦାରୁ ରକ୍ଷା ପାଇବାକୁ ମଣିଷ କଣ ନକରି ପାରେ ? ଆଗୋ ସେଇ ନିନ୍ଦା ଅପବାଦ ପାଇଁ ତ ଲୋକେ ଜୀବନ

ଦେଉଛନ୍ତି । ଯେ କୋଉ କଥାଟା ହେଲା ? ସତେ ସେ ନବୀନକୁ ଅଣା ସାଙ୍ଗରେ ବାହା କରିବେ ?

ମୁଁ ଜାଣେ ନାହିଁ ।

ତୋ ଘେରସ୍ତ ତୋ ଆଗରେ କିଛି କହନ୍ତି ନାହିଁ ।

ରୁକ୍ମଣୀଙ୍କର କୋହ ଉଠିଲା । ସେ ବାଇଁ କାଇଁ ହୋଇ କାନ୍ଦି ଉଠିଲେ ।

ରୁକ୍ମଣୀ ଲୁଗା କାନିରେ ଲୁହ ପୋଛି କହିଲେ, ନବୀନ କହିଲା ସେ ଲୁଅଡ଼େ କୋଉ ବାବାଜୀଙ୍କ ସାଙ୍ଗରେ ବନସ୍ତକୁ ଯିବ । ସେଇଥିପାଇଁ ତା ବାପ ଏତେ କଥା କରି କହିଲେ, ତୁ ବନସ୍ତକୁ ଯାଆନା ।

ନବୀନ କଣ କହିଲା ଯିବ ?

ନାହିଁ ।

ମୁ ପରି କହୁଛି ସେ ଟୋକା ବଡ଼ ଜଣେ । ମଉନମୁହାଁ ବୋଲି କେହି ଚିହ୍ନି ପାରନ୍ତି ନାହିଁ ସିନା, ଜ୍ଵାଇଁର ଟିକିଏ ଦୋଷ ନାହିଁ । ହେଲେ ସେ ଜଙ୍ଗଲକୁ ଯାଇଥାନ୍ତା । ବାଘ ଭାଲୁ ହାବୁଡ଼େ ପଡ଼ି ମରିଥାନ୍ତା ।

ରୁକ୍ମଣୀ କହିଲେ, ସେ କଥା କହନା । ଯେତେ ହେଲେ ମା ଛେଉଣ୍ଡ ପିଲା, ବଞ୍ଚି ଥାଉ । ଭଲ ମନ୍ଦ ଠାକୁରେ ଜାଣନ୍ତି । ତା ବାପ କଣ କରୁଛନ୍ତି କରନ୍ତୁ । ମୋର କ ଯାଏ ? ଧୂଳିଆକୁ ସେ ଯେମିତି ଭଲ ପାଏ, ଧୂଳିଆ ବି ତାକୁ ସେମିତି ଭଲ ପା'ଏ ।

ସାଧୁଆ ମା ଅଧିକ ନ କହି ବିଦାୟ ନେଲା ।

**ମି**ଶ୍ରେ, ବୁଝିଲି ତମ କଥା । ତମେ କହୁଛ ନବୀନ ପିଲାଟା । ପିଲା ହେଲେ ବି ତାର ଭଲ ମନ୍ଦ ବୁଝିବାର ଶକ୍ତି ହେଲାଣି ।

ମିଶ୍ରେ ଚିନ୍ତା କରି, ନସ୍ୟ ଗ୍ରହଣ କରି, ଆଖି ଭ୍ରୂଲତା କପାଳକୁ ଟେକି କହିଲେ, ଅହେ ରଘୁ, ତେମେ ବି ହେଲ ପିଲା ଆମ ଆଗେ । ବାହାଘର ଖେଳଘର ନୁହେ ।

ରଘୁନାଥ କହିଲେ, ଆଜ୍ଞା ହଁ, ଆମେ ଆପଣଙ୍କ ଆଗରେ ପିଲା, ସତ କଥା । ମୁଁ ତ କହୁନ ଯେ ବାହାଘର ଖେଳଘର । ବିଶେଷ କିଛି କାରଣ ଥିବାରୁ ନବୀନର ଶୀଘ୍ର ବିଭାଘର କରିବା ଆବଶ୍ୟକ ମନେ କରେଁ ।

ମୁଁ ବୁଝି ପାରୁଛି । ସହରରେ ତମର ଅପବାଦ ।

ନାଇଁ ଆଜ୍ଞା, ସେ ସବୁ ଅପବାଦକୁ ମୁଁ ଧେନା କରେ ନାଇଁ ।

ସତ କଥା ।

ଆପଣଙ୍କୁ ଡକାଇବାର କାରଣ ହେଉଛି ଆପଣ ମୋ ନିମନ୍ତେ ଗୋଟିଏ କାର୍ଯ୍ୟ କରିବେ ।

କି କାର୍ଯ୍ୟ ?

ଜାଣନ୍ତି ତ ନବୀନ କିପରି ପ୍ରକୃତିର ପିଲା । ସେ ବସିଥିଲା ଜଣେ ବାବାଜୀଙ୍କ ସଙ୍ଗେ ଜଙ୍ଗଲକୁ ଚାଲିଯିବ । କିନ୍ତୁ କୌଶଳରେ ତାକୁ ରଖି ନେଇଛି । ଯଦି ଅଳ୍ପଠାରୁ ତା ବେକରେ ଗୋଟାଏ ଛନ୍ଦି ଦିଆଯାଏ ସେ କୌଣସି ସ୍ଥାନକୁ ଚାଲିଯାଇ ପାରିବ ନାହିଁ । ଆପଣ ଦୟାକରି ମୋର ପ୍ରସ୍ତାବଟା ବୁଢ଼ୀଙ୍କୁ ଜଣାଇ ଆସିବେ । ତାଙ୍କର ମତାମତ ମୋତେ କହିବେ ।

ଅବଶ୍ୟ, ଅବଶ୍ୟ । ମୋ ଉପରେ ଦାୟିତ୍ୱ ଦେଇ ନିଶ୍ଚିନ୍ତ ରହନ୍ତୁ । କାର୍ଯ୍ୟ ସଫଳ ହେଲା ବୋଲି ଭାବନ୍ତୁ । ବିଭାଘରର ଆୟୋଜନ କରନ୍ତୁ ।

ରଘୁନାଥଙ୍କଠାରୁ ବିଦାୟ ଗ୍ରହଣ କରି ଘୋଡ଼ାଘାଟ ପଡ଼ାଆଡ଼େ ମିଶ୍ରେ ଚାଲିଲେ । ଯଥା ସମୟରେ ଉପସ୍ଥିତ ହୋଇ ବୁଢ଼ୀଙ୍କୁ ଡକାଇ ରଘୁନାଥଙ୍କର ମନର କଥା କେତେ ବାଗରେ କହିଲେ ।

ବୁଢ଼ୀ ଉତ୍ତର ଦେଲେ, ରଘୁ ଯେତେବେଳେ ଖବର ଦେଇଛି, ତାର ମନ ଯେତେବେଳେ ଅଛି, ଆମ ମନ ନ ହେବ କାହିଁକି ? ଅଣାର ଭାଗ୍ୟକୁ ରଘୁନାଥଙ୍କ ପରି ଶଶୁର ମିଳିବ । କୋଉ କଥାରେ ଊଣା ? ରଘୁନାଥ ଘରେ କୋଉ ଧନ ଦଉଲତ ନାହିଁ କି ? ସେଥିପାଇଁ କିଛି କହିବାର ନାଇଁ । ହଉ ମିଶ୍ରେ, ତେମେ ଯା । ମୁଁ ବୁଝି ବିଚାରି ଖବର ଦେଇ ପଠେଇବି । ହେଲେ କଣ ହେଲା, ପିଲାଟା, ମାଙ୍କଡ଼ ଛୁଆକୁ ବାନ୍ଧା କରିବାକୁ ମୋ ଛାତି ପଡୁଛି ନାଇଁ ?'

ମିଶ୍ରେ ସମ୍ବାଦ ନେଇ ରଘୁନାଥଙ୍କୁ ଜଣାଇଲେ ।

କିଏ ଠିଆ ହୋଇଛ, ଠିକେମ୍? ଅ ବାପ, ଉପରକୁ ଉଠିଅ ! ତଳେ ନନୁଆଁଣି ଥିବେ, ସଙ୍କୁଚୁଡ଼ଛ ।

ବୁଢ଼ା ବାବାଜୀଙ୍କର କଥା ରକ୍ଷା କରି ନବୀନ ଓଳି ତଳୁ ଉଠି ହନୁମାନ ଗୁଡ଼ର ପିଣ୍ଡା ଉପରକୁ ଗଲା । କେତେ ଲୋକଙ୍କ ପାଖରେ ଚେକା ପକାଇ ବସି ବାବାଜୀଙ୍କ ମୁହଁକୁ ଅନାଇଁ ରହିଲା ।

ବାବାଜୀ କହିଲେ, ଶୁଣନ୍ତୁ ଆପଣମାନେ, ପଚାରିଲେ ଜଙ୍ଗଲକୁ ଯାଇ ତପସ୍ୟା କଲେ ଈଶ୍ୱର ସନ୍ତୁଷ୍ଟ ହୁଅନ୍ତି କି ସଂସାରରେ ରହି ଗୃହୀ କଲେ ସନ୍ତୁଷ୍ଟ ହୁଅନ୍ତି ? ଅବଶ୍ୟ ଏ ପ୍ରଶ୍ନର ଉତ୍ତର ଦେବା ମୋ ପକ୍ଷେ ଅସମ୍ଭବ । ଭଗବାନଙ୍କର ରଙ୍ଗ ରହସ୍ୟମୟ ଜଗତ୍ ବିଷୟରେ କହି ପାରିବ ଏପରି ଲୋକ ବିରଳ । ମୁଁ ବୁଢ଼ା, ସଂସାରର ଖବର ମୋତେ ଯେତିକି ଜଣା ସେତିକିରେ ଆପଣମାନଙ୍କର ପ୍ରଶ୍ନର ଉତ୍ତର ଦେଇ ପାରିବି ନାହିଁ । ତେବେ ଯେତିକି ପାରିବି କହୁଛି ଶୁଣନ୍ତୁ । ପ୍ରଥମ କଥା ଭଗବାନ ଜଗତରେ କାହା ଉପରେ ଅସନ୍ତୁଷ୍ଟ ନୁହନ୍ତି । ମନୁଷ୍ୟର କର୍ମ ନିମନ୍ତେ ଦାୟୀ ବୋଧହୁଏ ସେ ନୁହେ । ଆଗରୁ ମହାପୁରୁଷମାନେ କହିଯାଇଛନ୍ତି, ଭଗବାନ ସମସ୍ତଙ୍କର ମନର ଅଧିକାରୀ । ସେ ଯାହା କହନ୍ତି, ମନୁଷ୍ୟ ସେଇଆ କରେ । ସେ ମନୁଷ୍ୟକୁ ଯେପରି ଚଳାନ୍ତି ମନୁଷ୍ୟ ସେହିପରି ଚଳେ । ତେବେ ମନୁଷ୍ୟର କାର୍ଯ୍ୟ ନିମନ୍ତେ ଭଗବାନ ଅସନ୍ତୁଷ୍ଟ ହେବେ କାହିଁକି ? ତାଙ୍କର ଇଚ୍ଛା ସର୍ବଦା ପୂରଣ ହୁଏ । ସେ ଚାହାନ୍ତି ନାହିଁ ଯେ ସମସ୍ତେ ଯାଇ ଜଙ୍ଗଲରେ ତପସ୍ୟା କରନ୍ତୁ । ଯଦି ତାହା ତାଙ୍କର ଇଚ୍ଛା ହୋଇଥାନ୍ତା, ସଂସାର ଚଳନ୍ତା କିପରି ? କିଛି ଦିନ ପରେ ସଂସାର ମନୁଷ୍ୟ ଶୂନ୍ୟ ହୋଇଯାନ୍ତା । ସଂସାରରେ ଜନ୍ମଗ୍ରହଣ କରି ମନୁଷ୍ୟ ବ୍ୟର୍ଥରେ ସମୟ କଟାଇବା ଅନୁଚିତ । ତା'ର କର୍ତ୍ତବ୍ୟ, ସଂସାରର ସର୍ବ ନିୟମ ପାଳନ କରି ବିଶ୍ୱର ମଙ୍ଗଳ ସାଧନା ।

ନବୀନ ବାବାଜୀଙ୍କ ନିକଟକୁ ଘୁଞ୍ଚିଯାଇ କହିଲା, ତେମେ କାହିଁକି ବାବାଜୀ ହେଲ ? ବଣ ଜଙ୍ଗଲ ବୁଲି ତପସ୍ୟା କଲ ? ଅନେକ ଦିନ ପୂର୍ବର କଥା । ଯେଉଁ ଦିନ ରାମେଶ୍ୱର ଘାଟରେ ମୋ ସଙ୍ଗେ ସାକ୍ଷାତ ହୁଏ, ନିଜେ କହିଥିଲ ସଂସାର ସ୍ୱର୍ଗ, ତେବେ ସ୍ୱର୍ଗ ଭୁଲି ସଂସାର ଛାଡ଼ି ତେଲନଦୀର ମୃଗତୃଷ୍ଣା ମଧ୍ୟ ଦେଇ ଚାଲିଗଲ । ମିଶିଗଲ ସେପାଖର ଜଙ୍ଗଲର ଘଞ୍ଚ ଅରଣ୍ୟ ମଧ୍ୟରେ । କାହିଁକି ? ସଂସାରଠାରୁ ଅରଣ୍ୟ କଣ ଅଧିକ ସୁନ୍ଦର ?

ବାବାଜୀ କହିଲେ, ଶୁଣ ହିକମ୍, ତୋ କଥା ମୋତେ ଭଲ ଲାଗେ । ମୋ କଥା ପଚାରୁଛୁ ? ମୁଁ କିଏ ? ତୋଠୁଁ ପିଲା । କିନ୍ତୁ ସଂସାରର କାର୍ଯ୍ୟକର୍ମ ଶେଷ କରି ମୁଁ ଗୃହ ତ୍ୟାଗ କରିଛି । ଗୃହତ୍ୟାଗ କରି ଜଙ୍ଗଲକୁ ଯାଇଥିଲି ତପସ୍ୟା କରିବାକୁ ତାହା ନୁହେଁ, ତପସ୍ୟା କାହାକୁ କହନ୍ତି ମୁଁ ଜାଣେ ନାହିଁ । ଗୃହ ତ୍ୟାଗ କରି ମୁନି ଋଷିଙ୍କର ଆଶ୍ରୟ ସ୍ଥଳ ମଣିଭଦ୍ରାକୁ ଯାଇଥିଲି ସେମାନଙ୍କ ସଙ୍ଗେ ମିଶିବାକୁ । ମହାପୁରୁଷମାନଙ୍କ ସଙ୍ଗରେ ମିଶିଲେ ସେମାନେ ମହତ ଉପଦେଶ ଦେଇ କଳୁଷିତ ଆତ୍ମାକୁ ବିଶୁଦ୍ଧ କରିବେ । ଯଦି ସେମାନଙ୍କଠାରୁ ବିମୁଖ ହୁଏ, ଯାଇଥିଲି ଅରଣ୍ୟ ଭ୍ରମଣ କରି ନିର୍ଜନ ସ୍ଥାନରେ ଭଗବତ୍ ଚିନ୍ତା କରିବି । ଭଗବତ୍ ଚିନ୍ତାରେ ମନ ପରିଷ୍କାର ହୁଏ, ଏହା ମୋର ଧାରଣା । ହେଲା କେଉଁଠି ? ମଣିଭଦ୍ରାକୁ ଗଲି, ମୋର ଆଶା ପୂରଣ ହେଲା ନାହିଁ । ବାଳକ ବାଲ୍ୟାବସ୍ଥାରେ କ୍ରୀଡ଼ା ଏବଂ ବିଦ୍ୟାଧ୍ୟୟନରେ କଟାଏ । ଯୁବକ ସଂସାର କର୍ମରେ ନିଯୁକ୍ତ ଥାଏ । ପ୍ରୌଢ଼ ସଂସାର ବନ୍ଧନରେ ବାନ୍ଧି ହେଉଥାଏ । ଏ ତିନି କାଳ ଅତିକ୍ରମ କରି ବୃଦ୍ଧ କରେ କଣ ? ତିନି କାଳରେ କରିଥିବା କର୍ମର ଅନୁଶୋଚନା କରେ । ଅଥବା ଈଶ୍ୱର ଚିନ୍ତା କରେ । କରିବ କଣ ? ବୃଦ୍ଧ ଇଚ୍ଛାକଲେ ମଧ୍ୟ ପ୍ରୌଢ଼, ଯୁବକ, ଶିଶୁ ହୋଇ ପାରିବ ନାହିଁ । ସଂସାରର କର୍ମ କରି ପାରିବ ନାହିଁ । ଗୃହ ତ୍ୟାଗ କରି ଅରଣ୍ୟକୁ ଯାଇ ସଂସାର ଜଞ୍ଜାଳରୁ ଦୂରରେ ଥାଇ ଭଗବାନଙ୍କର ଚିନ୍ତାରେ ବେଳ କଟାଇଲେ ସେ ଶାନ୍ତି ପାଇବ !

ନବୀନ କହିଲା, ବାବାଜୀ, ତମ ପାଖେ ବସି ତମ ମୁହଁକୁ ଅନାଇଁ ରହିଲେ ମୋର ଆନନ୍ଦ ହୁଏ । ତେମେ ସଂସାରରୁ ବାହାର ନୁହଁ । ତମ କଥା ଶୁଣିବାକୁ ମତେ ଭଲ ଲାଗେ । ତମର ସଙ୍ଗେ ଥିବି, ତମର କଥା ଶୁଣିବି, ବୁଝିବି ଓ ଆଜ୍ଞା ପାଳନ କରିବି, ଏପରି ଆଗ୍ରହ ମୋର ହେଉଛି ।

ବାବାଜୀ କହିଲେ, ବାପ ହିକମ୍, ତୋ ବୟସର ପିଲାଏ ଯେପରି ଆନନ୍ଦରେ ମତ୍ତ ଅଛନ୍ତି, ତୁ ସେହିପରି ସେମାନଙ୍କ ସଙ୍ଗରେ ମିଳିଯା । ତୋର ଅପରିପକ୍ୱ ବୟସରେ ସଂସାର ତ୍ୟାଗ ଚିନ୍ତା କରିବା ଅବିଧେୟ ।

ନବୀନ କହିଲା, ବାବାଜୀ, ଆଜଯାଏ ସେ ସମୟ ଆସି ନାହିଁ ? ମୋର ବୟସ ହୋଇ ନାହିଁ ? ମୁଁ ଉପଯୁକ୍ତ ହୋଇ ନାହିଁ ? ମୁଁ କ୍ଷୁଦ୍ର ବାଳକ ନୁହେଁ । ମନେଅଛି କହିଥିଲ, ହିକିଏ ବଡ଼ ହୋଇଯା, ଦ୍ୱାର ଭେଦର ଉପାୟ କହିଦେବି । ମୁଁ ଆଉ ଗୃହେନା ସେ ଦେଶକୁ ଯାଇ ମାଆକୁ ଫେରାଇ ଆଣିବି । ଏବେ ବୁଝିଲିଣି ମନୁଷ୍ୟର ମୃତ୍ୟୁ ହେଲେ ସେ ଆଉ ସ୍ୱ ଦେହରେ ଫେରେ ନାହିଁ ଏ ଦେଶକୁ । ମୁଁ ଗୃହେନା ସେ ଦେଶକୁ ଯାଇ ମୋର ମାଆକୁ ଦେଖିବି । ତା ସଙ୍ଗେ ଆଳାପ କରିବି, କାରଣ ସେ ଆଶା ବୃଥା । ବର୍ତ୍ତମାନ ମୋର ମନରେ ଭିନ୍ନ ଭାବ ଉପସ୍ଥିତ

ହେଲଣି । ମୁଁ ଗୃହେଁ କେବଳ ଦେଖିବାକୁ ତାଙ୍କୁ ଯେ ଏ ବିଶ୍ୱର ସ୍ରଷ୍ଟା ଓ ପ୍ରଭୁ । ତୁମେ ମୋତେ ଦେଖାଇ ଦେବ ।

କି ପ୍ରୟୋଜନ ଝିକମ୍ ?

ତାଙ୍କୁ ପ୍ରାର୍ଥନା କରିବ ।

ପ୍ରାର୍ଥନା କରିବୁ ?

ଆଦେଶ ଦେବ । ସେ କ୍ଷମତା କଣ ଆମର ନାହିଁ ? ଆମେ ତାଙ୍କୁ ମାନୁ-ଛିବର ଅଧିକାରୀ ବୋଲି । ତେଣୁ ସେ ବିଶ୍ୱର ଅଧିକାରୀ । ଆମେ ଯଦି ନମାନୁ ତେବେ ?

କି ଆଦେଶ ?

ତାଙ୍କର କ୍ଷମତା ଅଛି ସେ ଜଗତକୁ ମନୁଷ୍ୟ ପଠାଉଛନ୍ତି । କ୍ଷମତା ଅଛି ବୋଲି କଣ ସେ ଅତ୍ୟାଚାର କରିବେ କହନ୍ତୁ ତ ?

କି ଅତ୍ୟାଚାର, ସେ ଅତ୍ୟାଚାରୀ ନୁହନ୍ତି । ସମସ୍ତଙ୍କୁ ସଂସାରରେ ସମ-ଅଧିକାର ପ୍ରଦାନ କରିଅଛନ୍ତି । ସମସ୍ତେ ତାଙ୍କର ପୁତ୍ର । ପୁତ୍ର ଉପରେ କି ପିତା ଅତ୍ୟାଚାର କରେ ?

କରେ ନାହିଁ ? ଠିକ୍ କହୁଛ ? ରାମ ବର୍ତ୍ତମାନ ଗୃହରୁ ବିତାଡ଼ିତ ଘନଶ୍ୟାମଙ୍କ ଦ୍ୱାରା ।

ରାମର ଦୋଷ କଣ ?

ଦୋଷ ଅଛି । ସମସ୍ତେ କହନ୍ତି ଭଉଣୀଙ୍କ ଦୋଷ । ସେ ଦିନେ ସନ୍ଧ୍ୟାରେ ହାନାକୁ ଆକ୍ରମଣ କରିଥିଲା । କଥାଟା ଠିକ୍ ମୁଁ ବୁଝି ପାରୁ ନାହିଁ; ତେବେ ଲୋକେ କହନ୍ତି ତାର ଭଉଣୀଙ୍କର ଦୋଷ । ବର୍ତ୍ତମାନ ସେ ବିତାଡ଼ିତ । ରାଜ ପ୍ରାସାଦରେ ଆଶ୍ରୟ ଗ୍ରହଣ କରୁଛି । ଲୋକେ କହନ୍ତି, ସେ ରାଜାଙ୍କର ଅନୁଗତ । ଛାଡ଼ନ୍ତୁ ସେ କଥା । କହନ୍ତୁ ବାବାଜୀ, ବର୍ତ୍ତମାନ ମୋର ଉପଯୁକ୍ତ ସମୟ ହୋଇ ନାହିଁ ? ମୁଁ କଣ ତେବେ ଅଦ୍ୟାପି ବାଳକ ?

କଣ ପଚାରିବୁ ତାଙ୍କୁ ?

ପଚାରିବି, ସେ ଜଗତରେ ସମସ୍ତଙ୍କୁ ସମାନ ଅଧିକାର କାହିଁକି ପ୍ରଦାନ କରି ନାହାନ୍ତି ? ଜଣେ ଧନୀ ବୋଲି ଏ ସଂସାରରେ ଦରିଦ୍ରର କଷ୍ଟ ଦେଖି

ହସୁଛି । ଅନ୍ୟ ଜଣେ ସୁସ୍ଥ ଶରୀର ବୋଲି କୁଷ୍ଠରୋଗୀର ଆକୁଳ କ୍ରନ୍ଦନ ନିଜ କାନରେ ଶୁଣୁଛି ନାହିଁ । କାହିଁକି ? ଏଥିରୁ ତାଙ୍କର କେଉଁ ଦୟାର ପ୍ରମାଣ ମିଳେ ? କେହି କହି ପାରନ୍ତି । ପୂର୍ବ ଜନ୍ମର କର୍ମ ଫଳ ପାଇଁ ଯାହାକୁ ଯେପରି କଷ୍ଟ ଭୋଗିବାକୁ ପଡ଼ୁଛି । କିନ୍ତୁ ତେମେ କହୁଛ କର୍ମ ଫଳ କିଛି ନୁହେଁ । ମନୁଷ୍ୟ ମଲେ ତାର ଆତ୍ମା ସଂସାରକୁ ପୁନର୍ବାର ଆସିଲେ ମଧ୍ୟ ତାର କର୍ମଫଳ ନାହିଁ । ସେ ଯେଉଁ କର୍ମ କରୁଛି, ତୁମର କହିବାମତେ ଭଗବାନ ସେ ସମସ୍ତ କାର୍ଯ୍ୟ କରୁଛନ୍ତି ଅଥବା କରିବାକୁ ଆଦେଶ ଦେଉଛନ୍ତି । ତାର ଦୋଷ ନାହିଁ, ତେଣୁ କର୍ମ ଫଳ ଭୋଗ କରିବାକୁ ହେବ ନାହିଁ । ଆଚ୍ଛା ବାବାଜୀ, ଚୋର ଚୋରି କରେ । ଡକାଇତ ଡକାଇତି କରେ । ସେମାନଙ୍କର ତେବେ ଦୋଷ ନାହିଁ ? ସବୁ ଯଦି ଭଗବାନ କରୁଛନ୍ତି ସେମାନଙ୍କର କେଉଁ ଦୋଷ ? କିନ୍ତୁ ଦୋଷ ନାହିଁ ବୋଲି ଯଦି ରାଜା ଦଣ୍ଡ ପ୍ରଦାନ ନକରନ୍ତି, ତାଙ୍କର ଅତ୍ୟାଚାରରେ ଦେଶ ରହିବ କି ? ତେଣୁ ମୋର ବିଶ୍ୱାସ ହୁଏ ନାହିଁ, ମନୁଷ୍ୟର ଦୋଷ ନାହିଁ ବୋଲି । କେବଳ ତେମେ କହୁଛ ବୋଲି ବିଶ୍ୱାସ କରିବାକୁ ପଡ଼ୁଛି । ଯଦି ତମର କଥା ବିଶ୍ୱାସ କରେ, ତେବେ ବତାଇଦିଅ ତାଙ୍କୁ କିପରି ଦେଖିବାକୁ ହେବ ।

ବାବାଜୀ ଚକ୍ଷୁରୁ ବୁନ୍ଦବୁନ୍ଦା ଜଳ ପୋଛି କହିଲେ, ଯୁବକ ଧନ୍ୟ ତୁ । ଏତେ କଥା ଏ ବୟସରୁ ତୋ ମୁଣ୍ଡରେ ପଶିଛି ? ହଁ ଠିକ୍‌, ତୋର ବୟସ ହେଲଣି ତୁ ବର୍ତ୍ତମାନ ଉପଯୁକ୍ତ । କିନ୍ତୁ ଅପେକ୍ଷା କର । ଶୁଣ ବାପ, ଭଗବାନଙ୍କୁ ଦୋଷ ଦବ କିଏ ? ମଙ୍ଗଳମୟ କେଉଁ ମଙ୍ଗଳ ନିମନ୍ତେ କୁଷ୍ଠରୋଗୀକୁ କଷ୍ଟ ପ୍ରଦାନ କରନ୍ତି ତାହା ଜାଣିବ କିଏ ? ତଥାପି ସେ ସମସ୍ତଙ୍କୁ ସମ-ସୁଖ ଦାନ କରନ୍ତି । ଏ ସଂସାର ତାଙ୍କର ଅର୍ଥାତ୍ ଆତ୍ମାର କ୍ରୀଡ଼ା ଭୂମି । ଭଗବାନଙ୍କର କ୍ରୀଡ଼ା ଭୂମି । ସମସ୍ତେ ଭଗବାନ । ସାଧୁମାନେ କହିଛନ୍ତି ଭଗବାନ ନିଜେ ସୁଖ ଦୁଃଖ ଭୋଗ କରନ୍ତି । କୁଷ୍ଠରୋଗୀର ଆତ୍ମା ଭଗବାନ । କୁଷ୍ଠରୋଗୀର ମଧ୍ୟରେ ଥାଇ ଯେଉଁ କଷ୍ଟ ଭୋଗ କରନ୍ତି, ତାହା ନ୍ୟୂନ ହୁଏ ସୁସ୍ଥ ଶରୀର ମଧ୍ୟରେ ଭଗବାନଙ୍କ ସୁଖ ଦ୍ୱାରା । ଦରିଦ୍ରର ହାଃ ଅନ୍ନ, ହାଃ ଅନ୍ନ ଡାକ ଭଗବାନ ଡାକନ୍ତି, କ୍ଷୁଧାତୁର ହୋଇ । କେହି ପଚାରି ପାରେ ଭଗବାନଙ୍କର ପୁଣି କ୍ଷୁଧା କେଉଁଠୁ ଆସିଲା ? ସେ ନିଜେ ନିଜର କ୍ଷୁଧା ସୃଷ୍ଟି କରି ନାହାନ୍ତି । ଦରିଦ୍ରର ଆକୁଳ ପ୍ରାର୍ଥନା ସଙ୍ଗେ ଧନୀର ଉଲ୍ଲାସ ଯୋଗ କଲେ କିଛି ରହେ ନାହିଁ, ଯୋଗ ବିୟୋଗ ମିଶି ଶୂନ୍ୟ ହୁଏ । ଜାଣୁନା ଶୂନ୍ୟଇ ଭଗବାନ, ଭଗବାନ ଶୂନ୍ୟ । ଆଗରୁ କହିଛି ଭଗବାନ ଅର୍ଥାତ୍ ଆତ୍ମାର କ୍ରୀଡ଼ାଭୂମି ଜଗତ । ସେ କେତେବେଳେ ଚୋର ହୋଇ ଚୋରି କରୁଛନ୍ତି ଧନୀକୁ ଉପଯୁକ୍ତ ଶିକ୍ଷା ପ୍ରଦାନ କରିବାକୁ, କେତେବେଳେ ନିଜେ ଶାସକ ହୋଇ ଚୋରକୁ ଦଣ୍ଡ ପ୍ରଦାନ କରୁଅଛନ୍ତି ।

ମିଶ୍ରଙ୍କୁ ଛାଡ଼ ପ୍ରାୟ ସମସ୍ତେ ଚାଲିଯାଇଥିଲେ । ଅସଲ କଥା, ବାବାଜୀଙ୍କ କଥା ବୁଝି ନପାରି ତାଙ୍କୁ ପାଗଳ ମନେକରି ସିଏ ଯୁଆଡ଼େ ଗଲେ । ବାବାଜୀଙ୍କର ଦର୍ଶନ ଶ୍ରବଣ କରିବାକୁ କେବଳ ନବୀନ ଥିଲା । ସେ ମଧ୍ୟ ଫେରିବାକୁ ମନସ୍ଥ କଲା ।

ନବୀନର କଥାରୁ ମିଶ୍ରେ ବୁଝିଲେ ଯେ ନବୀନ ଦିନେ ଘରୁ ଦ୍ୱାର ଛାଡ଼ି ପଳେଇବ । ଯଦି ଆଶା ସଙ୍ଗେ ବାହାଘର କରି ଦିଆଯାଏ କେଜାଣି ବା ଦାୟିତ୍ୱ ଜ୍ଞାନ ସମ୍ପନ୍ନ ପିଲା ବୋଲି ତା ମନରେ ପରିବର୍ତ୍ତନ ହେବ । ସେଥିପାଇଁ ରଘୁନାଥ ବିକଳ ହେଉଛନ୍ତି । ପୁଣି ସୁନ୍ଦରଙ୍କ ମା ବୁଢ଼ୀଙ୍କୁ ପ୍ରବୋଧିଇବାକୁ ହେବ ।

ସମସ୍ତେ ଚାଲିଯାଇଛନ୍ତି ଦେଖି ଏବଂ ମିଶ୍ରଙ୍କୁ ଚାଲିଯାଉଥିବାର ଦେଖି ବାବାଜୀ ଉଠିଲେ । ନବୀନ ତାଙ୍କ ସାଙ୍ଗେ ସାଙ୍ଗେ ଉଠିଲା । ବାବାଜୀ କହିଲେ, ବାପ ଠିକ୍, ଆଜି ଏତିକି ଥାଉ, ତତେ କାଲି ସମସ୍ତ ବିଷୟ ବୁଝାଇ କହିବି । ଏଇ ଦେଖ୍, ରାତି ହେଲାଣି, ଅନ୍ଧାର ମାଡ଼ି ଆସୁଛି, ଏଥର ଘରକୁ ଯା । ଯା ବାପା ତୋର ବାପା ତତେ ଖୋଜୁଥିବେ ।

ନବୀନ ଅଙ୍ଗେଇ ଅଙ୍ଗେଇ କହିଲା, ବାବାଜୀ, ମୁଁ ଧର୍ମଶାଳାକୁ ଯିବି । ସେଠି ଦୁଇଜଣ ମା ଛେଉଣ୍ଡ ପିଲାଙ୍କ ଦେହ ଭଲ ନାହିଁ । କବିରାଜଙ୍କୁ ଡାକି ଔଷଧ ଦିଆଇବି । ଘରକୁ ଯିବି ନାହିଁ ।

ବାବାଜୀ କହିଲେ, ଘରକୁ ଯା । କବିରାଜଙ୍କୁ ଡାକିବା ନିଷ୍ପ୍ରୟୋଜନ । ମୁଁ ଯାଉଛି ସେମାନଙ୍କୁ ଔଷଧ ଦେବି । ସେମାନଙ୍କର ସେବା କରିବି ।

ସେମାନେ ଖାଇଲେଣି କି ନାହିଁ ମୁଁ ଜାଣେ ନାହିଁ । ସେମାନଙ୍କୁ ଉପବାସରେ ପକାଇ ମୋର ଖାଇବାକୁ ଇଚ୍ଛା ହେବ ନାହିଁ ।

ମୁଁ ସେମାନଙ୍କର ଖାଇବା ଖବର ଅତି ଶୀଘ୍ର ବୁଝିବି । ତୋର ସେ ବିଷୟରେ ଚିନ୍ତା କରିବା ନିଷ୍ପ୍ରୟୋଜନ । ଯା, ତୋର ପିତା ମାତା ଓ ଭାଇ ଧୂଳିଆଙ୍କୁ ମୋର କଲ୍ୟାଣ ଜଣାଇବୁ । ସେମାନଙ୍କ ସଙ୍ଗେ ଆନନ୍ଦରେ ରାତି ଯାପନ କରିବୁ । ତୋର ଏବେ ଖେଳିବାର ବେଳ । ଆଜିଠୁଁ ବିରାଗୀ ହେବା ଉଚିତ ନୁହେ । ଭଗବାନଙ୍କ ଚିନ୍ତା ସର୍ବଦା କରିବା ଉଚିତ । କିନ୍ତୁ ଏଡ଼େ ପିଲା ବୟସରୁ ତାଙ୍କୁ ପାଇବାକୁ ଆତୁର ହେଲେ ଚଳିବ ନାହିଁ ।

ନବୀନ ପ୍ରଣାମ କରି ଗୃହାଭିମୁଖେ ଗତିକଲା ।

ବାବାଜୀ ନବୀନର କଥା ଚିନ୍ତା କରି କିଛି ଦୂର ଚାଲିଗଲା ପରେ ତାଙ୍କ ମନେ ପଡ଼ିଲା, ରାମ ଦିନେ ସନ୍ଧ୍ୟାରେ ହାନାକୁ ଆକ୍ରମଣ କରିଥିଲା । ସେ

ରାଜପ୍ରାସାଦରେ ଅଶ୍ରୟ ଗ୍ରହଣ କରିଛି । ରାଜାଙ୍କର ଅନୁଗତ । ଭାବିଲେ, ତେବେ ଯୁବରାଜ କଣ କୁସଙ୍ଗରେ ପଡ଼ିଲେଣି ? ମହାରାଣୀ ବାଧା ଦେଉନାହାନ୍ତି ? ମନ୍ତ୍ରୀ କାହିଁକି ନୀରବ ? ରମାକୁ ରାଜପ୍ରାସାଦରୁ ବହିଷ୍କୃତ କରୁନାହାନ୍ତି କାହିଁକି ?

ନିଜେ ନିଜ ଉପରେ କ୍ରୁଦ୍ଧ ହୋଇ ଭାବିଲେ, ଫକୀରର ରାଜ୍ୟ ଚିନ୍ତା ?

ନବୀନ କିଛି ଦୂର ଚାଲିଯିବା ପରେ ମିଶ୍ରଙ୍କୁ ଭେଟିଲା । ମିଶ୍ରଙ୍କୁ ପଛରେ ପକାଇ ଚାଲିଯିବ ଭାବି ଲମ୍ବା ପାହୁଣ୍ଡ ପକାଇଲା । ମିଶ୍ରେ ଡାକିଲେ, ନବୀନ—

ଆଜ୍ଞା ।

ରହ, ମୁଁ ବୁଢ଼ା ଲୋକ ତୋ ସାଙ୍ଗେ ଚାଲି ପାରିବିନା ? ଅସ୍ତେ ଅସ୍ତେ ଚାଲ—

ବାବାଜୀ କହିଛନ୍ତି ଘରକୁ ଯିବାକୁ, ମୁଁ ଘରକୁ ଯାଉଛି । ଆଉ ଅପେକ୍ଷା କରି ପାରିବି ନାହିଁ ।

ଆରେ ବାପ, ମୁଁ ଅନ୍ଧାର କଣା । ସଞ୍ଜ ବୁଡ଼ିଗଲାଣି, କେଉଁଠି ଠେକାଠାଏ ହାବୁଡ଼ିଗଲେ ପଡ଼ିଯିବି । ତୁ ମୋ ଆଗରେ ଚାଲ ।

ନବୀନ ବାଧ୍ୟ ହୋଇ ଧୀରେ ଧୀରେ ମିଶ୍ରଙ୍କ ଆଗରେ ଚାଲିଲା । କିଛି ଦୂର ଗଲା ପରେ ମିଶ୍ରେ ଗଳା ଖଙ୍କାରି ପଚାରିଲେ, ତୁ ଅଶାକୁ ଦେଖିଛୁ ? ଝିଅଟି କପରି ?

ମିଶ୍ରଙ୍କର ପ୍ରଶ୍ନର ଉତ୍ତର ଦେବାକୁ ଯାଇ ସେ କହିଲା, ଅଶାକୁ ପିଲାଟି ଦିନରୁ ଦେଖିଛି । ସେ ଧୂଳିଅ ସାଙ୍ଗେ ଅଜାଙ୍କ ପାଖରେ ପଢୁଥିଲା । ଶାନ୍ତ ଶିଷ୍ଟ ଭଲ ପିଲାଟିଏ ତ ।

ସୁନ୍ଦର ଝିଅଟିଏ । ବୁଦ୍ଧିମତୀ—

ସୁନ୍ଦର କି ଅସୁନ୍ଦର ମୁଁ କହି ପାରିବି ନାହିଁ । ଏତିକି ଜାଣେ, ସେ ଭଲ ପଢ଼େ । ଅଜା କହନ୍ତି ଅଶାଟି ଯେମିତି ସୁନ୍ଦର ତା ବୁଦ୍ଧି ମଧ୍ୟ ସେମିତି ସୁନ୍ଦର ।

ତାକୁ ଦଶ ବର୍ଷ ହେବ ?

ହେବ ପରା ।

ତୋ ବାପାର ଇଚ୍ଛା ସେ ଆଶା ସଙ୍ଗେ ତୋର ବାହାଘର କରାଇବ ।

ନବୀନ ପଚାରିଲା, କାହିଁକି ବାପା ମୋତେ ବାହା କରାଇବାକୁ ବସିଛନ୍ତି କହି ପାରିବେ କି ? ଆଶାକୁ ମୁଁ ବାହା ହେବି ନାହିଁ । କାହାକୁ ବାହା ହେବି ନାହିଁ ।

ଏତିକି କହି ମିଶ୍ରଙ୍କର ଉତ୍ତରକୁ ଅପେକ୍ଷା ନକରି ସେ ଧାଇଁ ଧାଇଁ ଘରକୁ ଚାଲିଗଲା ।

ଘରେ ବାପ ପୁଅଙ୍କ ମଧ୍ୟରେ କେତେ କଥା ଭାଷା ହେଲା । ରୁକ୍ମଣୀ ପିଣ୍ଡା ଉପରୁ ଉଠି ଗଲା ପରେ ନବୀନ ବାପାକୁ କହିଲା ହଉ ବାପା, ମୁଁ ଆଶାକୁ ବାହା ହେବି । ଆଶାକୁ ବାହା ହେଲେ ଯଦି ତୁମ ମନରୁ କଷ୍ଟ ଦୂର ହେବ ତେବେ ମୋର ଆପତ୍ତି ନାହିଁ । କାନ୍ଦୁଛ କାହିଁକି ବାପା ? ମୁଁ ତ କାନ୍ଦୁ ନାହିଁ ?

କେତେ ଦିନ ହେବ ରୁକ୍ମଣୀଙ୍କ ମନରେ ସୁଖ ନାହିଁ । ଯେଉଁଠି ବସୁଛନ୍ତି ତାଙ୍କ ମନରେ ଘୋରତେଇ ହୋଇ ସେଇ କଥା ଆସି ପଡୁଛି । ସାଧୁଆ ମା ଯେତେ ବୁଝାଇଲା ସେ ବୁଝିଲେ ନାହିଁ । ମନରେ ଯେତେ ଦମ୍ଭ ଦେଲା କିଛି ଫଳ ହେଲା ନାହିଁ । କପାଳର ଦୋଷ ଦେଇ ଭାବନା ଭାବନାରେ ସମୟ କଟାଇଲେ । କଣ କହିଲେ ସେ, ତୁଇ ଘରର ମାଲିକ୍, ସମ୍ପତ୍ତିର ମାଲିକ୍, ଧୂଳିଆ ତୋର ସାନ ଭାଇ, ସେ ତୋର ଆଦେଶର ଅଧୀନ ।

କାହିଁକି, ଧୂଳିଆ ପୋଇଲି ପୁଅ କି ? ବାଜା ବଜେଇ, ବାଣ ଫୁଟେଇ, ମନ୍ତ୍ର ପଢ଼େଇ ମୋତେ ବାହା ହୋଇ ଆଣିଥିଲା । ମୁଁ ତ ଆଉ ଡଙ୍ଗର ରକ୍ଷିତା ନୁହେ ଯେ, ମୋ ପୁଅ ମୋ ସଉତୁଣୀ ପୁଅର ଗୋଲାମ ହେବ; ହୁକୁମ ପାଳିବ ?

ମୋ ପୁଅ ଯେବେ ନବୀନର ଚାକର ହେବ, ମୋର ଏ ଘରର ଘରଣୀ ହେବାରେ ଆଉ ଲାଭ କଣ ? ନବୀନର ଢଙ୍ଗଢାଙ୍ଗ ଦେଖି ଭାବିଥିଲି, ଯେ ସେ ବାବାଜୀ ହୋଇଯିବ । ସାଧୁଆ ମାଆ ସେଇଆ କହୁଥିଲା । ଏବେ ହେଲା କଣ ? ନବୀନ ଭବିଷ୍ୟତରେ କର୍ତ୍ତା ହେଲା ? ପୁଣି, ସେହି ବୁଢ଼ା ବାବାଜୀ । ନବୀନ ତାଆରି କଥା ମାନି ଘରେ ରହୁଛି ।

ରୁକ୍ମଣୀ ପୁଣି ଭାବିଲେ, ରହିଲେ ମୋର କ୍ଷତି କଣ ? ଧୂଳିଆର ବା କ୍ଷତି କଣ ? ଅହା, ମା ଛେଉଣ୍ଡ ପିଲାଟି ।

ସାଧୁଆ ମାଆର କଥା ସତ ହେବ କି ? ସେ କହିଥିଲା, ଅନର୍ଥ ଘଟିବ । ଆଗରୁଁ ବାଡ଼ରୁ କଣ୍ଟା ସଫା ନ କଲେ ଭବିଷ୍ୟତରେ ପସ୍ତାଇବାକୁ ପଡ଼ିବ । ଜାଣିଥା ଲୋ, ସଉତୁଣୀର ପୁଅକୁ ଯେତେ ଆପଣାର କଲେ ସେ ଆପଣାର ନ ହୁଏ । ହାତ ପିଠିରେ ଲୁହ ପୋଛୁଥିବୁଟି ।

ସେପରି କହନା ମା, ନବୀନ ମୋର ସୁନା ପିଲା । ମା ଛେଉଣ୍ଡ । କେବେ ମୋତେ ଅମାନ୍ୟ କରିନ । ମୁଁ ତାକୁ ନ ଅନାଇଁବାରୁ ସେ ଉଦାସିଆ ହୋଇଛି, ଘରେ ପଶୁ ନାହିଁ । ମୋ ଧୂଳିଆକୁ ସେ ଅତି ସ୍ନେହ କରେ ।

ଜାଣିନୁ ଲୋ ଝିଅ, ସେ ମଉନମୁହାଁକୁ । ଭାରି ଜଣେ ଟି । ତା ମାଆଠୁଁ ବଳି । ଆଣାକୁ ବାହା ହୋଇ ସେ ଘର କଲେ ସୁନ୍ଦର ବାବୁଙ୍କ ସବୁ ଧନ ଦରବ ସମ୍ପତ୍ତି ପାଇବ । ରଘୁ ନିଜେ କହିଲେ, ଏ ସମ୍ପତ୍ତିର ସେ ହେବ ମାଲିକ; ବଡ଼ ପୁଅ ପରି ।

ହେଉ ।

ଆଉ ମୋ ନାତି ଧୂଳିଆ ହବ ତା ବୋଲକରା ଚାକର ? ପେଟରୁ ଜନମ କରିଛୁ, ପୁଅର ଏହି ସୁଖ ଦେଖିବୁ ? ମୁଁ ଯାଉଛି ଲୋ ।

ରୁକ୍ମଣୀ ଭାବିଲେ, ସତେ ଧୂଳିଆ ହେବ ନବୀନର ବୋଲକରା ଚାକର ? ମୁଁ ବଞ୍ଚିଥାଉଣୁ ଏହା ହେବ ? ସତେ, ସତେ ?

**ନ**ବୀନର ବିଭାଘର ଶେଷ ହୋଇଛି । ପିଲାଏ କି ଜାଣନ୍ତି ବିଭାଘର କଥା ? ବିଭାଘର ଦିନ ଆଣା ମନ ଆନନ୍ଦରେ ନବୀନ ପାଖରେ ବସିଥିଲା । ପୁରୋହିତଙ୍କର ମନ୍ତ୍ର ପାଠରେ, ବାହାରେ ବାଜା ଓ ବାଣକୁ ତୁଳନା କରି ସେ ଭାବିଲା, ବାହାରେ ବାଣଫୁଟା ଦେଖିବା ଭଲ । ସେ କେତେ ଥର ବେଦିକା ଉପରୁ ଉଠି ଯିବାକୁ ଉଦ୍ୟତ ହୋଇଥିଲା । ତାକୁ ବୁଝାଇ ବାଧ୍ୟ କରି ବସାଇଥିଲେ ।

ବିଭାଘର ପରେ **ଆଣା** ନବୀନ ଘରକୁ **ଆସି** ସେଠାରେ କେତେଦିନ ରହିଥିଲା । ଏହି **ଅଳ୍ପ** ଦିନ ମଧ୍ୟରେ ସେ ବୁଝି ପାରିଲା ଯେ ଧୂଳିଆର ମା ତାକୁ **ସ୍ନେହ କରନ୍ତି ନାହିଁ । କିନ୍ତୁ** ରଘୁନାଥ ତାକୁ ଭାରି ସ୍ନେହ କରନ୍ତି ।

ବଭା ହୋଇ ବାପ ଘରକୁ ଫେରିଲା ଦିନ ରାଜଦତ୍ତ ହାରଟି ରଘୁନାଥ ସ୍ତ୍ରୀଙ୍କ ନିକଟକୁ ଆଣି ଅଶାର ବେକରେ ଲମ୍ବାଇ ଦେଇଥିଲେ ।

ସେଥିପାଇଁ ସ୍ୱାମୀ ଓ ସ୍ତ୍ରୀଙ୍କ ମଧ୍ୟରେ ଘରେ ଯେଉଁ କଳହ, ଅଶାନ୍ତି, ମନାନ୍ତର ହେଲା, ସେ କଥା ଦାଣ୍ଡ ଲୋକ ଜାଣିଲେ ନାହିଁ । ରଘୁନାଥ ପରାଜିତ ହେଲେ । ସ୍ତ୍ରୀଙ୍କୁ ଗୋଟିଏ ପରିବର୍ତ୍ତେ ପାଞ୍ଚଟି ରତ୍ନହାର ଦେବେ ବୋଲି ପ୍ରତିଜ୍ଞା କଲେ ।

ରୁକ୍ମଣୀ ଶାନ୍ତ ହେଲେ ସିନା ତାଙ୍କ ମନରେ ବିଦ୍ୱେଷାନଳ ଜଳି ଉଠିଲା । ତାକୁ ସପ୍ତ ସମୁଦ୍ରର ଜଳ ମଧ୍ୟ ଲିଭାଇ ପାରିବ ନାହିଁ ।

ସେ ଅଗ୍ନିରେ ଇନ୍ଧନ ଯୋଗାଇ ଦେବାକୁ ସାଧୁଆ ମା ସର୍ବଦା ପ୍ରସ୍ତୁତ । ଏ କଥା ଅନ୍ୟ କେହି ଜାଣି ପାରିଲେ ନାହିଁ । ଏକା ନବୀନ ଜାଣିଲା ।

ନବୀନ ବୁଝିଲା ଯେ ସେ ଅବନ୍ଧ । ଅବନ୍ଧ ନହେଲେ ମଧ୍ୟ ତାର ପିତା ତାକୁ ଅବନ୍ଧ କରିବାକୁ ଚେଷ୍ଟା କରୁଛନ୍ତି । ଅଶା ଯେ ତାହାର ପତ୍ନୀ ଏ କଥା ଭାବିଲେ ତାକୁ ହସମାଡ଼େ । ପିତାଙ୍କର ଅନୁରୋଧରେ ବିବାହର କେତେଦିନ ଯାଏ ସେ ଘରୁ ପଦାକୁ ବାହାରି ନଥିଲା । ଯେଉଁ ଦିନ ସେ ପଦାକୁ ବାହାରେ ଦେଖେ ଯେ ସମଗ୍ର ଜଗତ ଯେତେ କି ଓଲଟ ପାଲଟ ହୋଇଯାଇଛି । ତାର ବାବାଜୀ କୁଆଡ଼େ ଚାଲିଯାଇଛନ୍ତି । ଲୋକେ ସତ୍ ପଥ ଛାଡ଼ି ଅସତ୍ ପଥରେ ଚାଲିଲେଣି । ଆଉ ବାବାଜୀଙ୍କର ମାନ ସହରରେ ବେଶୀ ବଢ଼ି ଯାଇଛି । ଯେଉଁ ହନୁମାନ ଗୁଡ଼ରେ ତାର ବାବାଜୀ ବସି ଲୋକଙ୍କୁ ସତ୍ ଶିକ୍ଷା ଦେଉଥିଲେ ତାହା ଆଜି ଗଞ୍ଜେଇ ଧୂଆଁରେ ପୂର୍ଣ୍ଣ । ତାହାର ବାବାଜୀଙ୍କ ପାଖେ ଯେତେ ଲୋକ ବସୁଥିଲେ, ଗଞ୍ଜେଇ ଲୋଭରେ ଲୋକଙ୍କର ଭିଡ଼ ଏତେ ବଢ଼ିଛି ଯେ କହିଲେ ନସରେ । ହନୁମାନ ଗୁଡ଼ର ଆଗ ଘରେ ବସିବାକୁ ଠାବ ମିଳୁ ନାହିଁ ବୋଲି ସେମାନେ ତଳେ ଠିଆ ହୋଇ ବାବାଜୀଙ୍କର ପ୍ରସାଦ ସେବନ କରୁଛନ୍ତି ।

ନବୀନ ଭାବିଲା, ଏ କି କାଣ୍ଡ, ଏତେ ଲୋକ ଗଞ୍ଜେଇ ନିଶାରେ ମତ୍ତ କାହିଁକି ?

ଗଡ଼ ମଧ୍ୟରେ ଅନ୍ୟ ଗୋଟିଏ ବଡ଼ ଘଟଣା ଦେଖି ତାର ମନ ବିବ୍ରତ ହେଲା । ନବୀନର ବାଲ୍ୟ ଶିକ୍ଷକ ରାସ୍ତାରେ ଠେକା ମାଡ଼ ଖାଇ, ମାଡ଼ ଭୟରେ ଗୃହାଳି ଭାଙ୍ଗିଦେଇଛନ୍ତି । ଗଡ଼ର ବାଳକ ବାଳିକାମାନେ ପଢ଼ାପଢ଼ି ଛାଡ଼ି ଘରେ । କୌଣସି ଭଦ୍ର ଲୋକଙ୍କୁ ଏହାର କାରଣ ପଚାରିବାରୁ ସେ କହିଲେ ରାଜାଙ୍କର ବଳ ପାଇ କେତେ ଜଣ ଯୁବକ ସ୍କୁଲର ଛାତ୍ର ଛାତ୍ରୀଙ୍କୁ ପ୍ରହାର କରିଥିଲେ । ହୋତାଏ ଭୟରେ ସ୍କୁଲ ବନ୍ଦ କରିଦେଲେ ।

ଭଦ୍ରଲୋକଙ୍କ ନିକଟରୁ ଏହି ସମ୍ବାଦ ପାଇ ନବୀନ ନନ୍ଦମାନ ଗୁଡ଼ିକୁ ଧାଇଁଲା । ସେଠାରେ ପହଞ୍ଚି ଦେଖିଲା ପୂର୍ବ ପରି ବାବାଜୀ ଜଣେ କମ୍ବଳ ଉପରେ ବସିଛନ୍ତି । ନିକଟରେ ତାଳ ପତ୍ରର ପଙ୍ଖା । ଜଣେ ଚେଲା ଗଞ୍ଜେଇ ଚିଲମରେ ଭରୁଛି । ଅନ୍ୟ ଜଣେ ନଡ଼ିଆ କତାର ଗଣ୍ଠିରେ ନିଆଁ ଲଗାଉଛି । କେତେଜଣ ପାଖେରେ ବସିଛନ୍ତି । ଆଖି ଗଞ୍ଜେଇ ଚିଲମ ଉପରେ ।

ନବୀନ ବାବାଜୀଙ୍କୁ ପ୍ରଣାମ କରିବାରୁ ସେ ତାକୁ ବସିବାକୁ କହିଲେ । ମୁହଁରେ ହସ ଦେଖାଦେଉଣୁ ଲୁଚିଗଲା । ନବୀନ ବିରସ ଭାବରେ ବାବାଜୀଙ୍କ ସମ୍ମୁଖରେ ବସି ତାଙ୍କର କଥା ଶୁଣିବାକୁ କାନ ଡେରିଲା ।

ଜଣେ ଭକ୍ତ ଆରମ୍ଭ କଲେ, ମହାରାଜ, ଆପଣ କହୁଛନ୍ତି ଭଗବାନଙ୍କ ସଙ୍ଗେ ସାକ୍ଷାତ ହୋଇଥିଲା । ଆମେ ମୂର୍ଖ ଲୋକ, ପାପିଷ୍ଠ । ଆମର ତ ସେ ଆଶା ନାହିଁ । ତେବେ ମହାରାଜ ଯଦି ଦୟାକରି ତାଙ୍କର ରୂପ ବିଷୟରେ କିଛି କହନ୍ତେ ଆମର କର୍ଣ୍ଣ ପବିତ୍ର ହୁଅନ୍ତା ।

ବାବାଜୀ ଟିକିଏ ହସି କହିଲେ, ବୁଝିଲନା ଭ୍ରମର, ସେ ଅତି ଗୋପନୀୟ କଥା । ଶୂନ୍ୟ ପୁରାଣରେ ନିଜେ ବ୍ରହ୍ମା କହିଛନ୍ତି, ତାଙ୍କର ରୂପ ବର୍ଣ୍ଣନା କରିହେବ ନାହିଁ ।

ବାବାଜୀ ତୁନି ହେଲାରୁ ଅନ୍ୟ ଜଣେ ପଚାରିଲା, ମହାରାଜ, କହିବାକୁ ସିନା ମନା, ଦେଖେଇଦବାକୁ ମନା ନାହିଁ ତ । ଦୟାକରି ଜଣେ କାହାକୁ ଦେଖେଇ ଦିଅନ୍ତେ, ସେ ଆମକୁ କହନ୍ତା ।

ବାବାଜୀ କହିଲେ, ମୁଁ ମନା କରୁ ନାହିଁ । ତମମାନଙ୍କର ମଙ୍ଗଳ ପାଇଁ ଆମର ଏ ସଂସାରକୁ ଆସିବାର କଥା । କିନ୍ତୁ ବାପ, ସାଧନା କରି ପାରିବ ତ ? ସାଧନା ସହଜ ନୁହେ । ତେମେ ହେଲ ସଂସାରୀ । ଆମ୍ଭମାନଙ୍କ ପରି ସାଧନା କେଉଁଠୁ କରି ପାରିବ ଯେ ଦେଖିବ ? ବ୍ୟସ୍ତ ହେବାର କାରଣ ନାହିଁ ।। ତୁମ୍ଭେମାନେ ସାଧୁ ସଙ୍ଗରେ ଅଛ । ଭଗବାନ ତୁମ ଉପରେ ସନ୍ତୁଷ୍ଟ ।

ଅନ୍ୟ ଜଣେ ପଚାରିଲେ, ଭଗବାନ ତ ସବୁଠାରେ ଅଛନ୍ତି, ତେବେ ତାଙ୍କୁ ଖୋଜିବାକୁ ଲୋକ ସନ୍ନ୍ୟାସୀ ହୋଇ ଦେଶ ଦେଶ ବୁଲେ କାହିଁକି ?

କିଏ କହିଲା ଭଗବାନ ସବୁଠାରେ ଅଛନ୍ତି ?

ଯେଉଁ ବାବାଜୀ ଏଠି ଦିନା କେତେ ଥିଲେ ଏବେ ହୁଆଡ଼େ ଚାଲିଯାଇଛନ୍ତି ସେହି କହୁଥିଲେ ।

ମୂର୍ଖ, ସେ ମୂର୍ଖ । ଭଗବାନ ସବୁଠାରେ ଅଛନ୍ତି ଏ କଥା କିଏ କହିଲା ? ତା ନୁହେ । ଶୂନ୍ୟ ପୁରାଣରେ ଭଗବାନ ନିଜେ କହିଛନ୍ତି, ମଦଭଗଛା ଯତ୍ର ଗାବନ୍ତି ତତ୍ର ସ୍ଥିତ ଅମି ନାସ୍ତି ଦ । ଅର୍ଥାତ୍ କି, ମଦ ବୋଇଲେ ମାଦକ ଅର୍ଥାତ୍ ଗଞ୍ଜାଇ, ଭଗତା ଯେ ଭକ୍ତ, ଅର୍ଥାତ୍ ଯେଉଁମାନେ ଗଞ୍ଜେଇ ଖାଆନ୍ତି ଓ ଗାବ ବୋଇଲେ ଗାଈ, ନାସ୍ତି ହୋଇଲା ସ୍ତ୍ରୀ, ଏମାନେ ଯେଉଁଠି ଥାଆନ୍ତି, ଆମି ବୋଲନ୍ତେ ଅମ୍ଭେ ସେଠି ଥାଉଁ । ତାର ପୁଣି ସୂକ୍ଷ୍ମ ଅର୍ଥ ଅଛି । ଗଞ୍ଜେଇ ଯେଉଁମାନେ ଖାଆନ୍ତି ସେମାନେ ସାଧୁ । ଗୋପପୁରରେ କୃଷ୍ଣ ବେଶରେ ଜନ୍ମ ହୋଇଥିଲା ବେଳେ ଭଗବାନ ଗାଈ ଏବଂ ଗୋପୀମାନଙ୍କ ସଙ୍ଗେ କ୍ରୀଡ଼ା କରି ଆନନ୍ଦ କରୁଥିଲେ । ସେଇଥିପାଇଁ ତାଙ୍କର ସାଧୁ, ଗାଈ ଏବଂ ସ୍ତ୍ରୀମାନଙ୍କ ଉପରେ ବଡ଼ ଶରଧା । ସେ ସବୁବେଳେ ଏଇମାନଙ୍କ ପାଖେ ପାଖେ ଥାନ୍ତି । ସ୍ତ୍ରୀ ଭିତରେ ଆହୁରି ଗୂଢ଼ ତତ୍ତ୍ୱ ରହିଛି । ଏ ସବୁ ଗୁରୁ ଘର କଥା, କହିବାକୁ ଡର ମାଡ଼ୁଛି । ତଥାପି, ଭକ୍ତଙ୍କର ସନ୍ଦେହ ମେଣ୍ଟାଇବାକୁ ନ କହିଲେ ନ ଚଳେ । ସାଧୁ ପାଖେ ପାଖେ ଭଗବାନ ଥାଆନ୍ତି ବୋଲି ସାଧୁଙ୍କୁ ଦେଖିଲେ ଲୋକ ଦଣ୍ଡବତ କରେ । ଗୋରୁ ଦେହରେ କୃଷ୍ଣ ଅଛନ୍ତି ବୋଲି ଗୋଡ଼ ବାଜିଗଲେ ତାଙ୍କୁ ବିଷ୍ଣୁ ବୋଲି କହନ୍ତି । ଭଗବାନ ଅମୃତ ବାଣ୍ଟିବା ବେଳେ ମୋହିନୀ ରୂପ ଧରିଥିଲେ । ସମସ୍ତଙ୍କୁ ମୋହି ପକାଉଥିଲେ । ସେ ତ ସର୍ବଦା ସ୍ତ୍ରୀମାନଙ୍କ ନିକଟରେ ଥାଆନ୍ତି । ତେଣୁ ସ୍ତ୍ରୀମାନଙ୍କଠାରେ ମୋହିନୀ ଶକ୍ତି ଅଛି ।

ନବୀନ ଆଉ କେତେ ସହିବ ? ନିରୀହ ଗଞ୍ଜେଇ ପ୍ରିୟ ଲୋକଗୁଡ଼ିଙ୍କୁ ଏ ପାଷଣ୍ଡ ଯାହା ଇଚ୍ଛା ତାହା କହି ଭୁଲାଉଛି । ନବୀନର ମନରେ କଷ୍ଟ ହେଲା । ଏପରି ବାବାଜୀ ଜଣଙ୍କ ଦ୍ୱାରା ଦେଶର କେତେ ଅପକାର ସାଧିତ ହୁଏ ତାହା କେହି ଭାବିଲେ ନାହିଁ ?

ନବୀନ ବାବାଜୀଙ୍କ ନିକଟକୁ ଘୁଞ୍ଚିଯାଇ ଧୀରେ ଧୀରେ କହିଲା, ବାବାଜୀ, ଆପଣ ତ ମହା ପଣ୍ଡିତ ।

ହଁ ବାପ, ଭୁଲ୍ ନୁହେଁ । ଭଗବାନଙ୍କର ଯେ ଭକ୍ତ, ସେ ଯେ ପଣ୍ଡିତ ଏଥିରେ ସନ୍ଦେହ କରିବାର କିଛି ନାହିଁ ।

ନବୀନ କହିଲା, ମୁଁ ଆପଣଙ୍କ ନିକଟରୁ କିଛି ଶିକ୍ଷା କରିବାକୁ ଚାହେଁ । ଆପଣ ମୋର ଗୁରୁ ହେବେ ?

ବାବାଜୀ ମୁରୁକି ହସି କହିଲେ, ମୁଁ କଣ ନାରାଜ ଅଛି ?

ବର୍ତ୍ତମାନ କହନ୍ତୁ, ଆପଣ ଏ ସବୁ ପୁରାଣ କେଉଁଠୁ ପାଇଲେ, କିଏ ଲେଖିଛି ?

କେଉଁ ପୁରାଣ ?

ଆପଣ ଯେଉଁ ପୁରାଣର ନାମ କହିଲେ ।

ସେ ସବୁ ପୁରାଣ ବଡ଼ କଷ୍ଟରେ ମୁଁ ପଢ଼ିଥିଲି । ଅଷ୍ଟାଦଶ ପୁରାଣ ସାଧାରଣ ଲୋକଙ୍କୁ ଜଣା । କିନ୍ତୁ ଅନ୍ୟର ସାତ ପୁରାଣ ଗୁପ୍ତ ଭାବରେ ରହିଛି । ସେଥିମଧ୍ୟରୁ ଶୂନ୍ୟ ପୁରାଣ ଅତି କଷ୍ଟରେ ଜଣେ ବାବାଜୀଙ୍କଠାରୁ ଆଣି ପଢ଼ିଥିଲି । ସେ ବାବାଜୀ ମଣିଭଦ୍ରା ପର୍ବତର ଗୋଟିଏ ଗୁମ୍ଫାରେ ଥାଆନ୍ତି । ତାଙ୍କୁ ପଚାରିଥିଲି, ଏ ସବୁ ପୁରାଣ ସାଧାରଣ ଲୋକଙ୍କୁ ଦିଆଯାଉ ନାହିଁ କାହିଁକି ? ସେ କହିଲେ, ସାଧାରଣ ଲୋକେ ଏହା ପଢ଼ିଲେ ପାଗଳ ହୋଇଯିବେ ।

ଠିକ୍ କହୁଛନ୍ତି । ବୋଧ ହୁଏ ଆପଣ ସେ ସବୁ ପୁରାଣରୁ କାଣ୍ଡେ କାଣ୍ଡେ ପଢ଼ି ଏପରି ପାଗଳ ହୋଇଛନ୍ତି । ନୋହିଲେ ଏପରି ପାଗଳଙ୍କ ପରି ବକନ୍ତେ କାହିଁକି ?

କଣରେ ପାପିଷ୍ଠ ? ଆମେ ପାଗଳ ? ଓଃହୋ ଭଗବାନ, ଦେଖୁଥାଅ । ଶୁଣୁଥାରେ ଯୁବକ, ତୋର କିଛି ଜ୍ଞାନ ନାହିଁ । ତତେ ପ୍ରଥମଥର ପାଇଁ କ୍ଷମା କଲି । ନୋହିଲେ ଶାପ ଦେଇ ଭସ୍ମ କରିଥାନ୍ତି । ମୋ ସମ୍ମୁଖରୁ ପଳାଇ ଯା ।

ମୋତେ କ୍ଷମା କରିବାହେବେ । ଆପଣଙ୍କୁ କିଏ ଏ ବିଦ୍ୟା ଶିକ୍ଷା ଦେଇଥିଲା ?

ପାଷଣ୍ଡ, ପଳା ଏଠାରୁ କହୁଛି—

ନୂଆ ବାବାଜୀଙ୍କର କାଣ୍ଡ ଦେଖି ଓ ଭର୍ତ୍ସନା ଶୁଣି ନବୀନ ଦୁଃଖିତ ହେଲା ଓ ହତାଶ ହେଲା । ବୁଢ଼ା ବାବାଜୀ ତାର ମନେ ପଡ଼ିଲେ । ତାଙ୍କୁ ଦେଖିବାକୁ ଓ ତାଙ୍କ ମୁଖରୁ ଅମୃତ ଉପଦେଶ ଶୁଣିବାକୁ ସେ ଆକୁଳ ହୋଇ ଉଠିଲା । ଏଣେ ତେଣେ ଭ୍ରମଣ କରି ତାଙ୍କର ଅନ୍ୱେଷଣ କଲା । ରାତିମତ ଘରକୁ ଆସିଲା ନାହିଁ । ତାର ଏପରି ଉଦାସ ଭାବ ଦେଖି ରଘୁନାଥ ବିଚଳିତ ହେଲେ । ଭାବିଲେ, ପିଲା ହେଲେ ବି ଆଣିକୁ ଘରକୁ ନେଇ ଆସିବେ । ତାକୁ ଦେଖିଲେ ହୁଏ ତ ନବୀନର ମନ ବଦଳିବ ।

ରଘୁନାଥଙ୍କର ମନକଥା ମନରେ ରହିଲା । ଦୁଇ ଦିନ ହେଲା ନବୀନ ଘରକୁ ଫେରି ନାହିଁ । ତାକୁ ନ ଦେଖି ସେ ନିଜେ ଅନ୍ନ ଭୋଜନ କରି ନାହାନ୍ତି । ଯେତେ ଯୁଆଡ଼େ ଖୋଜିଲେ ନବୀନର ଦେଖା ଦର୍ଶନ କେଉଁଠି ପାଇଲେ ନାହିଁ ।

ତଥାପି ରଘୁନାଥ ହତାଶ ହେଲେ ନାହିଁ । ନବୀନକୁ ଖୋଜ ଠାବ କରିବାକୁ ଗୃହଅଡ଼େ ଗୃହ ବରଗିଲେ । ନବୀନର ଗୃହ ତ୍ୟାଗର କାରଣ କଣ ହୋଇପାରେ ସେହି କଥାହିଁ ଚିନ୍ତା କରିବାକୁ ଲାଗିଲେ । ମନ ଦଏ ରୁକ୍ମଣୀଙ୍କର ଦୋଷ । କିନ୍ତୁ ତୁଣ୍ଡରେ ସେ କଥା ସେ ଉଚ୍ଚାରଣ କରି ପାରନ୍ତି ନାହିଁ । ରୁକ୍ମଣୀଙ୍କ ପାଖରୁ ଦୂରେଇ ରହନ୍ତି ।

ଧୂଳିଆ ତାର ଭାଇକୁ ଝୁରେ, ମନେ ମନେ ପ୍ରତିଜ୍ଞା କରେ, ସେ ବଡ଼ ହେଲେ ଯେତେ ଦାଢ଼ିଆ ବାବାଜୀ ଦେଖିବ ସମସ୍ତଙ୍କୁ ସହରରୁ ନିକାଲିଦେବ ।

ରୁକ୍ମଣୀ ଭାବିଲେ, ସତେ କଣ ମା ଦେଇଥିବା ମନ୍ତୁରି ଲୁଣ କାମକୁ ଆସିଲା ? ସେଇ ଲୁଣରେ ତିଅଣ ରାନ୍ଧି ତାକୁ ଖାଇବାକୁ ଦେଲାରୁ ସେ ଘର ଛାଡ଼ି କେଉଁଣେ ପଳାଇଲା ?

ସାଧୁଆ ମା ତୁନି ତୁନି ତାଙ୍କ କାନରେ କହିଲା, ଦେଖିଲ୍ ଲୋ ସେ ଟୋକା ବାବାଜୀଙ୍କ ଗୁଣ ? ସେଇପରି ସେ ମୁଣି ମନ୍ତୁରି ଦେଇଥିଲେ ।

ରୁକ୍ମଣୀ କହିଲେ, ଗୁଣ କଲା ତ ।

ବୁଢ଼ୀ ସାଧୁଆ ମା କହିଲା, ସାକ୍ଷାତ୍ ଠାକୁର୍ ଲୋ ସେ । ରୂପ ଯେମିତି, ଗୁଣ ସେମିତି । କହିବୁ ଯଦି ତୋତେ ଦିନେ ନିଶୋଳା ବେଳରେ ନେଇଯିବି ତାଙ୍କ ପାଖକୁ । ଦର୍ଶନ କରି ଚକ୍ଷୁ ପବିତ୍ର କରି ଆସିବୁ । କେଉଁ କାହିଁକି ଜାଣିବେ କି ?

ରୁକ୍ମଣୀ କହିଲେ, ଯାଉ ଦିନା କେତେ । ତୋତେ ମୁଁ ବଲେ କହିବି । ନବୀନଟି ଚାଲିଗଲା ସିନା, ଅହା ସେଇ ଝିଅଟି କଥା ମନେ ପଡ଼ୁଛି । ଅଣା ଆଖିରେ ଦିଶୁଛି ।

ବୁଢ଼ୀ ଶାଶୁ ପୁଣି ଦେଲେ ସାବିତ୍ରୀଙ୍କ ଦୋଷ । ସେଇ ଅଲକ୍ଷଣୀ ବୋହୂଟା ପାଇଁ କୋଉଁ ଘର ଛାଡ଼ି ପଳେଇଲା ।

ସାବିତ୍ରୀ କାନ୍ଦିଲେ । ଭାବିଲେ, ହୋଇଥିବ ସେଇଆ । ଆଉ ମୁଁ କାହିଁକି ବଞ୍ଚିବି ? ଜୀବନ ହାରି ଦେବି କି ? ଅଣାଟି କଣ କରିବ ? ବଣିଆକୁ କହିଲେ, ଆରେ ବଣିଆ, ନବୀନ କଣ ଆଉ ଫେରିବ ନାହିଁ ?

ବଣିଆ କହିଲା, ସେ ଯେଉଁଠି ଥାଉ ତାକୁ ଖୋଜ ବାହାର କରାଇବି, ରହି ଦେଖିବ ।

ଅଣା ବଲ ବଲ କରି ତା ମା ମୁହଁକୁ ଚାହିଁ ରହିଥାଏ ।

କେଉଁ ପୁରାଣ ?

ଆପଣ ଯେଉଁ ପୁରାଣର ନାମ କହିଲେ ।

ସେ ସବୁ ପୁରାଣ ବଡ଼ କଷ୍ଟରେ ମୁଁ ପଢ଼ିଥିଲି । ଅଷ୍ଟାଦଶ ପୁରାଣ ସାଧାରଣ ଲୋକଙ୍କୁ ଜଣା । କିନ୍ତୁ ଆହୁରି ସାତ ପୁରାଣ ଗୁପ୍ତ ଭାବରେ ରହିଛି । ସେଥିମଧ୍ୟରୁ ଶୂନ୍ୟ ପୁରାଣ ଅତି କଷ୍ଟରେ ଜଣେ ବାବାଜୀଙ୍କଠାରୁ ଆଣି ପଢ଼ିଥିଲି । ସେ ବାବାଜୀ ମଣିଭଦ୍ରା ପର୍ବତର ଗୋଟିଏ ଗୁମ୍ଫାରେ ଥାଆନ୍ତି । ତାଙ୍କୁ ପଚାରିଥିଲି, ଏ ସବୁ ପୁରାଣ ସାଧାରଣ ଲୋକଙ୍କୁ ଦିଆଯାଉ ନାହିଁ କାହିଁକି ? ସେ କହିଲେ, ସାଧାରଣ ଲୋକେ ଏହା ପଢ଼ିଲେ ପାଗଳ ହୋଇଯିବେ ।

ଠିକ୍ କହୁଛନ୍ତି । ବୋଧ ହୁଏ ଆପଣ ସେ ସବୁ ପୁରାଣରୁ କାଣ୍ଡେ କାଣ୍ଡେ ପଢ଼ି ଏପରି ପାଗଳ ହୋଇଛନ୍ତି । ନୋହିଲେ ଏପରି ପାଗଳଙ୍କ ପରି ବକନ୍ତେ କାହିଁକି ?

କଣରେ ପାପିଷ୍ଠ ? ଆମେ ପାଗଳ ? ଓହୋ ଭଗବାନ, ଦେଖୁଥାଅ । ଶୁଣୁଥାରେ ଯୁବକ, ତୋର କିଛି ଜ୍ଞାନ ନାହିଁ । ତତେ ପ୍ରଥମଥର ପାଇଁ କ୍ଷମା କଲି । ନୋହିଲେ ଶାପ ଦେଇ ଭସ୍ମ କରିଥାନ୍ତି । ମୋ ସମ୍ମୁଖରୁ ପଳାଇ ଯା ।

ମୋତେ କ୍ଷମା କରିବାହେବେ । ଆପଣଙ୍କୁ କିଏ ଏ ବିଦ୍ୟା ଶିକ୍ଷା ଦେଇଥିଲା ?

ପାଷଣ୍ଡ, ପଳା ଏଠାରୁ କହୁଛି—

ନୂଆ ବାବାଜୀଙ୍କର କାଣ୍ଡ ଦେଖି ଓ ଭର୍ତ୍ସନା ଶୁଣି ନବୀନ ଦୁଃଖିତ ହେଲା ଓ ହତାଶ ହେଲା । ବୁଢ଼ା ବାବାଜୀ ତାର ମନେ ପଡ଼ିଲେ । ତାଙ୍କୁ ଦେଖିବାକୁ ଓ ତାଙ୍କ ମୁଖରୁ ଅମୃତ ଉପଦେଶ ଶୁଣିବାକୁ ସେ ଆକୁଳ ହୋଇ ଉଠିଲା । ଏଣେ ତେଣେ ଭ୍ରମଣ କରି ତାଙ୍କର ଅନ୍ୱେଷଣ କଲା । ରାତିମତ ଘରକୁ ଆସିଲା ନାହିଁ । ତାର ଏପରି ଉଦାସ ଭାବ ଦେଖି ରଘୁନାଥ ବିଚଳିତ ହେଲେ । ଭାବିଲେ, ପିଲା ହେଲେ ବି ଅଣାକୁ ଘରକୁ ନେଇ ଆସିବେ । ତାକୁ ଦେଖିଲେ ହୁଏ ତ ନବୀନର ମନ ବଦଳିବ ।

ରଘୁନାଥଙ୍କର ମନକଥା ମନରେ ରହିଲା । ଦୁଇ ଦିନ ହେଲା ନବୀନ ଘରକୁ ଫେରି ନାହିଁ । ତାକୁ ନ ଦେଖି ସେ ନିଜେ ଅନ୍ନ ଭୋଜନ କରି ନାହାନ୍ତି । ଯେତେ ଯୁଆଡ଼େ ଖୋଜିଲେ ନବୀନର ଦେଖା ଦର୍ଶନ କେଉଁଠି ପାଇଲେ ନାହିଁ ।

ତଥାପି ରଘୁନାଥ ହତାଶ ହେଲେ ନାହିଁ । ନବୀନକୁ ଖୋଜ ଠାବ କରିବାକୁ ଗୃହଅଡ଼େ ଗୃର ବରଗିଲେ । ନବୀନର ଗୃହ ତ୍ୟାଗର କାରଣ କଣ ହୋଇପାରେ ସେହି କଥାହିଁ ଚିନ୍ତା କରିବାକୁ ଲାଗିଲେ । ମନ ଦଏ ରୁକ୍ମିଣୀଙ୍କର ଦୋଷ । କିନ୍ତୁ ତୁଣ୍ଡରେ ସେ କଥା ସେ ଉଚ୍ଚାରଣ କରି ପାରନ୍ତି ନାହିଁ । ରୁକ୍ମିଣୀଙ୍କ ପାଖରୁ ଦୂରେଇ ରହନ୍ତି ।

ଧୂଳିଆ ତାର ଭାଇକୁ ଝୁରେ, ମନେ ମନେ ପ୍ରତିଜ୍ଞା କରେ, ସେ ବଡ଼ ହେଲେ ଯେତେ ଦାଢ଼ିଆ ବାବାଜୀ ଦେଖିବ ସମସ୍ତଙ୍କୁ ସହରରୁ ନିକାଲିଦେବ ।

ରୁକ୍ମିଣୀ ଭାବିଲେ, ସତେ କଣ ମା ଦେଇଥିବା ମନ୍ତୁରା ଲୁଣ କାମକୁ ଆସିଲା ? ସେଇ ଲୁଣରେ ତଅଣ ରାନ୍ଧି ତାକୁ ଖାଇବାକୁ ଦେଲାରୁ ସେ ଘର ଛାଡ଼ି କେଉଁଣେ ପଳାଇଲା ?

ସାଧୁଆ ମା ଭୁନ ଭୁନ ତାଙ୍କ କାନରେ କହିଲା, ଦେଖିଲୁ ଲୋ ସେ ଜୋକା ବାବାଜୀଙ୍କ ଗୁଣ ? ସେଇପରି ସେ ଲୁଣ ମନ୍ତୁରି ଦେଇଥିଲେ ।

ରୁକ୍ମିଣୀ କହିଲେ, ଗୁଣ କଲା ତ ।

ବୁଢ଼ୀ ସାଧୁଆ ମା କହିଲା, ସାକ୍ଷାତ୍ ଠାକୁର ଲୋ ସେ । ରୂପ ଯେମିତି, ଗୁଣ ସେମିତି । କହିବୁ ଯଦି ତୋତେ ଦିନେ ନିଶ୍ବୋଲା ବେଳରେ ନେଇଯିବି ତାଙ୍କ ପାଖକୁ । ଦର୍ଶନ କରି ଚକ୍ଷୁ ପବିତ୍ର କରି ଆସିବୁ । ଜୋଉଁ କାହିଁକି ଜାଣିବେ କି ?

ରୁକ୍ମିଣୀ କହିଲେ, ଯାଉ ଦିନା କେତେ । ତୋତେ ମୁଁ ବଲେ କହିବି । ନବୀନଟି ଗୃଲିଗଲା ସିନା, ଅହା ସେଇ ଝିଅଟି କଥା ମନେ ପଡ଼ୁଛି । ଆଶା ଆଖିରେ ଦିଶୁଛି ।

ବୁଢ଼ୀ ଶାଶୁ ପୁଣି ଦେଲେ ସାବିତ୍ରୀଙ୍କ ଦୋଷ । ସେଇ ଅଲକ୍ଷଣୀ ବୋହୂଟା ପାଇଁ ଜୋଉଁ ଘର ଛାଡ଼ି ପଳେଇଲା ।

ସାବିତ୍ରୀ କାନ୍ଦିଲେ । ଭାବିଲେ, ହୋଇଥିବ ସେଇଆ । ଆଉ ମୁଁ କାହିଁକି ବଞ୍ଚିବି ? ଜୀବନ ହାରି ଦେବି କି ? ଆଶାଟି କଣ କରିବ ? ବଣିଆକୁ କହିଲେ, ଆରେ ବଣିଆ, ନବୀନ କଣ ଆଉ ଫେରିବ ନାହିଁ ?

ବଣିଆ କହିଲା, ସେ ଯେଉଁଠି ଥାଉ ତାକୁ ଖୋଜ ବାହାର କରାଇବ, ରହ ଦେଖିବ ।

ଆଶା ବଲ ବଲ କରି ତା ମା ମୁହଁକୁ ଗୃହିଁ ରହିଥାଏ ।

ସମୟର ପରିବର୍ତ୍ତନ ସଙ୍ଗେ ଅବସ୍ଥାର ପରିବର୍ତ୍ତନ; ଅବସ୍ଥାର ପରିବର୍ତ୍ତନ ସଙ୍ଗେ ମନର । ଶିଶୁ ଆଜି ବାଳକ, ବାଳକ ଯୁବକ, ଯୁବକ ତରୁଣ, ତରୁଣ ବୃଦ୍ଧ ଏବଂ ବୃଦ୍ଧ ସମାଧିସ୍ଥ । ହରିପୁରର ସେହି ଦଶା । ମନ୍ତ୍ରୀ ମୃତ । ରଘୁନାଥ ବୃଦ୍ଧ ନହେଲେ ମଧ୍ୟ ଚତୁର୍ଥାବସ୍ଥା ଆଡ଼କୁ ଅଗ୍ରସର ହେଉଛନ୍ତି । ଘନଶ୍ୟାମ ମଧ୍ୟ ତଥୈବଚ । କିନ୍ତୁ ବୁଢ଼ୀ ଚମାରୁଣୀର ପାଞ୍ଜି ଚିତ୍ରଗୁପ୍ତଙ୍କ ହାତରୁ ଖସି ପଡ଼ିଛି । ଆଜିଯାଏ ସେ ବଞ୍ଚି ରହିଛି । ରାମ ଯୁବକ । ଆଉ ରାଜକୁମାର, ସେ ତ ରାମର ସାଥୀ । ହାରି ପାନରାଣୀ ଦିନେ କଳିଆ କରି ଅନ୍ଧଙ୍କ ପରି କୁଆଡ଼େ ଚାଲିଯାଉଯାଉ କୂଅରେ ପଡ଼ିଲା । ତାକୁ ସେହି ଦିନରୁ କେହି ଦେଖି ନାହିଁ ।

ବର୍ତ୍ତମାନ ଚାଲନ୍ତୁ ଘୋଡ଼ାଘାଠ ପଡ଼ା ମୁଣ୍ଡରୁ ହରିପୁରର ଅବସ୍ଥା ଦେଖି ଆସିବା ।

ସୁନ୍ଦରଙ୍କ ଘରର ଅବସ୍ଥା ଶୋଚନୀୟ । ବୁଢ଼ୀ ଚଲି ଉଠି ପାରନ୍ତି ନାହିଁ । ଯେଉଁଠି ବସିଥାନ୍ତି ସେଇଠି । ଆଖିକୁ ଝାପ୍‌ସା ଦିଶେ । କାନକୁ ଶୁଭେ ନାହିଁ । ପାଞ୍ଚଥର ଡାକିଲେ ପଦେ କଥା ବୁଝନ୍ତି । ଆଶାକୁ ଡାକିବାକୁ ହେଲେ ସେ ସୁନ୍ଦରଙ୍କଠାରୁ ଆରମ୍ଭ କରି ସାବିତ୍ରୀ, ବଣିଆ କହି କହି ଶେଷରେ ଡାକନ୍ତି ଆଶା । ସାବିତ୍ରୀଙ୍କର ମାନସିକ ଅବସ୍ଥା ଯେପରି ଥିଲେ ମଧ୍ୟ ଶାଶୁଙ୍କର ସେବାରେ ତ୍ରୁଟି କରନ୍ତି ନାହିଁ । ବଣିଆ ଏବଂ ଆଶା ପ୍ରାଣପଣେ ବୁଢ଼ାଙ୍କର ଯେପରି ସୁବିଧା ହେବ ସେପରି କରନ୍ତି । ଶେଷ ଅବସ୍ଥାରେ ବୁଢ଼ାଙ୍କର ମନର ପରିବର୍ତ୍ତନ ଘଟିଛି । ସେ ସମସ୍ତଙ୍କୁ ସ୍ନେହ କରନ୍ତି, ବିଶେଷତଃ ସାବିତ୍ରୀଙ୍କୁ । ଯଦି ଶୁଣନ୍ତି କେବେ ଯେ ସାବିତ୍ରୀଙ୍କର ଦେହ ଭଲ ନାହିଁ, ଆଖିରୁ ଲୁହ ଗଡ଼ି ପଡ଼େ । କିଛି କହନ୍ତି ନାହିଁ କାହାକୁ । କେବଳ ସାବିତ୍ରୀଙ୍କୁ ପାଖକୁ ଡାକି ପଚାରନ୍ତି, ଦେଖ୍ ମା ଦେହର ଖବର ବୁଝ । ଆଉ କିଏ ଅଛି ?

ଆଶା ସକାଳୁ ସଞ୍ଜଯାଏ ବେଳ ଦେଖି ବୁଢ଼ୀଙ୍କ ପାଖରେ ବସି ପୁରାଣ ବୋଲେ । ସାବିତ୍ରୀ ଘର ଧନ୍ଦାରେ ବ୍ୟସ୍ତ ଥାଆନ୍ତି । ଆଉ ବଣିଆ, ସେ ବାହାର କାମରେ ଲାଗିଥାଏ ।

ଆଶା ଆଉ ପୂର୍ବର ବାଳିକା ନାହିଁ । ସେ ଯୁବତୀ । ବୟସ ବଢ଼ିବା ସଙ୍ଗେ ଯୌବନର ନବ ହିଲ୍ଲୋଳରେ ତା'ର ଅଙ୍ଗ ହିଲ୍ଲୋଳିତ । ସୁନ୍ଦରୀମାନଙ୍କ ମଧ୍ୟରେ ତାର ସ୍ଥାନ ଉଚ୍ଚରେ । କିନ୍ତୁ ଯେତେବେଳେ ସାବିତ୍ରୀଙ୍କ ମନରେ ଆଶା କଥା

ପଛେ, ଯେତେବେଳେ ସେ କାମ ଧନ୍ଦା ଶେଷ କରି ଆସି ବୁଢ଼ୀଙ୍କ ପାଖରେ ବସି ଅଣା ମୁହଁରୁ ପୁରାଣ ଶୁଣନ୍ତି, ତାଙ୍କ ମନ କେଉଁ ଦିଗରୁ ଆସି କେଉଁଆଡ଼େ ଉଡ଼ିଯାଏ । ଯେତେବେଳେ ମହାଭାରତ ଯୁଦ୍ଧ କ୍ଷେତ୍ରରେ ଅଣା ଏବଂ ବୁଢ଼ୀ ବିଚରଣ କରୁଥାନ୍ତି ସାବିତ୍ରୀ ଦେଖୁଥାନ୍ତି ଅଣାର ସୁନ୍ଦର ମୁହଁଟିକୁ । ତାଙ୍କ ଆଖି ଆଗରେ ପଡ଼େ ଅଣାର ଭବିଷ୍ୟତ୍ ଜୀବନର ଚିତ୍ର । କାନରେ ପଡ଼େ ଅଣାର ମଧୁର ରାଗିଣୀ । ଗ୍ରାମ୍ୟ ବଧୂ ଜଳଭାଣ୍ଡ ପୁଷ୍କରିଣୀରେ ବୁଡ଼ାଇ ବିଦେଶୀ ସ୍ୱାମୀଙ୍କ କଥା ଭାବୁ ଭାବୁ ଯେପରି ଭାଣ୍ଡରେ ଜଳ ପଶିବାର ଶବ୍ଦ ଶୁଣି ମଧ୍ୟ ଶୁଣି ପାରେ ନାହିଁ, ସାବିତ୍ରୀ ମହାଭାରତ ଶୁଣି ମଧ୍ୟ କିଛି ଶୁଣି ପାରନ୍ତି ନାହିଁ । ଗୁରୁ ଦ୍ରୋଣଙ୍କ ମୃତ୍ୟୁ ପରେ ହଠାତ୍ ସାବିତ୍ରୀ ବାଳବିଳେଇଲା ପରି ପଚାରି ଉଠନ୍ତି, ସେଇଠୁ ଦ୍ରୋଣ କଣ କଲେ ପୁଅର ମରଣ ଶୁଣି ?

ଅଣା ହସିଦିଏ । ବୁଢ଼ୀଙ୍କର ଯେଉଁ ଅବସ୍ଥା, ସାବିତ୍ରୀଙ୍କର ମଧ୍ୟ ସେହି ଅବସ୍ଥା । ଅଣା କଥା ଭାବି ଲୁହରେ ମୁହଁ ଭସାଇଦିଅନ୍ତି ।

ଅଣା ଅବାକ୍ ହୋଇ ପଚାରେ, ମା, କାନ୍ଦୁଛୁ କାହିଁକି ?

ସାବିତ୍ରୀ କଥାକୁ ବାଁରେଇ ଦିଅନ୍ତି । ହେଲେ ଅଣା ଠଉରେଇ ମୁହଁ ଶୁଖେଇଦିଏ ।

ସାବିତ୍ରୀଙ୍କର ଦୁଃଖ ହେବାର କଥା କେବଳ ଅଣା ପାଇଁ ନୁହେଁ, ବଣିଆର ଜୀବନ କଥା ଭାବିଲେ ମଧ୍ୟ ତାଙ୍କର ଦୁଃଖ ହୁଏ । ଖେଦାଳ ପିଲାଟିଏ, ପିଲାଦିନୁ ତାଙ୍କ ଘରେ ରହିଛି । ତାଙ୍କର ମଙ୍ଗଳ ପାଇଁ ସ୍ୱାର୍ଥ ବଳି ଦେଇଛି । ସାବିତ୍ରୀ ଆଶା କରିଥିଲେ ବଣିଆକୁ ପଞ୍ଚାପଞ୍ଚି କରି ତାର ହାତକୁ ଦିହାତ କରିଦେବେ । ପୂର୍ବରୁ ଯେତେଥର ସେ ବଣିଆକୁ କହିଛନ୍ତି ଶୁଣି ନଶୁଣିଲାପରି ବଣିଆ ବାରିଆଡ଼କୁ ଚାଲିଯାଇଛି ।

ଦିନେ ସନ୍ଧ୍ୟାବେଳେ କାର୍ଯ୍ୟ ଶେଷ କରି ବଣିଆ ପିଣ୍ଡା ଉପରେ ବସି ଚୂନ ପତର ମକଚିବାରେ ଲାଗିଗଲା । ସେ କହେ, କାମ ଧନ୍ଦା ଶେଷ କରି ପାଟିରେ ଟିକିଏ ଦୁକ୍ତା ପକାଇଲେ ମନରେ ଶାନ୍ତି ଆସେ । ଦୁକ୍ତା ମକଚୁ ମକଚୁ ବାହାରର ହାଲଚାଲ କହୁ କହୁ କେତେ କଥା କହିଗଲା । ବୁଢ଼ୀ ନଥିଲେ କି ଅଣା ନ ଥିଲା ପାଖରେ ।

ସାବିତ୍ରୀ ହଳଦୀ ବାଟୁ ବାଟୁ କହିଲେ, ଛାଡ଼ ସେ କଥା, ସେଥିରୁ କଣ ମିଳିବ ? ଆମର କିଏ ଅଛି ଯେ କାହା ପାଇଁ ଏତେ କଥା ? ଯେତିକି ଅଛି, ସେଇ ଢେର । ଆଉ ଜମି ବାଡ଼ି କିଣି ଲାଭ ନାହିଁ ।

ନାଇଁ ମା, ସବୁଦିନେ କଣ ଏହିପରି ଥିବା ?

ମୋ କପାଳ ତ ପୋଡ଼ା, କାହାକୁ କହିବି ? ହଇରେ ବିଶୁ, ନବୀନର କିଛି ଖବର ମିଳିଲା ନାହିଁ ?

ନାଇଁ ମା କିଛି ଜଣାପଡ଼ୁ ନାହିଁ । ମୋର ଯଥାସାଧ୍ୟ ଚେଷ୍ଟା କରୁଛି । ଯେଉଁ ଦାବାଜୀକୁ ଦେଖୁଛି, ତାକୁ ପଚାରୁଛି, କିନ୍ତୁ ତାଙ୍କ କଥା କେହି କିଛି କହି ପାରୁ ନାହିଁ ।

ସେ ଆଉ କଣ ଆସିବ ନାହିଁ ? ଆଉ ମୋ ଅଶା ସବୁ ଦିନ ଏପରି ରହିଥିବ ? — ଆଉ କହି ପାରିଲେ ନାହିଁ, କଣ୍ଠ ରୁଦ୍ଧ ହୋଇ ଆସିଲା । ଆଖିରୁ ଲୁହ ଗଡ଼ି ପଡ଼ିଲା ।

କାନ୍ଦନା ମା । ପିଲା ମନ କଣ ହୋଇଯାଇଛି, ସେଇଥିପାଇଁ ଚାଲି ଯାଇଛନ୍ତି । ପୁଣି ମନ ବଦଳିଗଲେ ତାଙ୍କ ମନକୁ ଫେରିବେ । ଏତେ ବ୍ୟସ୍ତ କାହିଁକି ? ତତେ ବ୍ୟସ୍ତ ହେବାର ଦେଖିଲେ ଅଶାର ମନ କଣ ହେବ ବୁଝି ପାରୁଛୁ ?

ସାବିତ୍ରୀ ହଳଦୀ ହାତରେ ପଣତ ଧରି ଲୁହ ପୋଛିଲେ । କହିଲେ, ମୁଁ ସବୁ ବୁଝି ପାରୁଛି । ହେଲେ ମନ ତ ପାପ ଛୁଉଁଛି । କେତେ ମନ୍ଦ କଥା ଆସି ମନରେ ପଡ଼ୁଛି ।

କିଛିକ୍ଷଣ ପରେ ସାବିତ୍ରୀ କହିଲେ, ତୁ କଣ ସବୁଦିନେ ଏମିତି ଅଭିଆଡ଼ା ହୋଇ ରହିବୁ ? ମୋ ସାନ କୁହା ମାନ, ଖାଲି କହି ହଁ, ତା ପରେ ମୁଁ ସବୁ ଠିକ୍ କରିବି । ତୁ ଅରାଜି କାହିଁକି ?

ମା—

ଶୁଣ୍ ବିଶୁ, ଯଦି ଅଜି ସେ ଥାଆନ୍ତେ ତୁ ଅବାଧ ହୋଇ ସବୁଦିନେ ନା କହି ପାରନ୍ତୁ ନାହିଁ । ମୋର କପାଳ ପୋଡ଼ା ବୋଲି ସିନା ଯେତେ କହିଲେ ତୁ ମାନୁନୁ ।

ମା, ଆଉ ନାଇଁ କହିବି ନାହିଁ । ଅବାଧ ହେବାକୁ ମୋର ମନ ହେଉନି ନାହିଁ । ଏଥର ହଁ କରୁଛି ।

ତେବେ ?

ଶୁଣ, ମୋର ଗୋଟାଏ କଥା ରଖିବୁ ?

କଣ ?

ନବୀନ ନ ଫେରିବାଯାଏ ମୁଁ ବାହା ହେବି ନାହିଁ ।

ସେ କଣ ଫେରିବ ? କାହାର ଆଶା ଅଛି ?

ମୋର ଅଛି ମା, ମୋର ଅଛି । ସେ ନିଶ୍ଚୟ ଫେରିବେ । ସେ ଯଦି ଥାଆନ୍ତି ଛଅ ମାସ ମଧ୍ୟରେ ନିଶ୍ଚେ ତାଙ୍କୁ ବାହାର କରିବି ।

ସାବିତ୍ରୀଙ୍କର ମୁଖ ଉଜ୍ଜ୍ୱଳ ଦିଶିଲା । ମନେ ମନେ ସୁରେଶ୍ୱରୀଙ୍କୁ ସ୍ମରଣ କରି କହିଲେ, ସୁରେଶ୍ୱରୀ ସାହା ହେଉନ୍ତୁ ।

ରଘୁନାଥ ପୁତ୍ରକୁ ଭୁଲିଯିବାକୁ ବସିଲେଣି । କେବଳ ଯେତେବେଳେ ଧୂଳିଅ ପଚାରେ, ବାପା, ଭାଇ କାହିଁ, ସେତିକବେଳେ ନବୀନର ବିଷୟ ଚିନ୍ତା କରି ମନ କଷ୍ଟ କରନ୍ତି । ପର ମୁହୂର୍ତ୍ତିରେ ଝୁଲା ମୁଣୀ ଭିତରେ ହାତ ରଖି ରାମ ରାମ କହି ସବୁ ଭୁଲିଯାଆନ୍ତି । ତାଙ୍କର ଏ ମାଳିଗଡ଼ା ଭକ୍ତି ଅନେକ ଦିନରୁ ଆରମ୍ଭ ହେଲାଣି । ଦିନ ରାତି ମାଳିମୁଣି ଧରି ବୁଲୁଥାଆନ୍ତି । ସେ ଭାବୁଛନ୍ତି ଜଗତର ସମସ୍ତ ଆନନ୍ଦ ଶେଷ ହୋଇଅଛି । ପର ରାଜ୍ୟ ପାଇଁ କିଛି ସଞ୍ଚୟ କରିବା ଆବଶ୍ୟକ । ନଡ୍ଡୁବା ସେ ଚନ୍ଦ୍ରଗୁପ୍ତଙ୍କୁ କହିବେ କଣ ?

ସେଦିନ ଦୁଇ ବନ୍ଧୁଙ୍କର ଭେଟ ହୋଇଥିଲା । ଧନଶ୍ୟାମ ରଘୁନାଥଙ୍କୁ ମାଳି ଗଡ଼ାଇବାର କାରଣ ପଚାରିଲାରୁ ଉତ୍ତର ପାଇଲେ, ପର ଦେଶ, ପର ଜନ୍ମ ପାଇଁ ସେ ଧର୍ମ ସଞ୍ଚୟ କରୁଛନ୍ତି । ଧନଶ୍ୟାମଙ୍କୁ ରଘୁନାଥ ପଚାରିଲେ, ବୃଦ୍ଧ ବୟସରେ ସେ ଭଲ କିଛି ଧର୍ମ କାର୍ଯ୍ୟ କରୁଛନ୍ତି ?

ଧନଶ୍ୟାମ ପୂର୍ବପର ଥଟ୍ଟା କରି କହିଥିଲେ, ଆବଶ୍ୟକ ନାହିଁ, ଚନ୍ଦ୍ରଗୁପ୍ତ ଆମର ଜାତି ଭାଇ । ଭଲ ମନ୍ଦ ସବୁ ସେ ଚଳେଇ ନେବେ ।

ତାଙ୍କର ମନବୋଧ ହେଲା ନାହିଁ । ମାଳିଗଡ଼ାକୁ ସେ କହନ୍ତି, ଆଉ ଛାଡ଼ି ପାରିବେ ନାହିଁ । ଏବେ ସୁନ୍ଦରୀର ସୌନ୍ଦର୍ଯ୍ୟରେ ସେ ଆଉ ମୁଗ୍ଧ ନୁହନ୍ତି । ସ୍ତ୍ରୀଙ୍କ ସଙ୍ଗେ ଦିନରେ ଥରେ ଆଧେ ଭେଟ ହେଲେ ଯଥେଷ୍ଟ । କଥାବାର୍ତ୍ତା ଅଧିକ ହୁଏ ନାହିଁ । ପଦେ ପ୍ରଶ୍ନର ପଦେ ଉତ୍ତର ।

ତାଙ୍କର ଜୀବନରେ ଏ ପରିବର୍ତ୍ତନ ଯେ କୌଣସି ବିଶେଷ କାରଣରୁ ଆସିଛି ଏହା ନିଶ୍ଚୟ । କାରଣଟା କଣ ଆମେ ତାହା ଠଉରେଇ ପାରୁ ନାହୁଁ ।

ଘରର ଏବଂ ଜମିଦାରୀର ଖବର ଅନ୍ତର ନେବା ଏ ବୟସରେ କଠିଣ ହେଲେ ମଧ୍ୟ ବାଧ୍ୟ ହୋଇ ନେବାକୁ ପଡ଼େ । ଧୂଳିଅଟି ପିଲା ହେଲେ କଣ ହେବ, ବୁଦ୍ଧିମାନ୍ । ଆଜହୁଁ ଘରର କେତେ ଛୋଟ ଛୋଟ କାର୍ଯ୍ୟ କରେ ।

ରୁକ୍ମଣୀଙ୍କର ପୂର୍ବ ସ୍ୱଭାବର ପରିବର୍ତ୍ତନ ଘଟିଛି । ସେ ଆଉ ଦିନରେ ପଚିଶ ଥର ମୁଣ୍ଡ ଲୁଣ୍ଠାନ୍ତି ନାହିଁ କି ମୁହଁ ଦେଖନ୍ତି ନାହିଁ । ସୁନ୍ଦରୀ ବୋଲି ଯେଉଁ ଗର୍ବ ତାଙ୍କ ମନରେ ଅବାଧ୍ୟରୂ ଥିଲି, ତାର ବି ନ୍ୟୂନ ହେବାର ଦେଖାଗଲାଣି । ଏକାଥରେ ଯେ ସେ ଗର୍ବ ତ୍ୟାଗ କରିଛନ୍ତି ଏହା ଶପଥ କରି କହି ହେବ ନାହିଁ । ତଥାପି ସାଧୁଆ ମା ସଙ୍ଗେ କଥାବାର୍ତ୍ତା କରିବା ସମୟରେ ଦେଖାଯାଏ, ଯେପରି କେଉଁ ଅଜ୍ଞାତ ଦୁଃଖ ତାଙ୍କ ହୃଦୟ ଅଧିକାର କରିଛି । ସେ ଦୁଃଖ କାହିଁକି ? କିଏ ଉତ୍ତର ଦେବ ? ଥରେ ଥରେ କହିପକାନ୍ତି, ଆହା, ନବୀନଟି ମୋର ଆଜି କୋଉଁଠି ଥିବ ? କେବେ ମୋ ପ୍ରତି ତାର ମନ୍ଦ ବ୍ୟବହାର ଦେଖି ନାହିଁ । ଯିଏ ଯାହା ଅପବାଦ ଦେଉ ପଛେ, କହୁ ପଛେ, ମୋର ପାଇଁ ସେ ଘର ଛାଡ଼ି ଚାଲିଯାଇଛି । ମୁଁ ଜାଣେ, ମା ମଙ୍ଗଳା ଜାଣନ୍ତି । ଧୂଳିଅଟିକୁ ସେ କେଡ଼େ ଭଲପାଏ । ସତେ କଣ ଧୂଳିଆ ତାର ଚାକର ହୋଇଥାନ୍ତା ? ଅସମ୍ଭବ, ସେ ନଜେ କାହିଁକି ଏହା କରିବାକୁ ଦିଅନ୍ତେ ?

ଏ ସମସ୍ତ କଥା ଅନ୍ତଃକରଣରୁ କି କେବଳ ମୁହଁରୁ ବାହାରେ ସ୍ଥିର କରିବା ଅସମ୍ଭବ । ଥରେ ସେ ସାଧୁଆ ମାଆକୁ କହିବାର ଶୁଣାଯାଏ ଯେ ରାତିରେ ସେ ନବୀନର ମାଆଙ୍କୁ ସ୍ୱପ୍ନରେ ଦେଖନ୍ତି । ନବୀନର ମା ଯେପରି ଆସି ରୁକ୍ମଣୀଙ୍କ ହାତ ଧରି ମିନତି କରି କହନ୍ତି, ନବୀନର କେଉଁ ଦୋଷ ପାଇଁ ତାକୁ ଏ ଦଣ୍ଡ ଏ ଦଣ୍ଡ ଦେଇଛ ? କେବେହେଲେ ନବୀନ ତମ ପ୍ରତି କଠୋର ହୋଇନାହିଁ ।

କି ଦଣ୍ଡ ତା କେବଳ ରୁକ୍ମଣୀ ଜାଣନ୍ତି, ସାଧୁଆ ମା ଜାଣେ । ରଘୁନାଥ ମଧ୍ୟ ତାହା ଅନୁମାନ କରି ପାରିଥିଲେ ।

ଯେଉଁଦିନ ନବୀନ ଘରୁ ପଦାକୁ ବାହାରିଲା ତାର ପୂର୍ବ ରାତିରେ ସାଧୁଆ ମା ଗୋଟିଏ ଡେଉଁରିଆ ଆଣି ରଘୁନାଥଙ୍କର ଘର ଆଗରେ ପୋତିଲା । ରୁକ୍ମଣୀଙ୍କ ପାଖକୁ ଆସି କହିଲା, ଆଜିଠାରୁ ତୋ ବାଟରୁ କଣ୍ଟା ସଫା କରିଦେଲି ।

ରୁକ୍ମଣୀ ଆଶ୍ଚର୍ଯ୍ୟ ହୋଇ ତା ମୁହଁକୁ ଅନାଇଲେ । ସାଧୁଆ ମା ଚାରିଆଡ଼କୁ ଅନାଇଁ କହିଲା, ଜଣେ ବାବାଜୀ ହରିପୁରରେ ମଠ କରିଅଛନ୍ତି । ବାବାଜୀଙ୍କ ସଙ୍ଗରେ ମୁଁ ଦେଖାକଲି । ତାଙ୍କର ଭଗତ ହେଲି । ଠୋକା ବାବାଜୀ, କେଡ଼େ ଶୋଭିକାର ରୂପ । ଲୋକେ କହନ୍ତି, ସେ ସିଦ୍ଧ ପୁରୁଷ, ଭଗବାନଙ୍କୁ ଦେଖିଛନ୍ତି ।

କେତେ ପୋଥି ପୁରାଣ ପଢ଼ିଛନ୍ତି ସେ । ଚଣ୍ଡୀ ଠାକୁରାଣୀଙ୍କୁ ଆ କହିଲେ ଆସନ୍ତି, ଯା କହିଲେ ଯାଆନ୍ତି । ବାବାଜୀ ଭଗତ ଲୋକଙ୍କର ମନ କାମନା ପୂରଣ କରନ୍ତି । ବାଞ୍ଝ ମାଇପ ଉପଧିଆପଢ଼ ଦୁଃଖ ଜଣାଇଲେ ଚଣ୍ଡୀଙ୍କୁ ଡାକି ତାଙ୍କୁ କହି ବାଞ୍ଝର ପେଟରେ ଅଜ୍ କାହା ପେଟରୁ ପିଲା ଆଣି ସମ୍ଭନ୍ତି । ଦୁସ୍ମନଙ୍କୁ ଘରୁ ଉଡ଼୍ କହିଲେ ସେ ଡେଉଁରିଆ ଦେଇ ଘର ଆଗରେ ପୋତିବାକୁ କହନ୍ତି । ଭଗତଙ୍କଠାରୁ ମଦ ପାଣି ନିଅନ୍ତି । ଗଞ୍ଜେଇ ଦେଲେ ତ ଅହୁରି ଖୁସି । ଧନଦରବ ଦେଲେ ଦିଅ, ନ ଦେଲେ ନାହିଁ । ତାଙ୍କଠୁଁ ଏ ଡେଉଁରିଆ ଆଣି ପୋତିଲି ।

ସାଧୁଆ ମା ବାବାଜୀଙ୍କ ଉପଦେଶମତେ କାର୍ଯ୍ୟ କଲା । ଦିଭରି ଗଞ୍ଜେଇର ମୂଲ୍ୟ ବା କେତେ ?

ନବୀନ ଘର ଛାଡ଼ି କୁଆଡ଼େ ଗଲା । ରୁକ୍ମଣୀ ଖୁସି ହେଲେ ସାବତ ପୁଅ ତ ବାଟର କଣ୍ଟା, ଯାଉ ମରୁ । ଧୂଳିଆ ହେବ ସବୁ ସମ୍ପତ୍ତିର ମାଲିକ; ମାତ୍ର ତାଙ୍କର ଏ ଆନନ୍ଦ ବେଶୀ ଦିନ ରହିଲା ନାହିଁ । ଧୂଳିଆ ଭାଇକୁ ଖୋଜିଲା । ଝୁରି ହେଲା । ତାର କଣ୍ଠା ଦୋହଲିଲା । ରଘୁନାଥ କେଜାଣି କପଟ ଘଟଣାଟି ଅନୁମାନ କଲେ । ଧୂଳିଆ ଦାଣ୍ଡରେ ଖେଳିଲାବେଳେ ଡେଉଁରିଆ ପାଇ ବାପାଙ୍କୁ ଦେଲା ।

ରଘୁନାଥଙ୍କର ମନ ସେହି ଦିନରୁ ଦିକଡ଼ା ହେଲା । ଘରର ଗୁମର କାହାକୁ ସେ କହିଲେ ନାହିଁ । ନିଜେ କାନ୍ଦିଲେ । ଦୁଃଖ କଲେ । ନିଜେ ବଦଳିଲେ । ସ୍ତ୍ରୀଙ୍କୁ ପଦେ ଅକଥି କହିବାକୁ ସାହସ କଲେ ନାହିଁ । ନିଜେ ହେଲେ ଉଦାସୀ ।

ରୁକ୍ମଣୀ ଅନୁତାପ କଲେ । ଆହା, ମୁଁ ଚଣ୍ଡାଳୁଣୀ କି କାମ ନକଲି । ଭଲ ପିଲାଟାକୁ ଘରୁ ତଡ଼ାଇଲି ।

ତଥାପି ସେ ସାଧୁଆ ମାଆକୁ କିଛି କହିଲେ ନାହିଁ । ଘର ମନା କଲେ ନାହିଁ । ଲୋକ ଲଜ୍ଜା । କଥା ପ୍ରଘଟ ହେବ ।

ବର୍ଷ ବର୍ଷ କଟିଗଲା ।

ରୁକ୍ମଣୀ ଆଶାକୁ ଦେଖିବାକୁ ଇଚ୍ଛା କରନ୍ତି; କିନ୍ତୁ ଦେଖିବେ କିପରି ? ମନ ଅକୁଳ ହେବାରୁ ରଘୁନାଥଙ୍କୁ ଦିନେ କହିଲେ, ଥରେ ଆଶାକୁ ଆଣ । ସେ ମୋ ବୋହୂ, ମୁଁ ତାକୁ ଦେଖିବି । ମୋ ପାଖରେ କିଛି ଦିନ ରହିବ ।

ରଘୁନାଥ ହସନ୍ତି । ଉତ୍ତର ନ ଦେଇ ଝୁଲାମୁଣି ଧରି ଗ୍ରାମ ଗ୍ରାମ କହି ବୁଲିଯାନ୍ତି । ତାଙ୍କ ହସରୁ ଆନନ୍ଦ ପ୍ରକାଶ ପାଏନା, ଅନୁତାପ, ବ୍ୟଙ୍ଗ ।

ରୁକ୍ମଣୀ ଥରେ କଣ୍ଠାଳ କଲାରୁ ରଘୁନାଥ କହିଲେ, ଅଣା ତାର ମା ପାଖରେ ଖୁସିରେ ଅଛି । ଏଠିକି ଆସିଲେ ଦୁଃଖ ବ୍ୟତୀତ ତା କପାଳରେ ସୁଖ ନାହିଁ । ଏଠି ସମସ୍ତେ ତାର ଶତ୍ରୁ । ତୁମର ମନରେ କଣ ଅଛି ଯେ ତୁମେ ତାକୁ ପାଖକୁ ଆଣିବାକୁ କହୁଛ ? ଅଣା ତ ପିଲା ନୁହେ ।

ରୁକ୍ମଣୀ ଉତ୍ତର ଦେଇ ପାରିଲେ ନାହିଁ । କାନ୍ଦିବାକୁ ଲାଗିଲେ । ସତେ କଣ ମନରେ ଅଛି ? ଯାହା ମୁଁ କରି ସାରିଛି ସେଥିପାଇଁ ନରକରେ ବି ମୋର ସ୍ଥାନ ନାହିଁ ।

ରଘୁନାଥ ତାଙ୍କର ଆଖିର ଲୁହ ଦେଖିବାକୁ ପାଖରେ ନ ଥିଲେ । ମନର ଦୁଃଖ ବା ଜାଣିବେ କିପରି ?

ରୁକ୍ମଣୀ ସବୁ ବୁଝି ପାରନ୍ତି । କରିବେ କଣ ? କେଉଁ ସାହସରେ ସେ କହିବେ, ଅଣାର କୌଣସି ଦୁଃଖ ହେବ ନାହିଁ ? ତାଙ୍କ ପାଖରେ କହିବାକୁ ସାହସ ନାହିଁ । ସେ ତ ସେଇ ରୁକ୍ମଣୀ ଯେ ଦିନେ ଅଣାକୁ ସୁନାହାର ଦେବାର ଦେଖି ରଘୁନାଥଙ୍କ ଉପରେ ଅଭିମାନ କରିଥିଲେ । ମନର ସିନା ପରିବର୍ତ୍ତନ ହୋଇଛି, ଶରୀରର ସିନା ପରିବର୍ତ୍ତନ ହୋଇଛି, ନାମର ତ ପରିବର୍ତ୍ତନ ହୋଇ ନାହିଁ ? ତଥାପି ସେ ଅନେକଥର ଧୋବଣୀ ହାତରେ ଅଣା ପାଇଁ ସାବିତ୍ରୀଙ୍କ ନିକଟକୁ ଦାମିକା ଗହଣା ପଠାଇ ଦେଇଛନ୍ତି । ସାବିତ୍ରୀ ମନ କଷ୍ଟରେ ସେ ସବୁ ଫେରାଇ ଦେଇ କହିପଠାଇଛନ୍ତି, ଗହଣା କଣ ହେବ ? ଯାହା ପାଇଁ ଏତେ କଥା ସେ ତ ନାହିଁ । ସେ ଯଦି ଅସେ, ଅଣା ଯେବେ ତମର ବୋହୂ ହୋଇ ତମ ଘରକୁ ଯାଏ, ତାକୁ ତେମେ ତମ ଗହଣା ସେଠି ପିନ୍ଧାଇଦେବ ।

ରଘୁନାଥ ଥରେ ଏ ଖବର ଶୁଣି ସାବିତ୍ରୀଙ୍କୁ ପ୍ରଶଂସା କରି ପ୍ରକାଶ୍ୟରେ କହିଲେ ସାବିତ୍ରୀ ଠିକ୍ କରିଛନ୍ତି । ଫେରାଇ ଦଅନ୍ତେ ନାହିଁ ? କିଏ ଜାଣିଛି ସେ ଗହଣାରେ ଔଷଧ ଅଛି କି ନାହିଁ ? ଅଣା ଯଦି ପାଗଳ ହୋଇ ନବୀନ ପରି ଲୁଅକୁ ପଳାଏ, ତାଙ୍କର ନିନ୍ଦା, ମୋର ନିନ୍ଦା ।

ରୁକ୍ମଣୀ ଏ କଥା ଶୁଣି ମୁହଁ ବୁଲାଇ ଆଖିରୁ ଲୁହ ପୋଛିଲେ ।

ଘନଶ୍ୟାମଙ୍କ ଘରେ ଆଖି ପଡ଼ୁ । ସେ ଯେପରି ଥିଲେ ସେପରି ଅଛନ୍ତି । ଥଟ୍ଟା ନକଲ କରିବା ବ୍ୟତୀତ ଆଉ କିଛି ଜାଣନ୍ତି ନାହିଁ । ତାଙ୍କ ଜୀବନର ନୀତି ହେଉଛି, ସଂସାରେ ଥିବ ଯେତେ ଦିନ, ଆନନ୍ଦ କରୁଥିବ ମନ । ସେ କହନ୍ତି, ଜଗତରେ ଯାହା କରିବ ତହିଁରେ ଧନର ପ୍ରୟୋଜନ । ଗୋଟିଏ ଦ୍ରବ୍ୟ କେବଳ ବିନା ଖର୍ଚ୍ଚରେ ମିଳେ, ତାହା ହେଉଛି ମନର ଆନନ୍ଦ । ମନକୁ ଯେ କୌଣସି ଅବସ୍ଥାରେ ଆନନ୍ଦିତ ରଖିଲେ ସେ ନିଶ୍ଚିନ୍ତ । ସେ ଜାଣନ୍ତି ଦୁଃଖ କଲେ ଲାଭ ନାହିଁ, କ୍ଷତି । କେଇଦିନ ପାଇଁ ସଂସାରରେ ରହିବା ଯେ ଏତେ ଦୁଃଖ ? ସବୁ ଅବସ୍ଥାରେ ମନ ଖୁସି କରିବା ବିଧେୟ । କେତେକଙ୍କ ମତରେ ବିଶେଷତଃ ତାଙ୍କ ସ୍ତ୍ରୀଙ୍କ ମତରେ, ଘନଶ୍ୟାମ ଓଲୁ, ଅଲସୁଆ, ନିଶ୍ଚିନ୍ତ ।

ଦିନକୁ ଦିନ ଗ୍ରାମର ଅଧୋଗତି ଦେଖି ମଧ୍ୟ ସେ କିଛି କହି ପାରନ୍ତି ନାହିଁ । ତାର କାରଣ ସେ ଜାଣନ୍ତି ଗ୍ରାମ ବଡ଼ ଲୋକର ସଙ୍ଗୀ । ତାକୁ କହିଲେ କୌଣସି ଲାଭ ହେବ ନାହିଁ, ସେ ମାନିବ ନାହିଁ । ଯାହାର ସାହା ନିଜେ ରାଜା, ତାର କାହାକୁ ଖାତିର ? ଯଦି ସ୍ତ୍ରୀ ବାରମ୍ବାର ଗ୍ରାମର କଥା କହି ବିରକ୍ତ କରନ୍ତି ସେ ଥଟ୍ଟା କରି କହିଥାନ୍ତି, ଆଗୋ, ଆମର ଆଉ ଭାବନା କଣ ? ମନ୍ତ୍ରୀ ମଲେଣି, ପୁଏ ଆମର ମନ୍ତ୍ରୀ । ତେମେ ମନ୍ତ୍ରୀଙ୍କ ମା । ଆଉ ମୁଁ, ମୁଁ ତ ତାଙ୍କର ବାପ । ଏକାଥରେ ଅଧା ସ୍ୱର୍ଗକୁ ଉଠିଯିବା । ତେମେ ଯଦି ମୋର ଗୋଡ଼ ଧରିଥିବ ତମୁକୁ ବି ସାଥିରେ ଓଟାରି ନେଇଯିବି ।

ମନ୍ତ୍ରୀ ମଲେ । ରାଜ୍ୟର ଭାର ପଡ଼ିଲା ବୁଢ଼ୀ ରାଣୀଙ୍କ ଉପରେ । ମନ୍ତ୍ରୀ-ନିର୍ବାଚନ ନିମନ୍ତେ ସେ ଅନ୍ୟାନ୍ୟ କର୍ମଚାରୀଙ୍କୁ ଆଦେଶ ଦେଲେ । କର୍ମଚାରୀଗଣ ବିଶେଷତଃ ସୈନ୍ୟାଧ୍ୟକ୍ଷ, ରଘୁନାଥଙ୍କୁ ମନୋନୀତ କଲେ । ରଘୁନାଥ ପୁତ୍ରର ନିରୁଦ୍ଦେଶ ନିମନ୍ତେ ଅସ୍ୱୀକାର କରିବାରୁ ମନ୍ତ୍ରୀ ନିର୍ବାଚନ ପ୍ରସଙ୍ଗ କିଛି ଦିନ ନିମନ୍ତେ ରହିତ କରାଗଲା । ନିଜେ ରାଣୀ ରାଜ୍ୟର ଖବର ଉତ୍ତମ ଭାବରେ ବୁଝିବାକୁ ଲାଗିଲେ । ସେ ଭାବିଲେ, ତାଙ୍କର ପୁତ୍ର ବାଳକ । ରାଜ୍ୟ ଭାର ଗ୍ରହଣ କରିବାକୁ ଏବେ ମଧ୍ୟ ଅକ୍ଷମ ।

ଦେଶର, ବିଶେଷତଃ ଗଡ଼ର ଭଲ ମନ୍ଦ ବିଷୟରେ ଭାବିବାର କଥା । ମନ୍ତ୍ରୀଙ୍କର ମୃତ୍ୟୁ ପରେ ଲୋକେ କିଏ କେତେ ପ୍ରକାର କଥା କହିଲେ । ଅନେକଙ୍କ ଧାରଣା ନିଜେ ମନ୍ତ୍ରୀ ମନକୁ ମରି ନାହାନ୍ତି ଯମର ଡାକରାରେ । ସେ ମରାଇଛନ୍ତି ।

ଆଗରୁ ରୋଗର ନାମ ଗନ୍ଧ ଶୁଣା ନ ଥିଲା । ହଠାତ୍ ଦର୍ପଣେ ସକାଳୁ ଶୁଣାଗଲା, ମନ୍ତ୍ରୀ କାଲି ରାତିରେ ଚାଲିଗଲେ ।

କାରଣ ବୁଝି ହେଲା ନାହିଁ । ହଠାତ୍ ବାତ ରୋଗ ଧରିଲା । ସେଥିରେ ତାଙ୍କର ଜୀବନ ଶେଷ ହେଲା ।

ମନ୍ତ୍ରୀଙ୍କର ମୃତ୍ୟୁ ପରେ ତାଙ୍କ କୁଟୁମ୍ବର କାହାରିକୁ କେହି ଦେଖି ନାହିଁ । ପଚାରିବାରୁ ଜଣାଗଲା, ମନ୍ତ୍ରୀଙ୍କର ମୃତ୍ୟୁପରେ ତାଙ୍କର ବୃଦ୍ଧା ସ୍ତ୍ରୀ ଆତ୍ମହତ୍ୟା କଲେ । ଏକମାତ୍ର କନ୍ୟାକୁ ତାର ଶାଶୁ ଘରକୁ ରାତାରାତି ପଠାଇ ଦିଆଗଲା । ତେବେ ମନ୍ତ୍ରୀଙ୍କର ସଂସ୍କାର କରିବାରେ କୌଣସି ଆଡ଼ମ୍ବର ନ କରାଗଲା କାହିଁକି ? ଉଭୟଙ୍କୁ ଦାହ କରିବା ସମୟରେ ଅଗ୍ନି ସଂଯୋଗ କରି ସାରି ଲୋକଙ୍କୁ ସମ୍ବାଦ ଦେବାର କାରଣ କଣ ?

ଲୋକେ କହିଲେ ଏଥିରେ ରହସ୍ୟ ଅଛି । କେହି କହିଲା, 'ସେ ଦେଖିଛି ସେଦିନ ରାମ କାହିଁକି ମନ୍ତ୍ରୀଙ୍କ ଘରୁ ଧଇଁ ସଇଁ ହୋଇ ଚାଲିଯାଉଥିଲା ? ଆଉ ଜଣେ କହିଲା, ସେଇ ରାତିରେ ନିଜେ ରାଜକୁମାର ସେହି ପଥ ଦେଇ ଯାଉଥିଲେ ।

କହିବାକୁ କେହି ସାହସ ନ କଲେ ମଧ୍ୟ ଲୋକେ ପାଞ୍ଚ ସାତ ମେଳ ହୋଇ ଗୁପଚୁପ ଆଲୋଚନା କରୁଥିଲେ । ସେଥିରୁ ଜଣାଗଲା ଯେ କୁସଂସର୍ଗରେ ପଡ଼ି ରାଜକୁମାରଙ୍କ ଚରିତ୍ର ନଷ୍ଟ ହେଲା । ଏଣେ ରାଜକୁମାରଙ୍କ ବଳ ପାଇ ତାଙ୍କର ପ୍ରଧାନ ସଙ୍ଗୀ ରାମର ମୁହଁ ବଢ଼ିଗଲା । ତେଣୁ ସେ ଆଉ ଚନ୍ଦ୍ର ସୂର୍ଯ୍ୟଙ୍କୁ ମାନିଲା ନାହିଁ । ସ୍ୱୟଂ ରାଜକୁମାରଙ୍କୁ ବି ମାନିଲା ନାହିଁ । ଯଦି ରାମ କେବେ ସହରକୁ ବୁଲିବାକୁ ବାହାରେ, ଉଣ୍ଡି ଉଣ୍ଡି ଯାଉଥାଏ କେଉଁଠି କିଏ ସୁନ୍ଦରୀ ନାରୀ ବସିଛି । ସମୟ ଦେଖି ରାଜକୁମାରଙ୍କୁ କହେ ।

ମନ୍ତ୍ରୀଙ୍କର ବିବାହିତା ବିଧବା କନ୍ୟା ତା ଆଖି ଏଡ଼ି ପାରିଲା ନାହିଁ । ରାଜାଙ୍କ ନିର୍ଦ୍ଦେଶ ପାଇ ରାମର ଏଡ଼େ ସାହସ ହେଲା ଯେ ଦିନେ ମନ୍ତ୍ରୀଙ୍କ କନ୍ୟାଙ୍କୁ ନିରୋଳାରେ ଦେଖି ରାଜାଙ୍କର ଗୁଣ ବର୍ଣ୍ଣନା କରି କେତେ ପ୍ରଲୋଭନ ଦେଖାଇ ତାଙ୍କ ପ୍ରତି ଆକୃଷ୍ଟ କରିବାକୁ ଚେଷ୍ଟା କଲା ।

ଏ କଥା ନିଜେ ମନ୍ତ୍ରୀ କନ୍ୟା ମୁଖରୁ ଶୁଣି ରାଗିଥିଲେ । ହଠାତ୍ ଦିନେ ତାଙ୍କର କନ୍ୟା ସଙ୍ଗେ ରାମ ଆଳାପ କରୁଥିବାର ଦେଖି ସେ ବର୍ଚ୍ଛା ହସ୍ତରେ ସେ ସ୍ଥାନରେ ଉପସ୍ଥିତ ହେଲେ । କ୍ରୋଧ ହୋଇ ଦୂରରୁ ରାମ ଉପରକୁ ସେ ବର୍ଚ୍ଛା ନିକ୍ଷେପ କଲେ । କିନ୍ତୁ ତାହା କନ୍ୟାର ହୃଦୟ ଭେଦ କଲା । ବୃଦ୍ଧ ମନ୍ତ୍ରୀ,

ଏପରି ଦୃଶ୍ୟ ସହ୍ୟ କରି ପାରିଲେ ନାହିଁ । ସମର ପଳାୟନ ଦେଖି ସେ ସେହି ଖଡ୍ଗରେ ନିଜକୁ ଶେଷ କରିଦେଲେ । ତାଙ୍କର ସ୍ତ୍ରୀ ଏ ସମସ୍ତ ଘଟଣା ଦେଖି ସେମାନଙ୍କ ପଶ୍ଚାତ୍‌ଗାମିନୀ ହେଲେ । ଏହିପରି ତିନୋଟି ପ୍ରାଣୀଙ୍କର ଜୀବନ-ଶେଷ ହେଲା ।

ରାମ ଏ ସମସ୍ତ ଘଟଣା ଦେଖି ରାଜକୁମାରଙ୍କୁ ଜଣାଇବାରୁ ସେ ମନ୍ତ୍ରୀଙ୍କର ଅନୁଗତ ଭୃତ୍ୟମାନଙ୍କୁ ପ୍ରଚୁର ଧନ ଦେଇ ଘଟଣାଟି ଗୋପନ କରିବାକୁ ଆଦେଶ ଦେଲେ । କହିଲେ, ଯଦି ଏ ଘଟଣା ପଦାକୁ ଫୁଟେ, ସେମାନଙ୍କର ଜୀବନ-ନେବେ । ଭୃତ୍ୟମାନେ ରାଜାଙ୍କର କହିବାମତେ କାର୍ଯ୍ୟ କଲେ । ଜୀବନ ଭୟରେ ଏଡ଼େ ବଡ଼ ଘଟଣାକୁ ପ୍ରକାଶ କଲେ ନାହିଁ । କିନ୍ତୁ କଥା ଛପିଲା ନାହିଁ । ତଥାପି ଦୁଇ ବନ୍ଧୁଙ୍କର ବନ୍ଧୁତ୍ୱ ଭାଙ୍ଗିଲା ନାହିଁ, ବରଂ ବଢ଼ିଲା ।

ରାମ ଆଉ ଘରକୁ ଯା ଆସ କରେ ନାହିଁ । ସୁନ୍ଦରୀ ଖୋଜିବା ଅଭ୍ୟାସଟା ତାର ଦିନକୁ ଦିନ ବଢ଼ିଲା । ରାଜକୁମାରଙ୍କ ଆଗରେ ସେ ସର୍ବଦା ସୁନ୍ଦରୀଙ୍କର ରୂପ ବର୍ଣ୍ଣନା କରେ । ରାଜା ମଧ୍ୟ ତାର ସେ ବର୍ଣ୍ଣନା ଶୁଣିବାକୁ ଭଲପାଆନ୍ତି ।

ପୂର୍ଣ୍ଣିମା ସନ୍ଧ୍ୟା । ଗଗନର ପ୍ରାନ୍ତଦେଶରୁ ଚନ୍ଦ୍ରଦେବ ଧୀରେ ଧୀରେ ଆକାଶ ବକ୍ଷକୁ ଆରୋହଣ କରୁଅଛନ୍ତି । ସମଗ୍ର ଜଗତ୍ ଚନ୍ଦ୍ରଜ୍ୟୋତ୍ସ୍ନା ସ୍ନାତ । ମହାନଦୀର ଶୀର୍ଣ୍ଣ ଅଙ୍ଗ ନବ ଆଲୋକରେ ଆଲୋକିତ, ବିକଶିତ । ସ୍ଥଳେ ସ୍ଥଳେ ପ୍ରସ୍ତର ଖଣ୍ଡର ଆଢ଼ୁଆଳରେ ଅନ୍ଧକାର ନିଜକୁ ଗୋପନ କରି ରଖିଅଛି । ନଦୀ ଗର୍ଭସ୍ଥିତ କାହିଁ ବାଲୁକା ଚଟାଣ ଉପରେ ଜଳଚର ପକ୍ଷୀଙ୍କର ଆନନ୍ଦ କୋଳାହଳ ।

ସୁଲୁସୁଲିଆ ସାନ୍ଧ୍ୟ ସମୀରଣ ସେବନରେ ସେହି ବାଲୁକା ଆସ୍ତରଣ ଉପରେ ଦୁଇଜଣ ଯୁବକ ଇତସ୍ତତ ଭ୍ରମଣ କରୁଅଛନ୍ତି । ପ୍ରଫୁଲ୍ଲ ପ୍ରାଣରେ ବାୟୁ ସେବନ କରୁଅଛନ୍ତି । ନୀରବ ଉଭୟେ, କିନ୍ତୁ ଯହିଁ ସମବୟସ୍କ ଦୁଇ ଯୁବକ ବନ୍ଧୁଙ୍କର ମିଳନ, ତହିଁ ନୀରବତା ତରି ମରୁଥାଏ । ଜଣେ ଯୁବକ ଅନ୍ୟ ଜଣକର ନିକଟକୁ ଆସି କହିଲା, ଆଜି କାହିଁକି ମନରେ ବଡ଼ ସ୍ଫୂର୍ତ୍ତି ଆସୁଛି । ଅଜଣା ଆନନ୍ଦ ମନକୁ ଉନ୍ମତ୍ତ କରୁଛି ।

ଦ୍ୱିତୀୟ ଯୁବକ ଅବନତ ମସ୍ତକ ଟେକି ଥରେ ବାଲୁକା ଚଟାଣର ଶେଷ ପ୍ରାନ୍ତକୁ ଅନାଇଁଲେ । ସ୍ମିତ ହାସ୍ୟ କରି କହିଲେ, ହେବ ର କଥା, ତମପରି ଯୁବକଙ୍କ ପ୍ରାଣରେ ଆନନ୍ଦ ସର୍ବଦା ବିରାଜିତ କରିଥାଏ ।

ନା ମହାରାଜ, ଉପହାସ କରନ୍ତୁ ନାହିଁ । ପ୍ରକୃତରେ ଏ ସାନ୍ଧ୍ୟ ବାୟୁ ସେବନରେ ମନରେ ଆନନ୍ଦ ହେଉଛି । ଏପରି ଆନନ୍ଦ ଜୀବନରେ ଆଉ କେବେ ଅନୁଭବ କରି ନ ଥିଲି ।

କରି ନ ଥିଲ, ଆଉ କରି ନ ପାର ? ଏ ସବୁ ମିଥ୍ୟା ।

ନା ରାଜକୁମାର, ମିଥ୍ୟା ମନେକରନ୍ତୁ ନାହିଁ, ପ୍ରକୃତ କଥା ।

ତେବେ ଶୁଣ, ଯେତେବେଳେ ରାମଚନ୍ଦ୍ର ଏହି ସନ୍ଧ୍ୟା ସମୟରେ ଅଥବା ପ୍ରାତଃ କାଳରେ ନଗରପୁର ଭ୍ରମଣ କରିବାକୁ ବାହାରନ୍ତି, ସେ କଣ ସାଧାରଣ ରାସ୍ତାରେ ଚାଲନ୍ତି ? ନା । ପ୍ରତ୍ୟେକ ଘରର ପଛଆଡ଼େ ପଡ଼ିଥିବା ଗଳି ବାଟରେ ଯାଆନ୍ତି । ଏହା'ର କାରଣ କଣ ? ପ୍ରାତଃ କାଳରେ ଅଥବା ସନ୍ଧ୍ୟା ସମୟରେ ଘରର ଝିଅ ବୋହୂମାନେ ନିତ୍ୟକର୍ମ ସମାପନ କରିବାକୁ ବାରି ପଛଆଡ଼ୁ ପୋଖରୀ କୂଳକୁ ଆସନ୍ତି, ଅଥବା ମହାନଦୀ କୂଳକୁ ଆସନ୍ତି । ରାମଚନ୍ଦ୍ରଙ୍କର ଭ୍ରମଣ କରିବାର ସ୍ଥାନ ଏହି ସମସ୍ତ ଘାଟ । କୌଣସି ସୁନ୍ଦରୀର ସୁନ୍ଦର ମୁଖ ଯଦି ତାଙ୍କର ଆଖି ଆଗରେ ପଡ଼ିଗଲେ କି ଅପୂର୍ବ ଆନନ୍ଦ ମନ ମଧ୍ୟରେ ଜାଗି ଉଠେ ? ସେ ସୁନ୍ଦର ମୁଖ କଣ ଆଜି ସନ୍ଧ୍ୟାର ଚନ୍ଦ୍ରଠାରୁ ସୁନ୍ଦର ଦିଶେ ନାହିଁ ତାଙ୍କୁ ? ଦୂରରେ ଥାଇ ଗଛର ଅଢ଼ୁଆଳରେ ଯୁବତୀର କୋମଳ କଣ୍ଠ ଶ୍ରବଣରେ ରାମଚନ୍ଦ୍ରଙ୍କର ପ୍ରାଣରେ ଯେଉଁ ପ୍ରଫୁଲ୍ଲତା ଆସେ, ସେ ପ୍ରଫୁଲ୍ଲତା କଣ ଏ ସାନ୍ଧ୍ୟ ସମୀରଣର ସୁ ସୁ ଶବ୍ଦରେ ମିଳେ ?

ମହାରାଜ, ଉପହାସ କରୁଛନ୍ତି କାହିଁକି ?

ଶୁଣ, ଶେଷ ହୋଇ ନାହିଁ । ସୁନ୍ଦରୀର ମୁକ୍ତ କୁନ୍ତଳରୁ ଉଡ଼ିଆସି ଗନ୍ଧ ତୈଳର ବାସ ଯେତେବେଳେ ବୁଦା କଡ଼ରେ ଲୁକ୍କାୟିତ ରାମଚନ୍ଦ୍ରଙ୍କର ନାସାରନ୍ଧ୍ର ସ୍ପର୍ଶ କରେ, ସେତେବେଳର ଆନନ୍ଦ ସଙ୍ଗେ ସ୍ୱର୍ଗବାସୀ ଦେବତାଙ୍କର ଆନନ୍ଦ ତୁଳନୀୟ କି ?

ଆଉ ମହାରାଜ, ଅଉ ଲଜ୍ଜିତ କରନ୍ତୁ ନାହିଁ । ମୁଁ ଆଶ୍ଚର୍ଯ୍ୟାନ୍ୱିତ ହେଉଛି ଯେ ଆପଣ ଏ ସମସ୍ତ ବିଷୟରେ ଓସ୍ତାଦ । କିନ୍ତୁ ସନ୍ଦେହ ହୁଏ, ରାଜକୁମାର ହୋଇ କଣ ଜଣେ ସାଧାରଣ ଲୋକପରି ଗଛ ଅଢ଼ୁଆଳରେ ଲୁଚି ଏ ସମସ୍ତ ଦେଖନ୍ତି ? କଦାପି ନୁହେଁ । ଏ ସବୁ ଆପଣଙ୍କର ଅନୁମାନ ମାତ୍ର ।

ଠିକ୍ ବୁଝିଛ, ଏ ସବୁ ମୋର ଅନୁମାନ । ତୁମେ ପ୍ରକୃତରେ ପୂର୍ବ କଥିତ ଦୃଶ୍ୟ ଦେଖି ଯେତେ ଆନନ୍ଦ ଉପଭୋଗ କର, ମୁଁ କେବଳ ସେହି ଦୃଶ୍ୟର ଭାବନାରେ ତାହାଠାରୁ ଅଧିକ ଆନନ୍ଦ ଉପଭୋଗ କରେ । ସାଧାରଣ ପ୍ରଜାର

ସନ୍ତାନ ହେବା ପୂର୍ବ ଜନ୍ମ ତପସ୍ୟାର ଫଳ । ଆଉ ରାଜପୁତ୍ର ହେବା ପାପର ଫଳ । ଯଦି ମୁଁ ରାଜପୁତ୍ର ନୋହିଥାନ୍ତି, ଆଜି ତମରି ସଙ୍ଗେ ସେ ଆନନ୍ଦପ୍ରଦ ଦୃଶ୍ୟ ଦେଖିବାକୁ ବାହାରନ୍ତି ।

ରାଜକୁମାର, ଆପଣ କହୁଛନ୍ତି, ସେ ଦୃଶ୍ୟ ଆନନ୍ଦପ୍ରଦାୟକ ? କିନ୍ତୁ ପ୍ରକୃତ ଘଟଣା ଶୁଣନ୍ତୁ । ଯେତେବେଳେ ବୃକ୍ଷ ଅଢ଼ୁଆଳରେ କିମ୍ବା ବୁଦା ଗହଳରୁ ସୁନ୍ଦରୀର ସୌନ୍ଦର୍ଯ୍ୟ ଦେଖୁଥାଏଁ, ହୃଦୟର ସ୍ପନ୍ଦନ ସମ୍ଭାଳିନେବାକୁ ହୃଦୟକୁ ବାମ ହସ୍ତରେ ଚାପି ଧରିଥାଏଁ । ସେ ସ୍ପନ୍ଦନ ପ୍ରକୃତିର ମେଘମନ୍ଦ୍ର ସମୟର ସ୍ପନ୍ଦନଠାରୁ ବଳିପଡ଼େ । ଅନୁମାନ କରି ପାରୁଛନ୍ତି କି, ସେ ସ୍ପନ୍ଦନ କେଉଁ ନିମନ୍ତେ ? ଚୋରର ଚୋରି କରିବାକୁ ଯାଇ ହୃଦୟରେ ଯେଉଁ ସାହସ ଅବଲମ୍ବନ କରିଥାଏ ସେପରି ସାହସ ମନ ମଧ୍ୟରେ ଥାଏ କେଉଁଠି ? ଚୋରର ଭୟ ତାକୁ ଆଗେଇଯାଇଛି, ତେଣୁ ଭୟ ତାର ସାହସ ହୋଇପଡ଼େ । ଯେତେବେଳେ ସୂର୍ଯ୍ୟୋଦୟ ପୂର୍ବରୁ ପୁଷ୍କରିଣୀର ନିକଟସ୍ଥ ବୁଦା ମଧ୍ୟରେ ହୃଦୟରେ ହସ୍ତ ଚାପି ବସିଥାଏ, କିପରି ମୁହୂର୍ତ୍ତିକ ବର୍ଷଟିଏ ପରି ଲାଗେ ଯଦି ଅନୁଭବୀ ହୋଇଥାନ୍ତେ, ବୁଝି ପାରନ୍ତେ । କେତେବେଳେ ସେ ସୁନ୍ଦରୀ ଆସିବ, ସଙ୍ଗରେ କେହି ଥିବେ କି ନାହିଁ, ମନ ମଧ୍ୟରେ କେବଳ ଏହି ଆନ୍ଦୋଳନ ଲାଗିଥାଏ । ସେ ଆସେ, ଦିନେ ଦିନେ ସଙ୍ଗରେ ତାର ମା ଏବଂ ଆଈ ଥାଆନ୍ତି । ସେଦିନ ନିରାଶ ହୁଏ । ତେବେ ଏକାଥରେ ନୁହେଁ, ଯେତେବେଳଯାଏ ସୁନ୍ଦରୀକୁ ଦେଖିବାକୁ ପାଉଥାଏଁ, ହୃଦୟର ସ୍ପନ୍ଦନ ଭେଦ କରି କି ଏକ ଅପୂର୍ବ ଆନନ୍ଦରେ ପ୍ରାଣ ଉତ୍ଫୁଲ୍ଲ ହୁଏ, କହି ପାରିବ ନାହିଁ । ପ୍ରତ୍ୟେକ ମୁହୂର୍ତ୍ତରେ ସମସ୍ତ ଦେହ ବରଡ଼ା ପତ୍ର ପରି ଥରୁଥାଏ । ଭାବେ ? କିଏ ଦେଖିପକାଇଲା କି ? ଯେଉଁଦିନ ସୁନ୍ଦରୀ କେବଳ ତାର ଆଈ ମାଆଙ୍କ ସଙ୍ଗେ ଆସିଥାଏ, ସେଦିନ ଭୟଟା କେତେକ ପରିମାଣରେ କମିଯାଏ । କାରଣ ବୁଢ଼ୀଙ୍କର ଦେଖିବା ଶୁଣିବା ଶକ୍ତି କେତେକ ପରିମାଣରେ ରହିତ ହୋଇଅଛି । ତଥାପି, ହୃଦୟର ସ୍ପନ୍ଦନ ନିମନ୍ତେ ଦେହ ଡାଳ ପତ୍ର ଦେହରେ ବାଜିଲେ ଯେଉଁ ଶବ୍ଦ ହୁଏ, ସେମାନେ ନଶୁଣନ୍ତୁ ପଛେ, ନିଜେ ଶୁଣି ପାରି ଚମକିଉଠେ । ଚାରିଆଡ଼କୁ ଅନାଇଁ ଅନାଇଁ ଅନିର୍ଦ୍ଦିଷ୍ଟ ଶୂନ୍ୟ ଚକ୍ଷୁରେ ଯଦି କେହି ସେହି ବୁଦାଟି ଆଡ଼କୁ ହଠାତ୍ ଅନାଇଁ ଦିଏ, ସେ ନ ଦେଖୁ ପଛେ ମୁଁ ନିଜେ ସଙ୍କୁଚିତ ହୋଇ ପଛକୁ ଘୁଞ୍ଚିଆସେ । ଯେତେବେଳେ ସୁନ୍ଦରୀ ନିଜକୁ ବୁଦା ଅଢ଼ୁଆଳରେ ଲୁଚାଇ ରଖେ, ନ ଦେଖେଁ ପଛେ, ତୃଷାର୍ତ୍ତ ଯେପରି ମୃଗତୃଷ୍ଣାକୁ ଅନାଇଁ ଥାଏ, ସେହି ବୁଦା ଆଡ଼କୁ ଏକ ଚକ୍ଷୁରେ ଅନାଇଁଥାଏ ପଛରେ ପତ୍ର ଖଡ଼ ଖଡ଼ ହେଲେ ହଠାତ୍ ଚମକି ଅନାଇଁଦିଏ—କେହି ଆସିଗଲା ପରି ? କିନ୍ତୁ କେହି ନାହିଁ, ପବନ ବହିବାରୁ ପତ୍ର ଖଡ଼ ଖଡ଼ ହେଉଛି ।

କିଛିକ୍ଷଣ ନୀରବ ରହି ରାଜକୁମାର କହିଲେ, ମିତ୍ର ରାମ, ସେ ସ୍ପନ୍ଦନ-ଭେଦକର ଯେଉଁ ଆନନ୍ଦ ଅନୁଭବ କର, ତାହା ଆଜି ଏ ପ୍ରକୃତିର ସୌନ୍ଦର୍ଯ୍ୟ-ଅବଲୋକନରେ ପାଇବ ନାହିଁ । ତୁମର ବର୍ଣ୍ଣିତ ଘଟଣା ଶୁଣି କେଉଁ ଯୁବକର ମନ ଓ ବିବେକ ସ୍ଥିର ହୋଇ ରହି ପାରେ ? ଅଚ୍ଛା, ତୁମ ମୁହଁରୁ ଶୁଣି ମୋରି ନିଜର ମନରେ ଏ ନୂତନ ଭାବ ଜନ୍ମିଛି । ତୁମେ ଅସ୍ଥିର ନହୁଅ କିପରି ?

ଅସ୍ଥିର ହୁଏ ନାହିଁ ?

ତେବେ, ଆକ୍ରମଣ ?

ଏତେ ଅଳ୍ପ ଦିନର କଥାଟା ଭୁଲିଗଲ ମହାରାଜ ?

ଏଁ ?

ମନ୍ତ୍ରୀଙ୍କର ମୃତ୍ୟୁର କାରଣ କିଏ ? ତାଙ୍କ ବିଧବା କନ୍ୟାର ମୃତ୍ୟୁ ପାଇଁ କିଏ ଦାୟୀ ? ଆପଣ ଭୁଲିଯାଇ ପାରନ୍ତି, ମୁଁ ପାରିବି ନାହିଁ । ଓଃ, ସେ କି ଦୃଶ୍ୟ ! ସେଇଥି ନିମନ୍ତେ ସାହସ ହୁଏ ନାହିଁ ।

ସେ ତ ଆଉ ମନ୍ତ୍ରୀ କନ୍ୟା ନୁହେଁ ଯେ ଏତେ ଡର ।

ଅବଶ୍ୟ ଠିକ୍ କହିଛନ୍ତି । ପ୍ରକୃତିରେ ତାର କେହି ନାହାନ୍ତି । ବାପ, ଭାଇଙ୍କ ଆଜି କେହି, ତଥାପି—

ତେବେ ତ ସୁବିଧା ।

ନା ମହାରାଜ, ବାଧା ଯେ ଅଛି । ତା ଛଡ଼ା ସେପରି ସୁନ୍ଦରୀକୁ ଆକ୍ରମଣ କରିବାକୁ ଇଚ୍ଛା ହୁଏ ନାହିଁ । ସେ ତ ମୋର ଯୋଗ୍ୟ ନୁହେଁ, ସେ ଆପଣଙ୍କର ଯୋଗ୍ୟ ।

ରାଜକୁମାରଙ୍କୁ ନୀରବ ଦେଖି ରାମଚନ୍ଦ୍ର ପୁନର୍ବାର କହିଲା, ସେ ଆପଣଙ୍କର ଯୋଗ୍ୟ ।

କିଏ ସେ ? କହୁଛ ତାର କେହି ନାହିଁ ?

କେହି ନାହିଁ କିନ୍ତୁ ସମସ୍ତେ ଅଛନ୍ତି । ତାର ସ୍ୱାମୀ—

ତାର ସ୍ୱାମୀ ଅଛି ?

କଥାଟି ଭଲ କରି ଶୁଣନ୍ତୁ, ତା ପରେ କହିବେ ।

ଘାଟପଡ଼ାରେ ସୁନ୍ଦର ବହିଦାରଙ୍କର ଏକମାତ୍ର କନ୍ୟା ସେ । ସୁନ୍ଦର ବହିଦାରଙ୍କ ମୃତ୍ୟୁ ପରେ ତାର ଜନ୍ମ । ନବୀନକୁ ଚିହ୍ନନ୍ତି ତ ? ନବୀନ ପିଲା ଦିନରୁ ମୋର ସାଥୀ ଥିଲା, ଆପଣଙ୍କର ମଧ୍ୟ । ଦେଖିଛନ୍ତି ତ ପିଲାଦିନୁଁ କପରି ନବୀନର ଧର୍ମ ଅଡ଼କୁ ମନ ? କାଳେ ବାବାଜୀ ହୋଇଯିବ ବୋଲି ତାହାର ବାପା ତାକୁ ବାହା କରି ଦେଲେ ।

କିଏ, ରଘୁନାଥ ବହିଦାରେ ? ସେ ତ ମନ୍ତ୍ରୀ ହେବେ ବୋଲି ବା କହି ପଠାଇଲେ; କିନ୍ତୁ ସେ ନାହିଁ କଲେ କାହିଁକି କେଜାଣି ?

ତାର କାରଣ ନବୀନ ଅନେକ ବର୍ଷ ହେଲା ଜଣେ ବୁଢ଼ା ବାବାଜୀଙ୍କ ସଙ୍ଗେ ଚାଲିଯାଇଥିବାରୁ ତା ବାପାଙ୍କ ମନରେ ସୁଖ ନାହିଁ । କୋଉ ଏବେ ସମ୍ପତ୍ତିର ଅଭାବ ଅଛି ଯେ ମନ୍ତ୍ରୀ ହେବାକୁ ଆସିବେ ? ନବୀନ ଘର ଛାଡ଼ି ଚାଲିଗଲା । ଅଣା ସେତେବେଳେ ପିଲା ଥିଲା ।

ଅଣା କିଏ ?

ସେଇ ସୁନ୍ଦରୀ, ନବୀନର ବିବାହିତା ସ୍ତ୍ରୀ । ପିଲାଦିନୁ ତାକୁ ମୁଁ ଚିହ୍ନେ । ସ୍ନେହ କରେ, ତା ସଙ୍ଗେ ଥଟ୍ଟା ନକଲି ହୁଏ । ସେ ମୋତେ ରାମ ଭାଇ ବୋଲି ଡାକେ । ଯୁବତୀ ହେବାର ଅନେକ ଦିନ ଯାଏ ମୁଁ ତାକୁ ଦେଖି ନ ଥିଲି । ସନ୍ଦେହ କରେଁ, ମୁଁ ତାର ମନେ ଅଛି କି ନାହିଁ ।

ନିଶ୍ଚୟ ମନେ ଅଛି ।

କେଜାଣି ?

ସେ କଣ ଏଡ଼େ ସୁନ୍ଦରୀ ? ଯଦି ତାକୁ ପିଲାଦିନେ ଏତେଥର ଦେଖିଛ କାହିଁ ମତେ ତ କେବେ ତା କଥା କହିନାହଁ ।

କହିବାର ସୁଯୋଗ ପାଏ ନାହିଁ କି କହିବା ନିତାନ୍ତ ଆବଶ୍ୟକ ମନେ କରେ ନାହିଁ ।

ଏବେ ଏଡ଼େ ଅବଶ୍ୟକ ମନେକଲ କାହିଁକି ?

ସେ ସୁନ୍ଦରୀ ବୋଲି, ଆପଣଙ୍କ ଯୋଗ୍ୟ ବୋଲି । ମୋର ଇଚ୍ଛା ମୁଁ ତାକୁ ଆପଣଙ୍କୁ ଉପହାର ଦେବି ।

ସତେ ରାମ ? ପାରିବ ? ତୁମେ ମୋତେ ଯାହା ମାଗିବ ମୁଁ ଦେବି । ଅଣାକୁ ପ୍ରାସାଦକୁ ଆଣିବ । କିନ୍ତୁ, କିନ୍ତୁ ମାଆ ତ ଜାଣିବେ ? ନା—

ସେ ଜାଣିବେ କାହିଁକି ? ଯଦି ଆପଣଙ୍କର ସାହାଯ୍ୟ ପାଏଁ ମୋର ରଜାଙ୍କୁ, ମୋର ବନ୍ଧୁଙ୍କୁ, ସେ ଉପହାର ଦେବାକୁ ମୁଁ ସକ୍ଷମ ହେବି । ଲୋକେ ଯାହାକୁ ଭୂତ ଘର ବୋଲି କହନ୍ତି ସେଇଟି ହେବ ରାଜପୁତ୍ରଙ୍କର ବାସର ଘର । ଭୂତ ପ୍ରେତ କେହି ନାହିଁ । ଥିଲେବି ଗୁଣିଆ ଡାକି ତାକୁ ତଡ଼ିବି ।

ସେଇଟି ଭଲ ହେବ । କିନ୍ତୁ ପାରିବ ତ ?

ଯଦି ସାହାଯ୍ୟ ପାଏଁ ଅବଶ୍ୟ ପାରିବି ।

ଭୟ ନାହିଁ, ଯେପରି ସାହାଯ୍ୟ ଲୋଡ଼ୁଛ ମୁଁ ଦେବାକୁ ପ୍ରସ୍ତୁତ । ରାତି ବେଶୀ ହେଲାଣି । ଏବେ ଚାଲ ନହରକୁ ଯିବା । ନୌକାରେ ଆଉ ସବୁ ବିଷୟ କଥାବାର୍ତ୍ତା ହେବା ।

ରାଜକୁମାରଙ୍କର ଆଦେଶ ମୋର କର୍ତ୍ତବ୍ୟ । ଚାଲନ୍ତୁ, ନଦୀ ମଧ୍ୟରେ ରାତିରେ ବେଶୀ ବେଳ ରହିବା ଅନୁଚିତ ।

ଉଭୟେ ବାଲି ଚଟାଣର ଅନ୍ୟ ଦିଗକୁ ଗଲେ । କୂଳରେ ଛୋଟ ସୁସଜ୍ଜିତ ନୌକାଟିଏ ରଖାହୋଇଥିଲା । ଉଭୟେ ନୌକା ଆରୋହଣ କଲେ । ରାମଚନ୍ଦ୍ର କାତ ପକାଇ ନୌକା ଚଲାଇଲା । ମନରେ ତାର ଫୁର୍ତ୍ତି, ଆନନ୍ଦ ଓ ଗର୍ବ । ସେ ଭାବିଲା, ରାଜପୁତ୍ର ମୋର ହାତ ମୁଠାରେ, ଯାହା କହିବି ସେ କରିବେ । କାହାକୁ ମୋର ଡର ? ଆଶା ସାମାନ୍ୟ ପ୍ରକାର ହିଁ ଅଛି । ବଳେଇ ଯିବ ନାହିଁ ।

ଘରଟି ଦୀପର ଆଲୋକରେ ଉଜ୍ଜ୍ୱଳ । ପ୍ରସ୍ଫୁଟିତ ପଦ୍ମ ଫୁଲ ପରି ତାଙ୍କର ସ୍ନେହର ଆଶା, ପ୍ରାଣର ଆଶା ଘରଟିକୁ ଅଧିକ ଉଜ୍ଜ୍ୱଳ କରୁଛି । ତାର ସେଇ ସୁନ୍ଦର ମୁଖଟି ଦେଖିଲେ ବିଷାଦ ଦୂର ହୋଇ ସାଦନୀଙ୍କ ମନରେ ଆନନ୍ଦ ଜାଗି ଉଠୁଛି । ସଙ୍ଗେ ସଙ୍ଗେ ପୁଣି ଆନନ୍ଦକୁ ଗୋଡ଼ରେ ଦଳି ବିଷାଦ ମୁଣ୍ଡ ଟେକୁଛି । ଯାତନାରେ ହୃଦୟ ମଥିତ ହେଉଛି । ଆଶା ପରି କନ୍ୟାର ଜନନୀ ସେ, ତେଣୁ ଗର୍ବିତା । ଗର୍ବ କ୍ଷଣକ ପାଇଁ ମାତ୍ର ସାଦନୀଙ୍କର ମଥିତ ମନକୁ ସତେଜ କରୁଛି । ପରକ୍ଷଣରେ ସେ ଭାବୁଛନ୍ତି, ଆଶାର ଭବିଷ୍ୟତ ଜୀବନ କଥା । ଗର୍ବ, ଆନନ୍ଦ ଉଭେଇ ଯାଉଛି । ସ୍ନେହ ଆଶାର କୋମଳ ମୁଖ ଚୁମ୍ବନ କଲେ । ଭଗ୍ନ ହୃଦୟରୁ ପଦଟିଏ ବାହାରି ଆସିଲା, ଆହା ! କ୍ଷଣକ ମଧ୍ୟରେ ସେ ଶବ୍ଦ କେଉଁଆଡ଼େ ଉଡ଼ିଗଲା । କିନ୍ତୁ ହୃଦୟର ବେଦନା ଟିକେ ମାତ୍ର କମିଲା,

ନାହିଁ । ଗୋଟିଏ ଶବ୍ଦରେ ମାନବ ହୃଦୟର ବେଦନା ପ୍ରକାଶ ପାଏ, ସେହି ପଦକରେ ପୂର୍ଣ୍ଣ ରହିଥାଏ କେତେ ସୁଖ ଦୁଃଖର ସ୍ମୃତି । ଅତୀତର ଆନନ୍ଦ କିମ୍ବା ନିରାନନ୍ଦର ଘଟଣା । ମାତ୍ର ହୃଦୟ-ସଞ୍ଚିତ ଭବିଷ୍ୟତର ଦୁଃଖାଙ୍କାର ସେଥିରୁ ଜାଗି ଉଠୁଥିଲା । ଶବ୍ଦର ଜୀବନ ମୁହୂର୍ତ୍ତେ ରହି ପୁଣି ଲୋପ ହେଲା, କିନ୍ତୁ ତହିଁରୁ ବହିର୍ଗତ ଭାବ ଲୁପ୍ତ ହେଲା ନାହିଁ, ଘଟିଲା ଘଟଣା ହଜିଗଲା ନାହିଁ ।

ସାବିତ୍ରୀ ଆଶାର ପିଲାବେଳେ ପେପର ମୁଖ ଚୁମ୍ବନ କରୁଥିଲେ, ହସ୍ତ ଚୁମ୍ବନ କରୁଥିଲେ, ସେହି ଦୁଃଖଦାୟିନୀ ରଜନୀରେ ମଧ୍ୟ ସେହିପରି ସେ ଆଶାକୁ କେତେ ଗେଲ କଲେ । ଆଶା ବଡ଼ ଦୁନିଆଁ ଆଖିରେ ମାତ୍ର, ସ୍ନେହମୟୀ ଜନନୀ ଆଖିରେ ସେ ପିଲା । ସ୍ନେହ ସ୍ୱର୍ଗୀୟ, ପାର୍ଥିବ ନୁହେଁ । ଜନନୀ ପାର୍ଥିବ କିନ୍ତୁ ତାର ପ୍ରେମ ସ୍ୱର୍ଗୀୟ । ଆଶା ଯେତେ ବଡ଼ ହେଉ, ଯେତେ ସୁନ୍ଦରୀ ହେଉ, ସାବିତ୍ରୀଙ୍କର ସେ କେବଳ ପେଟର ଝିଅ ଛୁଆଟି ।

ସାବିତ୍ରୀ ଭାବୁଛନ୍ତି, ତାଙ୍କର କନ୍ୟା ଆଶାଟି ଚିନ୍ତାଶୂନ୍ୟ ହୋଇ ଶୋଇଛି । ସେ କିଛି ଜାଣେ ନାହିଁ, କିଛି ବୁଝେ ନାହିଁ । କେବଳ ଜାଣେ କପଟ ସ୍ନେହ କରିବାକୁ ହେବ ତାର ମା ଓ ଆଈ ମାଆଙ୍କୁ, କପଟ କୋପ କରିବାକୁ ହେବ ଦୁର୍ଯ୍ୟୋଧନ କି ରାବଣ ଉପରେ । ଆଶା ବୁଝେ କେବଳ ଅନ୍ୟର ଦୁଃଖ ।

ନବୀନର ପଳାୟନ ପାଇଁ କିଏ ଦାୟୀ ? ବୁଢ଼ୀ କହନ୍ତି, ଦାୟୀ ତାର ସାବତ ମା । କାରଣ ସାବତ ମାଆର ଅବହେଳା ଓ ଅନାଦର ପାଇଁ ଘରୁ ତାର ମନ ଛାଡ଼ିଗଲା । ସଂସାରରୁ ମଧ୍ୟ ମନ ଛାଡ଼ିଗଲା । ଯେଉଁ ଘରେ ମା ନାହିଁ, ସେ ଘରେ ସାହା ନାହିଁ । ସେ ଘର ଶୂନ୍ୟ । ମା ଥିଲେ ସେ ଘର ଛାଡ଼ି ଚାଲିଯାଇ ନ ଥାନ୍ତା, ମାର ପ୍ରେମ ତାକୁ ବାନ୍ଧି ରଖିଥାନ୍ତା ।

ବସିଆ ଦିଏ ଅନ୍ୟ ଜଣଙ୍କର ଦୋଷ । ସେ କହେ, ବୁଢ଼ା ବାବାଜୀ ତାକୁ ଶିଖେଇ ନେଇଗଲେ । ପିଲାଦିନୁ ଏପରି ସେ ଅନେକ କଥା ଶୁଣିଛି । ବାବାଜୀମାନେ ଲୋକଙ୍କୁ ଶିଖାଇ ନେଇ ଯାଆନ୍ତି । ସେ ଏତେ କ୍ରୁଦ୍ଧ ଯେ, ପ୍ରତିଜ୍ଞା କରିଛି ଯଦି ସେ ବୁଢ଼ା ବାବାଜୀକୁ କେବେ ଦେଖେ ତ ତାର ପ୍ରାଣ ନ ନେଇ ଛାଡ଼ିବ ନାହିଁ । ପାପ ହେବ, ହେଉ । ପ୍ରତିହିଂସା ସାଧନ କରିବ ।

ସାବିତ୍ରୀ କାହାକୁ ଦୋଷ ଦେବେ ? ନିଜ କପାଳର ଦୋଷ, ନିଜର ଦୋଷ । ତାଙ୍କର ମାନ ରକ୍ଷା କରିବାକୁ ନବୀନ ହାତରେ ଆଶାର ହାତ ଛନ୍ଦିବାର ପ୍ରସ୍ତାବରେ ସେ ସାଥି ଦେଇଥିଲେ । ସେତେବେଳେ ନବୀନର

ଉଦାସ ଢଙ୍ଗ ଜଣାପଡ଼ୁଥିଲା । ଶାଶୂ ମଧ୍ୟ କହୁଥିଲେ ଭଲ ହେବ ନାହିଁ । ତଥାପି ସ୍ୱାମୀଙ୍କର ପରମ ବନ୍ଧୁଙ୍କର ଅନୁରୋଧ ଭାଙ୍ଗି ନ ପାରି ସେ ରାଜି ହୋଇଥିଲେ ।

ଏବେ ସେ ବୃଦ୍ଧାଙ୍କୁ କହିଲେ, ସବୁ ଦୋଷ ମୋର । ବୃଦ୍ଧାଙ୍କର ମୁଖ ଭଙ୍ଗୀ ପରିବର୍ତ୍ତିତ ଦେଖାଗଲା । ତଥାପି ସାବିତ୍ରୀଙ୍କ ମସ୍ତକ ଉପରେ ହସ୍ତ ସ୍ଥାପନ କରି ସେ କହିଲେ, ନାଇଁ ମା, ତୋର କିଛି ଦୋଷ ନାହିଁ । ସବୁ ଆମର କପାଳର ଦୋଷ । ଲକ୍ଷ୍ମୀ ମା ମୋର, ଏ ଘରେ ତୋର ପାଦ ପଡ଼ିଲା ଦିନଠୁଁ ଯାହା କିଛି ବିପଦ ପଡ଼ୁଛି, ସେଥିପାଇଁ ତୋର ଦୋଷ ଦେଇ ଆସିଛି । ତୋ ଉପରେ କେତେ ଅତ୍ୟାଚାର କରିଛି । ଆଉ ତୋର ଦୋଷ ଦେବି ନାଇଁ ମା, ବଞ୍ଚିଥିବାଯାଏ ଆଉ ତୋର ଦୋଷ ଦେବି ନାହିଁ । ବୁଝି ପାରୁଛୁ, ଏଥର ଚିତ୍ରଗୁପ୍ତର ଦୃଷ୍ଟି ମୋ ପାଞ୍ଜି ଉପରେ ପଡ଼ିଲାଣି । ଆଉ କେତେ ଦିନ ତୋ ପାଖରେ ରହିବି ? ଦିନେ ତ ସ୍ନେହରେ ପଦେ କଥା କହି ନାହିଁ ତତେ । ଏ ଘରେ ଦିନେ ତ ତୋର ଜୀବନ ସୁଖରେ କଟିଲା ନାହିଁ । ମନରେ ଧରିବୁ ନାଇଁ । ଏ ବୟସରେ କେବଳ ପୂର୍ବ ପୁରୁଷଙ୍କର ପ୍ରେତାତ୍ମାମାନେ ମୋ ଆଖି ଆଗକୁ ଆସୁଛନ୍ତି । ଚେଇଁ ଥିବାବେଳେ ମଧ୍ୟ ଦେଖୁଛି । ସ୍ୱପ୍ନରେ ମଧ୍ୟ ଦେଖୁଛି । ସେମାନେ କହନ୍ତି, ଏତେ ଦିନ ମୁଁ ଏଇ ନରକ କୁଣ୍ଡରେ ଯାତ୍ନା ହେଉଛି କେବଳ ତୋ ଉପରେ ଅତ୍ୟାଚାର କରିଛି ବୋଲି । ତୁ କ୍ଷମା ନ କଲେ କିଏ ଆଉ କ୍ଷମା କରିବ ? କଲ୍ୟାଣ କରୁଛି ମା, ତୋର ସାଇଁ ଫେରି ଆସୁ, ଆଶା ମୋର ସୁଖରେ ଘର କରୁ । ଆଉ ଦୋଷ ଦେବି ନାଇଁ ମା ତୋର । ଦୋଷ ଦେବାକୁ ବସିଲେ କିଏ ଯେପରି ଆଖି ଦେଖାଇ କହୁଛି, ସାବଧାନ, ଯିଏ ତୋର ଏତେ ସେବା କରୁଛି, ତାର ଦୋଷ ? ସବୁ ଅଦୃଷ୍ଟର ଦୋଷ ।

ବୃଦ୍ଧାଙ୍କର ଚକ୍ଷୁ ଆର୍ଦ୍ର ହୋଇ ଉଠିଲା । ସାବିତ୍ରୀ ତାଙ୍କର ବାକ୍ୟ ସହି ପାରିଲେ ନାହିଁ । ବୃଦ୍ଧାଙ୍କର ଚରଣ ତଳେ ମସ୍ତକ ରଖି ବାଳିକାଟି ପରି କାନ୍ଦି କହିଲେ, ମୁଁ କିଏ ମା, ମୋ ଶାଶୁଙ୍କୁ କ୍ଷମା କରି ପାରିବି ? ସେ ଅଧିକାର ମୋର ନାହିଁ । ଯେଉଁ ଅନ୍ତର୍ଯ୍ୟାମୀଙ୍କଠାରେ ସେ ଶକ୍ତି ଅଛି, ସେହି ଏକା କ୍ଷମା କରି ପାରନ୍ତି ।

ବୃଦ୍ଧାଙ୍କର ମନର ପରିବର୍ତ୍ତନରେ ସାବିତ୍ରୀଙ୍କର ଆନନ୍ଦ ହେଲା ନାହିଁ, ବରଂ ସେ ଦୁଃଖିତ ହେଲେ । ଆଶା ତାଙ୍କର କପର ସୁଖୀ ହେବ ସେଥିପାଇଁ ଭଗବାନଙ୍କୁ ପ୍ରାର୍ଥନା କଲେ ।

ଆଶାର ମନ ମଧ୍ୟରେ ଯେଉଁ ଝଟିକା ଅବିରତ ବହୁଛି, କିଏ ତାହା କଳନା କରି ପାରିବ ? କେହି ସଙ୍ଗିନୀ ନାହାନ୍ତି ଯାହାକୁ କହିଲେ ତାର

ଦୁଃଖ ଲାଘବ ହେବ । କର୍ଣାଥ ସମୟରେ ମାତୃ କୋଳରେ ଶାୟିତା ଆଶାର ମୁଖାବଲୋକନ କଲେ କଣ ଦେଖାଯିବ ? ସମୟ ସମୟରେ ତାହା ରକ୍ତ ବର୍ଣ୍ଣ ଧାରଣ କରୁଛି । ଲଜ୍ଜାରେ ଲଳନାର ମୁଖ ରକ୍ତ ବର୍ଣ୍ଣ ହୁଏ । ଆଶା ସ୍ୱପ୍ନା, ତାର କେଉଁ ଲଜ୍ଜା ? ଜେତେବେଳେ ସେହି ରକ୍ତ ବର୍ଣ୍ଣ ଅନ୍ତର୍ହିତ ହୋଇ ପାଣ୍ଡୁର ଦେଖାଯାଉଛି । ହତାଶା ! ଆଶା ସୁନ୍ଦରୀ ବାଳିକା । ସେ କାହିଁ ହତାଶ ? ଲକ୍ଷ୍ୟ କରି ଦେଖିଲେ ଜଣାଯାଏ, ସୁନ୍ଦର ମୁଖଟି ମଳିନ ପଡ଼ିଗଲାଣି । କେଉଁ ଦୁଃଖରୁ ସେହି ମଳିନତା ?

ବାଳିକାର ମନ ମଧ୍ୟରେ ପ୍ରବେଶ କରି ଦେଖିଲେ ଜଣାଯିବ, ବାହ୍ୟ ରୂପରୁ ଦେଖିଲେ ଯେପରି ସରଳା, ଯେପରି ମାତୃଭକ୍ତ ବୋଲି ଜଣାଯାଏ, ମନ ତାର ସେପରି ନୁହେଁ । ସରଳା ସତୀ ଜନନୀର କୋଳରେ ବୁଢ଼ିଲା କନ୍ୟା ସେ । ସ୍ୱପ୍ନରେ ଯେପରି ଦେଖୁଛି, ସ୍ୱାମୀ ତା'ର ତପସ୍ୱୀ । କେଉଁ ଏକ ପର୍ବତ ଶୃଙ୍ଗସ୍ଥ ଗହ୍ୱର ମଧ୍ୟରେ ବସି ତପସ୍ୟା କରୁଛନ୍ତି । ସ୍ୱାମୀ ତାର ତପସ୍ୱୀ, ସେ ଗର୍ବିତା ହେଉଥାନ୍ତା; କିନ୍ତୁ ଯୌବନ ସେ ଗର୍ବକୁ ମନ ମଧ୍ୟରେ ସ୍ଥାନ ଦେଉ ନାହିଁ । ତାର ଯୌବନ ଭାବୁଛି, ସେ କଣ ତାର କମନୀୟ ରୂପ ଓ ଉଜ୍ଜ୍ୱଳ ଯୌବନକୁ ଅରଣ୍ୟବାସୀ ସନ୍ନ୍ୟାସୀଟିର ପୂଜା ପାଇଁ ଚିର ଦିନ ସାଇତି ରଖିଥିବ ? କେତେ ଦିନ ତାର ରୂପ ଓ ଯୌବନ ରହିବ ? ତାର ଯୌବନ କୁସୁମ ଫୁଟିଛି, ବ୍ୟର୍ଥରେ ମଉଳିଯିବ ସିନା । ପର ମୁହୂର୍ତ୍ତରେ ଦେଖୁଛି, ଯେପରି ସେ ଅନ୍ୟ ଜଣେ ଯୁବକଙ୍କୁ ଆତ୍ମ ସମର୍ପଣ କରିଛି । ଲଜ୍ଜାରେ ମୁଖ ରକ୍ତାଭ ହେଉଛି । ସେ ଯୁବକ ସାମାନ୍ୟ ଯୁବକ ନୁହେଁ, ସେ ରାଜକୁମାର । ଆଶା ରାଜରାଣୀ ହୋଇଛି । ପୁଣି ଭାବୁଛି, ଏହା କି ସମ୍ଭବ ? ହତାଶାରେ ମୁଖ ପାଣ୍ଡୁର ହେଉଛି । ଦେଖୁଛି, ସମସ୍ତଙ୍କ କର୍ତ୍ତୃକ ସେ ପରିତ୍ୟକ୍ତା ହୋଇ ପଥର ଭିକାରଣୀ, ଅଥବା ବନର ତପସ୍ୱିନୀ ହୋଇ ଏକାକିନୀ କାନନ କାନ୍ତାର ଭ୍ରମଣ କରୁ କରୁ ହିଂସ୍ର ଜନ୍ତୁର ସମ୍ମୁଖରେ ଉପସ୍ଥିତ ହେଉଛି । ଭୟରେ ମୁଖ ମଳିନ ହେଉଛି ।

ଯୌବନର ସ୍ୱପ୍ନ, ସ୍ୱପ୍ନର ସ୍ୱପ୍ନ ।

ଆଶା ଓଠ ହଲାଇ କହିଲା, ଅଇମା, ତୁ ଏଠି ବସିଥା ମୁଁ ଟିକିଏ ପୋଖରୀ ସେପୋଖରୁ ଆସେଁ ।

ବୃଦ୍ଧା ବୁଝି ନ ପାରି ଭାବଲେ, ଅଣା ବୋଧ ହୁଏ ଘରକୁ ଯିବାକୁ କହୁଛି । ସନ୍ଧ୍ୟା ହୋଇ ଆସୁଛି । ତେଣୁ ସେ ମୁଣ୍ଡ ହଲାଇ କହିଲେ, ହଉ ତେବେ ଆଗେ ଆଗେ ଚାଲ ।

ବୃଦ୍ଧାଙ୍କ ବାକ୍ୟର ଶେଷ ଅଂଶ ଶୁଣିବାଯାଏ ଅଣା ଅପେକ୍ଷା କଲା ନାହିଁ । ଭାବଲା, ଆଈମା ଅନୁମତି ଦେଇଛନ୍ତି । ମୁହୂର୍ତ୍ତେ ବିଳମ୍ବ ନ କରି ସେ ପୋଖରୀର ଅନ୍ୟ ପାଖକୁ ଚାଲିଗଲା ।

ସୂର୍ଯ୍ୟଦେବ ଅସ୍ତମିତ, ସନ୍ଧ୍ୟାରାଣୀ ଆସିନାହାନ୍ତି । ଉଙ୍କି ମାରି ଦେଖୁଛନ୍ତି, ଦେବଶୁର ଅଛନ୍ତି କି ଗଲେଣି ।

ଅଣା ଚାଲିଯିବା ପରେ ବୃଦ୍ଧା ଘର ବାଟରେ କିଛି ଦୂର ଚାଲିଗଲେ । ଅଣାକୁ ନୀରବ ଦେଖି ସେ କଅଁଳେଇ ଡାକଲେ, ଅଣା—

ଅଣା ଉତ୍ତର ଦେଲା ନାହିଁ । ତେଣୁ ସେ ପୁଣି ଡାକଲେ, ଅଣା, ଅଣା ! ତଥାପି ଅଣା ନିରୁତ୍ତର । ଚାରିଆଡ଼କୁ ଅନାଇଲେ, ଆଲୋକ ଅନ୍ଧକାରର ମିଶ୍ରଣ ମଧ୍ୟରେ ତାକୁ ଦେଖି ପାରିଲେ ନାହିଁ । ବୃଦ୍ଧା ଜାଣନ୍ତି, ଅଣା ତାଙ୍କୁ ପଛରେ ପକାଇ ଆଗେ ଆଗେ ଘରକୁ ଚାଲିଯାଇନାହିଁ, କାରଣ ସେପରି ସେ କେବେ କରେ ନାହିଁ; କାଲେ ଆଈମା ଝୁଣ୍ଟି ପଡ଼ିବ, ଅଉ ଜୀବନ ପାଇବ ନାହିଁ । ତେବେ ସେ ପୋଖରୀ କୂଳରୁ ଫେରି ନାହିଁ ? ଏହା ଭାବି ବୃଦ୍ଧା ବାଟ ଉପରେ ବସିପଡ଼ିଲେ । ତଳକୁ ମୁହଁ ପୋତିଲେ । କେତେ କଣ ଭାବନାରେ ମନ ପୂର୍ଣ୍ଣ କରିଦେଲେ ।

ସନ୍ଧ୍ୟା ମାଡ଼ି ଆସିଲା !

ପୋଖରୀ ସେପାଖେ ବନ୍ଧ ନାହିଁ । ସମତଳ ଭୂମି । ସେହି ସମତଳ ଭୂମିରେ ନାନା ଜାତିର ବୃକ୍ଷ, ବୁଦା, ଲତା । ବନଦେବୀଙ୍କର କ୍ରୀଡ଼ା ଉଦ୍ୟାନ ପରି ଦେଖାଯାଏ । ସନ୍ଧ୍ୟା ପୂର୍ବରୁ ଅଣାକୁ ସେପରି ସ୍ଥାନରେ ଭ୍ରମଣ କରୁଥିବାର ଦେଖିଲେ ମନେ ହୁଏ ଯେପରି ବନଦେବୀ ନିଜେ ଭ୍ରମଣ କରୁଛନ୍ତି । ନୀଳ ଶାଢ଼ୀର ଅଞ୍ଚଳ ତଳେ ଲୋଟିଯାଉଛି । ମସ୍ତକ ଅନାବୃତ; ମୁକ୍ତ କେଶ ସେହି ନୀଳ ଅଞ୍ଚଳ ଉପରେ ନୀଳ ଆକାଶର କଳା ମେଘ ପରି ଦିଶୁଛି । ବିଳମ୍ବିତ ରତ୍ନହାର, କୃଷ୍ଣ କେଶ ଭେଦ କରି ଦିଶୁଛି ଯେପରି କଳା ମେଘ ଭେଦ କରି ତାରକାରାଜି ।

ତାରମଥାମଣି ଚନ୍ଦ୍ର ସଙ୍ଗେ ଭୁଲମାଯ୍ । ନବୀନ ଯୌବନର ରୂପ ସମ୍ଭାରରେ ଦେହ ଉଜ୍ଜ୍ୱଳ । ଗୁଣୁ ଗୁଣୁ ହୋଇ ଗୀତ ବୋଲୁଛି ।

କଞ୍ଚନ ଗଛ ପୁଷ୍ପ ପୂର୍ଣ୍ଣ । ରକ୍ତ ବର୍ଣ୍ଣର ପୁଷ୍ପରୁ ପବନ କେତେଗୁଡ଼ିଏ ଝଡ଼ାଇ ବୃକ୍ଷ ମୂଳେ ଗଦା କରିଛି । ଅଶା କଞ୍ଚନ ଗଛର ନିକଟରେ ଠିଆ ହୋଇ ସତୃଷ୍ଣ ନୟନରେ ଫୁଲଗୁଡ଼ିକୁ ଅନାଇଁ ରହିଲା । ପତିତ କୁସୁମ ଉପରେ ଦଣ୍ଡାୟମାନ ହୋଇ ହସ୍ତ ବଢ଼ାଇ ବହୁ ଚେଷ୍ଟା କଲା ଫୁଲ ଅଣିବାକୁ, ପାରିଲା ନାହିଁ । ଗୋଡ଼ ଟିପରେ ଠିଆ ହୋଇ ଦେଖିଲା, ତାର ହସ୍ତ ଫୁଲ ଥିବା ଡାଳର ପତ୍ର ଛୁଇଁ ପାରୁଛି । ନିକଟରେ ଖଣ୍ଡେ ଇଟା ପଡ଼ିଥିଲା, ତାକୁ ଅଣି ତଳେ ପକାଇ ତାଅରି ଉପରେ ଗୋଡ଼ ଠେକି ଠିଆ ହୋଇ ହାତ ବଢ଼ାଇଲା । ହାତ ଫୁଲ ସ୍ପର୍ଶ କଲା; କିନ୍ତୁ ଫୁଲ ତୋଳି ହେଲା ନାହିଁ ।

ଫୁଲ ତୋଳିବାର ଅନନ୍ଦ ଏପରି । ଅତି କଷ୍ଟରେ ଗୋଟିଏ ଦର୍ଓଟି ତେଙ୍ଗ ପାଇଲେ କି ଅପୂର୍ବ ଅନନ୍ଦ ଅସେ ମନରେ । ଅଶା, ହତାଶା, ଉଦ୍‌ବିଗ୍ନତା ଏବଂ ଶେଷରେ ଧୈର୍ଯ୍ୟ ଏହି ଚେଷ୍ଟାରେ ପୂର୍ଣ୍ଣଥାଏ । ନିମ୍ନସ୍ଥ ସଦ୍ୟ ପତିତ କୁସୁମରୁ କେତୋଟି ଉଠାଇ ଅଶା ଚାଲିଗଲା ନାହିଁ କାହିଁକି ? ସେଥିରେ ଯେ ଅଶା, ହତାଶା, ଉଦ୍‌ବିଗ୍ନତା ଏବଂ ଧୈର୍ଯ୍ୟ ଲୋଡ଼ା ହୁଏ ନାହିଁ ।

ଯେତେ ଚେଷ୍ଟା କଲା ସେ ଫୁଲ ତୋଳି ପାରିଲା ନାହିଁ । ନିରାଶ ହୋଇ ଫେରି ଯିବ ? ଅଥବା ପତିତ କୁସୁମରୁ କେତୋଟି ନେବ ? ଏହିପରି ଭାବିବା ସମୟରେ କିଏ ଜଣେ ପଛରୁ ଅସି ତାର ଅଖି ବୁଜି ଧରିଲା ।

କିଏ ହୋଇ ପାରେ ? ସେ ଯେ ରାମଚନ୍ଦ୍ର । ଅଶାକୁ ଏକାକିନୀ ନିର୍ଜ୍ଜନ ସ୍ଥାନରେ ଦେଖି ରାମର ହୃଦୟ ବିଚଳିତ ହେଲା । ଯେଉଁ ଅଶାର ସୌନ୍ଦର୍ଯ୍ୟ ଦେଖିବାକୁ ଗ୍ରେରଙ୍କ ପରି ସେ ବୁଦା ଅଢ଼ୁଆଳରେ ଲୁଚି ଥାଏ, ସେହି ଅଶା ଯେ ଅଜି ଏକାକିନୀ ! ନିକଟରେ, ତାର ଅତି ନିକଟରେ । ସେ କି ଏପରି ସୁବିଧା ଛାଡ଼ି ପାରେ ? ବୁଦା ମଧ୍ୟରୁ ଅଶାର ସମସ୍ତ ଚେଷ୍ଟା ବିଫଳ ହେବାର ଦେଖି ମନରେ ତାର କଷ୍ଟ ହେଲା । ସେ ଧୀରେ ଧୀରେ ବାହାରି ପଛଅଡ଼ୁ ଅଶାର ଅଖି ବୁଜି ଧରିଲା । ଗୋଡ଼ ହାତ ଥରୁଥାଏ, ତରଙ୍ଗ ତରଙ୍ଗ ହୋଇ ଚାରିଅଡ଼କୁ ଅନାଉଥାଏ, କିଏ ଅସିଯିବ ପରା ।

ଅଶା ଚମକି ଉଠି ଚିତ୍କାର କଲା । ତାର ଚିତ୍କାର ଶୁଣି ରାମଚନ୍ଦ୍ର କହିଲା, ଅଶା, ଡରୁଛୁ କିଲେ ?

ଅଶା ବୁଝିଲା ବୋଧହୁଏ, ସେ ଏପରି ଜଣେ ଲୋକ ଯାହାକୁ ସେ ଭଲକରି ଚିହ୍ନେ, ନଚେତ୍ ଏପରି ଅନ୍ୟ କାହାର ସାହସ ହୋଇ ପାରେ ?

ବିରକ୍ତ ହୋଇ କହିଲା, କିଏ ? ସଞ୍ଜ ହେଲାଣି ଛାଡ଼ିଦେ, ମୁଁ ଘରକୁ ଯିବି । ମନ୍ମଟର, ଛାଡ ଦଉନୁ, କିଏ ବା—

ମୁଁ ଭୂତ ।

ଆଶା ଭଗ୍ନ କଣ୍ଠରେ କହିଲା, ଭୂ-ଉ-ଉ-ତ ।

ରାମଚନ୍ଦ୍ର ଆଶାକୁ ଚୂଡାକୁ ଆଉଜେଇ ଆଣି ନାହିଁ ମ କହିବା ସଙ୍ଗେ ସଙ୍ଗେ ହାତ ଛାଡଦେଲା ।

ଆଶା ଟିକିଏ ଦୂରକୁ ଘୁଞ୍ଚିଯାଇ ଅବାକ୍ ହୋଇ ରାମର ମୁହଁକୁ ଅନାଇଁ ରହିଲା । ତାର ଚକ୍ଷୁରୁ ତାର ଚେହେରାରୁ ରାମ କଣ ଦେଖିଲା କେଜାଣି, ଆଉ ତା ଆଡ଼କୁ ଅନାଇଁ ପାରିଲା ନାହିଁ । ତାର ଛାତି ଦାଉଁ ଦାଉଁ ପଡ଼ିଲା, ଗୋଡ଼ ଥରିଲା, ତଳକୁ ମୁହଁ ପୋତି ରହିଲା । ଆଶା ସେହିପରି ଅବସ୍ଥାରେ କିଛି ସମୟ ରହି ପଚାରିଲା, କିଏ ତୁମେ ?

ରାମ ଉତ୍ତର ଦେଲା, ଆଉ କାହିଁକି ଚିହ୍ନିବୁ ? ଅନେକ ଦିନ ତଳର କଥା । ଆଶା ତ ଆଜି ସେ ଆଶା ହୋଇ ନାହିଁ, ବଦଳି ଗଲାଣି । ଆଉ ଚିହ୍ନିବୁ କାହିଁକି ମ ?

ରାମର ଦୁର୍ଦ୍ଦଶା ଦେଖି ଆଶା ନ ହସି ରହି ପାରିଲା ନାହିଁ । ତା ହସ ଦେଖି ରାମ ମଧ୍ୟ ଟିକିଏ ହସିଦେଲା । କହିଲା, ଆଶା, ଏବେ ଚିହ୍ନି ପାରୁଛୁ ତ ?

ହଁ ରାମ ଭାଇ, ତୁମେ କାହିଁକି······ଆଉ କହି ପାରିଲା ନାହିଁ । ଲଜ୍ଜାରେ ମୁଖାବନତ କଲା ।

ରାମ ସାହସ ଅବଲମ୍ବନ କରି କହିଲା, ରାଗିଲୁ କି ଆଶା ? ମୁଁ ଏଇବାଟେ ବୁଲି ଯାଉଥିଲି, ଦେଖିଲି, ସଞ୍ଜବୁଢ଼ାଠାରେ ଏକା ହୋଇ କିଏ ଜଣେ ଏଠି ବୁଲୁଛି । ତୁ ବୋଲି ଜାଣିଥିଲେ ଅସି ନ ଥାନ୍ତି । ଆସି ଦେଖେଁ ତ ତୁ କଞ୍ଚନ ଫୁଲ ନେବାକୁ ଚେଷ୍ଟା କରୁଛୁ, ପାରୁ ନାହୁଁ । ମୁଁ ଭାବିଲି, ପିଲାଟାର ହାତ ପାଉ ନାହିଁ, ଯାଏଁ ଦିଟା ଫୁଲ ତୋଳି ଦିଏଁ । ସେଇଥିପାଇଁ ଆସିଲି ।

ଏହା ତମର ଅନ୍ୟାୟ । ମୁଁ ଫୁଲ ନିଏଁ କି ନ ନିଏଁ, ସେଥିରେ ତମର କଣ ଥିଲା ଯେ ତମେ ପଛରୁ ଆସି ମୋର ଆଖି ବୁଜି ଧରିଲ ?

ଭୁଲ ହେଲା ଆଶା ?

ଆଶା ଉତ୍ତେଜିତ ହୋଇ କହିଲା, ନିଶ୍ଚୟ ଭୁଲ ହେଲା । ପୁରୁଷ ପିଲା ଝିଅ ପିଲାଙ୍କର ପାଖକୁ ଆସିବା ଅତି ଅନ୍ୟାୟ । ଛି,—

ତୁ ପିଲାଟା—ଫୁଲ ତୋଳି ପାରୁ ନାହୁଁ ବୋଲି ସିନା ମୁଁ ଆସିଲି। ନୋହିଲେ କାହିଁକି ଆସିଥାନ୍ତି ?

ପିଲାଟାଏ ? ଏତକି କହି ଆଶ୍ଚର୍ଯ୍ୟ ହୋଇ ରାମର ମୁହଁକୁ ଅନାଇଲା। ପୁଣି କହିଲା, ମୁଁ ପିଲାଟାଏ ପରି ତମକୁ ଦିଶିଲି ? ପଚାରୁଛି କେଉଁ ସାହସରେ ଆସି ମୋ ଆଖି ବୁଜି ଧରିଲ ? ନିର୍ଲଜ୍ଜ ! ପର ଘର ଝିଅ ସଙ୍ଗରେ ତମର କି ସମ୍ପର୍କ ?

କିଛି ନାହିଁ। ମୁଁ କଣ କରିଛି ଯେ ମୋ ଉପରେ ଏତେ ରାଗି ଯାଉଛ ?

ମନକୁ 'ପଚାର। ଏପରି ଗୋଟାକ ଛୁଏଁ ଥରୁଛ କାହିଁକି ? ତମର ଉଦ୍ଦେଶ୍ୟ କଣ କି ?

କିଛି ନାହିଁ।

ଆଶା କହିଲା, ହଉ ଯାଅ, ଏଠାରୁ ଶୀଘ୍ର ଚାଲିଯାଅ। ମୋର ବାପ ଭାଇ କେହି ନାହିଁ ବୋଲି ସିନା ତମର ଏଡ଼େ ସାହସ ହେଲା। ନୋଇଲେ—

କି ସାହସ ହେଲା ? ମୁଁ ତ ସାହସିକତାର କିଛି କାର୍ଯ୍ୟ କରି ନାହିଁ। ଆଶା, କାନ୍ଦୁଛ କାହିଁକି ?

ଏବେ ଚାଲିଯାଅ ନୋଇଲେ ମୁଁ ଯାଉଛି।

ଆଶା ରାମ ନିକଟରୁ ଚାଲିଯିବାକୁ ବସିଲା। ରାମ ଛାଡ଼ିବାର ଲୋକ ନୁହେଁ। ସେ ଆଶାର ହାତ ଧରି ଖଣ୍ଡେ ରୁମାଲରେ ତାର ଲୁହ ପୋଛି କହିଲା, ଆଶା, ଚାଲିଯିବୁ ? ମୁଁ ତ ତତେ କିଛି କହି ନାହିଁ, କାନ୍ଦୁଛୁ କାହିଁକି ?

ଓଃ, ଛାଡ଼ିଦିଅ, ମା ଖୋଜୁଥିବ। ଆଈମା ଅନେଇଁ ବସିଛି ସେଠି। ମୁଁ ଯାଏଁ।

ରାମ ଥଙ୍ଗେଇ କହିଲା, ଆଶା ! ତୁ କଣ ଭାବୁଛୁ ଯେ ମୁଁ ଇଆଡ଼େ ବୁଲି ଆସିଥିଲି ?

ତୁମେ ଯୁଆଡ଼େ ଆସ ସେଥିରେ ମୋର କି ଥାଏ ? ଛାଡ଼, ଓ... .....

ଯେତେ ଟଣା ଓଟରା କଲେ ହାତ ଛଡ଼ାଇ ନେଇ ପାରିବୁ ନାହିଁ। ଶୁଣ, ମୁଁ ତୋର ପାଖକୁ ଆସିଥିଲି। ଆଜି ନୁହେଁ, ସବୁଦିନେ ଆସେଁ। ତତେ ଏକୁଟିଆ ଦେଖି ଆଜି ଗୋଟାଏ କଥା କହିବ ବୋଲି ବସିଛି।

ମୋ ସାଙ୍ଗେ ପୁଣି ତୁମର କି କଥା ? ଛାଡ଼, ନୋଇଲେ ଡାକିବି ବଣିଆ ଭାଇଙ୍କ ।

ବଣିଆ ଭାଇ ମୋର କଣ କରିବ ଶୁଣେ ? ଗୃହଅଡ଼େ ଜାନା କରି କହିବ, ରାମ ଅଶାକୁ ଧରିଥିଲା । ବୁଝିଲୁ ତ ? ସେଇଠୁ ମୋର କଣ ହୋଇ ଯିବ ? ମୋତେ କିଏ ନ ଚହ୍ନେ ? ମୁଁ ରଜାଙ୍କ ସାଙ୍ଗ । ନାମ ପଡ଼ିବ କାହାର ଜାଣୁ ? ତୋର । ସେଇଠୁ········ ?

ଅଶାର ସବୁ ଚେଷ୍ଟା ବିଫଳ ହେଲା । ବାଳିକା ସେ, କେତେ ତାହାର ଶକ୍ତି ? ସେ ରାମର ଗୋଡ଼ ତଳେ ପଡ଼ି ଅନୁନୟ ବିନୟ କଲା, ଛାଡ଼ିଦେବାକୁ । କେତେ କାନ୍ଦିଲା, ପୁଣି କହିଲା, ରାମ ଭାଇ, ମୁଁ ପରା ତମର ଛୋଟ ଭଉଣୀଟା; ମୋତେ ଏପରି କଥାଗୁଡ଼ା କହୁଚନା ? ଛାଡ଼ିଦିଅ ମୋତେ······

ରାମ ଅଶାକୁ ତଳୁ ଉଠାଇଲା ।

କବାଟ ବାଳିକା କଣ ସେ ଜାଣେ ? ତାକୁ ଦେଖି ସାନ୍ଧ୍ୟ ପବନ ଗର୍ଜନ କରି ଉଠିଲା, ବୁଦା ଭିତରୁ ବିଲୁଆଟାଏ ଡାକିଲା, ହୁକେ ହୁ ହୁକେ ହୁ । ସୁନା ରଙ୍ଗର ସାପଟାଏ ସେହି ବୁଦା ଭିତରୁ ବାହାରି ପୋଖରୀ କୂଳକୁ ଚାଲିଗଲା ।

ରାମ ଅଶାକୁ ତଳେ ଠିଆ କରି କହିଲା, ଅଶା, ଭୟ କାହିଁକି କରୁଛୁ ? ତୁ ପରା ମୋର ଛୋଟ ଭଉଣୀଟା । ତତେ ଗୋଟାଏ କଥା କହିବ ବୋଲି ବସିଛୁ, ଶୁଣିବୁ ?

ରାମର ହାତରୁ ମୁକ୍ତ ହୋଇ ମଧ୍ୟ ଅଶା ପଳାଇଗଲା ନାହିଁ । ରାମର ମୁହଁକୁ ଅନାଇଁ ଅଶ୍ରୁ ବର୍ଷଣ କରିବାକୁ ଲାଗିଲା ।

ଶୁଣ, ତୋ ମନରେ ଦୁଃଖ ହେବ ସେଇଥିପାଇଁ କହୁ ନ ଥିଲି । କେତେଦିନ ଲୁଚାଇବ ? ଯେତେହେଲେ ପିଲା ଦିନର ସାଙ୍ଗଟା ତ ସେ ।

ଅଶା ଚମକିଉଠି କହିଲା, କିଏ ?

ନବୀନ । ସେ ଆଉ ଏ ସଂସାରରେ ନାହିଁ, ନିଜେ ମୁଁ ଦେଖି ଆସିଛୁ । ପଚଶ ଦିନ ତଳେ ଏଠିକି ଦଶ କୋଶ ଦୂରରେ ଗୋଟାଏ ଶ୍ମଶାନରେ ସେ ବାବାଜୀ ବେଶରେ ମରିକରି ପଡ଼ିଥିଲା । ଆଜିଯାଏ କାହାକୁ କହି ନାହିଁ କାହିଁକି ଜାଣୁ ? ଯଦି କହିଥାନ୍ତି, ଲୋକେ ଜାଣିଥାନ୍ତେ, ତୋ ଦେହରୁ ଗହଣା ଗାଣ୍ଠି ସବୁ କାଢ଼ି ନେଇ ବିଧବା କରାଇଥାନ୍ତେ । ସେଇଥିପାଇଁ କାହାକୁ କହି ନ ଥିଲି । ଏକା ତତେ କହିଲି । ଯେତେହେଲେ ସାନ ଭଉଣୀଟା ପରା ତୁ । ତୁ ମଧ୍ୟ କାହାକୁ

କହିବୁ ନାହିଁ । ଆମ ସଙ୍ଗାତେ ରାଜକୁମାର ନିଜେ କହୁଛନ୍ତି, ଅଣାକୁ କହିବୁ, ସେ କାନ୍ଦିବ ନାହିଁ । ନବୀନ ତ ବାବାଜୀଟାଏ, ମରିଗଲେ ଗଲା । ଯୁା ଅର୍ଥ ବୁଝି ପାରୁଛୁ ତ ? ସେ ଚାହାଁନ୍ତି, ତତେ ଏ ରାଜ୍ୟର ରାଣୀ କରିବେ ।

ଅଣା ରାଗି ରାଗି ଥିଲା । ରାମର କଥା ସେ ସହି ପାରିଲା ନାହିଁ । ତତ୍କ୍ଷଣେ ଛୋଟ ଢେକା ଉଠାଇ ସହିଯା ରାମ ଉପରକୁ ପକାଇଲା । ରାମର ମୁଣ୍ଡରେ ବାଜିବାରୁ ଖଣ୍ଡିଆ ହୋଇ ରକ୍ତ ବାହାରିଲା । ରକ୍ତ ଦେଖି ଅଣା କାତର ହୋଇ ପଡ଼ିଲା । କିନ୍ତୁ ରାମ ଖାତିର ନ କରି କଞ୍ଚନ ଗଛରୁ ଦୁଇ ଡାଳ ଫୁଲ୍ ଆଣି ଅଣାକୁ ବଢ଼ାଇ ଦେଲା ।

ଫୁଲ୍ ନେବ କଣ, ମୁହୂର୍ତ୍ତେ ନ ରହି ଅଣା ଧାଇଁ ଚାଲିଗଲା ।

ରାମ କହିଲା, ଅଣା, ଏକାଥରେ ଭୁଲିଯିବୁ ନାହିଁ ଲୋ ।

ଆଣା ଯିବା ପରେ ରାମ ବାଟ ଭାଙ୍ଗି ନଦୀକୂଳଆଡ଼େ ଚାଲିଲା । ଆଗରେ ସାଧୁଆ ମାଆକୁ ଦେଖି ଚମକିପଡ଼ିଲା । ସାଧୁଆ ମା ରାମକୁ ଦେଖି ହସିଦେଲା ।

ରାମ ପଚାରିଲା, କିଲୋ ସାଧୁଆ ମା, କୁଆଡ଼େ ଯାଉଛୁ ?

କୁଆଡ଼େ ଯାଉ ନାହିଁ ଯେ……

ହସୁଛୁ କାହିଁକି ?

ମଲା, ହସିବାକୁ କଣ ମନା ?

ସାଧୁଆ ମା, ତୁ ସବୁ ଶୁଣିଛୁ ?

ମୁଁ ତ କିଛି ଶୁଣି ନାହିଁ ।

ସତ କହ ।

ସତ କହିବି ? ମୁଁ ସବୁ ଶୁଣିଛି ସବୁ ଦେଖିଛି । ମାଇକିନିଆ ଝିଅଙ୍କୁ ବଶ କରିବାକୁ ହେଲେ ଟେରର ପର ଆସି ପଛରୁ ଆଖି ବୁଜି ଧରିଲେ ହେବ କି ?

ଆଉ କେମିତି ? ରାଜକୁମାର ନିଜେ ଅଣାକୁ ଚାହାନ୍ତି ।

ମନ୍ତ୍ର କର, ଔଷଧ କର, ସେ ପଛରେ ଧାଇଁବ ।

ସତେ ? ତୁ ଜାଣୁ ?

ମୁଁ ଜାଣେ ନାହିଁ । ହନୁମାନ ଗୁଡ଼ରେ ଯେଉଁ ବାବାଜୀ ରହନ୍ତି, ତାଙ୍କୁ ସବୁ ଜଣା, ସେ ମନ୍ତୁର ଔଷଧ ଦେବେ ।

ଆଣି ଦେବୁ ?

ହଁ, ଏକା ସୁନାହାର ନେବ ।

ମୁଁ ରାଜି ।

ସେ ଆଉ ଏ ସଂସାରରେ ନାହାନ୍ତି ?

ଆଶା ଭାବେ, ସେ ତାର କେହି ନୁହନ୍ତି । ତଥାପି ତାର ମନ ବ୍ୟସ୍ତ ହେଲା । ତାର ବିବାହିତ ସ୍ୱାମୀ ତ । ଆଶା ନିଜେ ଭାବି ନିଜେ ଚମକି ଉଠିଲା । ମହାଭାରତରୁ ପଢ଼ିଛି, ରାମାୟଣରୁ ପଢ଼ିଛି, ସ୍ୱାମୀ କାହାକୁ କହନ୍ତି । ପତିବ୍ରତା ସ୍ତ୍ରୀର ସ୍ୱାମୀ ନିମନ୍ତେ କର୍ତ୍ତବ୍ୟ କଣ ? ଆଶା କଣ ପତିବ୍ରତା ନୁହେଁ ? କିନ୍ତୁ ସେ କାହାକୁ ସ୍ୱାମୀ ବୋଲି ମଣିବ ? ନବୀନକୁ ନିଜେ ବରଣ କରି ନାହିଁ । କଣ୍ଢେଇ ବାହାଘର ପରି ଯେଉଁମାନେ ଏ ବିଭାଘର କରଛନ୍ତି, ତାର ଫଳାଫଳ ପାଇଁ ସେହିମାନେ ଦାୟୀ । ଯେତେବେଳେ ବେଦି ଉପରେ ବସି ନବୀନକୁ ସେ ଦାନ ହୋଇଥିଲା ସେ ଜାଣି ନ ଥିଲା ବିଭାଘର କଣ, ସ୍ୱାମୀ କଣ । ଏତିକି ଜାଣିଥିଲା ଯେ ସେ ତାର ନବୀନ ଭାଇ ସଙ୍ଗେ ବସିଛି ଆଉ ବ୍ରାହ୍ମଣମାନେ ପୂଜା କରୁଛନ୍ତି । ସେ ଜାଣି ନ ଥିଲା ଯେ ଯାହା ପାଖରେ ସେ ବସିଛି, ତାହାର ଚରଣ ସେବା କରିବାକୁ ହେବ ଜୀବନସାରା । ତାହାର ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହେବାକୁ ପଡ଼ିବ ?

ଆଜି ସେ ବନ୍ଧନ ମୁକ୍ତ । ଜଣେ ଗୃହତ୍ୟାଗୀ । ଆଉ ଜଣେ ଅଛି । ସେ ଜଣକ ଆଶା । ସେ ମଧ୍ୟ ବନ୍ଧନ ମୁକ୍ତ ହେବ । ଯେଉଁମାନେ ଏ ବନ୍ଧନ ବାନ୍ଧିଛନ୍ତି, ସେମାନେ ଜାଣିଲେ ବାଧା ଦେବେ, ଅସନ୍ତୁଷ୍ଟ ହେବେ । କିନ୍ତୁ ଆଶା ଗୃହୀ ସଂସାରୀ ହେବ । ସଂସାରର ଆନନ୍ଦରେ ନିଜକୁ ବୁଡ଼ାଇ ରଖିବ । ଜଣେ ବାବାଜୀଙ୍କୁ ସ୍ୱାମୀ କରି ନିଜେ ମାତାଜୀ ହୋଇ ବଣ ଜଙ୍ଗଲରେ ବୁଲିବ ନାହିଁ ।

ଆଶା ଭାବିଲା, ମୁଁ ଯଦି ଜାଣି ନ ଥାନ୍ତି ଯେ ସେ ମୃତ, ତେବେ ତାଙ୍କୁ ଅପେକ୍ଷା କରି ସାରା ଜୀବନ ବସିଥାନ୍ତି ଏହି ଆଶାରେ ଯେ ସେ ଆସିବେ ।

ଭାବିଲା, ମା ଆଇମାଅଙ୍କୁ ଏ ସମ୍ବାଦ ଜଣାଇଦେବ । ଏ ସମ୍ବାଦ ପାଇବା ମାତ୍ରେ ଉଭୟେ ଦୁଃଖିତା ହେବେ । ପଚାରିବେ, କେଉଁଠୁ ଶୁଣିଲୁ ? ସମସ୍ତେ ସେଇଆ ପଚାରିବେ । କଣ କହିବ ରାମ ଭାଇ କହିଛନ୍ତି ? ରାମ ଭାଇଙ୍କୁ କିଏ ନ ଚିହ୍ନେ ? କେହି ତ ସେ କଥାରେ ବିଶ୍ୱାସ କରିବେ ନାହିଁ । ମୁଁ ବିଶ୍ୱାସ କଲି କାହିଁକି ? ରାମ ଭାଇ କାଳେ ମିଛରେ କହିଥିବ ?

କାହିଁକି ବା ସେ ମିଛରେ କହିବ ? ସେ ହୁଏତ ସତ କହିଥିବ । ଘଟଣାର ସତ୍ୟତା ଜଣା ପଡ଼ିଲେ ସେମାନେ ମୋତେ ବାଧା କରିବେ । ଛି, କି ହେୟ ରୂପ ।

ରାମ ଭାଇର କଥା ଠିକ୍ । କେହି ଜାଣିବେ ନାହିଁ, କେହି ଜାଣନ୍ତି ନାହିଁ । ରାମ ଭାଇ ଭଲ ଲୋକ । ତାଙ୍କ ପ୍ରତି ମୁଁ କଠୋର ହୋଇଛି । ମୁଁ ମୂର୍ଖ, ମୁଁ ଦୁଷ୍ଟ । ତାଙ୍କୁ ଠେକା ଫୋପାଡ଼ିଲି କାହିଁକି ? ତାଙ୍କ ମୁଣ୍ଡରେ ବାଜି ରକ୍ତ ଝରିଲା । ତାଙ୍କର ଉଦ୍ଦେଶ୍ୟ ଭଲ । ଯଦି ମନ୍ଦ ହୋଇଥାଏ, ଯଦି ସେ ନିଜେ ମୋତେ ଚାହୁଁଥାନ୍ତି, ସେ କଣ ସୁନ୍ଦର ନୁହନ୍ତି ? କିନ୍ତୁ ସେ ନିଜେ କହିଛନ୍ତି, ମୁଁ ତାଙ୍କର ଧର୍ମ ଭଉଣୀ । ରାଜକୁମାର ମୋତେ ତାଙ୍କର ରାଣୀ କରିବେ । ଯଦି ତାହା ହୁଏ, ରାମ ଭାଇ ମନ୍ତ୍ରୀ ହେବ ।

କେତେ ଅବାନ୍ତର ଭଲ ମନ୍ଦ ଚିନ୍ତାରେ ବାଳିକା ଆଶାର ମନ ଦୋହଲି ଉଠିଲା ।

ସନ୍ଧ୍ୟା ସମୟରେ ରାଜକୁମାର ମହାନଦୀ କୂଳରେ ଭ୍ରମଣ କରୁଥିଲେ । ରାମଚନ୍ଦ୍ର ଆସି ପ୍ରଣାମ କଲା ।

ରାଜପୁତ୍ର ପଚାରିଲେ, ଖବର କଣ ?

ରାମ ହସି ହସି କହିଲା, ଖବର ତ ଅନେକ । ନିର୍ଜ୍ଜନ ସ୍ଥାନ ନ ହେଲେ କହିବି କିପରି ?

ରାଜକୁମାର କହିଲେ, ତେବେ ଚାଲ ନଅର ଭିତରକୁ ଯିବା । ମୋ ବୈଠକଖାନାରେ ବସିଲେ ସୁବିଧା ହେବ ତ ?

ଅବଶ୍ୟ ।

ରାଜପୁତ୍ର ରାମଚନ୍ଦ୍ରର ହାତ ଧରି ନଅରର ଭିତରକୁ ନେଲେ । ବୈଠକଖାନାରେ ଉପସ୍ଥିତ ହୋଇ ଉଭୟେ କେଦାରାସନରେ ବସିଲେ । ଗୃହଟି ଆଲୋକରେ ଉଜ୍ଜ୍ୱଳ । ସାଜସଜ୍ଜାରେ ପରିପୂର୍ଣ୍ଣ ।

ରାଜକୁମାର ଦେଖିଲେ ରାମଚନ୍ଦ୍ରର ମୁଣ୍ଡରେ ରକ୍ତ ଲାଗିଛି ।

ପଚାରିଲେ, ମୁଣ୍ଡ ଫାଟିଲା କିପରି ?

ରାମଚନ୍ଦ୍ର କହିଲେ, ଅଶାର ଠେଙ୍ଗା ମାଡ଼ରେ ।

କାହିଁକି ସେ ଏପରି କଲା ?.

ରାମଚନ୍ଦ୍ର ଯାହା ଘଟିଥିଲା ସବୁ ବର୍ଣ୍ଣନା କଲା ।

ରାଜକୁମାର ଦୁଃଖିତ ହୋଇ କହିଲେ, ଅଶାର ଆଶା ଛାଡ଼ିଦେବାକୁ ହେବ । ତୁମର ଚେଷ୍ଟା ବିଫଳ ହୋଇଛି ।

କଦାପି ନୁହେଁ ।

ରାଜକୁମାର ପଚାରିଲେ, ତେବେ ଉପାୟ ?

ଶୁଣନ୍ତୁ, ମୋ ମନକୁ ଏପରି ଆସୁଛି । ଭାବୁଛି, ଆପଣଙ୍କର ଗୋଟିଏ ହାର ନେଇ ଦିନେ ତା ସଙ୍ଗରେ ଦେଖାହେଲେ କହିବି ଯେ ଆପଣ ସେ ହାର ତାକୁ ଉପହାର ଦେଇଛନ୍ତି । ସେ ରାଣୀ ହେଲେ ରାଜ୍ୟଟା ତାର ହେବ ।

ରାଜକୁମାର ଉଚ୍ଚସ୍ୱରରେ ହସି କହିଲେ, ତୁମେ ନିର୍ବୋଧ । ହାରଟି ତା ଘରେ ଅନ୍ୟମାନେ ଦେଖିବେ ଓ ପଚାରିବେ, ସେ କି ଉତ୍ତର ଦେବ ?

ରାମଚନ୍ଦ୍ର ଲଜ୍ଜିତ ହୋଇ କହିଲା, ଆପଣ ଠିକ୍ କହିଛନ୍ତି । ତେବେ ଗୋଟାଏ କଥା ମନେ ପଡ଼ିଲା, ଶୁଣନ୍ତୁ । ଅଶାର ବେକରେ ଯେଉଁ ବହୁମୂଲ୍ୟର ହାରଟି ପଡ଼ିଛି ସେ କାହାର କହନ୍ତୁ ଭଲା ।

ଯେ ପିନ୍ଧିଛି ନିଶ୍ଚୟ ତାହାର ।

ସେ ହାର ଆପଣଙ୍କର ।

ତମେ କେବେ ମୋର ହାରରୁ ଗୋଟାଏ ନେଇ ତାକୁ ଦେଇଛ ?

ଶୁଣନ୍ତୁ କହୁଛି, ବହୁ ବର୍ଷ ପୂର୍ବେ ଆପଣଙ୍କର ଜନ୍ମୋତ୍ସବ ଦିନ ବୁଢ଼ା ରାଜା ସେହି ରତ୍ନଖଚିତ ହାରଟି ଆପଣଙ୍କ ବେକରୁ କାଢ଼ି ନବୀନକୁ ଉପହାର

ଦେଇଥିଲେ । ନବୀନର ପିତା ରଘୁନାଥ ଅଣାଙ୍କୁ ବୋହ୍ନୁ କରିଲା ପରେ ସେ ହାରକୁ ଅଣାର ବେକରେ ପିନ୍ଧାଇ ଦେଇଥିଲେ । ଏଥର ବୁଝିଲେ ତ, ଅଣା ଅନେକ ଦିନରୁ ଆପଣଙ୍କର ହୋଇ ସାରିଛି । ମଝିରେ ନବୀନ ଅଁସିଲା, ଚାଲିଗଲା ।

ଏ କଥା ଅଣା ଜାଣେ କି ?

ନ ଜାଣିଥିଲେ ଜାଣିବ । ଆମ୍ଭଙ୍କର ଆଉ ଗୋଟିଏ ହାର ବେକରେ ଲମ୍ବାଇବ ।

ସେଥିରେ ମୋର ଆପତ୍ତି ନାହିଁ, କିନ୍ତୁ ସେ ସମ୍ମତ ହେବ କି ?

ନ ହେଲେ ବଳ ପ୍ରୟୋଗ ।

ରଖିବ କେଉଁଠି ? ଯଦି ନହର ଭିତରକୁ ଆଣ, ମା ଓ ଅନ୍ୟମାନେ ଜାଣିବେ । ରାଜ୍ୟଲୋକେ ବିଦ୍ରୋହ କରିବେ ।

କେହି ଜାଣି ପାରିବ ନାହିଁ । ତାର ରହିବାକୁ ମୁଁ ସ୍ଥାନ ଠିକ୍ କରି ସାରିଛି ।

କେଉଁଠି ?

ଏହି ନହର ଭିତରେ ।

ତା ହେଲେ ତ ସମସ୍ତେ ଜାଣିବେ ?

ନା, ଏପରି ସ୍ଥାନ ଅଛି ଯହିଁ ରଖିଲେ ମାଛି ମଶା ବି ଜାଣି ପାରିବେ ନାହିଁ । ବୁଝି ପାରିଲେ ତ ? ଯେଉଁ ଘରେ ଭୂତ ଅଛି ବୋଲି କହନ୍ତି, ସେହି ଘରେ । ଆଜଯାଏ ସେ ଖଣ୍ଡାକୁ କେହି ଯାଆନ୍ତି ନାହିଁ ।

ସେଠି ? ଅରେ ବାପ୍‌ରେ, ବୁଢ଼ା ରାଜାଙ୍କୁ ସେଠାରୁ ଭୂତ ହରଣଚାଲି କରି ନେଇଗଲା ।

ସେଦିନ ଆଉ ନାହିଁ । ମୁଁ ନିଜେ ଗୁଣିଆଁ ଆଣି ଭୂତକୁ ତଡ଼ିଦେଇଛି । କିଛି ଭୟ ନାହିଁ । ସେହି ଘରେ ତାର ରହିବାର ବନ୍ଦୋବସ୍ତ କରିବାକୁ ପଡ଼ିବ । ତାର ସେବା ପାଇଁ ଯେଉଁ ଦୁଇଜଣ ବୁଢ଼ୀ ଖବାଙ୍କୁ ମୁଁ ଆଗରୁ ଠିକ୍ କରି ରଖିଛି, ସେମାନେ ବିଶ୍ବାସୀ । ସେ ଘର ପୂର୍ବେ ଯେପରି ଥିଲା, ସେପରି ଆଉ ନାହିଁ । ଦେଖିଲେ ରହିବାକୁ ଇଚ୍ଛା ହେବ । କାଲି ଆପଣଙ୍କୁ ସଙ୍ଗରେ ନେଇ ଦେଖେଇ ଆଣିବି । ଭୟର କାରଣ ନାହିଁ ।

ସ୍ୱାମୀର କଥା ଶୁଣି ରାଜକୁମାର ଦୀର୍ଘ ଶ୍ୱାସ ଛାଡ଼ିଲେ । ଅଶା-ନିରାଶାରେ ମନ ଛଟପଟ ହେଲା । କିନ୍ତୁ ହୃଦୟରେ ଛାତି ଥରି ଉଠିଲା ।

ରୁକ୍ମଣୀଙ୍କର ପରିବର୍ତ୍ତନର ସମୟ ଆସିଛି । ତାଙ୍କର ଅଭିମାନ ଓ ଗର୍ବ ଅତୀତ ହୋଇଛି । ଅହା, ସୁନାର ଘର ଚୂନା ହେବାକୁ ବସିଲାଣି । ତାଙ୍କ ମନରେ ଏହି ଚିନ୍ତା ଉଦିତ ହୋଇଛି । ରଘୁନାଥଙ୍କ ସଙ୍ଗେ ଦିନରେ ଥରକରୁ ଦିଥର ଦେଖା ହୁଏ ନାହିଁ । ସେତିକି କେବଳ ଭୋଜନ ସମୟରେ । ରଘୁନାଥ ଦିନରେ ଥରେ ମାତ୍ର ଭୋଜନ କରନ୍ତି । ଘରେ ଦିନଯାକ ନଥାନ୍ତି । ଝୁଲାମୁଣିଟି ଧରି ରାମ ରାମ ଜପି ସକାଳୁ ସନ୍ଧ୍ୟାଯାଏ ନାନା ସ୍ଥାନ ଭ୍ରମଣ କରୁଥାନ୍ତି । ରାମେଶ୍ୱର ମଶାଣିରେ ବସି ଅଧିକ ବେଳ କଟାନ୍ତି ।

ଦିନେ ଘନଶ୍ୟାମ ତାଙ୍କୁ ରାମେଶ୍ୱର ମଶାଣିରେ ଭେଟି ପଚାରିଥିଲେ, ଆଜ୍ଞା, ଆପଣଙ୍କର ଏଠି ବସିବାର କାରଣ ?

ରଘୁନାଥ କହିଲେ, ବୁଝିଲ ଘନ, କେତେବେଳେ କୋଉଁ କଥା । ଆଜି ଅଛି କାଲି ନାହିଁ । ମଣିଷ ଜୀବନ ପାଣିଫୋଟକା । ସେଇଥିପାଇଁ ଆଗରୁ ଦେଖିନେଉଛି । ଶେଷରେ ଏଇଠିକି ତ ଆସିବାକୁ ହେବ ।

ଭଲ କରିଛ, ଆପଣ ଭଲ କରିଛ । ଆଗରୁ ବନ୍ଧୁଆ, ସାର୍‌ଗୁଣା, କୁକୁରଙ୍କ ସଙ୍ଗେ ଦୋସ୍ତୀ କରିଥାଅ । ଚିହ୍ନାପରିଚ ଥିଲେ ତମକୁ ଧିରି ଧିରି କରି କାମୁଡ଼ିବେ । ଅହା, ଭୁଲ୍ କହିଲି । ତମେ ତ ପୋଡ଼ା ହେବ । ତେବେ ଏତେ ଦୋସ୍ତୀ କରିବାର ପ୍ରୟୋଜନ ନାହିଁ ।

ସନ୍ଧ୍ୟା ସମୟରେ ଘରକୁ ଫେରନ୍ତି, କିନ୍ତୁ ବସନ୍ତି ନିର୍ଜନ ସ୍ଥାନରେ । ଦାଣ୍ଡ ଘର କବାଟ ବନ୍ଦ କରି ରହନ୍ତି ସକାଳଯାଏ । ରାତିରେ ଭୋଜନ କରନ୍ତି ନାହିଁ ।

ରୁକ୍ମଣୀ ଭାବନ୍ତି, ଏଥିପାଇଁ ଯେ କେହି ଦାୟୀ ହେଉ ପଛେ, ପରିବର୍ତ୍ତନ ଘଟିଛି ସେହି ଢେଉଁରିଆ ପିନ୍ଧିଲା ଦିନଠୁଁ । ତା ପୂର୍ବରୁ ବେଶ ଭଲ ଥିଲେ । ସ୍ୱାମୀଙ୍କର ଏପରି ଦଶା ଯେ ନବୀନର ଅନୁପସ୍ଥିତି ନିମନ୍ତେ, ତା ସେ ଜାଣି ପାରିଛନ୍ତି । ତାଙ୍କର ମନରେ ଦୁଃଖ ହୁଏ ଯେତେବେଳେ ଏହି ସବୁ କଥା ମନରେ

ପକାନ୍ତି । ଧୂଳିଆର ଦେହ ଦିନକୁ ଦିନ ଅଧିକ ଖରାପ ହେବାକୁ ଲାଗିଲା । ଆଗେ ରାତିରେ ଥରେ ଦୁଇଥର ଚମକି ଉଠୁଥିଲା, କିନ୍ତୁ ଏବେ ତାର ଚମକି ଉଠି ବାଲିବାଲେଇବା ବଢିଗଲାଣି । ଦିନେ ଦିନେ ରାତି ସେହିପରି କଟିଯାଏ । ସାଧୁଆ ମା ଗୁଣିଆଁ ଡାକି ତାଙ୍କୁ ଝଡ଼େଇଲା । କିଛି ଲାଭ ହେଲା ନାହିଁ । ଗୁଣିଆଁ କହିଲା, ଜଣେ ମଲା ସ୍ତ୍ରୀର ଆତ୍ମା ଧୂଳିଆ ଦେହରେ ପଶିଛି । ସେହି ସ୍ତ୍ରୀକୁ କିପରି ଘରୁ ତଡ଼ିବ, ତାଆର ଚେଷ୍ଟା କରିବାକୁ ରୁକ୍ମଣୀ ଧନର ପ୍ରଲୋଭନ ଦେଖାଇଲେ । କିନ୍ତୁ ସେ କହିଲା, ଯଦି ଜବରଦସ୍ତି ତଡ଼ିବେ, ତେବେ ସେ ମୋର ଘରକୁ ଯିବ ।

ରାତି ଅଧରେ ଧୂଳିଆ ବାଲିବାଲେଇ ଉଠେ, ଭାଇ ଯାହାଙ୍କ ଉପରେ ବାବାଜୀ ହୋଇ ବସିଛୁ, ବଡ଼ ମା ତୁ ଯା ।

ରୁକ୍ମଣୀଙ୍କ ଅନୁମାନ ଯେ ସେ ସ୍ତ୍ରୀ ଲୋକଟି ନବୀନର ମା । ନିଜେ ବି କେତେଥର ତାଙ୍କୁ ସ୍ୱପ୍ନରେ ଦେଖିଲେଣି ।

ରୁକ୍ମଣୀ ଭାବନ୍ତି, ଆଶାକୁ ପାଖକୁ ଆଣିଲେ ଏ ସବୁ କମିଯିବ । ଆଶାକୁ ଆଣିବେ କିପରି ? ଯଦି କେହି ତାଙ୍କର ସମସ୍ତ ଧନ ଓ ରୂପ ନେଇ ବିନିମୟରେ ନବୀନକୁ ଫେରାଇ ଦେବାକୁ କହନ୍ତା, ସେ ଆନନ୍ଦରେ ସମ୍ମତ ହୁଅନ୍ତେ । ତାଙ୍କ ମନ କଥା କେହି ଜାଣିଲେ ନାହିଁ । କେବଳ ଜାଣିଲେ ଯେ ସେ ସାବତ ମା । ଶତ୍ରୁ ଦିନେ ଥିଲେ, ଆଜି ନାହାନ୍ତି । ନବୀନକୁ ଫେରି ପାଇବାକୁ ଓ ଆଶାକୁ ପାଖକୁ ଆଣିବାକୁ ଆଜି ସେ ବ୍ୟାକୁଳ ।

ଏବେ ସାଧୁଆ ମାଆର କଥା ସେ ଶୁଣନ୍ତି ନାହିଁ । ସାଧୁଆ ମା ଆସିଲେ ସେ ମନେ ମନେ ବିରକ୍ତ ହୁଅନ୍ତି । ଭାବନ୍ତି, ଘରର ସବୁ ଦୁଃଖ ଦୁର୍ଦ୍ଦଶା କେବଳ ତାହାପାଇଁ । ସାଧୁଆ ମା ପ୍ରାୟ ଆସେ ନାହିଁ । ଯେବେ ଆସେ, ପର ଘର ଝିଅ ବୋହୂଙ୍କର ନିନ୍ଦା ଗାଇବା ପୂର୍ବରୁ ରୁକ୍ମଣୀ ସେ ସ୍ଥାନରୁ ଚାଲିଯାଇଥାନ୍ତି ।

ଅନେକ ଦିନ ପରେ ଆସି ଥରେ ସେ ତାଙ୍କ ପାଖରେ ବସିଲା । ଆରମ୍ଭ କଲା, ଝିଅ ଲୋ, ତୋ ମୁହଁ କାହିଁକି ଶୁଖିଯାଉଛି ? ହଁ, ଧୂଳିଆ ପାଇଁ କି ତ ? ସେ କିଛି ନୁହେ ଲୋ ଝିଅ, କିଛି ନୁହେ ।

ରୁକ୍ମଣୀ ଅନ୍ୟମନସ୍କ ହୋଇ କହିଲେ, ଜଳିଯାଉ ସେ ମୁହଁ, ପୋଡ଼ିଯାଉ ।

ସାଧୁଆ ମା କହିଲା, ଆଜି କାଲିକାର ଝିଅ ବୋହୂଙ୍କ କଥା ଦୁନିଆ ବାହାର । ସେ କାଳ ତ ଆଉ ନାହିଁ ।

ସ୍ୱାମୀର କଥା ଶୁଣି ରାଜକୁମାରୀ ଦୀର୍ଘ ଶ୍ୱାସ ଛାଡ଼ିଲେ । ଆଶା–ନିରାଶାରେ ମନ ଛଟପଟ ହେଲା । କିନ୍ତୁ ହୃଦୟରେ ଛନ୍ଦ ଥରେ ଉଠିଲା ।

ରୁକ୍ମଣୀଙ୍କର ପରିବର୍ତ୍ତନର ସମୟ ଆସିଛି । ତାଙ୍କର ଅଭିମାନ ଓ ଗର୍ବ ଅତୀତ ହୋଇଛି । ଅହା, ସୁନାର ଘର ଚୂନା ହେବାକୁ ବସିଲାଣି । ତାଙ୍କ ମନରେ ଏହି ଶଙ୍କା ଉଦିତ ହୋଇଛି । ରଘୁନାଥଙ୍କ ସଙ୍ଗେ ଦିନରେ ଥରେକରୁ ଦିଥର ଦେଖା ହୁଏ ନାହିଁ । ସେତିକ କେବଳ ଭୋଜନ ସମୟରେ । ରଘୁନାଥ ଦିନରେ ଥରେ ମାତ୍ର ଭୋଜନ କରନ୍ତି । ଘରେ ଦିନଯାକ ନଥାନ୍ତି । ମ୍ଳାନମୁଖିଟି ଧରି ରାମ ରାମ ଜପି ସକାଳୁ ସନ୍ଧ୍ୟାଯାଏ ନାନା ସ୍ଥାନ ଭ୍ରମଣ କରୁଥାନ୍ତି । ରାମେଶ୍ୱର ମଶାଣିରେ ବସି ଅଧିକ ବେଳ କଟାନ୍ତି ।

ଦିନେ ଘନଶ୍ୟାମ ତାଙ୍କୁ ରାମେଶ୍ୱର ମଶାଣିରେ ଭେଟି ପଚାରିଥିଲେ, ଆଜ୍ଞା, ଆପଣଙ୍କର ଏଠି ବସିବାର କାରଣ ?

ରଘୁନାଥ କହିଲେ, ବୁଝିଲ ଘନ, କେତେବେଳେ କୋଉଁ କଥା । ଆଉ ଅଛି କାଳ ନାହିଁ । ମଣିଷ ଜୀବନ ପାଣିଫୋଟକା । ସେଇଥିପାଇଁ ଆଗରୁ ଦେଖିନେଉଛି । ଶେଷରେ ଏଇଠିକି ତ ଆସିବାକୁ ହେବ ।

ଭଲ କରୁଛ, ଆପଣ ଭଲ କରୁଛ । ଆଗରୁ ବାଲୁଅ, ସାର୍‌ଗୁଣା, କୁକୁରଙ୍କ ସଙ୍ଗେ ଦୋସ୍ତୀ କରିଥାଅ । ଶବ୍ଦାପରିଚ ଥିଲେ ତମକୁ ଧିରେ ଧିରେ ଜଗି କାମୁଡ଼ିବେ । ଅହା, ଭୁଲ୍ କହିଲି । ତମେ ତ ପୋଡ଼ା ହେବ । ତେବେ ଏତେ ଦୋସ୍ତୀ କରିବାର ପ୍ରୟୋଜନ ନାହିଁ ।

ସନ୍ଧ୍ୟା ସମୟରେ ଘରକୁ ଫେରନ୍ତି, କିନ୍ତୁ ବସନ୍ତି ନିର୍ଜନ ସ୍ଥାନରେ । ଦାଣ୍ଡ ଘର କବାଟ ବନ୍ଦ କରି ରହନ୍ତି ସକାଳଯାଏ । ରାତିରେ ଭୋଜନ କରନ୍ତି ନାହିଁ ।

ରୁକ୍ମଣୀ ଭାବନ୍ତି, ଏଥିପାଇଁ ଯେ କେହି ଦାୟୀ ହେଉ ପଛେ, ପରିବର୍ତ୍ତନ ଘଟିଛି ସେହି ଉଡ଼ିଁରିଆ ପିଲାଲା ଦିନଠୁଁ । ତା ପୂର୍ବରୁ ବେଶ ଭଲ ଥିଲେ । ସ୍ୱାମୀଙ୍କର ଏପରି ଦଶା ଯେ ନବୀନର ଅନୁପସ୍ଥିତି ନିମନ୍ତେ, ତା ସେ ଜାଣି ପାରିଛନ୍ତି । ତାଙ୍କର ମନରେ ଦୁଃଖ ହୁଏ ଯେତେବେଳେ ଏହି ସବୁ କଥା ମନରେ

ପକାନ୍ତି । ଧୂଳିଆର ଦେହ ଦିନକୁ ଦିନ ଅଧିକ ଖରାପ ହେବାକୁ ଲାଗିଲା । ଆଗେ ରାତିରେ ଥରେ ଦୁଇଥର ଚମକି ଉଠୁଥିଲା, କିନ୍ତୁ ଏବେ ତାର ଚମକି ଉଠି ବାଇବାଇଲେଇବା ବଢିଗଲାଣି । ଦିନେ ଦିନେ ରାତି ସେମିତିପରି କଟିଯାଏ । ସାଧୁଆ ମା ଗୁଣିଆଁ ଡାକି ତାଙ୍କୁ ଝଡ଼େଇଲା । କିଛି ଲାଭ ହେଲା ନାହିଁ । ଗୁଣିଆଁ କହିଲା, ଜଣେ ମଲା ସ୍ତ୍ରୀର ଆତ୍ମା ଧୂଳିଆ ଦେହରେ ପଶିଛି । ସେହି ଆତ୍ମାକୁ କିପରି ଘଉଡ଼ିବ, ତାଆର ଚେଷ୍ଟା କରିବାକୁ ରୁକ୍ମଣୀ ଧନର ପ୍ରଲୋଭନ ଦେଖାଇଲେ । କିନ୍ତୁ ସେ କହିଲା, ଯଦି ଜବରଦସ୍ତି ତଡ଼େ, ତେବେ ସେ ମୋର ଘରକୁ ଯିବ ।

ରାତି ଅଧରେ ଧୂଳିଆ ବାଇବାଇଲେଇ ଉଠେ, ଭାଇ ପାହାଡ଼ ଉପରେ ବାବାଜୀ ହୋଇ ବସିଛ, ବଡ଼ ମା ତୁ ଯା ।

ରୁକ୍ମଣୀଙ୍କ ଅନୁମାନ ଯେ ସେ ସ୍ତ୍ରୀ ଲୋକଟି ନବୀନର ମା । ନିଜେ ବି କେତେଥର ତାଙ୍କୁ ସ୍ୱପ୍ନରେ ଦେଖିଲେଣି ।

ରୁକ୍ମଣୀ ଭାବନ୍ତି, ଅଣାକୁ ପାଖକୁ ଆଣିଲେ ଏ ସବୁ କମିଯିବ । ଅଣାକୁ ଆଣିବେ କିପରି ? ଯଦି କେହି ତାଙ୍କର ସମସ୍ତ ଧନ ଓ ରୂପ ନେଇ ବିନିମୟରେ ନବୀନକୁ ଫେରାଇ ଦେବାକୁ କହନ୍ତା, ସେ ଆନନ୍ଦରେ ସମ୍ମତ ହୁଅନ୍ତେ । ତାଙ୍କ ମନ କଥା କେହି ଜାଣିଲେ ନାହିଁ । କେବଳ ଜାଣିଲେ ଯେ ସେ ସାବତ ମା । ଶନ୍ତ ଦିନେ ଥିଲେ, ଆଜି ନାହାନ୍ତି । ନବୀନକୁ ଫେରି ପାଇବାକୁ ଓ ଅଣାକୁ ପାଖକୁ ଆଣିବାକୁ ଆଜି ସେ ବ୍ୟାକୁଳ ।

ଏବେ ସାଧୁଆ ମାଆର କଥା ସେ ଶୁଣନ୍ତି ନାହିଁ । ସାଧୁଆ ମା ଆସିଲେ ସେ ମନେ ମନେ ବିରକ୍ତ ହୁଅନ୍ତି । ଭାବନ୍ତି, ଘରର ସବୁ ଦୁଃଖ ଦୁର୍ଦ୍ଦଶା କେବଳ ତାହାପାଇଁ । ସାଧୁଆ ମା ପ୍ରାୟ ଆସେ ନାହିଁ । ଯେବେ ଆସେ, ପର ଘର ଝିଅ ବୋହୂଙ୍କର ନିନ୍ଦା ଗାଇବା ପୂର୍ବରୁ ରୁକ୍ମଣୀ ସେ ସ୍ଥାନରୁ ଚାଲିଯାଇଥାନ୍ତି ।

ଅନେକ ଦିନ ପରେ ଆସି ଥରେ ସେ ତାଙ୍କ ପାଖରେ ବସିଲା । ଆରମ୍ଭ କଲା, ଝିଅ ଲୋ, ତୋ ମୁହଁ କାହିଁକି ଶୁଖିଯାଉଛି ? ହଁ, ଧୂଳିଆ ପାଇଁ କି ତ ? ସେ କିଛି ନୁହେ ଲୋ ଝିଅ, କିଛି ନୁହେ ।

ରୁକ୍ମଣୀ ଅନ୍ୟମନସ୍କ ହୋଇ କହିଲେ, ଜଳିଯାଉ ସେ ମୁହଁ, ପୋଡ଼ିଯାଉ ।

ସାଧୁଆ ମା କହିଲା, ଆଜି କାଲିକାର ଝିଅ ବୋହୂଙ୍କ କଥା ଦୁନିଆ ବାହାର । ସେ କାଳ ତ ଆଉ ନାହିଁ ।

କିଛି କହିଲେ ନାହିଁ ରୁକ୍ମଣୀ।

ତୋର ବୋହୂଟା ମ, ଇସ ଏକ୍ଦେ ଖରାପ ହେଲାଣି ।

ଆଉ ଦିନେ ସେପରି କହିବୁ ନାହିଁ। ତାର ନିନ୍ଦା ଶୁଣିଲେ ମନ ଯାହା ହୁଏ, ମୁଁ ଜାଣେ। କାହାକୁ କହିବି ? ମୋର ଅଣା ପୁଣି ଖରାପ ହେବ ?

ଅଗୋ, ମୁଁ କେବେ ମିଛରେ କହେ ? ମୁଁ ଦେଖିଲି ବୋଲି କହୁଛି।

କଣ ଦେଖିଲୁ ?

ତୁ କଣ ପରତେ ଯିବୁ ? ନଗଲେ ନାହିଁପଛେ ଶୁଣ। ସେଦିନ ସନ୍ଧ୍ୟାବେଳେ ସେ ଅଭି ଧନଙ୍କର ପୁଅ ସାମ କଥାବାର୍ତ୍ତା ହେଉଥିଲେ ।

କଥାବାର୍ତ୍ତା ହେଲେ କଣ ଖରାପ ହୋଇଯାନ୍ତି ?

ମରଦଟା ସଙ୍ଗରେ ମାଇକିନିଅଟାର କି କଥା ଅଛି ? ଶୁଣିବୁ—

ମୋ ରାଣଟି, ଆଉ ସେ ସବୁ କହନା। ସତ ହଉ କି ମିଛ ହଉ ଶୁଣିଲେ ମନ ଖରାପ ହେବ। ମୁଁ ଜାଣେ ମୋ ବୋହୂ ଅଣା ଭଲ। ଚନ୍ଦ୍ରରେ କଳଙ୍କ ଅଛି, ମୋ ଅଣାଠି କଳଙ୍କ ନାହିଁ ।

ସାଧୁଅ ମାଅ ମନ ଦୁଃଖରେ ଫେରିଗଲା। ଭାବିଲା, ଏ ରୁକ୍ମଣୀଟା ବା ହାତରୁ ଖସିବ କି ?

ସେହିଦିନ ରୁକ୍ମଣୀଙ୍କର ଇଚ୍ଛା ହେଲା ଅଣାକୁ ଥରେ ଦେଖିବେ। କେବଳ ଇଚ୍ଛା ନୁହେଁ, ଅଣାକୁ ଦେଖିବାକୁ ମନରେ ଅକୁଳତା ଆସିଲା। କିପରି ଦେଖିବେ ? ନବୀନ ଥିଲେ ବୋହୂକୁ ଘରକୁ ଆଣିଥାନ୍ତେ, ସେ ଭାଗ୍ୟ ତ ନାହିଁ। ଉପାୟ କଣ ? ଯଦି ନିଜେ ଯାଇ ଦେଖି ଆସିବାର ପ୍ରସ୍ତାବ କରନ୍ତି ଭଲ ହେବ। କିପରି ଯିବେ ? ରଘୁନାଥଙ୍କୁ କହିଲେ ଯାହା, ପଥର ଖୁଣ୍ଟକୁ କହିଲେ ସେଇଆ। ସେ ଶୁଣିବେ ନାହିଁ । ଶୁଣିଲେ ତାଙ୍କ ମନରେ ଥରେ ଯେଉଁ ଧାରଣା ହୋଇଯାଇଛି, ସେତକ ନ ବଦଳାଇଲେ ଅହିଗୁଣିଆଁ କଥା କହିବେ। ଯାହା ଲୁହନ୍ତୁ ଯାହା ଭାବନ୍ତୁ, ରୁକ୍ମଣୀ ମନସ୍ଥ କଲେ, ମନ କଥା ତାଙ୍କୁ ଅବଶ୍ୟ କହିବେ।

ଦିନେ ସନ୍ଧ୍ୟା ସମୟରେ ଦାଣ୍ଡଘର କବାଟ ପାଖରେ କେତେବେଳଯାଏ ଠିଆ ହୋଇ ରହିଲେ। ଯଦି ରଘୁନାଥ ଅକସ୍ମାତ୍ କବାଟ ଖୋଲନ୍ତି ସେ ଘର ଭିତରକୁ ଯିବେ। ସେ ବିଫଳ ହେଲେ। ବାହାରେ ଥାଇ ଗଳା ଖଙ୍କାରିଲେ,

ଲାଭ ହେଲା ନାହିଁ । ଶେଷକୁ କବାଟରେ ଝଞ୍ଜିର ଧରି ଖଡ଼ ଖଡ଼ କଲେ । ଶବ୍ଦ ଶୁଣି ରଘୁନାଥ ପଚାରିଲେ, କିଏ ସେ ?

ରୁକ୍ମଣୀ କଣ୍ଠ ଥରାଇ କହିଲେ, ମୁଁ ।

ରଘୁନାଥ କବାଟ ଖୋଲିଲେ । ରୁକ୍ମଣୀ ଘର ଭିତରକୁ ଯାଇ କାନ୍ଥକୁ ଆଉଜି ଠିଆ ହୋଇ ରହିଲେ । ରଘୁନାଥ ରୁକ୍ମଣୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହେଲେ ମଧ୍ୟ କିଛି ନ ଜାଣିଲା ପରି ନିଜ ସ୍ଥାନକୁ ଫେରିଗଲେ । ପୋଥିର ପନ୍ନ ଲେଉଟାଇବାରେ ବ୍ୟସ୍ତ ରହିଲେ । ରୁକ୍ମଣୀଙ୍କ ଉପରେ ଦୃଷ୍ଟି ପକାଇଲେ ନାହିଁ । ଏହିପରି ଅବସ୍ଥାରେ କିଛି ସମୟ କଟିଗଲା । ଯେତେବେଳେ ରଘୁନାଥ ରୁକ୍ମଣୀଙ୍କୁ କଣେଇଁ ଚାହିଁଲେ, ସେ କଣ ଦେଖିଲେ ?

ରୁକ୍ମଣୀ କାନ୍ଥକୁ ଆଉଜି ଠିଆ ହୋଇଛନ୍ତି । ଚକ୍ଷୁ ଦୁଇଟି ଲୋତକରେ ଚଳ ଛଳ ହେଉଛି । ରଘୁନାଥ ଭାବିଥିଲେ, ରୁକ୍ମଣୀ କୌଣସି କାର୍ଯ୍ୟ ପାଇଁ ଆସିଛନ୍ତି ଯହିଁରେ ତାଙ୍କ ସଙ୍ଗେ ସମ୍ବନ୍ଧ ନାହିଁ, ଶେଷ ହୋଇଗଲେ ଚାଲିଯିବେ । ସେ ଚାଲିଗଲେ ନାହିଁ ଦେଖି ଏବଂ ତାଙ୍କ ଚକ୍ଷୁ ଲୋତକ ପୂର୍ଣ୍ଣ ଦେଖି କୌଣସି ବିଶେଷ କାରଣ ବଶତଃ ଆସିଛନ୍ତି ମନେ କରି ପଚାରିଲେ, କିଛି କାର୍ଯ୍ୟ ଅଛି ?

ରୁକ୍ମଣୀ କହିଲେ ହଁ । ଆଉ କହି ପାରିଲେ ନାହିଁ । ସଁ ସଁ ହୋଇ ମୁହଁରେ ଲୁଗା ଦେଇ କାନ୍ଦିଲେ ।

ରଘୁନାଥ ପଚାରିଲେ, କି କାର୍ଯ୍ୟ ଅଛି ଶୁଣେ ?

ଗୋଟିଏ ବିଷୟରେ ଅନୁମତି ଚାହେଁ ।

ଆଶ୍ଚର୍ଯ୍ୟ ହୋଇ ରଘୁନାଥ ପଚାରିଲେ, ମୋଠାରୁ ଅନୁମତି ? ନୂଆ କଥା ଶୁଣୁଛି । ଅନୁମତି ତ କେବେ କୌଣସି କଥାରେ ମୋଠାରୁ ତୁମେ ଚାହିଁ ନାହଁ ।

ଚାହିଁ ନାହିଁ, ଏଥର ଚାହିଁବି । ଗୋଟିଏ କଥା ପଚାରିବି ?

କଣ ପଚାରିବ ପଚାର ।

ଭୟ ଲାଗୁଛି କହିବାରେ, ଭୟ ହେଉଛି ।

ତେବେ କି ପଚାରି ପାର !

ଲଜ୍ଜିତା ହୋଇ ରୁକ୍ମଣୀ କହିଲେ, ଅଶାକୁ ଥରେ ଦେଖିବାକୁ ମୋର ଆଗ୍ରହ ହେଉଛି ।

ଅଶାକୁ ? ଏତିକି କହି ରଘୁନାଥ ହସିଉଠିଲେ । ସେ ହସ ରୁକ୍ମଣୀଙ୍କର ହୃଦୟରେ ତୀକ୍ଷ୍ଣ ଛୁରିକା ଘାତ କଲା । ଲୁଗା କାନିରେ ଲୁହ ପୋଛି କାନ୍ଥ କୋଣଟିରେ ବସିପଡ଼ିଲେ ।

ରଘୁନାଥ କହିଲେ, ତୁମ ଭାଗ୍ୟରେ ଅଛି କି ନାହିଁ ମୁଁ କହି ପାରୁ ନାହିଁ । ସେ ଏଠିକି ଆସିଲେ ତ ଦେଖିବ ? କେବଳ ତୁମରି ପାଇଁ, ତମ କାର୍ଯ୍ୟର ଫଳ ପାଇଁ, ଭଗବାନ ତାକୁ ତୁମକୁ ଦେଖାଇ ପାରିବେ ନାହିଁ । କେତେ ଥର ଭାବିଛି, ଥରେ ଯାଇ ତାକୁ ମୁଁ ନିଜେ ଦେଖି ଆସିବି; କିନ୍ତୁ ପୁଣି ବିଚାର କରେ ତାକୁ ଦେଖି ମୋ'ର ହୃଦୟର ଦୁଃଖ ସହି ପାରିବି ତ ? ମୋର ଶ୍ରେଷ୍ଠ ବାଲ୍ୟ ବନ୍ଧୁର କନ୍ୟା; ମୋର ପାଇଁ ତାର କି ଦୁଃଖ ହୋଇଛି ? ଗୋଟାଏ ନିନ୍ଦାରୁ ରକ୍ଷା ପାଇବାକୁ ଯାଇ ଅତି ନିର୍ଲଜ୍ଜାକୁ ବୋହୁ କଲି । ଆଜି ସେଇଥିପାଇଁ ଯେଉଁ ଅନୁତାପ ମୋର ହୃଦୟକୁ ଶତ୍ରବିଶତ୍ର କରୁଛି ମୁଁ ପ୍ରକାଶ କରି ପାରିବି ନାହିଁ । ତାକୁ ଦେଖିବ କିପରି ?

ରୁକ୍ମଣୀ କହିଲେ, ଭାବୁଛି, ଖଣ୍ଡେ ବଳଦ ଗାଡ଼ିରେ ନିଜେ ଯାଇ ତାକୁ ଦେଖି ଆସିବି ।

ତମର ଉଦ୍ଦେଶ୍ୟ ମୁଁ ବୁଝି ପାରୁ ନାହିଁ ।

ତାକୁ ନଦେଖିବାଯାଏ ମୋ ମନରେ ଶାନ୍ତି ଅସୁ ନାହିଁ ।

ଆସିବ କିପରି ? ସେ ବଞ୍ଚିଥିବାଯାଏ ତମ ମନରେ ଶାନ୍ତି ଆସିବ ନାହିଁ । ସେ ବଞ୍ଚିଥିଲେ ଯେ ତମ ସମ୍ପତ୍ତିରୁ ଭାଗ ପାଇବ । ତମ ଧୂଳିଆର ଭାଗ କମିଯିବ । ତମକୁ ସେଇ ଧୂଳିଆ ରାଣ, ଅଶାର ଅନିଷ୍ଟ କରିବାକୁ ଚେଷ୍ଟା କରିବ ନାହିଁ । ମୁଁ ପ୍ରତିଜ୍ଞା କରି କହୁଛି, ମଲା ପୂର୍ବରୁ ଧୂଳିଆ ନାମରେ ସବୁ ସମ୍ପତ୍ତି ଲେଖି ଦେଇ ଯିବି । ଅଶାର ଯଥେଷ୍ଟ ଅଛି । ଏବେ ମନରେ ଶାନ୍ତି ଆସିଲା ତ ? ଏଥର ଯାଅ, ନିଶ୍ଚିନ୍ତ ରହ ।

ମା ସୁରେଶ୍ୱରୀ, କି କଥା ମୁଁ ଶୁଣୁଛି ?

ବ୍ୟସ୍ତ ହେବାର କାରଣ ନାହିଁ । ଯଦି ମୁହିଁ, ବର୍ତ୍ତମାନ ଲେଖି ଦେଇ ପାରେ ଯେ ଧୂଳିଆ ମୋର ସବୁ ସମ୍ପତ୍ତିର ଅଧିକାରୀ ହେବ । ନବୀନ ଜୀବନରେ ଅଛି କି ନାହିଁ ଠାକୁରଙ୍କୁ ଜଣା । ଯଦି ସେ ବଞ୍ଚିଥାଏ, ସେ ବାବାଜୀ ଲୋକ; ମୁଁ ଏହି ଝୁଲାମୁଣି ଧରି ଶପଥ କରି କହୁଛି, ସମ୍ପତ୍ତି ପାଇଁ ରାଜ

‘ଦରବାରରେ ସେ ମକଦ୍ଦମା କରିବ ନାହିଁ । ଫଯାରଥା ତାର ସମ୍ପତ୍ତି । ଆଉ ଅଧିକ ତାର ଦରକାର ନାହିଁ । କେତେ ବଣ ଜଙ୍ଗଲ ରହିଛି, ଫଳ ମୂଳ ଖାଇ ତାର ସମୟ କଟିଯିବ ।

ମା ସମଲକାଶ୍ୱରୀ, ମୋ ଜୀବନ ରଖିଛ କାହିଁକି ? ନିସ୍ତାର କର ।

ଭାବିବ ନାହିଁ ଯେ ତୁମେ ସୁନ୍ଦରୀ ସ୍ତ୍ରୀ ବୋଲି ତମର ପୁଅ ପାଇଁ ମୁଁ ଏତେ କଥା କରିବାକୁ ଯାଉ । ତା ନୁହେଁ, ସେ ସମୟ ଆଉ ନାହିଁ ।

ଧୂଳିଆ ସବୁ ଶୁଣୁଥିଲା ବାହାରେ । ସେ ଆସି ରଘୁନାଥଙ୍କ ପାଖରେ ବସିଲା । କହିଲା, ବାପା, ମୋର ଧନ ସମ୍ପତ୍ତି ଲୋଡ଼ା ନାହିଁ । ମୋ ଭାଇକୁ ମୋତେ ଆଣିଦିଅ । ସେ ମୋତେ କେତେ ସ୍ନେହ କରେ ! ସେ ଘରକୁ ନ ଫେରିଲେ ମୁଁ ତାକୁ ଖୋଜି ଆଣିବାକୁ ଚାଲିଯିବି । ଯେବେ ତାକୁ ପାଇବି ଫେରିବି; ନୋହିଲେ ନାହିଁ ।

ତା ଆଖିରେ ଲୁହ ।

ରୁକ୍ମଣୀ କହିଲେ, ଏତେ ଅବିଶ୍ୱାସ !

ରଘୁନାଥ ଧୂଳିଆର ମୁଣ୍ଡ ଆଉଁସିଲେ । ରୁକ୍ମଣୀଙ୍କୁ କହିଲେ, ନିଜେ ଥରେ ଭାବି ଦେଖ, ଅବିଶ୍ୱାସ କରିବା ମୋ ପକ୍ଷରେ ଉଚିତ କି ନୁହେଁ । ଯଦି ସ୍ୱାମୀକୁ ଅବିଶ୍ୱାସ କରିବାକୁ ମୂଳରୁ ଶିଖିଥାନ୍ତ ତେବେ ଏତେ କାଣ୍ଡ ହୋଇ ନ ଥାନ୍ତା । ତୁମେ ଚାହିଁ ଅଶାକୁ ଦେଖିବ, ଉଦ୍ଦେଶ୍ୟ କେବଳ ତମକୁ ଜଣା । ମୁଁ ସନ୍ଦେହ କରି କହୁଛି, ତମର ଉଦ୍ଦେଶ୍ୟ ମନ୍ଦ । କିଏ ଜାଣିଛି ସାଧୁଆ ମା ଦ୍ୱାରା ଔଷଧ ଆଣି ପାଖରେ ରଖିଛ କି ନାହିଁ, ଅନ୍ୟର ଅମଙ୍ଗଳ ସାଧନା ପାଇଁ—

ସେ ଆଉ କହି ପାରିଲେ ନାହିଁ । ରୁକ୍ମଣୀ ରଘୁନାଥଙ୍କର ଗୋଡ଼ ତଳେ ମୁଣ୍ଡ ଲଗାଇ ଶିଶୁଟି ପରି ଅଧୀର ହୋଇ କାନ୍ଦିଲେ । ତଥାପି ରଘୁନାଥ ଅଟଳ । କିନ୍ତୁ ତାଙ୍କ ଚକ୍ଷୁରେ ଲୋତକ ଦେଖାଦେଇଥିଲା ।

ଧୂଳିଆ ତାର ମାଆଙ୍କୁ ଉଠାଇ ବସାଇଲା ।

ରୁକ୍ମଣୀ ରଘୁନାଥଙ୍କର ପାଦ ଧରି କହିଲେ, ତୁମର ଅନୁମାନ ଭୁଲ ନୁହେ । ତେବେ ଆଉ ନୁହେ, କ୍ଷମା କର । ଆଜି ପ୍ରଥମ ଥର ତୁମ ନିକଟରୁ କ୍ଷମା ଚାହୁଁଛି । କେତେ ଥର ତ ତମ ମନକୁ କ୍ଷମା କରିଛ, ଆଜି ମୁଁ ନିଜେ ଚାହୁଁଛି । ଅନୁମତି ଦିଅ, ଥରେ ମୁଁ ମୋର ଅଶାକୁ ଦେଖି ଆସିବି । ଆଉ ସନ୍ଦେହ କରନା ।

ରଘୁନାଥ କହିଲେ, ଭଗବାନ କେବଳ କ୍ଷମା କରିବାକୁ କ୍ଷମ, ଆଉ କିଏ କ୍ଷମା କରି ପାରେ ?

ରୁକ୍ମଣୀ ଅନ୍ତରର ଆକୁଳତା ସହି କହିଲେ, ତୁମେ କ୍ଷମା କଲେ ଭଗବାନ ମନା କରିବେ ନାହିଁ । ମୁଁ ଭଗବାନଙ୍କର କ୍ଷମା ଚାହେଁ ନାହିଁ, ଚାହେଁ ତୁମର ।

ରଘୁନାଥ କହିଲେ, ଯଦି ସତରେ କ୍ଷମା ଚାହୁଁଥିଅ, ତେବେ ଭଗବାନଙ୍କଠାରୁ ଚାହଁ । ସେ ଦୟାର ଆଧାର; ସେ ନିଶ୍ଚୟ ଦୟା କରିବେ ।

ତମେ ମୋର ଭଗବାନ ।

ରଘୁନାଥ ହସିଲେ କାହିଁକି ? କହିଲେ, ମୋର ଯଦି କ୍ଷମା କରିବାକୁ କ୍ଷମତା ଅଛି ବୋଲି ମନେକର, ତେବେ ମୁଁ କ୍ଷମା କଲି । ଏଥର ଯାଅ ।

ରୁକ୍ମଣୀ ଆନନ୍ଦ ପ୍ରକାଶ କରି ପଚାରିଲେ, ଆଶାକୁ ଦେଖିବାକୁ ଯିବି ? କ୍ଷମା କରିଛ, ଅନୁମତି ଦେଇଛ—

ମୁଁ ଅନୁମତି ଦେଇ ନାହିଁ । ଆଶା ସଙ୍ଗେ ତମର କିଛି ସମ୍ପର୍କ ନାହିଁ । ସେ ତୁମର କେହି ନୁହେ ।

ତେବେ, ତୁମେ ମୋତେ କ୍ଷମା କରିନାହଁ? ମୋତେ ଆହୁରି ଅବିଶ୍ୱାସ କରୁଛ ?

ତୁମେ ଯାହା ଭାବୁଛ, ସେଥିରେ ବାଧା ଦେବାର ଅଧିକାର ମୋର ନାହିଁ । ରଘୁନାଥ ଝୁଲିମୁଣି ଧରି ପଦାକୁ ଆସିଲେ ।

ରୁକ୍ମଣୀ କାନ୍ଦି କାନ୍ଦି କହିଲେ, ପ୍ରାୟଶ୍ଚିତ୍ତ କରିବାକୁ ହେବ ତେବେ ?

ରଘୁନାଥ ଝୁଲିମୁଣିରେ ହାତ ପୂରେଇ କହିଲେ, ସେଥିପାଇଁ ଅନ୍ୟର ଅନୁମତି ଲୋଡ଼ା ହୁଏ ନାହିଁ ।

ରଘୁନାଥ ଘରୁ ବାହାରି ଅନ୍ୟ କୁଆଡ଼େ ଚାଲିଗଲେ । ଧୂଳିଅ ତାଙ୍କର ଅନୁଗମନ କଲା । ରୁକ୍ମଣୀ ଆଖିରୁ ଲୁହ ପୋଛି ସେମାନଙ୍କୁ ପଛରୁ ଅନାଇଁ ରହିଲେ । ମନ କହିଲା, ଏତେ ନିଷ୍ଠୁର — ।

ସତେ ରୁକ୍ମଣୀ ଆଉ ବଞ୍ଚିବେ ? ତିନି ଦିନ ହେଲା ଖିଆ ପିଆ ଛାଡ଼ିଦେଇଛନ୍ତି । ରାନ୍ଧୁଣୀ ରଘୁନାଥଙ୍କୁ ଏ ସମ୍ବାଦ ଦେଲା । ରଘୁନାଥ ନ ଶୁଣିଲା

ପର ମୁହଁ ବୁଲେଇ ଦେଲେ । ପରେ ଭାବିଲେ, କେଜାଣି ବା ତାଙ୍କ ମନରେ ଅନୁତାପ ଆସିବାରୁ ନିଜ ପାପର ପ୍ରାୟଶ୍ଚିତ୍ତ କରୁଛନ୍ତି । ପୁଣି ମନ ବଦଳାଇ ଭାବିଲେ, ଥରେ ଯାଇ ଦେଖି ଆସିବେ, ଅନୁରୋଧ କରି ଆସିବେ, କିନ୍ତୁ ତଦ୍ଦ୍ୱାରା ରୁକ୍ମଣୀଙ୍କର ଜିଦ୍ ବଜାଏ ରହିବ ।

ଧୂଳିଆ କାନ୍ଦି କାନ୍ଦି ଆସି ରଘୁନାଥଙ୍କର ହାତ ଧରି କହିଲା, ବାପା, ତମୁକୁ ମା ଦେଖିବାକୁ ଡାକୁଛି ।

ରଘୁନାଥ ରୁକ୍ମଣୀଙ୍କ ନିକଟରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ରୁକ୍ମଣୀ ଖଟ ଉପରେ ବସିବାକୁ ଚେଷ୍ଟା କଲେ, ପାରିଲେ ନାହିଁ । ଅତି ଦୁର୍ବଳ ହୋଇଛନ୍ତି ।

ରଘୁନାଥ ସ୍ତ୍ରୀଙ୍କର ଏପରି ଦଶା ଦେଖି ଦୁଃଖିତ ହେଲେ । ତାଙ୍କର ଜ୍ୟୋତିହୀନ ନେତ୍ରରେ ଲୋତକ ଟଳ ଟଳ ହୋଇ ଆସିଲା । କଠୋର ପ୍ରାଣ ତରଳିଗଲା କି ? ରୁକ୍ମଣୀଙ୍କ ଦେହରେ ହାତ ମାରି ଦେଖିଲେ, ଜ୍ୱର । କିଛି କହିଲେ ନାହିଁ । ପିଠିରେ ହାତ ରଖି ନିକଟରେ ଠିଆ ହୋଇ ରହିଲେ ।

ରୁକ୍ମଣୀ କହିଲେ, ଏତେଦିନେ ଦୟା ହେଲା ?

କର୍ତ୍ତବ୍ୟ ।

ଆଉ ମୋର ବେଶୀ ଦିନ ନାହିଁ । ହେଇ ଦେଖ, ଅପା ଆସି ଆଗରେ ଠିଆ । ହାତ ବଢ଼ାଇ ଡାକୁଛନ୍ତି, ମନାକରି ପାରିବି ନାହିଁ । ଯିବି, ତାଙ୍କର ଛାଏଁଲୁ ଯିବି । ସେ କ୍ଷମା କରି ପାରିବେ । ତୁମେ କ୍ଷମା ଦେଲ ନାହିଁ, କିନ୍ତୁ ସେ ବାରଣ କରିବେ ନାହିଁ ।

ବ୍ୟସ୍ତ ହୁଅ ନା, ତାହେଲେ ଜ୍ୱର ଅଧିକ ବଢ଼ିବ ।

ଆଉ ବଢ଼ିବ ? ଯାହା ବଢ଼ିବାର ବଢ଼ିଛି । ଯିବା ପୂର୍ବରୁ ଅଶାକୁ ଦେଖିବାର ଇଚ୍ଛା ରହିଗଲା । ତୁମେ ନିଷ୍ଠୁର । ମୋର ଶେଷ ଆଶା ପୂରଣ କରିବାକୁ ଦେବ ନାହିଁ । ହଉ ନ ଦିଅ ।

କିଛି ସମୟ ପରେ ପୁଣି ରୁକ୍ମଣୀ କହିଲେ, ଅପା କହୁଛନ୍ତି, ଯିବା ପୂର୍ବରୁ ଥରେ ଅଶାକୁ ଦେଖି ଯିବ । ସେ କହୁଛନ୍ତି; ନବୀନ କେଉଁ ପର୍ବତ ଉପରେ ବସିଛି, ବଣ ଜନ୍ତୁଙ୍କ ସଙ୍ଗେ ଖେଳୁଛି, ଆନନ୍ଦରେ ଅଛି । ନବୀନ ପାଇଁ ବ୍ୟସ୍ତ ହେବ ନାହିଁ ।

ବେଶୀ ଗପ ନାହିଁ । ଦେହ ଅନ୍ଧରେ ଖରାପ ହେବ ।

ମୋର ସେଇଅ ଲୋଡ଼ା । ସ୍ୱାମୀ ସ୍ନେହ ବଞ୍ଚିତାର ସେଇଅ ଲୋଡ଼ା ।

ସ୍ନେହ ବଞ୍ଚିତା ?

ଅପାଙ୍କର ଅମ୍ମ ପ୍ରତି ଟିକିଏ ସ୍ନେହ ଯଦି ତମର ଥାଏ, ତେବେ ତାଙ୍କର ଅନୁରୋଧ ରଖା କର । ସେ କହିଁାନ୍ତି, ଯିବା ପୂର୍ବରୁ ତାଙ୍କର ଅଶାକୁ ମୁଁ ଦେଖି ଯିବି । ତାଙ୍କଠାରୁ ମୁଁ ଅନୁମତି ପାଇଛି । କେବଳ ତୁମର ଅନୁମତି ଲୋଡ଼ା ।

ହେଉ, ଅନୁମତି ମୁଁ ଦେଉଛି । ଅଜ ତୁମେ ଯାଇ ଅଶାକୁ ଦେଖି ଆସ । ମୁଁ ତୁମ ସଙ୍ଗେ ଯାଇ ପାରିବ ନାହିଁ । ଧୂଳିଅ ଯିବ । ତଥାପି କହୁଛି, ଯଦି କୌଣସି ଅଶାର କିଛି ଅନିଷ୍ଟ ହୁଏ, ମୁଁ ତୁମର ଏଇ ସଂସାରକୁ ପୋଡ଼ି ଜାଳି ଭସ୍ମ କରି ଚାଲିଯିବି । ଅନେକ ସହିଲିଣି, ଅଉ ମୁଁ ସହି ପାରିବ ନାହିଁ ।

ସ୍ୱାମୀ, ତୁମର ଅବିଶ୍ୱାସ ତଥାପି ତୁଟିଲା ନାହିଁ ? ଦେଖ, ତମର ପ୍ରଥମା ସ୍ତ୍ରୀ କପରି ହସୁଛନ୍ତି । ମୋତେ ପାଖକୁ ନେବାକୁ ଡାକୁଛନ୍ତି ।

ପତ୍ନୀଙ୍କର କଥା ଶୁଣିବାକୁ ରଘୁନାଥ ସେଠାରେ ନ ଥିଲେ । ପଦାକୁ ଯା ଇ ଯାଉ ଚିନ୍ତା କରୁଥିଲେ, ଦୁର୍ବଳ ବେଳରେ ତ ସେ ଅନୁମତି ଦେଲେ, ଅଶାର କିଛି ଅନିଷ୍ଟ କରିବାକୁ ରୁକ୍ମଣୀ ତାକୁ ଦେଖିବାକୁ ଯାଉନାହାନ୍ତି ତ ? ଛାତି ଥରାଇ ଦୀର୍ଘ ଶ୍ୱାସ ଛୁଟିଲା ।

ସନ୍ଧ୍ୟା ।

କିଏ ବାହାରୁ ଡାକିଲା, ଅଶା ଅପା — ।

ସାବିତ୍ରୀ ବାଇଗଣକଟା ଛାଡ଼ି କାନ ଡେରିଲେ । ଶୁଭିଲା, କିଏ ଡାକୁଛି, କବାଟ ଫିଟା । ଘରେ ଅଉ କେହି ନାହାନ୍ତି । ଅଶା ବୁଢ଼ୀଙ୍କୁ ସଙ୍ଗରେ ନେଇ ନଦୀ କୂଳକୁ ଯାଇଛି । ବଣିଅ କାମରୁ ଫେରି ନାହିଁ । ଧୀରେ କବାଟ ନିକଟକୁ ଯାଇ ସାବିତ୍ରୀ ପଚାରିଲେ, କିଏ ?

ଉତ୍ତର ଅସିଲା, ମୁଁ ଧୂଳିଅ । କବାଟ ଫିଟା ମାଉସୀ — ।

ରୁକ୍ମଣୀ କବାଟ ଖୋଲିଲେ । ଧୂଳିଅ ଭିତରକୁ ଅସି ତାଙ୍କୁ ପ୍ରଣାମ କରି କହିଲା, ବୋଉ ଅସିଛି ଅଶା ଅପାକୁ ଦେଖିବାକୁ ।

ସାବର୍ଣ୍ଣୀଙ୍କର ମୁହଁ ଶୁଖିଗଲା । ବିରସ ହୋଇ ପଚାରିଲେ, କୁଆଡ଼େ ଯାଇଥିଲେ, ଏଇବାଟ ଦେଇ ଘରକୁ ଫେରୁଛନ୍ତି କି ? ଦିନେ କାଳେ ତ ଅଣା ମନେ ପଡ଼େ ନାହିଁ ।

ଧୂଳିଆ କହିଲା, ବୋଉର ଦେହ ଭଲ ନାହିଁ, ତାକୁ ଜ୍ୱର ହୋଇଛି । ସେଇଥିପାଇଁ ଅଣା ଅପାକୁ ଦେଖିବାକୁ ଆସିଛି ।

ସାବର୍ଣ୍ଣୀ କୃତ୍ରିମ ଆନନ୍ଦ ପ୍ରକାଶ କରି କହିଲେ, ଆଉ କିଏ ଆସିଛି ?

ଆଉ କେହି ନାହିଁ । ବାପା ଆସିବାକୁ ମନାକଲେ । ମୁଁ ବୋଉକୁ ସଙ୍ଗରେ ନେଇ ଆସିଛି ।

ସାବର୍ଣ୍ଣୀ ବଳଦ ଗାଡ଼ି ପଛକୁ ଯାଇ କହିଲେ, ସମଦୁଣୀ, ଘରକୁ ଆସ ।

ରୁକ୍ମଣୀ ଏତେ ଦୁର୍ବଳ ହୋଇ ମଧ୍ୟ ଗାଡ଼ିରୁ ଓହ୍ଲାଇ ତଳେ ବସିପଡ଼ିଲେ ।

ପାଦେ ବି ଯାଇ ପାରିଲେ ନାହିଁ । ଦେହ ଥର ଥର କମ୍ପୁଛି । ଛାତି ଥରୁଛି । ମୁଣ୍ଡ ବୁଲାଉଛି । କେହି କେବେ ଆଶା କରି ନ ଥିଲେ, ଜୀବନରେ ଏ ଦୁଇ ଜଣଙ୍କର ଦେଖା ହେବ । ଯାହା ହେଉ, ଉଭୟେ ଉଭୟଙ୍କୁ ଦେଖିଲେ । ଉଭୟଙ୍କର ଚକ୍ଷୁ ଲୋତକାକ୍ତ ହେଲା ।

ଆସ ସମଦୁଣୀ, ଘରକୁ ଆସ, କହି ସାବର୍ଣ୍ଣୀ ରୁକ୍ମଣୀଙ୍କ ହାତ ଧରିଲେ । ସେ ଚମକି ଉଠିଲେ । ଏଁ, ଦେହରେ ତାତି ଭରତି, ଏପରିକି ଧାନ ପକାଇଲେ ଖଇ ଫୁଟିବ । କହିଲେ, ଥଣ୍ଡାରେ ବସ ନାହିଁ, ଘର ଭିତରକୁ ଆସ ।

ଯାଇ ପାରିବି ନାହିଁ ଭଉଣୀ, ଉଠିବାର ଶକ୍ତି ନାହିଁ । ମୋ ଅଣାକୁ ଥରେ ଦେଖିବାକୁ ଆସିଛି । ଅନୁମତି ଦେବ ତ ?

ଅଣା କାହାର ? ସେ ତ ମୋର ନୁହେଁ ତମର ଅଣାକୁ ତମେ ଦେଖିବ ସେଥିରେ ଅନୁମତି ଦେବ କିଏ ? ଭିତରକୁ ଯିବାକୁ ଯଦି ଆପତ୍ତି ନ ଥାଏ ଆସ । ସଞ୍ଜ ହେଲାଣି, ଅନ୍ଧାର ରାତି ।

ଭଉଣୀ, ଚାଲିବାର ଶକ୍ତି ମୋର ନାହିଁ । ଛାତି ଥରୁଛି ।

ସାବର୍ଣ୍ଣୀ ରୁକ୍ମଣୀଙ୍କର ହାତ ଧରି ଉଠାଇଲେ । ଅତି କଷ୍ଟରେ ପାହାଚ ଉଠାଇ ଦାଣ୍ଡ ଘରକୁ ନେଲେ । ଆଉ ନେଇ ପାରିଲେ ନାହିଁ । ବ୍ୟସ୍ତ ହୋଇ କହିଲେ, ଏପରି ଅବସ୍ଥାରେ ଘରୁ ବାହାରି ଭୁଲ କରିଛ । ତମର ଅଣା ତ

ଲୁଅଡ଼େ ଚାଲିଯାଉ ନାହିଁ । ସେ ସବୁବେଳେ ତମର । ଦେହ ଭଲ ହୋଇ ଯାଇଥିଲେ ପଛେ ଅସିଥାନ୍ତ ।

ଅଣା ଚାଲିଯାଉ ନାହିଁ । ସୁବର୍ଣ୍ଣମେରୁ ମହେଶ୍ୱର ତାର ମଙ୍ଗଳ କରିବେ । ତା ପାଇଁ ମା ସୁରେଶ୍ୱରୀ ଅଛନ୍ତି । ମୁଁ ଯେ ଚାଲିଯାଉଛୁ ଭଉଣୀ !

ବାପ ଘରକୁ ? କେତେ ଧନ ପାଇଁ ? କେବେ ଯାଉଛ ?

ରୁକ୍ମଣୀ ହସି ହସି କହିଲେ, ସେ ପୁରକୁ । ସେଇ ତ ବାପ ଘର । ତାର ଧନ ପାଇଁ ଚାଲିଯିବି ।

ଅହା, ଏପରି କହନା । ତମେ ଭାଗ୍ୟବତୀ । ତମକୁ ଏଡ଼େ ଶୀଘ୍ର ସେ-ପୁରକୁ ଯିବାକୁ ପଡ଼ିବ ନାହିଁ । ଠାକୁରେ ମୋତେ ସ୍ୱାମୀମାନ ଜନମ ଦେଇଛନ୍ତି । ମୋର ଭାଗ୍ୟରେ ସେ କଥା ପଡ଼ୁ । ଅସ, ଘରକୁ ଚାଲ, ବିଶ୍ରାମ ନେବ ।

ରୁକ୍ମଣୀ ଉତ୍ତର ଦେଇ ପାରିଲେ ନାହିଁ । ଭାବିଲେ, ଯେଉଁ ସ୍ତ୍ରୀ ଲୋକ ସାବିତ୍ରୀଙ୍କ ନାମରେ ଅପବାଦ ଦେଇଛି, ତାର ନରକରେ ମଧ୍ୟ ସ୍ଥାନ ନାହିଁ । ଯେ ବିଶ୍ୱାସ କରିଥିଲି ତାର ସ୍ଥାନ ନରକପୁରରେ । ଏଇ ଦେବୀ ପ୍ରତିମାର ମନ ତ ସୁନାର ମନ ।

ରୁକ୍ମଣୀଙ୍କୁ ଧୂଳିଆ ପାଖରେ ଛାଡ଼ି ସାବିତ୍ରୀ ଦୀପ ଲଗାଇ ଆଣିଲେ । ଆର ଘରେ ବିଛଣା ସଜାଡ଼ିଲେ । ସମଧୁଣୀଙ୍କୁ ସେ ଘରକୁ ନେଇ ଶୁଆଇଦେଲେ ପଲଙ୍କ ଉପରେ ।

ଏହି ସମୟରେ ବୁଢ଼ୀଙ୍କୁ ସଙ୍ଗରେ ନେଇ ବଣିଆ ଧର୍ମସିଂ ହୋଇ ପହଞ୍ଚିଲା । ବିକଳ ହୋଇ ପଚାରିଲା, ଅଣା ଫେରିଲାଣି କି ମା ?

ସାବିତ୍ରୀ ରୁକ୍ମଣୀଙ୍କ ଖଟ ପାଖରେ ବସି ପାନ ଭାଙ୍ଗୁଥିଲେ । ଉତ୍ତର ଦେଲେ, ନାଇଁ ତ, ଆଜ କାଇଁକି ଏତେ ଡେରି ହେଲାଣି ? ମାଆଙ୍କୁ ନେଇ ସେ ନଦୀ କୂଳଅଡ଼େ ଯାଇଛି । ଅସୁଥିବେ ଯେ, ତୁ ଯାଇ ଡାକଦେ । ତାକୁ ଦେଖିବାକୁ ସମୁଧୁଣୀ ଅସିଛନ୍ତି ।

ସମୁଧୁଣୀ ?

ହଁ, ଧୂଳିଆ ସଙ୍ଗରେ ସେ ଅଣାକୁ ଦେଖିବାକୁ ଅସିଛନ୍ତି ।

ସର୍ବନାଶ ! ତାହାହେଲେ ଆଉ ଅଣା ମିଳିବ ନାହିଁ ।

ରୁକ୍ମଣୀ ଔଷଧ କରି ନବୀନକୁ ଘରୁ ତଡ଼ିଦେଇଛନ୍ତି, ଏ କଥା ବଣିଆ କାହା ପାଖରୁ ଶୁଣିଥିଲା । ତଡ଼ିଦେବାର ଉଦ୍ଦେଶ୍ୟ ଯେ ସମସ୍ତ ଯୁଗ ମଧ୍ୟ ସେ ବୁଝି ପାରିଥିଲା । ମଣିଷ ମନ ସବୁବେଳେ ପାପ କୁଁ ଥାଏ । ଦିନେ ନାହିଁ, କାଲେ ନାହିଁ, ଆଜି ସଞ୍ଜବୁଡ଼ଠାରେ କାହିଁକି ରୁକ୍ମଣୀ ଏକେଲା ଆସିଛନ୍ତି ? ସଙ୍ଗରେ ରଘୁନାଥ ବାବୁ ଆସିଥିଲେ ଅଲଗା କଥା ହୋଇଥାନ୍ତା । ବଣିଆର ହଳଆ ମନ ଗୋଟାଏ କଥା ସ୍ଥିର କଲା, ଅଣାକୁ ଘରୁ ତଡ଼ିବା ତାଙ୍କର ଇଚ୍ଛା । ସେଇଥିପାଇଁ ସେ କଣ ଚକ୍ରାନ୍ତ କରି ଅବେଳରେ ଆସିଛନ୍ତି । ବଣିଆ ଅକୂଳ କଣ୍ଠରେ ଉଚ୍ଚସ୍ୱରରେ କହିଲା, ସର୍ବନାଶ ! ଆଉ ଅଣାକୁ ପାଇବା ନାହିଁ । ସେ କାନ୍ଦି ଉଠିଲା ।

ଏକ ସଙ୍ଗେ ଦିଓଟି ସ୍ୱର ମିଶି ପ୍ରଶ୍ନ କଲା, କାହିଁକି ? ମା କାହାନ୍ତି ?

ବଣିଆ ଉତ୍ତର ଦେବା ଆଗରୁ ବୁଢ଼ୀ ଥରିଲା ସ୍ୱରରେ କହିଲେ, ମୋତେ ପୋଖରୀ କୂଳରେ ବସାଇ ଅଣା ଫୁଲ ଆଣିବାକୁ ଗଲା । ନଈକୁ ଗଲା ନାହିଁ । ଅପେକ୍ଷା କଲି କେତେବେଳେ ଯାଏ । ସେ ଆସିଲା ନାହିଁ । ଦରଣ୍ଡି ଦରଣ୍ଡି ପୋଖରୀ କୂଳଆଡ଼େ ଯାଉଥିଲି । ମୋତେ ଶୁଭିଲା, ଯେମିତି ଅଣା କାନ୍ଦି କାନ୍ଦି କାହାକୁ କହୁଛି, ତୋ ଗୋଡ଼ ତଳେ ପଡ଼ୁଛି, ଛାଡ଼ିଦେ, ମା ଏକୁଟିଆ ବସିଛି । କିଏ ଗୋଟାଏ କହିଲା, ଆ, ରାଣୀ ହେବୁ । ତୁ ପରା ମୋର ଛୋଟ ଭଉଣୀଟା । ସେଇଠୁ ଶୁଣିଲି, ଅଣା କାନ୍ଦୁଛି । ଡାକିଲି, ଅଣା । ଅଣା କାନ୍ଦି କାନ୍ଦି କେତେ ଦୂରରୁ କହିଲା, ମୋତେ ଧରି ନେଉଛନ୍ତି ଲୋ ମା । କିଏ ତା ପାଟିରେ ଲୁଗା ବଣ୍ଡା କି ହାତ ଗୁଡ଼ିଦେଲା କି କଣ, ଆଉ କିଛି ଶୁଭିଲା ନାହିଁ । ଦରଣ୍ଡି ହୋଇ ଯୁଆଡ଼ୁ କଥା ଆସୁଥିଲା ସେଇଆଡ଼େ ଗଲି । କେତେ ଡାକିଲି, କେହି ଆଉ ଶୁଣିଲେ ନାହିଁ ।

ବୁଢ଼ୀ କାନ୍ଦିବାକୁ ଲାଗିଲେ । ଅନ୍ୟମାନେ ନିର୍ବାକ ହେଲେ ।

ରୁକ୍ମଣୀ କହିଲେ, ଅଣା ମୋର ନାହିଁ, ତାକୁ ଧରି ନେଇଛନ୍ତି ? ଆହା, ଆହା — ।

ସେ ଅସ୍ତବ୍ୟସ୍ତ ହୋଇ ଉଠି ବସିଲେ । କପାଳରେ ହାତ ମାରି କହିଲେ, ଅଣା ମୋର ନାହିଁ ? ହଁ, ବୁଝିଲି । ଏ ସବୁ ତେବେ ରାମର କାଣ୍ଡ,— ରାମର କାଣ୍ଡ — ।

ବଶିଆ ରାଗିଯାଇ କହିଲା, ଏ ସବୁ ତମର କାଣ୍ଡ, ତମର ଷଡ଼ଯନ୍ତ୍ର । ଦିନେ ନାହିଁ କାଲେ ନାହିଁ, ଆଜି ତମର ଏଠିକି ଆସିବାର କାରଣ ଏବେ ଜଣାପଡ଼ିଲା । ତମର ମନକାମନା ଏବେ ପୂର୍ଣ୍ଣ ହେଲା । ନବୀନକୁ ଔଷଧ କରି ତଡ଼ିଥିଲ, ଏବେ ଚକ୍ରାନ୍ତ କରି ଆଶାକୁ ତଡ଼ିଲ ।

ସାବର୍ଣ୍ଣୀ ଜଳ ଜଳ କରି ଚାହିଁରହିଲେ । ତୁଣ୍ଡରେ ଭାଷା ନାହିଁ ।

ବଶିଆ କହିଲା, ମା, ମୁଁ ଯାଉଛି । ଆଶାକୁ ଫେରାଇ ନ ଆଣିବାଯାଏ ଘରକୁ ବାହୁଡ଼ିବି ନାହିଁ । ମନେ ରଖିଥା, ଭଲଲୋକ କହିବାକୁ ଯିଏ ଆଜି ଆମ ଘରକୁ ଆସିଛନ୍ତି ସେଇ ଏଥିକି ଦାୟୀ । ମୋ କରାମତି ଦିନେ ସେ ବୁଝିବେ ।

ବଶିଆ ଚାଲିଗଲା । ସାବର୍ଣ୍ଣୀ ନିସ୍ପନ୍ଦ ହୋଇ ରହିଲେ । କଣ ସେ ଦେଖୁଛନ୍ତି, କଣ ସେ ଶୁଣୁଛନ୍ତି କିଛି ବୁଝି ପାରିଲେ ନାହିଁ । ଦୁଇ ଆଖିରୁ ଲୋତକ ଝରିଲା ।

ରୁକ୍ମଣୀ ଲୁହ ପୋଛି କହିଲେ, ସମଦୁଣୀ, ଆଉ ଏ ସଂସାରରେ ମୁଁ ରହି ପାରିବି ନାହିଁ । ଅପା ଆଜି ଆହ୍ଳାଦରେ ମୋତେ ଡାକୁଛନ୍ତି । ରହ ଅପା, ଟିକିଏ ରହ, ଯାଉଛି । ସମଦୁଣୀଙ୍କୁ ମନକଥା କହିଯାଏଁ । ମା ସୁରେଶ୍ୱରୀ ଗୋ — । ଓଃ, ସମୁଦୁଣୀ, ଆଶା ଚାଲିଗଲା ବୁଝିଛ ? ସବୁ ସେଇ ବାଘର କାଣ୍ଡ । କେହି ବୁଝିବେ ନାହିଁ, ସମସ୍ତେ ଦେବେ ମୋର ଦୋଷ । ଆଶାକୁ ଦେଖି ପାରିଲି ନାହିଁ । ରହ ରହ, ଯାଉଛି । ସ୍ୱାମୀ ଅବିଶ୍ୱାସ କଲେ, ସଂସାର ଅବିଶ୍ୱାସ କଲା । ଶେଷକୁ ଅବିଶ୍ୱାସ କଲ ସମୁଦୁଣୀ, ଅସହ୍ୟ । ସବୁ କଥା ମୋ ଅପା ଜାଣନ୍ତି । ତାଙ୍କୁ ପଚାର, ପଚାର ସେ କହିବେ । ମୁଁ ଆଶାକୁ ଔଷଧ କରି ନାହିଁ । ସମୁଦୁଣୀ, ନିଅ ଧୂଳିଆକୁ ରଖ । ସେ ତମର ପୁଅ, ସେ ମୋର ପୁଅ ନୁହେଁ ।

ରୁକ୍ମଣୀ ତୁନିହେଲେ । ବିଛଣାରେ ପଡ଼ି ଛଟପଟ ହେବାକୁ ଲାଗିଲେ । ଅଧୀର ହୋଇ କାନ୍ଦିବାକୁ ଲାଗିଲେ । ତଥାପି ସାବର୍ଣ୍ଣୀ ନୀରବ । ଭାବୁଥିଲେ ପରା, କାହିଁକି ରୁକ୍ମଣୀ ଅନାହୂତ ଆସିଲେ ? ଆଶାକୁ ଯମ ନେଲା କାହିଁକି ? ସେ କଥା ରୁକ୍ମଣୀ ଜାଣିଲେ କିପରି ? କାହିଁକି ବଶିଆ ବଜୁଳି ପରି ଛୁଟି ପଳାଇଲା ?

ରୁକ୍ମଣୀ ନୀରବ ହେଲେ । ରୁକ୍ମଣୀ ନିଶ୍ଚଳ ହେଲେ । ସେତେବେଳେ କେହି ଜାଣି ପାରିନଥିଲେ, ଜାଣିବାକୁ ଚେଷ୍ଟା କରି ନ ଥିଲେ ଯେ ରୁକ୍ମଣୀଙ୍କର ନୀରବତା, ନିଶ୍ଚଳତା ଆଉ ଭାଙ୍ଗିବ ନାହିଁ, ତାଙ୍କର ଆଖି ଆଉ ଜଗତର ଆଲୋକ ଦେଖିବ ନାହିଁ ।

ରାଜକୁମାର, ଆପଣ ରାଜ୍ୟର ଭାବୀ ରାଜା, ପ୍ରଜାର ପ୍ରଭୁ ଆପଣ । ଜଣେ ସାଧାରଣ ପ୍ରଜାର କନ୍ୟା ଉପରେ ଅତ୍ୟାଚାର କରିବାକୁ ଆଗେଇ ଆସୁଛନ୍ତି ?

ମୁଁ ଅତ୍ୟାଚାର କରିବାକୁ ଆସି ନାହିଁ । ମୋର ଇଚ୍ଛା, ତୁମେ ଏ ରାଜ୍ୟର ପାଟରାଣୀ ହେବ । ତୁମେ ମୋର ସ୍ତ୍ରୀ ହେବ ।

ମୁଁ ପାଟରାଣୀ ହେବାକୁ ଚାହେଁ ନାହିଁ । ମୁଁ ଚାହେଁ ମୋ ମା ପାଖକୁ ଯିବି । ମୋତେ ସେ ପାଷାଣ୍ଡ ବଳାତ୍କାର କରି ନେଇ ଆସିଛି । ମା ମୋର କାନ୍ଦୁଥିବ । ମୋତେ ତା ପାଖକୁ ପଠାଇଦିଅ ।

ପାଟରାଣୀ ହେବାକୁ ଚାହଁ ନାହିଁ ? ଜଣେ ପ୍ରଜାର ବିଧବା କନ୍ୟାର ଭାଗ୍ୟ ମୁଁ ନିଜେ ସୁଧାରିଦେଉଛି । ଭାଗ୍ୟବତୀ ତୁମେ, ଆପତ୍ତି କରୁଛ ?

ସେପରି ଭାଗ୍ୟବତୀ ହେବାକୁ ମୁଁ ଚାହେଁ ନାହିଁ । ମୁଁ ଚିର ଦିନ ବିଧବା ରହିବି ।

ତମପରି ସୁନ୍ଦରୀ ନାରୀ ବିଧବା ହୋଇ ରହିବ ? ଏହା ମୋର ହୃଦୟ ମାନିବ ନାହିଁ, ମୁଁ ତାହା କରିବାକୁ ଦେବି ନାହିଁ ।

ଯୁବରାଜ ଅଣାର ହାତ ଧରି ଚଉକି ଆଡ଼କୁ ଟାଣି ଆଣିଲେ । ଅଣା ଯେତେ ଚେଷ୍ଟା କଲା ହାତ ଖସାଇ ନେଇ ପାରିଲା ନାହିଁ । ଅବଳାର ବଳ କେତେ ? ବିନୀତ ହୋଇ କହିଲା, ମୋର ହାତ ଛାଡ଼ିଦିଅନ୍ତୁ । ଯୁବରାଜ ହାତ ଛାଡ଼ିଦେଲେ । ଅଣା ଦୂରକୁ ଘୁଞ୍ଚିଯାଇ କହିଲା, ମୋତେ ମୋ ମା ପାଖରେ ଛାଡ଼ିଦେଇ ଆସନ୍ତୁ ।

ପୁଣି ପାଗଳାମି କରୁଛ ? ଯା କଣ ଜାଣ ନାହିଁ ଯେ ରାଣୀମାନେ ବାପ ଘରକୁ ଯାଆନ୍ତି ନାହିଁ ? ତୁମେ ରାଣୀ । ତୁମେ ମୋର ପତ୍ନୀ । ତମ ମନକୁ ନିଜେ ଆସି ମୋର ପାଖ ଚଉକିଟିରେ ବସିପଡ଼ । ଅମାନ୍ୟ କର ନାହିଁ ।

ରାଜକୁମାର ଅପଲକ ନୟନରେ ଅଣାକୁ ନିରୀକ୍ଷଣ କଲେ । ସେ ଦୂରେଇ ଠିଆ ହୋଇଛି । ଦୁଇ ଆଖିରୁ ଲୁହ ଧାର ଝରି ପଡୁଛି । ବରଡ଼ା ପତ୍ର ପରି ଥରୁଛି । ରାଜକୁମାର ହସ ହସ ହୋଇ ତା ପାଖକୁ ଗଲେ । ତାର

ହାତ ଧରି ତାଙ୍କ ପାଖକୁ ଟାଣି ଆଣିଲେ । ଅଣା ପୁଣି ଚିତ୍କାର କରି ଉଠିଲା । ହାତ ଖସାଇ ନେଇ ଦୂରକୁ ଘୁଞ୍ଚିଗଲା ।

ରାଜପୁତ୍ର କ୍ରୋଧରେ ଜର୍ଜରିତ ହେଲେ । ଗର୍ଜନ କରି ପଚାରିଲେ, ମୋର କଥା ମାନିବ ନାହିଁ ? ପାଖକୁ ଆସିବ ନାହିଁ ?

ଅଣା ଦେଖିଲା, ରାଜପୁତ୍ରଙ୍କ ଆଖି ଦୁଇଟାରେ କ୍ରୋଧାନଳ ଜଳି ଉଠୁଛି । ପ୍ରତିବାଦ କରି ଆତ୍ମରକ୍ଷା କରିବା ସମ୍ଭବ ନୁହେଁ । ପ୍ରତାରଣା କରି ଆତ୍ମରକ୍ଷା କରିବାକୁ ପଡ଼ିବ । ସେ ଚକ୍ଷୁରୁ ଲୋତକ ପୋଛି ରାଜପୁତ୍ରଙ୍କର ନିକଟକୁ ଆସିଲା । ଥରି ଥରି ପ୍ରଣାମ କରି କହିଲା, ମୁଁ ଅବଳା, ମୁଁ ନିରାଶ୍ରୟା ବିଧବା, ମୋତେ ରକ୍ଷା କରନ୍ତୁ ।

ଆଜିଠାରୁ ତୁମେ ଆଉ ବିଧବା ହୋଇ ରହିବ ନାହିଁ । ତୁମେ ହେବ ମୋର ପତ୍ନୀ, ତୁମେ ହେବ ରାଣୀ । ଆସ ଅଣା, ମୁଁ ତୁମକୁ ଏ ଅଳଙ୍କାରମାନ ପିନ୍ଧାଇଦିଏ । ଆଜିଠାରୁ ଏ ସବୁ ତୁମର ।

ପାଖରେ ରଖା ହୋଇଥିବା କାଠ ପେଡ଼ିରୁ ଅଳଙ୍କାର ବାହାର କରି ଗୋଟି ଗୋଟି କରି ଅଣାର ଆଗରେ ରଖିଲେ । ଏପରି ସମୟରେ ଅଣାକୁ ଦେଖିଲେ କେହି ମନେ କରିପାରେ ଯେ ସେ କୁଳଟା, ଆନନ୍ଦରେ ବହୁ ମୂଲ୍ୟର ଅଳଙ୍କାରଗୁଡ଼ିକୁ ଅନାଇଁ ରହିଛି । ହଁ, ପ୍ରକୃତରେ ସେ ସେପରି ଅନାଇଁ ଥିଲା; କିନ୍ତୁ କିଏ ତାର ମନ ମଧ୍ୟରେ ପଶି ଦେଖି ପାରିବ ତାର ମନର ଅବସ୍ଥା ଏବଂ ବୁଝି ପାରିବ ତା ହୃଦୟର ଦାରୁଣ ବେଦନା । ରାଜପୁତ୍ର କେତେଗୁଡ଼ିଏ ମୁଦ୍ରିକା ଆଣି ତା ଆଙ୍ଗୁଠିରେ ପିନ୍ଧାଇ ଦେଲେ । କହିଲେ, ବିଭିନ୍ନ ମଣି ମୁକ୍ତା ଖଚିତ ମୁଦ୍ରିକା ଏଗୁଡ଼ିକ । ଏଇଟି ହୀରକ ମୁଦ୍ରିକା । ତତ୍ପରେ ଅନ୍ୟାନ୍ୟ ଅଳଙ୍କାର ପିନ୍ଧାଇ ଦେଲେ । ମୁଣ୍ଡରେ ଚନ୍ଦ୍ରଝୁମ୍ପା, ଗଳାରେ ରତ୍ନ ହାର, ହସ୍ତରେ ରତ୍ନ ଚୁଡ଼ି । କ୍ଷଣକାଳ ଅନାଇଁ ରାଜପୁତ୍ର ମୁଗ୍ଧ ହେଲେ । କହିଲେ, ଅଣା, ସତେ ତୁମେ ସ୍ୱର୍ଗର ଦେବୀଟିଏ ପରି ଦିଶୁଛ । ତୁମେ ମୋର ପତ୍ନୀ ହେବ, ତୁମେ ହେବ ମୋର ରାଣୀ ।

ତନ୍ମୟ ଓ ଉତ୍ତେଜିତ ହୋଇ ରାଜପୁତ୍ର ଅଣାକୁ ଆଲିଙ୍ଗନ କଲେ ଓ ଘନ ଘନ ଚୁମ୍ବନ କଲେ । ଟିକିଏ ଦୂରେଇ ଯାଇ ତାର ଝଟକିଲା ରୂପକୁ ଅନାଇଁ କହିଲେ, ମୁଁ ଭାଗ୍ୟବାନ । ତୁମେ ମଧ୍ୟ ଭାଗ୍ୟବତୀ ।

ଅଣା ନୀରବରେ ଅଶ୍ରୁ ତ୍ୟାଗ କଲା ।

ରାଜପୁତ୍ର କହିଲେ, ତୁମେ ଭୟ କର ନାହିଁ । ମୁଁ ତୁମର ସ୍ୱାମୀ— ।

ଆଶା ଥରିଲା କଣ୍ଠରେ ଉତ୍ତର ଦେଲା, ଆପଣ ନିର୍ଲଜ, ଦୁଷ୍ଟଚରିତ୍ର, ଲମ୍ପଟ । ମୁଁ ବିବାହିତା, ବିଧବା, ସତୀ ସ୍ତ୍ରୀ । ଆପଣଙ୍କର ପତ୍ନୀ ହେବାକୁ ଉପଯୁକ୍ତ ମୁଁ ନୁହେଁ ।

ରାଜପୁତ୍ର ଗର୍ଜି ଉଠିଲେ, ତେବେ ତୁ ଗୃହୁଁ ବଳ ପ୍ରୟୋଗ । ନିର୍ବୋଧ ନାରୀ । ଏତିକି କହି ରାଜପୁତ୍ର ଆଗେଇ ଗଲେ ।

ଆଶା ହସିଦେଲା । ଅଙ୍ଗୁଠିର ହୀରକ ମୁଦ୍ରିକା କାଢ଼ି କହିଲା, ଦେଖନ୍ତୁ ଏ ହୀରକ ମୁଦ୍ରିକା, ଆପଣଙ୍କର ଦେହର ବଳ ଅପେକ୍ଷା ଏହାର ବଳ ଅଧିକ । ଆପଣ ଯଦି ଆଉଥରେ ମୋର ଦେହ ସ୍ପର୍ଶ କରନ୍ତି, ମୁଁ ଏଇ ହୀରକ ମୁଦ୍ରିକାକୁ ଉଦରସ୍ଥ କରିବି । ଏଥିରେ ଅଛି ହଳାହଳ । ଆପଣ ଆଶାକୁ ପାଇବେ ନାହିଁ, ପାଇବେ ତାର ମୃତ ଦେହ । ମୁଁ କ୍ଳାନ୍ତ, ମୋତେ ଚିନ୍ତା କରିବାକୁ ସମୟ ଦିଅନ୍ତୁ ।

ରାଜପୁତ୍ର ପଛେଇ ଆସିଲେ, କହିଲେ ଅଚ୍ଛା, ତୁମେ ଆଜି ବିଶ୍ରାମ କର, ଚିନ୍ତା କର ମନଇଚ୍ଛା ।

ରାଜପୁତ୍ର ଭୂତ ଘରୁ ପଦାକୁ ଆସିଲେ । ବାହାରୁ କବାଟ କିଳିଲେ ।

**ପା**ପ ଗଲା ଭାବି ଆଶା ନିଶ୍ଚିନ୍ତ ହୋଇ ମୁହୂର୍ତ୍ତେ ବସିଲା । ଚିନ୍ତା କି ଏପରି ଅବସ୍ଥାରେ ଅବଳାକୁ ଛାଡ଼ି ପାରେ ? ସ୍ୱର୍ଗ ପରି ଘର ଛାଡ଼ି ଆଜି ସେ ନରକରେ ବନ୍ଦିନୀ । ଯେଉଁ ଉଚ୍ଚ ଆଶା ଦିନେ ମନରେ ପଶି ଆକାଶକୁ ଉଡି ଯାଉଥିଲା, ସେ ଆଶା ଆଜି ତାର ନାହିଁ । ଜାଣି ଜାଣି ସେ ଆଶାକୁ ସେ ତ୍ୟାଗ କରିଛି । ଯେଉଁଦିନ ଫୁଲ ତୋଳିବାକୁ ଯାଇ ଦୁଷ୍ଟଚରିତ୍ର ରାମଚନ୍ଦ୍ର କତିକି ସେ ଧୃତା ହୋଇଥିଲା, ସେଦିନ ସେ ଯେ କେବଳ ଫୁଲ ତୋଳିବା ଉଦ୍ଦେଶ୍ୟରେ ପୋଖରୀ ଆର ପାଖକୁ ଯାଇଥିଲା ତା ନୁହେଁ, ମନରେ ଆଉ ଗୋଟିଏ ଭାବନା ମଧ୍ୟ ସ୍ଥାନ ପାଇଥିଲା । ତାର ଉଚ୍ଚାଶାର ତାହା ଅଂଶ । ଭାବିଥିଲା, ଯଦି ରାମଚନ୍ଦ୍ରକୁ ଦେଖେ ନିଜର ସବୁ ଦୋଷ ମାଗିନେବ । ସେଇଆ ହେଲା । ସେ ନିଜର ଦୋଷ ମାଗି ନେଇଥିଲା; କାରଣ, ସେ ଆଶା

କରିଥିଲା ଯେ, ରାମର ସାହାଯ୍ୟରେ ସେ ରାଣୀ ହୋଇ ପାରିବ । ଯେତେବେଳେ ରାମଚନ୍ଦ୍ରଠାରୁ ବିଦାୟ ନେଇ ଫେରି ଆସିବ ବୋଲି ମୁହଁ ଫେରାଇଲା, ରାମଚନ୍ଦ୍ର ତାର ହାତ ଧରି କହିଲା, ରାଜପୁତ୍ର ବିଳମ୍ବ ସହି ପାରୁ ନାହାନ୍ତି । ଆଜି ତାଙ୍କ ସଙ୍ଗେ ଦେଖା କରାଇବ । ଆଶାର ଅନୁନୟ ବୃଥା ହେଲା । ରାମଚନ୍ଦ୍ର ତାକୁ ବଳାତ୍କାର ପୂର୍ବକ ସବାରୀରେ ବସାଇ ନେଇ ଆସିଲା ।

ସେତିକିବେଳେ ଆଶା ବୁଝିପାରିଲା ଯେ, ତାକୁ ପ୍ରଲୋଭନ ଦେଖାଇ ନେଇ ଆସିବାକୁ କେବଳ ରାମ ଚେଷ୍ଟା କରୁଥିଲା । ଯେ ରାଜରାଣୀ ହେବ, ସେ କାହିଁକି ବନ୍ଦିନୀ ହୋଇ ରହିବ ? ରାମ କହିଥିଲା, ତାର ସ୍ୱାମୀ ମୃତ । ଆଶାର ପ୍ରଥମେ ବିଶ୍ୱାସ ହେଲା, କିନ୍ତୁ ଏବେ ତାର ସେ ବିଶ୍ୱାସ ତୁଟିଲା । ରାମ କେବଳ ତାର ଇଷ୍ଟସିଦ୍ଧି ପାଇଁ ମିଥ୍ୟା କହିବାକୁ ସାହସ କଲା । ଯେତେବେଳେ ଆଶା ଭାବିଲା, କିପରି ଦେବତୁଲ୍ୟ ସ୍ୱାମୀଙ୍କୁ ସେ ପାଗଳ ବୋଲି ଧେନି ତାଙ୍କର ଅଶୁଭ ସମ୍ବାଦ ଶୁଣି ବିଶ୍ୱାସ କଲା, ତାର ମନରେ ତୀବ୍ର ବେଦନା ଜାଗିଲା । ତାର ସୁନ୍ଦର ଅପ୍ସରା ନିନ୍ଦିତ ମୁଖକୁ କାନିରେ ଢାଙ୍କି ରଖିଲା । ଭାବିଲା, ତାର ସତୀତ୍ୱ ଗର୍ବ ଚୂର୍ଣ୍ଣୀଭୂତ ହୋଇଛି ।

ରାଜପୁତ୍ର ଗୃହ ତ୍ୟାଗ କରି ଯିବା ପରେ ସେ କିପରି ପଳାୟନ କରିବ, ସେହି ଉପାୟ ଚିନ୍ତା କରିବାକୁ ଆଶା ଚେଷ୍ଟା କଲା । ଭାବିଲା, ଯଦି ପଳାୟନ କରି ଘରେ ପହଞ୍ଚେ, ମା ନିଶ୍ଚୟ କ୍ଷମା କରିବେ । ସେ ପ୍ରକୋଷ୍ଠର ଚାରିଆଡ଼େ ବୁଲି ନିରୀକ୍ଷଣ କଲା ସବୁ ଦ୍ୱାର ବାହାରୁ ବନ୍ଦ । ଅଣନିଶ୍ୱାସୀ ଲାଗୁଛି । ଘର ଭିତରେ ଥିବା କୂପ ନିକଟରେ ପହଞ୍ଚିଲା । ଭିତରକୁ ଓହ୍ଲାଇ ପାହାଚ ଦେଖି ଆନନ୍ଦିତ ହେଲା; କିନ୍ତୁ ପାହାଚ ଓହ୍ଲାଇ ଅନ୍ଧାରରେ ଦ୍ୱାରର କବାଟରେ ହାତ ମାରି ଦ୍ୱାର ଖୋଲିବାର ସବୁ ଉଦ୍ୟମ ବ୍ୟର୍ଥ ହେଲା । କବାଟ ଖୋଲିଲା ନାହିଁ । ବୃଦ୍ଧ ରାଜା ବାବାଜୀ ସାଜି ପଳାୟନ କରିବା ସମୟରେ ଦ୍ୱାରକୁ ସେପାଖରୁ ବନ୍ଦ କରି ନେଇଥିଲେ । ଚେଷ୍ଟା ବିଫଳ ହେଲାରୁ ପୁଣି ସେ ପଲଙ୍କ ନିକଟକୁ ଫେରି ଆସିଲା । ପଲଙ୍କର ସାଜସଜ୍ଜା ଦେଖି ବିରକ୍ତ ହୋଇ ସେଠାରୁ ଚାଲିଯାଇ ବେତ୍ରାସନ ଉପରେ ବସିଲା ।

ଭାବିଲା, ଆତ୍ମହତ୍ୟା କରିବ । କୁଳ କଳଙ୍କିନୀ ହୋଇ ମୁହଁ ଦେଖାଇବା ଅନୁଚିତ । ଯଦି ଶେଷରେ ରାଜପୁତ୍ର ରାମକୁ ସଙ୍ଗରେ ନେଇ ଆସିବେ ଓ ବଳାତ୍କାର ପୂର୍ବକ ମୋର ସତୀତ୍ୱ ହରଣ କରିବେ ନିଶ୍ଚୟ । ଦୁର୍ବଳା ଅବଳା ମୁଁ । କିପରି ଆତ୍ମହତ୍ୟା କରିବ ? ଜୀବନ ଥାଉ ଥାଉଁ ମୁଁ ସତୀତ୍ୱ ହରାଇବ ? ଏହା କଦାପି ହେବ ନାହିଁ । ମୁଁ ଆତ୍ମହତ୍ୟା କରିବ ଏହି ହୀରକ ମୁଦ୍ରିକା ଉଦରସ୍ଥ କରି ।

ଅବଳା ଅଶା ସଂସାରର ସବୁ ମାୟା ମମତା ତୁଟାଇ ମୁହଁରେ ହସ ମୃଦୁ ରଖି ମଖମଲ ଗଦି ଉପରେ ଶୟନ କରି ଭାବଲା, ଏଇ ତାହାର ଶେଷ । ଆଉ ସେ ସଂସାରର ଅଲୋକ ଦେଖିବ ନାହିଁ ।

ବଣିଆ ଅଶାକୁ ଖୋଜିବାକୁ ଚାଲିଗଲା । କୁଆଡ଼େ ଯିବ କଣ କରିବ ବୁଝି ପାରିଲା ନାହିଁ । ପାଗଳ ପରି ଅଶା ଅଶା ବୋଲି ଚିତ୍କାର କରି ସହରର ଅନେକ ସ୍ଥାନ ଖୋଜିଲା, ପାଇଲା ନାହିଁ । ବୁଢ଼ୀ ଚମାରୁଣୀ ଗୋଟିଏ ଜାଗାରେ ଆଗକୁ ଆସି ହାତ ହଲାଇ କହିଲା, ଆରେ ପୁଅ, ସେମିତି ପାଗଳ ପରି ହଉଛୁ କାହିଁକି ? ଧୀର ସ୍ଥିର ହୋଇ କାମ କଲେ ସିନା ହୁଏ ? ଯା ଏଇବାଟେ । ହାତ ବଢ଼ାଇ ନଈ କୂଳ ବାଟକୁ ଦେଖାଇ କହିଲା, ମୁଁ ଦେଖିଛି, ଗୋଟାଏ ସବାରୀ ନେଇ ତର ତର ହୋଇ କେତେ ଲୋକ ସେଇଆଡ଼େ ଗଲେ । ତା ଭିତରେ ଝିଅଟିଏ କିଏ କାନ୍ଦୁଛି । ମୋତେ ଅଶା ପାଟି ପରି ଶୁଭିଲା । ଜଲଦି ଯା ପୁଅ, ଜଲଦି ଯା ।

ବଣିଆ ପାଗଳ ହୋଇଛି । ବୁଢ଼ୀ ବରିଷ୍ଠର କଥା ଶୁଣି ନ ଶୁଣିଲା ପରି ସିଧା ସିଧା ରାଜପ୍ରାସାଦ ଆଡ଼କୁ ଧାଇଁଲା । ବୁଢ଼ୀ ବ୍ୟସ୍ତ ହୋଇ ନିଜ ମନକୁ କହିହେଲା, ଆସି ବୁଢ଼ୀ ହେଲିଣି, ଶହେ ବର୍ଷ ଡେଇଁ ପଡ଼ିଲିଣି । ଯାହାକୁ ହିତ କଥାଟିଏ କହେ ସେ ମୋ କଥା ଶୁଣେ ନାହିଁ । ଆହା, ବଣିଆ ଯଦି ମୋ କଥା ମାନି ସେଇବାଟେ ଯାଇଥାନ୍ତା ନିଶ୍ଚେ ଅଶାକୁ ଠାବ କରିଥାନ୍ତା ।

ବଣିଆ ଦଉଡ଼ି ଗଲାବେଳେ ଗୋଟିଏ ଭୟଙ୍କର ଦୃଶ୍ୟ ଦେଖିଲା । ରଘୁନାଥ ବାବୁ ସଡ଼କ ଉପରେ ଠିଆ ହୋଇଛନ୍ତି । ଗୋଟାଛଏଁ ଥରୁଛନ୍ତି । ସବୁ ହାଲ୍ଲୋଳମୟ ! ରଘୁନାଥ ବାବୁଙ୍କର ଘର ପୋଡ଼ିଯାଉଛି । ନିଆଁ ଧୂଆଁ କେତେ ଉପରକୁ ଉଠୁଛି । ବାଉଁଶ ଗଣ୍ଠିମାନ ଫୁଟି ଛଟକି ଏଣେତେଣେ ପଡ଼ୁଛି । ପାଖକୁ ଯିବାକୁ ଲୋକଙ୍କର ସାହସ ହେଉ ନାହିଁ । ଯେଉଁମାନେ ବା ରଘୁନାଥ ବାବୁଙ୍କ ଉପରେ ଦୟା କରି ଅଥବା ନିଜର ସାହସିକତାର ପରିଚୟ ଦେବାକୁ ତାଙ୍କୁ ନିମାନ ପାଖକୁ ଯିବାକୁ ବସିଛନ୍ତି, ରଘୁନାଥ ବାବୁ ସେମାନଙ୍କୁ ମନା କରି ଉଚ୍ଚ ସ୍ୱରରେ କହୁଛନ୍ତି, ଯାଅନା, କେହି ଯାଅନା । ଆଜି ସଂସାର ପୋଡ଼ିଯାଉଛି । ସବୁ ଜଳିଯାଉ, ସବୁ ପୋଡ଼ିଯାଉ । ମୁଁ ଦେଖି ଆନନ୍ଦ ଉପଭୋଗ କରୁଛି ।

ପ୍ରକୃତରେ ସେ ଆନନ୍ଦ ଉପଭୋଗ କରୁଛନ୍ତି ? ଯେତେବେଳେ ଧୂଳିଆ ଧାଇଁ ଧାଇଁ ଆସି ସମ୍ବାଦ ଦେଲା ଯେ ମା ପଦ୍ମଶ୍ରୀବା ସଙ୍ଗେ ସଙ୍ଗେ ଅଶା ଅପାକୁ

କିଏ ସବୁ ଧରି ନେଇଛନ୍ତି— ଅଣା ଅପା ବୁଆଡ଼େ ଚାଲିଯାଇଛି ଓ ଏ କଥା ଶୁଣି ମା ମରିଯାଇଛି, ରଘୁନାଥ ଗର୍ଜି ଉଠି କହିଲେ, ରାକ୍ଷସୀ, ତୋ ମନରେ ଏଇଆ ଥିଲା ? ମା କୋଳରୁ ନଈହା ବାଳିକାଟିକୁ ଛଡ଼ାଇ ନେଲୁ । ନିଜେ ମଧ୍ୟ ସେହି ପାପରେ ମଲୁ ?

ଧୂଳିଆକୁ ଘର ଭିତରୁ ସେ ପଦାକୁ ଟାଣି ଆଣିଲେ । କୋଥଲି ଖଣ୍ଡି ହାତରେ ଝୁଲାଇ ଘରେ ନିଆଁ ଲଗାଇଦେଲେ । କହିଦେଲେ, ଯାଉ, ସବୁ ଜଳି ଯାଉ, ସବୁ ପୋଡ଼ି ଯାଉ । ଏ ହରିପୁର ଧ୍ୱଂସ ହେଉ, ପାଉଁଶ ହେଉ । ରସାତଳକୁ ଯାଉ, ଯାଉ, ଯାଉ ।

ରଘୁନାଥଙ୍କୁ ଏପରି ଅବସ୍ଥାରେ ଦେଖି ବଶିଆ କିଛି କହିଲା ନାହିଁ । ସେ ଭାବିଲା, ରଘୁନାଥ ପାଗଳ ହୋଇଛନ୍ତି । ତାର କି ଥାଏ ? ସେ ଅଣାକୁ ଖୋଜିବାକୁ ବାହାରିଛି । ଡେରି କଲେ କିଏ ଜାଣେ କଣ ଘଟିବ ? ସେ ସ୍ଥାନ ତ୍ୟାଗ କରି ଆଗେଇ ଗଲା ।

ଏହି ସମୟରେ ଘନଶ୍ୟାମ ଆସିଲେ । ବନ୍ଧୁଙ୍କୁ ଦେଖି ରଘୁନାଥ କହିଲେ, ମୁଁ ଆଜି ମୁକ୍ତ ହୋଇଛିରେ ଘନ ।

ଘନଶ୍ୟାମ କହିଲେ, ହଁ, ଦୁନିଆ ଯାକର ନିନ୍ଦା ଶୁଣୁଚ । ଏପରି ପାଗଳ ହେବାର କାରଣ କଣ ? ତେଣେ ତମ ସ୍ତ୍ରୀଙ୍କର ଶବ ପଡ଼ି ରହିଛି, କିପରି ଉଠିବ ତାର ବ୍ୟବସ୍ଥା କର ।

ସେ ରାକ୍ଷସୀ ସଙ୍ଗେ ମୋର ସମ୍ପର୍କ ନାହିଁ ।

ନାହିଁ କହିଲେ ତ ଚଳିବ ନାହିଁ । ଆଜି ମରିଯାଇଛି ବୋଲି ସେପରି କହୁଛ । କାଲି ଯେତେବେଳେ ନୂଆ ଆସିଥିଲେ ଗୋଟାଛାଏଁ ତମର ହୋଇଥିଲେ ତ ?

ମୁଁ ମୂର୍ଖ ଥିଲି ।

ଏବେ ପଣ୍ଡିତ ହୋଇଛ ଶୁଣି ସୁଖୀ ହେଲି । ତେବେ ମୋର ସାନ କଥା ମାନ । ଯାହା କଲ ତ କଲ, ଏଇ ରାତିକ ମୂର୍ଖ ହୁଅ । ତାଙ୍କର ଶବର ସତ୍କାର କରି କାଲି ସକାଳୁ ପଣ୍ଡିତ ହେବ । ଘର ଦ୍ୱାର ତ ଭସ୍ମ କଲ । ତାର ପାଉଁଶ ଦେହରେ ବୋଳି ବାବାଜୀ ହୋଇ ଚାଲିଯିବ ।

ଘନଶ୍ୟାମଙ୍କର କଥା ଶୁଣି ରଘୁନାଥ ଉଚ୍ଚ ହାସ୍ୟ କଲେ । କହିଲେ, କାଲିସକାଳ ଯାକେ ଅପେକ୍ଷା କରିବାକୁ ମୋର ବେଳ ନାହିଁ । ତୋର କଥାହିଁ ସାର । ଧୂଳିଆ କଥା ତୁ ବୁଝିବୁ, ମୁଁ ବିଦାୟ ନେଉଛି ।

ରଘୁନାଥ କୋଥଲି ଖଣ୍ଡି ଧରି ବିଷ ସାଗର ପଥରେ ଚାଲିଲେ। ଘନଶ୍ୟାମଙ୍କର ବାଧା ମାନିଲେ ନାହିଁ। ଧୂଳିଅରି ହାତ ଧରି ଘନ କହିଲେ, ଅତି ଦୁଃଖରେ ତୋ ବାପା ବାୟା ହୋଇଛି। ତୁ ଚିନ୍ତା କରନା, ବଳେ ମନ ବଦଳିବ। ସେ ଭଲ ହୋଇଯିବ। ତୁ ଆ ମୋ ସାଙ୍ଗରେ।

ବଣିଆ ବନ୍ଧୁ ସ୍ଥାନ ଖୋଜି ଘନଶ୍ୟାମଙ୍କ ଘରେ ରାମର ଖବର ନେଲା। ରାମ ମା କହିଲେ, ଆଜି କଣ ପୁଅ ନୂଆ କଥା ହେଲା? ତାର ତ ଘରକୁ ନ ଆସିବା ଅନେକ ଦିନ ହେଲାଣି। କେବେ କେବେ ରାତିରେ ଶୋଇବାକୁ ଆସୁଥିଲା, କେଇ ଦିନ ହେଲା ଆଉ ଆସୁ ନାହିଁ।

ବଣିଆ ସେଠାରୁ ଚାଲିଗଲା। ଭାବିଲା ଦେଖା କୋଉଁଠି ପାଇବ? ସେ ଘରେ ନାହିଁ। ବୁଢ଼ୀ ଚମାରୁଣୀ କହୁଥିଲା, ନଈଆଡ଼େ ଗଲେ। ତେଣେ ଅଶାକୁ ନେବାର ପ୍ରୟୋଜନ? ରାଜପୁତ୍ରଙ୍କର ସେ ବନ୍ଧୁ। ତାଙ୍କର ସାହସରେ ରାମ ଅଶାକୁ ନେଇ ରାଜପୁତ୍ରଙ୍କ ପାଖରେ ଛାଡ଼ିଥିବ। ତେବେ ସେ ନହରରେ ଅଛି?

ବଣିଆ ନହରଆଡ଼େ ଚାଲିଲା।

ବଣିଆ ଭାବିବାକୁ ଲାଗିଲା, ମା ପାଖରେ ଅଶାକୁ ନ ପାଇବାଯାଏ ଫେରିବ ନାହିଁ ବୋଲି ପ୍ରତିଜ୍ଞା କରିଛି। ପ୍ରତିଜ୍ଞା ପାଳନ କରିବାକୁ ଯାଇ ଅଶାକୁ ପାଇବା ନିମନ୍ତେ ଜୀବନ ତ ଦେବ, ଆବଶ୍ୟକ ହେଲେ ହରିପୁର ଧ୍ୱଂସ କରିବ। ପାରିବ ନାହିଁ? ଖଦାଳ ପିଲା ମୁଁ, ମୋର କ୍ଷମତା ନାହିଁ ବୋଲି ଅନ୍ୟ କେହି କହୁ ପଛେ, ମୁଁ କହିବ ନାହିଁ। ପିଲାଦିନୁ ନିଜ ଉପରେ ନିର୍ଭର କରିବାକୁ ମୁଁ ଶିଖିଛି। ନିଜର ହାତକୁ ମୁଁ ବିଶ୍ୱାସ କରେ।

ଯଦି ଅଶା ହରିପୁରରେ ନ ଥାଏ, ଯଦି ରାମ ନିଜେ ତାକୁ ଡଙ୍ଗାରେ ବସାଇ ଅନ୍ୟ ଦେଶକୁ ନେଇ ଯାଇଥିବ? ଶୁଣିଛି, ସବାରି ନଦୀଆଡ଼କୁ ନେଉଥିଲେ। କିନ୍ତୁ ଏପରି କାର୍ଯ୍ୟ ଦୁଇଜଣଙ୍କର ମନ ନ ମିଳିଲେ ହୋଇ ପାରେ ନାହିଁ। ତେବେ ଅଶା କଳଙ୍କିନୀ, ଅଶା ଅସତୀ?

ସେ ହୋତାଙ୍କର ନିର୍ଜନ ପାଠଶାଳା ନିକଟରେ ଉପସ୍ଥିତ ହେଲା। ଭାବିଲା, ସ୍ଥାନ ତ ନିର୍ଜନ, ରାମ କାଳେ ଅଶାକୁ ଏଠାକୁ ଆଣିଥିବ।

ଘୋର ଅନ୍ଧାର—ଜଙ୍ଗଲ ନିକଟରେ ପର୍ବତ । ଭୟ ହେବାର କଥା । ବଣିଆ ଭୟ ମାନିଲା ନାହିଁ । ଧୀରେ ଧୀରେ ପାଠଶାଳା ଭିତରକୁ ଗଲା । ପ୍ରଥମ ଧାଡ଼ି ଘରର ପ୍ରତ୍ୟେକ ଅଂଶ ଖୋଜିଲା, କାହାକୁ ପାଇଲା ନାହିଁ । ଦ୍ୱିତୀୟ ଧାଡ଼ିର ପ୍ରଥମ ବଖରାରେ ପଶିବାକୁ ଯାଉଛି, କିଏ ଜଣେ ନିକଟସ୍ଥ କୋଠରୀ କବାଟରେ ହାତ ମାରିଲା । କବାଟ ଖୋଲିଗଲା । ଦ୍ୱିତୀୟ ବ୍ୟକ୍ତି ଘର ଭିତରକୁ ଯାଇ ଭିତର ପାଖରୁ କବାଟ ବନ୍ଦ କରିଦେଲା । ବଣିଆ ସୁବିଧା ପାଇ ନିକଟକୁ ଆସି କବାଟ ଫାଙ୍କରେ ଅନାଇଲା ।

ଘର ଆଲୋକିତ । ଦୁଇଜଣ ଲୋକ ସାମନାସାମନି ବସିଛନ୍ତି । ବଣିଆ ଜଣକର ମୁହଁ ଦେଖି ପାରିଲା । ଲୋକଟିକୁ ଚିହ୍ନି ପାରିଲା । ସେ ଚିଲମରେ ଗଞ୍ଜେଇ ପୁରେଇ ନିଆଁ ଲଗାଉଚି । ଅନ୍ୟ ଜଣେ ତା ଆଡ଼କୁ ପଛ କରି ବସିଥିବାରୁ ଭଲକରି ଚିହ୍ନି ପାରିଲା ନାହିଁ । ତଥାପି ଦୋ ଦୋ ଚିହ୍ନା ହୋଇ ଲାଗିଲା, ରାମ ହୋଇଥିବ ପରି ।

ବାବାଜୀ "ବମ୍ ଭୋଲା" କହି ଦମେ ଟାଣି ଚିଲମଟା ଆଗକୁ ବଢ଼ାଇ ଦେଲେ । ରାମ ଚିଲମ ଟାଣିବା ସମୟରେ ବାବାଜୀ ଫୁଭ୍ କରି ଧୂଆଁ ଟିକେ ଛାଡ଼ି ପଚାରିଲେ, ଏତେ ଡେରି କାହିଁକି ହେଉଛି ?

ରାମ ଆଁ କରି ଛାତିରେ ହାତ ଦେଇ ମୁହୂର୍ତ୍ତେ ରହି କହିଲା, ଆସୁଥିବ, ଧୈର୍ଯ୍ୟ ଧରନ୍ତୁ ।

ଆଉ ଧୈର୍ଯ୍ୟ ଧରି ହେଉ ନାହିଁ ।

ରାମ କହିଲା, ସେ ତ ଅଣା ପରି ବଡ଼ ଲୋକର ଝିଅ କି ବଡ଼ ଲୋକର ବୋହୂ ନୁହେଁ । ତା ମନକୁ ସେ ବେଳେ ଆସିବ ।

ଅଣା ନାମ ଶୁଣି ବଣିଆ ଚମକି ଉଠିଲା ।

କଥୋପକଥନ ଚାଲିଲା ।

ଆପଣ ବାବାଜୀ ଲୋକ, ଏପରି କାର୍ଯ୍ୟ କରିବାକୁ ମନ କରୁଛନ୍ତି, ଆପଣଙ୍କର ଧର୍ମ ନଷ୍ଟ ହେବ ନାହିଁ ?

ଧର୍ମ କଣ ସହଜରେ ନଷ୍ଟ ହୁଏ ? ମୋର ପାପ କ୍ଷୟ କରି ଏତେ ଧର୍ମ ସଞ୍ଚୟ କରିଛି ଯେ ମୋ ଧର୍ମ ଅଧିକ ଊଣା ହେବ ନାହିଁ ।

ରାମ ଝାପ ଧରି ପଦାକୁ ଆସି କବାଟ ଆଉଜେଇ ଦେଲାବେଳେ ବଣିଆ ପିଣ୍ଡା କଡ଼ରେ ଲୁଚି ରହିଲା । ଯେପରି ସେ ଆଉ ଘରକୁ ପଶିଛି ବଣିଆ ଧୀରେ

ଧାରେ ବାହାର ପଦାରୁ ସେ ଘରର କବାଟ ବନ୍ଦ କରି ରାମ ଥିବା ଘର ଭିତରକୁ ଆସିଲା । ରାମ ଦୀପ ତଳେ ଥୋଇ ଗୃହରୁ ଛଅ ଖଣ୍ଡି ବାଡ଼ରୁ ଗୋଟିଏ ବାଛୁଛି, ପଛଆଡ଼ୁ ବଣିଆ ଯାଇ ତାର ହାତ ଧରିଲା । ଭିତରୁ କବାଟ ବନ୍ଦ କରି ସେ ପଚାରିଲା, ଚନ୍ଦ୍ରୁରୁ ?

ଉତ୍ତର ଦେବା ପରିବର୍ତ୍ତେ ରାମ ବରଡ଼ା ପତ୍ର ପରି ଥରିବାକୁ ଲାଗିଲା ।

ଚନ୍ଦ୍ର ବା ନଚନ୍ଦ୍ର ଶୀଘ୍ର କହ, ଅଣାକୁ କେଉଁଠି ରଖିଛୁ ?

ଅଣା ?

ହଁ ଅଣା । କହ, କହ ଗୋଟାଏ ହାତରେ ସଜୋରେ ରାମର ମୁହଁରେ ଥାପଡ଼ ମାରିଲା । ବଣିଆ ହାତରୁ ମୁକ୍ତ ପାଇ ଚାଲିଯିବାକୁ ରାମ ଚେଷ୍ଟା କରି ବିଫଳ ହେଲା ।

କହିଲା, ମୁଁ ଅଣାକୁ ଦେଖିଛି । ତାକୁ ସବାରିରେ ବସାଇ କେତେ ଲୋକ ନଦୀ କୂଳଆଡ଼େ ନେଉଥିଲେ ।

ତୁ ସେମାନଙ୍କ ସଙ୍ଗେ ଥିଲୁ ? ଠିକ୍ କହ, ଯଦି ରକ୍ଷା ପାଇବାକୁ ଚାହୁଁ । ନୋହିଲେ ତୋତେ ଏଇଠାରେ ମାରିପକାଇବି ।

ନା, କେତେବେଳେ ?

ତୋର ମୁହଁରୁ ଏବେ ଶୁଣିଛି, ତୁ ସେ ବାବାଜୀକୁ କହୁଥିଲୁ, ଅଣା ଲଗାଇବାର ଉପାୟ ନାହିଁ । କହ ଯଦି ଭଲ ଦଶା ଅଛି । ତାକୁ କେଉଁଠି ରଖିଛୁ ।

ନ କହିଲେ ତୁ ଖଦାଲ ଠୋକାଠା ମୋର କଣ କରିବୁ ? ଜାଣୁନାହୁଁ କି ମୁଁ କାହାର ସାଙ୍ଗ ।

ରାମର ମୁହଁରେ ମୁଷ୍ଟ୍ୟାଘାତ କରି ବଣିଆ କହିଲା, ନ କହିବୁ ତ ପୁଣି ଦେଖିବୁ ।

ରାମ କହିଲା, ଆରେ ଯାଅ ମ, ମୁଁ ଢେର ଦେଖିଛି । ଅଣା ଘର ହଳଆ ଠୋକାଠା ତୁ । ଯଦି ଜାଣିବାକୁ ଚାହୁଁ, ଶୁଣ, ଅଣ୍ଟାରେ ବାଁ ହାତ ମାରି କହିଲା, ହଁ, ମୁଁ ଅଣାକୁ ନେଇଛି, ଯବରଦସ୍ତି ଧରି ନେଇଛି । କଣ କରିବୁରେ ଚାକର ଠୋକାଠା ? ମୁଁ ତାକୁ ବାହା ହେବି କି ରଖିବି କି—

ତାର କଥା ଶେଷ ନହେଉଣୁ ବଣିଆ ପୁଣି ତା କାନମୁଣ୍ଡାରେ ମୁଷ୍ଟ୍ୟାଘାତ କରି ପଚାରିଲା, କହିବୁ ନା ପୁଣି ଦେଖିବୁ ।

କହିବ ନାହିଁ ।

ତେବେ ତୋର ତଣ୍ଟି ଚିପି ଏଇଠି ମାରିଦେବ । କପିଳ ଅଣ୍ଟାରୁ ବାହାର କରୁଥିବା ଦେଖିବ । ବଶିଆ ଦୁଇ ହାତରେ ରାମର ତଣ୍ଟି ଧରି ଚପିବାକୁ ଲାଗିଲା । ରାମ ଡାହାଣ ହାତରେ ଅଣ୍ଟାରୁ ଛୁରୀ କାଢ଼ି ବଶିଆର ଛାତିରେ ବିନ୍ଧି କଲା ।

ଅଧାଲ ସାଙ୍ଘାତିକ ନ ହେଲେ ମଧ୍ୟ ହାତ ଛାଡ଼ି ବଶିଆ ଚିତ୍‌ପଟାଙ୍ଗ ହୋଇ ତଳେ ପଡ଼ିଗଲା । ଛୁରୀ ଖଣ୍ଡି ଖସି ପଡ଼ିଲା । ରାମ ରକ୍ଷା ପାଇ ହାତରେ ଚାପ ଧରି ପଦାକୁ ଆସିଲା । ବାହାରୁ ଜଞ୍ଜିର ଦେଇ ଉଚ୍ଚସ୍ୱରରେ କହିଲା, ଆରେ ବଶିଆ, ଆଜି ଦିନେ ରାମ ବାବୁଙ୍କ ସଙ୍ଗେ ଲାଗିବୁ ନାହିଁ । ମୁଁ ଜାଣେ, ଅଧାତ ସାଙ୍ଘାତିକ ନୁହେଁ, ତୁ ବଞ୍ଚି ଯାଇପାରୁ । କିନ୍ତୁ ବାଟରୁ କଣ୍ଟା ସଫା କରିବାକୁ ହେଲେ ତୋତେ ଛାଡ଼ି ଯିବ ନାହିଁ । ମୁଁ ଆଜି ଏ ଘରେ ନିଆଁ ଲଗାଇ ତୋତେ ଜୀଅନ୍ତା ଅଙ୍ଗାର କରିଦେବ ।

ହୋତାଙ୍କର ପବିତ୍ର ବିଦ୍ୟାପୀଠରେ ରାମ ନିଆଁ ଲଗାଇଦେଲା । ବାବାଜୀଙ୍କ କଥା ତାର ମନେ ନାହିଁ । ଘରୁ ବାବାଜୀ ଚିତ୍କାର କରି ଉଠିଲେ, ରାମ ଧାଇଁ ଧାଇଁ କୁଆଡ଼େ ଚାଲିଗଲା ।

ବଶିଆ ବେଶୀ ବେଳଯାଏ ପଡ଼ି ରହିଲା ନାହିଁ । ରାମର କଥା ତା କାନରେ ପଡ଼ିଲେ ମଧ୍ୟ ସେ କିଛି ବୁଝି ପାରିଲା ନାହିଁ । ଛାତିର କ୍ଷତରୁ ରକ୍ତ ଧାର ବହୁଛି । ରକ୍ତ ପୋଛି ସେ ଉଠିଲା । ଘର ଭିତରେ ଧୂଆଁ ପୂର୍ଣ୍ଣ ହେଲଣି । ଝରକାର ଫାଙ୍କ ବାଟେ ଆଲୁଅ ଦିଶୁଛି । ଘର ପୋଡ଼ୁଥିବାର ଚଡ଼ ଚଡ଼ ଶବ୍ଦ ଶୁଭୁଛି । ଅଣନିଶ୍ୱାସୀ ଲାଗୁଛି । କବାଟରେ ଧକ୍କା ମାରିଲା, କବାଟ ଖୋଲିଲା ନାହିଁ । ପ୍ରାଣ ବିକଳରେ ଝରକା ଖୋଲିଲା । ଝରକା ବାହାରେ ଆଉ ଧାଡ଼ି ଘର ଜଳୁଛି ।

ଝରକାର ରେଲିଂ କାଠରୁ ଗୋଟିକୁ ଦୁଇ ହାତରେ ଧରି ସବୁ ଶକ୍ତି ପ୍ରୟୋଗ କରି ଟାଣିଲା । ପୁରୁଣା ରେଲିଂ ଭାଙ୍ଗିଗଲା । ସେହିପରି ପ୍ରାଣ ବିକଳରେ ଆଉ ଗୋଟିଏ ରେଲିଂ ଭାଙ୍ଗିଲା । ଧୂଆଁ ନିଆଁର ପ୍ରକୋପ ନ ମାନି ପଦାକୁ ଆସିଲା । ପିନ୍ଧିଥିବା ଲୁଗାରେ ନିଆଁ ଲାଗିବାରୁ ସେ ଉଲଗ୍ନ ହୋଇ ପାଖ ଅରଣ୍ୟକୁ ପଳାଇଲା ।

ଦୂରରୁ ଦେଖିଲା କପିଳ ପାଠଶାଳା ପୋଡ଼ି ଭସ୍ମ ହେଉଛି । ପୋଡ଼ା ଚୁଙ୍କିଆ ଗନ୍ଧରେ ନାକ ଫାଟି ପଡ଼ୁଛି !

ନାହିଁ ଥିଲା ମାଡ଼ି ଆସିଲା ବତାସ । ବତାସ ସାଥିରେ ବରଷା । ବରଷା ଛୁଟିଲା । ଘଡ଼ଘଡ଼ିର ଘଣ୍ଟଘଣ୍ଟା ରଡ଼ିରେ ଦୁନିଆଁ ଦୁଲୁକି ଉଠିଲା । ଅନଳ ଲିଭିଲା, ବରଷା ସାଥିରେ ଅନ୍ଧକାର ଭୟଙ୍କରତର ହେଲା ।

ଉଲଗ୍ନ ବଣିଆର ଦେହରେ କ୍ଷତ ପୋଡ଼ି ଉଠିଲା । ବିଜୁଳି ଝଲକରେ ବାଟ ଦେଖି ଦେଖି ଅରଣ୍ୟ ଭିତରେ ପାହାଡ଼ର ଖସଡ଼ା ପଥରେ ପଡ଼ି ଉଠି ସେ ଶିବ ମନ୍ଦିର ଆଡ଼କୁ ଗତିକଲା । ଜୀବନ ରହିବ, ଏ ଆଶା ଆଉ ତାର ନାହିଁ । ଶିବ ମନ୍ଦିର ତ ପାଇଲା ନାହିଁ, ଅରଣ୍ୟ ମଝିରେ ଅଣ୍ଡାଳି ହୋଇ ତଳକୁ-ଗଡ଼ୁ ଗଡ଼ୁ ଉପତ୍ୟକା ମଧ୍ୟସ୍ଥିତ ଗହ୍ବର ମଧ୍ୟରେ ପଶିଲା । ହିଂସ୍ର ଜନ୍ତୁ ଭୟ ତା ମନରୁ କୁଆଡ଼େ ଚାଲିଗଲାଣି । ଗୁଡ଼ାଏ ପାହାଚ ପଡ଼ିଥିବାରୁ ସେ ଜାଣି ପାରି ଗୋଟିକ ପରେ ଗୋଟିଏ କେତେ ପାହାଚ ତଳକୁ ଓହ୍ଲାଇ ଆସିଲା । ଗୋଟିଏ କବାଟରେ ହାତ ବାଜିଲା । ଠେଲିଲେ ଫିଟୁ ନାହିଁ । ଅଣ୍ଡାଳି ହୋଇ କିଳଣି ଖୋଲିଲା । କବାଟ ଖୋଲି ସେ ଗୋଟିଏ ଅତି ଅନ୍ଧାରିଆ ଘର ଭିତରକୁ ଆସିଲା ।

ବଣିଆ କ୍ଳାନ୍ତ ହୋଇ ସେଇଠି ପଡ଼ିରହିବାକୁ ଚେଷ୍ଟା କଲା । ତଳେ ଅମସୃଣ ପଥର । ସମତଳ ସ୍ଥାନ ପାଇବ ବୋଲି ଆଗକୁ ଚାଲିଲା । କ୍ଷତର ରକ୍ତ ସ୍ରାବ ବନ୍ଦ ହୋଇଥିଲେ ମଧ୍ୟ କ୍ଷତ ସ୍ଥାନ ପୋଡ଼ି ଉଠୁଥାଏ । ସେ ଯେ ଗୋଟିଏ ସୁଡ଼ଙ୍ଗ ଭିତରେ ପଶିଛି ଏ କଥା ବୁଝି ନ ପାରି ଭାବିଲା, ବୋଧହୁଏ ମୁଁ ଶିବ ମନ୍ଦିରର ଲମ୍ବା ବାରଣ୍ଡାରେ ଏ ମୁଣ୍ଡରୁ ସେ ମୁଣ୍ଡକୁ ଚାଲି ଯାଉଛି । ତା ହୋଇଥିଲେ ତଳର ଚଟାଣ ଏଡ଼େ ଅମସୃଣ ହୋଇଛି କାହିଁକି ? ଖଣ୍ଡେ ଦୂର ଯାଇ ଅତି କ୍ଳାନ୍ତ ହୋଇ ବଣିଆ ସେଇ ଅମସୃଣ ଭୂମି ଉପରେ ଲମ୍ବ ହୋଇ ପଡ଼ିଗଲା । କେତେବେଳଯାଏ ଛଟପଟ ହୋଇ ଅଧିକ କ୍ଳାନ୍ତ ହୋଇ ପଡ଼ିଲା । କେତେବେଳେ କିନ୍ତୁ କ୍ଳାନ୍ତିହରା ନିଦ୍ରା ଆସି ତାର ଆଖିପତାକୁ ଢୁଙ୍କି ଧରିଲା, ସେ ଜାଣିଲା ନାହିଁ ।

ଜୁହାର ଅଙ୍କା କହି ରାମଚନ୍ଦ୍ର ମୁଣ୍ଡ ନୁଆଁଇ ଦଣ୍ଡବତ କଲା ।

ବଡ଼ ସକାଳ ପରି ବୋଧ ହେଉଛି, ମାତ୍ର ବେଳ ଅଧିକ ହେଲାଣି । ଝିରି ଝିରି ହୋଇ ବର୍ଷା ଗାଳିପକାଉଛି । ବିଜୁଳି ମାରୁଛି ଘନ ଘନ । ଘଡ଼ଘଡ଼ିର ଗର୍ଜ୍ଜନ ଶୁଭି ଥରାଉଛି । ଏପରି ସମୟରେ ରାମକୁ ଦେଖି ରାଜପୁତ୍ର ଆଶ୍ଚର୍ଯ୍ୟ ହେବେ । ସେ ସବୁଦିନ ଭାଙ୍ଗି ଉଠିଛନ୍ତି, ନିତ୍ୟକର୍ମ ଶେଷ କରିନାହାନ୍ତି । ଆଖି ମଳି ମଳି ଟିକିଏ ହସିଦେଇ କହିଲେ, ବୁଢ଼ା ହୋଇ ଥା ।

ରାମଚନ୍ଦ୍ର କହିଲା, ଭଲ କଲ୍ୟାଣ କରୁଛନ୍ତି ତ ! ବୁଢ଼ା ହେବ, ହଉ, ଆମେ ଏବେ ବୁଢ଼ା ହୋଇଥାଉଁ, ଆପଣ ସବୁଦିନେ ଏମିତି ଯୁବକ ହୋଇ ରହନ୍ତୁ । ଟିକିଏ ତୁନି ରହି ପୁଣି କହିଲା, କାଲି ରାତି ଅନିଦ୍ରାରେ ଷମ୍ଭୁ କଟାଇଛନ୍ତି ପରା । ନିଦରେ ବ୍ୟାଘାତ ଘଟିଛି ।

ରାଜପୁଅ କହିଲେ, ସତରେ ମୁଁ ରାତି ସାହାନ୍ତାଯାଏ ଅନିଦ୍ରାରେ କଟାଇଛି । ଯେତେ ବୁଝାଇଲି, ଗହଣା ନାଇ ଦେଲି, ଭୟ ଦେଖାଇଲି, ଅନୁନୟ କଲି ସବୁ ବିଫଳ ହେଲା । ସେ ପାଖକୁ ଆସିଲା ନାହିଁ ।

ବୃଥା ଚେଷ୍ଟା ? ସବୁ ବିଫଳ ? ବଳ ପ୍ରୟୋଗ—

ଚେଷ୍ଟା କରିବାକୁ ଛାଡ଼ି ନାହିଁ, ମାତ୍ର ସେ ହୀରା ମୁନ୍ଦି ଖାଇ ଆତ୍ମହତ୍ୟା କରିବ ବୋଲି ମୋତେ ଡରାଇଲା । ବିରକ୍ତ ହୋଇ ତାକୁ ସେ ଘରେ ବନ୍ଦୀ କରି ଚାଲିଆସିଲି ।

ବଜାତ୍ ଟୋକୀ ତ ।

ଯାହା ହେଉ, ସେ ବଞ୍ଚିଛି କି ନାହିଁ ସନ୍ଦେହ ହେଉଛି । ହୁଏ ତ ହୀରାମୁନ୍ଦି ଖାଇଥିବ । ତୁମେ ଯାଇ ଥରେ ଦେଖି ଆସ ।

ରାମଚନ୍ଦ୍ର ତରତର ହୋଇ ଯୁବରାଜ ଛାମୁରୁ ବିଦାୟ ନେଲା ।

ରାମଚନ୍ଦ୍ର ଭିତର ଘରେ ଉପସ୍ଥିତ ହେଲା । ବର୍ଷା ପବନର ତୋଡ଼ କମି ନାହିଁ । ଘରେ ଆଲୋକଟି ସେହିପରି ଜଳୁଛି । ଭଲ ଦିନେ ତ ଘରଟା ଅନ୍ଧାରୁଆ, ଆଜି ପୁଣି ବର୍ଷା ବାଦଲ । ରାମଚନ୍ଦ୍ର ଟିପେଇ ଟିପେଇ ଘରେ ପଶିଲା । ତା' ସଙ୍ଗେ ସଙ୍ଗେ ଥଣ୍ଡା ପବନ ବାହାରୁ ମାଡ଼ି ଆସିଲା । କବାଟ ଭିତରୁ ଆଉଜାଇ ରାମ ଅବାକ୍ ହୋଇ ଅନାଇଁ ରହିଲା ଅଣି'ର ସୁନ୍ଦର ମୁହଁଟିକୁ ।

ବାଳିକା ମା' କୋଡ଼ ଛାଡ଼ି ଏକାକିନୀ ଆଉ ଜୀବନରେ କେବେ ଏପରି ଅବସ୍ଥାରେ ଶୋଇ ନ ଥିଲା । ତା'ରିହାର ସବୁ ଅଙ୍ଗ ଆଚ୍ଛାଦିତ ନ ଥିଲା । ଦେହରୁ ମୁଣ୍ଡକୁ ଲୁଗା ଖସି ଯୌବନର କମନୀୟ ସୌନ୍ଦର୍ଯ୍ୟ ଦେଖାଯାଉଥିଲା ।

ଅଣୀକୁ ସେପରି ଅବସ୍ଥାରେ ଦେଖି ରାମର ମନରେ ଯେଉଁ ଅପୂର୍ବ ଭାବ ଜାଗରିତ ହେଲା, ଲେଖିବା କଠିନ । ସେ ସ୍ଥିର ହୋଇ ଅଣୀର ଜ୍ୱଳନ୍ତ ସୌନ୍ଦର୍ଯ୍ୟ ନିରୀକ୍ଷଣ କଲା । ଭାବିଲା, ଅଣୀ ମୃତା ? ଏପରି ସୁନ୍ଦରୀର ମୃତ୍ୟୁ ହୁଏ ? ନିକଟକୁ ଘୁଞ୍ଚିଯାଇ ମୁହଁକୁ ଅନାଇଲା । ସ୍ଥିର କରିନେଲା, କଦାପି ସେ ମୃତା

ନୁହେଁ । ତାର ମୁଖର ଭାବ ଭଙ୍ଗୀ ଦେଖିଲେ ଏହା ନିଃସନ୍ଦେହରେ ଅନୁମାନ କରାଯାଇ ପାରେ । ନିକଟକୁ ଯାଇ କମ୍ପିତ ହସ୍ତରେ ଆଶାର ମସ୍ତକ ସ୍ପର୍ଶ କଲା ।

ଆଶା ଚମକିଉଠିଲା । ହଠାତ୍ ଅନାଇଁ ଦେଖିଲା, କେହି ନାହିଁ । ରାମ ମୁଣ୍ଡଉପରେ ଠିଆ ହୋଇଅଛି । ଆଶା ଭାବି ନ ଥିଲା ଯେ ସେ ଘଡିରେ କେହି ଅଛି । ତଥାପି ସେ ଲୁଗାପଠା ସଜାଡ଼ି ରାମ ଆଡ଼କୁ ପିଠି କରି ବସିଲା । ଭାବିଲା, ରାତି ପାଇ ନାହିଁ । ଭଗବାନଙ୍କୁ ପ୍ରଣାମ କରି ଅନୁରୋଧ କଲା, କାଳରାତ୍ରି ସେହିପରି ଥାଉ, ସକାଳ ନ ହେଉ ।

ଆଶା ବୁଝି ପାରିଲା ଯେ, ଆତ୍ମହତ୍ୟା ଚେଷ୍ଟା ତାର ବିଫଳ ହୋଇଛି । କାରଣ, ହୁଏ ତ ସେ ମୁଦରେ ମାରି ନାହିଁ କମ୍ବା ମାରି ଚୁଚୁମି ପ୍ରାଣ ହାରିବା କଥା ମିଛ ।

ରାମ କହିଲା, ତୋର କଷ୍ଟ ହୋଇଛି କି ଆଶା ?

ଆଶା ଚମକି ଉଠି ପଛକୁ ଚାହିଁଲା । ତାର ସେ ଚାହାଣୀରେ ଅନୁନୟ ଓ ଦୁଃଖ ପୂର୍ଣ୍ଣ ହୋଇଥିଲା । ରାମର କଠୋର ହୃଦୟ ତରଳିବାକୁ ବସିଲା ।

ଆଶା ବିରକ୍ତି ସୂଚକ ସ୍ୱରରେ କହିଲା, ମୋର କଷ୍ଟ ହେଉ ନାହିଁ । ତୁ ସଇତାନ, ଏଠାରୁ ମୋ ପାଖରୁ ଚାଲିଯା କହୁଛି । ଅତି ନିର୍ଲଜ, ଅବିଶ୍ୱାସୀ ଲୋକଟା ତୁ । ଚାଲିଯା କହୁଛି ।

ରାମ ପକ୍ଷରେ ଏ ଅପମାନ ଅସହ୍ୟ ହୋଇ ଉଠିଲା । ତଥାପି ଧୈର୍ଯ୍ୟ ଧରି ଆଗକୁ ଆସି ପଚାରିଲା, ରାଗିଲୁ କି ?

ଆଶା ସ୍ୱର ବଦଳାଇ କହିଲା, ରାଗିବି କାହିଁକି ? ରାମ ଭାଇ, ମୁଁ ଏଠି ଭଲରେ ଅଛି । ମୋର ଭଲ ମନ୍ଦ ଚିନ୍ତା କରିବାର ଭାର ଆଉ ତମ ଉପରେ ନାହିଁ । ମୋତେ ଛାଡ଼ି ତୁମେ ଚାଲିଯାଅ । ମୁଁ ମୋର ଯାହା ଭଲ ତା କରିବି । ଭାଇ ମୋର ତମେ; ଆହା କେଡ଼େ ସ୍ନେହ ମୋଠାରେ ! ସାନ ଭଉଣୀ ବୋଲି ସିନା ଏତେ କଷ୍ଟ କରି ଚକ୍ରାନ୍ତ କରି ମୋର ଇଚ୍ଛା ବିରୁଦ୍ଧରେ ଧରି ଆଣି ରାଣୀ କରିବ ବୋଲି ଏପରି ନିର୍ଜ୍ଜନ କୋଠରୀରେ ବନ୍ଦୀ କରି ରଖିଅଛ ! ଦେଶରେ କେତେ ଲୋକ ଅଛନ୍ତି, କାହାର ତ ମନ ଏପରି ହେଲା ନାହିଁ ? ତୁମକୁ ଧନ୍ୟବାଦ ଦେଇ ଏତିକି ପ୍ରାର୍ଥନା କରୁଛି, ଏଠାରୁ ଚାଲିଯାଅ । ମୁଁ ଏ ରାଜ୍ୟର ରାଣୀ ହେବି ? ଛୋଟ ଭଉଣୀ ବୋଲି ଶେଦିନ ବଗିଚାରେ ଭ୍ରାତୃସ୍ନେହର ଦୃଷ୍ଟାନ୍ତ ଦେଖାଇ ମୋତେ ଗେଲ କରିଲ; ଅବଳାର ସତୀତ୍ୱ ଉପରେ କଳଙ୍କ ଲଗାଇଲ । ସେଇଥିପାଇଁ ତୁମକୁ ଦଣ୍ଡ ଭୋଗ କରିବାକୁ ଅବଶ୍ୟ ପଡ଼ିବ ।

ରାମ ସବୁ ଶୁଣି ଦର୍ପଣଟି ପଦରେ ତାର ସବୁ ଦୋଷ ଖଣ୍ଡନ କରିଦେଲ, ତୁ ପାଗଳ ।

ରାମ ଅଶା-ନିକଟକୁ ଅଗ୍ରସର ହୋଇ ମଖମଲ ଗଦି ଉପରେ ବସିବାକୁ ଚେଷ୍ଟାକରି କହିଲା, କେତେବେଳେ ସିନା ଦଣ୍ଡ ପାଇବ, ବର୍ତ୍ତିମାନ ତ ନୁହେଁ ? ତୋତେ ଏପରି ସ୍ଥାନରେ ପାଇ ମନରେ ମୋର ଯେଉଁ ଆନନ୍ଦ ହେଉଛି, ତୋର ରୂପ ଦେଖି, ତୋର ଅଳଙ୍କାର ଦେଖି, ତୋର କଥା ଶୁଣି ସେ ଆନନ୍ଦ ସହସ୍ର ଗୁଣ ବଢ଼ିଯାଉଛି । ମୋତେ ଦଣ୍ଡ ଦେବ କିଏ ? ଯେଉଁମାନେ ଥିଲେ ସେମାନେ ଆଉ ତୋର ହୋଇ ଏ ସଂସାରରେ ନାହାନ୍ତି । ରଘୁନାଥ ବାବୁ ନିଜେ ନିଜର ଘର ଦ୍ୱାର ପୋଡ଼ି ପାଗଳ ହୋଇ କୁଆଡ଼େ ଚାଲିଗଲେଣି ଖାସ୍ ତୋର ପାଇଁ ।

ଅଶା ଖଟ ଉପରୁ ଉଠି ତଳେ ଠିଆ ହେଲା । ଭାବିଲା ସେ ମୋତେ ଭଲ ପାଆନ୍ତି ମୁଁ ତା ଆଗରୁ ଜାଣିଥିଲି । ମନ କଷ୍ଟରେ କିଛି କହି ପାରିଲା ନାହିଁ ।

ରାମ ମଖମଲ ଗଦି ଉପରୁ ଉଠି ଆସି ଅଶା ଆଗରେ ଠିଆ ହୋଇ କହିଲା, ଶୁଣ, ବଶିଆ ଜାଣି ପାରିଲା ଯେ ମୁଁ ତୋତେ ଅଣିଛି । ସେ ମୋତେ ଖୋଜି ଖୋଜି ହୋଟାଙ୍କ ଗୃହାଳରେ ପହଞ୍ଚିଲା । ମୋତେ ଧରି ତୋ ବିଷୟରେ ପଚାରିବାରୁ କିଛି ନ କହି ଏହାପରି ଖଣ୍ଡେ ଛୁରୀରେ ତାର ଛାତି କଣା କରିଦେଲି । ଘର ବାହାରୁ ଜଞ୍ଜିର ଦେଇ ନିଆଁ ଲଗାଇଦେଲି । କେମିତି ମଜା ! ଆଉ ତୋର କିଏ ଅଛି ଯେ ମୋ କାର୍ଯ୍ୟରେ ବାଧା ଦେବ ?

ଅଶା ମୁହଁରେ ହାତ ଦେଇ କାନ୍ଦିଲା । ଭାବିଲା, ଆହା ବଶିଆ ଭାଇ ମରିଗଲା ? ଯେଉଁ ବଶିଆ ଭାଇର ଟିକିଏ ହେଲାରେ ତାଙ୍କର ଅସ୍ତିତ୍ୱ ନ ଥାନ୍ତା, ଯାହାର ସ୍ନେହ ପାଇ ବାପ ଭାଇଙ୍କର ପ୍ରକୃତ ସ୍ନେହ ସେ ଅନୁମାନ କରିବାକୁ କ୍ଷମ ହୋଇଥିଲା, ତାର ମୃତ୍ୟୁ ?

ଅଶାର ହାତ ଧରି ରାମ ଅନୁରୋଧ କଲା, ଆଉ କାନ୍ଦନା ଅଶା । ଲାଭ ନାହିଁ । ତୋର କାନ୍ଦଣା ଦେଖିଲେ ମୋ ମନରେ ଦୁଃଖ ହେଉଛି ।

ଅଶା ରାଗି ଉଠି ହାତ ଛଡ଼ାଇ ନିକଟରେ ଥିବା କୂଅ କାନ୍ଥକୁ ଆଉଜି କହିଲା, ଲଜ୍ଜା ନାହିଁ ତୋର ମୁହଁକୁ ରେ ମୂର୍ଖ, ହୃଦୟ ହୀନ ? କହିବାକୁ ସାହସ କରୁଛୁ ପୁଣି ମୋ ଆଗରେ ଯେ ମୋର କଷ୍ଟ ଦେଖି ତୋ ମନରେ ଦୁଃଖ ହେଉଛି ? ଯିଏ ନିଜେ କଷ୍ଟ ଉପରେ କଷ୍ଟ ଆଣି ମୋ ଉପରେ ଲଦି ଦେଉଛି, ମୋ ପାଇଁ ପୁଣି ତା ମନରେ ଦୁଃଖ ? ଯା, ଆଉ କାହା ଆଗରେ କହିବୁ ଯେ ସେ ବିଶ୍ୱାସ କରିବ ।

ଅଶା, ବିଶ୍ୱାସ ନ କଲେ ନ କର ପଛେ, ସତକଥା କହିବାକୁ ମୁଁ କୁଣ୍ଠିତ ହେବ ନାହିଁ । ଆ, ମୋର ସାନ ଭଉଣୀଟା, ଆ—କହି ସୁମ ଅଶା ଆଡ଼କୁ ଅଗ୍ରସର ହେଲା । ଅଶା ଚିତ୍କାର କରି ସୁମ ଉପରେ ପଦ ପ୍ରହାର କଲା । ତଥାପି ସେ କହିଲା, ଏଇ ତ ସେଦିନ ଠେକା ମାରି ମୁଣ୍ଡ ଫଟେଇ ଦେଇଥିଲୁ ଆଜି ଗୋଇଠା ମାଇଲୁ । ତୋତେ ମୁଁ କେତେ ଭଲ ପାଏ ତୁ ଅନୁମାନ କରି ପାରିବୁ ନାହିଁ । ମୋତେ ମାରିବା ଦ୍ୱାରା ଯଦି ତୋ ମନରୁ ରାଗ ଚାଲିଯାଏ, ଆଉ ଦି ଗୋଇଠା ମାରିଲେ ବି ମୁଁ ଦୁଃଖିତ ହେବ ନାହିଁ । କିନ୍ତୁ ଅଶା, ମନେ ରଖିଥା, ତୋତେ ମୁଁ ଭଲ ପାଏ, ମୋ ଜୀବନରୁ ବଳି ଭଲ ପାଏ ।

ମୁଁ ଚାହେଁ ନା ଯେ ତୁ ମୋତେ ଭଲ ପାଇବୁ । ପାପିଷ୍ଠ, ମୁହଁରେ ଭଉଣୀ ବୋଲି ଡାକୁଛୁ ପରା ? ତୋ ମନର ମଇଳା କଥା ମୁଁ ବୁଝି ପାରିଲିଣି ।

ତୋର ବିଚକ୍ଷଣ ବୁଦ୍ଧି, ମୋ ମନର କଥା ତୁ ବୁଝି ପାରିଛୁ । ଆଉ ଲୁଚାଇ ଲାଭ ନାହିଁ । ତେବେ, କହିବି ?

ତୁ ଏଠୁ ଚାଲିଯା । ମୁଁ ବନ୍ଦିନୀ ହେଲେ ବି ମୁଁ ରାଣୀ । ମୁଁ ଆଦେଶ ଦେଉଛି, ତୁ ମୋ ପାଖରୁ ଦୂରେଇ ଯା ।

ତୁ ରାଣୀ ହୋଇଛୁ ?

ହଁ, ମୁଁ ମୋର ରାଜାର ରାଣୀ । ଆଉ କଣ ଚାହୁଁ ?

ସୁମ କେତେ କଣ ଭାବିଲା । ଅଗ୍ନି ପରି ଜଳି ଉଠି କହିଲା, ଏତେ ଅବିଶ୍ୱାସ ତୁମର ରାଜପୁତ୍ର ? ତୁମରି ପାଇଁ ମୁଁ ମୋ ଜୀବନକୁ ହାତରେ ଧରି ବୁଲୁଛି, ତୁମେ ପୁଣି ମୋତେ ସତ କଥା ଲୁଚାଇଲ ? ସେ ନୀରବ ହୋଇ ପୁଣି ଭାବିଲା, ମୁଁ ଯଦି ଚାହିଁବି, ଅଶାକୁ ଏହିକ୍ଷଣି ମୁକ୍ତ କରି ପାରିବି । ରାଜପୁତ୍ରକୁ ପାସଙ୍ଗରେ ପକାଇବି ନାହିଁ । ମୋ ପାଖେ ପ୍ରତାରଣା ? ମୁଁ ପ୍ରତିକାର କରିବି ।

ନମ୍ର ସ୍ୱରରେ ଅଶାକୁ କହିଲା, ଯଦି ତୁ ମୁକ୍ତ ହେବାକୁ ଚାହୁଁ, ତାହା କେବଳ ମୋ ଦ୍ୱାରା ସମ୍ଭବ ହୋଇ ପାରିବ । ମୋର ମଧ୍ୟ ସେହି ଇଚ୍ଛା । କିନ୍ତୁ ଥରେ କହ, ତୁ ମୋତେ ଭଲ ପାଉ ?

ଅଶା ବିଦ୍ରୁପ କରି କହିଲା, ଏତିକି କହିଲେ ଯଦି ତୁ ମୋତେ ମୁକ୍ତ ଦେବାକୁ ରାଜି ଅଛୁ ମୁଁ ତ ସେଇଆ କହିବି । କିନ୍ତୁ ତୋପରି ନରାଧମ ଓ ପାପୀକୁ ଭଲ ପାଇବା କାହାରି ପକ୍ଷରେ ସମ୍ଭବ ନୁହେଁ ।

ତେବେ ତୁ ମୋତେ ଭଲ ପାଉ ନାହୁଁ ?

ଏପରି ଆଶା କରିବା ତୋ ପକ୍ଷରେହିଁ ସମ୍ଭବ । ଯେଉଁ ଲୋକ ମୋର ମା, ଅଜମା ଏବଂ ଅନ୍ୟମାନଙ୍କ ମନରେ କଷ୍ଟ ଦେଇ ମୋତେ ବଳାତ୍କାରରେ ଧରି ନେଇଆସିଛୁ, ଯେ ଶଣିଆ ଭାଇକୁ ନିଜ ହାତରେ ମାରିଛୁ, ତାକୁ ମୁଁ କିପରି ଭଲ ପାଇବି ? ମୁଁ ସଂସାରରେ ଜଣକୁ ମାତ୍ର ଭଲ ପାଇବି । ସେ ଜଣକ ମୋର ରଜା । ମୁଁ ତାଙ୍କର ରାଣୀ ।

ଭଲ ପାଇବାକୁ ଯଦି ତୋତେ ମୁଁ ବାଧ କରିଏ ?

ତୋଠୁ ବଳି ବଡ଼ ନିର୍ବୋଧ ଆଉ କେହି ନାହିଁ ।

ସତେ ? କିଏ ନିର୍ବୋଧ ସେ କଥା ତୁ ଏବେ ବୁଝିବୁ । କିଏ ତୋତେ ରକ୍ଷା କରିବ ଦେଖିବି ।

ରାମ ରାକ୍ଷସ ପରାକ୍ରମରେ ଆଶା ନିକଟକୁ ଛୁଟିଗଲା । ତାର ଦୁଇ ହାତ ଧରି ନିଜ ପାଖକୁ ଟାଣିଲା । ଆଶା ଚିତ୍କାର କରି ତାକୁ ପଦାଘାତ କଲା । ଠିକ୍ ସେହି ସମୟରେ କୁଅ ଭିତରୁ ଶବ୍ଦ ହେଲା । କିଏ ଜଣେ ଗର୍ଜି ଉଠିଲା ।

ବାହାରୁ ମଧ୍ୟ ତୋଫାନ ବେଗରେ କିଏ ପଶି ଆସି ରାମର ହାତ ଧରି ଟାଣି ନେଲା । ରାମ ତାହାକୁ ନିକଟରେ ଦେଖିଲା । ସେ ତାର ଅପରିଚିତ ନୁହନ୍ତି । ଚିର ପରିଚିତ ବନ୍ଧୁ ରାଜା । ରାଜପୁତ୍ର ବାହାରେ ଠିଆ ହୋଇ ସେମାନଙ୍କର କଥୋପକଥନର ଶେଷ ଅଂଶ ଶୁଣିଛନ୍ତି । ସେ ବୁଝିଛନ୍ତି ଯେ ଆଶା ତାଙ୍କର ହେବାକୁ ସ୍ଥିର କରିଛି । ସେ ଅତି କ୍ରୋଧରେ ଘର ଭିତରକୁ ଧାଇଁ ଆସି ରାମର କାର୍ଯ୍ୟରେ ବାଧା ଦେଲେ । କହିଲେ, ତମର ସେଦିନର କଥା ମନେ ନାହିଁ ପରା । ସେଦିନ ସଞ୍ଜବୁଢ଼େ ନଈ ବାଲିରେ କହିଥିଲି, ଆଶା ମୋର ଉପଯୁକ୍ତ, ତମର ନୁହେଁ । ଅଉ ଦିନେ ମଧ୍ୟ କହିଥିଲି, ଆଶା ମୋର ରାଣୀ ହେବ । ଆଜି ତମର ଏଡ଼େ ସାହସ ହେଲା ?

ରାମ ମଧ୍ୟ ଗର୍ଜି ଉଠିଲା । କାହା ଆଗରେ କହୁଛନ୍ତି ମନେ ଅଛି ?

ମୋର ଗୋଲାମ ଆଗରେ କହୁଛି ।

ରାଜପୁତ୍ର ରାମକୁ ପଦାଘାତ କଲେ ।

ସମ ଅଗ୍ନିଶର୍ମା ହୋଇ କହିଲା, ତେବେ ଆଉ ରକ୍ଷା ନାହିଁ । ଆପଣଙ୍କୁ ଏହାର ଫଳ ଭୋଗ କରିବାକୁ ପଡ଼ିବ ।

ଜାଣ ତ, ଯଦି ମୁଁ ଆଦେଶ ଦିଏ, ତୁମକୁ ଆଜୀବନ କାରାଗାରରେ ରହିବାକୁ ପଡ଼ିବ । କେହି ବାଧା ଦେଇ ପାରିବେ ନାହିଁ । ଯଦି ମୁଁ ଆଦେଶ ଦିଏ ତମର ରକ୍ତରେ ଦେବୀ ମଙ୍ଗଳାଙ୍କର ମୂର୍ତ୍ତି ଧୁଆ ହେବ । ଆଜି ତୁମର ମୃତ ଗଣ୍ଡି ଘଣ୍ଟାକ ଭିତରେ ବାଲୁଆ କୁକୁରଙ୍କର ଆହାର ହେବ । ଅବିଶ୍ୱାସୀ ! ଅଛ, ଆଜି ତାର ପ୍ରତିକାର କରିବି ।

ରାଜପୁତ୍ର କ୍ରୋଧାନ୍ଧ ହୋଇ ଘରୁ ବାହାରି ଯିବାକୁ ବସିଲେ । ଅଣା ଉପରେ ତାଙ୍କର ଆଖି ପଡ଼ିଲା ନାହିଁ । ସହସା ସମ ତାଙ୍କର ହାତ ଧରି ଟାଣି ଆଣିଲା । ରାଜପୁତ୍ର ତଳେ ପଡ଼ିଗଲେ । ସମ ତାଙ୍କର ଉପରେ ବସି ଅଣ୍ଟାରୁ ଧାରୁଆ ଛୁରୀ ଖଣ୍ଡିକ କାଢ଼ି ତାଙ୍କ ତଣ୍ଟିରେ ଲଗାଇ କହିଲା, ମୋର ପ୍ରାଣଦଣ୍ଡ ଆଦେଶ କରିବା ଆଗରୁ ମୁଁ ତୁମକୁ ପ୍ରାଣଦଣ୍ଡ ଦେଲି । ଯୋଉଁ ଛୁରୀ ଖଣ୍ଡି ନଜେ ମୋତେ ଦେଇଥିଲ, ସେଇଥିରେ ତମର ମୃତ୍ୟୁ ସୁନିଶ୍ଚିତ ।

ଅଣା ଏତେବେଳଯାଏ ନୀରବରେ ଠିଆ ହୋଇ ଦେଖୁଥିଲା । ହଠାତ୍ ସମର ହାତ ଧରି ଅନୁରୋଧ କଲା, ସମ ଭାଇ, ସାଆନ୍ତଙ୍କୁ ମାର ନାହିଁ । ତୁହେଁ ତୁମେ ଏପରି ପାଗଳ ହୁଅ ନାହିଁ । ଛି, ବୁଦ୍ଧି ବିବେକ ହରାଇ କାହିଁକି ଏପରି ହେଉଛ ?

କୋମଳ ହୃଦୟର ଦୁର୍ବଳତା ସମ ଶୁଣିବ ବା କାହିଁକି ? ଅଣାକୁ ଥରେ ମାତ୍ର ଚାହିଁ ତାକୁ ଠେଲିଦେଲା । ଛଟପଟ ଦୁର୍ବଳ ରାଜପୁତ୍ରକୁ ଭିଡ଼ି ଧରି ତାଙ୍କ ଛାତି ଉପରେ ବସି କହିଲା, ଆଗ ତୋର ପ୍ରାଣ ନେବି, ତା ପରେ ତୋର ରାଣୀ ଏହି ଅଣାକୁ ମୋର କରିବି ।

ଚୁପ୍ ରହ ବଦମାସ, ସଇତାନ—ଅଣା କହି ଉଠିଲା ।

ଏତିକିବେଳେ କିଏ ଜଣେ ପଛଆଡ଼ୁ ସମ ହାତରୁ ଛୁରୀ ଖଣ୍ଡି ଟାଣି ନେଲା । ଛୁରୀରେ ସମର ହାତକୁ ଆଘାତ କଲା । କହୁଣି ଉପରେ ବାଜିବାରୁ ହାତ ଛିଣ୍ଡିଗଲା ନାହିଁ, କାଟି ହୋଇଗଲା । ରକ୍ତଧାର ଯୁବରାଜଙ୍କର ନାକ, ପାଟିରେ ପଶିଲା । ସମ ଭୟରେ ଚିତ୍କାର କରି ତଳେ ପଡ଼ିଗଲା । ମୁକ୍ତ ହୋଇ ମଧ୍ୟ ଆଉ ଉଠି ପାରିଲା ନାହିଁ । ଯୁବରାଜ ସେହିପରି ତଳେ ଗଡ଼ି ଭୟରେ କମ୍ପିବାକୁ ଲାଗିଲେ । ସେମାନଙ୍କର ଭୟ ତ୍ରସ୍ତ ଦୃଷ୍ଟି ପଡ଼ିଲା ଯେଉଁ ମୂର୍ତ୍ତି ଉପରେ, କେତେ ଭୟଙ୍କର ଦିଶୁଛି—ସମ୍ପୂର୍ଣ୍ଣ ଉଲଗ୍ନ । ରାଜପୁତ୍ର ଭାବିଲେ, ନିଶ୍ଚୟ ଭୂତ ହୋଇଥିବ;

ନୋହିଲେ ନିପଣ୍ଡ କଳା ଓ ଉଲଗ୍ନ ହୋଇ କିଏ ଶୂନ୍ୟରୁ ଆସି ସହସା ଏହି ବଗିଚା କୋଠରୀରେ ଉପସ୍ଥିତ ହୁଅନ୍ତା ?

ରାମ ଦେଖିଲା, ବଣିଆର ଭୂତ । ଯେଉଁ ବଣିଆକୁ ସେ ଗତ ରାତିରେ ଜଳାଇଁ ମାରିଥିଲା, ଏଂତ ସେଇ ବଣିଆର ପ୍ରେତାତ୍ମା । ରାମ ମୂର୍ଚ୍ଛିତ ପ୍ରାୟ ହେଲା । ଆଖି ଦେଖିଲା, ତାଆର ବଣିଆ ଭଳି ଉଲଗ୍ନ ହୋଇ ଆଗରେ ଠିଆ ହୋଇ ଦାନ୍ତ ରଗଡ଼ୁଛି । ହାତରେ ରକ୍ତାକ୍ତ ଛୁରିକା । ସେ ଭୟରେ ଥରିବାକୁ ଲାଗିଲା ।

ଯନ୍ତ୍ରଣାରେ ଛଟପଟ ହୋଇ ରାମ ଆଖି ଖୋଲିଲା । ଭୂତ ଭୟରେ ସେ ଥର ଥର କମ୍ପିଲା ।

ଉଲଗ୍ନ ବଣିଆ କଟମଟ କରି ରାମକୁ ଚାହିଁଲା । ତା ଛାତି ଉପରେ ପାଦ ରଖି ଗର୍ଜନ କରି କହିଲା, ଚିହ୍ନି ପାରୁଛୁ ? କାଲି ଯାହାକୁ ହୋତାଙ୍କ ପାଠଶାଳାରେ ପୋଡ଼ି ମାରିଥିଲୁ, ମୁଁ ତାଆର ଭୂତ । କେବଳ ପ୍ରତିଶୋଧ ନେବାକୁ ଆସିଛି । ଜାଣୁ, ତୁ ଆଜି କାହା ହାତରେ କପରି ଭାବରେ ମରିବୁ ? ଯାହାକୁ ମାରିବାକୁ ବସିଥିଲୁ ସେଇ ତୋତେ ଆଜି ମାରିବ । ଉଠ ରାଜା ।

ଭୟରେ ରାଜପୁତ୍ର ଉଠି ଠିଆ ହେଲେ । ବଣିଆ କହିଲା, ନିଅ ଏ ଛୁରୀ ।

ରାଜପୁତ୍ର କମ୍ପିତ ହସ୍ତରେ ସେ ଖଣ୍ଡିକ ଗ୍ରହଣ କଲେ । ବଣିଆ କହିଲା, ରାଜପୁତ୍ର, ଯେଉଁ ନରାଧମ ତୁମର ପ୍ରାଣ ନେଇଥାନ୍ତା ତାର ପ୍ରାଣ ତୁମେ ନିଅ ।

ରାଜପୁତ୍ର ଭୂତର ଆଦେଶ ପାଇ ଭୟରେ ମୂର୍ଚ୍ଛିତ ରାମର ବେକରେ ଛୁରୀ ବନ୍ଧ କଲେ । ରକ୍ତର ପ୍ରବାହରେ ପ୍ରକୋଷ୍ଠଟି ରକ୍ତାକ୍ତ ହେଲା । ବଣିଆ ରାଜପୁତ୍ରଙ୍କ ହାତରୁ ଛୁରିକା ଟାଣି ନେଇ ଟିକିଏ ଦୂରକୁ ଘୁଞ୍ଚିଗଲା । ସେ ଆଜି ପାଗଳ ହୋଇଛି । ସେ ଭୟଙ୍କର ହୋଇଛି । ରାକ୍ଷସ ପାଲଟିଛି । ଦଶଦିଗ ତାକୁ ଅନ୍ଧାର ଦିଶୁଛି । କେବଳ ଭାବୁଛି, ଆଜି ସେ ସମସ୍ତଙ୍କର ପ୍ରାଣ ନେବ, ନିଜେ ବି ମରିବ । ସେ କଡ଼ମଡ଼ କରି ଦାନ୍ତ ଘୋଷାଇଲା ।

ବଣିଆ ଛୁରୀ ଖଣ୍ଡି ଆଖି ଆଡ଼କୁ ବଢ଼ାଇ ଦେଇ କହିଲା, ନେ ଲୋ ଅଲକ୍ଷଣୀ, ନେ ଲୋ କୁଳଟା, ଦୋମୁହୁଁଣୀ, ରାଜରାଣୀ ପରି ହୋଇଛୁ ? ଏଇ ଛୁରିକାରେ ରାଜପୁତ୍ରର ଜୀବନ ନେ । ଡେରି କରନା ।

କଥା କଦଳୀ ଗଛ ପରି ହତଜ୍ଞାନ ହୋଇ ଆଖି ପଲଙ୍କ ଉପରେ ଲୋଟି ପଡ଼ିଲା । ସୁବିଧା ବେଳ ଦେଖି ଅତି ଆତଙ୍କରେ ରାଜକୁମାର ତୋଫାନ ବେଗରେ ଭୂତ କୋଠି ଭିତରୁ ପଦାକୁ ଧାଇଁ ପଳାଇଲେ ।

ଶିକାର ଖସି ପଳାଇଛି ଜାଣି ବଣିଆ ହତାଶ ହେଲା । ଭିତରୁ କବାଟ କିଳିଲା । ଶ୍ୟାମର ରକ୍ତବୋଳା ଲୁଗା ଖୋଲି ନିଜେ ପିନ୍ଧିଲା । ଭାବିଲା, କୁଳଟା ଆଶାର ଜୀବନ ସେ ଆଗ ନେବ । ତା ପରେ ନିଜେ ଆତ୍ମହତ୍ୟା କରି ମରିବ । ଛୁରୀ ଖଣ୍ଡି ତଳୁ ଉଠାଇ ଟେକି ଧରିଲା । ମୂର୍ଚ୍ଛିତା ଆଶାର ପାଖକୁ ଯାଇ ଭାବିଲା, ଏଇଥର ଶେଷ କରିଦେବ ।

ହାତର ଛୁରିକା ଥରି ଉଠିଲା । ଛାତି ଥରି ଥରି ହୋଇ କମ୍ପିବାକୁ ଲାଗିଲା । ଭାବିଲା, କାହାକୁ ସେ ମାରିବାକୁ ଯାଉଛି ? ଯେଉଁ ବାପଛେଉଣ୍ଡ ପିଲାଟାକୁ କାଖରେ କୋଳରେ ଧରି ସେ ବଢ଼ାଇଛି, ନିଜ ହାତରେ ତାର ଜୀବନ ସେ ନେବ କିପରି ? ଆଶା କୁଳଟା ହୋଇ ପାରେ ନାହିଁ । ସେ ପବିତ୍ର ଫୁଲଟିଏ ।

ଛୁରୀ ଖଣ୍ଡି ହାତରୁ ଖସି ପଡ଼ିଲା । ଆଶାର ମୁଣ୍ଡ ହଲାଇ ସେ ଡାକି କହିଲା, ଆଶା, ଆଶା, ମୁଁ ଭୂତ ନୁହେଁ । ମୁଁ ତୋର ବଣିଆ ଭାଇ । ଖୋଜି ଖୋଜି ତୋତେ ଠାବ କରିଛି । ଶ୍ୟାମର ଜୀବନ ନେଇଛି । ଉଠ ଏଥର ।

ବଣିଆର ଆଖିରୁ ଲୁହ ଧାର ଗଡ଼ି ପଡ଼ିଲା ।

**ମେ**ଘ ଅନ୍ଧକାର ମଧ୍ୟ ଦେଇ ଶିବ ମନ୍ଦିର ନିକଟରେ ବଣିଆ ଏବଂ ଆଶା ଆଗକୁ ଚାଲିଛନ୍ତି । ମୁଷଳ ଧାରାରେ ବର୍ଷା ! ସେହି ବର୍ଷାରେ ତିନ୍ତି ତିନ୍ତି ଦୁଇଜଣ ଆଗ ପଛ ହୋଇ ଯାଉଛନ୍ତି । ଉଭୟେ ନୀରବ । ଦାଣ୍ଡେ ଦାଣ୍ଡେ ଚାଲିଆସିଲେ, କାହାକୁ ଦେଖିବାକୁ ପାଇଲେ ନାହିଁ । ଅଦିନିଆଁ ବର୍ଷା । ପଥ ଜନମାନବ ଶୂନ୍ୟ ।

ଉଭୟେ ଘାଟପଡ଼ା ସୁନ୍ଦର ବାବୁଙ୍କ ଦାଣ୍ଡରେ ଠିଆ ହେଲେ । କେହି ସାହସ କଲେ ନାହିଁ ଡାକିବାକୁ ।

ଧୂଳିଆ କବାଟ ଖୋଲି ପଦାକୁ ଆସିଲା । ତାକୁ ଦେଖି ଉଭୟେ ଚମକି ଉଠିଲେ । ସେ ଅପା କହି ଆଶାକୁ କୁଣ୍ଢାଇ ଧରିଲା । ଉଚ୍ଚସ୍ୱରରେ କାନ୍ଦି ଉଠିଲା । ଆଶା କିଛି ନ ବୁଝି ନ ସୁଝି ତାଆରି କାନ୍ଦଣାରେ ଯୋଗ ଦେଲା । କିଛି ସମୟ ପରେ ବଣିଆ ଧୂଳିଆକୁ ପଚାରିଲା, କାନ୍ଦୁଛୁ କାହିଁକି ? ଧୂଳିଆ ଉତ୍ତର ଦେଲା, କାଲି ମୋ ମା ମରିଗଲା । ଆଉ ଆଜି— ।

ଅଶା ପଚାରିଲା, କଣ, କଏ ?

ମାଉସୀ ।

ମାଉସୀ କଏ ? ବଣିଆ ଭାଇ ବକାଳ ହୋଇ ପଚାରିଲା ।

ଧୂଳିଆ ଅଶା ମୁହଁକୁ ଅନାଇଁ କହିଲା, ଅଶା ଅପା, ତୋତେ ପାଇବେ ନାହିଁ ଜାଣି ତୋ ମା ଆଜ ସକାଳେ ମୋତେ କହିଲେ, ଧୂଳି, ତୋର ସବୁ ଦୁଃଖ ଅସୁବିଧା କଥା ମୁଁ ଜାଣେ । ତୁ ବୁଢ଼ୀଙ୍କୁ ନେଇ ରାଣୀଙ୍କ ପାଖକୁଯିବୁ । ତାଙ୍କୁ ନଜର ଦୁଃଖ ଜଣାଇବୁ । ମୁଁ ଆଜ ଚାଲିଯାଉଛି । ମୁଁ ପଚାରିଲି, କୋଉଠିକି ଯିବ ? ସେ କହିଲେ, ତୋ ମା ଯୋଉଠିକି ଯାଇଛି । ପୁଣି କହିଲେ, ମୋ ଅଶାକୁ ଯଦି କେବେ ଦେଖୁ କହିଦେବୁ, ମୁଁ ତାଆର ପାଇଁ ମରୁଛି ।

ମାଉସୀ ଆଉ କଣ କଲେ ମୁଁ ଜାଣେ ନାହିଁ । ସେ କଣ ଖାଇଦେଇ ଶୋଇପଡ଼ିଲେ । କେତେବେଳେ ଉଠି ଖାଲି ଛଟପିଟି ହେଲେ । ସେଇଠୁ ନିଷ୍ଟଳ ହୋଇପଡ଼ିଲେ । ଦେହରେ ଜୀବନ ନାହିଁ ।

ଅଶା କାନ୍ଦି ଉଠିଲା । ବିକଳ ହୋଇ କହିଲା, ଅହା, କେଡ଼େ ହତଭାଗିନୀ ମୁଁ । ମୋର ପାଇଁ ମା ଜୀବନ ହାରି ଦେଲା—

ବଣିଆର ମୁହଁ ରକ୍ତବର୍ଣ୍ଣ ହୋଇଗଲା । ଅଶା ଗୃହ ମଧ୍ୟକୁ ଯିବା ଆଗରୁ ଧୂଳିଆକୁ ପଚାରିଲା, ମା କୋଉଁଠି ଅଛି ? ମୁଁ ଦେଖିବି । ଧୂଳିଆ ଉତ୍ତର ଦେବା ପୂର୍ବରୁ ବଣିଆ କହିଲା, ଅଲକ୍ଷଣୀ, ତୁ ମୋ ମାଆର ପବିତ୍ର ମୁହଁ ଦେଖି ପାରିବୁ ନାହିଁ । ତୋତେ ମୁଁ ଦେଖିବାକୁ ଅନୁମତି ଦେବି ନାହିଁ ।

ଅଶା କାନ୍ଦି କାନ୍ଦି କହିଲା, ମୁଁ କଳଙ୍କିନୀ ନୁହେଁ ବଣିଆ ଭାଇ । ତେବେ ସେଇ ଧାରଣା ମନରେ ଧରି ମା ମୋର ସେ ପୁରକୁ ଯାଇଛି । ଏ ପୁରରେ ତାକୁ ଦେଖିବାକୁ ମୁଁ ଚାହୁଁ ନାହିଁ । ସେ ପୁରରେ ତାକୁ ମୁଁ ଦେଖିବି । ସବୁ କହିବି । ସେ ବୁଝିବ ମୋ ମନର କଥା । ଏ ଦୁନିଆଁରେ ଆଉ କେହି ବୁଝିବେ ନାହିଁ ।

ବଣିଆ ତାର ସବୁ କଥା ଶୁଣିବାକୁ ଅପେକ୍ଷା କଲା ନାହିଁ । ମାଆଙ୍କର କଣ ହୋଇଛି ଦେଖିବାକୁ ସେ ଧୂଳିଆର ପଛେ ପଛେ ଖଞ୍ଜା ଭିତରକୁ ଗଲା ।

ଅଶା ଦ୍ରୁତ ଗତିରେ ମହାନଦୀଆଡ଼େ ଚାଲିଗଲା । ବର୍ଷା ତୋଫାନ ମାନିଲା ନାହିଁ, ପଛକୁ ଫେରି ଚାହିଁଲା ନାହିଁ । କେବଳ ଭାବିବାକୁ ଲାଗିଲା, କେହି ମୋର ଦୁଃଖ ବୁଝିବେ ନାହିଁ । ସମସ୍ତେ କେବଳ ନିନ୍ଦା କରିବେ । ଅପମାନ ଦେବେ । ଏ ଜୀବନରେ ଆଉ କି ପ୍ରୟୋଜନ ? ସବୁ କଥା ତୋତେ କହିବି ମା, ତୁ ବୁଝିବୁ, ହଁ ତୁ ବୁଝିବୁ ।

**ମା**ଆର ମୃତ ଦେହ ଦେଖି ବଣିଆ କାବୁସ୍ଥ ହେଲା । ସତେ ତ, ସବୁ ଶେଷ ହୋଇଛି । କିନ୍ତୁ ଅଣା ଭିତରକୁ ଅସିଲା ନାହିଁ କାହିଁକି ? ବୁଢ଼ା ବା ଗଲେ କୁଆଡ଼େ ? ବଣିଆ ଦାଣ୍ଡକୁ ଅସିଲା । ଦେଖିଲା, ଅଣା ନାହିଁ । ସେ କୁଆଡ଼େ ଚାଲିଯାଇଛି । ଆତ୍ମହତ୍ୟା କରିବ କି ? ଏ କୁଟୁମ୍ବର ଶେଷ ଦୀପଟିକୁ ସେ ଲିଭାଇଦେବ ?

ଉଚ୍ଛନ୍ନ ହୋଇ ବଣିଆ ଅଣାକୁ ଖୋଜିବାକୁ ବୁଝିଲା । ଭାବିଲା, ସେ ଅଣାର ଭାଇ ନୁହେଁ, ସେ ଅଣାର ଚାକର । ଚାକରର ଅଧିକାର ଅଛି କି ପ୍ରଭୁର ଚଳଣି ସମ୍ବନ୍ଧରେ ପ୍ରଶ୍ନ ପଚାରିବ ? ପ୍ରଭୁର ମଙ୍ଗଳ କରିଣ ତାର କାର୍ଯ୍ୟ ।

ବଣିଆ ମହାନଦୀ କୂଳରେ ଉପସ୍ଥିତ ହେଲା, ଦେଖିଲା, ଧୂଳିଆ ଆଗରୁ ଆସି କୂଳ ଖଣ୍ଡି ଉପରେ ଠିଆ ହୋଇ ନଦୀ ବକ୍ଷକୁ ସାଶ୍ରୁ ନେତ୍ରରେ ଅନାଇଁ ରହିଛି । ନୂଆ ପାଣି ପଡ଼ି ମହାନଦୀର ବକ୍ଷ ଫୁଲି ଉଠିଛି । ସେ ନାଚି ନାଚି କେତେ କଣ କହି ଅବିରଳ ବୋହି ଚାଲି ଯାଉଛି ।

ଧୂଳିଆର ଭାବ ଭଙ୍ଗୀ ଦେଖି ବଣିଆ ଯାହା ବୁଝିବାର ବୁଝିନେଲା । ସତେ ଯେପରି କିଏ ତାଆର କାନରେ କହୁଛି, ବଣିଆ ଦେଖ୍, ନିଜକୁ ଭୁଲି ଯିବାର ଫଳ ଏବେ ଦେଖ୍ । ବଣିଆ, ନିମକ୍‌ହାରାମ୍ କୃତଘ୍ନ ବଣିଆ, ଦେଖ୍ । ଆକାଶରେ ବିଜୁଳି ମଧ୍ୟ ତୋର କାର୍ଯ୍ୟ ପାଇଁ ହସୁଛି । ମହାନଦୀ ତିରସ୍କାର କରି ଗର୍ଜି ଉଠୁଛି । ସବୁ ତୋର ଦୋଷ । ପ୍ରତିକାର ଆଉ ନାହିଁ । ପ୍ରତିଶୋଧ କିପରି ନେବୁ ? ରାଜପୁତ୍ର ତୋ ପାଖରୁ ଚାଲିଯାଇଛନ୍ତି, ଯେତେ ଚେଷ୍ଟା କଲେ ଦେଖି ପାରିବୁ ନାହିଁ ।

ଧୂଳିଆ କହିଲା, ଅଣା ଅପା ନଈ ପାଣିକି ଡେଇଁପଡ଼ିଲା । ସେ ପାଣି ଭିତରେ ହଜିଗଲା ।

ବଣିଆ ଉତ୍ତର ଦେଲା ନାହିଁ । ସେ ଫେରିଲା । ମନ ମଧ୍ୟରେ ଗୋଟିଏ ପଦ ଘୋରହୋଇ ହେଲା, ପ୍ରତିଶୋଧ, ପ୍ରତିଶୋଧ ।

ହିଁରପୁର ସଙ୍ଗେ ସାତକୋଶିଆ ପର୍ବତ ମାଳାର କି ସମ୍ପର୍କ, ଅଳ୍ପ କଥାରେ କୁହାଯାଉ । ଏହା ହରପୁରର ପୂର୍ବ ସୀମାରେ ଅବସ୍ଥିତ । ଏହାର କେତେକ ଅଂଶ ହରପୁର ରାଜ୍ୟ ମଧ୍ୟରେ । ସାତକୋଶିଆ ପର୍ବତମାଳାର ଚନ୍ଦା ମୁଣ୍ଡିଆ ପର୍ବତ ଓ କୁମ୍ଭମୁନା ପର୍ବତ ଏହି ରାଜ୍ୟର ଅନ୍ତର୍ଗତ । ସାତକୋଶିଆ ନିକଟରେ ମହାନଦୀ ଗର୍ଭର କିନ୍ତୁ ଅତି ସଂକୀର୍ଣ୍ଣ । ଯେଉଁ ସମୟର କଥା ଲେଖା ଯାଉଛି, ସେ ସମୟରେ ଅତିର ସଂକୀର୍ଣ୍ଣ ଥିଲା ।

କୁମ୍ଭମୁନା ଏବଂ ଚନ୍ଦାମୁଣ୍ଡିଆ ପର୍ବତ ନିକଟରେ ଅନାର୍ଯ୍ୟ ଜାତିଙ୍କର ବାସ । ଦୁଇପାଖେ ଘୋର ଜଙ୍ଗଲ ମଧ୍ୟରେ କନ୍ଧ ପଲ୍ଲୀ । ସେ ସବୁ ଚନ୍ଦାମୁଣ୍ଡିଆ ଓ କୁମ୍ଭମୁନା ପର୍ବତଠାରୁ ବହୁ ଦୂରରେ ଅବସ୍ଥିତ । ବର୍ଷାଦିନେ ମହାନଦୀ ଜଳ ପୂର୍ଣ୍ଣ ଥାଏ । କନ୍ଧମାନେ ଏକ ପାଖରୁ ଅନ୍ୟ ପାଖକୁ ଅତି କଷ୍ଟରେ ପାର ହୁଅନ୍ତି । ଜଙ୍ଗଲରୁ ଗଛ କାଟି ଗଛରେ ବସି ପାଣିରେ ଛାଡ଼ିଦିଅନ୍ତି । ଗଛ ଦେହରେ ଲଇ ବନ୍ଧା ହୋଇ କୂଳର କେଉଁ ବଡ଼ ଗଛରେ ବନ୍ଧା ହୋଇଥାଏ । ଅକସ୍ମାତ୍ କେବେ ଲଇ ଛିଣ୍ଡିଗଲେ ସନ୍ତରଣ କରି ଆତ୍ମରକ୍ଷା କରନ୍ତି । କୌଣସି ଯୋଗୀ ସନ୍ନ୍ୟାସୀ ପାରି ହେବାକୁ ବସିଲେ ଅତି କଷ୍ଟ । ଅତି ଯତ୍ନରେ କନ୍ଧ ଯୁବକ ତାଙ୍କୁ ଗଛରେ ବସାଇ ପାର କରିଦିଅନ୍ତି ।

ଖରାଦିନେ ଏକପାଖରୁ ଅନ୍ୟ ପାଖକୁ ଯାତାୟାତ କରିବାକୁ ସୁବିଧା ହୁଏ । ଚନ୍ଦାମୁଣ୍ଡିଆ ପର୍ବତର ପୂର୍ବକୁ କିଛି ଦୂର ଅତିକ୍ରମ କରି ଗଲେ ଦେଖାଯାଏ, ନଦୀ ମଧ୍ୟରେ ଗୋଟିଏ ଛୋଟ ପାହାଡ଼ ଅଛି । ପାହାଡ଼ରେ ମୋଟେ ଦୁଇ ଗୁଡ଼ିଏ ଗଛ ଆଉ ସବୁ ଲଟା ବୁଦା । ବର୍ଷାଦିନେ ପାହାଡ଼ଟି ଜଳରେ ବୁଡ଼ି ରହିଥାଏ । ଏହି ପାହାଡ଼ର ଦୁଇପାଖେ ମହାନଦୀର ଦୁଇ ଧାର । ଅତି ସଂକୀର୍ଣ୍ଣ । ଖରାଦିନେ ଏପରି ସଂକୀର୍ଣ୍ଣ ହୁଏ ଯେ ମାଙ୍କଡ଼ ମଧ୍ୟ ଡିଆଁମାରି ପାର ହେବାକୁ କ୍ଷମ ହୋଇ ପାରେ । କନ୍ଧମାନେ ସୁବିଧା ପାଇଁ ଖରାଦିନେ ଦୁଇଟା ଗଛ କାଟି ପକାଇଥାନ୍ତି । ସେହି ଗଛ ଉପର ଦେଇ ପାରିହେବା ସହଜ ।

କନ୍ଧମାନେ ସରଳ ବିଶ୍ୱାସୀ, ସତ୍ୟବାଦୀ ଓ ସ୍ନେହୀ । କିନ୍ତୁ ସେମାନେ ବର୍ଷରେ କେବେ କେବେ ହଳଦୀ କଅଁଳରେ ନରବଳି ଦିଅନ୍ତି । ଜଟାଜୁଟଧାରୀ ସନ୍ନ୍ୟାସୀମାନଙ୍କୁ ଭକ୍ତି କରନ୍ତି ଓ ସେମାନଙ୍କ କଥା ମାନନ୍ତି । ନରବଳି ଦେବା ପ୍ରଥା ଏବେ ଲୋପ ହେଲାଣି; କିନ୍ତୁ ସେତେବେଳେ ଥିଲା ।

ଦିନକର ଘଟଣା ।

ବାବାଜୀ ତପସ୍ୱୀଙ୍କ ନିକଟରୁ ବିଦାୟ ନେଇ ଚାଲିଗଲେ । ସୂର୍ଯ୍ୟଦେବ ପଶ୍ଚିମ ଆକାଶରେ ଧୀରେ ଧୀରେ ପର୍ବତମାଳାର ପଛଆଡ଼େ ଲୁଚି ଯିବାକୁ ବସିଛନ୍ତି । ବାବାଜୀ ଦାଢ଼ି ଆଉଁସି ମହାନଦୀ ଉପରେ ପଡ଼ିଥିବା ଠେଲମଲ କାଠ ଖଣ୍ଡ ଉପର ଦେଇ ଅନ୍ୟ ପାଖକୁ ଗଲେ; ଜଙ୍ଗଲ ମଧ୍ୟରେ ଅଦୃଶ୍ୟ ହୋଇଗଲେ ।

ବରହ୍ମଣୀ ପର୍ବତର ନିମ୍ନ ଦେଶରେ ଖଣ୍ଡେ ପଥର ଉପରେ ବସିଛି । ଜଣାଯାଉଛି ଯେପରି ମନରେ ସହସ୍ର ଚିନ୍ତା ମନକୁ ତାର ଅସ୍ଥିର କରିପକାଉଛି । ସେ କି ଚିନ୍ତା ଯାହା ତାକୁ ନିଶ୍ଚଳ ନିଷ୍ପନ୍ଦ କରି ବସାଇଦେଇଛି ? ଅତୀତର ଚିନ୍ତା ? ଯେତେବେଳେ ସେ ଭାବେ, ପୁନର୍ବାର ହରିପୁରକୁ ଫେରି ଯିବ କି, ଏକ ଅଜଣା କମ୍ପନରେ ଶରୀର କମ୍ପିତ ହୁଏ, ହୃଦୟ ଥରିଉଠେ । ସେ ଭାଗ୍ୟ-ବଳରୁ କିମ୍ବା ଅଭାଗ୍ୟ ବଶତଃ ଘୋର ଅରଣ୍ୟ ମଧ୍ୟରେ ନିକ୍ଷିପ୍ତା । ଆତ୍ମହତ୍ୟାର ଚେଷ୍ଟା ବିଫଳ ହୋଇଛି । ଭାସିଲା ଗଛରେ ଆଶ୍ରା ନେଇ ସେ ଘୋର ଅରଣ୍ୟ ଭିତରେ କୂଳରେ ଲାଗିଥିଲା ।

ପଥ ସେ ଜାଣେନା, କିପରି ଯିବ ? ଯଦି ଯାଏ, କାହିଁକି ଯିବ ? ସଂସାରରେ ତାର କିଏ ଅଛି ? କେବଳ ଆଈମା । ଏତେ ଦୁଃଖ, ଏତେ କଷ୍ଟ ସହ୍ୟ କରି ବୁଢ଼ୀ ଯେ ଆଜିଯାଏ ବଞ୍ଚିଥିବେ, ସେ କଥା ସମ୍ଭବ ଲାଗୁ ନାହିଁ । ସେ ମଧ୍ୟ ମରିଥିବେ । ସଂସାର ସଙ୍ଗେ ଆଉ ତାର କିଛି ସମ୍ପର୍କ ନାହିଁ । ବରଂ ସେ ଯେଉଁଠି ଅଛି ଭଲରେ ଅଛି । ସେଇଠି ନିଶ୍ଚଳ ଭାବରେ ସ୍ୱାମୀଙ୍କର ଚିନ୍ତା କରି ପାରିବ । ତା ପାଇଁ ଅରଣ୍ୟ ଭଲ । ଅରଣ୍ୟରେ ପଶୁ ପକ୍ଷୀଙ୍କ ଛଡ଼ା ତାକୁ ଦେଖିବାକୁ କେହି ନାହାନ୍ତି । ବଣ ଜଙ୍ଗଲ ତପସ୍ୱୀମାନଙ୍କର ରହିବାର ସ୍ଥାନ । ଆଶାର ହୃଦୟ ଦେବତା ଯେତେବେଳେ ତପସ୍ୱୀ ହୋଇ କୌଣସି ଜଙ୍ଗଲରେ ବାସ କରି ଅଛନ୍ତି ଏବଂ ଅତି କଷ୍ଟରେ ଜୀବନାତିବାହିତ କରୁଛନ୍ତି, ସେ ସ୍ତ୍ରୀ ହୋଇ କାହିଁକି ସେପରି କଷ୍ଟ ନ ସହିବ ? କଷ୍ଟ ସହିଲେ କେଜାଣି ବା ତାର କୃତ-ପାପର ପ୍ରାୟଶ୍ଚିତ୍ତ ହେବ । ବେଳେ ବେଳେ ମନ ମଧ୍ୟରେ ଗୋଟିଏ ଗୁପ୍ତଭାବନା ମଧ୍ୟ ଜାଗି ଉଠିଥାଏ—କାଳେ ଅକସ୍ମାତ୍ ତାଙ୍କ ସଙ୍ଗେ ଦେଖା ହୋଇଯିବ ।

ଆଶାର ଭାବନାର ଅନ୍ତ ନାହିଁ । ସେ ଗହ୍ୱରବାସିନୀ । ଫଳ ମୂଳ ଖାଇ ପ୍ରାଣ ବଞ୍ଚାଇ ରଖିଛି । ପଶୁ, ପକ୍ଷୀ ବୃକ୍ଷ, ଲତା, ନଦୀ, ପର୍ବତ ତାର ସାଥୀ ।

ସେ ଅପଲକ ନୟନରେ ଆକାଶକୁ ଅନାଇଁ ଚିନ୍ତା କରୁଥିଲା । ହଠାତ୍ କଣ ଭାବି ଅଳ୍ପ ହସି ଉଠି ଆସିଲା । ପଥର ଖଣ୍ଡର ନିକଟରେ ଅନ୍ୟ ଗୋଟିଏ ପଥର ଖୋଲ ନିକଟକୁ ଯାଇ ହାତରେ ପତର ଆଡ଼େଇଦେଲା । ଖୋଲ ମଧ୍ୟରେ ହାତ

ଭିନ୍ନ ଖଣ୍ଡି ଖଣ୍ଡି କରି କେତେ ଅଳଙ୍କାର ବାହାର କଲା । ପ୍ରତ୍ୟେକକୁ ନିରୀକ୍ଷଣ କଲା । କଣ ମନେକରି ନିଜ ଉପରେ ନିଜେ ବିରକ୍ତ ହୋଇ କହିଲା ଛି— । ପରେ ଖଣ୍ଡି ଖଣ୍ଡି କରି ସେ ସବୁକୁ ମନ୍ଦାକିନୀର ଜଳକୁ ନିକ୍ଷେପ କଲା, ହାରଟିକୁ ହାତରେ ଧରିବାରୁ ତାକୁ ଚୁମ୍ବନ କରି ଉଠି ଆସିଲା । ଏହା ଯେ ସେହି ହାର ଖଣ୍ଡିକ ! ଏଥିରେ କେତେ ସ୍ମୃତି ବିଜଡ଼ିତ ଅଛି । ହୃଦୟ୍‌ରେ ଲମ୍ବାଇଦେଲା—ସୌନ୍ଦର୍ଯ୍ୟ ବଢାଇବ ବୋଲି ନୁହେଁ, ଅତୀତକୁ ସର୍ବଦା ହୃଦୟ୍‌ରେ ଧାରଣ କରିବ ବୋଲି । ରାଜପୁତ୍ରଙ୍କଠାରୁ ନବୀନ, ନବୀନଠାରୁ ରୁକ୍ମିଣୀ, ପୁଣି ରୁକ୍ମିଣୀଙ୍କଠାରୁ ଆଶା ନିକଟକୁ ସେ ହାର ଯାଇଛି । ନବୀନର ହାର ଆଜି ଆଶା ବେକରେ ।

ଆଶା ଭାବେ, ସ୍ୱାମୀ ତାର ଅତି ନିକଟରେ । କିନ୍ତୁ ଆଶା ତାଙ୍କୁ ଯେତେ ନିକଟରେ ବୋଲି ଭାବେ ସେ ଯେ ତାଠାରୁ ଅଧିକ ନିକଟରେ ଅଛନ୍ତି ସେ କଥା ଆଶା ଜାଣେନାହିଁ । ସେ ଭାବେ, ହୃଦୟ୍‌ରେ ଯେଉଁ ହାର ଲମ୍ବାଇ ଦେଇଛି, ତାହା ସ୍ୱାମୀଙ୍କର; ତେଣୁ ସ୍ୱାମୀ ହୃଦୟୋପରି ଅବସ୍ଥିତ । ଆଶା ସର୍ବଦା ତାର ସ୍ୱାମୀଙ୍କର ଚିନ୍ତା କରୁଥିଲେ ମଧ୍ୟ କେବେହେଲେ ଭାବେ ନାହିଁ ଯେ ସ୍ୱାମୀ ଦୂରରେ । ଯେତେ ଦୂରରେ ଥିଲେ ମଧ୍ୟ ତାଙ୍କର ସ୍ମୃତି ସର୍ବଦା ତାର ମନ ମଧ୍ୟରେ ଜାଗରିତ, ତେଣୁ ସେ ମନ ମଧ୍ୟରେ ଅବସ୍ଥାନ କରିଅଛନ୍ତି ।

ସମୟ ଅତୀତ ହେଲା । ଛାୟା ମାଡ଼ି ଆସିଲା । ଆଶା ଶିଳା ତ୍ୟାଗ କରି ଅନ୍ୟତ୍ର ଯିବାକୁ ବସିଲା । ପ୍ରତ୍ୟହ ସେହି ସବୁ କାର୍ଯ୍ୟ କରି ଅଭ୍ୟସ୍ତ । ତେଣୁ କାହାକୁ କହିଦେବାକୁ ହୁଏ ନାହିଁ । କେତେ କେତେ ଦିନ, ବର୍ଷା, ଶୀତ ଓ ଗ୍ରୀଷ୍ମ ସେ ସେହି ଅରଣ୍ୟରେ ଅତିବାହିତ କରିଛି । ସହସ୍ର ଶିଳା ଉପରେ ଉପବେଶନ କରିଛି । ସବୁ ସେ ଚିହ୍ନେ । ପଥ ଅଭ୍ୟସ୍ତ ।

ସେ ଗହ୍ୱର ଆଡ଼କୁ ଅଗ୍ରସର ହେଲା । କିଛି ଦୂର ଆସି ପଛକୁ ଗୁହିଁ-ଦେଲା । ଦେଖିଲା, ଜଣେ ବାବାଜି । ଏତେଦିନ ବନସ୍ତରେ ବାସକରି ଦିନେ କେବେ କୌଣସି ବାବାଜୀଙ୍କୁ ସେ ଦେଖି ନ ଥିଲା । ଆଜି ପ୍ରଥମ । ଆଗ୍ରହା-ନ୍ୱିତ ହୋଇ ତାଙ୍କର ଦର୍ଶନାର୍ଥେ ଫେରିଯିବାକୁ ମନ କରୁଛି, ହଠାତ୍ ତାର ନଜର ନିଜ ଉପରେ ପଡ଼ିଗଲା । ଭାବିଲା, ସେ ଯେ ଉତ୍ତମରୂପେ ଆବୃତ୍ତା ନୁହେଁ । ଛିନ୍ନବସ୍ତ୍ର ଭେଦ କରି ତାର ମଳିନ ଦେହର ସୌନ୍ଦର୍ଯ୍ୟ ପଦାକୁ ଫୁଟି ଉଠୁଥିଲା । ନବୀନ ଯୌବନର ନବ ହିଲ୍ଲୋଳରେ ତାର ସର୍ବାଙ୍ଗ ହିଲ୍ଲୋଳିତ । ସେ ଅର୍ଦ୍ଧା-ବୃତ୍ତା ଅବସ୍ଥାରେ ବାବାଜୀଙ୍କ ସଙ୍ଗେ ସାକ୍ଷାତ କରିବାକୁ ଲଜ୍ଜିତା ହେଲା । ଏହି ସମୟରେ ବାବାଜୀଙ୍କର ଦୃଷ୍ଟି ତା ଉପରେ ପଡ଼ିଲା । ସେ ପଥ ଛାଡ଼ି ବିରହିଣୀ

ଆଡ଼କୁ ଆସିଲେ । ଲଜ୍ଜିତା ହୋଇ ସେ ଦୁଇ ପାଦ ପଛକୁ ଫେରିଲା । ଗୋଟିଏ ନୂତନ ଭାବନା ମନ ମଧ୍ୟରେ ପ୍ରବେଶ କଲା । ସେ ନୀରବରେ ଦଣ୍ଡାୟମାନ ହେଲା ।

ବାବାଜୀ ଅରଣ୍ୟ ମଧ୍ୟରେ ବାସ କରିବା ବହୁ ଦିନ ହେଲେ ମଧ୍ୟ କେବେ ସେ ଏପରି ସ୍ତ୍ରୀ ଲୋକକୁ ଦେଖି ନ ଥିଲେ । ତେଣୁ ସନ୍ଧ୍ୟା ସମୟରେ ଅଣାକୁ ଦେଖି କୌତୂହଳୀ ହୋଇ ତାରି ଆଡ଼କୁ ଗଲେ ।

ବାବାଜୀ ନିକଟରେ ଉପସ୍ଥିତ ହୁଅନ୍ତେ ପ୍ରଣାମ କରି ବିରହିଣୀ ପ୍ରଶ୍ନ ପ୍ରତୀକ୍ଷାର ଅପେକ୍ଷା କରି ରହିଲା ।

ବାବାଜୀ ତା ନିକଟକୁ ଆସି ସ୍ନେହ ଓ ସନ୍ଦେହ ମିଶ୍ରିତ ସ୍ୱରରେ ପ୍ରଶ୍ନ କଲେ କିଏ ମା ତୁ ? ତୋତେ ମୁଁ ଏ ଅରଣ୍ୟ ପ୍ରଦେଶରେ କେବେ ଦେଖି ନ ଥିଲି ?

ଅଣା ତାଙ୍କୁ ପୁଣି ପ୍ରଣାମ କରି କହିଲା, ଅପଣ ମୋତେ କେବେ ଦେଖିଛନ୍ତି କି ନାହିଁ ମୁଁ ଜାଣେ ନାହିଁ, ମାତ୍ର ମୋର ମନେ ହେଉଛି, ଆପଣଙ୍କୁ ମୁଁ କେଉଁଠି ଦେଖିଛି ?

ହୋଇଥିବ, ଅସମ୍ଭବ ନୁହେ । କିନ୍ତୁ କହ ମା, ଏତେ ଅଳ୍ପ ବୟସରୁ ତୋ ମନରେ ବୈରାଗ୍ୟ ଆସିଲା କାହିଁକି ? ତୋତେ ଦେଖିଲେ ଜଣା ପଡ଼ୁଛି, ତୋର ବୟସ ବେଶୀ ନୁହେ । ଏପରି କଣ ଘଟଣା ତୋର ଜୀବନରେ ଘଟିଛି, ଯାହାପାଇଁ ତୁ ସୁଖର ସଂସାର ଛାଡ଼ି ଏକାକିନୀ ଅରଣ୍ୟରେ ବାସ କରୁଛୁ ?

ମହାରାଜ, କଣ ଅଜଣା ଆପଣଙ୍କୁ ଯେ ମୋତେ ପଚାରୁଛନ୍ତି ? ଜୀବନରେ ସେପରି ଗୁରୁତର ଘଟଣା ଘଟିଲା ବୋଲି ସିନା ମୁଁ ବନବାସିନୀ ହୋଇଛି ।

ବାବାଜୀ ଭ୍ରୂକୁଞ୍ଚିତ କରି କଣ ଚିନ୍ତାକରି ପଚାରିଲେ, ତୁ ଇଚ୍ଛା କରି ସଂସାର ବିରାଗୀ ନ ହୋଇ କୌଣସି କାରଣରୁ ବାଧ୍ୟହୋଇ ଅରଣ୍ୟକୁ ଆସିଛୁ ?

ସେପରି ଅନୁମାନ ଠିକ୍ ନୁହେ, ମହାରାଜ !

ତେବେ କେଉଁ ନିଷ୍ଠୁର ତୋତେ ଆଣି ଏହି ଭୟଙ୍କର ସ୍ଥାନରେ ଛାଡ଼ି ଚାଲିଯାଇଛି, ସଂସାରିକ ସମ୍ଭୋଗରୁ ଦୂରରେ ?

ସଂସାରରେ ସୁଖ ଅଛିକି କାହିଁ ? ସବୁ ସୁଖ ଏହି ଅରଣ୍ୟର ନିର୍ଜନତାରେ—

ଶିଳ୍ପଲୋକ ବୁଝି ପାରବୁ ନାହିଁ ସହଜରେ, ଭଗବାନଙ୍କର ନିର୍ଦ୍ଦେଶର ଗୂଢ଼ ରହସ୍ୟ । ବାକ୍ୟରେ ପ୍ରକାଶ କରିବା କଠିନ । ବୁଝିବା ଅଧିକ କଠିନ ।

ଛାଡ଼ନ୍ତୁ, ସେ କଥା । ମୋର ଆଗ୍ରହ ହେଉଛି, ଆପଣଙ୍କୁ ଗୋଟିଏ କଥା ପଚାରିବ—

ପଚାର, ମା ।

ଆପଣ ତାଙ୍କୁ ଦେଖିଛନ୍ତି ? କହନ୍ତୁ ଦୟା କରି । ଗୁହାଭିମୁଖେ ଚାଲି ଚାଲି ବିରହିଣୀ ପଚାରିଲା ।

ବାବାଜୀ ଅନୁଗମନ କରି ପ୍ରଶ୍ନ କଲେ, କିଏ ସେ ?

ଚିହ୍ନନ୍ତି ନାହିଁ ତାଙ୍କୁ ? ସେ ବନବାସୀ, ସେ ଆପଣଙ୍କ ପରି ତପସ୍ୱୀ । ସତ୍ ପଥର ପଥିକ । ସଂସାର ତ୍ୟାଗୀ । ସଂସାର ସୁଖବିରାଗୀ । ମୋର ହୃଦୟର ଦେବତା ସେ, ମୋର ଜୀବନର ସାଥୀ । ମୋର ଆତ୍ମାର ଆଲୋକ । ମୋର ଚକ୍ଷୁର ତାରା ସେ । ତାଙ୍କୁ ହରାଇ ମୁଁ ବନବାସିନୀ, ମୁଁ ଦୁଃଖିନୀ, ବିରହିଣୀ, ପାଗଳିନୀ, ତପସ୍ୱିନୀ । କହନ୍ତୁ, କହନ୍ତୁ ମହାରାଜ ! ସେ ପବିତ୍ର ଆତ୍ମାଙ୍କୁ ଦେଖିଛନ୍ତି କି ? ନିଶ୍ଚୟ ଦେଖିଥିବେ । ସେ ପ୍ରକୃତିର ରୂପରେ ମୁଗ୍ଧ ହୋଇ ବନବାସୀ । ତାଙ୍କର ପରିଣୀତା ସ୍ତ୍ରୀ ହୋଇ ମୁଁ ଗର୍ବ କରୁଛି । କିନ୍ତୁ କାହାନ୍ତି ସେ ?

ବାବାଜୀ କିଛିକ୍ଷଣ ଅନାଇଁ ରହିଲେ ଆଶାର ମୁଖକୁ । ଦେଖିଲେ, ମୁଖର ଜ୍ୟୋତି ପ୍ରତିକ୍ଷଣରେ ବଦଳିବାକୁ ଲାଗୁଛି । ମନ ମଧ୍ୟରେ ଦୁଃଖ ନୈରାଶ୍ୟର ଆନ୍ଦୋଳନ ଲକ୍ଷ୍ୟ କରିପାରି ସେ ଚକ୍ଷୁ ନିମୀଳିତ କରି ମୁହୂର୍ତ୍ତେ ରହିଲେ । ପରେ ତାଙ୍କ ମୁଖରେ ମୃଦୁହାସ ଫୁଟି ଉଠିଲା । ଧୀରେ ଧୀରେ ଡାକିଲେ, ବିରହିଣୀ ଆଶା—

ମୁଁ ସେ କଳଙ୍କିନୀ ଆଶାର ନାମ ଗ୍ରହଣ କରିବ ନାହିଁ । ସ୍ୱୀକାର କରିବି ନାହିଁ ଯେ, ମୁଁ ଦିନେ ଆଶା ଥିଲି । ମୁଁ ବିରହିଣୀ । ଆପଣ ମୋତେ ଚିହ୍ନନ୍ତି । ମୁଁ ସେଇ ଆଶାର ପ୍ରେତିନୀ । କହନ୍ତୁ ମୋତେ, ମୋ ଦେବତା କେଉଁଠି ?

ବ୍ୟସ୍ତ ହୁଅ ନା, ସେ ଭଲରେ ଅଛନ୍ତି । ନିକଟରେ ଅଛନ୍ତି । ସତ୍ ପଥର ପଥିକ ସେ—

ନିକଟରେ ଅଛନ୍ତି ! ଆନନ୍ଦରେ ଅର୍ଦ୍ଧ ରୁଦ୍ଧ ହେଲା ଭଲ ସାକ୍ଷାତ କରିବାର ସୁଯୋଗ ମୋତେ ଦେବେ କି ?

ବିରହିଣୀର ଦୁଇ ଚକ୍ଷୁରେ ଲୋତକ ପୂର୍ଣ୍ଣ ହେଲା ।

ବାବାଜୀ କହିଲେ, ସାକ୍ଷାତ ହେବ, ଭୟ ନାହିଁ । ଇଷ୍ଟ ସିଦ୍ଧି ହେବ; ଚିନ୍ତା ନାହିଁ, ମାତ୍ର ଭେଳରେ । ଏବେ ତୁ କହ ମା, କାହିଁକି ଏଠିକି ଆସିଛୁ ?

ସବୁ କହିବି, ନିଶ୍ଚୟ କହିବି, ମହାରାଜ ! ସବୁ ସତ୍ୟ ସତ୍ୟ କହିବି । ବର୍ତ୍ତମାନ ନୁହେ । ଉତ୍କଣ୍ଠାରେ ଅଧୀରା ମୁଁ । ଦୁଃଖର କାହାଣୀ କହିବି ପରେ । ଆସନ୍ତୁ ମୋର ଗୁହାକୁ । ଆପଣ ମୋର ଅତିଥି । ଏଇ ଦେଖନ୍ତୁ, ଗଛ ଗହଳି ଭିତରେ ମୋର ବାସ ଗହ୍ୱର଼ଟି । ବଣଜନ୍ତୁ ମୋର ସାଙ୍ଗ ସାଥୀ ।

ପ୍ରାତଃକାଳରେ ବାବାଜୀ ବିରହିଣୀ ନିକଟରୁ ବିଦାୟ ନେଇ ନିରୁଦ୍ଦେଶ୍ୟ ଭାବରେ ଅରଣ୍ୟରେ ପ୍ରବେଶ କଲେ । ଗତରାତ୍ରିରେ ଆଶାର ବର୍ଣ୍ଣିତ ଘଟଣାବଳି ତାଙ୍କର ମନକୁ ବାରମ୍ବାର ଆନ୍ଦୋଳିତ କଲା । ହରିପୁରର ରାଜନୈତିକ ଏବଂ ସାମାଜିକ ଅବସ୍ଥା ମନରେ ପଡ଼ି ତାଙ୍କର ଦୁଃଖ ହେଲା । ସେ ଭାବିଲେ, ମୁଁ କିଏ ? ମୁଁ ଜଣେ ସାଧାରଣ ବାବାଜୀ । ହରିପୁର ସଙ୍ଗେ ମୋର ସମ୍ପର୍କ କଣ ? ଦିନେ ଥିଲା, ଆଜି ତ ନାହିଁ । ମୋର ହରିପୁର ସମ୍ବନ୍ଧରେ ଚିନ୍ତା କରିବା ଆବଶ୍ୟକ ନାହିଁ । କିନ୍ତୁ ପରକ୍ଷଣରେ ଭାବିଲେ, ସବୁ ତାଙ୍କର ଦୋଷ । ହରିପୁରର ଲୋକମାନଙ୍କର ଦୁର୍ଦ୍ଦଶା ପାଇଁ ତାଙ୍କ ବ୍ୟତୀତ ଆଉ କେହି ଦାୟୀ ନୁହନ୍ତି । କାରଣ ଜାଣି ଶୁଣି ସେ ରାଜ୍ୟ ତ୍ୟାଗ କରିଛନ୍ତି । ରାଜ୍ୟର ଭାର ଉପଯୁକ୍ତ ବ୍ୟକ୍ତି ହସ୍ତରେ ନ୍ୟସ୍ତ କରି ନାହାନ୍ତି । ପ୍ରତିକାର ଆବଶ୍ୟକ । ନୋହିଲେ ରାଜ୍ୟ ଲୋକଙ୍କ ମନରେ ଯେପରି ଅଶାନ୍ତି ରାଜତ୍ୱ କରୁଛି, ସେଥିପାଇଁ ତାଙ୍କର ଜୀବନ ଏବଂ ମନ କଳଙ୍କିତ ହେବ । ଘୋର ଅରଣ୍ୟରେ ପଶୁ ପକ୍ଷୀଙ୍କ ମେଳରେ ସମୟ କଟାଇଲେ ମଧ୍ୟ ଅଜାଣତରେ ହରିପୁରର ଦୁର୍ଦ୍ଦଶା କଥା ମନରେ ପଡ଼ିଯିବ ଏବଂ ତାହାର ସ୍ମୃତି ତାଙ୍କୁ ଅସ୍ଥିର କରିବ ।

ବାବାଜୀ ଭାବିଲେ, ନିରୀହା ନିରପରାଧା ବାଳିକା ଆଶାର ବନବାସ କଷ୍ଟ କାହିଁକି ? ସୁନ୍ଦରୀ ସେ, ସେଥିପାଇଁ ସେ ଦାୟୀ ନୁହେ । ଭଗବାନ ତାକୁ ସୁନ୍ଦରୀ କରି ଜଗତକୁ ପଠାଇଛନ୍ତି । ଭଗବାନ ତାର ସହାୟ ନୋହିଲେ କାହିଁକି ? ବାଲ୍ୟ ଚପଳତା ପାଇଁ ଯାହା ସେ କରିଛି, ତାକୁ ଅସତୀ ବୋଲି କେହି କହି ପାରିବେ ନାହିଁ । ଆଶା ତାର ସ୍ୱାମୀ ନବୀନକୁ ଭେଟିବାକୁ ଅସ୍ଥିର । କିପରି ତାକୁ ନବୀନର ବାସସ୍ଥାନ ବତାଇ ଦେବ ? ତପସ୍ୱୀର ତପସ୍ୟାରେ ବାଧା ପଡ଼ିବ । ଯଦି ତପସ୍ୱୀ

ହେବାର ସଂକଳ୍ପ ଥିଲା, ସେ ବିବାହ କରି ନ ଥାନ୍ତା । ବିବାହ କରି ଗୃହତ୍ୟାଗ କରିବା ଅନୁଚିତ ହୋଇଛି । ବିମାତାର ତାଡ଼ନା ପାଇଁ ଯଦି ସେ ବନବାସୀ ହୋଇଥାଏ, ତେବେ ସେ ଆଶାକୁ ଅବଶ୍ୟ ଗ୍ରହଣ କରିବ । ଯଦି ଆଶାଙ୍କୁ ଗ୍ରହଣ ନ କରେ ଆଶାର ଜୀବନ ଅତି କଷ୍ଟପ୍ରଦ ହେବ । ଚିରଦିନ ଅରଣ୍ୟରେ ଏକାକିନୀ ରହି ସ୍ୱାମୀ ଦର୍ଶନ ମାନସରେ ସମୟାତିବାହିତ କରିବ ।

ମୁଁ ତାଙ୍କୁ ଆଶାଦେଇ ସାନ୍ତ୍ୱନା ଦେଇ ଆସିଛି, ସେ ତାର ସ୍ୱାମୀକୁ ପାଇ ପାରିବ । କିପରି ଏହା ସମ୍ଭବ ହେବ ? ଯଦି ତାର ତପସ୍ୟାର ମୂଲ୍ୟ ଥାଏ, ଏହା ସମ୍ଭବ ହୋଇ ପାରିବ ନିଶ୍ଚୟ ।

'ଜୟ ଭାଲୁଅଖାଇ ଠାକୁରାଣୀଙ୍କର ଜୟ' ଧ୍ୱନିରେ ବାବାଜୀଙ୍କର କର୍ଣ୍ଣ ଯୁଗଳ ବଧିର ହେଲା । କେଉଁ ଗିରି କନ୍ଦରରୁ ଅସଂଖ୍ୟ ଲୋକଙ୍କର କୋଳାହଳ ଭାସି ଆସୁଛି । ବନସ୍ଥଳୀ ପ୍ରକମ୍ପିତ ହେଲା । ବାବାଜୀ ଭାବିଲେ, ବୋଧ ହୁଏ ନିକଟସ୍ଥ କନ୍ଧପଲ୍ଲୀରେ ଭାଲୁଅଖାଇ ଠାକୁରାଣୀଙ୍କର ଆରାଧନା ହେଉଛି । ଆଜି କେଉଁ ହତଭାଗ୍ୟର ମୃତ୍ୟୁ ସନ୍ନିକଟ କେଜାଣି । ବର୍ଷକେ କେତେଥର ପୂଜା ହୁଏ । କେତେ ନିରୀହ ମନୁଷ୍ୟଙ୍କର ରକ୍ତରେ ଭାଲୁଅଖାଇଙ୍କର ମୁଣ୍ଡ ଧୋଇ ହୁଏ । ଆହା କେଡ଼େ କଲବଲ କରି ମାରନ୍ତି ।

ଜୟ ଭାଲୁଅଖାଇର ଜୟ ଶବ୍ଦ ଆହୁରି ନିକଟତର ହେଲା । ବାବାଜୀ ଶବ୍ଦକୁ ଲକ୍ଷ୍ୟ କରି ଚାଲିଲେ । ଭାବିଲେ, ଯେଉଁ ଠାକୁରାଣୀ ନର ରକ୍ତରେ ତୃଷା ନିବାରଣ କରନ୍ତି, ସେ ଦେବୀ ନୁହନ୍ତି, ସେ ଦାନବୀ । ଦାନବୀର ଆରାଧନା କରି ଅନାର୍ଯ୍ୟ କନ୍ଧଙ୍କର କେଉଁ ମଙ୍ଗଳ ହେଉଛି ? ବାବାଜୀ ପ୍ରତିଜ୍ଞା କଲେ, ନିଜର ଜୀବନ ଯାଉପଛେ, ସେଇ ହତଭାଗ୍ୟର ପ୍ରାଣ ରକ୍ଷା କରିବେ ।

ଜୟ ଭାଲୁଅଖାଇର ଜୟ ସ୍ୱର ସଙ୍ଗେ ତୁଙ୍ଗୁ ବାଇଦରେ ବନସ୍ଥଳୀ କମ୍ପିତ ହେଲା । ଗୋଟିକ ପରେ ଗୋଟିଏ ଏହିପରି ଅନେକ କନ୍ଧ ଧନୁଶର ଧରି ବାବାଜୀ ଥିବା ସ୍ଥାନରେ ଉପସ୍ଥିତ ହେଲେ । କି ଏକ ଉତ୍ସାହରେ ଉନ୍ମତ୍ତ । ସେମାନଙ୍କୁ ଦେଖିଲେ ମନୁଷ୍ୟ ତ ଛାର କଥା, ବନରାଜ ବ୍ୟାଘ୍ର ମଧ୍ୟ ଶଙ୍କି ରହିବ । ସେମାନଙ୍କର ଭୀଷଣ କ୍ରୀଡ଼ା ଦେଖିଲେ ଚକ୍ଷୁ ବୁଜି ହୋଇପଡ଼େ ।

ବାବାଜୀ ନିକଟକୁ ଯାଇଁ କହିଲେ, ବାପ, ତମର ସର୍ଦ୍ଦାର କାହିଁ ?

କେତେଜଣ ସର୍ଦ୍ଦାର, ସର୍ଦ୍ଦାର, ବୋଲି ହୁରି ପକାଇଲେ । ସେ ଝଙ୍କାରରେ ବନରେ ମଧ ବନ୍ୟ ଜନ୍ତୁମାନେ ଭୟରେ ନିଜ ନିଜର ବାସସ୍ଥାନକୁ ପଳାଇଲେ । ମଦୋନ୍ମତ୍ତ କନ୍ଧ ଯୁବକମାନେ ଅନାଇଲେ ବିନା ଲକ୍ଷ୍ୟରେ ଏଣେ ତେଣେ କାଣ୍ଡ ଛାଡ଼ିଲେ । ସାଇଁ ସାଇଁ ଶବ୍ଦ କରି ଗଛ ପତ୍ର ଭେଦ କରି କାହିଁ କେତେ ଦୂରକୁ ସେ ସବୁ କାଣ୍ଡ ଉଡ଼ି ପଳାଇଲା ।

କିଛି ସମୟ ପରେ ଶିଙ୍ଗା ବଜାଇ ସର୍ଦ୍ଦାର ଉପସ୍ଥିତ ହେଲେ । ବାବାଜୀଙ୍କୁ ଦେଖି କ୍ରୋଧରେ ଗର୍ଜି ଉଠି ଆଦେଶ ଦେଲେ, ଧର ତାକୁ । ଆଜି ଭିଲଆଖାଇ ଠାକୁରାଣୀଙ୍କର ବଳି ହେବ ସେ ।

ସର୍ଦ୍ଦାର ହୃଦୟରେ କର ସ୍ଥାପନ କରି ଭାବିଲେ, ହୃଦୟ, ସ୍ଥିର ହ । ଏହା ପାପ କାର୍ଯ୍ୟ ନୁହେ । ପ୍ରଭୁ ଭକ୍ତିର ଜ୍ୱଳନ୍ତ ନିଦର୍ଶନ । ପ୍ରଭୁର ଅମଙ୍ଗଳ ଯେ ସାଧନ କରିଛି, ପ୍ରତିଫଳ ସ୍ୱରୂପ କୃତଜ୍ଞ ଭୃତ୍ୟ ପକ୍ଷରେ ତାହାର ଜୀବନ ନେଲେ ଦୁଃଖ ନାହିଁ ।

ସର୍ଦ୍ଦାରର ଆଜ୍ଞା କେହି ପାଳନ କରି ପାରିଲେ ନାହିଁ । କିଏ ବା କରିବ ? କାହାର ସାହସ ଅଛି ବାବାଜୀର ପ୍ରାଣ ନାଶ କରିବ ?

ନିଜେ ସର୍ଦ୍ଦାର ବାବାଜୀଙ୍କର ହସ୍ତ ଧରି କହିଲେ, ଏତେଦିନେ ସାକ୍ଷାତ ପାଇଛି । ଯାହା ନିମନ୍ତେ ହରିପୁରର ଆଜି ଅକଥନୀୟ ଦୁଃଖ, ଯାହା ନିମନ୍ତେ ମୋର ପ୍ରଭୁର ସର୍ବନାଶ ହୋଇଛି, ଏବେ ତାର ମୁଣ୍ଡ ଭିଲଆଖାଇର ଛାମୁରେ ଶାନ୍ତ କରିବ ।

ବାବାଜୀ ମସ୍ତକ ନତ କଲେ । ସେ ସର୍ଦ୍ଦାରକୁ ଚିହ୍ନି ପାରିଛନ୍ତି । ଧୀର ସ୍ୱରରେ କହିଲେ, ହଁ ବାପ, ସତ କଥା । ଠିକ୍ ଚିହ୍ନିଛୁ, ଠିକ୍ ଜାଣିଛୁ, ଠିକ୍ ବୁଝିଛୁ । ମୁଁ ସେହି ପାଷଣ୍ଡ, ଯାହା ନିମନ୍ତେ ହରିପୁରର ଏ ଶୋଚନୀୟ ଅବସ୍ଥା; ଯାହା ନିମନ୍ତେ ତୋ ପ୍ରଭୁର ସର୍ବନାଶ । ଜନ୍ମଭୂମିର ହିତ ସାଧନ ପାଇଁ, ପ୍ରଭୁ-କୃତଜ୍ଞତାର ପ୍ରମାଣ ଦେବାକୁ ଅତି ଶୀଘ୍ର ମୋର ମୁଣ୍ଡ କାଟିଦିଅ । ମାତ୍ର ଗୋଟିଏ କଥା ମନେ ରଖିଥା । ଭିଲଆଖାଇ ଦେବୀ ନୁହେଁ, ଦାନବୀ । ତାର ଅସ୍ଥାନ ଯେପରି ମୋର ରକ୍ତରେ ଧୋଇ ନ ହେଉ ।

ସର୍ଦ୍ଦାର ବାବାଜୀଙ୍କୁ ଛାଡ଼ିଦେଇ ଅନ୍ତର୍ଦ୍ଧାନ ହେଲେ । ଖଣ୍ଡେ ଦୂରକୁ ଘୁଞ୍ଚିଯାଇ ମନ୍ତ୍ର ମୁଗ୍ଧ ପରି ତାଙ୍କର ଆଡ଼କୁ ଅନାଇଁ ରହିଲେ । ସେ ଚକ୍ଷୁରେ କଣ ଥିଲା କେଜାଣି ଭୟରେ ସର୍ଦ୍ଦାରର ଶରୀର କମ୍ପି ଉଠିଲା । ସେ ମୁଖର ଭାବ ଭଙ୍ଗୀରୁ କ୍ରୋଧ ଲୁପ୍ତ ହେଲା । ମସ୍ତକର ଜଟା ଏବଂ ଶରୀରର ଆଭରଣ ଦେଖି, ଅଲକ୍ଷ୍ୟରେ

ତାର ଦୁର୍ବଳ ମନକୁ ଭକ୍ତି ଅଧିକାର କରିନେଲା । ସାଷ୍ଟାଙ୍ଗ ପ୍ରଣିପାତ ହୋଇ କମ୍ପିତ କଣ୍ଠରେ କହିଲା, କ୍ଷମା କର ।

ନାହିଁ ବାପ, କ୍ଷମା କରିବାକୁ ଏଥିରେ କିଛି ନାହିଁ । ତୁ ତୋର କର୍ତ୍ତବ୍ୟ ପଥରେ ଅଗ୍ରସର ହଅ । କୃତଜ୍ଞ ଭୃତ୍ୟର କର୍ତ୍ତବ୍ୟ ଯଦି ତୋତେ ବାଧା କରାଉଛି, ମୋର ମସ୍ତକ ଛେଦନ କରିବାକୁ, କୁଣ୍ଠିତ ହେଉଛୁ କାହିଁକି ? କର୍ତ୍ତବ୍ୟ ପଥରୁ ବହିର୍ଗତ ହେଲେ ଭଗବାନ ଅସନ୍ତୁଷ୍ଟ ହେବେ ।

ଶତାଧିକ କଳ୍ପ ବାବାଜୀଙ୍କର ପଦ ତଳେ ମସ୍ତକ ଲଗାଇଦେଲେ ।

ନିଜର କର୍ତ୍ତବ୍ୟ ଭୁଲିଯାଉଛୁ ଯେ—

ମହାରାଜ, ଆଉ କିଛି ମୋର କର୍ତ୍ତବ୍ୟ ନାହିଁ । ଜାଣିବାକୁ ଚାହେଁ, ନବୀନ କେଉଁଠି ଅଛି ? ଯଦି ଜାଣନ୍ତି, କହନ୍ତୁ ।

ମୁଁ ଜାଣେ, କିନ୍ତୁ କହିବି ନାହିଁ । ତୁମେ ଜାଣିଲେ ତାର ଉଦ୍ଦେଶ୍ୟ ସାଧିତ ହୋଇ ପାରିବ ନାହିଁ ।

ସର୍ଦ୍ଦାର ସୁଖୀ ହୋଇ ପଚାରିଲେ, ତେବେ ମୋର ଅନୁମାନ ଯଥାର୍ଥ । ଆପଣ ନବୀନକୁ ଭୁଲାଇ ଆଣିଛନ୍ତି ନିଜର ଚେଲା କରିବାକୁ । ଜାଣନ୍ତି କି କେବଳ ଜଣକ ପାଇଁ ଦେଶର ଏହି ଦଶା ?

ତୁ ଭୁଲ୍ ବୁଝିଛୁ । ନବୀନକୁ ଗୃହ ତ୍ୟାଗ କରିବାକୁ ମୁଁ ବାରମ୍ବାର ବାରଣ କରିଛି । ସେ ମୋର କଥା ନ ଶୁଣି ଅରଣ୍ୟକୁ ଚାଲିଆସିଛି । ସେ କେବେ ଆସିଲା ମୁଁ ଜାଣେ ନାହିଁ । କିନ୍ତୁ କାଲି ତା ସଙ୍ଗେ ମୋର ଦେଖା ହୋଇଛି । ଯେଉଁଦିନ ନବୀନ ଆଶାର ପାଣିଗ୍ରହଣ କଲା, ସେହିଦିନଠାରୁ ମୁଁ ହରିପୁର ଯିବା ବନ୍ଦ କରିଦେଇଛି । ବହୁ ଚେଷ୍ଟା କରି ବହୁ ଉପଦେଶ ଦେଇଥିଲି, କିନ୍ତୁ ଯେ ସତ୍ ପଥର ପଥିକ, ଯେ ତାର ମାଆକୁ ଦେଖିବାକୁ ସର୍ବଦା ଆତୁର, ସେ କି ସଂସାରରେ ରହି ସଂସାର କରି ପାରେ ? ପ୍ରତି ସ୍ତ୍ରୀ ତାକୁ ମା ପରି ଦେଖାଯାନ୍ତି ।

ଯାହା ହେଉ, କେବଳ ନବୀନର ନିରୁଦ୍ଦେଶ ପାଇଁ ହରିପୁର ବର୍ତ୍ତମାନ ନରକରେ ପରିଣତ ହେଲାଣି ।

ମୁଁ ଜାଣେ, ଆଶା ମୋତେ ସବୁ କହିଛି ।

ଆଶା — ?

ହଁ, ଆଶା । ସେ ବିରହିଣୀ, ସେ ତପସ୍ୱିନୀ, ସେ ଦେବୀ । ସେହି ମାତୃ ମୂର୍ତ୍ତି ଆଶାର ମୁଖରୁ ହରିପୁରର ସମସ୍ତ ଘଟଣା ଶୁଣିଛି ।

ଅଣା ତେବେ ବଞ୍ଚିଛି ?

ସେ ଭଲ ଅଛି । ଏହି ଅରଣ୍ୟରେ ଅଛି, ଏକ ନିକାଞ୍ଚନ ଗୁହାରେ ।

ସେ ନବୀନ ନିକଟରେ ଅଛି ?

ନା, ସେ ତପସ୍ୱିନୀ । ନବୀନକୁ ପାଇବ ବୋଲି ତପସ୍ୟା କରୁଛି ।

ବଣିଆ ଭାବିଲା, ତେବେ ଅଣା ସେଦିନ ଆତ୍ମହତ୍ୟା କରି ନାହିଁ ? କିନ୍ତୁ ମୁଁ ଜାଣେ, ସେ ଭରା ନଦୀକୁ ଡେଇଁପଡ଼ିଥିଲା । ବୋଧ ହୁଏ ଭାସି ଆସି ଏହିଠାରେ ଲାଗିଛି ।

ସର୍ଦ୍ଦାର ବଣିଆ କହିଲା, ମହାରାଜ, ଆପଣ ଦୟାଳୁ । ଥରେ ମୋର ଅଣାକୁ ମୋତେ ଦେଖାଇ ଦିଅନ୍ତୁ, ମୁଁ କ୍ଷମା ଚାହେଁ ।

ସେ ସମୟ ବର୍ତ୍ତମାନ ହୋଇନାହିଁ । କହ, ତୁ କିପରି ଏଠିକି ଆସିଲୁ ଏବଂ ଏ କନ୍ଧ ମେଳରେ ରହି ସେମାନଙ୍କର ସର୍ଦ୍ଦାର ହେଲୁ ?

ତେବେ ଶୁଣନ୍ତୁ ।

ବଣିଆ ସବୁ କଥା ବର୍ଣ୍ଣନା କଲା । ଅଣାର ଆତ୍ମହତ୍ୟା ପରେ ପ୍ରତିଶୋଧ ନେବାକୁ ପାଗଳ ପରି ସେ ଅନେକ ସ୍ଥାନକୁ ଗଲା । ପ୍ରତିଶୋଧ କେଉଁ ଉପାୟରେ ନେବ ସେ ଚିନ୍ତା ମନରେ ଆସିବାରୁ ସୀମାନ୍ତ ଗ୍ରାମକୁ ଆସିଲା । ଅକସ୍ମାତ୍ ଗୋଟିଏ କନ୍ଧବାଳକକୁ ଶାର୍ଦ୍ଦୂଳ କବଳରୁ ରକ୍ଷା କରି ସାତକୋଶିଆର କନ୍ଧମାନଙ୍କର ସ୍ନେହର ପାତ୍ର ହେଲା । ତାର ସାହସ ଏବଂ କ୍ଷମତାରେ କନ୍ଧମାନେ ତାକୁ ସର୍ଦ୍ଦାରରୂପେ ଗ୍ରହଣ କରିଛନ୍ତି ।

ବଣିଆ ସର୍ଦ୍ଦାର ପୁଣି କହିଲା, ସହସ୍ରାଧିକ କନ୍ଧଙ୍କୁ ନେଇ ମୁଁ ଯୁଦ୍ଧକୁ ଯାଉଛି । ଆମେ ହରିପୁର ଛାରଖାର କରିବୁ । ଅବିବେକ, ନିଷ୍ଠୁର, କାମୁକ ରାଜପୁତ୍ରକୁ ଆଣି ତାର ରକ୍ତରେ ଭାଲିଆଖାଇ ଠାକୁରାଣୀଙ୍କର ପାଦ ପଖାଳିବୁ । ହରିପୁର ପ୍ରଜାଙ୍କର ଦୁଃଖ ଓ ଭୟ ଦୂର କରିବୁ । ସେମାନେ ନିଜେ ତାଙ୍କର ନୂଆ ରାଜା ବାଛିବେ । ନିଜକୁ ନିଜେ ଶାସନ କରିବେ । ଏ ଖବର ପାଇ ରାଜପୁତ୍ର ମଧ୍ୟ ଅନେକ ସିପାହୀ ଧରି ଆମକୁ ଜବତ୍ କରିବାକୁ ସାତକୋଶିଆ ପାଖରେ ପହଞ୍ଚିଗଲେଣି । ଆମେ ଡରିବୁ ନାହିଁ । ଆମେ ମରିବୁ ପଛେ ହଟିବୁ ନାହିଁ । ଆମେ ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ଲଢ଼ିବୁଁ ।

ବାବାଜୀ ଦୁଃଖିତ ହୋଇ ବଶିଆର ହାତ ଧରି କହିଲେ, ତେବେ ବୃଥାରେ ଆଜି ଏତେ ନିରୀହ ପ୍ରାଣୀଙ୍କର ରକ୍ତ ପ୍ରବାହରେ ସାତକୋଶିଆ ରଞ୍ଜିତ ହେବ । ଭଗବାନ ! କିନ୍ତୁ ଦେଖ ବଶିଆ, ଯଦି କୌଣସି ଉପାୟରେ ରାଜପୁତ୍ରକୁ ବନ୍ଦୀ କରି ପାରୁ ତେବେ ବୃଥା ରକ୍ତପାତର ପ୍ରୟୋଜନ ହେବ ନାହିଁ ତ ?

ବଶିଆ କହିଲା, ରାଜପୁତ୍ରକୁ ଜୀବନ୍ତ ଧରି ପାରିଲେ ଯୁଦ୍ଧର ପ୍ରୟୋଜନ ହେବ ନାହିଁ । ଯେତେବେଳେ ମୁଁ ଜାଣି ପାରିଛି, ନବୀନ ଏବଂ ଅଣା ଜୀବିତ ଅଛନ୍ତି, ଯୁଦ୍ଧ ନ କଲେ ମଧ୍ୟ ଚଳେ । ବାବାଜୀ, ଥରେ ସେ ଦୁହିଁଙ୍କୁ ମୋତେ ଦେଖାଇ ଦିଅନ୍ତୁ, ଆଜ୍ଞା କହନ୍ତୁ, କିପରି ସେମାନଙ୍କର ମିଳନ ହେବ ।

ତୁ କର୍ତ୍ତବ୍ୟ ପଥରୁ ବାହାରି ଯାଉଚୁ ବଶିଆ । ପ୍ରତିଜ୍ଞା କରିଥିଲୁ ପରା ପ୍ରତିଶୋଧ ନେବୁ ? ପ୍ରତିଜ୍ଞା ପାଳନ କରିବାରେ ବିମୁଖ କାହିଁକି ?

ଅଣା ଯେ ଜୀବିତ ।

ଭଗବାନଙ୍କୁ ଧନ୍ୟବାଦ; ମାତ୍ର ତୁ ପ୍ରତିଜ୍ଞା କରିଚୁ ଦେଶର କଣ୍ଟକ କାମୁକ ରାଜପୁତ୍ରକୁ ଉପଯୁକ୍ତ ଶିକ୍ଷା ଦେବୁ । ରାଜପୁତ୍ରକୁ ଗାଦିଚ୍ୟୁତ କରି ଲୋକଙ୍କ ହାତରେ ରାଜ୍ୟଭାର ଦେବୁ । ସେ ତାଙ୍କର ରାଜା ମନୋନୀତ କରିବେ । ତୋର କର୍ତ୍ତବ୍ୟରେ ବାଧା ପଡ଼ିବ । ଅସତ୍ ଚରିତ୍ର ରାଜପୁତ୍ରର ରକ୍ତରେ କନ୍ଧ ଦେବୀ ଭାଲିଆଖାଇଙ୍କର ପୀଠ ରଞ୍ଜିତ କରି ପାରିବୁ ?

ଆପଣଙ୍କର ଆଶୀର୍ବାଦରୁ ଆମର ଉଦ୍ୟମ ସଫଳ ହେବ । ରାଜପୁତ୍ରକୁ ଜୀବନରେ ନ ମାରି ଜୀବନ୍ତ ବନ୍ଦୀ କରି ଆଣି ଆପଣଙ୍କ ପାଖରେ ଉପସ୍ଥିତ କରାଇବୁ । ତା ପରେ ତାର ରକ୍ତରେ ଭାଲିଆଖାଇ ମାଆଙ୍କର ଚରଣ ପଖାଳିବୁ ।

ବାବାଜୀ ହାତ ଟେକି କଲ୍ୟାଣ କଲେ । କହିଲେ, ରାଜପୁତ୍ରକୁ ବନ୍ଦୀ କରି ନେଇଆସ । ଜୀବନ ନେବ ନାହିଁ । ଜୀବନ ଥିଲେ ସିନା ନିଜ କୁକର୍ମର ଶିକ୍ଷା ସେ ପାଇବ; ଜୀବନ ଗଲେ ସେ ମୁକ୍ତ ହୋଇ ଚାଲିଯିବ ।

ମହାରାଜ ଯଥାର୍ଥ କଥା କହିଲେ । ଚାଲରେ କନ୍ଧ ବୀରମାନେ ।

ବାଇଦ ବାଜି ଉଠିଲା । ଶିଙ୍ଗା ନାଦରେ ବନସ୍ଥଳୀ ମୁଖରିତ ହେଲା । ଭାଲିଆଖାଇର ଜୟଧ୍ୱନି ସାତକୋଶିଆର ଶୃଙ୍ଗ ଓ ଗହ୍ୱର ମାଳରେ ପ୍ରତିଧ୍ୱନିତ ହେଲା । ସର୍ଦ୍ଦାରର ପଛେ ପଛେ ସହସ୍ର କନ୍ଧ ଯୁବକ ଆୟୁଧମାନ ଧରି ଅରଣ୍ୟାନୀର ଗଛ ଗହଳରେ ଲୁଚିଗଲେ ।

ବାବାଜୀ ଏକାକୀ ପଥର ମୂର୍ତ୍ତି ପରି ଦଣ୍ଡାୟମାନ ହୋଇ ରହିଲେ ।

ମହାରାଜ, ବର୍ତ୍ତମାନ ଚିନ୍ତା କରିବାର ସମୟ ନୁହେ । ଶୁଣନ୍ତୁ, ଦୂରରୁ କଳ୍କମାନେ କୁହାଟ ଛାଡ଼ି ଆସୁଛନ୍ତି । ଆପଣ ଯୁବକ, ସିଂହର ପୁତ୍ର, ସିଂହ ଆପଣ । ସାଧାରଣ ଗୋଟାଏ ମେଳି ଭାଙ୍ଗି ପାରିବେ ନାହିଁ ? ଆପଣଙ୍କର ପୂର୍ବ ପୁରୁଷମାନେ ଯୁଦ୍ଧ କରି କେତେ କଣ କରିଥିଲେ । ଗୋଟାଏ କଳ୍କ ମେଳି ଭାଙ୍ଗିବାକୁ ଅକ୍ଷମ ହେବେ ନାହିଁ ଆପଣ ?

ନୁହେଁ ସେନାପତେ, କଦାପି ନୁହେଁ । ରାଜପୁତ୍ର ମସ୍ତକ ଟେକି ବୃଦ୍ଧ କଟୁଆଳକୁ ଅନାଇଁଲେ । ଖଣ୍ଡେ ପଥର ହାତରେ ଡଆଁଇ ଡଆଁଇ ଅନ୍ୟ ମନସ୍କ ହୋଇ କହିଲେ, ସିଂହର ସନ୍ତାନ ମୁଁ କିନ୍ତୁ ଶୃଗାଳଠାରୁ ହୀନ ହୋଇ ଯାଇଛି । ମୁଁ ଅନୁତପ୍ତ ।

ଆପଣ ଏପରି ଚିନ୍ତା କରନ୍ତୁ ନାହିଁ । ଆପଣ ଯେ ଦୁଃଖିତ ଓ ଅନୁତପ୍ତ ସେଥିପାଇଁ ରାଜ୍ୟ ଲୋକେ ଆଶାନ୍ୱିତ ।

ସମସ୍ତେ କହିବେ, ମୁଁ ହୀନବୀର୍ଯ୍ୟ ଶୃଗାଳ, କାମୁକ । ମୋ ଦୋଷରୁ ଦେଶର ଅମାପ କ୍ଷତି ହୋଇଛି ।

ଅତୀତକୁ ମନରେ ସ୍ଥାନ ଦେଇ ଲାଭ ନାହିଁ । ସବୁ ଭୁଲିଯାଇ ନୂତନ ପଥରେ ଚାଲନ୍ତୁ । ଯାହା ସବୁ ଘଟି ଯାଇଛି ସେଥିପାଇଁ ଅନୁତାପ କରି, ରାଜ୍ୟ କିପରି ରକ୍ଷା ହେବ, ପ୍ରଜା କିପରି ସୁଖରେ ରହିବେ, ସେ ବିଷୟରେ ଚିନ୍ତା କରନ୍ତୁ ।

ଅନୁତାପ ଜୀବନ ଥିବାଯାଏ ହେବ । ପ୍ରତି ମୁହୂର୍ତ୍ତିରେ ମାତାଙ୍କର ଅଶ୍ରୁସିକ୍ତ ମୁଖ ମୋ ଆଖିରେ ପଡ଼ୁଛି । ହୃଦୟକୁ ଅଥିର କରି ପକାଉଛି । ଯେଉଁଦିନ ମୋର ସମସ୍ତ ଦୋଷ ତାଙ୍କ ଆଗରେ ସ୍ୱୀକାର କଲି, ସେ ବିକଳ ହୋଇ କେତେ କଣ କହିଥିଲେ ଜାଣନ୍ତି ?

ଭୁଲି ଯାଆନ୍ତୁ ।

ଭୁଲି ପାରୁ ନାହିଁ । ଏ ଜୀବନରେ ଭୁଲି ପାରିବି ନାହିଁ । ଭୟ ବିହ୍ୱଳ ହୋଇ ମାତାଙ୍କୁ ମୁଁ କହିଲି, ହରିପୁରର ସବୁ ଦୁର୍ଦ୍ଦଶାର କାରଣ ତୋର ଅଯୋଗ୍ୟ ପୁତ୍ର । ରାମ ସଙ୍ଗେ ବନ୍ଧୁତ୍ୱ ସ୍ଥାପନ କରି ମୁଁ ନିଜର ମଙ୍ଗଳ କରି ନ ଥିଲି, ବରଂ

ଅମଙ୍ଗଳ କରୁଥିଲ । ମୋର ମୋହ ନିମନ୍ତେ ଅଗ୍ନିରେ ହରପୁର ଜଳିଯାଇଛି । କେତେ ନିର୍ଦ୍ଦୋଷ ପ୍ରାଣୀ ଜୀବନ ହରାଇଛନ୍ତି । ମା ଦୀର୍ଘ ନିଶ୍ୱାସ ପକାଇ ମୋତେ ଅଭିଶାପ ଦେଲେ, ଜୀବନଟା ଘୋର ଅନୁତାପରେ ଛଟପଟ ହେଉ ।

ମାତାର ଅଭିଶାପ କଲ୍ୟାଣକର ।

ଯୋଗ୍ୟ ପୁତ୍ର ପାଇଁ । ଅଯୋଗ୍ୟ ସନ୍ତାନ ପାଇଁ ତାହା ଅଗ୍ନିଠାରୁ ଜ୍ୱାଳାମୟ । ସେତିକି ତାଙ୍କର ଶେଷ କଥା । ସେହି ଦିନଠାରୁ ପୁତ୍ର ବୋଲି କେବେ ସେ ଆଦର କରି ନାହାନ୍ତି । ଯେତେ କ୍ଷମା ଗୁହେଁ, ସେ ଶୁଣନ୍ତି ନାହିଁ । କେବଳ ଦୀର୍ଘ ନିଶ୍ୱାସ ପକାଇ କହନ୍ତି, ହରି ହେ, କ୍ଷମା କର ! କାହାକୁ କ୍ଷମା କରିବେ, ମୁଁ ଜାଣେ ନାହିଁ । ଯେଉଁଦିନ ତାଙ୍କର ଶେଷ ସମୟ ଉପସ୍ଥିତ ହେଲା, ତାଙ୍କର ଚରଣ ଛୁଇଁବାକୁ ଅନୁରୋଧ କଲି । ଜାଣନ୍ତି ସେ କଣ କହିଥିଲେ ? କହିଲେ, ରାଜ୍ୟର ରାଜା ଯେ, ସେ ରାଜ୍ୟର ପିତା । ପିତା ହୋଇ ବିଧବା କନ୍ୟା ଓ ଦରିଦ୍ର ପ୍ରଜା ଉପରେ ଯେ ଅତ୍ୟାଚାର କରିଛି, ସେ ମହାପାପୀ । ମାତୃଜାତି ପ୍ରତି ଯେ ଅବିଚାର କରିଛି, ସେ ମାତାର ସ୍ନେହ ପାଇବାକୁ ଅଯୋଗ୍ୟ ।

କଠୋର ଆଜ୍ଞା । ରାଜପୁତ୍ର ଅନୁତପ୍ତ । ଅତୀତର କୃତକାର୍ଯ୍ୟ ପ୍ରତିକ୍ଷଣରେ ତାଙ୍କର ସ୍ମୃତି ପଥାରୂଢ଼ ହୋଇ ମନକୁ ଜଳାଇ ପକାଉଛି । ସେଥି ନିମନ୍ତେ ସେ ପ୍ରତିଜ୍ଞା କରିଛନ୍ତି, ଜୀବନରେ ବିବାହ କରିବେ ନାହିଁ । ଜୀବନ ଥିବାଯାଏ ପ୍ରାଣପଣେ ଚେଷ୍ଟା କରି ରାଜ୍ୟ ଲୋକଙ୍କର ମଙ୍ଗଳ ସାଧନ କରିବେ ।

ମାତାଙ୍କର ମୃତ୍ୟୁ ଦିବସରୁ ହରପୁରର ପରିବର୍ତ୍ତନ ଘଟିଛି । ନିଜେ ରାଜପୁତ୍ର ରାଜ୍ୟର ଭାର ଗ୍ରହଣ କରି ସମସ୍ତ ବିଷୟ ବୁଝୁଛନ୍ତି । ଏ ମଧ୍ୟରେ କେତେ କେତେ ଧର୍ମକାର୍ଯ୍ୟ କରି ଲୋକଙ୍କର ସ୍ନେହର ପାତ୍ର ହୋଇଛନ୍ତି । ରାଜକାର୍ଯ୍ୟ ଛାଡ଼ି ବାଧ୍ୟ ହୋଇ କନ୍ଧ ମେଳି ଦମନ କରିବାକୁ ସୀମାନ୍ତକୁ ଆସିଛନ୍ତି । ସଙ୍ଗରେ ସୈନ୍ୟ ସାମନ୍ତ ଅଛନ୍ତି ।

'ଭାଲିଆଖାଇର ଜୟ' ହୁହାଟ ସଙ୍ଗରେ ବୃଷ୍ଟିଧାରା ପରି ଅନବରତ କାଣ୍ଡ ବୃଷ୍ଟି ହେଲା । ରାଜପୁତ୍ରଙ୍କର ସହସ୍ରାଧିକ ସୈନିକ ସୁସଜ୍ଜିତ ନ ଥିଲେ । ଆକସ୍ମିକ ଆକ୍ରମଣରେ ସମସ୍ତେ ତ୍ରସ୍ତ ହୋଇ ନିଜ ନିଜର ଆୟୁଧ ଧରି ଅରଣ୍ୟ ଭିତରେ ଚଉଆଡ଼େ ଖେଳିଗଲେ । ବୃଦ୍ଧ ସେନାପତିଙ୍କର ଦେହରେ ଅନେକ କାଣ୍ଡ ପଶିଗଲା । ମୃତ୍ୟୁ ସୁନିଶ୍ଚିତ । କାଣ୍ଡ ଅଗରେ କନ୍ଧମାନେ ବିଷ ବୋଳିଥିଲେ । ସେ ଯନ୍ତ୍ରଣାରେ ଛଟପଟ ହେଲେ । ଯୁବରାଜ ତାଙ୍କୁ ନିକଟସ୍ଥ ଗୋଟିଏ ପଥର ଆଢୁଆଳକୁ ନେଇ ଗଲେ । ବୃଦ୍ଧ ଅହ୍ଲଲମ୍ବେ ଇହଲୀଳା ସାଙ୍ଗ କଲେ ।

ରାଜପୁତ୍ର ଦୁଃଖିତ ହୋଇ ଭାବିଲେ, ଆଉ ମୋର ଜୀବନରେ ପ୍ରୟୋଜନ ନାହିଁ । ମୁଁ ମଧ୍ୟ ସଂଗ୍ରାମ ଭୂମିକୁ ଯିବି । କେତେଜଣ ଦେହରକ୍ଷୀଙ୍କ ସହ ସେ ନିଜ ହାତରେ ତରବାରି ଧରି ଅରଣ୍ୟରେ ପଶିଲେ ।

ଛୁଞ୍ଚିମୁନା ପର୍ବତର ନିମ୍ନଦେଶରେ ତୁମୁଳ ସଂଗ୍ରାମ ଲାଗିଗଲା । ରାଜପୁତ୍ରଙ୍କର ସୈନିକ ସଂଖ୍ୟା ଅଧିକ ହେଲେ ମଧ୍ୟ କନ୍ଧମାନଙ୍କ ମଧ୍ୟରୁ ଅଧିକଙ୍କୁ ଆହତ କରି ପାରିଲେ ନାହିଁ । ସେମାନେ ପଥର ଆଡୁଆଳରୁ କିମ୍ବା ଉଚ୍ଚ ବୃକ୍ଷର ଶିଖରରୁ ଜହରଲେପା କାଣ୍ଡ ନିକ୍ଷେପ କରି ଅନେକ ସୈନିକଙ୍କୁ ମାରି ପକାଇଲେ । ରାଜାଙ୍କର ଲୋକେ କନ୍ଧଙ୍କର ସଙ୍କେତ ଜାଣି ପାରିଲେ ନାହିଁ । କେବଳ ସମୟ ସମୟରେ ସିଙ୍ଗାଧ୍ୱନି ଏବଂ ଆନନ୍ଦମଗ୍ନ ଜୟ ଶବ୍ଦ ଓ କାଣ୍ଡର ସାଇଁ ସାଇଁ ଶବ୍ଦ ବ୍ୟତୀତ ସେମାନେ କିଛି ଶୁଣି ପାରିଲେ ନାହିଁ । ଆତ୍ମରକ୍ଷା କରିବାକୁ ଗହ୍ୱରରେ ଲୁଚି ରହିଲେ । ତଥାପି ରକ୍ଷା ପାଇଲେ ନାହିଁ । ଉପରୁ ଶିଳା ବୃଷ୍ଟି ହେଲା । ସହସ୍ରାଧିକ ସିପାହୀ କେତେଜଣ କନ୍ଧଙ୍କୁ ଦମନ କରିବା ଦୂରେ ଥାଉ ତାଙ୍କର ଆକ୍ରମଣର ଜ୍ୱାଳା ସମ୍ଭାଳି ନ ପାରି ଅସ୍ଥିର ହୋଇ ପଡ଼ିଲେ । ସେନାପତି ଓ ରାଜପୁତ୍ରଙ୍କର ସମ୍ବାଦ ପାଇଲେ ନାହିଁ । ସେମାନେ କେଉଁଠାରେ ଅଛନ୍ତି ବୁଝିବା କଠିନ ହୋଇପଡ଼ିଲା ।

ଏହି ସମୟରେ ଜଣେ ଲୋକ ନିକଟସ୍ଥ ଘଞ୍ଚ ତେନ୍ତୁଳି ଗଛ ଉପରକୁ ଅନାଇଁଦେଲା । ଦେଖିଲା, ଗଛ ଉପରେ କିଏ ତିନି ଜଣ ବସି ତାଙ୍କୁ ଶର ବିନ୍ଧୁଛନ୍ତି । ଜୟଧ୍ୱନି କରି ଶତାଧିକ ଲୋକ ଗଛର ଚାରିଆଡ଼ ବେଷ୍ଟନ କଲେ । ମୋଟେ ତିନି ଜଣ, ତଥାପି ସେମାନଙ୍କର କୋପ ସହ୍ୟ କରି ପାରିଲେ ନାହିଁ । ଜଣେ ନିକଟସ୍ଥ ଅନ୍ୟ ଗୋଟିଏ ଗଛ ଉପରକୁ ମର୍କଟ ପରି ଲମ୍ଫ ପ୍ରଦାନ କରି ଅତି ଶୀଘ୍ର କେଉଁଆଡ଼େ ପଳାୟନ କଲା । ଦ୍ୱିତୀୟ ବ୍ୟକ୍ତି ତୃତୀୟକୁ କହିଲା, ସର୍ଦ୍ଦାର, ଡେଇଁପଡ଼ି ଆତ୍ମରକ୍ଷା କର । ସଙ୍ଗେ ସଙ୍ଗେ କୁହୁକ ବିଦ୍ୟା ଜାଣିଲା ପରି କୁଆଡ଼େ ସେ ଅନ୍ତର୍ଦ୍ଧାନ ହୋଇଗଲା । ତାହାର କାର୍ଯ୍ୟରେ ନିମ୍ନସ୍ଥ ଲୋକେ ଅବାକ୍ ହୋଇ ଭାବିଲେ, ସେମାନେ କୁହୁକ ଜାଣନ୍ତି ।

ରାଜାଙ୍କ ଲୋକେ କନ୍ଧ ସର୍ଦ୍ଦାରକୁ ନିକଟରେ ପାଇ ଆନନ୍ଦିତ ହେଲେ । କେତେ ଜଣ ଦୁଃଖିତ ହୋଇ କହିଲେ, ନିକଟରେ ଥିଲେ କଣ ହେବ, ସେ ଯେତେବେଳେ ସର୍ଦ୍ଦାର ହୋଇଛି ନିଶ୍ଚୟ ସମସ୍ତଙ୍କଠୁଁ ଅଧିକ ମନ୍ତ୍ର ଜାଣେ । ଦେଖୁ ଦେଖୁ ଉଭେଇଯିବ ।

ବଣିଆ କନ୍ଧମାନଙ୍କ ସଙ୍ଗେ ରହି ନିଜର ରୂପ ଏପରି ଭାବରେ କନ୍ଧଙ୍କ ପରି ଅନୁକରଣ କରି ନେଇଥିଲା ଯେ ହଠାତ୍ ଦେଖିଲେ କେହି ତାକୁ କନ୍ଧ ବ୍ୟତୀତ ଅନ୍ୟ କିଛି ବୋଲି ଭାବି ପାରିବ ନାହିଁ । ସେ ଯେପରି ଅବସ୍ଥାରେ

ଥିଲା, ନିଜର ଜୀବନ ରକ୍ଷାରେ ସନ୍ଧାନ ହୋଇ ପଡ଼ିଲା । ତେବେ ବୃଥାରେ ଅନ୍ୟ ନିରୀହ ଲୋକଙ୍କର ଜୀବନ ନେବ କାହିଁକି ? ସେ ଇଚ୍ଛା କରିଥିଲେ କହରଦିଆ କାଣ୍ଡରେ ଅନେକଙ୍କର କ୍ଷତି କରି ପାରିଥାନ୍ତା । ମାତ୍ର ସେ ତାହା କଲା ନାହିଁ ।

ସର୍ଦ୍ଦାର ବନ୍ଦୀ ହେଲେ । କେବଳ ବନ୍ଦୀ କରି ସିପାହୀଙ୍କର ମନ ସ୍ଥିର ହେଲା ନାହିଁ । ତାକୁ ସେମାନେ ନାନା ପ୍ରକାରେ କଲବଲ କରି ଅବହେଳା କଲେ । ବଣିଆ ନୀରବରେ ସବୁ ଯନ୍ତ୍ରଣା ସହି ଆସୁଥିଲା; କିନ୍ତୁ ମୃତ୍ୟୁର ଶେଷ ଯନ୍ତ୍ରଣାରେ ଚିତ୍କାର କରି କହି ଉଠିଲା, ଅଣା, ମୋର ସ୍ନେହର ଅଣା, କ୍ଷମା କର । ଥରେ ଦେଖା ହୋଇ ପାରିଲା ନାହିଁ ।

ପ୍ରଭୁଭକ୍ତ ଖିଦାଲ ଠୋକାଟି ନିଜର ଜୀବନ ଦେଲା । ପ୍ରତିଶୋଧ ନେଇ ପାରିଲା ନାହିଁ । ପ୍ରଭୁର ଅମଙ୍ଗଳ ହୋଇଥିଲା ଯେଉଁ ରାଜପୁତ୍ର ପାଇଁ, ଜୀବନ ଦେଇ ସୁଦ୍ଧା ତାକୁ ସେ ବନ୍ଦୀ କରି ପାରିଲା ନାହିଁ କି ମାରି ପାରିଲା ନାହିଁ ।

ସର୍ଦ୍ଦାରକୁ ମାରି ସୈନିକମାନେ ଆନନ୍ଦରେ ଅନ୍ୟ କନ୍ଧଙ୍କର ଅନ୍ୱେଷଣରେ ଚାଲିଗଲେ । ସର୍ଦ୍ଦାରର ରକ୍ତ ଲିପ୍ତ ପିଣ୍ଡ ବରହାଣୀର ଗହ୍ୱରର ଅନତି ଦୂରରେ ପଡ଼ି ରହିଲା । ସେତେବେଳକୁ ସୂର୍ଯ୍ୟ ଗଗନ ମଣ୍ଡଳରୁ ପ୍ରଚଣ୍ଡ କିରଣ ଢାଳିଦେଉଥିଲେ ।

ରାଜପୁତ୍ର କେବଳ କେତେଜଣ ରକ୍ଷୀଙ୍କ ସହ ନିଜର ବିକ୍ଷିପ୍ତ ସୈନିକଙ୍କୁ ଏକତ୍ର କରିବାର ଉଦ୍ୟମରେ ଅରଣ୍ୟର ବହୁସ୍ଥାନ ଖୋଜିଲେ । ନିଜ ଲୋକଙ୍କର ମୃତ ପିଣ୍ଡ ବ୍ୟତୀତ କାହାକୁ ଜୀବନ୍ତ ଦେଖି ପାରିଲେ ନାହିଁ । ଯୁଆଡ଼େ ଗଲେ ସେଆଡ଼ୁ କେତେ ଦୂରରୁ କାହାର କୁହାଟ ଶୁଣିବାକୁ ପାଇଲେ । ଅରଣ୍ୟ ଭେଦ କରି ତାଙ୍କୁ ଯିବାକୁ ବଡ଼ କଷ୍ଟ ଲାଗିଲା । ଖାଲ, ଢିପ, କଣ୍ଟାଝଣ୍ଟାର ମଧ୍ୟ ଦେଇ ଯିବା ଦ୍ୱାରା ସେ କ୍ଲାନ୍ତ ବୋଧ କଲେ । ରକ୍ଷୀମାନଙ୍କୁ କୌଣସି ବୃକ୍ଷର ନିମ୍ନଦେଶରେ ବସିବାକୁ ଆଦେଶ ଦେଲେ । ନିଜେ ମଧ୍ୟ ବସି ଶ୍ରାନ୍ତ ଦୂର କଲେ ।

ହଠାତ୍ କେତେ ଜଣ ଲୋକଙ୍କର କୁହାଟ ଶୁଣି ପଛକୁ ଚାହିଁଲେ । ଦେଖିଲେ କେତେକ କନ୍ଧ ଅତି ନିକଟରେ ଥାଇ ସେମାନଙ୍କୁ ଶର ସନ୍ଧାନ କରୁଛନ୍ତି । ସର୍ଦ୍ଦାରର ମୃତ୍ୟୁ ସମ୍ବାଦ ପାଇ ସେମାନେ କ୍ରୋଧାନ୍ଧ ହୋଇଥିଲେ ।

ରାଜାଙ୍କର ସିପାହୀମାନେ ଉଠି ସେମାନଙ୍କ ଅଡ଼କୁ ଧାବମାନ ହେଲେ । ରାଜପୁତ୍ର ମଧ୍ୟ ତରବାରୀ ଖୋଲି ଅଗ୍ରସର ହେଲେ । ଉଭୟ ପକ୍ଷରୁ ଭୀଷଣ ସମର ହେଲା । କେତେଜଣ କନ୍ଧ ଓ କେତେଜଣ ସିପାହୀ ନିହତ ହେଲେ । ରାଜାଙ୍କର ଦେହରକ୍ଷୀମାନେ ଜୀବନ ଭୟରେ ପଳାୟନ କଲେ । ରାଜା ପଳାୟନ ନ କରି ସେମାନଙ୍କର ଅନିଷ୍ଟ କରିବାକୁ ଚେଷ୍ଟା କଲେ । କନ୍ଧ ସୈନିକମାନେ ତାଙ୍କର କୌଣସି ଅନିଷ୍ଟ ନ କରି ତାଙ୍କୁ ବନ୍ଦୀ କଲେ ।

କନ୍ଧମାନେ ରାଜାଙ୍କୁ ଧରି ଜୟ ଭାଲିଆଖାଇର ଜୟ ରବ ଛାଡ଼ି ଗ୍ରାମାଭିମୁଖେ ଚାଲିଲେ । ବନ୍ଦୀ ରାଜପୁତ୍ର ବୁଝି ପାରିଲେ, କାହିଁକି ତାଙ୍କୁ କନ୍ଧମାନେ ଗ୍ରାମକୁ ନେଉଛନ୍ତି । ମୃତ୍ୟୁ ସୁନିଶ୍ଚିତ ଓ ସନ୍ନିକଟ ।

ରାଜପୁତ୍ର ସାହସ କରି ଜଣେ କନ୍ଧକୁ ପଚାରିଲେ, ଯୁଦ୍ଧ ତ ଜୟ କଲ, ମୋତେ ଆଉ କୁଆଡ଼େ ଧରି ନେଉଛ ଶୁଣେ ? ମୋତେ ମାରିଦେଉନାହଁ କାହିଁକି ?

ଜଣେ କନ୍ଧ ଉତ୍ତର ଦେଲା, ତୋତେ ଭାଲିଆଖାଇ ଠାକୁରାଣୀଙ୍କ ଆଗରେ ବଳି ଦେବୁ । ତୋର ରକ୍ତରେ ସେ ଅଜା ଗାଧୋଇବେ । ସେଇଠୁ ତୋ ହାଡ଼ ମାଂସ ଛିକି ଛିକି କରି ଆମ ହଳଦୀ କିଆରିରେ ପୋତିବୁ । ଭଲ ରଙ୍ଗ ହଳଦୀ ଫଳିବ । ତୁ ଆମ ସର୍ଦ୍ଦାରକୁ ମାରିଛୁ । ସେଥିପାଇଁ ଆମେ ତୋତେ ମାରିବୁ ।

ରାଜପୁତ୍ର କହିଲେ, ତମ ସର୍ଦ୍ଦାରକୁ ମୁଁ ମାରି ନାହିଁ ।

ତୋର ଲୋକ ମାରିଛନ୍ତି ।

ଭଲ କଥା, ମୋତେ ଯଦି ମାରିବାକୁ ଚାହଁ, ମୋର ଗୋଟିଏ କାର୍ଯ୍ୟ କରିବାକୁ ପଡ଼ିବ । ତୁମ ଭିତରୁ କିଏ ଜଣେ ହରିପୁର ଯାଇ ଲୋକଙ୍କୁ ସମ୍ବାଦ ଦେବ, ରାଜା ମରିବା ପୂର୍ବରୁ କହିଛନ୍ତି, ତାଙ୍କ ସିଂହାସନରେ ରାଜା ହୋଇ ଧୂଳିଆ ବସିବ । ମୁଣ୍ଡରୁ ରାଜମୁକୁଟ କାଢ଼ି ରାଜପୁତ୍ର ପୁଣି କହିଲେ, ମୁଁ ରାଜା । ମୋର ଏଇ ମୁକୁଟ ନେଇ ରାଜ୍ୟର କୌଣସି କର୍ମଚାରୀକୁ ଦେବ । କହିବ, ରାଜା ଏହାକୁ ରଘୁନାଥ ସାଂତରର ପୁତ୍ର ଧୂଳିଆର ମସ୍ତକରେ ପିନ୍ଧାଇବାକୁ ପଠାଇଛନ୍ତି ।

କେହି ଉତ୍ତର ଦେଲେ ନାହିଁ । ରାଜମୁକୁଟ କେହି ଗ୍ରହଣ କଲେ ନାହିଁ । ଏହି ସମୟରେ ଜଣେ ବୃଦ୍ଧ କନ୍ଧ ସହାନୁଭୂତି ଦେଖାଇ କହିଲା, ରାଜପୁତ୍ର, ତମର ଭୟର କାରଣ ନାହିଁ । ରାଜ୍ୟର ଯେ ରାଜା ତାଙ୍କୁ ଦେବୀଙ୍କ ନିକଟରେ ବଳି ଦେବାର ଅଧିକାର ଆମର ନାହିଁ । ତୁମର ଅତ୍ୟାଚାର ପାଇଁ ତୁମକୁ ଦଣ୍ଡ ଦେବେ ବୋଲି ସର୍ଦ୍ଦାର ଆମକୁ ଯୁଦ୍ଧ କରିବାକୁ କହିଥିଲେ । ସେ ଯଦି ବଞ୍ଚି ଥାଆନ୍ତେ ତେବେ ତୁମକୁ ନେଇ ତାଙ୍କୁ ଦେଇଥାନ୍ତୁ । ସେ ମରିଗଲେଣି । ତେଣୁ ତୁମକୁ

ନେଇ ବାବାଜୀଙ୍କ ନିକଟକୁ ଯାଉଛୁ । ବାବାଜୀ ଅତି ଦୟାଳୁ । ସେ ତୁମକୁ ପ୍ରାଣଦଣ୍ଡ ଆଦେଶ ଦେବେ ନାହିଁ ।

ରାଜପୁତ୍ର କହିଲେ, ଏତେ ଲୋକଙ୍କର ମରଣ ପାଇଁ ଏକା ମୁହିଁ ଦାୟୀ । ତୁମ୍ଭେମାନେ ମୋତେ ଦେବୀଙ୍କ ପାଖରେ ବଳି ଦିଅ । ସେ ମୋର ରକ୍ତ ପିଇଲେ ମୋ ଆତ୍ମାର ସଦ୍‌ଗତି ହେବ ।

ତାଙ୍କ କଥାର ଉତ୍ତର କେହି ଦେଲେ ନାହିଁ । ତାଙ୍କୁ ବୁଢ଼ା ବାବାଜୀଙ୍କ ନିକଟକୁ ନେବାକୁ ଅରଣ୍ୟ ପଥରେ ପାହାଡ଼ର କଡ଼େ କଡ଼େ ମହାନଦୀର କୂଳେ କୂଳେ ଚାଲିଲେ ।

ସୂର୍ଯ୍ୟ ପଶ୍ଚିମ ଆକାଶକୁ ନଇଁ ଆସୁଥାନ୍ତି ।

ସନ୍ଧ୍ୟା ନୁହେଁ, ତଥାପି ଦିବସର ରଶ୍ମିରାଶି ଆଉ ନାହିଁ । ସୂର୍ଯ୍ୟ ପଶ୍ଚିମ ପର୍ବତ ମାଳାର ପଶ୍ଚାଦ୍‌-ଦିଗରେ ଲୁଚି ଗଲେଣି । ସୁଲୁସୁଲିଆ ଥଣ୍ଡା ପବନରେ ବୃକ୍ଷଲତା ହିଲ୍ଲୋଳିତ । ମଧ୍ୟାହ୍ନର ଯୁଦ୍ଧ କୁହାଟ ପରିବର୍ତ୍ତେ ପଶୁ ପକ୍ଷୀଙ୍କର ରବରେ ବନ ପ୍ରଦେଶ ମୁଖରିତ । ଶବ ଆଧିକ୍ୟରୁ ଶିବାଗଣ ଆନନ୍ଦରେ ଚିତ୍କାର କରୁଛନ୍ତି ।

ବିରହିଣୀ ଗହ୍ୱର ପରିତ୍ୟାଗ କରି ବନ ପଥ ଦେଇ ବହିର୍ଗତ ହେଲା । ଆଜି ନବୀନ ଆଶାରେ ଚକ୍ଷୁ ଦୁଇଟିରୁ ଉଜ୍ଜ୍ୱଳ ଆନନ୍ଦାଲୋକ ବହିର୍ଗତ ହେଉଛି । ଚନ୍ଦ୍ରମା ସହିତ ଶିଥିଳ ମୁଖ ପ୍ରଫୁଲ୍ଲ ଦେଖାଯାଉଛି ! ସ୍ୱାମୀ ଦର୍ଶନ ଆଶାରେ ସେ ଆନନ୍ଦାଧୀରା । ମନ୍ଥର ଗତିରେ ମହାନଦୀ କୂଳକୁ ଚାଲିଛି ।

କିଛିଦୂର ଯାଇ ଦେଖିଲା, ନିକଟରେ ଗୋଟିଏ ବୁଦା ନିକଟରେ ମସ୍ତକ ହିନ ପିଣ୍ଡ । ଚମକିପଡ଼ି ପଛକୁ ଘୁଞ୍ଚି ଆସିଲା । ଡାହାଣ ଆଡ଼କୁ ଅନାଇ ଦେଖିଲା, ପିଣ୍ଡ ବିହୀନ ମସ୍ତକଟିଏ ମୁହଁମାଡ଼ି ପଡ଼ିଛି । ସାହସ ବାନ୍ଧି ନିକଟକୁ ଯାଇ ଅନେକ କ୍ଷଣ ପର୍ଯ୍ୟନ୍ତ ନିରୀକ୍ଷଣ କଲା । ମୁହଁ ମାଡ଼ି ପଡ଼ିଥିବାରୁ ଚିହ୍ନିପାରିଲା ନାହିଁ । ଧନ୍ୟ ଭଗବାନ୍, ଯଦି ଆଶା ମୃତ ବ୍ୟକ୍ତିର ମୁଖ ଦେଖି ପାରିଥାନ୍ତା, ସଙ୍ଗେ ସଙ୍ଗେ ତା'ର ବଞ୍ଚିଆ ଥାଇବାକୁ ଶକ୍ତି ପାରିଥାନ୍ତା ଏବଂ ମୁହୂର୍ତ୍ତିକ ମଧ୍ୟରେ ତାର ସମସ୍ତ ସୁଖ ଉଭେଇ ଯାଇଥାନ୍ତା । ପ୍ରଥମରେ ନିଜର ଚକ୍ଷୁକୁ ବିଶ୍ୱାସ କରିପାରି ନଥାନ୍ତା, କାରଣ ବଞ୍ଚିଆ

ଭାଇ ଏ ଘୋର ଅରଣ୍ୟ ମଧ୍ୟକୁ ବା ଆସନ୍ତା କାହିଁକି ? ତତ୍ପରେ ଅବାକ୍ ହୋଇଥାନ୍ତା, କାରଣ ଯଦି ବଣିଆ ଭାଇ ଆସିଲା ତ ତା'ର ଏ ଦଶା ହେଲା କାହିଁକି ? ଏତେ ବଡ଼ ଯୁଦ୍ଧ ହୋଇଗଲା, ବିରହିଣୀ କିଛି ମାତ୍ର ଜାଣେ ନାହିଁ । କେବଳ ଗହ୍ୱର ମଧ୍ୟରେ ଶୟନ କରି ସ୍ୱପ୍ନ ରାଜ୍ୟରେ ବିଚରଣ କରୁଛି; କେତେ ଆନନ୍ଦ ଉଦ୍ଦୀପକ ଦୃଶ୍ୟ ଦେଖିଛି । ଯଦି ଜାଣିଥାନ୍ତା କେବଳ ତାହାରି ପାଇଁ ତାର ବଣିଆ ଭାଇ ଯୁଦ୍ଧକ୍ଷେତ୍ରରେ ଜୀବନ ଦାନ କରିଛି, ସେ କେତେ ଦୁଃଖିତା ହୋଇଥାନ୍ତା ।

ସେ ଧୀରେ ଧୀରେ ଅଗ୍ରସର ହେଲା । ବେଶିଦୂର ନ ଯାଉଁଣୁ ସମ୍ମୁଖସ୍ଥ ପ୍ରସ୍ତରଖଣ୍ଡ ଉପରେ କାହାକୁ ଶୟନ କରିଥିବାର ଦେଖିଲା । ଯେଉଁ ପଥରଖଣ୍ଡ ଉପରେ ବିରହିଣୀ ପ୍ରତ୍ୟହ ବସି ବନଦେବୀଙ୍କର ମନୋମୁଗ୍ଧକର ଦୃଶ୍ୟ ଦେଖେ ଏ ସେହି ପଥରଖଣ୍ଡ । ଯହିଁରେ ନିଜର ଚିରଅଭିଳଷିତ ନାଥଙ୍କର ଭାବନାରେ ସମୟ କଟାଏ ସେହି ପଥରଖଣ୍ଡ ଉପରେ ସୁପ୍ତ ଯୁବକ ତପସ୍ୱୀ । ରକ୍ତଲେପିତ ମସ୍ତକର କେଶ ଇତସ୍ତତ ପଡ଼ିଛି । ବିରହିଣୀର ହୃଦୟ ଆନ୍ଦୋଳିତ ହେଲା । ଆଶାର ଆଶା କେତେ ଉଚ୍ଚକୁ ଉଠିଗଲା; କିନ୍ତୁ ବିବେକର ଠାଣ ବାଧା ପାଇ ପାତାଳକୁ ଖସି ପଡ଼ିଲା । ଶୀର୍ଣ୍ଣ ମୁଖ ଉଜ୍ଜ୍ୱଳ ହୋଇଥିଲା; କିନ୍ତୁ ପରି ମୁହୂର୍ତ୍ତରେ ମଳିନ ହେଲା ।

କମ୍ପିତ ପଦରେ ନିକଟକୁ ଯାଇ ଦେଖିଲା, ଘୋର ଅରଣ୍ୟର ମଧ୍ୟସ୍ଥଳରେ ଦିବାରଜନୀର ସଙ୍ଗମ ବେଳରେ ସେହି ପଥର ଖଣ୍ଡିକ ଉପରେ ସୁପ୍ତ ଜଣେ ଯୁବକ ତପସ୍ୱୀ । କିଏ ସେ, ଯାହାଙ୍କର ଦର୍ଶନ ମାତ୍ରକେ ତପସ୍ୱିନୀର ହୃଦୟ ସ୍ପନ୍ଦିତ ହେଲା? ଯାହାଙ୍କର ଆହତ ମସ୍ତକ ଦେଖି ପ୍ରାଣରେ ଆକୁଳତା ଅନୁଭବ କଲା, ସେ କିଏ ? ସ୍ତମ୍ଭିତ ହୋଇ, ନୀରବରେ ନିକଟରେ ବସି ପଡ଼ିଲା । ତାର ମସ୍ତିଷ୍କ ଘୂର୍ଣ୍ଣାୟମାନ । ଚକ୍ଷୁ ସମ୍ମୁଖରେ ବିଦ୍ୟୁତ୍ ଆଲୋକ ପରି କି ଏକ ଅପୂର୍ବ ଉଜ୍ଜ୍ୱଳ ଆଲୋକ ସତେ କି ଜଳି ଉଠିଲା । ସେହି ଆଲୋକ ମଧ୍ୟରେ ଦେଖିଲା ତାର ଜୀବନର ନାଥଙ୍କୁ ।

ସନ୍ଧ୍ୟାରାଣୀର ଆଗମନ ସଙ୍ଗେ ବିରହିଣୀ ଦଣ୍ଡାୟମାନ ହୋଇ ତପସ୍ୱୀଙ୍କର ମସ୍ତକରୁ ରକ୍ତ ପୋଛି ପକାଇଲା । ନିକଟରେ ବସି ଧୀରେ ଧୀରେ ତାଙ୍କର ଶରୀରରେ ହସ୍ତ ସଞ୍ଚାଳନ କଲା । ଅନେକକ୍ଷଣ ପରେ ତପସ୍ୱୀ ମୁଦ୍ରିତ ଲୋଚନ ମେଲାଇ ପାଗଳଙ୍କ ପରି କଣ ଗୁଡ଼ାଏ ଗପିଗଲେ । ତାର ସାର ମର୍ମ ହେଉଛି, ଭଗବାନ, ଧନ୍ୟ ତୁମ୍ଭଙ୍କୁ । ତୁମ୍ଭେ ପ୍ରକୃତ ଦୋଷୀକୁ ଦଣ୍ଡ ବିଧାନ କରିପାର । ଯେଉଁ ଚନ୍ଦାମୁଣ୍ଡିଆ ପର୍ବତର କୋଳରେ ଆଶ୍ରୟ ଗ୍ରହଣ କରି ସୁଦୀର୍ଘ ଦଶ ବର୍ଷ କଟାଇଛି ଆଜି ତାକୁ ତ୍ୟାଗ କରି ବ୍ରହ୍ମମୁନା ପର୍ବତ ଆଡ଼କୁ ଆସିଲି ନାହିଁ ପାରିହୋଇ । ଭାବିଥିଲି, ଚିରଦିନ ପାଇଁ ଚନ୍ଦାମୁଣ୍ଡିଆ ପର୍ବତକୁ ତ୍ୟାଗ କରି

ମୃକ୍ତପିକ୍ତ ଅନ୍ୟାୟ । ପଶୁପକ୍ଷୀମାନଙ୍କର ଅଭିଶାପ ଆଜି ମୁଣ୍ଡରେ ପଡ଼ୁଛି । ଯେଉଁ କଳ୍ପ ଯୁବକ ଲୋଷ୍ଟ୍ରାଘାତରେ ମୋତେ ଏପରି କରିଛି ସେ କଳ୍ପ ଯୁବକ ନୁହେ ମୂର୍ତ୍ତିମାନ୍ ଅଭିଶାପ । ଯେଉଁ ପଶୁପକ୍ଷୀମାନେ ମୋତେ ଏତେ ଭଲପାନ୍ତି ତାଙ୍କର ସ୍ନେହ ପରିବର୍ତ୍ତେ ମୋର କି କଠୋର ବ୍ୟବହାର ! କଣ କରିବି, ବାଧ୍ୟ ହୋଇ ଆଜି ଚନ୍ଦାମୁଣ୍ଡିଆ ପର୍ବତକୁ ଆସିଛି । ଅନିଚ୍ଛା ସତ୍ତ୍ୱେ ଯେପରି ଚୁମ୍ବକ ଲୌହକୁ ଆକର୍ଷଣ କରେ ମୁଁ ଆକର୍ଷିତ ହୋଇ ଏଠାକୁ ଆସିଛି । ଅହା, ପକ୍ଷୀଗୁଡ଼ିକ କାହାକୁ ଆଜି ତାଙ୍କର ସଙ୍ଗୀତ ଶୁଣାଉଥିବେ ? ମୁଁ ତ ନାହିଁ କିଏ ଶୁଣୁଥିବ ? ଆଉ ନୁହେ, ଆଉ କେବେ ଚନ୍ଦାମୁଣ୍ଡିଆ ପର୍ବତ ତ୍ୟାଗ କରିବାର ଅଭିଳାଷ କରିବି ନାହିଁ । ଯିବି, ବର୍ତ୍ତମାନ ଯିବି ।

ଚେଷ୍ଟା ବିଫଳ ହେଲା । କଟିଦେଶରେ ଲୋଷ୍ଟ୍ର ଲାଗି କଟି ଭାଙ୍ଗି ଯାଇଥିଲା । ଉଠି ବସିବାକୁ ଚେଷ୍ଟା କରିଥିବି, କିନ୍ତୁ ପାରିଲି ନାହିଁ । ପଡ଼ିରହିଲି । ପୁନର୍ବାର ଧୀର ଭଗ୍ନ କଣ୍ଠରେ, ଆକୁଳ ଭାବରେ ସେହିପରି ପ୍ରଳାପ ଆରମ୍ଭ କଲି, ନା ଆଉ ନୁହେ, ସବୁ ଶେଷ । ଏ ଜୀବନରେ ଏ କି ଯନ୍ତ୍ରଣା ! ଭଗବାନ, ତୁମେ ଅତି ଦୟାଳୁ । ନିଅ, ଶୀଘ୍ର ନିଜ ନିକଟକୁ; ଶ୍ରୀଚରଣ ଦର୍ଶନ କରେ, ମା ମୋର ସେଇଠି ଅଛି ?

ବୃଥା ଗୁଡ଼ାଏ ଗପ ନାହିଁ । ସାହସ ଅବଲମ୍ବନ କରି ଆଶା ବାଧାଦେଲା; ମାତ୍ର ଆଉ ଅଧିକ କହି ପାରିଲା ନାହିଁ । ଭାବିଲା, ସେ କିଏ ? ତାର କେଉଁ ଅଧିକାର ଅଛି ପୁରୁଷର କଥାରେ ବାଧା ଦେବ ? କେଉଁ ଅଧିକାର ଅଛି ତପସ୍ୱୀର ତପସ୍ୟା ପଣ୍ଡ କରିବ ? ସ୍ତ୍ରୀ ହୋଇ ସେ ତପସ୍ୱୀର ଅଙ୍ଗ ସ୍ପର୍ଶକଲା । ଅନ୍ୟାୟ କରିଛି । ତେଣୁ ପୁନର୍ବାର ତାର ସାହସ ମିଳାଇଗଲା । ସେ ନୀରବ ରହିଲା । ତପସ୍ୱୀଙ୍କର କାତର ଉକ୍ତିରେ ନିଜେ ଦୁଃଖିତ ହୋଇ ସ୍ୱୀୟ ଛିନ୍ନ ଅଞ୍ଚଳରେ ଚକ୍ଷୁର ଲୋତକବାରି ପୋଛି ପକାଇଲା ।

ତପସ୍ୱୀ ଆଶାର କଥାରେ ଚମକି ଉଠିଲେ । ଭାବିଲେ, କିଏ ମୋର କଥାରେ ବାଧା ଦେଲା ? ମୁଣ୍ଡ ବୁଲାଇ ସନ୍ଧ୍ୟା ଅନ୍ଧକାର ମଧ୍ୟଦେଇ ଦେଖିଲେ, କିଏ ଜଣେ ତାଙ୍କ ପାର୍ଶ୍ୱରେ ଆସୀନା । ଭାବିଲେ, କିଏ ସେ ? ମୁହୂର୍ତ୍ତକ ମଧ୍ୟରେ ମନ ମଧ୍ୟରେ ଉଦିତ ହେଲା ଗୋଟିଏ ଭାବ । ବୁଝି ପାରିଲେ ସେ କିଏ । କ୍ଷୀଣ କଣ୍ଠରେ କହିଲେ, ଭଗବାନ୍, ଦୟାମୟ, ଆଜି ମାଙ୍କୁ ନିକଟକୁ ପଠାଇ ଦେଇଛ । ନିଃସହାୟ ଅବସ୍ଥାରେ ପଡ଼ିଥିବାର ଦେଖି, ଯନ୍ତ୍ରଣାରେ ଛଟପଟ ହୋଇଥିବାର ଜାଣି, ମା ନିଜେ ଆସି ମୋ ନିକଟରେ ଉପବେଶନ କରିଛି, ଦେହ ଆଉଁସୁଛି–ମା, ମା—

ନୀରବ ବିରହିଣୀ । କଣ କହି ଉତ୍ତର ଦେବ ? କହିବ, ସେ ତାଙ୍କର ପରିଣୀତା ସ୍ତ୍ରୀ ଆଶା ? କାଳେ ସେ ବିରକ୍ତ ହୋଇ ଉଠି ପଳାଇବେ ? ଯିଏ ଜାଣି ଜାଣି ମୋତେ ପରିତ୍ୟାଗ କରି ଚାଲି ଆସିଛନ୍ତି, ଗ୍ରହଣ କରିବେ କାହିଁକି ? ପରିଚୟ ଦେବ ନାହିଁ । ବର୍ତ୍ତମାନ ତାଙ୍କର ଶାରୀରିକ ଓ ମାନସିକ ଅବସ୍ଥା ଦୁର୍ବଳ । କିଛି ଅନିଷ୍ଟ ହୋଇପାରେ ।

ତୁନି ରହିଲୁ କାହିଁକି ? ଯଦି ଦୟାକରି ସେ ଦେଶରୁ ମୋର ପରିଚର୍ଯ୍ୟା କରିବାକୁ ଚାଲି ଆସିଛୁ, ନୀରବ ରହିଲୁ କାହିଁକି ? ତୋର ତୁଣ୍ଡରୁ ପଦେ କଥା ଶୁଣିଲେ, ତୋ ସନ୍ତାନର ପ୍ରାଣ ପୁଲକରେ ଉନ୍ମତ୍ତ ହେବ । ତୋର କର ସ୍ପର୍ଶ ମାତ୍ରେ ଆଜି ଏ ମୁମୂର୍ଷୁର ପ୍ରାଣରେ ବିଦ୍ୟୁତ୍ ଖେଳି ଉଠୁଛି । ତୋର ଦରିଦ୍ର ସନ୍ତାନର ନୀରସ ପ୍ରାଣରେ ଆଜି ଆନନ୍ଦ ସ୍ରୋତ ଜାଗି ଉଠୁଛି । ମା, ଥରେ ତୋର ସନ୍ତାନକୁ ଆଲିଙ୍ଗନ କର । କରିବୁ ନାହିଁ ?

ବିରହିଣୀ ଆଶା ଚିନ୍ତାକଲା, କହିବ କି ମୁଁ ତୁମର ମା ନୁହେଁ, ସ୍ତ୍ରୀ । କିପରି କହିବ ? ସେ ଚମକି ଉଠିବେ । ତାଙ୍କ ମନର ସମସ୍ତ ସୁଖଶାନ୍ତି କ୍ଷଣକରେ ଉଭେଇ ଯିବ । ରାତି ହେଲା । କେତେ ବେଳଯାଏ, ହିଂସ୍ରଜନ୍ତୁ ପୂର୍ଣ୍ଣ ଏହି ସ୍ଥାନଟିରେ ପଡ଼ିଥିବେ । ସେ ମୋ ପ୍ରାଣର ଦେବତା, ମୋର ଚିରଅଭିଳଷିତ ହୃଦୟର ନିଧି । ତାଙ୍କୁ ଏପରି ସ୍ଥାନରେ ଶୋଇବାକୁ ଦେବ କିପରି ? ଆହା, ପ୍ରାଣର ଆନନ୍ଦ କ୍ଷଣକ ପାଇଁ ଦେଖାଦେଇ ଏବେ ଅସ୍ତମିତ । ଆକୁଳତାରେ ହୃଦୟ ପରିପୂର୍ଣ୍ଣ । ଏତେ କଷ୍ଟର ଏତେ ତପସ୍ୟାର ଫଳ ସ୍ୱରୂପ ଯାହାଙ୍କୁ ପାଇଛି, ଯାହାଙ୍କ ନିମନ୍ତେ ଏତେକଥା, ସେ ଆଜି ନିକଟରେ । ତଥାପି ତାଙ୍କୁ ମୋର ବୋଲି କହିପାରୁ ନାହିଁ ।

ଏହିପରି ଚିନ୍ତାକରି ତପସ୍ୱୀଙ୍କର କପୋଳରେ ଗୋଟିଏ ଚୁମ୍ବନ ପ୍ରଦାନ କଲା ।

**ସେହି** ଗୋଟିଏ ଚୁମ୍ବନରେ ଉଭୟେ ଶିହରି ଉଠିଲେ ।

ତପସ୍ୱୀ କହିଲେ, ମୁଁ ଯେତେ ବଡ଼ ହୁଏଁ ପଛେ ତୋ ଚକ୍ଷୁରେ ପିଲା । ମା, ତୋର ଗୋଟିଏ ଚୁମ୍ବନରେ ଅମୃତ ପୂର୍ଣ୍ଣ ରହିଛି । ଆଉ ଥରେ ମା, ଆଉ ଥରେ । ଆଜି ଅତି ଦୁର୍ବଳ ହୋଇ ପଡ଼ିଛି, ନୋହିଲେ ତୋର ପଦତଳେ

ମସ୍ତକ ଲୋଟାଇ, ତୋର କୋଳରେ ଚକ୍ଷୁ ଲୁଚ୍ଛାଇ ଚିରଦିନ ପାଇଁ ଆନନ୍ଦରେ ଶୋଇ ପଡ଼ନ୍ତି ।

ଅଣା ଦୁଃଖିତ ହେଲା, ଲଜ୍ଜିତା ହେଲା । କିପରି ସେ ଅପ୍ରିୟ ସତ୍ୟଟି କହିଦେବ ? ସେ ପ୍ରତିଜ୍ଞା କଲା, ସ୍ୱାମୀ ବୋଲି କହି ତାଙ୍କ ମନରେ କଷ୍ଟ ଦେବ ନାହିଁ, ତାଙ୍କ ମନର ଆନନ୍ଦ ଓ ଶାନ୍ତି ନଷ୍ଟ କରିବ ନାହିଁ । ମାତ୍ର ପରକ୍ଷଣରେ ହଠାତ୍ କହିପକାଇଲା, ସ୍ୱାମୀ— ।

ତପସ୍ୱୀ ଚମକି ଉଠିଲେ । ଭାବିଲେ, ସ୍ୱାମୀ କହୁଛି କିଏ ? ସେ ତେବେ ମୋର ମା ନୁହେଁ ? ନା, ସେ ମୋର ମା । ପ୍ରକାଶ୍ୟରେ ପ୍ରଳାପ କଲେ, ହଁ ମା, ବୁଝିଲି । ଯେ ସଂସାରର ପ୍ରଭୁ ସେ ସମସ୍ତଙ୍କର ସ୍ୱାମୀ । ଆଉ ଏ କୁତ୍ସିତ କପଟପୂର୍ଣ୍ଣ ସଂସାରରେ ରହିବାକୁ ମୋର ଇଚ୍ଛା ହେଉନାହିଁ । ତୋର ସଙ୍ଗେ ମୁଁ ଚାଲିଯିବି । କହି ମା, ସେ ଦେଶରେ କଣ କେହି କେବେ କଷ୍ଟ ପାଏ ନାହିଁ ?

ଅଣା ଆଉ ସମ୍ଭାଳି ପାରିଲା ନାହିଁ । ପ୍ରତିଜ୍ଞା ଭୁଲି ଆତୁର କଣ୍ଠରେ କହିଲା, ମୁଁ ତୁମର ମା ନୁହେ । ମୁଁ ଜଣେ ଦରିଦ୍ରା ନିଃସହାୟ ରମଣୀ ।

ରମଣୀ ତ ମାତା । ପ୍ରଭେଦ କାହିଁ ?

ମୁଁ ସଂସାର ତ୍ୟାଗକରି ଆସି ଆଜି ବନବାସିନୀ । ମୁଁ କାହାରି ମା ନୁହେଁ ।

ତୁ ଯିଏ ହି, ତୁ ମୋ ମା— ।

ହେ ଭଗବାନ୍, ନିକଟରେ ପାଇ ମଧ୍ୟ ପାଇପାରୁ ନାହିଁ ।

କାହାକୁ ?

କହିବି ନାହିଁ । ଜୀବନଟା ଏହିପରି କଟିଯାଉ । ମୁଁ ଯାହାଙ୍କର, ତାଙ୍କୁ ପାଇଛି ।

କାହାର ?

ସେ ତପସ୍ୱୀ । ସେ ବନବାସୀ । ସେ ଅବାଲ୍ୟରୁ ମାତୃହୀନ । ବେଶୀ ଦୂରରେ ନୁହେ, ନିକଟରେ ଗୋଟିଏ ଦେଶରେ ତାଙ୍କ ଘର । ସେ ଜଣେ ଜମିଦାରର ପୁତ୍ର । ବାଲ୍ୟକାଳରୁ ମୋତେ ବିବାହ କରିଥିଲେ । ମୁଁ ଛୋଟ ଥିଲି । ମାତ୍ର ସେ ଛୋଟ ନ ଥିଲେ । ମୋର ବିଚାର କରିବାର ଶକ୍ତି ନ ଥିଲା, ମାତ୍ର ତାଙ୍କର ଥିଲା । ଯଦି ସଂସାର ତ୍ୟାଗ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା ସେ ବିବାହ କଲେ

କାହିଁକି ? ପୁଣି, ସଂସାର ତ୍ୟାଗ କଲେ କାହିଁକି ? କାହା ବେକରେ ମୋତେ ବାନ୍ଧି ଆସିଲେ ? ସେ ନିଷ୍ଠୁର, ସେ ନିର୍ଦ୍ଦୟ ।

ସତେ, ସେ ନିର୍ଦ୍ଦୟ—

ବନଚାରିଣୀ ହସିଲା । ପୁନର୍ବାର କହିଲା, ସେ ମାତାଙ୍କର ଦର୍ଶନ ପାଇଁ ସର୍ବଦା ଆକୁଳ । ଏତିକି ଜଣ ସେ ଜାଣନ୍ତି ନାହିଁ ଯେ ଯେଉଁ ଲୋକର ପ୍ରାଣ ମାତୃଜାତି ପ୍ରତି ଏତେ କଠୋର, ତାଙ୍କୁ ମା ଦେଖାଦେବେ ନାହିଁ ?

ତପସ୍ୱୀ ମୁହଁ ବୁଲାଇ ରମଣୀଙ୍କୁ ଆଉଥରେ ଅନାଇଲେ । ସେତେବେଳକୁ ଅନ୍ଧକାର ସମଗ୍ର ଜଗତ୍ ଆଚ୍ଛାଦିତ କରିଥିଲା । ସେ ଦେଖିଲେ, ଜଣେ ରମଣୀ ଉପବେଶନ କରିଛି । କିଏ ସେ ରମଣୀ ?

ଦୀର୍ଘଶ୍ୱାସ ତ୍ୟାଗକରି ତପସ୍ୱୀ କହିଲେ, ଆଉ କିଛି ମୁଁ ଶୁଣିବାକୁ ଚାହେଁ ନାହିଁ । ତୁ ମାନବୀ ନୋହୁ, ବନଚାରିଣୀ ଦେବୀ । ମୁଁ ମାତୃଜାତି ପ୍ରତି କଠୋର ବ୍ୟବହାର କରିଛି । ମୁଁ ସେଥିନିମନ୍ତେ ଅନୁତପ୍ତ । କିନ୍ତୁ ମା, ସଂସାରକୁ ଫେରିଯିବା ମୋ ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ । ମା, ତୁ ଯେ ହୁଅ, ତୁ ନିଶ୍ଚୟ ପୂର୍ବଜନ୍ମରେ ମୋର ମା ଥିଲୁ । ଏହି ଅନ୍ତିମ କାଳରେ ତୋ ନିକଟରେ ଗୋଟିଏ ପ୍ରାର୍ଥନା କରିବି । ରକ୍ଷା କରିବୁ ?

ତପସ୍ୱିନୀ ଚକ୍ଷୁର ଲୋତକକୁ ହାତରେ ପୋଛି ଧୀରେ ଧୀରେ ନବୀନର ମୁଣ୍ଡ ଟେକି କୋଳରେ ରଖିଲା । ନବୀନର ପ୍ରଶ୍ନର ଉତ୍ତର ଦେଇ କହିଲା, କି କି ପ୍ରାର୍ଥନା ?

ମୋତେ କ୍ଷମାକର । ମାତୃ ଜାତିପ୍ରତି ଯେଉଁ ଅନ୍ୟାୟ କରିଛି, ସେଥିପାଇଁ ମୁଁ ତୋ ନିକଟରୁ କ୍ଷମା ଚାହେଁ । ଯାହାପ୍ରତି ଅନ୍ୟାୟ କରିଛି ତାକୁ ମୁଁ ଏ ଜୀବନରେ ଦେଖି ପାରିବି ନାହିଁ । ଆହା, ନିରାହା ପିତୃହୀନା ବାଳିକାର କି ଦୁଃଖ ହେଉଥିବ ? ମା, ସେ ବର୍ତ୍ତମାନ ବହୁ ଦୂରରେ । ତାରି ହୋଇ ମୋତେ ଏ ଅନ୍ତିମ ଶଯ୍ୟାରେ ତୁ କ୍ଷମାକର ।

ଆହା, ଭଗବାନ୍ ।

**ପ**ବନ ମାଡ଼ି ଆସିଲା । ଅନ୍ଧକାର । ବନ ପ୍ରଦେଶ । ନକ୍ଷତ୍ରମଣ୍ଡଳକୁ ଆସୁଥିବା କ୍ଷୀଣାଲୋକ ବାଦଲ ଉହାଡ଼ରେ ଲୁଚିଗଲା । ଚତୁର୍ଦ୍ଦିଗରୁ ମେଘ ପଟଳ

ଘୋଟି ଆସିଲା । ଖଣ୍ଡେ କଳାମେଘ କୃଷ୍ଣମୁନା ପର୍ବତ ଶିଖରରେ ବାଧାପାଇ ବୁନ୍ଦା ବୁନ୍ଦା ହୋଇ ବୃଷ୍ଟି ହୋଇଗଲା । ବଣିଆର ମୃତପିଣ୍ଡ ଭକ୍ଷଣକାରୀ ଶୃଗାଳଦଳ ପଳାୟନ କଲେ । ଘଡ଼ଘଡ଼ି ଘୋର ରଡ଼ିରେ ବିଦ୍ୟୁତ୍‌ଲତାର ରହିରହିକା ଆଲୋକରେ ଚତୁର୍ଦ୍ଦିଗ କ୍ଷଣକାଳ ଆଲୋକିତ ହେଲା ବାରମ୍ବାର । ସେହି ଆଲୋକରେ ତପସ୍ୱିନୀ ଦେଖିଲା, ଦୂରରେ ଗୋଟାଏ ପ୍ରକାଣ୍ଡକାୟ ମହାବଳର ଚକ୍ଷୁ ଦୁଇଟି ଜଳିଉଠୁଛି ।

ତପସ୍ୱିନୀ କହିଲା, ଉଠ, ନିକଟରେ ମୋର ଅଶ୍ରମ । ବର୍ଷା ହେବ । ଚାଲ ସେହିଠାରେ ଆଜି ଆଶ୍ରୟ ଗ୍ରହଣ କରିବ ।

ମୁଁ ଉଠି ପାରୁନାହିଁ । ମୋର ଅଣ୍ଟାରେ ଆଘାତ ଲାଗିଛି ।

ତପସ୍ୱିନୀ ନବୀନର ମସ୍ତକ ନିଜ କୋଳରୁ ଖସାଇଦେଇ କଟିଦେଶକୁ ଧୀରେ ଧୀରେ ମର୍ଦ୍ଦନ କଲା ।

ତପସ୍ୱିନୀର ଅବଶ୍ରାନ୍ତ ସେବାରେ ନବୀନ ମନେକଲା ଯେପରି ତାର ପୀଡ଼ା ଅନେକ ପରିମାଣରେ ଉପଶମ ହୋଇଛି । ଆଶାର ଅନୁରୋଧରେ ସମ୍ମତ ହୋଇ ସେ ତାର ହାତଧରି ଉଠି ବସିଲା । ବର୍ଷା ଆରମ୍ଭ ହେଲାଣି । ବର୍ଷାରୁ ରକ୍ଷା ପାଇବାକୁ ଗୁହା ନିକଟକୁ ଯିବାକୁ ଉଭୟେ ଉଠିଲେ ।

ବହୁ ଯତ୍ନ, ବହୁ ଚେଷ୍ଟାକରି ତପସ୍ୱିନୀ ତପସ୍ୱୀର ହାତ ଧରି ଧୀରେ ଧୀରେ ଗୁହା ମଧ୍ୟକୁ ନେଇଗଲା । ଉଭୟେ ବର୍ଷାରେ ତିନ୍ତି ଯାଇଥିଲେ । ନିଜର ଲୁଗା ପଣତ ଚପୁଡ଼ି ଘୋର ଅନ୍ଧକାରରେ ତପସ୍ୱୀଙ୍କୁ ପୋଛିଦେଲା । ତାଙ୍କୁ ବସାଇ ଦୁଇ ଖଣ୍ଡି କାଠି ଘଷି ଶୁଖିଲା ପତ୍ରରେ ଅଗ୍ନି ସଂଯୋଗ କଲା । ତହିଁରେ ଶୁଖିଲା କାଠ ପକାଇ ଅଗ୍ନି ଜଳାଇଲା । ଲୁଗା କାନିରୁ ଅଳ୍ପ ଚିରି ପୋଡ଼ି, ପୋଡ଼ାକନା ତପସ୍ୱୀଙ୍କର ମସ୍ତକର କ୍ଷତ ସ୍ଥାନରେ ଲଗାଇ ଦେଲା । ପରିଷ୍କାର ସମତଳ ସ୍ଥାନରେ ଲୁଗାପାରି ତାଙ୍କୁ ଶୁଆଇ ଦେଲା । ପ୍ରାତଃକାଳରୁ ସଞ୍ଚିତ ବନ୍ୟଫଳ ଆଣି ତାଙ୍କୁ ଖାଇବାକୁ ଦେଲା । ତପସ୍ୱୀ ଶୋଇଲେ । ଯୁବତୀ ତାଙ୍କୁ ଅଗ୍ନି ଉତ୍ତାପରେ ସେକ ଦେଲା । ଯୁବତୀର କୋଳରେ ମସ୍ତକ ରଖି ସେ ଶାନ୍ତିରେ ନିଦ୍ରା ଦେବୀଙ୍କର ଶରଣାପନ୍ନ ହେଲେ ।

ଯୁବତୀର ଚକ୍ଷୁରେ ନିଦ୍ରା ନାହିଁ । ଚିନ୍ତାରେ ତାର ମନ ପୂର୍ଣ୍ଣ । ଏତେ କହି ସେ ବୁଝିଲେ ନାହିଁ ଯେ, ସେ ତାଙ୍କର ସହଧର୍ମିଣୀ । ଆଉ କପରି ସେ ତପସ୍ୱୀଙ୍କୁ ଜଣାଇ ଦେବ ? କପରି ସେ ଭଗବାନ ଏବଂ ତପସ୍ୱୀଙ୍କର ମଧ୍ୟବର୍ତ୍ତିନୀ ହୋଇ ତାଙ୍କର ତପସ୍ୟାରେ ବାଧା ଦେବ ?

ମନ ନାହିଁ ନାହିଁ କରି ଉଠିଲା ।

ବର୍ଷା ବନ୍ଦ ହେଲା ମାତ୍ର ଆଶାର ଚକ୍ଷୁରୁ ଲୋତକ ଧାର ବନ୍ଦ ହେଲା ନାହିଁ । ରାତି ଶେଷ ହେବାକୁ ବସିଲା । ତା'ର ମନରେ ଏତିକି ମାତ୍ର ଆନନ୍ଦ ଯେ, ସେ ଅନିଦ୍ରାରେ ପତି ସେବାରେ ରାତିଟି କଟାଇଛି । ତପସ୍ୱୀଙ୍କର କ୍ଷତ ମସ୍ତକଟି କୋଳରେ ରଖି ବାରମ୍ବାର ନିରୀକ୍ଷଣ କରିଛି ।

ତପସ୍ୱୀଙ୍କର ନିଦ୍ରା ଭଙ୍ଗ ହେଲା । ସେ ଚକ୍ଷୁ ଖୋଲିବା ସଙ୍ଗେ ସଙ୍ଗେ କହି ଉଠିଲେ, କ୍ଷମା କର, ମୋତେ କ୍ଷମା କର ମା !

ତପସ୍ୱୀ ଉଠି ବସିଲେ । ଭାବିଲେ, ତାଙ୍କର କିଛି ହୋଇ ନାହିଁ । ଆଶାକୁ କହିଲେ, ମା, ବାରଣ କରୁଛୁ ? ନା ମା, ବାରଣ କର ନା । ମୋତେ କ୍ଷମା କର ।

ଆଶା କିଛି ବୁଝି ପାରିଲା ନାହିଁ ।

ତପସ୍ୱୀ ସ୍ୱପ୍ନ ଦେଖିଲେ, ଯେପରି ମା ଆସି ନିକଟରେ ଅଛନ୍ତି, କିନ୍ତୁ ତାଙ୍କୁ କୋଳକୁ ଟାଣି ନେଉ ନାହାନ୍ତି । ନିକଟେ ଯିବାକୁ ବିରକ୍ତ ହୋଇ କହୁଛନ୍ତି, ଯେ ସ୍ତ୍ରୀ ପ୍ରତି ଏତେ ଅନ୍ୟାୟ କରିଛି, ମା ତାକୁ ଆଦର କରିବେ ନାହିଁ । କୋଳରେ ସ୍ଥାନ ଦେବେ ନାହିଁ ।

ତପସ୍ୱୀ ଆଶାକୁ ଅନାଇ ରହିଲେ । ଅନେକ ଦିନ ତଳର କଥା । ଚିହ୍ନି ପାରିଲେ ନାହିଁ । ବିସ୍ମିତ ହୋଇ କହିଲେ, ମୁଁ କଣ ଆଉ ଆଶାକୁ ଦେଖି ପାରିବି ନାହିଁ ? ତାକୁ ମୁଁ ତ୍ୟାଗକରି ଆସିଛି । ସେଥିପାଇଁ ମା ବିରକ୍ତ । କିଏ ମୋତେ କ୍ଷମା କରିବ ?

ଆଶା ସୁବିଧା ପାଇ ପଚାରିଲା, ଯଦି ତାକୁ ନିକଟରେ ପାଅ, ଗ୍ରହଣ କରିବ ?

ଗ୍ରହଣ ନ କଲେ, ସେ କ୍ଷମା କରିପାରିବ ନାହିଁ ?

ନିଶ୍ଚୟ କ୍ଷମା କରିବ । କେବଳ ସେତିକି ନୁହେଁ, ଯେତେବେଳେ ତୁମର ଜୀବନ ସଙ୍ଗେ ତାର ଜୀବନ ଛନ୍ଦା ହୋଇଛି, ସେ ଆନନ୍ଦରେ ଓ ଅକ୍ଲେଶରେ ତୁମର ମଙ୍ଗଳ ପାଇଁ ତାର କର୍ତ୍ତବ୍ୟ କରିବ ।

କହ ତ, ସେ କେଉଁଠି ଅଛି ?

ଯେଉଁଠି ଥାଉ, ତାକୁ ଗ୍ରହଣ କରିବ ତ ?

ତପସ୍ୱୀର ତପସ୍ୟାର ପ୍ରତିବନ୍ଧକ ସେ ହେବ ?

ମାତୃଜାତିକ ଏତେ ହୀନ, ଦୁର୍ବଳ ଓ ସ୍ୱାର୍ଥପର ମଣନାହିଁ । ସେ କଣ କେବଳ କାର୍ଯ୍ୟରେ ବାଧା ଦେଇପାରେ ତପସ୍ୟା କରିବାରେ ସାହାଯ୍ୟ କରିପାରେ ନାହିଁ ।

ମୁଁ ଭ୍ରାନ୍ତ । ସ୍ତ୍ରୀ ଜାତିକୁ ଚିହ୍ନିବି କିପରି ? ମୋତେ କ୍ଷମା କର । ଯଦି ଜାଣ ମୋତେ ସମ୍ବାଦ ଦିଅ, ଅଣା କେଉଁଠି ଅଛି । ତୁମେ ମୋର ମାତା ତୁଲ୍ୟ, ମୋର ଭଗ୍ନୀ ସଦୃଶା । ମୁଁ ତାକୁ ଗ୍ରହଣ କରିବ ଯଦି ସେ ମୋର ସହଧର୍ମିଣୀ ହୁଏ ।

ଅଣା ଉତ୍ତର ଦେଲା ନାହିଁ । ତପସ୍ୱୀଙ୍କର ପାଦତଳେ ମୁଣ୍ଡ ଲଗାଇଲା ।

ତପସ୍ୱୀ ତାର ହାତ ଧରି ଉଠାଇଲେ । ଚାହିଁଲେ ତାର ମୁଖକୁ । କୋଟରଗତ ଆଖି ଦିଓଟିରୁ ଲୋତକ ଝରି ପଡୁଛି । ଅତୀତର ସ୍ମୃତି ଭେଦି ଗୋଟିଏ ଛୋଟ ବାଳିକାର ଚିକ୍କଣମୁହଁ ଆଖି ଆଗରେ ଦିଶିଗଲା । ସେ ମୁଖରେ ଥିଲା ହାସ୍ୟ । ସେହି ମୁହଁଟି ଏବେ ଆଖି ଆଗରେ ଦିଶୁଛି ଦୁର୍ବଳ । ବୟସ ତାକୁ ବଡ଼ କରିଛି । ଆଜି ତା ଆଖିରେ ଲୋତକର ଧାର ।

ତପସ୍ୱୀ ଚିହ୍ନିଲେ । ବିହ୍ୱଳ ହୋଇ ଚାହିଁ ରହିଲେ ।

ସକାଳର ଶୁଭ୍ରାଲୋକରେ ଦୁହିଙ୍କର ମୁଖ ବିକଶି ଉଠିଲା ।

ରାଜପୁତ୍ରଙ୍କୁ ବନ୍ଦୀକରି କିଛି ଯୁବକମାନେ ବାବାଜୀ ରହିଥିବା ସ୍ଥାନରେ ଉପସ୍ଥିତ ହେଲେ । ବାବାଜୀଙ୍କୁ ପାଇଲେ ନାହିଁ । ତାଙ୍କର ଅନ୍ୱେଷଣ କରି ସୂର୍ଯ୍ୟାସ୍ତ ହେଲା । ନ ପାଇବାରୁ ବନ୍ଦୀସହ ନିଜର ଗ୍ରାମକୁ ଫେରିଗଲେ । ପ୍ରାତଃକାଳରେ ବାବାଜୀଙ୍କର ଦେଖା ପାଇବେ ଭାବି ବନ୍ଦୀକୁ ଗୋଟିଏ ସ୍ଥାନରେ ରାତିଟି ଅଟକାଇ ରଖିଲେ ।

ଏଣେ ବାବାଜୀ ଯୁଦ୍ଧର ଫଳାଫଳ ଜାଣି ମଧ୍ୟ ଅପେକ୍ଷା କରି ରହିଲେ ନାହିଁ । ଅରଣ୍ୟର କେତେ ସ୍ଥାନ ଭ୍ରମଣ କରି ଗୋଟିଏ ଗହ୍ୱରରେ ରାତି ଯାପନ

କଲେ । ସେହି ଗୋଟିଏ ରାତି ତାଙ୍କୁ ଗୋଟିଏ ଯୁଗପରି ଲାଗିଲା । ମନ ମଧ୍ୟରେ ଦୁଇଟି ଭାବନାର ଉନ୍ମୂଳ ଆନ୍ଦୋଳନ । ଗୋଟିଏ ଆଡ଼େ ପୁତ୍ରସ୍ନେହ, ଅନ୍ୟଆଡ଼େ ନଗରପୁରର ଦୁର୍ଦ୍ଦଶା । ପୁତ୍ରସ୍ନେହ ପରାଜିତ ହେଲା । ପୁତ୍ର ବନ୍ଦୀ ହୋଇଛି ଏବଂ ବାଗିଆ ଯୁଦ୍ଧରେ ପ୍ରାଣ ହରାଇଛି, ଏ ସମ୍ବାଦ ସେ ଆଗରୁ ପାଇଥିଲେ । ବୃଥାରେ ଏତେ ଲୋକଙ୍କର ପ୍ରାଣ ନାଶ ନିମନ୍ତେ ସେ ଦୁଃଖିତ ହେଲେ । ସବୁଦୋଷ ନିଜ ମୁଣ୍ଡକୁ ଟାଣି ନେଲେ । ବହୁ ଚିନ୍ତାକରି ସ୍ଥିର କଲେ, ରାଜପୁତ୍ରଙ୍କୁ ରାଜପଦରୁ ବଞ୍ଚିତ କରିବେ । ତେବେ ରାଜ୍ୟଭାର କାହା ଉପରେ ନ୍ୟସ୍ତ କରିବେ ?

ପ୍ରାତଃକାଳରୁ ଗହ୍ୱର ତ୍ୟାଗକରି ବାରହଣୀର ଗହ୍ୱର ନିକଟରେ ଉପସ୍ଥିତ ହେଲେ । ବର୍ଷା ସମ୍ପୂର୍ଣ୍ଣରୂପେ ଛାଡ଼ି ଯାଇଥିଲା । କିନ୍ତୁ ଅନ୍ଧକାର ଏକାଥରେ ଚାଲି ଯାଇ ନ ଥିଲା । ଗୁହା ମଧ୍ୟରୁ ଆଲୋକ ଆସୁଥିଲା । ଗୁହା ଭିତର ଆଲୋକିତ । ନିକଟକୁ ଯାଇ ସେ ଯେଉଁ ଦୃଶ୍ୟ ଦେଖିଲେ, ତାଙ୍କର ହୃଦୟ ଆନନ୍ଦରେ ଅଧୀର ହେଲା । ଜଣେ ବନବାସିନୀ ଯୁବତୀ ଏବଂ ଅନ୍ୟ ଜଣେ ଯୁବକ, ବନବାସୀ ତପସ୍ୱୀ ! ଭାବିଲେ, ଶେଷକୁ ସଂସାରର ଜୟ ହେଲା । ଏତେ ଦିନଯାଏ ଯେ ଅରଣ୍ୟରେ ବାସକରି ଆସିଛି, ଭଗବାନ ଏବଂ ମା'ଙ୍କୁ ପାଇବ ବୋଲି ଆକୁଳ ହୋଇଛି, ସେ ପୁଣି ସଂସାରରେ ଆବଦ୍ଧ ହେବ ?

ବାବାଜୀ ଶୁଣି ପାରିଲେ, ଯୁବକ ତପସ୍ୱୀ ତପସ୍ୱିନୀକୁ କହୁଛି, ତୁମେ ମୋର ପ୍ରାଣର ଆଶା, ତୁମକୁ ପତ୍ନୀରୂପେ ପାଇ ମୁଁ ସୁଖୀ ହେଲି ।

ପତ୍ନୀ ବୋଲି କହନ୍ତୁ ନାହିଁ, କହନ୍ତୁ ମାତା, ଭଗିନୀ । ଆପଣ ତପସ୍ୱୀ ଓ ମୁଁ ତପସ୍ୱିନୀ । ବୈରାଗ୍ୟ ଆମର ଧର୍ମ । ସଂଯମ ଆମର ବ୍ରତ । ତପସ୍ୟା ଆମର ପଥ । ଉଦ୍ଦେଶ୍ୟ ଆମର ଭଗବାନ । ସେଇ ମୋର ପିତା । ସେହି ତୁମର ମାତା । ତାଙ୍କର ପଦତଳେ ହେବ ଆମର ମିଳନ । ତୁମେ ତପସ୍ୱୀ, ତୁମେ ମୋର ପିତା ସଦୃଶ; ମୋର ନମସ୍ୟ ।

ଉଭୟେ ନୀରବ । ନୀରବତା ଭଙ୍ଗକରି ତପସ୍ୱୀ କହି ଉଠିଲେ; ତୁମେ ତପସ୍ୱିନୀ, ତୁମେ ମାତା, ଆଲୋକ ପ୍ରଦାୟିନୀ । ତୁମର କଥାହିଁ ଯଥାର୍ଥ । ତୁମେ ମୋର ନମସ୍ୟା ଦେବୀ ।

**ବା**ବାଜୀ ସବୁ ଶୁଣିଲେ । ତପସ୍ୱୀ ଓ ତପସ୍ୱିନୀଙ୍କ ସଙ୍ଗେ ସାକ୍ଷାତ କରିବାକୁ ଇଚ୍ଛା କଲେ, ପାରିଲେ ନାହିଁ । ଭାବିଲେ, ସେମାନେ ସଂସାରର

ମାନବ ନୁହନ୍ତି, ଦେବଦେବୀ । ଅହା, ଯଦି ଏହି ଦେବଦେବୀ ଦୁଇ ଜଣଙ୍କୁ ହରିପୁରର ସିଂହାସନରେ ବସାଇ ପାରନ୍ତି ! ସେମାନେ ମଙ୍ଗିବେ ନାହିଁ । ସ୍ୱର୍ଗ ର ଜୀବନରକଲୁ ଫେରିଯିବାକୁ ମନ କରିବେ ନାହିଁ ।

ବାବାଜୀ ସେମାନଙ୍କ ସଙ୍ଗେ ସାକ୍ଷାତ କଲେ ନାହିଁ । ମନେ ମନେ ଗୋଟିଏ କଥା ସ୍ଥିର କରି କନ୍ଧପଲ୍ଲୀ ଅଡ଼େ ଚାଲିଲେ । ପଥରେ ଜନୈକ କନ୍ଧ ଯୁବକ ସଙ୍ଗେ ସାକ୍ଷାତ ହେଲା । ତାହାଠାରୁ ଅବଗତ ହେଲେ ଯେ କନ୍ଧମାନେ ତାଙ୍କର ଅନ୍ୱେଷଣ କରୁଛନ୍ତି । ବାବାଜୀ କିଛି ସମୟ ଚିନ୍ତାକରି କନ୍ଧ ଯୁବକକୁ କହିଲେ, ଯାଅ, ସେମାନଙ୍କୁ କହିବ, ଅତିଶୀଘ୍ର ବନ୍ଦୀ ରାଜପୁତ୍ରକୁ ମହାନଦୀ କୂଳକୁ ଆଣିବେ । ସେଠାରେ ଅତି ନିକଟରେ ଗୋଟିଏ ଗୁହାରେ ଜଣେ ତପସ୍ୱୀ ଓ ଆଉ ଜଣେ ତପସ୍ୱିନୀ ବାସ କରୁଛନ୍ତି । ଜଣକର ନାମ ନବୀନ ଓ ଅନ୍ୟର ନାମ ଆଶା । ସେହିମାନଙ୍କ ନିକଟକୁ ବନ୍ଦୀକୁ ନେବେ । ରାଜମୁକୁଟ ସହ ରାଜ୍ୟଭାର ତପସ୍ୱୀଙ୍କୁ ଦେବେ । ଯଦି ସେ ଅମଙ୍ଗ ହୁଅନ୍ତି,- କହିବ ବୁଢ଼ା ରଜା ଆଦେଶ କରିଛନ୍ତି ।

ତୁ ରଜା ? କନ୍ଧ-ଯୁବକ ଆଶ୍ଚର୍ଯ୍ୟ ହୋଇ ପଚାରିଲା, ତୁ ବନ୍ଦୀ ରାଜପୁତ୍ରର ବାପ ?

ହଁ, ମୁଁ ସେହି ହତଭାଗ୍ୟର ପିତା । ପୁଣି କହିବ, ବୁଢ଼ା ବାବାଜୀ, ଯେ ଥିଲେ ସେମାନଙ୍କର ରଜା, ସେ ମଣିଭଦ୍ରା ପର୍ବତକୁ ଚାଲିଗଲେ । ଆଉ ଦେଖା ହେବ ନାହିଁ ।

ନବୀନ ଓ ଆଶା କିଏ ?

ତପସ୍ୱୀ ଓ ତପସ୍ୱିନୀଙ୍କ ନାମ ।

ଆପଣ ଯେ ବୁଢ଼ା ରଜା ସେ କଥା ବିଶ୍ୱାସ କରିବେ ?

ନିଶ୍ଚୟ ବିଶ୍ୱାସ କରିବେ । କହିବ ଆଶାର ବେକରେ ଯେଉଁ ସୁନାର ହାରଟି ଲମ୍ବିଛି ତାହାକୁ ମୁଁ ରଜା ଥିଲାବେଳେ କୁଳାଙ୍ଗାର ପୁତ୍ରର ଜନ୍ମୋତ୍ସବ ଦିନ ନବୀନର ବେକରେ ପିନ୍ଧାଇ ଦେଇଥିଲି ।

କନ୍ଧ ଯୁବକ ଗ୍ରାମାଭିମୁଖରେ ଧାଇଁଗଲା । ବାବାଜୀ ମଧ୍ୟ ମଣିଭଦ୍ରା ପର୍ବତ ଅଡ଼େ ଚାଲିଲେ ।

ସୂର୍ଯ୍ୟୋଦୟ ପରେ ତପସ୍ୱୀ ଓ ତପସ୍ୱିନୀ ମହାନଦୀ କୂଳରେ ଭ୍ରମଣ କରୁଥିଲେ । ଉଭୟେ ଆନନ୍ଦ ମଗ୍ନ । ତପସ୍ୱୀଙ୍କର ମସ୍ତକ ଭଲ ହୋଇ ନ ଥିଲା, ମାତ୍ର ପୂର୍ବ ରାତ୍ରିଠାରୁ ବେଦନା ହ୍ରାସ ହୋଇଥିଲା । କଣ୍ଠଦେଶର ଦରଜ ଛାଡ଼ି ନ ଥିଲା । ଚାଲିବାକୁ କଷ୍ଟ ହେବାରୁ ପୂର୍ବ କଥିତ ପଥର ଉପରେ ଉଭୟେ ଉପବେଶନ କଲେ । ତପସ୍ୱୀ ଭଗବାନଙ୍କର ନାମ କୀର୍ତ୍ତନ କରି ତପସ୍ୱିନୀଙ୍କୁ ତାଙ୍କର ମହିମା ବୁଝାଇ ଦେଉଥିଲେ । ତପସ୍ୱିନୀ ତନ୍ମୟ ହେଉଥିଲେ ।

ତପସ୍ୱିନୀଙ୍କୁ ସହସା ସେ ପଚାରିଲେ, ତୁମେ ଏ ଘୋର ଅରଣ୍ୟ ମଧ୍ୟକୁ କିପରି ଆସିଲ ?

ଆଶା ତାର ଜୀବନୀ ବର୍ଣ୍ଣନା କଲା । ତପସ୍ୱୀ କୁତୂହଳୀ ହୋଇ ସବୁ ଶୁଣିଗଲେ । ଠିକ୍ ଏତିକି ବେଳେ କେତେ ଜଣ ସୈନିକ ବୁଦା ନିକଟରୁ ବାହାରି ସେମାନଙ୍କୁ ଅଭିବାଦନ କଲେ । ସେମାନଙ୍କ ସଙ୍ଗରେ ଅଛନ୍ତି ବନ୍ଦୀ ରାଜପୁତ୍ର ଏବଂ ରାଜମୁକୁଟହସ୍ତ କନ୍ଧ ଯୁବକ ।

ମାତ୍ର ଏ ଉଭୟଙ୍କର ମୁଖରେ ଆଲୋକ ମଳିନ ଦେଖାଗଲା । ଉଭୟେ ଭୟରେ ଥରିବାକୁ ଲାଗିଲେ । ତପସ୍ୱୀ ଏହାର ଅର୍ଥ ବୁଝିପାରିଲେ ନାହିଁ । କିଛିକ୍ଷଣ କରି ବୁଝି ପାରିଲେ, ଏ ସେହି କନ୍ଧ ଯୁବକ ଯେ ତାଙ୍କୁ ଆହତ କରିଥିଲା । ଭୟରେ ତାକୁ ଥରିବାର ଦେଖି ତପସ୍ୱୀ ଆଶ୍ୱାସନା ଦେଇ କହିଲେ, ଭୟ ନାହିଁ । ବୁଝିପାରୁଛି ତୁମର ଭୟର କାରଣ । ତୁମର ସେଥିରେ କିଛି ଦୋଷ ନାହିଁ । ସବୁ ମୋର ଦୋଷ । ଯାଅ, ଭଗବାନ ତୁମକୁ କ୍ଷମା କରିବେ ।

କନ୍ଧ ଯୁବକ ଅଧିକ ସମୟ ଅପେକ୍ଷା କରି ରହିପାରିଲା ନାହିଁ । ରାଜମୁକୁଟକୁ ଅନ୍ୟ ଜଣେ କନ୍ଧର ହାତକୁ ବଢ଼ାଇ ଦେଲା । ପ୍ରଣାମ କରି ଦ୍ରୁତଗତିରେ ଧାଇଁ ଅରଣ୍ୟ ମଧ୍ୟରେ ପ୍ରବେଶ କଲା । କ୍ଷଣକାଳ ନିମନ୍ତେ ସମସ୍ତେ ତାହାର ଆଡ଼କୁ ଅନାଇଁ ରହିଲେ ।

ଦେଖିବା ସଙ୍ଗେ ସଙ୍ଗେ ତପସ୍ୱୀ ରାଜପୁତ୍ରଙ୍କୁ ଚିହ୍ନି ପାରିଲେ । କନ୍ଧ ଯୁବକମାନଙ୍କ ସଙ୍ଗେ ରାଜପୁତ୍ରଙ୍କୁ ଦେଖି ତାଙ୍କର ଭୟ ହେଲା । ଭାବିଲେ, ବୋଧହୁଏ ରାଜପୁତ୍ର ଆଶାର ସମ୍ବାଦ ପାଇ ତାକୁ ଧରିନେବାକୁ ଆସିଛନ୍ତି । ଯଦି ପ୍ରକୃତରେ ତାଙ୍କର ଉଦ୍ଦେଶ୍ୟ ତାହା ହୋଇଥାଏ । ଏପରି ସମ୍ମୁଖରେ ଠିଆହୋଇ ଥରିବାକୁ ଲାଗିଲେ କାହିଁକି ? ମୁଖ ଏପରି ମଳିନ ଦେଖାଗଲା କାହିଁକି ?

ତପସ୍ୱୀ ନିକଟରେ ଉପବିଷ୍ଟ ଆଶାକୁ ଅନାଇଁଲେ । ତାର ଶୀର୍ଣ୍ଣ ମୁଖର ସୌନ୍ଦର୍ଯ୍ୟ ଲୁପ୍ତ । ଶରୀର ଘର୍ମାକ୍ତ । ଆପାଦ ମସ୍ତକ କମ୍ପିତ ।

ଆଶା ଭାବିଲା, ରାଜପୁତ୍ର ତାର ଅନ୍ୱେଷଣ କରି ତାକୁ ଧରି ନେବାକୁ ଆସିଛନ୍ତି । ତପସ୍ୱୀଙ୍କର କି କ୍ଷମତା ଅଛି ଦୁରାଚାରୀ କାମୁକ ରାଜପୁତ୍ର ହସ୍ତରୁ ତାକୁ ରକ୍ଷା କରି ପାରିବେ ? ତଥାପି, ମନରେ ଦମ୍ଭ ଆଣି ସେ ତପସ୍ୱୀଙ୍କର ହାତକୁ ସଜୋରରେ ଧରି ରହିଲା ।

ତପସ୍ୱୀ ଜିଜ୍ଞାସା କଲେ, ତୋର ଦେହ କଣ ଅସୁସ୍ଥ ହୋଇଛି ? ଏପରି ମୁଖର ପରିବର୍ତ୍ତନ ହେବାର କାରଣ ?

ଭଗ୍ନ କଣ୍ଠରେ ଆଶା କହିଲା, ମୋର କିଛି ହୋଇନାହିଁ । ମୋତେ ଏହି ପାପିଷ୍ଠ ହସ୍ତରୁ ରକ୍ଷାକର ।

କିଏ ସେ ?

ଅଶା ହାତ ବଢ଼ାଇ ରାଜପୁତ୍ରଙ୍କୁ ଦେଖାଇ କହିଲା, ଏହି ସେ ରାଜପୁତ୍ର ଏହି ହରିପୁରର ରାଜା, ତାହାରି ହାତରୁ । ମୁଣି ଉତ୍ତେଜିତ ହୋଇ କହିଲା, ହରିପୁରର କଳଙ୍କ, ମିଥ୍ୟାବାଦୀ, ଚରିତ୍ରହୀନ, ନିର୍ଦ୍ଦୟ । ହରିପୁର ଅବଳାଙ୍କର ସତୀତ୍ୱ ହରଣ ପାଇଁ ନିଜର ବନ୍ଧୁ ରାମଚନ୍ଦ୍ର ସଙ୍ଗେ ମିଶି ବହୁ ହୀନ କାର୍ଯ୍ୟ କରିବାକୁ ସେ ଟିକେ ମାତ୍ର କୁଣ୍ଠିତ ହୋଇ ନ ଥିଲେ । ଏହି ମୂର୍ତ୍ତ ଧର୍ମାବତାର ପ୍ରଶାନ୍ତ ହୃଦୟ ସିଂହଙ୍କର ପୁତ୍ର । ମୋତେ ଏକାକିନୀ ଓ ନିଃସହାୟା ଦେଖି ବଳାତ୍କାରରେ ଟେକି କରି ନେଲେ । ନରକ ପରି ଅନ୍ଧକାରମୟ ସ୍ଥାନରେ ବନ୍ଦିନୀ କରି ରଖିଥିଲେ । ମୋର ମହତ୍ତ୍ୱ ନେବାକୁ ଚେଷ୍ଟା କରିଥିଲେ । ମୋତେ ରାଣୀ କରିବେ ବୋଲି ଲୋଭ ଦେଖାଇ ମୋ ପତିଙ୍କର ମୃତ୍ୟୁ ସମ୍ବାଦ ଦଆଇ କେତେ ପ୍ରଲୋଭନ ଦେଖାଇ ଥିଲେ । ମୋତେ ଭଗବାନ ସହାୟ ହେଲେ । ଅବଳାର ବଳ ସ୍ୱୟଂ ନାରାୟଣ ।

କିଛି ସମୟ ତୁନିରହି ତପସ୍ୱିନୀ ପୁଣି କହିଲା, ବଣିଆ ଭାଇକୁ ହୋତାଙ୍କ ଗୃହଶାଳାରେ ବନ୍ଦୀ କରି ରାମ ଅଗ୍ନି ଲଗାଇଲା । କୌଶଳରେ ବଣିଆ ଭାଇ ଆତ୍ମରକ୍ଷା କରି ଏକ ସୁଡ଼ଙ୍ଗବାଟେ ଉଲଗ୍ନ ହୋଇ ସେହି ଅଙ୍କାଣୀ ଘର କୁଡ଼ବୋଟିରେ ସହସା ଉପସ୍ଥିତ ହେଲା । ରାମ ମୋ ଉପରେ ଅତ୍ୟାଚାର କରିବାକୁ ଉଦ୍ୟମ କରିଥିଲା ।

ଏଇ ସେ ରାଜପୁତ୍ର, ଯେ ସେଠାରେ ଉପସ୍ଥିତ ହୋଇ ରାମ ଭାଇକୁ ମାରିବାକୁ ଚେଷ୍ଟା କରିଥିଲେ; କିନ୍ତୁ ରାମ ତାଙ୍କୁ କାବୁ କରିଦେଲା । ବଣିଆ ଭାଇ ଯଦି ଠିକ୍ ସମୟରେ ସେଠାରେ ଉପସ୍ଥିତ ହୋଇ ନ ଥାନ୍ତା ତେବେ ରାମର ଛୁରିକା ଘାତରେ ଏଇ ନରାଧମର ସେଇଠି ମୃତ୍ୟୁ ହୋଇଥାନ୍ତା । ହରିପୁରର କଳଙ୍କ ଲୋପ ହୋଇଥାନ୍ତା । ଆମେ ବଣିଆ ଭାଇକୁ ତାର ପ୍ରେତାତ୍ମା ଭୂତ ବୋଲି ଭାବିଥିଲୁ । ଏହି ରାଜପୁତ୍ର ବଣିଆ ଭାଇର ଆଦେଶରେ ରାମର ହୃଦୟରେ ଛୁରିକାଘାତ କରି ତାର ମୃତ୍ୟୁ ଘଟାଇଲେ । ବଣିଆ ଭାଇ ମୋ ହାତକୁ ଛୁରିକା ବଢ଼ାଇ ଏହାଙ୍କର ଜୀବନ ନେବାକୁ ଆଦେଶ ଦେଲା । ପ୍ରେତାତ୍ମା ବୋଲି ମଣି ମୁଁ ଯଦି ମୂର୍ଚ୍ଛିତା ହୋଇ ନ ଥାନ୍ତି, ଏଇ ରାଜକୁଳ କଳଙ୍କର ମୃତ୍ୟୁ ସେହି ସ୍ଥାନରେ ସମ୍ଭବ ଥାନ୍ତା; କିନ୍ତୁ ସେ ପଳାୟନ କଲା ।

ତପସ୍ୱୀ ଓ କନ୍ଧମାନେ ନୀରବରେ ତପସ୍ୱିନୀର କଥା ଶୁଣୁଥିଲେ ।

ଲୋତକାର୍ଦ୍ର ନେତ୍ରରେ ଅଣା ପୁଣି କହିଲା, କେଜାଣି ବାରବର୍ଷ ପରେ ମଧ୍ୟ ଏହି ନରାଧମ ଦଳବଳ ଘେନି ପୁଣି ଅରଣ୍ୟ ମଝିକୁ ଆସିଛି । ଅଣାର କଙ୍କାଳକୁ, ଅଣାର ଚଳନ୍ତ ପ୍ରେତକୁ, ଜଣେ ଅରଣ୍ୟବାସିନୀ ପଶୁକୁ କରାୟତ୍ତ କରି ଧରିନେବ ପରା !

ରାଜପୁତ୍ର ସଜଳ ନେତ୍ରରେ କହିଲେ, ସେଦିନ ତୋର ହାତରେ ମୋର ମରଣ ହୋଇଥିଲେ ମୋର ସବୁ ପାପ ଦୂର ହୋଇଥାନ୍ତା । ମୋର ହାତରେ ମୋର ଦୁଷ୍ଟଗ୍ରହର ମରଣ ହେଲା । ମୋର ଅପକୀର୍ତ୍ତିର କାହାଣୀ ଜାଣି ମୋର ଜନନୀ ରାଣୀଙ୍କର ମୃତ୍ୟୁହେଲା । ମୁଁ ଅନୁତାପ କରିଛି ବାରବର୍ଷ କାଳ, ମୋ ମନରୁ କଳଙ୍କ କାଳିମା ଧୋଇବାକୁ ଚେଷ୍ଟା କରିଛି । ପ୍ରଜାର ସୁଖ ଦୁଃଖର ଭାଗୀ ହୋଇଛି । କନ୍ଧ ମେଳି ଦମନ କରିବାକୁ ଆସି ମୁଁ ବନ୍ଦୀ ହୋଇଛି । କେଉଁ ଦେବୀ ପାଖରେ ସେମାନେ ମୋତେ ବଳି ଦେବେ । ସେଥିପାଇଁ ମୋର ଦୁଃଖ ନାହିଁ । ମରିବା ଆଗରୁ ତୋ ସଙ୍ଗେ ଦେଖାହେଲା, ଅତି ଆନନ୍ଦର କଥା । ତୁ କ୍ଷମାକର କି ନ କର, ମୁଁ ତୋ ପାଖରେ କ୍ଷମା ଗୃହୁଁଛି । ସ୍ୱର୍ଗପୁରରେ ମୋର ଜନନୀ ସୁଖୀ ହେବେ । ସେ ମରିବା ଆଗରୁ କହିଯାଇଥିଲେ, ଜଗତର ସବୁ ନାରୀଙ୍କ ଭିତରେ ତାଙ୍କର ଆତ୍ମା ସଞ୍ଚରି ଯିବ । ସମସ୍ତେ ହେବେ ମୋର ଜନନୀ ସଦୃଶା । ଅଣା, ତପସ୍ୱିନୀ, ଶୁଦ୍ଧ ସୁବର୍ଣ୍ଣ ତେଜସ୍ୱିନୀ ଜନନୀ, ମୋର ସବୁ ଅପରାଧ କ୍ଷମାକର ।

ରାଜପୁତ୍ରଙ୍କ ନୟନ ଯୁଗଳରୁ ବାରିଧାର ନିସୃତ ହେଲା ।

ତପସ୍ୱୀ ବିସ୍ମିତ ହେଲେ । ସ୍ମିତହାସ୍ୟ କରି କହିଲେ, ପ୍ରକୃତରେ ଯେ ଅନୁତପ୍ତ, ଭଗବାନହିଁ ତାକୁ କ୍ଷମା କରି ପାରିବେ ।

ରାଜପୁତ୍ର କହିଲେ, ଭଗବାନଙ୍କର କ୍ଷମା ପାଇବାର ଉପଯୁକ୍ତ ମୁଁ ନୁହେଁ । ମୋର ଜନନୀ ସଦୃଶା, ମୋର ଭଗିନୀ ସ୍ୱରୂପା, ତପସ୍ୱିନୀ ଅଣା ଦେବୀଙ୍କର କ୍ଷମାହିଁ ମୋର ମାଗଣି ।

ତପସ୍ୱିନୀ ନୀରବ ।

ଜଣେ ଯୁବକଟିଏ ଧଇଁସଇଁ ହୋଇ ସେଠାରେ ଉପସ୍ଥିତ ହେଲା । ହାତରେ ଗୋଟିଏ ପତର ଠୁଙ୍ଗାରେ ବଟାହୋଇ କଣ ଧରି ଥିଲା । ତପସ୍ୱୀଙ୍କୁ କିଛି ନ କହି, ସେତକ ତାଙ୍କ ମୁଣ୍ଡରେ ବୋଳିଦେଲା । ତପସ୍ୱୀ ବାଧାଦେଲେ ନାହିଁ । ବୋଳିସାରି ସେ କହିଲା, ଏଥିରେ ମୁଣ୍ଡର ଘାତ ଭଲ ହୋଇଯିବ । ରାଜମୂଲୁଟି ତପସ୍ୱୀଙ୍କର ହାତକୁ ବଢ଼ାଇ ଦେଇ ବାବାଜୀଙ୍କର କହିଥିବା ଘଟଣା ବର୍ଣ୍ଣନା କଲା ।

ବାବାଜୀ ଯେ ରାଜପୁତ୍ରଙ୍କର ପିତା, ଏତିକ ଶୁଣି ସମସ୍ତେ ଆନନ୍ଦିତ ହେଲେ । କେବଳ ଲଜ୍ଜିତ ହେଲେ, ଅଧୀର ହେଲେ ରାଜପୁତ୍ର । ଦୁଃଖିତ ହେଲେ ତପସ୍ୱୀ । ସେ ତାଙ୍କର ଗୁରୁଦେବଙ୍କୁ ଦେଖି ପାରିଲେ ନାହିଁ ।

ରାଜପୁତ୍ରଙ୍କୁ ଦଣ୍ଡବିଧାନ କରାଯିବ । କରିବ କିଏ ? ତପସ୍ୱୀ ।

ତପସ୍ୱୀ ରାଜପୁତ୍ରଙ୍କ ମୁଖକୁ ଅନାଇଁ ରହିଲେ । ରାଜପୁତ୍ରଙ୍କର ଦୃଷ୍ଟି ନତ । ତପସ୍ୱୀ ବୁଝି ପାରିଲେ, ପ୍ରକୃତରେ ଦୁଃଖିତ, ଲଜ୍ଜିତ ଏବଂ ଅନୁତପ୍ତ ସେ ।

ରାଜପୁତ୍ରଙ୍କୁ ନିକଟକୁ ଡାକିଲେ ।

ରାଜପୁତ୍ର ନିକଟକୁ ଯାଇ ଯୋଡ଼ହସ୍ତ ହୋଇ ଠିଆ ହୋଇ ରହିଲେ ।

ତପସ୍ୱୀ ଦଣ୍ଡାୟମାନ ହେଲେ । ତପସ୍ୱିନୀ ମଧ୍ୟ ।

ହସ ହସ ହୋଇ ତପସ୍ୱୀ କହିଲେ, ରାଜପୁତ୍ର, ବନ୍ଧୁ, ତୁମର ଅତୀତ କର୍ମ ପାଇଁ ତୁମେ ବହୁବର୍ଷ ଅନୁତାପ କରିଛ । ତୁମକୁ ଦଣ୍ଡ ଦେବାକୁ ତୁମର ପିତା ଧର୍ମାତ୍ମା ସନ୍ନ୍ୟାସୀ, ମୋର ଗୁରୁଦେବ, ମୋ ଉପରେ ଦାୟିତ୍ୱର ବୋଝ ଲଦ ଦେଇଛନ୍ତି । ଦିନେ ମୁଁ ତୁମର ବନ୍ଧୁ ଥିଲି । ମୋର ନାମହିଁ ନବୀନ । ତପସ୍ୱିନୀ ଆଶାହିଁ ମୋର ବିବାହିତା ପତ୍ନୀ । ଆମର ସେହି ଦେହ ଏବେ ବି ବଞ୍ଚି ରହିଛି । ଦେହର ଆଭରଣ ତଳେ ଯେଉଁ ଆତ୍ମା ସେ ତ ଅଜର, ଅମର । ମନ ଓ ଭାବନା ମଣିଷକୁ ପୁରୁଣା ଦେହ ଭିତରେ ନୂଆ ମଣିଷ କରି ଗଢ଼େ । ଆଶାଦେବୀ ତପସ୍ୱିନୀ । ସେ ଜନନୀ । ସେ ଭଗିନୀ । ସେ ନମସ୍ୟା । ସେ ମୋର ସହଧର୍ମିଣୀ । ସେ ମୋର ସହକର୍ମିଣୀ । ମୁଁ ସଂସାର ତ୍ୟାଗୀ ସନ୍ନ୍ୟାସୀ । ଏ ରାଜମୁକୁଟ ମୋ ମସ୍ତକରେ ପର୍ବତର ବୋଝ । ଏହାକୁ ମୁଁ ବୋହି ପାରିବି ନାହିଁ । ରାଜପୁତ୍ର, ତୁମେ ବାରବର୍ଷ କାଳ ଅନୁତାପର ଭୟଙ୍କର ଅନଳରେ ନିଜକୁ ତିଳ ତିଳ କରି ଦହନ କରିଛ । ତୁମର ପୁରୁଣା ଦେହର ଅମର ଆତ୍ମା ପାଖରେ ତୁମର ମନ ପାପକ୍ଷୟ ପାଇଁ ପ୍ରାର୍ଥନା କରିଛି । ତୁମକୁ ନୂଆ ମଣିଷ କରିଛି । ତଥାପି, ତୁମ କର୍ମର ଦଣ୍ଡ ତୁମେ ପାଇନାହଁ । ଆଜୀବନ ତୁମକୁ ତପସ୍ୟା କରିବାକୁ ପଡ଼ିବ ।

ସଜଳ ନେତ୍ରରେ ରାଜପୁତ୍ର ନତମସ୍ତକ ହେଲେ । ତପସ୍ୱୀ ଓ ତପସ୍ୱିନୀଙ୍କର ପାଦଧୂଳି ନେଇ ମୁଣ୍ଡରେ ଲଗାଇଲେ । ଯୋଡ଼ହସ୍ତ ହୋଇ କହିଲେ, "ଏଇ ଦଣ୍ଡ ମୋର ପ୍ରାପ୍ୟ, ଏଇ ଦଣ୍ଡ ମୋର କାମ୍ୟ ।

ତପସ୍ୱୀ ସହାସ୍ୟ ମୁଖରେ ପାଖକୁ ଯାଇ ରାଜପୁତ୍ରଙ୍କ ମସ୍ତକରେ ମୁକୁଟ ପିନ୍ଧାଇ ଦେଲେ, କହିଲେ ଏହା ତମର ପ୍ରାପ୍ୟ । ଏହି ଦାୟିତ୍ୱ ତୁମର ଦଣ୍ଡ, ଓ ତପସ୍ୟା, କାରଣ ;

କାହିଁଛି କୁଶଳ ରାଜପ୍ରାଣେ ?

ଚିରଚିନ୍ତା ଅଶାନ୍ତି ଜର୍ଜରି ।
ଅବାଞ୍ଛ ପୋଷିତ ରାଜା ବିପତ୍ତି-ମାଳାର
ପ୍ରତପ୍ତ-କଠୋର-କୋଡ଼େ, ଅବିରି ବର୍ଦ୍ଧିତ,
ଅନ୍ୟର କୁଶଳ ଯାହା ସ୍କନ୍ଧରେ ନିର୍ଭର,
ଧନ-ଧର୍ମ-ଜୀବନର ସତର୍କ-ପ୍ରହରୀ
ଅନ୍ୟର ଯେ, ଛାଡ଼େ ନାହିଁ ଭାବନା ଯାହାକୁ
କେଉଁ ଅବସ୍ଥାରେ, କାହିଁ କୁଶଳ ତାହାର ?
କାହିଁ ସୁଖ, କାହିଁ ଶାନ୍ତି, ନୃପତି ଜୀବନେ ?

( କବିବର ଚିନ୍ତାମଣି )

ସମସ୍ତେ ନିର୍ବାକ୍ ହୋଇ ରାଜାଙ୍କୁ ଚାହିଁ ରହିଲେ । ଦଣ୍ଡଦିଅ ସରିନାହିଁ । ତପସ୍ୱିନୀ ଭାବିଲେ, ତାଙ୍କର ସବୁ ଦୋଷର ଦଣ୍ଡ ଦିଆ ହୋଇ ନାହିଁ, ଆହୁରି ବାକୀ ଅଛି । ସେ ରାଜପୁତ୍ରଙ୍କ ପାଖକୁ ଗଲେ । ଗତ ରାତ୍ରିରେ ତପସ୍ୱୀଙ୍କୁ ନିଜର ପରିଚୟ ଦେବାକୁ ଅତି ଯତ୍ନରେ ସଞ୍ଚିତ ଶ୍ୱଶୁର ଦତ୍ତ ଯେଉଁ ମୂଲ୍ୟବାନ୍ ରତ୍ନହାରଟି ଲମ୍ବାଇଥିଲେ, ବେକରୁ ତାହାକୁ କାଢ଼ିଲେ । ରାଜପୁତ୍ରଙ୍କର ବେକରେ ଲମ୍ବାଇ ଦେଇ କହିଲେ, ଏହି ମୂଲ୍ୟବାନ୍ ହାରଟି ଦିନେ ତୁମର ଥିଲା । ଏବେ ପୁଣି ତୁମର ପାଖକୁ ଫେରିଗଲା । ଏ ବୋଝ ତୁମେ ବେଶି ଦିନ ବୋହିବ ନାହିଁ । ଯିଏ ହରିପୁରର ରାଣୀ ହୋଇ ଆସିବେ, ଲକ୍ଷେ ପ୍ରଜାର ଶୁଭକାଂକ୍ଷୀ ମାତା ହୋଇ, ତାଙ୍କର ଗଳାରେ ଲମ୍ବାଇ ଦେବ । ତୁମର ସବୁ ଅପକାର୍ତ୍ତିର କାହାଣୀ ତାଙ୍କର ଆଗରେ ବର୍ଣ୍ଣନା କରିବ । ସେ ଯଦି କ୍ଷମା କରିବେ, ତେବେ ତୁମର ପାପ ଖଣ୍ଡନ ହେବ ।

ତପସ୍ୱୀ ଏବଂ ତପସ୍ୱିନୀଙ୍କର ସମ୍ମୁଖରେ ନତଜାନୁ ହୋଇ ଉପବେଶନ କରି ଯୋଡ଼ହସ୍ତ ମସ୍ତକରେ ଲଗାଇ ସାଶ୍ରୁ ନେତ୍ରରେ ରାଜପୁତ୍ର କହିଲେ, ଦୁହିଁଙ୍କର ଆଦେଶ ପାଳନ କରିବାକୁ ଯତ୍ପରୋନାସ୍ତି ଉଦ୍ୟମ ଅବଶ୍ୟ କରିବି । ମୋତେ ଆଶୀର୍ବାଦ କରନ୍ତୁ ।

ତପସ୍ୱିନୀ ତାଙ୍କ ମସ୍ତକରେ ହସ୍ତ ସ୍ଥାପନ କରି କହିଲେ, ଦୀର୍ଘାୟୁ ହୁଅ । ରାଜାର କର୍ତ୍ତବ୍ୟ ପାଳନ କରିବାକୁ ଭଗବାନ ତୁମର ସହାୟ ହୁଅନ୍ତୁ ।

ତପସ୍ୱୀ ହସ୍ତୋତ୍ତୋଳନ କରି କହିଲେ, **ତଥାସ୍ତୁ**—

ବାଙ୍କିପୁର ପାଟଣା — କାହ୍ନୁଚରଣ

ତା ୧୫-୫-୧୯୨୬ ( ଶନିବାର )

ସମସ୍ତେ ନିର୍ବାକ୍ ହୋଇ ରାଜାଙ୍କୁ ଚାହିଁ ରହିଲେ । ଦଣ୍ଡଦିଅ ସରିନାହିଁ । ତପସ୍ୱିନୀ ଭାବିଲେ, ତାଙ୍କର ସବୁ ଦୋଷର ଦଣ୍ଡ ଦିଆ ହୋଇ ନାହିଁ, ଆହୁରି ବାକି ଅଛି । ସେ ରାଜପୁତ୍ରଙ୍କ ପାଖକୁ ଗଲେ । ଗତ ରାତ୍ରିରେ ତପସ୍ୱୀଙ୍କୁ ନିଜର ପରିଚୟ ଦେବାକୁ ଅତି ଯତ୍ନରେ ସଞ୍ଚିତ ଶ୍ୱଶୁର ଦତ୍ତ ଯେଉଁ ମୂଲ୍ୟବାନ୍ ରତ୍ନହାରଟି ଲମ୍ବାଇଥିଲେ, ବେକରୁ ତାହାକୁ କାଢ଼ିଲେ । ରାଜପୁତ୍ରଙ୍କର ବେକରେ ଲମ୍ବାଇ ଦେଇ କହିଲେ, ଏହି ମୂଲ୍ୟବାନ୍ ହାରଟି ଦିନେ ତୁମର ଥିଲା । ଏବେ ପୁଣି ତୁମର ପାଖକୁ ଫେରିଗଲା । ଏ ବୋଝ ତୁମେ ବେଶି ଦିନ ବୋହିବ ନାହିଁ । ଯିଏ ହସ୍ତିପୁରର ରାଣୀ ହୋଇ ଆସିବେ, ଲକ୍ଷେ ପ୍ରଜାର ଶୁଭକାଂକ୍ଷିଣୀ ମାତା ହୋଇ, ତାଙ୍କର ଗଳାରେ ଲମ୍ବାଇ ଦେବ । ତୁମର ସବୁ ଅପକୀର୍ତ୍ତିର କାହାଣୀ ତାଙ୍କର ଆଗରେ ବର୍ଣ୍ଣନା କରିବ । ସେ ଯଦି କ୍ଷମା କରିବେ, ତେବେ ତୁମର ପାପ ଖଣ୍ଡନ ହେବ ।

ତପସ୍ୱୀ ଏବଂ ତପସ୍ୱିନୀଙ୍କର ସମ୍ମୁଖରେ ନତଜାନୁ ହୋଇ ଉପବେଶନ କରି ଯୋଡ଼ହସ୍ତ ମସ୍ତକରେ ଲଗାଇ ସାଶ୍ରୁ ନେତ୍ରରେ ରାଜପୁତ୍ର କହିଲେ, ଦୁହିଁଙ୍କର ଆଦେଶ ପାଳନ କରିବାକୁ ଯତ୍ପରୋନାସ୍ତି ଉଦ୍ୟମ ଅବଶ୍ୟ କରିବି । ମୋତେ ଆଶୀର୍ବାଦ କରନ୍ତୁ ।

ତପସ୍ୱିନୀ ତାଙ୍କ ମସ୍ତକରେ ହସ୍ତ ସ୍ଥାପନ କରି କହିଲେ, ଦୀର୍ଘାୟୁ ହୁଅ । ରାଜାର କର୍ତ୍ତବ୍ୟ ପାଳନ କରିବାକୁ ଭଗବାନ ତୁମର ସହାୟ ହୁଅନ୍ତୁ ।

ତପସ୍ୱୀ ହସ୍ତୋତ୍ତୋଳନ କରି କହିଲେ, **ତଥାସ୍ତୁ** —

ବାଙ୍କିପୁର ପାଟଣା — କାହ୍ନୁଚରଣ

ତା ୧୫–୫–୧୯୨୬ ( ଶନିବାର )

## ପଦେ ଅଧେ

ଅଜକାର ଛିନ୍ନମସ୍ତା ଉତ୍କଳ ଜନନୀ କ'ଣ ସବୁଦିନେ ଏହିପରି ହତଶ୍ରୀ ହୋଇ ଦରିଦ୍ରା ଅପମାନିତା ହୋଇ ପଡ଼ିଥିଲା ? ତାହାର ଅଙ୍ଗ ଦୁର୍ବଳ ଏବଂ ଶକ୍ତିବିରହିତ ହୋଇଥିଲା ? ତାର ଗେହ୍ଲା ପୁଅମାନେ କ'ଣ ଚିରଦିନ ଦେଶ ବିଦେଶରେ କୁଲିଗିରି କରି ପେଟ ପୋଷୁଥିଲେ ? ନା ! ନିଷ୍ପେଷିତ ଉତ୍କଳୀର ଅତୀତ ଯେ କେଡ଼େ ଗୌରବମୟ, ଏ କଥା ତାମ୍ରଲିପ୍ତ ( ତମଲୁକ ) ର ଭୂଗର୍ଭ ନିହିତ ସ୍ମୃତି, କଳିଙ୍ଗପଟ୍ଟି ( କଳିଙ୍ଗପଟ୍ଟମ୍ ) ଓ ଚିଲିକାର ଢେଉମାଳା ଅଦ୍ୟାବଧି ନୀରବ ଭାଷାରେ ଗାଉ ଗାଉ ଅଶ୍ରୁହିସି ହେଉଛନ୍ତି ।

ଉତ୍କଳୀ ସାଧବର ନୌବାଣିଜ୍ୟ କେବଳ ପ୍ରାଚ୍ୟ ଜଗତର ଦେଶମାନ —ସୁମାତ୍ରା, ଜାଭା, ବୋର୍ଣ୍ଣିଓ, ସେଲିବସ୍, ଟିମୋର ଓ ବାଲିଦ୍ୱୀପମାନଙ୍କରେ ବ୍ୟାପୀ ନ ଥିଲା, ଏପରି କି ସୁଦୂର ପାରସ୍ୟ ଦେଶରେ ମଧ୍ୟ ନିଜର କାର୍ଯ୍ୟ ବିସ୍ତାର କରି ପାରିଥିଲା । ଉତ୍କଳୀ ଯେ କେବଳ ବାଣିଜ୍ୟ କରୁଥିଲା ତାହା ନୁହେଁ, ବାଣିଜ୍ୟ ସଙ୍ଗେ ସଙ୍ଗେ ଉପନିବେଶ ସ୍ଥାପନ କରି ଭାରତୀୟ ହିନ୍ଦୁ ସଭ୍ୟତା ଦେଶ ବିଦେଶରେ ସ୍ଥାପିତ କରିଥିଲା । ଆଜିକାଲି ସୁମାତ୍ରା, ଜାଭା ପ୍ରଭୃତି ଦ୍ୱୀପମାନଙ୍କରେ ସେହି ସଭ୍ୟତା ପ୍ରାୟ ଲୁପ୍ତ; ତଥାପି ସ୍ଥାନେ ସ୍ଥାନେ ହିନ୍ଦୁ ମନ୍ଦିରମାନଙ୍କର ଭଗ୍ନାବଶେଷ ଓ ହିନ୍ଦୁ ଦେବାଦେବୀମାନଙ୍କର ଭଗ୍ନମୂର୍ତ୍ତି ପରିଲକ୍ଷିତ ହୁଏ ।

କିନ୍ତୁ 'ବାଲିଦ୍ୱୀପ' ତା'ର ଗୌରବମୟ ଅତୀତ ହିନ୍ଦୁସଭ୍ୟତାର ବିଜୟ କେତନ ଅଦ୍ୟାପି ଧରି ଠିଆହୋଇଛି । ଏ ଦେଶରେ ଅଦ୍ୟାବଧି ବହୁସଂଖ୍ୟକ ନୈଷ୍ଠିକ ହିନ୍ଦୁ ବାସ କରୁଛନ୍ତି ଏବଂ ନିଜକୁ କ୍ଲିଙ୍ଗ୍ ବା କଳିଙ୍ଗ ଅଧିବାସୀ ବୋଲି ପରିଚୟ ଦେଉଛନ୍ତି ।

'ବାଲିରାଜା' ସେହି ଗୌରବମୟ ଅତୀତର ଗୋଟିଏ କାଳ୍ପନିକ କାହାଣୀ ସତ; କିନ୍ତୁ ଏହାର ସମସ୍ତ ଘଟଣା ଯେ ସମ୍ପୂର୍ଣ୍ଣ ଐତିହାସିକ-ଭିତ୍ତି-ବିରହିତ, ଏପରି ନୁହେଁ ।

ଏହି ଉପନ୍ୟାସଟି ଲେଖିବାକୁ ମୋର ପରମାରାଧ୍ୟ ଜ୍ୟେଷ୍ଠଭ୍ରାତ ଶ୍ରୀଯୁକ୍ତ ଗିରିଧାରୀ ମହାନ୍ତି ପଦେ ପଦେ ଉତ୍ସାହିତ କରି ଏବଂ ଅତୀତ ଉତ୍କଳର ଗୌରବ କାହାଣୀମାନଙ୍କର ସୂଚନା ଦେଇ ମୋତେ ଚିରପଦାନତ କରିଛନ୍ତି । ମୋର ଶ୍ରଦ୍ଧେୟ ବନ୍ଧୁ ଶ୍ରୀ ଦେବେନ୍ଦ୍ରକୁମାର ଘି. ବି. ଏ. ସାଗ୍ରହରେ ବାଲିରାଜାର ପାଣ୍ଡୁଲିପି ପାଠ କରି ଏବଂ ସ୍ଥାନେ ସ୍ଥାନେ ପରିବର୍ତ୍ତନ କରି ମୋତେ କୃତଜ୍ଞତାପାଶରେ ଆବଦ୍ଧ କରିଅଛନ୍ତି ।

୧୫-୩-୩୧ କଟକ

କାହ୍ନୁଚରଣ

କେଉଁ ସାଗରରୁ ଆସୁଛୁ କହ ବତାସି ମୋରେ
ଓଡ଼ିଆ ବୋଇତ ଖବର କିଛି ଆଣିଛୁ କିରେ,
ନୀଳ-ବୀଚି ଭଙ୍ଗି ଆଣୁଛୁ ତଡ଼ ବରଷା ଧାର
କାଳ-ବୀଚି ଭଙ୍ଗି ସ୍ମରଣ ଦୂରେ ଯାଉଛୁ ଘସି ।

× × ×

ଏହି କୂଳେ ବହି ଆଣିଛୁ କେତେ ବୋଇତ ପଟା
ଦେଖାଇ ଲଗାଇ ଦେଇଛୁ କେତେ ଶୋକର ହାଟ,
ଶଙ୍କାରେ ସାଧବ-ଲଳନା ଡୋତେ ବାଉଛି କେତେ
ମୃତ ଦଇତଙ୍କ ସୁମରି ଦୂର ବୋଇତ ପଥେ ।

× × ×

ଚିଲିକା ଗରଭେ ଉଠିବ ଶତ ବୋଇତ ଭାସି
ଅରୁଣିତ ଦେଖି ବାରୁଣୀ-ପଟେ ଜଟିଆ ନାସି,
ଗଉରବ କଥା ଶୁଣିବ, ବନ୍ଦୀ ଗାଇବେ କେତେ
ଭୀମ ତରବାରି-ଫଳକ ଯୋଧେ ଠେକିବେ ହାତେ ।

**ନୀଳକଣ୍ଠ ( କୋଣାର୍କ )**

କଳିଙ୍ଗ ଉପକୂଳର ବାଲୁକାପ୍ରାନ୍ତର ମଧ୍ୟରେ ମାରବ୍ୟ ଏକ ମରୁ-ଦ୍ୱୀପ । ସ୍ଥାନଟି ଉର୍ବର । ସମୁଦ୍ରକୂଳରୁ ପ୍ରାୟ ଏକକୋଶ ଛଡ଼ା । ଚତୁର୍ଦ୍ଦିଗରେ ଛୋଟ ଛୋଟ ବାଲିର ପାହାଡ଼ । ପାହାଡ଼ ଉପରେ ଦଣ୍ଡାୟମାନ ହୋଇ ନିରୀକ୍ଷଣ କଲେ ଦିଗ୍‌ବଳୟର ମନୋମୋହନ ଦୃଶ୍ୟ ଦେଖାଯାଏ ।

ପୂର୍ବଦିଗରେ ବାଲୁକାପ୍ରାନ୍ତର ପରେ ସୁନୀଳ ସାଗର ଏବଂ ସେହି ସାଗର ଓ ଅମ୍ବରର ସଂଗମସ୍ଥଳ ଭେଦ କରି ଦୂରରେ ବୃକ୍ଷଲତାଚ୍ଛାଦିତ ସୁନୀଳ ପର୍ବତର ଶୃଙ୍ଗ ଦେଖାଯାଏ । ପ୍ରାତଃକାଳରେ ଯେତେବେଳେ ସୂର୍ଯ୍ୟଦେବ ଧୀରେ ଧୀରେ ପର୍ବତଶୃଙ୍ଗର ପଛଆଡ଼ୁ ଉଙ୍କିମାରି ପଶ୍ଚିମଦିଗକୁ ଦୃଷ୍ଟିପାତ କରନ୍ତି ସେତେବେଳେ ମନେହୁଏ ସତେ ଯେପରି ସାଗର-ନାଗର ପ୍ରକୃତିର ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ଶୃଙ୍ଗକର ବଢ଼ାଇ ପ୍ରକୃତିରାଣୀର କପାଳରେ ମଥାମଣି ପିନ୍ଧାଇ ଦେଉଛନ୍ତି ଏବଂ ଆନନ୍ଦରେ ନାଚି ନାଚି ଅଜଣାଭାଷାରେ ଅଜଣା ସଙ୍ଗୀତ ଗାଇ ଯାଉଛନ୍ତି !

ସେହି ଭୂଖଣ୍ଡର ମଧ୍ୟସ୍ଥିତ କ୍ଷୁଦ୍ର ପାହାଡ଼ଟି ନାନାଜାତୀୟ ବୃକ୍ଷଲତାରେ ପରିପୂର୍ଣ୍ଣ । ପାହାଡ଼ର ନିମ୍ନଦେଶରେ ପୁଷ୍କରିଣୀ । ଦିନେ ଏହି ଭୂଖଣ୍ଡରେ ଅନେକଗୁଡ଼ିଏ ଜନବସତି ଥିଲା । କାଳକ୍ରମେ ସମୁଦ୍ରର ଅତ୍ୟାଗ୍ରହରେ ସେ ସମସ୍ତ ଲୋପ ପାଇଛି । ଗ୍ରାମ ପରିବର୍ତ୍ତେ ବର୍ତ୍ତମାନ ଧୂସର ବାଲୁକା ରାଶି, ଗୃହପାଳିତ ପଶୁ ପକ୍ଷୀ ପରିବର୍ତ୍ତେ ବାଲିହରିଣର କ୍ରୀଡ଼ା ଓ ସାମୁଦ୍ରିକ ପକ୍ଷୀମାନଙ୍କର କାକଳୀରେ ଏହି ସ୍ଥାନ ମୁଖରିତ ହେଉଅଛି ।

ବର୍ତ୍ତମାନ ଏହି ନିର୍ଜ୍ଜନ ମାରବ୍ୟଦ୍ୱୀପର ଅଧିବାସୀ ମାତ୍ର ଦୁଇଜଣ ମନୁଷ୍ୟ । ପାଦପ ଶୁଷ୍କ ଦେଖି ସବୁ ବିହଙ୍ଗ ଚାଲିଯାନ୍ତି ଅନ୍ୟବୃକ୍ଷ ଅନ୍ୱେଷଣ କରି, କିନ୍ତୁ କପୋତ କପୋତୀ ଅକୃତଜ୍ଞ ନୁହନ୍ତି । ଶୁଷ୍କବୃକ୍ଷର ଭାଗ୍ୟ ଆଦରି ସେମାନେ ପଡ଼ି ରହିଥାନ୍ତି । ସେହିପରି ଏ ଦୁଇପ୍ରାଣୀ । ଭୀଷଣ ସମୁଦ୍ର କାନ୍ତାରର ଭୀଷଣତା ଏମାନଙ୍କ ମନରେ କେବେ ହେଲେ ଭୟ ସଞ୍ଚାର କରିନାହିଁ, ବରଂ ଆନନ୍ଦ-ପ୍ରୀତି ସଞ୍ଚାର କରିଛି । ଯେ ନିର୍ଜ୍ଜନ ସ୍ଥାନରେ ଚିରଦିନ ବାସକରି ଆସୁଛନ୍ତି ତାଙ୍କୁ ନିର୍ଜ୍ଜନତାର ଭୀତି କାହିଁ ଜଣା ପଡ଼ିବ । ଆଜୀବନ ଦୁଃଖୀ ଯେ, ଦୁଃଖ ତା'ର ସୁଖ; ତଥା ସୁଖୀର ସୁଖ ଦୁଃଖ । ବାଇବେଲ ଅନୁଯାୟୀ ଇଡେନ୍ ଗାର୍ଡ଼େନରେ ଆଡ଼ାମ୍ ଏବଂ ଇଭ୍ ଏକାକୀ ବିଚରଣ କରି ଅପରିମିତ ସୁଖ ଅନୁଭବ କରୁଥିଲେ । ମାତ୍ର କଳିଙ୍ଗ ଉପକୂଳସ୍ଥ ଭଜନା ଓ ରୂପେଇଙ୍କର ଆନନ୍ଦ ସଙ୍ଗେ ସେମାନଙ୍କର ଆନନ୍ଦର ତୁଳନା କରାଯାଇପାରେ କି ନାହିଁ ଚିନ୍ତନୀୟ ।

କଳିଙ୍ଗ ଉପକୂଳସ୍ଥ ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ତୁଳନାରେ ମାରବ୍ୟ ମରୁଦ୍ବୀପଟିର ଆୟତନ ନିତାନ୍ତ କମ୍ । ତଥାପି ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟ ଅତୁଳନୀୟ । ମଧ୍ୟସ୍ଥଳରେ ନାନାବିଧ ବୃକ୍ଷଲତା ଶୋଭିତ କ୍ଷୁଦ୍ର ପାହାଡ଼ । ପାହାଡ଼ର ଶୀର୍ଷଦେଶରେ ବିଷ୍ଣୁ ମନ୍ଦିର । ମନ୍ଦିରର କାରୁକାର୍ଯ୍ୟ ସେ ସମୟର ଉତ୍କଳୀ ଶିଳ୍ପୀର ସିଦ୍ଧହସ୍ତ ଏବଂ ଉନ୍ନତ ମସ୍ତିଷ୍କର ପରିଚୟ ଦିଏ ।

କାଳକ୍ରମେ ସ୍ଥାନଟି ଜନଶୂନ୍ୟ ହେବାରୁ ମନ୍ଦିରର ମନ୍ତ୍ର ଏବଂ ବିଷ୍ଣୁ ମୂର୍ତ୍ତିର ସେବାରେ ବ୍ୟାଘାତ ଘଟିଲା । ତଥାପି ଯେଉଁ ସମୟର ଘଟଣା ଲେଖା ଯାଉଛି ସେ ସମୟରେ ଲୋକଙ୍କର ପ୍ରଧାନ ବିଶ୍ବାସ ଥିଲା ଯେ ବାଲିଆ ବିଷ୍ଣୁଙ୍କ କୂପର ଜଳପାନ କଲେ ଅପୁତ୍ରିକ ପୁତ୍ରଲାଭ କରେ । ଏହି ଗୋଟିଏ କାରଣରୁ ଦୂରବର୍ତ୍ତୀ ଗ୍ରାମମାନଙ୍କରୁ ସମୟ ସମୟରେ ଲୋକେ କଷ୍ଟ ସ୍ଵୀକାର କରି ଆସି କୂପର ଜଳ ନେଇ ଯାଇଥାନ୍ତି; ସଙ୍ଗେ ସଙ୍ଗେ ବାଲିଆ ବିଷ୍ଣୁଙ୍କର ସେବା ମଧ୍ୟ କରିଯାନ୍ତି । ଏହି କୂପଟି କିଏ କେଉଁ କାଳରେ ଖୋଳାଇ ଥିଲେ କହି ହେବ ନାହିଁ । ବାଲିଦ୍ୱୀପରୁ ମିଳିଥିବା ଭଜନାର ଦୈନିକଲିପି ପୋଥିରୁ ମଧ୍ୟ ଏହାର କୌଣସି ସମ୍ବାଦ ମିଳେ ନାହିଁ । ଯାହାହେଉ, କୂପଟି ସୁଗଭୀର । ବାରମାସ ସେଥିରେ ଜଳଥାଏ । ନିକଟରେ ସମୁଦ୍ର ଥାଇ ମଧ୍ୟ ଜଳ ସର୍ବଦା ସୁମିଷ୍ଟ । ରୂପେନ୍ଦ୍ରର ମତରେ ଏହା ବାଲିଆ ବିଷ୍ଣୁଙ୍କର ମହିମାର ଅନ୍ୟତମ ଉଦାହରଣ; କିନ୍ତୁ ଭଜନାର ମତରେ କୂପର ଝର ନିକଟବର୍ତ୍ତୀ ସୁବର୍ଣ୍ଣରେଖା ନଦୀ ସଙ୍ଗେ ସଂଯୁକ୍ତ ।

ପାହାଡ଼ଟିର ଚାରିପାଖେ ଛୋଟବଡ଼ ଅନେକଗୁଡ଼ିଏ ଗୁହା । ଏ ସମସ୍ତ ଶୃଗାଳଙ୍କର ଆଶ୍ରୟ ସ୍ଥଳ । ଯେତେବେଳେ ଆକାଶରେ ସୂର୍ଯ୍ୟ ନ ଥାନ୍ତି ସମୟାନୁବର୍ତ୍ତୀ ଭଜନାକୁ ସମୟ ଜାଣିବାରେ ଏହି ଶୃଗାଳମାନେ ସାହାଯ୍ୟ କରନ୍ତି । ତେଣୁ ଶୃଗାଳ ଗୁରୁଙ୍କର କଠୋରବ ଭଜନାର ମନରେ ଆନନ୍ଦ ଦେଇଥାଏ । ପ୍ରାପ୍ତ ବୟସରେ ମଧ୍ୟ ଭଜନା ସମୟ ସମୟରେ ଶୃଗାଳଙ୍କର ଡାକରେ ଯୋଗ ଦେଇ ଚିତ୍କାର କରି ଉଠେ, ହାମ ତୋ ରଜା, ଖଣ୍ଡ ପରଜା, ହୁକେ ହୁକେ ହୋ ।

ପାହାଡ଼ର ନିମ୍ନଦେଶରେ ଭଜନାର କୁଟୀର । ସମ୍ମୁଖରେ ବୃହତ୍ କଦମ୍ବ ବୃକ୍ଷମୂଳରେ ବସି ଭଜନା ନିଜର ଦୈନିକ ଜୀବନୀ ଲେଖିଥାଏ । କୁଟୀରଟିର ଚତୁର୍ଦ୍ଦିଗରେ ଛୋଟ ଛୋଟ ବୁଦା । ଟିକିଏ ଦୂରରୁ ବୁଦବୁଦିଆ ହୋଇ ଅନେକ ଗୁଡ଼ିଏ ଝରବୁଦା ଚଅଁର କାଢ଼ି ବେଶ ସୁନ୍ଦର ଦିଶୁଥାଏ । ନିକଟରେ ପୁଷ୍କରଣୀ । ଖରାଦିନେ ଏହି ଝରବୁଦାଗୁଡ଼ିକ ଶୁଷ୍କହେଲେ ଭଜନା ତହିଁରେ ଅଗ୍ନି ସଂଯୋଗ

କରେ । ଯେତେବେଳେ ଅଗ୍ନି ଶିଖା ଊର୍ଦ୍ଧ୍ୱକୁ ଉଠି ମାରବ୍ୟ ଦ୍ୱୀପଟିକୁ ଆଲୋକିତ କରେ, ଭଜନା ଆନନ୍ଦରେ ନାଚି ନାଚି ଚିତ୍କାର କରି ଉଠେ, ଅନଳି ନଳ, ଓଦା କଞ୍ଚା ସବୁ ଜଳ ।

ରୂପେଈ ବିରକ୍ତ ହୋଇ କହେ, ଅହା କ'ଣ କରୁଛ ? ବୁଦାଟିରେ ଅନେକ ପୁଡ଼ିଏ ଛୋଟ ଛୋଟ ଜୀବଜନ୍ତୁ ଥିଲେ । ଭଗବାନଙ୍କର ସେହି ନିରୀହ ଜୀବଙ୍କ ଉପରେ ଏ ଘୋର ଅତ୍ୟାଚାର କରିବାର ଅଧିକାର କିଏ ଦେଲା ତୁମକୁ ? ବୃଥାଟାରେ କ୍ଷଣିକ ଆନନ୍ଦ ନିମନ୍ତେ ଏତେ ପାପ କରିବାକୁ ଗଲ କାହିଁକି ?

ଭଜନା ରୂପେଈ କଥା କାନରେ ପକାଏ ନାହିଁ । ହସି ହସି କହିପକାଏ, ରଖ ତମର ଭଗବାନଙ୍କୁ କାଞ୍ଜିପାଣି ହାଣ୍ଡିରେ । ମୋର ଏ ଆନନ୍ଦରେ ତମର କୌଣସି ଠାକୁର ବାଧା ଦେଇ ପାରିବେ ନାହିଁ ।

ରୂପେଈ ମୁହଁ ମୋଡ଼ି ଅନ୍ୟମନ୍ସ ଚାଲିଯାଏ ।

ଭଜନାର ଗୋଟିଏ ପ୍ରଧାନ ଗୁଣ, ସେ ଅନେକ ପ୍ରକାର ଜୀବଜନ୍ତୁଙ୍କର ସ୍ୱର ଅନୁକରଣ କରିପାରେ । ଯେତେବେଳେ ରୂପେଈ ବାଲ୍ୟଆ ବସ୍ତୁଙ୍କୁ ପୂଜାରେ ନିଯୁକ୍ତ ଥାଏ, ଆଖି ବୁଜି, ହାତ ଯୋଡ଼ି, ଭୁଣ୍ଡ୍ ଭୁଣ୍ଡ୍ ହୋଇ କ'ଣ କହୁଥାଏ, ଭଜନା ତାଳପତ୍ର ପୋଥିଖଣ୍ଡ କାଖରେ ଧରି ଲହାର ଲେଖନଟି କାନରେ ଖୋସି ଅଲକ୍ଷିତରେ ଆସି ରୂପେଈର ପଛଆଡ଼େ ଲୁଚି ରହି ବିକୃତ ସ୍ୱରରେ କୁକୁରକୁ ଅନୁକରଣ କରି ବୋବାଇ ଉଠେ । ରୂପେଈର ସ୍ନେହପାଳିତ ବିଲେଇଟି ଭୟରେ ମ୍ୟାଉଁ ମ୍ୟାଉଁ ହୋଇ ଠାକୁରଙ୍କ ପଛଆଡ଼େ ଲୁଚିଯାଏ । ରୂପେଈର ଧ୍ୟାନଭଙ୍ଗ ହୁଏ । ସେ ମୁହଁ ବୁଲାଇ ଚାହିଁ ଦିଏ ପଛକୁ । କେହି ନାହିଁ । ଭଜନା ଚାଲିଗଲାଣି ।

ପ୍ରାତଃକାଳରୁ ଉଠି ରୂପେଈ ପ୍ରଥମରେ ସ୍ନାନକାର୍ଯ୍ୟ ଶେଷ କରି ବାଲ୍ୟଆ ବସ୍ତୁଙ୍କର ପୂଜା କରେ । ପୂଜା କରିବାରେ ପ୍ରାୟ ଦୁଇଘଡ଼ି କଟିଯାଏ । ପୋଷା ବିଲେଇଟି ବରାବର ତା ପଛେ ପଛେ ଗୋଡାଇ ଥାଏ । ରୂପେଈ ପୂଜା କରୁଥିବା ସମୟରେ ବିଲେଇଟି ମ୍ୟାଉଁ ମ୍ୟାଉଁ ଚିତ୍କାର କରି, ଲାଙ୍ଗୁଡ଼ ଟେକି, ବାହାରେ ଛୋଟ ଛୋଟ ଚଢ଼େଇ ଧରିବାରେ ନିଯୁକ୍ତ ଥାଏ । କେବେ କେବେ ମନ୍ଦିର ମଧ୍ୟରେ ପଶି ରୂପେଈର ପୂଜାରେ ବାଧା ଦିଏ ।

ରୂପେଈ ଠାକୁରଙ୍କ ନିକଟରେ ଏତେ ସମୟ କ'ଣ ପ୍ରାର୍ଥନା କରେ ଭଜନା ତାର ଦୈନିକ ଜୀବନରେ ଲେଖି ଯାଇଛି । ଭଜନାର ମତରେ, ପାପ

ଚୁଆଖାଡ଼ଲ ଅନ୍ଧାର । ଯେଉଁ କୂପର ଜଳ ଥରେ ପାନ କରି ସହସ୍ର ସହସ୍ର ନାରୀ ପୁତ୍ରଲାଭ କରୁଛନ୍ତି, ସେହି ଜଳରେ ପ୍ରତ୍ୟହ ସ୍ନାନ ଓ ସେହି ଜଳପାନ କରି ମଧ୍ୟ ରୂପେଇ ନିଃସନ୍ତାନ । ରୂପେଇ ପ୍ରତ୍ୟହ ସନ୍ତାନ କାମନା କରି ଠାକୁରଙ୍କୁ ଏତେ ଜଣାଏ । ଠାକୁରେ ଶୁଣନ୍ତି ନାହିଁ । ଭଜନା ଅଣ୍ଟା କରି କହୁଥାଏ, ଗୋଟାଏ ପଥର ପାଖରେ ଏତେ ପ୍ରାର୍ଥନା କରିବାରେ କି ଲାଭ ?

ରୂପେଇ ଏଥିରେ ରାଗିଯାଏ ।

ରମଣୀର ମନ ଯେତେବେଳେ ଅପତ୍ୟ ସ୍ନେହର ପ୍ରଭାବରେ ନିତାନ୍ତ ଆକୁଳ ହୋଇପଡ଼େ ସେ ମନର ଗତିକୁ ଆଉ ସମ୍ଭାଳି ପାରେ ନାହିଁ । ମନ ଯଥେଚ୍ଛା ଗମନ କରି ଯାହାକୁ ପାରେ ତାକୁ ସନ୍ତାନ ରୂପେ ବରଣ କରେ । ସମସ୍ତ ଅପତ୍ୟ-ସ୍ନେହ ଇତର ପ୍ରାଣୀ ହେଉ ପଛେ ତାହାରିଠାରେ କେନ୍ଦ୍ରୀଭୂତ କରିଦିଏ । ମାତୃଜାତି ମାତୃତ୍ୱର ମାନ ବୁଝନ୍ତି । ତେଣୁ ଶୀଘ୍ର ମାତା ହେବାକୁ ଆକୁଳ ହୋଇ ପଡ଼ନ୍ତି । ରୂପେଇର ସମସ୍ତ ଅପତ୍ୟ ସ୍ନେହ ପୋଷା ବିଲେଇଠାରେ ପୁଞ୍ଜିଭୂତ । ପୂଜା ଶେଷ କରି ବିଲେଇଟିକୁ ଖାଇବାକୁ ଦିଏ । କେତେ ନଚାଏ, କେତେ ଗେଲ୍ହା କରେ । ପୁଷି ଲୋ ପୁଷି ଡାକି, ତାର ମୁଖରେ ମୁଖ ଲଗାଇ ଚୁମ୍ବନ କରେ ।

ଆହା, ସେହି ଚୁମ୍ବନରେ ଉଭୟେ ଯେଉଁ ଆନନ୍ଦ ଉପଭୋଗ କରନ୍ତି, କହିବା ବାହୁଲ୍ୟ ଯେ, ପ୍ରକୃତ ମାନବର ସ୍ନେହଠାରୁ ତାହା ବଳି ପଡ଼େ । ଭଜନା ତାକୁ ରୂପେଇର ଅନୁରୋଧରେ ସ୍ୱର୍ଣ୍ଣଭୂମିରୁ ଆଣିଥିଲା ।

ରୂପେଇ ପୂଜା ଶେଷ କରି ଘରକାମରେ ଲାଗିଯାଏ । ରନ୍ଧା ବଢ଼ା କରିବାରେ ତାକୁ କେହି କେବେ ହଟାଇ ଦେବ, ଏହା ସ୍ୱୀକାର କରିବାକୁ ଅନ୍ତତଃ ଭଜନା ଅମଙ୍ଗ । ସେ ଯଦି ଶୁଖିଲା ମାଛକୁ କଞ୍ଚା ପାଣିରେ ସିଝାଇଦେବ ତ ଭଜନାର ପାଇଁକି ତାହା ଅମୃତ । ରନ୍ଧା ବଢ଼ା କାମ ଛଡ଼ା ଆହୁରି ତାର ଅନେକ କାମ ଥାଏ । ଭଜନା ଯେତେବେଳେ ସମୁଦ୍ର ପାରି ହୋଇ ନିକଟସ୍ଥ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପରେ ମାଛ ଧରୁଥାଏ, ରୂପେଇ ଏଣେ ସମୁଦ୍ର କୂଳରେ ଲୁଣ ପଟାଳିଗୁଡ଼ିକର ତତ୍ତ୍ୱ ନିଏ । କେବେ କେବେ ଶୁଖୁଆ ଗଦାରୁ ଶୁଖୁଆ କାଢ଼ି ଖରାରେ ରଖେ, ଅଥବା ଲୁଣ କିଆରିରୁ ଲୁଣ ବୋହି ନେଇ ଶୁଖୁଆ ଗଦାରେ ପକାଏ ।

ଦିନେ ଦିନେ ରୂପେଇର ମନ ଏ ସବୁ କାମରେ ଲାଗେ ନାହିଁ । ସେଦିନ ସେ ଘରେ ବସି ଅରଟ ଖଣ୍ଡିକରେ ସୁତା କାଟେ । ତାର ହାତକଟା ସୁତା ଏଡ଼େ

ସରସ ହୁଏ ଯେ, ଦୂର ଗ୍ରାମର ଲୋକେ ତାକୁ ଭାରି ପ୍ରଶଂସା କରନ୍ତି । ଲୋକେ କହନ୍ତି ରୂପେଇ ହାତକଟା ସୂତାରେ ବୁଣାହୋଇଥିବା ଦଶ ହାତ ଲୁଗା ଗୋଟିଏ ବେଲର ଭୁଣି ମଧ୍ୟରେ ଅକ୍ଳେଶରେ ରଖାଯାଇ ପାରିବ ।

ରୂପେଇକୁ ମୋଟେ ତିରିଶିବର୍ଷ । ଦେଖିବାକୁ ଖୁବ୍ ସୁନ୍ଦରୀ ନ ହେଲେ ମଧ୍ୟ ଅସୁନ୍ଦରୀ ନୁହେଁ । ଦୁନିଆରେ କ'ଣ କଳାଲୋକ ନାହାନ୍ତି ? ତେବେ, ରୂପେଇ କାଳୀ ହେଲା ବୋଲି ତାର ଦୋଷ ହେବ କାହିଁକି ? ତା ଦେହରେ କଳାରଙ୍ଗ ତ ଆଉ ସେ ନିଜେ ବୋଳି ନାହିଁ ? ଠାକୁରେ ଯାହା କରିଛନ୍ତି କିଏ ଅନ୍ୟଥା କରିବ ତାକୁ ?

ସମୟ ସମୟରେ ଭଜନାର ରୂପେଇ ସଙ୍ଗେ କଜିଆ ଲାଗିଲେ ସ୍ନେହାଧିକ୍ୟରୁ ହେଉ ଅଥବା ରାଗିକରି ହେଉ ରୂପେଇର ଚେହେରା ଉପରେ ସେ କଟାକ୍ଷପାତ କରେ । କହେ, ତମର ରଙ୍ଗଟା ଜହ୍ନି ମଞ୍ଜିଠୁ ଧଳା, ନାକଟା ଚିନା ଲୋକଙ୍କ ନାକ ପରି ଗୋଜା, ଆଖି ଦିଟା କହରି କହରି, ଚିଲ ଆଖି ପରି ।

ରୂପେଇ ବିଚରା ଚୁପ୍ ହୋଇଯାଏ । ଭଜନାର ଚେହେରାରେ ତ ଖୁଣିବାକୁ କିଛି ନାହିଁ, କହିବ କ'ଣ ? ଭଜନା ଦୀର୍ଘକାୟ ନୁହେ, କିନ୍ତୁ ଭାରି ବଳିଷ୍ଠ । ହାତରେ ସୁନାର ଖଡ଼ୁ । ବେକରେ ସୁନାର ହାର । ବେଶ୍, ଅଳଙ୍କାର ଭିତରେ ଏତିକି । ପରିଶ୍ରମୀ ଲୋକର ଦେହରେ ଅଳଙ୍କାର କେବଳ କାର୍ଯ୍ୟର ପ୍ରତିବନ୍ଧକ ।

ଭଜନାକୁ ଦେଖିଲେ ଜଣାଯାଏ ସେ ଦୁର୍ବଳ; ମାତ୍ର ପ୍ରକୃତରେ ତାହା ନୁହେ । ଦେହର ପ୍ରତ୍ୟେକ ହାଡ଼ରେ ବଳ ପୂର୍ଣ୍ଣ ହୋଇ ରହିଛି । ଦେଖିବାକୁ ଗୋରା । ମୁଣ୍ଡରେ ଚୁଟି । ଗୋଖୁରା ଚଟି ପୁରାଣସଙ୍ଗତ; ଅନ୍ତତଃ ତାର ଅହଙ୍କାର କହିବାନୁଯାୟୀ । ନିଶ ଦାଢ଼ିରେ ଆଜନ୍ମରୁ ଖୁର ବାଜି ନାହିଁ । ଅବଶ୍ୟ ଏଥି ନିମନ୍ତେ ଅନେକେ ତାକୁ ଅହଙ୍କାରି ଥାନ୍ତି, କିନ୍ତୁ ସେଥିରେ ଭଜନା ରାଗେ ନାହିଁ । ବରଂ ହସିଦେଇ କହେ, ଯାହାକୁ ଲାଜ ମାଡୁଛି, ସେ ମୁହଁ ବୁଲାଇ ଦେଉ ।

ଭଜନା ଯେତେବେଳେ ମାଛ ଖାଲେଇଟି ବେକରେ ପକାଇ ନିକଟସ୍ଥ ଗ୍ରାମ ସୁନାହାଟ କମ୍ବା ତନ୍ତ୍ରପଡ଼ାର ଦାଣ୍ଡ ଗୋହିରି ଦେଇ ଗୃଲି ଯାଉଥାଏ, ଲୋକେ ତାର ଚେହେରା ଦେଖି ଶଙ୍କି ଯାନ୍ତି । ରାଗ ରୋଷରେ କେହି ତାକୁ କେବେ ପଦେ ହେଲେ କହି ନାହିଁ । ଲୋକେ କହନ୍ତି, ଭଜନା ଭାରି ରାଗୀ । ସିଂହର ବଳ ତା ଦେହରେ । କିଏ ସାହସ କରିବ ତା ସଙ୍ଗେ ଖେଳୁରେଇ

ହେବାକୁ ? ପ୍ରକୃତରେ ଭଜନା ରାଗୀ ନୁହେଁ। କଥାଗୁଡ଼ାକ ଭାଉଁ ଭାଉଁ କରି କହି ପାରିରେ କହେ।

ମାମଲତ୍‌କାରପଣରେ ଭଜନାକୁ କେହି ହଟେଇ ଦେବ ଏମିତି ନୁହେଁ। ବାଛି ବାଛି ଗଡ଼େଇ କଥାଗୁଡ଼ିକ ଏପରି ଭାବରେ କହନ୍ତି, କାଟିବାକୁ କାହାର ସୁ ନାହିଁ। ଦୂରଦୂରାନ୍ତ ଦଶଖଣ୍ଡି ଗାଁରେ ପଞ୍ଚାଏତ୍ ବସିଲେ ଆଗ ଭଜନାକୁ ଡାକ ପଡ଼େ। ଅବଶ୍ୟ ସେ ସବୁବେଳେ ଯାଏ ନାହିଁ। ଲୋକଟା ସମାଜର ବହୁ ଦୂରରେ ଜୀବନ କଟାଉଥିବାରୁ ଗହଳ ଚହଳ ସେତେ ଭଲ ପାଏ ନାହିଁ।

ଭଜନା ସନ୍ତରଣପଟୁ। ମାଛପରି ପାଣି ଉପରେ ସେ ଅନେକ ଦିନ ପର୍ଯ୍ୟନ୍ତ ପହଁରି ପାରେ। କଥାର ସତ୍ୟତା ଭଜନାର ଜୀବନୀରୁ ସ୍ପଷ୍ଟ ଜଣାଯାଏ। ବାଣିଜ୍ୟ କରିବାକୁ ଯାଇଥିବା ସମୟରେ ହଠାତ୍ ସମୁଦ୍ର ମଝିରେ ଥରେ ବୋଇତ ଭାଙ୍ଗି ଯାଇଥିଲା। ନାଉରୀମାନେ କିଏ କୁଆଡ଼େ ଗଲେ। ମାତ୍ର ଭଜନା ସନ୍ତରଣ କରି ପାଞ୍ଚ ଦିନ ପରେ ଜାଭାଦ୍ୱୀପରେ ଲାଗିଲା। ସେ ସେଇଥର ଜୀବନ ମରଣ ସଙ୍କଟ ସ୍ଥଳରୁ ଉଦ୍ଧାର ପାଇ ଦେଶକୁ ଫେରି ଆଉ କେବେ ସମୁଦ୍ର ଯାତ୍ରା କରି ନାହିଁ। ସେ କହେ, ତା'ପରି ଜଗତରେ କେହି ସୁଖୀ ନାହିଁ। ଜୀବିକା ନିର୍ବାହ ନିମନ୍ତେ ଯାହା ଆବଶ୍ୟକ ସମସ୍ତ ସେ ଅଳ୍ପ ପରିଶ୍ରମରେ ପାଇପାରେ। ମନୁଷ୍ୟ ପେଟକୁ ମୁଠାଏ ଖାଇବାକୁ ଓ ଦେହକୁ ଖଣ୍ଡେ ପିନ୍ଧିବାକୁ ପାଇଲେ ଯଥେଷ୍ଟ ପାଇଲା। ଆଉ ତାର ଆବଶ୍ୟକ କ'ଣ ? ନିଜର ପରିଶ୍ରମ ତାକୁ ଏତକ ଦେବାକୁ ସମ୍ପୂର୍ଣ୍ଣ କ୍ଷମ। ତେବେ କୁଆଡ଼ାରେ କାହିଁକି ଜାଭା, ସୁମାତ୍ରା, ଆଫ୍ରିକା, ମାଡ଼ାଗାସ୍କର ପ୍ରଭୃତି ଦୂର ଦେଶକୁ ବଣିଜ ନେଇ ଯାଇ ଜୀବନଟାକୁ ସଙ୍କଟାପନ୍ନ କରିବ ? ଜୀବନରୁ ବଳି ମୂଲ୍ୟବାନ୍ କ'ଣ ହୋଇପାରେ ?

ଭଜନା ପରର ଦୁଃଖ ଦେଖି ସମ୍ଭାଳି ହୋଇ ରହିପାରେ ନାହିଁ। ସବୁଦିନେ ସେ ଖାଲେଇକ ମାଛ ବିକିକରି ତା ପରିବର୍ତ୍ତେ ଚାଉଳ, ଡାଲି, ତେଲ, ପ୍ରଭୃତି ନେଇ ଘରକୁ ଫେରେ। କେବେ କେବେ ଲୁଣ, ଶୁଖୁଆ ଅଥବା ଚୁପେଡ଼ିର ହାତକଟା ସୂତା ନିଏ। ଯେଉଁଦିନ ଆଗରେ କୌଣସି ରୋଗଗ୍ରସ୍ତ ଭିକ୍ଷୁକ ପଡ଼ିଯାଏ ସେଦିନ ସେ ମହାଆନନ୍ଦରେ ସେତକ ତା ଆଗରେ ଥୋଇ ହସି ହସି ଖାଲି ହାତରେ ଘରକୁ ଫେରେ।

ଭଜନା ଏପରି କରିବାଦ୍ୱାରା ମନରେ ତାର ଗର୍ବ ଏବଂ ଆନନ୍ଦ ଜାତ ହୁଏ। ସେଦିନ ସେ ତାର ଦୈନିକ ଲିପିରେ କେତେ କ'ଣ ଲେଖିଯାଏ। ଅବଶ୍ୟ ଚୁପେଡ଼ି ଏପରି କାର୍ଯ୍ୟକୁ ପସନ୍ଦ କରେ ନାହିଁ। ସମୟ ସମୟରେ ମଧ୍ୟ କହିଥାଏ, ଘର କରି ଭବିଷ୍ୟତ ନିମନ୍ତେ କିଛି ସଞ୍ଚୟ କରିବା ଉଚିତ। ଅଳ୍ପ ଦେହ

ମୁଣ୍ଡ ଅଛ, କିଏ ଦେବ ତେତେବେଳକୁ ? ଭଜନା ଏ ସବୁ ଶୁଣିବା ଲୋକ ନୁହେଁ । ସେ କହେ ସଞ୍ଚୟ କରିବା ସ୍ତ୍ରୀଲୋକଙ୍କର କାମ । କୌଣସି ଉପାୟରେ ସେମାନେ ମନ୍ଦମୁହୂର୍ତ୍ତ ନିମନ୍ତେ ସଞ୍ଚୟ କରି ରଖିବେ ନିଶ୍ଚୟ । ଏ ବି ସତ କଥା । ବଖତବେଳେ ରୂପେଇ ଦିନେ କାହିଁକ ଦଶଦିନ ଚଳାଇ ନେଇଛ ।

ଭଜନା ଭାବେ, ସେ ତାର କ୍ଷୁଦ୍ର ମରୁ ଦ୍ୱୀପର ଅଧିପତି । 'ଦେଖିଇ ନେତ୍ର ଯାହା ଚଉଦିଗର, ସେ ସବର ଅଟଇ ମୁଁ ଅଧୀଶ୍ୱର ।' ଯେତେବେଳେ ସେ ସମୁଦ୍ର କୂଳରୁ ନୌକା ମେଲି ଏକାକୀ ନୀଳସମୁଦ୍ରର ତରଙ୍ଗ ଭେଦ କରି ଭାସି ଭାସି ଖୁଣ୍ଟିଆ ଦ୍ୱୀପ ଅଡ଼େ ଗଳିଥାଏ, ମନଫୁଲାଣିଆ ସଙ୍ଗୀତ ଗାଇ ଗାଇ, ସ୍ୱର୍ଗରେ ଇନ୍ଦ୍ର ମଧ ତା'ର ଅନନ୍ଦ ଦେଖି ଈର୍ଷା କରୁଥିବେ । ଯେଉଁଦିନ ଭଜନାର ବିଶେଷ ଅନୁରୋଧରେ ରୂପେଇ ତା'ର ବଳେଇଟି ସଙ୍ଗରେ ନେଇ ନୌକାରେ ଉଠେ, ଭଜନା ଅହୁରି ଅନନ୍ଦରେ ଛାତି ଫୁଲାଇ ଦ୍ୱିଗୁଣ ଉତ୍ସାହରେ ନୌକା ବାହାନଏ ଖୁଣ୍ଟିଆ ଦ୍ୱୀପର ସୌନ୍ଦର୍ଯ୍ୟ ରୂପେଇକୁ ଦେଖାଇବାକୁ ।

କେବେ କେବେ ରୂପେଇ ନୌକା ଖଣ୍ଡି ସମୁଦ୍ରରେ ବାହି ନେବାରେ ସ୍ୱାମୀକୁ ସାହାଯ୍ୟ କରିଥାଏ । ଯେଉଁଦିନ ପବନ ଖୁଣ୍ଟିଆ ଦ୍ୱୀପ ଅଡ଼କୁ ବହୁଥାଏ, ପାଲ ଟାଙ୍ଗି ଉଭୟେ ମୁହଁକୁ ମୁହଁ ଅନାଅନି ହୋଇ ଦୁଃଖସୁଖ ହୁଅନ୍ତି । ଭଜନା ତା'ର ସମୁଦ୍ର ଭ୍ରମଣର ଆଶ୍ଚର୍ଯ୍ୟ ବୃତ୍ତାନ୍ତମାନ ବର୍ଣ୍ଣନା କରି ରୂପେଇକୁ ତ୍ରସ୍ତ, ଆନନ୍ଦିତ, ଆଶ୍ଚର୍ଯ୍ୟାନ୍ୱିତ କରିଏ । ଦେଶ ବିଦେଶରେ ବାଣିଜ୍ୟ କରିବା ସମୟରେ କି କି ଅଦ୍ଭୁତ ଘଟଣା ଭଜନାର ଜୀବନରେ ଘଟିଛି ସମସ୍ତ ସେ ଅକ୍ଷରେ ଅକ୍ଷରେ ବର୍ଣ୍ଣନା କରେ ।

କେବେ କେବେ ଭଜନାର ଶରୀର ଅସୁସ୍ଥ ଥିଲେ କିମ୍ବା ଇଚ୍ଛା କରି ଭଜନା ମାଛ ଧରିବାକୁ ନ ଗଲେ, ନିଜେ ରୂପେଇ ଜାଲଖଣ୍ଡି ଧରି ସମୁଦ୍ର କୂଳରେ ମାଛ ଧରିବାକୁ ଯାଏ । ଏପାଖ ସମୁଦ୍ର କୂଳରେ ମାଛ ଧରିବାର ବିଶେଷ ସୁବିଧା ନାହିଁ । କୂଳର ଅତି ନିକଟରେ ଗଣ୍ଡ । ଏକାକୀ ମାଛ ଧରିବା କଷ୍ଟ । ଖୁଣ୍ଟିଆ ଦ୍ୱୀପ ନିକଟରେ ଜଳର ଗଭୀରତା ଅଳ୍ପ । ରୂପେଇ ଦିନେ ଦିନେ ନୌକାଖଣ୍ଡି ବାହି ଏକାକିନୀ ଖୁଣ୍ଟିଆ ଦ୍ୱୀପକୁ ଯାଏ ବଳେଇର ଭାର ଭଜନା ଉପରେ ପକାଇ ।

ଭଜନାର ପିତାମାତା କିଏ ସେ ତାର ଦୈନିକ ଲିପିରେ କିଛି ଲେଖିପାଇ ନାହିଁ । ରୁପେଇ ସମ୍ବନ୍ଧେ ଏତିକି ମାତ୍ର ଅଛି ଯେ ସେ ରୁପେଇକୁ ଅବାଳ୍ୟରୁ ନିଜ ନିକଟରେ ଦେଖି ଅସୁଛି । ସେମାନଙ୍କ ମଧ୍ୟରେ ବିବାହ କେବେ ହୋଇଥିଲା ଜଣା ନାହିଁ ।

ସମୁଦ୍ର କୂଳରୁ ଖଣ୍ଡିଆ ଦ୍ୱୀପ ପ୍ରାୟ ଏକକ୍ରୋଶ ଦୂର । ଚାରିଆଡ଼େ ଜଳ-ବେଷ୍ଟିତ ସ୍ଥଳଭାଗର ନାମ ଦ୍ୱୀପ—କେବଳ ଏହି ସତ୍ୟକୁ ଅବଲମ୍ବନ କରି ସମୁଦ୍ର ମଧ୍ୟରେ ସେହି କ୍ଷୁଦ୍ର ଚଟାଣଟିକୁ ଯେ ଦ୍ୱୀପ ନାମରେ ପରିଚିତ କରାଗଲା, ଏହା ନୁହେଁ । ସ୍ଥାନୀୟ ଲୋକେ ତାକୁ ସେହି ନାମରେ ଡାକନ୍ତି । ଭଜନା ତା'ର ଦୈନିକ ଲିପିରେ ଏହି କ୍ଷୁଦ୍ର ଚଟାଣଟିକୁ ଦ୍ୱୀପ ବୋଲି ଅଭିହିତ କରିଛି ।

ଖଣ୍ଡିଆ ଦ୍ୱୀପର ଲମ୍ବ ପ୍ରାୟ ଅର୍ଦ୍ଧକ୍ରୋଶ ଏବଂ ଚଉଡ଼ା ତାହାର ଅଧାରୁ କମ । କଳିଙ୍ଗ ଉପକୂଳ ସଙ୍ଗେ କ୍ଷୁଦ୍ର ଦ୍ୱୀପଟି ଲମ୍ବ ଭାବରେ ସମାନ୍ତର । ଦ୍ୱୀପର କୂଳ ସିଧା ନୁହେଁ, ଭଙ୍ଗା, ଭଙ୍ଗା; ସ୍ଥାନେ ସ୍ଥାନେ ସମୁଦ୍ରର ଜଳ ଭିତରେ କିଛିଦୂର ପର୍ଯ୍ୟନ୍ତ ପଶି ଯାଇଛି । କେଉଁଠି ବା ସ୍ଥଳଭାଗ ସମୁଦ୍ର ମଧ୍ୟକୁ ଗୋଜା ହୋଇ ତ୍ରିଭୁଜର ଶୀର୍ଷପରି ପଶି ଆସିଛି । ଦ୍ୱୀପର କୂଳ ବଡ଼ ବଡ଼ ଅକର୍ମଶିଳାରେ ପୂର୍ଣ୍ଣ । ସମୁଦ୍ରର ଗଭୀରତା କୂଳ ନିକଟରେ ନିତାନ୍ତ ଅଳ୍ପ, ତେଣୁ ଏକାକୀ ମାଛ ଧରିବାରେ ଉଭୟ ଭଜନା ଏବଂ ରୂପେଈକୁ ଭାରି ସୁବିଧା ହୁଏ । ନୌକାଖଣ୍ଡି ନିକଟସ୍ଥ କୌଣସି ବୃକ୍ଷ ବା ଲତାରେ ବାନ୍ଧି ସମୁଦ୍ର ଜଳ ଭିତରେ ପ୍ରବେଶ କରି ମାଛ ଧରନ୍ତି । ମାଛ ଧରିବାର ଅନେକ ଉପାୟ ତାଙ୍କୁ ଜଣା । ଯେଉଁଦିନ ପବନର ଅତ୍ୟାଚାରରୁ ବଡ଼ ବଡ଼ ଲହରୀମାନ ଆସି ଦ୍ୱୀପରେ ବାଜେ, ସେହି ଦିନ ଜଳ ମଧ୍ୟରେ ପ୍ରବେଶ କରି ମାଛ ଧରିବା କଷ୍ଟକର ହୋଇ ପଡ଼େ; ସେଦିନ ଡଙ୍ଗାରେ ବସି ମୁଣ୍ଡିଦୁମା ଜାଲରେ ମାଛ ଧରନ୍ତି ।

ସମୁଦ୍ରର ଅନେକ ଦୂର ପର୍ଯ୍ୟନ୍ତ ଜଳ ମଧ୍ୟରେ ସ୍ଥାନେ ସ୍ଥାନେ ଏହି ଅକର୍ମଶିଳା ପଥର ଲୁଚି ରହିଛି । କଳିଙ୍ଗ-ପତ୍ତନ ପ୍ରଭୃତି ନୌବାଣିଜ୍ୟର ପ୍ରଧାନ ସ୍ଥାନମାନଙ୍କରୁ ତାମ୍ରଲିପ୍ତକୁ ଆସୁଥିବା ବାଣିଜ୍ୟ ଦ୍ରବ୍ୟପୂର୍ଣ୍ଣ ବୋଇତଗୁଡ଼ିକ ପ୍ରାୟ ଖଣ୍ଡିଆ ଦ୍ୱୀପର ନିକଟ ଦେଇ ଆସେ । ଏହି ସମସ୍ତ ଜଳର ନିମ୍ନଦେଶସ୍ଥ ପଥର ଦେହରେ ଅଜାଣତ ଭାବରେ ବାଜି ଅନେକ ସମୟରେ ବୋଇତ ଜଳମଗ୍ନ ହୋଇଯାଏ ଏବଂ ମୂଲ୍ୟବାନ୍ ମାନବ ଜୀବନ ବିପଦାପନ୍ନ ହୋଇଥାଏ । ଦୂରଦେଶାଗତ ନାବିକଙ୍କୁ ବିପଦରୁ ରକ୍ଷା କରିବା ନିମନ୍ତେ ଭଜନା ବହୁ ପରିଶ୍ରମ କରି ପଥରଥିବା ସ୍ଥାନମାନଙ୍କରେ ବଡ ବଡ଼ ତମ୍ବାର ଫମ୍ପାଢୋଲ ଭସାଇ ରଖିଛି । ଲୁହାର କଡ଼ି ବାନ୍ଧି, କଡ଼ି ଆଗରେ ବଡ଼ ବଡ଼ ଲୁହା କଣ୍ଟା ବଙ୍କାକରି ଝୁଲାଇ ଢୋଲ ତଳେ ରଖିଛି । ନଙ୍ଗର ପକାଇ ରଖିଥିବାରୁ ପ୍ରକୃତିର କୌଣସି ପ୍ରକାର

ଅତ୍ୟାଗ୍ରର ତୋଲଗୁଡ଼ିକୁ ସ୍ଥାନାନ୍ତରିତ କରିପାରେ ନାହିଁ । ସମୁଦ୍ରର ଲହରୀ ଉଠି ତୋଳରେ ବାଜିଲେ, ତୋଳଟି କେବଳ ସେହି ସ୍ଥାନରେ ହଲିଯାଏ । ଏହି ପ୍ରାକୃତିକ ସୁବିଧାକୁ କାର୍ଯ୍ୟରେ ଲଗାଇବା ନିମନ୍ତେ ଭଜନା ପ୍ରତ୍ୟେକ ତୋଲର ଉପରି ଭାଗରେ ଲୁହାର ବାଡ଼ ସଂଲଗ୍ନ କରିଛି । ବାଡ଼ର ଉଚ୍ଚତା ପ୍ରାୟ ୬।୭ ହାତ । ବାଡ଼ର ଅଗରେ ସମଦ୍ୱିବାହୁ ତ୍ରିଭୁଜ ଆକାରରେ ଖଣ୍ଡେ ଖଣ୍ଡେ ରକ୍ତବର୍ଣ୍ଣର ପତାକା ସାମାନ୍ୟ ପବନରେ ସୁଦ୍ଧା ଫଡ଼ ଫଡ଼ ହୋଇ ବରାବର ଉଡ଼ୁଥାଏ । ପତାକାରେ ଲେଖା ହୋଇଥାଏ "ସାବଧାନ" । ମାତ୍ର ଯେଉଁଥି ନିମନ୍ତେ ଏହା ଲେଖା ହୋଇଥାଏ, ତାହା ଏ ପତାକା ସାଧନ କରିପାରେ ନାହିଁ । କାରଣ ସମୁଦ୍ରର ହାଓ୍ୱାରେ ବରାବର ହଲୁଥିବାରୁ ଦୂରରୁ କିମ୍ବା ନିକଟରୁ ଏହି 'ସାବଧାନ' ଶବ୍ଦଟିକୁ କେହି ପଢ଼ି ପାରନ୍ତି ନାହିଁ । ପତାକା ବେଶି ଦୂରରୁ ଦେଖାଯାଏ ନାହିଁ । ତଥାପି ଯେତିକି ଦୂରରୁ ଦେଖାଯାଏ, ସେତିକିରେ ନାବିକମାନେ ଯଥେଷ୍ଟ ସାବଧାନ ହୋଇଯାନ୍ତି ।

ଭଜନା ପ୍ରତିଦିନ ପ୍ରାୟ ଏହି ବିଷୟରେ ଚିନ୍ତିଏ ଭାବେ । କି ଉପାୟ ଅବଲମ୍ବନ କଲେ, "ନିକଟରେ ବିପଦ ଅଛି" ଏହାକୁ ସେ ଆହୁରି ଦୂରରୁ ନିରୀହ ବିଦେଶୀ ନାବିକମାନଙ୍କୁ ଜଣାଇ ଦେବ । ବହୁଦିନର ଚିନ୍ତା ପରେ ସ୍ଥିର କଲା, ପ୍ରତ୍ୟେକ ବାଡ଼ର ଅଗରେ ଗୋଟିଏ ହେଉ ଅଥବା ଅଧିକ ହେଉ ଘଣ୍ଟା ବନ୍ଧାଯିବ ପ୍ରତ୍ୟେକ ଲହରୀ ତୋଲରେ ବାଜିଲେ, ତୋଲ ଥରି ଉଠିବ ଏବଂ ସଙ୍ଗେ ସଙ୍ଗେ ଘଣ୍ଟାଗୁଡ଼ିକ ବାଜି ଉଠିବ । ପବନ ଯେତିକି ଅଧିକ ଜୋର୍‌ରେ ବହିବ, ଲହରୀ ସେତିକି ପ୍ରବଳ ବେଗରେ ତୋଲକୁ ଆକ୍ରମଣ କରିବ, ତୋଲ ସେତିକି ଅସ୍ଥିର ହୋଇ ଥରି ଉଠିବ ଏବଂ ସଙ୍ଗେ ସଙ୍ଗେ ଘଣ୍ଟାଗୁଡ଼ିକ ବାଜି ଉଠିବ । ବିପଦ ଯେତିକି ପ୍ରବଳ ହେବ, ଘଣ୍ଟାଗୁଡିକ ସେତିକି ଜୋର୍‌ରେ ସାବଧାନ କରାଇ ଦେବେ । ଅବଶେଷରେ ଭଜନା ସେଇଆ କଲା । ବହୁଦୂରରୁ ଘଣ୍ଟାଗୁଡ଼ିକର ନାଦ ଶୁଭେ । ସମୁଦ୍ରରେ ଲହରୀର ଅବସାନ ନାହିଁ । ତେଣୁ ଘଣ୍ଟାଗୁଡ଼ିକ ଦିନରାତି ସବୁବେଳେ ବାଜୁଥାଏ । ଲୋକେ ଭଜନାର ଏପରି କାର୍ଯ୍ୟ ନିମନ୍ତେ ତାକୁ ବହୁତ ପ୍ରଶଂସା କଲେ । କିନ୍ତୁ ଭଜନା ସେପରି ପ୍ରଶଂସାରେ ଆନନ୍ଦ ବୋଧ କରେ ନାହିଁ, ଟିକିଏ କେବଳ ହସିଦିଏ ।

ଯେଉଁ ପୂର୍ଣ୍ଣିମା ରାତିରେ ସମଗ୍ର ଜଗତ ସୁଧାକରଙ୍କର ଅପୂର୍ବ ଜ୍ୟୋତିରେ ଶୋଭିତ ହୋଇ ସ୍ୱର୍ଗର ସୌନ୍ଦର୍ଯ୍ୟ ସଙ୍ଗେ ବାଦ କରି ଉଠେ, (କହିବାର କଥା, ଯେ ନିତ୍ୟ ସୁନ୍ଦର, ନିଜକୁ ସୁନ୍ଦର ବୋଲି ସେ ମନରେ ଟିକିଏ ହେଲେ ଗର୍ବ ଅନୁଭବ କରେ ନାହିଁ; କିନ୍ତୁ ଯାହାର ସୌନ୍ଦର୍ଯ୍ୟ ଦିନକପାଇଁ, ସେହି ଦିନଟି ସେ ମନରେ ଖୁବ ଗର୍ବ ଅନୁଭବ କରେ, ଛାତି ଫୁଲାଇ କହିଉଠେ "ମୁଁ ସୁନ୍ଦର । ) ସୌନ୍ଦର୍ଯ୍ୟପିପାସୁ, ଭଜନା ଆନନ୍ଦରେ ଚିତ୍କାର କରି ନାଚି ଉଠେ । ମାତ୍ର ବର୍ଷ

ଦ୍ୱୀପର ସେହି କ୍ଷୁଦ୍ର ପାହାଡ଼ର ଉପରସ୍ଥ ବସ୍ତ୍ରମନ୍ଦିର ନିକଟରେ ଦଣ୍ଡାୟମାନ ହୋଇ ଚତୁର୍ଦ୍ଦିଗ୍ ନିରୀକ୍ଷଣ କରି ଆନନ୍ଦରେ ସଙ୍ଗୀତ ଗାଇ ଉଠେ । ସେ ସଙ୍ଗୀତର ଅର୍ଥ କେବଳ ଭଜନାକୁ ଜଣା । କେବେ କେବେ ଏକାକୀ ସେହି ଧୂସର ବାଲୁକା ପ୍ରାନ୍ତରର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଦୌଡ଼ୁଥାଏ, ବାଲି ହରିଣର ଅନୁସରଣ କରି । କେବେ କେବେ ବଳାତ୍କାର କରି ରୁପେଇକୁ ସଙ୍ଗରେ ନେଇ ସମୁଦ୍ର କୂଳକୁ ଯାଏ ଏବଂ ନୌକା ଉପରେ ରୁପେଇକୁ ବସାଇ, ନିଜେ ବସି ଜ୍ୟୋତ୍ସ୍ନାଧବଳିତ ସାଗର ତରଙ୍ଗ ଆଡ଼କୁ ନୌକାଖଣ୍ଡି ପେଲିଦିଏ । ତରଙ୍ଗ ଦୋଳାରେ ଦୋହଲି ଦୋହଲି ନୌକାଖଣ୍ଡି ଖୁଣ୍ଟିଆ ଦ୍ୱୀପ ଆଡ଼େ ଧୀରେ ଧୀରେ ଚାଲିଯାଏ । ଏଣେ ନୌକା ମଧ୍ୟରେ ଭଜନା ଏବଂ ରୁପେଇ ନୀରବରେ ପ୍ରକୃତିର ସୌନ୍ଦର୍ଯ୍ୟ ଉପଲବ୍ଧି କରନ୍ତି ।

ଡଙ୍ଗା ଖୁଣ୍ଟିଆ ଦ୍ୱୀପରେ ଲାଗେ । ଜ୍ୟୋତ୍ସ୍ନାମୟୀ ରଜନୀରେ ଉଭୟେ ସାଗରର ଘୋର ଗର୍ଜନ ସଙ୍ଗେ ସଙ୍ଗେ ଘଣ୍ଟାର ଠଣଠଣ ଧ୍ୱନି ଶୁଣି ବଡ଼ ଆନନ୍ଦ ଉପଲବ୍ଧି କରନ୍ତି । କୂଳର ଅନତିଦୂରରେ ଥିବା ନାରିକେଳ ବୃକ୍ଷଗୁଡ଼ିକରୁ ଫଳ ଆଣି ଉଭୟେ ଭକ୍ଷଣ କରନ୍ତି । ଭଜନା କହେ, "ନଡ଼ିଆ ପରି ଉତ୍କୃଷ୍ଟ ପଦାର୍ଥ ଜଗତରେ କିଛି ନାହିଁ । ଏଥିରେ ନାହିଁ କଣ ? ରୁଟି ଅଛି, ସର୍ବତ ଅଛି, ନାଲି ନଡ଼ିଆରେ ଲହୁଣୀ ଅଛି ।"

ଖୁଣ୍ଟିଆ ଦ୍ୱୀପର କୂଳରୁ ମାତ୍ର କେତେକ ହାତ ଛାଡ଼ି ପାହାଡ଼ ଆରମ୍ଭ ହୋଇଛି । ମାରବ୍ୟ ଦ୍ୱୀପର ବାଲିପାହାଡ଼ ଅପେକ୍ଷା ଏହାର ଉଚ୍ଚତା ଟିକିଏ ବେଶୀ । ଦୈର୍ଘ୍ୟ ପ୍ରସ୍ଥ ମଧ୍ୟ ଅଳ୍ପ ନୁହେ । ଦ୍ୱୀପଟି ଯେତେ, ପର୍ବତ ତାହିଁରୁ ଅଳ୍ପ ଛୋଟ । ପର୍ବତର ନିମ୍ନଦେଶର ଚତୁର୍ଦ୍ଦିଗରେ ନାରିକେଳ ବୃକ୍ଷ । ଉପର ଆଡ଼କୁ ନାନାଜାତି ବୃକ୍ଷ ଲତା । ଜଙ୍ଗଲ ବୁଦାବୁଦିକିଆ । ଘଞ୍ଚ ନ ହୋଇଥିବାରୁ ଭୟର କୌଣସି କାରଣ ନ ଥାଏ । ପର୍ବତର ଅଧିକ ଗଡ଼ାଣିଆ ନୁହେଁ ତେଣୁ ଉପରକୁ ଉଠିବାକୁ କଷ୍ଟ ହୁଏ ନାହିଁ ।

ଭଜନା ଖୁଣ୍ଟିଆ ପର୍ବତର ନିମ୍ନଦେଶରେ ସ୍ଥାନେ ସ୍ଥାନେ ଖଣ୍ଡେ ଖଣ୍ଡେ କୁଟିର ପ୍ରସ୍ତୁତ କରିଛି । ମାଛ ଧରୁଥିବା ସମୟରେ ହଠାତ୍ ଝଡ଼ ବର୍ଷା ହେଲେ, ଏଥିରୁ କୌଣସିଟିରେ ଆଶ୍ରୟ ଗ୍ରହଣ କରେ । ଯେଉଁଦିନ ଭଜନା ଏବଂ ରୁପେଇ ଉଭୟେ ଖୁଣ୍ଟିଆ ଦ୍ୱୀପରେ ଆଶ୍ରୟ ଗ୍ରହଣ କରନ୍ତି ସେଦିନ କୁଟୀରରେ ରନ୍ଧନ କରନ୍ତି । ରନ୍ଧନ କରିବା ନିମନ୍ତେ ପ୍ରତ୍ୟେକ କୁଟୀରରେ ଦୁଇଟି କରି ହାଣ୍ଡି ରଖାଥାଏ । କେବଳ ସେତିକି ନୁହେ, ହାଣ୍ଡିରେ ଚାଉଳ ରଖି ଘାଙ୍କି ଦେଇଥାଏ । ଏହାର ପ୍ରଧାନ କାରଣ, କୌଣସି ହତଭାଗ୍ୟ ନାବିକ ଅକସ୍ମାତ

ସେଠାରେ ଉପସ୍ଥିତ ହେଲେ, ଅନାହାରରେ ସମୟ ଯାପନ କରିବ ନାହିଁ । ଅଗ୍ନି ନିମନ୍ତେ ଚକ୍ମକି ପଥର ଏବଂ ଜଳ ନିମନ୍ତେ ଝରଣା ତ ରହିଛି ।

ଦିନେ ଭଜନା ଓ ରୂପେଇ ଖୁଣ୍ଟିଆ ଦ୍ୱୀପରେ ମାଛ ଧରୁ ଧରୁ ସନ୍ଧ୍ୟା ହୋଇଗଲା । ସେଦିନ ଜଳଦେବୀଙ୍କର ନିର୍ଦ୍ଦୟତାରୁ ସେମାନେ ପ୍ରଚୁର ମାଛ ଧରିପାରି ନ ଥିଲେ । ତେଣୁ କୂଳକୁ ପ୍ରତ୍ୟାବର୍ତ୍ତନ କରିବା ନିତାନ୍ତ ଆବଶ୍ୟକ ମନେ କଲେ ନାହିଁ । ଖୁଣ୍ଟିଆ ଦ୍ୱୀପରେ ରାତି ଯାପନ କରିବେ, ଏହି ଉଦ୍ଦେଶ୍ୟରେ ଝରଣା ନିକଟସ୍ଥ କୌଣସି ଗୋଟିଏ କୁଡ଼ିଆରେ ଆଶ୍ରୟ ଗ୍ରହଣ କରିବା ନିମନ୍ତେ ନୌକାଖଣ୍ଡି କୂଳରେ ବାନ୍ଧି ଦିନକ ପରିଶ୍ରମର ଫଳସହ ନିକଟସ୍ଥ କୁଟିରକୁ ଫେରି ଆସିଲେ ।

ସନ୍ଧ୍ୟାଗମର ସଙ୍ଗେ ସଙ୍ଗେ ଅନ୍ଧକାର ମାଡ଼ି ଆସିଲା । ଅବରଖ (ଅଭ୍ର) ନିଲଠଣ କାଳି ରୂପେଇ ରନ୍ଧନ କାର୍ଯ୍ୟରେ ନିଜକୁ ନିଯୁକ୍ତ କଲା । ଝକ୍ମକା ପଥର ମାରି ଶୁଖିଲା କାଠରେ ନିଆଁ ଲଗାଇଲା । ଭଜନା ଝରଣାରୁ ଜଳଆଣି ରୂପେଇର ନିକଟରେ ରଖିଦେଲା । ନଡ଼ିଆ ପତ୍ରର ପଟି ଖଣ୍ଡି ରୂପେଇ ନିକଟରେ ପକାଇ ତାହାରି ଉପରେ ନିଜର ଶ୍ରାନ୍ତ ଶରୀର ଲମ୍ବାଇ ଦେଲା । ଗ୍ରୀଷ୍ମ ରଜନୀ । ଧୀରେ ଧୀରେ ସାନ୍ଧ୍ୟସମୀରଣ ଗଛପତ୍ର ଆନ୍ଦୋଳିତ କରି ଚାଲିଗଲା । ଦୀପର ଅଗ୍ନିଶିଖା ସେହି ଧୀର ପବନରେ ନାଚି ଉଠିଲା । ଏଣେ ଅନଳ ଦେଖି ଦ୍ୱୀପର ନାନାଜାତି କୀଟପତଙ୍ଗ ସେହିଠାରେ ଆସି ରୁଣ୍ଡ ହୋଇଗଲେ । ଶ୍ରାନ୍ତ ଭଜନାର ଦେହ ଉପରେ ନାନାପ୍ରକାର କ୍ରୀଡ଼ାକୌତୁକ ଆରମ୍ଭ କରିଦେଲେ । ମଶକର ପ୍ରଭାବରୁ ଭଜନା ଅଧୀର ହୋଇ ନିଜ ଦେହରେ ବ୍ୟର୍ଥ ଚାପୁଡ଼ା ମାରିହେଲା । ଦେହରୁ ତେଣେ ଘର୍ମ ନିର୍ଗତ ହେଉଛି । ଆଃ, କି ଅଧୀରତା; ଭଜନା ଅସ୍ଥିର ହୋଇ ଚିତ୍କାର କରି ଉଠିଲା ।

ମାତ୍ର ତା'ର ସେ ଚିତ୍କାରରେ ବାଧା ଦେଇ ରୂପେଇ କହିଲା, ( ଟିକିଏ ଭୀତ ସ୍ୱରରେ ) ଶୁଣ, ଶୁଣ, ସମୁଦ୍ର ମଧ୍ୟରେ କାହିଁ କେତେ ଦୂରରୁ କିଏ ଜଣେ ଆର୍ତ୍ତ ସ୍ୱରରେ କାନ୍ଦୁଛି ।

ଭଜନା ଥଟ୍ଟା କରି ଉତ୍ତର କଲା, ଆଉ କିଏ ହୋଇଥିବ । ବୋଧହୁଏ ସମୁଦ୍ର ମଧ୍ୟରେ ପ୍ରେତିନୀ କାନ୍ଦୁଛି । ଏ ଦେଶରେ ପ୍ରେତିନୀର ଅତ୍ୟାଚାର ତେରି ବେଶି କି ନା ।

ଥଟ୍ଟା କରୁଛ ? ମୁଁ କ'ଣ ମିଛ କହୁଛି ? କାନ ଡେରି ଶୁଣୁ ନା ।

କାହିଁ କିଛି ତ ଶୁଭୁ ନାହିଁ ।

ତେବେ ତମ କାନରେ କିଛି ଦୋଷ ରହିଛି ନିଶ୍ଚୟ । ଏତିକି କହି ରୁପେଇ ବିରକ୍ତ ହୋଇ ପୁନର୍ବାର ରନ୍ଧନ କାର୍ଯ୍ୟରେ ଲାଗିଗଲା । ଭଜନା ଅବଶେଷ ନଳିଚଣଟି ହାତରେ ଧରି ସମୁଦ୍ର କୂଳଆଡ଼େ ଗଲା ।

ଭଜନା ସମୁଦ୍ର କୂଳରେ ଉପସ୍ଥିତ ହୋଇ ଦେଖିଲା ବହୁତ ଦୂରରେ ଦିଗ୍‌ବଳୟ ନିକଟରେ ଗୋଟିଏ କ୍ଷୁଦ୍ର ଆଲୋକ ହଲି ହଲି ଧୀରେ ଧୀରେ ଦ୍ୱୀପ ଆଡ଼କୁ ଆସୁଛି । ସେତେବେଳକୁ ଦୁର୍ଘ ଘଡ଼ ଅନ୍ଧାର ଲୁଚିଗଲାଣି । ଚନ୍ଦ୍ରକିରଣରେ ସମୁଦ୍ରର ବକ୍ଷୋଭରିତ ବହୁ ଉଜ୍ଜ୍ୱଳ ଦେଖା ଗଲାଣି । ମାତ୍ର ଭଜନା ଠିଆ ହୋଇଥିବା ସ୍ଥାନଟିରୁ ତଥାପି ଅନ୍ଧକାର ଗଲଯାଇ ନାହିଁ । ଏହାର ପ୍ରଧାନ କାରଣ, ପର୍ବତର ଛାୟାରେ ଦ୍ୱୀପର ପଶ୍ଚିମ ଦିଗ ସମ୍ପୂର୍ଣ୍ଣ ଆବୃତ ଥିଲା । ଭଜନା କୂଳର ସେହି ଅନ୍ଧକାର ସ୍ଥାନରେ ଠିଆହୋଇ ଦେଖିଲା ଦିଗ୍‌ବଳୟର ନିକଟରୁ ହଳଦିଆ ଆଲୋକଟି ଧୀରେ ଧୀରେ ଖୁଣ୍ଟିଆ ଦ୍ୱୀପର ନିକଟବର୍ତ୍ତୀ ହେଉଛି ।

ଆଲୋକର ଆକାର ଏବଂ ଉଜ୍ଜ୍ୱଳତା କ୍ରମେ ବଢୁଛି । ପ୍ରଥମେ ରୋହିଣୀ ନକ୍ଷତ୍ର ପରି ଦେଖା ଯାଉଥିଲା, ବର୍ତ୍ତମାନ ଧ୍ରୁବତାରାର ଆକାର ଧାରଣ କଲାଣି । ଭଜନା ଶୁଣିଲା ଖୁଣ୍ଟିଆ ଦ୍ୱୀପର ଚତୁର୍ଦ୍ଦିଗରେ ଘଣ୍ଟା ଗୁଡ଼ିକରୁ ଠଣ ଠଣ ଶବ୍ଦ ଭେଦ କରି କାହାର ମର୍ମଭେଦୀ ଆକୁଳ ଚିତ୍କାର । ସେ ଆଉ କେବେ ଏପରି ଶୁଣି ନ ଥିଲା । ରୁପେଇ ଯେ ଏହି ଚିତ୍କାରକୁ ଲକ୍ଷ୍ୟ କରି ଭଜନାକୁ ପଚାରୁଥିଲା, ସନ୍ଦେହ ନାହିଁ । ରୁପେଇର କଥାରେ ବିଶ୍ୱାସ ନ କରି ଥଟ୍ଟା କରିଥିବାରୁ ସେ ଦୁଃଖିତ ହେଲା ।

ଧୀରେ ଧୀରେ କାନ୍ଦଣାର ସ୍ୱର ନିକଟତର ହେଲା । ଏଥର ଭଜନା ସ୍ପଷ୍ଟ ଶୁଣି ପାରିଲା ଏକ ରମଣୀର ଆର୍ତ୍ତ ଚିତ୍କାର ମଧ୍ୟ ଦେଇ କେତେ ଜଣ ଲୋକଙ୍କର ବିକଟ ହାସ୍ୟ । ଅଦୂରରେ ଗୋଟାଏ ପ୍ରକାଣ୍ଡ ବୋଇତ ଧୀରେ ଧୀରେ ଖୁଣ୍ଟିଆ ଦ୍ୱୀପଆଡ଼େ ଆସୁଛି । ପ୍ରଥମେ ବୋଇତର ମାସ୍ତୁଲ ଉପରେ ନଳିଚଣଟିର ଆଲୋକ ଦେଖିବାକୁ ପାଉଥିଲା; କିନ୍ତୁ ଜାହାଜ ନିକଟକୁ ଆସିବାରୁ ବହୁ ଆଲୋକ ଫୁଟି ଉଠିଲା ।

ଭଜନାର ଆଉ ସନ୍ଦେହ କରିବାରେ କୌଣସି କାରଣ ରହିଲା ନାହିଁ । ନନ୍ଦନ କୂଟ କି ପ୍ରେତମାନେ ନୁହନ୍ତି ପ୍ରକୃତ ମନୁଷ୍ୟର—ଏତିକି ଜାଣି ସେ ରୁପେଇ ନିକଟକୁ ଫେରିଗଲା ।

ଭଜନା ରୁପେଇକୁ ପ୍ରକୃତ ସମ୍ବାଦ ଦେଇ ନିକଟରେ ଗୋଟିଏ ଖର ଚୁଲାରେ ଅଗ୍ନି ସଂଯୋଗ କଲା । ଅନଳ ଶିଖା ଉର୍ଦ୍ଧ୍ୱକୁ ଉଠିଲା ଏବଂ ସଙ୍ଗେ ସଙ୍ଗେ ସ୍ଥାନଟି ଉଜ୍ଜ୍ୱଳ କଲା । ଭଜନା ଆନନ୍ଦରେ ଦୂରରୁ ସେହି ଅନଳ ଶିଖାକୁ

ଅପଲକ ନୟନରେ ଗୁହିଁ ରହିଲା । ଚଡ଼ ଚଡ଼ ଶବ୍ଦରେ ଅଗ୍ନି ବୁଢ଼ାକୁ ଭସ୍ମକଲ କିଛି ସମୟ ପରେ ନିର୍ବାପିତ ହେଲା । ଭଜନା କୁଟୀରକୁ ଫେରି ଆସିଲା । ସେତେବେଳକୁ ରୂପେଇର ରନ୍ଧନ କାର୍ଯ୍ୟ ଶେଷ ହୋଇଥିଲା ।

ଉଭୟେ ଖଣ୍ଡେ କଦଳୀ ପତ୍ରରେ ଖାଇବସିଲେ । ଭାତ ଏବଂ ମାଛ କଦଳୀ ଖୋଲ । ଝରଣାର ନିକଟରେ ଅନେକ କଦଳୀଗଛ । ଜଳ ଆଣିବା ସମୟରେ ଭଜନା କେତେଖଣ୍ଡି ପତ୍ର ଓ କାନ୍ଧଏ ବନ୍ୟ କଦଳୀ କାଟି ଆଣିଥିଲା । ମାଛ କଦଳୀ ଖୋଲରେ ଘିଅ କିମ୍ବା ତେଲର ଗନ୍ଧ ନ ଥିଲା । ହଳଦୀ କିମ୍ବା ଅନ୍ୟାନ୍ୟ କୌଣସି ମସଲା ବା ଆସିବ କାହୁଁ ? ଜହ୍ନାକୁ ଯେ ନିଜର ଅଧୀନରେ ରଖିଛି, ତାକୁ ସମସ୍ତ ପଦାର୍ଥ ଭଲ ଲାଗେ । ରୂପେଇ ହାତର ସେହି ଅଣହଳଦିଆ, ଅଣବଘର, ଅଣଫୁଟା ଖୋଲ ଝୋଳିକ ଭଜନାକୁ ବେଶ୍ ଭଲ ଲାଗିଲା । ଉଭୟେ ଆନନ୍ଦରେ ଭୋଜନ ଶେଷ କଲେ ।

ରୂପେଇ ଘାର ବଳେଇଟିକୁ ଗଣ୍ଡିଏ ଭାତ ଖୁଆଇଲା । ସୁକୁମାରିଆ ବଳେଇ ଛୁଆଟିକୁ ପାଣି ସିଝା ମାଛ ଭଲ ଲାଗିଲା ନାହିଁ । ଦୁଃଖିତ ହୋଇ ରୂପେଇ କହିଲା ପୁଷିଟି ମୋର ଅଜା ଉପାସ ରହିଲା । ତା ଦେହ କ'ଣ ଖରାପ ହେଲାଣି ।

ଭଜନା ଟିକିଏ ହସି ଦେଇ କହିଲା, ଏଥର ତାର କାଳ ପୁରିଲା । ହସିଆର ! ଚାନ୍ଦଗୁପ୍ତ ତାର ପାଞ୍ଜି ପୋଛିଲାଣି ।

ରୂପେଇ ବିରକ୍ତ ହୋଇ କହିଲା, ତମେ ସେମିତିକା କାଳକଥା ତୁଣ୍ଡରୁ ବାହାର କର ନା । ସତେ କାଲେ, ମୋ ପୁଷି ଦେହ କାହିଁକି ଖରାପ ହେବ । ତାଙ୍କ ଦେହ ତ ସୁନା । ଆଲୋ, ଆ । ଏହା କହି ପୁଷିକୁ କୋଳକୁ ଟାଣି ନେଲା । ନଡ଼ିଆ ପଟି ଉପରେ ଶୋଇପଡ଼ି ପୁଷିକୁ କୋଳରେ ଶୁଆଇ, ସ୍ନେହରେ ତା'ର ପିଠି ଆଉଁସି ଦେଲା ।

ରାତିକ ନିମନ୍ତେ ବିଶ୍ରାମ ନେବା ପୂର୍ବରୁ ଭଜନା ଥରେ ସମୁଦ୍ର ମଧ୍ୟସ୍ଥିତ ପ୍ରକାଣ୍ଡ ବୋଇତଟି ଦେଖିବାକୁ ଆସିଲା । ଦେଖିଲା ଦ୍ୱୀପ ନିକଟରେ ଅଳ୍ପ ଦୂରରେ ବୋଇତ ନଙ୍ଗର ପକାଇ ରହିଛି । ରମଣୀର ବିକଳ ସ୍ୱର ଆଉ ଶୁଭୁନାହିଁ । କେତେ ଜଣ ଲୋକଙ୍କର ଉଚ୍ଚ ହାସ୍ୟ ତଥାପି ବନ୍ଦ ହୋଇନାହିଁ । ସମୟ ସମୟରେ ରାତିର ନୀରବତା ଭଙ୍ଗକରି ଉଠୁଛି ହାସ୍ୟରୋଳ ।

ଭଜନାକୁ ଏପରି ଦୃଶ୍ୟ ନୂତନ ନୁହେଁ । ଏଥିପୂର୍ବେ ସେ ଏପରି ଅନେକ ବୋଇତ ଖୁଣ୍ଟିଆ ଦ୍ୱୀପ ନିକଟରେ ଆଶ୍ରୟ ନେବାର ଦେଖିଛି । ସାଧାରଣତଃ ଦୂର ଦେଶାଗତ ବୋଇତଗୁଡ଼ିକ ରାତି ହେଲେ ଏହି ଖୁଣ୍ଟିଆ ଦ୍ୱୀପ ନିକଟରେ ଆଶ୍ରୟ

ଗ୍ରହଣ କରିଥାନ୍ତି । କାରଣ ରାତ୍ରି ସମୟରେ ବୋଇତ ଚଳାଇ ତାମ୍ରଲିପ୍ତାଭିମୁଖେ ଯିବା ସମ୍ପୂର୍ଣ୍ଣ ନିରାପଦ ନୁହେ । ପ୍ରବୀଣ ନାବିକମାନେ ଜାଣନ୍ତି ଯେ ଏହି ଖୁଣ୍ଟିଆ ଦ୍ଵୀପ ନିକଟରୁ ଅନେକ ଦୂର ପର୍ଯ୍ୟନ୍ତ ସ୍ଥାନେ ସ୍ଥାନେ ସମୁଦ୍ର ମଧ୍ୟରେ ବଡ଼ ବଡ଼ ପଥର ଲୁଚି ରହିଛି । ପୂର୍ବରୁ ସାବଧାନ ହୋଇ ବୋଇତ ଖୁଣ୍ଟିଆଦ୍ଵୀପ ନିକଟରେ ବୋଧହୁଏ ସେଇଥି ନିମନ୍ତେ ରଖିଛନ୍ତି ।

ଭଜନା କୁଟୀରକୁ ଫେରିଯାଇ ଖଣ୍ଡେ ନଡ଼ିଆ ଚଟେଇ ଉପରେ ବିଶ୍ରାମ ଗ୍ରହଣ କଲା । ସେ ଦିନ ସେ ତାହାର ଦୈନିକ ଲିପିରେ କିଛି ଲେଖିପାରି ନ ଥିଲା । ତାଳପତ୍ରର ପୋଥି ଓ ଲେଖନ ସଙ୍ଗରେ ନେଇ ନ ଥିବାରୁ ତା'ର ପ୍ରଧାନ ଆନନ୍ଦ ଜୀବନୀ ଲେଖାରୁ ବାଧ ହୋଇ ସେ ଦିନ ସେ ବିରତ ହେଲା ସତ, କିନ୍ତୁ କେଜାଣି କାହିଁକି ମନରେ ଆଉ ଶାନ୍ତି ଆସିଲା ନାହିଁ । ବ୍ୟସ୍ତ ହୋଇ ଅର୍ଦ୍ଧନିଦ୍ରିତା ରୂପେଇକୁ ଉଠାଇ କହିଲା, ଦେଖ, ଆଜି ଦିନଟା ଏହିପରି ବୃଥାରେ କଟିଗଲା । ମୁଁ କିଛି ଦି' ଧାଡ଼ି ଲେଖିପାରିଲି ନାହିଁ । ମନଟା ଭାରି ବ୍ୟସ୍ତ ହେଉଛି ।

ରୂପେଇ ବିରକ୍ତ ହୋଇ ଆଖି ମଳି ମଳି କହିଲା, ମଲା ମୋର, ତମର ସେ ରୂଳିଲେଖା । ମୁଁ ତମର କି ଅପରାଧ କଲି ବୋଲି ମୋ କଂଚା ନିଦଟା ଭାଙ୍ଗିଦେଲ ? ମଣିଷ କାମ ଦାମ କରି ଟିକିଏ ପଡ଼ି ଯାଇଥିଲା । ତମର ମନଟା ବ୍ୟସ୍ତ ହେଲେ ମୁଁ କ'ଣ କରିବ ?

ତମୁକୁ ମୁଁ ତ କିଛି କରିବାକୁ କହୁନାହିଁ । ମୋର କହିବାର ଏତିକି ଯେ ମୁଁ କାଲି ବଡ଼ ସକାଳୁ ଏକୁଟିଆ ପହଁରି ପହଁରି ସେ ପାଖକୁ ଚାଲି ଯିବି । କାଲି ଆଉ ମାଛ ଫାଛ ମୁଁ ଧରି ପାରିବି ନାହିଁ । ଦିନ ଗୋଟାକଯାକ ପୋଥି ଲେଖିବି । ତେମେ ଏଣୁ ମାଛ ଧରି, ନଡ଼ିଆ କଦଳୀ ସଙ୍ଗରେ ନେଇ ଠିକ୍ ସମୟରେ ପହଞ୍ଚିଯିବ । ନୋହିଲେ ଯେତେବେଳେ ଇଚ୍ଛା ଡଙ୍ଗା ଫିଟେଇ ଚାଲିଯିବି । ଯଦି ଡେରି ହୁଏ ଗଣ୍ଡାଏ ଭାତ ପଛେ ତମ ପାଇଁ ମୁଁ ଫୁଟାଇ ଦେଇଥିବି ।

ରୂପେଇ ଭଜନାର କଥା ଶୁଣି ନ ଶୁଣିଲା ପରି ହାଇ ମାରୁ ମାରୁ ପଟି ଉପରେ ଶୋଇ ପଡ଼ିଲା । ଭଜନା ମଧ୍ୟ ବିଶେଷ ଡେରି କଲା ନାହିଁ ।

ଯେତେବେଳେ ରୂପେଇ ଶଯ୍ୟା ତ୍ୟାଗ କରେ ସେତେବେଳକୁ ରାତି ସମ୍ପୂର୍ଣ୍ଣ ରୂପେ ଶେଷ ହୋଇ ନ ଥିଲା । ଅନ୍ଧକାର ଘନ ବୃକ୍ଷଲତା ଏବଂ ଗୁଳ୍ମର ନିମ୍ନଦେଶରେ ନିଜକୁ ଲୁଚାଇ ରଖିଥିଲେ ମଧ୍ୟ ସମୁଦ୍ର ବକ୍ଷ ଯଥେଷ୍ଟ ପରିଷ୍କାର ଦେଖାଯାଉଥିଲା । ରୂପେଇ ଶଯ୍ୟା ତ୍ୟାଗ କରି ଦେଖେ, ନିକଟରେ ଭଜନାର ଚଟେଇ ଖଣ୍ଡ ପଡ଼ିଛି, ସେ ନାହିଁ । ଭାବିଲା ତେବେ ସତରେ ସେ ଚାଲିଗଲେ । ରାତି ନ ପାହୁଣୁ ସମୁଦ୍ର ପହଁରି ପହଁରି ଚାଲିଗଲେ । ଧନ୍ୟ ତାଙ୍କର ସେ ଅଲକୃତ ମାଲକୃତ ଲେଖାର ନିଶା । ଅସି ଦରବୁଢ଼ା ହେଲେ, ତଥାପି ପିଲାଳିଆ ଢଙ୍ଗ ଛାଡ଼ିଲେ ନାହିଁ । ମାଛଧରା କାମ ମୋର ମୁଣ୍ଡରେ ପକାଇ ନିଶ୍ଚିନ୍ତରେ ଚାଲିଗଲେ । ଏଣେ ମୁଁ ହଇରାଣ ହୋଇ ମରିବି । ଜଣିକିଆ ଜାଲଖଣ୍ଡି ପାଖରେ ନାହିଁ, ଯାଇ ଡଙ୍ଗା ଭିତରେ । ପୁଷିଟିକୁ ରଖିବି କେଉଁଠି ?

ଏହାପରେ ଚନ୍ଦ୍ରାକର ରୂପେଇ ପୁଷିକୁ କାଖରେ ଯାକି ସମୁଦ୍ର କୂଳଆଡ଼େ ଚାଲିଲା । ସମୁଦ୍ର କୂଳରେ ଡଙ୍ଗାଟି ପୂର୍ବ ପରି ବନ୍ଧାରହିଛି । ସମୟ ସମୟରେ ଲହରୀ ବାଜି ଉଠୁଛି, ପଡ଼ୁଛି । ଦଉଡ଼ି ଫିଟାଇ ଡଙ୍ଗା କୂଳକୁ ଟାଣିଲା । କୂଳରେ ଲାଗିବାରୁ ରୂପେଇ ଡଙ୍ଗାରେ ପୁଷିକୁ ଓହ୍ଲାଇ ଜାଲଖଣ୍ଡି ଓ ସୋଲବଡ଼ା କୂଳକୁ ପକାଇଦେଲା । ଉତ୍ତମରୂପେ ଲୁଗା ଭିଡ଼ାଭିଡ଼ି ହୋଇ ମାଛଖାଲେଇ ବେକରେ ଝୁଲାଇଲା । ସ୍ନେହରେ ପୁଷିର ଦେହ ଆଉଁସି ସମ୍ବୋଧନ କରି କହିଲା, ପୁଷି ଲୋ, ତୁ ଏଇଠି ଡଙ୍ଗା ଉପରେ ବସିଥା, ମୁଁ ଯାଉଛି ମାଛ ଧରିବାକୁ । ଜଲଦି ଫେରି ଆସିବି । ସୁନାଟି ପରି କାନ୍ଦିବୁ ନାହିଁ । ବିଲେଇ ଛୁଆ କୃତଜ୍ଞତାର ଚିହ୍ନ ସ୍ୱରୂପ ଲାଙ୍ଗୁଡ଼ ହଲାଇ ମ୍ୟାଉଁ ମ୍ୟାଉଁ କହି ରୂପେଇର ମୁହଁକୁ ଚାହିଁଲା । ସ୍ନେହ ପରକୁ ଆପଣାର କରିପାରେ । ଇତର ପ୍ରାଣୀଙ୍କୁ ମନୁଷ୍ୟର ହୃଦୟ ନିକଟକୁ ଟାଣିଆଣେ । ସ୍ନେହ ଓ ପ୍ରେମ ପରମେଶ୍ୱରଙ୍କର ଶ୍ରେଷ୍ଠ ଅବଦାନ ଜଗତର ପ୍ରାଣୀମାନଙ୍କୁ ।

ସେତେବେଳକୁ ସୂର୍ଯ୍ୟ ପୂର୍ବଦିଗ୍‌ବଳୟ ଭେଦ କରି ଆକାଶ ବକ୍ଷକୁ ଆସି ନାହାନ୍ତି । ପୂର୍ବଦିଗ ଉଜ୍ଜ୍ୱଳ ଦେଖାଗଲାଣି । ତାରାଗୁଡ଼ିକ ନିଷ୍ପ୍ରଭ ହୋଇ ଦିବା ଆଲୋକ ସଙ୍ଗେ ମିଶିଯିବାକୁ ବସିଲେଣି—'ମିଶି ଯାଏ ଯଥା ଜୀବାତ୍ମା ବିଶ୍ୱ, ଆତ୍ମା ଚରଣେ' । ସେତେବେଳେ ସମୁଦ୍ର ଶାନ୍ତ । ସେହି ଶାନ୍ତ ସମୁଦ୍ର ବକ୍ଷରେ ରୂପେଇ ଦେଖିଲା ବହୁ ଦୂରରେ ପ୍ରକାଣ୍ଡ ବୋଇତ ସ୍ଥିର ଭାବରେ ରହିଛି ଏବଂ ସେହି ବୋଇତରୁ ଗୋଟି ଗୋଟି ହୋଇ ଅନେକ କ୍ଷୁଦ୍ର ନୌକା ଝୁଣ୍ଡିଆଁ ଦ୍ୱୀପର କୂଳଆଡ଼କୁ ଲକ୍ଷ୍ୟ କରି ଚାଲିଆସୁଛି । ନୌକାଗୁଡ଼ିକର ଦୁଇପାଖେ ଆହୁଲା,

ଦେଖାଯାଉଛି, ଯେପରି ଜୀବନ୍ତ ପ୍ରାଣୀ ଗୋଡ଼ ହଲାଇ ଚାଲି ଆସୁଛି ସମୁଦ୍ରର ନୀଳ ବକ୍ଷ ଉପରେ। ସୂର୍ଯ୍ୟୋଦୟ ପୂର୍ବରୁ ଏପରି ଅପୂର୍ବ ଦୃଶ୍ୟ ରୂପେଇ ଆଉ କେବେ ଦେଖି ନ ଥିଲା। ସେ ସେହି ଦୃଶ୍ୟ ଦେଖିବାରେ ଲାଗିଗଲା।

ଧୀରେ ଧୀରେ ସୂର୍ଯ୍ୟ ଅଗ୍ନିପିଣ୍ଡ ପରି ବହୁ ଦୂରରେ ସମୁଦ୍ରର ସୁନୀଳ ଜଳ ଭେଦ କରି ଆକାଶକୁ ଉଠିଲେ। ଆକାଶରେ ବାଦଲ ଏବଂ ସମୁଦ୍ରରେ ଜଳତରଙ୍ଗ କ୍ଷଣକ ନିମନ୍ତେ ସୂର୍ଯ୍ୟର ରକ୍ତରଶ୍ମିରେ ଲୋହିତ ବର୍ଣ୍ଣ ଧାରଣ କଲେ। ଦେଖୁ ଦେଖୁ ନୌକାଗୁଡ଼ିକ କୂଳର ଅତି ନିକଟରେ ଉପସ୍ଥିତ। ରୂପେଇ ଏତେ ବେଳ ପର୍ଯ୍ୟନ୍ତ ସ୍ଥିର ଚକ୍ଷୁରେ ଅନାଇଁ ରହିଥିଲା। ନୌକାଗୁଡ଼ିକୁ ନିକଟରେ ଦେଖି, ଆଉ ସ୍ଥିର ହୋଇ ରହିପାରିଲା ନାହିଁ। ଶେଷଥର ନିମନ୍ତେ କୌଣସି ଗୋଟିଏ ନୌକାରେ ଚକ୍ଷୁ ପକାଇ ସେ ନିଜ ନୌକାରୁ ତଳକୁ ଓହ୍ଲାଇ ଆସିଲା। ଜାଲଖଣ୍ଡି ହାତରେ ଧରି ମାଛ ଧରିବାକୁ କୂଳେ କୂଳେ ଅନ୍ୟତ୍ର ଚାଲିଗଲା।

ଏକୁଟିଆ ଜାଲରେ ମାଛ ଧରିବା ଶକ୍ତ କଥା। କିନ୍ତୁ ଭଙ୍ଗନାର ଅପୂର୍ବ କୌଶଳରେ ଜାଲଖଣ୍ଡିକ ଏପରି ଭାବରେ ବୁଣା ଯେ, ତାହା ସମୁଦ୍ରରେ ମେଲାଇ ନିଶ୍ଚିନ୍ତରେ ଜଣେ ଲୋକ କୂଳରେ ଠିଆ ହୋଇ ଏକାକୀ ଟାଣି ଆଣି ପାରିବ। ଜାଲର ଗୋଟିଏ ପାଖରେ ଧାଡ଼ ଧାଡ଼ ହୋଇ ଏକ ପ୍ରକାର ହାଲୁକା କାଠ ବନ୍ଧା ହୋଇଛି। ସ୍ଥାନେ ସ୍ଥାନେ କାଠର ଅଭାବରୁ ସୋଲ ବନ୍ଧା ହୋଇଛି ଯେପରି ଜାଲଗୁଡ଼ିକ ଜଳ ମଧ୍ୟରେ ସମ୍ପୂର୍ଣ୍ଣ ରୂପେ ନ ବୁଡ଼ି ଉପରେ ଭାସିବ। ଜାଲର ତଳ ଭାଗରେ ଛୋଟ ଛୋଟ ସୀସାଗୁଳି ବନ୍ଧା, ତାହା ବୁଡ଼ି ରହିବ ବୋଲି। ଏ ଜାଲର ଗୋଟିଏ ପାଖ କୂଳରେ ବାନ୍ଧି ଅନ୍ୟ ପାଖ ଧରି ସମୁଦ୍ରରେ ବୃତ୍ତାକାରରେ ମେଲାଇ ଦେବାକୁ ହୁଏ। ସମୁଦ୍ରରେ ଜଳ ଅଳ୍ପ ଥିଲେ ଏପରି ଉପାୟରେ ମାଛ ଧରିବାରେ ସୁବିଧା ହୁଏ।

ରୂପେଇ ମାଛ ଧରିବାକୁ ଚାଲିଯିବା ପରେ ଅନେକ ଗୁଡ଼ାଏ ଛୋଟ ନୌକା ଆସି କୂଳରେ ଲାଗିଲା। ଆରୋହୀଗଣ ନୌକା କୂଳରେ ବାନ୍ଧି, ଗୋଟିଏ ସ୍ଥାନରେ ସମବେତ ହେଲେ। ସେମାନଙ୍କର ସଂଖ୍ୟା ପଚିଶ। ସମସ୍ତେ ଦେଖିବାକୁ ବଳିଷ୍ଠ, ବିଶାଳକାୟ, ସାମୁଦ୍ରିକ ପୋଷାକ ପରିହିତ। ପ୍ରତ୍ୟେକଙ୍କର କଟିଦେଶରେ ତରବାରି ଲମ୍ବିତ।

ସ୍ଥଳରେ ଅବତରଣ କରି ଆନନ୍ଦରେ ନିଜ ନିଜ ମଧ୍ୟରେ ନାନା ପ୍ରକାର ଗଳ୍ପ ଆରମ୍ଭ କରିଦେଲେ ଥୋକେ। ଅନ୍ୟ କେତେ ଜଣ ପର୍ବତର ନିମ୍ନ ଦେଶରୁ ବୃକ୍ଷ ଲତା କାଟି ତମ୍ବୁ ପକାଇବାରେ ସୁବିଧା କଲେ। ବାକିଯାକ ଜଙ୍ଗଲର ଏଣେ ତେଣେ ଚାଲିଗଲେ ଜଳ ଏବଂ ଶୁଷ୍କକାଠର ସନ୍ଧାନରେ।

ଦେଖୁ ଦେଖୁ ଅଦୂର୍ ଗୋଟିଏ ନୌକା ଆସି କୂଳରେ ଲାଗିଲା । ଏହି ନୌକାଖଣ୍ଡି ଅପେକ୍ଷାକୃତ ଟିକିଏ ବଡ଼ । ଦେଖିବାକୁ ମଧ୍ୟ ବେଶ ସୁନ୍ଦର । ନୌକାଖଣ୍ଡି କୂଳରେ ଲାଗିବାର ଦେଖି ସ୍ଥଳଭାଗରେ ସମବେତ ନାବିକମଣ୍ଡଳୀ ନୀରବରେ କୂଳ ନିକଟରେ ଉପସ୍ଥିତ ହେଲେ । ସେମାନଙ୍କର ମଧୁରାଳାପ କ୍ଷଣକାଳ ନିମନ୍ତେ ସ୍ଥଗିତ ରହିଲା । ଉପସ୍ଥିତ ନୌକାରୁ ପ୍ରଥମେ କେତେଜଣ ନାବିକ ଓହ୍ଲାଇ ଆସିଲେ; ତତ୍‌ପରେ ବହୁ ମୂଲ୍ୟ ବସ୍ତ୍ରପରିହିତ ଜଣେ ପ୍ରୌଢ଼ ଧୀରେ ଧୀରେ ଅବତରଣକରି ଆଗକୁ ଚାଲିଲେ । ଅନ୍ୟ ସମସ୍ତେ ତାଙ୍କର ଅନୁଗମନ କଲେ । ପ୍ରକୃତରେ ପ୍ରୌଢ଼ ଜଣେ ବିଖ୍ୟାତ ବଣିକ । ସେ ସିଂହଳ ଦ୍ୱୀପକୁ ବଣିଜ ନେଇ ବ୍ୟବସାୟ କରିବାକୁ ଯାଇଥିଲେ । ବ୍ୟବସାୟରେ ବହୁ ଅର୍ଥ ଲାଭ କରି ସ୍ୱଦେଶକୁ ଫେରି ଆସିଛନ୍ତି । ଆସିବା ସମୟରେ କଳିଙ୍ଗପତ୍ତନ ଏବଂ ଗୃହନ୍ୟ ବନ୍ଦରମାନଙ୍କରେ ଥିବା ତାଙ୍କର ଧନାଗାର ଏବଂ ବ୍ୟବସାୟମନ୍ଦିର ପରିଦର୍ଶନ କରି ବର୍ତ୍ତମାନ ତାମ୍ରଲିପ୍ତ ଫେରି ଯାଉଛନ୍ତି । ତାମ୍ରଲିପ୍ତ ତାଙ୍କ ବ୍ୟବ-ସାୟର କେନ୍ଦ୍ରସ୍ଥଳ । ବଣିକଙ୍କର ଧନ ସମ୍ପତ୍ତି ଓ ପରିବାରବର୍ଗ ସମସ୍ତେ ତାମ୍ରଲିପ୍ତରେ ଥାନ୍ତି । ପକ୍ଷୀ ଆକାଶର ନାନାସ୍ଥାନ ଭ୍ରମଣକରି ଅବଶେଷରେ ଦିବାବସାନରେ ଫେରି ଆସେ ନୀଡ଼କୁ । ବଣିକ ଜଗତର ଅନେକ ସ୍ଥାନ ଭ୍ରମଣ କରି ଶେଷରେ ଫେରି ଆସିଲେ ସ୍ୱଦେଶକୁ ।

ବଣିକଙ୍କର ବୟସ ତିରିଶ ବର୍ଷରୁ ଅଧିକ ନୁହେ । ହୃଷ୍ଟପୁଷ୍ଟ, ଗୌରବର୍ଣ୍ଣ, ବହୁମୂଲ୍ୟର ସାଜସଜ୍ଜାରେ ସମଗ୍ର ଶରୀର ମଣ୍ଡିତ । ଦକ୍ଷିଣ ପାର୍ଶ୍ୱରେ ସ୍ୱର୍ଣ୍ଣମୟ ଖୋଳ ମଧ୍ୟରେ ତରବାରି । ଚକ୍ଷୁର ତେଜ ପ୍ରଖର, ଦୀପ୍ତିମନ୍ତ । ଦେଖିଲେ ମନରେ ସ୍ୱତଃ ଭୟର ସଞ୍ଚାର ହୁଏ । ନୌକାରୁ ଅବତରଣ କରି ଘୂର୍ଣ୍ଣାୟମାନ ଚକ୍ଷୁଦ୍ୱୟ ଚତୁର୍ଦ୍ଦିଗରେ ବୁଲାଇ, ସମସ୍ତଙ୍କର ସମ୍ମୁଖୀନ ହୋଇ, ଗର୍ବିତ ପଦ ଧୀରେ ଧୀରେ ପକାଇ ଆଗକୁ ଚାଲିଲେ । ନାବିକମାନେ ନୀରବରେ ତାଙ୍କର ଅନୁଗମନ କଲେ । ଇତିମଧ୍ୟରେ ବଣିକଙ୍କର ସ୍ୱୀୟ ଭୃତ୍ୟ ନୌକାରୁ ଖଣ୍ଡେ ବେତ୍ରାସନ ନେଇ ଉପସ୍ଥିତ ହେଲା । ବଣିକଙ୍କର ହସ୍ତସଙ୍କେତାନୁଯାୟୀ ଭୃତ୍ୟ ଗୋଟିଏ ସମତଳ ସ୍ଥାନରେ ବେତ୍ରାସନ ସ୍ଥାପନ କଲା ଏବଂ ବେତ୍ରାସନ ଉପରେ ମଖମଲ ଗଦି ପକାଇ ଦୂରକୁ ଯାଇ ଯୋଡ଼ହସ୍ତରେ ଦଣ୍ଡାୟମାନ ହେଲା । ବଣିକ ଆସନ ଗ୍ରହଣ କଲେ । ନାବିକମାନଙ୍କୁ ତାଙ୍କର ଚତୁର୍ଦ୍ଦିଗରେ ଅର୍ଦ୍ଧବୃତ୍ତାକାରରେ ବସିବାକୁ ଆଦେଶ କଲେ । ନାବିକମାନେ ଆଦେଶ ପାଳନ କଲେ ।

ବଣିକ ଅନେକ ସମୟ ପର୍ଯ୍ୟନ୍ତ ଚନ୍ଦ୍ରାଲୋକର ମ୍ଳାନ ହସି ଧୀର ସ୍ୱରରେ ନାବିକମାନଙ୍କୁ ସମ୍ବୋଧନ କରି କହିଲେ, ବନ୍ଧୁଗଣ ପଥେ ନିର୍ବିଘ୍ନରେ ଆମ୍ଭେମାନେ ସ୍ୱଦେଶକୁ ଫେରି ଆସିଛେ । କେଜାଣି କାହିଁକି ତାମ୍ରଲିପ୍ତର ଯେତିକି ନିକଟବର୍ତ୍ତୀ

ହେଉଛି, ମନଟା ମୋର ସେତିକି ବେଶି ଚଞ୍ଚଳ ହେଉଛି । ପ୍ରତିକ୍ଷଣ ମନ ମଧ୍ୟରେ ଘରକଥା ପଡ଼ି ପ୍ରାଣଟା କିପରି ଆକୁଳ ହୋଇ ଉଠୁଛି । ଏତେ ଦିନ ହେଲା ଘରର କୌଣସି ସମ୍ବାଦ ଆମ୍ଭମାନଙ୍କୁ ମିଳିନାହିଁ । କିପରି ଅତିଶୀଘ୍ର ଯାଇ ତାମ୍ରଲିପ୍ତରେ ବୋଇତ ଲାଗିବ, ମୋର ବର୍ତ୍ତମାନ କେବଳ ସେହି ଚିନ୍ତା ।

ନାବିକ ମାନଙ୍କ ମଧ୍ୟରୁ ଜଣେ ବୃଦ୍ଧ ଥଙ୍ଗେଇ ଥଙ୍ଗେଇ ବଣିକଙ୍କର କଥାରେ ଯୋଗଦେଇ କହିଲେ, ବିଦେଶରେ ବେଶି ଦିନ ରହିଲେ, ଘରକଥା ବେଶି ମନେ ପଡ଼େ ନାହିଁ । କାମଧନ୍ଦାରେ ମଣିଷର ମନ ବରାବର ନିଯୁକ୍ତ ଥାଏ । କାମଧନ୍ଦାବେଳେ ଘରକଥା ଭାବୁଛି କିଏ ? କିନ୍ତୁ ଯେତେବେଳେ ବହୁଦିନ ପରେ ଘରମୁହାଁ ହୋଇ ଫେରିବାକୁ ହୁଏ, ସେତେବେଳେ ମନ ଭାରି ଚଞ୍ଚଳ ହୋଇ ପଡ଼େ । ଆପଣେ ଯାହା କହିଲେ, ତା ଠିକ୍ । ଯେ ଯେତିକି ବୃଦ୍ଧ, ତାହାର ଘର ଆଡ଼କୁ ଆକର୍ଷଣ ସେତିକି ବେଶି ।

ମୃଦୁ ହସି ବଣିକ କହିଲେ, ବୁଝିଲ ନା, ରଘୁନାଥ, ତମର କଥାଗୁଡ଼ିକ ମୋ ମନକୁ ଆସିଲା ନାହିଁ । ଅବଶ୍ୟ ଯାହା କହିଲ, ବୃଦ୍ଧର ଗୃହଆଡ଼କୁ ଆକର୍ଷଣର ମାତ୍ରା ଅଧିକ, ଏହା ଠିକ୍ । କାରଣ ବୃଦ୍ଧ ସଂସାରର କୌଣସି ଶ୍ରମସାଧ୍ୟ କାର୍ଯ୍ୟରେ ନିଜକୁ ରଖିବାର ଇଚ୍ଛା ନ କରି ଘରେ ବସି ଶାନ୍ତିରେ ଜୀବନ କାଟିବାକୁ ଭଲ ପାଏ । ଅଧିକନ୍ତୁ ମଧ୍ୟ ଆମର ଯେଉଁ ବେଉସା ସବୁବେଳେ ସମୁଦ୍ର ଉପରେ, ଜୀବନର ସର୍ବଦା ଭୟ । ଯେ ଯେତିକି ବୃଦ୍ଧ, ତାର ଜୀବନକୁ ସେତିକି ଅଧିକ ଲୋଭ ।

ବଣିକର କଥାରେ କେତେ ଜଣ ଯୁବକ ଏକାବେଳେ ହସି ଉଠିଲେ । ବୃଦ୍ଧ ଟିକିଏ ଅପ୍ରସ୍ତୁତ ହେଲା ପରି ବୋଧ ହେଲେ । ସେ ମୃଦୁହାସ୍ୟ କରି ପୁନର୍ବାର ଆରମ୍ଭ କଲେ, ଶୁଣ ରଘୁନାଥ, ବୃଦ୍ଧର ଗୃହଆଡ଼କୁ ଆକର୍ଷଣର ପ୍ରଭାବ ଯେତେ ତଦପେକ୍ଷା ତେର ଅଧିକ ଯେ ନୂତନ ବିବାହିତ । ବୃଦ୍ଧ ହସି ଉଠିଲେ । ବଣିକ ହାସ୍ୟର ବାଧା ନ ମାନି କହିଲେ, ଯେତେ ଦୂରକୁ ଯୁବକ ଯାଉ, କି ଏକ ଅଜଣା ସୂତ୍ର ତାକୁ ସେହି ଦେଶ ବା ଘର ଆଡ଼କୁ ଟାଣି ଆଣୁଥାଏ । ବୃଦ୍ଧ ବଣିକଙ୍କୁ ସାହାଯ୍ୟ କରି ତୁହିଁ ତାଳୁ ବାଜୁ କହିଲେ, ଆଜ୍ଞା ଆଉ ଅଜଣା ସୂତ୍ର ବୋଲି କହୁଛନ୍ତି କାହିଁକି ? ସେହି ନବଯୁବତୀର ନବୀନ ସୌନ୍ଦର୍ଯ୍ୟ ଓ ସ୍ମୃତି ପ୍ରକୃତରେ ଯୁବକର ମନକୁ ଟାଣି ଆଣେ ଦେଶ ଆଡ଼କୁ । ମୋର କହିବାର ଭୁଲ ହୋଇଥିଲା, ଯେ, କେବଳ ବୃଦ୍ଧକୁ ଦେଶର ସ୍ମୃତି ଟାଣି ଆଣେ । ମାତ୍ର ଆପଣଙ୍କ କଥାରୁ ପ୍ରକାଶ ଏବଂ ପ୍ରମାଣିତ ଯେ ବିବାହିତ ଯୁବକର ମଧ୍ୟ ଆକର୍ଷଣ ଶକ୍ତି ଦେଶଆଡ଼କୁ କୌଣସିମତେ ଅଳ୍ପ ନୁହେ । ଯେ ଅବିବାହିତ ତାକୁ ମଧ୍ୟ ଘର ବିଷୟରେ ଭାବିବାକୁ ପଡ଼େ । ଅବିବାହିତ ଯୁବକର ବାପ ମା ଭାଇ ଭଉଣୀ ଏବଂ ସମବୟସ୍କ ବନ୍ଧୁଗଣ ପ୍ରଭୃତି ଅଛନ୍ତି ।

ଜଣେ ଯୁବକ ଅନିଚ୍ଛାସତ୍ତ୍ୱେ ଲଜ୍ଜିତ ଭାବରେ ଟିକିଏ ଯେପରି ଗୋପନ କରି ତା'ର ନିକଟସ୍ଥ ବନ୍ଧୁର କାନରେ କହିଲା, ଏ ତ ଗଲା ବୃଦ୍ଧ ଯୁବକଙ୍କ କଥା, ଯିଏ ବୃଦ୍ଧ ନୁହେଁ କି ଯୁବକ ନୁହେଁ ... ... ।'

ବଣିକ କହିଲେ ଠିକ୍ ଧରିଛ । ତା'ର ଦେଶର ଟାଣଟା ତା ଉପରେ ବି ଢେର ଅଧିକ । ଏହାର କାରଣ ସେ ବୃଦ୍ଧ ନୁହେଁ କି ଯୁବକ ନୁହେଁ; ଅଥଚ ଉଭୟ । ତେଣେ ଘରଆଡ଼ର କଥା—ସେତେବେଳ ପର୍ଯ୍ୟନ୍ତେ ଅତୃପ୍ତ ପ୍ରେମର ଲାଳସାଟା ଏକାଥରେ ମେଣ୍ଟି ନ ଥାଏ । ତା'ପର ପିଲା ଛୁଆଙ୍କର ମୋହ । ଯଦି ଘରେ ବୃଦ୍ଧ, ପିତା ମାତା ଥାନ୍ତି ସେମାନଙ୍କର ଦାୟିତ୍ୱ, ଘର ଚଳାଇବାର ଭାର ଇତ୍ୟାଦି ଇତ୍ୟାଦି ।

ଏହିପରି କଥୋପକଥନ କରୁ କରୁ କେତେ ଜଣ ନାବିକ ଶୁଖିଲା କାଠର ବୋଝ ମୁଣ୍ଡରେ ଧରି ଜଙ୍ଗଲ ମଧ୍ୟରୁ ବାହାରି ଆସିଲେ । ସେତେବେଳକୁ ସମୟ ଅଧିକ ହୋଇ ଗଲାଣି । ଖରଦିନର ନିଦାଘ ଛଟାରେ ଲୋକେ ବ୍ୟସ୍ତ ହୋଇ ନିକଟସ୍ଥ ବୃକ୍ଷ ଛାୟାରେ ଆଶ୍ରୟ ଗ୍ରହଣ କରିବାକୁ ଘୁଞ୍ଚିଗଲେ । ବଣିକ ଆଗରୁ ଉପଯୁକ୍ତ ସ୍ଥାନରେ ବସିଥିଲେ । ତେଣୁ ତାଙ୍କୁ ସ୍ଥାନ ପରିବର୍ତ୍ତନ କରିବାକୁ ପଡ଼ି ନ ଥିଲା ।

ବଣିକ କହିଲେ, ରଘୁନାଥ, କହି ଭଲା, ଏ ସ୍ଥାନଟି କିପରି ? ପ୍ରଧାନ ସ୍ଥଳଭାଗର ନିକଟବର୍ତ୍ତୀ କ୍ଷୁଦ୍ର ଦ୍ୱୀପଖଣ୍ଡି ଦୂରଦେଶାଗତ ନାବିକମାନଙ୍କର ବେଶି ଉପକାରରେ ଆସେ । ବିଶେଷତଃ, ଆମ ପରି ବଣିକ ଲୋକଙ୍କ ପାଇଁ ସ୍ଥାନ ମନ୍ଦ ନୁହେଁ । ନିକଟରେ ଝରଣା ଅଛି ତ ?

ଜଙ୍ଗଲ ଭିତରୁ ମୁଣ୍ଡରେ କାଠବୋଝ ଧରି ଆସୁଥିବା ଲୋକମାନଙ୍କ ମଧ୍ୟରୁ ଜଣେ ଉତ୍ତର ଦେଲା; ହଁ, ଗୋଟିଏ ଝରଣା ନିକଟରେ ଅଛି । କିନ୍ତୁ ଭାରି ଛୋଟ । ଜଳ କାଚକେନ୍ଦୁ ପରି ସଫା । ଝରଣା ପାଖରେ ଅନେକଗୁଡ଼ିଏ କଦଳୀଗଛ ଅଛି । ନଡ଼ିଆ ଗଛର ତ ସୁମାରି ନାହିଁ ।

କି କଦଳୀ, କାଠିଆ ?

ଖାଲି କାଠିଆ ନୁହେଁ, ବନ୍ୟଲକଦଳୀ ଅଛି । କାନ୍ଦିଟାମାନ ଭାରି ବଡ଼ ବଡ଼ । ଗୃହଜାତ କରି କଦଳୀ କାନ୍ଦି । ଆମେ ସବୁ ବର୍ତ୍ତମାନ ନଡ଼ିଆ ପଇଡ଼ ଖାଇ ଆସିଲୁ । ପାଚିଲା କଦଳୀ ନାହିଁ । କାନ୍ଦିଗୁଡ଼ିକରୁ ଅନେକ ପାକିଲା ହୋଇଛି । ଅନ୍ଦାଜ ତିରିଶ କାନ୍ଦି କାଟି ତିନିଜଣ ଲୋକ ଜଗେଇ ଅଛନ୍ତି । କାଠ ରଖି ସାରି ନେଇ ଆସିବୁ । ଆଉ, ଯଦି ଆପଣଙ୍କର ହୁକୁମ ମିଳେ, ନଡ଼ିଆ ଗଛରୁ କେତେଗୁଡ଼ିଏ ନଡ଼ିଆ ଛାଡ଼ି ଜାହାଜକୁ ନେବୁ ।

ସ୍ୱର୍ଣ୍ଣଦ୍ୱୀପ ଏବଂ ଅନ୍ୟାନ୍ୟ ଦ୍ୱୀପରୁ ଆସିଥିବା ନଡ଼ିଆ ଜାହାଜ ଗୃହନ୍ୟ ବନ୍ଦରରୁ ପରା ତାମ୍ରଲିପ୍ତକୁ ପଠାଯାଇଛି । ସେ ସବୁ ଜାହାଜ ତାମ୍ରଲିପ୍ତରେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ବୋଧ ହୁଏ ବିକି ହୋଇଯିବ । ସମ୍ବଲପୁରୀ ବେପାରୀମାନେ ଖାଲି ନଡ଼ିଆ ନିମନ୍ତେ ଚୁକ୍ତି ଶୃଙ୍ଖଳ ବାନ୍ଧି ଦେଶରୁ ଆସି ବରାବର ଉପସ୍ଥିତ ଥାନ୍ତି । ସେମାନେ ନଡ଼ିଆରେ ଗାଡ ବୋଝେଇ କରି କୋଶଳ ଏବଂ ମଗଧ ପ୍ରଭୃତି ଦେଶମାନଙ୍କୁ ପଠାଇ ଦିଅନ୍ତି । ଅତଏବ ଆଶା କରାଯାଏ, ଆମର ପହଞ୍ଚିବା ପୂର୍ବରୁ ଜାହାଜ ଖାଲି ଥିବ । ସେହିମାନଙ୍କୁ ଆଦେଶ ଦେଲେ, ଅଣ୍ଡାମାନ୍ ଦେଇ ସୁମାତ୍ରା ଯିବା ପୂର୍ବରୁ ଖୁଣ୍ଟିଆ ଦ୍ୱୀପକୁ ଆସି ଯାହା କିଛି ପାଇବେ ନଡ଼ିଆ ନେଇଯିବେ । ବର୍ତ୍ତମାନ ସମୟ ନାହିଁ ଏ-ତଗୁଡ଼ାଏ କାର୍ଯ୍ୟ କରିବାକୁ । କଣ କହୁଛ ରଘୁନାଥ ?

ଆଜ୍ଞା, ଆହୁରି ଏକ କଥା, କେବଳ ଆମର ତ ନଡ଼ିଆ ଯାଇ ନାହିଁ, ଆହୁରି ମଧ୍ୟ ଅନେକଙ୍କର ଯାଇଥିବ । ଗୃହନ୍ୟ ବନ୍ଦରରୁ କେହି ଅବଶ୍ୟ ପଠାଇ ନାହିଁ, ଏହା ନିଶ୍ଚୟ । ମାତ୍ର ହୁଏ ତ ଲୋକେ କଳିଙ୍ଗପତ୍ତନ କିମ୍ବା ସ୍ୱର୍ଣ୍ଣଦ୍ୱୀପରୁ ସିଧା ସିଧା ତାମ୍ରଲିପ୍ତ ପଠାଇ ଥିବେ । ତେବେ ତ ନଡ଼ିଆ ଖଲାସ ହୋଇବାରେ ଡେରି ହେବ । ଏ ଭିତରେ ଯଦି ଏତକ କିଏ ହାତ କରିନିଏ, ତେବେ ବୃଥା ଲୋକସାନ୍ ।

ଲୋକସାନ୍ ଆଉ କଣ ? ଲାଭ ହୋଇଥାନ୍ତା, ନ ହେଲେ ନାହିଁ । କାହିଁକି ନ ହେବ ? ହୁକୁମ ଦିଆ ହୋଇଛି । ବେପାରୀ ଥାଉ, ନ ଥାଉ, ପ୍ରଥମେ ଜାହାଜ ଖାଲି କରିଦେବ । ନଡ଼ିଆତକ ନଡ଼ିଆ ଗୋଦାମକୁ ପଠାଇ ଦେବ । ହୁଏ ତ ବାଟରେ ସେମାନଙ୍କ ସଙ୍ଗେ ଦେଖା ହେବ । ଯଦି ଦେଖା ନ ପାଉଁ କାଲି ସନ୍ଧ୍ୟା ପୂର୍ବରୁ ଖୁଣ୍ଟିଆ ଦ୍ୱୀପରେ ବୋଇତ ନିଶ୍ଚୟ ଲାଗିବ । ରଘୁନାଥ, ବୋଇତର ବଡ଼ ଅଭାବ ପଡ଼ିଲା । ଆହୁରି ଖଣ୍ଡେ ଦୁଇଖଣ୍ଡ ନ କଲେ ଚଳିବ ନାହିଁ । ଯେଉଁ ବଡ଼ ବୋଇତରେ ହାତୀ ବୋଝାଇ ହୁଅନ୍ତି, ସେଠା ବି ଆସି ପୁରୁଣା ହେଲାଣି, ମରାମତି ହେବା ନିତାନ୍ତ ଦରକାର । ଏଥର ଆଫ୍ରିକାରୁ ଫେରିଲେ, ମରାମତି କରିବା ବନ୍ଦୋବସ୍ତ କରାଯିବ ।

ଯେଉଁ ବୋଇତ ଖଣ୍ଡ ବୁଡ଼େଇ ଦେଲେ ...... !

ଚୁପ୍ ଚୁପ୍ ସେ କଥା କହି ଲାଭ କ'ଣ ? ଯଦି କୌଣସି ମତେ ଧରା ପଡ଼ିଥାନ୍ତୁ ତେବେ କଥା ସରିଥିଲା । ତେବେ ଜାଣ ତ ଆମର କାଣ୍ଡ କାରଖାନା ନିମନ୍ତେ ଏକାମ୍ର କାନନର ଠାକୁର ରାଜା କପରି ବିରକ୍ତ ହେଲେଣି ମୋ ଉପରେ ? ଶୁଣୁଛି ମୋର କାର୍ଯ୍ୟର ପ୍ରମାଣ ନିମନ୍ତେ ସେ ଲୋକ ନିଯୁକ୍ତ କଲେଣି । ଯଦି ଜଣାଯାଏ, ତେବେ ମୋର ମୁଣ୍ଡଟି ଫାଶୀକାଠରେ ଝୁଲିବ । କେବଳ ସେତିକି ନୁହେଁ,

ତୁମେମାନେ ବି ସେଥିରୁ ଉଧ୍ବର ଯିବ ନାହିଁ । ଏଥର ଖୁବ ହୁସିଆରରେ ଚଳିବାକୁ ହେବ ।

ବାମ ହସ୍ତରେ ମସ୍ତକରୁ ଝାଳ ପୋଛି, ଦୀର୍ଘନିଃଶ୍ୱାସ ପକାଇ କହିଲେ, ଏଥର ଭାବୁଛି, ଗୋଟିଏ ଉପାୟ କରିବ । ଜଗନ୍ନାଥଙ୍କୁ ବହୁମୂଲ୍ୟ ହୀରା ଦୁଇ ଖଣ୍ଡି ଉପହାର ଦେବ । ବାଲିଦ୍ୱୀପ ନିକଟରେ ଗୋଟିଏ କ୍ଷୁଦ୍ର ଦ୍ୱୀପରୁ ମିଳିଥିବା ପ୍ରକାଣ୍ଡ ହୀରାଖଣ୍ଡି ରାଜାଙ୍କୁ ଉପହାର ଦେବ । ତାହା ହେଲେ କେଜାଣି ବା ମୋ ଉପରୁ ତାଙ୍କର ସନ୍ଦେହ ଦୂର ହୋଇପାରେ । ବୁଝିଲ ରଘୁନାଥ, ଏ ସମସ୍ତ କାର୍ଯ୍ୟ ତୁମକୁ କରିବାକୁ ହେବ ।

ରଘୁନାଥ ନୀରବ ରହିଲେ ।

ଜଣେ ଯୁବକ ବଣିକଙ୍କୁ ସମ୍ବୋଧନ କରି ତଳକୁ ମୁହଁ ପୋତି କହିଲା, ଡକାଇତି ଦ୍ୱାରା ଯେଉଁ ଧନ ମିଳିଛି ତାହାର ଉପଯୁକ୍ତ ବାଣ୍ଟ ପ୍ରତ୍ୟେକଙ୍କ ଭାଗରେ କେତେ ପଡ଼ିବ, ଆମେ ଜାଣିବାକୁ ଚାହୁଁ ।

ବାଣ୍ଟ ? ବଣିକ ଟିକିଏ ବିସ୍ମୟର ଚିହ୍ନ ଦେଖାଇ କହିଲେ, ବାଣ୍ଟ ଆଉ କ'ଣ ? ତୁମକୁ ମୁଁ ବ୍ୟବସାୟ କରିବା ନିମନ୍ତେ ମାସିକ ବେତନ ଦେଇ ନିଯୁକ୍ତ କରିଛି; ଅହୁରି ମଧ୍ୟ ବିଦେଶରେ, ମୋର ବୋଇତରେ ତୁମ ପଦାର୍ଥ ତୁମ୍ଭେମାନେ ବରାବର ବଣିଜ କରିଥାଅ । ତହିଁରେ ଲାଭବାନ ହୋଇ ମୋତେ କିଛି ଦେଇଥାଅ କି ? ବଣିଜ ଦ୍ରବ୍ୟରେ ତୁମମାନଙ୍କ ନିମନ୍ତେ ମୁଁ ଗୋଟାଏ ସ୍ୱତନ୍ତ୍ର ଅଂଶ ବରାବର ରଖି ଦେଇଛି । ଏତେ କରି ମଧ୍ୟ ତୁମେମାନେ ସନ୍ତୁଷ୍ଟ ନ ହୋଇ ଅଧିକ ଧନ ଆଶାରେ ଆପତ୍ତି କରୁଛ । ତୁମର ତ ଧନର କୌଣସି ଅଭାବ ନାହିଁ ?

ଯାହାର ଅଭାବ କେବଳ ସେହି ଜାଣେ । ଆପଣ ଜାଣିବେ କିପରି ?

ବଣିକ ବିରକ୍ତ ହୋଇ କହିଲେ, ତୁମେମାନେ ବେତନଭୋଗୀ ଭୃତ୍ୟ, ଅତଏବ...... ।

କିଏ ଜଣେ ବାଧାଦେଇ କହିଲା, ଅବଶ୍ୟ ଆମେ ବେତନଭୋଗୀ, ବାରଣ କରୁନାହୁଁ, ମାତ୍ର ବେତନ ଭୋଗ କରିବାର କାରଣ କ'ଣ ? ହକ୍ ମୂଲ ଲାଗିଲା, ଏଥିରେ କହିବାର ନାହିଁ ।

ବଣିକ ଉତ୍ତେଜିତ ହୋଇ କହିଲେ, କହିବାର ଢେର ଅଛି । ଢେର କ୍ଷମତା ମଧ୍ୟ ମୋର ଅଛି । ଯେତେବେଳେ ତୁମେମାନେ ମୋର ଭୃତ୍ୟ, ଯେଉଁ କାର୍ଯ୍ୟ କରିବାକୁ ଆଦେଶ କରିବ, ବିନା ସମୟ ବ୍ୟୟରେ ସେ କାର୍ଯ୍ୟ ସାଧନ

କରିବାକୁ ତୁମେ ବାଧ୍ୟ । କାର୍ଯ୍ୟରେ ସନ୍ତୁଷ୍ଟ ହୋଇ ମୁଁ ପୁରସ୍କାର ଦେଇ ପାରେ, କିନ୍ତୁ ତୁମେ କୌଣସି ପ୍ରକାର ଅଂଶ ଦାବୀ କରି ନ ପାର ।

କିନ୍ତୁ ଆମେ ଡକାୟତି କରିବାକୁ ନିଯୁକ୍ତ ନାହୁଁ । ବୋଇତ ଚଳାଇବା, ଦେଶ ବିଦେଶରେ ବଣିଜ କରିବାରେ ସାହାଯ୍ୟ କରିବା ହେଉଛି ଆମର କାର୍ଯ୍ୟ । ଡକାୟତି କରିବା କଦାପି ନୁହେଁ; ଯେହେତୁ ବିବେକ ବିରୁଦ୍ଧରେ କାର୍ଯ୍ୟ କରିବୁଁ । ଜୀବନର ସମସ୍ତ ଆଶା ଭରସା ଛାଡ଼ି ପାପ କାର୍ଯ୍ୟର ପୁରସ୍କାର ଆମକୁ ଅବଶ୍ୟ ମିଳିବ । ମନୁଷ୍ୟ ପାପ କରେ କାହିଁକି ? ନିଜର କୌଣସି ମନ୍ଦ ଅଭିଳାଷର ପରିତୃପ୍ତି ନିମନ୍ତେ ତ ?

ଯଦି ତୁମ୍ଭେମାନେ ପ୍ରାପ୍ତଧନର ଭାଗ ନେବାକୁ ଇଚ୍ଛୁକ, ଧନର କେତେ ଅଂଶ ନେଲେ ତୁମେ ପରିତୃପ୍ତ ହେବ ? ବଣିକ ପଚାରିଲେ ।

ଏଥି ପୂର୍ବରୁ ଏହିପରି କାର୍ଯ୍ୟ କରିବା ଦ୍ୱାରା ଆମେ ଯାହା ପାଉଥିଲୁ, ତାହାର ଦୁଇଗୁଣ ।

ଦୁଇଗୁଣ କାହିଁ ? ଦୁଇଗୁଣ ଅର୍ଥ ଅଧାଅଧି, ଏହା ଜାଣ ତ ?

ବେଶ୍ ଜାଣୁ; ଆପଣ କହିଲେ ଅଧାଅଧି, କିନ୍ତୁ ସେହି ଅଧାଅଧିଟା ଯେତେବେଳେ ଏତେ ଲୋକଙ୍କରେ ବିଭକ୍ତ କରାଯିବ, ଜଣକର ଭାଗରେ କେତେ ପଡ଼ିବ ଭାବିଲେ ?

ନାଁ ଅଧେ ଦିଆଯିବ ନାହିଁ । ଏକଚତୁର୍ଥାଂଶ ଦିଆଯିବ । ଏଥିରେ ରାଜି ହୁଅ ନ ହୁଅ, ମୁଁ ଆଉ କଦାପି ଅଧିକ ଦେଇ ପାରିବ ନାହିଁ ।

ନାବିକମାନେ ରାଜି ହେଲେ । ବଣିକ ବେହେରାସନକୁ ଟିକିଏ ପଛକୁ ଟାଣି କହିଲେ, ସମୟ ଅଧିକ ହେଲାଣି । ଏଥର ତାମ୍ରଲିପ୍ତ ଯିବାକୁ ହେବ । ବନ୍ଦୀ–ମାନଙ୍କର ଉପଯୁକ୍ତ ବ୍ୟବସ୍ଥା ନ କରି ଗଲେ ଠିକ୍ ହେବ ନାହିଁ । ସେମାନଙ୍କୁ ଯଦି ଏଠାରେ ରଖିବାର ନିଷ୍ପତ୍ତି ହେଲା ରହିବ କିଏ ?

ବହୁ ତର୍କବିତର୍କ ପରେ ସ୍ଥିର ହେଲା ଯେ, ଭୀମା ପ୍ରମୁଖ ପନ୍ଦର ଜଣ ଯୁବକ ନାବିକ ବନ୍ଦୀମାନଙ୍କର ପ୍ରହରୀ ରହିବେ । ବନ୍ଦୀ ତରଫରୁ ଦଶଜଣ ଲୋକ, ନିଜେ ବନ୍ଦୀ ଏବଂ ତାହାର ସ୍ତ୍ରୀ ଓ ପୁତ୍ର । ସମସ୍ତେ ମିଶି ତେରଜଣ । ସେମାନଙ୍କୁ ଝୁଣ୍ଟିଆ ଦ୍ୱୀପକୁ ଆଣିବାକୁ ହେବ । ସେମାନେ ବରାବର ନଜରରେ ରହିବେ ଯେପରି କେହି କୌଣସିମତେ ପଳାଇ ଯାଇ ନ ପାରେ । କାରଣ ଯଦି କେହି ପଳାଇ ଯାଇ ଡକାୟତିର ପ୍ରତ୍ୟକ୍ଷ ଘଟଣା ଦେଶରେ ବର୍ଣ୍ଣନା କରେ ତେବେ ସର୍ବନାଶ । ବଣିକ ତାମ୍ରଲିପ୍ତରେ ପହଞ୍ଚିଲେ, ସେଠାରୁ ଲୁଗା ଓ

କତାଦଭଡ଼ର ବୋଇତ ଯାତ୍ରା ଯିବାକୁ ବାହାରିବ । ସେହି ଜାହାଜରେ କଳେ ବଣିକ ଯିବେ ନାହିଁ । ବୋଇତର ଅଧ୍ୟକ୍ଷକୁ ଆଦେଶ କରାଯିବ, ଯେପରି ସେ ବୋଇତ ଖୁଣ୍ଟିଆ ଦ୍ୱୀପ ବାଟେ ନିଏ । ବୋଇତର ପତାକାରୁ ପ୍ରହରୀମାନେ ବଣିକଙ୍କର ଜାହାଜ ଚିହ୍ନିପାରି ବନ୍ଦୀମାନଙ୍କୁ ସେହି ବୋଇତରେ ଛାଡ଼ିଦେଇ ତାମ୍ରଲିପ୍ତ ଯାତ୍ରା କରିବେ । ସେଥି ନିମନ୍ତେ ଦୁଇଖଣ୍ଡି ନୌକା ସେମାନଙ୍କର ଅଧୀନରେ ରହିବ ।

ଯଦି ବୋଇତ ଆସିବା ପୂର୍ବରୁ ଅନ୍ୟ କାହାର ବୋଇତ ଆସି ଖୁଣ୍ଟିଆ ଦ୍ୱୀପରେ ଲାଗେ, ତେବେ ତ ସର୍ବନାଶ । ଉପାୟ କ'ଣ ? ଉପାୟ ସ୍ଥିର କରାଯାଇଛି, ବନ୍ଦୀମାନଙ୍କୁ ସମୁଦ୍ରକୂଳରେ ନ ରଖି ପର୍ବତ ଉପରକୁ ନିଆଯିବ । ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ଗଛରେ ବାନ୍ଧି, ମୁହଁରେ କନା ଭଡ଼ିଦେବେ, ଯେପରି କେହି ଚିତ୍କାର କରି ନ ପାରେ । ପରେ ବୋଇତ ଆସିଲେ ସେମାନଙ୍କୁ ଗୋଟି ଗୋଟି କରି ବୋଇତରେ ଚଢ଼ାଇ ଦିଆଯିବ । ସେମାନେ ଆଣ୍ଡାମାନ ଦ୍ୱୀପରେ ଆଜୀବନ ବନ୍ଦୀ ରହିବେ । ଏମାନଙ୍କୁ ବନ୍ଦୀ ନ କରି ଜୀବନରେ ମାରି ସମୁଦ୍ରରେ ଭସାଇ ଦେଲେ ତ ମୁକ୍ତ ହୋଇଯାନ୍ତେ ଦୁଇ ପକ୍ଷ ? ମାତ୍ର ଶୀତଳ ରକ୍ତରେ ଏକାଧାରେ ଏତେ ଲୋକଙ୍କୁ ହତ୍ୟା କରିବାକୁ କିଏ ସାହସ କରିବ ? ବରଂ ସେମାନେ ଆଣ୍ଡାମାନରେ ଅନାହାରରେ ମରନ୍ତୁ ।

ବଣିକ କହିଲେ, ବୋଧହୁଏ ତୁମ୍ଭଙ୍କୁ ଏଠି ବହୁଦିନ ରହିବାକୁ ପଡ଼ିବ ନାହିଁ । କଳିଙ୍ଗପତ୍ତନରେ ଥିବା ସମୟରେ ଆଦେଶ ଦେଇ ଲୋକ ପଠାଇଥିଲି ଲୁଗାର ବୋଇତ ଯେପରି ଆଜି ତାମ୍ରଲିପ୍ତରୁ ବାହାରେ । ଯଦି ଆଦେଶ ପାଳିତ ହୋଇଥିବ, ବୋଇତ ସକାଳୁ ବାହାରିବଣି । ଆମେ ତାକୁ ବାଟରେ ଦେଖିଲେ ଅତି ଶୀଘ୍ର ଏଠାକୁ ପଠାଇ ଦେବୁ ।

ତେବେ ନିଶ୍ଚୟ ଜାଣିଥା, ଏହି ବାଳକର ଜୀବନ ଅଳ୍ପକ୍ଷଣ ପରେ ତୁଟି ଯିବ । ସ୍ତ୍ରୀର ସତୀତ୍ୱ ନିକଟରେ ତା'ର ସନ୍ତାନର ଜୀବନ ତୁଚ୍ଛ । ଯେତେବେଳେ ଜଣେ ନିରୀହ ବଣିକର ସର୍ବସ୍ୱ ହରଣ କରି ତାର ସମସ୍ତଙ୍କୁ ଅତର୍କିତ ଭାବରେ ହତ୍ୟାକରିଛ ଏବଂ ନିରପରାଧ ଆମ୍ଭମାନଙ୍କୁ କେଜାଣି କେଉଁ ଉଦ୍ଦେଶ୍ୟରେ ବନ୍ଦୀ କରିଛ, ଆମ୍ଭେମାନେ ଅଗରୁ ଜାଣୁ ଯେ ତୁମେମାନେ ମନୁଷ୍ୟ ରୂପଧାରୀ ରାକ୍ଷସ ଅଗରୁ ସେଥି ନିମନ୍ତେ ମହାପ୍ରଭୁ ବୁଦ୍ଧଙ୍କ ଉଦ୍ଦେଶ୍ୟରେ ଜୀବନ ଜଳାଞ୍ଜଳି ଦେଇ ସାରିଛୁ । ଏହି ହତଭାଗ୍ୟ ବାଳକର ଜୀବନ ଯେ କୌଣସି ମତେ ରହିବ,

ଏହା ନୁହେଁ, ଅତଏବ ତୁଚ୍ଛ ଜୀବନ—ସନ୍ତାନର ଜୀବନ ନିମନ୍ତେ ସ୍ତ୍ରୀକୁ ଭୟ ଦେଖାଇ ତା'ର ସତୀତ୍ୱ ନଷ୍ଟ କରିବ, ଏହା ସ୍ୱପ୍ନରେ ହେଲେ ଭାବ ନାହିଁ ।

ବୃଥା ବକ୍ତୃତାରେ ଫଳ ନାହିଁ, ଗର୍ବିଣୀ, ଶୀଘ୍ର ସମ୍ମତ ହୁଅ । ବର୍ତ୍ତମାନ ମଧ୍ୟ ସମୟ ଅଛି । ଦେଖ୍ ତୋର ଏହି ଶିଶୁ ସନ୍ତାନର ବେକରେ ମୋର ଖଣ୍ଡା କିପରି ଚକ୍ ଚକ୍ ଦିଶୁଛି; କହ ।

ଏତିକି କହି ଯୁବକ ବାଲକର ବେକରେ ଖଣ୍ଡା ଲଗାଇଲା । ରମଣୀ ଅଧୀର ହୋଇ ମୁକ୍ତ ହେବାକୁ ଚେଷ୍ଟା କଲା । ମାତ୍ର ପାରିଲା ନାହିଁ । ଗୋଡ଼ହାତ ବୃକ୍ଷ ଦେହରେ ଦୃଢ଼ରୂପେ ବନ୍ଧା । ଚେଷ୍ଟା କଲେ ଲାଭ କ'ଣ ? ରମଣୀ ମୁଣ୍ଡ ବୁଲାଇ ଚକ୍ଷୁ ବନ୍ଦ କଲା । ଉଚ୍ଚସ୍ୱରରେ ଭଗବାନଙ୍କୁ ସମ୍ବୋଧନ କରି ବାଲକର ଜୀବନ ରକ୍ଷା ନିମନ୍ତେ ପ୍ରାର୍ଥନା କଲା ।

ନାବିକ ଯୁବକ ରମଣୀର ଅଟଳ ପ୍ରତିଜ୍ଞା ଦେଖି ସ୍ତମ୍ଭୀଭୂତ ହେଲା । ରୋରୁଦ୍ୟମାନ ବାଳକଟିକୁ ଛାଡ଼ି, ଖଣ୍ଡା ତଳେ ରଖି ରମଣୀଆଡ଼କୁ ଅଗ୍ରସର ହେଲା । କହିଲା, ଦେଖ୍, ବର୍ତ୍ତମାନ ତୋତେ ମୁଁ ଆକ୍ରମଣ କରିବ । ଦେଖିବି ତୋତେ କିଏ ରକ୍ଷା କରିବ ? ଆଉ ତୋର ସତୀତ୍ୱ ରହିବ କେଉଁଠି ? ରଖିବ କିଏ ?

"ସ୍ତ୍ରୀର ସମ୍ମୁଖରେ ସ୍ତ୍ରୀ ଉପରେ ଅତ୍ୟାଚାର କରି ପାରିବୁ ନାହିଁ ପାପିଷ୍ଠ, ନା, କଦାପି ନୁହେଁ ।"

ସେତେବେଳେ ଅସ୍ତଗାମୀ ସୂର୍ଯ୍ୟ ଖୁଣ୍ଟିଆ ପର୍ବତର ପଛଆଡ଼େ ଲୁଚି ଗଲେଣି । ଯେଉଁ ସ୍ଥାନରେ ଗୋଟି ଗୋଟି ହୋଇ ବନ୍ଦୀମାନେ ବନ୍ଧାହୋଇ ଥିଲେ, ସେହି ସ୍ଥାନର ନିମ୍ନଦେଶରେ କେତେଗୁଡ଼ିଏ ଲୋକଙ୍କର ମୃତପିଣ୍ଡ ପଡ଼ିଥିଲା । ନିକଟରେ କୌଣସି ଗୋଟିଏ ପଥର ଅଢ଼ୁଆଳରୁ ଜଣେ ସ୍ତ୍ରୀ ଲୋକ ବାହାରି, ଭୂପତିତ ଖଣ୍ଡା ହାତରେ ଧରି ପୂର୍ବୋକ୍ତ ବାକ୍ୟ ଦୁଇଟି ଉଦ୍‌ବେଗପୂର୍ଣ୍ଣ କଣ୍ଠରେ କହି ପକାଇଲା । ନାବିକ-ଯୁବକ ପଛକୁ ଚାହିଁଲା । ଦେଖିଲା ଜଣେ ରମଣୀ, ଖଣ୍ଡା ହାତରେ ଧରି, ଆରକ୍ତ ଲୋଚନରେ ତାରି ଆଡ଼କୁ ଅଗ୍ରସର ହେଉଛି । ସେ ରମଣୀ ଉପରେ ଅତ୍ୟାଚାର କରିବାକୁ ଆଉ ଯାଇ ପାରିଲା ନାହିଁ । ଅବାକ୍ ହୋଇ ଚାହିଁ ରହିଲା । ଏହି ଅବସରରେ ବାଳକ ମୁକ୍ତ ହୋଇ ବନ୍ଦିନୀ ଜନନୀର ଅଞ୍ଚଳ ଧରି କାନ୍ଦିବାକୁ ଲାଗିଲା ।

ଏଣେ ଯୁବକ କିଛିକ୍ଷଣପରେ କ୍ରୁଦ୍ଧ ହୋଇ ଆଗନ୍ତୁକାର ନିକଟକୁ ଧାଇଁ ଗଲା । ଉଦ୍ଦେଶ୍ୟ, ନିଜର ଖଣ୍ଡା ଛଣ୍ଡି କୌଣସି ମତେ ଉଦ୍ଧାର କରିବ ।

ଆଗନ୍ତୁକା, ଭୟ ର କୌଣସି ଚିହ୍ନ ନ ଦେଖାଇ ସମ୍ବୋଧନ କଲ୍ଲ, ମୂର୍ଖ ! ଭଲ ଦ୍ବଶା ଥିଲେ ଶୀଘ୍ର ଆତ୍ମସମର୍ପଣ କର । ନୋହିଲେ ଏହି ଦେଖ, ଅଦୂରେ ଭୂମିଶାୟୀ ହତଭାଗ୍ୟଙ୍କ ପରି ତୋତେ ଆଜ ତୋର ଖଣ୍ଡାରେ ଶୁଆଇ ଦେବି । ଅଶାହା ଅବଳା ପ୍ରତି ଅତ୍ୟାଚାର କରିବାକୁ ଯେ ଉଦ୍ୟତ ତା'ର କପାଳରେ ଭଲ ନାହିଁ ଜାଣି ଥା ।

କିଏ ତୁ ? ତୋର ଏତେ ସାହସ ? ତାଚ୍ଛଲ୍ୟ କରି ଯୁବକ ପଚାରିଲ୍ଲ ।

ମୁଁ ? ମୁଁ ସେହି ଜାତିରୁ ଜଣେ, ଯାହା ଉପରେ ନାର୍ଲ୍ଲଜଙ୍କ ପରି ନିର୍ଦ୍ଦୟରେ ଆଜ ଅତ୍ୟାଚାର କରିବାକୁ ବସିଥିଲ୍ । ଗର୍ବିତଭାବରେ ରମଣୀ ଉତ୍ତର ଦେଇ ବନ୍ଦୀ ରମଣୀକୁ ମୁକ୍ତ କରିବାକୁ ଅଗ୍ରସର ହେଲ୍ଲ । ଦେଖିଲ୍ଲ, ରମଣୀ ଜଣେ ସାଧାରଣ-ଘରର ସ୍ତ୍ରୀ ନୁହେଁ, କୌଣସି ବିଶିଷ୍ଟ ସମ୍ଭ୍ରାନ୍ତ ବଂଶୀୟା—ତାକୁ ଦେଖି କୃତଜ୍ଞତାପୂର୍ଣ୍ଣ ଚକ୍ଷୁରେ ଅନାଇ ରହିଲେ, ମୁଖରୁ କଥା ବାହାରିଲ୍ଲ ନାହିଁ । ସେ ନିଜର ଅମିଷଗନ୍ଧ ଯୁକ୍ତ ଅଞ୍ଚଳରେ ଉଭୟ ପୁତ୍ର ଓ ଜନନୀର ଲୋତକ ପୋଛି ଧୀର ସ୍ୱରରେ ଜିଜ୍ଞାସା କଲେ, କିଏ ତୁମେ, କ୍ଷୁଦ୍ର ବାଳକ ସହି ଏମାନଙ୍କ ହସ୍ତରେ ବନ୍ଦିନୀ ? ନା ଭଉଣୀ ଭୟ ନାହିଁ । ଆଜି ନିଶ୍ଚୟ ତୁମ ଦୁହିଙ୍କୁ ମୁଁ ଉଦ୍ଧାର କରିନେବି । ଦୟାପରବଶା ରମଣୀର ପ୍ରାଣ ଏକାଥରେ ତରଳି ପଡ଼ିଲ୍ଲ, ସେମାନଙ୍କ ଦୁର୍ଦ୍ଦଶା ଦେଖି ।

ହୁସିଆର, ତାକୁ ଖୋଲ ନା ! ରାଗରେ ଗର୍ଜ୍ଜନ କରି ଯୁବକ କହିଲ୍ଲ, ଜାଣୁ ନିକଟରେ ମୋର ପରି ଆହୁରି ଅନେକ ଲୋକ ଏମାନଙ୍କୁ ଜଗି ରହିଛନ୍ତି । ଯଦି ସମ୍ବାଦ ଦିଏ ତୋତେ ମଧ୍ୟ ଏହିପରି ବନ୍ଦିନୀ ହୋଇ ରହିବାକୁ ପଡ଼ିବ ।

ତୋର ବୃଥା ଆସ୍ଫାଳନରେ ଭୟ କରେ ନା ମୁଁ । ଜାଣୁ, ନିକଟରେ ମୋର ମଧ୍ୟ ଶତାଧିକ ଅନୁଚର ଲୁଚି ରହିଛନ୍ତି । ଆଦେଶ ଦେବା ମାତ୍ରେ ଆସି ଏହିଠାରେ ରୁଣ୍ଡ ହୋଇଯିବେ । ତେବେ ରହି ଯୁବକ, ଯେଉଁଠାରେ ଠିଆ ହୋଇଛୁ ସେହିଠାରେ ଖୁଣ୍ଟପରି ଠିଆ ହୋଇଥା । ଦେଖ, ଯଦି ଏକପଦ ମାତ୍ର କେଉଁ ଆଡ଼କୁ ଗଲୁ ତେବେ ଏହି ଖଣ୍ଡାରେ ତୋର ମୁଣ୍ଡ ଦ୍'ଖଣ୍ଡ କରିଦେବି ।

ରମଣୀ ନିକଟରୁ ଗୋଟାଏ ଲତା କାଟି ଲୋକଟିର ପାଖକୁ ଫିଙ୍ଗିଗଲ୍ଲ ଏବଂ ରାଗରେ ଚକ୍ଷୁ ରକ୍ତବର୍ଣ୍ଣ କରି କହିଲ୍ଲ, ନିଜିମାନ ଯୋଡ଼ହସ୍ତ କରି, ନୋହିଲେ—

ରମଣୀର ବାକ୍ୟରେ ଯୁବକ ନ ହସି ରହି ପାରିଲା ନାହିଁ । ମନେ ମନେ ଅଟ୍ଟା କରି କହିଲା, ସାଧାରଣ ଜଣେ ନାରୀର ସାହସ ଦେଖ । ଗୋଟାଏ ଗୁପୁଡ଼ାରେ ମୁହଁ ବଙ୍କା ହୋଇଯିବ ।

ସେ ସଙ୍ଗେ ସଙ୍ଗେ ସ୍ତ୍ରୀ ଲୋକର ଦେହରେ ମୁଷ୍ଟ୍ୟାଘାତ କରିବାକୁ ଉଦ୍ୟତ ହେଲା, ମାତ୍ର ପାରିଲା ନାହିଁ । ପରକ୍ଷଣରେ ତା'ର ଦକ୍ଷିଣହସ୍ତ ରମଣୀର ବାମହସ୍ତର ମୁଠାଭିତରେ ବନ୍ଦୀ । ଏଁ, ଏ କିଏ ? ସ୍ତ୍ରୀ ଲୋକଠାରେ ଏତେ ବଳ ? ବହୁ ଚେଷ୍ଟାକରି ମଧ୍ୟ ହାତକୁ ମୁକ୍ତ କରି ପାରିଲା ନାହିଁ । ବାଧ ହୋଇ ଶିଶୁ ପରି ଠିଆ ହୋଇ ରହିଲା ।

ରମଣୀ ଖଣ୍ଡାଟିକୁ ତଳେ ରଖି ଦକ୍ଷିଣ ହସ୍ତରେ ଯୁବକର ଦୁଇ ହସ୍ତ ପଛଆଡ଼କୁ କରିଲାଇ ଲଠାରେ ବାନ୍ଧ ଦେଲା । ଯୁବକ ଦେହର ଉତ୍ତରୀୟ ନେଇ ତାକୁ ଦୃଢ଼ରୂପେ ନିକଟସ୍ଥ ଶାଳଗଛରେ ବାନ୍ଧିଲା । ଯୁବକ ସହସ୍ର ଚେଷ୍ଟା କରି ମଧ୍ୟ ରମଣୀର କୌଣସି କାର୍ଯ୍ୟରେ ବାଧା ଦେଇ ପାରିଲା ନାହିଁ ।

ହଠାତ୍ ଯୁବକର ମନେ ପଡ଼ିଲା, ନିକଟରେ ତା'ର ସାଥୀ ନାବିକମାନେ ପଶା ଖେଳୁଛନ୍ତି । ଉଚ୍ଚ ସ୍ୱରରେ ଗୋଟାଏ ରଡ଼ି ଛାଡ଼ିଲେ ସମସ୍ତେ ଆସି ମିଳିଯିବେ । କିନ୍ତୁ ରମଣୀ ଅଧିକ ଚାଲାକ । ନିଜ ଶାଢ଼ୀର କିୟଦଂଶ ଚିରିଣ୍ଡାଇ ଯୁବକର ମୁଖ ମଧ୍ୟରେ ପୂରାଇ ଦୃଢ଼ରୂପେ ବାନ୍ଧି ଦେଲା । ସେ ଚିତ୍କାର କରିବାକୁ ଚେଷ୍ଟା କଲେ ମଧ୍ୟ ପାରିଲା ନାହିଁ—ଖାଲି ଗାଁ ଗାଁ ଶବ୍ଦକରି ପରେ ନିରସ୍ତ ହେଲା ।

ବୀର ରମଣୀ ଯୁବକକୁ କହିଲା, ଏବେ ତୋର କାର୍ଯ୍ୟର ପ୍ରତିଫଳ ଭୋଗ କରୁଥା ନିଶ୍ଚିନ୍ତରେ । ସେ ଖଣ୍ଡାଖଣ୍ଡି ହାତରେ ଧରି ବନ୍ଦୀମାନଙ୍କ ନିକଟକୁ ଗଲା । ତା'ର ବନ୍ଧନ କାଟି ସାନ୍ତ୍ୱନା ଦେଇ କହିଲା, କୌଣସି ଭୟ କର ନା ଭଉଣୀ, ଆଜି ତୁମକୁ ମୁକ୍ତକରି ନେବ । ବର୍ତ୍ତମାନ କହ, ଅଦୂରରେ ଯେଉଁମାନେ ବନ୍ଦୀ ଅଛନ୍ତି, ସେମାନେ କିଏ ? ତୁମେମାନେ ଏଠାରେ ଏପରି ଭାବରେ ବନ୍ଦୀ କାହିଁକି ?

କି ଉତ୍ତର ଦେବେ ? ଜଣେ ରମଣୀର କାର୍ଯ୍ୟ ଦେଖି ସେ ସ୍ତମ୍ଭିତ ହୋଇ ଯାଇଥିଲେ । ନିଜର ଶିଶୁପୁତ୍ରକୁ ବୀରରମଣୀର ପଦତଳେ ପକାଇ ବନର ଦେବୀ ଅନୁମାନରେ ନିଜେ ମଧ୍ୟ ପ୍ରଣାମ କରିବାକୁ ଗଲେ । ମାତ୍ର ନାରୀ ବାଧାଦେଇ ପୁନର୍ବାର ପୂର୍ବୋକ୍ତ ପ୍ରଶ୍ନ ପଚାରିଲା ।

ରମଣୀ ସଜଳ ନୟନରେ ଉତ୍ତର କଲେ, ଆମେ କିଏ, କିପରି ବନ୍ଦୀ ହେଲୁ କହିବାକୁ ଗଲେ ସମୟ ଲାଗିବ । ନିକଟରେ ଶତ୍ରୁପ୍ରକାର ଅନେକ ଲୋକ ଅଛନ୍ତି ।

ଅମ୍ଭମାନଙ୍କୁ ଜଗିବା ନିମନ୍ତେ ସେମାନେ ଏହି ଦୁର୍ଦ୍ଧର୍ଷ ଯୁବକକୁ ରଖି ଯାଇଥିଲେ । ଯଦି କୌଣସିମତେ ସମ୍ବାଦ ପା'ନ୍ତି, ତେବେ ଆଉ ରକ୍ଷା ନାହିଁ । ହଁ, ମୁଁ ବର୍ତ୍ତମାନ ସବୁ ଖୋଲିକରି କହିବି; କାରଣ ନିକଟରେ ତ ଆପଣଙ୍କର ଅନେକ ଲୋକ ରହିଛନ୍ତି । ବୋଧହୁଏ ଆପଣଙ୍କର ଆଦେଶ ପାଇଲେ, ସେମାନେ ଅମ୍ଭମାନଙ୍କୁ ଅକ୍ଳେଶରେ ଉଦ୍ଧାର କରି ପାରିବେ । ତେବେ ଶୁଣନ୍ତୁ—

ନା ଭଉଣୀ, ସବୁ ମିଛକଥା । ମୁଁ ଜଣେ ଦରିଦ୍ରା ସ୍ତ୍ରୀ । ମାଛ ଧରି ଦୁଇ ପଇସା ରୋଜଗାର କରେ । କେବଳ ଲୋକଟାକୁ ଡରାଇ ଦେବାକୁ ମିଛରେ କହିଥିଲି ସିନା, ଏଠାରେ ଲୋକ ଆସିବେ କେଉଁଠୁ । ଖୁଣ୍ଟିଆ ଦ୍ୱୀପରେ ମୋ ବ୍ୟତୀତ ଆଉ କେହି ବର୍ତ୍ତମାନ ନ ଥିବେ । କହନ୍ତୁ ଶତ୍ରୁପକ୍ଷର ଏତେ ଲୋକ ନିକଟରେ ଅଛନ୍ତି । ଅଦୂରରେ ସମୁଦ୍ର କୂଳରେ ମୋର ଗୋଟିଏ ଛୋଟ ନୌକା ଅଛି, ଶୀଘ୍ର ଆସ । ସ୍ଥଳଭାଗ ବି ବେଶୀ ଦୂରରେ ନୁହେ ।

ଭଉଣୀ, ମୋର ପରମ ଦେବତା ସ୍ୱାମୀ ଯେ ନିକଟରେ ବନ୍ଦୀ ହୋଇ ରହିଛନ୍ତି । ତାଙ୍କୁ ଶତ୍ରୁ ହାତରେ ଛାଡ଼ି ଜୀବନ ନେଇ ମୁଁ ପଳାଇ ପାରେ ନା । ଏହି ଦେଖ, ସେ କିପରି ଆନନ୍ଦରେ କୃତଜ୍ଞତାପୂର୍ଣ୍ଣ ଲୋଚନରେ ତମରି ଆଡ଼କୁ ଅନାଇ ରହିଛନ୍ତି । ଆହା, ତାଙ୍କର ଦେହକୁ ଏ ବନ୍ଧନ କିପରି କଷ୍ଟ ଦେଉ ନ ଥିବ ?

ବେଶ, ତେବେ ତାଙ୍କୁ ମଧ୍ୟ ମୁଁ ଉଦ୍ଧାର କରି ନେଇ ଆସେ । ନୌକାରେ ତାଙ୍କ ନିମନ୍ତେ ସ୍ଥାନ ଅଛି, ଭୟ ନାହିଁ ।

ରହ, ତୁମେ ଯାଅ ନା, ମୁଁ ଯାଏଁ, କାଲେ କେହି ଆସି ପହଞ୍ଚିବ ?

ସେଥିପାଇଁ ମୁଁ ଭୟ କରେ ନା ।

"ମୁଁ ଭୟ କରେ, ମୋର ଏହି ଶିଶୁଟି ନିମନ୍ତେ । ବର୍ତ୍ତମାନ ଭଉଣୀ, ଏହି ଶିଶୁଟିକୁ ନେଇ ତୁମେ ଜଙ୍ଗଲ ଭିତରକୁ ଚାଲିଯାଅ । ଖଣ୍ଡାଟି ମୋତେ ଦିଅ । ମୁଁ ନିଜେ ଯାଇ ମୋ ସ୍ୱାମୀଙ୍କୁ ଉଦ୍ଧାର କରି ଆଣେ । ଯଦି କେହି ଆସିଯାଏ, ଅନ୍ତତଃ ମୋର ଏହି ଶିଶୁ ସନ୍ତାନଟି ଉଦ୍ଧାର ପାଇଯିବ ।

ଦ୍ୱିରୁକ୍ତି ନ କରି ଖଣ୍ଡାଟି ମୁକ୍ତାରମଣୀର ହାତକୁ ବଢ଼ାଇ ଦେଲା । ଶିଶୁଟିକୁ କାଖ କରିବାକୁ ଡାକିଲା, କିନ୍ତୁ ସେ ଆସିଲା ନାହିଁ । ଜନନୀର ଅଞ୍ଚଳ ଧରି କାନ୍ଦିବାକୁ ଆରମ୍ଭ କଲା ।

ମା ଲୋତକପୂର୍ଣ୍ଣ ନୟନରେ ସନ୍ତାନକୁ ଚୁମ୍ବନ କରି ଅଞ୍ଚଳରେ ସନ୍ତାନର ଲୋତକ ପୋଛି ସ୍ନେହମିଶ୍ରିତ କୋମଳ କଣ୍ଠରେ କହିଲେ, ଯା ବାପ, ମାଉସୀ ସଙ୍ଗରେ ଯା, ଆଉ ବେଶୀ କାନ୍ଦ ନା । ନିକଟରେ ଦୁଷ୍ଟଲୋକଗୁଡ଼ା ଖୋଜୁଛନ୍ତି । ତୋ କାନ୍ଦଣା ଶୁଣିଲେ, ଦଉଡ଼ି ଆସିବେ । କେତେ ମାରିବେ, କେତେ ଗାଳି ଦେବେ, ମୋତେ ନେଇ ପୁଣି ବାନ୍ଧି ପକାଇବେ ।

ତୁ ମୋ ମାଉଛି ! ଶିଶୁ କାନ୍ଦଣା ବନ୍ଦକରି ଗେଞ୍ଜାଳିଆ ସ୍ୱରରେ କହିଲା । ହଁ, ଧନ ଆ, କହି ଶିଶୁକୁ କାଖକରି ଯିବାକୁ ଉଦ୍ୟତ ହେଲା । ଶିଶୁ ମା'କୁ ଚାହିଁ ପଚାରିଲା; ମା ମୁଁ ମାଉଛି ସଙ୍ଗେ ଯାଉଛି । ତୁ ଯିବୁ ନାହିଁ ।

ହଁ, ମୁଁ ଯିବି ଯେ । ମୁଁ ପରି ଯାଉଛି, ବାପାକୁ ମୁକୁଳାଇ ଆଣିବାକୁ । ତୁ ଯା ମୁଁ ବାପାକୁ ସାଙ୍ଗରେ ନେଇ ତୋ ପଛେ ପଛେ ଯାଉଛି ।

କିଛି ସମୟ ନୀରବ ରହି—ଭଉଣୀ, ଆଉ ମଠ କର ନା । ଯଦି କେହି ଆସିଯାଏ ସର୍ବନାଶ । ଆମେ ତ କେହି ଉଦ୍ଧାର ପାଇ ପାରିବୁ ନାହିଁ, ତାହିଁ ସଙ୍ଗେ ସଙ୍ଗେ ତୁମକୁ ମଧ୍ୟ ବନ୍ଦିନୀ ହେବାକୁ ପଡ଼ିବ । ଯାଉଛି, କେଜାଣି ମହାପ୍ରଭୁ ବୁଦ୍ଧି ଜାଣନ୍ତି, ଆଉ ମୋ ଶଣ୍ଢିଧନ ସଙ୍ଗେ ଏ ଜୀବନରେ ଦେଖା ହେବ କି ନାହିଁ । ଯଦି ନ ହୁଏ, ଭଉଣୀ ସେ ମୋର ପୁଅ ନୁହେ, ସେ ତମର । ସ୍ତ୍ରୀଲୋକ ତୁମେ, ସେଥି ନିମନ୍ତେ ସହଜରେ ବୁଝି ପାରୁଥିବ, ସନ୍ତାନ ପାଖରୁ ବିଚ୍ଛିନ୍ନ ହୋଇ ରହିଲେ, ମା'ର ହୃଦୟ କଣ ହୁଏ; ଆଉ ଅଧିକ କଣ କହିବ ? ଗୋଠାଇ ନେଉଛ ବୋଲି ଯେପରି ଅନାଦର କରି ଫିଙ୍ଗି ନ ଦଅ ।

ସେ ଆଉ ଉତ୍ତର ଦେଲା ନାହିଁ । ବାଳକକୁ କୋଳରେ ପୂରାଇ ସେ ଜଙ୍ଗଲ ଭିତରକୁ ପଶିଗଲା । ବାଳକ ମଧ୍ୟ ଅଧୀରତାର କୌଣସି ଚିହ୍ନ ନ ଦେଖାଇ ମାଉସୀର ଅବାଧ୍ୟ ନ ହୋଇ କାନ୍ଦଣା ବନ୍ଦ କଲା । ଦେଖୁ ଦେଖୁ ଉଭୟେ ଜଙ୍ଗଲ ଭିତରେ ବୃକ୍ଷଲତା ଆଡ଼ୁଆଳରେ ଲୁଚିଗଲେ । ବାଳକର ଜନନୀ ସେମାନଙ୍କୁ ଅଦୃଶ୍ୟ ହେବାର ଦେଖି ଚକ୍ଷୁର ଲୋତକ ପୋଛି ସ୍ୱାମୀକୁ ଉଦ୍ଧାର କରିବାକୁ ଗଲେ ।

ଦୂରରୁ ବନ୍ଦୀ ବଣିକ ଅଗନ୍ତୁକାର ସମସ୍ତ କାଣ୍ଡ ଦେଖି ଗୋଟିଏ କଥା ଅନୁମାନ କରି ନେଇଥିଲେ । ବନ୍ଦୀହୋଇ ମଧ୍ୟ ତାଙ୍କର ବଣିକୋଚିତ ପୋଷାକ ଦେହରେ ଥିଲା । ନିକଟରେ ସ୍ତ୍ରୀଙ୍କୁ ପ୍ରଫୁଲ୍ଲ ବଦନରେ ଉପସ୍ଥିତ ହେବାର ଦେଖି ସେ ଅହ୍ଲାଦିତ ହୋଇଥିଲେ । ସ୍ତ୍ରୀ ସ୍ୱାମୀଙ୍କର ବନ୍ଧନ ମୁକ୍ତକରି ପଳାୟନର କଥା ଉଠାଇଲେ । କିପରି ସେ ସନ୍ତାନର ଜୀବନ ରକ୍ଷାକରି ପାରିଛନ୍ତି, ଏ ବିଷୟ ମଧ୍ୟ

କହିବାକୁ ଭୁଲିଲେ ନାହିଁ । ମାତ୍ର ମୁକ୍ତବଣିକ ଦୁଃଖ ପ୍ରକାଶ କରି କହିଲେ, ଏତକ ବୁଝିପାରୁ ନା ଯେ, ସୁନ୍ଦର ଜୀବନ ବଞ୍ଚାଇବାକୁ ଯାଇ ଜଣେ ପରୋପକାରିଣୀ ସାକ୍ଷାତ ଦେବୀରୂପିଣୀ ନିରୀହା ରମଣୀର ଜୀବନ ମଧ୍ୟ ବିପଦାପନ୍ନ କରି ସାରିଛି !

ଆମର ଶତ୍ରୁମାନେ ଏଠାରେ ଉପସ୍ଥିତ ହେବା ପୂର୍ବରୁ ବୋଧହୁଏ ମୋର ସନ୍ତାନକୁ ନେଇ ସେ ଚାଲି ଯାଇଥିବେ । ବଣିକ ପତ୍ନୀଙ୍କର ମୁଖ ବିବର୍ଣ୍ଣ ଦେଖା-ଗଲା । ସ୍ୱାମୀଙ୍କର ବାକ୍ୟରେ ଗୋଟିଏ ଅଜଣା ଭୟ ମନ ମଧ୍ୟରେ ହଠାତ୍ ଖେଳିଗଲା । ନିଜର ଭାବକୁ ଗୋପନ କରିବାକୁ ଚେଷ୍ଟା କଲେ, ମାତ୍ର ପାରିଲେ ନାହିଁ । କହୁଁ କହୁଁ ଉତ୍କଣ୍ଠାରେ ଯେପରି ତାଙ୍କର କଣ୍ଠ ରୁଦ୍ଧ ହୋଇଗଲା ।

ବଣିକ ସ୍ତ୍ରୀଙ୍କୁ ସାନ୍ତ୍ୱନା ଦେଇ କହିଲେ, ଏଥି ନିମନ୍ତେ ଭୟ କାହିଁ ? ଭଗବାନ ବୁଦ୍ଧଙ୍କର ଯାହା ବିଧିଦ ଥିବ, ଅବଶ୍ୟ ହେବ । ଏହି ଦେଖ, ଦୂରରୁ ନାବିକମାନଙ୍କର ଗୋଳମାଳ ଶୁଭୁଛି । ବୋଧହୁଏ ଅତିଶୀଘ୍ର ସେମାନେ ଏଠାରେ ଉପସ୍ଥିତ ହେବେ । ପଳାଇବା ବିଷୟ ଯାହା କହିଲ, ମୁଁ ସେଥିରେ ସମ୍ପୂର୍ଣ୍ଣ ଅନିଚ୍ଛୁକ । କାରଣ ଯେଉଁ ନାବିକମାନେ କୃତଜ୍ଞତାର ସହିତ ଚିରଦିନ ଆମର ଆଦେଶ ପାଳନ କରି ଆସୁଥିଲେ ଏବଂ ଶେଷରେ ଯେଉଁମାନେ ଆମର ମୁକ୍ତି ନିମନ୍ତେ ପ୍ରାଣପଣେ ଚେଷ୍ଟା କରିଥିଲେ, ସେମାନଙ୍କୁ ନିରାଶ୍ରୟ ଅବସ୍ଥାରେ ବନ୍ଦୀରୂପେ ଛାଡି ମୁଁ ଜୀବନ ରକ୍ଷାପାଇଁ ପଳାଇଲେ, ଭଗବାନ ବୁଦ୍ଧ ଅସନ୍ତୁଷ୍ଟ ହେବେ । ବର୍ତ୍ତମାନ ମୁଁ ମୁକ୍ତ । ଏଥର ଚେଷ୍ଟା କରିବି, ଶତ୍ରୁହାତରୁ ସମସ୍ତଙ୍କୁ ଉଦ୍ଧାର କରିବାକୁ; କିନ୍ତୁ ଶୁଣ, ସମୟ ଅଛି, ଚାଲିଯାଅ । ତୁମେ ସେ ରମଣୀର ଅନୁଗାମିନୀ ହୋଇ ଚାଲିଯାଅ । ନିଜକୁ, ସନ୍ତାନକୁ ଏବଂ ସେହି ହିତକାରିଣୀ ରମଣୀକୁ ରକ୍ଷା କର । ନୋହିଲେ ନାବିକମାନେ ଉପସ୍ଥିତ ହେଲେ, ଅଳ୍ପ ସମୟ ମଧ୍ୟରେ ସର୍ବନାଶ ଘଟିବ ।

ସେମାନେ ଜାଣିବେ କିପରି ?

ଦେଖୁ ନାହଁ, ଦୂରରେ ଜଣେ ନାବିକ ଶାଳଗଛରେ ଦଣ୍ଡାହୋଇ ସମସ୍ତ ଘଟଣା ଦେଖୁଛି । ଅବଶ୍ୟ ପ୍ରଥମେ ସେ କିଛି କହି ପାରିବ ନାହିଁ, ମାତ୍ର ମୁକ୍ତ ହେଲେ, ଅକ୍ଷରେ ଅକ୍ଷରେ ପ୍ରତ୍ୟେକ ଘଟଣା ବର୍ଣ୍ଣନା କରିବ । ସମ୍ବାଦ ପାଇ ଅନ୍ୟାନ୍ୟ ନାବିକମାନେ ଜଙ୍ଗଲରେ ପ୍ରତ୍ୟେକ ସ୍ଥାନ ଖୋଜି ଆସିବେ ଏବଂ ଦୟାମୟୀ ରମଣୀସହ ଆମର ଶିଶୁ ସନ୍ତାନଟିକୁ ବନ୍ଦୀକରି ଆଣିବେ । ଯାଅ, ଶୀଘ୍ର ଯାଅ; ଦେଖ, ଦୂରରୁ ନାବିକମାନେ ଚିତ୍କାର କରି ଏହି ଆଡ଼କୁ ଆସୁଛନ୍ତି । ଯାଅ, ବିଳମ୍ବ କର ନା ।

ନତଜାନୁ ହୋଇ, ଯୋଡ଼ହସ୍ତ କରି ରମଣୀ ଅଶ୍ରୁପୂର୍ଣ୍ଣ ଲୋଚନରେ କହିଲା, ମୁଁ ଯାଇ ପାରିବି ନାହିଁ । ବରଂ ପୁଅ ମୋର ପୁଳବାର ଧରାହୋଇ ଆସୁ, ତଥାପି ମୁଁ ତୁମକୁ ଶତ୍ରୁ ହାତରେ ଛାଡ଼ି ଚାଲିଯାଇ ପାରିବ ନାହିଁ ।

ତେବେ ଦିଅ, ଖଣ୍ଡାଟା ମୋ ହାତକୁ ବଢ଼ାଇ ଦିଅ । ଏତିକି କହି ସେ ତରବାରି ହସ୍ତରେ ଦ୍ରୁତପଦରେ ବନ୍ଦୀ ନାବିକ ନିକଟକୁ ଦଉଡ଼ି ଗଲେ । ଅବଳା ସେହିପରି ଅବସ୍ଥାରେ ଯୋଡ଼ହସ୍ତ ହୋଇ ସ୍ୱାମୀଙ୍କୁ ଅନାଇ ରହିଲା । ସ୍ୱାମୀ ଉତ୍ତେଜିତ ଭାବରେ ପ୍ରାର୍ଥନା କଲେ, ହେ ବୁଦ୍ଧ, ବୌଦ୍ଧଧର୍ମାବଲମ୍ବୀ ହୋଇ ମଧ୍ୟ ଆଜି ଅହିଂସା ପରମ ଧର୍ମ ପଥରୁ ମୁଁ ବାହାରି ଆସୁଛି । ସେଥି ନିମନ୍ତେ ମୋର ଯେତେ ଦୋଷ କ୍ଷମା କରିବେ । ଆଜି ପୁତ୍ରସ୍ନେହ ଧର୍ମାନୁରାଗକୁ ବଳି ପଡ଼ୁଛି, ଆଉ ସମ୍ଭାଳି ପାରୁ ନାହିଁ । ଏତିକି କହି ବନ୍ଦୀ ନାବିକର ମସ୍ତକ ଛେଦନ କଲେ ।

ଠିକ୍ ସେହି ସମୟରେ ନିକଟରୁ ନାବିକମାନଙ୍କର କୋଳାହଳ ଶୁଣାଗଲା । ସେଥି ମଧ୍ୟରୁ ଜଣେ କାହାର ବାକ୍ୟରୁ ପ୍ରକାଶ ପାଇଲା, ଜାଭା ଯିବାକୁ ବୋଇତ ଆସି ଖୁଣ୍ଟିଆଦ୍ୱୀପ ନିକଟରେ ଉପସ୍ଥିତ ହେଲାଣି ।

ପଳାୟନର ଉପାୟ ଉଦ୍ଭାବନା କରିବା ବୃଥା ଭାବି ବଣିକ ରକ୍ତଲିପ୍ତ ଖଣ୍ଡା ହାତରେ ଧରି ସ୍ତ୍ରୀଙ୍କ ନିକଟକୁ ଆସିଲେ । କହିଲେ, ଏଥର ଆମ୍ଭମାନଙ୍କୁ ଖୁଣ୍ଟିଆଦ୍ୱୀପ ଛାଡ଼ି ଅନ୍ୟତ୍ର ନେଇଯିବେ । ସେମାନଙ୍କର ଉଦ୍ଦେଶ୍ୟ ନୁହେ, ଆମକୁ ମାରିବା । ତାହା ହୋଇଥିଲେ, ସହଜରେ ଏପରି ନିର୍ଜ୍ଜନ ସ୍ଥାନରେ ତାଙ୍କର ଉଦ୍ଦେଶ୍ୟ ସାଧନ କରି ପାରିଥାନ୍ତେ । ବୋଧହୁଏ ସମୁଦ୍ର ମଝିରେ କୌଣସି ନିର୍ଜ୍ଜନ ଦ୍ୱୀପରେ ଆମକୁ ଛାଡ଼ି ଦେଇଯିବେ । ଅନ୍ୟ ଉପାୟ ଆଉ ଦେଖିପାରୁ ନାହିଁ । ଯଦି ମୋର ନାବିକମାନଙ୍କୁ ଉଦ୍ଧାର କରେ, ସେମାନେ କଣ ନେଇ ଆତ୍ମରକ୍ଷା କରିବେ ? ଆମ ନିକଟରୁ ସମସ୍ତ ଅସ୍ତ୍ର ଶତ୍ରୁମାନେ ନେଇ ଯାଇଛନ୍ତି । ଆହୁରି ମଧ୍ୟ ଯଦି ନାବିକ-ମାନଙ୍କୁ ମୁକ୍ତ କରେ, ସେମାନେ ଆତ୍ମରକ୍ଷା କରିବାକୁ ଜଙ୍ଗଲର ଏଣେତେଣେ ପଳାଇବେ । ଶତ୍ରୁପକ୍ଷର ଲୋକ ସେମାନଙ୍କୁ ଖୋଜିବାକୁ ଯାଇ ପିଲାଟିକୁ ଧରିବେ । ଆତ୍ମ ସମର୍ପଣ କରିବା ହିଁ ମୋ ପକ୍ଷରେ ଉଚିତ ।

ନାବିକମାନେ ଆସି ଉପସ୍ଥିତ ହୋଇଗଲେ ।

ରୂପେଇ ଏକାକିନୀ ନୌକା ବାହି କୂଳରେ ପହଞ୍ଚିଥିଲା । ସନ୍ଧ୍ୟା ଅନ୍ଧକାର ଚତୁର୍ଦ୍ଦିଗ ଆଚ୍ଛାଦନ କରି ସାରିଥିଲା । ନୌକା କୂଳରେ ଲାଗିଲାରୁ ରୂପେଇ ପ୍ରଥମେ ଅବତରଣ କରି ମୋଟା କଡା ଦଉଡ଼ିରେ ଯୋଡା ହୋଇଥିବା ଖୁଣ୍ଟରେ ଆଗ ମଙ୍ଗକୁ ଦୃଢ଼ରୂପେ ବାନ୍ଧିଲା ।

ରୂପେନ୍ଦ୍ର ବାଳକଟିକୁ ଓହ୍ଲାଇ ଆଣିଲା । ତତ୍ପରେ ଓହ୍ଲାଇଲା ବିଲେଇ ଓ ମାଛର ଖାଳେଇ । ଅଧିକ ସମୟ ଅପେକ୍ଷା ନ କରି ବାଳକଟିକୁ କାଖେଇ ଖାଳେଇ କାନ୍ଧରେ ଝୁଲାଇଲା । ବିଲେଇକୁ ଗୋଟିଏ ହାତରେ ଧରି କୁଟିର ଅଭିମୁଖେ ଚାଲିଲା ।

କୁଟିରରେ ଉପସ୍ଥିତ ହେବା ସମୟକୁ ସେ ସମ୍ପୂର୍ଣ୍ଣ କ୍ଳାନ୍ତ ହୋଇ ଯାଇଥିଲା । ବାଳକ, ବିଲେଇ ଏବଂ ମାଛର ଖାଳେଇ ତଳେ ରଖି ଦେଖିଲା, ଘରେ କେହି ନାହିଁ । ବାହାର ପାଖ ଝିଞ୍ଜିରି ଦିଆ ହୋଇଛି । ବଳବଳ ଅନ୍ଧାର ଚାରିଆଡ଼େ ଘୋଟି ଗଲାଣି । ଘରେ ଆଲୁଅ ଲାଗି ନାହିଁ । ବିରକ୍ତ ହୋଇ ଭାବିଲା, ଆସ୍ଥାଲୋକ ତ ଯେ; ଟିକିଏ ଆଲୁଅଟା ଲଗାଇବା ଯାଙ୍କ ଦ୍ୱାରା ହେଲା ନାହିଁ । ମୁଇଁ ଆସି ସବୁ କରିବି । କୁଆଡ଼େ ଗଲେ, ଘର ଏପାଖୁ ଝିଞ୍ଜିରି ଦେଇ ? ତାଙ୍କର କ'ଣ ଟିକିଏ ହୋଇ ଡରଭୟ ଅଛି ? ଦାରଠାକୁ ମେଲା ପକାଇ କୁଆଡ଼େ ଗପ୍ପକରି ଚାଲି ଗଲେଣି ।

ଏଇଠି ବସିଥା, ବାପ; ମୁଁ ଆଲୁଅଟା ଲଗାଏଁ, ଡରିବୁ ନାହିଁ ତ ? ବାଳକ ଉତ୍ତର ଦେଲା, ନା ।

ରୂପେନ୍ଦ୍ର ସଙ୍ଗେ ସଙ୍ଗେ ଉଠି ଘରର ଝିଞ୍ଜିରି ଖୋଲି ଦେଲା । ଘରର ଏକଣ ସେକଣ ଦରାଣ୍ଡି ମାଟିର ଦୀପଟି ପାଇଲା । ଝିକମିକ ପଥର ସାହାଯ୍ୟରେ ଦୀପ ଜାଳିଦେଲା । ଦୀପର ସ୍ୱଳ୍ପାଲୋକରେ ଗୃହଟି ଯତ୍କିଞ୍ଚିତ୍ ଆଲୋକିତ ହେଲା । ରୂପେନ୍ଦ୍ର ଦେଖିଲା, ଶିଶୁର ମନରେ ସୁଖ ନାହିଁ । ମୁହଁ ଶୁଖି ଯାଇଛି । ଚକ୍ଷୁରେ ଜଳ । ଭାବିଲା, ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ପାଞ୍ଚ ଛଅ ବର୍ଷର ବାଳକ । ବାପ ମା'ଙ୍କଠାରୁ ଅଲଗା ହୋଇ ଅପରିଚିତ ନିକଟରେ ସହଜରେ ମନ ମାନିବ କେଉଁଠି ? ପୁଣି ବାଳକର ତରଳ ମନରେ ଯୁବକ ନାବିକର ଭୟ ଗୋଟାଏ ଚିହ୍ନ ଆଙ୍କି ଦେଇଛି । ସେ ଚିହ୍ନ ବର୍ତ୍ତମାନ ସୁଦ୍ଧା ରହିଛି । ସମୟ ଧୀରେ ଧୀରେ ସେ ଅଙ୍କିତ ଚିହ୍ନକୁ ଲିଭାଇ ଦେଲେ ମନର ପରିବର୍ତ୍ତନ ହେବ, ସତ; କିନ୍ତୁ ଏତେ ଶୀଘ୍ର ନୁହେ । ସେ ଉତ୍ତାଣି ଶିଶୁ ନୁହେ, ବୁଝିବାର କ୍ଷମତା କେତେକ ପରିମାଣରେ ମନ ମଧ୍ୟରେ ବଢ଼ି ଗଲାଣି । ବୁଦା ପଛଆଡ଼ୁ ସେ ଉତ୍ତମରୂପେ ଦେଖି ପାରିଥିଲା, କିପରି ତା'ର ପିତା ବନ୍ଦୀ ନାବିକକୁ ହତ୍ୟା କରିଥିଲେ, କିପରି ନାବିକ-ମାନେ ପରେ ପିତାମାତାଙ୍କୁ ବନ୍ଦୀ କଲେ ।

କାନ୍ଦ ନା ବାପ, କାନ୍ଦ ନା; ରୂପେନ୍ଦ୍ରର ସ୍ନେହପୂର୍ଣ୍ଣ କୋମଳ ବାକ୍ୟରେ ବାଳକର ଅଶ୍ରୁ ଧାର ଧାର ହୋଇ ଗଡ଼ି ପଡ଼ିଲା । ସେ କଇଁକଇଁ ହୋଇ କାନ୍ଦି ପକାଇଲା । ଏହି ତ ମାନବ ପ୍ରକୃତି । ମାନବର ଦୁଃଖ ଯେତେବେଳେ ଅତିଶୟ

ହୋଇପଡ଼େ, ତା'ର ମନ କଠିନ ହୋଇଯାଏ । ମନ ମଧ୍ୟରେ ଦୁଃଖର ପ୍ରଭାବ ଅତ୍ୟଧିକ ହେଲେ ମଧ୍ୟ ବାହାରକୁ ବିଶେଷ ଚିହ୍ନ ଦେଖାଯାଇ ପାରେ ନା । କିନ୍ତୁ ସହାନୁଭୂତିର ଶୀତଳ-ବାୟୁ ମନୁଷ୍ୟର ଉତ୍ତପ୍ତ ହୃଦୟରେ ପଶି ଦୁଃଖର କେତେକ ଅଂଶ ବାଷ୍ପାକାରରେ ଉଡ଼ିଗଲେ ଚକ୍ଷୁରେ ଲୋତକ ଉଦୟ ହୁଏ । ଏହି ମର୍ମାନିୟମର ବଶବର୍ତ୍ତୀ ହୋଇ ବାଳକ କାନ୍ଦି ପକାଇଲା । କାନ୍ଦଣା ସ୍ୱରରେ ପଚାରିଲା, ମା କାହିଁ ? ମୋତେ ତା' ପାଖରେ ଛାଡ଼ିଦେ ।

ଆଉ କୌଣସି ବିଷୟ ଗୋପନ କରାଯାଇ ନ ପାରେ । ସେସବୁ ଦେଖି ମଧ୍ୟ ଅବୁଝା ହୋଇଛି । ରୂପେଇ ବାଳକକୁ କୋଳକୁ ଟାଣି ଆଣିଲା । ବାଳକ ରମଣୀର ଚେଷ୍ଟାରେ ବାଧା ଦେଲା । ସେ ବାଧା ସ୍ନେହଶୀଳା ରମଣୀର ହୃଦୟ ମାନିପାରେ କେବେ ? ବାଳକକୁ କୋଳରେ ବସାଇ ତାକୁ ବାରମ୍ବାର ଚୁମ୍ବନ କରି ରୂପେଇ ପୁନର୍ବାର ଅନୁରୋଧ କଲା, କାନ୍ଦ ନା ଧନ, ତୋର ବାପ ମା'ଙ୍କୁ ଶତ୍ରୁମାନେ ଧରି ନେଇଛନ୍ତି । ତତେ ମୁଁ ଲୁଚାଇ କରି ନେଇଆସି ନ ଥିଲେ ସେମାନେ ଧରି ନେଇଥାନ୍ତେ ।

ତୁ ମତେ ମୋ ମା ପାଖରେ ଛାଡ଼ିଦେଇ ଆ ।

ତୁ ତ ଦେଖିଛୁ, ଶତ୍ରୁମାନେ କିପରି ତୋ ବାପ-ମା'ଙ୍କୁ ଧରି ଜାହାଜରେ ବସାଇ ସମୁଦ୍ର ଭିତରକୁ ନେଇଗଲେ ? ତୁ ତ ଶୁଣିଛୁ, ତୋ ମା କିପରି ତତେ ନେଇଯିବାକୁ ମତେ କହିଲା । ବର୍ତ୍ତମାନ ଆଉ ମା ଆସିବ କେଉଁଠୁ ?

କାନ୍ଦଣା ସ୍ୱରରେ ବାଳକ ପଚାରିଲା, ଲୋକମାନେ ମୋ ବାପ-ମାକୁ କଣ କରିବେ ?

କିଛି କରିବେ ନାହିଁ, ପରେ ଆଣି ଏଇଠି ଛାଡ଼ି ଦେଇଯିବେ । ତୁ ଆଉ କାନ୍ଦ ନା, ମୋ ସୁନାଟି ପରା ।

ରୂପେଇ ଏତିକି କହି ବାଳକଟିକୁ ଛାତିରେ ଭିଡ଼ି ଧରିଲା । ଶିଶୁର ପ୍ରକୃତି ଯିଏ ଆଦର କରେ, ତାହାକୁ ସେମାନେ ଭଲ ପାଆନ୍ତି । କଥାରେ କହନ୍ତି, 'ଭିକାରୀଙ୍କ ସଙ୍ଗେ ଲଗନା ମାଗିବେଟି, ପିଲାଙ୍କ ସଙ୍ଗେ ଲଗନା ଲାଗିବେଟି ।' ପିଲାଙ୍କୁ ଯେ ଆଦର କରେ, ସେମାନେ ତା'ର ହୋଇ ପଡ଼ନ୍ତି ।

ରୂପେଇ ବାଳକର ଚକ୍ଷୁରୁ ଲୋତକ ପୋଛି ପଚାରିଲା, ଭୋକ କରୁଛି ବାପ ତତେ ? ଆ ଖାଇବୁ !

ବାଳକ ନିଜର କ୍ଷୁଧା ବିଷୟରେ କୌଣସି ଉତ୍ତର ନ ଦେଇ ପଚାରିଲା, ତୁ କିଏ ?

ରୂପେଇ ଯେପରି କୁଣ୍ଠିତ ହୋଇ କହିଲା, ମୁଁ ତୋ ମାଉସୀ । ମା ଯିଏ, ମାଉସୀ ସିଏ । ଏଥର ତୁ ମତେ ମା ବୋଲି ଡାକିବୁ, ବୁଝିଲୁ ।

କାହିଁକି ତୁ ତ ମୋ ମା ନୁହଁ, ମୋତେ ନେଇ ଆସିଛୁ ।

ରୂପେଇ ନ ହସି ରହି ପାରିଲା ନାହିଁ । ବାଳକର ମନରେ ଟିକିଏ ପରିବର୍ତ୍ତନ ହେବାର ଦେଖି ସେ ଖୁସି ହେଲା । ତେଣୁ ପ୍ରଶ୍ନର ଉତ୍ତର ସ୍ୱରୂପ କେବଳ ହସିଦେଇ କଥାକୁ ବାଆଁରେଇ କହିଲା, ଆ ଖାଇବୁ ।

ରାତି ବେଶୀ ହେଲା । ବାଳକଟି ଅନେକ ଦିନର ଅଯତ୍ନ ପରେ ଆଜି ଟିକିଏ ଆରାମ ବୋଧକରି ଶୋଇ ପଡ଼ିଲା । ଅବାଲ୍ୟରୁ ରାଜପୁତ୍ର ପରି ବଢ଼ି ଆସିଥିଲା । ଜଣେ ଧନୀ ବଣିକଙ୍କର ଏକମାତ୍ର ପୁତ୍ର । ଚିଲିକା ହ୍ରଦକୂଳସ୍ଥ ବିଶାଳ ଦ୍ୱିତଳ ଅଟ୍ଟାଳିକାର ଅଧିକାରୀ । ଆଜି ବହୁଦୂରରେ ତାମ୍ରଲିପ୍ତ ପଥରେ ଗୋଟିଏ କ୍ଷୁଦ୍ର ମରୁଦ୍ୱୀପସ୍ଥ ଦରିଦ୍ର ମତ୍ସ୍ୟଜୀବୀର ଆଡ଼ମ୍ବରଶୂନ୍ୟ ବିଛଣା ଉପରେ ସୁପ୍ତ ।

କିନ୍ତୁ ବାଳକ ଜାଣେ ନା ତା'ର ଘର କିଏ । ତାର ଜନ୍ମ ସମୁଦ୍ର ବକ୍ଷରେ ବୋଇତ ଉପରେ । ଚିରଦିନ ସେ ଦେଖି ଆସିଛି, ସାଗର ଏବଂ ଅମ୍ବରର ନୀଳିମା । କେବେ କେବେ ସମୁଦ୍ର ମଧ୍ୟସ୍ଥ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପର ସବୁଜ ବର୍ଣ୍ଣର ଅଥବା ବିସ୍ତୀର୍ଣ୍ଣ ବାଲୁକା ଚଟାଣର ଧୂସରିମା । ବାଳକର ଗ୍ରାମ, ବାଳକର ସଂସାର, ସେହି ପ୍ରକାଣ୍ଡ ବୋଇତ ଆଜି ଜଳମଗ୍ନ । ସେହି ବୋଇତରେ ରାଜପୁତ୍ର ପରି ଆଡ଼ମ୍ବରରେ ସେ ବଢ଼ି ଆସିଥିଲା । କିନ୍ତୁ ହା ଦୁର୍ଭାଗ୍ୟ, କାହିଁ ତାର ସେ ରାଜଭୋଗ ? ନିର୍ଦ୍ଦୟ ରାକ୍ଷସରୂପୀ ଶତ୍ରୁ ବୋଇତରେ ବନ୍ଦୀ ଏବଂ ପରେ ମୁକ୍ତହୋଇ ମଧ୍ୟ ଦରିଦ୍ର ମତ୍ସ୍ୟଜୀବୀର କୁଟିରରେ ଗାଢ଼ ନିଦ୍ରାମଗ୍ନ ।

ଯେଉଁ ସମୟର ଘଟଣା ଲେଖା ଯାଉଛି, ସେ ସମୟରେ କଳିଙ୍ଗବାସୀ ସୁଦୂର ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ପ୍ରଭୃତି ଦେଶମାନଙ୍କରେ ବାଣିଜ୍ୟ କରି ଦେଶକୁ ସମୃଦ୍ଧିଶାଳୀ କରିଥିଲେ । କଳିଙ୍ଗ ଉପକୂଳରେ ସେ ସମୟରେ ପ୍ରଧାନ ପ୍ରଧାନ ଚାରିଗୋଟି ବନ୍ଦର ଥିଲା—ତାମ୍ରଲିପ୍ତ, ଚରିତ୍ର୍ୟ, ଚିଲିକା ଏବଂ କଳିଙ୍ଗପତ୍ତନ । ସମୟ ସମୟରେ କଳିଙ୍ଗର ପ୍ରକାଣ୍ଡ ବୋଇତମାନ ସିଂହଳ ଦ୍ୱୀପ ବାଟଦେଇ ଦକ୍ଷିଣ-ଆଫ୍ରିକାର ପୂର୍ବ ଅଞ୍ଚଳ ଏବଂ ମାଡ଼ାଗାସ୍କର ପ୍ରଭୃତିକୁ ବ୍ୟବସାୟ କରିବାକୁ ଯାଉଥିଲେ ।

ବାଲକର ପିତା ସେହି ବଣିକମାନଙ୍କ ମଧ୍ୟରୁ ଅନ୍ୟତମ । ଦକ୍ଷିଣ ଆଫ୍ରିକା ଏବଂ ସିଂହଳ ସଙ୍ଗେ ବ୍ୟବସାୟ କରି ବହୁ ଧନ ସମ୍ପତ୍ତି ଅର୍ଜ୍ଜନ କରି ସେ ଚିଲିକା ହ୍ରଦଆଡ଼େ ନୌକା ଚଳାଇ ଯାଉଥିଲେ; କିନ୍ତୁ କୌଣସି ପ୍ରକାରେ ଗଣନା କରିବାରେ ସ୍ୱଳ୍ପ ଭ୍ରମ ଘଟିବାରୁ ସେ ବାଧ୍ୟହୋଇ ଗୃହାଭିମୁଖେ ବୋଇତ ଚଳାଇଲେ । ପଥରେ ଜଳଦସ୍ୟୁର ଆକ୍ରମଣରେ ପଡ଼ି ସମ୍ପୂର୍ଣ୍ଣ ଅପ୍ରସ୍ତୁତ ଅବସ୍ଥାରେ ବନ୍ଦୀ ହେଲେ ।

ଏ ଘଟନାର ସତ୍ୟତା ଚୀନଦେଶୀୟ ପରିବ୍ରାଜକ ହୁଏନ୍‌ସାଂଙ୍କ ଭାରତ ବିବରଣୀରୁ ମିଳେ । ସେ କେବଳ ଜଳଦସ୍ୟୁର ଭୟରେ ଜଳପଥରେ ସିଂହଳ ଯାତ୍ରା ନ କରି ବାଧ୍ୟ ହୋଇ ସ୍ଥଳପଥରେ ଯାଇଥିଲେ ।

ସେ ରାତିରେ ରୂପେଈର ଆଖିକୁ ଆଦୌ ନିଦ୍ରା ଆସିଲା ନାହିଁ । ଦେଖୁ ଦେଖୁ ରାତି ଅଧିକ ହେଲା, କିନ୍ତୁ ଭଜନା ଘରକୁ ଫେରିଲା ନାହିଁ । ଏହାର କୌଣସି କାରଣ ସେ ବୁଝି ପାରିଲା ନାହିଁ । ପ୍ରଥମରେ ଭାବିଥିଲା, ବୋଧହୁଏ ମଜା କରିବାକୁ ସେ ନିକଟରେ ଲୁଚି ରହିଛନ୍ତି, ପରେ ଆସିବେ । କିନ୍ତୁ ରାତି ବୃଦ୍ଧି ସଙ୍ଗେ ସଙ୍ଗେ ପ୍ରଥମ ଭାବନା ତା'ର କେବଳ ଭାବନାରେ ପରିଣତ ହେଲା ।

ସ୍ତ୍ରୀ ଜାତିର ମନ ସର୍ବଦା ଅମଙ୍ଗଳ ଭାବନା ଆଡ଼କୁ ସ୍ୱତଃ ଧାଇଁଯାଏ । ତେଣୁ ଆକାଶ ପାତାଳ ଚିନ୍ତାକରି କରି ମନରେ ତା'ର ଭୟ ହେଲା । ଭୟକୁ ମନରୁ ତଡ଼ି ସାହସ ଅବଲମ୍ବନ କରି ଭାବିଲା, ହୁଏ ତ ନିକଟସ୍ଥ କୌଣସି ଗ୍ରାମକୁ ଯାଇଥିବେ, ଆସୁ ଆସୁ ଡେରି ହୋଇଗଲା ବୋଲି ଗ୍ରାମରେ ରହିଗଲେ । କିନ୍ତୁ ରୂପେଈକୁ ଏକାକିନୀ ରଖି ଅନ୍ତତଃ ରାତି ସମୟରେ ଭଜନା କେବେ ହେଲେ କୌଣସି ସ୍ଥାନରେ ରହି ନାହିଁ । ଏହି ସମସ୍ତ ବିଷୟରେ ଚିନ୍ତାକରି ତା'ର ଆଉ ନିଦ ହେଲା ନାହିଁ । ଅବିଶ୍ରାନ୍ତ ବିଛଣାରେ ଛଟପଟ ହୋଇ ରାତିର ଶେଷ କାମନା କଲା । ମନୁଷ୍ୟର ମନ ଅଧୀର ହେଲେ, ପ୍ରକୃତି ତା'ର ଅଧୀରତା ଆହୁରି ବଢ଼ାଇ ଦେଲାପରି ଲାଗେ । ରୂପେଈକୁ ସେହି ଗୋଟିଏ ରାତି ଯେପରି ଗୋଟିଏ ଯୁଗପରି ପ୍ରତୀୟମାନ ହେଲା ।

ରଜନୀ ପ୍ରଭାତ ହେଲା । ବାଳକର ଗାଢ଼ନିଦ୍ରାରେ ବାଧା ନ ଦେଇ ରୂପେଈ ଆନ୍ଦୋଳିତ ମନରେ ସମୁଦ୍ର କୂଳଆଡ଼େ ଚାଲି ଯାଉଥିଲା; କିନ୍ତୁ କାଳେ ବାଳକଟି ଉଠିଲେ କାନ୍ଦିବ, ଏହି ଭୟରେ ତା'ର ନିଦ୍ରାଭଙ୍ଗ ପର୍ଯ୍ୟନ୍ତ ଅପେକ୍ଷା କଲା । ଦେଖୁ ଦେଖୁ ସୂର୍ଯ୍ୟଦେବ ଆକାଶକୁ ଉଠିଲେ । ବାଳକର ନିଦ୍ରାଭଙ୍ଗ ହେଲା । ରୂପେଈ କେଜାଣି କାହିଁକି ଗୃହର ବାହାରକୁ ବାହାରି ପଡ଼ି ଦେଖିଲା, ସମୁଦ୍ର କୂଳଆଡ଼ୁ କିଛି ଦୂରରେ କିଏ ଜଣେ ଦ୍ରୁତପଦରେ ଦଉଡ଼ି ଦଉଡ଼ି ତାଙ୍କର କୁଟିର

ଉଦ୍ଦେଶ୍ୟରେ ଛୁଟିଛି । ଚିହ୍ନିଲା, ସେ ଜଣକ ଆଉ କେହି ନୁହେ, ଭଜନା । ଦେଖୁ ଦେଖୁ ସେ ନିକଟତର ହେଲା ।

ରୂପେଇକୁ ଦେଖି ଆନନ୍ଦ ପ୍ରକାଶ କରି ଟିକିଏ ଯୋରରେ ଭଜନା ପଚାରିଲା, ତୁମେ କାଲି ଏତେ ଡେରିଯାଏ ଥିଲ କୁଆଡ଼େ ? ବ.୪ । ସ୍ତ୍ରୀ ଜାତିଟା ପ୍ରକୃତରେ ବିଶ୍ୱାସଯୋଗ୍ୟ ନୁହେ ।

ରୂପେଇ ଲଜ୍ଜିତ ହୋଇ ଉତ୍ତର ଦେଲା, ମୁଁ କୁଆଡ଼େ ଥିଲି ବୁଝେଇବାକୁ ଗଲେ, ଦୁଇପଦରେ ଚଳିବ ନାହିଁ । ଅନେକ କଥା । ବର୍ତ୍ତମାନ ମୋର ପାଳି ପଡ଼ିଛି ପଚାରିବାକୁ, ତୁମେ କୁଆଡ଼େ ଥିଲ କାଲି ରାତିଟା ? ଆଜି ଏବେ ଗୋଟାଛାଏଁ ଓଦା ହୋଇ ଧାଇଁଛ ?

ଭଜନା ସେଦିନ ବାଜେକଥା ନ କହି ଉତ୍ତର ଦେଲା, କାଲି ତୁମର ଆସିବାରେ ଡେରି ହେବାର ଦେଖି, ମୋର ମନରେ ଭୟ ହେଲା । ସନ୍ଧ୍ୟାବେଳ ପର୍ଯ୍ୟନ୍ତ ତୁମକୁ ମୁଁ ଅପେକ୍ଷା କରି ରହିଥିଲି । ମାତ୍ର ବିଳମ୍ବ ଦେଖି ମନରୁ ଦୃଢ଼ତା କମିଗଲା । ମୁଁ ତୁମରି ଉଦ୍ଦେଶ୍ୟରେ ପହଁରି ପୁନର୍ବାର ଝୁଣ୍ଟିଆ ଦ୍ୱୀପକୁ ଗଲି । ସେତେବେଳେ ଚାରିଆଡ଼ ଅନ୍ଧାର ହୋଇଥିଲା । ସମସ୍ତରାତ୍ର ତୁମକୁ ଖୋଜି ଖୋଜି ମୁଁ କ୍ଳାନ୍ତ ହୋଇ ପଡ଼ିଥିଲି । ସୂର୍ଯ୍ୟୋଦୟ ପୂର୍ବରୁ ଯେଉଁ ଦୃଶ୍ୟ ଝୁଣ୍ଟିଆ ଦ୍ୱୀପରେ ଦେଖିଲି, ତହିଁରେ ପ୍ରକୃତରେ ମୋର ଭାରି ଭୟହେଲା । ଗୋଟିଏ ଶାଳଗଛରେ ଜଣେ ଲୋକ ସୁଦୃଢ଼ରୂପେ ବନ୍ଧା ହୋଇଛି । ତା'ର ଦେହରୁ ମୁଣ୍ଡଟା ଅଲଗା ହୋଇ ଖଣ୍ଡେ ଦୂରରେ ପଡ଼ିଛି । ସ୍ଥାନଟି ରକ୍ତରଞ୍ଜିତ । ଏପରି ଦୃଶ୍ୟ ମୁଁ ଜୀବନରେ ସେଠାରେ ଆଉ କେବେ ଦେଖିନାହିଁ । ସେ ଦୃଶ୍ୟରେ ମୋର ଦେହର ସମସ୍ତ ଶକ୍ତି ଲୋପ ପାଇଗଲା ପରି ଲାଗିଲା । ମନରେ ସାହସ ବାନ୍ଧି ଆହୁରି ଥରେ ଝୁଣ୍ଟିଆ ଦ୍ୱୀପର ଚାରିଆଡ଼ ବୁଲିଗଲି । ତୁମର ନାମ ଧରି ଉଚ୍ଚସ୍ୱରରେ ଅନେକ ଡାକିଲି । କେହି ଉତ୍ତର ଦେଲେନାହିଁ । ଶେଷରେ ବାଧ୍ୟହୋଇ ଫେରିଲି । ଆଜିଠାରୁ ପ୍ରତିଜ୍ଞାକର ଯେପରି ଆଉ କେବେ ମୋତେ ନ ପଚାରି ବୃଥାରେ ଏତେ ଡେରି କରିବ ନାହିଁ । ପ୍ରଥମରେ କହ ଡେରିର କାରଣ କ'ଣ ?

ରୂପେଇ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା, ଥରେ ସେ ଭିତରକୁ ଆସ । ପରେ ମୁଁ ଉତ୍ତର ଦେବି ।

ଅତି ସ୍ନେହରେ ତା'ର ନାମ ଦେଇଥିଲେ ଘଣିଆ । ଏପରି ଗୋଟିଏ ଅସୁନ୍ଦର ନାମ ରଖିବାରେ ଆପତ୍ତିକରି ଭଜନା ରୂପେଇକୁ ନାମ ପରିବର୍ତ୍ତନ କରିବାକୁ ଅନୁରୋଧ କରିଥିଲା । ରୂପେଇ ଭଜନାର କଥାରେ କର୍ଣ୍ଣପାତ ନ

କରି କହିଲି, ପୁଅ ମୋର, ତମର ନୁହେଁ । ମୁଁ ମୋର ଜୀବନରେ ଭରସା ନ ରଖି, କେବଳ ବାଳକର ଲୋଭରେ ଏତେ ଶତ୍ରୁଙ୍କ ମଧ୍ୟରେ ପଶିଥିଲି । ଯଦି ଉପଯୁକ୍ତ ସମୟରେ ଉପସ୍ଥିତ ହୋଇ ନ ଥାନ୍ତି, ତେବେ ବୋଧହୁଏ ସେ ରାକ୍ଷସ ବାଳକଟିକୁ ମାରି ପକାଇଥାନ୍ତା ।

ଭଜନା ଥଟ୍ଟାକରି କହିଲା, "ମନେ ରଖିଥା, ବାଲିଅବସ୍ତୁଙ୍କ ନିକଟରେ ପୂଜା କାମନା କରି ତମର କୌଣସି ଲାଭ ହେଲାନାହିଁ" । ଗଳାଖଙ୍କାରି ପୁନର୍ବାର ଆରମ୍ଭ କଲା, ଏବେ ତମର ବାଲିଅବସ୍ତୁଙ୍କ ପୂଜା ବନ୍ଦ ହୋଇଗଲା ପରା । ସତକଥା, ପଥରଟା କଡରେ ଆଖିବୁଜି ଦିନ ରାତି ବସି ଭୁଟୁରୁ ଭୁଟୁରୁ ହେଲେ ଲାଭ କ'ଣ ? ଠିକ୍ କରିଛ, ତମର ଏ କାର୍ଯ୍ୟ ମୋର ମନକୁ ଆସିଛି ।

ରୂପେଇ କ୍ରୋଧରେ ଦାନ୍ତ ଦେଖାଇ କହିଲା, ହୁସିଆର, ଆଉ ଦିନେ ଯେପରି ମୋର ବାଲିଅ ବସ୍ତୁଙ୍କୁ ନିନ୍ଦା ନ କର, "ତାଙ୍କର ମହିମା ତୁମେ କାହୁଁ ବୁଝିବ ? ଆଉ କୋଉ ସ୍ତ୍ରୀ ସିନା ଦଶମାସ ପେଟରେ ଧରି, କେତେ ଯନ୍ତ୍ରଣା ସହି ପିଲା ପ୍ରସବ କରେ । ସେ ପିଲାକୁ ପୁଣି ବଢ଼ାଇ ବଢ଼ାଇ କେତେ ବିପଦର ମଝିରେ ବାଟକାଟି ଯିବାକୁ ହୁଏ । ବାଲିଅ ବସ୍ତୁଙ୍କର ଏତେ ଦୟା ଯେ ବିନା କଷ୍ଟ ଦିହଗଣ୍ଡିରେ ମୋ ପାଖେ ଏଡ଼େ ବଡ଼ ପୁଅ ।

ମଣିଆର ଉପସ୍ଥିତିରେ, ତା'ର ପୂର୍ବ ଇତିହାସ ସମ୍ବନ୍ଧରେ ଏମାନେ କୌଣସି ବିଷୟ କଥାବାର୍ତ୍ତା ହୁଅନ୍ତି ନାହିଁ କାଳେ ତା'ର ମନରେ କଷ୍ଟ ହେବ । ମଣିଆ ରୂପେଇର ପୁତ୍ରବତ୍ ସ୍ନେହ ଓ ବ୍ୟବହାରରେ, ବାଲ୍ୟକାଳର ଘଟଣା ଗୁଡ଼ିକ କେବଳ ସମୟେ ସମୟେ ଛାୟା ପରି ତା ମନକୁ ଆସେ । କିନ୍ତୁ ଯେତେବେଳେ ଭଜନା ସଙ୍ଗେ ସମୁଦ୍ରକୂଳକୁ ବୁଲିବାକୁ ଚାଲିଯାଏ, ସେ ଛାୟା ମନ ମଧ୍ୟରେ ଲୀନ ହୁଏ । ଭଜନାକୁ ବାପା ଓ ରୂପେଇକୁ ମାଉସୀ ପରିବର୍ତ୍ତେ, ମା ବୋଲି ସେ ସମ୍ବୋଧନ କରେ ।

ସମୟ ସମୟରେ ଭଜନା ବାଳକକୁ ନୌକାରେ ବସାଇ ସମୁଦ୍ର ମଧ୍ୟକୁ ଘଣ୍ଟି ପରିଦର୍ଶନ କରିବାକୁ ଚାଲିଯାଏ । ରୂପେଇର ବାରମ୍ବାର ବାରଣ ମାନେ ନାହିଁ । ବାଳକ ଡଙ୍ଗାରେ ବସି ସମୁଦ୍ର ଭିତରକୁ ଯିବାକୁ ଭାରି ଭଲ ପାଏ, ଏପରିକି ଇଚ୍ଛା ନ ଥିଲେ ସୁଦ୍ଧା, ତାକୁ ସେ ବାଧ୍ୟ କରାଏ ।

ଭଜନା ଯେତେବେଳେ ଲେଖନୀ ଧରି ତାଳପତ୍ର ପୋଥିରେ ଦୈନିକ ଘଟଣା ଲେଖେ, ବାଳକ ତାହାକୁ ଅନୁସରଣ କରି, କାଠି ଖଣ୍ଡିକରେ ବାଲି

ଉପରେ ଅନେକ ପ୍ରକାର ଗାର ପକାଏ । ଭଜନା ବାଳକର ଏପରି ପ୍ରକୃତି ଦେଖି ତାକୁ ପାଠପଢ଼ାଇବାକୁ ମନସ୍ଥ କଲା । ନିଜେ ଦୈନିକ ଜୀବନୀ ଲେଖୁଥିବା ସମୟରେ, ବାଲି ଉପରେ କାଠିଧରି 'ଅ', 'ଆ' ଇତ୍ୟାଦି ଲେଖି ଦେଇଥାଏ । ସେ ଅତି ଅଗ୍ରହରେ ସେତକ ଅଳ୍ପ ସମୟ ଭିତରେ ଶିଖିଯାଏ । ଭଜନା ଭାରି ଆନନ୍ଦ ପ୍ରକାଶ କରେ, କିନ୍ତୁ ରୂପେଇ ଆସି ସମୟ ସମୟରେ ବାଧାଦେଇ କହିଯାଏ, ମିଛଟାରେ ପିଲାଟାକୁ ମଣିଷ ମୁଣ୍ଡିଆ ପାଠଗୁଡ଼ା ପଢ଼ାଉଛନ୍ତି, ସତେ ଯେମିତି ପଣ୍ଡିତ କରି ପକାଇବେ । ନିଜେ ଯେପରି ଦୁଇ ଗୋଟା ଅକ୍ଷର ଶିଖି ସେଥିରେ ନିକମାଙ୍କ ପରି ଲେଖନଟା ଧରି ପୋଥିଖଣ୍ଡ ଘଷି ଘଷି ନଷ୍ଟକରି ପକାଉଛନ୍ତି, ପୁଅଟାକୁ ମୋର ସେମିତି ନିକମା କାମଗୁଡ଼ା ଶିଖାଇବେ । ନାଇଁରେ ମଣି, ତୁ ସେ ଗୁଡ଼ାକ ଲେଖନା । ଆ, ଯିବା ନୁଣ ମାରିବା, ଶୁଙ୍ଗୁଆ ଗଦା ଦେଖିବା ।

ନିକମା ଶବ୍ଦର ବ୍ୟବହାର ଶୁଣି ଭଜନା ହସିଦେଇ କହେ, ତମର ଘରେ କୋଉଠି ଗୋଟାଏ ବସ୍ତୁ ବୋଲି ଠାକୁର ଅଛନ୍ତି ? ତାଙ୍କର ପୁଣି ଯୋଡ଼ାଏ ଭାରିଯା ଲକ୍ଷ୍ମୀ, ସରସ୍ୱତୀ । ମତେ ବୋଧ ହେଉଛି ତେବେ ସେହି ସରସ୍ୱତୀ ଭୁଲରେ କିପରି ଆସି ଏଠି ଖସି ପଡ଼ିଥିଲ । ରୂପେଇ ମୁହଁ ମୋଡ଼ି ଚାଲିଯିବା ବେଳେ କହିଯାଏ, ରଖ, ରଖ, ତମର ସେ ଟାହୁଲିଆଗିରି ରଖ । କଥା କହିଲେ ଶୁଣିବେ ନାହିଁ; ପିଲାଟାକୁ ନିକମା କରି ସତ୍ୟାନାଶ କରିବେ ।

ସମୟ ସମୟରେ ଭଜନା ମଣିଆକୁ ନେଇ ଗାଁ ଆଡ଼େ ମାଛ ବିକିବାକୁ ଯାଏ । ଲୋକେ ମଣିଆକୁ ଦେଖି ପଚାରନ୍ତି, ପିଲାଟି କିଏ ?

ଭଜନା କହେ, ସେ ମୋ ପୁଅ ।

ଆଉ କୌଣସି ପ୍ରଶ୍ନ କରିବାକୁ କେହି ସାହସ କରନ୍ତି ନାହିଁ । ଯଦି କେହି କରେ ସେ ଉତ୍ତର ଦିଏ ନାହିଁ । ପିଲାଟିର ଗୁଣ ଦେଖି ସମସ୍ତେ ପ୍ରଶଂସା କରନ୍ତି । ଭଜନାର ଗୁଣ ଗୁଡ଼ିକ ଧୀରେ ଧୀରେ ବାଳକ ଅନୁକରଣ କରେ । ଏହିପରି ଆନନ୍ଦରେ ଦେଖୁ ଦେଖୁ ପାଞ୍ଚବର୍ଷ କଟିଗଲା । ମଣିଆ ଏଥର ଚାଲାଖ ହୋଇଗଲାଣି । ସେ ବାପା ମା'ଙ୍କର ବାଧ୍ୟ । କେବେହେଲେ କଥାରୁ ବାହାର ଯାଏନାହିଁ । କିନ୍ତୁ ଦେଖିବାକୁ ମତ୍ସ୍ୟଜୀବୀର ପୁତ୍ରପରି ଦେଖାଯାଏ ନାହିଁ । ସ୍ୱାସ୍ଥ୍ୟ ଉତ୍ତମ, ସୁଦୃଢ଼ । ବାଲ୍ୟକାଳର ଛାୟା ସ୍ମୃତି ତା ମନରୁ ଲୁପ୍ତ । ସ୍ମୃତିର ସହାୟକ ନ ଥିଲେ, ଅଳ୍ପଦିନ ପରେ ବାଲ୍ୟସ୍ମୃତି ଲୁପ୍ତ ହୁଏ, ଏହା ସ୍ୱାଭାବିକ ।

କେତୋଟି ବର୍ଷ ମଧ୍ୟରେ ମଣିଆ ଲେଖିପଢ଼ି ଶିଖିଗଲା । ତାଳପତ୍ରରେ ଲେଖି ଶିଖିବା ନିମନ୍ତେ ନିକଟସ୍ଥ ଗ୍ରାମରୁ ଗୋଟିଏ ଛେଣି ଲେଖନ ଏବଂ ଗୋଟିଏ ତାଳପତ୍ରର ପୋଥି ଭଜନା ତାକୁ କିଣି ଦେଇଛି । ଆଦେଶ କରିଛି ସେ ପ୍ରତିଦିନ ଯାହା କରିବ ଅଥବା ଯାହା ଦେଖିବ ସେହି ପୋଥିରେ ଠିକେ ଠିକେ ଲେଖି ଚାଲିଯିବ । ସମୟ ସମୟରେ ଭଜନାର ଅନୁପସ୍ଥିତିରେ ମଣିଆ ତାର ଦୈନିକ ଲିପି ପଢ଼ିବାକୁ ଚେଷ୍ଟା କରେ, ପାରେନାହିଁ । ଏହାର କାରଣ, ଭଜନା ନିଜର ଲେଖାରେ ଅନେକ ଗୁଡ଼ିଏ କରଣି ଅକ୍ଷର ବ୍ୟବହାର କରିଥାଏ । ନୂଆ ଲେଖକ ବା ପାଠକ ସେ ପ୍ରକାର ଅକ୍ଷର ପଢ଼ି-ପାରେ ନାହିଁ । ମଣିଆ ଭଜନାକୁ ଭୟରେ କୌଣସି କଥା ପଚାରି ପାରେ ନାହିଁ ।

ଏ ଥର ଭଜନାର ପ୍ରଧାନ ଝୁଙ୍କ ଉଠିଲା ସେ ତା'ର ପୁଅକୁ ଅଙ୍କ ପଢ଼ାଇବ ଏବଂ ଆକାଶରେ ତାରା ଚିହ୍ନାଇବ । ତାର ଇଚ୍ଛା ମଣିଆ ଦେଶ ଭିତରେ ଯେପରି ଗୋଟାଏ ପ୍ରଧାନ ନାବିକ ହେଉ ; ତାହାହେଲେ, ତଦ୍ଵାରା ମଣିଆ ନିଜର ନାମଟାକୁ ଉଠାଇପାରିବ ଏବଂ ଜଣେ ବିଖ୍ୟାତ ନାବିକ ବୋଲି ଲୋକରେ ଗଣ୍ୟ ହେବ । ଭଜନା ତା'ର ପିତା ଓ ଗୁରୁ ବୋଲି ଲୋକେ ପ୍ରଶଂସା କରିବେ । ଖାଲି ସେତିକି ନୁହେଁ, ନାବିକ ହେବାର ପ୍ରଧାନ ଗୁଣ ସବୁ ମଣିଆକୁ ହାସଲ କରିବାକୁ ପଡ଼ିବ, ଯଥା—ସମୁଦ୍ର ପହଁରା, ମାଛଧରା, ଲାଠିଖେଳ, ଖଣ୍ଡାଚାଳନା ଏବଂ ଶର ବିନ୍ଧା ।

ଭଜନା ଅବଶ୍ୟ ଏ ସବୁରେ ଅସାଧାରଣ ପାରଗ ନୁହେଁ, ତଥାପି ସବୁଥିରୁ କିଛି କିଛି ଜାଣେ । ଯେଉଁ ବାଳକ ବୁଦ୍ଧିମାନ୍, ବଳବାନ ଏବଂ ଇଚ୍ଛୁକ ତାକୁ କେବଳ ବାଟ ଦେଖାଇ ଦେଲେ ହେଲା । ସେ ଆପେ ଆପେ ମାଡ଼ି ଚାଲିଯିବ । କେହି ଅଟକାଇ ପାରିବ ନାହିଁ । ଚଳନ୍ତି ସ୍ରୋତର ଗତି ବନ୍ଦ କରିବା ସହଜ ନୁହେଁ । ମଣିଆର ଏ ସବୁ ବିଷୟ ଶିଖିବାରେ କିପରି ଗୋଟାଏ ସ୍ଵତନ୍ତ୍ର ଇଚ୍ଛା ଥିଲା । ତେଣୁ କୌଣସି ନୂଆ କଥା ଶିଖିବାକୁ ତାକୁ ଭାରି ଭଲ ଲାଗେ । ଏତେ ଅଳ୍ପ ବୟସରୁ ମଣିଆ ସେମାନଙ୍କର କ୍ଷୁଦ୍ର ପୁରାତନ ନୌକାଟିକୁ ବେଶ୍ ଚଳାଇ ଜାଣିଲା । ଏକାକୀ ଆହୁଲା ପକାଇ କିମ୍ବା ପାଲ ଟାଣି, ସେ ନୌକା-ଟିକୁ ଯଥେଚ୍ଛା ନେଇ ପାରିଲା । ଏଥର ଭଜନାକୁ ମାଛ ଧରିବାରେ ଅଧିକ ପରିଶ୍ରମ କରିବାକୁ ପଡ଼ିଲା ନାହିଁ ।

ସାତଦିନ ଧରି ଅନବରତ ବୃଷ୍ଟି ହେଲା । ଏଇ କେତେଦିନ ଲୋକେ ଘର ଭିତରୁ ପଦାକୁ ବାହାରି ପାରି ନ ଥିଲେ । ଭଜନା, ରୂପେଇ ଓ ମଣିଆ—ଏମାନଙ୍କର କଥା ଠିକ୍ ସାଧାରଣଙ୍କର ଓଲଟା । ଚତୁର୍ମାସ୍ୟାର ଝଡ଼କୁ ନ ମାନି ଏମାନେ ବରାବର ନିଜ ନିଜ କାର୍ଯ୍ୟରେ ନିଯୁକ୍ତ ଥାନ୍ତି । ଝଡ଼-ବର୍ଷାକୁ ସେତେ ଖାତିର କରନ୍ତି ନାହିଁ ।

ବହୁଦିନ ପରେ ବାଲିଅବିସ୍ତୁଙ୍କର ଅରାଧନା ନିମନ୍ତେ ରୂପେଇ ପାହାଡ଼ ଉପରକୁ ଉଠିଥିଲା । ପାହାଡ଼ର ଗୋଟିଏ ପାଖରେ ପାହାଚ ; ଅନ୍ୟ ପାଖରେ ଉପରୁ ତଳକୁ ଗୃହିଁଲେ ମୁଣ୍ଡ ବୁଲାଏ । ନିମ୍ନ-ଦେଶରେ ଅକର୍ମଶିଳା । ଉପରୁ କୌଣସିମତେ ତଳକୁ ଗଡ଼ିପଡ଼ିଲେ ଆଉ ରକ୍ଷାନାହିଁ ।

ଯେଉଁଦିନ ରୂପେଇ ବାଲିଅବିସ୍ତୁଙ୍କର ପୂଜା କରିବାକୁ ପର୍ବତ ଉପରକୁ ଉଠିଥିଲା, ଭଜନା ଓ ମଣିଆଁ ସମୁଦ୍ର କୂଳକୁ ଯାଇଥିଲେ । ବର୍ଷା ଅଳ୍ପ ଅଳ୍ପ ହେଉଥିଲା । ରୂପେଇ ବିସ୍ତୁଙ୍କର ପୂଜା ନିମନ୍ତେ ଦେଉଳର ସେପାଖକୁ ଫୁଲ ତୋଳିବାକୁ ଗଲା । ଅନ୍ୟ କୌଣସି ପ୍ରକାର ଫୁଲ ନ ପାଇ, କେତେଗୁଡ଼ିଏ କନିଅର ଫୁଲ ତୋଳିବାକୁ ମନ କଲା । କନିଅର ଗଛ ଗୁଡ଼ିକ ପର୍ବତର ଗଡ଼ାଣିଆ ପାଖରେ । ହାତ ବଢାଇ ଡାଳ ନୁଆଁଇ ଫୁଲ ତୋଳୁ ତୋଳୁ ମହ୍କା ଡାଳଖଣ୍ଡି ଭାଙ୍ଗିଗଲା । ସେ ତଳକୁ ଖସି ପଡ଼ି ଜ୍ଞାନଶୂନ୍ୟ ହୋଇ ପଡିରହିଲା । ଏଣେ ବର୍ଷା କ୍ରମେ ଅଧିକ ହେଲା । ସାତଦିନ ଅନିଯ୍ମିତ ବର୍ଷା ପରେ ମାତ୍ର କେତେ ଘଣ୍ଟା ନିମନ୍ତେ ଯାହା ଛାଡ଼ି ଯାଇଥିଲା ।

ରୂପେଇ ଜ୍ଞାନଶୂନ୍ୟ ହୋଇ କେତେକାଳ ପଡ଼ିରହିବା ପରେ ଚେତା ହେଲାରୁ ଦେଖିଲା ବର୍ଷା ମୁଷଳଧାରାରେ ପଡୁଛି । ତା'ର କ୍ଷମତା ନାହିଁ, ଉଠିକରି ଏକପାଦ ମାତ୍ର ଅଗ୍ରସର ହେବ । ଏଣେ ମୁଣ୍ଡ ଫାଟି ରକ୍ତ ବାହାରୁଛି । ଯନ୍ତ୍ରଣାର ଆକୁଳ ଚିତ୍କାର ଶୁଣିବାକୁ ନିକଟରେ କେହି ନାହିଁ । ଭଜନା କିମ୍ବା ମଣିଆଁକୁ ଡାକିଲେ ମଧ୍ୟ ଶୁଣି ପାରିବେ ନାହିଁ । ଏଣେ ବର୍ଷାର ଝପ ଝପ ସଙ୍ଗେ, ଗଛ ପତ୍ର ହଲାଇ ପବନର ସାଇଁ ସାଇଁ, ଏ ସମସ୍ତ ଭେଦକରି ଆହତର ଆର୍ତ୍ତ ଚିତ୍କାର ଦୂରକୁ ଶୁଭିବ କାହିଁ ? ଅହା ! ଭକ୍ତିର କି. ଜ୍ୱଳନ୍ତ ପୁରସ୍କାର ! ଧନ୍ୟ ବାଲିଅବିସ୍ତୁଙ୍କର ମହିମା । କିନ୍ତୁ ବାଲିଅବିସ୍ତୁ ତ ଅସାବଧାନ ହେବାକୁ କହି ନ ଥିଲେ ।

ସମୁଦ୍ର କୂଳରୁ ଫେରି ଭଜନା ଏବଂ ମଣିଆଁ କୁଟୀରରେ ରୂପେଇକୁ ଦେଖି ପାରିଲେ ନାହିଁ । ଅନେକ ବେଳ ଅପେକ୍ଷା କରି ସେ ନ ଆସିବାରୁ ପିତୃ ଆଜ୍ଞାରେ ମଣିଆଁ ତାଳପତ୍ର ଛତା ଧରି ମାଁକୁ ଖୋଜିବାକୁ ଗଲା । ଭଜନା ତାଳପତ୍ର ପୋଥି ଧରି ଜୀବନୀ ଲେଖିବାରେ ଲାଗିଗଲା ।

ଅନେକ ଡେରି ହୋଇଗଲାଣି । ମଣିଆଁ କି ରୂପେଇ କାହାରି ଦେଖା–ନାହିଁ ; କ୍ଷୁଧାରେ ଉଦର ଜ୍ୱାଳା ସମ୍ଭାଳେ କିଏ ? ଭଜନା ପୋଥିଲେଖା ବନ୍ଦକରି ଭାବିଲା, କାହାକୁ ଖୋଜିବାକୁ ଯିବ ? ମଣିଆଁକୁ ଅଥବା ରୂପେଇକୁ ?

ବର୍ଷାପାତ ନ ମାନି ତନ୍ନ ତନ୍ନ ସେ ପଦାକୁ ବାହାରି ଆସିଲା । ଏଣେ–ତେଣେ ଖୋଜି ଖୋଜି ଶେଷରେ ପାହାଡ଼ର ଅନ୍ୟପାଖ ଦେଇ ଗ୍ଲଲି ଯାଉଥିଲା । ଦୂରରେ ଦେଖିଲା କେତେଗୁଡ଼ିଏ ଅରମା ଗଛର ମଝିରେ କିଏ ଜଣେ ଶୋଇଛି । ନିକଟତର ହେଲାରୁ ଶୁଣିପାରିଲା ରୂପେଇର କ୍ଷୀଣ ଆର୍ତ୍ତ କ୍ରନ୍ଦନ । ଅସମ୍ଭାଳ ହୋଇ ଅତି ବେଗରେ ନିକଟରେ ଉପସ୍ଥିତ ହେଲା । କିପରି ସେ ଖସିପଡ଼ିଛି ବୁଝିବାକୁ ଆଉ ବାକି ରହିଲା ନାହିଁ । ସ୍ତ୍ରୀର ଏପରି ଅବସ୍ଥା ଦେଖି ଭଜନାପରି କଠୋର ହୃଦୟ ନାବିକର ଚକ୍ଷୁରୁ ଲୋତକ ପ୍ରବାହିତ ହୋଇଛି କି ନାହିଁ, ବର୍ଷାଜଳ ଯୋଗୁ ବୁଝି ହେଲାନାହିଁ । କି ମୂର୍ଖ ସେ ! ସେପରି ଅବସ୍ଥାରେ ସ୍ତ୍ରୀକୁ ଶାୟିତ ଦେଖି ମଧ୍ୟ କହିବାକୁ ଭୁଲିଲା ନାହିଁ ଉପହାସ କରି, ବାଲଅବସ୍ଥୁଙ୍କର ଗୁଣ ଏବେ ବୁଝି ପାରିଲ ତ ? ସବୁଦିନେ ମନାକରେ, ମନା ନ ମାନି ପଥରଚଟା ପାଇଁ ଆଜି ତମର ଏ ଦଶା, ଛି, ଛି ।

ରୂପେଇ ମୁଣ୍ଡ ବୁଲାଇବାକୁ ଚେଷ୍ଟାକଲା, ପାରିଲା ନାହିଁ । ଭଜନା ଆସିଛି ବୁଝି ପାରିଲା । ଭଜନାର କଥାଗୁଡ଼ିକ ତାର କାନରେ ପଶିଛି କି ନାହିଁ, କହି ହେବ ନାହିଁ । ତଥାପି ସେ ଧୀରେ ଧୀରେ କ'ଣ କହିବାର ଶୁଣାଗଲା, ଭଜନା କିନ୍ତୁ ବୁଝିପାରିଲା ନାହିଁ । ବର୍ଷାରେ ଅନେକ ସମୟ ଭିଜି ରୂପେଇର ଶ୍ଳେଷ୍ମ ଥଣ୍ଡାଙ୍କର ଉଠିଥିଲା । ଭଜନା ଆଉ କାଳ ବିଳମ୍ବ ନ କରି ରୂପେଇକୁ ଉଠାଇ କୁଟୀରକୁ ନେବାକୁ ମନସ୍ଥ କଲା । ଏକାକୀ ନେବ କିପରି ? ରୂପେଇର ଦେହରେ ହାତଦେଲେ, ସେ ଯେ ବେଦନାପୂର୍ଣ୍ଣ ଚିତ୍କାର କରି ଉଠୁଛି । ମଣିଆଁର ଉଦ୍ଦେଶ୍ୟରେ ପାଟି କରି ସେ କେତେ ଡାକିଲା । ଉତ୍ତର ସ୍ୱରୂପ କେବଳ ବର୍ଷାଜଳର ଟପ ଟପ ଏବଂ ପବନର ସାଇଁ ସାଇଁ ଶବ୍ଦ ଶୁଣିବାକୁ ପାଇଲା ମାତ୍ର ।

ଏଣେ ସନ୍ଧ୍ୟା ଅଗତ ପ୍ରାୟ । ବର୍ଷାର ପ୍ରଖରତା ବଢ଼ୁଛି । ଆକାଶରେ ବିଜୁଳି ରହି ରହି ଚମକି ଉଠୁଛି; ଅଉ ସମ୍ଭାଳି ହେଉନାହିଁ । ଭଜନୀ ରମଣୀର ଆର୍ତ୍ତନାଦକୁ ଲକ୍ଷ୍ୟ ନ କରି, ନିଜର ସମସ୍ତ ପରାକ୍ରମ ଏକତ୍ରିତ କରି ରୂପେଇକୁ ଉଠାଇ କାନ୍ଧରେ ପକାଇଲା ଏବଂ ଯଥାସାଧ୍ୟ ଅତି ସହକାରେ କୁଟୀର ଆଡ଼େ ଗଲା । ଅଳ୍ପ ସମୟରେ କୁଟୀରରେ ଉପସ୍ଥିତ ହୋଇ ରୂପେଇକୁ ଶୁଆଇଦେଲା ତଳେ । ସେତେବେଳକୁ ମଣିଆଁ ର ପତ୍ତା ନାହିଁ । ଅତି କଷ୍ଟରେ ଲୁଗା ବଦଳାଇ, ଗଚ୍ଛିତ ଶୁଖିଲା କାଠରେ ଅଗ୍ନି ସଂଯୋଗ କଲା ଏବଂ ଦେହର ସମସ୍ତ ଅଂଶରେ ତୈଳମର୍ଦ୍ଦନ କରି ତାକୁ ଉତ୍ତମ ରୂପେ ସେକିଦେଲା ।

ରୂପେଇ ଆରାମ ବୋଧକଲା । ମାତ୍ର ଉଠି ବସିବାର ଶକ୍ତି ନାହିଁ । ତେବେ ଠୋକେଇଟା ଓଲଟାଇ ପକାଇ ଭଜନା ତା'ର ଉପରେ ବସି ଗୋଡ଼ ତଳପା ନିଆଁ ଆଡ଼କୁ ବଢ଼ାଇ ଦେଲା । ରୂପେଇ ମୁଣ୍ଡବୁଲାଇ ଚାହିଁବାର ଦେଖି, ବ୍ୟସ୍ତ ଭାବରେ ପଚାରିଲା, କେଉଁ ଜାଗାରେ ବେଶୀ ଆଘାତ ହୋଇଛି ? ମୁଣ୍ଡ ଫାଟି ଯାଇଛି ସତ, କିନ୍ତୁ ମାରାତ୍ମକ ନୁହେଁ ।

ରୂପେଇ ଭଜନାର ପ୍ରଶ୍ନର କୌଣସି ଉତ୍ତର ନ ଦେଇ ଚୁନ୍ଥେଇ ଚୁନ୍ଥେଇ ପଚାରିଲା, ପୁଅ କାହିଁ ? ସେ ତ ମୋ ପାଖରେ ନାହିଁ, ଗଲା କୁଆଡ଼େ ?

ଭଜନା ପ୍ରଶ୍ନର ଉତ୍ତର କଲା, କେଜାଣି ? ସେ ଅନେକ୍ ବେଳରୁ ତୁମକୁ ଖୋଜିବାକୁ ଯାଇଛି । ଏତେବେଳ ଯାଏ ଫେରି ନାହିଁ । ବୋଧହୁଏ ଆସୁଥିବ ।

ପିଲାଟା ଗଲା କୁଆଡ଼େ ?

ବର୍ଷା କମିଗଲା । ମେଘ ଅନ୍ଧାର ଚାରିଆଡ଼ୁ ଘୋଟି ଯେପରି ଜଗତକୁ ଆକ୍ରମଣ କରୁଛି । ଝିପୁ ଝିପୁ ବର୍ଷାରେ ମଣିଆଁ ନୀରସ ମନରେ କୁଟୀରକୁ ଫେରି ଆସିଲା । ରୂପେଇର ଅନ୍ୱେଷଣ କରି କରି ମଣିଆଁ ସେଦିନ ବାଲୁକା ପ୍ରାନ୍ତରର ପ୍ରତ୍ୟେକ ସ୍ଥାନ ତନ୍ନ ତନ୍ନ କରି ଅନ୍ୱେଷଣ କରିଥିଲା । କୃତକାର୍ଯ୍ୟ ନ ହୋଇ ଘରକୁ ଫେରିଲା ବାଧ୍ୟ ହୋଇ । ଧୀର ପଦ ବିକ୍ଷେପ କରି, ଅଗଣ୍ଠି ଚିପି ଚିପି ଗୃହ ମଧ୍ୟରେ ପଶିଲା । ରୂପେଇ ସୁପ୍ତ ଏବଂ ନିକଟରେ ଭଜନା ଉପବିଷ୍ଟ ଏହା ଦେଖି ପ୍ରଥମେ ତାର ମୁଖ ଆନନ୍ଦାଲୋକରେ ଉଦ୍ଭାସିତ ହେଲା । କିନ୍ତୁ ଉଭୟଙ୍କୁ ନୀରବ ଦେଖି କ୍ଷଣକ ପରେ ସନ୍ଦେହର ଛାୟା ତାର ହୃଦୟକୁ ଅନ୍ଧକାର କଲା । ଭୟପୂର୍ଣ୍ଣ ସ୍ୱରରେ ପଚାରିଲା, ବାପା', ମା ସେପରି ଭାବରେ ଶୋଇଛି କାହିଁକି ?

ଭଜନା ଉତ୍ତରଦେବା ପୂର୍ବରୁ ରୂପେଈ ଅଧୀର ହୋଇ କହି ପକାଇଲା, 'କିଏ ? ମୋ ମଣିଆଁ, ଧନ ଆଇଲୁ, ମୋ ପାଖକୁ ଆ । ଏତେବେଳ ଯାଏ କୋଉଠି ବର୍ଷାରେ ଛନ୍ଦୁଥିଲୁ ବାପ ?

ମା, ତୋର କ'ଣ ହୋଇଛି ? ଏତିକ ପଚାରି ମଣିଆଁ ରୂପେଈର ମୁଣ୍ଡ ପାଖରେ ବସିଲା । ଓଦା ଲୁଗା ସେତେବେଳ ଯାଏ ପାଲଟି ନାହିଁ ।

ଗମ୍ଭୀର ଭାବରେ ଭଜନା କହିଲା, ଆଉ ହେବ କଅଣ ? ଯେତେ ମନା କଲେ ମାନିଲେ ନାହିଁ, ବାଲିଅବଷ୍ଟଙ୍କର ପୂଜା କରିବାକୁ ଯାଇଥିଲେ ପରା । ସେହି ବାଲିଅବଷ୍ଟଙ୍କ ମହିମାରୁ ପାହାଡ଼ ଉପରୁ ଖସିପଡ଼ି ଯାଙ୍କର ଏ ଦଶା ।

ବାଲିଅବଷ୍ଟଙ୍କର ମହିମା ନୁହେଁ ଯେ, ସେ ମୋ ଉପରେ ରାଗ କରିଛନ୍ତି ।

ରାଗ, କାହିଁକି ମା ?

ମୁଁ ଆଜିଯାଏ ତାଙ୍କର ପୂଜା କରି ନ ଥିଲି । ସେ ଅଗାଧୁଆ ଉପାସ ପଡ଼ି ପଡ଼ି ଶେଷରେ ରାଗ କଲେ । ତେଣୁ ପାହାଡ଼ ଉପରୁ ଖସି ପଡ଼ିଛି । ଓଃ ଆଉ ବଞ୍ଚି ପାରିବି ନାହିଁ, ଭାରି କଷ୍ଟ । ଆ ବାପ, ତତେ ମୁଁ ଥରେ ଦେଖିଯାଏ ।

ମା, ତୋର କ'ଣ ହୋଇଛି ? ସେପରି ଆଉ କହ ନା । ରୂପେଈର କଷ୍ଟ ଦେଖି ମଣିଆଁ ଆଖିରେ ହାତଦେଇ କାନ୍ଦି ପକାଇଲା ।

ପୁଅ କାନ୍ଦିବାର ଦେଖି ରୂପେଈ କହିଲା, କାନ୍ଦ ନା ବାପ, ମୁଁ ମୋର କର୍ତ୍ତବ୍ୟ କାର୍ଯ୍ୟରେ ଅବହେଳା କରି ଦେବତାଙ୍କୁ ଅସନ୍ତୁଷ୍ଟ କରିଛି । ତା'ର ପ୍ରତିଫଳ ସ୍ୱରୂପ ଆଜି ମୋର ମେରୁଦଣ୍ଡ, ଗୋଡ଼ହାତ ଭାଙ୍ଗି ଯାଇଛି ।

ବାପା, ମୁଁ ଯାଉଛି ବଇଦ ଡାକି ଆଣିବି ?

ଏହି ସମୟରେ ରୂପେଈ ଯନ୍ତ୍ରଣାରେ ବିକଟ ଚିତ୍କାର କରି ଉଠିଲା । ଦେହ ବୁଲାଇବାକୁ ଚେଷ୍ଟା କରି ପାରିଲା ନାହିଁ । ଦେହ ହାତ ଥରିବାକୁ ଲାଗିଲା ।

ତେବେ ମୁଁ ଯାଉଚି ବଇଦ ଘରକୁ ?

ନା, ତୁ ଯା ନା, ପିଲାଲୋକ; ଅନ୍ଧାର ରାତି, ବାଟ ବଣାହୋଇ ଯିବୁ । ମା ପାଖରେ ବସି ଥା । ସେ ଯାହା କହିବ କରିବୁ । ମୁଁ ଯାଉଛି । ଦେଖେ ତ ବର୍ଷା ବନ୍ଦ ହେଲାଣି କି ?

ମଣିଅାଁ ପଦାକୁ ଉଠି ଆସି ଦେଖିଲା ବର୍ଷା ବନ୍ଦ ହୋଇ ନାହିଁ । ପୂର୍ବପର ଝିପୁରୁ ଝିପୁରୁ ହୋଇ ବର୍ଷୁଛି ।

ଭଜନା ବୈଦ୍ୟଘରକୁ ଯିବାକୁ ପ୍ରସ୍ତୁତ ହେବାର ଦେଖି ରୂପେଇ କହିଲା, ନା, ଯାଅ ନା, ମୋ ଆଖି ଆଗରେ ବରାବର ବସିଥାଅ । ଏ ଅନ୍ଧାର ରାତିରେ ବୈଦ୍ୟ ଆସିବାକୁ ମଙ୍ଗିବ ନାହିଁ । କାଲି ସକାଳେ ଯିବ । ବୈଦ୍ୟକୁ ଡାକିବାର କାହିଁକି ? ପରମେଶ୍ୱରଙ୍କ ଇଚ୍ଛା, ମୋର ମୃତ୍ୟୁ ହେଉ । ତାଙ୍କ ପୂଜାରେ ପେଉଁ ବ୍ୟାଘାତ ଜନ୍ମାଇଛି, ସେଥି ନିମନ୍ତେ ସେ ମୋତେ ଦଣ୍ଡ ଦେଉଛନ୍ତି । ମଣିଅାଁକୁ ସମ୍ବୋଧନ କରି କହିଲା, ମଣି, ଭୟ ନାହିଁ, ମନୁଷ୍ୟ ଜଗତରେ ଜନ୍ମହେଲେ ନିଶ୍ଚୟ ମରିବ । ସେଥି ନିମନ୍ତେ ଚିନ୍ତାକରିବା ନିଷ୍ପ୍ରୟୋଜନ ।

ଭଜନା କହିଲା, ସତକଥା, ବୈଦ୍ୟ ରାତିରେ ବର୍ଷାରେ ଆସିବ ନାହିଁ । କାଲି ସକାଳେ ଯିବାକୁ ପଡ଼ିବ । ଶୁଣ ମଣି, ବର୍ତ୍ତମାନ ତୋ ମା ଯାହା କହିଲା, ସେ ସବୁ ଶୁଣି ବୋଧହୁଏ ତୁ ଟିକିଏ ଦବି ଯାଉଛୁ । ମରିବାର ତ କଥା, ପିଲାଖେଳ ପରି ପଥର ଖଣ୍ଡକୁ ଯିଏ ପୂଜାକରେ ତା'ର ଫଳ ସେ ଅବଶ୍ୟ ପାଇବ । ଟିକିଏ ଚିନ୍ତାକରି କହିଲା, ତମର କୌଣସି ବିଷୟରେ ଭାବିବା ଉଚିତ ନୁହେଁ ।

ସେତେବେଳେ ରାତି ଅର୍ଦ୍ଧ । ଭଜନା ରୂପେଇର ମୁଣ୍ଡ ଉପରେ ବସି ଢୁଲଉଛି; କିନ୍ତୁ ଗୋଡ଼ତଳେ ମଣିଅାଁ ଚୁପ୍‌ଚାପ୍ ବସି ମା'ର ଗୋଡ଼ ଆଉଁଷୁଛି । ସମୟ ସମୟରେ ନିକଟରେ ରଖା ହୋଇଥିବା ମାଟିର ଦୀପରୁ ଶଳିତାଟା ଟେକି ଦେଉଛି । ଆବଶ୍ୟକ ପଡ଼ିଲେ କେତେବେଳେ ବା ଘଡ଼ିରୁ ପୋଲଙ୍ଗ ତେଲ ଆଣି ଦୀପରେ ପକାଉଛି ।

ରୂପେଇ ବ୍ୟସ୍ତ ହୋଇ ବରାବର କୁନ୍ଥାଉଥିଲା । ମଣିଅାଁ ଆଡ଼କୁ ଚାହିଁଲା, ଚକ୍ଷୁର ପ୍ରାନ୍ତଦେଇ ଲୋତକ ଧାର ବହି ଆସୁଛି । ମଣିଅାଁ କାନ୍ଦି ପକାଇଲା । ରୂପେଇ ମୁଣ୍ଡହଲାଇ ମଣିଅାଁକୁ ନିକଟକୁ ଯିବାକୁ ଠାରିଲା । ମଣିଅାଁ ଆଦେଶ ପାଳନ କଲା । ରୂପେଇ ମଣିଅାଁକୁ କହିଲା, ବାପ, ଗମ୍ଭୀରିଘରୁ ଯା' ଜ ମୋର ବେତ ପେଡ଼ିଟା ଆଣିବୁ । ଅଲିଅ ନେଇ ଯା, ବାଡ଼ରେ କାଲେ ପନିକ ପଡ଼ିଥିବ ଝିଙ୍କିବୁ ।

ମଣିଅାଁ ଗମ୍ଭୀରି ଘରୁ ବେତର ପେଡ଼ି ଆଣିଲା । ମା'ର ସଙ୍କେତରେ ପେଡ଼ି ଖୋଲି ଉପରୁ ଅନେକ ପ୍ରକାର ଘରକରଣା ପଦାର୍ଥ କାଢ଼ି ତଳେ ଥୋଇଲା । ଖଣ୍ଡେ ସମ୍ବଲପୁରୀ ମଠାକନାରେ ବନ୍ଧା ହୋଇଥିବା ଗୋଟିଏ ପଦାର୍ଥ ଖୋଲି

ଯାହା ଦେଖିଲା ତହିଁରେ ସେ ଆଶ୍ଚର୍ଯ୍ୟାନ୍ୱିତ ହେଲା । ଏହି ସମୟରେ ଭଜନାର ନିଦ୍ରା ଭାଙ୍ଗିଗଲା । ସେ ମଣିଆଁର ହାତରେ କ'ଣ ଗୋଟାଏ ଭାରି ଉଜ୍ଜ୍ୱଳ ପଦାର୍ଥ ଦେଖି ଆଶ୍ଚର୍ଯ୍ୟପୂର୍ଣ୍ଣ ଚକ୍ଷୁରେ ଅନାଇଁ ରହିଲା । ଅବାକ୍ ହୋଇ ବିସ୍ମୟରେ କ୍ଷଣକାଳ ନୀରବ ରହିଲା । ପରେ ଭଜନା ପଚାରିଲା, ସେ କଣ ମଣି ହାତରେ ଧରିଛ ?

ମଣିଆଁ କୌଣସି ଉତ୍ତର ନ ଦେଇ ପଦାର୍ଥଟିକୁ ବାପାଙ୍କ ହାତକୁ ବଢ଼ାଇ ଦେଲା ଏବଂ ସେହି ପଦାର୍ଥଟି ଭଜନାକୁ ପ୍ରଶ୍ନର ଉତ୍ତର ଦେବ ମନେକଲା ।

ଏହା ଗୋଟିଏ ବହୁମୂଲ୍ୟ ରତ୍ନ । ଭଜନା ତାର ଜୀବନରେ ଅନେକ ପ୍ରକାର ରତ୍ନ ଦେଖିଛି । କିନ୍ତୁ ଏପରି ସୁନ୍ଦର ଉଜ୍ଜ୍ୱଳ ରତ୍ନ ଆଉ କେବେ ଦେଖି ନ ଥିଲା । ଭଜନା ଚିହ୍ନିଲା ଏହା ଗୋଟିଏ ହୀରା । ହୀରକର ଉଜ୍ଜ୍ୱଳତାରେ ସ୍ଥାନଟି ଯେପରି ଆଲୋକିତ ହୋଇ ଉଠିଲା । ଚକ୍ଷୁ ଝଲସିଗଲା । ସେ ମଣିଆଁକୁ ପଚାରିଲା, ଯାହାକୁ ତୁ ପାଇଲୁ କେଉଁଠୁ ?

ମଣିଆଁ ପେଡ଼ି ଆଡ଼କୁ ଅନାଇଲା, ଉତ୍ତର ଦେଲା ନାହିଁ । କାଳେ ମ ବାରଲ୍ଡ ହେବ ।

ରୂପେଇ ଉତ୍ତର ଦେଲା—ସେ ରତ୍ନଟି ମଣିଆଁର ମା ମୋ ଜିମା ଦେଇ ଯାଇଛନ୍ତି । ଡକାଇତମାନେ ତାଙ୍କର ସର୍ବସ୍ୱ ହରଣ କରିନେଲେ ଏବଂ ପରେ ସେମାନଙ୍କୁ ବନ୍ଦୀକଲେ । କାଳେ ଯଦି ସେମାନଙ୍କ ହାତରୁ ରକ୍ଷା ପାଇ ଦେଶକୁ ଫେରନ୍ତି, ତେବେ ସେମାନଙ୍କୁ ତ ଆଉ ପଥର ଭିକାରୀ ହେବାକୁ ପଡ଼ିବ ନାହିଁ । ଏଇଥି ନିମନ୍ତେ ସବୁ ସମ୍ପଦ ହରାଇ ଅତି ଯତ୍ନରେ ମଣିଟିକୁ କାନିରେ ବାନ୍ଧି ଅଣ୍ଟାରେ ଖୋସି ରଖିଥିଲେ ।

ସେ କହୁଥିଲେ, ସିଂହଳ ଦ୍ୱୀପରେ ଅନୁରାଧାପୁର ନାମକ ବିଖ୍ୟାତ ସହରର ରାଜା କେତେଗୋଟି ହାତୀ ଏବଂ ହାତୀ ଦାନ୍ତର ମୂଲ୍ୟ ସ୍ୱରୂପ ସେ ରତ୍ନଟିକୁ ତାଙ୍କର ସ୍ୱାମୀଙ୍କୁ ଦେଇ ଆଦେଶ କରିଥିଲେ, ଯେପରି ସେ ରତ୍ନରୁ ଅବଶିଷ୍ଟ ଧନ ବ୍ରହ୍ମଦେଶରେ ବୌଦ୍ଧଧର୍ମ ଉତ୍ତମରୂପେ ପ୍ରଚାର କରିବାରେ ବ୍ୟବହୃତ ହୁଏ । ମୁଁ ଯେତେବେଳେ ପୁଅକୁ ନେଇ ଚାଲିଆସେ, ମୋତେ ସେ ରତ୍ନଟି ଦେଇ କହିଲେ, ମୋର ଏହି ଶିଶୁ ସନ୍ତାନ ପ୍ରାପ୍ତବୟସ୍କ ହେଲେ ତାକୁ ଏହା ଦେବ ଏବଂ କହିବ, ବାପ ମା'ଙ୍କର ଏହି କ୍ଷୁଦ୍ର ଉପହାର ଗ୍ରହଣ କରି ସେ ଯେପରି ସମୟ ସମୟରେ ସେମାନଙ୍କୁ ମନେ ପକାଏ । ସେ ଯେ ଦେଶର ଜଣେ ପ୍ରଧାନ ବଣିକଙ୍କର ପୁତ୍ର, ଏହା ଯେପରି ସେ ଏହି ରତ୍ନକୁ ଦେଖି ପାସୋରି ନ ଯାଏ ଏବଂ ଯେପରି ଚିରଦିନ ତା'ର ମନ ବୁଦ୍ଧଦେବଙ୍କଠାରେ ଭକ୍ତି ଓ ପ୍ରେମରେ ଆସକ୍ତ ରହେ ।

ରୂପେଈ ଟିକିଏ ଅପେକ୍ଷା କରି, ଦମ୍ ନେଇ ପୁନର୍ବାର କହିଲା, ମୋ ମଣି ପ୍ରାପ୍ତବୟସ୍କ ହେଲା ବେଳକୁ ବୋଧହୁଏ ମୁଁ ନ ଥିବି। ତେଣୁ ତା ମା'ର ଆଦେଶ ପାଳନ କରିବାକୁ ମୁଁ ତୁମକୁ ଅଭିଭାବକ ନିଯୁକ୍ତ କରିଗଲି।

ରୂପେଈର କଥାରେ ମଣିଆଁର ମନରେ ବାଲ୍ୟସ୍ମୃତିର କ୍ଷୀଣ ତେଜ ଖେଳିଗଲା। ନିଜର ଭାବ ଗୋପନ କରି, ସେ ମୁହଁ ଶୁଖେଇ ନୀରବ ରହିଲା। ଭଜନା ରତ୍ନଟିକୁ ପୁନର୍ବାର ମଠାକନାରେ ବାନ୍ଧି ପେଡ଼ିରେ ରଖିଲା।

ଦିନୁ ଦିନ ରୂପେଈର ଦେହ ଅଧିକ ଖରାପ ହେଲା। ଗ୍ରାମରୁ ବୈଦ୍ୟ ଅଣାଇ ତାର ଚିକିତ୍ସା କରାଗଲା। କିନ୍ତୁ ଶେଷରେ ଦିନେ ସନ୍ଧ୍ୟା ସମୟରେ ପିତା ପୁତ୍ରଙ୍କର ମୁହଁକୁ ଚାହିଁ ଚାହିଁ ତାର ପ୍ରାଣ ବିହଙ୍ଗମ କେଉଁ ଅଜଣାଦେଶକୁ ଉଡ଼ି ଚାଲିଗଲା।

ରୂପେଈର ମୃତ୍ୟୁ ଦିବସରୁ ଭଜନାର ପ୍ରକୃତି ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଯାଇଛି। ସେ ଆଉ ଏଥର ଶୃଗାଳ କିମ୍ବା ଅନ୍ୟାନ୍ୟ ଜୀବଜନ୍ତୁଙ୍କ ଅନୁକରଣ କରି ଆନନ୍ଦରେ ଚିତ୍କାର କରି ଉଠେ ନାହିଁ, ଅଥବା ଶୁଖିଲା ବେଣା ବୁଦାରେ ଅଗ୍ନି ସଂଯୋଗ କରି ନାଚି ନାଚି କହେ ନାହିଁ, ଅନଲନଲ ଓଦା କିଆ ସବୁ ଜଳି। କେବଳ ନୀରବରେ ବସି ଚିନ୍ତା କରେ—ସେ କାହିଁ ?

ଏହି ଗୋଟିଏ ପ୍ରଶ୍ନର ଉତ୍ତର ପାଇବାକୁ ସେ ସର୍ବଦା ଅସ୍ଥିର ହୋଇ ପଡ଼େ। ସେହି ବିଷୟରେ ଚିନ୍ତାକରେ। ମନ ମଧ୍ୟରେ ନାନାପ୍ରକାର ତର୍କ ବିତର୍କ କରି, ସମୟ ସମୟରେ ନିଜର କଥାକୁ ନିଜେ କାଟି ଅନ୍ୟପ୍ରକାର ତର୍କ ବାହାର କରେ। ଯେଉଁଦିନ ରୂପେଈ ଭବଲୀଳା ସାଙ୍ଗ କଲା, ଭଜନା ରାଗରେ ସେଠାରୁ ଉଠିଗଲା ବାଲିଆବନ୍ତଙ୍କ ମନ୍ଦିରକୁ ଏବଂ ଜଗତରେ ଭଗବାନ ମିଛ, ଦେବ ଦେବୀ ମିଛ, କହି କହି ମୂର୍ତ୍ତିଟିକୁ ପଥରରେ ବାଡ଼େଇ ଖଣ୍ଡ ଖଣ୍ଡ କରି ଭାଙ୍ଗି ପକାଇଲା। କହି ଉଠିଲା, ମୂର୍ତ୍ତିପୂଜାର ଧ୍ୱଂସହେଲା ଆଜିଠାରୁ।

ପୁଣି ସେ ଭାବେ ମୂର୍ତ୍ତିଟିକୁ ଭାଙ୍ଗିଲା କାହିଁକି ? ତା'ର ଏହି ଭାବନା ମଧ୍ୟରେ ଭଗବାନଙ୍କର ଅସ୍ତିତ୍ୱ ଅଜାଣତରେ ଗୁପ୍ତ ହୋଇ ରହି ନାହିଁ କି ? ସେ ଯଦି ଭଗବାନଙ୍କର ଅସ୍ତିତ୍ୱରେ ବିଶ୍ୱାସ ନ କରେ, ରାଗିଲା ତେବେ କାହା

ଉପରେ ? ସ୍ୱଗକର ମୂର୍ତ୍ତି ଭାଙ୍ଗିଲ୍ଲ କାହିଁକି ? ଯଦି ମୂର୍ତ୍ତି ଭାଙ୍ଗିବା ଦ୍ୱାରା ଭଗବାନଙ୍କୁ ଅପମାନ କରୁଛୁ ବୋଲି ମନେକରେ, ତେବେ ତ ସେ ଭଗବାନ ଅଛନ୍ତି, ଏହା ବିଶ୍ୱାସ କରୁଛୁ ।

ଜଣେ କେହି ଭଗବାନ ଥାଉ ଅବା ନ ଥାଉ, ମନୁଷ୍ୟ ସମାଜର ସୃଷ୍ଟି କାଳରୁ ଲୋକ କୌଣସି ନା କୌଣସି ପ୍ରକାରରେ ସେହି ଅଜଣା ଦେବତାର ପୂଜାକରି ଆସିଛି । ଆର୍ଯ୍ୟ, ମଙ୍ଗୋଲିୟ ବା ଦ୍ରାବିଡ଼ ସମାଜପରି ଉନ୍ନତ ସମାଜ କହ, ବା ଅସଭ୍ୟ ଅନାର୍ଯ୍ୟ ଜାତିର ସମାଜ କହ, ପ୍ରତ୍ୟେକ ଲୋକ କୌଣସି ରୂପରେ ପରମେଶ୍ୱରଙ୍କର ପୂଜାକରି ଆସୁଛନ୍ତି । ଆଜି ବିଜ୍ଞାନବେତ୍ତାମାନଙ୍କର ଅକାଟ୍ୟ ତର୍କ ଓ ପ୍ରମାଣ ହୃଦୟଙ୍ଗମ କରି, ନିଜେ ବିଜ୍ଞାନବେତ୍ତା ହେଉନ୍ତୁ କିମ୍ବା ତାଙ୍କର ତର୍କରେ ଶ୍ରୋତୃମଣ୍ଡଳୀ ହେଉନ୍ତୁ, ନାସ୍ତିକ ହେବାକୁ ଚେଷ୍ଟାକଲେ ମଧ୍ୟ, ଅଜାଣତରେ ଆସ୍ତିକର କାର୍ଯ୍ୟକରି ପକାଉଛନ୍ତି । ଏହାର କାରଣ, ବହୁକାଳବ୍ୟାପୀ ମାନବର ମନ ସେହି ଆଡ଼କୁ ଅବିରତ ଧାବିତ ହୋଇଛି ।

ଯେତେବେଳେ କଳିଙ୍ଗରେ ବୌଦ୍ଧଧର୍ମ ଏବଂ ହିନ୍ଦୁଧର୍ମ ମଧ୍ୟରେ ଯନ୍ତ୍ରାଯନ୍ତ୍ରି ଲାଗିଥିଲା, ଗୋଟିଏ ଅନ୍ୟଟିକୁ ପରାଜିତ କରି ନିଜକୁ ପ୍ରତିଷ୍ଠିତ କରିବାକୁ ବସିଥିଲା, ସେତେବେଳେ କେଶରୀବଂଶର ରାଜତ୍ୱ । ସେହି ସମୟରେ, ଅନେକ ଶିବଙ୍କୁ ପ୍ରଧାନ ଦେବତା ଭାବି ପୂଜା କରିବାକୁ ଆରମ୍ଭ କରିଥିଲେ । ଏକା କଳିଙ୍ଗ ଉତ୍କଳରେ ଭଜନା ଥିଲା ସେ ସମୟରେ ନାସ୍ତିକ । ଯେଉଁ ସମୟର ଘଟଣା ଆଲୋଚିତ ହେଉଛି, ସେତେବେଳେ ବୌଦ୍ଧଧର୍ମର ହ୍ରାସ କେତେକ ପରିମାଣରେ କଳିଙ୍ଗରେ ହୋଇଥିଲା ସନ୍ଦେହ ନାହିଁ; କିନ୍ତୁ ସମ୍ପୂର୍ଣ୍ଣରୂପେ ନୁହେଁ । କଳିଙ୍ଗରୁ ପ୍ରଚାରକ ଯାଇ ଦେଶ ବିଦେଶରେ ବୌଦ୍ଧଧର୍ମ ପ୍ରଚାର କରୁଥିଲେ । ଲୋକେ ମଧ୍ୟ ଏ ଧର୍ମକୁ ଆଦର କରୁଥିଲେ ।

ତେଣେ ସମୁଦ୍ର କୂଳରେ ଜଗନ୍ନାଥଙ୍କର ମନ୍ଦିରକୁ ଉଭୟ ହିନ୍ଦୁ ଏବଂ ବୌଦ୍ଧମାନେ ତୀର୍ଥସ୍ଥାନ, ଦର୍ଶନୀୟସ୍ଥାନ ବୋଲି ଗଣନା କରୁଥିଲେ । ବୌଦ୍ଧମାନେ ମାନ୍ୟ କରୁଥିଲେ । କଥିତ ଅଛି, ବୁଦ୍ଧଦେବଙ୍କର ମୃତ୍ୟୁର କେତେ ବର୍ଷ ପରେ ସିଂହଳଦ୍ୱୀପରୁ ତାଙ୍କର ଗୋଟିଏ ଦନ୍ତ ଆସି ପୁରୀର ମନ୍ଦିରରେ ରଖାଯାଇଥିଲା । ହିନ୍ଦୁମାନଙ୍କର ଭକ୍ତି କରିବାର କଥା, ଇନ୍ଦ୍ରଦ୍ୟୁମ୍ନ ମହାରାଜା ଯେତେବେଳେ ସ୍ୱୟଂ ନାରାୟଣଙ୍କୁ ଆଣି ଶ୍ରୀ-କ୍ଷେତ୍ରରେ ସ୍ଥାପନ କରିଛନ୍ତି, ଅନ୍ୟ କଥା ଶୁଣୁଛି କିଏ ? ସେ ସମୟରେ ଶୁଣା ଯାଉଥିଲା, ଏକାମ୍ରକାନନରେ ଶିବଙ୍କର ମନ୍ଦିର ପ୍ରତିଷ୍ଠା ହେବ ଏବଂ ଶୈବଧର୍ମ ରାଜଧର୍ମ ହେବ । ପ୍ରକାଣ୍ଡ ଆୟୋଜନ ଲାଗିଲା । ଦେଶରେ ଯାହାହେଉ, ଭଜନା ତା'ର ନିଜର ଦର୍ଶନ ଶାସ୍ତ୍ର ସୃଷ୍ଟି କରିସାରିଥିଲା । ସେ

କହେ, ଦେଶରେ ବିଦ୍ରୋହ, ଆନ୍ଦୋଳନ, ଅତ୍ୟାଚାର ଓ ଗୋଳମାଳର ପ୍ରଧାନ କାରଣ ହେଉଛି ଧର୍ମ । ନିଜର ଧର୍ମ କିପରି ଜଗତ୍‌ସାରା ବ୍ୟାପିଯାଉ, ଏହା ପ୍ରତ୍ୟେକ ଲୋକର ଲକ୍ଷ୍ୟ । ଧର୍ମ ପ୍ରଚାରରୁ ସବୁପ୍ରକାର ଗୋଳମାଳ ଆରମ୍ଭ । ସେଥି ନିମନ୍ତେ ଆଗରୁ ବାଟ ସଫା ରଖିଥିଲେ ତ ସବୁ ଭଲ । ଧର୍ମର ସୃଷ୍ଟି, ଭଜନାର ମତରେ, ସମାଜ ଚାଳନାରେ ଶୃଙ୍ଖଳା । ଧର୍ମର ଭୟ ନ ଥିଲେ, ଲୋକେ ପାପକୁ ଭୟ କରିବେ ନାହିଁ, ଅତଏବ ଜଗତରେ କେହି କାହାକୁ ମାନିବେ ନାହିଁ, ଅତ୍ୟାଚାର ବଢ଼ିଯିବ । ବୃଥା ଧର୍ମ ନେଇ ମନୁଷ୍ୟର ବନ୍ଧନ ଅନେକ ବଢ଼ି ଯାଉଛି ।

ଧର୍ମନିମନ୍ତେ କେତେ ଯେ ଅତ୍ୟାଚାର ଦେଶେ ଦେଶେ ଅଭିନୀତ ହେଉଛି ତାର ଇୟତ୍ତା ନାହିଁ । ଗୋଟିଏ ଧର୍ମାବଲମ୍ବୀକୁ ଅନ୍ୟ ଧର୍ମାବଲମ୍ବୀ ଘୃଣା କରୁଛି । ଏପରି ଗୋଳମାଳରୁ ରକ୍ଷାପାଇବାକୁ ହେଲେ ସଫା କହିବାକୁ ହେବ ସଂସାରରେ ଭଗବାନ କେହି ନାହିଁ । ପ୍ରତ୍ୟେକ ପଦାର୍ଥ ନିଜ ମନକୁ ସୃଷ୍ଟି ହେଉଛି । ଆତ୍ମା କିଛି ନୁହେଁ, ମୁକ୍ତି କିଛି ନୁହେଁ । ମୂର୍ତ୍ତିପୂଜା ବା କୌଣସି ପ୍ରକାର ପୂଜାର ନିୟମ ବନ୍ଧନରେ ମୁକ୍ତ ମାନବ ସମାଜକୁ ବାନ୍ଧି ରଖିବା ଉଚିତ ନୁହେଁ । ପ୍ରତ୍ୟେକ ପ୍ରତ୍ୟେକର ପ୍ରଧାନ ଦେବତା । ସମାଜର ପ୍ରତ୍ୟେକ ବ୍ୟକ୍ତି ଜଣେ ଜଣେ ଦେବତା, ପ୍ରତ୍ୟେକ ଦେଶ ସ୍ୱର୍ଗ । କିପରି ନିଜର, ସମାଜର ଏବଂ ଦେଶର ମଙ୍ଗଳ ହେବ, କେବଳ ଏହାହିଁ କରିବା ପ୍ରତ୍ୟେକ ମନୁଷ୍ୟର ଧର୍ମ ଓ କର୍ତ୍ତବ୍ୟ । କେବଳ ଧର୍ମ ଧର୍ମ କହି ଆନ୍ଦୋଳନରେ ଦେଶର ଅବନତି ଘଟିଛି । ପୂଜା ପ୍ରାର୍ଥନା କରିବା ଦ୍ୱାରା ମନୁଷ୍ୟର ବନ୍ଧନ ବଢୁଛି, ବୃଥା ସମୟ ନଷ୍ଟ ହେଉଛି । ସେହି ପୂଜା ସମୟରେ ନିଜର ଅବା ଦେଶର ମଙ୍ଗଳ କାମନା କରିବା ଶ୍ରେୟ । ରୂପେଇର ମୃତ୍ୟୁରେ ଭଜନା ଦୁଃଖ ପ୍ରକାଶ କରେ ନାହିଁ । କେବଳ କହେ, ସେ କାହିଁ—ସେ ? ଯାହା ସଙ୍ଗେ ଏତେ ଆନନ୍ଦରେ ସମୟ କଟାଇ ଆସିଥିଲି ସେ କାହିଁ ? ସେ ଯେଉଁ ସବୁ ପଦାର୍ଥକୁ ମୋର ମୋର ବୋଲି କହି ଆସିଥିଲା, ସେଥି ମଧ୍ୟରୁ ତ କିଛି ନେଇ ଚାଲିଯାଇ ନାହିଁ ।

ଏହିପରି ଅନେକ ଚିନ୍ତା କରୁ କରୁ ଶେଷରେ ପୂର୍ବୋକ୍ତ କଥାଗୁଡ଼ିକ ନିକଟକୁ ଚାଲିଆସେ ଏବଂ ସଙ୍ଗେ ସଙ୍ଗେ ତାର ଚିନ୍ତା ଭାଙ୍ଗିଯାଏ । ସେ ଶୀର ପରି ଉଠି ପୁନର୍ବାର ମନୁଷ୍ୟ ଜୀବନର ନିତ୍ୟନୈମିତ୍ତିକ କାର୍ଯ୍ୟ କରିବାରେ ଲାଗିଯାଏ । ମାତ୍ର ମନ ଲାଗେ ନାହିଁ । ଦୈନିକଲିପି ଲେଖିବାକୁ ଚେଷ୍ଟାକଲେ ମଧ୍ୟ ଲେଖିପାରେ ନାହିଁ । ଅଜାଣତରେ ରୂପେଇର ଚିନ୍ତା ମନୋରାଜ୍ୟ ଅଧିକାର କରି ବସେ । ଇଚ୍ଛା ବିରୁଦ୍ଧରେ ଚକ୍ଷୁ ଆର୍ଦ୍ର ହୋଇ ପଡ଼େ ।

ମଣିଅାଁ ରୂପେଈର ଅଭାବ ବେଶୀ ବୋଧକଲା ଏବଂ ପ୍ରତ୍ୟହ ଅସ୍ଥିର ହୋଇ କାନ୍ଦିବାକୁ ଲାଗିଲା । ହୃଦୟ ମଧ୍ୟରେ ଯେଉଁ ଭାବ ଥାଉ ପଛକେ ତାହା ଗୋପନକରି, ଭଜନା ହାସ୍ୟପୂର୍ଣ୍ଣ ମୁଖରେ ମଣିଅାଁକୁ ବୁଝାଏ ଏ ସଂସାରରେ କେହି କାହାର ନୁହେଁ । ସମସ୍ତଙ୍କୁ ଦିନେ ମୃତ୍ୟୁର କବଳରେ ପଡ଼ିବାକୁ ହେବ । ତେଣୁ, ଯେ ମୃତ ତାକୁ ମନେକରି କମ୍ବା ତାର ସ୍ନେହ ମମତାକୁ ସ୍ମରଣକରି ମନରେ ଦୁଃଖ କରିବା ମୂର୍ଖର କାର୍ଯ୍ୟ । ଯେ ମୃତ, ଯେ ସଂସାରର ଜଞ୍ଜାଳରୁ ମୁକ୍ତ, ତାହାର ଆଉ ସଂସାରରେ ଜନ୍ମ ନାହିଁ; କର୍ମଫଳ ମିଥ୍ୟା, ପୁନର୍ଜନ୍ମ ମିଥ୍ୟା, ଭଗବାନ ମିଥ୍ୟା । କେବଳ ସମାଜର ଶୃଙ୍ଖଳା ନିମନ୍ତେ ଧର୍ମର ସୃଷ୍ଟି । ଅତଏବ, କାହାର ମୃତ୍ୟୁରେ ଦୁଃଖ ନ କରି ସଂସାରରେ ଯେତେ ଦିନ ଅଛି ନିଶ୍ଚିନ୍ତରେ ଆନନ୍ଦରେ ସମୟ କଟାଇ ଯିବା ଭଲ । ପରର ଅମଙ୍ଗଳ ସାଧନ କରିବା ପାପ ନୁହେଁ, ମାତ୍ର ଯେ ପରର ଅମଙ୍ଗଳ ଚିନ୍ତା କରେ, ସାଧନ କରେ, ତାର ଅମଙ୍ଗଳ ଅନ୍ୟ କେହି ସାଧନ କରିବ ନିଶ୍ଚୟ; କାରଣ ସେ ନିଜେ ସେ କାର୍ଯ୍ୟରେ ଅନ୍ୟକୁ ଉତ୍ସାହିତ କଲା । ଏବେ ବୁଝିଛି, ଧର୍ମର ହସ୍ତକ୍ଷେପ ମାନବ ସମାଜରେ ନ ଥିଲେ, କେହି କାହାକୁ ମାନନ୍ତେ ନାହିଁ । ସଂସାର ଶ୍ମଶାନରେ ପରିଣତ ହୁଅନ୍ତା । ଅତଏବ ବାପ, ବୃଥା ଚିନ୍ତା ନ କରି କର୍ତ୍ତବ୍ୟ କାର୍ଯ୍ୟରେ ଲାଗିଯାଅ । ନିଜର ଉନ୍ନତି ହେବ, ଦେଶର, ସମାଜର ମଧ୍ୟ ଉନ୍ନତି ହେବ ।

ଭଜନାର ସମସ୍ତ ପ୍ରବୋଧନା ମଣିଅାଁର କାନରେ ପଶି ବାହାରି ଅାସେ ପଦାକୁ । ହୃଦୟକୁ ଅାନ୍ଦୋଳିତ କରି ପକାଏ ।

ଏଣିକି ସେ ଉତ୍ତମରୂପେ ପଢ଼ି ଲେଖି ଜାଣିଲାଣି । ସମୟ ସମୟରେ ଭଜନାର ଦୈନିକ ଲିପି ପୋଥି ଗୁଡ଼ିକରୁ ଖଣ୍ଡେ ଖଣ୍ଡେ ଆଣି ପଢ଼େ ଏବଂ ଆନନ୍ଦ ଉପଭୋଗ କରେ । ଭଜନାର ଏକ ପୋଥିରୁ ସେ ନିଜର ପୂର୍ବ ବୃତ୍ତାନ୍ତ ପଢ଼ି ଜାଣିଛି, ସେ କିପରି ରୂପେଈର ପାଳନାଧୀନରେ ଆସିଲା ଏବଂ କିପରି ସେ ଜଣେ ଦେଶର ପ୍ରଧାନ ବଣିକଙ୍କର ପୁତ୍ର । ରୂପେଈର ସ୍ନେହ ଏବଂ ମମତାରେ ସେ ମାତାର ଅଭାବ ଭୁଲିଯାଇ ଥିଲା । ସେ ବୁଝିଲା ସେ ରୂପେଈର ପୁତ୍ର ନୁହେଁ, ଅନ୍ୟର । ଏହା ବିଶ୍ବାସ କରିବାକୁ ସେ କିନ୍ତୁ ପ୍ରସ୍ତୁତ ନୁହେଁ ।

ରୂପେଈର ମୃତ୍ୟୁ ପରେ ଗୃହର ସମସ୍ତ କାର୍ଯ୍ୟ ମଣିଅାଁ କରେ । ମାଛଧରା, ମାଛ ବିକି ଏବଂ ରନ୍ଧନ କାର୍ଯ୍ୟ ପର୍ଯ୍ୟନ୍ତ ହାତରେ କରିବାକୁ ହୁଏ । ତେଣୁ କାମଭିତରେ ସମୟ କଟିଯାଏ । ଭଜନାକୁ ବିଶେଷ କିଛି କରିବାକୁ ପଡ଼େ ନାହିଁ । ସମୁଦ୍ରକୁ ମାଛ ଧରିବାକୁ ସେ ପ୍ରାୟ ଯାଏ ନାହିଁ । ଅକାଳେ ସକାଳେ ଇଚ୍ଛା ହେଲେ ନୌକା ବାହି ଖୁଣ୍ଟିଆ ଦ୍ୱୀପକୁ ବୁଲି ଚାଲିଯାଏ ।

ନିକଟସ୍ଥ ଗ୍ରାମ ସୁନାହାଟରେ ଲୋକେ ମଣିଆଁକୁ ଭଜନାର ପୁତ୍ର ବୋଲି ଭଲ ଭାବରେ ଚିହ୍ନି ଗଲେଣି । ନୃପେନ୍ଦ୍ରଙ୍କର ମୃତ୍ୟୁରେ କେହି କେହି ସହାନୁଭୂତି ଦେଖାଇ ବାଳକକୁ ଅନେକ ବିଷୟ କହୁଥାନ୍ତି । ସମସ୍ତଙ୍କର ଦୟା ପିଲାଟି ଉପରେ ଥାଏ । ଲୋକେ ପ୍ରଶଂସା କରି କହି ଥାନ୍ତି, ମଣିଆଁ ଶାନ୍ତ, ଧୀର, ପ୍ରିୟବାଦୀ ଏବଂ ଶିକ୍ଷାଗ୍ରହୀ ।

ସୁନାହାଟର ଲୋକେ ମଣିଆଁକୁ ଅନୁରୋଧ କରି ଅନେକ ଥର କହିଲେଣି ବାପାକୁ କହି, ସମୁଦ୍ରକୂଳରୁ ଚାଲିଆସ ଗ୍ରାମକୁ । ଘରେ ମାଇପେ ନାହାନ୍ତି ତେଣୁ ତୁମକୁ ସେଠାରେ ଚଳାଚଳରେ ଅସୁବିଧା ହେଉଥିବ । ଗ୍ରାମକୁ ଆସିଲେ ଅସୁବିଧା କେତେ ଜଣା ପଡ଼ିବ ନାହିଁ ।

ମଣିଆଁ କହେ, ସେ ସ୍ଥାନଟି ଆମକୁ ଆଦରେଇ ଗଲାଣି । ସେଠାରୁ ଆସିଲେ ଆମକୁ ଅସୁବିଧାରେ ପଡ଼ିବାକୁ ହେବ । ସମୁଦ୍ରଠାରୁ ଦୂରରେ ରହିଲେ ମାଛ ଧରାଧରି କରିବାରେ ଅସୁବିଧା ହେବ ।

ଏହିପରି ଅନେକ ଦିନ କଟିଗଲା । ମଣିଆଁ ଏତେ ଅଳ୍ପ ବୟସରୁ ମନୁଷ୍ୟ ଜୀବନର କଠିନତାରେ ଅନେକ ପରିମାଣରେ ପରିଚିତ । ଏତେ ପିଲା ଦିନୁ ତାର ପ୍ରକୃତି, ଢଙ୍ଗଢାଙ୍ଗ ଏବଂ ବୁଦ୍ଧି ପରିବର୍ତ୍ତିତ ହେଲା । ସଂସାର ବୋଝ ମନୁଷ୍ୟକୁ ଅତି ଶୀଘ୍ର କର୍ମ ପଥକୁ ନେଇଆସେ ଏବଂ ମନୁଷ୍ୟର ମନୋଭାବ ପରିବର୍ତ୍ତନ କରିଦିଏ । ମଣିଆଁର ତାହାହିଁ ଘଟିଲା ।

ଦିନେ ଭଜନା ତାର ଦୈନିକ ଲିପି ଲେଖୁଥିବା ସମୟରେ ବାର ବର୍ଷର ବାଳକ ମଣିଆଁ ନିକଟରେ ବସି ଅନେକ ବିଷୟ ଭାବୁଥିଲା । ହଠାତ୍ ତାର ମୁଖ ଉଜ୍ଜ୍ୱଳ ହୋଇ ଉଠିଲା ଏବଂ ସେ ଭଜନାକୁ କହିଲା, ବାପା, ଗୋଟିଏ କଥା କହିବି, ଟିକିଏ ଶୁଣିବ କି ?

ଲେଖା ବନ୍ଦକରି ମଣିଆଁର ମୁହଁକୁ ଚାହିଁଲାରୁ ସେ ଆରମ୍ଭ କଲା, ବାପା, ଆମେ ଏତେ କଷ୍ଟ, ଏତେ ଦୁଃଖ ସହି ଏପରି ନିର୍ଜନ ଶ୍ମଶାନ ପରି ସ୍ଥାନରେ ଆଉ କେତେ ଦିନ ରହିଥିବା ? ଯଦି ଚେଷ୍ଟା କରି ନିକଟବର୍ତ୍ତୀ ଗ୍ରାମରେ ଆମେ ତ ବେଶ୍ ଭଲଭାବରେ ବ୍ୟବସାୟ କରି ଘର କରି ରହି ପାରିବା ।

ମଣିଆଁର କଥାରେ ଭଜନା ଟିକିଏ ବିସ୍ମିତ ହୋଇ ପଚାରିଲା, ଧନ କାହିଁ ?

ଧନ ତ ଆମର ପ୍ରଚୁର ଅଛି । ସେଦିନ ରାତିରେ ମା ଯେଉଁ ରତ୍ନ ଖଣ୍ଡିକ ଦେଇଯାଇଛି ତାହାର ମୂଲ୍ୟ ଅଳ୍ପ ହେବ ନାହିଁ । ଘରଦ୍ୱାର କରି ଟିକିଏ ଭଲଭାବରେ ବ୍ୟବସାୟ ଆରମ୍ଭ କରିବାକୁ ଅଣ୍ଟିବ । ବୃଥାରେ ଏ ଭୀଷଣ ଜନଶୂନ୍ୟ ବାଲୁକା ପ୍ରାନ୍ତରରେ ପଡ଼ି ରହିଥିବା କାହିଁକି ?

ବାଲକର ପ୍ରଶ୍ନରେ ଭଜନା ହସି ହସି କହିଲା, ଏତେ ଗୁଡ଼ାଏ କାମ ତୁ ଏକାକି କରି ପାରିବୁ ?

ଯଦି ତୁମର ଆଦେଶ ପାଏ କରିବାକୁ ବିଶେଷ କଷ୍ଟ ପଡ଼ିବ ନାହିଁ ।

ମୋର ଆଦେଶ ? ମୁଁ ତ ଏ ବାଲୁକା ପ୍ରାନ୍ତରକୁ ଭୟ କରେ ନା । ଆବାଲ୍ୟରୁ ଏହି ବାଲୁକା ପ୍ରାନ୍ତର ସଙ୍ଗେ ମିଶି ମିଶି ଏବଂ ଦୂରରେ ସୁନୀଳ-ସାଗରରେ ନୌକା ବାହି ବାହି ସମୟ କଟାଇଛି । ଆଜି ମୁଁ ଅନ୍ୟ ପ୍ରକାର ପରିବର୍ତ୍ତିତ ଜୀବନରେ ଆଣିବାକୁ ଚାହେଁ ନା । ତୋ ପରି ମୁଁ ମୋର ଅବ୍ୟବସ୍ଥାରେ କ୍ଲାନ୍ତ ହୋଇ ପଡ଼ି ନାହିଁ । ଯାହାକୁ ଦୁଃଖ ବୋଲି ତୁ କହୁ, ମୁଁ ଚିରଅଭ୍ୟସ୍ତ ଥିବାରୁ ମତେ ତାହା କଷ୍ଟ ପରି ଆଦୌ ଜଣା ପଡ଼େ ନାହିଁ ; ବରଂ ଜୀବନର ସୁଖ ବୋଲି ମନେ କରେ ।

ତୁ ବାଲକ ହୋଇ ଜୀବନର ଏହି ସାଧାରଣ ଦୁଃଖକୁ ଯଦି ଦୁଃଖ ବୋଲି ମନେ କରୁ ତେବେ ତୁ ନିତାନ୍ତ ଦୁର୍ବଳ । ତୋ ବିଷୟରେ ମୋର ବିଶେଷ କିଛି କହିବାର ନାହିଁ । ଏହି ଦେଖ, ଅଦୂରରେ ଯେଉଁ ପଥରର ଗହ୍ୱରଟି ଦେଖିବାକୁ ପାଉଛୁ, ସେଥିରେ ତୋ ମା'ର ସମସ୍ତ ପଦାର୍ଥ ମୁଁ ଲୁଚାଇ ରଖିଛି ଅତି ଯତ୍ନରେ, ଯେପରି କେହି ଦେଖି ନ ପାରେ । ଯଦି ତୋର ଇଚ୍ଛା ଥାଏ କୌଣସି ଗ୍ରାମକୁ ଯାଇ ଘର ଦ୍ୱାର କରି ବ୍ୟବସାୟ ଦ୍ୱାରା ସ୍ୱଚ୍ଛନ୍ଦରେ ଜୀବନ କଟାଇବାକୁ, ତୁ ତାହା କରିପାରୁ; କିନ୍ତୁ ବାବା ମୋତେ ସେ ବିଷୟରେ ଅନୁରୋଧ କର ନା । ମୋ ଅଭ୍ୟାସ ଯାହା ମୁଁ ତାହା ଅବଶ୍ୟ ପାଲନ କରିବ ।

ଯେଉଁ ସମୁଦ୍ରର ଢେଉ ଗୋଟିକ ପରେ ଗୋଟିଏ ଆସି ଆନନ୍ଦରେ ସମୁଦ୍ର ବେଳାରେ ବାଜି ଗର୍ଜ୍ଜନ କରି ଉଠୁଛି, ମୁଁ ତାହାର ସଙ୍ଗରେ ଖେଳି ଖେଳି ସମୟ କଟାଇ ଦେବ ଆନନ୍ଦରେ । ମୋ ନିମନ୍ତେ ଚିନ୍ତା କରିବା ଆବଶ୍ୟକ ନାହିଁ । ମୋତେ ସମସ୍ତେ ଗୋଟି ଗୋଟି କରି ଛାଡ଼ି ଚାଲିଯାଅ, ମୁଁ ମୋର ମରୁ ଏବଂ ଦିଗନ୍ତବ୍ୟାପୀ ସାଗର ଓ ଅମ୍ବରକୁ ଛାଡ଼ି ଚାଲିଯାଇ ନ ପାରେ । ସମୁଦ୍ର ଗର୍ଭରେ ଯେଉଁ ପୁରାତନ ନୌକା ଖଣ୍ଡି ଢେଉ ବାଜି ଅଧୀର ହୋଇ ନାଚି ଉଠୁଛି ତାକୁ ଛାଡ଼ି ମୁଁ କେଉଁ ଆଡ଼େ ଯାଇ ନ ପାରେ । ମୋର ସେ ଖଣ୍ଡି ପରମ ବନ୍ଧୁ ।

ମୃତ୍ୟୁ ପୂର୍ବରୁ ତୋତେ ସେ ମୋର ହସ୍ତରେ ସମର୍ପଣ କରି ଚାଲି ଯାଇଛି । ଯହିଁରେ ତୋର ମଙ୍ଗଳ ହେବ, ଯାହା କଲେ ତୁ ସୁଖରେ ଜୀବନ କଟାଇ ପାରିବୁ, ମୋର ତାହାହିଁ ଇଚ୍ଛା । ତୋର ବର୍ତ୍ତମାନ ବୁଝିବାର ଶକ୍ତି ହେଲାଣି, ଯାହା ଇଚ୍ଛା ତାହା କର ବାପ; ମୋର କିଛି ଆପତ୍ତି ନାହିଁ ।

ମଣିଅଁ କହିଲା, ମୁଁ ତୁମକୁ ଛାଡ଼ି ଚାଲି ଯାଇ ନ ପାରେ । ଗଲେ ମଧ୍ୟ କିଛି କରି ପାରିବ ନାହିଁ ।

ତେବେ ତୁ ଏକାମ୍ରକୁ ଯାଇ ରାଜାଙ୍କ ଛାମୁରେ ସମସ୍ତ ଦୁଃଖ ଜଣାଇ ପାରୁ । ସେ ହୁଏତ ଦୟା କରି ତୋର ମଙ୍ଗଳ ନିମନ୍ତେ କିଛି କରି ପାରନ୍ତି । ଆହୁରି ମଧ୍ୟ ସମୁଦ୍ରରେ ଯେପରି ଆଉ କେବେ ଏପରି ଡକାଏତି ନ ହୁଏ, ସେଥି ପ୍ରତି ନଜର ରଖିବେ ।

ଏତିକି କହି ଭଜନା ପୋଥି ବନ୍ଦ କଲା । ବାଳକ ଅନେକ ସମୟ ଚିନ୍ତା କରି କହିଲା, ଉତ୍କଳର ସମ୍ରାଟ ମୋ କଥା ବିଶ୍ୱାସ କରିବେ କାହିଁକି ? ମୋର ପିତା କିଏ ଏବଂ ସେମାନଙ୍କର ସର୍ବସ୍ୱ ହରଣ କରି ନେଲା କିଏ, ଏ ସମସ୍ତ ତାଙ୍କୁ ଜଣାଇଲେ ଯିନା ସେ ଗୋଟାଏ କିଛି କରି ପାରିବେ । ଏସବୁ କହିବାକୁ ତୁମକୁ ଯିବାକୁ ପଡ଼ିବ ।

ତା ତୁ କ'ଣ ପାରିବୁ ନାହିଁ ? ତରତର କରି ଭଜନା ପ୍ରଶ୍ନ କଲା ।

ମୋର କିଛି ମନେ ପଡ଼ୁ ନାହିଁ । ପିତା ମାତା କିଏ ମୁଁ ଜାଣେ ନାହିଁ ।

ସେ ଯାହାହେଉ ମୁଁ କୌଣସି ସମ୍ରାଟଙ୍କ ନିକଟକୁ କେବେହେଲେ ଯାଇ ନାହିଁ କି ଯିବ ନାହିଁ । ତୁ ଯଦି ମୋତେ ଛାଡ଼ି କରି ଚାଲି ଯିବାକୁ ଇଚ୍ଛା କରୁ ତାହା କରି ପାରୁ । ମୁଁ ସେଥି ନିମନ୍ତେ ଆପତ୍ତି କରିବି ନାହିଁ । ଯାହା ପାଖରେ, ଯାହା ସଙ୍ଗରେ ଜୀବନର ସୁଖ ଦୁଃଖର ପ୍ରତ୍ୟେକ ମୁହୂର୍ତ୍ତ କଟାଇ ଆସିଥିଲି, ସେ ଅଛି କାହିଁ ? ଆଜି ତ ମୁଁ ନିଶ୍ଚିନ୍ତ; କେତେଦିନ ହେଲା ତୁ ଆସି ମୋର ଜୀବନରେ ମିଶିଥିଲୁ, ଚାଲିଯିବୁ, ସେଥି ନିମନ୍ତେ ଟିକିଏ ବି ଦୁଃଖ ନାହିଁ । ଦୁଃଖ କେବଳ ଏତିକି ଯେ, ମୋର ସଂସର୍ଗରେ ଆସି ସୁଦ୍ଧା ତୋ ପରି ବୁଦ୍ଧିମାନ ବାଳକର ମନ ଦୁର୍ବଳ ରହିଛି ।

ଭଜନାର ଚକ୍ଷୁ ଚଳ ଚଳ ଦେଖାଗଲା । ମଣିଅଁ ଦୁଃଖିତ ହୋଇ ନୀରବ ରହିଲା ।

ଭଜନା ପୁଣି କହିଲା, ମୋର ଉଦ୍ଦେଶ୍ୟ ଥିଲା ତୋତେ ଜଣେ ଶ୍ରେଷ୍ଠ ନାବିକ କରିଥାନ୍ତି । ସେହି ଉଦ୍ଦେଶ୍ୟକୁ ମନେରଖି ତୋତେ ମୁଁ ଶିକ୍ଷାଦେଇ ଆସୁଥିଲି କିପରି ତୁ ସମୁଦ୍ର ସଙ୍ଗେ 'ଉତ୍ତମରୂପେ' ପରିଚିତ ହୁଅ । କିପରି ସାମୁଦ୍ରିକ ଦୁଃଖ କଷ୍ଟକୁ ସାଦରେ ବରଣ କରି ନେ । ଏ ସମସ୍ତ ତୋତେ ତୋ'ର ପର ଜୀବନରେ ସାହାଯ୍ୟ କରିବ । ମୋର ସେହି ଶିକ୍ଷା ପ୍ରଭାବରେ ଅତି ଅଳ୍ପ ବୟସରେ ସମୁଦ୍ର ସଙ୍ଗେ-

କେତେକ ପରିମାଣରେ ତୁ ପରିଚିତ ହୋଇ ପାରିଛୁ । ତୁ ଯଦି ପ୍ରକୃତରେ ମୋର ପୁତ୍ର ହୋଇଥାନ୍ତୁ ଆଜି ମୋର ଇଚ୍ଛା ବିରୁଦ୍ଧରେ ଶାନ୍ତ ଭାବରେ ଜୀବନ ଯାପନ କରିବାକୁ ପ୍ରସ୍ତାବ କରି ନ ଥାନ୍ତୁ ।

ମଣିଅାଁ ଲଜ୍ଜିତ ହେଲା; ଦୁଃଖିତ ହେଲା । ସେ ଜାଣି ନ ଥିଲା ଗୋଟିଏ କଥା ପଚାରିବା ଦ୍ୱାରା ବାପା ଏତେ ରାଗିଯିବେ । ସେ ଜାଣେ, ଭଜନୀ ଥରେ ବିରକ୍ତ ହୋଇଗଲେ, କେତେ ଯୁକ୍ତି ବା ଅନୁରୋଧ ତାଙ୍କ ମନର ଭାବକୁ ପରିବର୍ତ୍ତନ କରିପାରିବ ନାହିଁ ।

ରାଜାଙ୍କ ନିକଟରେ ଅଭିଯୋଗ କରିବାକୁ ସେ ବତାଇ ଦେଇଥିଲେ କେବଳ ମଣିଅାଁର ମନ ବଢ଼ିବାକୁ । କିପରି ଭାବରେ ପିତାଙ୍କ ମନରୁ ସମସ୍ତ ଦୁଃଖ ଦୂର କରି ପୂର୍ବର ସ୍ନେହଭାବ ଜାଗ୍ରତ କରିପାରିବ ଏହି ଚିନ୍ତାରେ ମଣିଅାଁ ବ୍ୟସ୍ତ ହୋଇ ପଡ଼ିଲା । ତାଙ୍କର ପାଦତଳେ ପଡ଼ି ଲୋତକପୂର୍ଣ୍ଣ ଚକ୍ଷୁରେ କହିଲା, ମୋର ଦୋଷ କ୍ଷମା କର । ମୁଁ ଆପଣଙ୍କର ଅବାଧ ପୁତ୍ର । ମୁଁ କେବଳ ଆପଣଙ୍କ ଉତ୍ତର-ଜୀବନ କିପରି ସହଜରେ ବିନା କଷ୍ଟରେ କଟିଯିବ ସେଥି ନିମନ୍ତେ କହୁଥିଲି ସିନା । ଜାଣି ନ ଥିଲି, ଆପଣ ରାଗିଯିବେ । ସମୁଦ୍ର ପ୍ରତି ମୋର ମମତା ବେଶୀ । ଅବାଲ୍ୟରୁ ଦିନରାତି ସବୁବେଳେ ସମୁଦ୍ରକୁ ସମ୍ମୁଖରେ ଦେଖି ଆସୁଛି; ସର୍ବଦା ସମୁଦ୍ର ଉପରେ ଚଳି ଆସୁଛି; ତେଣୁ ସମୁଦ୍ର ପ୍ରତି ମୋର ଆଦୌ ଭୟ ନାହିଁ ବରଂ ମୁଁ ନଗର ବା ଗ୍ରାମ ଅପେକ୍ଷା ଏହି ସମୁଦ୍ର ଏବଂ ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତର ମଧ୍ୟସ୍ଥିତ ଏହି କ୍ଷୁଦ୍ର ଭିତର ସ୍ଥାନଟିକୁ ଭଲ ପାଏ । ଆଜିଠାରୁ ଆଉ କଦାପି ମୁଁ ଗ୍ରାମ ବା ନଗରରେ ବାସ କରିବାକୁ ଇଚ୍ଛାକରି ଅନୁରୋଧ କରିବି ନାହିଁ । ଆପଣଙ୍କ ପରି ସମୁଦ୍ର ଉପରେ ଖେଳି ଖେଳି ସମୟ କଟାଇ ଦେବି ।

ଭଜନୀ କହିଲା, ଭୟ ନାହିଁ ବାଳକ, ଭୟ ନାହିଁ । ଏଥର ଦୃଢ଼ପ୍ରତିଜ୍ଞ ହୁଅ । ମୁଁ ତୋତେ ଆକାଶରେ ଯେଉଁ ସମସ୍ତ ତାରକା ଦେଖାଇ, ଦିଗ ଏବଂ ସ୍ଥାନ ନିରୂପଣ କରିବାକୁ ବତାଇ ଦେବି, ତୁ ସମସ୍ତ ମନେ ରଖିବୁ । ତେବେ ଅକ୍ଳେଶରେ ତୁ ବିଶାଳ ଚୀନ ସମ୍ପତ୍ତିର ଅଧିକାରୀ ହୋଇ ପାରିବୁ ।

ଚୀନ୍ ସମ୍ପତ୍ତି କ'ଣ ବାପା ?

ତୁ ପରେ ଜାଣିବୁ । ବର୍ତ୍ତମାନ ଜାଣିବା ଅବଶ୍ୟକ ନାହିଁ । କିପରି ମାଛ ପରି ସମୁଦ୍ରରେ ଚଳିପାରୁ ତାହା ଶିକ୍ଷା କରିବାରେ ଲାଗିଯା । ବିନା ନୌକା, ବିନା ଟିପା କାଠିରେ ଯେପରି ତୁ ବହୁଦିନ ପର୍ଯ୍ୟନ୍ତ ସମୁଦ୍ରରେ ବଞ୍ଚିପାରୁ, ତାହା ଶିକ୍ଷା କର । ଉଠ, ମନରେ ଆଉ ଦୁଃଖ କରନା ।

ରଜନିର ଗମ୍ଭୀରତା ଭେଦ କରି ସମୁଦ୍ରର ଅବିରାମ ଗର୍ଜ୍ଜନ କୁଟୀରଟିକୁ ମୁଖରିତ କରି ଦେଉଥିଲେ ମଧ୍ୟ ଚିରି ଅଭ୍ୟସ୍ତ ସ୍ୱପ୍ତ ପିତାପୁତ୍ରଙ୍କର ଗାଢ଼ ନିଦ୍ରା ଭଙ୍ଗ କରିବାକୁ କ୍ଷମ ହେଉ ନ ଥିଲା । ପୂର୍ଣ୍ଣିମା ରଜନି; ତେଣୁ ସାଗରର ଅଙ୍ଗ ଆନନ୍ଦରେ ଫୁଲି ଉଠୁଛି; ସେ ଗର୍ଜ୍ଜନ କରି ଧାଇଁ ଆସୁଛି, ସତେ କି ଜଗତକୁ ଗ୍ରାସ କରିବ; କିନ୍ତୁ ଅଭିଶପ୍ତ ପରି କେବଳ ଛୁଇଁଦେଇ ଫେରି ଯାଉଛି ।

ସାଗର ଏବଂ ବେଳାଭୂମିର ଏହିପରି ତୁମୁଳ ଯୁଦ୍ଧ ଲାଗିଥିଲାବେଳେ ତେଣେ ବୈଶାଖ ପୂର୍ଣ୍ଣିମାର ନୀଳଆକାଶ ବକ୍ଷରେ ଶତ ଶତ ବଉଦ ଭାସି ଭାସି ଗତି କରୁଛନ୍ତି ଉତ୍ତରମୁଖୀ ହୋଇ । ଚନ୍ଦ୍ରଦେବଙ୍କ ସୁନ୍ଦର ମୁଖମଣ୍ଡଳ କେତେବେଳେ କେତେବେଳେ ଆଚ୍ଛାଦିତ କରୁଛନ୍ତି । ପବନ ହୁ ହୁ ହୋଇ କୁଟୀରଦ୍ୱାରର ଫାଙ୍କ ଦେଇ ପ୍ରବେଶ କରୁଛି ଗୃହମଧ୍ୟରେ । କେତେବେଳେ ବା ଦୂରରୁ ବାଲିକଣା ଉଡ଼ାଇ ଆଣି କୁଟୀରର ଚତୁର୍ଦ୍ଦିଗସ୍ଥ ବୃକ୍ଷରାଜିର ପତ୍ର ଦେହରେ ବଜାଉଛି ସାଇଁ ସାଇଁ କରି; ଆପେ ସାଇଁ ସାଇଁ ହୋଇ ଧାଇଁ ଯାଉଛି ଅନନ୍ତ ଲକ୍ଷ୍ୟରେ । ରହି ରହି ପାହାଡ଼ ଗୁହାରୁ ଶୃଗାଳପଲ ଚିତ୍କାର କରି ଉଠୁଛନ୍ତି । ତଥାପି, ଏ ସମସ୍ତ ଭଜନା ଏବଂ ମଣିଆଁ ର ଗାଢ଼ ନିଦ୍ରାରେ ବାଧା ଦେଇ ପାରିଲା ନାହିଁ ।

ନିଶୀଥର ଗମ୍ଭୀରତା ଭେଦ କରି ଅଦୂରରୁ ଭେରୀର ଭୟପ୍ରଦ ଶବ୍ଦ ଶୁଭିଲା । ଜଣା ଗଲା, ଯେପରି ଅନେକ ଅଶ୍ୱାରୋହୀ ଦ୍ରୁତଗତିରେ ଧାଇଁ ଆସୁଛନ୍ତି କୁଟୀର ଆଡ଼କୁ । ଭଜନାର ନିଦ୍ରା ଭଙ୍ଗହେଲା । ସେ ଉଠି ବସିଲା । ଚକିତ ହୋଇ ଗୃହ ଆଡ଼କୁ ଗୃହିଁଲା । ଘର ଭିତରେ ଅନ୍ଧକାର । ସେହି ଅନ୍ଧକାର ଭେଦକରି ଆଲୋକ ରେଖାଟିଏ ଦ୍ୱାରବାଟେ ଆସି ତରବାରର ଦେହରେ ପଡ଼ି ଝଲସି ଉଠୁଛି । ସଙ୍ଗେ ସଙ୍ଗେ ଆହୁରି ଥରେ ଭେରୀ ବାଜି ଉଠିଲା । କିଏ ଜଣେ ଚିତ୍କାର କରି ଅନ୍ୟ କାହାକୁ ଡାକିଲା ପରି ଜଣାଗଲା । ସଙ୍ଗେ ସଙ୍ଗେ ଜଣେ କିଏ ଚିତ୍କାର କରି ଉଠିଲା । ଯେପରି ନିକଟରେ, ଅତି ନିକଟରେ ସେ ।

ଭଜନାର ହୃଦୟ ଆନ୍ଦୋଳିତ ହେଲା । ମନ ଚଞ୍ଚଳ ହୋଇ ପଡ଼ିଲା । ସେ ଶଯ୍ୟା ତ୍ୟାଗ କରି ଉଠିଲା । କାଳେ ମଣିଆଁ ଉଠିବ ସେଥି ନିମନ୍ତେ ସାବଧାନତାର ସହିତ ଦ୍ୱାର ଖୋଲିଲା । ତରବାରି ଖଣ୍ଡି ହାତରେ ଝୁଲାଇ ବାହାର ପାଖରୁ କବାଟ ଅଉଜାଇ କ'ଣ ଦେଖିଲା କେଜାଣି ପାଗଳପରି ଦ୍ରୁତଗତିରେ ଛୁଟିଗଲା ସମୁଦ୍ର କୂଳଆଡ଼େ ।

କେତୋଟି ବାଲିବନ୍ତ ପାର ହୋଇ ଦେଖିଲା ଗୋଟିଏ ଖାଲରେ ଜଣେ ମନୁଷ୍ୟର ମସ୍ତକହୀନ ଶରୀର, ସଦ୍ୟମୃତ, ତେଣୁ ରକ୍ତରେ ସ୍ଥାନଟି ରଂଜିତ ହୋଇଛି । ସେ ବିସ୍ମିତ ହୋଇ ଠିଆ ହେଲା, କିଏ ଏ' ମୃତ ବ୍ୟକ୍ତିଟି ?

ହଠାତ୍ ବଜ୍ରର ଅଟ୍ଟହାସ୍ୟରେ ଚନ୍ଦ୍ର ଲୁଚି ଗଲା । ଆଲୋକ କମିଗଲା । ପବନରେ ବାଲିକଣା ଉଡ଼ି ଆସି ଉଜ୍ଜନାର ନଗ୍ନ ଦେହରେ ଗୁଣ୍ଡି ଗୁଣ୍ଡି ଲାଗିଲା । ଉଜ୍ଜନା ଆଉ ଅଧିକ ସମୟ ଚିନ୍ତା ନ କରି ତରବାରି ହସ୍ତରେ ସମୁଦ୍ର କୂଳଆଡ଼େ ଧାଇଁଗଲା ।

ସେ ସମୁଦ୍ର କୂଳରେ ଦଣ୍ଡାୟମାନ ହୋଇ ଦେଖିଲା; ସମୁଦ୍ର ମଧ୍ୟରେ, କିଛି ଦୂରରେ ଗୋଟିଏ ବୋଇତରେ କୁଡ଼ୁକୁଡ଼ୁଆ ପୋକପରି କେତେ ଗୁଡ଼ାଏ ଆଲୋକ ଜଳୁଛି । ଭାବିଲା ନିକଟକୁ ଯିବ । ସେହି ଉଦ୍ଦେଶ୍ୟରେ ନିଜର ନୌକାଖଣ୍ଡିର ଅନ୍ୱେଷଣରେ କୂଳରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗଲା, ପାଇଲା ନାହିଁ । ବଡ଼ ଆଶ୍ଚର୍ଯ୍ୟର କଥା, ନୌକା ଗଲା କୁଆଡ଼େ ? ନେଲା କିଏ ? ତେବେ କ'ଣ ପହଁରି କରି ଯିବାକୁ ପଡ଼ିବ ? ଉଜ୍ଜନା ଭାବିଲା ନିଶ୍ଚୟ; ନୋହିଲେ ଏ ସମସ୍ତ ଘଟଣାର କୌଣସି କାରଣ ବୁଝାପଡ଼ିବ ନାହିଁ । ପୁନର୍ବାର ଭାବିଲା, ମୋର ଏ ସମସ୍ତ ଘଟଣାର କାରଣ ବୁଝି ଲାଭ ? ନିଶ୍ଚୟ ଲାଭ ଅଛି । ନୌକାଖଣ୍ଡି ଯେ ମୋର କିଏ ଚୋରାଇ ନେଲାଣି ।

ସମୁଦ୍ର ବକ୍ଷକୁ ଲମ୍ଫ ପ୍ରଦାନ କରିବାକୁ ପ୍ରସ୍ତୁତ ହେଉଥିବା ସମୟରେ ଶୁଣି ପାରିଲା, ଯେପରି କେତେଜଣ ଲୋକ ଅଦୂରରେ କଥାବାର୍ତ୍ତା ହେଉଛନ୍ତି । ସେ କାନ ଡେରି ଶୁଣିଲା, କିଏ ଜଣେ ବ୍ୟସ୍ତ ହୋଇ ପଚାରୁଛି । ଆଛା, ମାଲମତା ତ ହସ୍ତଗତ ହେଲା, ଏବେ ସ୍ତ୍ରୀ ଲୋକଟାକୁ ଖୋଜି ଲାଭ କ'ଣ ?

ମାଲମତା ଲୁଟ କରିବାକୁ ଆମକୁ ଆଦେଶ ଥିଲା । ସ୍ତ୍ରୀଲୋକ ସଙ୍ଗେ ଆମର କିଛି ସମ୍ପର୍କ ନାହିଁ ।

ସମ୍ପର୍କ ନାହିଁ କେମିତି । ତା ଦେହରେ ଯେତେ ଗହଣା ଅଛି, କେବଳ ସେତକର ମୂଲ୍ୟରେ ଆମ୍ଭେମାନେ ସାରା ଜୀବନ ଧନୀ ହୋଇ ପାରିବା । ତା'ର ସବାରି ଏବଂ ଲୋକବାକ ଗଲେ କୁଆଡ଼େ ?

ସେମାନଙ୍କ ମଧ୍ୟରୁ ଜଣେ ଦି'ଜଣ ହାଣ ଖାଇବାରୁ ବାକିସବୁ ମାଲମତା ଛାଡ଼ି ପଳାଇଛନ୍ତି । କୂଳରେ ଗୋଟାଏ ଡଙ୍ଗା କେଜାଣି କାହାର ବନ୍ଧା ହୋଇଥିଲା । ସେଇଥିରେ ସବୁ ବୋଝାଇ କରି ବୋଇତକୁ ପଠାଇ ଦେଇଛୁ । ତା ତରଫରୁ କେତେଜଣ ଲୋକ ଘୋଡ଼ା ଛୁଟାଇ କୁଆଡ଼େ ପଳାଇ ଗଲେଣି । ସେମାନଙ୍କୁ ଧରିବା ସହଜ ନୁହେଁ, ଆବଶ୍ୟକ ମଧ୍ୟ ନାହିଁ । ନୌକା ମାଲ ରଖି ଆଉ ଦୁଇଥର ଫେରି ଆସିଲାଣି । ଆମ ଭିତରୁ କେତେଜଣ ଚାଲିଗଲେଣି । ବାକି ରହିଛନ୍ତି ପନ୍ଦର ଜଣ । ଆମେ ଏଠି ଅଛୁଁ ସାତଜଣ । ବାକି ଆଠଜଣ କୁଆଡ଼େ ଗଲେ ? ଶୀଘ୍ର ସେମାନଙ୍କୁ ଡାକି ଆଣିବା ଦରକାର । ଡେରି ହେଲେ ବିପଦରେ ପଡ଼ିବାକୁ ହେବ ।,

ଏତିକି କହି ଜଣେ ଭେଷ୍ଟି ନାଦ କଲା ।

ସଙ୍ଗେ ସଙ୍ଗେ ଦୂରରୁ ପ୍ରତ୍ୟୁତ୍ତର ଆସିଲା—ଆଉ ଗୋଟିଏ ଭେଷ୍ଟିର ଶବ୍ଦ । ସମସ୍ତେ ସେହି ଶବ୍ଦକୁ ଲକ୍ଷ୍ୟକରି ବାଟଏ ବାଟଏ ଚାଲିଲେ । ଭଜନା କାଳ ବିଳମ୍ବ ନ କରି ସେମାନଙ୍କର ଅନୁସରଣ କଲା ।

କିଛି ଦୂର ଯାଇ ଭଜନା ଶୁଣିଲା, ଯେପରି ସେମାନଙ୍କ ମଧ୍ୟରୁ **କିଏ ଜଣେ** ଅତି ନିମ୍ନସ୍ୱରରେ ଅନ୍ୟଜଣକୁ କ'ଣ କହୁଛି; ମାତ୍ର କିଛି ବୁଝି ପାରିଲା **ନାହିଁ** । ସେମାନେ ଦୂରକୁ ଚାଲି ଯାଇଥିଲେ । ତା'ର କଥାରେ ଯେପରି **ଅନ୍ୟ** ଜଣେ କ୍ରୁଦ୍ଧ ହୋଇ ପାଟିକରି କହୁଛି, ଅଚ୍ଛା କଲ, ବେଶ୍ କଲ । ସେଥିରେ ତୁମର କ୍ଷତି କ'ଣ ହେଲା ଶୁଣେ ।

ଆଉଜଣକ ମଧ୍ୟ ଟିକିଏ ଜୋର୍‌ରେ କହିଲା, ବାଜେ କଥାରେ ନିଜ ଭିତରେ କଳହ କରି ବାଡ଼ଆ ପିଠା ହେବାର ଦର୍କାର ନାହିଁ । ମୋର ପଚରିବାର ଏତିକି ଅଛି, ଲାଭ କ'ଣ ହେଲା ଶୁଣେ ? ମା ପାଖରୁ ଛୁଆଟାକୁ ଟାଣିଆଣି ବୃଥାଟାରେ ମାରି ପକାଇଲ ନା । ସତରେ ମନଟା ଭାରି ଖରାପ ହେଉଛି । ଛୁଆ, ବୁଢ଼ା ଏଗୁଡ଼ାଙ୍କୁ ମାରିଲେ ଲାଭ କ'ଣ ? ମାଛି ମାରିଲେ ହାତ ଗନ୍ଧାଇଲା ପରି ହେଲା ଏ କଥା, ଛି ।

କିଏ ଜଣେ ଉଚ୍ଚହାସ୍ୟ କରି କହିଲା, ଯଦି ତୋର ମନରେ କଷ୍ଟ ହେଉଛି, ତୁ ଏଇଠି ବସି କାନ୍ଦୁଥା । ଆରେ ଓଲୁ, ଆମେ କ'ଣ ବିନା ଲାଭରେ ତାକୁ ମାରୁଥିଲୁ ନା କ'ଣ ? ଆମକୁ ଏମିତି ଭୂତ ଲାଗିଥିଲା ? ଏଡ଼ିକି ଟିକେ ପିଲା ହେଲେ କ'ଣ ହେବ ତା ଦେହରେ ବହୁମୂଲ୍ୟର ଅଳଙ୍କାର ପୂର୍ଣ୍ଣ ହୋଇଥିଲା । ସବୁ ମାମୁଁ ଘରର, ବୁଝିଲୁ ତ । ସେହି ଅଳଙ୍କାର ଲୋଭରେ ତା ପିଠିରେ ତରବାରିଟା ଭୁସି ଦେଇଛି । ଗୋଡ଼ ହାତରୁ ଅଳଙ୍କାର ଫିଟାଇ ଆଣିଛୁ, କିନ୍ତୁ ନାକ କାନରୁ ଖୋଲି ପାରିଲି ନାହିଁ, ଟାଣି ଆଣିଛି । ଆଣିଲାବେଳେ ସେ ଟିକିଏ ଯେପରି ଚମକି ପଡ଼ିଲା ପରି ବୋଧ ହେଲା । ଏଥିରୁ ଜଣା ପଡ଼ୁଛି, ସେ ସେତେବେଳଯାଏ ବଞ୍ଚିଥିଲା, ମାତ୍ର ବର୍ତ୍ତମାନ ଖତମ ହେଲାଣି । ଅଚ୍ଛା କହତ ଭଲା ଏଥିରେ ମୁଁ କି ଅନ୍ୟାୟ କାର୍ଯ୍ୟଟା କରି ପକାଇଛି ?

ତାକୁ ନ ମାରି ମଧ୍ୟ ଏତିକି କାମ କରିଯାଇ ପାରିଥାନ୍ତା ଅକ୍ଳେଶରେ ।

କଦାପି ନୁହେଁ । ସେ ନିଶ୍ଚୟ ବାଧା ଦେଇଥାନ୍ତା । ବାଧା ଦେଇ ନ ଥିଲେ ଅନ୍ତତଃ, ବଡ଼ପାଟି କରି କାନ୍ଦିଥାନ୍ତା ତ । ଅତଏବ ସିଧା ବାଟରେ ନ ଯାଇ ବଙ୍କା ରାସ୍ତାକୁ ଯିବୁ କାହିଁକି, ଏତେ ଗୋଳମାଳରେ ପଡ଼ିବୁ କାହିଁକି ? ଛାଡ଼ ସେ କଥା, ଭେଷ୍ଟି ବଜା, ସେମାନେ ସବୁ କେଉଁଠି ରହିଲେ ଜାଣିବା ।

ଭେରୀ ଗର୍ଜ୍ଜନ କରି ଉଠିଲା । ସଙ୍ଗେ ସଙ୍ଗେ ନିକଟରୁ ଆଉ ଗୋଟିଏ ଭେରୀ ପ୍ରତ୍ୟୁତ୍ତର ଦେଲା । ସେମାନେ ସେହିଆଡ଼େ ଚାଲିଲେ ।

ଭଜନା ପଛରେ ପଡ଼ିଗଲା । ତାକୁ ଜଣାଗଲା ଯେପରି ତା'ର ଅତି ନିକଟରେ କେତେଜଣ ଲୋକ ଗୋଟିଏ ବାଲିବନ୍ତର ଅନ୍ୟପାଖେ ଲୁଚି ରହିଛନ୍ତି । ଏମାନଙ୍କୁ ଆସିବାର ଦେଖି ସେମାନଙ୍କର କଥୋପକଥନ ବନ୍ଦ କରିଛନ୍ତି । ଆଗରେ ଚାଲିଥିବା ଲୋକମାନଙ୍କୁ ଆଖି ଆଗରେ ରଖି କାନପାରି ଟିକିଏ ଅପେକ୍ଷା କଲା । କିଛିକ୍ଷଣ ପରେ କିଏ ଜଣେ ରମଣୀ କଣ୍ଠରେ କ'ଣ କହିବାକୁ ବସିଥିଲା, ଅନ୍ୟ କିଏ ଜଣେ ବାଧାଦେଇ କହିଲା, ବର୍ତ୍ତମାନ ପାଟି କରନ୍ତୁ ନାହିଁ । ଦୟାକରି ସ୍ଥିର ହୁଅନ୍ତୁ । ଦେଖନ୍ତୁ, ଆଗରେ ଶତ୍ରୁ । କନ୍ଦାକଟା କଲେ, ସେମାନେ ଏଠାକୁ ଆସି ଆମକୁ ଧରି ନେବେ କିମ୍ବା ମାରି ପକାଇବେ । ଆପଣଙ୍କର ମଧ୍ୟ ଅନିଷ୍ଟ ହେବ ।

ବାଧା ଦେଇ ରମଣୀ ରୁଦ୍ଧା ହୋଇ କହିଲେ, ଆଉ ଅଧିକ ଅନିଷ୍ଟ ହୋଇପାରେ କ'ଣ କାପୁରୁଷ ? ମୋର ସ୍ନେହର ପିଲାଟିକୁ ସେମାନେ ଧରି ନେଇଛନ୍ତି; ପାପିଷ୍ଠେ ଧନ ଲୋଭରେ ହୁଏ ତ ତାକୁ ମାରି ପକାଇଥିବେ । ତାର ଯଦି ଅମଙ୍ଗଳ ହୋଇଛି, ମୋର ମଙ୍ଗଳରେ ଦରକାର ନାହିଁ । ଯାଅ, ଶୀଘ୍ର ଯାଅ, ବୁଝି ଆସିବ, ଖୋଜିଆଣିବ, ସେ କେଉଁଠି ଅଛି ।

ଭଜନା ବୁଝିଲା, ଏ ରମଣୀକୁ ସେମାନେ ଖୋଜି ଖୋଜି ଯାଉଛନ୍ତି । ଯଦି କୌଣସି ପ୍ରକାରେ ଜାଣି ପାରନ୍ତି ତେବେ ସର୍ବନାଶ । ଏମାନଙ୍କୁ ଜଣାଇ ଦେବା ଦର୍କାର ଯେ ଯେଉଁ ବାଳକାକୁ ସେମାନେ ଖୋଜୁଛନ୍ତି ସେ ମୃତ । ତା ବିଷୟରେ ବୃଥାଠାରେ ତର୍କ ବିତର୍କ ନ କରି ପଳାୟନ କରିବା ଉତ୍ତମ ।

ଭଜନା ଉଦ୍‌ବେଗ୍ନିତାପୂର୍ଣ୍ଣ ଆଗ୍ରହର ସହିତ ଆହୁରି ନିକଟକୁ ଯାଇ କାନ ପାରି ବୁଝିଲା—ସେମାନଙ୍କ ମଧ୍ୟରେ ଯେପରି ମହା ଆନ୍ଦୋଳନ ଲାଗିଛି । ବାଳକାକୁ ଖୋଜି ଯିବାକୁ କେହି ମଙ୍ଗୁ ନାହାନ୍ତି । ଜୀବନର ଭୟରେ ଶେଷରେ ରମଣୀ ଦୁଃଖିତା ହୋଇ ଉପସ୍ଥିତ ଲୋକମାନଙ୍କୁ ବହୁ ପ୍ରକାର ତିରସ୍କାର କରି କହୁଛନ୍ତି, ଯଦି ତୁମ୍ଭେମାନେ ଏଡ଼େ କାପୁରୁଷ, ମୋ ସଙ୍ଗରେ ଆସିଲ କାହିଁକି ? ଆସିବା ପୂର୍ବରୁ ବାପାଙ୍କ ନିକଟରେ କହି ଆସିଥିଲ ମୋତେ ତାମ୍ରଲିପ୍ତରେ ଶୁଭରେ ପହଞ୍ଚାଇ ଦେବ । ଏହି କ'ଣ ତମର ପ୍ରତିଜ୍ଞା ? ରାସ୍ତାରେ କେତେଜଣ ଡକାୟତଙ୍କୁ ଡରି ଜୀବନ ଭୟରେ ପଳାଇ ଆସିଛ, ମୋର ପିଲାଟିକୁ ସେମାନଙ୍କର ଦୟାଧୀନ କରି । ଏହି କ'ଣ ତମର ପ୍ରତିଜ୍ଞା ପାଳନ । ଛି, ଛି, ମନୁଷ୍ୟ ହୋଇ କୁକୁରଠାରୁ ହୀନ ହେଲ ପ୍ରଭୁ ଭକ୍ତିରେ ? ବାପା କହିଥିଲେ ମୋ ସଙ୍ଗେ ଚାରିଜଣ ଅଶ୍ୱାରୋହୀ ଏବଂ ସୁବାଶିବାହକଙ୍କୁ ଛାଡ଼ି ରକ୍ଷୀ ପନ୍ଦର ଜଣ ଆସୁଛନ୍ତି । ଏବେ ତମର ଘୋଡ଼ାସବାର ଗଲେ କୁଆଡ଼େ ? ରକ୍ଷୀ ଗଲେ କୁଆଡ଼େ ? ବାକି ରହିଛ ଆଠଜଣ

ସବାଶ୍ରୀବାହକ । କଥା ମାନ ବର୍ତ୍ତିମାନ ଯାଅ, ସେମାନଙ୍କ ହାତରୁ ପିଲାଟିକୁ ମୋର ଉଦ୍ଧାର କର, ଯଦ ଭଲ ଗୃହଁ ।

କେହ ଯିବାକୁ ମଙ୍ଗିଲେ ନାହିଁ । ସମସ୍ତେ ମୁହଁ ବୁଲାଇ ଗୋଟି ଗୋଟି କର ବାରଣ କଲେ ।

ତେବେ, କେହ ଯିବ ନାହିଁ ? ହଉ ନ ଯାଅ, ମୁଁ ନଜେ ଯାଉଛୁ ।

ଭଜନା ଭାବଲା ଯଦ ବର୍ତ୍ତିମାନ ମୁଁ ଏମାନଙ୍କର ସହାୟ ନ ହୁଏ, ରମଣୀ ହୁଏ ତ ଏକାକୀ ତାର ମୃତା ବାଳକାର ଅନ୍ବେଷଣରେ ବାହାର ପଡ଼ିବ । ଶତ୍ରୁ ପକ୍ଷର ଲୋକେ ବହୁଦୂରରେ ନାହାନ୍ତି, ନକଟରେ ସେମାନେ ରମଣୀକୁ ଖୋଜୁଛନ୍ତି, ହୁଏତ ଏ ଧରାପଡ଼ି ଯାଇପାରେ । ଥରେ ଧରାପଡ଼ିଗଲେ ଆଉ ରକ୍ଷା ନାହିଁ । ଉଦ୍ଧାରର ସମସ୍ତ ପଥ ରୁଦ୍ଧ ହୋଇଯିବ । ରମଣୀର ଜୀବନର ମଧ୍ୟ ଭୟ ରହିବ । ବର୍ତ୍ତିମାନ ମୋର କର୍ତ୍ତିବ୍ୟ ଏହାର ଦୁଃସାହସିକ କାର୍ଯ୍ୟରେ ବାଧାଦେବା । ଯଦ ତାର ଦୁର୍ବଳ ମାତୃ ହୃଦୟ ବାଧା ନ ମାନେ ତେବେ ବଳାତ୍କାର କର କାର୍ଯ୍ୟରୁ ରହିତ କରାଇବା ।

ଏହିପର ଚନ୍ତା କର ଭଜନା ହଠାତ୍ ବାଲବନ୍ତର ଅନ୍ୟପାର୍ଶ୍ୱରେ ପହଞ୍ଚି ଉପସ୍ଥିତ ଲୋକଙ୍କୁ ଅବାକ୍ କର ପକାଇଲା । ବାହକମାନେ ଅମଙ୍ଗଳର ଧୂମକେତୁ ଉପସ୍ଥିତ ବଗୃର କର ଚମକ ପଡ଼ିଲେ ! ନଜ ନଜର ଜୀବନ ରକ୍ଷା ନମନ୍ତେ ପଳାଇବାକୁ ଉଦ୍ୟତ ହେଲେ, କନ୍ତୁ, ରମଣୀର ପୂର୍ବ ପର ସବାଶ୍ରୀକୁ ଆଉକ ନର୍ଭୟ ଚତ୍ତରେ ଠିଆ ହୋଇଛନ୍ତି । ସେ ବ୍ୟାଘ୍ର ପର ଗର୍ଜନ କର ପଗୃରଲେ, ତୁ କିଏ ?

ଭୟ ନାହିଁ ମା, ଭୟ ନାହିଁ ! ମୁଁ ଶତ୍ରୁପକ୍ଷର କେହ ନୁହେଁ ।

ତେବେ ତୁ ଆମ ପକ୍ଷର ଲୋକ ? ଅଉମାନେ କାହାନ୍ତି ? ମୋର ସୁଶୀଳା କାହିଁ ? ତା'ର ବାହକମାନେ ଗଲେ କୁଆଡ଼େ ? ଶୀଘ୍ର କହ ।

ମୁଁ ଆପଣଙ୍କ ପକ୍ଷର କେହ ନୁହେଁ ।

ତେବେ ନଶ୍ଚୟ ଶତ୍ରୁପକ୍ଷର । ବାହକଗଣ ଏହାକୁ ବନ୍ଦୀକର, ନୋହିଲେ ସର୍ବନାଶ । ଏ ଜଣେ ଗୁପ୍ତଚର । ଏହାରଠାରୁ ମୋର ସୁଶୀଳା ଖବର ବଳାତ୍କାର କର ବାହାର କରିବାକୁ ପଡ଼ିବ । ଛାଡ଼ ନା, ଶୀଘ୍ର ବାନ୍ଧ, ଶୀଘ୍ର ।

ମୁଁ ତମ ସୁଶୀଳାର ସମସ୍ତ ଖବର ଜାଣେ, କିନ୍ତୁ ମୋତେ ଶତ୍ରୁପକ୍ଷର ବୋଲି ଭାବିବ ନାହିଁ । ମୁଁ ଏ ପକ୍ଷର ନୁହେଁ କି ସେ ପକ୍ଷର ନୁହେଁ, ମୁଁ ଜଣେ ତୃତୀୟ ବ୍ୟକ୍ତି । ମୋଠାରୁ କୌଣସି ଭୟରେ ଆଶଙ୍କା କରିବ ନାହିଁ, ବରଂ ମୁଁ ମଙ୍ଗଳାକାଙ୍କ୍ଷୀ ।

ତୁମେ ଯିଏ ହୁଅ, ଦୟାକରି ମୋତେ କହ ମୋ ସୁଶୀଳା କାହିଁ ? ମୋ ପ୍ରାଣର କନ୍ୟାକୁ ସେମାନେ କେଉଁଠି ବନ୍ଦୀ କରି ରଖିଛନ୍ତି ? କହ ଯଦି ଜାଣ, ଶୀଘ୍ର କହ ଦୟାକରି ।

ତାକୁ ଡକାଇତମାନେ ମାରି ପକାଇଛନ୍ତି । ବର୍ତ୍ତମାନ ସବାରି ଭିତରେ ବସ । ନିକଟରେ ଗୋଟିଏ ଗ୍ରାମ ଅଛି, ବାହକମାନେ ତୁମକୁ ସେହିଠାକୁ ନେଇ ଯାଆନ୍ତୁ । ମୁଁ ବାଟ ଦେଖାଇ ଦେଉଛି । ଡେରି କଲେ ବିପଦରେ ପଡ଼ିବ, ଜାଣିଥାଅ ।

ଡକାଏତମାନେ ମାରି ପକାଇଛନ୍ତି; ତମୁକୁ କିଏ କହିଲା ? ମିଛକଥା, ଯେଉଁ ଶତ୍ରୁ ହେଉ ପଛେ ଦେଖିଲେ ନିଶ୍ଚୟ ମନରେ ଦୟା ଆସିବ, ମାରିବାକୁ ହାତ ଚଳିବ ନାହିଁ ।

ଯେଉଁମାନେ ତାକୁ ମାରିଛନ୍ତି, ମୁଁ ସେମାନଙ୍କ ମୁହଁରୁ ଶୁଣିଛି । ସେମାନେ ନିଜ ନିଜ ମଧ୍ୟରେ ବର୍ତ୍ତମାନ କଥାବାର୍ତ୍ତା ହୋଇ ଯାଉଥିଲେ, ଲୁଚିକରି ଶୁଣିଲି । ତାକୁ ମାରି ତା ଦେହରୁ ଅଳଙ୍କାରସବୁ କାଢି ନେଇଛନ୍ତି । ଅଳଙ୍କାର ହିଁ ତା ଜୀବନର କାଳ ହେଲା । ବର୍ତ୍ତମାନ ମୁଁ ଏହି ବାଲିଗଦାର ଆରପାଖେ ଲୁଚି ତମମାନଙ୍କର କଥାବାର୍ତ୍ତା ଶୁଣୁଥିଲି । ମୁଁ ଏକାକୀ ଏହି ବାଲୁକା ପ୍ରାନ୍ତରରେ ବାସ କରେ । ରାତିରେ ନିଦ୍ରିତ ଥିବା ସମୟରେ ଘୋଡ଼ାର ଖୁରା ଶବ୍ଦ ଓ ଦ୍ରେଷା ନାଦ ଶୁଣି ମୁଁ ଦେଖିବାକୁ ଚାଲି ଆସିଲି । ତମରି ଶତ୍ରୁପକ୍ଷର ଲୋକ, ଜାହାଜରୁ ଓହ୍ଲାଇ ଡକାଏତି କରିବାକୁ ଆସିଛନ୍ତି । ତେଣୁ ଯେତେଦୂର ଅନୁମାନ କରାଯାଇ ପାରେ, ସେମାନଙ୍କର ଘୋଡ଼ା ନାହିଁ । ଘୋଡ଼ା ଯଦି ତୁମର ହୋଇଥାନ୍ତା, ଆଶା କରେ ସେମାନେ ନିକଟରେ ଥିବା ଗ୍ରାମ ସୁନାହାଟରେ ଏତେବେଳକୁ ପହଞ୍ଚି ସାରିବେଣି । ସେମାନଙ୍କ ନିମନ୍ତେ ଚିନ୍ତା କରିବ—

ଚିନ୍ତା ସେମାନଙ୍କ ନିମନ୍ତେ ଆଦୌ ନାହିଁ । ସେମାନେ ବଞ୍ଚନ୍ତୁ ଅବା ମରନ୍ତୁ, ଆମର ସେଥିରେ ଯାଏ ଆସେ କେତେ ? ଆଜିକି ଚାରିଦିନ ହେଲା, ଆମେ ଗୃହରୁ ଛାଡ଼ି ଆସିଛୁଁ । ଚିଲିକାରୁ ଚାନ୍ଦିନୀ ଅସି ସେଠାରେ ଆମେ ଦୁଇଦିନ ରହିଥିଲୁଁ । ସାହେବ ଆମକୁ ଏ ବାଟେ ଆସିବାକୁ ମନାକରି କହୁଥିଲେ, ବୋଇତରେ ସମୁଦ୍ର ବାଟେ ତାମ୍ରଲିପ୍ତ ଯାଅ, କିନ୍ତୁ ସାଆନ୍ତାଣୀ କହିଲେ, ସେ ସମୁଦ୍ରରେ ଯାଇ

ଆସି ବଡ଼ ବିରକ୍ତ ହୋଇ ପଡ଼ିଲେଣି, ଏଥର ସେ ସ୍ଥଳବାଟେ ଯିବେ । ସାଧବ ସେହି ଅନୁଯାୟୀ ସମସ୍ତ ଅୟୋଜନ କରିଦେଲେ । ସବୁଦିନେ ଦିନବେଳା ଯାଉ, ରାତିରେ କୌଣସି ଗ୍ରାମରେ ରହିଯାଉଁ । କିନ୍ତୁ ଆଜି ଶୁଣିଲୁଁ, ତାମ୍ରଲିପ୍ତ ବେଶୀ ଦୂରରେ ନାହିଁ । ଚାଲି ଚାଲି କ୍ଲାନ୍ତ ହୋଇଥିଲୁ । ଭାବିଲୁ ରାତାରାତି ଚାଲିଲେ, ସକାଳକୁ ତାମ୍ରଲିପ୍ତରେ ପହଞ୍ଚି ଯିବୁଁ । ଏତେ ନଈନାଳ ଡେଇଁ ଆସିଲୁ, ଏଇଠି ଆମକୁ ବିପଦ ପଡ଼ିଲା । ଘୋଡ଼ା ନେଇ ସେମାନେ କୁଆଡ଼େ ଚାଲିଗଲେ । ଆଉ ଯେତେକ, ସେମାନେ ଭୟରେ ପଳାଇଲେ । ଏଥିରେ ଜାଗା ହେବ ନାହିଁ ବୋଲି ଆଗପଛ କରି ଦୁଇଟି ସବାରୀ ଚାଲିଥିଲା । ପଛ ସବାରୀକୁ ଡକାଇତମାନେ ଧରି ନେଇଗଲେ । ଆମେ ସବୁ ଜୀବନ ବିକଳରେ ଏ ସବାରୀ ନେଇ ପଳାଇ ଆସିଲୁ । ନିରୋଳା ଗାଡ଼ୁଆ ସ୍ଥାନ ଦେଖି ଏଠି ଲୁଚିଛୁ । ଶ୍ରେଷ୍ଠ ସାଆନ୍ତାଣୀଙ୍କର କୌଣସି ଖବର ଜାଣି ପାରିଲୁ ନାହିଁ । ତାମ୍ରଲିପ୍ତ କେଉଁଠି ? କୁଆଡ଼େ ଯିବୁଁ ?

ତୁମେମାନେ ଭାବିଛ, ତାମ୍ରଲିପ୍ତ ଅତି ନିକଟରେ ? ତା ନୁହେ, ଶୀଘ୍ର ସାଆନ୍ତାଣୀଙ୍କୁ ନେଇ ସୁନାହାଟ ଯାଅ । ସେମାନେ ବାଟ ବତାଇ ଦେବେ, ଅହୁରି ଦୁଇ ଦିନର ବାଟ ବାକି ଅଛି !

ସମସ୍ତଙ୍କର ଅନୁରୋଧ ବ୍ୟର୍ଥ ହେଲା । ରମଣୀ କାହାରି କଥା ମାନିଲେ ନାହିଁ । ସେ ଯିବାକୁ ଅନିଚ୍ଛୁକା ହେଲେ । ପ୍ରକୃତରେ କନ୍ୟାକୁ ପଛରେ ସନ୍ଦିହାନ ଅବସ୍ଥାରେ ବିପକ୍ଷ ଦଳର ଲୋକଙ୍କ ହାତରେ ପକାଇ କେଉଁ ଜନନୀ ଚାଲିଯିବାକୁ ଇଚ୍ଛା କରେ ନିଜର ଜୀବନ ବଞ୍ଚାଇବାକୁ ? ସନ୍ତାନ ମୃତ, କୌଣସି ରମଣୀ ଏହା ସହଜରେ ବିଶ୍ୱାସ କରିବାକୁ ଅମଙ୍ଗ ।

ରମଣୀ ଏକାକିନୀ କନ୍ୟାର ଅନ୍ୱେଷଣରେ ଚାଲିଲେ । ଭିଜନା ଅନ୍ୟ ଉପାୟ ନ ଦେଖି ନିକଟକୁ ଯାଇ କହିଲା, ମା, ମୁଁ ଶପଥ ମାନେ ନାହିଁ । ଯଦି ମାନୁଥାନ୍ତି, ଆଜି ଯେଉଁ ଶପଥ ଦିଅନ୍ତ, ତାହା ପକାଇ ମୁଁ କହିବି, ଆପଣଙ୍କର କନ୍ୟା ମୃତା । ମୁଁ ମୋ ପାଇଁ କହି ନାହିଁ, ଆପଣଙ୍କର ମଙ୍ଗଳ ନିମନ୍ତେ କହୁଛି; ଜାଣି ଜାଣି ବୃଥା ବିପଦକୁ ବରଣ କରିବାର ଇଚ୍ଛା ଯଦି ଥାଏ, ତେବେ ଯାଅ ।

ରମଣୀ ଦଣ୍ଡାୟମାନ ହେଲେ, ଉତ୍ତର ଦେଇ ପାରିଲେ ନାହିଁ । ତାଙ୍କର କଣ୍ଠ ରୁଦ୍ଧହୋଇ ଆସିଲା । ଭାବିଲେ, ସତରେ ତେବେ କଣ ସୁଶୀଳା ଆଉ ଏ ଜଗତରେ ନାହିଁ ? ମୋର ସୁନାର ପ୍ରତିମା ସୁଶୀଳାକୁ ମୋ କୋଳରୁ ବଳାତ୍କାର କରି ଯେଉଁ ପାଷଣ୍ଡମାନେ ଚିରଦିନ ପାଇଁ ଛଡ଼ାଇ ନେଇଛନ୍ତି ଲିଙ୍ଗରାଜ ମହାପ୍ରଭୁ ତାଙ୍କର ସର୍ବନାଶ କରିବେ । ସୁଶୀଳା, ତୁ ଆଉ ନାହୁଁ ମା ? ସତେ କଣ ମୋତେ ଛାଡ଼ି ତୁ ଚାଲିଗଲୁ ? କି ନିର୍ବୋଧ ମୁଁ, ବାପାଙ୍କର କଥା ମାନି ଯଦି ମୁଁ ସମୁଦ୍ର ବାଟେ ତାମ୍ରଲିପ୍ତ ଯାଇଥାନ୍ତି, ପହଞ୍ଚି ସାରନ୍ତିଣି । ହେ ଶିବ, କି ଦୁର୍ବୁଦ୍ଧି ମୋତେ

ଘୋଟିଲା ? ପିତୃ ଆଜ୍ଞା ପାଳନ ନ କରିବାର ଦଣ୍ଡ କ'ଣ ଏଡ଼େ ପ୍ରଚଣ୍ଡ ? ମୁଁ ମୋର ସୁନାରି ପ୍ରତିମା ଏକମାତ୍ର ସ୍ନେହର ସନ୍ତାନକୁ ଛାଡ଼ି ଅନ୍ଧ ହୋଇ ଯିବି କୁଆଡ଼େ ? ସେ ଯେତେବେଳେ ତାଙ୍କର ହୃଦୟର ନିଧିକୁ କୋଳକୁ ଟାଣିନେବାକୁ ଆସିବେ, ମୁଁ କହିବି କ'ଣ ? ଦେବି କାହାକୁ ? ମୋର ଦୋଷ କ୍ଷମନ୍ତେ ମରେ ତ ସେ କ୍ଷମା କରିବେ ନାହିଁ—ଏପରି ଭାବୁ ଭାବୁ ରମଣୀଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହେଲା । ଭଜନା ସହାନୁଭୂତି ଦେଖାଇ ପ୍ରଶ୍ନ କଲା କ'ଣ ଚିନ୍ତା କରୁଛ ମା ? ଏହି ଦେଖ ଦୂରରୁ ଭେରୀର ଭୈରବ ନାଦ ଶୁଣା ଯାଉଛି । ବୋଧହୁଏ ସେମାନେ ଏହିଆଡ଼େ ଆସୁଛନ୍ତି । ମୁଁ ଜାଣେ, ଯେ ଗୃହଲଗ୍ନ, ତା ବିଷୟରେ ଆଉ ଚିନ୍ତା କରିବା ଆବଶ୍ୟକ ନୁହେ । ତହିଁରେ ନିଜର କ୍ଷତି ଛଡ଼ା ଲାଭ ନାହିଁ । ନିଜର ଜୀବନ କିପରି ରକ୍ଷା କରିବାକୁ ହେବ ତାହାର ଉପାୟ କରନ୍ତୁ ।

ରମଣୀ ଦୀର୍ଘନିଃଶ୍ୱାସ ତ୍ୟାଗକରି କହିଲେ, ମୋ ସୁଶୀଳାର ଜୀବନ ଅପେକ୍ଷା ମୋ ଜୀବନର ମୂଲ୍ୟ ଅଧିକ ନୁହେ । ଆସନ୍ତୁ ସେମାନେ । ଏହି ବାଟ ଦେଇ ଯିବା ସମୟରେ ସେମାନଙ୍କର ଗୋଡ଼ତଳେ ପଡ଼ି ମୋର ସୁଶୀଳାକୁ ମାଗିବି ?

ଭଜନା ବିନୀତ ଭାବରେ କହିଲା—ମା, ଆପଣ ପାଗଳ ହେଲେଣି । ବିପକ୍ଷ ଦଳର ଲୋକଙ୍କ ପାଦତଳେ ପଡ଼ିଲେ, ସେମାନେ କନ୍ୟା ଦେବା ପରିବର୍ତ୍ତେ ବରଂ ଆନନ୍ଦିତ ହେବେ । କାରଣ ବିନା ଜାଲ, ବିନା ଫାଶରେ ଶିକାର ଧରା ପଡ଼ିବ । ସେମାନେ ଆପଣଙ୍କୁ ନିଶ୍ଚୟ ବନ୍ଦୀ କରିବେ । ଦୁର୍ଦ୍ଦଣ୍ଡ ରାକ୍ଷସ ପ୍ରକୃତିର ଲୋକଙ୍କର କଠିନ ହୃଦୟ କଦାପି ବିଗଳିତ ହୁଏ ନାହିଁ । ବୃଥା ପାଗଳିନୀ ପରି ନିଜର ଅମୂଲ୍ୟ ଜୀବନକୁ ବିପଦାପନ୍ନ କରିବେ କାହିଁକି ? ମୁଁ କଣ ମିଛଟାରେ ଆପଣଙ୍କୁ ଭୁଲାଇ କହୁଛି ? ଆଉ ସମୟ ବିଳମ୍ବ କରିବାର ପ୍ରୟୋଜନ ନାହିଁ । ଆସନ୍ତୁ ······

ମୁଁ ତମର କଥାରେ ଅବିଶ୍ୱାସ କରୁ ନାହିଁ । ମୋର କହିବାର ଏତିକି, କାଳେ ସେମାନେ ମିଛରେ କହିଥିବେ ।

ମିଛରେ କାହାକୁ କହିବେ ? ସେମାନେ ତ ଆଉ ମୋତେ କହି ନ ଥିଲେ । ତାଙ୍କର ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହେଉଥିବା ଯାହା ମୁଁ ଶୁଣିଛି ।

କିଛିକାଳ ଅପେକ୍ଷା କରି ଗୃହଆଡ଼କୁ ଅନାଇ ଭଜନା ପୁଣି କହିଲା ଏହି ଦେଖ, ସେମାନେ ଆସୁଛନ୍ତି । ବୋଧହୁଏ ଏହି ବାଟଦେଇ ସମୁଦ୍ରକୁ ଯିବେ । ଆଉ ଡେରି କର ନା ।

ହେଉ ତେବେ ଟିକିଏ ରହ । ମୁଁ ମୋର ସୁଶୀଳାକୁ ଶେଷଥର ନିମନ୍ତେ ଚୁମ୍ବନ କରି ଆସେ । ଏହା କହି ରମଣୀ ଆଗକୁ ଯିବାକୁ ଉଦ୍ୟତ ହେଲେ; କିନ୍ତୁ ଭଜନା ବାଧାଦେଇ କହିଲା, ତାକୁ ପାରିବେ ନାହିଁ ।

ରମଣୀର ଇଚ୍ଛା ବିରୁଦ୍ଧରେ ଭଜନା ତାଙ୍କୁ ସବାରିରେ ବସାଇ ବାହକମାନଙ୍କୁ ବାଗ ଦେଖାଇ କହିଲା, ଶୀଘ୍ର ପଳାଇ ଯାଅ । ଏଇବାଟ ଦେଇଗଲେ ସୁନାହାଟ ଗ୍ରାମ ପାଇବ ।

ସବାରି ନେଇ ବାହକମାନେ ଚାଲିଗଲେ । ଭଜନା ସେହିଠାରେ ଠିଆ ହୋଇ ଆସୁଥିବା ଦସ୍ୟୁମାନଙ୍କ ଆଡ଼କୁ ଚାହିଁ ରହିଲା ଏବଂ ଚିନ୍ତା କଲା କ'ଣ କରିବ ?

ସଙ୍ଗେ ସଙ୍ଗେ ନିକଟରୁ ଭେରି ନାଦ ଶୁଣାଗଲା ।

ପ୍ରକାଣ୍ଡ ବୋଇତର ତଳଦେଶରେ କ୍ଲାନ୍ତ ନାବିକମାନେ ଯେ ଯେଉଁଠି ପଡ଼ି ଯାଇଛନ୍ତି । ଆଗ ମଙ୍ଗ ନିକଟରେ କାଠ ତିଆରି କୋଠରିଗୁଡ଼ିକର ଦ୍ୱାର ବନ୍ଦ । ବୋଧହୁଏ ଭିତରୁ ପଛମଙ୍ଗ ପାଖ ଘରଗୁଡ଼ିକ ସବୁ ମାଲମତାରେ ପୂର୍ଣ୍ଣ । ପଛମଙ୍ଗ କୋଠରି ମଧ୍ୟରୁ ଗୋଟିକରେ ଜଣେ ରମଣୀ ବହୁଦିନରୁ ବାନ୍ଦୀ ରହିଥିଲେ । ଆଜି ଆଉ ଜଣେ ନୂତନ ବନ୍ଦୀ ସେ କୋଠରିରେ ରଖା ହୋଇଛି । କୋଠରିର ବାହାର ପାଖ ଜଞ୍ଜିର ବନ୍ଦ, ମାତ୍ର ତାଲା ପଡ଼ି ନାହିଁ । ବୋଧହୁଏ ନାବିକମାନେ ରାତିର ପରିଶ୍ରମରେ କ୍ଲାନ୍ତ ହୋଇ ପଡ଼ି ଯାଇଛନ୍ତି; ତାଲା ବନ୍ଦ କରିବାକୁ ସମୟ ପାଇ ନାହାନ୍ତି ।

ବନ୍ଦୀ ବନ୍ଦୀର ଦୁରବସ୍ଥା ଦେଖି ପ୍ରଥମେ ବଡ଼ ଦୁଃଖିତ ହୋଇଥିଲା, ସହାନୁଭୂତି ଦେଖାଇ କେତେ ଆଶା ଦେଇଥିଲା ଉଦ୍ଧାରର । କିନ୍ତୁ ବନ୍ଦୀ—ତାର ମନରେ ଦୁଃଖର ଚିହ୍ନ ନାହିଁ । ବନ୍ଦୀର ବାକ୍ୟରେ ଏକଭାବରେ ଥାଇ ସେ କହିଲା, ଦୁଇବର୍ଷ ହେଲା ମୁଁ ଏହି କୋଠରିରେ ବନ୍ଦୀ ରହି ମୋତେ ଏ ସ୍ଥାନ ଅରେଇ ଯାଇଛି । ତେଣୁ ଆଜି ଆଉ ଦୁଃଖ ବା କଷ୍ଟ ମୁଁ କିଛି ଜାଣିପାରୁ ନାହିଁ । ଏହିପରି ଅନେକ ସମୟରେ ତମପରି ଜଣେ ଜଣେ ବନ୍ଦୀ ଆସି ଏ କୋଠରିରେ ରହିଥାନ୍ତି । ସେମାନେ ମୋର ଅଭ୍ୟସ୍ତ ଅବସ୍ଥା ଦେଖି ସହାନୁଭୂତି ଦେଖାଇ ଥାନ୍ତି, କପଟ ମୋତେ ମୁକ୍ତ କରିବେ ଏବଂ ନିଜେ ମୁକ୍ତ ହେବେ । ଉପାୟ ଚିନ୍ତା

କରି ପାରନ୍ତୁ ନ ପାରନ୍ତୁ ମହୁବନ୍ଦ ପ୍ରତୀକ୍ଷା କରି ପଡ଼ନ୍ତି । କିନ୍ତୁ ଦିନେ ଅକସ୍ମାତ ଏ ଘରୁ ତାଙ୍କୁ ଚାଲିଯିବାକୁ ହୁଏ । ସେମାନେ କାହିଁକି ବନ୍ଦୀହୋଇ ଏ ଗୃହକୁ ଆସନ୍ତି, କେଉଁଆଡ଼େ ବା ସେମାନଙ୍କୁ ନେଇଯାନ୍ତି ମୁଁ ତାହା କହି ପାରିବ ନାହିଁ ।

ମୋର ପ୍ରଧାନ ଆନନ୍ଦ ଏବଂ ପ୍ରଧାନ ଦୁଃଖ, ଏ କୋଠରୀରେ ଯେ ପଶିଲ ତାହାର ପାଖରେ ମୋର ଅତୀତ ଜୀବନର ପ୍ରଧାନ ପ୍ରଧାନ ଘଟଣା ବର୍ଣ୍ଣନା କରିବା । ସେ ଶୁଣୁ ବା ନ ଶୁଣୁ । ପ୍ରଥମରୁ କହୁଚି, ଜୀବନୀ ବର୍ଣ୍ଣନା କରିବା ଦ୍ୱାରା ମୋର ଆନନ୍ଦ ହୁଏ । ଦେଖୁ ଦେଖୁ ପରକ୍ଷଣରେ ଦୁଃଖ ଆସି ସମଗ୍ର ପ୍ରାଣକୁ ଅଧିକାର କରି ନିଏ । ସେହି ତ ମୋର ଜୀବନର ପରିବର୍ତ୍ତନ ସୁଖ ।

ମୋତେ ଏଠାରେ କାହିଁକି ବନ୍ଦୀ କରି ରଖିଛନ୍ତି, ମୁଁ ଉତ୍ତମ ରୂପେ ଜାଣେ ନା । କିଏ ଯେ ମୋତେ ବନ୍ଦୀ କରି ରଖିଛି ତା ମୁଁ ଅନେକ ଭାବି ଭାବି ମଧ୍ୟ ସ୍ଥିର କରିପାରିଲି ନାହିଁ । ଜଗତରେ ଆମର ଶତ୍ରୁ କେହି ନ ଥିଲେ । ଶତ୍ରୁ ନ ହେଲେ ଏପରି ଦଣ୍ଡ ଦିଅନ୍ତା କିଏ କାହିଁକି ? ସମୟ ସମୟରେ ମୋତେ କିଏ ଜଣେ ପଦାରୁ କେବେ କର୍କଶ କେବେ କୋମଳ ସ୍ୱରରେ ସମ୍ବୋଧନ କରି ପଚାରେ, ରମଣୀ ମୁକ୍ତ ହେବାକୁ ଚାହୁଁ ? ଆଲୋକ ଦେଖିବାକୁ ଚାହୁଁ ? ଜଗତରେ କିଏ ମୁକ୍ତ ହେବାକୁ ଇଚ୍ଛା ନ କରେ ? କିଏ ଚକ୍ଷୁଥାଇ ମଧ୍ୟ ଚିରଦିନ ଅନ୍ଧଙ୍କ ପରି ଅନ୍ଧକାରର ଗମ୍ଭୀରତା ମଧ୍ୟରେ ବାସ କରିବାକୁ ଚାହେଁ ?

ଦେଖ ଏ ପ୍ରକୋଷ୍ଠରେ ଗୋଟିଏ ବୋଲି କ୍ଷୁଦ୍ର ଗବାକ୍ଷ, ଆକାରରେ ଗୋଟିଏ ଆଖିପରି ଠିକ୍ ହୋଇଛି, ନାହିଁ ? ବାହାରୁ ଦିନବେଳା ଆଲୋକ ରେଖା ଏହି ବାଟ ଦେଇ କୋଠରୀରେ ପଶେ । ଦିନରେ ଥରେ ମାତ୍ର ଏ ଘର ଖୋଲାଯାଏ । ଲୋକେ ମୋତେ ଖାଦ୍ୟ ଦେଇଯାନ୍ତି । ଏହି ଯେ ମାଟିର ଖପରା ଖଣ୍ଡ ଦେଖୁଛ ତାହା କେବେ ପାଣିରେ ଧୁଆ ହୋଇ ନାହିଁ । ସେହି ଅପରିଷ୍କାର ଖପରାରେ ମୋତେ ପ୍ରତ୍ୟହ ପଶୁଙ୍କ ପରି ଖାଇବାକୁ ପଡ଼େ । ଏପାଖେ ଯେଉଁ ଅନ୍ଧାରୁଆ କଣ ଦେଖୁଛ, ଏଠା ହେଉଛି ପାଇଖାନା । ଏ ଘର ଦୁର୍ଗନ୍ଧମୟ । ତେଣୁକରି ତୁମେ ନାକରେ ହାତ ଦେଇଛ । କିନ୍ତୁ ମୋତେ ଦେବାକୁ ପଡ଼େ ନାହିଁ । ନରକର କୀଟକୁ ନରକ ଯେ ଅରେଇ ଥାଏ ।

ତଥାପି କିପରି ଏ ସ୍ଥାନରୁ ମୁକ୍ତ ହେବି, ତାହାର ଭାବନା ମନରେ ସମୟ ସମୟେ ଆସେ । ଯେତେବେଳେ ଦ୍ୱାରଦେଶରୁ କିଏ ମୋତେ ସମ୍ବୋଧନ କରି ପଚାରେ, ରମଣୀ ମୁକ୍ତ ହେବୁ ? ମୋର ଅନିଚ୍ଛାସତ୍ତ୍ୱେ ଅବାଧ ଜିହ୍ୱାଟା କହି ପକାଏ, ହଁ ! ଅନିଚ୍ଛା କାହିଁକି ଜାଣିବାକୁ ଚାହୁଁ ? ମୁକ୍ତି ସଙ୍ଗେ ସଙ୍ଗେ ଯେ ଗୋଟାଏ ଭୟଙ୍କର କଥା ସଂଯୋଜିତ ଥାଏ । ବହୁଦିନ ବନ୍ଦୀ ରହି ଯୌବନର

ସମସ୍ତ ସୌନ୍ଦର୍ଯ୍ୟ ଲୁପ୍ତ—ଅଙ୍ଗ ବିକଳ, ମନ ଅସ୍ଥିର, ତଥାପି ପାପିଷ୍ଠେ ମୋଠାରୁ ରମଣୀର ଅମୂଲ୍ୟ ରତ୍ନଟି କାଢ଼ି ନେବାକୁ ପ୍ରସ୍ତାବ କରନ୍ତି । କେତେଥର ବଳ ପ୍ରୟୋଗ କରିଛନ୍ତି । ମାତ୍ର ଭଗବାନ୍ ବୁଦ୍ଧ ତାଙ୍କର ଭକ୍ତକୁ ପ୍ରତିପଦରେ ଜଗି ରହିଥାନ୍ତି ।

ଏଥର ମୁଁ ମୋର ଜିହ୍ୱାକୁ ସମ୍ପୂର୍ଣ୍ଣ ଅଧୀନରେ ରଖିଛି । ଯେତେବେଳେ କିଏ ପଦାରୁ ସମ୍ବୋଧନ କରି କହେ, ରମଣୀ ମୁକ୍ତ ହେବୁ ? ମୁଁ ଭଗବାନ୍ ବୁଦ୍ଧଙ୍କୁ ସ୍ମରଣ କରି କହେ, ନା, ଏବଂ ପ୍ରଶ୍ନକର୍ତ୍ତା ମୋତେ ଆଉ ଅଧିକ ବିରକ୍ତ କରେ ନାହିଁ । ମୁଁ ଭୟଙ୍କର ତଳେ ପଡ଼ି ବୁଦ୍ଧଙ୍କୁ ସ୍ମରଣ କରେ । କେବେ କେବେ ଆଉରି ଗୋଟିଏ ପ୍ରଶ୍ନ ଅଧିକା ପଚାରେ, ତେବେ ଚିରଦିନ ଏହିପରି ବନ୍ଦିନୀ ରହିବାକୁ ପଡ଼ିବ ଜାଣିଥା । ମୁଁ ଉତ୍ତର ଦିଏ, ହଁ । ମୁଁ ବେଶ୍ ଜାଣିଛି, ଯେତେଦିନ ଯାଏ ବୁଦ୍ଧଙ୍କର ଦୟା ନ ହୋଇଛି ସାଧାରଣ ମନୁଷ୍ୟର କ୍ଷମତା ନାହିଁ ମୋତେ ସେ ମୁକ୍ତ କରି ପାରିବ ।

ରମଣୀର ପ୍ରତ୍ୟେକ କଥା ବନ୍ଦୀ ଶୁଣିଥିଲା କି ନାହିଁ କହି ହେବ ନାହିଁ । କାରଣ, ବନ୍ଦୀ ହୋଇ କୋଠରୀରେ ରହିବା ସମୟରୁ ସେ ପ୍ରକୋଷ୍ଠଟିକୁ ଉତ୍ତମରୂପେ ପରୀକ୍ଷା କରି ଦେଖୁଥିଲା, ମୁକ୍ତିର କୌଣସି ଉପାୟ ଅଛି କି ନାହିଁ । କିନ୍ତୁ ରମଣୀର ଶେଷ ବାକ୍ୟ ଶୁଣି ସେ କହିଲା, ତେର୍ ଅଛି ବନ୍ଦିନୀ, ତେର୍ ଅଛି । ମନୁଷ୍ୟ ନ କରିପାରେ ଏପରି ଦୁନିଆଁରେ କିଛି ନାହିଁ । ମୁକ୍ତ ହେବାକୁ ଚାହଁ ?

ବନ୍ଦିନୀ ହସି ହସି କହିଲା, ମୋ ସଙ୍ଗେ ଅଦ୍ୟାପି ଯେଉଁମାନେ ବନ୍ଦୀରୂପେ ଦିନେ ରହିଛନ୍ତି, ସେମାନେ ସମସ୍ତେ ପ୍ରାୟ ମୋର ମୁକ୍ତି ନିମନ୍ତେ ଅସ୍ଥିର ହୋଇ, ତୁମରି ପରି ପ୍ରଶ୍ନ ପଚାରି ଥାନ୍ତି । ପ୍ରଶ୍ନ ପଚାରିବାର ଅଧିକାର ସମସ୍ତଙ୍କର ଥାଇପାରେ, କିନ୍ତୁ ଉତ୍ତର ଦେବାକୁ କେବଳ ମୁଁ ।

ବାଜେକଥା ଗୁଡ଼େ କହିବା ଦରକାର ନାହିଁ, ଲାଭ ନାହିଁ; ଯଦି ମୁକ୍ତ ହେବାର ଅଭିଳାଷ ଥାଏ ଶୀଘ୍ର କହ ।

ବନ୍ଦିନୀ ସେ ଲୋକର କଥାରେ ବିଶ୍ୱାସ କରି କହିଲା, ଯଦି ପ୍ରକୃତରେ ପଚାରୁ ଥାଅ, ମୁଁ କହିପାରେ ମୁକ୍ତ ହେବାକୁ ଇଚ୍ଛା ନୁହେଁ କାହାର ? ସମସ୍ତଙ୍କର ଥାଏ ।

ତେବେ ସ୍ଥିର ହୋଇ ରହ, କହି ବନ୍ଦୀ ତରବାରି କାଢ଼ି କ'ଣ କାର୍ଯ୍ୟ କରିବାରେ ଲାଗିଗଲା । ବନ୍ଦୀ ଶୁଣୁ ବା ନ ଶୁଣୁ, ରମଣୀ ତା'ର ଜୀବନୀ ବର୍ଣ୍ଣନା କଲା ଠିକେ ଠିକେ ।

ମୋର ବୟସ ଯେତେବେଳେ ଚାରି ମୁଁ ସେତେବେଳେ ପିତାହୀନା ହେଲି । ମୋ'ର ପିତା ଜଣେ ଦରିଦ୍ର ସ୍ଥଳବ୍ୟବସାୟୀ । ସେ ଜାଣି ବାଲି ପ୍ରକୃତରେ ମସଲା

ନେଇ ଚଳକାର ନିକଟସ୍ଥ ଗ୍ରାମମାନଙ୍କରେ ବିକ୍ରୟ କରୁଥିଲେ । ପୋହଳା ଦ୍ୱୀପମାନଙ୍କରୁ ଆସୁଥିବା ପୋହଳା ନେଇ ମଧ୍ୟ ଗ୍ରାମମାନଙ୍କରେ ବିକ୍ରୟ କରୁଥିଲେ । ସିଂହଳର ମୋଟ କିଣାବିକା କରିବାକୁ ତାଙ୍କ ପାଖରେ ଧନ ନ ଥିଲା ।

ମୋର ଶ୍ୱଶୁର ଘର ଧନୀ ବଣିକ ହେଲେ ମଧ୍ୟ ଆମ୍ଭମାନଙ୍କ ପରି ନ ଥିଲେ, କାରଣ ଆମେ ଥିଲୁ ହିନ୍ଦୁ । ପିଲାଦିନୁ ମା ମରି ଯାଇଥିଲେ । ଗ୍ରାମରେ ଜଣେ ଦୂର ସମ୍ପର୍କୀୟା ବୃଦ୍ଧାଙ୍କର ତତ୍ତ୍ୱାବଧାନରେ ମୁଁ ବଢ଼ି ଆସୁଥିଲି । ମୋତେ ଯେତେବେଳେ ସାତବର୍ଷ, ପିତା ଏକାକୀ ଛାଡ଼ି କୁଆଡ଼େ ଗଲେ ଆଉ କେହି ଜାଣିଲୁ ନାହିଁ । ଗ୍ରାମରେ ବହୁ କଷ୍ଟ ପାଇ ଯାହାର ତତ୍ତ୍ୱାବଧାନରେ ମୁଁ ଥିଲି, ସେ ମୋତେ ମୋର ସ୍ୱାମୀଙ୍କ ଘରେ ଛାଡ଼ିଗଲେ । ମୋର ସ୍ୱାମୀ ତିନି ଭାଇ । ପୈତୃକ ସମ୍ପତ୍ତି ଯଥେଷ୍ଟ ଥିଲା । ତିନିଭାଇ ମଧ୍ୟରୁ ଜଣେ ଘରେ ରହିଲେ, ଆଉ ଦୁଇ ଭାଇ ବଣିଜ କରିବାକୁ ସକଳ ଦ୍ୱୀପ, ଜାଭା, ସୁମାତ୍ରା କିମ୍ବା ବ୍ରହ୍ମଦେଶ ଯାନ୍ତି । ମୋର ସ୍ୱାମୀ ସମୁଦ୍ରକୁ ଭାରି ଭଲ ପାନ୍ତି । ତେଣୁ ଅବାଲ୍ୟରୁ ସେ ବୋଇତରେ ଯାଇ ଅନେକ ଦେଶ ଦେଖି ଅନେକ ବିଷୟ ଶିଖିଥିଲେ । ମୋତେ ଯେତେ-ବେଳେ ବାର ବର୍ଷ, ସ୍ୱାମୀ ମୋତେ ବୋଇତରେ ନେଇ ଦୂର ଦେଶକୁ ଯିବାକୁ ଅନୁମତି ମାଗିଲେ ।

ସେତେବେଳକୁ ଦେବର ଅବିବାହିତ । ଜ୍ୟେଷ୍ଠ ପ୍ରଥମେ ଅମଙ୍ଗ ହେଉଥିଲେ, କିନ୍ତୁ ପରେ ଅନୁମତି ଦେଲେ । ଯାଆ ଏବଂ ଜ୍ୟେଷ୍ଠଙ୍କୁ ପ୍ରଣାମ କରି ମୁଁ କେଉଁ ଅନୁକୂଳରେ ସମୁଦ୍ରକୁ ବାହାରିଲି କେଜାଣି, ସେହିଦିନଠାରୁ ଆଉ ଘରକୁ ଫେରିନାହିଁ । ଆମର ବୋଇତ ଲୁଣ ଏବଂ ଲୁଗାରେ ବୋଝେଇ ହୋଇଥିଲା । ଜ୍ୟେଷ୍ଠଙ୍କର ଆଦେଶ ଥିଲା ବୋଇତ ସୁମାତ୍ରାରେ କିମ୍ବା ଲେମ୍ବୋକରେ ଲଗାଇ ପୂର୍ବ ଦ୍ୱୀପମାନଙ୍କରୁ ମସଲା ଓ ପୋହଳା ନେଇ ସିଂହଳ ବାଟେ ଫେରିବ । ସୁବିଧା ପାଇଲେ ସିଂହଳରୁ ହାତୀଦାନ୍ତ ଆଣିବ । ଜ୍ୟେଷ୍ଠଙ୍କର ଆଦେଶ ପାଇ ଆମର ନୌକା ଜାଭା ଏବଂ ବାଲିଦ୍ୱୀପ ଆଡ଼େ ଗଲା । ବହୁ ବାଧାବିଘ୍ନ ଅତିକ୍ରମ କରି, ଜାଭା ଏବଂ ସୁମାତ୍ରାରେ ବହୁଦିନ ପରେ ଉପସ୍ଥିତ ହେଲୁ ।

ଏଥି ମଧ୍ୟରେ ସ୍ୱାମୀଙ୍କର ଇଚ୍ଛା ହେଲା ସେ ଚୀନ୍ ଦେଶକୁ ଯିବେ ବ୍ୟବସାୟ କରିବାକୁ; ଅନ୍ତତଃ ଦେଖିବାକୁ । କେତେ ଦ୍ୱୀପରେ ଜାହାଜ ଲଗି ଲଗି ଚୀନ୍‌ରେ ଉପସ୍ଥିତ ହେଲା । ସେତେବେଳେ ମୋର ବୟସ ମୋଟେ ପନ୍ଦର; କିନ୍ତୁ ଏହି ଅଳ୍ପବୟସରୁ ମୁଁ ଗର୍ଭବତୀ ହୋଇଥିଲି । ମୋର ପ୍ରସବ ହେବା ଯାଏ ମସଲା ବୋଇତକୁ ଦ୍ୱୀପରେ ଅଟକାଇ ରଖିଲେ । ଏହି ସମୟରେ ଶୁଣାଗଲା

ସେଲବସ୍‌ରୁ ଗୋଟିଏ ଓଡ଼ିଆ ବୋଇତ କଳିଙ୍ଗପଲ୍ଲୀ ଆସୁଥିଲା । ସ୍ୱାମୀ ଭୋଜପତ୍ରରେ ଖଣ୍ଡେ ଚିଠି ଲେଖିଲେ ଜ୍ୟେଷ୍ଠଙ୍କ ନିକଟକୁ । ପତ୍ରଖଣ୍ଡି ସେଲବସ୍ ପଠାଇଦେଲେ । ପ୍ରଧାନ ନାବିକଙ୍କୁ ସମ୍ବାଦ ପଠାଇଥିଲେ, ଯେପରି ସେ କଳିଙ୍ଗପତ୍ତନରେ ଉପସ୍ଥିତ ହୋଇ ପତ୍ରଖଣ୍ଡି ତାଙ୍କ ଭାଇଙ୍କ ନିକଟକୁ ପଠାଇ ଦିଅନ୍ତି । ତାଙ୍କର ଇଚ୍ଛା ଥିଲା ଦେଶକୁ ଫେରିବାକୁ; କିନ୍ତୁ ମୋ ନିମନ୍ତେ ଅଟକି ରହିବାକୁ ବାଧ ହେଲା ବୋଇତ ।

କିଛିଦିନ ପରେ ମୋର ଗୋଟିଏ ସୁନ୍ଦର ପୁତ୍ର ଜାତ ହେଲା । ମୋର ଦେଶକୁ ଫେରିବାର ଇଚ୍ଛା ବଳବତୀ ହେଲା । ମୁଁ ସ୍ୱାମୀଙ୍କୁ ବହୁବାର ଅନୁରୋଧ କଲି, ମାତ୍ର ସେ ମାନିଲେ ନାହିଁ; କାରଣ ତାଙ୍କୁ କିଏ ଜଣେ କହିଲା, ବାଲିଦ୍ୱୀପର ଅଗଙ୍ଗ ପର୍ବତର କୌଣସି ଶୃଙ୍ଗ ମଧ୍ୟରେ ଚୀନ୍‌ର ଜଣେ ରାଜା ତାଙ୍କର ମୃତ୍ୟୁ ପୂର୍ବରୁ ଅଗାଧ ସମ୍ପତ୍ତି ଗଚ୍ଛିତ ରଖି ଯାଇଛନ୍ତି ଏବଂ ତାଳପତ୍ରରେ ଅନେକ ଗୁଡ଼ିଏ ଚିଠାଉ ଲେଖି ପ୍ରତି ଦେଶକୁ ପଠାଇଛନ୍ତି । ଅନେକ ଗୁଡ଼ିଏ ସମୁଦ୍ର ଉପରେ ଭସାଇ ଦେଇଛନ୍ତି । ସେ ଚିଠାଉରେ ଖଣ୍ଡେ ତ୍ରିକୋଣମିତି ଅଙ୍କ ଥିଲା । ସେ ଅଙ୍କ ଖଣ୍ଡ ଯେ କରି ପାରିବ ଚୀନ୍ ରାଜାଙ୍କ ଧନର ଅଧିକାରୀ ସେ ହେବ,—ସେ ଯଦି ସେ ଅଙ୍କର ଫଳ ସୂତ୍ର ନେଇ, ଅଗଙ୍ଗ ପର୍ବତରେ କାର୍ଯ୍ୟ କରେ ।

ତହିଁରେ ଆଉ କ'ଣ ଲେଖାଥିଲା ମୁଁ କହି ପାରିବି ନାହିଁ । ମାତ୍ର ସେହି ସମ୍ବାଦ ପାଇଲା ଦିନଠାରୁ ସ୍ୱାମୀ ସର୍ବଦା ଅଙ୍କ କରିବାରେ ଲାଗି ରହିଲେ । ଦିନ ରାତି ସର୍ବଦା ସେ ଅଙ୍କରେ ମନୋନିବେଶ କଲେ । କେଜାଣି କାହିଁକି ଦେଶକୁ ଫେରିବାକୁ ମୋର ସହସ୍ର ଅନୁରୋଧ ଆଉ ରକ୍ଷା ହେଲା ନାହିଁ । ଯେତେବେଳେ ମୋର ସନ୍ତାନକୁ ଦେଢ଼ ବର୍ଷ, ବୋଇତ ବାଲିଦ୍ୱୀପ ଆଡ଼େ ଚାଲିଲା । ବାଟରେ ଝଡ଼ ହେବାରୁ ବାଲିଦ୍ୱୀପକୁ ନ ଆସି ବୋଇତ ଆହୁରି ଦକ୍ଷିଣକୁ ଚାଲିଗଲା । ପୂର୍ବ ଏବଂ ଦକ୍ଷିଣ କୋଣ ଦେଇ ଯାଉ ଯାଉ ଆମ୍ଭେମାନେ ଆଉ ଧ୍ରୁବତାରା ଦେଖିବାକୁ ପାଇଲୁ ନାହିଁ ।

ସ୍ୱାମୀ କହିବାର ଶୁଣିଛି, ଆକାଶର ତାରାଗୁଡ଼ାକ କିପରି ବଦଳି ଗଲେ । ଚୁମ୍ବକ ପଥର ଘଷା ଯେଉଁ ଲୁହାଖଣ୍ଡ ଗୋଟାଏ ଲୁହା କଣ୍ଟା ଉପରେ ଝୁଲୁ ଥିଲା ତାହାରି ସାହାଯ୍ୟରେ ବୋଇତ ଚାଲାଗଲା । ସେ ଲୁହାଖଣ୍ଡକୁ ଆମ କୈବର୍ତ୍ତିମାନେ ଦିଗ ନିର୍ଣ୍ଣୟକ ଯନ୍ତ୍ର ବୋଲି କହନ୍ତି । ଆମେ ଯେଉଁଠାକୁ ଯାଉଥିଲୁ, ନାଉରୀମାନେ ତାକୁ ପୋହଳାଦ୍ୱୀପମାଳା ବୋଲି କହୁଥିଲେ । ଅନେକ ପୋହଳା ଆମ ନାଉରୀ-ମାନେ ସେଠାରୁ ସଂଗ୍ରହ କରି ବୋଇତରେ ରଖିଲେ ।

ନୌକା ଧୀରେ ଧୀରେ ଆହୁରି ଦକ୍ଷିଣକୁ ଚାଲିଲା । ମୋର ଇଚ୍ଛା ଥାଏ କିପରି ଶୀଘ୍ର ଦେଶକୁ ଫେରିବି, କିନ୍ତୁ ସ୍ୱାମୀଙ୍କର ଆଦେଶ ଅନ୍ୟ ପ୍ରକାର ।

ଏହି ସମୟରେ ଦିନେ ହଠାତ୍ ଦିଗ ନିରୂପଣ ଯନ୍ତ୍ରଟିକୁ ମୋର ଦୁଇ ବର୍ଷର୍ ଶିଶୁ ଭାଙ୍ଗି ପକାଇଲା । ଲୁହାଖଣ୍ଡେ ଭାବି ମୁଁ ତା ହାତରୁ ଛଡ଼ାଇ ସମୁଦ୍ରକୁ ପକାଇ ଦେଲି । ମୁଁ ତ ଆଉ ଜାଣି ନ ଥିଲି; ମୋର କି ଦୋଷ ! ନାଉରୀମାନେ ସମସ୍ତେ ମୁଣ୍ଡରେ ହାତ ଦେଇ ବସିଲେ ।

ସ୍ୱାମୀ କେବଳ ଦୁଃଖିତ ହୋଇ କହିଲେ, "ବଡ଼ ଭୁଲ କରିଛ ! ବର୍ତ୍ତମାନ ଜୀବନର ଭୟ ହେଲାଣି । ତଥାପି ସାହସ ଅବଲମ୍ବନ କର, ପୂର୍ବ ତାରା ଗୁଡ଼ିକକୁ ଚିହ୍ନି ଚିହ୍ନି ସ୍ୱାମୀ ନୌକା ଚଳାଇବାକୁ ଆଦେଶ କଲେ । ଆହୁରି ଦକ୍ଷିଣକୁ ବୋଇତ ନ ନେଇ ଉତ୍ତରକୁ ଫେରାଇଲେ । ମୁଁ ଭୟରେ ମହାପ୍ରଭୁ ବୁଦ୍ଧଙ୍କୁ ଦିନରାତି ଡାକୁଥାଏ । ଶିଶୁ ସନ୍ତାନଟିକୁ କୋଡ଼ରେ ଧରି ନୀଳ ସମୁଦ୍ରକୁ ଚାହିଁ ରହିଥାଏ କେବଳ ଶୂନ୍ୟ କରୁଣ ଦୃଷ୍ଟିରେ । ବୋଇତ ଦିନ ରାତି ଚାଲି ଥାଏ ।

ଦିନେ ସ୍ୱାମୀ ମୋ ନିକଟକୁ ଆସି ହସି ହସି କହିଲେ, ଦେଖ, ଦୂରରୁ ଧ୍ରୁବତାରା କି ସୁନ୍ଦର ଦିଶୁଛି । ଆଉ ଭୟର କୌଣସି କାରଣ ନାହିଁ ।

ଆମର ବୋଇତ ଆଗକୁ ଆଗକୁ ଯେତେ ଆସୁଥାଏ ଧ୍ରୁବତାରା ସେତିକି ଉପରକୁ ଦେଖାଯାଉଥାଏ । ଶେଷରେ ବୋଇତ ପଶ୍ଚିମମୁଖ ହୋଇ ଚାଲିଲା ।

ଆମେମାନେ ବ୍ରହ୍ମଦେଶରେ ଉପସ୍ଥିତ ହେଲୁ । ମୋର ସ୍ୱାମୀ ସେଠାରୁ ଓଡ଼ିଆ ରାଜାଙ୍କ ଠାରୁ ଦୁଇଟି ବଡ଼ ବଡ଼ ହାତୀ ଆଣି ବୋଇତରେ ଚଢ଼ାଇଲେ ।

ବହୁଦିନ ପରେ ବୋଇତ ଅନ୍ୟ ଗୋଟିଏ ଦେଶରେ ଆସି ଉପସ୍ଥିତ ହେଲା, ଯାହାକୁ ଲୋକେ ବିଭିନ୍ନ ନାମରେ ଡାକନ୍ତି । କେହି କହନ୍ତି ସିଂହଳ, କେହି ବା କହନ୍ତି ସକଳ ଦ୍ୱୀପ ଅଥବା ଲଙ୍କା । ଆମେମାନେ ସିଂହଳରେ ଉପସ୍ଥିତ ହୋଇ ଦେଶକୁ ଫେରି ଆସିଛୁ ବୋଲି ବଡ଼ ଆନନ୍ଦ ପ୍ରକାଶ କଲୁ । ସ୍ୱାମୀ ପ୍ରକାଣ୍ଡ ହାତୀ ଯୋଡ଼ିକ ଅନୁରାଧାପୁରର ରାଜାଙ୍କ ପାଖକୁ ଭେଟି ପଠାଇଲେ । ରାଜାଙ୍କର ପୂର୍ବ ପୁରୁଷ ତ ଓଡ଼ିଆ । ସେ ଖୁସି ହୋଇ ଖଣ୍ଡେ ବହୁ ମୂଲ୍ୟର ରତ୍ନ ତାଙ୍କୁ ଉପହାର ଦେଇ କହି ପଠାଇଥିଲେ, ସିଂହଳରେ ହାତୀର ଅଭାବ ନାହିଁ । ଯଦି ପଠାଇ ଦେଇଛ ମୁଁ ରଖିଲି । ଫେରାଇ ଦେବା ରାଜୋଚିତ ହେଉ ନାହିଁ । ଏହି ହୀରା ଖଣ୍ଡି ତାର ବିନିମୟରେ ପଠାଇଲି । ହାତୀର ଯଥାର୍ଥ ମୂଲ୍ୟ କାଟି ଅବଶିଷ୍ଟ ଧନ ବ୍ରହ୍ମଦେଶ ଏବଂ ପୂର୍ବସାଗରର ଅନ୍ୟାନ୍ୟ ସ୍ଥାନରେ ବୌଦ୍ଧ ଧର୍ମ ପ୍ରଚାରରେ ଯେପରି ବ୍ୟବହୃତ ହୁଏ ତାହାର ବ୍ୟବସ୍ଥା କରିବ ।

ବିଶେଷ ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ । ବର୍ତ୍ତମାନ ଜୀବନର ପ୍ରଧାନ ଘଟଣା ବର୍ଣ୍ଣନା କରେ—ଯେଉଁ ଘଟଣା ସ୍ମରଣ ମାତ୍ରେ ହୃଦୟ ଆନ୍ଦୋଳିତ ହୋଇ

ଉଠେ, ଇଚ୍ଛା ନ ଥିବାରୁ, ଅଲକ୍ଷ୍ୟରେ ମୋର ଏ ଶୁଷ୍କ ଚକ୍ଷୁରୁ ଲୋତକଧାର ବହି ଆସେ । ଜଗତରେ ଯେତେ ଜଣଙ୍କ ସଙ୍ଗେ ସାକ୍ଷାତ ହେବ ସମସ୍ତଙ୍କୁ ଭଗ୍ନ ହୃଦୟର ଅସହ୍ୟ ଆବେଗ ଶୁଣାଇ ଦେବ। କେହି ଶୁଣୁ ନ ଶୁଣୁ କେବଳ ବର୍ଣ୍ଣନା କରିବାଦ୍ୱାରା ମୋ ହୃଦୟର ଆବେଗ କମିଥାଏ । ହୃଦୟରେ ନୂତନ ଆଶା ଜାଗି ଉଠେ । କାଳେ ଯାହା ନିକଟରେ ବର୍ଣ୍ଣନା କରୁଛି ସେ ମୋ ଗଣ୍ଠିଧନର କୌଣସି ଖବର ରଖିଥିବ; କାଳେ କେବେ ଦୟାପରବଶ ହୋଇ ଦରିଦ୍ର ଭିକ୍ଷୁକ ବୋଲି, ମୋର ସେହି ହତଭାଗ୍ୟ ସନ୍ତାନକୁ ଭିକ୍ଷା ଦେଇଥିବ, ମାତ୍ର ସେ ଭିକ୍ଷା କରିବ କାହିଁକି ? ଧର୍ମର ଅବତାର ଲଲଟେନ୍ଦୁଙ୍କ ଏ ରାଜ୍ୟରେ ଭିକ୍ଷା କରିବ କିଏ ? ଆଜି ସେହି ମହାତ୍ମାଙ୍କର ଚକ୍ଷୁର ଅନ୍ତରାଳରେ ସହସ୍ର ପାପକାର୍ଯ୍ୟ ସମାହିତ ହେଉଛି; ସେ କାହୁଁ ଜାଣିବେ ?

କେଶରୀ ରାଜାଙ୍କର ଛତ୍ରତଳେ ଭିକ୍ଷା ଅସମ୍ଭବ । ମୋର ସନ୍ତାନକୁ ମୁଁ ଯେଉଁ ରତ୍ନ ଉପହାର ଦେଇ ଆସିଛି, ତହିଁରେ ସେ ଆଜୀବନ ସୁଖୀ ହୋଇ ପାରିବ । ମାତ୍ର, ଯାହାଙ୍କର ହାତରେ ସନ୍ତାନ ଏବଂ ରତ୍ନ ଉଭୟ ସମର୍ପଣ କରିଛି, ସେ ଯଦି ରତ୍ନକୁ ଆତ୍ମସାତ୍ କରିବାକୁ ଯାଇ ବାଳକକୁ ହତ୍ୟା କରିଥିବେ !

ହୃଦୟ ସ୍ଥିର ହୁଅ ! ସମଗ୍ର ଜଗତ ଧ୍ୱଂସ ହେଉ, ସେଥିକି ଭ୍ରୂକ୍ଷେପ ନାହିଁ । ଜଗତରେ କଷ୍ଟ ବୋଲି କିଛି ନାହିଁ । ପୁତ୍ରର ମୃତ୍ୟୁ, ତହିଁରେ ଜନନୀର କଷ୍ଟ ହେବ କାହିଁକି ? ସେ ତ ବନ୍ଧୁ ଦିନର କଥା । ବନ୍ଦୀ ଶୁଣନ୍ତୁ ।

ନା, ନା, ସେ କଦାପି ସେପରି ହୋଇ ନ ଥିବେ । ନାରୀର ମାନ ରଖିବାକୁ ସେ ଦେବୀରୂପେ ଉପସ୍ଥିତ ହୋଇଥିଲେ । ରମଣୀର ମାତୃତ୍ୱର ମାନ ରଖିଲେ । ବୁଦ୍ଧଦେବ ତାଙ୍କର ମଙ୍ଗଳ କରିବେ । ଜଳଦସ୍ୟୁ ହସ୍ତରୁ ସେ ମୋ ସନ୍ତାନକୁ ଉଦ୍ଧାର କରିଛନ୍ତି । ଆଜି ଶୁଣୁଥିଲି, ନାବିକମାନେ କଥାବାର୍ତ୍ତା କରୁଥିଲେ, ଝିଙ୍କିଆ ଦ୍ୱୀପର ଅତି ନିକଟରେ ବୋଇତ ଅଛି । ବୁଦ୍ଧ, ଅଭାଗିନୀର ଅଧିକାର ନାହିଁ, କ୍ଷମତା ନାହିଁ, ଥରେ ମୁକ୍ତହୋଇ ତାର ପ୍ରାଣର ସନ୍ତାନକୁ ଖୋଜିବ ।

କାହାନ୍ତି ମୋର ସେହି ଶାସ୍ତ୍ରପ୍ରବୀଣ ସ୍ୱାମୀ ? ତାଙ୍କୁ କି ପାପିଷ୍ଠମାନେ ଜୀବନରେ ରଖିଛନ୍ତି ? ତାଙ୍କର ହସ ହସ ମୁଖଟି ମୋର ଆଖି ଆଗରେ ନାଚି ଉଠୁଛି; ହୃଦୟ ଆନନ୍ଦରେ ବିଙ୍କାଶୀମ ଶିଖା ଉଚ୍ଚକୁ ଉଠୁଛି, ସ୍ୱାମୀଙ୍କର କଥା ଭାବିବା ମାତ୍ରେ । ସେ କାହାନ୍ତି, ଏହି ପ୍ରଶ୍ନ ଅବୋଧ ମନକୁ ପଚାରିବା ମାତ୍ରେ ମନ ପୁଣି ନୈରାଶ୍ୟ ସାଗରରେ ବୁଡ଼ି ଯାଉଛି । ହେ ବନ୍ଧ, ଶୁଣ, ମୁଁ ଏହିଠାରେ ବନ୍ଦିନୀ ରହିଛି । ମୋର ପାର୍ଥିବ ପିଣ୍ଡ ନାନାପ୍ରକାର ଯନ୍ତ୍ରଣା ସହୁଛି, ମିଛ ନୁହେ, କିନ୍ତୁ ମାନବର ସ୍ୱାଧୀନ ମନକୁ ବନ୍ଦୀକରି ରଖି ପାରିବ କିଏ ?

ଆଜି ମୋର ସ୍ୱାଧୀନ ମନ ବଜ୍ରକୁଳଠାରୁ ଅଧିକ ଜୋର୍‌ରେ ଚାଲୁଛି । କ୍ଷଣକ ମଧ୍ୟରେ ସୁଦୂର ଜାଭା ଏବଂ ସୁମାତ୍ରା ପ୍ରଭୃତି ଓଡ଼ିଆ ଉପନିବେଶମାନଙ୍କରେ ମନ ବୁଲି ଆସୁଛି । ସ୍ୱାମୀ ମୋର ସେହିଠାରେ ଅଛନ୍ତି ପରା ! କେତେବେଳେ ସେହି ପୋଲ୍ହଲା ଦ୍ୱୀପର ଅନ୍ଧାରିଆ ପ୍ରାନ୍ତକୁ ଉଡ଼ି ଯାଉଛି—ସ୍ୱାମୀ ମୋର ସେହିଠାରେ ନଗ୍ରେଲାରେ ଅଙ୍କ କଷୁଥିବେପରା । କେତେବେଳେ ବା ମନ ଆନନ୍ଦରେ ଉଡ଼ିଯାଉଛି ଶଲକା କୂଳସ୍ଥ ସେହି ଦ୍ୱିତଳ ପ୍ରାସାଦକୁ । ମୋର ସ୍ନେହର ସନ୍ତାନଟି ସେହିଠାରେ ଅଛି ପରା ! କେତେବେଳେ ··· ···

ବନ୍ଦିନୀ, ମୁକ୍ତ ହେବାକୁ ଚାହୁଁ ? ମଣିଆକୁ ଦେଖିବାକୁ ଚାହୁଁ ? ମୋର ଅନୁଗମନ କର ତେବେ ।

ବନ୍ଦୀ ବନ୍ଧୁ ଶ୍ରମକର ଦ୍ୱାର ଉଦ୍‌ଘାଟିତ କଲା । ସେତେବେଳକୁ ରାତି ତେର୍ ଅଛି । ନାବିକମାନେ ବୋଇତର ନିମ୍ନଦେଶରେ କ୍ଲାନ୍ତଶରୀର ଲମ୍ବାଇ ଦେଇଛନ୍ତି । ଦୂରରୁ ଘଣ୍ଟିର ଶବ୍ଦ ରାତିର ନୀରବତା ଭଙ୍ଗ କରୁଛି ।

ବନ୍ଦିନୀ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଦେଖିଲା, ଦ୍ୱାର ଖୋଲା ହୋଇଛି । ବନ୍ଦୀ ତାର ସମ୍ମୁଖରେ ଦଣ୍ଡାୟମାନ ହୋଇ ହାତ ଠାରି ତାକୁ ଡାକୁଛି । ସେ ନିକଟକୁ ଯାଇ ପଚାରିଲା, କାହିଁକି ଡାକୁଛ ?

ଧୀର ଅଥଚ ଗମ୍ଭୀର ଭାବରେ ବନ୍ଦୀ ପଚାରିଲା, ରମଣୀ ମୁକ୍ତ ହେବାକୁ ଚାହୁଁ ?

ବନ୍ଦୀର ଅପୂର୍ବ ସାହସ ଦେଖି ବନ୍ଦିନୀ ଅବାକ୍ ହେଲା । ଭୀତା ହୋଇ କହିଲା; ହଁ, କିନ୍ତୁ ଯଦି ବିନିମୟରେ ରମଣୀର ଅମୂଲ୍ୟମଣି ନ ଚାହଁ ତେବେ— ନଚେତ୍ ଏହିଠାରେ ବନ୍ଦିନୀ ହୋଇ ରହିବାକୁ ମୁଁ ଶ୍ରେୟ ମନେ କରେ ।

ବନ୍ଦୀ ନ ହସି ରହି ପାରିଲା ନାହିଁ । କହିଲା, ଭ୍ରାନ୍ତ ! ଜଣେ ବନ୍ଦୀଠାରୁ ସେ ଭୟ କରୁଛ କାହିଁକି ? ବର୍ତ୍ତମାନ ମୋର ଅନୁଗମନ କର ।

ଧୀର ପଦ ବିକ୍ଷେପ କରି ଉଭୟେ ପ୍ରକୋଷ୍ଠରୁ ବାହାରି ଆସିଲେ । କୋଠରୀ ବାହାର ଜଞ୍ଜିର ବନ୍ଦକରି ଆଣିଲେ । ଯଦି କେହି ହଠାତ୍ ଉଠି ପଡ଼େ, କୋଠରୀକୁ ଅନାଇ ବନ୍ଦୀ ଏବଂ ବନ୍ଦିନୀ ପଳାୟିତ ବୋଲି ସନ୍ଦେହ କରିବ ନାହିଁ ।

କିନ୍ତୁ ପଳାୟନର ଉପାୟ କଣ ? ଚାରିଆଡ଼େ ସମୁଦ୍ର; ଚନ୍ଦ୍ରାଲୋକ ଭେଦ କରି ଅଳ୍ପଦୂରରୁ ଖୁଣ୍ଟିଆ ଦ୍ୱୀପର ପାହାଡ଼ଟା ଅସ୍ପଷ୍ଟ ଦେଖା ଯାଉଛି ।

ବାଲଅବସ୍ତୁଙ୍କର ପାହାଡ଼ ଦୂରରେ; ତେର୍ ଦୂରରେ । ଅମୃରକ୍ଷା କରିବାକୁ ପ୍ରଥମେ ଅମୃଗୋପନ କରିବା ଅବଶ୍ୟକ । ଅମୃଗୋପନ କରିବାର ଉପଯୁକ୍ତ ସ୍ଥାନ ଏହି ଅଦୂରସ୍ଥ ଖୁଣ୍ଡିଆ ଦ୍ୱୀପ; କିନ୍ତୁ ଖୁଣ୍ଡିଆ ଦ୍ୱୀପକୁ ଯିବେ କିପରି ? ବନ୍ଦୀ ଯଦି ଏକା ହୋଇଥାନ୍ତା, ଭୟର କୌଣସି କାରଣ ନ ଥିଲା । ସମୁଦ୍ର ମଧ୍ୟକୁ ଲମ୍ଫ ପ୍ରଦାନ କରି ପହଁରି ପହଁରି ସହଜରେ ଚାଲି ଯାଇ ପାରନ୍ତା । ବନ୍ଦିନୀକୁ ସେ ମୁକ୍ତ କରି ତା'ର ମନରେ ଏତେ ଆଶା ଦେଇଛି, ତା' ତ ସେ କରି ପାରିବ ନାହିଁ । ଯଦି କେବଳ ନିଜ ଜୀବନ ରକ୍ଷା କରିବାକୁ ଲମ୍ଫ ପ୍ରଦାନ କରି ପଳାଏ, ତେବେ, ବୃଥା ଆଶା ଦେଲା ନାହିଁକି ? ଯଦି ମାତା ପୁତ୍ରଙ୍କର ମିଳନ ଘଟାଇ ପାରେ କି ଆନନ୍ଦ ଉଭୟଙ୍କ ମନରେ ନ ହେବ ? ମାତ୍ର ଉପାୟ ?

କୌଣସି ସୁବିଧାଜନକ ଉପାୟ ଦେଖାଗଲା ନାହିଁ । ବୋଇତରେ ଛୋଟ ଛୋଟ ନୌକା ଅନେକଥିଲା । ମାତ୍ର ପ୍ରତ୍ୟେକେ ଉତ୍ତମରୂପେ ବନ୍ଧା । ଏକାକୀ ଖୋଲିବାକୁ ଗଲେ ଲୋକେ ଜାଗି ଉଠିବେ ।

କାଳବିଳମ୍ବ କରିବାର ସମୟ ନ ଥିଲା । ହଠାତ୍ ଲୋକଟିର ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଗଲା । ସେ ରମଣୀକୁ କହିଲା, ମୋର ଆଦେଶ ପାଳନ କର ସମୁଦ୍ର ମଧ୍ୟକୁ ଡେଇଁ ପଡ଼ । ମୁଁ ଅନୁଗମନ କରୁଛି ।

ରମଣୀ ଦୋଦୋପାଞ୍ଚ ହେଲା; କିନ୍ତୁ ଆଦେଶ ପାଳନ କରି ସମୁଦ୍ର ମଧ୍ୟକୁ ଲମ୍ଫ ପ୍ରଦାନ କଲା ।

ଲୋକଟି ମଧ୍ୟ କ୍ଷଣେ ମାତ୍ର ଅପେକ୍ଷା ନ କରି ରମଣୀର ପଛେ ପଛେ ଲମ୍ଫ ଦେଲା ।

ଭଜନା ଭାବିଲା, ମନୁଷ୍ୟ ଉପରେ ଯେଉଁ ନରାଧମମାନେ ଅତ୍ୟାଚାର କରିବାକୁ ଠିକିଏ ହେଲେ କୁଣ୍ଠିତ ନୁହନ୍ତି, ସେମାନେ ମନୁଷ୍ୟ ପଦବାଚ୍ୟ ନୁହନ୍ତି । ଯେଉଁମାନେ ପରଧନ ଅପହରଣ କରିବାକୁ ଜୀବନକୁ ମଧ୍ୟ ଖାତିର ନ କରନ୍ତି ସେମାନେ ତ ସହଜରେ ପ୍ରକୃତିର ଭଣ୍ଡାରରୁ ଧନ ଆହରଣ କରି ପାରନ୍ତେ । ଏଠାରେ ନିରୀହ ସ୍ୱଦେଶୀଙ୍କ ଉପରେ ଅତ୍ୟାଚାର ନ କରି ପୋହଳା ଦ୍ୱୀପମାଳକୁ ଯାଇ ପୋହଳା ସଂଗ୍ରହ କରନ୍ତେ କିମ୍ବା ସକଳ ଦ୍ୱୀପରୁ ହାତୀଦାନ୍ତ ଆଣି ବଣିଜ ଚଳାଇ ଲାଭବାନ୍ ହୁଅନ୍ତେ । ପରିଶ୍ରମ କରି ମନୋମତ ଧନ ପାଇ

ପାରନ୍ତେ । ସମସ୍ତେ ପଦ ବାଲିଦ୍ୱୀପର ଅଗମ୍ୟ ପର୍ବତ ଉତ୍ତମରୂପେ ପରୀକ୍ଷା କରନ୍ତେ ଏବଂ ପ୍ରତ୍ୟେକ ସ୍ଥାନ ଖୋଜନ୍ତେ, ଚୀନ୍ ରାଜା ସମ୍ପତ୍ତି ସହଜରେ ଲାଭ କରି ପାରନ୍ତେ । ବଡ଼ଲୋକ ହେବାର ଇଚ୍ଛା ଥିଲେ,ଆଜି ଏହି ନଶୀଥରେ ଯେଉଁ ସାହସରେ ସ୍ୱଦେଶୀଙ୍କୁ ଆକ୍ରମଣ କଲେ, ଠିକ୍ ସେତିକି ସାହସର ସହିତ ସୁମାତ୍ରା, ଜାଭା ଓ ବାଲିଦ୍ୱୀପମାନଙ୍କରେ ଆଦିମ ଅଧିବାସୀ, ଅସଭ୍ୟ, ଅନାର୍ଯ୍ୟ, ନିପଣ୍ଡ କଳା ଲୋକମାନଙ୍କୁ ଆକ୍ରମଣ କରି, ବଶୀଭୂତ କରି ରାଜ୍ୟସ୍ଥାପନ କରି ପାରନ୍ତେ । ଆଦିମ ଅଧିବାସୀ ବନମାନଙ୍କୁ ଶିକ୍ଷିତ କରାଇ, ରାଜା ହୋଇ, ନିଜର ଗୌରବ ଓ ଜାତିର ଠେକ ବଢ଼ାଇ ପାରନ୍ତେ । ଅସଭ୍ୟ ସମାଜକୁ ଶିକ୍ଷିତ କରାଇ ପୃଥିବୀର ମଙ୍ଗଳ କରନ୍ତେ ।

ଏ ସମସ୍ତଙ୍କ କଥା ବୋଧହୁଏ ସେମାନେ ଜାଣନ୍ତି ନାହିଁ । ଏହି ତ, ସେମାନେ ନିକଟରେ ହେଲେଣି । ଏ ସମସ୍ତ କଥା ସେମାନଙ୍କୁ ଜଣାଇ ଦେବ । କେଜାଣି ବା ସେମାନଙ୍କ ମନୋଭାବରେ ପରିବର୍ତ୍ତନ ଘଟିପାରେ । ଶିବିକା ବୋଧହୁଏ ବର୍ତ୍ତମାନ ବହୁ ଦୂରରେ ହୋଇ ଯିବଣି । ଆଉ ଭୟର କାରଣ ନାହିଁ । ଅସାବଧାନତା ଯୋଗୁ ପ୍ରାଣର ସନ୍ତାନଟିକୁ ସେ ରମଣୀ ହରାଇ ବସିଲା ସିନା ।

ଦସ୍ୟୁଦଳ ନିକଟବର୍ତ୍ତୀ ହେଲେ । ଗର୍ବରେ ଛାତି ଫୁଲାଇ ସମୁଦ୍ରକୂଳଆଡ଼େ ଚାଲି ଚାଲି ଆନନ୍ଦରେ ନିଜ ନିଜ ମଧ୍ୟରେ ଗଳ୍ପ କରୁଥିଲେ । ରମଣୀକୁ ହସ୍ତଗତ କରି ପାରିଲେ ନାହିଁ ଏତିକି ଦୁଃଖ ସେମାନଙ୍କ ମନରେ ରହି ଯାଇଥିଲା । ଯାହା ସେମାନେ ଯେଉଁନିମନ୍ତେ ପଠାଯାଇ ଥିଲେ ତାହା କେତେକ ପରିମାଣରେ ସାଧନ କରି ପାରିଛନ୍ତି । ସେମାନଙ୍କ ପ୍ରଭୁ ନିଶ୍ଚୟ ସନ୍ତୁଷ୍ଟ ହେବେ । ଏହି ସମସ୍ତ ବିଷୟ କଥୋପକଥନ କରି ଯାଉଁ ଯାଉଁ ହଠାତ୍ ଦେଖିବାକୁ ପାଇଲେ କିଏ ଜଣେ ସେମାନଙ୍କ ସମ୍ମୁଖରେ ଦଣ୍ଡାୟମାନ ।

ଭଜନା ସେମାନଙ୍କର ସମ୍ମୁଖୀନ ହେଲା । ମନରେ ଅତୁଳ ସାହସ । ସେ ଲୋକଙ୍କୁ ଚକିତ କରି ଆଦେଶ ସୂଚକ ସ୍ୱରରେ କହିଲା, ଯେଉଁଠାରେ ଅଛ ସେହିଠାରେ ଦଣ୍ଡାୟମାନ ହୁଅ । ମୋର କେତୋଟି କଥା ପଚାରିବାର ଅଛି । ଉତ୍ତର ଦିଅ ।

ଭଜନାର ଆଦେଶରେ ସମସ୍ତେ ସ୍ତମ୍ଭିତ ହେଲେ । ରାତିର ଏତେବେଳେ ଜଙ୍ଗଲରେ କେହି ତାଙ୍କର ବିପକ୍ଷରେ ଠିଆ ହୋଇ ବାଧା ଦେଇ ନ ଥିଲା । ଯଦି ସେମାନଙ୍କର ସମକକ୍ଷ ଅନେକ ଲୋକ ଆସି ଏକାଥରେ ବାଧା ଦେଇଥାନ୍ତେ ସେମାନେ ଏତେ ଅବାକ୍ ହୋଇ ନ ଥାନ୍ତେ, ଭୀତ ହୋଇ ନ ଥାନ୍ତେ । କିନ୍ତୁ, ମୋଟେ ଜଣେ ଲୋକ । ସେ ଜଣକ ପ୍ରଭୁର ଆଦେଶ ପରି ଆଦେଶ ଦେଉଛି ।

ସମସ୍ତେ ଯେଉଁ ସ୍ଥାନରେ ଥିଲେ, ସେହି ସ୍ଥାନରେ ଠିଆହୋଇ ରହିଲେ । ସେମାନଙ୍କ ମଧ୍ୟରୁ କିଏ ଜଣେ ସାହସ କରି ପଚାରିଲା, ଆପଣ କିଏ ?

ଭଜନା ନ ହସି ରହି ପାରିଲା ନାହିଁ । ସେ ଆଜି ଆପଣ ହୋଇଛି । ଭାବିଲା, ଯେ ଅନ୍ୟାୟ କାର୍ଯ୍ୟକରି ପରର ସ୍ୱାଧୀନତା ହରଣ କରିଥାଏ, ଯେତେ ସାହସୀ ହେଲେ ମଧ୍ୟ ହଠାତ୍ ତାର ଭୟ ହୁଏ । ସେ ଗମ୍ଭୀର ଭାବରେ ଉତ୍ତର ଦେଲା, ମୁଁ କିଏ ଜାଣିବାକୁ ଚାହଁ ? ମୁଁ ଏହି ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତରର ରାଜା । ଆଉ ଯଦି ଅଧିକା ଜାଣିବାକୁ ଚାହଁ, ମୁଁ ଏତିକି କହିପାରେ ଯେ ମୁଁ ମହାପ୍ରତାପୀ କଳିଙ୍ଗ ରାଜବଂଶର ଜଣେ ସାମାନ୍ୟ ପ୍ରଜା । ଯାହାଙ୍କର କୀର୍ତ୍ତି କେବଳ ଭାରତ ସାରା ନୁହେଁ, ସମଗ୍ର ଜଗତରେ ଆଜି ପରିଚିତ, ମୁଁ ସେହି ମହାତ୍ମା ଲଲାଟେନ୍ଦୁ କେଶରୀଙ୍କର ଅନାଦିଷ୍ଟ ପ୍ରତିନିଧି ।

ଆମ୍ଭମାନଙ୍କର ଗତିରୋଧ କଲ କାହିଁକି ?

ବନ୍ଧୁ ଭାବରେ ଏତିକି ଜଣାଇ ଦେବାକୁ ଯେ, ତୁମର ଏ କାର୍ଯ୍ୟ ମନୁଷ୍ୟୋଚିତ ହୋଇ ନାହିଁ । ଯଦି ଧନ ପାଇବାର ଇଚ୍ଛା ଥାଏ, ଚୌରପନ ନିକୃଷ୍ଟକାର୍ଯ୍ୟ କରି, ମନୁଷ୍ୟର ଅମୂଲ୍ୟ ଜୀବନ ବିନିମୟରେ ଧନ ନେଇ, ସମାଜରେ ପ୍ରତିଷ୍ଠା ଲାଭ କରି ନ ପାର ! ଜୀବ ହିଂସା କରିବା ଉଦ୍ଦେଶ୍ୟ ଥିଲେ, ମୋ'ପରି ସମୁଦ୍ର ଗର୍ଭରୁ ଅଜସ୍ର ମାଛ ଧରି ପାର । ଜଗତରେ ଏତେ ବଣ ଜଙ୍ଗଲ ଅଛି । ତହିଁରେ ଶତ ଶତ ହିଂସ୍ରକ ପ୍ରାଣୀ ଅଛନ୍ତି । ସେହିମାନଙ୍କୁ ବଧ କଲେ ତୁମର ଜୀବହିଂସା କରିବାର ଆଶା ମେଣ୍ଟିବ । ଧନ ପାଇବାର ଇଚ୍ଛା ଥିଲେ, ମୁଁ ସହଜ ଉପାୟ ବତାଇ ଦେବି । ଯାଅ ପୋହଳା ଦ୍ୱୀପକୁ ପୋହଳା ଆଣ, ଯାଅ ମସଲା ଦ୍ୱୀପମାଳକୁ ମସଲା ଆଣ, ସିଂହଳକୁ ଯାଅ ହାତୀଦାନ୍ତ, ମୁକ୍ତା ଆଣି ବ୍ୟବସାୟ କର । ଦେଖିବ ଅଳ୍ପ ଦିନରେ ତୁମ୍ଭେମାନେ କୁବେର ହୋଇ ଉଠିବ । ଆଉ ଯଦି ରାଜ୍ୟ ସ୍ଥାପନ କରିବାର ଇଚ୍ଛାଥାଏ, ଏହି ବିଶାଳ ପୃଥିବୀରେ ସ୍ଥାନର ଅଭାବ ନାହିଁ । ଅଭାବ ଅଛି ଇଚ୍ଛା ଏବଂ ସାହସର । ତୁମର ଭାଇମାନେ ଯାଇ ସୁଦୂର ସୁମାତ୍ରା, ଜାଭା, ଲମ୍ବୋକ, ବୋର୍ଣ୍ଣିଓ ଏବଂ ସେଲିବିସ୍ ପ୍ରଭୃତି ଦ୍ୱୀପମାନଙ୍କର ଆଦିମ ଅଧିବାସୀମାନଙ୍କୁ ବଶୀଭୂତ କରି ରାଜ୍ୟ ସ୍ଥାପନ କରିଛନ୍ତି, ବସତି ସ୍ଥାପନ କରିଛନ୍ତି । ଆର୍ଯ୍ୟ ସଭ୍ୟତା ଓ ଆର୍ଯ୍ୟ ଧର୍ମର ପ୍ରଚାର କରି ନିଜକୁ ଧନୀ ଓ ଧନ୍ୟ କରିଛନ୍ତି । ଦେଶକୁ ସମୃଦ୍ଧିଶାଳୀ କରିଛନ୍ତି । ଆଜି ବ୍ରହ୍ମ ଦେଶରେ ଦେଖ, ଇରାବତୀ ନଦୀ କୂଳରେ ତୁମର ପୂର୍ବପୁରୁଷ ହିପୁସା ଏବଂ ଭଲ୍ଲିକଙ୍କର ବଂଶଧରମାନେ କିପରି ରାଜ୍ୟ ସ୍ଥାପନ କରି, ମହାପରାକ୍ରମଶାଳୀ ରାଜା ହୋଇ ଉଠିଛନ୍ତି । ତଥାପି ତୁମ ପାଇଁ ଆହୁରି ଯଥେଷ୍ଟ ସ୍ଥାନ ରହିଛି । ରାଜା ହେବାର ଇଚ୍ଛା ଥିଲେ ଶୀଘ୍ର ଯାଅ । ଯଦି ଆହୁରି ସହଜରେ ଧନ ଲାଭ କରିବାର ଇଚ୍ଛା ଥାଏ, ଯାଅ ବାଲିଦ୍ୱୀପର ଅଗଙ୍ଗ ପର୍ବତକୁ । ଜଣେ ଚୀନ୍ ରାଜା ସେହି ଅଗଙ୍ଗ

ପର୍ବତର କୌଣସି ଗୋଟିଏ ସ୍ଥାନରେ ତାଙ୍କର ବିପୁଳ ଧନ ରତ୍ନ ପୋତି ରଖିଛନ୍ତି । ସେ ଅପୁତ୍ରକ ଥିଲେ । ତୁମ୍ଭେମାନେ ସେଠାକୁ ଯାଇ ଖୋଜିଲେ ସେ ଧନ ପାଇ ପାରିବ । ଧନୀ ହୋଇ ପାରିବ । ମୋର ଉପଦେଶ ପାଳନ କରିବ କି ଭାଇମାନେ ?

ଭଜନାର କଥା ଦସ୍ୟୁଙ୍କର ହୃଦୟ ତରଳାଇ ପାରିଲା ନାହିଁ । ସେମାନଙ୍କ ମଧ୍ୟରୁ ଜଣେ ଗର୍ଜ୍ଜନ କରି କହିଲା, ଭୟ ହେଉନାହିଁ ମୂର୍ଖ, ଏକାକୀ ସାକ୍ଷାତ ଯମଦୂତଙ୍କ ସମ୍ମୁଖୀନ ହୋଇ ଗତିରୋଧ କରିବାକୁ ଇଚ୍ଛା କରୁଛୁ । ପାଗଳ ପରି ଯାହା ଇଚ୍ଛା ତାହା ଗୁଡ଼ାଏ ବକି ଆମ୍ଭମାନଙ୍କୁ ଉପଦେଶ ଦେବାକୁ ସାହସ କରୁଛୁ ? ଏପରି ଉପଦେଶ ଆମେ ଶୁଣିଛୁ । ବାଟ ଛାଡ଼ି ଆଡ଼ ହୋଇ ଯା ।

ଭଜନା କହିଲା ମୋର କଥା ତମର ମନ ଘେନିଲା ନାହିଁ । ସେଥିପାଇଁ ମୋର ଚିନ୍ତା ନାହିଁ । ଯାହା କହିଲ ଭୟ, ସେ ଭୟ ମୋଠାରେ ନାହିଁ । ମୁଁ ସତ୍ ପଥରେ ଯାଉଁ ଯାଉଁ ଯଦି ମୃତ୍ୟୁ ଆସେ ଆନନ୍ଦରେ ବରଣ କରିବି ।

କିଏ ଜଣେ ଅଟ୍ଟହାସ କରି କହିଲା ହଉ, ବର୍ତ୍ତମାନ ଆତ୍ମସମର୍ପଣ କରିବାକୁ ପ୍ରସ୍ତୁତ ହୁଅ ।

ମୁଁ କେବେ ଆତ୍ମସମର୍ପଣ କରି ନାହିଁ । ଦେହରେ ବୁନ୍ଦାଏ ରକ୍ତ ଥିବାଯାଏ ସଂସାରର ମଙ୍ଗଳ କରିବାରେ ନିଯୁକ୍ତ ଥିବି—ସେଥିରେ ମୋ'ର ଜୀବନ ଯାଉ ପଛେ । ପ୍ରସ୍ତୁତ ହୁଅ । ମୁଁ ଏକାକୀ—ତୁମେ ଅନେକ ।

ଏତିକି କହି ପଛପାଖେ ଅଣ୍ଟାରେ ଝୁଲୁଥିବା ତରବାରି ଆଣିବାକୁ ଦକ୍ଷିଣ ହସ୍ତ ବଢ଼ାଇଲା । ଆଶ୍ଚର୍ଯ୍ୟ ! କିଏ ଜଣେ ପଛଆଡ଼ୁ ତା'ର ହାତ ଧରି ପକାଇଛି, ସେ ଆଉ ହାତ ଟାଣି ଆଣି ପାରିଲା ନାହିଁ । ପଛକୁ ଚାହିଁ ଦେଲା । ସଙ୍ଗେ ସଙ୍ଗେ ଅନେକ ଲୋକ ଆସି ତା'ର ଚାରିଆଡ଼େ ଘେରିଗଲେ । ଆଉ ଉପାୟ ନାହିଁ । ଭଜନା ଏଥର ବନ୍ଦୀ ! ତାର କହିବା କଥା ମୁହଁରେ ହିଁ ରହିଲା ।

କିଏ ଜଣେ ତା'ର ଦାଢ଼ିଟାଣି ମୁଣ୍ଡ ହଲାଇ କହିଲା, ଏଥର ଆତ୍ମସମର୍ପଣ କରିବେ ତ ଭଦ୍ର ଲୋକ ?

ଭଜନା ରାଗି କରି କହିଲା, ମୁଁ କହି ଦେଇଛି, ଦେହରେ ବୁନ୍ଦାଏ ରକ୍ତ ଥିବାଯାଏ ଆତ୍ମସମର୍ପଣ କରି ନ ପାରେ । ତୁମ୍ଭେମାନେ ଚୋର, ମୋତେ କୌଶଳରେ ବନ୍ଦୀ କରିଛ । ମୋତେ ଥରେ ମୁକ୍ତ କରିଦିଅ, ମୁଁ ଏକାକୀ ତୁମ୍ଭମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି ।

ଏତେ ଅଡୁଆରେ ପଶିବୁ କାହିଁକି ? ସହଜରେ ତ ତୋତେ ବନ୍ଦୀ କରିଛୁଁ ।

କିଏ ଜଣେ ଅଟ୍ଟାକରି କହିଲା, ହେଇଯେ, ତୁ ଏହି ବାଲୁକା ପ୍ରାନ୍ତରର ରାଜାଙ୍କୁ ତୁ ବୋଲି ସମ୍ବୋଧନ କରୁଛୁ । ମା କାଳୀଙ୍କର ପ୍ରସାଦ ନିମନ୍ତେ ଏପରି ଜଣେ ଲୋକ ଦରକାର । ଅସ୍ତ୍ର ବଳାନ୍ତୁ କାହିଁକି ? ସମ୍ରାଟଙ୍କ ଦେହରୁ ସମସ୍ତ ଉକ୍ତ ପଦାକୁ କାଢ଼ି ଦିଆଯାଉ । ସେ ଆତ୍ମସମର୍ପଣ କରନ୍ତୁ ।

ଅନ୍ୟ ଜଣେ ରାଗିକରି କହିଲା, ଦେଖ, ତମେମାନେ ଭାରି ଅଭଦ୍ର । ବାଜେ କଥାରେ ପ୍ରୟୋଜନ କ'ଣ । ଆମ୍ଭେମାନେ ତାଙ୍କୁ ବନ୍ଦୀ କରିଛୁ । ବଣିକଙ୍କର ଆଦେଶ, ଯେଉଁ ବନ୍ଦୀ ସାହସୀ ବଳବାନ୍ ତାକୁ ହତ୍ୟା କରିବାର ଅଧିକାର ଆମଠାରେ ନାହିଁ । ବଣିକ ନିଜେ ଦଣ୍ଡାଜ୍ଞା ପ୍ରଦାନ କରିବେ । ତେବେ ବର୍ତ୍ତମାନ ବଣିକଙ୍କ ନିକଟକୁ ତାମ୍ରଲିପ୍ତ ଯିବା ଯାଏ ଏହାକୁ ବନ୍ଦଶା ସଙ୍ଗେ ରଖାଯାଉ । ଯାହା ଆଦେଶ କରିବେ, ତାହା କରାଯିବ । ତମରିମାନଙ୍କ ମଧ୍ୟରେ ଅନେକ ଅଛନ୍ତି, ଯେଉଁମାନେ ପ୍ରଥମେ ବଣିକଙ୍କ ବୋଇତରେ ବନ୍ଦୀ ଥିଲେ । ମୁଁ ତ ନିଜେ ଜଣେ ଥିଲି । ୟାକୁ ନେଇ ଚାଲ । ଡେରି କରିବା ମଙ୍ଗଳ ଜନକ ନୁହେଁ । ହୁଏ ତ ୟେ ଦିନେ ଆମର ଜଣେ ବନ୍ଧୁ ହୋଇପାରେ ।

ସେ ତ କେବେକାର କଥା । ୟାକୁ ଏବେ ରଖିବ କେଉଁଠି ?

ଯେଉଁଠାରେ ବନ୍ଦୀମାନେ ରହନ୍ତି ।

ସେଠି ଯେ ବନ୍ଦଶା ରହିଛି ।

ରହୁ ନା, ୟା ପୂର୍ବରୁ ତ ଅନେକ ବନ୍ଦୀ ଦିନେ ଦିନେ ରହି ଆସିଛନ୍ତି । କ୍ଷତି କ'ଣ ହେଲା । ସେମାନେ ଯେ ଦିନେ ରହି ଆରଦିନ ହାଣ ଖାଉଥିଲେ । ୟାକୁ ଅନେକ ଦିନ ରଖିବାକୁ ହେବ, ଏ ଭିତରେ ଯଦି ମହାତ୍ମା······। କଥା ଶେଷ ହେବା ପୂର୍ବରୁ ଅନ୍ୟମାନେ ହିଁ ହିଁ ହୋଇ ହସି ପକାଇଲେ । ଭଜନା ଆବଦ୍ଧ ସିଂହ ପରି ଗର୍ଜନ କରି କହିଲା, ନରାଧମ, ଭଜନା ତମରିମାନଙ୍କ ପରି ପଶୁ ନୁହେଁ ।

ଆହା ହା, ମରି ଯାଉଥାଏଁ କି । ମୁହଁ ଟିକେ ଟେକିଲୁ, ତୋର ଦାଢ଼ିଆ ମୁହଁକୁ ଟିକିଏ ଦେଖେଁ । ଏତକ କହି ଭଜନାର ଚୁଟି ଧରି ମୁଣ୍ଡ ବଙ୍କାଇ ଦେଲା ଏବଂ କହିଲା, ହଁ, ମୁହଁଟି ତ ବେଶ୍ ସୁନ୍ଦର । ୟାକୁ ଦେଖି ତ ସେ ଏକାଥରକେ ମୋହ ହୋଇଯିବ ।

ଅନ୍ୟ ଜଣେ କହିଲା ସେ ସେପରି ନୁହେଁ । ବଣିକଙ୍କଠୁଁ ତାକୁ ମାଗି ରଖିଥିଲୁ । ଆମର ସବୁ ପ୍ରଲୋଭନ, ସବୁ ଭୟ ବୃଥା ହେଲା । ସେ ବରଂ ସେହି ଅନ୍ଧାରୁଆ କୋଠରିରେ ସଡ଼ି ସଡ଼ି ମରିବ, ପଦାକୁ ଆସି ସ୍ୱାଧୀନ ହୋଇ ଆମର କଥା କରିବ ନାହିଁ । ତାକୁ ଏଥର ବଣିକଙ୍କୁ କହି ଅଣ୍ଡାମାନ୍ ପଠାଇ ଦେବା ଏବଂ ଆଉ ଦୁଇଜଣ ଆଣିବା ।

ଏହିପରି କଥୋପକଥନ କରି ବନ୍ଦୀ ସହ ସମୁଦ୍ର କୂଳକୁ ଗଲେ ।

ଭଜନା ବନ୍ଦିନୀ ଥିବା କୋଠରୀରେ ବନ୍ଦୀ ହୋଇ ଚିନ୍ତା କଲା, କିପରି ନିଷ୍ଠୁରମାନଙ୍କ ହାତରୁ ମୁକ୍ତ ହୋଇଯିବି । ସେମାନଙ୍କ କଥାରୁ ସେ ବୁଝିପାରିଥିଲା ଯେ, ତାକୁ ବନ୍ଦୀ ହୋଇ ଅନେକ ଦିନ ରହିବାକୁ ପଡ଼ିବ । ପରେ ତାର ଭାଗ୍ୟରେ କ'ଣ ଅଛି ସ୍ଥିର କରି ପାରିଲା ନାହିଁ । ଦସ୍ୟୁ ବଣିକ ହୁଏ ତ ତାର ମୃତ୍ୟୁ ଦଣ୍ଡ ଆଦେଶ କରି ପାରନ୍ତି । ଯଦିବା ମୁକ୍ତ କରନ୍ତି, ତେବେ ତାକୁ କ୍ରୀତଦାସ ପରି ତାଙ୍କର ଆଜ୍ଞା ପ୍ରତି କଥାରେ ପାଳନ କରିବାକୁ ହେବ । ସେ ଏହି ଦୁରାତ୍ମାର ଦସ୍ୟୁମାନଙ୍କର ପରି ଜଣେ ହୋଇ ରହିବ । ସେ ତ ଗୃହହୀନା ତୁଚ୍ଛଜୀବନ ନିମନ୍ତେ ବିବେକର ବିପକ୍ଷରେ ଯାଇ ନିରୀହ ଲୋକଙ୍କ ଉପରେ ଅତ୍ୟାଚାର କରିବ । ସେ ଯଦି ସ୍ୱୀକାର କରେ ତାଙ୍କରି ଦଳରେ ରହିବାକୁ, ତାକୁ ମୁକ୍ତ କରିବେ ସତ, କିନ୍ତୁ କି କାମରେ ଲଗାଇବେ ସେ ତାହା ଜାଣେନା । କେଜାଣିବା କିଛି ଅଧିକାର ଦେଲେ "ଶଠେ ଶାଠ୍ୟଂ ସମାଚରେତ୍" କରି ପଳାଇ ଯାଇ ମୁକ୍ତ ହେବ ।

ବନ୍ଦିନୀ ଯେତେବେଳେ ତାର ଦୁଃଖପୂର୍ଣ୍ଣ ଜୀବନୀ ବର୍ଣ୍ଣନା କରୁଥିଏ, ଭଜନା କବ୍‌ଜା କାଟିବାରେ ନିଯୁକ୍ତ ଥାଏ । ବନ୍ଦିନୀ ବିଷୟରେ ସେ ଆଗରୁ ପଦେ ଅଧେ କଥା ଶୁଣିଥିଲା । ସେ ସେଠାରେ କେଉଁ ଉଦ୍ଦେଶ୍ୟ ସାଧନ କରିବାକୁ ରହିଥିଲା, ତାହା ଭଜନା ଜାଣି ପାରିଥିଲା ଦସ୍ୟୁମାନଙ୍କ କଥାରୁ ।

ବନ୍ଦିନୀର ଜୀବନୀ ସେ ସମ୍ପୂର୍ଣ୍ଣ ରୂପେ ଶୁଣି ନ ଥିଲେ ମଧ୍ୟ ଯାହା ଶୁଣିଲା, ସେଥିରେ ବେଶ୍ ବୁଝି ପାରିଥିଲା, ଏ ମଣିଅାଁର ମା । ତାର ବର୍ଣ୍ଣିତ ଜୀବନୀ ସଙ୍ଗେ ରୂପେଇର ସବୁ ବର୍ଣ୍ଣନା ମିଳି ଯାଇଥିଲା । ତେଣୁ ଭଜନାର ମନ ଆନନ୍ଦରେ ନାଚି ଉଠିଲା । ସେ ନିଜର ମୁକ୍ତି ସଙ୍ଗେ ମଣିଅାଁର ଜନନୀକୁ ମଧ୍ୟ ମୁକ୍ତ କରିବାକୁ ଚେଷ୍ଟା କଲା । ସେ ସମସ୍ତ କଥା ବୁଝି ପାରିଲା, କିନ୍ତୁ ରମଣୀକୁ ସନ୍ତାନ ବିଷୟରେ କୌଣସି କଥା କହିଲା ନାହିଁ । କହିବାକୁ ଅବସର ନ ଥିଲା ।

ଏହାପରେ ଭଜନା କିପରି ମୁକ୍ତ ହେଲା ଏବଂ କିପରି ବନ୍ଦିନୀକୁ ମୁକ୍ତିର ଆଶା ଓ ସନ୍ତାନ ଦେଖିବାର ଆଶା ଦେଇ ମୁକ୍ତ କଲା ସେ କଥା ପୂର୍ବେ କୁହା ଯାଇଛି ।

ଉଭୟେ ସମୁଦ୍ର ବକ୍ଷକୁ ନେଇଁ ପଡ଼ିଥିଲେ ।

ସମୁଦ୍ର ତରଙ୍ଗ ଭେଦ କରି ଭଜନା ରମଣୀକୁ ପୃଷ୍ଠ ଦେଶରେ ବହି ଖଣ୍ଡିଆ ଦ୍ୱୀପ ଅଭିମୁଖେ ପହଁରି ପହଁରି ଚାଲିଲା । ସେତେବେଳକୁ ରାତି ଶେଷ ପ୍ରାୟ । ପଶ୍ଚିମ ସମୁଦ୍ରର ଗର୍ଭ ଅଙ୍କକୁ ଚନ୍ଦ୍ର ଧୀରେ ଧୀରେ ଅଗ୍ରସର ହେଉଛନ୍ତି । ଏଣେ ପୂର୍ବଦିଗ ଆଲୋକିତ ହେଲାଣି । ପବନ ବାଜି,ତରଙ୍ଗ ଗୁଡ଼ିକ ଅଧିକ ଅସ୍ଥିର ହୋଇ ବେଳାଭୂମି ଆଡ଼କୁ ଦ୍ରୁତଗତିରେ ଧାଇଁଛନ୍ତି । ଭଜନା ପ୍ରକୃତିର ନିର୍ଦ୍ଦୟ ଅତ୍ୟାଚାର

ନ ମାନ, ଦ୍ୱିଗୁଣ ଉତ୍ସାହରେ ପହଁରି ଚାଲିଛି । ସେ ସମୁଦ୍ର ସଙ୍ଗେ ଶରପରଚର୍ଚ୍ଚା— ସମୁଦ୍ରକୁ ଭୟ କରିବ କାହିଁ ? କଟିଦେଶରେ ଝୁଲୁଥିବା ତରବାରି ତାକୁ ଗତିରେ, ବାଧା ଦେଲା । ଭଜନା ଭାବିଲା ତରବାରିଟାକୁ ଖୋଲି ପକାଇବ, ମାତ୍ର ଯେତେବେଳେ ଯାଏ ସମ୍ପୂର୍ଣ୍ଣ ମୁକ୍ତ ନ ହୋଇଛି, ତାର ଏକମାତ୍ର ସହାୟ ତରବାରିଟିକୁ ହାତଛଡ଼ା କରିବାକୁ ଇଚ୍ଛା କଲା ନାହିଁ । କିଏ ଜାଣିଛି ପଥରେ ଆହୁରି ବିପଦ ଅଛି କି ନାହିଁ ?

ଖୁଣ୍ଟିଆ ଦ୍ୱୀପ ଆହୁରି ଅନେକ ଦୂରରେ । ଭଜନା କ୍ଳାନ୍ତ ହୋଇ ପଡ଼ିଲା । ନିକଟରେ ସମୁଦ୍ର ଉପରେ ତମ୍ବାର ଡୋଲଟି ଥରି ଥରି ଘଣ୍ଟି ବଜାଉଛି । ଏହା ଭଜନାର କୀର୍ତ୍ତି । ଡୋଲର କିଛି ଦୂରରେ ସମୁଦ୍ର ଭେଦ କରି ଖଣ୍ଡେ ଅକର୍ମଶିଳା ସମୁଦ୍ର ଉପରକୁ ମୁଖଣ୍ଡେ ଉଠିଛି ।

ଭଜନା ଖୁସି ହେଲା । ଭାବିଲା, ଯେଉଁ ଶିଳା ତାର ଜନ୍ମକାଳରୁ ସହସ୍ର ସହସ୍ର ବୋଇତ ଭାଙ୍ଗି ଅଗଣନ ଲୋକଙ୍କର ଜୀବନ ନାଶ କରିଛି, ଆଜି ସେହି ଶିଳା ତାକୁ ଆଶ୍ରୟ ଦେବ । ରମଣୀକୁ ପଚାରିଲା, ପହଁରି ଜାଣ ? ରମଣୀ ଉତ୍ତର ଦେଲା—ନାଁ ।

ଶିଳା ନିକଟରେ ହେଲେ ମଧ୍ୟ ଭଜନା କ୍ଳାନ୍ତ ହୋଇ ପଡ଼ିଲାଣି । ରମଣୀକୁ ପିଠିରୁ ଓହ୍ଲାଇ କାନ୍ଧରେ ବସାଇଲା । କିନ୍ତୁ ସେ କାନ୍ଧରେ ନ ବସି ନିଜର ଦେହକୁ ସମୁଦ୍ର ଜଳରେ ଭସାଇ ଦୁଇହାତରେ ଭଜନାର ଅଣ୍ଟାକୁ ଧରିଲା । ସମ୍ପୂର୍ଣ୍ଣ ବୋଝରୁ ରକ୍ଷା ପାଇ ଭଜନା ଟିକିଏ ସୁସ୍ଥ ବୋଧକଲା ଏବଂ ସମୁଦ୍ର ମଧ୍ୟସ୍ଥ ଶିଳା ଆଡ଼କୁ ପହଁରି ଚାଲିଲା ।

ଶିଳା ଉପରେ ରମଣୀକୁ ଓହ୍ଲାଇ, ଦୀର୍ଘ ନିଃଶ୍ୱାସ ତ୍ୟାଗକଲା । ରମଣୀ ସୁସ୍ଥ ହୋଇ କୃତଜ୍ଞତାପୂର୍ଣ୍ଣ ଚକ୍ଷୁରେ ଭଜନାକୁ ଚାହିଁଲା ।

ସେ ଧୀର ଏବଂ କୃତଜ୍ଞତାପୂର୍ଣ୍ଣ ସ୍ୱରରେ ପଚାରିଲେ, ଆପଣ କିଏ ମୋତେ ମୁକ୍ତ କରିଛନ୍ତି, ଦୟାକରି କହିବେ ଥରେ ?

କହିବାର ସ୍ଥାନ ଏ ନୁହେଁ । ଉପଯୁକ୍ତ ସ୍ଥାନରେ, ଉପଯୁକ୍ତ ସମୟରେ ବଳେ ଜାଣିପାରିବ ।

ଏତିକି କହି ଭଜନା ପଛକୁ ଚାହିଁଲା । ଯାହା ଦେଖିଲା ତହିଁରେ ତାର ମୁକ୍ତିଲାଭ ଆଶା ଏକାଥରେ ମିଳାଇଗଲା । ବେଶୀ ଦୂରରେ ନୁହେଁ, ଏହି ତ ନିକଟରେ—ଅତି ନିକଟରେ ତିନୋଟି ନୌକା ସେମାନଙ୍କୁ ଅନ୍ୱେଷଣ କରି ଛୁଟିଛି । ମୁକ୍ତିଲାଭର ସମସ୍ତ ପଥ ରୁଦ୍ଧ । ସମୁଦ୍ର ମଧ୍ୟରେ ଏତେ ଗୁଡ଼ାଏ ଲୋକଙ୍କ ସଙ୍ଗେ ଯୁଦ୍ଧ କରି ଆତ୍ମରକ୍ଷା କରିବା ସହଜ ନୁହେଁ । ହୁଏତ ମୃତ୍ୟୁ ନୋହିଲେ ବନ୍ଦୀ । ନୌକାଗୁଡ଼ିକ ଏତେ ନିକଟରେ ହେଲେଣି ଯେ, ପଳାୟନ କରି ଖୁଣ୍ଟିଆ ଦ୍ୱୀପରେ ଉପସ୍ଥିତ ହେବା ଆଶା ବୃଥା ।

ଭଜନା ରମଣୀକୁ କହିଲା, ଦେଖ ତବଠା ନୌକା କପର ତୀବ୍ର ବେଗରେ ଛୁଟିଛି ଆମକୁ ଧରିବାକୁ । ଆଉ ମୁକ୍ତିର ଆଶା ନାହିଁ । ମୋର ଇଚ୍ଛାଥିଲା ମା ପୁଅଙ୍କୁ ଏକାଠି କରି ଉଭୟଙ୍କର ଆନନ୍ଦ ବଢ଼ାଇ ଦେବି, କିନ୍ତୁ······।

ଭୀତ ହୋଇ ରମଣୀ କହିଲା—ଆହା, ଏ ହତଭାଗିନୀ ବନ୍ଦିନୀକୁ ଉଦ୍ଧାର କରିବାକୁ ଯାଇ ନିଜର ଜୀବନ ବିପଦାପନ୍ନ କଲ । ମୋତେ ସଙ୍ଗରେ ଆଣି ନ ଥିଲେ ଠିକ୍ ସ୍ଥାନରେ ପହଞ୍ଚି ସାରନ୍ତେଣି । ପରମେଶ୍ୱରଙ୍କଠାରେ ମୁଁ କି ଅପରାଧ କରିଛି କେଜାଣି ମୋତେ ଯିଏ ସାହାଯ୍ୟ କରିବାକୁ ଆସୁଛି, ତାର ସେ ମଙ୍ଗଳ କରୁ ନାହାନ୍ତି ।

ଭଜନା ତରବାରି ହାତରେ ଝୁଲାଇ କହିଲା, ଛାଡ଼ ସେ ସବୁ କଥା । ଦେହରେ ଜୀବନ ଥିବାଯାଏ, ମୁଁ ପୁନର୍ବାର ବନ୍ଦୀ ହୋଇ ଯିବି ନାହିଁ । ମୋର ମୃତ୍ୟୁ ଅନିବାର୍ଯ୍ୟ । ମୃତ୍ୟୁ ପୂର୍ବରୁ ଯାହା କହୁଛି ଶୁଣ । ଯଦି ତୁମକୁ ସେମାନେ ଜୀବନରେ ରଖନ୍ତି, ତେବେ ସନ୍ତାନ ନିମନ୍ତେ କେଭେଁ ଚିନ୍ତା କରିବ ନାହିଁ । ତମ ନିକଟରୁ ତାକୁ ଯେ ଉଦ୍ଧାର କରି ନେଇଥିଲା, ମୁଁ ତାର ସ୍ୱାମୀ । ସେ ଅନେକ ଦିନୁ ମରି ଗଲାଣି । ପୁଅର ଭାର ମୋ ଉପରେ । ସେ ଆଉ ଅଳ ଶିଶୁ ହୋଇ ନାହିଁ । ବାଲ୍ୟାବସ୍ଥା ଅତିକ୍ରମ କରିବାକୁ ବସିଲାଣି । ସ୍ନେହରେ ତା'ର ନାମ ରଖିଛୁ ମଣିଆଁ । ମୁଁ ତାକୁ ପୁତ୍ରଭଳି ସ୍ନେହ କରେ । ସେ ମୋତେ ପିତା ବୋଲି ମାନେ । ସ୍ନେହର ଋଣୀ ହୋଇ ନାହିଁ ସେ । ଆଶାକରେ, ଦିନେ ସେ ଦେଶର ଜଣେ ଶ୍ରେଷ୍ଠ ଲୋକ ହୋଇ ଉଠିବ । ତମେ ଉପହାର ଦେଇଥିବା ମଣିଟି ତା ନିକଟରେ ଅଛି । ସେହି ମଣିର ମୂଲ୍ୟରେ ନିଜକୁ ସେ ବିଖ୍ୟାତ କରି ପାରିବ । ଆଉ ଅଧିକ କହିବାର ବେଳ ନାହିଁ । ଏଥର ପ୍ରସ୍ତୁତ ହେବାକୁ ପଡ଼ିବ । ରମଣୀ ଚକ୍ଷୁରୁ କୃତଜ୍ଞତାର ଲୋତକଧାର ଗଡ଼ାଇ ହସ୍ତ ଯୋଡି ଭଗବାନଙ୍କୁ ପ୍ରାର୍ଥନା କଲା, ପରମେଶ୍ୱର, ପରୋପକାରୀର ମଙ୍ଗଳ କର ।

ବାଳକର ତରଳ ପ୍ରାଣରେ ଏପରି ଦୃଶ୍ୟ ଅସହ୍ୟ । ସ୍ୱର୍ଗର ତାରକା ଚନ୍ଦ୍ରଙ୍କୁ ଅଭିମାନ କରି ଖସି ଆସିଛି ଧରାକୁ ? ଉତ୍କଳ ତ ସବୁ ଦେବା-ଦେବୀଙ୍କର ସ୍ଥାନ, ଅସମ୍ଭବ ହେବ କାହିଁକି ? ଦେବୀ ଆଜି ବାଳିକା ହୋଇ ବାଲୁକାରାଶିର ଶୀତଳ ବକ୍ଷରେ କାହିଁକି ? ସେ ଯଦି ହିନ୍ଦୁ ହୋଇଥାନ୍ତା କେଜାଣିବା ଏପରି କଥାରେ ବିଶ୍ୱାସ କରନ୍ତା । ସେ ହିନ୍ଦୁ ନୁହେଁ କି କିଛି ନୁହେଁ । ତଥାପି ଭଗବାନଙ୍କର ଅସ୍ତିତ୍ୱ ପ୍ରତିପଦରେ ଉପଲବ୍ଧି କରିପାରେ, ତେଣୁ ଭଗବାନଙ୍କୁ ସମୟ ସମୟରେ ନିଜର ଦୁଃଖ ଜଣାଏ ।

ତାର ପାଳକ ପିତାମାତାଙ୍କର ଧର୍ମବିଶ୍ୱାସ ସମ୍ପୂର୍ଣ୍ଣ ପରସ୍ପରବିରୋଧୀ। ସେ ଉଭୟଙ୍କର ପଥ ମଧ୍ୟରେ ଚାଲେ । ରୂପେଇ ପରି ମୂର୍ତ୍ତିପୂଜା କରିବାକୁ ସେ ଶିଖିନାହିଁ କି ଭଜନାପରି ଏକାଥରେ ପରମେଶ୍ୱରଙ୍କର ସ୍ଥିତି ଅସ୍ୱୀକାର କରେ ନାହିଁ । ସେ କେବଳ ବିଶ୍ୱାସ କରେ ଜଣକଠାରେ । ସେ ଯେଉଁଠାରେ ଥାଆନ୍ତୁ ପଛେ, ସେ ନିଶ୍ଚୟ ଅଛନ୍ତି । ଏହାର ପ୍ରମାଣ ତାଙ୍କର କୀର୍ତ୍ତି ଏହି ଅନନ୍ତବିଶ୍ୱ । ଆଜି ସେହି ବିଶ୍ୱପତିଙ୍କି ଡାକି ସେ କେତେ ପ୍ରାର୍ଥନା କରୁଛି, ବାଳକାର ଅସହନୀୟ ଯନ୍ତ୍ରଣା ଦେଖି ।

ଗୋଲାକାର ପ୍ରକାଣ୍ଡ ସୂର୍ଯ୍ୟର କିରଣ ବାଳକାର ଯନ୍ତ୍ରଣା-ବିକୃତ ମୁଖରେ ପଡ଼ୁଛି । ବାଳକାଟି ଆକୁଳ ହୋଇ କ୍ରନ୍ଦନ କରିପାରୁ ନାହିଁ, କେବଳ କୁନ୍ଥନ ତା'ର ମୁଖରୁ ବହିର୍ଗତ ହେଉଛି । ଚକ୍ଷୁ ଉନ୍ମିଳିତ, ସମୟ ସମୟରେ ସ୍ପନ୍ଦିତ । ନାସିକା ଏବଂ କର୍ଣ୍ଣର ବାଉଳି ଛିଣ୍ଡି ରକ୍ତ ବୋହୁଥିଲା । ରକ୍ତସ୍ରାବ ବନ୍ଦ ହୋଇଛି, ସ୍ତନ ଗୁଡ଼ିକ ଫୁଲିଉଠି ରକ୍ତରେ ଲାଲ ଦେଖାଯାଉଛି । ମୁକ୍ତ କୁନ୍ତଳ ବାଲୁକା ଉପରେ ବିକ୍ଷିପ୍ତ । ସ୍ଥାନେ ସ୍ଥାନେ ରକ୍ତ ଧାରରେ କେଶ ବିଚିତ୍ରାବାନ୍ଧ ରଙ୍ଗ ଦେଖାଯାଉଛି । କେଉଁଠାରେ ବା କେତେ ଏକାଥରେ ବାଲି ଭିତରେ ପୋତିହୋଇ ପଡ଼ିଛି । ବାଳକା ସମ୍ପୂର୍ଣ୍ଣ ନଗ୍ନ, ଚିତିମାଡ଼ି ପଡ଼ିଛି । ସମୀରଣ ତା'ର ବହୁମୂଲ୍ୟ ବସନ ଖଣ୍ଡି ନିକଟରୁ ଉଡ଼ାଇ ନେଇ ଟିକିଏ ଦୂରରେ ପକାଇଛି ।

ଏପରି ଦୃଶ୍ୟ ବାଳକର କୋମଳ ପ୍ରାଣ ସହିବ କିପରି ? କରୁଣାର ଅଶ୍ରୁ-ବିନ୍ଦୁ ବାଳକର ଚକ୍ଷୁ ପ୍ରାନ୍ତ ଆର୍ଦ୍ର କଲା । ସେ ଯୋଡ଼ହସ୍ତରେ ପ୍ରାର୍ଥନା କଲା, 'ପରମେଶ୍ୱର, ତୁମର ପବିତ୍ର ରାଜ୍ୟରେ ଏପରି ଦୃଶ୍ୟ ଦେଖିବାକୁ ମିଳେ କାହିଁକି ? ନିରୀହ ଶିଶୁ ପ୍ରତି ଏ ଅତ୍ୟାଚାର ! ପ୍ରଭୋ, ଦୋଷୀକୁ ଦଣ୍ଡବିଧାନ କର ।

ବାଳକ ଧୀରେ ଧୀରେ ଶିଶୁର ନିକଟକୁ ଯାଇ ତାର ମସ୍ତକରେ ହସ୍ତ ସ୍ଥାପନ କଲା । ବାଳକାର ମୁଖରେ କୌଣସି ପ୍ରକାର ଚିହ୍ନ ଦେଖିବାକୁ ପାଇଲା ନାହିଁ । ସେ ପୂର୍ବପରି କେବଳ କୁନ୍ଥାଇବାକୁ ଲାଗିଲା । ବାଳକ ମଣିଆଁ ଚିନ୍ତାକଲା, କର୍ତ୍ତବ୍ୟ କ'ଣ ? ସକାଳୁ ବାପା କୁଆଡ଼େ ଗଲେ ଖୋଜି ଖୋଜି ପାଉନାହିଁ । ସମୁଦ୍ରରେ ନୌକା ନାହିଁ । ଏଥିରୁ ଅନୁମାନ, ସେ ହୁଏତ ଝୁଣ୍ଟିଆ ପାହାଡ଼ ଆଡ଼େ ଯାଇଥିବେ । ମୋତେ ନ ଉଠାଇ ଗଲେ କାହିଁକି ? ସମୁଦ୍ରକୂଳ ଆଡ଼େ ଯାଉ ଯାଉ, ଗୋଟିଏ ମସ୍ତକହୀନ ପିଣ୍ଡ ଏବଂ କିଛି ଦୂରରେ ପିଣ୍ଡହୀନ ମସ୍ତକ, ଏହାର ଅର୍ଥ ? ଆଉ ଏ ବାଳକାଟି କିଏ ? ଏଠାରେ ଏପରି ହୋଇ ପଡ଼ିଛି କିଆଁ ? ବାଳକାର ଦେହରେ ପ୍ରାଣ ଅଛି, ମାତ୍ର ସଂଜ୍ଞାହୀନା । ମୁଁ ତାକୁ କୁଟୀରକୁ ନେବି । ଯେଉଁମାନେ ତାକୁ ପରିତ୍ୟାଗ କରିଛନ୍ତି, ସେମାନଙ୍କର

ଏ ପ୍ରାଣ ଉପରେ ଅଧିକାର ନାହିଁ । ବାଳକ ମଣିଅାଁ ବାଳିକାକୁ ଉଠାଇବାକୁ ଚେଷ୍ଟାକଲା । ବାଳିକା ମୁଖ ବିକୃତ-କରି ଅଧିକ କୁନ୍ଥେଇ ଉଠିଲା । ମଣିଅାଁ ଦେଖିଲା ପିଠିପାଖେ ମନ୍ତ୍ରବନ୍ଧ ଖଣ୍ଡିଆ । ସେହି କଣ୍ଟା ସ୍ଥାନରେ କେତେ ଗୁଡ଼ାଏ ବାଲିକଣା ଲାଗି ରହିଛି । ବିଳମ୍ବ କରିବା ନିରାପଦ ନୁହେଁ । ବାଳିକାକୁ କାନ୍ଧରେ ପକାଇ, ରେଶମୀ ଲୁଗାକୁ ହାତରେ ଧରି କୁଟୀରଅଭିମୁଖେ ଚାଲିଲା ।

କୁଟୀରରେ ଉପସ୍ଥିତ ହୋଇ ଦେଖିଲା, ଦ୍ୱାର ଯେପରି ଖୋଲାଥିଲା ଠିକ୍ ସେହିପରି ଅଛି, ବାପା ଫେରି ଅାସିନାହିଁ । ଘରର ବିଛଣା ପୂର୍ବପରି ପଡ଼ି ରହିଛି । ଯତ୍ନ ସହକାରେ ବାଳିକାକୁ ଶୁଆଇ ଦେଲା, ମୁହଁ ମଡ଼ାଇ । ଘା'କୁ ଉତ୍ତମରୂପେ ପରୀକ୍ଷା କରି ଦେଖିଲା, ଘା' ମୁହଁରୁ ବାଲିଯାକ ଓଦା କନାରେ ପୋଛି ପକାଇଲା । ବଟା ହଳଦୀ ଟିକିଏ ଗରମ କରି ଘା ମୁହଁରେ ଦେଲା । ମାତ୍ର କୌଣସି ପରିବର୍ତ୍ତନ ଦେଖାଗଲା ନାହିଁ । ସେ ପୂର୍ବପରି ସଂଜ୍ଞାହୀନା ହୋଇ ପଡ଼ି ରହିଲା । ତା'କୁ ଜଗି ବସିବାକୁ ସମୟ ନାହିଁ, ଘରର ଧନ୍ଦା କରିବାକୁ ହେବ ।

ସନ୍ଧ୍ୟା ହେଲା, ଭଜନାର ଦେଖାନାହିଁ । ଅାଶ୍ଚର୍ଯ୍ୟ, ମଣିଅାଁ ଚିନ୍ତାକଲା, ବାପା ଗଲେ କୁଆଡ଼େ ? ବାଳିକା ନିମନ୍ତେ ସେ ତାଙ୍କୁ ଖୋଜିବାକୁ ଯାଇ ପାରୁନାହିଁ । ମନୁଷ୍ୟର ଚିନ୍ତା ସର୍ବଦା ଦୁଶ୍ଚିନ୍ତା ଆଡ଼କୁ ଧାବିତ ହୁଏ । ବାଳିକାର ନିକଟରେ ବସି, ତା' ଦେହରେ ହାତ ବୁଲେଇ ବୁଲେଇ ମନ ମଧ୍ୟରେ ସହସ୍ର ଚିନ୍ତାର ଢେଉ ଖେଳି ଉଠିଲା ।

ରାତି ହେଲା । ବାଳିକା କରଚୋଟ ହେବାକୁ ଚେଷ୍ଟା କଲା । ପାରିଲା ନାହିଁ । ଚକ୍ଷୁ ମେଲାଇ ଦେଖିଲା ନିକଟରେ କିଏ ଜଣେ ଉପବିଷ୍ଟ । ଦୀର୍ଘ ନିଶ୍ୱାସ ପକାଇ ନିଶ୍ଚଳ ରହିଲା । ମଣିଅାଁର ମନ ଆନନ୍ଦରେ ନାଚି ଉଠିଲା । ଆଶା ହେଲା ହୁଏତ ବାଳିକାଟି ବଞ୍ଚିଯିବ । ପଚାରିଲା, କେମିତି ଲାଗୁଛି ? ମାତ୍ର ବାଳିକା ପୁନର୍ବାର ଚକ୍ଷୁ ବନ୍ଦ କଲା ।

ପରଦିନ ପ୍ରାତଃକାଳରୁ ଉଠି ମଣିଅାଁ ପ୍ରଥମେ ବାପାର ଅନ୍ୱେଷଣ କରିବାକୁ ବାହାରିଲା । ସମୁଦ୍ର କୂଳରେ ଉପସ୍ଥିତ ହୋଇ ଦେଖିଲା ଦୁଇଟି ମୃତ ପିଣ୍ଡ ଲହରୀରେ ଭାସିଆସି କୂଳରେ ପଡ଼ୁଛି । ଲହରୀ ମାଡ଼ିଆସି ପୁନର୍ବାର ସେ ଦୁଇଟି ଭସାଇ ନେଉଛି—ସତେ କି ସମୁଦ୍ର ସେହି ମୃତପିଣ୍ଡ ଦୁଇଟି ନେଇ ଖେଳ କରୁଛି । ମଣିଅାଁ ଦେଖିଲା ସେଥିମଧ୍ୟରୁ କୌଣସିଟି ତା'ର ପରିଚିତ ନୁହେଁ ।

ସେ ସମୁଦ୍ର ପାରିହୋଇ ଖଣ୍ଡିଆ ଦ୍ୱୀପକୁ ଗଲା । ଉତ୍ତମରୂପେ ଦ୍ୱୀପର ପ୍ରତ୍ୟେକ ସ୍ଥାନ ଖୋଜିଲା । କିନ୍ତୁ ଭଜନା କାହିଁ ନାହିଁ ।

ବାପା ଗଲେ କୁଆଡ଼େ ? ଏହି ପ୍ରଶ୍ନ ତା ମନରେ ଉଦିତ ହେଲା । ଉତ୍ତର ସ୍ଥିର କରି ପାରିଲା ନାହିଁ ।

ଭଗବାନ ତାର ମୁଣ୍ଡ ଉପରେ ଭାର ଆଣି ଥୋଇ ଦେଲେଣି । ସେ ପରମେଶ୍ୱରଙ୍କୁ ପ୍ରାର୍ଥନା କଲା, ଭଗବାନ, ତାକୁ ମୁକ୍ତକର । ଯଦି ତାକୁ ବଞ୍ଚାଇବାର କଥା, ଶୀଘ୍ର ଆରୋଗ୍ୟ କର, ନୋହିଲେ ନିକଟକୁ ନେଇଯାଅ । ଛୋଟ ବାଳିକାଟି ଯନ୍ତ୍ରଣା ସମ୍ଭାଳି ପାରୁନାହିଁ ।

ବାଳିକାର ପରିଚର୍ଯ୍ୟା ନିମନ୍ତେ ତାକୁ ନିକଟସ୍ଥ ଗ୍ରାମକୁ ଯିବାକୁ ପଡ଼ିଲା । ବୈଦ୍ୟଙ୍କଠାରୁ ଔଷଧ, ଗ୍ରାମରୁ ଗୋଦୁଗ୍ଧ ଆଣି ବାଳିକାର ସେବାରେ ଲାଗିଗଲା ।

ଦେଖୁ ଦେଖୁ ସାତଦିନ ଅତୀତ ହେଲା । ଭଜନା'ର ଦେଖାନାହିଁ । ଏ ମଧ୍ୟରେ ଭଜନାର ଅନ୍ତର୍ଦ୍ଧାନ ଖବର ନିକଟବର୍ତ୍ତୀ ଗ୍ରାମମାନଙ୍କରେ ବ୍ୟାପିଗଲା । ଲୋକେ ସହାନୁଭୂତି ଦେଖାଇ ମଣିଆଁଙ୍କୁ ସାନ୍ତ୍ୱନା ଦେଲେ; ଅନେକ ଅନୁରୋଧ କଲେ ସମୁଦ୍ର କୂଳରେ ଏକାକୀ ନ ରହି କୌଣସି ଗ୍ରାମକୁ ଯାଇ ବସତି ସ୍ଥାପନ କର ।

ମଣିଆଁ ପିତାଙ୍କର ନିର୍ଦ୍ଦେଶ ବିରୁଦ୍ଧରେ ଯିବାକୁ ଇଚ୍ଛା କଲା ନାହିଁ । ଏଣେ ବାଳିକାଟି ଧୀରେ ଧୀରେ ଆରୋଗ୍ୟ ଲାଭ କରିବାକୁ ବସିଲାଣି । ଏପରି ଅବସ୍ଥାରେ ଘୂରୁଣା ଘର ଛାଡ଼ି, ପରିବର୍ତ୍ତନ କରିବା ଅନୁଚିତ ।

ବାଳିକା ଚେତନା ପାଇବା ଦିନୁ ସେ କେବଳ ଅବାକ୍ ହୋଇ ଚାରି-ଆଡ଼କୁ ଚାହୁଁଛି । ଭାବୁଛି, ସେ କେଉଁଠି ? ତା'ର ମା' ବାପ କୁଆଡେ଼ ଗଲେ, ଆଉ ଯେଉଁମାନେ ତାକୁ ସବାରୀରୁ ଓଟାରି ନେଇ ତାର ପିଠିରେ ତରବାରି ଭୁସି ଦେଇଥିଲେ, ସେମାନେ କାହାନ୍ତି ? ଯେ ତା'ର ସେବା କରୁଛି ତାକୁ ସେ କେବେହେଲେ ଏଥିପୂର୍ବରୁ ଦେଖି ନ ଥିଲା । ମାତ୍ର ତା'ର ସ୍ନେହପୂର୍ଣ୍ଣ କୋମଳ କଥାଗୁଡ଼ିକରେ ବାଳିକାର ମନରୁ ସମସ୍ତ ଦୁଃଖ ଦୂର ହୁଏ । ବର୍ତ୍ତମାନ ସେ ତାର ବାପ, ମା, ଭାଇ, ଚାକର ସବୁ । ସବୁ କାମ ସେ ଅକୁଣ୍ଠିତ ଭାବରେ କରେ ।

ମଣିଆଁ ବାଳିକାର ଶଯ୍ୟାପାଖରେ ବସି ତା'ର ନାକ ଓ କାନ କ୍ଷତରେ ଔଷଧ ଲଗାଉଛି, ବାଳିକା ଚକ୍ଷୁ ମେଲି ଚାହିଁଲା । ମଣିଆଁ ଆନନ୍ଦରେ ତାର କୋମଳ ହାତଟି ନିଜର ବାମହାତରେ ଧରି ସ୍ନେହରେ ଟିକେ ହଲାଇ ଦେଲା । ବାଳିକା ହସିଲା । ମଣିଆଁ ସୁଖ ପ୍ରକାଶକରି ପଚାରିଲା, ଭଲ ଲାଗୁଛି ?

ବାଳିକା ଉତ୍ତର ଦେଲା ନାହିଁ, ହସିଦେଲା । ମଣିଆଁ ଭାବିଲା, ବୋଧହୁଏ ତାକୁ ଭଲ ଲାଗୁଛି । ସାନ୍ତ୍ୱନା ଦେଇ କହିଲା, କିଛି ଭୟ କର ନା, ଏଥର ଭଲ

ହୋଇଯିବୁ । ଏତେ ଦିନ ହେଲାଣିତ ଖାଲି ଦୁଧ ଖାଉଛୁ, ଆଜି ଗଣ୍ଡିଏ ଭାତ ଖା ।

ଭାବନାର ନିରୁଦ୍ଦେଶ୍ୟ-ଜନିତ ଦୁଃଖ ମଣିଆଁର ମନରୁ କେତେକ ପରିମାଣରେ ତିରୋହିତ ହୋଇ ଗଲାଣି । ସେ ଏବେ ନୂତନ ଆନନ୍ଦରେ ମତ୍ତ । ସୁଶୀଳାର କୋମଳ କଥା ଏବଂ ବ୍ୟବହାରରେ ସେ ପ୍ରୀତ । ଅବଶ୍ୟ ସୁଶୀଳା ଅଦ୍ୟାପି ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରି ନାହିଁ, ତଥାପି ମଣିଆଁର ସାହାଯ୍ୟରେ ବସାଉଠା କରି ପାରୁଛି । ବୁଲାବୁଲି ମଧ୍ୟ ଟିକିଏ ଟିକିଏ କରି ପାରିଲାଣି । ଏଣିକି ବୁଲିଲାବେଳେ ଅଣ୍ଟା ପାଖରୁ କାଟପରି ଭାବରେ ସମଗ୍ର ଶରୀରଟା ଆଗ ଆଡ଼କୁ ଟିକିଏ ବଙ୍କା ହୋଇ ପଡେ । ସିଧା ହୋଇ ବୁଲିବାକୁ ଚେଷ୍ଟାକଲେ କଷ୍ଟ ହୁଏ । ମଣିଆଁ ଭାବେ ବୋଧହୁଏ ପିଠିର ଘା'ଟା ଏକାଥରେ ଶୁଖି ଯାଇ ନ ଥିବାରୁ ଏପରି କଷ୍ଟ ହେଉଛି, ଶୁଖିଗଲେ ସିଧା ହୋଇ ବୁଲିପାରିବ ।

ସେ ଦିନ ମଣିଆଁ ଏବଂ ସୁଶୀଳା କୁଡ଼ିଆର ପିଣ୍ଡାରେ ବସି ସାନ୍ଧ୍ୟ ଆକାଶର ସୌନ୍ଦର୍ଯ୍ୟ ଦେଖୁଥିଲେ । ମଣିଆଁ ଆକାଶରୁ ଚକ୍ଷୁ ଫେରାଇ ପାଞ୍ଚ ଛ ବର୍ଷର ବାଳିକା ସୁଶୀଳାକୁ ଚାହିଁଲା । ଦେଖିଲା ତା'ର ମନରେ ସୁଖ ନାହିଁ । କାହୁଁକି ଆଉଜି ବସି କ'ଣ ଭାବନାରେ ଲାଗିଯାଇଛି । ମଣିଆଁ ତା'ର ଚିନ୍ତାରେ ବାଧା ଦେଇ ଜ୍ୟେଷ୍ଠ ଭ୍ରାତାର ସ୍ନେହମିଶ୍ରିତ ସ୍ୱରରେ ପଚାରିଲା, ସୁଶୀଳା, ଏତେ କ'ଣ ଭାବୁଛୁ ବସି ? ବାଳିକାର ମୁଣ୍ଡରେ ହାତ ବୁଲାଇ ନିକଟକୁ ଘୁଞ୍ଚିଯାଇ ପଚାରିଲା, କ'ଣ ଭାବୁଛୁ ଏତେ, କହ ଭଉଣୀ, ତୋ ମୁହଁଟି କାହିଁକି ଆଜି ଶୁଖି ଯାଇଛି ?

ସୁଶୀଳା ମଣିଆଁର ହାତ ଧରି ହସି ହସି ପଚାରିଲା ଭାଇ, ତମେ କିଏ ?

ମୁଁ ପରା ତୋ ଭାଇ ।

ସୁଶୀଳା ଭାଇର କାନ୍ଧରେ ଢଳି ପଡ଼ି ପୁନର୍ବାର ପ୍ରଶ୍ନକଲା, ତୁମେ ଏଠି କାହିଁକି ଅଛ ? ମା' ମୋର କାହିଁ ? ବାପା କାହିଁ ? ଆମର କୋଠା କାହିଁ ? କିଛି ତ ଏଠି ନାହିଁ । ଏଁ ତ ଆମ ଘର ନୁହେଁ ? ତମେ ତ ମୋ ଭାଇ ପରି ଦିଶୁ ନାହଁ ।

ଆଚ୍ଛା, ତୁ ତୋର ବାପ ମା'ଙ୍କ ନିକଟକୁ ଯିବାକୁ ଇଚ୍ଛାକରୁ ?

ହଁ, ସେମାନେ କାହାନ୍ତି ?

ତୋ'ର ଘା ଭଲ ହୋଇ ଯାଉ, ମୁଁ ନେଇ ତୋ ବାପ ମାଙ୍କ ପାଖରେ ତତେ ଛାଡ଼ିଦେଇ ଆସିବି ।

ତମେ ଏକା ରହିବ ଆମ ଘରେ ।

ମୋ ଘରତ ଏଠି । ମୁଁ ତତେ ଛାଡ଼ି ଆସିଲେ ଏଇଠି ରହିବ । ତମ ଘରେ ରହିବ ନାହିଁ ।

ଏଠି ତ ଆଉ କେହି ନାହିଁ, ତମେ ଏକା ରହିବ ?

ହଁ ଏକା ରହିବ ।

ଡର ମାଡ଼ିବ ନାହିଁ ? ହଁ କଣ୍ଟଯୁ ଡର ମାଡ଼ିବ ।

ବାଳକା ମଣିଆଁ ଆଗକୁ ଆସି ଅନୁରୋଧ କଲା, ନା ତମେ ଏଠି ଏକା ରହିବ ନାହିଁ । ମୋ ସାଙ୍ଗେ ଯିବ । ନଇଲେ ପଛେ ମୁଁ ରହିବ ଏଠି ।

ମଣିଆଁ ବାଳକାର ମୁହଁରେ ମୁହଁ ଲଗାଇ ଗେଲକଲା ।

ସ୍ନେହରେ ହାତ ଦୁଇଟି ବେକର ଚାରିପାଖେ ବୁଲାଇ କହିଲା, ହଉ ଭଉଣୀ, ତୁ ଯାହା କହିଲୁ ତାହା ହେବ ।

ମଣିଆଁ ସୁଶୀଳାକୁ ପଚାରିଲା, ତୋର ବାପାଙ୍କ ନାମ କ'ଣ କହି ପାରିବୁ କି ? ମୁଁ ଚେଷ୍ଟା କରିବି, ତୋତେ ନେଇ ସେମାନଙ୍କ ପାଖେ ଛାଡ଼ିଦେବାକୁ ।

ବାପାଙ୍କ ନା କ'ଣ ମୁଁ ଜାଣେ ନାହିଁ । ତାଙ୍କର ବଡ଼ ବଡ଼ ନିଶ ଅଛି, ଦାଢିଅଛି । ତାଙ୍କ ମୁଣ୍ଡରେ ଗୋଟାଏ ଚିହ୍ନ ଅଛି । ମୋତେ ସେ ଗେଲ୍ହା କଲାବେଳେ ମୁଁ ସେ ଖଣ୍ଡିଆକୁ ଦରାଣ୍ଡି ପଚାରେ, ବାପା, ଏ କ'ଣ ? ସେ କହନ୍ତି, ସେ ପିଲାଦିନେ ପଡ଼ି ଯାଇଥିଲେ, ସେଇ ଚିହ୍ନ ରହିଛି । ମୋର ଯୋଉ ଭାଇ ଅଛି ସେ ତମର ମିତକା । ତାଙ୍କୁ ମୁଁ ସାଧୁ ଭାଇ ବୋଲି ଡାକେ ।

ତମ ଘର କୋଉ ଗାଁରେ ?

ଆମ ଘର ଯୋଉଠି ସେଠି ବହୁତ କୋଠାଅଛି । ଆମର ବି କୋଠା ଘର ଅଛି । ଚାଳଘର ଭାରି କମ୍ । ସେଠି ସବୁବେଳେ ବହୁତ ଲୋକ ଯା ଆସ କରନ୍ତି । ଏଠି ତ କେହି ନାହିଁ । ଆମ ଘର ପାଖେ ସୁଧୀର ଘର । ସୁଧୀ ଆମ ଘରକୁ ସବୁବେଳେ ଆସେ । ସେ ମୋ ସଙ୍ଗେ ଖେଳେ । ବୋଉ କହେ, ସେ ଟୁଆଟି ଭାରି ସୁନ୍ଦର, ବଡ଼ ହେଲେ ତାକୁ ସେ ବୋହୂ କରିବ । ଆମ ଘର ଆଗରେ ଯେଉଁ ବଡ଼ ଓସ୍ତଗଛ ସେଥିରେ ବହୁତ ହନୁ ମାଙ୍କଡ଼ ଥାନ୍ତି । କୋଠା ଉପରେ ଚଢ଼ି ସାଧୁଭାଇ ତାଙ୍କୁ ଠେକା ମାରେ । ସେମାନେ ଦାନ୍ତ ଦେଖାଇ ମୋତେ ଗୋଡ଼ାଇ ଆସନ୍ତି । କାହିଁ, ଏଠି ତ ହନୁ ନାହାନ୍ତି ?

ତମ ଘରପାଖକୁ ସମୁଦ୍ର କେତେ ବାଟ ?

ଆମ ଘରପାଖକୁ ବେଶି ଦୂର ନୁହେଁ । ବାପାଙ୍କ ସଙ୍ଗେ ମୁଁ ଅନେକ ଥର ବୋଇତ ଦେଖିବାକୁ ସମୁଦ୍ର କୂଳକୁ ଯାଇଛି । କେତେ ରାଇଜରୁ କେତେ

ବୋଇତ ଆସି ସେଠି ଲାଗେ । ଥରେ ଥରେ ମାଇପେ ସବୁ ବୋଇତ ବନ୍ଦେଇ ଆଣିବାକୁ ସମୁଦ୍ର କୂଳଆଡ଼େ ଯାନ୍ତି । ମୁଁ ତାଙ୍କ ସଙ୍ଗେ ଯାଏ ।

ଆମ ମାମୁଙ୍କ ଘର ଠିକ୍ ସମୁଦ୍ର କୂଳରେ । ମାମୁ ଘରେ ଥିବାଯାଏ ମୁଁ ମାମୁଙ୍କ ସାଙ୍ଗରେ ସମୁଦ୍ର କୂଳରେ ବୁଲୁଥାଏ । ସେ ମୋତେ କାଖକରି ସମୁଦ୍ର ଆଡ଼କୁ ହାତ ବଢ଼ାଇ କହନ୍ତି, ଦେଖ, ବୋଇତ ଆସୁଛି । ତୋ ମଝିଆ ମାମୁ ଫେରି 'ଆସୁଛି ଘରକୁ । ତୋତେ ସେ କେତେ ଭଲପାଇବ ।

ସମୁଦ୍ର ଆଡ଼କୁ ଅନେଇ ରହୁଁ । ବୋଇତ କୂଳରେ ଲାଗେ । ମଝିଆ ମାମୁ ଆସନ୍ତି ନାହିଁ । ମୁଁ ଦେଖିଛି ବଡ଼ ମାମୁଙ୍କ ଆଖିରୁ ଲୁହ ଝର ଝର ହୋଇ ଝରି ପଡ଼େ । ମୁଁ ପଚାରେ, ମାମୁ, ତୁମେ କାନ୍ଦୁଛ କାହିଁକି ? ସେ ମୋତେ ଗେଲ୍ହା କରି କହନ୍ତି, ତୁ ମୋର ଝିଅ, ତତେ ମୁଁ ଝିଅ କରିବି ? ତୁ ମୋ ଝିଅ ହେବୁଟି ? ମୁଁ କହେ, ହଁ ମୁ ତୁମ ଝିଅ ହେବି । କହ ମାମୁ, ତୁମେ କାହିଁକି କାନ୍ଦୁଥିଲ ?

ନାଇଁରେ ଝିଅ, ତୋ ମଝିଆ ମାମୁ କଥା ମନେ ପଡ଼ିଗଲା ଯେ ସେଥିପାଇଁ କାନ୍ଦ ମାଡ଼ିଲା ।

ମୁଁ ପଚାରେ, ମୋ ମଝିଆଁ ମାମୁ କାହିଁ ? ମୁଁ ତ ତାଙ୍କୁ ଦେଖି ନାହିଁ ? ମାମୁ କହନ୍ତି, ସେ ବହୁତ ଦିନରୁ ସମୁଦ୍ରକୁ ବଣିଜ କରିବାକୁ ଯାଇଛି । ତା ସଙ୍ଗେ ତୋ ମାଇଁ ମଧ୍ୟ ଯାଇଛି । ଆଜକୁ ବହୁତ ଦିନ ହେଲାଣି, ସେ ମସଲା ଦ୍ୱୀପରୁ ଖଣ୍ଡେ ଚିଠି ଦେଇଥିଲା । ଆଜଯାଏ ଫେରି ନାହିଁ । ତାର ଗୋଟିଏ ପୁଅ ହୋଇଛି ବୋଲି ଲେଖିଥିଲା । ସେମାନେ ଏତେ ଦିନ ହେଲା ଫେରି ନ ଥିବାରୁ, ତାଙ୍କ ନାଁରେ ଘରେ ଶୁଦ୍ଧ ହୋଇ ସାରିଲାଣି ।

ମଣିଆଁ ବଡ଼ ଆଗ୍ରହର ସହିତ ବାଳିକାର ସମସ୍ତ କଥା ଶୁଣୁଥିଲା । ବାଧା ଦେଇ ପଚାରିଲା, ତୋ ମାମୁଙ୍କ ନା କଣ ?

ମୁଁ ଜାଣେ ନାହିଁ । ମୋ ମାମୁଙ୍କ ବାପା ଭାରି ବୁଢ଼ା । ତାଙ୍କୁ ମାମୁଙ୍କ ଘରେ ସମସ୍ତେ ମାନନ୍ତି । ସେ ମୋତେ ଭାରି ଭଲ ପାନ୍ତି । ମଣିଆଁ ଭାଇ, ମତେ ଯଦି ତମେ ମୋ ମାମୁ ଘରେ ନେଇ ଛାଡ଼ିଦେଇ ଆସନ୍ତ, ମତେ ଅଜା ଆମ ଘରକୁ ପଠାଇ ଦିଅନ୍ତେ । ମଣିଆଭାଇ ମତେ କେମିତି ଏଠିକି ଆଣିଲ ? ସେ ଦିନ ରାତିରେ ଡକାଇତମାନେ ମୋ ସବାରି ବନ୍ଦ କରି ରଖିଲେ । ମୁଁ ଦ୍ୱାରବାଟେ ଆର ଖଣ୍ଡିକ ସବାରିକୁ ଅନାଇଁ ମା'କୁ ଡାକି କେତେ କାନ୍ଦିଲି । ଆମର ଲୋକ ଗୁଡ଼ାକ ଯିଏ ଯୁଆଡ଼େ ପଳେଇଲେ ମତେ ଏକୁଟିଆ ଛାଡ଼ି । ଡକାଇତ ଜଣେ ମତେ ଟାଣିନେଲା, ମୋ ଦେହରୁ ସବୁଯାକ ଅଳଙ୍କାର କାଢ଼ି ନେଲା । ମୁଁ ସେତେବେଳେ କାଠପରି ଠିଆ ହୋଇଥିଲି । ସେଥି ଭିତରୁ କିଏ ଜଣେ ଆସି ମୋ ପିଠିରେ ଛୁରି ଭୁସି ଦେଲା । ମୁଁ ପଡ଼ିଗଲି । ତାପରେ ଆଉ କ'ଣ ହେଲା ମୁଁ କହିପାରିବି ନାହିଁ । ମୁଁ

ଯେତେବେଳେ ଆଖି ଫିଟାଇ ଅନାଏଁ, ଦେଖିଲି ତମେ ମୋ ପାଖେ ବସିଛ । ମୁଁ ତୁମକୁ ଚିହ୍ନି ପାରିଲି ନାହିଁ ।

ମଣିଆଁ କହିଲା, ମୋ ସୁନା ଭଉଣୀଟି, ମୋ ପାଖକୁ ଆ, ମୁଁ ତତେ ଟିକିଏ କାଖକରି ଗେଲ୍ହାକରେ । ଏତିକି କହି ମଣିଆଁ ସୁଶୀଳାକୁ ପାଖକୁ ଆଣି ତା'ର କୋମଳ ଗଣ୍ଡସ୍ଥଳ ଚୁମ୍ବନ କଲା । ସୁଶୀଳା ଆନନ୍ଦରେ ଭାଇର କାନ୍ଧରେ ମୁଣ୍ଡ ବଙ୍କାକରି ଢଳି ପଡ଼ିଲା ।

ମଣିଆଁ ସ୍ନେହରେ ତାର ପିଠିରେ ହାତ ବୁଲାଉ ବୁଲାଉ କହିଲା, ଠାକୁରେ ତତେ ମଲାଠଉଁ ବଞ୍ଚାଇଛନ୍ତି । ସୁଶୀଳା, ତୋତେ ଆଉ ପୂର୍ବ କଥା ଭାବିବାକୁ ଦେବି ନାହିଁ । ବର୍ତ୍ତମାନ ସେ ସବୁ ଭୁଲିଯା, ମୁଁ ତତେ ଅନେକ ଗଳ୍ପ କହୁଛି । ସେ ସବୁ ଯେପରି ମନେ ରଖିଛୁ, ତୋର ଏ ଅତୀତ ଜୀବନକୁ ତୁ ସେହିପରି ଗୋଟିଏ ଗଳ୍ପ ବୋଲି ଭାବିନେ । ଏହି ଭୟଙ୍କର ବାଲୁକା ପ୍ରାନ୍ତରରେ ମୋତେ ଏକାକୀ ଛାଡ଼ି, ଗୋଟି ଗୋଟି ହୋଇ ସମସ୍ତେ ଚାଲି ଯାଇଛନ୍ତି । ପରମେଶ୍ୱର ମୋର ନିର୍ଜନତା ଦୁଃଖ ଦୂର କରିବେ ବୋଲି ତୋତେ ମୋ ନିକଟକୁ ପଠାଇ ଦେଇଛନ୍ତି । ଏହି ନିର୍ଜନ ସ୍ଥାନରେ ତୁହି ମୋର ସୁନାର କଣ୍ଢେଇଟି ଏକା ମୋର ହୃଦୟର ଆନନ୍ଦ । ତୋତେ ମୋର ହୃଦୟରୁ କଦାପି ବିଚ୍ଛିନ୍ନ କରି ପାରିବି ନାହିଁ ଭଉଣୀ, ନା, କଦାପି ନୁହେଁ । ଆଉ ଦିନେ କେବେ ମୋତେ ଅନୁରୋଧ କରିବୁ ନାହିଁ ତୋତେ ତୋ ଘରେ ଛାଡ଼ି ଆସିବାକୁ; କହ, ଅନୁରୋଧ କରିବୁ ନାହିଁ ।

ମଣିଆଁ ଭାଇର ସ୍ନେହ ରକ୍ଷା କରିବାକୁ ସୁଶୀଳା ମୁହଁ ବୁଲାଇ କହିଲା; ହଉ, ଭାଇ, ହଉ, ଆଉ କେବେ କହିବି ନାହିଁ ।

ମଣିଆଁର ଜୀବନରେ ଘୋର ପରିବର୍ତ୍ତନ ଘଟିଛି । ନୂତନ କାର୍ଯ୍ୟ, ନୂତନ ଆନନ୍ଦରେ ସେ ନିମ୍ନଗ୍ନ । ସଂସାରର ସମସ୍ତ ଭାର ଏବେ ତା ମୁଣ୍ଡରେ । ମାଛଧରା, ଘରର ରୋଷାଇ କାର୍ଯ୍ୟ ସବୁ ସେ ନିଜ ହାତରେ କରେ । ସୁଶୀଳା, ବାଳିକା ସେ, ଗୃହକାର୍ଯ୍ୟ କରିପାରିବ ବା କେଉଁଠୁ ? ମଣିଆଁ ନାହିଁ କରୁଥିଲେ ମଧ୍ୟ, ସେ ତା'କୁ ଛୋଟ ଛୋଟ କାର୍ଯ୍ୟରେ ସାହାଯ୍ୟ କରିଥାଏ । ତହିଁରେ ସେ ଆନନ୍ଦ ଉପଭୋଗ କରେ ।

ମଣିଆଁ ଟିପାକାଠି ଖଣ୍ଡି ଧରି ସମୁଦ୍ର ଭିତରେ ପଶେ । ପହଁରି ପହଁରି ମାଛ ଧରିବାକୁ ଖଣ୍ଡିଆଦ୍ୱୀପ ଅଭିମୁଖେ ଯାଏ । ସୁଶୀଳା ସମୁଦ୍ର କୂଳରେ ଠିଆ ହୋଇ ଅନିମେଷ ନୟନରେ ତାହାର ଆଡ଼କୁ ଚାହିଁରହିଥାଏ । ଠିକ ପରେ

ଗୋଟିଏ ଲହଡ଼ି ପାରହୋଇ ନାଚି ନାଚି ସେ ସମୁଦ୍ର ଭିତରକୁ ଧୀରେ ଧୀରେ ଅଗ୍ରସର ହେଉଥାଏ । ସୁଶୀଳା କୂଳରେ ଠିଆହୋଇ ଚିତ୍କାର କରି ଡାକୁଥାଏ, ଆନନ୍ଦରେ ବେଳାଭୂମି ଉପରେ ନାଚୁଥାଏ । ଦେଖୁ ଦେଖୁ ସମୁଦ୍ର ମଧ୍ୟରେ ମଣିଆଁ କାହିଁ କେତେ ଦୂରରେ ଲୁଚିଯାଏ । ସୁଶୀଳା ଚକ୍ଷୁ ଫେରାଇ ସମୁଦ୍ର କୂଳରେ ବସିପଡ଼ି ବାଲିଘର ତୋଳିବାରେ ଲାଗିଯାଏ । ସମୁଦ୍ରର ଢେଉ ଆସି ବାଲିର ଘରଟିକୁ ଭାଙ୍ଗିଭୁଙ୍ଗି ସମାନ କରିଦିଏ । ସୁଶୀଳା ହତାଶ ନ ହୋଇ ପୁନର୍ବାର ଘର ତୋଳେ । କେବେ କେବେ ବାଲିର ଛୋଟ ଛୋଟ ପାହାଡ଼ ଗଢ଼େ । ନିଷ୍ଠୁର ପ୍ରକୃତି—ବାଳିକା ବୋଲି ତା'ର ମନରେ ଟିକିଏ ହୋଇ ଦୟା ଆସେ ନାହିଁ । ଏତେ କଷ୍ଟ, ଏତେ ଯତ୍ନରେ ତୋଳିଥିବା ଘର ଏବଂ ପାହାଡ଼ ହସି ହସି ଭସାଇ ନିଏ । ଘୋର ଗର୍ଜନ କରି ବାଳିକାକୁ ଭୟ ଦେଖାଏ । ଡରିବାର ପିଲା ସେ ନୁହେଁ । ସେ ଉଦ୍ୟମ ରୂପେ ଜାଣେ, ସମୁଦ୍ର ପୁନର୍ବାର ପଛକୁ ଫେରିଯିବ । ପୁନର୍ବାର ସେ ନିଜର ଖେଳରେ ଲାଗିଯାଏ ।

ମଣିଆଁର ଅନୁପସ୍ଥିତିରେ ସୁଶୀଳା ସମୁଦ୍ର କୂଳର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଦଉଡ଼ଯାଏ । ପଛଆଡ଼େ ତା'ର ମୁକ୍ତକୁନ୍ତଳ ସମୀରଣରେ ଦୋହଲୁଥାଏ । ପ୍ରକୃତିସଙ୍ଗେ କ୍ରୀଡ଼ା କରିବାକୁ ତାକୁ ଭଲ ଲାଗେ । ପଶ୍ଚିମ ପବନ ବାଲି ଉଡ଼ାଇ ତା'ର ଆଡକୁ ଧାବିତ ହେଲେ ସେ ମଧ୍ୟ ହାତ ଟେକି ଆନନ୍ଦରେ ନାଚି ନାଚି ତାକୁ ଆଲିଙ୍ଗନ କରିବାକୁ ଯାଏ । ବାଲିରେ ସମଗ୍ର ଶରୀର ଧୂସରିତ ହୋଇଯାଏ । ଆଜାନୁଲମ୍ବିତ କେଶଗୁଚ୍ଛ ଭିତରେ ବାଲିକଣା ଭରତି ହୋଇଯାଏ । ଝାଡ଼ିବାକୁ ତର ନଥାଏ । ଦେଖୁ ଦେଖୁ ସେ ଆହୁରି ଗୋଟାଏ ଖଣ୍ଡିଆଲୁଅ ଦୂରରୁ ଉଡି ଆସୁଛି, ତାକୁ ଯାଇ ଧରିବାକୁ ହେବ । ଖଣ୍ଡିଆଲୁଅର ଦେହରେ ନିଜର ଦେହକୁ ମିଶାଇ ଏକାକାର କରିବାକୁ ହେବ ।

ସେ ଆକାଶର ବିହଙ୍ଗମକୁ ଅନୁକରଣ କରି ଉଡ଼ିଯିବାକୁ ଇଚ୍ଛା କରେ— ପକ୍ଷୀଟି ଯେପରି ନୀଳ ଆକାଶରେ ନିଜର ଦେହକୁ ମିଶାଇ ଆନନ୍ଦରେ ରବ କରି କରି ଉଡ଼ି ଯାଉଛି । ସୁଶୀଳାର ଇଚ୍ଛା ହୁଏ, ଆକାଶରେ ଉଡ଼ି ଉଡ଼ି ଭାସି ଯାଉଥିବା ସୁନେଲି ରଙ୍ଗ ସଙ୍ଗେ ମିଶିଯିବ, ପୃଥିବୀର କେତେ କେତେ ମୋହନ ଦୃଶ୍ୟ ଦେଖି ଆନନ୍ଦରେ ଆତ୍ମହରା ହୋଇ ପଡ଼ିବ ।

ସୁଶୀଳା ସମୁଦ୍ର ଭିତରେ ପଶି ସମୁଦ୍ରର ଢେଉ ଭାଙ୍ଗେ । ସକାଳୁ ସନ୍ଧ୍ୟାଯାଏ ସମୁଦ୍ର ଜଳରେ ମାଛ ପରି ପଡ଼ି ମଣିଆଁ ଭାଇର ଅପେକ୍ଷା କରୁଥାଏ । ମଣିଆଁ ଆସି ପହଞ୍ଚିଗଲେ, ସେ ଭାରି ଖୁସି ହୁଏ ।

କେବେ କେବେ ମଣିଆଁ ତାକୁ ହରିଣ ପଛରେ ଗୋଡ଼ାଉ ଥିବାର ଦେଖି ନିକଟକୁ ଧାଇଁଯାଏ । ଲୁଗା କାନିରେ ତାକୁ ପୋଛିପାଛି ଦେଇ ଗେହ୍ଲା କରେ, କେତେ ବୁଝାଏ । ଭଉଣୀଟି—ମୋର, ସୁନାଟି ମୋର, ଆଉ କେବେ ଖରାରେ

ସେପରି ଦୌଡ଼ିବୁ ନାହିଁ । ମୁଁ ଯେ ସିନା ତୋର ପିଠି ଭୂମି ଦେଇ ଥିଲି, ବାଲୁହରିଣ ସେଠି କଣା କରିଦେବ ।

ପରଦିନ ମଣିଆଁ ସମୁଦ୍ରକୁ ମାଛ ଧରିବାକୁ ଗଲାଗଲେ ସୁଶୀଳା ପୁନର୍ବାର ତାର ଖେଳରେ ଲାଗିଯାଏ ।

ସୁଶୀଳା ଗଳ୍ପ ଶୁଣିବାକୁ ଭଲ ପାଏ । ମଣିଆଁକୁ ଅନେକ ଥର ଗପ କହିବାକୁ ଅନୁରୋଧ କରେ । ମଣିଆଁ ଘରର କାମ ଧନ୍ଦା ଶେଷ କରି ବିଶ୍ରାମ କରୁଥିବା ସମୟରେ ଗଳ୍ପ କହେ । ସେ କହେ ରୂପେଇର କଥା, ଭଜନାର କଥା, ନିଜର କଥା । କପରି ରୂପେଇ ତାକୁ ଭଲ ପାଉଥିଲା, କପରି ତାକୁ ଲେଖି ପଢ଼ି ଶିଖାଇଛି, ଇତ୍ୟାଦି ଇତ୍ୟାଦି ।

ଅନ୍ୟର ମଧ୍ୟ କହେ, ଭଜନା ସମୁଦ୍ରରେ ବଣିଜ କରୁଥିବା ସମୟରେ ଯାହା ଯାହା ଘଟିଥିଲା । କେବେ କେବେ ମନଗଢ଼ା ଭୂତର କଥା କହେ । ପୁରୁଣା କଥାଗୁଡ଼ା ବାରମ୍ବାର କହୁଥିଲେ ମଧ୍ୟ ସୁଶୀଳାକୁ ସବୁ ନୂଆ ନୂଆ ଲାଗେ ।

ମଣିଆଁ ପାଖରେ ଦୁଇଖଣ୍ଡି ଧନୁ ରଖିଛି । ଧନୁଗୁଡ଼ିକ ଏପରି ଗଢ଼ା ଯେ କେବଳ ତନ୍ତ୍ର ପରିବର୍ତ୍ତନ କରିଦେଲେ ସେ ସବୁ ବାଟୁଳିଖଡ଼ାରେ ପରିଣତ ହୋଇ ପାରେ । ସେହି ଧନୁ ନେଇ ଆଜିକାଲି ସମୟ ସମୟରେ ମଣିଆଁ ଦୂରରୁ ବାଲୁହରିଣମାନଙ୍କୁ ଆକ୍ରମଣ କରିଥାଏ । ସୁଶୀଳା ତାକୁ ସାହାଯ୍ୟ କରେ । ବାଲୁହରିଣ ଚରୁଥିବା ସମୟରେ ସେମାନଙ୍କ ମଧ୍ୟରୁ ଜଣେ ଏକ ପାଖରେ ଏବଂ ଆରକ ଅନ୍ୟ ପାଖରେ ଥାଇ ଆକ୍ରମଣ କରନ୍ତି । ଆହତ ହରିଣ ପଳାଇବାକୁ ଚେଷ୍ଟା କଲେ ଏ ଦୁହିଙ୍କ ହାତୁଡ଼ରୁ ଖସିଯାଇ ପାରେ ନାହିଁ ।

କେବେ କେବେ ବାଟୁଳିଖଡ଼ା ଧରି ଆକାଶରେ ଉଡ଼ି ଯାଉଥିବା ପକ୍ଷୀମାନଙ୍କୁ ଲକ୍ଷ୍ୟ କରନ୍ତି । ଅଭ୍ୟାସ କରି କରି ଏପରି ସିଦ୍ଧହସ୍ତ ହୋଇଗଲେ ଯେ, ଉଡ଼ନ୍ତା ଚଢ଼େଇକୁ ବାଟୁଳି ମାରି ତଳେ ପକାଇବା ଏମାନଙ୍କୁ ନିତାନ୍ତ ସହଜ ବୋଲି ମନେ ହେଲା । କାଣ୍ଡବିନ୍ଧିବା ଅପେକ୍ଷା ବାଟୁଳିଖଡ଼ା ମାରିବାରେ ସୁଶୀଳା ମଣିଆଁକୁ ଅକ୍ଳେଶରେ ହରାଇ ପାରେ । ଯେଉଁ ଦିନ ମଣିଆଁ ସମୁଦ୍ର ଭିତରକୁ ମାଛ ଧରିବାକୁ ଯାଏ, ସୁଶୀଳା ପୋଖରୀରୁ ପଙ୍କ ଆଣି ବାଲି ମିଶାଇ ବାଟୁଳି ବଳେ, ସମୁଦ୍ର କୂଳରୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଦଉଡ଼ି ବାଟୁଳିଖଡ଼ା ଧରି ଛୋଟ ଛୋଟ ଚଢ଼ାଇ ମାରେ ।

ସେଦିନ ମସ୍ତବଡ଼ କାଣ୍ଡ ଘଟିଗଲା । ସୁଶୀଳା ଅଜାଣତ ଭାବରେ ବାଟୁଳି ମାରୁ ମାରୁ ଦେଖିଲା, ଜଣେ ଅଶ୍ୱାରୋହୀ ଦୂରରେ ଘୋଡ଼ା ଛୁଟାଇ ଦଉଡ଼ୁଛନ୍ତି । ବାଟୁଳି ଅଶ୍ୱାରୋହୀର ଦେହରେ ବାଜିଲା । ସେ ସଙ୍ଗେ ସଙ୍ଗେ ଘୋଡ଼ାରୁ ଖସି ତଳେ

ପଡ଼ିଲେ । ପ୍ରଭୁଭକ୍ତ ବିଶାଳକାୟ ଘୋଡ଼ାଟି ଆଉ ଡେଉଁଡ଼ି ନ ଯାଇ ତାଙ୍କର ପାଖରେ ଠିଆହୋଇ ଚିତ୍କାର କଲା । ସୁଶୀଳା ଚାଲି ଗଦାର ଅନ୍ତରାଳରେ ଅନେକ ସମୟ ଅପେକ୍ଷା କଲା । ସେ ଉଠିଲେ ନାହିଁ । ମନରେ ଭୟ ହେଲା । ଚିନ୍ତାକଲା, ଯଦି କପାଳରେ ବାଜିଥିବ ! ସେ ଏକମୁହାଁ ହୋଇ କୁଟୀର ଆଡ଼କୁ ଛୁଟିଗଲା । କୁଟୀରରେ ବାଠୁଳିଖଣ୍ଡା ରଖି ଲୋଟାରେ ଥଣ୍ଡାପାଣି ନେଇ ପୁନର୍ବାର ଛୁଟିଲା ଯେଉଁଠି ଅଶ୍ୱାରୋହୀ ପଡ଼ିଥିବା ଅଛେ ।

ନିକଟରେ ଉପସ୍ଥିତ ହୋଇ ସେ ଦେଖିଲା, ଅଶ୍ୱାରୋହୀ ବାଲି ଉପରେ ପ୍ରାଣହୀନ ପିଣ୍ଡ ପରି ପଡ଼ି ରହିଛନ୍ତି । କପାଳରୁ ରକ୍ତଧାର ବୋହିଯାଉଛି । ବାଠୁଳି କପାଳରେ ବାଜିଥିଲା ନିଶ୍ଚୟ । ସେ ଭୟ ନ କରି ଯୁବକର ମସ୍ତକରୁ ରକ୍ତ ଧୋଇ ଦେଲା । ହୃଦୟରେ ହସ୍ତ ସ୍ଥାପନ କରି ଦେଖିଲା ଜୀବନ ଅଛି । ବାରମ୍ବାର ଥଣ୍ଡାଜଳ ପାନ କରାଇବାରୁ କିଛି ସମୟ ପରେ ତା'ର ଚେତା ଆସିଲା । ସେ ଆଖି ଖୋଲି ଚାହିଁଲା । ଦେଖିଲା ନିକଟରେ ଜଣେ ବାଳିକା ଠିଆ ହୋଇଛି । ହାତରେ ତାର ଜଳପାତ୍ର ।

ସେ ଉଠି ବସିଲା । ବାଳିକା ଧୀରେ ଧୀରେ ଅଲୋଇ ହୋଇ ଚାଲି ଯିବାକୁ ଉଦ୍ୟତ ହେଲା । ତାର ମନେ ହେଲା ସେ ଯେପରି ଏ ଯୁବକକୁ ଏହା ପୂର୍ବରୁ ଆହୁରି କେବେ ଦେଖିଛି ଏବଂ ଭଲ ଭାବରେ ଚିହ୍ନିଛି । ଯୁବକ ମଧ୍ୟ ମନେ କଲା ଯେପରି ସେ ଏ ବାଳିକାକୁ ଆଉ କେବେ ଦେଖିଛି ।

ବାଳିକାକୁ ଚାଲିଯାଉଥିବାର ଦେଖି, ଯୁବକ ହାତଠାରି ପାଖକୁ ଡାକିଲା । ବାଳିକା ଶୁଣିଲା ନାହିଁ । ତାର ମନରେ ଭୟ, କାଳେ ସେ ତାକୁ ଧରି ଦଣ୍ଡ ଦେବ । ଦୂରରେ ଠିଆ ହୋଇ ସେ ପଚାରିଲା, କ'ଣ ?

ଯୁବକ ହାତଠାରି ଜଣାଇଲା ଶୋଷ କରୁଛି । ବାଳିକା ନିକଟକୁ ଯାଇ ପାତ୍ରଟି ବଢ଼ାଇ ଦେଲା । ପଚାରିଲା, ଘୋଡ଼ା ଉପରୁ ଖସିପଡ଼ି ଆଘାତ ଲାଗିଛି କି ?

ଢକ ଢକ କରି ଜଳତକ ଉଦରସ୍ଥ କରି ସେ ଉତ୍ତର ଦେଲା, ନା । ବାଳିକାଗା ତ—କିଛି କ୍ଷତ ହୋଇ ନାହିଁ । କେବଳ ମୁଣ୍ଡରେ ଗୋଟାଏ କଣ ବାଜି ଯିବାରୁ ମୁଣ୍ଡ ଫାଟି ଯାଇଛି । ବାଳିକା ବୁଝିପାରିଲା, ତା ପ୍ରତି ତାଙ୍କର ସନ୍ଦେହ ହୋଇ ନାହିଁ । ତେଣୁ ସେ ସାହସ ଧରି ପଚାରିଲା, ଟିକେ ଦମ୍ ନେବ ଛାଇରେ ?

ଯୁବକ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ଗୋଟାଏ ତୂରୀ ଧରି ଚାରି ଥର ଫୁଙ୍କିଦେଲା । ତୂରୀ ନାଦରେ ବାଳିକା ପ୍ରାଣରେ ପ୍ରକମ୍ପିତ ହେଲା । ସୁଶୀଳା ସମୁଦ୍ର ଆଡ଼କୁ ଅନାଇ ଦେଖିଲା, ବହୁ ଦୂରରେ ଗୋଟାଏ ବୋଇତ ପାଲ ଟାଣି ଯାଉଛି । ସେ ବୋଇତ ଆଡ଼କୁ ଚାହିଁ ରହିଲା । ବୋଇତ ପାଲ ଖୋଲି କୂଳ ଆଡ଼କୁ ଆସିଲା ।

ଏହି ସମୟରେ ସେ ହଠାତ୍ ଚମକି ପଡ଼ି ଦେଖିଲା, ଯୁବକ ତାର ହାତ ଧରି ହସୁଛି । ବାଳିକାର ମନରେ ଭୟ ହେଲା । ସେ ଖାତା ହୋଇ ଅନୁରୋଧ କଲା, ମୋତେ ଛାଡ଼ିଦିଅ ।

ଯୁବକ କହିଲା, ଯଦି ମୋର ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବ ତେବେ ତୁମକୁ ଛାଡ଼ିଦେବି । ଆଗ କହ, ତୁମେ କିଏ ?

ବାଳିକା କହିଲା, ମୁଁ ଜାଣେ ନାହିଁ ? ମତେ ଛାଡ଼ ।

ଏ, ଜାଣ ନାହିଁ, ତମେ ନିଜେ କିଏ ?

ନା, ଉଃ, ଛାଡ଼ ।

ଭୟ କର ନା । ମୁଁ ତୁମର କିଛି ଅନିଷ୍ଟ କରିବି ନାହିଁ ।

ମୋ ହାତ ଛାଡ଼ି ଦେଉନା କାହିଁକି ?

ହଁ, ଛାଡ଼ିଦେବି । ଆଗ ମୁଁ ଯାହା ପଚାରୁଚି କହ । ତମେ ଏ ବାଲୁକା ପ୍ରାନ୍ତରେ ଏକାକୀ ବୁଲୁଛ କାହିଁକି ? ନିକଟରେ ବସ୍ତି ଅଛି ?

ନା, ଉଃ, ମୋ ହାତ ଛାଡ଼ ।

ବସ୍ତି ନାହିଁ ? ତମେ ଏ ସମୁଦ୍ର କୂଳକୁ କିପରି ଆସିଲ ?

ମୁଁ ଜାଣେ ନାହିଁ ।

ମୁଁ ଛାଡ଼ିବି ନାହିଁ । ଧରି ନେବି । ମୋର ପ୍ରଶ୍ନର ଉତ୍ତର ଦିଅ । ଏଠି ତମର ବାପା ମା' କି ଆଉ କେହି ଅଛନ୍ତି ?

ସରଳା ବାଳିକା ଏତେ ଛନ୍ଦ କପଟ ଜାଣିବ କାହୁଁ ? ସେ ଉତ୍ତର ଦେଲା, ବର୍ତ୍ତମାନ ଏଠାରେ କେହି ନାହାନ୍ତି ।

ତମର ବାପ ମା' ଅଛନ୍ତି ?

ନା, ମୋର ଏଠି କେହି ନାହାନ୍ତି । ଭାଇ ଅଛନ୍ତି । ସେ ମାଛ ଧରିବାକୁ ଯାଇଛନ୍ତି । ମୁଁ ଏଠି ବୁଲୁଥିଲି, ତୁମକୁ ଦେଖି ଏଠିକି ଆସିଛି । ଭାଇ ଆସିବଣି । ମୁଁ ଯିବି, ମତେ ଛାଡ଼ । ମତେ ଏତେକଥା କାହିଁକି ପଚାରୁଛ ? ମୁଁ ଆଉ କିଛି କହିବି ନାହିଁ ।

ଆଉ ଅଧିକ କିଛି କହିବା ଦରକାର ନାହିଁ । ମେ ର ଇଚ୍ଛା, ତୁମକୁ ମୁଁ ମୋ ସଙ୍ଗରେ ଆମ ଘରକୁ ନେଇଯିବି । ଏପରି ଏକୁଟିଆ ସ୍ଥାନରେ ରହିବ କାହିଁକି ? ଆମ ଘରକୁ ଚାଲ । ସେଠାରେ ସୁଖରେ ରହିବ ।

ତମର ସିନା ଇଚ୍ଛା, ମୋର ତ ଇଚ୍ଛା ନୁହେଁ । ମୁଁ ମୋ ଭାଇକୁ ଛାଡ଼ି ତମ ସଙ୍ଗରେ କାହିଁକି ଯିବି ?

ବାଳିକା ଯୁବକର ମୁହଁକୁ ଚାହିଁଲା । ଦେଖିଲା ତାର ଚକ୍ଷୁରୁ କପଟର ଗୋଟାଏ ଭୟଙ୍କର ଭାବ ଫୁଟି ଉଠୁଛି । ଭୟ ହେଲା—କାଳେ ସତରେ ତାକୁ ଧରି ନେବ । କରିବ କ'ଣ ? ମଣିଆଁ ଭାଇକୁ ଛାଡ଼ି ସେ କୌଣସି ସ୍ଥାନକୁ ଯାଇ ନ ପାରେ ।

ତାର ଚକ୍ଷୁ ଛଳ ଛଳ ଦେଖାଗଲା । ସେ ବିନୀତ ହୋଇ କହିଲା, ତମ ଗୋଡ଼ ତଳେ ପଡ଼ୁଛି, ମତେ ଛାଡ଼ି ଦିଅ । ଭାଇ ଆସି ମୋତେ ଖୋଜୁଥିବ, ମୁଁ ଯିବି ।

ଯୁବକର ମୁଖରେ ହାସ୍ୟ ଫୁଟି ଉଠିଲା । ସେ ବାଳିକାର ହାତକୁ ଜୋର୍‌ରେ ଚିପି ଧରି ହସି ହସି କହିଲା, ଚିରଦିନ କ'ଣ ଭାଇ ସାଙ୍ଗରେ ଏଠି ଥିବ ? ଦିନେ ତ ଭାଇକୁ ଛାଡ଼ି ଶାଶୁ ଘରକୁ ଯିବାକୁ ପଡ଼ିବ । ଆଜି ନ ଯିବ କାହିଁକି । ଅବାଧ୍ୟତା ଦେଖାଅ ନାହିଁ । ଆଜି ମୋ'ର ସାଙ୍ଗରେ ଶାଶୁ ଘରକୁ ଯିବାକୁ ପଡ଼ିବ, ଜାଣିଲ !

ଶାଶୁ ଘର କ'ଣ ସେ ବୁଝି ପାରିଲା ନାହିଁ । ତଥାପି ଏତିକି ବୁଝିଲା ଯେ ମଣିଆଁ ଭାଇଠାରୁ ଛଡ଼ାଇ ଅନ୍ୟତ୍ର ନେଇ ଯିବାକୁ ଯୁବକ ଇଚ୍ଛା କରିଛି । ଚକ୍ଷୁରୁ ଲୋତକ ଧାର ଗଡ଼ି ପଡ଼ିଲା । ଯୁବକର ସେ ଆଡ଼କୁ ଲକ୍ଷ୍ୟ ନାହିଁ । ସେ ପୂର୍ବପରି ବାଳିକାକୁ ଅଟକାଇ ରଖିଲା । ବାଳିକା ପୁନର୍ବାର ଅନୁନୟ ବିନୟ କରି ତାକୁ ଛାଡ଼ିଦେବାକୁ କହିଲା । ସେ ଶୁଣିଲା ନାହିଁ ।

ଯୁବକ ଅଙ୍ଗୁଠି ବଢ଼ାଇ କହିଲା, ହେଇ ଦେଖ, ସମୁଦ୍ରରେ ଯୋଉ ବୋଇତ ଦିଶୁଛି ସେଥିରେ ତମକୁ ଯିବାକୁ ପଡ଼ିବ । ସୁଶୀଳା ସମୁଦ୍ରକୁ ଚାହିଁଲା, ଦେଖିଲା ସତକୁ ସତ ଗୋଟାଏ ବୋଇତ ଆସି ସମୁଦ୍ର କୂଳର ଅତି ନିକଟରେ ହେଲାଣି । ସୁଶୀଳା ଭାବିଲା ବଳ ପ୍ରୟୋଗ କରି ଏହା ନିକଟରୁ ମୁକ୍ତ ହୋଇ ପଳାଇବା ଅସମ୍ଭବ । ଉପାୟ କ'ଣ ? ସେ ମଣିଆଁ ଭାଇକୁ ଛାଡ଼ି କୌଣସି ଆଡ଼େ ଯିବ ନାହିଁ ।

ସୁଶୀଳା ନଇଁପଡ଼ି ଆର ହାତରେ ମୁଠାଏ ବାଲି ଧରିଲା । ଯୁବକ ହସ ହସ ମୁହଁରେ ବାଳିକା ଆଡ଼କୁ ଯେପରି ଚାହିଁଛି, ସୁଶୀଳା ବାଲି ମୁଠାକ ସଜୋରରେ ତାର ଆଖିକୁ ଫିଙ୍ଗି ଦେଲା । ଯୁବକ ଅତର୍କିତ ଭାବରେ ଏପରି ଆଘାତ ପାଇ ହଠାତ୍ ଚକ୍ଷୁ ବନ୍ଦ କରିବା ସଙ୍ଗେ ସଙ୍ଗେ ହାତ ଛାଡ଼ିଦେଲା । ଏହି ଅବସରରେ ବାଳିକା ପାନ୍ଥ ହାତରେ ଧରି ବିଜୁଳି ବେଗରେ ପଳାୟନ କଲା ।

ଯୁବକ ଚକ୍ଷୁ ଖୋଲି ଚତୁର୍ଦ୍ଦିଗକୁ ଅନାଇଲା । କେହି ନାହିଁ । ବାଳିକା ଅନ୍ତର୍ହିତ ହୋଇ ଗଲାଣି । ତାର ପତ୍ତା ନାହିଁ । ହିନ୍ଦୁ ଘରର ଅନ୍ଧ ବିଶ୍ୱାସ ସଙ୍ଗେ ସଙ୍ଗେ ତା'ର ମନକୁ ଆସିଲା । ସେ ଚିନ୍ତାକଲା, ମୋତେ ବିପଦାପନ୍ନ ଦେଖି, ଆମର ଅଧିଷ୍ଠାତ୍ରୀ ଦେବୀ ମା ମଙ୍ଗଳା କ'ଣ ଆଜି ମୋତେ ଉଦ୍ଧାର କରିବାକୁ ଆସିଥିଲେ ? ମୋର ମାଙ୍କର ଅଚଳା ଭକ୍ତି ସର୍ବଦା ଥାଏ ତାଙ୍କ ଉପରେ । ମୋର ମନ ବଢ଼ିବାରୁ ଆଜି କ'ଣ ସେ ବାଳିକା ବେଶରେ ମୋ ନିକଟରେ ଠିଆ ହୋଇଥିଲେ ? ନୋହିଲେ ସାଧାରଣ ବାଳିକା ପକ୍ଷରେ ଏତେ ଶୀଘ୍ର ଉଭେଇ

ଯିବା ଅସମ୍ଭବ । ସନ୍ଧାନ ହୋଇ ସେ ମା'ମଙ୍ଗଳାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲା । ସଙ୍ଗେ ସଙ୍ଗେ ତୁରୀ ବଜାଇଲା ।

ସୁଶୀଳା ଅଧିକ ଦୂର ଯାଇ ନ ପାରି ଗୋଟିଏ ବାଲିଗଦାର ଆଢୁଆଳରେ ଲୁଚି ଯୁବକର କାର୍ଯ୍ୟକଲାପ ପ୍ରତି ନଜର ରଖିଲା । ମନରେ ଭୟ ହେଉଥାଏ— କାଳେ ତାର ପାଦଚିହ୍ନ ଦେଖି ସେ ଘୋଡ଼ା ଦଉଡ଼ାଇ ତାର ପଛେ ପଛେ ଗୋଡ଼ାଇବ ।

ସୁଶୀଳା କିଛିକ୍ଷଣ ଅପେକ୍ଷା କରି ଦେଖିଲା, ବୋଇତ କୂଳରେ ଲାଗିବା ସଙ୍ଗେ ସଙ୍ଗେ କେତେଜଣ ଲୋକ ଯୁବକ ନିକଟରେ ଉପସ୍ଥିତ ହୋଇ ପ୍ରଣାମ କଲେ । ସେମାନଙ୍କ ମଧ୍ୟରେ ଆଲୋଚନା ଚାଲିଲା । କିଛି ସମୟ ପରେ ଜଣେ ନାବିକକୁ ଛାଡ଼ି ଅନ୍ୟ ସମସ୍ତେ ଯୁବକକୁ ସଙ୍ଗରେ ନେଇ ବୋଇତକୁ ଫେରିଲେ । ବୋଇତ ସମୁଦ୍ର ମଧ୍ୟକୁ ଚାଲିଲା । ଯେଉଁ ଜଣକୁ ଛାଡ଼ି ଯାଇଥିଲେ ପରେ ସେ ଅଶ୍ୱାରୋହଣ କରି ସମୁଦ୍ର କୂଳେ କୂଳେ ଅଶ୍ୱ ଛୁଟାଇ ଦେଲା । ଅଶ୍ୱ ଅଦୃଶ୍ୟ ହେଲାରୁ ସୁଶୀଳା ଘର ଆଡ଼େ ଚାଲିଲା ।

ଯାଉ ଯାଉ ବାଟରେ ତାର ନଜର ପଡ଼ିଗଲା ବାଁହାତ ମଝି ଆଙ୍ଗୁଠି ଉପରେ । ଏତେବେଳ ଯାଏ ତାକୁ ହାତଟା ଅଡୁଆ ଅଡୁଆ ଲାଗୁଥିଲା । ସେ ସେତିକି ନଜର ଦେଇ ନ ଥିଲା । ମନରେ ଉଦ୍‌ବିଗ୍ନତା ଥିବାରୁ ଗୋଟେ ସାଧାରଣ କଥାକୁ ସେ ନିଘା ଦେଇ ନ ଥିଲା । ଦେଖିଲା ଆଙ୍ଗୁଠିରେ ସୁନାର ମୁଦିଟିଏ । କେବଳ ସୁନା ନୁହେଁ ତହିଁରେ ଖଣ୍ଡେ ହୀରା ଲାଗିଛି । ଏ ଆସିଲା କାହୁଁ ? ସୁଶୀଳା ଭାବିଲା, ନିଶ୍ଚୟ ସେହି ଯୁବକ ଦେଇଛି । ଯାହାକୁ ମୁଁ କ'ଣ କରିବ ? ଫୋପାଡ଼ି ଦେବ ? ମୁଦିର ସୌନ୍ଦର୍ଯ୍ୟରେ ସେ ମୋହିତ ହୋଇଥିଲା, ତେଣୁ ଇଚ୍ଛାକଲା ତାକୁ ନେଇ ମଣିଆଁ ଭାଇକୁ ଦେଖାଇବ ।

ସୁଶୀଳା ଘରକୁ ଫେରିଆସି ଦେଖିଲା ମଣିଆଁ ଭାଇ ଆସି ସାରିଛି । ମଣିଆଁ କିଛି ପଚାରିବା ଆଗରୁ ସେ ଠିକେ ଠିକେ ସମସ୍ତ କଥା ଜଣାଇଲା । ମଣିଆଁ ବାଳିକାର କୌଶଳ ନିମନ୍ତେ ତାକୁ ପ୍ରଶଂସା କଲା ।

ସୁଶୀଳା ଲେଖିପଢ଼ି ଜାଣିଲାଣି । ମଣିଆଁର ଅନୁପସ୍ଥିତିରେ ସମୟ ସମୟରେ ଭଜନାର ଜାବନା ପଢ଼େ । କେବେ କେବେ ମଣିଆଁ ନିଜେ ପଢ଼ି ଶୁଣାଏ । ଭଜନାର ଜାବନା ପଢ଼ି ପଢ଼ି ମଣିଆଁ ସମୁଦ୍ର ବିଷୟରେ ଅନେକ କଥା ଶିଖି ପାରିଲାଣି । ଏବେ ତା'ର ମନର ଭାବ ପରିବର୍ତ୍ତିତ ହେଲାଣି । ତା'ର ଆଉ ଇଚ୍ଛା

ନାହିଁ ଗ୍ରାମ ବା ସହରକୁ ଯାଇ ବସତି ସ୍ଥାପନ କରିବ । ଉପରି ସମୁଦ୍ରକୁ ଯାଇ ସମୁଦ୍ରର ସୌନ୍ଦର୍ଯ୍ୟ ଉପଲବ୍ଧି କରିବ, ଦେଶରେ ଜଣେ ପ୍ରଧାନ ନାବିକ ବୋଲି ଗଣ୍ୟ ହେବ ଏବଂ ସମୁଦ୍ରରେ ଜଳଦସ୍ୟୁଙ୍କର ଅତ୍ୟାଚାରରୁ ନିରୀହ ବଣିକଙ୍କୁ ରକ୍ଷା କରି ପାରିବ, ଏହା ହେଉଛି ତା'ର ଲକ୍ଷ୍ୟ ।

ଲକ୍ଷ୍ୟକୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ କ'ଣ କରିବାକୁ ହେବ ସେ ଜାଣେ ନାହିଁ । ଉପଦେଶ ଦେବାକୁ କେହି ନାହିଁ । ଘରେ ରହି କେବଳ ଉଦ୍ଧର ଚିନ୍ତାରେ କାଳାତିପାତ କଲେ ତ ଲକ୍ଷ୍ୟ ନିଜେ ନିଜେ ଚରିତାର୍ଥ ହେବ ନାହିଁ । ଉଦ୍‌ଯୋଗ ଆବଶ୍ୟକ, ଧନ ଆବଶ୍ୟକ, ଉତ୍ସାହ ଆବଶ୍ୟକ । ମଣିଅାଁ ଭାବିଲା, ଯଦି ସେ ତାର ମାତାଙ୍କ ଉପହାର ରତ୍ନଟି ବିକ୍ରୟ କରେ ଏବଂ ତାହାର ମୂଲ୍ୟରେ ବୋଇତ କିଣି ବଣିଜ କରିବାରେ ନିଜକୁ ନିଯୁକ୍ତ କରେ, ତେବେ କେଜାଣିବା ସେ ସମୁଦ୍ର ସଙ୍ଗେ ଭଲଭାବରେ ପରିଚିତ ହୋଇ ପାରିବ ।

ବୋଇତ କିଣିଲେ ମାଲମତା କିଣିବା ଦରକାର, ବୋଇତ ଚଲାଇବାକୁ ନାବିକ ଦରକାର । ଏସବୁ ଏତେ ଶୀଘ୍ର ସେ ପାଇବ କେଉଁଠୁ ? ସୁଶୀଳାକୁ ଛାଡ଼ିଯିବ କାହା ପାଖରେ ? ଯଦି ନିଜର ବୋଇତ ହୁଏ ତେବେ କେଜାଣି ତାକୁ ସଙ୍ଗରେ ନେଇପାରେ, କିନ୍ତୁ ଯଦି ଅନ୍ୟ କୌଣସି ବଣିକଙ୍କ ଜାହାଜରେ ଜଣେ ସାଧାରଣ ନାବିକ ହୋଇ ରହିବ, ସମୁଦ୍ର ବିଷୟରେ ଅନେକ କଥା ଜାଣିବା ନିମନ୍ତେ, ତେବେ ତ ସୁଶୀଳାକୁ ସଙ୍ଗରେ ନେଇଯିବା ସୁବିଧା ହେବ ନାହିଁ ।

ମଣିଅାଁ ଏହିପରି ଅନେକ ସମୟରେ ଚିନ୍ତା କରିଥାଏ । ପରକ୍ଷଣରେ ସୁଶୀଳା ଆସି ତା'ର ବଳିଷ୍ଠ ଦେହର ସମସ୍ତ ଭାର ଭାଇ ଉପରେ ଲଦି କହେ, ଭାଇ, ତମେ ସବୁବେଳେ ଏତେ କ'ଣ ଭାବୁଛ ? ଆସ ଯିବା ହରିଣ ଧରିବା । ସେ ମଣିଅାଁର ହାତ ଧରି ଟାଣେ । ମଣିଅାଁ ତାର ହସ ହସ ସୁନ୍ଦର ମୁହଁକୁ ଅନାଇଁ ଦେଲେ କୌଣସି କଥାରେ ବାଧା ଦେଇ ପାରେ ନାହିଁ । ମନ ମଧ୍ୟରେ ଉପରି ଗୋଟିଏ ଭାବର ଉଦୟ ହୁଏ । ସେ ହସିଦେଇ ସୁଶୀଳା ସଙ୍ଗେ ବାହାରି ପଡ଼େ ।

ଏଣିକି ସୁଶୀଳା ଘରର ସମସ୍ତ ଭାର ନିଜ ମୁଣ୍ଡକୁ ନେଲାଣି । ରୋଷାଇବାସ ଠାରୁ ଆରମ୍ଭ କରି ଘରର ଯାବତୀୟ କାର୍ଯ୍ୟ ନିଜ ହାତରେ କରେ । ମଣିଅାଁ ତହିଁରେ ତାକୁ ସାହାଯ୍ୟ କରିବାକୁ ବସିଲେ ସେ ବିରକ୍ତ ହୋଇ କୃତ୍ରିମ କ୍ରୋଧ ପ୍ରକାଶ କରେ । ବାରଣ କରି କହେ, ସମୁଦ୍ରରେ କାର୍ଯ୍ୟ କରି କ୍ଲାନ୍ତ ହୋଇଯାଇଛ, ଘରର କାମ କରିବାକୁ ଦେବି ନାହିଁ । ଯାଅ ଚୁପ୍‌କରି ବସି ପଢ଼ିବ । ଟିକିଏ ହସି ଦେଇ କହେ, ନୋହିଲେ ଚୁପ୍‌କରି ବସି ଭାବିବ ଯାଅ ।

ସୁଶୀଳାର କଥାରେ ମଣିଅାଁ କାନ ନ ଦେଇ କାର୍ଯ୍ୟ କରିବାକୁ ବସିଲେ ସେ ବିରକ୍ତ ହୋଇ କହେ, ମରଦ ପୁଅ ହେଉଁକାଳେ କେଉଁ ଗାଁରେ ଘରକାମ

କରୁଥାନ୍ତି ? ତୁମେ ମୋ ପାଖରୁ ଚାଲିଯାଅ । ଏ ସବୁ ମାଇକିନିଆଙ୍କର କାମ— ଡମର ନୁହେଁ ।

ମଣିଆଁ କାର୍ଯ୍ୟ କରିବାରୁ ବିରତ ହୋଇ କହେ, ତୁ କେଇଠା ଗାଁ ଦେଖିଚୁ ଟିକିଏ କହିଲୁ, ମୁଁ ଶୁଣେ ? ଏତେବଡ଼ ମାଇକିନିଆଟେ ତୁ ହୋଇ ଗଲୁଣି ସୁଶୀଳା ? ତୁ ପରା କାଲିକାର ଝିଅ, ମୋ ଆଗର ଝିଅ ।

ଲଜ୍ଜାରେ ସୁଶୀଳାର ମୁହଁ ଲାଲ ପଡ଼ିଯାଏ । ସେ କହେ କାହିଁକି, ମୁଁ ଗାଁ ଦେଖି ନାହିଁ ? ସୁନାହାଟ କେତେଥର ଦେଖିଛି ।

ଦେଖି ଦେଖି ସେହି ସୁନାହାଟ ଗାଁ ବିକଟକ ତ ଆଉ କ'ଣ ? ଏହା କହି ମଣିଆଁ ସୁଶୀଳା ମୁହଁକୁ ଚାହେଁ । ସୁଶୀଳା ଲଜ୍ଜାରେ ମୁଖାବନତ କରେ । ମଣିଆଁ ଧୀରେ ଧୀରେ ସେଠାରୁ ଖସି ଚାଲିଯାଏ ଧନୁ ଧରି ଚଢେଇ ମାରିବାକୁ । ଭାବେ— ସୁଶୀଳା ଦେଖିବାକୁ ସୁନ୍ଦର, ମୁହଁଟି ଦେଖିବାକୁ ପୂର୍ଣ୍ଣମୀ ଚନ୍ଦ୍ର ପରି, ଚକ୍ଷୁ ଦର୍ଭଟି ଦୁଇଟି ତାର । ହସୁଥିଲାବେଳେ ଦାନ୍ତଗୁଡ଼ିକ ମୋତି ପରି ଝଲସି ଉଠେ, ତିଳଫୁଲ ପରି ନାସିକାଟି ନାଚି ଉଠେ ।

ଏହିପରି ଚିନ୍ତା କରୁ କରୁ ଶରୀର ଏକ ଅଜଣା କମ୍ପନରେ କମ୍ପି ଉଠେ । ସୁଶୀଳାର ମୁହଁକୁ ଆଉଥରେ ଥରେ ଚାହିଁବାକୁ ଇଚ୍ଛା ହୁଏ । ସେ ମୁହଁ ଫେରାଇ ପଛକୁ ଚାହେଁ, କ'ଣ ଦେଖେ ? ସୁଶୀଳା ତାହାରି ଆଡ଼କୁ ଅନାଇ ରହିଛି । କ୍ଷଣକାଳ ପର୍ଯ୍ୟନ୍ତ ଚାରିଆଖି ଏକାଠି ହୁଏ । ପୁନର୍ବାର ଉଭୟେ ଚକ୍ଷୁ ବିପରୀତ ଦିଗକୁ ଫେରାନ୍ତି । କି ଏକ ଅଜଣା ଭାବ ଉଭୟଙ୍କର ହୃଦୟ ଅଧିକାର କରି ବସେ । ଉଭୟେ ଚିନ୍ତା କରିବାରେ ଲାଗିଯାନ୍ତି ।

ଅଲକ୍ଷ୍ୟରେ ଆସି ଯୌବନର ସ୍ନିଗ୍ଧ ତରଙ୍ଗ ବାଳିକାର ସମଗ୍ର ଶରୀର ଅଧିକାର କରିଛି । ପ୍ରତ୍ୟେକ ଅଙ୍ଗ-ପ୍ରତ୍ୟଙ୍ଗରୁ ସତେ କି ଯୌବନର ଲାବଣ୍ୟ ବୋହି ପଡ଼ୁଛି । ବିସ୍ତୀର୍ଣ୍ଣ ସେହି ନିର୍ଜନ ବାଲୁକା ପ୍ରାନ୍ତରରେ ଅବାଲ୍ୟରୁ ବଢ଼ି ଆସିଛି । ତେଣୁ ଯୌବନ-ସୁଲଭ ରୀତିନୀତି ତା ଠାରେ ଅଳ୍ପ ଦେଖାଯାଏ । ବାଳିକାର ସରଳତା, ଚପଳତା, ତାଠାରୁ ଅନ୍ତର୍ହିତ ହୋଇନାହିଁ । ମାନବ ସମାଜରୁ ବହୁଦୂରରେ ବଢ଼ିଥିବାରୁ ଏବଂ ମାନବ ସମାଜ ସଙ୍ଗେ ତାର ସମ୍ପର୍କ ନିତାନ୍ତ ଅଳ୍ପ ଥିବାରୁ ସେ ପରିଧାନ ବିଷୟରେ ଅତ୍ୟଳ୍ପ ମାତ୍ର ଜାଣେ ।

ବସ୍ତ୍ରଦ୍ୱାରା ଶରୀରକୁ ଉତ୍ତମରୂପେ ଘୋଡ଼ାଇ ରଖିବା—ସେ ଭାବେ ଗୋଟାଏ ବନ୍ଧନ । ସମୟେ ସମୟେ ଭାବେ ବିଳାସ । ସେ ଅନେକଙ୍କୁ ବସ୍ତ୍ର ପରିଧାନ କରିବାର ଦେଖିଛି, ମାତ୍ର ନିଜେ କେବେ ନିଜକୁ ସେପରି ଉତ୍ତମ ଭାବରେ ଆବୃତ କରି ନାହିଁ । ତା'ର ମଣିଆଁ ଭାଇ ଯେପରି ପିନ୍ଧେ, ସେ ବାଲ୍ୟକାଳରୁ ସେହିପରି ପିନ୍ଧ

ଅସିଛି । ଆଜି ଯେ ତାର କି ଏକ ପରିବର୍ତ୍ତନ ହୋଇଛି, ତେଣୁ ଶରୀର ଉତ୍ତମ ଭାବରେ ଆବୃତ କରିବାକୁ ହେବ, ସେ ଜାଣେ ନାହିଁ ।

ମଣିଆଁର ନିକଟବର୍ତ୍ତୀ ଗ୍ରାମମାନଙ୍କରେ ଯଥେଷ୍ଟ ସମ୍ପର୍କ ଥିଲେ ମଧ୍ୟ ସେ କେବେହେଲେ ଏ ବିଷୟରେ ସୁଶୀଳାକୁ ଉପଦେଶ ଦେଇ କୃତକାର୍ଯ୍ୟ ହୋଇ ନାହିଁ । ଯଦି ସେ କେବେ ସୁଶୀଳାକୁ ଶରୀର ଆବୃତ କରିବାକୁ ଆଦେଶ କରେ, ସୁଶୀଳା ଅକୁଣ୍ଠିତ ଭାବରେ ଉତ୍ତର କରେ, ଭାଇ, ମତେ ଯେମିତି କହୁଛ ଆଗ ତେମେ ସେମିତି ପିନ୍ଧ, ତମକୁ ଦେଖି ମୁଁ ପିନ୍ଧିବ ।

ମଣିଆଁ ତ ଆଉ ସ୍ତ୍ରୀ ସାଜିବ ନାହିଁ, ସେ ମୁଖ ଗମ୍ଭୀର କରି ସେଠାରୁ ଚାଲିଯାଏ । ଭାବେ, ଆଛା ନିର୍ବୋଧ ତ, କଥା କହିଲେ ଶୁଣୁ ନାହିଁ, ତାକୁ କ'ଣ ଲଜ୍ଜା ନାହିଁ ? ପରକ୍ଷଣରେ ଭାବେ, ନା', ଯେତେହେଲେ ସୁଶୀଳାଟି ମୋର ଭାରି ସୁନ୍ଦର । ଆଲୁଅବା'ଲୁଅଟା । କିଛି ଜାଣେ ନାହିଁ । ସେ ମୋତେ ଭଲ ପାଏ ।

ମଣିଆଁ ମୁହଁ ବୁଲାଇ ପଛକୁ ଅନାଏଁ, ଦେଖେ ସୁଶୀଳା ମଧ୍ୟ ତାହାରି ଆଡ଼କୁ ଅନାଇଛି ।

ମଣିଆଁ ଘରେ ଥିବାଯାଏ ସୁଶୀଳା ଭାଇକୁ ଅନୁକରଣ କରି ଲୁଗା ଖଣ୍ଡି ଇଚ୍ଛା ବିରୁଦ୍ଧରେ ପିନ୍ଧିଥାଏ । ମଣିଆଁ ସମୁଦ୍ର ଭିତରେ ଡିଙ୍ଗାକାଠି ନେଇ ପ୍ରବେଶ କରି ଅଦୃଶ୍ୟ ହୋଇଗଲେ, ସେ ନିଜ ନଗ୍ନ ଦେହଟି ସମୁଦ୍ରରେ ଭସାଇ ଦିଏ । ଲୁଗାଖଣ୍ଡି କୂଳରେ ରଖେ—ଓଦା ହୋଇଯିବ । ସମୁଦ୍ର ଜଳରେ ଖେଳି ନଗ୍ନ ପ୍ରକୃତି ଦେହରେ ତାର ନଗ୍ନ ଯୌବନର ସୌନ୍ଦର୍ଯ୍ୟ ମିଶାଇ ଦିଏ ।

ସ୍ଥଳଭାଗରେ କ୍ରୀଡ଼ା କରୁଥିବା ସମୟରେ ଲୁଗାଖଣ୍ଡି ପିନ୍ଧିଥାଏ । ଆକାଶରେ ମେଘ ଉଠିଲେ, କିମ୍ବା ପବନ ଅତି ବେଗରେ ବହିଲେ ସେ ତା'ର ହାତ ଦୁଇଟି ଟେକି ସମୁଦ୍ରର ବେଳାଭୂମିରେ ଦଉଡ଼ୁଥାଏ । ଅଯତ୍ନ ପରିହିତ ଲୁଗାଖଣ୍ଡି ଖୋଲି ଗଲେ ସୁଦ୍ଧା ତେଣିକି ତାର ନିଘା ନାହିଁ । ସେ ଯେପରି ନଗ୍ନ ପ୍ରକୃତିକୁ ଚୁମ୍ବନ କରିବାକୁ ଧାଏଁ ।

କେବେ କେବେ ଲୁଗା ଖଣ୍ଡି ଖୋଲି ପବନରେ ଉଡ଼ାଏ । ପବନ ବସନ ଖଣ୍ଡି ଉଡ଼ାଇ ନିଏ ଉପରେ ଉପରେ । ସୁଶୀଳାର ଇଚ୍ଛା ହୁଏ ସେ କିପରି ଉପରକୁ ଉଡ଼ିପାରନ୍ତା ଏବଂ ତାର ଲୁଗାଖଣ୍ଡି ଦୁଷ୍ଟ ପବନ ହାତରୁ ବଳପ୍ରୟୋଗ କରି ଛଡ଼ାଇ ଆଣନ୍ତା । ମାତ୍ର ପାରେ ନାହିଁ । ହାତ ବଢ଼ାଇ ଲୁଗା ପାଇବାକୁ ବାଲୁକାରାଶି ଉପରେ ପବନର ପଛେ ପଛେ ଗୋଡ଼ାଇ ଯାଏ । ସଂସାରର ବନ୍ଧନରୁ ବହୁ ଦୂରରେ ସେ, ପ୍ରକୃତିର ସୌନ୍ଦର୍ଯ୍ୟରେ ସେ ଆତ୍ମହରା ।

ସେଦିନ ମେଘ ଚତୁର୍ଦ୍ଦିଗ ଘୋଟିଥିଲା । ମଧ୍ୟାହ୍ନ, ମାତ୍ର ସୂର୍ଯ୍ୟ ଦେବଙ୍କର ଦେଖା ନାହିଁ । ପବନ ଅତି ବେଗରେ ବହୁଛି । ମେଘ ଦେହରୁ ସମୟ ସମୟରେ ଜଳବିନ୍ଦୁ ଖସି ପଡ଼ୁଛି ସେହି ବିସ୍ତୀର୍ଣ୍ଣ ବାଲୁକା-ଶଯ୍ୟା ଉପରେ । କେବେ କେବେ ବାଲିକଣା ଉଡ଼ାଇ ପବନ ସାଗରର ବିକ୍ଷୋଭିତ ବକ୍ଷରେ ପକାଉଛି ।

ସେହି ବିକ୍ଷୋଭିତ ସାଗରର ଉତ୍ତୁଙ୍ଗ-ତରଙ୍ଗରେ ନାଚି ନାଚି ମଣିଆଁ ଆସି ଉପସ୍ଥିତ ହେଲା । ଟିପା କାଠି ଏବଂ ମାଛର ଖାଲେଇ ଗୋଟିଏ କାନ୍ଧରେ ଝୁଲାଇ ଅନ୍ୟ କାନ୍ଧରେ ମୁଣ୍ଡଘୁମା ଜାଲ ପକାଇ ସେ ସିଧା ସିଧା କୁଟୀରାଭିମୁଖେ ଗଲା ।

ମଣିଆଁ କିଛି ଦୂର ଅଗ୍ରସର ହୋଇ ଦେଖିଲା, ଦୂରରେ ସୁଶୀଳା ଉପରକୁ ହାତ ଟେକି ଏକମୁହାଁ ହୋଇ ଦଉଡ଼ୁଛି । ସେ ଏକ ବାଲିବନ୍ତର ଅଢୁଆଳରେ ଲୁଚିଗଲା ଏବଂ ପରକ୍ଷଣରେ ଅନ୍ୟ ଏକ ବାଲିବନ୍ତର ଉପରକୁ ଉଠିଲା । ହାତ ଦୁଇଟି ସେହିପରି ଉପରକୁ ଟେକିଛି । ମସ୍ତକର ଅଯତ୍ନବର୍ଦ୍ଧିତ କେଶ ପବନରେ ଫର୍ ଫର୍ ଉଡ଼ୁଛି । ଦେଖାଗଲା, ତା ଦେହରେ ଲୁଗା ନାହିଁ । ଲୁଗା ଖଣ୍ଡିକ ଧଳା ମେଘ ପରି ପବନରେ ଉଡ଼ି ଯାଉଛି । ବାଳିକା ତାହାର ପଛେ ପଛେ ଗୋଡ଼ାଉଛି ।

ମଣିଆଁ ଭାବିଲା, ସୁଶୀଳା ଏତେଟାଏ ହେଲାଣି, ଟିକିଏ ହୋଇ ଲଜ୍ଜା ନାହିଁ, ଶିଶୁର କ୍ରୀଡ଼ା, ଶିଶୁର ଚପଳତା ଅଦ୍ୟାପି ତାର ଭାଙ୍ଗି ନାହିଁ । ସଂସାରର ଚିନ୍ତା ଟିକିଏ ହୋଇ ତା ମନରେ ପ୍ରବେଶ କରି ନାହିଁ । ସେ କ'ଣ ଜାଣେ ନା, ସେ ଆଉ ଚପଳମତି, କ୍ରୀଡ଼ାମୟୀ କ୍ଷୁଦ୍ର ବାଳିକା ନୁହେଁ ? ଏବେ ସେ ଯୁବତୀ, ଯୌବନର ସୌନ୍ଦର୍ଯ୍ୟ ପ୍ରତି ଅଙ୍ଗ-ପ୍ରତ୍ୟଙ୍ଗରୁ ଗଳି ପଡ଼ୁଛି । ସ୍ତ୍ରୀ ସୁଲଭ ଲଜ୍ଜା ତାହା ନିକଟରେ ନାହିଁ । ସେ କାଲି ଯେପରି ବାଳିକାରୂପେ ଉଲଗ୍ନ ହୋଇ ମୋର ଆଗରେ ଖେଳୁଥିଲା, ଆଜି ମଧ୍ୟ ସେହିପରି ଖେଳୁଛି । ବାଧାଦେବାକୁ, ଶିକ୍ଷାଦେବାକୁ କେହି ନାହିଁ । ଶିଖିବ କିପରି ? ଅବଶ୍ୟ ଏ ନିର୍ଜନ ସ୍ଥାନରେ ମୋ ବ୍ୟତୀତ ଅନ୍ୟ କୌଣସି ଲୋକର ସମାଗମ ନ ଥାଏ । ତେଣୁ ଲଜ୍ଜା କରିବା ଆବଶ୍ୟକ ପଡ଼େ ନାହିଁ । ମୋର ଆଗରେ ବଢ଼ି ଆସିଛି । ମୋତେ ସେ ଲଜ୍ଜା କରେ ନାହିଁ । ତେବେ କ'ଣ ସେ ଭାବିଛି, ଚିରଦିନ ସେହିପରି ମୋର ଆଗରେ ଖେଳି ଖେଳି ସମୟ କଟାଇବ ?

ଏହିପରି ଚିନ୍ତାକରି ମଣିଆଁ ଟିପାକାଠି, ଜାଲ ଓ ମାଛର ଖାଲେଇ ଯଥା ସ୍ଥାନରେ ରଖି ସୁଶୀଳା ଖେଳୁଥିବା ସ୍ଥାନ ଆଡ଼େ ଗଲା । ଏଥର ସେ ସୁଶୀଳାର ଅତି ନିକଟରେ ବାଲିବନ୍ତ ଅଢୁଆଳରେ । ଚିନ୍ତାକଲା, ସରଳାର ଖେଳରେ ବାଧା

ଦେବ ? ହଠାତ୍ ତାଂର ସମ୍ମୁଖୀନ ହୋଇ ତାକୁ ଅପ୍ରସ୍ତୁତ କରାଇବ ? କିନ୍ତୁ ସେ ଅପ୍ରସ୍ତୁତ ହେବ କାହିଁକି ? ତା'ର ମନରେ କୌଣସି ବିକାର ନାହିଁ । ସେହି ବାଳିବନ୍ତର ଆଢ଼ୁଆଳରେ ଥାଇ ଦେଖିଲା, କିପରି ସେ ଜାଣି ଜାଣି ଲୁଗା ଉପରକୁ ପକାଇ ହାତ ଠେକି ତା'ର ପଛେ ପଛେ ଧାଇଁଛି, ମନକୁ ମନ ହସି ଗୁଣୁ ଗୁଣୁ ହୋଇ କେତେ କଣ କହୁଛି ।

ମଣିଆଁ ବାଳିକାର ନଗ୍ନ ସୌନ୍ଦର୍ଯ୍ୟ ଏବଂ ବିକାର-ଶୂନ୍ୟ କ୍ରୀଡ଼ା ଅପଲକ ନୟନରେ ଅନାଇଁ ରହିଲା । ତାର ମନ ପରିବର୍ତ୍ତିତ ହେଲା । ବିବେକର ଶତ ବାଧା ସହସ୍ର ତର୍କ ବିଫଳ ହେଲା । ତା'ର ସେହି ମନ ପରିବର୍ତ୍ତନ କରି ପାରିଲା ନାହିଁ । ପରିବର୍ତ୍ତିତ ମନ ଯେତେ କ୍ଷିପ୍ର ଗତିରେ ଅନ୍ୟଦିଗକୁ ପ୍ରବାହିତ ହେଉଥିଲେ ମଧ୍ୟ ସରୋବରର ଶୀତଳ ବକ୍ଷରେ କମଳ ପରି ମନ ମଧ୍ୟରେ ସାଧୁତା ଫୁଟି ଉଠୁଥିଲା । ସେ ଚିନ୍ତାକଲା, ନିଶ୍ଚୟ ସୁଶୀଳା ମୋର ହୃଦୟର ରାଣୀ, ସୁଶୀଳା ସୁନ୍ଦରୀ, ତା'ର ଅଙ୍ଗ ପ୍ରତ୍ୟଙ୍ଗ, ଅଙ୍ଗଭଙ୍ଗୀରୁ ସୌନ୍ଦର୍ଯ୍ୟର ମନମୋହିନୀ ସ୍ରୋତ ପ୍ରବାହିତ ହେଉଛି । ସେହି ସୌନ୍ଦର୍ଯ୍ୟର ସ୍ରୋତ ତରୁଣର ହୃଦୟରେ ତଡ଼ିତ୍ ପ୍ରବାହ ସୃଷ୍ଟି କରିଦିଏ ।

ସୁଶୀଳା ବହୁ ଚେଷ୍ଟା ପରେ ପବନ ହାତରୁ ଲୁଗାଖଣ୍ଡି ଉଦ୍ଧାର କରି ବିଜୟୋନ୍ମତ୍ତା ହୋଇ ଆନନ୍ଦରେ ଅବାଧ ପବନକୁ ଗାଳି ଦେଉଥିଲା । ହଠାତ୍ ବାଳିଗଦାର ଅଢ଼ୁଆଳରୁ ବାହାରି ପଡ଼ି ମଣିଆଁ ଧୀରେ ତାର ପୃଷ୍ଠଦେଶରେ ଗୋଟିଏ ସ୍ନେହର ଚାପୁଡ଼ା ମାରିଲା । ବାଳିକା ଚମକିପଡ଼ି ମୁହଁ ବୁଲାଇ ଦେଖିଲା, ପାଖରେ ତାର ମଣିଆଁ ଭାଇ । ମୁଖ ଗମ୍ଭୀର । କାହିଁ ବାଳିକାର ମୁଖ ଲଜ୍ଜାରେ ରକ୍ତିମ ଦେଖାଗଲା ନାହିଁ ତ; ଚକ୍ଷୁ ଲଜ୍ଜାରେ ଅବନତ ହେଲା ନାହିଁ ତ ? ହେବ କାହିଁକି ? ତା'ର ମନରେ ବିକାର ନାହିଁ । ସେ ତ ଏପରି କୌଣସି ପାପ ବା ଦୋଷ କରିନାହିଁ ଯହିଁରେ ତାର ଭୟ ହେବ, ହୃଦୟ କମ୍ପି ଉଠିବ ? ସେ ସରଳା ବାଳିକା ମାତ୍ର ।

ମଣିଆଁକୁ ଦେଖି ସୁଶୀଳାର ଅଧରରେ ହାସ୍ୟର ରେଖା ଫୁଟି ଉଠିଲା । କହିଲା ଭାଇ, ତମେ ଅନେକ ବେଳୁ ଆସି ମୋତେ ଖୋଜୁଥିଲ ପରା ! ମତେ ଆଜି କାହିଁକି ଭାରି ଖୁସି ଲାଗିଲା, ମନ ଆନନ୍ଦରେ ନାଚି ଉଠିଲା । ତେଣୁ ଏଠାରେ ଏକୁଟିଆ ଖେଳୁଥିଲି । ତମକୁ ଡାକ କରୁଥିବି । ଚାଲ, ଖାଇବାକୁ ଦେବି । ତମେ ଆସି ନ ଥିଲ ବୋଲି ମୁଁ ଖାଇ ନାହିଁ ।

ଲୁଗା ଖଣ୍ଡି ପିନ୍ଧପକା ଲୋ ପାଗଳୀ—ଗମ୍ଭୀର ଭାବରେ ମଣିଆଁ କହିଲା । ଛି, ଛି, ପାଗଳୀଙ୍କ ପରି ଲଙ୍ଗଳା ହୋଇ ଏଠାରେ ନାଚୁଛୁ—ତତେ ଲାଜ ମାଡୁନାହିଁ, ଘୃଣା ଲାଗୁନାହିଁ ? ତୋର ଆଉ ଲଙ୍ଗଳା ହୋଇ ନାଚିବାର ବୟସ ନାହିଁ ।

ଅନେକ ଦନ୍ତୁ ଗୃଲଗଲଣି । ଏବେ ତୁ ବଡ଼ ହେଲୁଣି । ବଡ଼ ହେଲେ ଯେପରି ଚଳିବାକୁ ହୁଏ ସେପରି ଚଳ । ତୋତେ ଏପରି ଭାବରେ ନାଚୁଥିବାର ଦେଖିଲେ ଲୋକେ କଣ ଭାବବେ ? ପାଗଲୀ ବୋଲ କହିବେ ନାହିଁ ?

କଏ ଆଉ ଦେଖିବ ? ଏଠାରେ କଏ ଅଛ ? ଏକା ତମେ । ତମେ କଣ ମୋତେ ଜାଣ ନାହିଁ ଯେ......... ।

ଅଗ ଲୁଗା ଖଣ୍ଡ ପିନ୍ଧପକା—ବିରକ୍ତ ହୋଇ ମଣିଅାଁ କହିଲା ।

ସୁଶୀଳା ଯେପରି ଇଚ୍ଛା ସେପରି ଲୁଗା ଖଣ୍ଡ ବେଢ଼େଇ ହୋଇ ପଡ଼ିଲା । ମଣିଅାଁ କଳେ ତାକୁ ଉତ୍ତମରୂପେ ଲୁଗା ପିନ୍ଧାଇ ଦେଇ କହିଲା, ବୁଝିଲୁ, ମୋ ସୁନାଟି ପରି, ସାନକୁହା ମାନ ସବୁଦନେ ଏହିପରି ଲୁଗା ପିନ୍ଧୁଥିବୁ, ସବୁବେଳେ ମାଇପେ ଏମିତ ଲୁଗା ପିନ୍ଧନ୍ତି । ଏଣିକି ଆଉ ଏପରି ନାଚବୁ ନାହିଁ । ତତେ ମୋ ରାଣଟି । ଯଦ ଆଉ କେବେ ତତେ ଏପରି ଲଙ୍ଗଳା ହୋଇ ନାଚୁଥିବାର ଦେଖେ, ଜାଣିଥା, ଆଉ କେବେ କଥା କହିବ ନାହିଁ । ବୁଝିଲୁ ଏଥର ? ମୋ କଥା ମାନ ଚଳିବୁଟି ?

ମୁଣ୍ଡରେ ଲୁଗାଟା ଏମିତ ପକେଇଲେ ଅଡୁଆ ଅଡୁଆ ଲାଗୁଛ । **ଅଚ୍ଛା** ଭାଇ, ମୋର ଏମିତ ଲୁଗା ପିନ୍ଧିବାରେ ତମର ଏତେ ଜିଦ କାହିଁକ ? ତମେ ଏମିତ ପିନ୍ଧୁନ ?

ନା, ମରଦପୁଅମାନେ ଏମିତ ପିନ୍ଧନ୍ତି ନାହିଁ, ମାଇପୀମାନେ ଏପରି ପିନ୍ଧନ୍ତି । ତତେ ଟିକେ ଅଡୁଆ ଅଡୁଆ ଲାଗୁଛ । ଅଭ୍ୟାସ ହୋଇଗଲେ ଆଉ ରହିବ ନାହିଁ ଯିବ । ଏଥର ଠିକ୍ ଏହିପରି ଲୁଗା ପିନ୍ଧିବୁ, ଏଁ ?

ହଉ ତେବେ । ଚାଲ ଘରକୁ ଯିବା । ତମକୁ ଭୋକ କରୁଥିବ, ମତେ ବି ଭୋକ କରୁଛ । ସୁଶୀଳା ମଣିଅାଁର ହାତ ଧରି ଆଗେ ଆଗେ ଚାଲିଲା । ସୁଶୀଳାର ବୟସ ବାର କି ତେର ହେବ । ଉଚ୍ଚରେ ଛୋଟ । ମଣିଅାଁ ସଙ୍ଗରେ ଚାଲୁଥିଲା ବେଳେ ଠିକ୍ ଛାତି ପର୍ଯ୍ୟନ୍ତ ହୁଏ । ବଙ୍କା ଦେହ ସିଧା କରି ଠିଆ ହେଲେ କେଜାଣି ବା ଟିକିଏ ବଡ଼ ଦେଖା ଯାଇପାରେ । ଦୁର୍ବଳ ନୁହେଁ କି ବେଶୀ ମୋଟାସୋଟା ନୁହେଁ ।

କିଛି ଦୂର ଅଗ୍ରସର ହୋଇ ଚପଳମତି ସୁଶୀଳା ବାଲି ଘାସରେ ଗୋଡ଼ ବାଜିବାରୁ ଝୁଣ୍ଟିପଡ଼ିଲା । ମଣିଅାଁ ହାତରୁ ତା ହାତ ଖସିଗଲା । ସେ ତଳେ ପଡ଼ିଗଲା । ମଣିଅାଁ ତାକୁ ଶିଶୁପରି ଦୁଇହାତରେ ଉଠାଇ ନେଲା ଶୂନ୍ୟେ ଶୂନ୍ୟେ । ଦେଖିଲା ତାର କୌଣସି କ୍ଷତ ହୋଇ ନାହିଁ । ସେ ହସୁଛି । ମଣିଅାଁ ଦୁଇ ହାତରେ ତାକୁ ହୃଦୟରେ ଲଗାଇ ପଚାରିଲା, ସୁଶୀଳା, ତୁ ମତେ ଭଲ ପାଉଟି ।

ମୁଁ ତ ତମ ବିନା ଆଉ କାହାକୁ ଚିହ୍ନେ ନାହିଁ !

ହସି ହସି ମଣିଆଁ ପଚାରିଲା, ଯଦି ଆଉ କାହାକୁ ଚାକିରି ଆଣୁ ମତେ ଭଲ ନ ପାଇ ତାକୁ ଭଲପାଆନ୍ତୁ ତେବେ ? ସେଦିନ ଯେ ତୋତେ ଧରିବାକୁ ବସିଥିଲା ତାକୁ ତୁ ଭଲ ପାଉ ନାହିଁ ? କହୁଥିଲୁ, ତତେ ସେ ଦୋଦୋଚାକ୍କାପରି ଲାଗିଲା ?

ନାଁ, ଭାଇ, ମୁଁ ତମ ବିନା ଆଉ ଯେତେ ଚାକ୍କାଲୋକ ହେଲେ ବି ଭଲ ପାଏ ନାହିଁ । ସେଦିନ ମତେ ଯେ ଧରି ନେବାକୁ ବସିଥିଲା, ତାକୁ ମୁଁ ଘୃଣାକରେ । ସେ ବଡ଼ ଦୁଷ୍ଟ ଲୋକ, ତା'ର ବ୍ୟବହାର ବଡ଼ ଖରାପ ।

ମଣିଆଁ ସୁଶୀଳାର ମୁହଁକୁ କ୍ଷଣକାଳ ଅନାଇଁ ରହିଲା । ମନେ ମନେ କେତେ କ'ଣ ଭାବି ପ୍ରଶ୍ନକଲା, ତୁ ମୋ ପାଖେ ସବୁଦିନ ରହିବୁଟି ସୁଶୀଳା, ନା ମୋତେ ଛାଡ଼ି ଦିନେ କେବେ ଆଉ କାହା ସଙ୍ଗେ ପଳାଇବୁ ?

ମୋତେ ଏପରି ଅଖାଡୁଆ କଥା କାହିଁକି ପଚାରୁଛ ? ମୁଁ ଏଡ଼େ ଅକୃତଜ୍ଞ ? ତମକୁ ଛାଡ଼ି କୁଆଡ଼େ ପଳାଇବି ? ଏହି ବାଲୁକାଖଣ୍ଡ ମୋର ସଂସାର । ଆଉ ତମେ ମୋର ସବୁ । ତମେ ଏହି କ୍ଷୁଦ୍ର ସଂସାରର ରାଜା ଆଉ—

ସୁଶୀଳାର ପାଟିରୁ କଥା ଛଡ଼ାଇ ମଣିଆଁ ତରତର କରି ପଚାରିଲା, ଆଉ ତୁ ଏହି କ୍ଷୁଦ୍ର ସଂସାରର ରାଣୀ ନୋହୁଁ ?

ନିଶ୍ଚୟ, ନୋହିଲେ ରାଣୀ ହେବାକୁ କିଏ ଅଛି ?

ତୁ ମୋର ହୃଦୟର ରାଣୀ ହେବୁ ତେବେ, କହି ମଣିଆଁ ଧୀରେ ମୁଣ୍ଡ ନୁଆଇଁ ବାଳିକାର ଗୋଲାପୀ ଗଣ୍ଡଦେଶରେ ପ୍ରେମର ମୋହରଟିଏ ବସାଇଦେଲା ।

ସେହି ମୁହୂର୍ତ୍ତରେ ଦୁଇ ଅଙ୍ଗରେ ସତେ କି ବିଦ୍ୟୁତ୍ ପ୍ରବାହ ଛୁଟିଗଲା !

ସବୁଦିନ ମନୁଷ୍ୟ ସମାନ ରହେ ନାହିଁ । ସମୟ ସଙ୍ଗେ ସଙ୍ଗେ ପରିବର୍ତ୍ତିତ ହୁଏ । ଏବେ ସୁଶୀଳାର ମନ ସମ୍ପୂର୍ଣ୍ଣ ପରିବର୍ତ୍ତିତ । ସେ ଆଉ କାଳପରି ସମୁଦ୍ର ବକ୍ଷରେ ନିଜର ନଗ୍ନ-ଶରୀର ଭସାଇ ଦେଉ ନାହିଁ ଆନନ୍ଦରେ କମ୍ପା ଲୁଗାଖଣ୍ଡି ପବନରେ ଉଡ଼ାଇ ହାତଠେକି ତାହାରି ପଛେ ମଛେ ଗୋଡ଼ାଇ ଯାଉନାହିଁ । ସେ ଆଉ ନିରାଚ୍ଚ ନିର୍ବୋଧ ପରି କଥୋପକଥନ କରେ ନାହିଁ । ଏଥର କଥା କହିବାରେ ସଂଯତ ହୋଇଛି ।

ମଣିଆଁ ଜାଲ ଓ ଝିପାକାଠି ନେଇ ସମୁଦ୍ରକୁ ଗଲେ ମଧ୍ୟ ସୁଶୀଳା ଏଥର ଛୋଟିର ଛଡ଼ି ନଗ୍ନଦେହରେ ଖଣ୍ଡିଆଭୂତର ପଛେ ପଛେ ଗୋଡ଼ାଇ ଯାଏ ନାହିଁ ।

ଦେହରୁ ଟିକିଏ ଲୁଗା ଖସିଗଲେ, ଗୈରକଙ୍କପରି ଗୃହଆଡ଼େ ଅନାଏ, କେହି ଅସୁଥିବ ପରି, କେହି ତା'ର ନଗ୍ନ ଦେହ ଦେଖି ମନେ ମନେ ହସୁଥିବ ପରି । ଏଥର ସେ କୁଟୀରରୁ ଦୂରକୁ ଖେଳିବାକୁ ଯାଏ ନାହିଁ । ଇଚ୍ଛା ହେଲେ କେବେ କେବେ ଘର ଅଗରେ ବାଟୁଲିଖଡ଼ା ଧରି ଏଣେ ତେଣେ ବାଟୁଲି ମାରେ । ବାଲିରେ ଘର କରି ଖେଳେ । କେହି ଏଠାରେ ନାହିଁ ଜାଣି ମଧ୍ୟ ଲୁଗାପଟାର ଯତ୍ନ ନିଏ । ଖେଳା ଖେଳି ଅଧିକ କରେ ନାହିଁ, ଘର କାମରେ ଲାଗିଯାଏ । ଘରଟି କିପରି ପରିଷ୍କାର ରଖିବାକୁ ହେବ, କେଉଁ ସ୍ଥାନରେ କଣ ସଜାଇ ରଖିଲେ ସୁନ୍ଦର ଦିଶିବ ଅଥଚ ସ୍ଥାନର ଅଭାବ ହେବ ନାହିଁ, କିପରି ଉପାୟରେ ରନ୍ଧନ କଲେ ଖାଦ୍ୟ ସୁସ୍ୱାଦୁ ହେବ, କିପରି ଲୁଗାପଟା ପରିଷ୍କାର ରଖିବାକୁ ହେବ, ଏହି ସମସ୍ତ ବିଷୟରେ ବିଶେଷ ନଜର ଦିଏ ।

ଘର ପଛଆଡ଼ ପଡ଼ିଆଟିରେ ମଣିଆଁ ଅନେକଗୁଡ଼ିଏ କପାଗଛ ଲଗାଇଛି । ସେହି କପାରେ ସୁଶୀଳା ସୂତା କାଟେ । ଅବଶ୍ୟ ସୂତାକଟା ପାଇଁ ରୂପେଇ ଯେପରି ଆଖପାଖ ଗ୍ରାମମାନଙ୍କରେ ପ୍ରସିଦ୍ଧି ଲାଭ କରିଥିଲା ସୁଶୀଳା ସେପରି ସୁନ୍ଦର ସୂତା କାଟିପାରେ ନାହିଁ । କିନ୍ତୁ ଆଗେ ଯେପରି ଲୁଗା କିଣିବାକୁ ପଡ଼ୁଥିଲା ଏବେ ସେପରି କିଣିବାକୁ ପଡ଼େ ନାହିଁ ।

ପୋଖରୀହୁଡ଼ା ନିକଟରେ ପାହାଡ଼ ତଳେ ମଣିଆଁ ଖଣ୍ଡେ ଛୋଟ ବଗିଚା କରିଛି । ଧାଡ଼ି ଧାଡ଼ି କରି ନାନାପ୍ରକାର ଫୁଲଗଛ ମଲ୍ଲୀ, ଗେଣ୍ଡୁ, ହେନା, ଯୁଈ ଇତ୍ୟାଦି ଲଗାଇଛି । ବାଇଗଣ, ତରଭୁଜ ପ୍ରଭୃତି ଫଳଗଛ ମଧ୍ୟ ତହିଁରେ ଲଗା ହୋଇଛି । ସୁଶୀଳା ପୋଖରୀରୁ ପାଣି ବୋହି ଗଛରେ ଢାଳେ । ଗଛଗୁଡ଼ିକୁ ନିଜର ସନ୍ତାନଠାରୁ ଅଧିକ ସ୍ନେହ କରେ । ଅବିବାହିତା ବାଳିକା ପୁତ୍ର ସ୍ନେହକୁ ବୃକ୍ଷ ସ୍ନେହରେ ପରିଣତ କରିଛି । ଗଛରେ ପୋକଟିଏ ଲାଗିଲେ ସେ ଅତି ଯତ୍ନରେ ତାକୁ ଖସାଇ ଦିଏ ।

ବଗିଚା ମଝିରେ ଗୋଟିଏ ପ୍ରକାଣ୍ଡ କଦମ୍ବ ଗଛ । ଏହି ଗଛର ବିଶେଷତ୍ୱ, ବାରମାସ ତହିଁରେ ଫୁଲ ଫୁଟେ । ଏତେ କଷ୍ଟ ଏତେ ଯତ୍ନରେ ପାଳି ଆଣିଥିବା ଗଛମାନଙ୍କରେ ଫୁଲ ଫୁଟିବାର ଦେଖିଲେ ସରଳାର ପ୍ରାଣଟି ଆନନ୍ଦରେ ନାଚି ଉଠେ । ସମୟ ସମୟରେ ସୁଶୀଳା ଗଛରୁ ଫୁଲ ତୋଳି କଦମ୍ବଗଛର ଛାଇରେ ବସି ଫୁଟରେ ଗୁନ୍ଥି ହାର ପ୍ରସ୍ତୁତ କରେ । ହାରଟି ନିଜର ଗଳାରେ ଲମ୍ବାଇ ଦିଏ । ଫୁଲରାଣୀ ସାଜି କଦମ୍ବ ଗଛର ମୂଳରେ ବସେ—ସତେ କି ବିରହିଣୀ ରାଧା !

ସୁଶୀଳାର ଏତେ ବଡ଼ ପରିବର୍ତ୍ତନ ହେଲା କିପରି ? ଯେତେବେଳେ ମଣିଆଁ ଦେଖିଲା ସୁଶୀଳାକୁ ବାରମ୍ବାର କହି ମଧ୍ୟ ତାର ଅଭ୍ୟାସର ପରିବର୍ତ୍ତନ ହେଲା ନାହିଁ, ସେ ବହୁ ଚିନ୍ତାକରି ଗୋଟିଏ ଉପାୟ ସ୍ଥିର କଲା ।

ମଣିଆଁ ସମୁଦ୍ରରୁ ମାଛଧରି ସୁନାହାଟ ଗ୍ରାମକୁ ମାଛ ବିକ୍ରୟ କରିବାକୁ ଗଲାବେଳେ ସଙ୍ଗରେ ସୁଶୀଳାକୁ ନେଲା । ସୁନାହାଟ ଗ୍ରାମରେ ମୁକୁନ୍ଦ ମହାପାତ୍ରଙ୍କ ଘର । ଆଖପାଖ କେଇ ଖଣ୍ଡି ଗ୍ରାମରେ ସେ ଜଣେ ଭଲ ଲୋକ ବୋଲି ତାଙ୍କର ଖ୍ୟାତି ଥିଲା ।

ତାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା । ପୁତ୍ରର ନାମ ଅଧିରାଜ । କନ୍ୟାଟି ସତେକି ସୁନାର ପ୍ରତିମା, ତାର ନାମ ଚଞ୍ଚଳା । ମହାପାତ୍ରେ ଭଜନାକୁ ଭାରି ଭଲ ପାଉଥିଲେ । ଭଜନାର ପୁତ୍ର ବୋଲି ମଣିଆଁକୁ ମଧ୍ୟ ସେ ଭଲ ପାଆନ୍ତି । ମଣିଆଁ ପ୍ରତ୍ୟହ ମହାପାତ୍ରଙ୍କ ଘରେ ମାଛ ଯୋଗାଏ । ତାଙ୍କର ସ୍ତ୍ରୀ ମେଳାପି ଲୋକ । ମଣିଆଁକୁ ପୁତ୍ରପରି ସ୍ନେହ କରନ୍ତି । ମଣିଆଁ ଯେଉଁଦିନ ସାଆନ୍ତାଣୀଙ୍କ ହାବୁଡ଼େ ପଡ଼େ, ସେ ଦିନ ସେ ତାକୁ ଖୁଆଇ ପିଆଇ ଛାଡ଼ନ୍ତି ।

ସୁଶୀଳା ତାର ଛୋଟ ଭଉଣୀ ବୋଲି, ମଣିଆଁ ସମସ୍ତଙ୍କ ପାଖରେ ପରିଚୟ ଦେଉଥାଏ । ସାମନ୍ତାଣୀ ସୁଶୀଳା ବିଷୟରେ ଅନେକ କଥା ମଣିଆଁକୁ ପଚାରନ୍ତି । ସମୟ ସମୟରେ ସୁଶୀଳାକୁ ସଙ୍ଗରେ ଆଣିବାକୁ ଅନୁରୋଧ କରନ୍ତି । ମଣିଆଁ ସୁଶୀଳାକୁ ମୁକୁନ୍ଦ ମହାପାତ୍ରଙ୍କ ଘରେ ଛାଡ଼ି, ଅବଶିଷ୍ଟ ମାଛ ବିକ୍ରୟ କରିବାକୁ ଗ୍ରାମକୁ ବୁଲିବାକୁ ଯାଏ । ସନ୍ଧ୍ୟା ସମୟରେ ଫେରିବା ବେଳକୁ ସଙ୍ଗରେ ଘେନି ସମୁଦ୍ର କୂଳକୁ ଆସେ । କେବେ କେବେ ସାମନ୍ତାଣୀ, ଛୋଟଝିଅ ବୋଲି ଦୟା କରି ସନ୍ଧ୍ୟା ସମୟରେ ଘରକୁ ଫେରିବାକୁ ବାରଣ କରନ୍ତି । ମଣିଆଁ ବିନା ଆପତ୍ତିରେ ମହାପାତ୍ରଙ୍କ ଘରେ ରାତ୍ରି ଯାପନ କରେ ।

ଚଞ୍ଚଳା ବୟସରେ ଟିକିଏ ଛୋଟ ହେଲେ ମଧ୍ୟ ସୁଶୀଳା ସଙ୍ଗେ ଖେଳିବାକୁ ଭଲପାଏ । ସନ୍ଧ୍ୟାରେ ଘରକୁ ଫେରିବା ସମୟରେ ସେ ବାରମ୍ବାର ସୁଶୀଳାକୁ ଅନୁରୋଧ କରିଥାଏ ଯେପରି ସେ କାଲି ଆସିବ । ସେହି ଚଞ୍ଚଳା ସଙ୍ଗରେ ମିଶି ସୁଶୀଳାର ଏ ଘୋର ପରିବର୍ତ୍ତନ । ଯେତେବେଳେ ଉଭୟେ ଏକାସଙ୍ଗେ ବସି ଖୁସି ଗପ କରୁଥାନ୍ତି ଚଞ୍ଚଳା ଧନୀର କନ୍ୟା ବୋଲି ଟିକିଏ ହେଲେ ବଡ଼ପଣିଆ ଦେଖାଏ ନାହିଁ । ସୁଶୀଳା ଜଣେ ଦରିଦ୍ର କନ୍ୟାବୋଲି ତାହାର ମନରେ ମଧ୍ୟ ଡର ଭୟ ନ ଥାଏ । ସତେକି ଦୁଇଜଣ କେତେକାଳର ପରିଚିତ ବନ୍ଧୁ ।

ଚଞ୍ଚଳା ସଙ୍ଗରେ ମିଶି ସୁଶୀଳା ବୁଝିପାରିଛି, ବାହାଘର କଣ, ଶାଶୁ କଣ ଏବଂ ସ୍ୱାମୀ କଣ । ଅବିବାହିତା ବାଳିକା ପକ୍ଷରେ ଏ ସବୁ ଯେ ଲାଜର କଥା, ଏହା ସେ ଉତ୍ତମ ରୂପେ ବୁଝିପାରିଛି । ଲାଜ କାହିଁକି କରିବ—ଏହି ପ୍ରଶ୍ନଟିର କୌଣସି ଉତ୍ତର ସେ ସ୍ଥିର କରି ପାରେ ନାହିଁ । ମାତ୍ର ଏତିକି ଜାଣେ, ଲାଜ କରିବାକୁ ହେବ । କେବଳ ଏତିକି ଜାଣିଲେତ ଲାଜ ନିଜେ ନିଜେ ଆସିବ ନାହିଁ । ଏହା ସ୍ୱାଭାବିକ ।

ସେଦିନ ସୁଶୀଳା ଫୁଲଗଛରୁ ଫୁଲ ତୋଳି କଦମ୍ବଗଛର ଛାଇରେ ବସି ମାଳ ଗୁନ୍ଥୁଥିଲା । ଅଧିକ ଗୁଡ଼ାଏ ଫୁଲ ଥିବାରୁ, ଅତି ଯତ୍ନରେ ଦୁଇଖଣ୍ଡି ମାଳଗୁନ୍ଥି ମଣିଆଁ ଭାଇର ଅପେକ୍ଷାରେ ବସିଥିଲା । ସେଦିନ ଆଉ ସେ ମାଳ ଦିଓଟି ନିଜେ ଲମ୍ବାଇ ଫୁଲରାଣୀ ସାଜି ବସିଲା ନାହିଁ । ଫୁଲମାଳ ଦିଓଟି ଯୋଟିଏ କନିଅର ଡାଳରେ ଝୁଲାଇ ରଖିଲା ଏବଂ ଉପରକୁ ଅନାଇ ଚିନ୍ତାକଲା ।

ସେ ଚିନ୍ତାକଲା, ତାହାରେ କ୍ଷତି କଣ ? ମୁଁ ତ ଅଉ ଭାଇଙ୍କର ନିଜର ଭଉଣୀ ନୁହେଁ, ମତେ ସେ ପିଲାଦିନୁ ପାଳି ଆସିଛନ୍ତି ବୋଲି ତାଙ୍କୁ ମୁଁ ଭାଇ ବୋଲି ଡାକି ଆସିଛି । ସେ ମଧ୍ୟ ସେପରି ମୋତେ ଭଉଣୀପରି ସ୍ନେହ କରି ଆସିଥିଲେ । ମୋତେ ସେ ଜୀବନରୁ ଅଧିକ ଭଲପାଆନ୍ତି । ମଣିଆଁ ଭାଇ ମୋର ଦେଖିବାକୁ ସୁନ୍ଦର । ଚମ୍ପଲା କହୁଥିଲା ଯଦି ସେ ବଡ଼ଲୋକ ଘରେ ଜନ୍ମ ହୋଇଥାନ୍ତେ, ତେବେ ମଣିଆଁ ଭାଇକୁ ନିଶ୍ଚୟ ବିବାହ କରନ୍ତି ।

ସେ କାଳର ଝିଅମାନେ ବାପ ଭାଇଙ୍କ, ଅନ୍ୟ ମିଣିପଙ୍କୁ ଅନ୍ଧ ହୋଇ ହାଣ୍ଡି କଣରେ ଲୁଚୁ ନ ଥିଲେ । ବିବାହ ସମ୍ବନ୍ଧରେ ନିଜର ଇଚ୍ଛା ପ୍ରକାଶ କରିବାରେ ଏବକାଳ ପରି ଲଜ୍ଜାର ପ୍ରସଙ୍ଗ ବୋଲି ମନେ କରୁ ନ ଥିଲେ ।

ସୁଶୀଳା ଯେତେବେଳେ ଏହିପରି ଚିନ୍ତାମଗ୍ନ ଥାଇ ତାର ମଣିଆଁ ଭାଇର ରୂପ ସଙ୍ଗେ ଅନ୍ୟ କୌଣସି ଯୁବକର ରୂପ ତୁଳନା କରି ପ୍ରତି କ୍ଷେତ୍ରରେ ମଣିଆଁକୁ ଉପରକୁ ଠେଲୁଥିଲା, ମଣିଆଁ ସେତେବେଳେ ସୁଶୀଳା ବିଷୟ ଚିନ୍ତାକରି ସୁନାହାଟରେ ମାଛ ବିକିଯାଇ କରି ଫେରି ଆସୁଥିଲା । ବେଳ ରତ ରତ ।

ମଣିଆଁ ସୁଶୀଳାକୁ ଖୋଜି ଖୋଜି ଆସି ବଗିଚାରେ ଉପସ୍ଥିତ ହେଲା । ସୁଶୀଳା ତାକୁ ଦେଖିନାହିଁ । ସେ ଦୂରରେ ସ୍ଥିର ଭାବରେ ଦଣ୍ଡାୟମାନ ହୋଇ ଅସ୍ତଗାମୀ ସୂର୍ଯ୍ୟର ରଶ୍ମିରେ ଝଲସି ଉଠୁଥିବା ସୁଶୀଳାର ସୁନ୍ଦର ମୁହଁଟିକୁ ଅନାଇ ରହିଲା । ସୁଶୀଳା ଦୃଷ୍ଟି ଦେଲେ, ନିକଟରେ ମଣିଆଁ ଭାଇ ଠିଆ ହୋଇ ତାହାର ଆଡ଼କୁ ଅନାଇ ରହିଛି । ଲଜ୍ଜାରେ ତାର ମୁଖ ରକ୍ତବର୍ଣ୍ଣ ଧାରଣ କଲା । ଟିକିଏ ଯତ୍ନ କରି ଲୁଗା ଟାଣି ସେ ଉଠି ଠିଆହେଲା ।

ମଣିଆଁ ସୁଶୀଳାର ନିକଟକୁ ଯାଇ ହସ ହସ ମୁହଁରେ ପଚାରିଲା, ସୁଶୀଳା, ତୋର ଦେହ ଭଲ ଅଛି ତ ? ଆଜି କାହିଁକି ଏତେ ଶୁଖିଲାଭଳି ଦିଶୁଛୁ ? ଖରାରେ ବୁଲୁଥିଲୁ ନା ? ଯେତେ ମନା କଲେ ତୋର ଗରଜ ପଡ଼ୁଛି ମୋ କଥା ଶୁଣିବାକୁ ? ବସି ବସି ଏତେ କଣ ଭାବୁଥିଲୁ ଶୁଣେ ?

ମୁଁ ତ ଖରାରେ ବୁଲି ନାହିଁ । ଏହି କଦମ୍ବଗଛ ତଳେ ବସି ବଗିଚା ଦେଖୁଥିଲି, ଫୁଲ ଗୁନ୍ଥୁଥିଲି । ମୋ ମୁଣ୍ଡ କାହିଁକି ଟିକିଏ ବୁଲାଉଛି ।

ସୁଶୀଳା ନିଜ କପାଳରେ ହାତ ବୁଲାଉ ବୁଲାଉ କହିଲା, ବାଃ ଭାଇ, ତମେତ ଭାରି ଭଲ ଲୋକ । ଚଲାଖି କରି ମତେ ଅଗକରି ପଚାରି ଦେଲେ କଣ ଛାଡ଼ିବ ? ଏବେ ନିଜେ କହ, ତମ ଦେହ କଣ ଖରାପ ହୋଇଛି ? ତମେତ ଆଜି କାହିଁକି-ଭାରି ଝଡ଼ିଗଲା ପରି ଦିଶୁଛ ?

ଏ ଖରାଠାରେ ବୁଲିକରି ଆସିଛି କିନା ! ହଁ, ସୁଶୀଳା, ଏଇ ନେ ଚଞ୍ଚଳା ତୋ ପାଇଁ ଖଣ୍ଡେ ଚିଠି ପଠାଇଛନ୍ତି । ମୋତେ କହିଛନ୍ତି କାଲି ତାଙ୍କର ଜନ୍ମଦିନ, ତୋତେ ସଙ୍ଗରେ ନେଇଯିବ ।

ସତ କ'ଣ ଭାଇ ? ମୁଁ ଯିବି । ଦେଖେ, ଚିଠିରେ ସେ କଣ ଲେଖିଛନ୍ତି ।

ମଣିଅଁ ତାଲପତ୍ରର ଖଣ୍ଡେ ଚିଠାଉ ମାଛ ଖାଲେଇରୁ ବାହାର କରି ସୁଶୀଳା ହାତକୁ ବଢ଼ାଇଦେଇ ଦୁଇ ଆଣ୍ଠୁରେ ହାତ ଭରାଦେଇ କଦମ୍ବଗଛ ମୂଳେ ବସି ପଡ଼ିଲା ।

ଚିଠିରେ ଲେଖା ଥିଲା—

ଭଉଣୀ ସୁଶୀଳା,

ତୁ ଏଡ଼େ କପଟୀ ବୋଲି ମୁଁ ଜାଣି ନ ଥିଲି । ଆଜିକି କେଇଦିନ ହେଲା ତୋର ଦେଖା ନାହିଁ କାହିଁକି । ତୋର ମଣିଅଁ ଭାଇ ଏଠିକି ଯେତେବେଳେ ଆସନ୍ତି, ତାଙ୍କୁ ମୁଁ ତୋ ବିଷୟରେ କେତେ ପଚାରେ । ସେ କିଛି କହନ୍ତି ନାହିଁ କାହିଁକି କେଜାଣି । ଦିନଯାକ ତୋତେ ଦେଖିବାକୁ ଭାରି ଛଟପଟ ହେଉଥାଏ । କାହା ସାଙ୍ଗରେ ମନମୁତାବକ ହସ ଖେଳ କଉତୁକ କରିବ ? କାହା ସାଙ୍ଗରେ ଖୁସିରେ ଦି' ଚାରିପଦ କଥାଭାଷା ହେବ ? ତୋ ସାଙ୍ଗେ ମୋର କେଇଦିନ ହେଲା ବା ପରିଚୟ । ସେତିକି ଦିନରେ ତୁ ତୋର ସ୍ନେହପାଶରେ ମତେ ବାନ୍ଧି ପକାଇଛୁ । ତୋତେ ମୋ ରାଣଟି, କାଲି ତୁ ନିଶ୍ଚୟ ଆସିବୁ । ମା କହିଛନ୍ତି, କାଲି ମୋ ଜନ୍ମଦିନ, ମତେ ଏଗାରବର୍ଷ ପୂରିଯିବ । ହଁ ଭଉଣୀ, ଦଇବ ମୋର ସହାୟ ହେଲେଣି । ମା ଗୋଟିଏ ପ୍ରସ୍ତାବ କରୁଥିଲେ । ସେତିକ ଯଦି ଠାକୁରେ କରନ୍ତି ଆଉ ତୁ ଏତେ ଦୂରରେ ରହିବୁ ନାହିଁ । ଦୁଇଜଣଯାକ ଏକାଠି ରହିବା । ଏଠିକି ଆସିଲେ ତତେ ସବୁ କଥା କହିବ । ଭାଇଙ୍କର ଭାରି ମନ । ତୁ ନିଶ୍ଚୟ ଆସିବୁ । ଇତି ।

ତୋର ସଙ୍ଗିନୀ
ଚଞ୍ଚଳା

ଚିଠି ପଢ଼ା ଶେଷ ହେଲା । ଚଞ୍ଚଳା ଧନୀ ଘର କନ୍ୟା ହୋଇ ଜଣେ ଧୀବର କନ୍ୟା ପାଖକୁ ଏପରି ଭାବରେ ଚିଠି ଲେଖିଛି କାହିଁକି ? ଚଞ୍ଚଳା ସୁଶୀଳାର ଅନ୍ତରଙ୍ଗ ବନ୍ଧୁ । ଉଭୟେ ଦୁଃଖସୁଖ ହେବା ସମୟରେ ସୁଶୀଳା ତା'ର ଗତ ଜୀବନର ଝାପ୍‌ସା ଚିହ୍ନଗୁଡ଼ିକର ବର୍ଣ୍ଣନା କରିଛି ତା'ର ସଙ୍ଗିନୀ ନିକଟରେ । ମଣିଆଁ ଯେ ଜଣେ ସାମାନ୍ୟ ଲୋକର ସନ୍ତାନ ନୁହେଁ ଏହା ମଧ୍ୟ ସେ ଜଣାଇଁ ଦେଇଛି । ଆହୁରି ମଧ୍ୟ ସେ କହିଛି, ମଣିଆଁକୁ ତା'ର ମା ଯେଉଁ ହୀରା ଖଣ୍ଡିକ ଉପହାର ଦେଇଛନ୍ତି ତାହାର ମୂଲ୍ୟ ଏତେ ଅଧିକ ଯେ, ସେ ଇଚ୍ଛା କଲେ ଦେଶରେ ଜଣେ ଧନୀଲୋକ ହୋଇ ନିଜର ବୋଇତ ଚଲାଇ ପାରେ । କିନ୍ତୁ ତାହା ନ କରୁଛି— ଏହାର ପ୍ରଧାନ କାରଣ, ତାଙ୍କର ଉଚ୍ଚାଶା ଓ ପୂଜନୀୟ ପାଳକ-ପିତୃଦେବଙ୍କର ଆଜ୍ଞା । ଚଞ୍ଚଳା କିନ୍ତୁ ସ୍ଥିର ହୋଇ ରହିବାର ବାଳିକା ନୁହେଁ । ସେ ସମସ୍ତ ଘଟଣା ତା'ର ପିତା ମାତା ଭ୍ରାତାଙ୍କ ଆଗରେ କହି ଦେଇଛି ।

ବହୁଦିନ ପରେ ମହାପାଣେ ବୁଝି ପାରିଛନ୍ତି, ଉଭୟେ ମଣିଆଁ ଏବଂ ସୁଶୀଳା କୁଳୀନ ବଂଶଜ । କେବଳ ନିଜର ଭାଗ୍ୟ ନିମନ୍ତେ ଏପରି ଧୀବର ବ୍ୟବସାୟ କରନ୍ତି । ସେ ନ ଜାଣିଲା ପରି ମଣିଆଁକୁ କିଛି କହନ୍ତି ନାହିଁ, ମନେ ମନେ କିନ୍ତୁ ତା' ପ୍ରତି ତାଙ୍କର ପ୍ରଗାଢ଼ ସ୍ନେହ ଥାଏ । ମଣିଆଁର ପ୍ରକୃତି ଓ ଗୁଣରେ ସେ ସନ୍ତୁଷ୍ଟ । ସୁବିଧା ପାଇଲେ ସେ ଯେ ମଣିଆଁକୁ ସାହାଯ୍ୟ କରି ତାକୁ ସମାଜରେ ପ୍ରତିଷ୍ଠିତ କରାଇବେ ଏହା ସ୍ଥିର କରିଅଛନ୍ତି ।

ଏଣେ ଅଧିରାଜ ସୁଶୀଳାର ସୌନ୍ଦର୍ଯ୍ୟରେ ବିମୋହିତ । ସେ ଚଞ୍ଚଳାଠାରୁ ସୁଶୀଳାର ଇତିହାସ ଶୁଣି ମନେ ମନେ କେତେ ଆଶା ବାନ୍ଧିଛନ୍ତି । ଅଧିରାଜଙ୍କ ଅଭିପ୍ରାୟ ତାଙ୍କର ପିତା ମାତା ଯେ ବୁଝି ପାରି ନାହାନ୍ତି ତାହା ନୁହେଁ, ମାତ୍ର ବୁଝିକରି ମଧ୍ୟ ନ ବୁଝିଲା ପରି ସମୟର ପ୍ରତୀକ୍ଷାରେ ଅଛନ୍ତି ।

ଚଞ୍ଚଳା ସୁଶୀଳାକୁ ନିଜର ସମାନସ୍କନ୍ଧ ଭାବରେ ପତ୍ର ଲେଖିଛି । ପତ୍ର ପାଠ ଶେଷ ହେଲା । ଉଭୟେ ମଣିଆଁ ଏବଂ ସୁଶୀଳା ଚିନ୍ତାମଗ୍ନ ଥିଲାପରି ଦେଖାଗଲେ । କେହି କାହାକୁ କିଛି ନ କହି ଚଞ୍ଚଳାର ପତ୍ରର ଶେଷ ଅଂଶର ଅର୍ଥ ବୁଝିବାକୁ ଚେଷ୍ଟା କଲେ । ସୁଶୀଳା ଭାବିଲା, ବୋଧହୁଏ ଚଞ୍ଚଳାର ବିବାହ ପ୍ରସ୍ତାବ ନେଇ ସେ ଲେଖିଛି । ବୋଧହୁଏ ମଣିଆଁ ଭାଇ ସଙ୍ଗେ ଚଞ୍ଚଳାର ଶୁଭ ପରିଣୟ ବିଷୟ ନେଇ ତାଙ୍କର ବାପା ମା ସ୍ଥିର କରିଛନ୍ତି । ସତ କଥା, ମଣିଆଁ ଭାଇର ବିଦ୍ୟାବୁଦ୍ଧି ଅଛି, ସାହସ ଅଛି, ରୂପ ଅଛି, ଧନ ଅଛି, ନାହିଁ କ'ଣ ? ସେ ଚଞ୍ଚଳାକୁ ପାଇ ସୁଖୀ ହୋଇ ପାରିବେ । ଚଞ୍ଚଳା ମଧ୍ୟ ମଣିଆଁ ଭାଇ ପରି ସର୍ବଗୁଣ ପରିପୂର୍ଣ୍ଣ ସ୍ୱାମୀ ପାଇ ନିଜକୁ ସୌଭାଗ୍ୟବତୀ ମନେ କରିବେ । ସେ ମଣିଆଁ ଭାଇକୁ ପ୍ରେମଚକ୍ଷୁରେ ଦେଖେ ଏହାର ପ୍ରମାଣ ମୁଁ ପାଇଛି । ତେଣୁକରି ସିନା ସେ ଲେଖିଛି ଦୁଇଜଣଯାକ ଏକାଠି ରହିବା ।

ମୁଁ କ'ଣ ଚମ୍ପଲା ପରି ନୂଆବୋହୂ ପାଇ ସୁଖୀ ହେବ ନାହିଁ ? ସେ ଯେ ମୋତେ ଭାରି ଭଲ ପାଆନ୍ତି । ଯଦି ଶୁଭପରିଣୟ ସମ୍ପାଦିତ ହୁଏ, ସେମାନଙ୍କୁ ଆଉ ଏଠାରେ ରହିବାକୁ ପଡ଼ିବ ନାହିଁ । ସୁନାହାଟ କିମ୍ବା ଅନ୍ୟ କୌଣସି ନିକଟସ୍ଥ ଗ୍ରାମକୁ ଯାଇ ରହିବାକୁ ହେବ । ଏପରି ନିରୀହ ଧୀବର କେଉଁସା ଛାଡ଼ି ଧୀମାନ ସନ୍ତାନ ପରି ଚଳିବାକୁ ହେବ ।

ଏ ବିବାହରେ ମଣିଆଁ ଭାଇ ରାଜି ହେବେ ତ ? ହେବେ ନାହିଁ କାହିଁକି ! ତାଙ୍କୁ ସତ୍‌ପାତ୍ର ମିଳିବ, ଅଧିକ ଅନେକ ସୁବିଧା ହେବ । ତେବେ ଯାହାକୁ ମନେ ମନେ ହୃଦୟର ଦେବତା ବୋଲି ବରଣ କରିଥିଲି ତାଙ୍କୁ ହରାଇବି ସିନା ।

ମଣିଆଁ ଚିନ୍ତାକଲା, ବୋଧହୁଏ ସେମାନେ ସ୍ଥିର କରିଛନ୍ତି ସୁଶୀଲା ସଙ୍ଗେ ଅଧିରାଜର ପରିଣୟ କରିବେ । ମୋର ହୃଦୟର ରାଣୀ ସୁଶୀଲା କ'ଣ ଏଥିରେ ସମ୍ମତ ହେବ । ନା, ଏହା ମୁଁ ସହ୍ୟ କରି ପାରିବି ନାହିଁ ।

କିଛି ସମୟ ଚିନ୍ତା ପରେ ଦିହେଁ ଦୁହିଁଙ୍କ ଆଡ଼କୁ ଚାହିଁଲେ—ଦୁହିଁଙ୍କ ଚକ୍ଷୁରେ ଅଶ୍ରୁ । ଉଭୟଙ୍କର ହୃଦୟ ଅସହ୍ୟ ଯନ୍ତ୍ରଣାରେ ଅଧୀର ହୋଇ ପଡ଼ିଲା । ମଣିଆଁ ସୁଶୀଲାର ନିକଟକୁ ଯାଇ ନିଜର ଲୁଗାରେ ତା'ର ଚକ୍ଷୁ ପୋଛି ପକାଇଲା । ସୁଶୀଲା ମଧ୍ୟ ମଣିଆଁର ଚକ୍ଷୁଜଳ ନିଜ ଅଞ୍ଚଳରେ ପୋଛିଦେଲା ।

ସୁଶୀଲା ପଚାରିଲା, ଭାଇ କାନ୍ଦୁଛ କାହିଁକି ? ତୁମେ ତ ଭାରି ସୁଖୀ । ଚମ୍ପଲା ପରି ଗୁଣବତୀ କନ୍ୟାକୁ ସ୍ତ୍ରୀ ରୂପେ ପାଇବ ।

ମଣିଆଁ ଚମକି ପଡ଼ିଲା; ସେ ଭାବିଲା, ମୁଁ ଯାହା ଭାବୁଥିଲି ତାହା ଭ୍ରମ । ଚିଠିର ପ୍ରକୃତ ଅର୍ଥ ତେବେ ଏଇଆ ? ମୁଁ ବୁଝି ପାରି ନ ଥିଲି । କହିଲା, ମୋର ଏ ହୃଦୟରେ ଯେ ଅଉ କାହାର ସ୍ଥାନ ନାହିଁ ସୁଶୀଲା ! ତୁ ତାହା ନିଜେ ଅଧିକାର କରିଛୁ । ମନେ ନାହିଁ, ସେଦିନ ମୁଁ ତୋତେ ପଚାରିଥିଲି, ଏ କ୍ଷୁଦ୍ର ସଂସାରର ରାଣୀ କିଏ ? ତୁ କ'ଣ କହିଥିଲୁ ମନେ ରଖିଛୁ ତ ? ଆଜି କାହିଁକି ତେବେ ଅଧିରାଜକୁ ·· ।

ବାଧା ଦେଇ ସୁଶୀଲା କହିଲା ଅଧିରାଜ ? ମୋର ହୃଦୟରେ ତା'ର ସ୍ଥାନ ନାହିଁ । ତା ବିଷୟରେ ମୁଁ ଦିନେ ହେଲେ କେବେ ଭାବି ନାହିଁ ତ ?

ସେ ଯେ ତୋ ବିଷୟରେ ସବୁବେଳେ ଚିନ୍ତା କରୁଛି ।

ତେବେ ଏହିଠାରେ ଆଜି ପ୍ରତିଜ୍ଞା କରିବା । ଅତି ଶୀଘ୍ର ବିବାହର ଆୟୋଜନ କରିବାକୁ ପଡ଼ିବ ।

ସୁଶୀଲା ଆରକ୍ତ ମୁଖ ଅବନତ କରି ବିନୀତ ଭାବେ କୋମଳ ସ୍ୱରରେ କହିଲା, ନା, ଆୟୋଜନ ଦିଗରୁ କିଛି କରିବାକୁ ପଡ଼ିବ ନାହିଁ । ମୁଁ ସମସ୍ତ ଆୟୋଜନ କରି ରଖିଛି ।

ସୁଶୀଳା ଧୀରେ ଧୀରେ କବାଟର ଗଛ ନିକଟକୁ ଘୁଞ୍ଚିଗଲା । ଦୁଇମାଳ ଫୁଲ ଦୁଇ ହାତରେ ଧରି ମଣିଆଁର ନିକଟରେ ଉପସ୍ଥିତ ହେଲା । ମାଳେ ମଣିଆଁର ହାତକୁ ବଢ଼ାଇଦେଲା । ଅନ୍ୟ ମାଳକ କମ୍ପିତ ହସ୍ତରେ ମଣିଆଁର ଗଳାରେ ଲମ୍ବାଇ ଦେଲା । ଲଜ୍ଜାରେ ମୁଖ ତାର ଆରକ୍ତ ଦେଖାଗଲା, ଭୟରେ ଅଧରଦ୍ୱୟ କମ୍ପିତ ହେଲା । ସେ ଧୀରେ ଧୀରେ ମସ୍ତକ ନୁଆଁଇ ମଣିଆଁର ପଦଦେଶରେ ଲଗାଇ ଦେଲା ।

ମଣିଆଁ ପ୍ରଣୟିନୀକୁ ତଳୁ ଉଠାଇ ଫୁଲର ହାରଟି ତା ଗଳାରେ ଲମ୍ବାଇ ଦେଲା । ତାକୁ ନିଜର ହୃଦୟ ଆଡ଼କୁ ଟାଣି ଆଣିଲା । ସନ୍ଧ୍ୟା ପ୍ରହରର ଚନ୍ଦ୍ରଦେବ ତାରକାସଙ୍ଗ ବେଷ୍ଟିତ ହୋଇ ଏହି ପରିଣୟର ସାକ୍ଷୀ ରହିଲେ । ସମୀରଣ ପ୍ରଣୟ-ସଙ୍ଗୀତ ଗାନ କଲା, ସାଇଁ ସାଇଁ କରି ବୃକ୍ଷ ଲତାର ପତ୍ର ହଲାଇ ।

...

ଚମ୍ପଲାର ଜନ୍ମୋତ୍ସବ ଉପଲକ୍ଷେ ସୁଶୀଳା ଫୁଲ ଗୁନ୍ଥିବାରେ ବ୍ୟସ୍ତ । ସଙ୍ଗିନୀର ଜନ୍ମୋତ୍ସବରେ ତାକୁ ସେ ଏହି ଫୁଲର ହାରଟି ଉପହାର ଦେବ । ଧୀବର ବାଳିକାର ଆଉ ଉପହାର ଦେବାକୁ ଅଛି କଣ ? ସେହି କୁସୁମର ହାରଟି ସଙ୍ଗେ ତା'ର ହୃଦୟର ମଲ୍ଲିକା-ଶୁଭ୍ର ପ୍ରେମ । ବାଳିକା କୁସୁମ ଗୁନ୍ଥିବାରେ ନିଜର ମନ ପ୍ରାଣ ଏକାଥରେ ଲଗାଇ ଦେଇଛି । ତେଣେ ବହିର୍ଜଗତରେ ହେଉଛି କ'ଣ ତା'ର ସେ ଆଡ଼କୁ ନିଘା ନାହିଁ । ମଣିଆଁ ଆଜି ବଡ଼ ସକାଳୁ ମାଛ ଧରିବାକୁ ଯାଇଛି ଦ୍ୱିଗୁଣ ଉତ୍ସାହରେ, ଭେଟି କରିବାକୁ ।

ଏତିକି ବେଳେ କିଏ ଜଣେ ପଛଆଡ଼ୁ ଆସି ହଠାତ୍ ତା'ର ଆଖି ବୁଜି ଧରିଲା । ସେ ଭାବିଲା ବୋଧହୁଏ ମଣିଆଁ ଭାଇ । ତେଣୁ ଉଚ୍ଚ ସ୍ୱରରେ ହସିଉଠିଲା । ଆଗନ୍ତୁକ ସୁଶୀଳାର ଆଖି ଛାଡ଼ି ଦେଇ ସମ୍ମୁଖକୁ ଯାଇ ଦଣ୍ଡାୟମାନ ହେଲା ।

ଏଁ, ଏତ ମଣିଆଁ ଭାଇ ନୁହେଁ, ଏ ତ ସେହି !

ସୁଶୀଳାର ମୁଖ ମଳିନ ପଡ଼ିଗଲା । ଜଣାଗଲା, ସତେ ଯେପରି ତା'ର ଦେହରୁ ସମସ୍ତ ରକ୍ତ କୁଆଡ଼େ ଉଭେଇଗଲା । ସେ ଯେପରି ଭାବରେ ବସିଥିଲା, ଠିକ୍ ସେହିପରି ବସି ରହିଲା । ଆଗନ୍ତୁକର ମୁହଁକୁ ଅନାଇବାକୁ ସାହସ କଲା ନାହିଁ । ଚକ୍ଷୁ ନତ କରି ଫୁଲ ଗଦାକୁ ଗୃହିଁ ରହିଲା ।

ଆଗନ୍ତୁକ ନିକଟକୁ ଘୁଞ୍ଚି ଆସି କୋମଳ ସ୍ୱରରେ କହିଲା, ସୁନ୍ଦରି, ଭୟର କାରଣ ନାହିଁ । ଆଉ ବିଳମ୍ବ କରିବାକୁ ସମୟ ନାହିଁ । 'ଶୀଘ୍ର ମୋ ସଙ୍ଗେ ଆସ । ସମୁଦ୍ର କୂଳରେ ସମସ୍ତ ପ୍ରସ୍ତୁତ ଅଛି ।

ସୁଶୀଳା ମୁଖ ଫେରାଇ କହିଲା ତେମେ କିଏ ? ମୁଁ ସମୁଦ୍ର କୂଳକୁ ଯିବି କାହିଁକି ?

ମୋତେ ଚିହ୍ନି ପାରୁନ ? ମନେ ନାହିଁ, କେତେ ବର୍ଷ ପୂର୍ବେ ତୁମେ ଯେଉଁ ଆହତ ଲୋକଟିର ମୁଖରେ ଜଳ ଦେଇ ତାର ଜୀବନ ରକ୍ଷା କରିଥିଲ, ମୁଁ ସେହି । ଏ ଜୀବନ ତେମେ ବଞ୍ଚାଇଛ । ତେମେ ମୋ ଜୀବନର ଅଧିକାରିଣୀ ରାଣୀ । ପ୍ରଥମରେ ମୋର ଭ୍ରମ ହୋଇଥିଲା, ତୁମେ ଦେବୀ ବୋଲି । ଦୟାକରି ମୋର ଅନୁରୋଧ ରକ୍ଷାକର ।

ତମର ଏଠାରେ ଠିଆ ହେବାର କୌଣସି ଅଧିକାର ନାହିଁ । ଶୀଘ୍ର ଏଠାରୁ ଚାଲିଯାଅ ।

ଅଧିକାର ଅଛି । ମୋର ହୃଦୟର ରାଣୀ ନିକଟରେ......... ।

ହୁସିଆର ହୋଇ କଥା କହ । ପର ଝିଅ, ପରର ସ୍ତ୍ରୀ ପାଖରେ ଏପରି ନିର୍ଲଜ୍ଜ ପ୍ରେମ ପ୍ରକାଶ କରିବା ମହାପାପ ।

ପାପପୁଣ୍ୟ ବିଚାରବୁଦ୍ଧି ମୋର ଅଛି ସୁନ୍ଦରୀ, ତମକୁ କଷ୍ଟ କରି ବତାଇ ଦେବାକୁ ପଡ଼ିବ ନାହିଁ । ଏବେ ପ୍ରସ୍ତୁତ ହୁଅ ।

ଯୁବକ ହୁଇସିଲ ବଜାଇଲେ । ଏହା ଦେଖି ବାଳିକାର ହୃଦୟ ଭୟରେ ପ୍ରକମ୍ପିତ ହେଲା । ସେ ସାହସ ଅବଲମ୍ବନ କରି ଦଣ୍ଡାୟମାନ ହେଲା । ଭାବିଲା, ପଳାୟନ କରିବ । କିନ୍ତୁ ହୁଇସିଲ ଶବ୍ଦରେ ତା'କୁ ଚାରିଆଡ଼ୁ ବେଷ୍ଟନ କରି କେତେକ ବ୍ୟକ୍ତି ଦଣ୍ଡାୟମାନ, ପଳାୟନର ଉପାୟ ନାହିଁ । ସୁଶୀଳାର ଚକ୍ଷୁପ୍ରାନ୍ତ ଦେଇ ଲୋତକଧାରା ଗଡ଼ିପଡ଼ିଲା । ସେ ଉପାୟଶୂନ୍ୟ ହୋଇ ପୁନର୍ବାର ବସି ପଡ଼ିଲା । ମନେ ମନେ ଭଗବାନଙ୍କୁ ପ୍ରାର୍ଥନା କଲା, ହେ ପରମେଶ୍ୱର ! ଏ ବିପଦରୁ ରକ୍ଷାକର ।

ସୁନ୍ଦରୀ, ଆଉ ଡେରି କାହିଁକି କରୁଛ ?

ଆଜ୍ଞା, ଭାଇ, ପରର ସ୍ତ୍ରୀ ମୁଁ, ଛଡ଼ାଫୁଲ । ମୋ ଉପରେ ଅତ୍ୟାଚାର କରିବାକୁ ବସିଛ କାହିଁକି ? ଛଡ଼ାଫୁଲଟାଏ ଗୋଟାଇ ନେଇ କେଉଁ ସୁଖ ପାଇବ ?

ଆଗନ୍ତୁକ ଯୁବକ ହସି ହସି ଉତ୍ତର ଦେଲା, ଛଡ଼ାଫୁଲ ହେଉ ପଛେ ଯଦି ସୁନ୍ଦର ହୋଇଥାଏ, ସୁଗନ୍ଧ ଥାଏ, ତାହା ଆଦରଣୀୟ । ତମର ମସ୍ତକରେ ସିନ୍ଦୂର ନାହିଁ । କେବଳ ମୋତେ ଠକିବାକୁ ଏ ଚାଲାକି । ମୁଁ ଏଥିରେ ସହଜରେ ଭୁଲି ଯିବାର ଲୋକ ନୁହେଁ । ଆଜ୍ଞା, ତମର ଅନିଚ୍ଛା କାହିଁକି ? ମୁଁ ଦେଶର ଜଣେ ପ୍ରଧାନ ସାଧବଙ୍କର ପୁତ୍ର । ପିତାଙ୍କ ମୃତ୍ୟୁ ପରେ ବିଶାଳ ସମ୍ପତ୍ତିର ଏକମାତ୍ର ଅଧିକାରୀ । ମୋର ସେ ସୌଭାଗ୍ୟର ଅଂଶ ନେବାକୁ ଏତେ ଅନିଚ୍ଛୁକ କାହିଁକି ସୁନ୍ଦରୀ ? ଏହି ଦେଖ, ତମର ଅଙ୍ଗୁଠିରେ ଯେଉଁ ମୁଦିଟି ନାଇଛ, ସେଟି ମୋର ।

ତାର ମୂଲ୍ୟ ଏତେ ଅଧିକ ଯେ, ସହଜରେ କେହି ଅନୁମାନ କରିପାରିବେ ନାହିଁ । ପ୍ରଥମ ସାକ୍ଷାତ ଦିନଠାରୁ ତମ ସ୍ମୃତି ମୁଁ ହୃଦୟରେ ରଖି ବୁଲୁଥିଲି । ଯୁଆଡ଼େ ଗଲେ ତମର ଚିନ୍ତା ମୋ ହୃଦୟକୁ ଆଲୋଡ଼ିତ କରି ଦେଉଥିଲା । ମୁଁ ଦେଖୁଛି, ତମେ ମଧ୍ୟ ମୋର ସ୍ମୃତି ଜାଗ୍ରତ ରଖିବାକୁ ମୋର ଉପହାର ମୁଦିଟି ସର୍ବଦା ଅଙ୍ଗରେ ରଖିଛ । ତେବେ ଆଜି ଏତେ ଛଳନା କାହିଁକି ?

ଗରିବ ଧୀବର କନ୍ୟା ପ୍ରତି ଲୋଭ କର ନା । ତା'ର ଦୁର୍ଗନ୍ଧ ଦେହ ସ୍ପର୍ଶ କରିବା ଆପଣଙ୍କ ପରି ଧନୀ ଯୁବକ ପକ୍ଷରେ ଲଜ୍ଜାର କଥା ।

ଯୁବକ ଆଶାବାନ୍ ହୋଇ କହିଲା, ବୋଧହୁଏ ମହାଭାରତରୁ ପଢ଼ିଥିବ ଯୋଜନ-ଗନ୍ଧାଙ୍କର ପରିଣୟ ବିଷୟରେ । ସେ ତ ଧୀବର କନ୍ୟା ଥିଲେ ।

ମୁଁ ଯୋଜନ-ଗନ୍ଧାଙ୍କ ବିଷୟରେ କୌଣସି କଥା ପଢ଼ି ନାହିଁ । ଦିନେ ଚଞ୍ଚଳା ମୁହଁରୁ ଶୁଣିଥିଲି । କିନ୍ତୁ ଆପଣ ତ ଆଜି ଋଷି ନୁହନ୍ତି । ହଁ, ଠିକ୍ କଥା ମନେ ପଡ଼ୁଛି । ମୋର ମତରେ ଆପଣଙ୍କ ପରି ଧନୀ, ରୂପବାନ୍, ବୁଦ୍ଧିମାନ୍ ଯୁବକଙ୍କର ଚଞ୍ଚଳା ସଙ୍ଗେ ପରିଣୟ ହେବା ବାଞ୍ଛନୀୟ । ସେ ଅତ୍ୟନ୍ତ ସୁନ୍ଦରୀ । ତା'ର ଗୋଡ଼ଘଷା ପଥର ଖଣ୍ଡ ସାଙ୍ଗେ ବି ମୁଁ କୌଣସି ଗୁଣରେ ସମାନ ନୁହେଁ । ସେ ଶିକ୍ଷିତା । ସେ ଧନୀର କନ୍ୟା, ସବୁ ଗୁଣରେ ଆପଣଙ୍କର ସମକକ୍ଷ ।

ଚଞ୍ଚଳା କିଏ ?

ଶୁଣନ୍ତୁ, ମୁଁ କହୁଛି । ଏ ବିଷୟରେ ମୁଁ ମଧ୍ୟସ୍ଥର କାର୍ଯ୍ୟ କରିବି । ଚଞ୍ଚଳାର ପିତାଙ୍କୁ କହିବି । ସେ ନିଶ୍ଚୟ ରାଜି ହେବେ । ଆପଣଙ୍କ ପରି ଜାମାତା ପାଇ କେଉଁ ଲୋକ ନିଜକୁ ଭାଗ୍ୟବାନ୍ ମନେ ନ କରିବ ? କହନ୍ତୁ, ମୁଁ ବର୍ତ୍ତମାନ ଯାଇ ଠିକଣା କରି ଆସିବି । ଆଜି ତାର ଜନ୍ମଦିନ । ମୋର ସଙ୍ଗିନୀକୁ ଉପହାର ଦେବାକୁ ଏ ଫୁଲର ହାରଟି ଗୁନ୍ଥୁଥିଲି ।

ସୁଶୀଳା ଅସମ୍ପୂର୍ଣ୍ଣ ଫୁଲର ହାରଟି ଗୁନ୍ଥିବାକୁ ଚେଷ୍ଟା କଲା । ସତେ କି ମନରେ କୌଣସି ଭୟ ନାହିଁ ।

ଯୁବକ ଚିନ୍ତାକରି ପଚାରିଲା, ଚଞ୍ଚଳା କିଏ ?

ନିକଟରେ ସୁନାହାଟ ବୋଲି ଗ୍ରାମ ଅଛି । ସେହି ଗ୍ରାମର ପ୍ରଧାନ ଧନୀ ହେଉଛନ୍ତି ମହାପାତ୍ର ଘର, ଚଞ୍ଚଳା ମହାପାତ୍ରଙ୍କର କନ୍ୟା । ଆଖ ପାଖ କୋଡ଼ିଏ ଖଣ୍ଡ ଗାଁରେ ମୋର ସଙ୍ଗିନୀ ଚଞ୍ଚଳାର ତୁଳନାରେ ଆସିବାକୁ କେହି ନାହିଁ ।

ମୋର ଯେ ବିଶ୍ୱାସ ହେଉ ନାହିଁ ତମ କଥାରେ । ହୁଏ ତ, ମୋ ନିକଟରୁ ପଳାଇଯିବାକୁ ଏ ଫିସାଦ କରୁଥିବ ।

ମିଛ କି ମିଥ୍ୟା ମୁଁ ଜାଣେ ନାହିଁ । ଯଦି ପ୍ରମାଣ ଚାହିଁ ହେଉଛି ନିଅ, ଦେଖ । ସୁଶୀଳା ସଙ୍ଗିଣୀର ଚିଠାଉ ଖଣ୍ଡି ଯୁବକର ନିକଟକୁ ଫିଙ୍ଗିଦେଲା । କିନ୍ତୁ ହଠାତ୍ ଚିନ୍ତାକଲା ଅହୋ, ମୁଁ କ'ଣ କଲି, ମୋର ତ ସର୍ବନାଶ ହୋଇଛି । ଏହା ଜାଣି ମଧ୍ୟ ମୁଁ ମୋର ସଙ୍ଗିଣୀର ସର୍ବନାଶ କରିବାକୁ ବସିଛି ? ଏ ଯୁବକ ନିଶ୍ଚୟ ଜଣେ ଦସ୍ୟୁସର୍ଦ୍ଦାର । କିଏ ଜାଣେ, ଏ ଦୁରାତ୍ମାର ଦିନେ ମହାପାତ୍ରଙ୍କ ଘରେ ଚଢ଼ାଉ କରି ବଳାତ୍କାରପୂର୍ବକ ଚଞ୍ଚଳାକୁ ଧରି ନ ନେବ ? ମୁଁ କେଡ଼େ ଭୁଲ କରି ନ ପକାଇଛି ! ତା'ର ଚିଠି ଖଣ୍ଡ ମୁଁ ପାପିଷ୍ଠକୁ ଦେଲି କାହିଁକି ? ଏ ମୋର ସଙ୍ଗିଣୀର ଅଇଣ୍ଠା ପତ୍ର ଛୁଇଁବାର ଯୋଗ୍ୟ ନୁହେଁ । ଏଥି ନିମନ୍ତେ କ'ଣ ଚଞ୍ଚଳା ମୋତେ ଭଲ ପାଇଥିଲା ! ମୁଁ ରାକ୍ଷସୀ ।

ସୁଶୀଳାର ଚିନ୍ତାରେ ବାଧାଦେଇ ଯୁବକ କହିଲା, ହଁ ସୁନ୍ଦରି, ମୁଁ ସବୁ ବୁଝି ପାରିଛି । ମାତ୍ର, ମୋର ହୃଦୟରେ ଯେ ତମ ବ୍ୟତୀତ ଅନ୍ୟ କାହାର ସ୍ଥାନ ନାହିଁ । ସ୍ୱର୍ଗର ଅପ୍ସରା ମୋ ଚକ୍ଷୁରେ ତମଠାରୁ ହୀନ ଦେଖାଯିବ । ସତ କହୁଛି, ଚଞ୍ଚଳା ପରି ସହସ୍ର ଚଞ୍ଚଳାକୁ ପଦପ୍ରହାର କରିପାରେ ତମକୁ ପାଇଲେ ।

ଚଞ୍ଚଳା ପ୍ରତି ଯେ ଯୁବକ ଆକୃଷ୍ଟ ନୁହେଁ, ଏହା ବୁଝିପାରି ସୁଶୀଳା ମନେ ମନେ ସୁଖୀ ହେଲା । ଭଗବାନଙ୍କୁ ଧନ୍ୟବାଦ ଦେଲା । ଚିନ୍ତାକଲା, ମୋ ଉପରେ ଯେତେ ବିପଦ ଆସୁ ପଛେ, ଚଞ୍ଚଳା ପରି ସରଳା ବାଳିକା ସୁଖରେ ଥାଉ, ଭଗବାନ୍ ତା'ର ଜୀବନ ସୁଖମୟ କରନ୍ତୁ । ପ୍ରକାଶ୍ୟରେ କହିଲା, ମୋର ହୃଦୟରେ ତମର ସ୍ଥାନ ନାହିଁ । ଆଉ ବିଶେଷ ଅନୁରୋଧ କରିବା ଆବଶ୍ୟକ ନାହିଁ । ଦୟାକରି ମୋ ପାଖରୁ ଚାଲିଯାଅ । ଯଦି ବିଶ୍ରାମ କରିବ, ତମର ଲୋକମାନଙ୍କୁ ଡାକ, ସେମାନେ ସମସ୍ତେ ଏହିଠାରେ ବସନ୍ତୁ । ମୁଁ ସେବାଶୁଶ୍ରୂଷା କରିବାର ଆୟୋଜନ କରେ ।

ସୁଶୀଳା ଉଠିଲା । ଯୁବକଙ୍କ ନିକଟକୁ ଯାଇ ପୁନର୍ବାର କହିଲା, ଦୟାକରି ଲୋକମାନଙ୍କୁ ମନା କରିବ ସେମାନେ ଯେପରି ବଗିଚାରୁ ଗଛପତ୍ର ନ ଛିଣ୍ଡାନ୍ତି । ମୁଁ ଭାରି ଯତ୍ନରେ ଏ ଗଛଗୁଡ଼ିକ ବଢ଼ାଇଛି । ଏଥିରୁ ଗୋଟିଏ ପତ୍ର ଛିଣ୍ଡାଇଲେ ମୋତେ ଭାରି କଷ୍ଟ ହୁଏ ।

ସୁଶୀଳା ଚାଲିଯିବାକୁ ଚେଷ୍ଟା କଲା ।

ଯୁବକ ସୁଶୀଳାର ହାତଧରି କହିଲା, ସୁଶୀଳା, ତମର ହୃଦୟରେ ମୋର ସ୍ଥାନ ନ ଥାଇ ପାରେ, ନ ଥାଉ, ମାତ୍ର ହୃଦୟ ତମର ଶୂନ୍ୟ । ସେ ଶୂନ୍ୟ ସ୍ଥାନରେ ଯାହାକୁ ଇଚ୍ଛା ତାକୁ ବସାଇପାର । ଅନୁରୋଧ କରେ, ମୋତେ ସେ ଆନନ୍ଦରୁ ବଞ୍ଚିତ କରିବ ନାହିଁ ।

ନା' ମୋ ହୃଦୟ ଶୂନ୍ୟ ନୁହେ । ତାହା ଅନ୍ୟ ଜଣଙ୍କ ଦ୍ୱାରା ଅଧିକୃତ ।

ମୋ ପାଇଁ ତାକୁ ସେ ସ୍ଥାନରୁ ତଡ଼ିବାକୁ ହେବ ।

ବଞ୍ଚି ଥାଉଁ ଥାଉଁ ତାହା ମୁଁ କରି ନ ପାରେ । ମୋତେ ଛାଡ଼ିଦିଅ ।

ମୁଁ ଅବୋଧ ନୁହେଁ । ସେଦିନ ଯେପରି ଭାବରେ ମୋ ନିକଟରୁ ପଳାଇ-ଗଲ, ସେଥିରୁ ମୁଁ ଶିକ୍ଷା କରିଛି । ଆଉ ନୁହେଁ । ମୋତେ ଠକି ପଳାଇବା ସହଜ ମନେ କରିବ ନାହିଁ ।

ଯୁବକ ତିନଥର ବେଣୀ ବଜାଇଲା । ସଙ୍ଗେ ସଙ୍ଗେ ଚାରିଆଡ଼ୁ ଅନେକ ଲୋକ ଆସି ଘେରିଗଲେ । ସୁଶୀଳାର ପଳାୟନ ଚେଷ୍ଟା ବ୍ୟର୍ଥ ହେଲା । ସେ ଚିତ୍କାର କରିଉଠିଲା । ମଣିଅାଁ ଭାଇକୁ ସେ କେତେ ଡାକିଲା । ଅହା ! ମଣିଆଁ ଭାଇ ତାର କାହିଁ ?

ସୁଶୀଳାକୁ ତିନିଜଣ ଲୋକ ଟାଣି ଟାଣି ସମୁଦ୍ର କୂଳକୁ ନେଇ ଚାଲିଲେ । ଅନ୍ୟ ଲୋକମାନେ ତାଙ୍କର ଚାରିଆଡ଼େ ଘେରି ଚାଲିଲେ । ଯୁବକ ସମସ୍ତଙ୍କର ପଛରେ ଥାନ୍ତି ।

ସମୁଦ୍ର କୂଳରେ ନୌକା ଆଗରୁ ରଖାଯାଇଥିଲା । ସେହି ପ୍ରକାଣ୍ଡ ନୌକାର ଗୋଟିଏ ପ୍ରକୋଷ୍ଠରେ ବନ୍ଦିନୀ ହୋଇ ରହିଲା ସୁଶୀଳା । ନୌକା ସମୁଦ୍ର ମଧ୍ୟକୁ ଚାଲିଲା । ସୁଶୀଳା ଉଚ୍ଚ ସ୍ୱରରେ ଚିତ୍କାର କରି କାନ୍ଦୁଥାଏ । ଆଉ ତାର କି ବଳ ଅଛି ?

ସମସ୍ତେ ବସି ଆନନ୍ଦରେ ଗଳ୍ପ କରୁଛନ୍ତି, ଏହି ସମୟରେ କିଏ ଜଣେ ପଛଆଡ଼ୁ ଧାଇଁ ଆସିଲା ଧଇଁସଇଁ ହୋଇ । ସେମାନଙ୍କର ମଧୁରାଳାପ ଭାଙ୍ଗିଗଲା । ଧଡ଼ପଡ଼ ହୋଇ ଠିଆ ହେଲେ ସମସ୍ତେ । ଆଗନ୍ତୁକ ଦେଖିବାକୁ ବଳିଷ୍ଠକାୟ । ଚକ୍ଷୁ ଘୂର୍ଣ୍ଣାୟମାନ । ସମସ୍ତ ଶରୀର ଜଳସିକ୍ତ ।

ସମସ୍ତେ ଦେଖି ଆଶଙ୍କାନ୍ୱିତ ହେଲେ । ଅପରିଚିତ ଏ ବ୍ୟକ୍ତି ବୋଇତ ଉପରକୁ ଉଠିଲା କିପରି ?

ଆଗନ୍ତୁକ ମଣିଆଁ ବ୍ୟତୀତ ଆଉ କେହି ନୁହେଁ । ସେ ମାଛ ଧରୁଥିବା ସମୟରେ ବୋଇତରୁ କାହାର କାନ୍ଦଣା ଶୁଣିବାକୁ ପାଇଲା । ସିଧା ବୋଇତକୁ ଲକ୍ଷ୍ୟ କରି ପହଁରି ପହଁରି ଚାଲିଲା । ସେ ଯେତିକି ନିକଟକୁ ଆସୁଥାଏ, ତାର ହୃଦୟ ସେତିକି ଅସ୍ଥିର ହେଉଥାଏ । କିଛିଦୂର ଆସି ବୁଝି ପାରିଲା, ସେ ନିଶ୍ଚୟ ସୁଶୀଳାର ସ୍ୱର, ଆଉ କାହାର ନୁହେଁ ।

ସୁଶୀଳା ବିପଦାପନ୍ନ । ଦସ୍ୟୁମାନେ ତାଙ୍କୁ ଧରି ନେଇଛନ୍ତି । ଏତିକି ଭାବି ମଣିଅାଁ ପାଗଳ । ସେ ବୋଇତ ପାଖକୁ ଅାସିଲା । ସିଡ଼ି ନାହିଁ ଉପରକୁ ଚଢ଼ିବ କିପରି ? ଗୋଟାଏ କାତର ଦଉଡ଼ି ପଛମଙ୍ଗ ନିକଟରେ ଝୁଲୁଥିଲା । ସାହସ ପୂର୍ବକ ମଣିଅାଁ ସେହି ଦଉଡ଼ି ଧରି ଉପରକୁ ଉଠିଲା ଭାରି କଷ୍ଟରେ । ଉପରକୁ ଉଠି ଦେଖିଲା, କେତେକ ଲୋକ ନିଶ୍ଚିନ୍ତ ମନରେ ଅାଳାପ କରୁଛନ୍ତି । ପଚାରିଲା, କାହାକୁ ବନ୍ଦୀ କରି ରଖିଛ ? ଛାଡ଼ିଦିଅ ଯଦି ଭଲ ଚାହଁ ।

ମଣିଅାଁର କଥା ଶେଷ ହେବା ପୂର୍ବରୁ ଯୁବକ ସମସ୍ତ ଘଟଣା ଠଉରାଇ ନେଇଥିଲେ । ସେ ହାତ ଠାରିଲେ । ପଛଅାଡ଼ୁ ଦୁଇ ଜଣ ଲୋକ ଅାସି ତାଙ୍କୁ ବନ୍ଦୀକଲେ । ଉଦ୍ଧାରର ଚେଷ୍ଟା ବିଫଳ ହେଲା ।

ଯୁବକଙ୍କର ଅାଦେଶରେ ଲୋକେ ବନ୍ଦୀକୁ ନେଇ ବନ୍ଦିନୀ ଥିବା କୋଠରୀରେ ପୂରାଇ ବାହାର ପାଖୁ ତାଲା ବନ୍ଦକଲେ ।

ବନ୍ଦିନୀର କାନ୍ଦଣା ବନ୍ଦ ହୋଇଗଲା ।

ବୋଇତ ତାମ୍ରଲିପ୍ତ ଅାଡ଼େ ଚାଲିଲା ।

ଭାରତ ମହାସାଗର ମଧ୍ୟସ୍ଥିତ ଅାଣ୍ଡାମାନ ଦ୍ୱୀପପୁଞ୍ଜ । ସେହି ଦ୍ୱୀପପୁଞ୍ଜର ବିଭିନ୍ନ ଅଂଶ ବିଭିନ୍ନ ନାମରେ ପରିଚିତ । ଉତ୍ତର ଅାଣ୍ଡାମାନ, ଦକ୍ଷିଣ ଅାଣ୍ଡାମାନ, ମଧ୍ୟ ଅାଣ୍ଡାମାନ, ଛୋଟ ଅାଣ୍ଡାମାନ ଇତ୍ୟାଦି । ଉତ୍ତର, ମଧ୍ୟ ଏବଂ ଦକ୍ଷିଣ ଦ୍ୱୀପଗୁଡ଼ିକର ଲମ୍ବ ପ୍ରାୟ ପଚିଶ ମାଇଲ ହେବ । ବଡ଼ ଅାଣ୍ଡାମାନ ଦ୍ୱୀପପୁଞ୍ଜର ପ୍ରାୟ ତିରିଶ ମାଇଲ ଦକ୍ଷିଣକୁ ଛୋଟ ଅାଣ୍ଡାମାନ ଅବସ୍ଥିତ । ଦକ୍ଷିଣ ଏବଂ ଛୋଟ ଅାଣ୍ଡାମାନର ମଧ୍ୟସ୍ଥିତ ଗୋଟିଏ ଦ୍ୱୀପର ନାମ ସୂର୍ଯ୍ୟ ଦ୍ୱୀପ ।

ସପ୍ତମ ଶତାବ୍ଦୀର ପ୍ରାରମ୍ଭରେ ପ୍ରବଳପ୍ରତାପୀ ଯଜାତି କେଶରୀଙ୍କ ମୃତ୍ୟୁ ପରେ ସୂର୍ଯ୍ୟ କେଶରୀ ନାମରେ ଜଣେ ରାଜା ଉତ୍କଳରେ ରାଜତ୍ୱ କରୁଥିଲେ । ତାଙ୍କର ନାମ ଅନୁଯାୟୀ ତାମ୍ରଲିପ୍ତର ଓଡ଼ିଅା ନାବିକମାନେ ଏ ଦ୍ୱୀପର ନାମ ରଖିଥିଲେ ସୂର୍ଯ୍ୟଦ୍ୱୀପ । ଭୂମିକମ୍ପର ଅତ୍ୟାଚାରରୁ ସୂର୍ଯ୍ୟ ଦ୍ୱୀପ ବହୁଶତ ବର୍ଷ ପୂର୍ବରୁ ଲୋପ ପାଇଲାଣି; ମାତ୍ର ଯେଉଁ ସମୟର ଘଟଣା ଲେଖା ହେଉଛି ସେତେବେଳେ ଏ ଦ୍ୱୀପଟି ଡକାଇତ ରାଜ୍ୟ ଭାବରେ କୁଖ୍ୟାତି ଲାଭ କରିଥିଲା । ଦ୍ୱୀପର ଲମ୍ବା ପ୍ରାୟ ଅାଠ ମାଇଲ, ଚୌଡ଼ା ପାଞ୍ଚ ମାଇଲ ।

ଅାଣ୍ଡାମାନ ଦ୍ୱୀପପୁଞ୍ଜର ବିଶେଷତ୍ୱ—ତହିଁରେ ନଡ଼ିଅା ଗଛ ନାହିଁ । ଅଥଚ, ଟିକିଏ ତଳକୁ, ନିକୋବାର ଦ୍ୱୀପପୁଞ୍ଜ ନଡ଼ିଅା ଗଛରେ ପୂର୍ଣ୍ଣ । ଜଙ୍ଗଲୀମାନଙ୍କ

ସାଧବମାନଙ୍କର ବୋଇତ ନଡ଼ିଆ ନିମନ୍ତେ ନିକୋବାର ଦ୍ୱୀପପୁଞ୍ଜରେ ଲାଗୁଥିଲା । ସେଠିକାର ତାମ୍ରରଙ୍ଗର ବାମନ ଅଧିବାସୀମାନେ ସମୟ ସମୟରେ ବୋଇତ ଆକ୍ରମଣ କରି ଚୁଡ଼ା ପ୍ରଭୃତି ଖାଦ୍ୟ ପଦାର୍ଥ ଟୋଇ ନେଉଥିଲେ । ସେମାନଙ୍କ ନାକ ଚେପଟା, ପାଟି ବଡ଼, ଦାଢ଼ି ଅଳ୍ପ, ମୁଣ୍ଡର କଳା ବାଳ ଠିଆ ଠିଆ । ଉତ୍କଳୀୟ ନାବିକମାନେ ସେମାନଙ୍କ ସଙ୍ଗେ ବନ୍ଧୁତା ସ୍ଥାପନ କରି ଚୁଡ଼ା, ଗୁଡ଼, ତେଲ ଏବଂ ମୁଣିଆ ମୁଣିଆ ଲୋକ ଦେଖି ଉତ୍କଳର ଉତ୍କୃଷ୍ଟ ଖଦି ଉପହାର ଦେଉଥିଲେ । କିନ୍ତୁ, ଯାହା ଦେଉଥିଲେ, ତାହାର ବହୁଗୁଣ ମୂଲ୍ୟର ଶୁଖିଲା ନଡ଼ିଆ ଆଣୁଥିଲେ ।

ଆଣ୍ଡାମାନରେ ନଡ଼ିଆଗଛର ଚିହ୍ନ ନ ଥିଲା । ଏପରି ମଧ୍ୟ ଅନ୍ୟ କୌଣସି ପଦାର୍ଥ ନ ଥିଲା, ଯାହା ଲୋଭରେ ସାଧବମାନଙ୍କର ବୋଇତ ଯାଇ ସେଠାରେ ଲାଗନ୍ତା । କିନ୍ତୁ, ବୋଇତରୁ ପାନୀୟ ଜଳ ଶେଷ ହୋଇଗଲେ ବାଧ୍ୟତଃ ଜଳ ନିମନ୍ତେ ଆଣ୍ଡାମାନ ଦ୍ୱୀପମାଳାର କୌଣସିଠାରେ ବୋଇତ ଲାଗେ । ଏଥିନିମନ୍ତେ ଆଣ୍ଡାମାନର ଅସଭ୍ୟ ଆଦିମ ଅଧିବାସୀଙ୍କଠାରୁ ବହୁତ କଷ୍ଟ ସହିବାକୁ ପଡ଼େ । କିନ୍ତୁ ଜଳବିନା ଯେ ଏଣେ ଜୀବନ ଯାଉଛି । ସମୟେ ସମୟେ ଯୁଦ୍ଧ ମଧ୍ୟ କରିବାକୁ ହୋଇଥାଏ । ଆଣ୍ଡାମାନବାସୀମାନେ ଉଚ୍ଚରେ ଛୋଟ । ଦେହର ରଙ୍ଗ କଜ୍ଜଳ କଳା । ମୁଣ୍ଡର ଆକାର ଛୋଟ ଓ ଗୋଲ, ବାଳ କୁଞ୍ଚିକୁଞ୍ଚି ଚକା । ସ୍ତ୍ରୀ ପୁରୁଷ ସମସ୍ତେ ଲଙ୍ଗଳା । ଅଣ୍ଟାର ଆଗପାଖେ ଗୁନ୍ଥା ହୋଇଥିବା ପତରରୁ ମାଳେ ବନ୍ଧା ହୋଇଥାଏ । ଅତ୍ମୀୟ ଲୋକଙ୍କର ମୁଣ୍ଡର ହାଡ଼ ହେଉଛି ଏମାନଙ୍କର ପ୍ରଧାନ ଅଳଙ୍କାର । ଏହି ମୁଣ୍ଡ-ମାଳା ବେକରେ ଲମ୍ବାଇ ଦେଇଥାନ୍ତି । ଦେହ ସୁନ୍ଦର ଦିଶିବ ବୋଲି ବେଳେ ବେଳେ ଦେହରେ ଲାଲମାଟି ବୋଳି ହୋଇଥାନ୍ତି ।

ଏମାନେ ଗୃହବାସ କରନ୍ତି ନାହିଁ । ବନ୍ୟଜନ୍ତୁଙ୍କର ମାଂସ ଏବଂ ମାଛ ଏମାନଙ୍କର ପ୍ରଧାନ ଖାଦ୍ୟ । ଜଳ ରଖିବାକୁ ମାଟିରେ ଏକ ପ୍ରକାର ପାତ୍ର ତିଆରି କରନ୍ତି । ପୋଲା ବାଉଁଶ ଗିଲାସରୂପେ ବ୍ୟବହୃତ ହୁଏ । ଏମାନେ ଝୋଟକେଇ ଓ ଜାଲ ବୁଣି ପାରନ୍ତି । ଧନୁଶର ପ୍ରଧାନ ଅସ୍ତ୍ର । ଧନୁଶର ଧରି ଜୀବଜନ୍ତୁ ମାରନ୍ତି । ଖାଲି ହାତରେ ମାଛ ଧରି ପାରନ୍ତି । ଆଣ୍ଡାମାନ ଅଧିବାସୀ ସମୁଦ୍ର ଭିତରେ ଅନେକ ବେଳଯାଏ ବୁଡ଼ି ଉପରକୁ ଉଠିବା ବେଳେ ଦୁଇ ହାତରେ ଦୁଇଟା ବଡ଼ ବଡ଼ ମାଛ ଧରି ଉଠିଥାଏ ।

ବିଧବାମାନଙ୍କର ପ୍ରଧାନ ଅଳଙ୍କାର ମୃତ ପତିର ମସ୍ତକ । ମୃତବ୍ୟକ୍ତି ନିମନ୍ତେ ଦୁଃଖ ପ୍ରକାଶ କରିବାକୁ ହେଲେ ଏମାନେ ଦେହ ମୁଣ୍ଡ ଖୌର ହୋଇ ଦେହରେ ଧଳା କାଦୁଅ ବୋଳନ୍ତି । ବାହାର ଲୋକକୁ ଦେଖିଲେ ମେଳ ହୋଇ ଶର ବିନ୍ଧନ୍ତି । ଏହି କାରଣରୁ ସାଧବମାନଙ୍କର ବୋଇତ ଆଣ୍ଡାମାନରେ ଲାଗେ ନାହିଁ ।

ସୁବର୍ଣ୍ଣଦ୍ୱୀପରେ ସଭ୍ୟ ଭାରତୀୟଙ୍କର ଦେଖା ମିଳେ । ସପ୍ତମ ଶତାବ୍ଦୀର ପ୍ରାରମ୍ଭରୁ ଭାରତ ମହାସାଗରରେ ଯେଉଁ ସମସ୍ତ ଡକାୟତି ହେଉଥିଲା, ସେ ସବୁର ମୂଳରେ ତାମ୍ରଲିପ୍ତର ପ୍ରଧାନ ବଣିକ ନାରାୟଣ ପଣ୍ଡାଙ୍କର ପିତା ଥିଲେ । ପରେ ଜଣା ପଡ଼ିଲା, ଏହି ପଣ୍ଡାଙ୍କର ପୂର୍ବପୁରୁଷମାନେ ମଧ୍ୟ ଡକାୟତି କରି ବହୁତ ଧନ ସଞ୍ଚୟ କରିଥିଲେ । ଦେଶରେ ସମସ୍ତେ ଜାଣନ୍ତି, ପଣ୍ଡାବଂଶ ଭାରି ଧନୀ । ଏମାନେ ଦେଶରେ ନାମ କରିବାକୁ ଯଥେଷ୍ଟ ଦାନ କରୁଥିଲେ । କେଉଁଠାରେ ଦେବମନ୍ଦିର ତୋଳାଉ ଥିଲେ, କାହିଁ ବା ପୁଷ୍କରିଣୀ ଖୋଳାଉ ଥିଲେ । ଶୁଣାଅଛି, ଭୁବନେଶ୍ୱରରେ ଲିଙ୍ଗରାଜଙ୍କ ଦେଉଳ ତୋଳାରେ ଏମାନେ ଅଜସ୍ର ଧନ ସାହାଯ୍ୟ କରିଥିଲେ । ତାମ୍ରଲିପ୍ତର ଦୁର୍ବଳ ମୟୂରବଂଶୀ ରାଜାମାନଙ୍କ କଥା ଦୂରେ ଥାଉ, ଏପରି କି କୈବର୍ତ୍ତ ବଂଶର ପ୍ରଥମ ଏବଂ ପ୍ରଧାନ ରାଜା କାଲୁଚୂର୍ଯ୍ୟାଁଙ୍କର ଆଖିରେ ଧୂଳି ଦେବାକୁ ଛାଡ଼ି ନ ଥିଲେ । ବିଦେଶରେ ସମୁଦ୍ର ମଧ୍ୟରେ ନିରୀହ ସାଧବଙ୍କର କଷ୍ଟଲବ୍ଧ ଧନ ଦସ୍ୟୁବୃତ୍ତି ଦ୍ୱାରା ଅପହରଣ କରି ଦେଶରେ ସେହି ଧନର ସାମାନ୍ୟ ଅଂଶ ଧର୍ମକାର୍ଯ୍ୟରେ ବ୍ୟୟ କରୁଥିଲେ ଏବଂ ସମୟ ସମୟରେ ତାମ୍ରଲିପ୍ତର ରାଜା କିମ୍ବା ଉତ୍କଳର ସମ୍ରାଟଙ୍କ ନିକଟକୁ ବହୁମୂଲ୍ୟର ରତ୍ନମାନ ଉପହାର ପଠାଇ ତାଙ୍କର ସ୍ନେହଭାଜନ ହେଉଥିଲେ ।

ନାରାୟଣଙ୍କର ଲୋକମାନେ ଯେଉଁ ବୋଇତକୁ ଆକ୍ରମଣ କରୁଥିଲେ, ତାହାର ସମ୍ପୂର୍ଣ୍ଣ ଧ୍ୱଂସ ସାଧନ ନ କରି ଛାଡ଼ୁ ନ ଥିଲେ । ତହିଁର ପ୍ରତ୍ୟେକ ଲୋକଙ୍କୁ ମାରି ପକାଇ ବୋଇତକୁ ସମୁଦ୍ରରେ ବୁଡ଼ାଇ ଦେଉଥିଲେ । କିଏ କେବେ ଉଦ୍ଧାର ପାଇ ଆସିଲେ ହିନା ଦେଶରେ ଦୁର୍ନାମ ପ୍ରଚାରିତ ହେବ । ନାରାୟଣଙ୍କର ପିତା ଦେଖିଲେ, ବଳାତ୍କାରରେ ଧନ ହରଣ କରି ଶେଷରେ ଏତେ ସ୍ତ୍ରୀ ବାଳକ ବୃଦ୍ଧ ସମସ୍ତଙ୍କୁ ଜୀବନରୁ ମାରି ପକାଇବା ପାପ । ଅତଏବ ଏପରି କୌଣସି ଉପାୟ ସ୍ଥିର କରିବା ଆବଶ୍ୟକ, ଯାହାଦ୍ୱାରା ଲୋକମାନଙ୍କୁ ଜୀବନରୁ ମାରି ପାପ କରାଇବାକୁ ହେବ ନାହିଁ; ଅଥଚ କେହି ଦେଶକୁ ଫେରି ନିନ୍ଦା ରଟନା କରିପାରିବେ ନାହିଁ ।

ବହୁଚିନ୍ତା ପରେ ସେ ସ୍ଥିର କଲେ, ଲୋକମାନଙ୍କୁ ବନ୍ଦୀକରି ଏପରି କୌଣସି ସ୍ଥାନରେ ରଖିବା ଆବଶ୍ୟକ, ଯେଉଁଠାରେ ଅନ୍ୟ କୌଣସି ଓଡ଼ିଆ ବଣିକର ବୋଇତ ଲାଗେ ନାହିଁ । ସେ ଆଣ୍ଡାମାନ ଦ୍ୱୀପପୁଞ୍ଜର ସୁବର୍ଣ୍ଣଦ୍ୱୀପରେ ଏକ ବନ୍ଦୀଶାଳା ପ୍ରସ୍ତୁତ କଲେ । ସେହି ଦିନରୁ ଯେତେକ ବନ୍ଦୀ ସମସ୍ତଙ୍କୁ ସେହି ବନ୍ଦୀଶାଳାରେ ରଖିଲେ । ସେମାନଙ୍କର ଚଳାଚଳ ନିମନ୍ତେ କର୍ମଚାରୀ ନିଯୁକ୍ତ ରହିଲେ । ବୃଦ୍ଧ ବଣିକଙ୍କର ମୃତ୍ୟୁ ପରେ ନାରାୟଣ ପଣ୍ଡା ଘରର ମାଲିକ ହୋଇ ପିତାଙ୍କର କାର୍ଯ୍ୟ ଚଳାଇଲେ । ଅନ୍ୟ କୌଣସି ଦ୍ୱୀପରେ ବନ୍ଦୀଶାଳା ନ କରି ସୁବର୍ଣ୍ଣଦ୍ୱୀପରେ କରିବାର କାରଣ, ଏଠାରେ ଆଦିମ ଅଧିବାସୀମାନଙ୍କର ସଂଖ୍ୟା ଅଳ୍ପ । ବନ୍ଦୀଶାଳା ନିକଟକୁ ଆସିବାକୁ ସେମାନେ ସାହସ କରନ୍ତି ନାହିଁ ।

ବନ୍ଦୀଶାଳା ଗୋଟିଏ ବଡ଼ ପଥର ଗୃଙ୍ଗଡ଼ା ଉପରେ ନିର୍ମିତ । ଏହି ପଥରର ଗୋଟିଏ ପାଖ ସମୁଦ୍ରର ଜଳ ପତନଠାରୁ ପ୍ରାୟ ୫୦୦ ହାତ ଉପରକୁ ଉଠିଛି । ସମୁଦ୍ର ଅଭିମୁଖ ପଥର ଶେଷ ସୀମାର କରେ କରେ ଧାଡ଼ିଏ ଘର ଇଟା ଏବଂ ପଥରରେ ତିଆରି । ସମୁଦ୍ର ସଙ୍ଗେ ସମାନ୍ତରାଳ । ସମୁଦ୍ର ପାଖେ ପ୍ରାଚୀର ପ୍ରସ୍ତୁତ କରିବା ଅନାବଶ୍ୟକ ମନେକରି ପ୍ରାଚୀର ତୋଳା ହୋଇ ନାହିଁ, କିନ୍ତୁ ଅନ୍ୟ ତିନିଆଡ଼େ ଅଛି ପ୍ରାଚୀର । କେହି ଲଙ୍ଘନ କରି ପଳାୟନ କରି ନ ପାରେ । ସମୁଦ୍ରର ବିପରୀତ ଦିଗରେ ପ୍ରାଚୀରର ଦରଜା, ଦରଜାରେ ବଡ଼ କବାଟ । ଏହି ବନ୍ଦୀଶାଳା ମଧ୍ୟରେ ଆହୁରି ମଧ୍ୟ ଅନେକଗୁଡ଼ିଏ ଘର ତୋଳା ହୋଇଛି । କେତେ ଗୁଡ଼ିକରେ ବନ୍ଦୀ ଏବଂ ବନ୍ଦିନୀମାନଙ୍କୁ ଜଗି ରହୁଥିବା ଲୋକେ ରହନ୍ତି ।

ପ୍ରକାଣ୍ଡ ପଥର ଉପରୁ ତଳକୁ ଓହ୍ଲାଇ ଆସିବାକୁ ପ୍ରାକୃତିକ ପାହାଚ ପଡ଼ିଛି । ତଳକୁ ଆସିଲେ ବୁଦବୁଦିକିଆ ଗଛ । ଟିକିଏ ଦୂରକୁ ଜଙ୍ଗଲ । ଜଙ୍ଗଲର ମଧ୍ୟଦେଇ ଗୋଟିଏ ରାସ୍ତା ବଙ୍କା ହୋଇ ସମୁଦ୍ରକୂଳ ଯାଏ ପଡ଼ିଛି । ରାସ୍ତାରୁ ବାଟ ଭାଙ୍ଗି ବାଁ ହାତ ମୁହଁଗଲେ କିଛି ଦୂରରେ ଗୋଟିଏ ଛୋଟ ନାଳ ଦେଖିବାକୁ ମିଳେ । ନାଳଟି ଗ୍ରୀଷ୍ମ କାଳରେ ଶୁଖି ଯାଇଥାଏ । କେବଳ ସ୍ଥାନେ ସ୍ଥାନେ ଜଳ ଥାଏ । ବର୍ଷାକାଳରେ ଜଳ ପୂର୍ଣ୍ଣ ଥାଏ । ନାଳର ଦୁଇ ପାଖେ ଜଙ୍ଗଲ କଟାଇ କେତେ ଖଣ୍ଡ ଜମି ତିଆରି କରାଯାଇଛି । ବୋଧହୁଏ, ଜଙ୍ଗଲୀୟ ଜଗୁଆଳମାନେ ଏଠାରେ କୃଷି କରନ୍ତି । ଖରାଦିନେ ନାଳରୁ ଜଳ ଶୁଖିଗଲେ ବାଲି ଖୋଳି ପାଣି ବାହାର କରନ୍ତି । ନିକଟରେ ମଧ୍ୟ ଗୋଟିଏ ଝରଣା ଥାଏ ।

ବନ୍ଦୀଶାଳାରେ ବନ୍ଦୀଙ୍କର ସଂଖ୍ୟା ପଞ୍ଚଶତାଧିକ । ଏମାନଙ୍କୁ ଛଡ଼ି, ଖାଦ୍ୟ ଯୋଗାଇବା ପାଇଁ ଏବଂ ଜଗିରହିବା ନିମନ୍ତେ ଆହୁରି ପ୍ରାୟ ପଚିଶ ଜଣ ନରନାରୀ ବନ୍ଦୀଶାଳାର ବାହାରେ ଏବଂ ଭିତରେ ଥାନ୍ତି । ଦରକାର ବେଳେ କାର୍ଯ୍ୟରେ ଆସିବ ବୋଲି ତଳେ ସମୁଦ୍ରରେ କେତେଖଣ୍ଡ ଡଙ୍ଗା ଓ ଗୋଟିଏ ବଡ଼ ବୋଇତ ଥାଏ । ସମୟ ସମୟରେ ଏମାନେ ବୋଇତ ନେଇ ଦସ୍ୟୁବୃତ୍ତି କରନ୍ତି । କୌଣସି ଆଡ଼ୁ କିଛି ନ ପାଇଲେ ବୋଇତ ନେଇ ବ୍ରହ୍ମଦେଶକୁ ଯାନ୍ତି ।

ଇରାବତୀ ନଦୀ କୂଳରେ ଆରାକାନରେ ନାରାୟଣ ସାଧବଙ୍କର ବ୍ୟବସାୟ କୋଠୀ ଥିଲା । ସାଧବଙ୍କର କର୍ମଚାରୀମାନେ ବରାବର ସେଠାରେ ଉପସ୍ଥିତ ଥାନ୍ତି । ବୋଇତ ସେହିଠାରୁ ଚାଉଳ ନେଇ ପୁନର୍ବାର ଆଣ୍ଡାମାନ ଫେରେ । ସମୟ ସମୟରେ ନିଜେ ସାଧବ ପରିଦର୍ଶନ କରିବାକୁ ଉପସ୍ଥିତ ହୋଇଥାନ୍ତି ।

ବନ୍ଦୀଶାଳାରେ ଅନେକ ଗୁଡ଼ିଏ ଛୋଟ ଛୋଟ କୋଠରୀ ଲଗାଲଗି ହୋଇ ତିଆରି ହୋଇଛି । ଏହା ଦ୍ୱିତଳ । ପ୍ରତ୍ୟେକ କୋଠରୀରେ ଜଣେ ଜଣେ ଲୋକ ଥାନ୍ତି । ଏହି ଲୋକମାନଙ୍କ ମଧ୍ୟରୁ କୌଣସି ଜଣକର ଦୈନିକ ଜୀବନୀ ବର୍ଣ୍ଣନା କଲେ ଯଥେଷ୍ଟ ହେବ । ବନ୍ଦୀମାନେ ଯେ କେବଳ ଜଙ୍ଗଲୀୟ ବା ଭାରତୀୟ ତାହା

ନୁହେଁ । ସେମାନଙ୍କ ମଧ୍ୟରେ ଚୀନା, ମିଶର ଏବଂ ପାରସ୍ୟର ଲୋକ ମଧ୍ୟ ଅଛନ୍ତି । ବୋଧହୁଏ ନାରାୟଣ ସାଧବଙ୍କର ବୋଇତ ଯେତେବେଳେ ଆରବ ଉପସାଗରରେ ବାଣିଜ୍ୟ କରିବାକୁ କିମ୍ବା ଡକାଇତି କରିବାକୁ ଯାଉଥିଲା, ଏହି ହତଭାଗ୍ୟ ବିଦେଶୀମାନେ ସେମାନଙ୍କ ହାତକୁ ପଡ଼ିଥିଲେ ।

ତଳ ମହଲାର ଏକ କୋଠରୀରେ ଜଣେ ବନ୍ଦୀ କାନ୍ଥକୁ ଆଉଜି ବସି ତାର ଅତୀତ ଜୀବନ ଏବଂ ବର୍ତ୍ତମାନ ଅବସ୍ଥାର ଚିନ୍ତା କରୁଥିଲା । ପ୍ରକୋଷ୍ଠ ଅନ୍ଧକାର । କାନ୍ଥ ଉପରର ଗୋଟିଏ କ୍ଷୁଦ୍ର ଜଳା ଦେଇ ସୂର୍ଯ୍ୟରଶ୍ମିର ସୂକ୍ଷ୍ମ ରେଖାଟିଏ ଆସି ସେହି ଅପ୍ରଶସ୍ତ ପ୍ରକୋଷ୍ଠକୁ କେତେକ ପରିମାଣରେ ଆଲୋକିତ କରୁଥିଲା । ବନ୍ଦୀଯୁବକ କେତେ କ'ଣ ଚିନ୍ତା କରି ଦଣ୍ଡାୟମାନ ହେଲା । କିନ୍ତୁ ସିଧା ହୋଇ ଠିଆହୋଇ ପାରିଲା ନାହିଁ । ଘରର ଉଚ୍ଚତା ଏତେ ଅଳ୍ପ ଯେ, ଉପର ଛାତ ତା'ର ମୁଣ୍ଡରେ ବାଜିଲା । ମୁଣ୍ଡ ନୁଆଇଁ ଆଲୋକ ଆସୁଥିବା ପଥ ଦେଇ ପଦାକୁ ଚାହିଁଲା । ଦେଖିଲା, ନିମ୍ନରେ ବହୁ ତଳେ ସମୁଦ୍ରର ନୀଳଜଳ ନାଚି ନାଚି ଉଠୁଛି । ସେହି ନୀଳଜଳର ବକ୍ଷ ଉପରେ ଗୋଟିଏ ନୌକା ଭାସମାନ । ବହୁ ଦୂରରୁ ଏତେ ଛୋଟ ଦେଖାଯାଉଛି ଯେ, ସେଥିରେ ଥିବା ଲୋକମାନେ ଛୋଟ ଛୋଟ ମାଙ୍କଡ଼ ପରି ଦେଖାଯାଉଛନ୍ତି । ଯୁବକ ଭାବିଲା, ସେ କାନ୍ଥ ଭାଙ୍ଗି ସମୁଦ୍ର ବକ୍ଷରେ ଲମ୍ଫପ୍ରଦାନ କରିପାରି ପାରିବ କି ନା । ଜୀବନ ଗଲେ ଯାଉ । ମାତ୍ର, ତା'ର ଏତେ କ୍ଷମତା ନାହିଁ । ଅଙ୍ଗର ଶକ୍ତି ଧୀରେ ଧୀରେ ଖାଦ୍ୟ ଅଭାବରୁ କମିଯାଇଛି । ସେ ପୁନର୍ବାର ବସିପଡ଼ି କେତେ କ'ଣ ଚିନ୍ତା କଲା । ଚକ୍ଷୁରୁ ଲୋତକ ଧାର ଗଡ଼ିପଡ଼ିଲା ।

ଏହି ସମୟରେ ପ୍ରକୋଷ୍ଠ ଆରପାଖରୁ ଚିରପରିଚିତ ସେହି ଠକ୍ ଠକ୍ ଶବ୍ଦ ତା'ର କର୍ଣ୍ଣଦ୍ୱୟ ବଧିର କରିପକାଇଲା । ଯୁବକ ବନ୍ଦୀ ହେବାଦିନୁ ଏହି ଠକ୍ ଠକ୍ ଶବ୍ଦ ଶୁଣି ଆସୁଛି, କିନ୍ତୁ ଶବ୍ଦର ଅର୍ଥ କଣ, ସେ ଭାବିପାରେ ନାହିଁ । ବନ୍ଦୀ ଚିନ୍ତା କଲା, ତେବେ କ'ଣ ମୋର ଜୀବନପ୍ରଦୀପ ଏହି ଅଜଣା ଅଶୁଣା ଅନ୍ଧକାରମୟ ପ୍ରକୋଷ୍ଠରେ ନିର୍ବାପିତ ହେବ ? ଭଗବାନ୍, ତମର କ'ଣ ଏହି ବିଚାର ? ସଂସାରରେ ଯେଉଁ ଲୋକ ଅନ୍ୟାୟ କରିବାକୁ ଟିକିଏମାତ୍ର କୁଣ୍ଠିତ ନୁହେଁ, ତୁମେ ସର୍ବଦା ତାହାର ଉନ୍ନତି କର କାହିଁ କି ? ବହୁଦିନ ପରେ ଯେତେବେଳେ ନିଷ୍ଠୁରମାନେ ମୋର ହୃଦୟରୁ ବଳାତ୍କାରପୂର୍ବକ ସୁଶୀଳାକୁ ଟାଣି ନେଲେ, ଆହା ସେ କପରି ଅଶ୍ରୁପୂର୍ଣ୍ଣ ଲୋଚନରେ ମୋର ଆଡ଼କୁ ଅନାଇଁଥିଲା । ଆଜି ଦୁର୍ବୃତ୍ତମାନେ ତାକୁ କେଉଁଠି ବନ୍ଦୀ କରି ରଖିଛନ୍ତି । ତା'ର ସେହି ବିଦାୟ ମୁହୂର୍ତ୍ତର ଚିତ୍ରଟି ହୃଦୟରେ ସ୍ପଷ୍ଟରୂପେ ଅଙ୍କିତ ହୋଇ ରହିଛି । ମୁକ୍ତି ଲାଭର ସମସ୍ତ ଚେଷ୍ଟା ଯେତେବେଳେ ବ୍ୟର୍ଥ ହେଲା, ସୁଶୀଳା ଅଶ୍ରୁପୂର୍ଣ୍ଣ ଲୋଚନରେ କ'ଣ କହିଗଲା ? ମୋତେ ମନରୁ ଅନ୍ତର କରିବ ନାହିଁ । ତା'ର ସେହି ଶେଷ ବାକ୍ୟଟି ବର୍ତ୍ତମାନ ସୁଦ୍ଧା ମୋର

କର୍ଣ୍ଣବିବରରେ ପ୍ରତିଧ୍ୱନିତ ହେଉଛି । କିନ୍ତୁ ସୁଶୀଳା, ମୁଁ ତୋର ମନେ ଅଛି ତ ?' ତୋର ମନେ ପଡ଼ୁଛି ତ କିପରି ତୋତେ ମୃତ୍ୟୁମୁଖରୁ ବଞ୍ଚାଇ ଏହି ଅସ୍ଥିର ବକ୍ଷ ଉପରେ ବଢ଼ାଇ ଆଣିଥିଲି ? ଆଜି ତୋଠାରୁ ବିଚ୍ଛିନ୍ନ ହୋଇ କେଉଁ ଦୂରଦେଶରେ ରହିଛି ବୋଲି ଯେପରି ଭୁଲି ନ ଯାଉ ।

ତୁ ଯଦି ଜାଣି ପାରନ୍ତୁ, ମୁଁ କିପରି ନରକକୁଣ୍ଡରେ ଘାଣ୍ଟି ହେଉଛି, ତେବେ ତୋର ହୃଦୟ ଦୁଃଖରେ ଫାଟିପଡନ୍ତା । ତୁ ମୋତେ ଭଲ ପାଉଥିଲୁ । କିନ୍ତୁ ଭଗବାନ୍ ତାହା କରିଇ ଦେଲେ ନାହିଁ । ବୋଇତରେ ଯେତେବେଳେ ଗୋଟିଏ ପ୍ରକୋଷ୍ଠରେ ଉଭୟେ ବନ୍ଦୀ ହୋଇଥିଲେ, ଯେତେ କଷ୍ଟ ପାଇଲେବି ତ କଷ୍ଟପରି ଲାଗୁ ନ ଥିଲା । ତୁ ଯେ ମୋହର ପାଖରେ ଥିଲୁ । କିନ୍ତୁ, ଆଜି ତୋର ଅଭାବ ମୁଁ ମର୍ମେ ମର୍ମେ ଅନୁଭବ କରୁଛି ।

ଏ କ'ଣ ! ଲୋତକ ? ସ୍ଥିର ରହ । ସୁଶୀଳା ଯହିଁ ଥାଉ, ସେ ସୁଖରେ ଅଛି । ମନ, ମାନୁନାହୁଁ କିଆଁ ? କାହିଁକି ମନେ ହେଉଛି ସୁଶୀଳା ଉପରେ ଅତ୍ୟାଚାର କରିବାକୁ ସେମାନେ ବସିଥିବେ । କିନ୍ତୁ ସୁଶୀଳା ତୁ ଯେ ବିବାହିତା, ସତୀ, ହିନ୍ଦୁ ସ୍ତ୍ରୀ, ଜୀବନ ଥିବାଯାଏ ତୁ ସ୍ତ୍ରୀର ଅମୂଲ୍ୟ ରତ୍ନ ସୁରକ୍ଷା ନିମନ୍ତେ ଯୁଦ୍ଧ କରିବୁ । ପ୍ରାଣ ଦେବୁ, ତାହା ବରଂ ବାଞ୍ଛନୀୟ, କିନ୍ତୁ କେବଳ ଜୀବନର ଭୟରେ ଭ୍ରଷ୍ଟା ହେବାକୁ ସ୍ୱୀକୃତା ହେବୁ ନାହିଁ । ତୁ ଯେ ପରର ସ୍ତ୍ରୀ । ମନେ ନାହିଁ, ସେଦିନ ନିଜେ ନିଜେ ତୁ ମୋର ଗଳାରେ କୁସୁମହାର ଲମ୍ବାଇ ଦେଇ ସ୍ୱାମୀରୂପେ ବରଣ କରିଥିଲୁ ?

ଓଃ, ଏ କ'ଣ ? କିଏ ଆସି ମୋର କାନରେ କହିଯାଉଛି ସୁଶୀଳା ଆଜି ପରର ସ୍ତ୍ରୀ । ସେ ଅନ୍ୟ ଜଣକୁ ବିବାହ କରି ଆନନ୍ଦରେ ଜୀବନ କଟାଉଛି । ଏହା କି ହୋଇପାରେ କେବେ ? ଆଜିକି କେତେବର୍ଷ ହେଲା ମୁଁ ଏହି ନରକକୁଣ୍ଡରେ ବନ୍ଦୀ ଅଛି, ମୁଁ ଜାଣେ ନାହିଁ । ଜଣା ପଡ଼ୁଛି ଯେପରି ମୁଁ ଏଠାରେ ବହୁବର୍ଷ ହେଲା ବନ୍ଦୀ ଅଛି । ଆଜି ମୋର ମସ୍ତକର କେଶ ବଢ଼ି ପିଠିରେ ପଡ଼ିଲାଣି, ନିଶ ଦାଢ଼ି ବଢ଼ି ବଢ଼ି ଗୋଛାଏ ହେଲାଣି । ମୁଁ ଏତେ କଷ୍ଟ ସହ୍ୟକରି, ଏତେଦିନ ଏଠାରେ ରହି ସୁଦ୍ଧା ଦିନେ ହେଲେ ସୁଶୀଳାର ସ୍ମୃତିକୁ ମନରୁ ଦୂର କରିନାହିଁ । ସେ କଣ ମୋତେ ଭୁଲିଗଲା । ଏବେ ନୂତନ ସଂସାର କରି ବସିଛି ?

ଆଜି ମନ କାହିଁକି ଭାରି ଅସ୍ଥିର ହେଉଛି । କିଏ ଯେପରି ଆସି ମୋର କାନରେ କହିଯାଉଛି, ମଣିଆଁ, କେତେଦିନ ଆଉ ଏହି କବର ମଧ୍ୟରେ ଜୀବନ୍ତ ସମାଧି ପାଇ ରହିଥିବୁ ? କୋଠରୀର ଉଚ୍ଚ ଯେତେ, ମନୁଷ୍ୟ ଠିଆ ହୋଇପାରୁ ନାହିଁ । ଶୋଇବାକୁ ଚେଷ୍ଟା କଲେ ଗୋଡ଼ ଲମ୍ବାଇ ହେଉନାହିଁ । ପଳାୟନ, ପଳାୟନର ଚେଷ୍ଟା ଉଦ୍ଭାବନ କରିବା ଆବଶ୍ୟକ । ଆଜି ଯେତେବେଳେ ଜଗୁଆଳ ଭାତନେଇ ଆସିବ, ତାକୁ ଆକ୍ରମଣ କରିବ । ପଳାୟନର ଏହି ହେଉଛି ପ୍ରକୃତ ଉପାୟ । ଯଦି ଅକୃତକାର୍ଯ୍ୟ ହୁଏ, ଜୀବନରେ ଆଉ ମୁକ୍ତିର ଆଶା ବିଡ଼ମ୍ବନା ।

କିଏ ଜାଣିଛି କଏଦୀ ଜଗୁଆଳ ଭାତ ନେଇ ଆସିବ କି ନାହିଁ । ସମୟ ସମୟରେ ପାଞ୍ଚ ସାତଦିନରେ ବି ଭାତ ଆସେ ନାହିଁ ।

ହଠାତ୍ କାନ୍ଥର ଅରପାଖୁ ପୂର୍ବ ପରିଚିତ ଠକ୍ ଠକ୍ ଶବ୍ଦ ବନ୍ଦ ହୋଇଗଲା । ମଣିଆଁ ଜାଣେ ଠକ୍ ଠକ୍ ବନ୍ଦ ହେବାର ଅଳ୍ପ ସମୟ ପରେ ଜଗୁଆଳ ସୁଖ୍ୟାଭାତ ଗଣ୍ଡାଏ ଆଣି ଦେଇଯାଏ । ଛୋଟ ଠେକଟିରେ ପାଣି ଠେକିଏ । କାରାଗାରରେ କ୍ଷୁଧାର୍ତ୍ତର୍ ଭୁଣ୍ଡକୁ ଏହି ସୁଖ୍ୟାଭାତ ଗଣ୍ଡିକ ଅମୃତ ପରି ଲାଗେ । ମଣିଆଁ ଶଯ୍ୟା ତ୍ୟାଗକରି ଉଠିଲା । ଜଗୁଆଳ ଭାତ ଆଣି ଥରେ ଦୁଇଥର ଡାକି ଦିଏ । ଏତିକିରେ ଯଦି ବନ୍ଦୀ ଉପସ୍ଥିତ ନ ହୁଏ, ତେବେ ସେ ଆଉ ଅଧିକା ନ ଡାକି ବାହାର ପାଖୁ ପୁନର୍ବାର ତାଲା ବନ୍ଦ କରି ଚାଲିଯାଏ । ପଛରେ ଯେତେ ଡାକିଲେ ଆଉ ଶୁଣେ ନାହିଁ ।

କିଏ ଜଣେ କବାଟ ଖୋଲି ଡାକିଲା, ଭାତ ପାଣି ନେ ।

କ୍ଷୁଧାର୍ତ୍ତ ମଣିଆଁ ଡେରି ନ କରି ଠେକି ଏବଂ ଖପରି ନେଇ ନିକଟରେ ଉପସ୍ଥିତ ହେଲା । ସେ ଭାବିଲା ଜଗୁଆଳକୁ ଆକ୍ରମଣ କରିବ ଏବଂ ଦରଜାବାଟେ ପଳାୟନ କରିବ । ମାତ୍ର ଭୀମକାୟ ଲୋକଟିକୁ ଆକ୍ରମଣ କରିବା ସହଜ ନୁହେଁ । ଲୋକଟିର ଗୋଟିଏ ଗୃହ୍ଦାରେ ହୁଏତ ସେ ମାଟି କାମୁଡ଼ି ପକାଇବ । ଯଦି ପଦାକୁ ବାହାରି ଯାଏ, ଜଗୁଆଳ ପ୍ରହରୀମାନେ ଧରି ନେବେ । ଥରେ ଚେଷ୍ଟା କରି ଧରା ପଡ଼ିଲେ ସବୁ ଶେଷ । ମଣିଆଁ ପୁଣି ଚିନ୍ତା କଲା, ମନୁଷ୍ୟ ତରତର ହୋଇ ସବୁ ନଷ୍ଟ କରେ । ପ୍ରହରୀ ମନ୍ଦ ପ୍ରକୃତିର ଲୋକ ପରି ତାକୁ ଦେଖାଯାଉ ନାହିଁ । ଯଦି କୌଣସି ପ୍ରକାରେ ବିଶ୍ୱାସ ଜନ୍ମାଇ ପ୍ରହରୀ ସଙ୍ଗେ ଭାବ କରିପାରେ; ତେବେ କେଜାଣି ବା ତା'ର କାର୍ଯ୍ୟ ନିର୍ବିଘ୍ନରେ ସମ୍ପାଦିତ ହୋଇପାରେ । ଥରେ ଚେଷ୍ଟା କରି ଦେଖିବା ଆବଶ୍ୟକ । ଯଦି ନିତାନ୍ତ ନ ହୁଏ, ଅବଶେଷରେ ବଳ ପ୍ରୟୋଗ କରିବାକୁ ପଡ଼ିବ ।

ମଣିଆଁ ଖପରି ଖଣ୍ଡି ପଦାକୁ ବଢ଼ାଇ ଦେଲା । ପ୍ରହରୀ ସେହି ଖପରିରେ ଭାତ ଦେଲା । ମଣିଆଁ ପୁଣି ପାଣି ନିମନ୍ତେ ଠେକି ବଢ଼ାଇଲା । ପ୍ରହରୀ ଠେକିରେ ପ୍ରାୟ ଅଧଠେକିଏ ଜଳ ଦେଲା । ମଣିଆଁ ସେତିକି କୋଠରୀ ଭିତରେରହି ପଦାକୁ ଅନାଇଁ ରହିଲା ।

ପ୍ରହରୀ ସେଦିନ ହସି ହସି ମଣିଆଁକୁ ପଚାରିଲା, ଆରେ ବଡ଼ ଆଶ୍ଚର୍ଯ୍ୟ କଥା, ମୁଁ ଯାହାକୁ ଭାତ ଦିଏ, ସେ ଆପତ୍ତି କରି ଦାନ୍ତ ନିକୁଟି ଆଉ ଗଣ୍ଡିଏ ଆଉ ଗଣ୍ଡିଏ କହି ମାଗେ । କେହି କେହି ଲୁଣ ତରକାରି ମାଗନ୍ତି । କିନ୍ତୁ ତୁ କୋଠରୀରେ ଦୁଇବର୍ଷ ହେଲା ରହିଲୁଣି । ଦିନେ ତ କେବେ ଆପତ୍ତି କରିନୁ । ଏହାର କାରଣ କଣ ? ତୋ'ର କ'ଣ ଏତିକି ସୁଖ୍ୟା ଭାତରେ ଚଳିଯାଏ ?

ଚକ୍ଷୁ ନ ଚକ୍ଷୁ କ'ଣ କରିବ କହ ? ମୁଁ ଜାଣେ, ମତେ ଆପଣ ଯାହା ଦେଉଛନ୍ତି ଠିକ୍ ଦେଉଛନ୍ତି, ଆଉ ଆପତ୍ତି କରିବ କାହିଁକି ?

ପ୍ରହରୀ କହିଲା, ତୁ ତ ସୁନ୍ଦର ଭଦ୍ର ଲୋକଟିଏ । ତୋର ଘର କେଉଁଠି ଶୁଣେ ?

ଘର ମୋର ଯେଉଁଠି ଥିଲା, ସେଠି ବୋଧହୁଏ ଆଉ ମୋର କେହି ନ ଥିବେ । ଏବେ ଏହି କୋଠରୀ ଖଣ୍ଡିକୁ ମୁଁ ମୋର ଘର ବୋଲି ମନେ କରୁଛି । ସଂସାରରେ ଦୁଃଖ, ସୁଖ କ'ଣ ? ଦୁଃଖକୁ ଦୁଃଖ ବୋଲି ମନେ କଲେ ଦୁଃଖ, ସୁଖ ବୋଲି ମନେ କଲେ ସୁଖ ।

ଦିନଯାକ ଏକୁଟିଆ ଏହି କୋଠରୀରେ ବସି କ'ଣ କରୁ ?

ପରମେଶ୍ୱରଙ୍କୁ ମନେ ମନେ ପ୍ରାର୍ଥନା କରି ଜଣାଉଥାଏ, ଆମକୁ ଯେ ବିନା ପରିଶ୍ରମରେ ଏଠାରେ ରାଜଭୋଗରେ ରଖିଛନ୍ତି, ତାଙ୍କର ମଙ୍ଗଳ କର ।

ଥଟ୍ଟା ଖେଳୁଛୁ ମୋ ସଙ୍ଗେ ? ଜାଣୁ, ଇଚ୍ଛା କଲେ ମୁଁ ରି, ଛଅ ଦିନ ତୋର ଖୋରାକ ବନ୍ଦ କରିଦେଇ ପାରେ ?

ନା ଆପଣଙ୍କ ସଙ୍ଗେ ଥଟ୍ଟା ଖେଳୁ ନାହିଁ । ସତକଥା କହୁଛି । ଆପଣ ମୋର ଅନ୍ନଦାତା । ଆପଣଙ୍କ ସଙ୍ଗେ ଥଟ୍ଟା ଖେଳିବି କାହିଁକି ?

ସତରେ କହୁଛୁ, ଦିନରାତି ବସି ଠାକୁରଙ୍କୁ ଡାକୁଥାଉ ?

ମୁଁ ମିଛ କହି ଜାଣେ ନା ।

ରାଜଭୋଗ ବୋଲି କହୁଛୁ କାହିଁକି ?

ନୁହେଁ ନା ? ବିନା ପରିଶ୍ରମରେ ଖାଦ୍ୟ କେତେ ଜଣଙ୍କ ଭାଗ୍ୟରେ ଜୁଟେ । ଆଚ୍ଛା, ଆପଣ ତ ମୋତେ ଏତେ କଥା ପଚାରିଲେଣି ମୁଁ କେଇଟି କଥା ପଚାରିବି ଉତ୍ତର ଦେବ ?

କ'ଣ ଶୁଣେ ?

ମୁଁ ଯେଉଁ ଦେଶରେ ଅଛି ତା ନା' କ'ଣ ?

ଜାଣି କିଛି ଲାଭ ଅଛି ?

ହଁ, ଜାଣିପାରିବି କେଉଁ ଦେଶରେ ଅଛି ।

ଏ ଦେଶର ନା ସୁବର୍ଣ୍ଣଦ୍ୱୀପ । ଦକ୍ଷିଣ ଅଭ ଲଙ୍କା ଆଣ୍ଡାମାନର ଠିକ୍ ମଝିରେ ଏ ଦେଶ ।

ମୋତେ ଏଠି କିଏ ବନ୍ଦୀ କରିଛି ?

କିଛିକ୍ଷଣ ଚିନ୍ତାକରି ପ୍ରହରୀ କହିଲା, ସମସ୍ତଙ୍କୁ ଯିଏ ବନ୍ଦୀ କରିଛି ସେହି। ତାଙ୍କ ନାଁ ନାରାୟଣ ସାଧବ। ସେ ତାମ୍ରଲିପ୍ତର ନା ସମଗ୍ର ଦେଶର ଜଣେ ପ୍ରଧାନ ବଣିକ। ସେ ଭାରି ଦାମୀ, ଦୟାଳୁ। ଦେଶରେ ତାଙ୍କୁ ସମସ୍ତେ ଚିହ୍ନନ୍ତି।

ବନ୍ଦୀ ହସି ହସି କହିଲା, ଆମମାନଙ୍କ ଉପରେ ତାଙ୍କର ଏତେ ଦୟା କାହିଁକି କହିପାରିବ କି ?

ଏଥିରେ କହିବାର କ'ଣ ଅଛି ? ନିଜେ ନିଜେ କ'ଣ ଅନୁମାନ କରି ପାରୁନ ? ବୋଧହୁଏ ତୁ ତାଙ୍କ କାର୍ଯ୍ୟରେ ବାଧା ଦେଇଥିବୁ।

ତେବେ ସେହି ହେଉଛନ୍ତି ଦାମୀ, ଦୟାଳୁ, ନାରାୟଣ ସାଧବ; ସେହି ସ୍ୱାନଚରିତ ଯୁବକ ? ଓଃ ! ମୁଁ ତ ଏହା ଆଗରୁ ଜାଣି ନ ଥିଲି।

ଏୟୋ, ଚୁପ୍; ତୁ ଆମର ଖାମିନ୍ଦଙ୍କୁ ଏପରି କହିପାରିବୁ ନାହିଁ। ତା' ହେଲେ ମାଡ଼। ସେ ଏବେ ନୂତନ ବିବାହ କରି ସର୍ତ୍ତୀକ ଦେଶ ବୁଲି ବାହାରିଛନ୍ତି। ଅନେକ ଦେଶ ବୁଲି ବୁଲି ବ୍ରହ୍ମଦେଶ ବାଟେ ସୁବର୍ଣ୍ଣଦ୍ୱୀପକୁ ଆସୁଛନ୍ତି। ବୋଧହୁଏ ଦିନେ ଦି'ଦିନ ମଧ୍ୟରେ ସେ ଆସି ଏଠାରେ ପହଞ୍ଚିବେ। ଆସୁଛନ୍ତି ବୋଲି ଆଗରୁ ଗୋଟାଏ ବୋଇତ ଆସି ସମ୍ବାଦ ଦେଇ ଯାଇଛି। ସେ ଆସିଲେ ତେମେମାନେ ମୁକ୍ତ ହୋଇଯିବ।

ତମର ଖାମିନ୍ଦ ଏବେ ନୂଆ ବାହା ହୋଇଛନ୍ତି। ସେ କେଉଁଠି ବାହା ହୋଇଛନ୍ତି, କହି ପାରିବ କି ?

କଳିଙ୍ଗପତ୍ତନର ଜଣେ ବିଖ୍ୟାତ ବଣିକଙ୍କର ଏକମାତ୍ର କନ୍ୟାଙ୍କୁ।

ଠିକ୍ ଜାଣ ତ ?

ଠିକ୍ ଜାଣେ।

ଅଛା ଭାଇ, ମୋତେ ଏଠାରୁ ତୁମେ ମୁକ୍ତ କରି ପାରିବ ?

ହଁ; ନିଶ୍ଚୟ ପାରିବି। ମୁଁ ନ ପାରିବି ଏପରି କଥା କ'ଣ ଅଛି; କିନ୍ତୁ ଯଦି ଆଜି ତତେ ମୁକ୍ତ କରିଦେବି, କାଲି ମୋତେ ତୋର ସ୍ଥାନ ଅଧିକାର କରିବାକୁ ପଡ଼ିବ।

ଦିନେ ଦୁଇଦିନ ମୋ ନିମନ୍ତେ ଏଠାରେ ବନ୍ଦୀ ରହି ନା ? ମୁଁ ପଦାକୁ ବାହାରିଲେ, ଦଣ୍ଡକ ଭିତରେ ସମସ୍ତଙ୍କୁ ମୁକ୍ତ କରିପାରିବି।

ହସି ହସି ପ୍ରହରୀ କହିଲା, ବେଶ୍ ତ କହୁଛୁ, ତୁଠା ଭାରି ବୁଦ୍ଧିଆ, ଆଉ ମୁଁ ଏକେ ଓଲି ନା !

ମଣିଆଁ ଏତେବେଳ ମାଁ ଏ କ'ଣ ଚିନ୍ତା କରୁଥିଲା ? ପ୍ରହରୀର କଥା ଶେଷ ନ ହେଉଣୁ ତା'ର ଦୁର୍ବଳ ଦେହର ସମସ୍ତ କ୍ଷମତା ଏକଜୁଟ କରି ପ୍ରହରୀର ହାତ

ଧରି କୋଠରୀ ଭିତରକୁ ଟାଣି ଆଣିଲା । ପ୍ରହରୀ ଭିତରକୁ ନ ଆସି କାନ୍ଥରେ ଭରା ଦେଇ ନିଜକୁ ଅଟକାଇ ନେଲା । କେବଳ ତା ହାତର ଲମ୍ବା ଖଡ଼ିକା ଖଣ୍ଡି କୋଠରୀ ଭିତରକୁ ଛିଟିକି ପଡ଼ିଲା । ନିଜର ଶକ୍ତିକୁ ନିଜେ ରୋକି ନ ପାରି ଚିତ୍‌ପଟାଙ୍ଗ ହୋଇ ଘର ଭିତରେ ପଡ଼ିଲି ମଣିଅାଁ ।

ପ୍ରହରୀ ସଙ୍ଗେ ସଙ୍ଗେ ଦ୍ୱାର ବନ୍ଦକରି ଉଚ୍ଚ ସ୍ୱରରେ କହିଲା—ତୁଟା ଏଡ଼େ ବଦମାସ ବୋଲି ନ ଜାଣି ତୋ ସଙ୍ଗେ ଗଳ୍ପକରି ବସିଥିଲି । ମୋର ଭୁଲ ! ତୋତେ ଭଦ୍ର ଭାବିଥିଲି । ମନେ ରଖି ଥା, ତୋର କାର୍ଯ୍ୟ ନିମନ୍ତେ ସେହି ଅନ୍ଧାରୁଆ ଘରେ ତୁ ପଚି ପଚି ମରିବୁ । ତୋ ପାଟିରେ ଟିକିଏ ପାଣି କେହି ଦେବେ ?

ନାରାୟଣ ସାଧବ ବିବାହିତ ?

ହଁ, ସେ ବିବାହିତ । ସେଥିରେ ମୋର କ'ଣ ଥାଏ ? କିନ୍ତୁ ହୃଦୟ ତ ମାନି ରହୁ ନାହିଁ । ଅଲକ୍ଷ୍ୟରେ ମନର ଗତି କେଉଁ ଅଜଣା ରାଜ୍ୟକୁ ଚାଲିଯାଉଛି । କେତେ ହୃଦୟବିଦାରକ ଦୃଶ୍ୟ କ୍ଷଣକରେ ଆସି ଆଖି ଆଗରେ ନାଚିଯାଉଛି । ନାରାୟଣ ସାଧବ କେଉଁଠାରେ ବିବାହିତ, କାହାକୁ ବିବାହିତ ନ ଜାଣିବାଯାଏ ମନରେ ଶାନ୍ତି ନାହିଁ ।

ଆଜିକି ଦୁଇଦିନ ହେଲା ମୋର ଆହାର ବନ୍ଦ । ପ୍ରହରୀ ମୋ ଉପରେ ବିରକ୍ତ । ମୁଁ କି ମୂର୍ଖ ! କେଡ଼େ ବଡ଼ ନିର୍ବୋଧତାର କାର୍ଯ୍ୟକରି ପକାଇଲି । ପ୍ରହରୀକୁ ଆକ୍ରମଣର ଚେଷ୍ଟାକରି ଅକୃତକାର୍ଯ୍ୟ ତ ହୋଇଛି, ଶେଷରେ ଜୀବନ ହରାଇବାକୁ ପଡ଼ିବ ଅନଶନରେ । ସେ ପ୍ରତିଜ୍ଞା କରିଛି, ମୋତେ ଆଉ ଖାଦ୍ୟ ଆଣିଦେବ ନାହିଁ । ଅଗତ୍ୟା ଶୁଖି ଶୁଖି ମରିବାକୁହିଁ ପଡ଼ିବ ।

ମୁକ୍ତିଲାଭର ସକଳ ପଥ ରୁଦ୍ଧ । ଆହା, ମୋର ସୁଶୀଳା କାହିଁ ? ଶରଦିନ ନିମନ୍ତେ କ'ଣ ତା'ଠାରୁ ବିଦାୟ ନେଇ ଆସିଥିଲି ? ତାକୁ ଜୀବନରେ ନ ଦେଖି, ତା'ଠାରୁ ବହୁ ଦୂରରେ ସାକ୍ଷାତ୍ ନରକକୁଣ୍ଡରେ ପ୍ରାଣତ୍ୟାଗ କରିବାକୁ ହେବ ? ମୋର ସୁଶୀଳାର ଶେଷବାକ୍ୟ "ମୋତେ ମନରୁ ଅନ୍ତର କରିବ ନାହିଁ" ଆଜିସୁଦ୍ଧା ହୃଦୟର ପ୍ରତିକୋଣରେ ପ୍ରତିଧ୍ୱନିତ ହେଉଛି ।

ହଁ, ସୁଶୀଳା, ମୁଁ ତୋର ମୁଖରୁ ଉଚ୍ଚାରିତ ସରଳ ବାକ୍ୟଟି ଆଜି ସୁଦ୍ଧା ହୃଦୟରେ ଜାଗରିତ କରି ରଖିପାରିଛି । ଆଶା କରେ, ତୋର ସ୍ମୃତିର

ପ୍ରତିମୂର୍ତ୍ତିଟି ଆଖି ଆଗରେ ଧରି ତୋର ସେହି ସ୍ନେହପୂର୍ଣ୍ଣ ବାକ୍ୟଟି ମନରେ ଜାଗ୍ରତ ରଖି ଚିରଦିନ ନିମନ୍ତେ ଆଖି ବୁଜିଦେବି । ଜୀବନର ଅନ୍ତିମ କାଳରେ ତାହାହିଁ ମୋତେ ଶାନ୍ତି ଦେଇପାରିବ ।

'ଆଉ ଚିନ୍ତା କରିବି ନାହିଁ । ବୃଥା ଚିନ୍ତା କରି ଶରୀର ଓ ମନକୁ କ୍ଲେଶ ଦେବି ନାହିଁ । ସେହି ଚିନ୍ତାକୁ ଆଜି ଅନ୍ୟ ଦିଗରେ ଲଗାଇବି । ଦେଖେ, ତାହା ମୁକ୍ତିଲାଭର ଅନ୍ୟ କୌଣସି ଉପାୟ ଉଦ୍ଭାବନ କରି ପାରୁଛି କି ନାହିଁ । ପୁରୁଷର ଉଚିତ ନୁହେଁ, ହତାଶ ହେବା ! ମନରେ ଦମ୍ଭ ଆଣି ଜୀବନର ଶେଷ କ୍ଷଣ ଯାଏ ମୁକ୍ତିଲାଭର ଉପାୟ ଚିନ୍ତା କରିବା କର୍ତ୍ତବ୍ୟ ।

ଅନ୍ଧକାର ରଜନୀରେ ସମୁଦ୍ରର ସେହି ଘୋର ଗର୍ଜ୍ଜନ ଭେଦକରି ସମ-ସମୟ ବ୍ୟବଧାନରେ ଅବିରତ ଆସି ଯୁବକର କର୍ଣ୍ଣଦ୍ୱୟକୁ ଅସ୍ଥିର କରିପକାଇଲା, ଚିର ପରିଚିତ ଠକ୍ ଠକ୍ ଶବ୍ଦ । ଯୁବକ ଅସ୍ଥିର ହୋଇ ଠିଆ ହେବାକୁ ଚେଷ୍ଟା କଲା । ଓଃ, ସେ ଯେ ଭାରି ଦୁର୍ବଳ ହୋଇପଡ଼ିଛି । ଠିଆ ହେବାକୁ ଦେହରେ କ୍ଷମତା ନାହିଁ । କାନ୍ଥ ଦେହରେ ସେହି କ୍ଷୁଦ୍ର ଛିଦ୍ର ମଧ୍ୟଦେଇ ସୁଦୂର ତାରକାର କ୍ଷୀଣରଶ୍ମି ଛିଦ୍ର ମୁହଁଟିକୁ ପ୍ରକୋଷ୍ଠର ଅନ୍ୟାନ୍ୟ ଅଂଶ ତୁଳନାରେ ଅପେକ୍ଷାକୃତ ଆଲୋକିତ କରୁଥିଲା । ଯୁବକ କାନ୍ଥରେ ହାତଭରା ଦେଇ ରଜନୀର ଦୀପ୍ତିଶିଖା ଦେଖିବାକୁ ଲାଗିଗଲା ।

ଅନ୍ଧକାର ରଜନୀ, ଆକାଶରେ ଅସଂଖ୍ୟ ତାରା ସଗର୍ବରେ ଫୁଟି ଉଠିଥିଲେ । ପବନ ପ୍ରଚଣ୍ଡ ବେଗରେ ବହୁଥିଲା । ଏହିପରି ଅବସ୍ଥାରେ ପ୍ରାୟ ଅଧଘଣ୍ଟା ଅତୀତ ହେଲା ପରେ ଯୁବକ ଦେଖିଲା, ତୋଫାନ ପ୍ରଚଣ୍ଡତର ହୋଇଉଠୁଛି । ସେ ସାଇଁ ସାଇଁ ସ୍ୱର ତାକୁ କାହିଁକି ଭାରି ଭଲ ଲାଗିଲା । ସେ ସମସ୍ତ ଦୁଃଖ ଭୁଲି ପ୍ରକୃତିର ଖେଳରେ ମନୋନିବେଶ କଲା ।

ଦେଖୁ ଦେଖୁ କାହୁଁ ମାଡ଼ିଆସିଲା ଅଜସ୍ର ମେଘମାଳ । କ୍ଷଣକରେ ଆକାଶର ଅର୍ଦ୍ଧାଧିକ ତାରା ସେହି ମେଘମାଳର ଉଢ଼ୁଆଳରେ ଲୁଚିଗଲେ । ବିଦ୍ୟୁଲ୍ଲତା ସ୍ୱର୍ଣ୍ଣହାର ପରି ମେଘ ଦେହରେ କ୍ଷଣକ ନିମନ୍ତେ ଲମ୍ବାଇ ହୋଇ ନିଜର ସୌଷ୍ଠବ ଦେଖାଇଦେଲା ଚରାଚରକୁ । ସେହି କ୍ଷଣିକ ଆଲୋକରେ ପଥରର ନିମ୍ନରେ ବହୁ ଦୂରରେ ବିକ୍ଷୋଭିତ ସମୁଦ୍ର ବକ୍ଷ ସମୁଜ୍ଜ୍ୱଳ ଦେଖାଗଲା ।

ପୁନର୍ବାର ଯୁବକର ମନରେ ନୂତନ ଭାବ ଖେଳିଗଲା । ନିଶୀଥର ଅନ୍ଧକାର ଭେଦକରି ଯେତେବେଳେ ପ୍ରେମିକ ବାରିଦର ପ୍ରଶସ୍ତ ଅଙ୍କରେ ପ୍ରଣୟିନୀ ବିଦ୍ୟୁତ୍ ନିଜର ସୁନ୍ଦର ମୁହଁଟି କେତେବେଳେ ଦେଖାଇ ଦେଉଥାଏ; କେତେବେଳେ ବା ପ୍ରିୟଙ୍କର କୋଡ଼ରେ ଲୁଚାଇ ରଖୁଥାଏ, ପ୍ରଣୟୀର, ପ୍ରେମର ଆନନ୍ଦାଶ୍ରୁ ଗଳିପଡ଼ୁଥାଏ ଝର ଝର । ଏଣେ କଳିଙ୍ଗ ଉପକୂଳର ବାଲୁକା ପ୍ରାନ୍ତର ମଧ୍ୟସ୍ଥିତ

ମରୁଦ୍ୟାନବାସିନୀ ସୁଶୀଳା ନଶୀଥର ଅନ୍ଧକାରକୁ ନ ମାନ ଧୀରେ ଧୀରେ ମଣିଅଁ ନିକଟରୁ ଉଠିଯାଏ । ଲୁଗା ଖଣ୍ଡି ପିଣ୍ଡାରେ ଥୋଇ, ତାର ନଗ୍ନ ବନ୍ଧ ଦେହଟି ପ୍ରକୃତି ଦେହରେ ମିଶାଇ ଦେବାକୁ ଚାହେଁ । ହାତ ଦୁଇଟି ଉପରକୁ ଟେକି ଏକାକିନୀ ନର୍ତ୍ତକୀ ପରି ଆନନ୍ଦ ଚିତ୍ତରେ ନାଚୁଥାଏ ବାଲୁକା ପ୍ରାନ୍ତରରେ । ଘଡ଼ଘଡ଼ିର ଗର୍ଜ୍ଜନ ଯେତେବେଳେ ଖୁଣ୍ଟିଆ ପର୍ବତରେ ପ୍ରତିଧ୍ୱନିତ ହୋଇ ନିକଟସ୍ଥ ଗ୍ରାମମାନଙ୍କରେ ଆଶ୍ରମରେ ଶୋଇଥିବା ବାଳକ ବାଳିକାଙ୍କର ପ୍ରାଣରେ ଚମକ ଆଣେ, ସେତେବେଳେ ବାଳିକା ସୁଶୀଳା ଘଡ଼ଘଡ଼ିର ସ୍ୱର ସଙ୍ଗେ ସ୍ୱର ମିଶାଇ ଦେବାକୁ ଚିତ୍କାର କରି ଉଠେ । ମଣିଅଁର ନିଦ୍ରାଭଙ୍ଗ ହେଲେ ସେ ଦେଖେ ନିକଟରେ ସୁଶୀଳା ନାହିଁ । ଭୟରେ କାତର ହୋଇ ପଡ଼େ, ପଦାକୁ ଉଠି ଆସେ । ମେଘ କୋଳରେ ବିଜୁଳି ଚମକି ଉଠେ । ମଣିଅଁ ଦେଖେ, ଅଦୂରରେ କିଏ ଜଣେ ନାଚୁଛି । ସ୍ନେହ ମିଶ୍ରିତ ଭୟାତୁର ସ୍ୱରରେ ଡାକେ—ସୁଶୀଳା !

ସୁଶୀଳା ଶୁଣି ନ ଶୁଣିଲା ପରି ରହେ । ମଣିଅଁ ଆଉଥରେ ଡାକେ—ସୁଶୀଳା । ସୁଶୀଳା ଅନିଚ୍ଛା ସତ୍ତ୍ୱେ ଫେରି ଆସେ ମଣିଅଁ ନିକଟକୁ । ବିଜୁଳି ଆଉଥରେ ଝଲସାଇ ଦିଏ ସମଗ୍ର ଜଗତ । ମଣିଅଁ ସୁଶୀଳାର ହାତଧରି ନିକଟକୁ ଟାଣି ଆଣେ । ପ୍ରେମିକା ବିଦ୍ୟୁତ୍ ପ୍ରେମିକ କାଦମ୍ବ କୋଳରେ ମୁହଁ ଲୁଚାଇ ଦିଏ ଏବଂ ସୁଶୀଳା ଲତାଟି ପରି ତଳି ପଡ଼େ ମଣିଅଁ ବକ୍ଷରେ ।

ଆଜି ଯୁବକ ସୁଶୀଳାଠାରୁ ବଞ୍ଚିତ ହୋଇ ବହୁ ଦୂରରେ ଥାଇ ପ୍ରକୃତିର ଖେଳ ଦେଖୁ ଦେଖୁ ଅତୀତର ସେହି ଭୟଙ୍କରୀ ଅଥଚ ଆନନ୍ଦ ପ୍ରଦାୟିନୀ ରଜନୀର ସମସ୍ତ ଘଟଣା ଗୋଟି ଗୋଟି କରି ମନରେ ଆଣିଲା । ଆହା, ଆଜି ମୋର ପ୍ରାଣର ସୁଶୀଳା କାହିଁ, ଆଉ ହତଭାଗ୍ୟ ମୁଁ କାହିଁ !

ଏହି ଗୋଟିଏ କଥା ଚିନ୍ତା କରୁ କରୁ ଚକ୍ଷୁରୁ ଲୋତକ ଗଡ଼ି ପଡ଼ିଲା । ପ୍ରକୋଷ୍ଠ ଅନ୍ଧକାର, ନିର୍ଜ୍ଜନ । ସେ ଲୋତକ ଜନ-ମାନବ କେହି ଦେଖିଲେ ନାହିଁ । ମାନବ ଦୂରରେ, ବହୁ ଦୂରରେ, ପ୍ରକୃତିର ଚକ୍ଷୁ ଏଡ଼ି ଦେଇ ପାରିଲା ନାହିଁ । ଘଡ଼-ଘଡ଼ି ଛଳେ ପ୍ରକୃତି ସତେ କି ଗର୍ଜ୍ଜନ କରି କହି ଉଠିଲା, ନାରାୟଣ ସାଧବ ! ତୋର ନିଷ୍ଠୁର କାର୍ଯ୍ୟର ପ୍ରତିଫଳ ତୁ ଦିନେ ପାଇବୁ । ତାହା ବେଶୀ ଦୂରରେ ନାହିଁ ।

ବିବଶ ପ୍ରେମିକର ଦୁଃଖରେ ସହାନୁଭୂତି ଦେଖାଇ ପ୍ରକୃତି ଅଶ୍ରୁ ବର୍ଷଣ କଲା । ଯୁବକ ସେ ଶୀତଳ ଅଶ୍ରୁଛିଟା ସମ୍ଭାଳି ନ ପାରି ଧୀରେ ଧୀରେ ବସି ପଡ଼ିଲା । କିଛିକ୍ଷଣ ପରେ ସେ ଆନନ୍ଦରେ ଚିତ୍କାର କରି ଉଠିଲା, ନିଶ୍ଚୟ, ମୁଁ ଠିକ୍ ଭାବିଛି । ଧୀରପାଣି ପଥର କାନ୍ଥେ । ଏହାହିଁ କରିବି । ହେଉ ଏତ ଏ.ପି.ର୍ ନୋହିଲେ ସେପାରି ।

ପ୍ରହରୀ ହାତରୁ ଯେଉଁ ଲୁହାର କଡ଼ିଖଣ୍ଡ ଖସି ପଡ଼ିଥିଲା ତାକୁ ଉଠାଇ ଧରିଲା ଏବଂ ପାଗଳ ପରି ତାକୁ ଧୀର ସ୍ୱରରେ ପଚାରିଲା, ପାରିବୁ ମୋତେ

ଉଦ୍ଧାର କର ଭାଇ ? ତୋ ବିନା ଯେ ମୋ'ର ସହାୟ ଆଉ କେହି ନାହିଁ । ମନସ୍ଥ କରିଛି, ତୋହର ସାହାଯ୍ୟରେ କାନ୍ଥ ଫୁଟାଇ ସମୁଦ୍ର ବକ୍ଷକୁ ଲମ୍ଫ ପ୍ରଦାନ କରିବି । ଜୀବନ ରହୁ ବା ଯାଉ ।

ଏହି ସମୟରେ ଠକ୍ ଠକ୍ ଶବ୍ଦ କ୍ଷଣକ ନିମନ୍ତେ ବନ୍ଦ ହୋଇଗଲା । ମୂଷା ମାଟି ପରି ଝର ଝର ହୋଇ କଣ ଗୁଣ୍ଡାଏ ଯୁବକର ମୁଣ୍ଡ ଉପରେ ଖସି ପଡ଼ିଲା । ସେ ଚମକି ପଡ଼ି ଚିନ୍ତା କଲା, ଏ କ'ଣ ? ଦିନେ ହେଲେ ତ ଏ ଘରେ ମୂଷା ଦେଖି ନାହିଁ ?

ସଙ୍ଗେ ସଙ୍ଗେ ଆହୁରି ଛଅ ଥର ଠକ୍ ଠକ୍ ଶବ୍ଦ ଶୁଣାଗଲା । ଜଣାଗଲା, ଯେପରି ଶବ୍ଦ ତା'ର କାନ ନିକଟରେ ହେଉଛି । ମୁହୂର୍ତ୍ତିକ ପରେ ଆହୁରି ଗୁଡ଼ାଏ ମାଟି ତା ମୁଣ୍ଡ ଉପରେ ଖସି ପଡ଼ିଲା । ଶୁଣାଗଲା ଯେପରି କୌଣସି ଲୋକ କ୍ଲାନ୍ତ, ବ୍ୟସ୍ତ ହୋଇ କହୁଛି, 'ଓଃ !' ଯୁବକର ଦୃଢ଼ ମନ ସୁଦ୍ଧା ଭୟରେ ଛନ୍ନ ହୋଇ ପଡ଼ିଲା । ସେ ମନରେ ଦମ୍ଭ ଆଣି ଠିଆ ହେଲା ।

ମୁଣ୍ଡ ନୁଆଇଁ କାନ୍ଥର ପ୍ରତ୍ୟେକ ସ୍ଥାନରେ ହାତ ବୁଲାଇଲା । କିଛି ସମୟ ପରେ ତା'ର ହାତ ଗୋଟିଏ ଗାଡ଼ ଭିତରେ ପ୍ରବେଶ କଲା । ନିରୀକ୍ଷଣ କରି ଦେଖିଲା । କିଛି ଜଣା ପଡ଼ିଲା ନାହିଁ । ସେ ଯେଉଁ ଅନ୍ଧକାର, ମାନବର ଦୃଷ୍ଟି ଶକ୍ତି ସେ ଅନ୍ଧକାର ଭେଦ କରନ୍ତା କାହୁଁ ? ସେହି ଗାଡ଼ ମଧ୍ୟରେ ଦୁଇ ହାତ ପୂରାଇ ଦେଖିଲା, ତାହା ଛୋଟ ନୁହେଁ । ଏପରି ବଡ଼ ଯେ ଅକ୍ଲେଶରେ ଜଣେ ମନୁଷ୍ୟ ସେହି ବାଟ ଦେଇ ଗଳି ଯାଇ ପାରିବ । ଜଉଘରେ ପାଣ୍ଡବମାନଙ୍କୁ ବିପଦାପନ୍ନ ଦେଖି, ଶ୍ରୀକୃଷ୍ଣଙ୍କ ମନ୍ତ୍ରଣାରେ ଯେପରି ସୁଡ଼ଙ୍ଗ ତିଆରି ହୋଇଥିଲା, କେହି କ'ଣ ଆଜି ସେପରି ଯୁବକକୁ ବିପଦରୁ ଉଦ୍ଧାର କରିବାକୁ ସୁଡ଼ଙ୍ଗ ଫୁଟାଇଛନ୍ତି ।

ମଣିଅାଁ ସେହି କଣା ବାଟେ ମୁହଁ ଗଳାଇ ଦେଖିଲା ! କେବଳ ଅନ୍ଧକାର । ମୁଣ୍ଡ ଭିତରକୁ ଆଣି ଚିନ୍ତାକଲା ହୁଏତ ତାରି ପରି କେହି ହତଭାଗ୍ୟ ବନ୍ଦୀ ମୁକ୍ତି ଆଶାରେ ବହୁ ଚେଷ୍ଟା କରି କାନ୍ଥ ଫୁଟାଇଛି । ହଁ, ଏହା ସମ୍ପୂର୍ଣ୍ଣ ସମ୍ଭବ । ସେ ଧୀରେ ଧୀରେ ପ୍ରଶ୍ନ କଲା, କିଏ ?

କେହି ଉତ୍ତର ଦେଲା ନାହିଁ ।

କିଛିକ୍ଷଣ ପରେ ଆକାଶ ଉଜ୍ଜ୍ୱଳକରି ବିଦ୍ୟୁତ ଚମକି ଉଠିଲା । ସଙ୍ଗେ ସଙ୍ଗେ ଘଡ଼ଘଡ଼ ଗର୍ଜି ଉଠିଲା । ଯୁବକ ପୁନର୍ବାର ଭୀତସୂଚକ କଣ୍ଠରେ ପ୍ରଶ୍ନକଲା, କିଏ ତୁମେ ?

ପ୍ରକୋଷ୍ଠର ଅପରପାର୍ଶ୍ୱରୁ ଉତ୍ତର ଆସିଲା, ଗୋଟିଏ ଗମ୍ଭୀର, ସୁଦୀର୍ଘ "ଓଃହୋ" ।

ଅନ୍ୟ କୌଣସି ପ୍ରଶ୍ନ ପଚାରିବାକୁ ସାହସ କଲା ନାହିଁ । ଭାବିଥିଲା, ସେ ଯେ ହେଉ ଏଥର নিশ୍ଚୟ ନିଜେ ନିଜେ କଥା କହିବ । ଅନେକ ସମୟ ନୀରବରେ କାନଡେରି ରହିଲା । ଶୁଣିଲା ଯେପରି କିଏ ଜଣେ ହାଇ ମାରୁ ମାରୁ ଧୀରେ ଧୀରେ କହୁଛି, ବୁଦ୍ଧ ହେ, ଜଗତର ମଙ୍ଗଳ କର ।

ମଣିଆଁର ଆଖି ନିଦରେ ମାଡ଼ି ମାଡ଼ି ପଡ଼ିଲା । ସେ ଧୀରେ ଧୀରେ କଣା ନିକଟରୁ ଘୁଞ୍ଚିଆସି ଅଖା ଉପରେ ତାର ଦୁର୍ବଳ ଅଙ୍ଗ ଲମ୍ବାଇ ଦେଲା । ମାତାଙ୍କର "ଧୋରେ ବାଇଆ ଧୋ" ଗୀତ ବୁଝୁଁ ନ ବୁଝୁଁ ଶିଶୁ ଯେପରି ଧୀରେ ଧୀରେ ଆଖି ବୁଜିଦିଏ ମଣିଆଁ ପ୍ରକୃତିର ସଙ୍ଗୀତ ଶୁଣୁ ଶୁଣୁ ନିଦ୍ରାମଗ୍ନ ହେଲା । ସଙ୍ଗେ ସଙ୍ଗେ ଭାବନାତୁଳି ଅଙ୍କିତ ସ୍ୱପ୍ନ ରାଜ୍ୟରେ ଭ୍ରମଣ କଲା । ତାର ନାସିକାର ଘଡ଼ ଘଡ଼ ଶବ୍ଦ ପ୍ରକୋଷ୍ଠର ନିସ୍ତବ୍ଧତା ଭଙ୍ଗ କରୁଥାଏ ।

ଯେତେବେଳେ ମଣିଆଁର ନିଦ୍ରା ଭଙ୍ଗ ହେଲା ସେ ଦେଖିଲା ପ୍ରକୋଷ୍ଠ ଆଉ ପୂର୍ବପରି ଅନ୍ଧକାର ନାହିଁ । ଝଡ଼ବର୍ଷା ଛାଡ଼ି ଯାଇଛି । ଥଣ୍ଡାରେ ଦେହ ଶୀତେଇ ଉଠୁଛି । ସେ ହାଇ ମାରୁ ମାରୁ ଅନ୍ୟମନସ୍କ ଭାବରେ ଏଣେ ତେଣେ ଦୃଷ୍ଟି ପକାଇଲା । ଦେଖିଲା ସେ ପାଖ କାନ୍ଥରେ ଗୋଟିଏ ମସ୍ତବଡ଼ ଜଳା ଏବଂ ଭିତରେ ମୁଣ୍ଡ ଗଳାଇ ସତେ କି ମୂର୍ତ୍ତିମାନ ମୃତ୍ୟୁ ଦଣ୍ଡାୟମାନ ।

ହଁ,—ମୃତ୍ୟୁ ନିଶ୍ଚୟ । ସେ ତ ଜଗତର ପ୍ରାଣୀ ପରି ଦେଖା ଯାଉ ନାହିଁ; ମୁଖ ରକ୍ତମାଂସ ଶୂନ୍ୟ । କେବଳ ଅସ୍ଥି ନିର୍ମିତ । ଚର୍ମ ଆବୃତ । ଚକ୍ଷୁ କୋଟରାଗତ, ଜ୍ୟୋତିଃବିହୀନ । ମସ୍ତକର କେଶ ଅର୍ଦ୍ଧପକ୍ୱ । ନିଶ ଏବଂ ଲମ୍ବମାନ ଦାଢ଼ି, ଶୁକ୍ଳ କୃଷ୍ଣର ସମ୍ମିଳନରେ କିପରି ଭିନ୍ନପ୍ରକାର ଦେଖା ଯାଉଛି । ନିଶ୍ୱାସ ମାରିବା ସମୟରେ ମସ୍ତକ ସ୍ୱତଃ ଆନ୍ଦୋଳିତ ହେଉଛି । ବିଦାକାଠି ପରି ବକ୍ଷଦେଶରେ କେତୋଟି ମାତ୍ର ହାଡ଼ ସ୍ପଷ୍ଟ ଫୁଟି ଦିଶୁଛି । ସେ ମୃତ୍ୟୁ ବିନା କିଏ ହୋଇପାରେ ?

ମଣିଆଁକୁ ଜାଗ୍ରତ ଦେଖି ସେ ଧୀରେ ଧୀରେ ମୁଣ୍ଡ ନୁଆଇଁ ଅରପାଖକୁ ନେଇ ଗଲା । ମାତ୍ର ଯୁବକର ମନରେ ସେ ଯେଉଁ ଚମକ ଦେଇଗଲା ତହିଁରେ ତାର ପ୍ରାଣ ପ୍ରକମ୍ପିତ ହେଲା । ଚିନ୍ତାକଲା, ଏ କିଏ ମନୁଷ୍ୟ ?

ମଣିଆଁ ଶଯ୍ୟା ତ୍ୟାଗକରି ଉଠି ଠିଆହେଲା । ଆହାର ବିନା ଦୁର୍ବଳଅଙ୍ଗ ଅବଶ ହୋଇଛି । ଟଳ ଟଳ ହୋଇ ପଡ଼ିଯିବା ବେଳେ କାନ୍ଥରେ ହାତଭରା ଦେଇ ଜଳା ବାଟେ ଅରଘରକୁ ଅନାଇଲା । ଦେଖିଲା ସେହି ବ୍ୟକ୍ତି ମୁଖାବନତ କରି ବସିଅଛି । ସେ ବୁଝିପାରିଲା, ଏ ଜଣେ ତାହାରି ପରି ବନ୍ଦୀ । ଖାଦ୍ୟାଭାବରୁ ଶରୀରର ଅବସ୍ଥା ଏପରି ହୋଇଛି । ନିଜର ଦୁର୍ଦ୍ଦଶା ଭୁଲିଗଲା । ମନରେ ସ୍ୱତଃ ଦୟା ଜାତ ହେଲା । ସେ ଥରେ ଥରେ ଅତି କଷ୍ଟରେ ଜଳାବାଟ ଦେଇ ଅନ୍ୟ ପ୍ରକୋଷ୍ଠରେ ପ୍ରବେଶ କଲା ।

ଲୋକଟିର ଅବସ୍ଥା ଦେଖି ଯୁବକର ହୃଦୟ ଥରି ଉଠିଲା । ଚକ୍ଷୁରୁ ଲୋତକ ବାଧା ନ ମାନି ଝର ଝର ପଡ଼ିଲା ଝର ଝର । ଲୋକଟି ଧୀରେ ଧୀରେ ମୁଣ୍ଡ ଟେକି ଯୁବକକୁ ଚାହିଁଲା । ତାର ଚକ୍ଷୁ ମଧ୍ୟ ଲୋତକାର୍ଦ୍ର ହେଲା । ଉଭୟଙ୍କର ଚାରିଚକ୍ଷୁ ମିଳନ ହେଲା ।

ଯୁବକ ଧୀରେ ଧୀରେ ମୁଣ୍ଡ ନୁଆଇଁ ବୃଦ୍ଧଙ୍କୁ ପ୍ରଣାମ କଲା । ବୃଦ୍ଧ ରକ୍ତ ମାଂସହୀନ କମ୍ପିତ ହସ୍ତ ଯୁବକର ମସ୍ତକରେ ସ୍ଥାପନ କରି କହିଲେ, ଉଠ ବାବା, ବୁଦ୍ଧ ତମର ମଙ୍ଗଳ କରିବେ ।

ଯୁବକ ସମ୍ମୁଖରେ ବସିପଡ଼ି ପଚାରିଲା, ଆପଣ କିଏ ?

ତମ ପରି ଜଣେ ସାମାନ୍ୟ ବନ୍ଦୀ । ନିଜର ଦୁର୍ବଳ ହସ୍ତରେ ଗୋଡ଼ ଚାପୁ ଚାପୁ ଟିକିଏ ପରେ କହିଲେ, ମୁଁ ଜାଣେନା କେଉଁ ଅପରାଧରୁ ମୋତେ ଏଠାରେ ବନ୍ଦୀ କରିଛନ୍ତି ? କିନ୍ତୁ ଏପରି ବନ୍ଦୀ ହୋଇ ରହିବା ଅପେକ୍ଷା ମୃତ୍ୟୁ କ'ଣ ବାଞ୍ଛନୀୟ ନୁହେ ?

ନିଶ୍ଚୟ । ଯୁବକ ହାତ ବଢ଼ାଇ ବୃଦ୍ଧର ପାଦ ଚିପିବାକୁ ଇଚ୍ଛା ପ୍ରକାଶ କଲା । ବୃଦ୍ଧ ବାରଣ କରି ମୁଣ୍ଡ ହଲାଇଲେ । ମଣିଅାଁ ନ ମାନି ଗୋଡ଼ ଘଷି ଦେଉଁ ଦେଉଁ ଆରମ୍ଭ କଲା, ସାକ୍ଷାତ ନରକ କୁଣ୍ଡରେ ଜୀବନ୍ତ ସମାଧି ପାଇବା ଅପେକ୍ଷା ମୃତ୍ୟୁ ବାଞ୍ଛନୀୟ । ଆତ୍ମା ଆମର ମୁକ୍ତ ହୋଇଯିବ ।

ବୃଦ୍ଧ ଗୋଡ଼ ଲମ୍ବାଇ କହିଲେ, ମୋ ପରି ବୃଦ୍ଧ ପାଇଁ ତାହା ଲୋଡ଼ା । ତୁମେ ଯୁବକ; ଏହି ଅବସ୍ଥାରେ ହତାଶ ହୋଇ ପଡ଼ୁଛ କାହିଁକି ?

ଏ ଯେ ନରକ !

ହେଉ । ମୋର ଗୋଟିଏ ପାଦ ମୃତ୍ୟୁରାଜ୍ୟରେ, ଅନ୍ୟଟି ଏହି ସଂସାରରେ । ମୃତ୍ୟୁରେ ଶାନ୍ତି ଅଛି । ବହୁଦିନରୁ ଯନ୍ତ୍ରଣା ଭୋଗ କରି କରି ସଂସାର ପ୍ରତି ଘୃଣା ଆସିଥିଲା । ଟିକିଏ ରହି କହିଲେ, ଥାଉ ଥାଉ । ମୋର ଗୋଡ଼ ଚପନା । ସେ ରୋଗ ଆଉ ଭଲ ହେବ ନାହିଁ । ମୁଁ ବୁଝି ପାରୁଛି, ଦେହରେ ମୋର ରକ୍ତ ନାହିଁ । ତେଣୁ ଦିନରାତି ସବୁବେଳେ ଗୋଡ଼ ହାତରୁ ଘୋଳା ଉଠୁଛି । ଆଉ ସମ୍ଭାଳି ହେଉ ନାହିଁ । ଅସହ୍ୟ ଯନ୍ତ୍ରଣା, ଓଃ । ଥାଉ, ଯେତେ ଚପିଲେ ସେ ବନ୍ଦ ହେବ ନାହିଁ । ବରଂ ତୁମକୁ କଷ୍ଟ ହେବ । ଗୋଡ଼ ଟାଣି ନେଇ କହିଲେ, ମୋର ମୃତ୍ୟୁ ଲୋଡ଼ା କିନ୍ତୁ ତୁମପରି ଯୁବକର ନୁହେ । ଦିନେ ମୁକ୍ତ ହୋଇ ପାରିବ । ଓଃ, ଅସହ୍ୟ ଯନ୍ତ୍ରଣା । ଆଉ ସମ୍ଭାଳି ହେଉ ନାହିଁ । ଆଶା ଅଛି, ଦିନେ ତୁମେ ମୁକ୍ତି ପାଇ ପାର । ସେତେବେଳେ ଉତ୍କଳଦେଶରେ ଉପସ୍ଥିତ ହୋଇ ଉତ୍କଳ କେଶରୀ ଲଲାଟେନ୍ଦୁଙ୍କୁ ଜଣାଇ ଆମ ପରି ଅନ୍ୟାନ୍ୟ ହତଭାଗ୍ୟଙ୍କୁ ଉଦ୍ଧାର କରି ପାରିବ । ଓଃ, ଅସହ୍ୟ ।

ଏତିକି କହି ବୃଦ୍ଧ ବଡ଼ କ୍ଳାନ୍ତ ବୋଧ କଲେ । ସେ କାନ୍ଥକୁ ଆଉଜି ବସି ଦୀର୍ଘ ନିଶ୍ୱାସ ତ୍ୟାଗ କଲେ । ଏହି ସମୟରେ ବାହାରୁ ଝପ ଝପ ଶବ୍ଦ ଶୁଭିଲା ! ବୃଦ୍ଧ ଚଞ୍ଚଳ ଦେଖାଗଲେ । ବ୍ୟସ୍ତ ହୋଇ ଟିକେ ତାର ହୋଇ ବସିଲେ । ଯୁବକକୁ କହିଲେ, ବର୍ତ୍ତମାନ ଶୀଘ୍ର ତୁମ କୋଠରୀକୁ ଚାଲିଯାଅ । ପ୍ରହରୀ ଭାତ ନେଇ ଆସିଲାଣି । ଯଦି ଜାଣିପାରେ ତେବେ ଦୁହିଁଙ୍କର ସର୍ବନାଶ ।

ଯୁବକ ନୀରବରେ ଉଠିଗଲା ।

ଏତେ ଦୁର୍ବଳ ହୋଇ ସୁଦ୍ଧା ଆପଣ ଏତେ ମୋଟା କାନ୍ଥଟା ଫଟାଇ ପାରିଛନ୍ତି ?

ବାବା, ମନେରଖ; ମୋର ଅଙ୍ଗ ଦୁର୍ବଳ ହେଲେ ସୁଦ୍ଧା ମନ ଦୁର୍ବଳ ନୁହେଁ । ଯାହାର ମନର ଦୃଢ଼ତା ଅଛି ତାକୁ କୌଣସି କାର୍ଯ୍ୟ ଶକ୍ତ ଲାଗେ ନାହିଁ । ବହୁଦିନ ବନ୍ଦୀ ରହିଲା ପରେ, ଦିନେ ହଠାତ୍ ମୋ ମନରେ ମୁକ୍ତିଲାଭର ଏହି ଗୋଟିଏ ଉପାୟ ଉଦିତ ହେଲା । ଧୀର ପାଣି ପଥର କାଟେ । କାନ୍ଥ ଫଟାଇବାକୁ ମନସ୍ଥ କଲି । ମୋ ନିକଟରେ ସେପରି କୌଣସି ଯନ୍ତ୍ର ନ ଥିଲା । କେବଳ ଏହି ପୁରୁଣା ଲୁହା ଖଡ଼ିକା ଖଣ୍ଡି । ଏହି ଖଣ୍ଡିକ କିପରି ପାଇଲି କହୁଚି ଶୁଣ ।

ବୃଦ୍ଧର ନିଶ୍ୱାସ ଘନ ଘନ ଯାତାୟାତ କରିବାକୁ ଲାଗିଲା । ନିଜର ମୁଣ୍ଡରେ ହାତ ବୁଲାଉ ବୁଲାଉ କହିଲେ, ଓଃ ଦେହର ଯନ୍ତ୍ରଣା ଅପେକ୍ଷା ମୁଣ୍ଡର ଯନ୍ତ୍ରଣା ବଳେଇ ପଡ଼ୁଛି । ତେଲ ଏବଂ ପାଣିଅଁର ଅଭାବରୁ ମୁଣ୍ଡରେ ମଳି ବସି ଉକୁଣୀ ସାଲୁ ସାଲୁ ହେଉଚନ୍ତି । ଅନେକ ଜାଗାରେ ଘା ହୋଇଗଲାଣି । ନିରୁପାୟ ! ହାଃ ବୁଦ୍ଧ, ଉଦ୍ଧାରକର !

ମଣିଆଁ ତାଙ୍କର ଗୋଡ଼ ଆଉଁସୁ ଆଉଁସୁ କହିଲା, କଥା କହିବା ଦ୍ୱାରା ଆପଣଙ୍କୁ ବଡ଼ କଷ୍ଟ ହେଉଛି । ଟିକିଏ ବିଶ୍ରାମ କରନ୍ତୁ ।

ବୃଦ୍ଧଙ୍କର ଯନ୍ତ୍ରଣା ବିକୃତ ମୁଖରେ ହାସ୍ୟରେଖା ଫୁଟି ଉଠିଲା । ସେ କହିଲେ, ଆଉ ବିଶ୍ରାମ ନେବି କ'ଣ ? ବେଳ ହେଲାଣି ଏଥର ଡକରା ଆସିବ । କେବେ ସେ ଶୁଭଦିନ ଆସିବ ତାହାରି ପ୍ରତୀକ୍ଷାରେ ଅନାଇଁ ବସିଛି । ଶୁଣ, ସେ ଶୁଭକ୍ଷଣ ଆସିବା ପୂର୍ବରୁ ଯେତିକି ପାରୁଛି କହିଯାଏଁ, ମୋ ଜୀବନର କଷ୍ଟପୂର୍ଣ୍ଣ ଘଟଣାଗୁଡ଼ିକ । ତହିଁରୁ ଯଦି କିଛି ଶିକ୍ଷା କରି ମୁକ୍ତିର ଚେଷ୍ଟା କରିପାର ତେବେ ଉତ୍ତମ । କ'ଣ କହୁଥିଲି ଭୁଲି ଯାଉଛି । ବହୁଦିନ ପୂର୍ବେ ଯେଉଁ ସମସ୍ତ ଘଟଣା ଜୀବନରେ ଘଟିଥିଲା ତାହା ସ୍ପଷ୍ଟରୂପେ ମୋ ମନରେ ଅଙ୍କିତ ରହିଛି । ମନର ସେ ସବୁ ଲେଖା ଜୀବନରେ କେବେ ହେଲେ ଭୁଲି ପାରିବି ନାହିଁ । କିନ୍ତୁ ବାବା,

ଲୋକଟିର ଅବସ୍ଥା ଦେଖି ଯୁବକର ହୃଦୟ ଥର ଉଠିଲା । ଚକ୍ଷୁରୁ ଲୋତକ ବାଧା ନ ମାନି ଝର ଝର ପଡ଼ିଲା ଝର ଝର । ଲୋକଟି ଧୀରେ ଧୀରେ ମୁଣ୍ଡ ଟେକି ଯୁବକକୁ ଚାହିଁଲା । ତାର ଚକ୍ଷୁ ମଧ୍ୟ ଲୋତକାର୍ଦ୍ର ହେଲା । ଉଭୟଙ୍କର ଦୃଷ୍ଟିରେ ମିଳନ ହେଲା ।'

ଯୁବକ ଧୀରେ ଧୀରେ ମୁଣ୍ଡ ନୁଆଇଁ ବୃଦ୍ଧଙ୍କୁ ପ୍ରଣାମ କଲା । ବୃଦ୍ଧ ରକ୍ତ ମାଂସହୀନ କମ୍ପିତ ହସ୍ତ ଯୁବକର ମସ୍ତକରେ ସ୍ଥାପନ କରି କହିଲେ, ଉଠ ବାବା, ବୁଦ୍ଧ ତମର ମଙ୍ଗଳ କରିବେ ।

ଯୁବକ ସମ୍ମୁଖରେ ବସିପଡ଼ି ପଚାରିଲା, ଆପଣ କିଏ ?

ତମ ପରି ଜଣେ ସାମାନ୍ୟ ବନ୍ଦୀ । ନିଜର ଦୁର୍ବଳ ହସ୍ତରେ ଗୋଡ଼ ଚିପୁ ଚିପୁ ଟିକିଏ ପରେ କହିଲେ, ମୁଁ ଜାଣେନା କେଉଁ ଅପରାଧରୁ ମୋତେ ଏଠାରେ ବନ୍ଦୀ କରିଛନ୍ତି ? କିନ୍ତୁ ଏପରି ବନ୍ଦୀ ହୋଇ ରହିବା ଅପେକ୍ଷା ମୃତ୍ୟୁ କ'ଣ ବାଞ୍ଛନୀୟ ନୁହେ ?

ନିଶ୍ଚୟ । ଯୁବକ ହାତ ବଢ଼ାଇ ବୃଦ୍ଧର ପାଦ ଚିପିବାକୁ ଇଚ୍ଛା ପ୍ରକାଶ କଲା । ବୃଦ୍ଧ ବାରଣ କରି ମୁଣ୍ଡ ହଲାଇଲେ । ମଣିଆଁ ନ ମାନି ଗୋଡ଼ ଘଷି ଦେଉଁ ଦେଉଁ ଆରମ୍ଭ କଲା, ସାକ୍ଷାତ ନରକ କୁଣ୍ଡରେ ଜୀବନ୍ତ ସମାଧି ପାଇବା ଅପେକ୍ଷା ମୃତ୍ୟୁ ବାଞ୍ଛନୀୟ । ଆତ୍ମା ଅମର ମୁକ୍ତ ହୋଇଯିବ ।

ବୃଦ୍ଧ ଗୋଡ଼ ଲମ୍ବାଇ କହିଲେ, ମୋ ପରି ବୃଦ୍ଧ ପାଇଁ ତାହା ଲୋଡ଼ା । ତୁମେ ଯୁବକ; ଏହି ଅବସ୍ଥାରେ ହତାଶ ହୋଇ ପଡ଼ୁଛ କାହିଁକି ?

ଏ ଯେ ନରକ !

ହେଉ । ମୋର ଗୋଟିଏ ପାଦ ମୃତ୍ୟୁରାଜ୍ୟରେ, ଅନ୍ୟଟି ଏହି ସଂସାରରେ ।' ମୃତ୍ୟୁରେ ଶାନ୍ତି ଅଛି । ବହୁଦିନୁ ଯନ୍ତ୍ରଣା ଭୋଗ କରି କରି ସଂସାର ପ୍ରତି ଘୃଣା ଆସିଥିଲା । ଟିକିଏ ରହି କହିଲେ, ଥାଉ ଥାଉ । ମୋର ଗୋଡ଼ ଚପନା । ସେ ରୋଗ ଆଉ ଭଲ ହେବ ନାହିଁ । ମୁଁ ବୁଝି ପାରୁଛି, ଦେହରେ ମୋର ରକ୍ତ ନାହିଁ । ତେଣୁ ଦିନରାତି ସବୁବେଳେ ଗୋଡ଼ ହାତରୁ ଘୋଳା ଉଠୁଛି । ଆଉ ସମ୍ଭାଳି ହେଉ ନାହିଁ । ଅସହ୍ୟ ଯନ୍ତ୍ରଣା, ଉଃ । ଥାଉ, ଯେତେ ଚପିଲେ ସେ ବନ୍ଦ ହେବ ନାହିଁ । ବରଂ ତୁମକୁ କଷ୍ଟ ହେବ । ଗୋଡ଼ ଟାଣି ନେଇ କହିଲେ, ମୋର ମୃତ୍ୟୁ ଲୋଡ଼ା କିନ୍ତୁ ତୁମପରି ଯୁବକର ନୁହେ । ଦିନେ ମୁକ୍ତ ହୋଇ ପାରିବ । ଉଃ, ଅସହ୍ୟ ଯନ୍ତ୍ରଣା । ଆଉ ସମ୍ଭାଳି ହେଉ ନାହିଁ । ଆଶା ଅଛି, ଦିନେ ତୁମେ ମୁକ୍ତି ପାଇ ପାର । ସେତେବେଳେ ଉତ୍କଳଦେଶରେ ଉପସ୍ଥିତ ହୋଇ ଉତ୍କଳ କେଶରୀ ଲଲାଟେନ୍ଦୁଙ୍କୁ ଜଣାଇ ଆମ ପରି ଅନ୍ୟାନ୍ୟ ହତଭାଗ୍ୟଙ୍କୁ ଉଦ୍ଧାର କରି ପାରିବ । ଉଃ, ଅସହ୍ୟ ।

ଏତିକି କହି ବୃଦ୍ଧ ବଡ଼ କ୍ଳାନ୍ତ ବୋଧ କଲେ । ସେ କାନ୍ଥକୁ ଆଉଜି ବସି ଦୀର୍ଘ ନିଶ୍ୱାସ ତ୍ୟାଗ କଲେ । ଏହି ସମୟରେ ବାହାରୁ ଝମ ଝମ ଶବ୍ଦ ଶୁଭିଲା ! ବୃଦ୍ଧ ଚଞ୍ଚଳ ଦେଖାଗଲେ । ବ୍ୟଗ୍ର ହୋଇ ଉଠି ଠିଆ ହୋଇ ବସିଲେ । ଯୁବକକୁ କହିଲେ, ବର୍ତ୍ତମାନ ଶୀଘ୍ର ତୁମ କୋଠରୀକୁ ଚାଲିଯାଅ । ପ୍ରହରୀ ଖାଦ୍ୟ ନେଇ ଆସିଲାଣି । ଯଦି ଜାଣିପାରେ ତେବେ ଆମ୍ଭମାନଙ୍କର ସର୍ବନାଶ ।

ଯୁବକ ନୀରବରେ ଉଠିଗଲା ।

ଏତେ ଦୁର୍ବଳ ହୋଇ ସୁଦ୍ଧା ଆପଣ ଏତେ ମୋଟା କାନ୍ଥଟା ଫୁଟାଇ ପାରିଛନ୍ତି ?

ବାବା, ମନେରଖ; ମୋର ଅଙ୍ଗ ଦୁର୍ବଳ ହେଲେ ସୁଦ୍ଧା ମନ ଦୁର୍ବଳ ନୁହେଁ । ଯାହାର ମନର ଦୃଢ଼ତା ଅଛି ତାକୁ କୌଣସି କାର୍ଯ୍ୟ ଶକ୍ତ ଲାଗେ ନାହିଁ । ବହୁଦିନ ବନ୍ଦୀ ରହିଲା ପରେ, ଦିନେ ହଠାତ୍ ମୋ ମନରେ ମୁକ୍ତିଲାଭର ଏହି ଗୋଟିଏ ଉପାୟ ଉଦିତ ହେଲା । ଧୀର ପାଣି ପଥର କାଟେ । କାନ୍ଥ ଫୁଟାଇବାକୁ ମନସ୍ଥ କଲି । ମୋ ନିକଟରେ ସେପରି କୌଣସି ଯନ୍ତ୍ର ନ ଥିଲା । କେବଳ ଏହି ପୁରୁଣା ଲୁହା ଖଡ଼ିକା ଖଣ୍ଡି । ଏହି ଖଣ୍ଡିକ କିପରି ପାଇଲି କହୁଛି ଶୁଣ ।

ବୃଦ୍ଧର ନିଶ୍ୱାସ ଘନ ଘନ ଯାତାୟାତ କରିବାକୁ ଲାଗିଲା । ନିଜର ମୁଣ୍ଡରେ ହାତ ବୁଲାଉ ବୁଲାଉ କହିଲେ, ଓଃ ଦେହର ଯନ୍ତ୍ରଣା ଅପେକ୍ଷା ମୁଣ୍ଡର ଯନ୍ତ୍ରଣା ବଳେଇ ପଡ଼ୁଛି । ତେଲ ଏବଂ ପାଣିଅଁର ଅଭାବରୁ ମୁଣ୍ଡରେ ମଳି ବସି ଉକୁଣୀ ପାଲୁ ପାଲୁ ହେଉଛନ୍ତି । ଅନେକ ଜାଗାରେ ଘା ହୋଇଗଲାଣି । ନିରୁପାୟ ! ହାଃ ବୃଦ୍ଧ, ଉଦ୍ଧାରକର !

ମଣିଅଁ ତାଙ୍କର ଗୋଡ଼ ଅଉଁସୁ ଅଉଁସୁ କହିଲା, କଥା କହିବା ଦ୍ୱାରା ଆପଣଙ୍କୁ ବଡ଼ କଷ୍ଟ ହେଉଛି । ଟିକିଏ ବିଶ୍ରାମ କରନ୍ତୁ ।

ବୃଦ୍ଧଙ୍କର ଯନ୍ତ୍ରଣା ବିକୃତ ମୁଖରେ ହାସ୍ୟରେଖା ଫୁଟି ଉଠିଲା । ସେ କହିଲେ, ଆଉ ବିଶ୍ରାମ ନେବି କ'ଣ ? ବେଳ ହେଲାଣି ଏଥର ଡାକରା ଆସିବ । କେବେ ସେ ଶୁଭଦିନ ଆସିବ ତାହାରି ପ୍ରତୀକ୍ଷାରେ ଅନାଇଁ ବସିଛି । ଶୁଣ, ସେ ଶୁଭକ୍ଷଣ ଆସିବା ପୂର୍ବରୁ ଯେତିକି ପାରୁଛି କହିଯାଏଁ, ମୋ ଜୀବନର କଷ୍ଟପୂର୍ଣ୍ଣ ଘଟଣାଗୁଡ଼ିକ । ତହିଁରୁ ଯଦି କିଛି ଶିକ୍ଷା କରି ମୁକ୍ତିର ଚେଷ୍ଟା କରିପାର ତେବେ ଉତ୍ତମ । କ'ଣ କହୁଥିଲି ଭୁଲି ଯାଉଛି । ବହୁଦିନ ପୂର୍ବେ ଯେଉଁ ସମସ୍ତ ଘଟଣା ଜୀବନରେ ଘଟିଥିଲା ତାହା ସ୍ପଷ୍ଟରୂପେ ମୋ ମନରେ ଅଙ୍କିତ ରହିଛି । ମନର ସେ ସବୁ ଲେଖା ଜୀବନରେ କେବେ ହେଲେ ଭୁଲି ପାରିବି ନାହିଁ । କିନ୍ତୁ ବାବା,

କେତେବେଳେ କାହିଁକି ବର୍ତ୍ତମାନର ପ୍ରତ୍ୟକ୍ଷ ଘଟଣାଗୁଡ଼ିକ କହୁ କହୁ ଭୁଲି ଯାଉଛି । ମନେ ପକାଇ ଦେବ ।

ଆପଣ ବର୍ତ୍ତମାନ କ'ଣ ଲୁହାଖଡ଼ିକା କଥା କହୁଥିଲେ ?

ହଁ–ଠିକ୍ ମନେ ପଡ଼ିଲା, ଲୁହାଖଡ଼ିକା କଥା । ଚଉଦ ଦିନ ପୂର୍ବେ, ନା,– ବହୁବର୍ଷ ପୂର୍ବେ, ବୋଧହୁଏ । ମୁଁ ଏବେ କିପରି ଠିକ୍ କରି କହିବି ? ଦିନ ବାର ଜାଣିବାର ତ କୌଣସି ଉପାୟ ନାହିଁ । ଏହି କ୍ଷୁଦ୍ର କଣାଟି ବାଟେ ସୂର୍ଯ୍ୟଙ୍କର ଆଲୋକ ଆସି ପ୍ରକୋଷ୍ଠଟିକୁ ଆଲୋକିତ କରିଥାଏ । ସେହି ଆଲୋକ ଦେଖି ଦିନବାର ଠିକ୍ କରିଥାଏ । ମାତ୍ର ସେପରି କେତେଦିନ ଚଳିପାରେ ? ଯାହା ହେଉ ସେଦିନ ପ୍ରହରୀ ଭାତ ଆଣିବା ସମୟରେ ମୁଁ ମୂର୍ଖ ତା ହାତରୁ ଲୁହାଖଡ଼ିକାଖଣ୍ଡି ଛଡ଼ାଇ ତାର ଜୀବନ ଶେଷ କରିବାର ଅଭିପ୍ରାୟରେ ଆକ୍ରମଣ କଲି । ସେ ମୁକ୍ତ ହୋଇ ଚାଲିଗଲା । ସେହିଦିନଠୁ ମୋତେ ଆଉ ଖାଦ୍ୟ ଆଣିଦେଲା ନାହିଁ ।

ମଣିଆଁ ଚାରିଆଡ଼କୁ ଅନାଇଁ ଅନାଇଁ ଦେଖିଲା କୋଣରେ ଖଣ୍ଡେ ଖପରାରେ ଭାତ ଗଦାହୋଇ ରହିଛି । କୋଣରେ ଶୁଖିଲା ଭାତ ଚୁଣି ହୋଇ ପଡ଼ିଛି । ପାଖରେ ଗୋଟାଏ ଠେକି । ଫାଟରୁ ଟିକିଏ ଭାଙ୍ଗି ଯାଇଛି । ତହିଁରେ ଜଳପୂର୍ଣ୍ଣ ରହିଛି । ସେ ଦିନକୁ ମିଶାଇ ମଣିଆଁର ତିନିଦିନ ହେଲା ଆହାର ହୋଇ ନାହିଁ । ଜଳ ମଧ୍ୟ ଦିନକ ଆଗରୁ ଶେଷ ହୋଇ ଯାଇଛି । ତା ପାଟିରେ ପାଣି ନାହିଁ । ଅଠା ଅଠା ହୋଇ ଯାଉଛି । ସେ ବୃଦ୍ଧଙ୍କୁ କହିଲା, ମୋତେ ଭାରି ଶୋଷ ହେଉଛି, ଟିକିଏ ପାଣି । ଭାବିଥିଲା, ବୃଦ୍ଧ ବୋଧହୁଏ ତାକୁ ଖାଇବାକୁ କହିବେ । କିନ୍ତୁ ବୃଦ୍ଧ ଜାଣନ୍ତି ନାହିଁ ଯେ ମଣିଆଁ ତିନିଦିନ ହେଲା ଉପାସ ଅଛି ।

ସେ କହିଲେ, ଠେକିରେ ଜଳ ଅଛି । ଯାଅ ପିଅ ।

ପୁନର୍ବାର ଆରମ୍ଭ କଲେ, ସେହି ଦିନଠୁ ପ୍ରହରୀ ପ୍ରତ୍ୟହ ମୋତେ ଖାଦ୍ୟ ଆଣିଦିଏ ନାହିଁ । ମନେ ପଡ଼ିଲେ, ଚାରିଦିନେ ଛ'ଦିନେ ଥରେ ଆଣେ । ଏଥର ସେ ଏକାକୀ ଆସେ ନାହିଁ । ତା ସଙ୍ଗରେ ଦୁଇ ତିନିଜଣ ଆସିଥାନ୍ତି । ସେ ଯାହା ଆଣି ଦିଅନ୍ତି, ତାହା ଅତି ଅଳ୍ପ । ମାତ୍ର ଦୈନିକ ପରିମାଣରୁ ଟିକିଏ ଅଧିକ । ଖାଦ୍ୟ ଅଭାବରୁ ଆଜି ମୋର ଏ ଦୁର୍ଦ୍ଦଶା । ପ୍ରକୃତରେ ମୁଁ ବୃଦ୍ଧ ନୁହେ । ମୋର ବୟସ ଯଦିଓ ମୁଁ ଠିକ୍ କରି କହିପାରୁ ନାହିଁ, ତଥାପି ନିଶ୍ଚୟ ପଚାଶରୁ କମ୍ ।

ବୃଦ୍ଧ ଏତିକି କହି ଧଇଁସଇଁ ହୋଇଗଲେ । ଟିକିଏ ଦମ୍ ନେଇ ପୁନର୍ବାର କହିଲେ, ଶେଷରେ ବାବା, ମୋର ଏ ଶୋଚନୀୟ ଅବସ୍ଥା ହେଲା । ମୁଁ ପ୍ରହରୀର ଗୋଡ଼ତଳେ ପଡ଼ି କାନ୍ଦି କାନ୍ଦି କେତେ ଯେ ପ୍ରାର୍ଥନା କରିଛି, ଅଧିକ ଖାଦ୍ୟଦେବା ପାଇଁ କହିପାରୁ ନାହିଁ । ସେ ମୋ କଥାରେ କାନ ନ ଦେଇ ହସିଦେଇ ଚାଲିଯାଏ । କିଛିଦିନ ପରେ କାନ୍ଥ ଫୁଟାଇ ପଳାୟନ କରିବାର ଅଭିଳାଷ ମନରେ ଜାଗ୍ରତ

ହେଲା । ଉପାୟ ଖୋଜି ଖୋଜି ଠିକ୍ କଲି କାନ୍ଥର ଏହିପାଖେ ଫୁଟାଇବି । କାରଣ ସେପାଖ ଫୁଟାଇଲେ ଲାଭ ନାହିଁ, ସମୁଦ୍ର । ସେହି ଦିନଠାରୁ ମୁଁ ମୋର କାର୍ଯ୍ୟ ଆରମ୍ଭ କଲି । କୃତକାର୍ଯ୍ୟ ହୋଇଛି । ମାତ୍ର ଲାଭ ନାହିଁ । ଓଃ—

ମଣିଆଁ ସତୃଷ୍ଣ ନୟନରେ ଖପରା ଆଡ଼କୁ ଅନାଇ କହିଲା, ଆପଣଙ୍କର ଭାରି ଦୁର୍ବଳ ଅବସ୍ଥା । ଏ ଅବସ୍ଥାରେ ଅଧିକ କଥା କହିଲେ, କ୍ଲାନ୍ତ ହୋଇ ପଡ଼ୁଛନ୍ତି । କିଛି ଖାଇଲେଣି ?

ବୃଦ୍ଧ ଗଳା ଖଙ୍କାରି କହିଲେ, ମୁଁ ଯେ ତମ ସଙ୍ଗେ ଆନନ୍ଦରେ ଦୁଇ ଗୋଟି ପଦ ଦୁଃଖସୁଖ ହୋଇ ପାରୁଛି, ସେତିକରେ ମୋର ଆନନ୍ଦ । ଏତେଦିନ ହେଲା ପାଟି ବନ୍ଦକରି ବସିଥିଲି । କଥା କହିବାକୁ ଭଲ ଲାଗୁଛି ।

ଭୋଜନ ଶେଷ ହେଲଣି ?

ନାଇଁ, ଇଚ୍ଛା ନାହିଁ; ମୋର ଏପରି ଦୁର୍ବଳାବସ୍ଥା ଦେଖି ଏଥର ପ୍ରହରୀ ପ୍ରତ୍ୟହ ପ୍ରଚୁର ଭାତ ଆଣିଦିଏ । ଇଚ୍ଛା ହେଲେ କେଉଁଦିନ ଦି'ଟା ଖାଏ ନୋହିଲେ ନାହିଁ । ପ୍ରହରୀକୁ ବାରଣ କରେ ନାହିଁ । ଭାତଗୁଡ଼ିକ ତଳେ ଶୁଖାଇ ଗୋଟିଏ କଣରେ ଗଦାକରି ରଖିଥାଏ । କାଳେ କେତେବେଳେ ଦରକାରରେ ଆସିବ । ମୋର ନ ଆସିପାରେ; ଅନ୍ୟ କେହି ବନ୍ଦୀ ମୋର ମୃତ୍ୟୁପରେ ଏଠାରେ ରହିଲେ, ତା'ର ଉପକାରରେ ଆସିପାରେ ? ମୋର ଆଉ କ୍ଷୁଧା ନାହିଁ । ସମୟ ସମୟରେ ଖାଲିପାଣି ମଧ୍ୟ ପିଇ ମୋ କାର୍ଯ୍ୟରେ ଲାଗିଯାଏ । ହଁ, ବାବା, ତମକୁ ଶୋଷ କରୁଥିଲା; ପାଣି ପିଇଲ ନାହିଁ ? ବୃଦ୍ଧ ଗଳା ଖଙ୍କାରି କହିଲେ, ତମର ଆଜି ଭୋଜନ ହୋଇଛି ତ ?

ମଣିଆଁର ଇଚ୍ଛା ହେଲା, କହିବ ହଁ ! ନାହିଁ କଲେ ବୃଦ୍ଧ ତାକୁ ଖାଇବାକୁ କହିବେ । ଯଦିଚ ପ୍ରଥମରୁ ତାର ଇଚ୍ଛା ଥିଲା, କପରି ବୃଦ୍ଧ ତାକୁ ଖାଇବାକୁ କହନ୍ତେ କି ସେ ଦ୍ୱିରୁକ୍ତି ନ କରି ବସିଯାନ୍ତା । ସେ ହଁ କରିବାକୁ ମନସ୍ଥ କରିଥିଲା । ପୁଣି ଭାବିଲା, କାଳେ ହଁ କହିଲେ, ବୃଦ୍ଧ ନୀରବ ରହିବେ, ଏଣେ ଯେ ଜଠରାଗ୍ନି ଜଳୁଛି । ସମ୍ମୁଖରେ ଖାଦ୍ୟ ପଦାର୍ଥ ଦେଖି ସେହି ଅଗ୍ନିଶିଖା ବେଲ୍ତୁଁବେଲ ବାଢ଼ି ଉଠୁଛି । ସତେକି କ୍ଷଣକ ମଧ୍ୟରେ ସମସ୍ତ ଶରୀର ଭସ୍ମ କରି ପକାଇବ ।

ବୃଦ୍ଧଙ୍କର ପ୍ରଶ୍ନରେ ମଣିଆଁ ଉତ୍ତର ଦେଲା, ଆଜିକି ତିନିଦିନ ହେଲା ମୋର ଆହାର ହୋଇ ନାହିଁ ।

ଏଁ ତିନିଦିନ ହେଲା । କାହିଁକି ? ପ୍ରହରୀ ଭାତ ଆଣିଦେଇ ନାହିଁ । ବୃଦ୍ଧ ଚମକି ପଡ଼ି କହିଲେ । ଭ୍ରୂଲତା ଉପରକୁ ଟେକି ଆଖିପତା ନଚାଇ ବ୍ୟସ୍ତ ହୋଇ ପୁଣି କହିଲେ, ତେବେ ତୁମେ ମଧ୍ୟ ପ୍ରହରୀକୁ ଆକ୍ରମଣ କରିବାକୁ ବସିଥିଲ ?

ଟିକିଏ ଲଜ୍ଜିତ ହୋଇ ମଣିଅାଁ କହିଲା, ଆପଣ ଠିକ୍ ଅନୁମାନ କରିଛନ୍ତି । ମୋର ଆଉ ଏ କାରାଗାର କଷ୍ଟ ସହ୍ୟ ହେଲା ନାହିଁ । ମୁଁ ଭାବିଲି, ମୃତ୍ୟୁ କିମ୍ବା ମୁକ୍ତି । ଏହି ଦୁଇଟି ମଧ୍ୟରୁ କୌଣସି ଗୋଟିକୁ ବରଣ କରିବାକୁ ପଡ଼ିବ ।

ତେଣୁ ମୃତ୍ୟୁ ବରଣ କରିବାକୁ ସେହି ପଥରେ ପଦ ଦେଇଛ ନା ।

ବୃଦ୍ଧ ଟିକିଏ ହସି କହିଲେ, ଖାଦ୍ୟ ଅଭାବରୁ ମୁଁ ଯେପରି ହୋଇଛି, ତମୁକୁ ଦିନେ ସେହିପରି ହେବାକୁ ପଡ଼ିଥାନ୍ତା । ଆଉ ଭୟ ନାହିଁ । ତୁମ ନିମନ୍ତେ ଯଥେଷ୍ଟ ଖାଦ୍ୟ ସଞ୍ଚୟ କରି ରଖିଛି । ଆଶା କରେ ଏହି ଖାଦ୍ୟ ଶେଷ ହେବା ପୂର୍ବରୁ ନିଶ୍ଚୟ ତୁମେ ମୁକ୍ତ ହୋଇ ପାରିବ ।

ମୁକ୍ତ ହୋଇ ପାରିବା ?

ପାରିବା କାହିଁକି କହୁଛ; ପାରିବ କହ । ନା, ନା, ଠିକ୍ କହୁଛ; ଉଭୟେ ମୁକ୍ତ ହେବା । ମୁଁ ମୁକ୍ତ ହୋଇ ସଂସାରରୁ ଚାଲିଯିବି; ତୁମେ ମୁକ୍ତ ହୋଇ ଏହି ଯନ୍ତ୍ରଣାପ୍ରଦ କୋଠରୀରୁ ଚାଲିଯିବ । ମୁକ୍ତ ଆଲୋକ ଦେଖିବ । ମୁକ୍ତ ସମୀରଣ ଉପଭୋଗ କରିବ । ଗୋଟିଏ ବାକ୍ୟରେ କହିବାକୁ ହେଲେ, ମୁକ୍ତ ପ୍ରକୃତିର ଦୃଶ୍ୟରେ ଆତ୍ମହରା ହେବ । ଯୁବକ, ହତାଶ ହୁଅ ନାହିଁ । ବୁଦ୍ଧଙ୍କ କୃପାରୁ ମୁକ୍ତିପଥ ଆବିଷ୍କାର କରିବାକୁ କ୍ଷମ ହେବ । ଧୈର୍ଯ୍ୟ ଧର । ଧୈର୍ଯ୍ୟଚ୍ୟୁତ ହୋଇ ତରତର କରି କୌଣସି କାର୍ଯ୍ୟ କଲେ, ପତନ ହେବ ସନ୍ଦେହ ନାହିଁ । ଆଉଥରେ କହୁଛି ତୁମେ ଯୁବକ । ଧୈର୍ଯ୍ୟଧରି କାର୍ଯ୍ୟ କରିବାକୁ ତତ୍ପର ହୁଅ । ମନୁଷ୍ୟ ଜୀବନରେ କଷ୍ଟ ନ ପାଇଲେ, କିଛି ଶିଖିପାରେ ନାହିଁ । ସଂସାରରେ ବଡ଼ ହେବାକୁ ହେଲେ, ମନୁଷ୍ୟ ଜୀବନରେ କାରାବାସ ଅବଶ୍ୟକ । ସମସ୍ତେ ଯେ କୃତକାର୍ଯ୍ୟ ହୋଇ ବଡ଼ ହୋଇ ପାରିବେ, ତାହା ନୁହେ । ସେମାନଙ୍କ ମଧ୍ୟରୁ କେହି କେହି ବାହାରି ପଡ଼ିବେ । ମୋର ମନେ ହେଉଛି, ତୁମେ ଜଣେ ପ୍ରଧାନ ଲୋକ ହୋଇ ଉଠିବ । ଆତ୍ମ-ଶକ୍ତିକୁ କଦାପି ହେୟ ମନେ କରିବ ନାହିଁ । ଉଃ, ଧର ଧର, ମୋର ମୁଣ୍ଡ ଧର ! ଉଃ, ବଡ଼ କଷ୍ଟ ! ମୁଣ୍ଡ ବୁଲେଇ ପଡୁଛି ।

ଏତିକିରେ ବୃଦ୍ଧଙ୍କର ଚକ୍ଷୁ ମୁଦ୍ରିତ ହେଲା । ସେ ଟଳି ଟଳି ପଡ଼ିବାକୁ ବସିଲେ । ମଣିଅାଁ ବୃଦ୍ଧଙ୍କୁ କୋଳକୁ ଆଉଜାଇ ଆଣିଲା । ହାତ ବଢ଼ାଇ ଠେକିରୁ ଟିକେ ଥଣ୍ଡାପାଣି ଆଣି ମୁଣ୍ଡରେ ମାରିଲା ।

ବୃଦ୍ଧଙ୍କ ମୁଦ୍ରିତ ଚକ୍ଷୁରୁ ଅଶ୍ରୁଧାର ଗଡ଼ି ପଡ଼ିଲା । ମଣିଅାର ଏ ଦୃଶ୍ୟ ଆଉ ସହ୍ୟ ହେଲା ନାହିଁ । ପଡ଼ିଥିବା ଅଖା କାନିରେ ଲୋତକ ପୋଛି ପକାଇଲା । ହଠାତ୍ ସନ୍ଦେହ ହେଲା । ଏହା କ'ଣ ତେବେ ଶେଷ ?

କିଛି ସମୟ ପରେ ବୃଦ୍ଧ ମୁଣ୍ଡ ଟେକିଲେ । ଗୋଟିଏ ଦୀର୍ଘଶ୍ବାସ ହୃଦୟ ମଧ୍ୟରୁ ଉଠିଲା ପରି ଅଳସ ଭଙ୍ଗି ସିଧା ହୋଇ ବସିଲେ । ପୁନର୍ବାର ଆରମ୍ଭ

କଲେ, ଏହି ବାବା, ଦିନେ ମୋର ଜୀବନ ନେବ । ରକ୍ତ ଅଭାବରୁ ହୃଦୟ ବଡ଼ ଦୁର୍ବଳ ହୋଇ ପଡ଼ିଛି । ଯୋର୍ କରି ଟିକିଏ କହିଲେ କିମ୍ବା କିଛି ସମୟ ପରିଶ୍ରମ କଲେ, ମୁଁ ନିଜେ ମୋହି ହୋଇ ପଡ଼େ । ଆଜି ଯଦି ତେମେ ମୋ ପାଖରେ ନ ଥାନ୍ତ, ଏହିପରି ଅର୍ଦ୍ଧମୃତ ଅବସ୍ଥାରେ ଅନେକ ସମୟ ପଡ଼ି ରହିଥାନ୍ତି । ସ୍ୱତଃ ମୂର୍ଚ୍ଛା ଭାଙ୍ଗି ଯାଇଥିଲେ ଉଠିଥାନ୍ତି । ତୁମର ପରିଚର୍ଯ୍ୟାରୁ ଏତେ ଶୀଘ୍ର ଉଠି ପାରିଛି । କିଏ ତୁମେ ବାବା, ମୋର ଏତେ ସେବା କରୁଛ ? ମୋର ଅବସ୍ଥା ଦେଖି ତମପରି ଅନ୍ୟ କେହି ଯୁବକ ହୋଇଥିଲେ, ପାଖକୁ ଆସିବା ଦୂରେ ଥାଉ ଘୃଣାକରି କଥାପଦେ ମଧ୍ୟ କହନ୍ତେ ନାହିଁ । ତୁମର ମନରେ ଟିକିଏ ହୋଇତ ବିକାର ଦେଖୁ ନାହିଁ ? ବୋଧହୁଏ ପୂର୍ବଜନ୍ମରେ ଆମେ ଦୁଇଜଣ ଦୁଇଭାଇ ଥିଲେ ।

ବାଧା ଦେଇ ମଣିଅ କହିଲା, ଆଉ ବେଶୀ ଗପ କରନ୍ତୁ ନାହିଁ ।

ନା, ଏତେ ଶୀଘ୍ର ଆଉ ମୂର୍ଚ୍ଛା ହେବି ନାହିଁ । ହଁ, ତମର ତିନଦିନ ହେଲା ଆହାର ହୋଇନାହିଁ ପରା ! ଆହା, ମୁଁ କେଡ଼େ ନିଷ୍ଠୁର । ଖାଇବାକୁ ନ କହି ବୃଥା ଗୁଡ଼ାଏ ଗପକରି କ୍ଷୁଧା ବଢ଼ାଉଛି । ଓଃ ! ଆଉ ସେ ପୂର୍ବଦିନ କାହିଁ ? ଏହି ଦୁର୍ବଳ ହସ୍ତରେ ନିତ୍ୟ ନିତ୍ୟ କେତେ ଦୁଃଖୀ ରଙ୍କିଙ୍କୁ ଆହାର ଦେଇଛି । ନା, ଆଉ ନୁହେ । ଗତସ୍ୟ ଶୋଚନା ନାସ୍ତି । ଯାଅ ବାବା, ଗଣ୍ଡିଏ ଭାତଖାଇ କ୍ଷୁଧା ନିବାରଣ କର ।

ଆପଣ ଖାଇବେ ତ ?

ନା ନା, ନା । ମୁଁ ଖାଇବି ନାହିଁ । ମୋର କ୍ଷୁଧା ନାହିଁ ।

ତେବେ ମୁଁ ଖାଇବି ନାହିଁ ।

ଆଚ୍ଛା ହେଉ; ତେବେ ଖପରି ଆଣ । ଆହା, ଖପରିରେ ଖାଇବାକୁ ପୁଣି ଯୋଗ ଥିଲା । କଳିଙ୍ଗର ପ୍ରଧାନ ବଣିକ ପୁତ୍ର ମୁଁ; ମୋର ଭାଗ୍ୟରେ ପୁଣି ଏଇଆ ଥିଲା ? ଅଲବ୍ଧ, ତମେ ଉତ୍କଳର ସିଂହାସନରେ ବସିଛ କାହିଁକି ? କେବଳ ରାଜଭୋଗ କରିବାକୁ ? ତମର ନୌସୈନ୍ୟଙ୍କୁ ବୃଥା ବେତନ ଦେଇ ଭାରତ ମହାସାଗରରେ ଜଗାଇ ରଖି ନିଶ୍ଚିନ୍ତ ହେଲ । କୌଣସି ଖବର ନେଲ ନାହିଁ ତ ! ତେମେ କଣ ଜାଣ ନାହିଁ, ଏକାମ୍ରରେ ପୂର୍ବପୁରୁଷଙ୍କର ଅର୍ଦ୍ଧନିର୍ମିତ ଶିବମନ୍ଦିର ସମ୍ପୂର୍ଣ୍ଣ କରିବା ଅପେକ୍ଷା ପ୍ରଜାର ଜୀବନ ରକ୍ଷା କେଡ଼େ ଶ୍ଳାଘ୍ୟ ? ତେବେ ନିଶ୍ଚିନ୍ତ ରହିଲ କାହିଁକି ?

ଏ ମଧ୍ୟରେ ଅନେକ ଦିନ ଗତ ହୋଇ ଗଲାଣି । ବୃଦ୍ଧ ଏବଂ ଯୁବକଙ୍କର ଘନିଷ୍ଠତା ଦିନକୁଦିନ ଉତ୍ତରୋତ୍ତର ବଢ଼ୁଛି । କେବଳ ପ୍ରହରୀର ଆସିବା ସମୟ ଛଡ଼ା ପ୍ରାୟ ସର୍ବଦା ଉଭୟ ଏକତ୍ର ଥାନ୍ତି । ଏ ମଧ୍ୟରେ ଉଭୟଙ୍କ ମଧ୍ୟରେ ଅନେକ ପ୍ରକାର କଥୋପକଥନ ଚାଲେ । ମଣିଅାଁ ବୃଦ୍ଧଙ୍କୁ ପିତାପରି ଜ୍ଞାନକରି ସେବା କରେ । ଉଭୟଙ୍କ ମଧ୍ୟରେ ସ୍ନେହର ସ୍ରୋତ ପ୍ରବାହିତ ।

ମଣିଅାଁ ବୃଦ୍ଧଙ୍କୁ ନିଜ ଜୀବନର କେତୋଟି ଘଟଣା କହେ । କିନ୍ତୁ ବୃଦ୍ଧ କେବେ ହେଲେ ସ୍ୱଜୀବନୀ ମଣିଅାଁଙ୍କୁ ଧାରାବାହିକ ରୂପେ କହନ୍ତି ନାହିଁ ।

ଦିନେ ମଣିଅାଁ ପଚାରିଲା, ଆପଣଙ୍କର ଜୀବନୀ ସମ୍ବନ୍ଧେ କିଛି କହିଲେ ନାହିଁ । ଏହାର କି କୌଣସି ବିଶେଷ କାରଣ ଅଛି ?

ନା ବାବା, କୌଣସି ବିଶେଷ କାରଣ ନାହିଁ । ମୋ ଜୀବନୀ କହିବାକୁ ଗଲେ ଅନେକ ବିଷୟ କହିବାକୁ ପଡ଼ିବ । ଏତେଗୁଡ଼ାଏ କଥା କହିବାକୁ ମୋର କ୍ଷମତା ନାହିଁ । ଅତୀତ କଥା କହିବାକୁ ଗଲେ ମନରେ କଷ୍ଟ ହୁଏ । ସେ କଷ୍ଟରୁ ରକ୍ଷାପାଇବାକୁ ମୁଁ ଅତୀତକୁ ଜାଣି ଜାଣି ଭୁଲି ଯାଇଛି ।

ଆପଣଙ୍କର ଘର କେଉଁଠି ? କି କାରଣରୁ ବନ୍ଦୀ ହେଲେ ?

ବାବା, ଏହି ଦୁଇଟି ପ୍ରଶ୍ନର ଉତ୍ତର ଦେବାକୁ ହେଲେ ମୋର ସମସ୍ତ ଜୀବନର ଚିତ୍ର ତମ ଆଖିଆଗକୁ ଆଣିବାକୁ ହେବ । ଯଦି ଶୁଣିବାକୁ ଆଗ୍ରହ, ଯେତିକି କହିବି ସେତିକିରେ ସନ୍ତୁଷ୍ଟ ହେବ ତ ?

ଯଦି କହିବାଦ୍ୱାରା ଆପଣଙ୍କ ମନରେ କଷ୍ଟ ହେଉଥାଏ, କିମ୍ବା ଆପଣ କ୍ଲାନ୍ତ ହୋଇ ପଡ଼ନ୍ତି, ତେବେ ଥାଉ ।

ହଁ, କହିବାକୁ ଗଲେ କଷ୍ଟ ହେବ । ତେଣୁ ବିଶେଷ ବର୍ଣ୍ଣନା ନ କରି ତମର ପ୍ରଶ୍ନର ଉତ୍ତର ଦିଏ । କଣ ପଚାରୁଥିଲ ?

ଆପଣଙ୍କର ନିବାସ ?

ଚିଲିକା । ଚିଲିକା କୂଳର ଜଣେ ବିଖ୍ୟାତ ସାଧବଙ୍କର ମଧ୍ୟମ ପୁତ୍ର ମୁଁ । ଯେତେବେଳେ ମୁଁ ଯୁବକ, ସସ୍ତ୍ରୀକ ବାଣିଜ୍ୟ କରିବାକୁ ଆସିଥିଲି । ସେହି ଦିନଠାରୁ ଆଉ ଘରକୁ ଫେରିବାର ସୁଯୋଗ ପାଇ ନାହିଁ । ସ୍ତ୍ରୀ ଛୁଆଛାଡ଼ି ଗଲେ । ସେ ଜୀବିତା କି ମୃତା କିଅଛି ବା ବୁଝି ପାରିବି ? ଅଛି ମୋର ଏକମାତ୍ର ପୁତ୍ର । ତାକୁ ବୃଦ୍ଧ କାହିଁ ରଖିଛନ୍ତି ମୁଁ ତା କହି ପାରିବି ନାହିଁ । କି କାରଣରୁ ବନ୍ଦୀ

ହୋଇଛି ତାହା ମୁଁ ନିଜେ ଜାଣେ ନାହିଁ । ଏହି ତ ମୋର ଜୀବନୀ । ମୋର ଜୀବନୀ ଶୁଣିଥିଲେ ତମର କିଛି ଲାଭ ହୋଇ ନ ଥାନ୍ତା । ବର୍ତ୍ତମାନ ଯାହା କହୁଛି ମନ ଦେଇ ଶୁଣ । ଜୀବନ ସାରା ପରିଶ୍ରମ କରି ଯାହା ପାଇବାର ଆଶା କରିଥିଲି ପାଇ ପାରି ନାହିଁ । ଯଦି ପାଇଥାନ୍ତି, ଆଜି ମୁଁ ଅସାମାନ୍ୟ ଲୋକ ହୋଇଥାନ୍ତି । ଦେଶର ପ୍ରଧାନ ପ୍ରଧାନ ଧନୀଙ୍କ ସଙ୍ଗେ ସମାନ ହୋଇଥାନ୍ତି । କିନ୍ତୁ, ତାହା ମୁଁ ପାଇ ପାରି ନାହିଁ । ଆଶା କରିଥିଲି କଳିଙ୍ଗରୁ ବୋଇତ ନେଇ ଆଉ ଥରେ ବଣିଜ କରିବାକୁ ଆସିବି । କିନ୍ତୁ ଆଶା-କଢ଼ି ପ୍ରସ୍ଫୁଟିତ ନ ହେଉଣୁ ମଉଳି ପଡ଼ିଲା । ବାଟରେ ଦସ୍ୟୁ ଆକ୍ରମଣ କଲେ । ବନ୍ଦୀ ହେଲି ।

ଓଃ—ଦିଅ ବାବା, ଟିକିଏ ଜଳ ଦିଅ, ତଣ୍ଟି ଅଠା ଅଠା ହୋଇଯାଉଛି । ଓଃ, ଭାରି କଷ୍ଟ । ହା ବୁଦ୍ଧ, କେଉଁ ଅପରାଧରୁ ମୋତେ ଏପରି ଯାଚୁଛ । ମୁକ୍ତକର, ଶୀଘ୍ର ମୁକ୍ତ କର । ଆଉ ସହ୍ୟ ହେଉ ନାହିଁ ।

ବୃଦ୍ଧ ଯନ୍ତ୍ରଣାରେ ମୁଖ ବିକୃତ କଲେ ।

ମଣିଆଁ ଠେକିରୁ ଜଳ ଆଣି ବୃଦ୍ଧଙ୍କୁ ପାନ କରାଇଲା । କହିଲା, ଆପଣଙ୍କୁ କଷ୍ଟ ହେଉଛି, ଟିକିଏ ଶୋଇ ପଡ଼ନ୍ତୁ ।

ପାଣି ପିଇ ବୃଦ୍ଧ ଆରାମ ବୋଧ କଲେ । ସେ ପୁନର୍ବାର ଆରମ୍ଭ କଲେ, ମୁଁ ଯାହା କହୁଛି ସବୁ ମନେ ରଖ । ଯଦି କେବେ ମୁକ୍ତ ହୋଇ ଏଠାରୁ ଚାଲିଯାଇ ପାରିବ ମୋର କଥା ମାନି ଚଳିଲେ ତୁମେ ଦେଶର ଜଣେ ପ୍ରଧାନ ଲୋକ ହୋଇ ପାରିବ । ଦିନେ ମୋର ପିତା ମାତା, ଭାଇ ଭଉଣୀ ଓ ସ୍ତ୍ରୀ ପୁତ୍ର ଥିଲେ । ଆଜି ସେମାନେ କେହି ନାହାନ୍ତି, ଏକା ତୁମେ ମୋର ପାଖରେ ଅଛ । ତୁମେ ମୋର ସବୁ । ତେଣୁ ଜୀବନର ସାଧନା ଦ୍ୱାରା ଯାହା ସ୍ଥିର କରି ପାରିଛି ତାହାର ମୂଲ୍ୟରେ ତୁମେ ଧନୀ ହୋଇ ପାରିବ, ଶୁଣ ।

ବୃଦ୍ଧ ବାଁ ହାତ ଗାଲରେ ରଖି ଉପରକୁ ଅନାଇ ଅନେକ ସମୟ କଣ ଚିନ୍ତା କଲେ । ଛେପ ଢୋକି କହିଲେ, ବାବା, ମୋର ଆଉ ବେଶୀଦିନ ନୁହେଁ । ସମୁଦ୍ର ମାଡ଼ି ଆସିଆଣି । ଏଥର ଦ୍ୱାର ଅଧିକାର କରିବ । ପୃଥିବୀ ପ୍ରଳୟ ହେବ ।

ମଣିଆଁ ବିନୀତ ଭାବରେ କହିଲା, ଆପଣ କଣ କହୁଛନ୍ତି ମୁଁ ବୁଝି ପାରୁନାହିଁ ।

ବୃଦ୍ଧ ସ୍ମିତ ହାସ୍ୟ କରି କହିଲେ, ବୁଝିପାରୁନା ? ଏଥିରେ ବୁଝିବାର କ'ଣ ରହିଲା ? ଶୁଣ, କଣ୍ଠ କପର ଘଡ଼ ଘଡ଼ ହେଉଛି । କଫ ଗୁରିଆଡ଼ୁ ମାଡ଼ି ଆସିଲାଣି । କେତେବେଳେ କଣ୍ଠ ରୁଦ୍ଧ କରିଦେବ କିଏ ଜାଣେ ? ଶ୍ୱାସ ରୁଦ୍ଧ

ହେଲେ ସବୁ ଶେଷ । ମୃତ୍ୟୁ ମୋତେ ଅଖିଅଗରେ ଦେଖା ଯାଉଛି । ହଁ, କ'ଣ କହିବାକୁ ବସିଥିଲି ଭୁଲିଗଲି ।

କ'ଣ କେତେ ପରିଶ୍ରମ କରି କୃତକାର୍ଯ୍ୟ ହୋଇଛନ୍ତି ବୋଲି କହୁଥିଲେ, ଆଉ ଅଜି କହିବା ଆବଶ୍ୟକ ନାହିଁ । ଏ କାରାଗାରରୁ ଯେ ଅମେ କେବେ ହେଲେ ମୁକ୍ତ ହୋଇପିବା ମୋର କାହିଁକି ଏଥିରେ ସନ୍ଦେହ ହେଉଛି । ମୁକ୍ତିର ଉପାୟ ଦେଖିପାରୁ ନାହିଁ ।

ବୃଦ୍ଧ ଟିକିଏ ଉତ୍ତେଜିତ ଭାବରେ କହିଲେ, ଯୁବକ ହୋଇ ଭବିଷ୍ୟତ୍ ଅଶା ଛାଡୁଛ ? ଜଣା ଯାଉଛି ତମର ମାନସିକ ଶକ୍ତି ଦୁର୍ବଳ । ସତ କହୁଛି ମୁଁ ଏ ମୁମୂର୍ଷୁ ଅବସ୍ଥାରେ ମୁକ୍ତିର ଅଶା ଛାଡ଼ି ନାହିଁ । ଏଠା ମନେ ରଖିଥାଅ, ଯେତେ ଦିନ ଯାଏ ମୁଁ ଜୀବିତ ରହିଛି, ତମର ମୁକ୍ତି ନିମନ୍ତେ କିଛି ନା କିଛି ଉପାୟ ଚିନ୍ତା କରୁଛି । ଯାହା ମୁଁ ଚିନ୍ତା କରେ, ଶେଷରେ ତହିଁରେ କୃତକାର୍ଯ୍ୟ ହୁଏ । ତମ ପରି ମୋର ହୃଦୟ ଦୁର୍ବଳ ନଥିଲା । ଯଦି ଦୁର୍ବଳ ହୋଇଥାନ୍ତା ନିଶ୍ଚୟ କରି କହୁଛି, ଧୈର୍ଯ୍ୟଧରି ବହୁଦିନ ଚିନ୍ତା କରି ଯାହା ମୁଁ ସ୍ଥିର କରିପାରିଛି ତାହା କଦାପି ପାରି ନ ଥାନ୍ତି ।

ମଣିଅଁ ବୃଦ୍ଧଙ୍କର ଭ୍ରମଶୋଧନରେ ଲଜ୍ଜିତ ହୋଇ ପଚାରିଲା, ଅପଣ କ'ଣ ସ୍ଥିର କରି ପାରିଛନ୍ତି କହନ୍ତୁ ।

କହୁଛି । ଧୀରେ ଧୀରେ କହୁଛି । ତମକୁ ମୋର ଉପଦେଶ, ଜୀବନରେ କେବେ ହେଲେ ହତାଶ ହେବ ନାହିଁ । ଧୈର୍ଯ୍ୟ ଧରି କାର୍ଯ୍ୟ କରିବ । ଯାହା କରିବ ପ୍ରଥମରୁ ଟିକିଏ ଭଲ ଭାବରେ ଚିନ୍ତାକରି, ପରେ କାର୍ଯ୍ୟକ୍ଷେତ୍ରରେ ଅଗ୍ରସର ହେବ । କାର୍ଯ୍ୟ କରୁ କରୁ ଯେତେ ବିପଦ ଅସୁ ସାହସ ଧରି ସହ୍ୟ କରିବାକୁ ପଡ଼ିବ । ଯଦି କୌଣସି କ୍ଷେତ୍ରରେ ବିଫଳ ହୁଅ, ହତାଶ ହେବନାହିଁ । ବୃଦ୍ଧର ଏହି କେତୋଟି ଉପଦେଶ ମନେ ରଖିଲ ତ ବାବା ? ପାଳନ କରିବାକୁ କୁଣ୍ଠିତ ହେବ ନାହିଁ ତ ? ପ୍ରତିଜ୍ଞା କର ।

ପ୍ରତିଜ୍ଞା କରୁଛି । ଅପଣଙ୍କର ଉପଦେଶ ଅକ୍ଷରେ ଅକ୍ଷରେ ପାଳନ କରିବି ?

ଅଛି ବାବା, ତୁମେ କେଉଁ ଧର୍ମାବଲମ୍ବୀ ? ଦେଶରେ ଲୋକେ ଧର୍ମ ନିମନ୍ତେ ପାଗଳ ହୋଇ ଯାଉଛନ୍ତି । ଗୋଟିଏ ଧର୍ମାବଲମ୍ବୀ ଅନ୍ୟ ଧର୍ମାବଲମ୍ବୀ ସଙ୍ଗେ କଳହ କରୁଛି । ଲୋକଙ୍କୁ ଏପରି କଳହରୁ ରକ୍ଷା କରିବାକୁ ହେଲେ ବୌଦ୍ଧଧର୍ମକୁ ଜଗତର ଏକମାତ୍ର ଧର୍ମ କରିବାକୁ ହେବ । ଏତେ ଗୁଡ଼ିଏ କାର୍ଯ୍ୟ କରି ପାରିବ ତ ?

ନା ଏପରି କାର୍ଯ୍ୟ କରି ପାରିବି ନାହିଁ । ମୁଁ କୌଣସି ଧର୍ମାବଲମ୍ବୀ ନୁହେଁ । ମୁଁ କେବଳ ଭଗବାନଙ୍କଠାରେ ବିଶ୍ୱାସ କରେ । ମୋର ମତ ଯେଉଁ ଲୋକର

ଯେଉଁ ଧର୍ମ ଗ୍ରହଣ କରିବାର ଇଚ୍ଛା ସେ ସେହି ଧର୍ମ ଗ୍ରହଣ କରୁ । କଲେ ବରଂ ଭଲ । ମୋର ପ୍ରତ୍ୟେକ ଧର୍ମ ଉପରେ ବିଶ୍ୱାସ, ଯେଉଁ ଧର୍ମ କାହେ ଭଗବାନ ଅଛନ୍ତି । କୌଣସି ଧର୍ମ ପ୍ରଚାର କରିବାକୁ ମୁଁ ପ୍ରତିଜ୍ଞା କରିପାରିବି ନାହିଁ ।

ତେବେ ତ ସେ ଧନରେ କୌଣସି ଅଧିକାର ତମର ରହିବ ନାହିଁ ?

ବରଂ ନ ରହୁ । ମୁଁ ସାମାନ୍ୟ ଧୀବରର ଜୀବନ ଯାପନ କରି ସୁଖରେ ଥିଲି । ଯଦି କେବେ ମୁକ୍ତ ହୁଏ ମୋର ପୂର୍ବବୃତ୍ତି ମୁଁ ବରଣ କରି ନେବି ।

ବାଲିଦ୍ୱୀପସ୍ଥ ଅନଙ୍ଗ ପର୍ବତ । ସେହି ଦ୍ୱୀପର ପଶ୍ଚିମ କୂଳରୁ ନୌକାରୋହଣ କରି ଗୋଟିଏ କ୍ଷୁଦ୍ର ନଦୀବକ୍ଷରେ ଅନଙ୍ଗ ପର୍ବତ ଆଡ଼େ ଯିବାକୁ ହେବ । ଅନେକ ଦୂର ଯାଇ ଦେଖିବ ବାମହାତ ଗୋଟିଏ ଛୋଟ ଶୃଙ୍ଗ ଉପରେ ଗୋଟିଏ ଛୋଟ ବୌଦ୍ଧମନ୍ଦିର ! ଆହୁରି କିଛିଦୂର ଅଗ୍ରସର ହେଲେ ଅନ୍ୟ ଗୋଟିଏ ପର୍ବତ ଶୃଙ୍ଗ ଉପରେ ଗୋଟିଏ ହିନ୍ଦୁ ମନ୍ଦିର । ଦୁଇ ମନ୍ଦିର ମୁଖାମୁଖି ହୋଇ ଦୁଇ ଭାଇପରି ପରସ୍ପରଙ୍କୁ ଅନାଇଁ ସୁଖ ଦୁଃଖ ହେଉଥିଲାପରି ଜଣାଯାଏ । ଦୁଇ ଶୃଙ୍ଗର ମଧ୍ୟବର୍ତ୍ତୀ ଉପତ୍ୟକାରେ ଅନେକ ଗୁଡ଼ିଏ ଗହ୍ୱର ଅଛି । ଗହ୍ୱରଗୁଡ଼ିକ ପର୍ବତ ଉପରେ ହାରପରି ଅର୍ଦ୍ଧବୃତ୍ତାକାରରେ ରହିଛି । ବିଶେଷ ବର୍ଣ୍ଣନାର ପ୍ରୟୋଜନ ନାହିଁ । ହିନ୍ଦୁ ମନ୍ଦିର ସମ୍ମୁଖରୁ ତିରଣଟି ଗହ୍ୱର ଛାଡ଼ିଦେଲେ ଆହୁରି ଗୋଟିଏ ଗହ୍ୱର ପଡ଼ିବ । ସେହି ଗହ୍ୱରରେ ଜଣେ ଚୀନଦେଶୀୟ ରାଜା ତାଙ୍କର ବିପୁଳ ସମ୍ପତ୍ତି, ଧନରତ୍ନ, ଲୁଚାଇ ରଖି ଯାଇଛନ୍ତି ନାନା ଉପାୟରେ ଜଗତରେ ଘୋଷଣା କରାଇଛନ୍ତି ଯେ, ଯେଉଁ ଲୋକ ସେହି ଧନର ଅଧିକାରୀ ହେବ, ସେ ଜଗତରେ ବୌଦ୍ଧଧର୍ମ ପ୍ରଚାର କରି ନିଜକୁ ଧନ୍ୟ କରିବ । ମୁଁ ଏତେଗୁଡ଼ିଏ ସମ୍ବାଦ ବହୁକଷ୍ଟରେ ସଂଗ୍ରହ କରିଛି ! ଯେଉଁ ତିରଣଟି ଗହ୍ୱରର କଥା କହିଲି, ତାହା କୌଣସି ଲୋକ ମୋତେ କହି ନାହିଁ । କିଏ ବା କାହିଁକି କହିବ ? ଯେ ଜାଣି ପାରିବ ସେ ମହାଧନୀ ହୋଇ ଉଠିବ ? ମୁଁ ଖଣ୍ଡେ ତ୍ରିକୋଣମିତିର ଅଙ୍କ ପାଇ ତାକୁ କଷି ଏହି ଗହ୍ୱର ସଂଖ୍ୟା ସ୍ଥିର କରିଛି । ଅଙ୍କଟି ଏଡ଼େ ଶକ୍ତ ଯେ ତାହାର ଫଳ ବାହାର କରିବାକୁ ମୋତେ ଜୀବନର ଅର୍ଦ୍ଧାଧିକ ସମୟ ଲାଗିଛି । ଓଃ, ମୋର ଶ୍ୱାସରୁଦ୍ଧ ହୋଇ ଆସୁଛି । ଧରି, ଧରି, ମୋତେ ଧର । ବଡ଼କଷ୍ଟ । କହୁ କହୁ ବୃଦ୍ଧ ଚକ୍ଷୁବନ୍ଦ କରି ତଳେ ପଡ଼ିଲେ । ମଣିଆଁ ବୃଦ୍ଧଙ୍କୁ କୋଳକୁ ଆଉଜାଇ ଧରି ମୁହଁରେ ଜଳ ସିଞ୍ଚିଲା ।

ବୃଦ୍ଧଙ୍କର ମୂର୍ଚ୍ଛାଭଙ୍ଗ ହେବା ପୂର୍ବରୁ କିଏ ଜଣେ ଆସି ପ୍ରକୋଷ୍ଠର ବାହାରପାଖୁ ଜଞ୍ଜିର ଝମ୍ ଝମ୍ କଲା । ପ୍ରହରୀର ଆଗମନ ବୁଝିପାରି ମଣିଆଁ ଧୀରେ ଧୀରେ ବୃଦ୍ଧଙ୍କୁ ତଳେ ଶୁଆଇ ଦେଲା । ଉପରେ ଖଣ୍ଡେ ଅଖା ଘୋଡ଼ାଇ ଅତିଶୀଘ୍ର ସ୍ୱପ୍ରକୋଷ୍ଠକୁ ପ୍ରତ୍ୟାବୃତ୍ତ ହେଲା ।

ବୃଦ୍ଧ ତାଙ୍କର ଦୁର୍ବଳ ହସ୍ତଦ୍ୱୟ ଯୋଡ଼ି ପ୍ରହରୀକୁ ପ୍ରଣାମ କଲେ । ଚକ୍ଷୁରୁ ଉଷ୍ଣ ଲୋତକ ବହିଯାଉଥାଏ । ସେ ମସ୍ତକ ନତ କରି ବିନୀତ ଭାବରେ କହିଲେ, ଆଉ ସନ୍ଦେହ କରନ୍ତୁ ନା ପ୍ରହରୀ । ମୁଁ ପଳାୟନ କରିବି କାରାଗାରରୁ, ଏ ଭୟ ତମର ବୃଥା । ବୋଧହୁଏ ଆଉ ଦିନେ ଦୁଇଦିନ ମଧ୍ୟରେ ମୋତେ ଏ ସଂସାର ଛାଡ଼ି ଯିବାକୁ ହେବ ।

ପ୍ରହରୀ ଗର୍ବିତ ଭାବରେ କହିଲା, ନା ନା । ତମର ଅଯଥା ଅନୁରୋଧ ମୁଁ ରକ୍ଷା କରିବାକୁ ପ୍ରସ୍ତୁତ ନୁହେଁ । ତୁମେ ଯେ ପଳାଇ ଯାଇ ନପାର ଏହାର ପ୍ରମାଣ ?

ଓ଼ଃ, ଆହୁରି ଅଧିକ ପ୍ରମାଣ ଚାହିଁ ? ସାକ୍ଷୀ ଦରକାର ? ଯଦି ତୁମେ ନିଜେ ବୁଝି ପାରୁନାହିଁ ଯେ ମୁଁ ପଳାଇ ପାରିବି ନାହିଁ, ଆଉ ମୁଁ ଅଧିକା କିଛି କହିବାକୁ ଚାହେଁନା । ମୋର ବର୍ତ୍ତମାନ ଶାରୀରିକ ଅବସ୍ଥା ଦେଖି କ'ଣ ଅନୁମାନ କରୁଛ ଶୁଣେ ଟିକେ ? ବୃଦ୍ଧ ମୁଣ୍ଡ ଟେକି ପ୍ରହରୀକୁ ଅନାଇଲେ ।

ପ୍ରହରୀର ଆପାଦ ମସ୍ତକ ନିରୀକ୍ଷଣ କରି କହିଲେ, ମୋର ଚାଲିବାର କ୍ଷମତା ରହିତ ହୋଇଛି । ବସିବାଠାରୁ ଉଠି ପାରୁନାହିଁ । ଦୃଷ୍ଟିଶକ୍ତି ଏକାଥରେ କମିଗଲାଣି । ଏଇତ, ତୁମେ ମୋର ସମ୍ମୁଖରେ ଠିଆ ହୋଇଛ । ମୁଁ ଦେଖୁଛି ଗୋଟିଏ ଅସ୍ପଷ୍ଟ ଛାୟା ମୂର୍ତ୍ତି ! ଏଇଥିରୁ କଣ ଅନୁମାନ କରୁଛ, ମୁଁ ପଳାଇ ଯିବାକୁ ଏତେ ପେଖନା କାଢ଼ୁଛି ? ହଉ ।

କଥା କହିଲା ବେଳେ ତ ପାଟିରେ ବାଝୁଲି ବାଜୁନାହିଁ ।

ଭଗବାନଙ୍କୁ ମୁଁ ସେଥି ନିମନ୍ତେ ଧନ୍ୟବାଦ ଦେଉଛି । ଯଦି ସେତକ ସେ ମୋଠାରୁ କାଢ଼ି ନେଇ ଥାନ୍ତେ, ଆଜି ମୁଁ ମୋର ଦୁଃଖ ତମପରି ନିର୍ମମ ହୃଦୟହୀନଠାରେ ଜଣାଇ ଗୋଟିଏ ସାମାନ୍ୟ ଅନୁରୋଧ ନିମନ୍ତେ ଏତେ ତର୍କ ବିତର୍କ କରନ୍ତି କିପରି ?

ସାମାନ୍ୟ ଅନୁରୋଧ କରୁଛ କାହିଁକି ?

ପ୍ରହରୀର ହୃଦୟ ତରଳି ଗଲା ବୃଦ୍ଧର କରୁଣ ବାକ୍ୟରେ । ସେ ହସ ହସ ହୋଇ କହିଲା, ଏ ତ ସାମାନ୍ୟ ଅନୁରୋଧ ନୁହେଁ । ଯଦି ତମରି ପରି ସମସ୍ତେ ମୋତେ ଅନୁରୋଧ କରନ୍ତି, ତେବେ ତ ନିହାଲ ।

କାହିଁକି, ଏଥିରେ ଆଶ୍ଚର୍ଯ୍ୟର କାରଣ କ'ଣ ରହିଲା ? ସମସ୍ତେ ଯଦି ମୋରି ପରି ପଳାୟନ କରି ପାରିବାକୁ ଅକ୍ଷମ ହୋଇଥିବେ ଏବଂ ସମସ୍ତେ ଯଦି ମୋରି ପରି

ମୃତ୍ୟୁ ରାଜ୍ୟର ଦ୍ୱାରବାନ୍ଧ ଉପରେ ବସିଥିବେ ତେବେ ସେମାନଙ୍କର ଏହି ସାମାନ୍ୟ ପ୍ରାର୍ଥନାରେ ତମର କର୍ତ୍ତବ୍ୟର ହାନି ହେବ ନାହିଁ । ବରଂ, କର୍ତ୍ତବ୍ୟ ପାଳନ ସଙ୍ଗେ ସଙ୍ଗେ ଧର୍ମ ବଢ଼ିବ । ଚିରଦିନ କାରାଗାରର ଅନ୍ଧକାର ମଧ୍ୟରେ ଯେ ବାସକରି ଆସିଛି, ଦରିଦ୍ର ପ୍ରଚୁର ଧନ ପାଇଲେ ଯେତେ ଖୁସି ନ ହେବ, ଅନାହାରରେ ଶୁଷ୍କ ଦେହରେ ତାଙ୍କର ଜଗତର ମୁକ୍ତ ପବନ ଲାଗିଲେ ଏବଂ ଜୀବନର ଅନ୍ତିମ କାଳରେ ମୁକ୍ତ ଆଲୋକର ' ସୌନ୍ଦର୍ଯ୍ୟ ଦେଖିବାକୁ ପାଇଲେ ତଦପେକ୍ଷା ବେଶୀ ଖୁସି ହେବେ । ମୋର ଅଳି ସେହି ଅନୁରୋଧ ।

ବୃଦ୍ଧ, ତମର ଯୁକ୍ତିରେ ପରାସ୍ତ ହେଲି । ଅନୁରୋଧ ରକ୍ଷାକରିବି; ଏଥର ମନ ଆନନ୍ଦରେ ବସି ଖୋଲା ହାଓ୍ୱା ଯେତେ ଇଚ୍ଛା ସେତେ ଖାଉଥାଅ । ମନେ ରଖିଥାଅ, ପଳାଇବାକୁ ଚେଷ୍ଟା ମୋଟେ କରିବ ନାହିଁ । ଆମେମାନେ ଆଜଠୁଁ ସତର୍କ ରହିଲୁ । ଯଦି କେବେ ପ୍ରହରୀଠାରୁ ପଳାୟନର ଚେଷ୍ଟାକର, ପଳାଇ ତ ପାରିବ ନାହିଁ, ଲାଭ ଭିତରେ ଏତିକି ହେବ ପ୍ରାଣ ଖାଇ ମରିବ ।

ତମର ଭାରି ଦୟା । ସେଥି ନିମନ୍ତେ ତମକୁ ଧନ୍ୟବାଦ ଦେଉଛି । ପ୍ରହରୀ ଚାଲିଯିବା ପରେ ବୃଦ୍ଧ ହସି ହସି ମନେ ମନେ କହିବାକୁ ଲାଗିଲେ ଏତେଦିନେ ପଳାୟନର ଉପାୟ କରି ପାରିଛି ! ଏଥର ଦ୍ୱାର ଉନ୍ମୁକ୍ତ । ଯେତେବେଳେ ପାରେ ସେତେବେଳେ ଯୁବକ ମୁକ୍ତ ହୋଇ ପାରିବ । କିନ୍ତୁ ମୁକ୍ତହୋଇ ପଳାୟନ କରି ପାରିବ କି ? ପ୍ରହରୀ ଯେ ଏଣିକି ସତର୍କ ରହିବ ।

ଏହି ସମୟରେ ଯୁବକ ଆସି ବୃଦ୍ଧଙ୍କୁ ଅଭିବାଦନ କଲା । ବୃଦ୍ଧ କୌଣସି କଥା କହିବା ଆଗରୁ ଯୁବକ ଜଣାଇ ଦେଲା ସେ ସବୁ ଶୁଣିଛି ।

ଏ ଭିତରେ ଅନେକ ଦିନ ଗତ ହୋଇ ଗଲାଣି । ସୁଶୀଳାର ଚିନ୍ତା ଯୁବକର ମନକୁ ବାରମ୍ବାର ଆନ୍ଦୋଳିତ କଲେ ମଧ୍ୟ ସେ ସମସ୍ତ ଭାବ ଗୋପନ କରି ଆନନ୍ଦରେ ବୃଦ୍ଧଙ୍କର ସେବାରେ ନିଯୁକ୍ତ ଅଛି । ବୃଦ୍ଧଙ୍କର ଦୃଷ୍ଟିଶକ୍ତି ସମ୍ପୂର୍ଣ୍ଣଭାବରେ ବିଲୁପ୍ତ ହୋଇଛି । ସେ ଶବ୍ଦରୁ ଯାହା ବୁଝନ୍ତି, ସେତିକି ।

ପ୍ରହରୀର ଆଉ ଏଣିକି ସନ୍ଦେହ ନାହିଁ । ଏତେଦିନ ହୁସିଆରରେ ଜଗି ଜଗି ସେ ବୁଝିପାରିଛି, ବୃଦ୍ଧଙ୍କର ପଳାଇବାର ଆଦୌ ଇଚ୍ଛା ନାହିଁ । ଏଣିକି ସେ ବେଳେ ବେଳେ ଆସି ବୃଦ୍ଧଙ୍କ ସଙ୍ଗେ ପଦେଅଧେ ସୁଖ ଦୁଃଖ ହୁଏ । ବୃଦ୍ଧଙ୍କ ମନରେ ଭୟ ହେଉଥାଏ କାଳେ ପ୍ରହରୀ କାନ୍ଥର କଣାଟି ଦେଖିଦେବ ।

ଦିନେ ସନ୍ଧ୍ୟା ସମୟରେ ବୃଦ୍ଧ ମୂର୍ଚ୍ଛାଯାଇ ତଳେ ପଡ଼ିଥିଲେ, ମଣିଆଁ ତାଙ୍କର ସେବା ଶୁଶ୍ରୂଷା କରୁଥିଲା । ବୃଦ୍ଧଙ୍କୁ ଦେଖିଲେ ମନେ ହେଉଥିଲା ସତେ

ଯେପରି ସେ ମୃତ । ଦେହର ପ୍ରତ୍ୟେକ ଅସ୍ଥି ବାହାରିଯାଇ ପଡ଼ୁଛି । ଶିରାପ୍ରଶିରା ଉପରକୁ ଫୁଟି ଦିଶୁଛି । ମୁଣ୍ଡ, ଦେହ, ହାତ ଓ ଗୋଡ଼, ସବୁଆଡ଼ର ଘା ଗୁଡ଼ାକ ସଢ଼ି ଦୁର୍ଗନ୍ଧ ହେଉଛି । ମଣିଆଁ ସେହି ଘା ମଧ୍ୟରୁ ଗୋଟିଏ ଗୋଟିଏ କୀଟ ତଳକୁ କାଢ଼ି ଫୋପାଡୁଛି । କେଉଁ ପାପରୁ ଭଗବାନ୍ ତାଙ୍କୁ ଏଡ଼େ ଦଣ୍ଡ ଦେଉଛନ୍ତି କେବଳ ତାଙ୍କୁହିଁ ଜଣା । ଏତେ କଷ୍ଟ ପାଇ ମଧ୍ୟ ନିଲଠା ଜୀବନଟା ଦେହ ଛାଡ଼ି ପଳାଉ ନାହିଁ ।

ମଣିଆଁ ର ଯତ୍ନରେ ବୃଦ୍ଧ ସଂଜ୍ଞା ଲାଭକରି କ୍ଷୀଣ କଣ୍ଠରେ କହିଲେ, ବାବା ଯଦି ନିଜର ମଙ୍ଗଳ ଚାହଁ, ଏଠାରେ ବନ୍ଦୀ ହତଭାଗ୍ୟ ନରନାରୀଙ୍କର ମଙ୍ଗଳ ଚାହଁ, ମୋତେ ଏହିଠାରେ ଛାଡ଼ି ଅତିଶୀଘ୍ର ପଳାୟନ କର । ଅନ୍ଧାର ରାତି । କେହି ଧରି ପାରିବେ ନାହିଁ । ଧରିବା ଦୂରେ ଥାଉ, କେହି ଜାଣି ପାରିବେ ନାହିଁ ଯେ ତମେ ପଳାୟିତ । ମୋର କଥାମାନ । ମୁଁ ନିଶ୍ଚୟ କରି କହୁଛି ମୋର ଜୀବନ ଆଉ କେତେ ଘଣ୍ଟା ମାତ୍ର ରହିବ । ଜୀବନ ଥାଉ ଥାଉ, ମୁଁ ଦେଖିବାକୁ ଚାହେଁ, ତମେ ମୁକ୍ତ ହୋଇଛ ।

ବୃଦ୍ଧଙ୍କୁ ମୃତ୍ୟୁ ମୁଖରେ ପକାଇ ନିଜର ଜୀବନ ନେଇ ପଳାୟନ କରିବା ଅନ୍ୟାୟ । ଯେଉଁ ବୃଦ୍ଧ ତାର ମୁକ୍ତି ନିମନ୍ତେ ଏତେ ଉପାୟ ସ୍ଥିରକରି ରଖିଛନ୍ତି ତାଙ୍କୁ ସବୁ କଷ୍ଟର ମଝିରେ ଛାଡ଼ି ପଳାଇବା ମନୁଷ୍ୟତ୍ୱର କାର୍ଯ୍ୟ ନୁହେଁ । ବୃଦ୍ଧଙ୍କର ଅନୁରୋଧ ରକ୍ଷା କରିବା ମଣିଆଁ କୁ କଷ୍ଟକର ବୋଧ ହେଲା । ସେ ନୀରବ ରହିଲା ।

ବୃଦ୍ଧ କୁନ୍ଥାଉ କୁନ୍ଥାଉ ପୁନର୍ବାର କହିଲେ, ମୋର କଥା ମାନିବ ନାହିଁ ? ହଁ, ମୁଁ ବୁଝିପାରୁଛି, ତେବେ ଏତେ କୁଣ୍ଠିତ କାହିଁକି । କିନ୍ତୁ କରିବ କଣ ? ଏପରି ଅବସ୍ଥାରେ ଆସି ପଡ଼ିଛ, ମୋତେ ଛାଡ଼ି ଚାଲିଯିବାକୁ ହିଁ ପଡ଼ିବ । ମୁଁ ବାରମ୍ବାର ଅନୁରୋଧ କରୁଛି । କଥା ମାନୁ ନାହଁ । ପରେ ବିପଦରେ ପଡ଼ିବାକୁ ହେବ—ଏହା ମନେ ରଖିଥାଅ । ବର୍ତ୍ତମାନ ସୁବିଧା ଅଛି । ଯଦି ନ ଯାଇଛ ଆଉ ଯାଇ ପାରିବ ନାହିଁ ।

ବାଃ, ତାହା ଭଲ । କିନ୍ତୁ—

ତମ ପକ୍ଷରେ ଭଲ ହୋଇପାରେ । କିନ୍ତୁ ତମ ଉପରେ ଯେ ଆହୁରି ଅନେକଙ୍କର ଜୀବନ ନିର୍ଭର କରେ । ବୃଦ୍ଧ ବିରକ୍ତି ଭାବ ଦେଖାଇ କହିଲେ ।

ତେବେ କଣ ଆପଣଙ୍କର ଇଚ୍ଛା ମୁଁ ଆପଣଙ୍କୁ ଏପରି ଅବସ୍ଥାରେ ତ୍ୟାଗ କରି ମୋର ଜୀବନ ନେଇ ପଳାଇବି ? ଯଦିବା କୌଣସି ଉପାୟରେ ବନ୍ଦଶାଳାରୁ ମୁକ୍ତ ହୋଇ ଯାଏ, ଏହି କ୍ଷୁଦ୍ର ଦ୍ୱୀପଟି ତ୍ୟାଗକରି ଅନ୍ୟଆଡ଼େ ଯିବି କିପରି ? ଶେଷରେ ଧରାପଡ଼ି ମରିବି ତ ?

ଏହି କାରାଗାରରେ ମୋପରି ସଢ଼ି ସଢ଼ି ମରିବା ଅପେକ୍ଷା ମୁକ୍ତ ସ୍ଥାନରେ ବୀରପରି ଲଢ଼େଇ କରି ମରିବା ଶତଗୁଣେ ଭଲ ନୁହେଁ କି ? ତେଣୁ ଅନ୍ତତଃ ମୁକ୍ତିର ଚେଷ୍ଟାରେ ଶୀଘ୍ର ତୁମେ ଆଜି ରାତିରେ କାରାଗାର ତ୍ୟାଗକର । କରିବ ତ ?

ହଁ, କରିବି , କିନ୍ତୁ ଇଚ୍ଛା ବିରୁଦ୍ଧରେ ।

ଯୁବକର ଚକ୍ଷୁ ଲୋତକାର୍ଦ୍ର ହେଲା । ସେ ଚିନ୍ତା କଲା, କିଛିଦିନ ପରେ ବୃଦ୍ଧଙ୍କୁ ଛାଡ଼ି ମୋତେ ଚାଲିଯିବାକୁ ହେବ । ଆହା, କେଡ଼େ ଦୟାଳୁ ସେ, କେଡ଼େ ମିଳାପି ! ନିଜର ଦୁଃଖ ନିମନ୍ତେ ସେ ଯେତେ କାତର ନୁହନ୍ତି, ପରର ଦୁଃଖ ନିମନ୍ତେ ସେତେ କାତର । ପରର ଜୀବନ ରକ୍ଷା ଆଶାରେ ନିଜର ଜୀବନ ସେ ଅକ୍ଳେଶରେ ଦେବାକୁ ପ୍ରସ୍ତୁତ । ଏପରି ସ୍ୱାର୍ଥତ୍ୟାଗ ଦୁନିଆଁରେ ବିରଳ ।

ଧୀରେ ଧୀରେ ରାତି ଅଧିକ ହେବାକୁ ଲାଗିଲା । ଘୋର ମେଘ ଅନ୍ଧକାର, ଆକାଶରେ ଗୋଟିଏ ବୋଲି ତାରା ନାହିଁ । ଥଣ୍ଡା ପବନ ଧୀରେ ଧୀରେ କେଉଁ ଆଡ଼ୁ ଆସି କେଉଁଆଡ଼େ ବହିଯାଉଛି । ଏହିପରି ସମୟରେ ମଣିଆଁ ବୃଦ୍ଧଙ୍କର ଗୋଡ଼ରୁ ହାତ ଖସାଇ ଆଣି ଦୁଃଖ ପ୍ରକାଶ କରି କହିଲା, ମୁଁ ଆଜି କାରାଗାରରୁ ପଳାୟନ କରିବାକୁ ଚେଷ୍ଟା କରୁଛି । ପାଗ ଯେପରି ହୋଇଛି, ଅସୁବିଧା ହେଲା ପରି ବୋଧ ହେଉ ନାହିଁ । ଏଠାରୁ ବାହାରି ଗଲେ ତ ମୁକ୍ତ ହେବି ନାହିଁ । ସମୁଦ୍ର ପାରି ହୋଇ ଉତ୍କଳକୁ ଯିବି କିପରି ?

ଏତେ କଥା ଭାବୁଛ କାହିଁକି ? ବୃଦ୍ଧ ମୁଣ୍ଡ ଠେକି କହିଲେ, ବଳେ ବୁଦ୍ଧି ଦିଶିଯିବ ।

ମୋର ପ୍ରଣାମ ଗ୍ରହଣ କରନ୍ତୁ, କହି ମଣିଆଁ ମୁଣ୍ଡ ନୁଆଁଇ ପ୍ରଣାମ କଲା । ବୃଦ୍ଧ କଲ୍ୟାଣ କରି କହିଲେ, ତମର ସାଧୁ ଇଚ୍ଛାରେ ଭଗବାନ ବୁଦ୍ଧ ତମକୁ ସାହାଯ୍ୟ କରିବେ । ବାବା, ଖୁସିରେ ମୁଁ ତୁମକୁ ବିଦାୟ ଦେଉଛି ।

ମଣିଆଁ ଶେଷଥର ପାଇଁ ବୃଦ୍ଧଙ୍କର ପଦସ୍ପର୍ଶ କରି ଧୀରେ ଧୀରେ ପ୍ରକୋଷ୍ଠ ତ୍ୟାଗ କଲା ।

ଚତୁର୍ଦ୍ଦିଗ ଅନ୍ଧକାର । ସୁର୍ଣ୍ଣଦ୍ୱୀପର କୌଣସି ଚିହ୍ନ ଦେଖାଯାଉ ନାହିଁ । ପୂର୍ବପରି ମୂଷଳ ଧାରାରେ ବୃଷ୍ଟି ହେଉଛି । ପ୍ରଭଞ୍ଜନର ପ୍ରବାହ ସହି ନ ପାରି ସମୁଦ୍ର ତରଙ୍ଗ ପର୍ବତ ପରି ଉପରକୁ ଉଠି ପରକ୍ଷଣରେ ଖସିପଡ଼ୁଛି । ବିଦ୍ୟୁତର ଚମକ କ୍ଷଣକ ନିମନ୍ତେ ଆକାଶ ଏବଂ ସାଗରର ମିଳନ ସ୍ଥାନ ଚମକାଇ ଦେଉଛି ।

ମାନ ଏ ସମସ୍ତ ଦୃଶ୍ୟ ଭଗୁକ, କବଙ୍କୁ ଦେଖିବାକୁ ଭଲଲାଗେ । ଜୀବନ ମରଣର ସଙ୍କଟ ସ୍ଥଳରେ ଉପନୀତ କ୍ଳାନ୍ତ ଯୁବକ ପକ୍ଷରେ—?

ମଣିଅାଁ ମନ ମଧ୍ୟରେ କଳ୍ପନା କରଥିଲ, ସୁବସ୍ତୃତ ବଙ୍ଗୋପସାଗର ସନ୍ତରଣ କର ମାରବ୍ୟ ଦ୍ୱୀପରେ ଉପସ୍ଥିତ ହେବ । ମନ ଆନନ୍ଦରେ ଧୀରେ ଧୀରେ କୁଟିର ନକଟକୁ ଯାଇ ଦ୍ୱାରମାର ଡାକବ ସୁଶୀଳା । ସୁଶୀଳା ବୋଧହୁଏ କୌଣସି ଉପାୟରେ ମୁକ୍ତ ହୋଇ ଅାସି କୁଟିରରେ ବାସ କରୁଥିବ ଏକାକନୀ । ସେ ମନ ମଧ୍ୟରେ ମଣିଅାଁର ନାମ ଅବରତ ଘୋଷୁଥିବ । ଅପେକ୍ଷା କର କାନ ଡେର ଶୁଣୁଥିବ, ମଣିଅାଁ ଅାସି ଡାକଲ କ ! ଡାକ ଶୁଣି ଦ୍ୱାର ଉଦ୍‌ଘାଟନ କରବ । ଅାହା, ସେ ମିଳନ କେଡ଼େ ଆନନ୍ଦପ୍ରଦ ହେବ ?

ଭାବନା ଯେପର ସ୍ୱପ୍ନରେ ପରଣତ ହୁଏ, ତାହାହିଁ ହେଲ । ବନା ଟିପା-କାଠିରେ ମଣିଅାଁ ସାହସ ଅବଲମ୍ବନ କର ଅନେକ ଦୂର ସନ୍ତରଣ କର ଚାଲ ଅାସିଲ । ଏଣିକ ସେ କ୍ଳାନ୍ତ । ଆଉ ସନ୍ତରଣ କରପାରୁ ନାହିଁ । କେବଳ ନଜକୁ ସମୁଦ୍ର ଉପରେ ଭସାଇ ରଖିଛୁ । ସମୁଦ୍ରରେ ଯେଣିକ ଇଚ୍ଛା ତେଣେ ଭାସି ଭାସି ଚାଲ ଯାଉଛୁ । ସେ ଚନ୍ତା କଲ, କାରାଗାର ଅନ୍ଧକାର ମଧ୍ୟରେ ଅବଦ୍ଧ ଥାଇ ମରବା ଅପେକ୍ଷା ସମୁଦ୍ରବକ୍ଷରେ ଜଳକବର ଗ୍ରହଣ ଶ୍ରେୟ । ସମୁଦ୍ର ବକ୍ଷରେ ଯେ ସେ ମୁକ୍ତ ।

ଜୀବନର ସମସ୍ତ ଅାଶା ଭରସା ଛାଡ଼ି ଯୁବକ ଭାସି ଭାସି ଯାଉଛୁ । ହଠାତ୍ ତା ଦେହରେ କ'ଣ ଗୋଟାଏ ବାଜିଲ । ସେ ଓଲଟି ପଡ଼ି ଦେଖିଲ, କାଛ ଜଣା ପଡ଼ିଲ ନାହିଁ । ଭାସମାନ ପଦାର୍ଥ ଉପରେ ନଜର ଶରୀରର ସମସ୍ତ ଭାର ରଖି ସାମାନ୍ୟ ଶ୍ରାନ୍ତି ହରଣ କରବାକୁ ଚେଷ୍ଟା କଲ । ପଦାର୍ଥ ଦୁର୍ଗନ୍ଧମୟ । ମାତ୍ର ମୃତ୍ୟୁ-ମୁଖରୁ ଯେ ରକ୍ଷାକର ପାରେ, ସେ କେବେ ଦୁର୍ଗନ୍ଧମୟ ହୋଇପାରେ କ ବପଦାପନ୍ନ ଲୋକ ପକ୍ଷରେ ? ମାତ୍ର ସଙ୍ଗେ ସଙ୍ଗେ ପଦାର୍ଥଟି ମଣିଅାଁକୁ ନେଇ ଜଳମଗ୍ନ ହେଲ । ମଣିଅାଁ ପୁନର୍ବାର ଉପରକୁ ଉଠିଲ । ସେ ଭାସମାନ ବସ୍ତୁ କୁଆଡ଼େ ଗଲ, ଅନ୍ଧକାରରେ ଆଉ ଦେଖାଗଲ ନାହିଁ ।

ରାତି ଶେଷ ହେଲ । ଝଡ଼ବର୍ଷା କମି ନାହିଁ । ଯୁବକ ହତାଶ ପ୍ରାଣରେ ଭାସି ଭାସି ଯାଉଛୁ । ଦଗନ୍ତବସ୍ତାର ସମୁଦ୍ରର ଜଳ । ଥରେ ଗୋଟିଏ ଲହରୀ ତାକୁ ଖୁବ୍ ଉଚ୍ଚକୁ ଉଠାଇନେଲ । ଏତକବେଳେ ସେ ଦେଖିଲ, ଦୂରରେ ଯେପର ଗୋଟିଏ ନୌକା ଭାସି ଭାସି ଯାଉଛୁ । ମନ ମଧ୍ୟରେ ଉଦ୍ଧାରର ଅାଶା ଜାଗିଉଠିଲ । ପରକ୍ଷଣରେ ଲହରୀ ଖସିଗଲ । ନୌକା ଅଦୃଶ୍ୟ ହେଲ ।

ଯୁବକ ମନେ ମନେ ନୌକାର ଦଗ ସ୍ଥିରକର ତାହାର ଅାଡକୁ ଲହରୀ କାଟି ଧୀରେ ଅଗ୍ରସର ହେଲ । ଅନେକ ଦୂର ଅାସି ଦେଖିଲ, ପ୍ରକୃତରେ ତାହାର

ଭାବନା ବା ଅନୁମାନ ଏକାଥରେ ବୃଥା ନୁହେ । ଯୁବକର ସ୍ଥିର ମନରେ ପରକ୍ଷଣରେ ଅନ୍ୟ ଭାବ ଜାଗ୍ରତ ହେଲା । ଏ ନୌକା କାହାର ? ମୋତେ ଖୋଜି ଧରିନେବାକୁ ପ୍ରହରୀମାନେ ନୌକା ନେଇ ଆସୁ ନାହାନ୍ତି ତ ? ଯୁବକ ଚିନ୍ତା କଲା, ଧରାପଡ଼ି ପୁଣି ଥରେ ବନ୍ଦୀ ହେବ ପଛେ ନିଶ୍ଚୟ ନିକଟକୁ ଯିବ ।

ଯୁବକ ଦେଖିଲା, ନୌକାରେ ପାଲ ନାହିଁ । ମାସ୍ତୁଲ ଝୁଣ୍ଟା ମଧ୍ୟ ନାହିଁ । ଅତଏବ ପ୍ରହରୀମାନଙ୍କର ନୌକା କଦାପି ନୁହେ । ହୁଏ ତ ଅଣ୍ଡାମାନର ଆଦିମ ଅଧିବାସୀଙ୍କର ହୋଇଥିବ । ସେମାନଙ୍କର ହାବୁଡ଼େ ପଡିଲେ ମଧ୍ୟ ରକ୍ଷା ନାହିଁ । ସେମାନେ ବିଦେଶୀଙ୍କୁ ଦେଖିଲେ ମାରିପକାନ୍ତି ।

ନୌକା ନିକଟବର୍ତ୍ତୀ ହେଲା । ଜଣାଗଲା, ଯେପରି ତହିଁରେ କେହି ଲୋକ ନାହିଁ । ସେ ଦ୍ୱିଗୁଣ ଉତ୍ସାହରେ ନୌକା ଆଡ଼କୁ ସନ୍ତରଣ କରି ଚାଲିଲା । ଏଥର ସେ ପାଖକୁ ଆସି ଦେଖିଲା, ଉପରକୁ ଉଠିବାର କୌଣସି ଉପାୟ ନାହିଁ । ପ୍ରଥମେ ତାହା ଯେତେ ଛୋଟ ବୋଲି ମନେ ହେଉଥିଲା, ପ୍ରକୃତରେ ସେତେ ଛୋଟ ନୁହେ । ମଣିଆଁ ନୌକା ଉପରକୁ ଉଠିବାର ଉପାୟ ଚିନ୍ତାକରି ନୌକାର କରେ କରେ ପହଁରି ପହଁରି ଚାଲିଲା । କିଛିଦୂର ଯାଇ ଦେଖିଲା, ଖଣ୍ଡେ ଦୋଉଡ଼ି ନୌକା ଦେହରୁ ତଳକୁ ଲମ୍ବିପଡ଼ିଛି । ଧରିବା ସଙ୍ଗେ ସଙ୍ଗେ ଦଉଡ଼ି ଖସିଗଲା । କିଛିଦୂର ପଛକୁ ଯାଇ ଦେଖିଲା, ମଙ୍ଗ ନିକଟରେ ଗୋଟିଏ ଲୁହାର କଡ଼ି ତଳକୁ ଝୁଲି ଆସିଛି । ସେହି କଡ଼ିର ସାହାଯ୍ୟରେ ସେ ଉପରକୁ ଉଠିଲା ।

ସତକୁ ସତ ନୌକାରେ କେହି ନାହିଁ । ଝଡ଼ବର୍ଷା କମି ନାହିଁ । ବେଳକୁ ବେଳ ଅଧିକ ହେଉଛି । ଚାରିଆଡ଼ ଅସ୍ପଷ୍ଟ । ଯୁବକ କ୍ଲାନ୍ତ ହୋଇ ପଡ଼ିଥିଲା । ସେ ମଝି ଉପରକୁ ମଙ୍ଗଆଡ଼େ ଚାଲିଲା । ଉଦ୍ଦେଶ୍ୟ ପଛ ମଙ୍ଗର କୋଠରୀରେ ଆଶ୍ରୟ ଗ୍ରହଣ କରିବ । ନିଜକୁ ଝଡ଼ବର୍ଷାର ଅତ୍ୟାଚାରରୁ ରକ୍ଷା କରିବ, ଶ୍ରାନ୍ତି ହରଣ କରିବ । ନୌକାର ମଝି ମଙ୍ଗଠାରୁ ଦୁଇ ମଙ୍ଗଆଡ଼କୁ ଅନେକଗୁଡ଼ିଏ କୋଠରୀ ଅଛି । ସେଗୁଡ଼ିକ ଅନୁଚ । କାଠରେ ତିଆରି । ଅନେକ-ଗୁଡ଼ିଏ କୋଠରୀ ଭାଙ୍ଗି ପଡ଼ିଛି । ପ୍ରତି ମୁହୂର୍ତ୍ତରେ ନୌକାଟି ସମୁଦ୍ରର ବିକ୍ଷୋଭିତ ବକ୍ଷରେ ଟଳମଳ ହେଉଛି । କେତେବେଳେ ଓଲଟି ପଡ଼ି ଜଳମଗ୍ନ ହେବ ! ମଣିଆଁ କୋଠରୀ ଭିତରକୁ ପ୍ରବେଶ କଲା ।

ଓଃ, ସେ କି ଦୁର୍ଗନ୍ଧ ! ପଚା ଶବର ଦୁର୍ଗନ୍ଧରେ ତାହାର ନାକ ଫାଟି ପଡ଼ିଲା । ଗୋଟିଏ ମୃତପିଣ୍ଡ ନିର୍ଜନ ପ୍ରକୋଷ୍ଠରେ ମୁହଁମାଡ଼ି ପଡ଼ିଛି । କେତେଦିନର ମଡ଼ା କେଜାଣି ? ତାକୁ ସମୁଦ୍ର ଭିତରକୁ ନିକ୍ଷେପ କରିବା ଆବଶ୍ୟକ । ସେ ଶବଟିର ଗୋଡ଼ ଧରି ପଦାକୁ ଘୋଷାରିଆଣିଲା । ସମୁଦ୍ର ବକ୍ଷରେ ନିକ୍ଷେପ କରିବା ପୂର୍ବରୁ ଶବକୁ କିଛି ସମୟ ଚାହିଁ ରହିଲା । ନାକରେ ହାତଦେଇ ମୁଣ୍ଡଟିକୁ ଓଲଟାଇ ଦେଲା । ଶବର ସମସ୍ତ ଦେହ ଫୁଲିଉଠିଛି । ମୁଖଟି ଭୟଙ୍କର ଦେଖାଯାଉଅଛି ।

ମଣିଆଁ ବିସ୍ମୟ ବିସ୍ଫାରିତ ଲୋଚନରେ ଚାହିଁ ରହିଲା । ଜଣାଗଲା ଯେପରି ସେ ତାର ପରିଚିତ ।

ମଣିଆଁର ଆପାଦ ମସ୍ତକ ଥରି ଉଠିଲା । ଅଜାଣତରେ ଚକ୍ଷୁରୁ ଜଳ ଖସି ପଡ଼ିଲା । ଏ କିପରି ଆସିଲେ ଏଠିକି ? ସଙ୍ଗେ ସଙ୍ଗେ ସେ ଶବର ନିକଟରେ ବସି ପଡ଼ିଲା । ଦେଖିଲା, ଶବର ଅନେକ ସ୍ଥାନରେ କ୍ଷତ । ସେହି କ୍ଷତଗୁଡ଼ିକ ଯୋଗୁଁ ହିଁ ସେ ମୃତ—ସନ୍ଦେହ ନାହିଁ । ଇଚ୍ଛା ହେଲା ନାହିଁ ନୌକା ଉପରୁ ତାଙ୍କୁ ତଳକୁ ଖସାଇ ପକାଇବାକୁ ।

ଯେଉଁ ଲୋକର ତତ୍ତ୍ୱାବଧାନରେ ଆବାଲ୍ୟରୁ ସେ ବଢ଼ିଆସିଥିଲା, ତାହାର ଶବକୁ ଅବମାନନା କରି ମାଟି ଗୋଡ଼ପରି ନିକ୍ଷେପ କରିବ ? ଯେଉଁ ଭଜନାର ବାତ୍ସଲ୍ୟ ଜୀବନରେ କେବେ ହେଲେ ଭୁଲିପାରିବ ନାହିଁ, ତାହାର ଶବକୁ ଅତଳ ସାଗରରେ ପକାଇ ଦେବ ସାମୁଦ୍ରିକ ମତ୍ସ୍ୟଙ୍କର ଆହାର ନିମନ୍ତେ ? ମଣିଆଁ ନିଜ ମନର ବେଦନା ସମ୍ଭାଳିପାରିଲା ନାହିଁ । ଶିଶୁଟି ପରି ଉଚ୍ଚସ୍ୱରରେ ରୋଦନ କଲା । ଶବର କପାଳରେ ହସ୍ତ ସ୍ଥାପନ କଲା ।

କିଛି ସମୟ ପରେ ଝଡ଼ ବର୍ଷା ବନ୍ଦ ହୋଇଗଲା । ସାଗରବକ୍ଷ ଶାନ୍ତ । ମାର୍ତ୍ତଣ୍ଡ ମଧ୍ୟ ଗଗନର ବାଉଦମାଳ ଭେଦକରି ଉଙ୍କି ମାରୁଛନ୍ତି । ମଣିଆଁ ରୋଦନ ତ୍ୟାଗକରି ଭାବିଲା, କର୍ତ୍ତବ୍ୟ କ'ଣ ? ନୌକାଟି ଧୀରେ ଧୀରେ କେଉଁ ଆଡ଼କୁ ଗତି କରୁଛି, ଠିକ୍ ବୁଝାପଡ଼ୁ ନାହିଁ । ସୂର୍ଯ୍ୟ ମଧ୍ୟ-ଗଗନରେ । ମୃତ ଶବଟି ନିକଟରେ ବସି ବୃଥା ରୋଦନ କଲେ, ଲାଭ ନାହିଁ । ସେ ଶବର ମୁଖକୁ କିଛି କ୍ଷଣ ଅନାଇଁ ରହିଲା । ଚକ୍ଷୁରେ ହସ୍ତ ସ୍ଥାପନ କରି କେତେ କ'ଣ ଚିନ୍ତା କଲା । ପରେ ଶବଟିକୁ ଧୀରେ ଧୀରେ ନୌକାରୁ ସମୁଦ୍ର ବକ୍ଷକୁ ଖସାଇ ପକାଇଲା । ହସ୍ତଯୋଡ଼ି କାହାକୁ ପ୍ରଣାମ କଲା, ନିଜେ ଜାଣେ ।

ମଣିଆଁ ନୌକାର ଏ ପାଖରୁ ଅନ୍ୟ ପାଖକୁ ଯାଇ ନୌକାରେ କ'ଣ ଅଛି, ତନଖିକଲା । ଆଗ ମଙ୍ଗର ଗୋଟିଏ ଘରେ ଅନେକଗୁଡ଼ିଏ ଅଖା—ଚୂଡ଼ା ପୂର୍ଣ୍ଣ । ପାଖରେ ମୁଣ୍ଡା ମୁଣ୍ଡା ହୋଇ କେତେଖଣ୍ଡ ନବାତ ଠଙ୍ଗା ହୋଇଛି । ସଂଲଗ୍ନ ପ୍ରକୋଷ୍ଠରେ ଅନେକଗୁଡ଼ିଏ ମାଠିଆ ଜଳପୂର୍ଣ୍ଣ । ମଣିଆଁ ଚିନ୍ତା କଲା, ମୋତେ ଆଉ ଖାଦ୍ୟ କିମ୍ବା ପାନୀୟ ଅଭାବରୁ ଜୀବନ ହରାଇବାକୁ ପଡ଼ିବ ନାହିଁ । ଯେତେ ଖାଦ୍ୟ ଏବଂ ପାନୀୟ ଅଛି, ସେଥିରେ ଅନେକ ମାସ ଚଳିଯିବ । ବାରଣ୍ଡା ବାଟ ଦେଇ ପଛ ମଙ୍ଗଆଡ଼େ ଯିବାବେଳେ ଦେଖିଲା, ଖଣ୍ଡେ ପୋଥି ମଞ୍ଚା ଉପରେ ପଡ଼ିଛି । ପୋଥିଖଣ୍ଡ ତଳୁ ଉଠାଇ ମୁଣ୍ଡରେ ଲଗାଇଲା—ଆନନ୍ଦ ପ୍ରକାଶ କରି ମନକୁ ମନ କହିଲା, ଏଥିରୁ ବାପାଙ୍କର ଜୀବନୀ ନିଶ୍ଚୟ ମିଳିବ । ପୋଥିଖଣ୍ଡି ପଢ଼ିବା ଆବଶ୍ୟକ । କିଛିଦୂର ଯାଇ ଖଣ୍ଡେ ଭଙ୍ଗା ତରବାରି ଦେଖିଲା ।

ପଛମଙ୍ଗର କୋଠରୀରେ ଗୋଟିଏ ଅର୍ଦ୍ଧଭଗ୍ନ ବେନ୍ଦାସନ । ତାହାର ଉପରେ ବସି ପୋଥି ଖୋଲି ଭଜନାର ଦୈନିକ ଲିପି ପାଠ କରିବାକୁ ଲାଗିଲି ।

ସେ ଭାରି ସୁନ୍ଦରୀ । ତାଙ୍କର ଆଚରଣ ଅନୁକରଣୀୟ । ପାପିଷ୍ଠେ ତାଙ୍କୁ ଯେଉଁ ଆଶାରେ ଏତେଦିନ ବନ୍ଦୀ କରି ରଖିଥିଲେ, ସେ ଆଶା ସେମାନଙ୍କର ପୂରଣ ହୋଇପାରିଲା ନାହିଁ । ସେ ବରଂ ଚିରଦିନ ନରକକୁଣ୍ଡରେ ଘାଣ୍ଟିହୋଇ ମରିବେ, କଦାପି ମରିବେ ନାହିଁ । ସ୍ୱାମୀଙ୍କ ପ୍ରତି ଏପରି ଅଚଳାଭକ୍ତି ବୋଧହୁଏ ଅନ୍ୟ କୌଣସି ରମଣୀଠାରେ ଦେଖିବାକୁ ପାଇନାହିଁ । ଏହା ମୋର ଭୁଲ । କାରଣ ଅନ୍ୟ କୌଣସି ରମଣୀକୁ ମୁଁ ଆଉ କେବେ ଏପରି ବିପଦରେ ପଡ଼ିଥିବାର ଦେଖି ନ ଥିଲି । ଅଗ୍ନି ଦଗ୍ଧ ସ୍ୱର୍ଣ୍ଣ ପରି ବିପଦ ସମୟରେ ଲୋକର ପ୍ରକୃତ ଗୁଣ ଜଣାପଡ଼େ । ତାଙ୍କୁ ଦେଖିଲେ, କେଜାଣି କାହିଁକି ସ୍ୱତଃ ଭକ୍ତି ଜାଗ୍ରତ ହୁଏ । ସେ ମଧ ମୋତେ ଭକ୍ତି କରନ୍ତି ।

ସେଦିନ ରକ୍ଷା ଚେଷ୍ଟା କରି ବିଫଳ ହେଲି । ପାପିଷ୍ଠେ ମୋତେ ଏବଂ ରମଣୀକୁ ବନ୍ଦୀ କଲେ । ଇଚ୍ଛା କରିଥିଲେ ଉଭୟଙ୍କୁ ଅକ୍ଳେଶରେ ମାରି ପାରିଥାନ୍ତେ । ମାରିଲେ ନାହିଁ । ସେମାନଙ୍କ ମଧ୍ୟରୁ କେହି କେହି ଏ ପ୍ରସ୍ତାବ ଉତ୍ଥାପନ କରିଥିଲେ; କିନ୍ତୁ ଅନ୍ୟ କେତେ ଜଣଙ୍କୁ କହିବାର ଶୁଣିଲି, ସାଧବଙ୍କର ଆଦେଶ ନାହିଁ । ବୃଥାରେ ମନୁଷ୍ୟର ଅମୂଲ୍ୟ ଜୀବନ ନଷ୍ଟ କରିବ ନାହିଁ । ମୁଁ ଚିନ୍ତା କଲି, ବେଶ୍ ତ ! ସାଧବ ଭାରି ଦୟାଳୁ; କିନ୍ତୁ ନିରୀହଙ୍କ ଉପରେ ଏ ଅତ୍ୟାଚାର କାହିଁକି ? ବୁଝିପାରିଲି ନାହିଁ ।

ଏହି ସମୟରେ ସେମାନେ ଆମ ଦୁହିଙ୍କୁ ବନ୍ଦୀକରି ପଥର କୋଣରୁ ନୌକା ଉପରକୁ ଉଠାଇ ନେଲେ । ସେତେବେଳେ ରମଣୀ ମୂର୍ଚ୍ଛମାନା । ଅର୍ଦ୍ଧବସନ ପରିହିତା ମୂର୍ଚ୍ଛମାନା ରମଣୀ ଉପରେ କଟାକ୍ଷପାତ କରି ଅଶ୍ଳୀଳ କଥା କହିବାକୁ ସେମାନେ ଟିକିଏ କୁଣ୍ଠିତ କିମ୍ବା ଲଜ୍ଜିତ ହେଲେ ନାହିଁ । ସେମାନଙ୍କ ମଧ୍ୟରୁ ଜଣେ ମୋତେ ଲକ୍ଷ୍ୟ କରି କହିଲା, ଆରେ ବୁଝିଲୁ କି ଭାଇମାନେ, ଏ ଶଳାଟା ସେ ଶାଳୀକୁ ବେଶ୍ ଫୁସୁଲା ଫୁସୁଲି କରି ଆମ ଆଖିରେ ଧୂଳି ପକାଇ ନେଇ ଚାଲି ଯିବାକୁ ବସିଥିଲା । ରମଣୀ ସରଳା । ଚକ୍ଷୁ ବୁଜି ତଳେ ପଡିଥିଲେ ନୌକା ଉପରେ । ମୁଁ ଏଣେ କ୍ରୁଦ୍ଧ ସିଂହ ପରି ଗର୍ଜ୍ଜନ କରୁଥାଏଁ । କ'ଣ କରିବି, ବନ୍ଦୀ ମୁଁ । ମୋ ପାଖରୁ ସେମାନେ ତରବାରୀ ଖଣ୍ଡି ଛଡ଼ାଇ ନେଇଥିଲେ । ସମୁଦ୍ର ଜଳ ଉପରେ ଯୁଦ୍ଧକରି ତାହାରି ସାହାଯ୍ୟରେ ଦୁଇ ଜଣଙ୍କର ଜୀବନ ନେଇ ପାରିଛି । ତିନିଜଣଙ୍କୁ ଆହତ କରିଛି । ସେପରି ତରବାରୀକୁ କି କଦାପି

ସେମାନେ ମୋ ନିକଟରେ ଛାଡ଼ିଯାନ୍ତେ ? ଯାହା ହେଉ, ମୋର ପକ୍ଷ ନେଇ ସେମାନଙ୍କ ମଧ୍ୟରୁ କେହି ଜଣେ ବୁଦ୍ଧିମାନ ଲୋକ କହିଲା; ଏ ଯଦି ହେଲା ତୋର ଶଳା, ସେ ଯଦି ହେଲା ତୋର ଶାଳୀ, ଏଥିରେ ଆଉ ଫୁସୁଲା ଫୁସୁଲି କରିବାର କିଛି ରହିଲା ନାହିଁ ତ ।

ଦୁଇ ଜଣଙ୍କୁ ଭିନ୍ନ ଭିନ୍ନ କୋଠରୀରେ ବନ୍ଦୀ କରିଥାନ୍ତେ, ମାତ୍ର ନୌକାରେ କୋଠରୀର ଅଭାବ ଦେଖି ଉଭୟଙ୍କୁ ଗୋଟିଏ କୋଠରୀରେ ବନ୍ଦ କରି ରଖିଲେ । ଏଥି ପୂର୍ବେ ଆମକୁ ଯେଉଁଠାରେ ବନ୍ଦୀକରି ରଖିଥିଲେ, ଏ ସେହି କୋଠରୀ । ରମଣୀ ମୋତେ ତାଙ୍କ ସଙ୍ଗେ ବନ୍ଦୀ ହେବାର ଦେଖି ବଡ଼ ଦୁଃଖିତ ହେଲେ । ନିଜକୁ ସହସ୍ରବାର ଧିକ୍କାର କରି ମୋତେ କହିଲେ, ଏହି ହତଭାଗିନୀ ରମଣୀକୁ ଉଦ୍ଧାର କରିବାକୁ ଯାଇ ନିଜେ ବନ୍ଦୀ ହୋଇଛ ! ବୁଦ୍ଧଦେବଙ୍କୁ ପ୍ରଣାମ କରି କହିଲେ, ଏହା କ'ଣ ତମର ଉପଯୁକ୍ତ ବିଚାରବୁଦ୍ଧି ! ଯେ ନିର୍ଦ୍ଦୋଷ, ଯେ ପରୋପକାରୀ, ତାହାର ସହାୟ ନ ହୁଅ କାହିଁକି ?

ରମଣୀ ବୁଦ୍ଧଙ୍କୁ ପ୍ରାର୍ଥନା କରିବା ଶୁଣି ମୁଁ ମନେ ମନେ ହସିଲି । ଭାବିଲି, ବୁଦ୍ଧ ଆମରିପରି ଜଣେ ମନୁଷ୍ୟ ଥିଲେ । ମାନବର ଭାଗ୍ୟ ଉପରେ ତାଙ୍କର କୌଣସି ହାତ ନାହିଁ । ଜଣେ ମନୁଷ୍ୟ କି କେବେ ଅନ୍ୟ ଜଣକର ଭାଗ୍ୟଗଠନ କରିପାରେ, ପରିବର୍ତ୍ତନ କରିପାରେ ? ନିଶ୍ଚୟ, କିନ୍ତୁ ତାହା ନିଜର କାର୍ଯ୍ୟ ଦ୍ୱାରା । ଏହି ତ, ମୁଁ ରମଣୀର ଭାଗ୍ୟପରିବର୍ତ୍ତନ କରିବାକୁ ବସିଥିଲି । ଯଦି ଦସ୍ୟୁମାନଙ୍କ ହାତରେ ପଡ଼ି ନଥାନ୍ତି, ତେବେ ଆମ ଦୁହିଁଙ୍କର ଜୀବନ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଯାଇଥାନ୍ତା । ମୋର ଜୀବନକୁ ମଧ୍ୟ ଓଲଟାଇ ଦେଲେ ଦସ୍ୟୁମାନେ । କାହିଁ, କଳିଙ୍ଗ ଉପକୂଳସ୍ଥ ବାଲୁକା ପ୍ରାନ୍ତର, କାହିଁ ବାଲିଦ୍ୱୀପର ଅଗମ୍ୟ ପର୍ବତୋପରି ବୁଦ୍ଧମନ୍ଦିର ! କାହିଁ ସାମାନ୍ୟ ଦରିଦ୍ର ମତ୍ସ୍ୟଜୀବୀ ଭଜନା ଆଉ କାହିଁ ଆଜି ବିପୁଳ ସମ୍ପତ୍ତିର ଅଧିକାରୀ ଭଜନା । ତେଣୁ ମୁଁ ଆଜି ମୋର ଅତୀତ ଜୀବନୀ ଲେଖୁ ଲେଖୁ ଚିନ୍ତା କରୁଛି, ମାନବ ଭାଗ୍ୟର ଗଠକ ନିଜେ ମାନବ । ବୁଦ୍ଧ ମହାବୀରଙ୍କର ନାମ କଦାପି ନୁହେଁ । ସେମାନେ ଆମରି ପରି ମନୁଷ୍ୟ ଥିଲେ । ଖାଲି ସେମାନଙ୍କର ନାମ ଉଚ୍ଚାରଣ କଲେ ମାନବର ଭାଗ୍ୟ ପରିବର୍ତ୍ତିତ ହେବ କାହିଁକି ? ସେମାନେ ବହୁଦିନରୁ ଚାଲିଗଲେଣି । ତାଙ୍କର ପ୍ରେତାତ୍ମା ବି ଆଜି ଅଛି କି ନାହିଁ ସନ୍ଦେହ ।

ସେହି କୋଠରୀରେ ଆମକୁ ଅନେକ ଦିନ ରହିବାକୁ ପଡ଼ିଲା । କେତେ ଦିନ ରହିଲୁ ଠିକ୍ କହିପାରିବି ନାହିଁ; ମାତ୍ର ଅନେକ ଦିନ । ଏ କେଇଦିନ ଭିତରେ ରମଣୀ ତାଙ୍କ ଅତୀତ ଜୀବନର ଅନେକ କଥା କହିଲେ । ସେ ଯେ ମଣିଅଁର ମା, ଏଥିରେ ଆଉ ସନ୍ଦେହ କରିପାରିଲି ନାହିଁ ।

ମଣିଅାଁ ଚମକିପଡ଼ିଲା । ଉପରକୁ ଅନାଇଁ ଚିନ୍ତାକଲା ମଣିଅାଁର ମା ! ମଣିଅାଁ କିଏ ? ମୁଁ ?

ପୋଥିରୁ ପୂର୍ବୋକ୍ତ ବାକ୍ୟଟି ଅନ୍ୟର ଥରେ ପଢ଼ିଲା ।

ସେ ଯେ ମଣିଅାଁର ମା, ଆଉ ସନ୍ଦେହ କରିପାରିଲା ନାହିଁ । ତାଙ୍କର ବର୍ଣ୍ଣନା ସଙ୍ଗେ ଦେଖିଲେ ମଣିଅାଁର ପ୍ରତ୍ୟେକ କଥା ମିଳିଗଲା । ରୂପେଣରି ବର୍ଣ୍ଣନା ସଙ୍ଗେ ଏ ରମଣୀର ସବୁ କଥା ମିଳିଯାଉଛି, ଆଉ ସନ୍ଦେହ ? ଆହା, ରମଣୀର ହୃଦୟ କ'ଣ ହେଉଥିବ । ନିଜର ହୃଦୟରେ ଏକମାତ୍ର ସନ୍ତାନକୁ ଦେଖିବାର ବଳବତୀ ଇଚ୍ଛା, ସେଟିକା ମଧ୍ୟରେ ବୁଦ୍ଧି ଭ୍ରମ ମୋଡ଼ମାଡ଼ି ହୋଇ ସ୍ଥିର ରହିଲା ପରି ତାଙ୍କର ମନ ମଧ୍ୟରେ ଆବଦ୍ଧ ରହିଥିବ ସିନା ।

ସେଦିନ ମୁଁ ମଣିଅାଁ ବିଷୟରେ ଅନେକ ଭାବିଛି । ରାତିଅଧରୁ ତା ପାଖରୁ ଉଠି ଚାଲିଆସିଥିଲି । ସେ ଜାଣେ ନାହିଁ । ସେ ଯେତେବେଳେ ଶେଯରୁ ଉଠି ମୋତେ ଖୋଜି ଖୋଜି ନ ପାଇବ, କ'ଣ ଭାବି ଥିବ ? ବାଲିଯାକ ଖୋଜୁ ଖୋଜୁ ସେ ଶବ ଦେଖିବାକୁ ପାଇ ମୋତେ ମୃତ ବୋଲି ମନେ କରିଥିବ ବୋଧହୁଏ । ହତଭାଗିନୀ ରମଣୀର ବାଳିକା କନ୍ୟା ସୁଶୀଳାର ମୃତଦେହ ଦେଖି ମଣିଅାଁ ମୋର ଚମକିପଡ଼ିଥିବ । ବାଳକ ହୃଦୟ ଏତେ ରକ୍ତପାତ ସହିବ କିପରି ? ମୁଁ ଜାଣିପାରୁ ନାହିଁ, ସୁଶୀଳାର ମାତା ନିର୍ବିଘ୍ନରେ ତାମ୍ରଲିପ୍ତରେ ପହଞ୍ଚି ପାରିବେ କି ନାହିଁ । ବୋଧହୁଏ ପଥରେ ଅନ୍ୟ କୌଣସି ବିପଦ ତାଙ୍କ ଉପରେ ପଡ଼ି ନ ଥିବ ।

ମଣିଅାଁର ଆଖି ଆଗରେ ତାର ଅତୀତ ଜୀବନର ଚିତ୍ର ଗୋଟି ଗୋଟି କରି ଆସି ଦେଖାଦେଲା । ଆହା, ଆଜି ତାର ପ୍ରାଣର ସୁଶୀଳା କାହିଁ ? ଚକ୍ଷୁରେ ଲୋତକ ଜାତ ହେଲା । ମନ ପରିବର୍ତ୍ତନ କରିବାକୁ ପୋଥି ପଢ଼ିବାକୁ ଚେଷ୍ଟା କଲା, ପାରିଲା ନାହିଁ ।

ଆଲୋକ ଧୀରେ ଧୀରେ କମିଆସିଲାଣି । ପୋଥିର ଅକ୍ଷରଗୁଡ଼ିକ ଭଲ ପଢ଼ି ହେଉ ନାହିଁ । ପୋଥି ବନ୍ଦକରି ମୁଣ୍ଡରେ ଲଗାଇଲା । ସମୁଦ୍ର ଆଡ଼କୁ ଅନାଇ ଦେଖିଲା, ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ହୋଇଗଲେଣି । ସମୁଦ୍ର ବକ୍ଷ ସ୍ଥିର । ଛୋଟ ଛୋଟ ଲହରୀ ଗୁଡ଼ିକ ନୌକାରେ ବାଜି କଳଧ୍ୱନି କରୁଛନ୍ତି । ନୌକା ସ୍ଥିର ଅଛି କି ଗତି କରୁଛି, ବୁଝି ହେଲା ନାହିଁ । ଭଜନାର କରଣୀଅକ୍ଷର ଚିହ୍ନି ଚିହ୍ନି ପଢ଼ିବାରେ ଯେ ଏତେ ସମୟ ବ୍ୟୟିତ ହେଲା, ସେ ତା ବୁଝିପାରିଲା ନାହିଁ । ଅସୀମ ସାଗରବକ୍ଷରେ ଏହି କ୍ଷୁଦ୍ର ନୌକା ଏବଂ ନୌକା ମଧ୍ୟରେ ମାତ୍ର ଜଣେ ଲୋକ ।

ମଣିଅାଁ କ୍ଷୁଧା ସମ୍ଭାଳି ପାରିଲା ନାହିଁ । ସେଠାରୁ ଉଠି ପଛ ମଙ୍ଗଆଡ଼କୁ ଚାଲିଗଲା ।

ମଣିଆଁର ସେପରି ଅବସ୍ଥାରେ କୌଣସି କାର୍ଯ୍ୟ ନାହିଁ । ଖାଦ୍ୟ ଏବଂ ପାନୀୟ ନୌକାରେ ଯଥେଷ୍ଟ ଅଛି । ସେ ବିଷୟରେ ତାକୁ ଚିନ୍ତା କରିବାକୁ ପଡ଼େ ନାହିଁ । ସମୟ ସମୟରେ ନୌକାଟିକୁ ପରିଷ୍କାର କରେ । ସେ କାହିଁ ଜାଣିବ, ତାର ଭାଗ୍ୟରେ ପରେ କ'ଣ ଅଛି ? ତାକୁ ତାର ଭଗ୍ନ ହୃଦୟ ଧରି ସେହି ଭଗ୍ନ ନୌକାଟିରେ କେତେଦିନ ରହିବାକୁ ପଡ଼ିବ ?

ଦିନେ ନୌକାର ତଳ ସଫା କରୁ କରୁ ଗୋଟିଏ ଚମତ୍କାର ଥଳି ପାଇଲା । ଥଳିଟି ମଧ୍ୟମ ଆକାରର, ନିତାନ୍ତ ଛୋଟ ନୁହେଁ । ଥଳିଟି ଉଠାଇ ଦେଖିଲା, ଟିକିଏ ଭାରି ଲାଗୁଛି । ତାହା ଖୋଲି ହାତ ପୂରାଇ ଟାଣି ଆଣିଲା ଗୋଟାଏ ଛୋଟ ଡବା । ସେହି ସ୍ୱର୍ଣ୍ଣ ନିର୍ମିତ । ନାନା ପ୍ରକାର କାରୁକାର୍ଯ୍ୟ ତହିଁରେ ହୋଇଛି । ଡବା ଉପରେ ସୁନାର ଗୋଟିଏ ପଦ୍ମଫୁଲ ଅଙ୍କା । ଫୁଲର ମଧ୍ୟ ସ୍ଥଳରେ ଗୋଟିଏ ବହୁମୂଲ୍ୟର ରତ୍ନ ।

ଡବାଟି ଅତି ସହଜରେ ଖୋଲିଗଲା । ମଣିଆଁ ଦେଖିଲା ଡବା ମଧ୍ୟରେ ଆଠଟି ଉଜ୍ଜ୍ୱଳ ରତ୍ନ ରହିଛି । ସେହି ରତ୍ନମାନଙ୍କ ଉପରେ ଖଣ୍ଡେ ଛୋଟ ତାଳପତ୍ରର ଚିଠାଉ । ମଣିଆଁ ଡବା ବନ୍ଦକରି ଚମତ୍କାର ଥଳିଟି ନେଇ ପଦାକୁ ଆସିବ ଏବଂ ଚିଠାଉ ଖଣ୍ଡି ପଢ଼ିବ ଭାବି ଥଳିଟିକୁ ଉଠାଇ ଆଣିବାକୁ ଚେଷ୍ଟା କଲା, ମାତ୍ର ହେଲା ନାହିଁ । ଥଳି ଦେହରେ ଖଣ୍ଡେ ଚମଡ଼ାର ଦଉଡ଼ି ବନ୍ଧା । ଦଉଡ଼ିର ଅନ୍ୟପାଖ ନୌକା ଦେହରେ କୌଣସି ଗୋଟିଏ ଲୁହା କଣ୍ଟାରେ ସଂଲଗ୍ନ । କାରଣ କ'ଣ, ମଣିଆଁ ଅନୁମାନ କରିପାରିଲା ନାହିଁ । ଥଳିରେ ହାତ ପୂରାଇ ଦେଖିଲା, ଆଉ କିଛି ନାହିଁ । ଗୋଟିଏ ହାତରେ ସୁନାର ଡବା ଏବଂ ଅନ୍ୟ ହାତରେ ଚିଠାଉ ଧରି ପଦାକୁ ଆସିଲା । ଆଲୋକରେ ଚିଠାଉ ପଢ଼ିଲା । ତହିଁରେ ତର ତର କରି ଦୁଇଧାଡ଼ି ଲେଖା ହୋଇଛି, କାଳିଦ୍ୱୀପର ବିପୁଳ ରତ୍ନାଗାର ମଧ୍ୟରୁ ଏ କେଇଖଣ୍ଡ ମାତ୍ର ରତ୍ନ ।

ସମୁଦ୍ର ମଧ୍ୟରେ ଏତେ ଗୁଡ଼ାଏ ବହୁମୂଲ୍ୟ ରତ୍ନର ଆବଶ୍ୟକ କ'ଣ ମଣିଆଁ ପକ୍ଷରେ ? ଉପରେ ସୁନୀଳ ଆକାଶ ବକ୍ଷରେ ନାନାରଙ୍ଗର ମୁକ୍ତ ବାଉଦମାଳ ଖେଳି ବୁଲୁଛନ୍ତି । ତଳେ ସେହିପରି ସୁନୀଳ ସମୁଦ୍ରର ମୁକ୍ତ ତରଙ୍ଗ । ଚାରିଆଡ଼େ ମୁକ୍ତ ସମୀରଣ ଖେଳିବୁଲୁଛି । ମୁକ୍ତ ହୋଇ ମଧ୍ୟ ମଣିଆଁ ବନ୍ଦୀ । ଏପରି ଅବସ୍ଥାରେ କୁବେରର ସମ୍ପତ୍ତି ତାକୁ ମାଟିମୁଣ୍ଡା ।

ମଣିଆଁ ରତ୍ନଗୁଡ଼ିକ ଗୋଟି ଗୋଟି କରି ପରୀକ୍ଷା କରି ପୁଣି ସୁନାର ଡବା ମଧ୍ୟରେ ବନ୍ଦ କରି ରଖିଲା ଏବଂ ଭଜନାର ଦୈନିକଲିପି ପୋଥିଖଣ୍ଡ ଆଣି ପଢ଼ି ବସିଲା । କାମଧନ୍ଦା କିଛି ନାହିଁ । ମନ ବଦଳାଇବାକୁ ସ୍ଥିର ହୋଇ ବସି ଲାବଣୀ ପଢ଼ୁଥାଏ । ସେହି ଦୈନିକ ଲିପିରେ ମଣିଆଁର ଜନ୍ମ ବୃତ୍ତାନ୍ତ ନିମ୍ନମତେ ବର୍ଣ୍ଣିତ ଥିଲା—ଦସ୍ୟୁମାନଙ୍କ ମୁଖରୁ ଶୁଣିଲି, ଯେଉଁଠାରେ ବୋଇତରୁ ଆମ୍ଭେମାନେ

ସ୍ଥଳରୁ ଓହ୍ଲାଇଲୁଁ ତାହା ସୂର୍ଯ୍ୟଦ୍ୱୀପ । ଏଥିପୂର୍ବରୁ ସୂର୍ଯ୍ୟଦ୍ୱୀପର ନାମ ଆଜ କେବେ ଶୁଣି ନଥିଲି । ମୋର ଗୋଡ଼ ହାତ ବନ୍ଧା ହୋଇଥାଏ । ତେଣୁ ସ୍ଥଳଭାଗରେ ରହି ମଧ୍ୟ ମୁକ୍ତିଲାଭର କୌଣସି ଚେଷ୍ଟା କରିପାରିଲି ନାହିଁ । ମଣିଆଁର ମାତାଙ୍କୁ ମୋ ନିକଟରୁ ନେଇ ଚାଲିଯିବା ସମୟରେ ସେ ଲୋତକରେ ଚକ୍ଷୁ ଛଳ ଛଳ କରି ମୋତେ ପ୍ରଣାମ କଲେ । ମୋର କଠୋର ଚକ୍ଷୁ ମଧ୍ୟ ତାଙ୍କର ଅବସ୍ଥା ଏବଂ ଭାବ-ଭଙ୍ଗୀ ଦେଖି ସହାନୁଭୂତି ପ୍ରକାଶର ଚେଷ୍ଟା କରିଥିଲା । ବନ୍ଦୀ ବା  କ ସହାନୁଭୂତି ଦେଖାଇପାରେ ?

କିଛି ସମୟ ପରେ ମୋତେ ସେମାନେ ଏକ ବଙ୍କା ରାସ୍ତା ଦେଇ ଗୋଟିଏ ଛୋଟ ପାହାଡ଼ ଉପରକୁ ଟାଣିନେଲେ । ପାହାଡ଼ର ଉପରକୁ ଯାଇ ଦେଖିଲି, ମୋର ସମ୍ମୁଖରେ ଅତୁଳ ପ୍ରାଚୀର ଦେହରେ ପ୍ରକାଣ୍ଡ ଦ୍ୱାର । ଦ୍ୱାର ଖୋଲା ଥିଲା । ସେହିବାଟେ ମୋତେ ଧାଡ଼ିଏ ଅନୁଚ୍ଚ କୋଠାର ସମ୍ମୁଖକୁ ନେଇଗଲେ । ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲି ଯେ, ଏତେ ଅନୁଚ୍ଚ ହୋଇ ମଧ୍ୟ ତାହା ଦ୍ୱିତଳ । ପାଖକୁ ପାଖ ଲାଗି ଅନେକ ଗୁଡ଼ିଏ ଛୋଟ ଛୋଟ ଦରଜା । ତଳେ ଧାଡ଼ିଏ ଏବଂ ଉପରେ ଧାଡ଼ିଏ । ସେ ସବୁ ମଧ୍ୟରୁ ଜଣେ ବଳିଷ୍ଠକାୟ ଯୁବକ ତଳ ମହଲାର ଗୋଟିଏ ଦରଜା ଖୋଲି ଅନ୍ୟମାନଙ୍କୁ କହିଲା, ଏହି କୋଠରିଟି ଖାଲି ଅଛି । ତାକୁ ଏଠାରେ ବନ୍ଦୀ କରି ରଖିପାର ।

କିଛି ସମୟ ପରେ ଜଣେ ଦୁର୍ବଳ ବୁଢ଼ିଆ, ନିଶୁଆ ଲୋକ ଆସି ଉପସ୍ଥିତ ହେଲେ । ତାଙ୍କୁ ଦେଖି ସମସ୍ତେ ମାନ୍ୟ କରି ପଛକୁ ଘୁଞ୍ଚିଗଲେ । ମୁଁ ତାଙ୍କୁ ପ୍ରଣାମ କଲି । ସେ ମୋତେ ଦେଖି ମୁରୁକି ମୁରୁକି ହସି ମୁଣ୍ଡ ଠୁଙ୍କାଇଲେ । ମୁଁ କିଛି ବୁଝିପାରିଲି ନାହିଁ । ମନରେ ମୋର ଭାରି ଭୟ ହେଲା । ଏପରି ଛୋଟ କୋଠରିରେ ବନ୍ଦୀ କରି ମୋତେ କେତେଦିନ ରଖିବେ ? ଏହା ଭାବୁ ଭାବୁ ମୋର ହୃଦୟ ଥରିଉଠିଲା । ସ୍ଥିର ହୋଇ ଠିଆହୋଇ ରହିଲି ।

କିଛି ସମୟ ପରେ ସେମାନେ ମଣିଆଁର ମାଙ୍କୁ ନେଇ ଉପସ୍ଥିତ ହେଲେ । ମୋତେ ଦେଖି ତାଙ୍କର ମୁଖ ଉଜ୍ଜ୍ୱଳ ଦେଖାଗଲା । ବଳିଷ୍ଠକାୟ ଲୋକଙ୍କୁ ତାଙ୍କ ପୂର୍ବୋକ୍ତ ନିଶୁଆ ଲୋକ ପଚାରିଲେ, ସେ କେଉଁ କୋଠରିରେ ବନ୍ଦ ଅଛି ?

ଆଜ୍ଞା ଏହି କୋଠରିରେ କହି ବଳିଷ୍ଠ ଯୁବକ ହାତ ବଢ଼ାଇ ଦେଖାଇ ଦେଲା । ମୋତେ ଯେଉଁ କୋଠରିରେ ବନ୍ଦୀ କରିବାକୁ ବସିଥିଲେ ସେ ତାହାର ପାଖ କୋଠରିକୁ ଦେଖାଇ ଦେଇଥିଲେ । ସେ କଅଣ, ମୁଁ ବା କଅଣ ବୁଝିପାରନ୍ତି ? ବିଶେଷ ମୁଣ୍ଡ ଖରଚ କରିବାକୁ ମୋତେ ପଡ଼ିଲା ନାହିଁ । ପୂର୍ବୋକ୍ତ ଲୋକଟି ପୁନର୍ବାର ପଚାରିଲା, ସ୍ତ୍ରୀ ଲୋକଟିକୁ ତା'ର କୋଠରିରେ ରଖିଲେ କ୍ଷତି କ'ଣ ? ସେ ତ ତାର ସ୍ୱାମୀ ।

ନା, ମୋତେ ସେପରି ଆଦେଶ ନାହିଁ । ସେମାନେ ସ୍ୱାମୀ ସ୍ତ୍ରୀ ହେଲେ ମଧ୍ୟ ମୁଁ ତମର ଏ ପ୍ରସ୍ତାବରେ ଏକମତ ନୁହେଁ । ଛୋଟ କୋଠରୀଟିରେ ଦୁଇ ଜଣଙ୍କୁ ରଖିଲେ ସେମାନଙ୍କର ଅଧିକ ଅସୁବିଧା ହେବ ।

ଅଉ ଯେ କୋଠରୀ ନାହିଁ ?

ସେ କଥା ମୁଁ ବେଶ୍ ଜାଣେ ।

ମୋ ଆଡ଼କୁ ଅଙ୍ଗୁଳି ଦେଖାଇ, ତେବେ ଏ ?

ତାର ବ୍ୟବସ୍ଥା ପରେ କରାଯିବ । ବର୍ତ୍ତମାନ ଯାଙ୍କୁ ବନ୍ଦୀ କର । ରମଣୀ ଆଡ଼କୁ ଅନାଇ—ଯାଅ ମା, ଏବେ ତମର ଘରକୁ ତମେ ଚାଲିଯାଅ । ସେହି ଘରେ ତ ତମକୁ ସାରାଜୀବନ କଟାଇବାକୁ ହେବ । ବୁଝିଲ— । ମୁଁ ଏଥର ମଣିଅଁର ମା'ଙ୍କ ଆଡ଼କୁ ଅନାଇ ଦେଖିଲି ତାଙ୍କର ମୁଖ କଳା ପଡ଼ିଯାଇଛି । ସେ କିଛି ନ ବୁଝିଲାପରି ଲୋକଟିର ପାଦତଳେ ମୁଣ୍ଡ ଲଗାଇ ଶିଶୁପରି କାନ୍ଦିବାକୁ ଲାଗିଲେ । କ୍ରୋଧରେ ମୋର ସମସ୍ତ ଶରୀର ଜଳିଉଠୁଥାଏ । ଦେଖିଲି, ସମସ୍ତେ ରମଣୀ ଆଡ଼କୁ ଚାହିଁଛନ୍ତି । ମୋ ଉପରେ ବିଶେଷ କାହାର ଦୃଷ୍ଟି ନାହିଁ । ମୁଁ ଧୀରେ ଧୀରେ ମୋର ଗୋଡ଼ର ବନ୍ଧନ ଫିଟାଇପକାଇଲି । କାଳେ କାହାର ସନ୍ଦେହ ହେବ ତେଣୁ ଦଉଡ଼ିଖଣ୍ଡି ଗୋଡ଼ର ଚାରିଆଡ଼େ ଘେରାଇଦେଲି । ଆଗରୁ ମୋର ହାତର ଦଉଡ଼ି ମୁଁ ଛିଣ୍ଡାଇ ପକାଇଥିଲି ।

ବର୍ତ୍ତମାନ ମୁଁ ମୁକ୍ତ; ତଥାପି ପଳାଇଯିବାକୁ ସାହସ ହେଉ ନ ଥାଏ । ଚାରିଆଡ଼େ ଲୋକ ଘେରି ରହିଛନ୍ତି । ରମଣୀ ଅନେକ ସମୟ ଶିଶୁ ପରି କାନ୍ଦି ପ୍ରାର୍ଥନା କଲେ, ମୁଁ ଚିରଦିନ ବନ୍ଦୀ ରହିବାକୁ ଚାହେଁ । ମୋତେ ଦୟାକରି ମୋ ସ୍ୱାମୀଙ୍କ ନିକଟରେ ଛାଡ଼ିଦିଅ । ଏତିକି ମୋର ମାଗୁଣି ।

ତାଙ୍କର ଏହି ଅନୁରୋଧ ରକ୍ଷା କରିବାକୁ କେହି ରାଜି ହେଲେ ନାହିଁ । ବଳାତ୍କାର ପୂର୍ବକ ତାଙ୍କୁ ଅନ୍ୟ କୋଠରୀ ଆଡ଼କୁ ଟାଣିନେଲେ ।

ମୁଁ ଦେଖିଲି, ମୋ ଉପରେ ସେତେବେଳେ କାହାର ଆଖି ପଡ଼ୁନାହିଁ । ସାହସ ଅବଲମ୍ବନ କରି ହୃଦୟରେ ହସ୍ତ ସ୍ଥାପନ କରି ଚୋରଙ୍କ ପରି ଧୀରେ ଧୀରେ ସେଠାରୁ ଖସିଆସିଲି । ଏଡ଼େ ବିପଦରେ ପଡ଼ି ମଧ୍ୟ ରମଣୀର ଅନୁରୋଧରେ ମୋର ହୃଦୟ ବିଗଳିତ ହୋଇଥିଲା । ତାଙ୍କୁ ଉଦ୍ଧାର କରିବାର ଆଉ ଉପାୟ କ'ଣ ? ପ୍ରଥମେ ନିଜେ ରକ୍ଷା ପାଏ । ଏପରି ଦୁର୍ବଳତା ମୋ ମନରେ ଆଉ କେବେ ଆସି ନ ଥିଲା । ନିଜର ଜୀବନ ନିମନ୍ତେ ଚୋରପରି ଲୁଚି ପଳାୟନ କରିବା ସେଦିନ ପ୍ରଥମ । ଯେତେଦୂର ସମ୍ଭବ, ମୋ ପରି ଅବସ୍ଥାପନ୍ନ ଯେ କେହି ଏପରି କରିବାକୁ ଟିକିଏ କୁଣ୍ଠିତ ହୋଇ ନ ଥାନ୍ତା ।

ଆଜି ଏହି ଅଗଙ୍ଗ ପର୍ବତରେ, ବୌଦ୍ଧମନ୍ଦିରରେ ବସି ମୁଁ ଚିନ୍ତା କରୁଛି, ଏହା କରିବାଦ୍ୱାରା ସମସ୍ତଙ୍କର ମଙ୍ଗଳ ହେବ । ମୁଁ କଳିଙ୍ଗକୁ ଯାଇ କଳିଙ୍ଗ ସମ୍ରାଟ ଲଲାଟେନ୍ଦୁଙ୍କୁ ସମସ୍ତ ଘଟଣା ଜଣାଇବି । ସେ ଏହାର ପ୍ରତିକାର ଅବଶ୍ୟ କରିବେ । ଯଦି ନ କରନ୍ତି, ମୁଁ ନିଜେ ନିଜେ କରିବି । ମୋର ତ ଆଉ ଧନର ଅଭାବ ନାହିଁ ।............

ମଣିଆ ଯନ୍ତ୍ରପରି ସମସ୍ତ ଘଟଣା ଗୋଟି ଗୋଟି କରି ପଢ଼ିଯାଉଛି । ବନ୍ଦୀଶାଳାରୁ ମୁକ୍ତ ହୋଇ ଭଜନା କିପରି ସହସ୍ର ବିପଦରୁ ଗୋଡ଼ ଖସାଇ ଶେଷରେ ବାଲିଦ୍ୱୀପରେ ଉପସ୍ଥିତ ହେଲା, ତାହାରହିଁ ବର୍ଣ୍ଣନା ।

ପୋଥି ବନ୍ଦକରି ମଣିଆଁ ଚିନ୍ତାକଲା, ମୋର ପିତା ସେହି ବନ୍ଦୀଶାଳାରେ ବନ୍ଦୀ ରହିଛନ୍ତି । ମାତା ମଧ୍ୟ ବନ୍ଦିନୀ ଅଛନ୍ତି । ମୁଁ ମୂର୍ଖ । ଯଦି ଏହା ଆଗରୁ ଜାଣି ପାରିଥାନ୍ତି ! ଜାଣିଥିଲେ ବନ୍ଦୀ ମୁଁ, ମୋ'ର କି କ୍ଷମତା ଅଛି ତାଙ୍କୁ ଉଦ୍ଧାର କରିପାରିବି ? ସେ ବୃଦ୍ଧ କିଏ ? ନିଜର ଜୀବନ ପଣ କରି ମୋତେ ମୁକ୍ତ କରିଛନ୍ତି । ସେହି ବୃଦ୍ଧ ତେବେ କ'ଣ ମୋର ପିତା ? ଅହୋ, ଆଜି ମୋର ମନ ଏପରି କାହିଁକି ଅଧୀର ହୋଇପଡ଼ୁଛି ! ସେହି ବୃଦ୍ଧ ମୋର ପିତା ? ସାକ୍ଷାତ୍ ଦେବତା ପିତୃଦେବଙ୍କ ସମ୍ମୁଖରେ ମୁଁ ଚିହ୍ନିପାରି ନାହିଁ ? ଭଗବାନ ମୋତେ ବତାଇ ଦିଅ ।

ମଣିଆଁ ଚକ୍ଷୁ ବନ୍ଦକରି ବେତ୍ରାସନ ଉପରେ ଢଳିପଡ଼ିଲା ।

ଅନେକ ଦିନ ଗତ ହୋଇଗଲାଣି । ଦିନୁଦିନ ମଣିଆଁର ମନର ଅବସ୍ଥା ମନ୍ଦ ହୋଇପଡ଼ୁଛି । ପ୍ରତ୍ୟହ ସୂର୍ଯ୍ୟଙ୍କର ଉଦୟ ଅସ୍ତ ଦେଖି ଦେଖି ସେ କ୍ଳାନ୍ତ । ଆଉ କେତେଦିନ ଏହିପରି ସେ ସମୁଦ୍ର ଉପରେ ଏକାକୀ ଭାସି ଭାସି ଯାଉଥିବ ? ସ୍ଥଳ, କାହିଁ ? କଳିଙ୍ଗ ଉପକୂଳ ଆଉ କେତେ ଦୂରରେ ?

ମଣିଆଁ ଦିନରେ ସୂର୍ଯ୍ୟ ଏବଂ ରାତ୍ରିରେ ଧ୍ରୁବତାରାକୁ ଦେଖି ଦିଗ ନିରୂପଣ କରେ । ସାଧ୍ୟଅନୁଯାୟୀ ନୌକାଟିକୁ ପଶ୍ଚିମ ଦିଗକୁ ଚଳାଇବାକୁ ଚେଷ୍ଟା କରେ । ସମୟ ସମୟରେ ହତାଶ ହୋଇ ଅହୁଲ ଛାଡ଼ି ଚୁପ୍‌କରି ବସି ଆକାଶ ଓ ସାଗରକୁ ଅନାଇଁ ରହିଥାଏ । କେବେ ବା ଭଜନାର ଦୈନିକ ଲିପି ଆଣି ପଢ଼େ । ସେଥିରେ ଏପରି ଘଟଣାମାନ ଲେଖାଥିଲା, ଯାହା ପଢ଼ିଲେ ମନରେ ଦମ୍ଭ ଆସେ । ସେ କେତେ ବିପଦରୁ ଉଦ୍ଧାର ପାଇ ଆସିଛନ୍ତି । ମଣିଆଁର ବିପଦ ତ ତା' ତୁଳନାରେ କିଛି ନୁହେଁ ।

ଦିନେ ଅନ୍ୟମନସ୍କ ଭାବରେ ମଣିଆଁ ଭଜନାର ଦୈନିକ-ଲିପି ଓଲଟାଉ ଓଲଟାଉ ତା'ର ନଜର ପଡ଼ିଗଲା—ଶେଷ ଅଡ଼କୁ ଗୋଟିଏ ପୃଷ୍ଠା ଉପରେ । ସେ ପଢ଼ିବାକୁ ଆରମ୍ଭ କଲା । ବାଲିଦ୍ୱୀପରୁ ଫେରିବାର ଅନେକ ଦିନ ହୋଇଗଲାଣି । ବୋଇତ କେବେ ତାମ୍ରଲିପ୍ତ କିମ୍ବା ଗୃଧ୍ରସରେ ଲାଗିବ, ମୋର କୌଣସି ନାଉରୀ

କହିପାରୁ ନାହାନ୍ତି । ସେମାନେ ବା କାହୁଁ ଜାଣିବେ ? ଜାଭାର ଲୋକ ଓଡ଼ିଆ ହେଲେ କ'ଣ ହେଲା, ଜାଭା ବିଷୟରେ ଯାହା କିଛି ଜାଣନ୍ତି । ଆଖପାଖ ଦ୍ୱୀପକୁ ଯା' ଆସ କରନ୍ତି ସିନା, ନିଜ ଦେଶକୁ ତ ଆଉ କେବେ ଆସି ନାହାନ୍ତି, ଜାଣିବେ କାହୁଁ ? ଯାହାହେଉ, ଆଶା କରେ ଅଳ୍ପଦିନ ଭିତରେ କଳିଙ୍ଗରେ ଉପସ୍ଥିତ ହେଲେ ସୁବର୍ଣ୍ଣଦ୍ୱୀପର ବନ୍ଦୀମାନଙ୍କୁ ମୁକ୍ତ କରିବାର ଚେଷ୍ଟା କରିପାରିବି ।

ଓଃ, ସେ ତ ଅନେକ ବର୍ଷ ତଳର କଥା । ରମଣୀ କ'ଣ ଅଦ୍ୟାପି ବଞ୍ଚି ରହିଛନ୍ତି । ମୁଁ ଭାରି ଭୁଲ୍ କରିଛି ! ଆଉରି ଥୋଡ଼ାଏ ରତ୍ନ ନେଇ ଆସିଥିଲେ ଭଲ ହୋଇଥାନ୍ତା ।

ଆହୁରି ପୃଷ୍ଠାଏ ଲେଉଟାଇ ମଣିଆଁ ପଢ଼ିଲା, ତାମ୍ରଲିପ୍ତର ବିଖ୍ୟାତ ସାଧବ ନାରାୟଣ ପଣ୍ଡାଙ୍କର ବୋଇତରେ ମୁଁ । ସାଧବଙ୍କ ପାଖରେ ତାଙ୍କର ସ୍ତ୍ରୀ ଉପବିଷ୍ଟା । ସେ ସୁନ୍ଦରୀ । ନାକ କାନରେ ବଉଳ ଛିଣ୍ଡା । ସେ ଭାରି ଶାନ୍ତ । ତାମ୍ରଲିପ୍ତର ଖବର ବୁଝିବାକୁ ତାଙ୍କର ବୋଇତ ସଙ୍ଗେ ମୋର ଏ ନୌକାଟି ଲଗାଇଥିଲି । ଜାଣି ନ ଥିଲି, ଏ ଜଣେ ଦସ୍ୟୁ ସର୍ଦ୍ଦାର । ସାଧବଙ୍କ ସମ୍ମୁଖରେ ବସି ମୁଁ କଥୋପକଥନ କରୁଥିଲି । ରମଣୀ ଟିକିଏ ଦୂରକୁ ଉଠିଯାଇ ବଙ୍କା ହୋଇ ଠିଆହୋଇ ସବୁ ଶୁଣୁଥିଲେ । ସାଧବଙ୍କର ମୂଳ ଉଦ୍ଦେଶ୍ୟ ବୁଝିପାରି ମୁଁ ଏକାଥରେ ମୋର ନୌକା ଉପରକୁ ଛୁଟିଆସିଲି ।

ଆହୁରି ପୃଷ୍ଠାଏ ଓଲଟାଇ ମଣିଆଁ ପଢ଼ିଲା,···ଯୁଦ୍ଧରେ ମୋର ସମସ୍ତେ ମଲେ । ମୁଁ ରତ୍ନଗୁଡ଼ିକର ଉପଯୁକ୍ତ ବ୍ୟବସ୍ଥା କରି ଏକାକୀ ଏହି କୋଠରୀରେ ବସି ଦୈନିକ ଲିପି ଲେଖୁଛି; କାରଣ ମୁଁ ଜାଣେ, ଶତ୍ରୁ ନୌକା ବୁଡ଼ାଇଦେବ । ବିଫଳ ଚେଷ୍ଟା ନିଷ୍ପ୍ରୟୋଜନ । ପୋଥି ଲେଖା ମୋର ପ୍ରଧାନ ଆନନ୍ଦ । ଅତଏବ ମନରେ ଦୁଃଖ ନ କରି ଅନ୍ତିମ ଦଶା ବରଣ କରିବି । ବାହାରେ ଏ କାହାର ଶବ୍ଦ ! ମୁଁ ଜାଣେ ମୋର ପ୍ରତ୍ୟେକ ନାବିକ ମୃତ । ଏମାନେ ନିଶ୍ଚୟ ଶତ୍ରୁ ! ଶତ୍ରୁ ?

ଏହିଠାରୁ ଭଜନାର ଦୈନିକ ଲିପି ସମାପ୍ତ ।

ଅନେକ ଦିନ ଗତ ହୋଇଗଲାଣି । ମଣିଆଁର ମନର ଅବସ୍ଥା ପରିବର୍ତ୍ତିତ ହୋଇନାହିଁ । ପୂର୍ବପରି ଅନନ୍ତ ସାଗର ବକ୍ଷରେ ଏକାକୀ ଭାସି ଭାସି ଚାଲିଛି । ଏଣେ ସାଗର ବକ୍ଷରେ ଲହରୀମାଳ ଯେପରି କଲକଲ ହୋଇ ଆସି ନୌକାରେ ବାଜୁଛନ୍ତି, ସେହିପରି ଯୁବକର ମନ ମଧ୍ୟରେ ସାହସ ଭାବନାର ଲହରୀ ଖେଳ

ଉଠୁଛି । ସର୍ବଦା ଜୀବନ ବିଷୟରେ ସନ୍ଦିହାନ । ସମୁଦ୍ର ମଧ୍ୟସ୍ଥ କୌଣସି ଅଜଣା ପଥରଦେହରେ ନୌକା ବାଜିଗଲା କି ? ଏପରି ଅବସ୍ଥାରେ ସାଧାରଣତଃ ମନୁଷ୍ୟ ମନରେ ଅନେକ ପ୍ରକାର କୁଭାବନା ଆସି ଉପସ୍ଥିତ ହୋଇଥାଏ ।

ସମୟ ସମୟରେ ମଣିଆଁ ଚିନ୍ତାକରେ, ଭଗବାନ ମୋ ପ୍ରତି ଏତେ ନିର୍ଦ୍ଦୟ କାହିଁକି ? ମୋର ପିତା ଚିରଦିନ ବନ୍ଦୀରହି ଶେଷରେ ସେହି ନିର୍ଜନ ଅନ୍ଧକାର ପ୍ରକୋଷ୍ଠରେ ପ୍ରାଣତ୍ୟାଗ କରିଥିବେ । ଆହା ! ଯଦି ପୂର୍ବରୁ ଜାଣି ପାରିଥାନ୍ତି, ସେ ମୋର ପିତା, ନିଜର ଜୀବନ ନିମନ୍ତେ ତାଙ୍କୁ ସେପରି ଅବସ୍ଥାରେ କଦାପି ଛାଡି ପଳାଇ ଆସି ନ ଥାନ୍ତି । ମୃତ୍ୟୁ ଯନ୍ତ୍ରଣାରେ ସେ ଅଧୀର ହେଉଥିଲେ ମଧ୍ୟ ମୋର ମୁକ୍ତି ନିମନ୍ତେ ଏତେ ଅସ୍ଥିର ହୋଇପଡ଼ିଥିଲେ କାହିଁକି ? ସେ କ'ଣ ତେବେ ଜାଣି ପାରିଥିଲେ ମୁଁ ତାଙ୍କର ଅଧମ ପୁତ୍ର ? ତେବେ, ମୋତେ ଜଣାଇ ନ ଦେଲେ କାହିଁକି ? ସେ ମୋର ପିତା ହେଉନ୍ତୁ ଅବା ନ ହେଉନ୍ତୁ, ତାଙ୍କର ସେବାରେ ମୁଁ କୌଣସି ତ୍ରୁଟି କରିନାହିଁ ।

ଆଉ ମୋର ମା, ସେ ମୋ ନିକଟରେ ବନ୍ଦିନୀ ଥିଲେ, ମୁଁ ଏହା କାହୁଁ ଜାଣିବି ? ମୋତେ ଯେ ପୁତ୍ର ପରି ଆବାଲ୍ୟରୁ ପାଳନ କରିଥିଲେ ତାଙ୍କର ଦଶା ଶେଷରେ ଏହାହିଁ ହେଲା ! ଯେଉଁ ବାଲିଦ୍ୱୀପର ଧନ ନିମନ୍ତେ ସୁବର୍ଣ୍ଣଦ୍ୱୀପରେ ବୃଦ୍ଧ ଏତେ ଉପଦେଶ ଦେଇଥିଲେ, ସେ ଧନ ମୋର ପାଳକ ପିତା ପାଇ ଭୋଗ କରି ପାରିଲେ ନାହିଁ । ତାଙ୍କର ମହତ୍ ଉଦ୍ଦେଶ୍ୟ ପୂର୍ଣ୍ଣକରି ପାରିଲେ ନାହିଁ । ତାଙ୍କର ସମସ୍ତ ଇଚ୍ଛା ମୋତେ ପୂରଣ କରିବାକୁ ହେବ ।

କିପରି ପାରିବି ? ଯାହାର ଜୀବନର ସ୍ଥିରତା ନାହିଁ, ସେ ପୁଣି ମହତ୍ ଉଦ୍ଦେଶ୍ୟ ପୂର୍ଣ୍ଣ କରିବାକୁ ଆଶା କରିପାରେ ? ମଣିଆଁ ଏହି ସମସ୍ତ ଚିନ୍ତା ଭାବୁ ଭାବୁ ସୁଶୀଳାର କଥା ମନେ ପଡ଼େ । ସୁଶୀଳା ବିଶ୍ୱାସଘାତିନୀ ! ସୁଶୀଳା କୃତଘ୍ନୀ ! ସେ ଥରେ ଜଣକୁ ସ୍ୱାମୀରୂପେ ବରଣ କରି ପୁଣି ଅନ୍ୟକୁ ବରଣ କରିଛି ! ନଚେତ ସେ କିଏ ହୋଇପାରେ ? ନାରାୟଣ ପଣ୍ଡାଙ୍କ ଜାହାଜରେ ଥିବା ଯେଉଁ ରମଣୀ ବିଷୟରେ ଦୈନିକ ଲିପିରେ ଲେଖା ଅଛି, ସେ ରମଣୀ ସୁଶୀଳା ବ୍ୟତୀତ ଅନ୍ୟ କେହି ହୋଇ ନ ପାରେ । ତା'ର ନାକ କାନର ବଉଳ ଛିଣ୍ଡା । ସେ ବନ୍ଦୀ ହୋଇ ଛଡ଼ା ହୋଇଥିଲା । ଅତଏବ ସୁଶୀଳା ବିନା ସେ ଆଉ କେହି ନୁହେଁ ।

ଧୀବର କନ୍ୟା ସୁଶୀଳାକୁ ବିଖ୍ୟାତ ଦସ୍ୟୁ ନାରାୟଣ ସାଧବ ବିବାହ କରିଛନ୍ତି, ଏହା ତାଙ୍କ ପକ୍ଷରେ ସାମାନ୍ୟ ଅପମାନର କଥା ନୁହେଁ । ସେ ବ୍ରାହ୍ମଣର ପୁତ୍ର, ଏ ଧୀବର କନ୍ୟା । ସମାଜ ଅନୁମତି ଦିଅନ୍ତା କିପରି ? ସୁଶୀଳା ଧୀବର କନ୍ୟା ବ୍ୟତୀତ ଅନ୍ୟ କିଛି ବୋଲି କେହି ଜାଣେ ନାହିଁ । ବନ୍ଦୀଶାଳାରେ ଥିବା ସମୟରେ ପ୍ରହରୀ ମୁଖରୁ ଶୁଣିଥିଲି, ନାରାୟଣ ସାଧବ କଳିଙ୍ଗ ପଲ୍ଲୀର ଜଣେ ବିଖ୍ୟାତ୍ ବଣିକଙ୍କର କନ୍ୟା ସହିତ ବିବାହିତ । ଅତଏବ, ସୁଶୀଳାକୁ ନାରାୟଣ

ସାଧବ କଦାପି ବିବାହ କରି ନାହାନ୍ତି । ସେ ରକ୍ଷିତା ପରି ତାଙ୍କର ବୋଇତରେ ରହିଛି । ଶେଷରେ ସୁଶୀଳାର ଏହି ଗତି ହେଲା ? ଭଗବାନ ତାକୁ ବେଶ୍ୟା କରିବାକୁ ସଂସାରକୁ ପଠାଇଥିଲେ ! •

ନା, ସୁଶୀଳା କଦାପି ସେପରି ହୋଇ ନ ପାରେ । ଆଜିଠାରୁ ଭାବିବି ସୁଶୀଳା ମୃତା । ସେ ମରିଛି କେବଳ ମୋତେ ଭାବି ଭାବି । ସେ ଜାଣେ, ନାରାୟଣ ସାଧବ ମୋତେ ବନ୍ଦୀ କରିଛି । ଯଦି ସେ ନାରାୟଣ ସାଧବର ସ୍ତ୍ରୀ ହୋଇ, ଅବା ବିଦେଶରେ ମନୋରଞ୍ଜନ କରିବାକୁ ନାରାୟଣ ସାଧବର ବୋଇତରେ ରହିଥାନ୍ତା, ମୋତେ ମୁକ୍ତ କରିବାକୁ ଅବଶ୍ୟ ଚେଷ୍ଟା କରିଥାନ୍ତା ! ମୋ ପ୍ରତି କ'ଣ ତା'ର ଟିକିଏ ହୋଇ ଦୟା ହୁଅନ୍ତା ନାହିଁ ? ବାଲ୍ୟ କାଳର ସ୍ନେହ ମମତା, ବିଦାୟକାଳର ହୃଦୟବିଦାରକ ବାକ୍ୟ, ଏକାଥରେ ଭୁଲିଯାନ୍ତା ସେ ! ଏତେଦିନ ତା' ନିକଟରୁ ଦୂରରେ ଥାଇ ମଧ୍ୟ ଦିନେ ହେଲେ ତ କେବେ ତା'ର କଥା ଭୁଲିପାରି ନାହିଁ ! ତାକୁ ହୃଦୟରେ ଧରି ରଖିପାରି ନାହିଁ ସତ; କିନ୍ତୁ ସର୍ବଦା ତା'ର ସ୍ମୃତିକୁ ହୃଦରେ ଜଗାଇ ରଖିଛି ।

ନୌକା ଉପରେ ଟହଲି ଟହଲି ସୁଶୀଳା କଥା ଭାବୁଥିବା ସମୟରେ ତା'ର ଶୂନ୍ୟ ଚକ୍ଷୁ ଦ୍ୱୟ ସମୁଦ୍ରର କାଳିମା ଉପରେ ସ୍ଥିର ଥିଲା । ଚକ୍ଷୁ ଫେରାଇ ଦେଖିଲା, ଦୂରରେ ଗୋଟିଏ ପ୍ରକାଣ୍ଡ ବୋଇତ । ବହୁଦୂରରେ ଯାଉଥିବାରୁ ତା'ର ଗତି କେଉଁ ଦିଗକୁ ସେ ନିରୂପଣ କରିପାରିଲା ନାହିଁ । କ୍ଷଣକ ମଧ୍ୟରେ ଆକାଶରେ ବିଦ୍ୟୁତ୍ ପରି ତାର ହତାଶ ମନରେ ଆଶା ଚମକିଉଠିଲା । ମାତ୍ର, ଆକାଶ ବକ୍ଷରେ ବିଦ୍ୟୁତ୍ ପରି ତା'ର ସେ ଆଶା ଅଧିକ ସମୟ ନ ରହି ନୈରାଶ୍ୟ ଅନ୍ଧକାରରେ ମିଶିଗଲା । ଯୁବକ ସତୃଷ୍ଣ ନୟନରେ ନୌକା ଆଡ଼କୁ ଅନାଇ ଭାବିଲା, ଏ ଯଦି ନାରାୟଣ ସାଧବର ବୋଇତ ହୋଇଥାଏ, ତେବେ ତ ମହିରଗରୁ ଯାଇ କାନ୍ତାରରେ ପଡ଼ିଲାପରି ହେବ । ସେ ନିର୍ଦ୍ଦୟ ଜୀବନ ନ ନେଇ ଛାଡ଼ିଦେବ ନାହିଁ । ନାରାୟଣ ସାଧବ କୌଣସି ବୋଇତ କିମ୍ବା ନୌକାକୁ ଆକ୍ରମଣ କଲେ ଧ୍ୱଂସ ନ କରି ଛାଡ଼ନ୍ତି ନାହିଁ । ମୋତେ ସେ ମାରି ପକାଇବେ । ନୌକାଟିକୁ ବୁଡ଼ାଇଦେବେ । ମାତ୍ର ନିର୍ଜ୍ଜନତା ଠାରୁ ବରଂ ମୃତ୍ୟୁ ଭଲ ।

ବିଳମ୍ବ କଲେ ବୋଇତ ହୁଏତ ପାଖକୁ ନ ଆସି ଅନ୍ୟ ଦିଗରେ ଅଦୃଶ୍ୟ ହୋଇପାରେ । ଏତେଦିନ ପରେ, ମନରେ ଯେଉଁ କ୍ଷୀଣ ଆଶା ଉଦୟ ହୋଇଛି, ତାହା ବିଲୁପ୍ତ ହେବ । ଜୀବନ ବିଷୟରେ ଏପରି ସନ୍ଦିହାନ ହୋଇ ରହିବି କାହିଁକି ? ଥରେ ଚେଷ୍ଟା କରି ଦେଖେଁ । କୌଣସି ପ୍ରକାରେ ମୁକ୍ତ ତ ହେବି । ହୁଏତ ମୁକ୍ତି ଏପରି ଅବସ୍ଥାରୁ, ନତୁବା ମୁକ୍ତି ଚିରଦିନ ନିମନ୍ତେ, କର୍ମମୟ ଜଗତ୍ ବକ୍ଷରୁ । ଦେହର ସମସ୍ତ ଶକ୍ତି ଏକତ୍ରିତ କରି ଯୁବକ ଆହୁଲା ପକାଇଲା ।

କିଛି ସମୟ ପରେ ବୋଇତର ନିକଟକୁ ଆସି ଦେଖିଲା, ମୋଟାକାରେ ଲେଖା ହୋଇଛି ଯଦୁନାଥ ମିଶ୍ର ।

ମନରେ ଆଶା ବାନ୍ଧି ବୋଇତର ନାଉରୀମାନଙ୍କୁ ଡାକି କହିଲା, ମୋତେ ବୋଇତକୁ ନିଅ ।

ନାଉରୀମାନେ ସୌଦାଗରଙ୍କର ଅନୁମତି ମାଗିବାକୁ ଗଲେ । ସୌଦାଗର ଆଶ୍ଚର୍ଯ୍ୟ ହେଲେ ଯେ, ଏତେବଡ଼ ନୌକାଟିରେ କେବଳ ଜଣେ ମନୁଷ୍ୟ ବ୍ୟତୀତ ଆଉ କେହି ନାହିଁ । ସେ ଜଣକ ମନୁଷ୍ୟ ହେଲେ ମଧ୍ୟ ବଡ଼ ଭୟଙ୍କର ଦେଖା ଯାଉଅଛି । ମୁଣ୍ଡର ବାଳ ବଢ଼ି ଅଣ୍ଟାଯାକେ ପଡ଼ିଛି । ମୁହଁରେ ବେଡାଏ ରୁଢ଼ । ଲୁଗା ପଟା ଛିଣ୍ଡା ଓ କୋଚଟ ମଇଳା । ଜଙ୍ଗଲୀ ଜନ୍ତୁଙ୍କ ପରି ଅଙ୍ଗୁଠିର ନଖ ଗୁଡ଼ାକ ବଢ଼ିଛି । ଅଙ୍ଗ ଦୁର୍ବଳ । ଦେହରେ ବୋଧହୁଏ ଯଥେଷ୍ଟ ଶକ୍ତି ଅଛି । ନୋହିଲେ, ସେ ଏକାକୀ ନୌକା ବାହାନ୍ତା କିପରି ?

ସାଧବ ମଣିଅଁକୁ ଅନେକ ସମୟ ନିରୀକ୍ଷଣ କରି ଲମ୍ବା ମୁଣ୍ଡରେ ହାତ ବୁଲାଇ ନିକଟସ୍ଥ ଜଣେ ଅନୁଚରକୁ କହିଲେ, ଯାଅ, ନାଉରୀମାନଙ୍କୁ କହିଦିଅ, ସେମାନେ ବୋଇତ ଚଳାନ୍ତୁ । ସେ ତ ପାଗଳ ପରି ଦିଶୁଛି । ତାକୁ ବୋଇତକୁ ଆଣିବା ଅନ୍ୟାୟ । ଭୁଝିଲ କହେ କେନାଏଁ, ନିଜ ଦୁଃଖକୁ ହାରି ଗୁହାରି ନାହିଁ, ପର ଦୁଃଖ ବୁଝୁଛି କିଏ ।

ନୌକା ଉପରୁ ଯୁବକ ଦେଖିଲା, ସୌଦାଗର ଜଣେ ଯୁବକ । ମୁଣ୍ଡରେ ଫେଟା । କାନ୍ଧରେ ପଇତା । ଲମ୍ବା ମୁଣ୍ଡ । ସୌଦାଗରଙ୍କ କଥା ଶୁଣି ହତାଶ ହେଲା । ଉଚ୍ଚସ୍ୱରରେ ଡାକି କହିଲା, ବିପନ୍ନର ସହାୟ ହେବା ପ୍ରତ୍ୟେକ ମନୁଷ୍ୟର କର୍ତ୍ତବ୍ୟ । ମୋତେ ରକ୍ଷାକର ।

ସୌଦାଗର ପଚାରିଲେ, ତେମେ କ'ଣ ବିପଦାପନ୍ନ ? ମୋତେ ଏହା ଜଣା ନ ଥିଲା । ମୁଁ ଭାବିଲି କାମଧନ୍ଦାରେ କାହିଁ ଯାଉଛ ବୋଲି ।

ଏପରି ଗୋଟିଏ ଅନର୍ଥକ କଥାରେ ମଣିଅଁର ଭାରି ରାଗ ହେଲା । ସେ କହିଲା, ସୌଦାଗର ମହାଶୟ, ଆପଣ କ'ଣ ଦେଖିପାରୁ ନାହାନ୍ତି ଯେ, ଏତେବଡ଼ ନୌକାରେ ମୁଁ ଏକା ! ନୌକା ଚଳାଇବାର କ୍ଷମତା ମୋର ନାହିଁ । ବିସ୍ତୀର୍ଣ୍ଣ ମହାସାଗର ବକ୍ଷରେ ଏହି କ୍ଷୁଦ୍ର ନୌକାଟି ଯହିଁ ଇଚ୍ଛା ତହିଁ ଭାସି ଯାଉଛି । ଏହାଠାରୁ ବଳି ଅଧିକ ବିପଦ ଆଉ କ'ଣ ହୋଇପାରେ ? ଦୟାକରି ମୋତେ ବୋଇତରେ ସ୍ଥାନ ଦିଅନ୍ତୁ ।

ତମର ଅନୁରୋଧ ରକ୍ଷା କରିବି । ତୁମେ ବିପଦରେ ପଡ଼ିଛ ସତ; କିନ୍ତୁ ପରିଚୟ ନ କହିଲେ ବୋଇତରେ ସ୍ଥାନ ଦେବା ଠିକ୍ ମନେ କରୁନାହିଁ । ତୁମେ ହୁଏତ ଦସ୍ୟୁ ହୋଇପାର ।

ମଣିଅଁ କହିଲା, ମନେ କରନ୍ତୁ ମୁଁ ଜଣେ ଦସ୍ୟୁ । କିନ୍ତୁ ଜଣେ ଦସ୍ୟୁ ଆପଣଙ୍କର କିଛି କ୍ଷତି କରିପାରେ କି ?

ନୌକା ଭିତରେ ଯେ ଆହୁରି ଅନେକ ଲୋକ ଲୁଚି ନ ରହିଛନ୍ତି, ଏହାର ପ୍ରମାଣ କ'ଣ ? ନିଜେ ହୁସିଆର ହୋଇ ଆଗରୁ ବାଟ କାଟିଲେ ଅଗଗୋଡ଼ରେ କଣ୍ଟା ବାଜିବ ନାହିଁ । ମୋର ଭାରି ସନ୍ଦେହ ହେଉଛି । ଏତେ ବଡ଼ ଡଙ୍ଗାଟିରେ କି କେବେ ମୋଟେ ଜଣେ ଲୋକ ଥାଇପାରେ ?

ଆପଣ ଭାରି ସନ୍ଦେହୀ, ଯଦି ମୋର ଅବସ୍ଥା ବୁଝି ପାରୁ ନ ଥାନ୍ତି, ମୁଁ ଆଉ ଅଧିକ କିଛି କହିପାରିବି ନାହିଁ । ଏଣିକି ଆପଣଙ୍କର ଇଚ୍ଛା ।

ମୁଁ ପ୍ରଥମେ ଜାଣିବାକୁ ଚାହେଁ, ଏତେବଡ଼ ନୌକାଟିରେ କେମିତି ଜଣେ ଲୋକ ଅଛି କାହିଁକି ? ତାପରେ ବିଚାର କରି ତମକୁ ସଙ୍ଗରେ ନେବାର ବ୍ୟବସ୍ଥା କରିବି ?

ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ପ୍ରସ୍ତୁତ ଅଛି । ପ୍ରତ୍ୟେକ ଘଟଣା ବର୍ଣ୍ଣନା କରିବାକୁ ଗଲେ ଅନେକ ସମୟ ଲାଗିବ । ଆପଣ ରହିଲେ ବୋଇତ ଉପରେ, ମୁଁ ରହିଲି ଏତେ ଦୂରରେ ନୌକା ଉପରେ । ଏପରି ଅବସ୍ଥାରେ ମୁଁ ଏବେ କେତେ ଚିତ୍କାର କରିକହିବି ? ମୁଁ ଯାହା କହିବି ଯଦି ତହିଁରେ ବିଶ୍ୱାସ କରିବାକୁ ଚାହାଁନ୍ତି, ତେବେ ବର୍ତ୍ତମାନ ବିଶ୍ୱାସ କରନ୍ତୁ ଯେ ମୁଁ ଜଣେ ଦରିଦ୍ର ହତଭାଗ୍ୟ ଯୁବକ । ଜଳଦସ୍ୟୁ ନୁହେଁ । ଭାଗ୍ୟର ପରିବର୍ତ୍ତନରୁ ଏପରି ଅବସ୍ଥାରେ ପଡ଼ିଛି । ମୋତେ ଆପଣଙ୍କ ବୋଇତରେ ସ୍ଥାନ ଦିଅନ୍ତୁ । ପରେ ମୁଁ ଗୋଟି ଗୋଟି କରି ସମସ୍ତ ଘଟଣା ଜଣାଇବି ।

ସୌଦାଗରଙ୍କ ଆଦେଶରେ ମଣିଅଁ ବୋଇତରେ ସ୍ଥାନ ପାଇଲା । ପରେ ସୌଦାଗର ବୁଝି ପାରିଲେ, ତାଙ୍କର ଭୟ ନିରର୍ଥକ । ମଣିଅଁର କଥାନୁଯାୟୀ ନୌକାରୁ କେତେଗୁଡ଼ିଏ ପଦାର୍ଥ ବୋଇତକୁ ଅଣାଗଲା । ନୌକାଖଣ୍ଡି ମୋଟା କତା ଦଉଡ଼ିରେ ବାନ୍ଧି ବୋଇତର ପଛମଙ୍ଗରେ ଯୋଡ଼ି ଦେଲେ ।

ସୌଦାଗରଙ୍କ ନାମ ରାଧାଶ୍ୟାମ ମିଶ୍ର । ତାମ୍ରଲିପ୍ତର ଜନୈକ ବଣିକ ଯଦୁନାଥ ମିଶ୍ରଙ୍କର ଏକମାତ୍ର ପୁତ୍ର । ପିତାଙ୍କର ମୃତ୍ୟୁ ପରେ ପିତାଙ୍କ କାର୍ଯ୍ୟଭାର ଗ୍ରହଣ କରି ବାଣିଜ୍ୟ କରିବାକୁ ବିଦେଶ ବାହାରିଛନ୍ତି । ପିତାଙ୍କ ସଙ୍ଗେ ଏଥି ପୂର୍ବରୁ ଅନେକ ଥର ଯା'ଆସ କରି ସମୁଦ୍ର ସଙ୍ଗେ ସେ ଉତ୍ତମରୂପେ ପରିଚିତ ।

ରାଧାଶ୍ୟାମ ଦେଖିଲେ, ମଣିଅଁକୁ ବୋଇତରେ ସ୍ଥାନ ଦେଇ ସେ ଭଲ କରିଛନ୍ତି । ପ୍ରଥମ କଥା, ମଣିଅଁର ଜୀବନ ରକ୍ଷା କରି ପାରିଅଛନ୍ତି । ଦ୍ୱିତୀୟରେ,

ମଣିଆଁ ସମୁଦ୍ର ବିଷୟରେ ଅନେକ କଥା ଜାଣେ । ତା'ର କାର୍ଯ୍ୟ ବିଷୟକ ଅଭିଜ୍ଞତା ଅଳ୍ପ; କିନ୍ତୁ ବୁଦ୍ଧି ତୀକ୍ଷ୍ଣ ।

ଆକାଶରେ ତାରା ଗଣି ଦିଗ ଏବଂ ସ୍ଥାନ ନିର୍ଣ୍ଣୟ କରିବାରେ ସେ ସୁଦକ୍ଷ । ମଧ୍ୟାହ୍ନ ସୂର୍ଯ୍ୟଙ୍କର କୋଣ ନିର୍ଣ୍ଣୟ କରି ମଣିଆ ଅକ୍ଷାଂଶର ପରିମାଣ ସ୍ଥିର କରିପାରେ । କହିପାରେ, ତାମ୍ରଲିପ୍ତର କେତେ କୋଶ ଦୂରରେ ବୋଇତ ଅଛି । ମଣିଆଁର ପ୍ରଧାନ ଗୁଣ—ସେ ଭଲ ଲକ୍ଷ୍ୟ କରି ପାରୁଥିଲା । ଶର କିମ୍ବା ବାଟୁଳି ସନ୍ଧାନ କରିବାରେ ସେ ସିଦ୍ଧହସ୍ତ ।

ରାଧାଶ୍ୟାମଙ୍କର ଲୋକ ତୋପ ଫୁଟାଇ ପାରୁଥିଲେ । ବୋଇତରେ ନିଜ କାରଖାନା ଗଢ଼ା ଦୁଇଗୋଟି ତୋପ ରଖା ହୋଇଥିଲା । ରାଧାଶ୍ୟାମ ସମ୍ବଲପୁର ଅଞ୍ଚଳର ଜଣେ ବିଖ୍ୟାତ ବାଣୁଆକୁ ପାଖରେ ରଖିଥିଲେ । ସେ ତାଙ୍କୁ ଜେନାଏଁ ବୋଲି ଡାକନ୍ତି । ତାଙ୍କର କାର୍ଯ୍ୟ ସେ କେବଳ ବାରୁଦ ତିଆରି କରିବେ । ସମୟ ସମୟରେ କେବଳ ଶବ୍ଦ ହେବ ବୋଲି ମିଶ୍ରଙ୍କ ଆଦେଶ ମତେ ତୋପ ଫୁଟୁଥିଲା । ଏଥର ମଣିଆଁ ସାହାଯ୍ୟରେ ତୋପଦ୍ୱାରା ସମୁଦ୍ରରୁ ଅନେକ ଜୀବ ମରିଗଲା । ମଣିଆଁ ତୋପକୁ ଏପରି କୋଣ କରି ରଖିପାରେ ଯେ, ତୋପ ଫୁଟାଇଲେ ଗୁଳା ଆକାଶକୁ ଉଠି ଶେଷରେ ଠିକ୍ ନିର୍ଦ୍ଦିଷ୍ଟ ସ୍ଥାନରେ ପଡ଼େ, ଜନ୍ତୁଙ୍କୁ ମାରିପକାଏ । ମଣିଆଁ ମିଶ୍ରଙ୍କୁ ଏବଂ ତାଙ୍କ ଲୋକଙ୍କୁ ଶିଖାଇଲା, ତୋପ କେତେ କୋଣ କରି ରଖିଲେ ଗୁଳା କିପରି ଠିକ୍ ସ୍ଥାନରେ ପଡ଼ିବ । ନିଜେ ମଧ୍ୟ ବାରୁଦ କିପରି ତିଆରି କରିବାକୁ ହୁଏ, ଜେନାଙ୍କଠାରୁ ଶିଖିଲା ।

ମିଶ୍ରଙ୍କର ଯେତେ ସମ୍ପତ୍ତି, ତହିଁରେ ସେ ସାରାଜୀବନ ଆନନ୍ଦରେ କଟାଇ ପାରିଥାନ୍ତେ । ବାଣିଜ୍ୟ କରି ଧନ ଉପାର୍ଜନ କରିବା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ନ ଥିଲା । ଉଦ୍ଦେଶ୍ୟ ଥିଲା, ଶତ୍ରୁ ନାଶ । ଯେଉଁ ଶତ୍ରୁ ସପ୍ତପୁରୁଷରୁ ତା'ଙ୍କ ସଙ୍ଗେ ବିବାଦ କରି ଆସୁଛି, ତାଙ୍କର ଏମାନେ କୌଣସି ଅନିଷ୍ଟ କରି ପାରୁନାହାନ୍ତି । ଏହାହିଁ ରାଧାଶ୍ୟାମଙ୍କ ମନରେ ମହାଦୁଃଖ । ପିତା କେବଳ ପ୍ରତିଶୋଧ କଥା ଚିନ୍ତାକରି ମଲେ । ପ୍ରତିଶୋଧ ନେଇପାରିଲେ ନାହିଁ ।

ଶତ୍ରୁ ସାଧାରଣ ଲୋକ ନୁହେ । ଧନର ପ୍ରଭାବରେ ଦେଶର ସମସ୍ତଙ୍କର ମୁହଁ ବାନ୍ଧିରଖିଛି । କେହି ହେଲେ ସେ ବଂଶର ବିପକ୍ଷରେ ଠିଆ ହୋଇ ପଦେ କଥା କହିପାରୁ ନାହିଁ । ଯଦି ନ୍ୟାୟ ନିମନ୍ତେ ରାଜଦରବାରରେ ଆବେଦନ କରନ୍ତି ତାମ୍ରଲିପ୍ତର ରାଜା କାନ୍ଥୁ ଭୂୟାଁ ହସରେ ଉଡ଼ାଇଦେବେ । ଉତ୍କଳ ସମ୍ରାଟ ଲଲାଟେନ୍ଦୁଙ୍କ ନିକଟରେ ଅଭିଯୋଗ କଲେ ରାଜା ଅସନ୍ତୁଷ୍ଟ ହେବେ । ହେଣ୍ଟା କୈବର୍ତ୍ତ ବାହୁବଳରେ ସିଂହାସନ ଅଧିକାର କରିଛନ୍ତି ବୋଲି ବଂଶଲକ୍ଷଣ ଭୁଲି ପାରିବେ ନାହିଁ । ଯଦି ତାଙ୍କୁ ଅଗ୍ରାହ୍ୟ କରି ଲଲାଟେନ୍ଦୁଙ୍କ ନିକଟକୁ ଯିବାକୁ ହୁଏ,

ମଣିଆଁ କହିଲା, ମନେ କରନ୍ତୁ ମୁଁ ଜଣେ ଦସ୍ୟୁ । କିନ୍ତୁ ଜଣେ ଦସ୍ୟୁ ଆପଣଙ୍କର କିଛି କ୍ଷତି କରିପାରେ କି ?

ନୌକା ଭିତରେ ଯେ ଆହୁରି ଅନେକ ଲୋକ ଲୁଚି ନ ରହିଛନ୍ତି, ଏହାର ପ୍ରମାଣ କ'ଣ ? ନିଜେ ହୁସିଆର ହୋଇ ଆଗରୁ ବାଡ଼ କାଟିଲେ ଅଗଗୋଡ଼ରେ କଣ୍ଟା ବାଜିବ ନାହିଁ । ମୋର ଭାରି ସନ୍ଦେହ ହେଉଛି । ଏଡ଼େ ବଡ଼ ଡଙ୍ଗାରେ କି କେବେ ମୋଟେ ଜଣେ ଲୋକ ଥାଇପାରେ ?

ଆପଣ ଭାରି ସନ୍ଦେହୀ, ଯଦି ମୋର ଅବସ୍ଥା ବୁଝି ପାରୁ ନ ଥାନ୍ତି, ମୁଁ ଆଉ ଅଧିକ କିଛି କହିପାରିବି ନାହିଁ । ଏଣିକି ଆପଣଙ୍କର ଇଚ୍ଛା ।

ମୁଁ ପ୍ରଥମେ ଜାଣିବାକୁ ଚାହେଁ, ଏତେବଡ଼ ନୌକାଟିରେ ତେମେ ଜଣେ ଲୋକ ଅଛ କାହିଁକି ? ତାପରେ ବିଚାର କରି ତମକୁ ସଙ୍ଗରେ ନେବାର ବ୍ୟବସ୍ଥା କରିବି ?

ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାକୁ ମୁଁ ପ୍ରସ୍ତୁତ ଅଛି । ପ୍ରତ୍ୟେକ ଘଟଣା ବର୍ଣ୍ଣନା କରିବାକୁ ଗଲେ ଅନେକ ସମୟ ଲାଗିବ । ଆପଣ ରହିଲେ ବୋଇତ ଉପରେ, ମୁଁ ରହିଲି ଏତେ ଦୂରରେ ନୌକା ଉପରେ । ଏପରି ଅବସ୍ଥାରେ ମୁଁ ଏବେ କେତେ ଚିତ୍କାର କରିକହିବି ? ମୁଁ ଯାହା କହିବି ଯଦି ତାହିଁରେ ବିଶ୍ୱାସ କରିବାକୁ ଚାହାଁନ୍ତି, ତେବେ ବର୍ତ୍ତମାନ ବିଶ୍ୱାସ କରନ୍ତୁ ଯେ ମୁଁ ଜଣେ ଦରିଦ୍ର ହତଭାଗ୍ୟ ଯୁବକ । ଜଳଦସ୍ୟୁ ନୁହେଁ । ଭାଗ୍ୟର ପରିବର୍ତ୍ତନରୁ ଏପରି ଅବସ୍ଥାରେ ପଡ଼ିଛି । ମୋତେ ଆପଣଙ୍କ ବୋଇତରେ ସ୍ଥାନ ଦିଅନ୍ତୁ । ପରେ ମୁଁ ଗୋଟି ଗୋଟି କରି ସମସ୍ତ ଘଟଣା ଜଣାଇବି ।

ସୌଦାଗରଙ୍କ ଆଦେଶରେ ମଣିଆଁ ବୋଇତରେ ସ୍ଥାନ ପାଇଲା । ପରେ ସୌଦାଗର ବୁଝି ପାରିଲେ, ତାଙ୍କର ଭୟ ନିରର୍ଥକ । ମଣିଆଁର କଥାନୁଯାୟୀ ନୌକାରୁ କେତେଗୁଡ଼ିଏ ପଦାର୍ଥ ବୋଇତକୁ ଅଣାଗଲା । ନୌକାଖଣ୍ଡି ମୋଟା କତା ଦଉଡ଼ିରେ ବାନ୍ଧି ବୋଇତର ପଛପଟରେ ଯୋଡ଼ି ଦେଲେ ।

ସୌଦାଗରଙ୍କ ନାମ ରାଧାଶ୍ୟାମ ମିଶ୍ର । ତାମ୍ରଲିପ୍ତର ଜନୈକ ବଣିକ ଯଦୁନାଥ ମିଶ୍ରଙ୍କର ଏକମାତ୍ର ପୁତ୍ର । ପିତାଙ୍କର ମୃତ୍ୟୁ ପରେ ପିତାଙ୍କ କାର୍ଯ୍ୟଭାର ଗ୍ରହଣ କରି ବାଣିଜ୍ୟ କରିବାକୁ ବିଦେଶ ବାହାରିଛନ୍ତି । ପିତାଙ୍କ ସଙ୍ଗେ ଏଥି ପୂର୍ବରୁ ଅନେକ ଥର ଯା'ଆସ କରି ସମୁଦ୍ର ସଙ୍ଗେ ସେ ଉତ୍ତମରୂପେ ପରିଚିତ ।

ରାଧାଶ୍ୟାମ ଦେଖିଲେ, ମଣିଆଁକୁ ବୋଇତରେ ସ୍ଥାନ ଦେଇ ସେ ଭଲ କରିଛନ୍ତି । ପ୍ରଥମ କଥା, ମଣିଆଁକୁ ଜୀବନ ରକ୍ଷାକରି ପାରିଅଛନ୍ତି । ଦ୍ୱିତୀୟରେ,

ମଣିଅଁ ସମୁଦ୍ର ବିଷୟରେ ଅନେକ କଥା ଜାଣେ । ତା'ର କାର୍ଯ୍ୟ ବିଷୟକ ଅଭିଜ୍ଞତା ଅଳ୍ପ; କିନ୍ତୁ ବୁଦ୍ଧି ତୀକ୍ଷ୍ଣ ।

ଆକାଶରେ ତାରା ଗତି ଦିଗ ଏବଂ ସ୍ଥାନ ନିର୍ଣ୍ଣୟ କରିବାରେ ସେ ସୁଦକ୍ଷ । ମଧ୍ୟାହ୍ନ ସୂର୍ଯ୍ୟଙ୍କର କୋଣ ନିର୍ଣ୍ଣୟ କରି ମଣିଅ ଅକ୍ଷାଂଶର ପରିମାଣ ସ୍ଥିର କରିପାରେ । କହିପାରେ, ତାମ୍ରଲିପ୍ତର କେତେ କୋଶ ଦୂରରେ ବୋଇତ ଅଛି । ମଣିଅଁର ପ୍ରଧାନ ଗୁଣ—ସେ ଭଲ ଲକ୍ଷ୍ୟ କରି ପାରୁଥିଲା । ଶର କିମ୍ବା ବାଟୁଳି ସନ୍ଧାନ କରିବାରେ ସେ ସିଦ୍ଧହସ୍ତ ।

ରାଧାଶ୍ୟାମଙ୍କର ଲୋକ ତୋପ ଫୁଟାଇ ପାରୁଥିଲେ । ବୋଇତରେ ନିଜ କାରଖାନା ଗଢ଼ା ଦୁଇଗୋଟି ତୋପ ରଖା ହୋଇଥିଲା । ରାଧାଶ୍ୟାମ ସମ୍ବଲପୁର ଅଞ୍ଚଳର ଜଣେ ବିଖ୍ୟାତ ବାଣୁଆକୁ ପାଖରେ ରଖିଥିଲେ । ସେ ତାଙ୍କୁ ଜେନାଏଁ ବୋଲି ଡାକନ୍ତି । ତାଙ୍କର କାର୍ଯ୍ୟ ସେ କେବଳ ବାରୁଦ ତିଆରି କରିବେ । ସମୟ ସମୟରେ କେବଳ ଶବ୍ଦ ହେବ ବୋଲି ମିଶ୍ରଙ୍କ ଆଦେଶ ମତେ ତୋପ ଫୁଟୁଥିଲା । ଏଥର ମଣିଅଁ ସାହାଯ୍ୟରେ ତୋପଦ୍ୱାରା ସମୁଦ୍ରରୁ ଅନେକ ଜୀବ ମରିଗଲା । ମଣିଅଁ ତୋପକୁ ଏପରି କୋଣ କରି ରଖିପାରେ ଯେ, ତୋପ ଫୁଟାଇଲେ ଗୁଳା ଆକାଶକୁ ଉଠି ଶେଷରେ ଠିକ୍ ନିର୍ଦ୍ଦିଷ୍ଟ ସ୍ଥାନରେ ପଡ଼େ, ଜନ୍ତୁଙ୍କୁ ମାରିପକାଏ । ମଣିଅଁ ମିଶ୍ରଙ୍କୁ ଏବଂ ତାଙ୍କ ଲୋକଙ୍କୁ ଶିଖାଇଲା, ତୋପ କେତେ କୋଣ କରି ରଖିଲେ ଗୁଳା କିପରି ଠିକ୍ ସ୍ଥାନରେ ପଡ଼ିବ । ନିଜେ ମଧ୍ୟ ବାରୁଦ କିପରି ତିଆରି କରିବାକୁ ହୁଏ, ଜେନାଙ୍କଠାରୁ ଶିଖିଲା ।

ମିଶ୍ରଙ୍କର ଯେତେ ସମ୍ପତ୍ତି, ତହିଁରେ ସେ ସାରାଜୀବନ ଆନନ୍ଦରେ କଟାଇ ପାରିଥାନ୍ତେ । ବାଣିଜ୍ୟ କରି ଧନ ଉପାର୍ଜନ କରିବା ତାଙ୍କର ପ୍ରଧାନ ଉଦ୍ଦେଶ୍ୟ ନ ଥିଲା । ଉଦ୍ଦେଶ୍ୟ ଥିଲା, ଶତ୍ରୁ ନାଶ । ଯେଉଁ ଶତ୍ରୁ ସପ୍ତପୁରୁଷରୁ ତା'ଙ୍କ ସଙ୍ଗେ ବିବାଦ କରି ଆସୁଛି, ତାଙ୍କର ଏମାନେ କୌଣସି ଅନିଷ୍ଟ କରି ପାରୁନାହାନ୍ତି । ଏହାହିଁ ରାଧାଶ୍ୟାମଙ୍କ ମନରେ ମହାଦୁଃଖ । ପିତା କେବଳ ପ୍ରତିଶୋଧ କଥା ଚିନ୍ତାକରି ମଲେ । ପ୍ରତିଶୋଧ ନେଇପାରିଲେ ନାହିଁ ।

ଶତ୍ରୁ ସାଧାରଣ ଲୋକ ନୁହେ । ଧନର ପ୍ରଭାବରେ ଦେଶର ସମସ୍ତଙ୍କର ମୁହଁ ବାନ୍ଧିରଖିଛି । କେହି ହେଲେ ସେ ବଂଶର ବିପକ୍ଷରେ ଠିଆ ହୋଇ ପଦେ କଥା କହିପାରୁ ନାହିଁ । ଯଦି ନ୍ୟାୟ ନିମନ୍ତେ ରାଜଦରବାରରେ ଆବେଦନ କରନ୍ତି ତାମ୍ରଲିପ୍ତର ରାଜା କାନ୍ଧୁ ଭୂୟାଁ ହସରେ ଉଡ଼ାଇଦେବେ । ଉତ୍କଳ ସମ୍ରାଟ ଲଲାଟେନ୍ଦୁଙ୍କ ନିକଟରେ ଅଭିଯୋଗ କଲେ ରାଜା ଅସନ୍ତୁଷ୍ଟ ହେବେ । ହୁଣ୍ଡା କୈକେଉ ବାହୁବଳରେ ସିଂହାସନ ଅଧିକାର କରିଛନ୍ତି କେବଳ ବଂଶଲକ୍ଷଣ ଭୁଲି ପାରିବେ ନାହିଁ । ଯଦି ତାଙ୍କୁ ଅଗ୍ରାହ୍ୟ କରି ଲଲାଟେନ୍ଦୁଙ୍କ ନିକଟକୁ ଯିବାକୁ ହୁଏ,

ତେବେ ପ୍ରମାଣ ଲୋଡ଼ା । ସଂସାରରେ ଶରଦନ ଧନ ଏବଂ ବଳର ପ୍ରଭାବ ଅଧିକ । ଶତ୍ରୁର ଧନ ଅଛି, ବଳ ଅଛି । କଥା ଶୁଣିବ କିଏ ?

କିଛିଦିନ ପୂର୍ବେ ତାମ୍ରଲିପ୍ତରେ ଯେଉଁ ଘଟଣା ଘଟିଯାଇଛି, ସେଥି ନିମନ୍ତେ ଲଙ୍କାରେ ରାଧାଶ୍ୟାମ ବଣିଜ କରିବାକୁ ବାହାରିଛନ୍ତି । ଘରେ ବୃଦ୍ଧା ଜନନୀ, ବାଳିକା ଭଗିନୀ, ଏମାନଙ୍କୁ ଛାଡ଼ି ସେ ସହଜରେ ବିଦେଶ କରି ଅସି ନ ଥାନ୍ତେ । ବିଦେଶ ଅସିବାର ପ୍ରଧାନ କାରଣ ପ୍ରତିଶୋଧ । ଯେଉଁଠାରେ ହେଉ ଶତ୍ରୁର ବୋଇତ ଦେଖିଲେ ସେ ଅକ୍ରମଣ କରିବେ । ତେଣୁ ସମ୍ବଲପୁରର ପ୍ରଧାନ ବାଣୁଆଁ ଜେନା ମହାଶୟ ସଙ୍ଗରେ ଅସିଛନ୍ତି । ବାରୁଦ ଦେଇ ଶତ୍ରୁ ଜାହାଜକୁ ପୋଡ଼ିପକାଇବା ଏମାନଙ୍କର ଉଦ୍ଦେଶ୍ୟ । ଯୋଗକୁ ଅସି ମଣିଆଁ ଉପସ୍ଥିତ ହେଲା । ତା'ର ଶିକ୍ଷାନୁଯାୟୀ ଦୂରରେ ଥାଇ ଶତ୍ରୁର ବୋଇତକୁ ସହଜରେ ଜାଳିଦେଇ ହେବ ।

ମିତ୍ରେ ଏବେ ମଣିଆଁକୁ ଭାରି ଭଲ ପାଉଛନ୍ତି । ମଣିଆଁର ଏପରି ଅନେକ ଗୁଣ ଅଛି, ଯଦ୍ଦ୍ୱାରେ ସେ ପରକୁ ଆପଣାର କରିପାରେ । ପରର ମନ କିପରି ନେବାକୁ ହୁଏ, ସେ ଜାଣେ ।

ତାମ୍ରଲିପ୍ତରୁ ବହୁଦୂରରେ କଳିଙ୍ଗ ଉପକୂଳସ୍ଥ ମାରବ୍ୟ ଦ୍ୱୀପ ନିକଟରେ ସୁନାହାଟ ଗ୍ରାମ । ସେହି ଗ୍ରାମରେ ମୁକୁନ୍ଦ ମହାପାତ୍ରଙ୍କ ଘର । ମୁକୁନ୍ଦ ମହାପାତ୍ରଙ୍କର ଏକମାତ୍ର ପୁତ୍ର ଅଧିରଜ ଏବଂ ଏକମାତ୍ର କନ୍ୟା ଚଞ୍ଚଳା । ରାଧାଶ୍ୟାମଙ୍କର ଚଞ୍ଚଳା ସଙ୍ଗେ ଶୁଭବିବାହ ହେବାର ସମସ୍ତ ସ୍ଥିର ହୋଇଥିଲା । ବରଯାତ୍ରୀ ସୁନା-ହାଟରେ ଉପସ୍ଥିତ ହୋଇ ଯାହା ଶୁଣିଲେ, ଏକାଥରେ ଅବାକ୍ ହୋଇଗଲେ ।

ଶୁଣିଲେ ଗତରାତିରେ ମୁକୁନ୍ଦ ମହାପାତ୍ରଙ୍କ ଘରେ ଡକାଇତ ପଶି ତାଙ୍କୁ ମାରି ପକାଇଛନ୍ତି । ତାଙ୍କ ପୁତ୍ର ଅଧିରଜ ଓ କନ୍ୟା ଚଞ୍ଚଳାଙ୍କୁ ବନ୍ଦୀ କରି ଧରି ନେଇଛନ୍ତି ।

ଏ ଘଟଣା ଶୁଣି ରାଧାଶ୍ୟାମଙ୍କ ମୁଣ୍ଡରେ ବଜ୍ରପାତ ହେଲା । ସେ ଶିଶୁପାଳ ହୋଇ ତାମ୍ରଲିପ୍ତ ଫେରିବେ କିପରି ? ଡକାଇତିର କାରଣ କ'ଣ ? ଡକାଇତି କଲା କିଏ ? ରାଧାଶ୍ୟାମ ତାମ୍ରଲିପ୍ତ ଫେରି ବୁଝିପାରିଲେ ଯେ, ଡକାଇତ ତାମ୍ରଲିପ୍ତର ବିଖ୍ୟାତ ବଣିକଙ୍କ ପୁତ୍ର ନାରାୟଣ ପଣ୍ଡାଙ୍କ ଲୋକେ । ଯଦି ନାରାୟଣ ସାଧବ ବିବାହିତ ହୋଇ ନ ଥାନ୍ତେ, ତେବେ ବା ଅଶା କରାଯାନ୍ତା ଯେ, ସେ ଚଞ୍ଚଳାକୁ ବିବାହ କରିବାକୁ ଏପରି ଡକାଇତି କରିଛନ୍ତି । ସେ ବିବାହିତ । ତାଙ୍କର ପ୍ରଧାନ ଇଚ୍ଛା, ରାଧାଶ୍ୟାମଙ୍କୁ ଶିଶୁପାଳ କରାଇ ଅପମାନିତ କରିବେ ।

ନାରାୟଣ ସାଧବଙ୍କର ଲୋକେ ଯେ ଏ କାର୍ଯ୍ୟ କରିଛନ୍ତି, ଏହାର ପ୍ରମାଣ କ'ଣ ? କିନ୍ତୁ ନାରାୟଣ ସାଧବଙ୍କ ବିନା ଏପରି ଅମାନୁଷିକ କାର୍ଯ୍ୟ କରିବାକୁ

କାହାର ଛାତି ପଡ଼ିବ ? କିଏ ଧର୍ମକୁ ଭୟ ନ କରେ ? ଲୋକନିନ୍ଦାକୁ ଖାତିର ନ କରେ ? କେବଳ ଧନ ବଳ, ଲୋକବଳ ପାଇଁ ଏତେ ଗୁଡ଼ାଏ ପାପ ଅର୍ଜନ କରୁଛନ୍ତି । ଉପରେ ଯେ ଜଣେ ତାଙ୍କର କାର୍ଯ୍ୟ ଦେଖୁଛି, ଏହା ସେ ଏକାଥରେ ଭୁଲିଯାଇଛନ୍ତି ।

ହୃଦୟରେ ପ୍ରତିହିଂସାନଳ ଜାଗ୍ରତ କରି ରାଧାଶ୍ୟାମ ମନସ୍ଥ କଲେ, ସଧର୍ମନଗର ଏବଂ ସିଙ୍ଗାପୁର ବାଦଦେଇ ତାଙ୍କର ବୋଇତ ସେଲିବସ୍ ଚଳାଇବେ । ଏ ମଧ୍ୟରେ ଯଦି ନାରାୟଣଙ୍କ ସଙ୍ଗେ ସାକ୍ଷାତ ହୁଏ ତ ଉତ୍ତମ । ନିଜର ମାନ ଏବଂ ବଂଶର ମାନ ରକ୍ଷା ନିମନ୍ତେ ସେ ସମୁଦ୍ର ମଝିରେ ଯୁଦ୍ଧ କରିବେ । ଯଦି ଭଗବାନଙ୍କର ଇଚ୍ଛା ଥାଏ, ସେ ସହଜରେ ଜୟୀ ହୋଇ ନାରାୟଣ ସାଧବଙ୍କୁ ବନ୍ଦୀ କରିବେ । ତାଙ୍କର କାର୍ଯ୍ୟ ନିମନ୍ତେ ତାଙ୍କୁ ଉପଯୁକ୍ତ ଦଣ୍ଡ ଦେଇ ପରେ ମୁକ୍ତ କରିବେ । ରାଧାଶ୍ୟାମ ଭାବିଲେ, ସାପକୁ ରଗାଇ ଛାଡ଼ିଦେବା ଅନୁଚିତ । ସେ ନିଶ୍ଚୟ ପରେ ଅନିଷ୍ଟ ସାଧନ କରିବ । ଜୀବନରେ ମାରି ପକାଇବା ଭଲ । ଏ ହେଲା ରାଧାଶ୍ୟାମଙ୍କର ହାଟେ କଦଳୀ ନୈବେଦ୍ୟ ସ୍ୱାହା କଥା । ଶତ୍ରୁ କେଉଁଠି ଅଛି ଜାଣିବା ପୂର୍ବରୁ ଏତେ ଗୁଡ଼ାଏ ଚିନ୍ତା । ହୁଏ ତ ସେ ନିଜେ ବନ୍ଦୀ ହୋଇପାରନ୍ତି କିମ୍ବା ଅନୁକୂଳରେ ଦସ୍ୟୁ ସର୍ଦ୍ଦାର ନାରାୟଣଙ୍କ ସଙ୍ଗେ ଦେଖା ନ ହୋଇପାରେ ।

ମଣିଆଁକୁ ଏତେ ଭଲ ପାଇଲେ ମଧ୍ୟ ସେ ନିଜର ଉଦ୍ଦେଶ୍ୟ ତାକୁ କେବେ ହେଲେ ଜଣାଇ ନାହାନ୍ତି । କାର୍ଯ୍ୟ କରିବାକୁ ଆଦେଶ କରନ୍ତି, ମଣିଆଁ ସଙ୍ଗେ ସଙ୍ଗେ ପାଳନ କରେ । ମଣିଆଁ ନିଜର ଜୀବନୀ ଆମୂଳଚୂଳ ତାଙ୍କ ପାଖରେ ବର୍ଣ୍ଣନା କରିଛି । ସୁନାହାଟର ମହାପାତ୍ରଙ୍କ ବଂଶ, ଚଞ୍ଚଳା ଓ ଅଧିରାଜ ସଙ୍ଗେ ତାର ଯେତିକି ସମ୍ପର୍କ ଥିଲା, ସେତିକି ମଧ୍ୟ କହିବାକୁ ଭୁଲି ନାହିଁ । ରାଧାଶ୍ୟାମ ଚଞ୍ଚଳାର ସମସ୍ତ ବିଷୟ ଜାଣି ମଧ୍ୟ ମଣିଆଁକୁ କିଛି କହନ୍ତି ନାହିଁ । ଏହାର କାରଣ ସେ ସହଜରେ କାହାକୁ ବିଶ୍ୱାସ କରନ୍ତି ନାହିଁ ।

ମଣିଆଁ ଦିନେ ରାଧାଶ୍ୟାମଙ୍କୁ କହିଲା ଯେ, ସେ ସିଙ୍ଗାପୁରରେ ଓହ୍ଲାଇ ଯିବ । ସିଙ୍ଗାପୁରଠାରୁ ଦେଶକୁ କୌଣସି ନାବିକଙ୍କ ବୋଇତରେ ଫେରି ଆସି ପାରିବା ସହଜ ।

ସାଧବପୁତ୍ର କୌଣସି ଆପତ୍ତି କଲେ ନାହିଁ ।

ସାଲଉଇନ୍ ( ସାଲନ୍ଦୀ ? ) ନଦୀକୂଳବର୍ତ୍ତୀ ସଧର୍ମନଗରଠାରେ ( ଆଧୁନିକ ଥାଟନ ) ଉପସ୍ଥିତ ହୋଇ ରାଧାଶ୍ୟାମ ନାରାୟଣଙ୍କର କୌଣସି ସମ୍ବାଦ ପାଇଲେ

ନାହିଁ । ସେଗୁଡ଼ୁ ଲୋକ ପଠାଇ ବୁଝିଲେ, ନାରାୟଣ ସାଧବ ସେଠାରେ ମଧ୍ୟ ନାହାନ୍ତି । ଏତିକି ସମ୍ବାଦ ମିଳିଲା ଯେ, ସେ ସେଗୁରୁ ପ୍ରାୟ ଏକମାସ ହେବ ଚାଲିଯାଇଛନ୍ତି । ଶୁଣାଗଲା ସେ ସେଲବସ୍ ବାଟଦେଇ ବୁଲିକରି ଚୀନଦେଶକୁ ଯିବେ । କାଳବ୍ୟୟ ନ କରି ବୋଇତରେ ଯଥେଷ୍ଟ ଖାଦ୍ୟ ଓ ପାନୀୟ ରଖାଗଲା ଏବଂ ବୋଇତ ସିଙ୍ଗାପୁର ଅଭିମୁଖେ ଯାତ୍ରାକଲା ।

ସିଙ୍ଗାପୁରରେ ଉପସ୍ଥିତ ହୋଇ ରାଧାଶ୍ୟାମ ଶୁଣିଲେ, ନାରାୟଣ ସାଧବ ସେଠାକୁ ଆସି ନାହାନ୍ତି । ହତାଶ ହୋଇ ସେଲବସ୍ ଅଭିମୁଖେ ଯିବାର ବନ୍ଦୋବସ୍ତ କଲେ । ହୁଏତ, ରାଧାଶ୍ୟାମ ନାରାୟଣଙ୍କୁ ସେହିଠାରେ ଦେଖିବେ ।

ମଣିଆଁ ବୁଝିଥିଲା ଯେ, ଧନ ଅଭାବରେ ମନୁଷ୍ୟ କିଛି କରିପାରେ ନାହିଁ । ନିଜର ଉଦ୍ଦେଶ୍ୟ—ତାହା ମହତ୍ ହେଉ ଅବା ହୀନ ହେଉ, କେବଳ ଧନର ସାହାଯ୍ୟରେ ମନୁଷ୍ୟ ସାଧନ କରିପାରେ । ଧନ ହତାଶାକୁଳିତ ମନରେ ଆଶାବାରି ସେଚନ କରେ । ମୃତକୁ ଜୀବଦାନ ଦେଇପାରେ ।

ଯେଉଁ ବାଲିଦ୍ୱୀପର ଧନ ପାଇବାକୁ ଚେଷ୍ଟା କରି ତାର ପାଳକପିତା ଥରେ କୃତକାର୍ଯ୍ୟ ହୋଇଛନ୍ତି, ସେ କୃତକାର୍ଯ୍ୟ ନୋହିବ କାହିଁକି ?

ମଣିଆଁ ସିଙ୍ଗାପୁରଠାରେ ରାଧାଶ୍ୟାମଙ୍କ ବୋଇତରୁ ଓହ୍ଲାଇଲା । ବୋଇତର ଭଡ଼ା ସ୍ୱରୂପ ରାଧାଶ୍ୟାମଙ୍କୁ ଖଣ୍ଡିଏ ରତ୍ନ ଯାଚିଲା । ସେ ଗ୍ରହଣ କଲେ ନାହିଁ । ମଣିଆଁ ତାର ନୌକା ବଦଳରେ ରାଧାଶ୍ୟାମଙ୍କ ବୋଇତରୁ ଖଣ୍ଡେ କ୍ଷୁଦ୍ର ନୌକା ରଖିବାକୁ ଅନୁରୋଧ କଲା । ସେ ରାଜି ହେଲେ । ରାଧାଶ୍ୟାମ ସେଲବସ୍ ଯାତ୍ରା କରିବାର ବହୁଦିନ ପରେ ମଣିଆଁ ତାର କ୍ଷୁଦ୍ର ନୌକା ନେଇ ଜଳଯାତ୍ରା ଆରମ୍ଭ କଲା । ବ୍ୟବହାର ନିମନ୍ତେ କେତେଗୁଡ଼ିଏ ଆବଶ୍ୟକ ପଦାର୍ଥ ସଂଗ୍ରହ କଲା । ବହୁଧନ ଦେଇ ଦିଗନିରୂପକ ଯନ୍ତ୍ରଟିଏ କ୍ରୟ କରି ରଖିଲା । ସଙ୍ଗରେ ତାର ଅନ୍ୟ କେହି ନ ଥିଲେ । ମଣିଆଁ ଇଚ୍ଛା କରିଥିଲେ ସଙ୍ଗରେ ନେବାକୁ ଅନେକ ଲୋକ ମିଳିଥାନ୍ତେ । ପଥରେ ଯଦି ଆକସ୍ମିକ ଦୁର୍ଘଟଣାରୁ ତାକୁ ଜୀବନ ଦେବାକୁ ହୁଏ, ତେବେ ସେ କେବଳ ନିଜର ଜୀବନ ଦେବ । ପରକୁ ସଙ୍ଗରେ ନେଇ ପରର ଅମୂଲ୍ୟ ଜୀବନ ନଷ୍ଟ କରିବ କାହିଁକି ?

ଦିଗନିରୂପକ ଯନ୍ତ୍ର ସାହାଯ୍ୟରେ ମଣିଆଁର ନୌକା ଦିନ ରାତି ସବୁବେଳେ ଚାଲିଲା । ଯେତେବେଳେ ପବନ ଅନୁକୂଳ ଥାଏ, ସେ ପାଲ ଟେକି ନିଶ୍ଚିନ୍ତରେ ବସି ସମୁଦ୍ରର ମନୋମୁଗ୍ଧକର ଦୃଶ୍ୟ ଦେଖେ । ଯେତେବେଳେ ପବନ ପ୍ରତିକୂଳ

ରହେ, ସେ ପାଲ ଖୋଲି ଅନ୍ଧୁଳି ପକାଏ । ଏହିପରି ଦିନପରେ ଦିନ କଟିଗଲା । ସେ ଯେତିକି ସମୁଦ୍ର ଭିତରକୁ ଯାଉଥାଏ, ତାର ମନର ଦୃଢ଼ତା ସେତିକି କମି ଆସୁଥାଏ । କେବେ କେବେ ମନରେ ଅନୁତାପ ଆସେ । ଆହା ଆସିଲି କାହିଁକି ? ସିଙ୍ଗାପୁରରୁ ଦେଶକୁ ଫେରି ଯାଇଥିଲେ ଭଲ ହୋଇଥାନ୍ତା । ଯେତିକି ଧନ ପାଖରେ ଥିଲା, ତହିଁରେ ଜୀବନଟା ଆନନ୍ଦରେ କଟିଯାଇଥାନ୍ତା । ମୁଁ ବଡ଼ ନିର୍ବୋଧ ।

ପୁଣି ଭାବେ, ଧନ ଥିଲେ କ'ଣ ମନୁଷ୍ୟର ଜୀବନ ଆନନ୍ଦରେ କଟିପାରେ ? କଦାପି ନୁହେଁ । ମୋ ଉପରେ ଅନେକ କାର୍ଯ୍ୟର ଭାର ଅଛି । ସେତକ ନ କରି ପାରିଲେ ମନରେ ଶାନ୍ତି ଆସିବ ନାହିଁ ।

ଆହୁରି ମଧ୍ୟ ଦେଶକୁ ଫେରିଲେ କାହାକୁ ଘେନି ବା ସେ ଆନନ୍ଦରେ କାଳ ଯାପନ କରିବ ? ଯାହାକୁ ଜୀବନଠୁ ଅଧିକ ଭଲ ପାଉଥିଲା, ସେ ଆଜି କାହିଁ ? ପାପିଷ୍ଠ ନାରାୟଣ ସାଧବର ଉପପତ୍ନୀରୂପେ ବୋଧହୁଏ ସେ ବର୍ତ୍ତମାନ ସମୁଦ୍ରର କୌଣସି ଅଜଣା ସ୍ଥାନରେ ଥିବ । ଚମ୍ପିଲାକୁ ମଧ୍ୟ ସେମାନେ ହରଣ କରି ନେଇଛନ୍ତି ।

ତଥାପି ମଣିଅାଁର ମନରେ ବିଶ୍ୱାସ ହୁଏ ନାହିଁ । ସେ ନିଜେ ଭାବି ନିଜର ଚିନ୍ତାକୁ ବିଶ୍ୱାସ କରିପାରେ ନାହିଁ । ଯେଉଁ ସୁଶୀଳା ତାକୁ ଏତେ ଭଲପାଉଥିଲା ସେ କି କେବେ ଅନ୍ୟର—ପୁଣି ନାରାୟଣ ସାଧବର ଉପପତ୍ନୀ ହୋଇ ରହିପାରେ ? ବୋଧହୁଏ ସେ ଆଉ କେହି ହୋଇଥିବ । ସୁଶୀଳା ବନ୍ଦିନୀ ।

ମଣିଅାଁର ନୌକା ଧୀରେ ଧୀରେ ଦକ୍ଷିଣକୁ ଗଲା । ଦିନେ ସେ ଦେଖିଲା, ଧ୍ରୁବତାରା ଦିଗ୍‌ବଳୟର ପଛଆଡ଼େ ଲୁଚିଗଲାଣି । ସେ ସାହସ ଅବଲମ୍ବନ କରି ନୌକାରେ ପାଲ ଟାଣିଲା । ଏଣେ ସମୁଦ୍ରର ସ୍ରୋତରେ ପଡ଼ି ନୌକାଟି ଦକ୍ଷିଣପୂର୍ବ ଦିଗଆଡ଼େ ଗଲିଥାଏ । ପ୍ରକୃତି ଉପରେ ସମ୍ପୂର୍ଣ୍ଣ ନିର୍ଭର କରି ବହୁ ବାଧାବିଘ୍ନ ଅତିକ୍ରମ କରି ସେ ଜାଭାରେ ଉପସ୍ଥିତ ହେଲା । ସେଠାରେ ତାକୁ ଅନେକ ଦିନ ଅପେକ୍ଷା କରି ରହିବାକୁ ପଡ଼ିଲା । କାରଣ, ସେ ସ୍ଥିର କରିଥିଲା, ମୂର୍ଖପରି ସେ ଆଉ ସମୁଦ୍ର ମଧ୍ୟକୁ ଯିବ ନାହିଁ । ଅନେକ ଦିନ ପରେ ଗୋଟିଏ ବୋଇତ ଜାଭାରୁ ବାହାରି ବାଲିଦ୍ୱୀପକୁ ଯିବାର ଠିକ୍ ହେଲା । ବୋଇତ ଅଧିକାରୀ ଜଣେ ତେଲଙ୍ଗା । ସେହି ତେଲଙ୍ଗା ଭଦ୍ରଲୋକଙ୍କ ସଙ୍ଗେ ସାକ୍ଷାତ କରି ତାଙ୍କର ବୋଇତରେ ବାଲିଦ୍ୱୀପକୁ ଯିବାକୁ ଜଣାଇବାରୁ ସେ ସମ୍ମତ ହେଲେ । ମଣିଅାଁ ତାଙ୍କୁ ଖଣ୍ଡେ ରତ୍ନ ଦେଇ ତାର ନୌକାଟିକୁ ବୋଇତରେ ରଖିବାକୁ ଅନୁମତି ପାଇଲା ।

ବାଲିଦ୍ୱୀପ ନିକଟରେ ମଣିଅାଁ ତେଲଙ୍ଗା ସାଧବଙ୍କଠାରୁ ବିଦାୟ ନେଇ କୂଳେ କୂଳେ ନୌକା ଚଳାଇଲା । ସର୍ବଦା ନଦୀ ମୁହାଣର ଅନ୍ୱେଷଣ କରୁଥାଏ । କେବେ କେବେ ଦେଖିବାକୁ ପାଏ ଗୋଟିଏ ଗୋଟିଏ ନାଳର ମୁହାଣ ।

ମାତ୍ର ସେ ଜାଣେ, ଯେଉଁ ନଦୀର କୂଳରେ ପାହାଡ଼ ଉପରେ ହିନ୍ଦୁ ମନ୍ଦିର ଏବଂ ବୌଦ୍ଧ ମନ୍ଦିର ଅଛି, ସେ ନଦୀଟି ବୈତରଣୀ ନଦୀଠାରୁ ବଡ଼ ।

ମଣିଆଁ ଦକ୍ଷିଣମୁହାଁ ବାଲିଦ୍ୱୀପର କୂଳେ କୂଳେ ଗଲିଛି । ବାଁହାତ ନିବିଡ଼ ଜଙ୍ଗଲ । କୂଳ ନିକଟରେ କୌଣସି ପାହାଡ଼ ପର୍ବତ ନାହିଁ । ଭିତରକୁ ଅନାଇଲେ ଦେଖେ ବହୁଦୂରରେ ଅନେକ ପର୍ବତର ଧବଳ ଶୃଙ୍ଗ ସୂର୍ଯ୍ୟ ରଶ୍ମିରେ ଝଲସି ଉଠୁଛି ।

କୂଳେ କୂଳେ ନୌକା ବାହି ସେ ଏତେଦିନ ହେଲା ଗଲିଛି; ଅଥଚ କେବେ କୂଳରେ ମନୁଷ୍ୟ ଦେଖିନାହିଁ ।

ସେ ବାଲିଦ୍ୱୀପର ସୌନ୍ଦର୍ଯ୍ୟ ଦେଖି ଚିନ୍ତାକଲା, କଳିଙ୍ଗରେ ସ୍ଥାନର ଅଭାବ ବେଶୀ ହୋଇପଡ଼ିଛି । ଲୋକସଂଖ୍ୟା ବେଶୀ ଅଥଚ ସ୍ଥାନ ଅଳ୍ପ । ଭାରତୀୟ ଆର୍ଯ୍ୟମାନେ ସୁମାତ୍ରା, ଜାଭା, ବୋର୍ଣ୍ଣିଓ, ସେଲିବସ୍ ଦେଶମାନଙ୍କରେ ବସତି ସ୍ଥାପନ କରି ରହିଛନ୍ତି । ସେଠାକାର ଅନାର୍ଯ୍ୟ ଆଦିମ ଅଧିବାସୀଙ୍କୁ ଶିକ୍ଷିତ କରି ହିନ୍ଦୁ ଧର୍ମରେ ଦୀକ୍ଷିତ କରାଇ ଜଗତର ମଙ୍ଗଳ ସାଧନ କରିଛନ୍ତି । ବାଲିଦ୍ୱୀପରେ ସେପରି ବସତି ସ୍ଥାପନ କଲେ ତ ଭଲ ହୁଅନ୍ତା । ଭାରତବାସୀଙ୍କୁ ବାଲିଦ୍ୱୀପ କଥା ଜଣା ନ ରହିବାର କାରଣ କ'ଣ ? ଶୁଣିଛି ଚୀନ୍ ଦେଶରେ ଲୋକେ ସ୍ଥାନ ଅଭାବରୁ ନଦୀ ଏବଂ ସମୁଦ୍ର ଉପରେ ଡଙ୍ଗା ଭସାଇ ତହିଁରେ ସାରାଜୀବନ କଟାଉଛନ୍ତି । ବାଲିଦ୍ୱୀପ କ'ଣ ଶିକ୍ଷିତ ଚୀନ୍‌ଲୋକଙ୍କର ଦୃଷ୍ଟି ଅନ୍ତରାଳରେ ରହିଛି ? ଯାହା ହେଉ, ପରମେଶ୍ୱର ଯଦି ମୋତେ ସାହାଯ୍ୟ କରନ୍ତି, ମୁଁ ଏହି ବାଲିଦ୍ୱୀପରେ ବସବାସ କରି ରହିବି ।

ମଣିଆଁ ଦିନବେଳେ ସମୁଦ୍ରରେ ନୌକା ଚଳାଇ ରାତିରେ କୌଣସି ନଦୀ ମୁହାଣ ନିକଟରେ ରହେ । ତେଲଙ୍ଗା ସୌଦାଗରଙ୍କୁ ଛାଡ଼ିବାର ଦଶ ଦିନ ପରେ ସେ ଗୋଟିଏ ନଦୀମୁହାଣରେ ଉପସ୍ଥିତ ହେଲା । ମୁହାଣଟି ଅତି ପ୍ରଶସ୍ତ । ସେ ମନେ ମନେ ପରମେଶ୍ୱରଙ୍କୁ ସ୍ମରଣ କରି ସମୁଦ୍ର ଛାଡ଼ି ନଦୀପଥରେ ନୌକା ଚଳାଇଲା । ଗ୍ରୀଷ୍ମଋତୁ, ଜଳ ମଧ୍ୟରେ ସ୍ଥାନେ ସ୍ଥାନେ ବାଲିର ଚଟାଣ ସୂର୍ଯ୍ୟ କିରଣରେ ଝଲସି ଉଠୁଛି । ଏଣେ ଦୁଇ ପାଖରେ ନିବିଡ଼ ଅରଣ୍ୟ । କୂଳରେ ଭାଲୁ ଏବଂ ଶିଆଳ ପ୍ରଭୃତି ବଣ୍ୟ ଜନ୍ତୁମାନେ ନିର୍ଭୟରେ ବିଚରଣ କରୁଛନ୍ତି । କେତେ ବିଚିତ୍ର ଜାତିର ପକ୍ଷୀ କୂଳସ୍ଥ ବୃକ୍ଷ ଡାଳରେ ବସିଛନ୍ତି । ମଣିଆଁ ଏପରି ପକ୍ଷୀ କଳିଙ୍ଗରେ କେବେ ଦେଖି ନ ଥିଲା । ସେ ଆଶ୍ଚର୍ଯ୍ୟ ହୋଇ ପକ୍ଷୀଗୁଡ଼ିକୁ ଅନାଇ ରହୁଥାଏ ।

ସ୍ରୋତର ପ୍ରତିକୂଳରେ ନୌକା ଚଳାଇ ଯାଉଁ ଯାଉଁ ମଣିଆଁ ଦେଖିଲା, ବାମହାତ କୂଳର ଅନତି ଦୂରରେ ଜଙ୍ଗଲ ଭେଦକରି ଛୋଟ ଛୋଟ ଦୁଇଟି ପାହାଡ଼ । ପଛଆଡ଼ୁ ଲାଗି ଲାଗି ପାହାଡ଼ ଉଚ୍ଚତର ହୋଇ ଆକାଶ ସଙ୍ଗେ ମିଶି ଯାଇଛି । ନଦୀକୂଳସ୍ଥ ପାହାଡ଼ ଦୁଇଟି ଉପରେ ମୁହାଁମୁହିଁ ହୋଇ ଦୁଇଟି ମନ୍ଦିର ରହିଛି । ମଣିଆଁ ଆନନ୍ଦରେ କହି ଉଠିଲା, ଆଃ ମୁଁ ଅବଶେଷରେ ଆସି ଠିକଣା ମୁଣ୍ଡରେ ପହଞ୍ଚିଗଲି । ନୌକା ଉପରେ କ୍ଷୁଦ୍ର ବାଳକ ପରି ସେ ଚିତ୍କାର କରି ନାଚିଉଠିଲା ।

ନିକଟସ୍ଥ ଗୋଟିଏ ବାଲି ଚଟାଣ ଉପରେ ମଣିଆଁ ରାତ୍ରିଯାପନ କଲା । ହିଂସ୍ର ଜନ୍ତୁଙ୍କର ଭୟରେ କୂଳକୁ ଗଲା ନାହିଁ । ପରଦିନ ସକାଳୁ ନୌକା କୂଳରେ ଲଗାଇଲା ଏବଂ କୂଳର ଗୋଟିଏ ଗଛରେ ନୌକା ବାନ୍ଧି ଧନୁଶର ଧରି ଜଙ୍ଗଲ ଭିତରକୁ ପଶିଲା ।

ମଣିଆଁ ଜଙ୍ଗଲ ଭିତରେ ପଶିଲା, ସ୍ଥାନଟିକୁ ଉତ୍ତମରୂପେ ପରୀକ୍ଷା କରି ଦେଖିବାକୁ । କିଛିଦୂର ଯାଇ ସେ ଗୋଟିଏ ଅପ୍ରଶସ୍ତ ପଥରେ ଉପସ୍ଥିତ ହେଲା । ସେହି ବାଟକୁ ଅନୁସରଣ କରି ଆଗକୁ ଯାଉଁ ଯାଉଁ କିଛି ଦୂରରେ ଦେଖିଲା, ଧୂଳିରେ ଅନେକଗୁଡ଼ିଏ ମନୁଷ୍ୟର ପାଦଚିହ୍ନ ପଡ଼ିଛି । ଏପରି ନିର୍ଜ୍ଜନ ସ୍ଥାନରେ ମନୁଷ୍ୟର ପାଦଚିହ୍ନ ଆସିଲା କାହୁଁ ? ମଣିଆଁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଚିନ୍ତା କଲା, ମୁଁ ତ ଏତେଦିନ ହେଲା ଜଣେ ମନୁଷ୍ୟ ସୁଦ୍ଧା ଦେଖି ନାହିଁ । ଏ ପଦଚିହ୍ନ କାହାର ?

ମଣିଆଁ ନଇଁପଡ଼ି ପାଦଚିହ୍ନଗୁଡ଼ିକ ଭଲ ଭାବରେ ପରୀକ୍ଷା କରି ଦେଖିଲା । ଜଣାଗଲା ସେ ସବୁ ଯେପରି ତାଜା । ଚିହ୍ନଗୁଡ଼ିକରେ ପାଦତଳର ଗାରଗୁଡ଼ିକ ସୁଦ୍ଧା ବାରିହୋଇ ପଡ଼ୁଛି । ଅତଏବ ଏଠାରେ ନିଶ୍ଚୟ ଲୋକେ ଘରକରି ରହିଛନ୍ତି । ପାଦଚିହ୍ନଗୁଡ଼ିକ ଆକାରରେ ଛୋଟ । ସତେ କି ଛ' ସାତ ବର୍ଷ ପିଲାଙ୍କର । ସ୍ଥାନେ ସ୍ଥାନେ ଗୋଟିଏ ଗୋଟିଏ ବଡ଼ପାଦ ମଧ୍ୟ ପଡ଼ିଛି ।

ମଣିଆଁ ଏହି କଥା ଭାବୁ ଭାବୁ ହଠାତ୍ ସୁ—ସୁ—ଶବ୍ଦ ଶୁଣିଲା । ସେ ମୁହଁ ଫେରାଇ ପଛକୁ ଚାହିଁ ଦେଖିଲା, ଦୂରରେ ଗୋଟାଏ ମସ୍ତବଡ଼ ଭୀଷଣକାୟ ସାପ ଫଣା ମେଲାକରି ତା'ର ଆଡ଼କୁ ଧାଇଁଆସୁଛି । ଭୟରେ ତାର ଆପାଦମସ୍ତକ ଥରି ଉଠିଲା । ଭାବିବାକୁ ଆଉ ସମୟ ନାହିଁ । ସାପଟି ଏତେ ବଡ଼ ଯେ ଅକ୍ଳେଶରେ ତାକୁ ଗିଳି ଦେଇପାରିବ ।

ସାପ କିଛିଦୂର ଆସି ସ୍ଥିର ହୋଇ ଚାରିଆଡ଼କୁ ଅନାଇଲା, ସତେ ଯେପରି ମଣିଆଁର ଅନ୍ୱେଷଣ କରୁଛି । ହଠାତ୍ ତାର ଆଖି ମଣିଆଁ ଉପରେ ପଡ଼ିଲା । ସେ ମଣିଆଁକୁ ଲକ୍ଷ୍ୟକରି ଛୁଟିଲା ।

ମଣିଅାଁ ସଙ୍ଗେ ସଙ୍ଗେ ଧନୁରେ ଶର ସନ୍ଧାନ କଲା । ସାପର ଚକ୍ଷୁକୁ ଲକ୍ଷ୍ୟ କରି ଶର ବିନ୍ଧିଲା । ମାତ୍ର ଚକ୍ଷୁରେ ତାହା ନ ବାଜି ଦେହରେ ପଶିଗଲା । ସାପ ଗର୍ଜନ କରି ଦ୍ୱିଗୁଣ ବେଗରେ ଛୁଟି ଆସିଲା । ମଣିଅାଁ ପୁନର୍ବାର ଶର ସନ୍ଧାନ କଲା । ତା' ପାଖରେ ଛ'ଟି କାଣ୍ଡ ଥିଲା । ଗୁଡ଼ିଏ ମାରି ସାରିଲାଣି, ତଥାପି ସାପ ପଛକୁ ଘୁଞ୍ଚୁ ନାହିଁ । ଗୁଡ଼ିଏ କାଣ୍ଡରୁ ଦୁଇଟି ବ୍ୟର୍ଥ ହେଲା, ଅନ୍ୟ ଦୁଇଟି ଚକ୍ଷୁଭେଦ ନ କରି ଦେହ ଭେଦି କଲା ।

ଜୀବନର ଆଶା ତ୍ୟାଗକରି ସେ ଶେଷଥର ଜପମନ୍ତ୍ରେ ଗୋଟିଏ କାଣ୍ଡ ବିନ୍ଧିଲା । ସର୍ପ ଅତି ନିକଟରେ ଥିବାରୁ ଏଥର ତାର ଚେଷ୍ଟା ବିଫଳ ହେଲା ନାହିଁ । କାଣ୍ଡ ଚକ୍ଷୁରେ ଭେଦ କଲା । ସର୍ପ ଘୋର ଗର୍ଜନ କରି ତଳେ ପଡ଼ିଗଲା । ମାତ୍ର ପରମୁହୂର୍ତ୍ତରେ ଜଙ୍ଗଲ ମଧ୍ୟକୁ ପଶିଗଲା ।

ନଦୀ ଭିତରୁ ପାହାଡ଼ ଯେତେ ନିକଟରେ ଥିଲା ପରି ଦେଖାଯାଉଥିଲା, ପ୍ରକୃତରେ ତାହା ନୁହେଁ; ନିତାନ୍ତ କମ୍‌ରେ ଅଧପାଏ ବାଟ ହେବ । ଯଦିଚ ପାହାଡ଼ ଏବଂ ତଦୁପରିସ୍ଥ ମନ୍ଦିର ତାହାର ଅତି ନିକଟରେ; ତଥାପି ସେ ଆଉ ମନ୍ଦିରକୁ ନ ଯାଇ ତୃଷାତୁର ହୋଇ ନଦୀକୂଳକୁ ଫେରି ଆସିଲା ।

ପରଦିନ ପ୍ରାତଃକାଳରୁ ଉଠି ମଣିଅାଁ ନଦୀଜଳରେ ସ୍ନାନ କରୁଛି, ଏହିପରି ସମୟରେ ତାକୁ ଶୁଭିଲା ଯେପରି କିଏ ଜଣେ କରୁଣ ସ୍ୱରରେ ଚିତ୍କାର କରି କହୁଛି ରକ୍ଷା କର, ରକ୍ଷା କର ।

ମଣିଅାଁ ଚମକି ପଡ଼ିଲା । ଏ କ'ଣ ! ସେ ଚକିତ ହୋଇ ଏଣେତେଣେ ଚାହିଁଲା । କାହାକୁ ଦେଖିପାରିଲା ନାହିଁ ।

ମଣିଅାଁ ସ୍ନାନସାରି ନୌକା ଉପରକୁ ଉଠିଲା । ଲୁଗା ଦିଟା ଅଣ୍ଟାରେ ଖଣ୍ଡିଏ ଝୁଲୁଥିଲା । ସାମାନ୍ୟ କିଛି ଆହାର କରୁଛି, ଏହି ସମୟରେ ପୁନର୍ବାର ଶୁଭିଲା—ରମଣୀର କୋମଳ କଣ୍ଠର ଅନୁରୋଧ, ମୋତେ ଛଡ଼ାଇଦିଅ ।

ମଣିଅାଁ ସନ୍ଦିଗ୍ଧ ନେତ୍ରରେ ଚାରିଆଡ଼କୁ ଚାହିଁ ଏବଂ ଧନୁଶର ହାତରେ ଧରି ଜାମା ପକେଟରେ ଅନେକଗୁଡ଼ିଏ ମାଟିର ବାଟୁଲି ପୂରାଇଲା । ସେ ଯୋଡ଼ା ମାଡ଼ି ନୌକା ଉପରୁ କୂଳକୁ ଡେଇଁପଡ଼ିଲା । ଅତଡ଼ା ଉପରକୁ ଉଠିବାକୁ ଆଣ୍ଠୁରେ ହାତଦେଇ ଦୁଇ ଚାରିପାଦ ଯାଇ ପୁଣି କଣ ଭାବି ପଛକୁ ଫେରିଆସିଲା । ଜଳ ନିକଟରେ ଯୋଡ଼ା ରଖି ନୌକା ଉପରକୁ ଉଠିଲା । ଚମଡ଼ାର ଗୋଟିଏ ମୁଣିରେ କାଣ୍ଡ ଭରି ବେକରେ ଝୁଲାଇ ନୌକାରୁ ଓହ୍ଲାଇ ଆସିଲା । ଯୋଡ଼ା ମାଡ଼ି ଜଙ୍ଗଲ ଭିତରେ ପଶିଲା ।

କିଛିଦୂର ଯାଇ ଶୁଣିଲା, ଅନେକ ଲୋକ ହର୍ଷଧ୍ୱନି ମଧ୍ୟରେ କୋଳାହଳ କରୁଛନ୍ତି । ସେମାନଙ୍କର ଭାଷା ମଣିଅାଁକୁ ଅଜଣା । ସେ ଶବ୍ଦ ଆସୁଥିବା ଦିଗକୁ

ଗୃହଲା । ତେଣିକି ମଧ୍ୟ ଗୋଟିଏ ଛୋଟ ରାସ୍ତା ଜଙ୍ଗଲ ଭିତରେ ପଡ଼ିଛି । ଲାଠାପଣ ଅତିକ୍ରମ କରି ସେହି ରାସ୍ତାରେ ଯାଉ ଯାଉ ଅନ୍ଧାର ଅନ୍ତରେ ଅନେକ ଲୋକଙ୍କର କୋଳାହଳ ଶୁଣି ପାରିଲା । ଗତି ଦ୍ରୁତତର କରି ସେ ଭାବିଲା, ଏମାନେ ନିଶ୍ଚୟ ଏଠାକାର ଆଦିମ ଅଧିବାସୀ ଅନାର୍ଯ୍ୟ । କୌଣସି ହତଭାଗ୍ୟ ଲୋକକୁ ଧରି ରଖିଅଛନ୍ତି । ବାପାଙ୍କ ପୋଥିରୁ ପଢ଼ିଛି, ଏମାନେ ମନୁଷ୍ୟ ମାଂସ ଖାନ୍ତି । ମାଆମାନେ ପିଲାମାନଙ୍କୁ ଗଳ୍ପ କହିଲାବେଳେ ଯେଉଁ ଅସୁର ଅସୁରୁଣୀ କଥା କହନ୍ତି, ବୋଧହୁଏ ସେମାନେ, ଏହିମାନେ । ସେମାନେ ଜାଣନ୍ତି, ପଶୁମାନଙ୍କ ମଧ୍ୟରୁ କେତେକଙ୍କୁ ଛାଡ଼ିଦେଲେ କେବଳ ଅସୁରମାନେ ମନୁଷ୍ୟ ମାଂସ ଖାନ୍ତି । ବୋଧହୁଏ ସେହି ଲୋକମାନଙ୍କ କବଳରେ କେହି ଜଣେ ହତଭାଗିନୀ ରମଣୀ ପଡ଼ିଛି । ବିଳମ୍ବ କଲେ ତାକୁ ସେମାନେ କଞ୍ଚା ଖାଇଯିବେ ।

ସେ କିଛିଦୂର ଆଗକୁ ଯାଇ ବୃଦ୍ଧା ଆଡ଼ୁଆଳରୁ ଦେଖିପାରିଲା—କିଛି ଦୂରରେ ଜଙ୍ଗଲ ମଧ୍ୟରେ ଅଳ୍ପ ଏ ସ୍ଥାନ ଖୋଲା ଅଛି । ଅନେକ ଅନାର୍ଯ୍ୟ ଲୋକ ସମବେତ ହୋଇଛନ୍ତି । କେହି କେହି ଠିଆ ହୋଇଛନ୍ତି, କେହି କେହି ତଳେ ବସିଛନ୍ତି । ଅନ୍ୟ ଥୋକେ ତଳେ ପଡ଼ିକରି ପରି ତାହାର ଉପରେ ଗଡ଼ୁଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ପୁରୁଷ । କେତେଜଣ ମାତ୍ର ନାରୀ । ଦେଖିବାକୁ ଜଙ୍ଗଲି ମଣିଷଭଳି କଳା, ମାତ୍ର ଦେହ ଜଙ୍ଘିମଣ୍ଡି ପରି ଚକ୍‌କଣ ନୁହେଁ । ଉଚ୍ଚରେ ପ୍ରାୟ ତିନି ହାତ ହେବେ । ମୁଣ୍ଡର ବାଳ ଠିଆ ଠିଆ । ସଙ୍କୀର୍ଣ୍ଣ କପାଳ । ଅଦ୍ଭୁତ ଲଙ୍ଗଳା । କେତେ ଜଣ ଅଣ୍ଟାର ଆଗ ପାଖରେ ମାଳେ ପତର ଗୁନ୍ଥି ବାନ୍ଧିଛନ୍ତି । ଲଜ୍ଜା ସମ୍ବରଣ କରିବାକୁ ଅବଶ୍ୟ ନୁହେଁ । ପତ୍ରମାଳ ହୁଏ ତ ଅଳଙ୍କାରରୂପେ ବ୍ୟବହୃତ ହୋଇଛି ! ଜଣେ ଦୁଇଜଣ ବେକରେ ଏବଂ ଅଣ୍ଟାରେ ମଣିଷ ମୁଣ୍ଡ ଝୁଲାଇଛନ୍ତି । ଜଣେ ତାର ବାଁ କାନ୍ଧରେ ଦୁଇଟି ମୁଣ୍ଡ ଝୁଲାଇଛି ।

ନିକଟରେ ଗୋଟିଏ ଛୋଟ ଗଛ ଦେହରେ ଦୁଇଜଣ ମଣିଷ ବନ୍ଧା । ମଣିଷ ଜଣକର ଆଗପାଖ ଓ ଅନ୍ୟ ଜଣକର ପଛପାଖ ଦେଖିପାରୁଛି । ସେ ଦେଖି ଆଶ୍ଚର୍ଯ୍ୟ ହେଲା ଯେ, ତାହା ଆଡ଼କୁ ମୁହଁ କରି ବନ୍ଧା ହୋଇଥିବା ଲୋକଟି ଉଚ୍ଚରେ ଛୋଟ । ଦେଖିବାକୁ ନିକଟରେ ଥିବା ଅନ୍ୟାନ୍ୟ ଲୋକମାନଙ୍କ ପରି କହିଲେ ଚଳେ । ପ୍ରଭେଦ ଏତିକି ଯେ, ବନ୍ଦୀଲୋକର ଗୋଡ଼ ହାତ ନାଲିମାଟିରେ ରଙ୍ଗା ହେଲା ପରି ଲାଲ ଦିଶୁଛି । ଯିଏ ମଣିଷ ଆଡ଼କୁ ପଛକରି ବନ୍ଧା ଯାଇଛି, ସେ ଅନାର୍ଯ୍ୟ ନୁହେଁ, ନିଶ୍ଚୟ ଆର୍ଯ୍ୟ ସନ୍ତାନ । ଦେଖିବାକୁ ଉଚ୍ଚ । ଭାରତୀୟଙ୍କ ପରି ଗୌର ବର୍ଣ୍ଣ; ଉଲଗ୍ନ ହୋଇଥିଲେ ମଧ୍ୟ ମସ୍ତକର ଲମ୍ବ କୁଞ୍ଚିତକେଶ ପଛଆଡ଼େ ଜଙ୍ଘ ପର୍ଯ୍ୟନ୍ତ ଲମ୍ବି ଆସିଛି । ବନ୍ଦୀଦ୍ୱୟ ବୃକ୍ଷର ଗଣ୍ଡିପରି ନିଶ୍ଚଳ ଭାବରେ ଠିଆ ହୋଇଛନ୍ତି ଯେପରି ଦେହରେ ଜୀବନ ନାହିଁ । ହାତ ଗୋଡ଼ ଦୃଢ଼ଭାବରେ ଲତା ଦ୍ୱାରା ଆବଦ୍ଧ ।

ଏପରି ଦୃଶ୍ୟ ଦେଖି ଭୟରେ ମଣିଅଁର ହୃଦୟ କମ୍ପିତ ହେଲା । ସେ କପାଳରୁ ଝାଳ ପୋଛି ଭାବିଲା, ଏମାନେ ନିଷ୍ଟୟ ରମଣୀକୁ ମାରି ପକାଇବେ । ମୁଁ କ'ଣ ଏଡ଼େ ଭୀରୁ, ଆଖି ଆଗରେ ଜଣେ ରମଣୀର କରୁଣ ମୃତ୍ୟୁ ଦେଖିବ ? ନା, କଦାପି ତାହା ହେବ ନାହିଁ ।

କପରି ସେ ରମଣୀକୁ ଉଦ୍ଧାର କରି ପାରିବ, ଏହି ଚିନ୍ତାରେ ବ୍ୟସ୍ତ ଥାଇ ମଣିଅଁ ଏକାଥରେ ଭୁଲିଗଲା ଯେ, ଯଦି ସେ ଅନାର୍ଯ୍ୟମାନଙ୍କ କବଳରେ ପଡ଼େ, ତାକୁ ମଧ୍ୟ ଜୀବନ ହରାଇବାକୁ ପଡ଼ିବ । ଏତେ ଲୋକଙ୍କ ବିପକ୍ଷରେ ଠିଆ ହେବା ସହଜ ନୁହେଁ ଭାବି ସେ ହତାଶ ହେଲା । ଏହି ସମୟରେ ସେଠାରେ ଅଦ୍ଭୁତ ତିନି ଜଣ ଆସି ଉପସ୍ଥିତ ହେଲେ । ଜଣେ ଗୋଟାଏ କଦଳୀପତ୍ର ଦେହରେ କଣ ଗୁଡ଼ାଏ ବଟା ଜିନିଷ ଆଣି ତଳେ ରଖିଦେଲା । ଅନ୍ୟ ଜଣେ ଅଦ୍ଭୁତ ଖଣ୍ଡେ ପତ୍ର ଦେହରେ ବାଲିପରି କିଛି ଜିନିଷ ରଖିଦେଲା । ତୃତୀୟ ଲୋକ ଦୁଇ ହାତରେ ଦୁଇଟା ମଣିଷ ମୁଣ୍ଡର ଖପୁରିରେ ଜଳ ଆଣିଥିଲା । ନିକଟରେ ଖଣ୍ଡେ ପଥର ଦେହରେ ଗୋଟାଏ ମସ୍ତବଡ଼ ଗାତ । ସେ ସେହି ଗାତରେ ଜଳ ଅଜାଡ଼ିଦେଲା । ଆଗନ୍ତୁକ ତିନି ଜଣଙ୍କୁ ଦେଖି ସମସ୍ତେ ଆନନ୍ଦରେ ବୋବାଇ ଉଠିଲେ । ଶୋଇଥିବା ଏବଂ ବସିଥିବା ଲୋକମାନେ ଠିଆହୋଇ ତାଳିମାରିଲେ ।

ମଣିଅଁ ଦେଖିଲା ସେମାନଙ୍କ ମଧ୍ୟରୁ ଜଣେ ସୁନାର ଗୋଟିଏ ବହୁମୂଲ୍ୟ ହାର ଅଣ୍ଟାରେ ଝୁଲାଇଛି । ସେ ହାରଟି ଯେ ଆର୍ଯ୍ୟ ରମଣୀର, ଏଥିରେ ସନ୍ଦେହ ନାହିଁ । ହାର ନାଇଥିବା ଲୋକର ଇଙ୍ଗିତରେ ସମସ୍ତେ ନୀରବ ହେଲେ । ସେ ଅଦ୍ଭୁତ ପଦେ କ'ଣ ମୁଣ୍ଡ ହଲାଇ କହିଲା । ଯେଉଁମାନେ ବନ୍ଦୀଦ୍ୱୟଙ୍କ ନିକଟରେ ଠିଆ ହୋଇଥିଲେ, ସେମାନେ ସେଠାରୁ ଘୁଞ୍ଚିଆସି ଟିକିଏ ଦୂରରେ ଠିଆ ହେଲେ ।

ପୂର୍ବୋକ୍ତ ଲୋକ ହାତରେ ଖଣ୍ଡେ ହତିଆର ଧରିଲା । ହତିଆର ଖଣ୍ଡ ଦେଖିବାକୁ ଛୁରି ପରି । ବୋଧହୁଏ ପଥରର ଛୁରି ।

ହାର ନାଇଥିବା ଲୋକଟି ହାତରେ ପଥରର ଛୁରି ଧରି ବନ୍ଦୀମାନଙ୍କ ନିକଟକୁ ଗଲା । ସେ ସମ୍ମୁଖୀନ ହେବାର ଦେଖି ବନ୍ଦୀ ଓ ବନ୍ଦିନୀ ଅସ୍ଥିର ହୋଇ ପଡ଼ିଲେ । ବନ୍ଦୀ ତାର ନିଜ ଭାଷାରେ କେତେ କ'ଣ କହି ଜୀବନ ବଞ୍ଚାଇବାକୁ ପ୍ରାର୍ଥନା କଲା । ବନ୍ଧନ ଛିଣ୍ଡିଯିବ ବୋଲି ହାତ ଗୋଡ଼ ହଲାଇବାକୁ ଚେଷ୍ଟାକଲା, ମାତ୍ର ବନ୍ଧନ ଛିଣ୍ଡିଲା ନାହିଁ ।

ବନ୍ଦିନୀ ନିଜର ମାତୃଭାଷାରେ ବିନୀତ ଭାବରେ ପ୍ରାର୍ଥନା କଲା, ମୋତେ ଛାଡ଼ିଦିଅ ।

ଲୋକଟି ରମଣୀର ଭାବଭଙ୍ଗୀ ଦେଖି ମନେ ମନେ କ'ଣ ଚିନ୍ତା କଲା କେଜାଣି ଦୂରକୁ ଘୁଞ୍ଚିଆସିଲା ଏବଂ ହାତଠାରି ମୁଣ୍ଡ ହଲାଇ କ'ଣ କହିଲା ।

ଦୂରରେ ଠିଆ ହୋଇଥିବା ଲୋକମାନେ ଉଚ୍ଚ ସ୍ୱରରେ ଏକାସଙ୍ଗେ କ'ଣ କହି ଉଠିଲେ । ଲୋକଟି ଧୀରେ ଧୀରେ ବନ୍ଦୀ ନିକଟକୁ ଅଗ୍ରସର ହେଲା । ପଛକୁ ଗୁନ୍ଥି ଲୋକମାନଙ୍କଠାରୁ କଣ ଇଙ୍ଗିତ ପାଇ ପଥରର ଖଣ୍ଡାଟି ଟେକିଲା ।

ଅହା ! ସେ କି ଭୀତିପ୍ରଦ ଦୃଶ୍ୟ !

ସମ୍ମୁଖରେ ସାକ୍ଷାତ ଯମ ଦଣ୍ଡାୟମାନ । ପଳାୟନର କୌଣସି ଉପାୟ ନାହିଁ । ସେ ଜାଣେ, ଯେତେ ଅନୁରୋଧ କଲେ ମଧ୍ୟ ତା'ର କଥା କେହି ଶୁଣିବେ ନାହିଁ । ଦୟା କ'ଣ ସେମାନେ ଜାଣନ୍ତି ନାହିଁ । ସେ ଉଚ୍ଚସ୍ୱରରେ କାନ୍ଦିଉଠିଲା । ପଳାୟନର ଚେଷ୍ଟା କଲା ନାହିଁ । ମୁକ୍ତି ନିମନ୍ତେ ଅନୁରୋଧ କଲା ନାହିଁ । ସେ ଜାଣେ ଏ ସମସ୍ତ ନିରର୍ଥକ ହେବ ।

ପଥରର ଖଣ୍ଡା ଉପରକୁ ଉଠିଲା । ଆଉ ମୁହୂର୍ତ୍ତେ । ମୁହୂର୍ତ୍ତିକ ପରେ ବନ୍ଦୀର ମୃତ୍ୟୁ ହୋଇଥାନ୍ତା । ଲୋକେ ମାଂସ ଖାଇବା ନିମନ୍ତେ ପ୍ରସ୍ତୁତ ଅଛନ୍ତି । ଥୋକେ ଓଠ ଗୁଣ୍ଡୁଛନ୍ତି । ଏହି ସମୟରେ ଘାତକର ମୁଣ୍ଡରେ ବଜ୍ରପାତ ହେଲା ପରି ସେ ତଳେ ପଡ଼ିଗଲା । ହାତରୁ ଖଣ୍ଡା ଛିଡ଼ିକି ଯାଇ କିଛିଦୂରରେ ଖଣ୍ଡେ ପଥରରେ ବାଜି ଦୁଇଖଣ୍ଡ ହୋଇ ଭାଙ୍ଗିଗଲା । ସମସ୍ତେ ଅବାକ୍ ହୋଇ ଅନାଇ ରହିଛନ୍ତି । କାରଣ କେହି ସ୍ଥିର କରିପାରିଲେ ନାହିଁ ।

କିଛି ସମୟ ପରେ ଜଣେ ସାହସ କରି ଘଟଣା କ'ଣ ଦେଖିବାକୁ ଆସିଲା । ସେ ଭୂପତିତ ଲୋକର ନିକଟକୁ ଆସି ନଇଁପଡ଼ି ଦେଖିଲା, ତାର ମୁଣ୍ଡ ଫାଟି ରକ୍ତ ବାହାରୁଛି । ସେ ମଧ୍ୟ ମୁହଁ ମାଡ଼ି ପ୍ରଥମ ଆହତ ଲୋକରଉପରେ ପଡ଼ିଗଲା । ତାର ହୃଦୟରେ ଗୋଟିଏ କାଣ୍ଡ ଲାଗି ରହିଛି । ରକ୍ତ ବାହାରି ତଳ ଛନ୍ତିଗଲାଣି ।

ବେଢ଼ି ରହିଥିବା ଲୋକଙ୍କ ମନରେ ଭୟ ହୋଇଗଲା । ମାତ୍ର ସେମାନଙ୍କ ମଧ୍ୟରୁ ଜଣେ ସ୍ତ୍ରୀ ଓ ଜଣେ ପୁରୁଷ ରକ୍ତର ଲୋଭ ସମ୍ଭାଳି ପାରିଲେ ନାହିଁ । ତଳେ ମୁହଁ ଲଗାଇ ରକ୍ତତକ ଗୁଣ୍ଡି ଉଦରସ୍ଥ କରିବା ନିମନ୍ତେ ପତିତ ବ୍ୟକ୍ତି ପାଖକୁ ଧାଇଁଗଲେ । କିନ୍ତୁ ସ୍ତ୍ରୀଲୋକଟି ଚିତ୍କାର କରି ହାତ ଛାଟି ଛାଟି ଜଙ୍ଗଲ ଭିତରକୁ ପଳାଇଲା । ବୋଧହୁଏ ମଣିଅଁଚ ବାଣ୍ଟୁଳି ତା ହାତ ପାପୁଲିରେ ବାଜିଛି ।

ଅନ୍ୟ ଜଣକ ଆଣ୍ଠୁମାଡ଼ି କୁକୁର ପରି ତଳେ ଜିଭ ଲଗାଇ ରକ୍ତ ଗୁଣ୍ଡୁ ଗୁଣ୍ଡୁ ସେହିଠାରେ ତଳ ପଡ଼ିଲା । ଆଉ କେହି ସାହସ ବାନ୍ଧି ପାଖକୁ ଆସିଲେ ନାହିଁ । ଦୂରରେ ଥାଇ ଘଟଣା କ'ଣ ଜାଣିବାକୁ ଠିଆ ହୋଇ ରହିଲେ । ଏପରି କି ନିଜେ ବନ୍ଦୀ ମଧ୍ୟ ଭୟରେ କମ୍ପିବାକୁ ଲାଗିଲା । କିଛି ସମୟ ପରେ ଉପସ୍ଥିତ ଲୋକମାନଙ୍କ ମଧ୍ୟରୁ ଜଣକ ଦେହରେ ବାଣ୍ଟୁଳି ବାଜିଲା । ସେ ଚିତ୍କାର କରି ପଳାଇଯିବା ପୂର୍ବରୁ ଅବିରଳ ବାଣ୍ଟୁଳିର ସ୍ରୋତ ଆସି ଅନ୍ୟ ସମସ୍ତଙ୍କୁ ଅସ୍ଥିର କରି ପକାଇଲା । ସମସ୍ତେ ଧାଇଁ ପଳାଇଯିବାକୁ ବସିଲେ । କେତେ ଜଣ ପଳାଇ ଯାଇ ଗଛ ଉଢ଼ୁଆଳରେ

ଲୁଚି ରହିଲେ । ଅବଶିଷ୍ଟ ଲୋକେ ପଳାଇଯିବା ପୂର୍ବରୁ ବନ୍ଦୀ ଓ ବନ୍ଦନୀଙ୍କୁ ସଙ୍ଗରେ ନେଇ ଯିବାକୁ ଏକାଥରେ ଆସି ଗଛର ଗୁରିପାଖେ ବେଢ଼ିଗଲେ ।

ଏହି ଅସଭ୍ୟ ଆଦିମ ଅଧିବାସୀମାନେ ଧନୁଶର କମ୍ବା ବାଠୁଲିଖଣ୍ଡାର ବ୍ୟବହାର ଜାଣନ୍ତି ନାହିଁ । ମଣିଆଁ ବୁଦା ଉଡ଼ୁଆଲରୁ ଦେଖିଲା, ସେ ଏତେ ଚେଷ୍ଟା କରି ମଧ୍ୟ ରମଣୀକୁ ଉଦ୍ଧାର କରିପାରିବ ନାହିଁ । ତା'ର ଶର ଏବଂ ବାଡ଼ିଲୁ ଖାତିର ନ କରି ସେମାନେ ବନ୍ଦୀକୁ ଟାଣିନେବାକୁ ବସିଛନ୍ତି । ସେ ଧନୁଖଣ୍ଡ ଗୋଟିଏ ଗଛର ଉଡ଼ୁଆଲରେ ରଖି ଚମତ୍କାର ଥିଲା ଗଛ ଡାଳରେ ଓହଳାଇ ଦେଲା । ଖଣ୍ଡା ଧରି ସେମାନଙ୍କ ଭିତରକୁ ନିର୍ଭୟରେ ପଶି ଆସିଲା । ମଣିଆଁ ଖଣ୍ଡା ଚଳାଇବାରେ ସିଦ୍ଧହସ୍ତ । ସେ ଖଣ୍ଡା ବୁଲାଇ ସେମାନଙ୍କୁ ଆକ୍ରମଣ କଲା । ପରାସ୍ତ ସୈନ୍ୟ ପରି ପ୍ରଥମେ ଆଦିମ ଅଧିବାସୀମାନେ ଏଣେ ତେଣେ ପଳାଇଲେ, ମାତ୍ର ଯେତେବେଳେ ଦେଖିଲେ ଯେ, ସେମାନଙ୍କୁ ତାଙ୍କରି ପରି ଜଣେ ଲୋକ ଆକ୍ରମଣ କରୁଛି, ସେ ଭୂତ ପ୍ରେତ କି ଆଉ କେହି ନୁହେ, ସମୁଦ୍ରର ଜୁଆର ମାଡ଼ିଆସିଲା ପରି ଗୁରିଆଡ଼ରୁ ମାଡ଼ି ଆସିଲେ ନିଜ ନିଜର ଶସ୍ତ୍ର ଧରି । ମଣିଆଁ ଖଣ୍ଡା ବୁଲାଇ ସେମାନଙ୍କ ମଧ୍ୟରୁ ଦୁଇତିନିଜଣଙ୍କୁ ମାରି ପକାଇଲା । ସାତ ଆଠଜଣ ଆହତ ହୋଇ ତଳେ ପଡ଼ିରହିଲେ । ଅନେକେ ଆହତ ହୋଇ ଭୟରେ ଜୀବନ ରକ୍ଷାକରିବାକୁ ପଳାଇଗଲେ ।

ମଣିଆଁର ଦେହରେ ଅନେକ ଜାଗାରେ କ୍ଷତ ହୋଇ ରକ୍ତ ବହୁଥିଲା । ସମସ୍ତେ ପଳାଇଛନ୍ତି ଜାଣି ସେ ଶ୍ରାନ୍ତି ହରଣ କରିବାକୁ ପଡ଼ିଥିବା ଡାଳପତ୍ର ଉପରେ ଲମ୍ବ ହୋଇ ଶୋଇପଡ଼ିଲା । ହାତରେ କିନ୍ତୁ ଖଣ୍ଡାଟିକୁ ଦୃଢ଼ଭାବରେ ଧରି ରଖିଥାଏ । କାଳେ ଶତ୍ରୁମାନେ ପୁଣି ଫେରନ୍ତି । ସେ ଏତେ କ୍ଲାନ୍ତ ହୋଇଥିଲା ଯେ ବନ୍ଦୀ ବା ବନ୍ଦନୀକୁ ମୁକ୍ତ କରିବା ଦୂରେ ଥାଉ, ସେମାନଙ୍କୁ ଅନାଇଁ ପାରିଲା ନାହିଁ ।

କିଛି ସମୟ ପରେ କିଏ ଜଣେ ଡାକିଲା, ମଣିଆଁ ଭାଇ ।

ମଣିଆଁ ଶୋଇ ନ ଥିଲା । ଆଖି ବୁଜି ଦମ୍ ନେଉଥିଲା । ତା'ର ନାମ ଧରି କିଏ ଜଣେ ଡାକୁଥିବାର ଶୁଣି ସେ ଅବାକ୍ ହୋଇ ଆଖି ମେଲାଇ ଏଣେ ତେଣେ ଗୁହିଁଲା । କିଏ ଡାକୁଛି ସ୍ଥିରକରି ପାରିଲା ନାହିଁ ।

ପୂର୍ବପରିଚିତ ସ୍ୱର ଆହୁରି ଥରେ ଡାକିଲା, ମଣିଆଁ ଭାଇ । ମଣିଆଁ ସ୍ୱର ଆସୁଥିବା ଦିଗକୁ ଗୁହିଁ ବୁଝିପାରିଲା, ବନ୍ଦନୀ ରମଣୀହିଁ ତା'ର ନାମ ଧରି ଡାକୁଛି ।

କିଏ, ସୁଶୀଳା ? ମଣିଆଁ ଚମକିପଡ଼ିଲା । ରକ୍ତକ୍ଷୟ ହେତୁ ଅଙ୍ଗ ଦୁର୍ବଳ ହୋଇ ପଡ଼ିଥିଲେ ମଧ୍ୟ ସେ ଧୀରେ ଧୀରେ ଉଠି ନିକଟକୁ ଗଲା । କିନ୍ତୁ ଏ ତ ସୁଶୀଳା ନୁହେଁ ।

ମଣିଆଁର ସମସ୍ତ ଅଣା ରମଣୀକୁ ଦେଖିବା ମାତ୍ରେ ଉଭେଇଗଲା— ଆକାଶରେ ବିଦ୍ୟୁତ୍ ଯେପରି କ୍ଷଣକ ନିମନ୍ତେ ଝଲସିଉଠି ପରକ୍ଷଣରେ ଲୁଚିଯାଏ । ରମଣୀଟି ସମ୍ପୂର୍ଣ୍ଣ ନଗ୍ନ । ଚକ୍ଷୁ ଫେରାଇ ମଣିଆଁ ଡାକିଲା, ଚଞ୍ଚଳା— ।

ମଣିଆଁ ବହୁବର୍ଷ ପୂର୍ବେ ଚଞ୍ଚଳାକୁ ଦେଖିଥିଲା । ଏ ଅବସ୍ଥାରେ ଚଞ୍ଚଳାକୁ ଦେଖିବ ପୁଣି ବାଲିଦ୍ୱୀପରେ, ଏ ଅଣା ବା ତା'ର ହୁଅନ୍ତା କାହିଁକି ? ତଥାପି ସେ ଦେଖିବା ସଙ୍ଗେ ସଙ୍ଗେ ଚିହ୍ନିପାରିଲା । ଚଞ୍ଚଳାର ଗଣ୍ଡ ଲଜ୍ଜାରେ ରକ୍ତିମ ହେଲା । କୃତଜ୍ଞତାର ଚିହ୍ନ ସ୍ୱରୂପ ଚକ୍ଷୁରୁ ଜଳଧାରା ଗଡ଼ିପଡ଼ିଲା । ସେ ମଣିଆଁର ପ୍ରଶ୍ନର ଉତ୍ତର ଦେବାକୁ କହିଲା-ହିଁ— ।

ଚଞ୍ଚଳା ବନ୍ଦିନୀ । ତେଣୁ ତା'ର ନଗ୍ନଯୌବନ ଘୋଡ଼ାଇ ଲଜ୍ଜା ନିବାରଣ କରିବାର ଉପାୟ ନାହିଁ । ସେ ପୂର୍ବପରି ନିଶ୍ଚଳ ରହିଲା ।

ମଣିଆଁ ନିଜ ଅଣ୍ଟାରେ ଭିଡ଼ିଥିବା ଉତ୍ତରୀୟ ଖୋଲି ଚଞ୍ଚଳା ଉପରକୁ ପକାଇଦେଲା । କିଛି ସମୟ ଅପେକ୍ଷା କରି ମୁହଁ ଫେରାଇ ଚାହିଁ ଦେଖିଲା, ଚଞ୍ଚଳା ପୂର୍ବପରି ଠିଆହୋଇ ରହିଛି । ଉତ୍ତରୀୟଖଣ୍ଡି ତଳେ ପଡ଼ିଛି ।

ମଣିଆଁର ମନେ ହେଲା ଯେ, ସେ ଦୃଢ଼ଭାବରେ ଅବଦ୍ଧ । ସେ ତା'ର ହାତ ଗୋଡ଼ର କୌଣସି ବ୍ୟବହାର କରିପାରୁ ନାହିଁ । ଅତି ଶୀଘ୍ର ବନ୍ଦୀ ଓ ବନ୍ଦିନୀ ଉଭୟଙ୍କୁ ମୁକ୍ତକରି ମଣିଆଁ ଆହତ ଓ ମୃତ ଅସଭ୍ୟ ଲୋକଙ୍କ ଆଡ଼େ ଚାହିଁଲା । ଯେଉଁମାନେ ମୃତ, ସେମାନଙ୍କୁ ଗୋଟିଏ ସ୍ଥାନକୁ ନେଇ ଜମାକରି ରଖିଲା । ପଥର ଖୋଳରୁ ଜଳ ଅଣି ଆହତ ଲୋକଙ୍କ ମୁହଁରେ ଛିଞ୍ଚିଲା । ସେମାନେ ଆଗରୁ ସଂଜ୍ଞା ଲାଭ କରିଥିଲେ । ଯେତେବେଳେ ସେମାନେ ଦେଖିଲେ ଯେ ମଣିଆଁ ସେମାନଙ୍କୁ ନ ମାରି ମୁହଁରେ ଜଳ ଛିଞ୍ଚୁଛି, ସେମାନେ ଭୟ ନ କରି ଉଠି ବସିଲେ । ମଣିଆଁ ସେମାନଙ୍କୁ ମଣିଷ ମୁଣ୍ଡର ଖପୁରୀରେ ଜଳ ଅଣିଦେଲା । ଇତ୍ୟବସରରେ ଚଞ୍ଚଳା ପ୍ରସ୍ତୁତ ହୋଇ ମଣିଆଁକୁ ସାହାଯ୍ୟ କରିବା ନିମନ୍ତେ ପଥର ଖୋଳରୁ ଜଳଅଣି ଆହତ ଲୋକଙ୍କର ମୁହଁରେ ଦେଲା । ନିକଟରେ ଥିବା କୌଣସି ଗୋଟିଏ ଲତା ଦେହରୁ ପତ୍ର ଅଣି ହାତରେ ମକଚି ତା'ର ରସ ସେମାନଙ୍କର କ୍ଷତସ୍ଥାନମାନଙ୍କରେ ଲଗାଇ ଦେଲା । ମଣିଆଁକୁ ଅନୁରୋଧ କରି ତା' ଦେହର କେତେକ ସ୍ଥାନରେ ମଧ୍ୟ ଦେବାକୁ ଭୁଲିଲା ନାହିଁ ।

ଅନାର୍ଯ୍ୟମାନଙ୍କ ମଧ୍ୟରୁ ତିନିଜଣ ଇହଲୀଳା ସାଙ୍ଗ କରିଥିଲେ । ଆହତ ହୋଇ ଥିଲେ ଛ'ଜଣ । ମୁକ୍ତ ବନ୍ଦୀ ଏବଂ ଆହତ ଲୋକମାନେ ମଣିଆଁ ଏବଂ ଚଞ୍ଚଳାର ବ୍ୟବହାର ଦେଖି ଅବାକ୍ ହୋଇଗଲେ । ଏ କ'ଣ ? ଯାହାର ମାଂସ

ଖାଇବାକୁ ଅମେମାନେ ବାନ୍ଧ ରଖିଥିଲୁ, ସେ ଆମର ସେବା କରୁଛ ? ସେ କ'ଣ ଦେବା ! ବୋଧହୁଏ ସେମାନେ ଏହିପରି କେତେ କ'ଣ ଭାବୁଥିବେ ।

ମଣିଅାଁ ସେମାନଙ୍କୁ ଇଙ୍ଗିତ କରି ଚାଲିଯିବାକୁ ଆଦେଶ କଲା । ସେମାନେ ବୁଝିପାରିଲେ । କୃତଜ୍ଞତାପୂର୍ଣ୍ଣ ନେତ୍ରରେ ମଣିଅାଁ ଏବଂ ଚମ୍ପଲାକୁ ଚାହିଁ ଲମ୍ବ ଲମ୍ବ ହୋଇ ସେମାନଙ୍କର ଗୋଡତଳେ ଶୋଇପଡ଼ିଲେ । ମଣିଅାଁ ଏବଂ ଚମ୍ପଲା ସେମାନଙ୍କୁ ଟେକି ଉଠାଇ ପୁନର୍ବାର ହାତଠାରି ଯିବାକୁ କହିବାରୁ ସେମାନେ ଗୋଟି ଗୋଟି ହୋଇ ସେ ସ୍ଥାନରୁ ଚାଲିଗଲେ । ଏକା ରହିଲା ସେହି ମୁକ୍ତ ବନ୍ଦୀ । ମଣିଅାଁ ତାକୁ ଯେତେ ଠାରି କହିଲେ ସୁଦ୍ଧା ସେ ଚାଲିଗଲା ନାହିଁ ।

ମୂର୍ଦ୍ଧାରଗୁଡ଼ାକ ସେପରି ଅବସ୍ଥାରେ ପକାଇ ଗଲେ କାଲେ ପରେ ଅସଭ୍ୟ ଲୋକମାନେ ଆସି ସେମାନଙ୍କର ମାଂସ ଖାଇଯିବେ ଏହା ଭାବି ମଣିଅାଁ ନିକଟସ୍ଥ ଗୋଟାଏ ମସ୍ତବଡ଼ ଶୁଖିଲା ବାଉଁଶ ବୁଦା ନିକଟକୁ ମୂର୍ଦ୍ଧାରଗୁଡ଼ାକ ଘୋଷାଡ଼ି ନେଲା, ତହିଁରେ ମୁକ୍ତ ବନ୍ଦୀ ତାକୁ ସାହାଯ୍ୟ କଲା । ଚମ୍ପଲା ତଳେ ବସି ସ୍ଥିର ଚକ୍ଷୁରେ ମଣିଅାଁକୁ ଅନାଇଁ ରହିଥାଏ ।

ଶବଗୁଡ଼ିକ କଣ୍ଟାବାଉଁଶ ବୁଦାରେ ସଜାଇ ରଖି ସେ ଯେଉଁଠାରେ ଧନୁ ଏବଂ ଥଳି ରଖିଥିଲା ସେହି ସ୍ଥାନକୁ ଗଲା । ଧନୁକୁ କାନ୍ଧରେ ଝୁଲାଇ ମୁଣି ହାତରେ ଧରି ବାଉଁଶ ବୁଦାପାଖକୁ ଗଲା । ଦେଖିଲା ମୁକ୍ତ ବନ୍ଦୀ ଗୋଟିଏ ଶବ ଦେହରୁ ସୁନା ହାରଟି ଫିଟାଉଛି । ସେ ବାଧା ଦେଲା ନାହିଁ । ସୁନାହାର ଫିଟାଇବା ପରେ ସେ ଶବ ଉପରେ ଶୁଖିଲା କାଠ ଓ ବାଉଁଶ ଲଦିଦେଲା ଏବଂ ଚକମକି ପଥର ସାହାଯ୍ୟରେ ନିଆଁ ବାହାର କରି ଲଗାଇଦେଲା । ନିଆଁ ଧୀରେ ଧୀରେ ଉପରକୁ ଉଠିଲା । ଜଙ୍ଗଲରେ ଜାଣି ଜାଣି ନିଆଁ ଲଗାଇଛି । କାଳେ ଚାରିଆଡ଼େ ମାଡ଼ିଯିବ, ସେମାନେ ବିପଦରେ ପଡ଼ିବେ, ଏହା ଭାବି ମଣିଅାଁ ମୁକ୍ତ ବନ୍ଦୀକୁ ଚାଲିଯିବାକୁ ଇଙ୍ଗିତ କରି ଚମ୍ପଲାକୁ କହିଲା, ପଛେ ପଛେ ଆସ ।

ଚମ୍ପଲା ଅନେକଦିନ ହେଲା ଆହାର ଅଭାବରେ ବଡ଼ ଦୁର୍ବଳ ହୋଇ ପଡ଼ିଥିଲା । ଚାଲିବାର ଶକ୍ତି ତା'ଠାରୁ ପ୍ରାୟ ଲୋପ ପାଇଥିଲା । ଯାହାହେଉ ମଣିଅାଁର କଥା ଶୁଣି ସେ ତାର ପଛେ ପଛେ ଠଲ ଠଲ ହୋଇ ଚାଲିଲା; କିନ୍ତୁ ପଛକୁ ପଡ଼ି ଯାଉଥାଏ । ଏଣେ ନିଆଁ ହାଉ ହାଉ ହୋଇ ଜଳିଉଠିଲାଣି ।

ମଣିଅାଁ ପଛକୁ ଚାହିଁ ଦେଖିଲା, ଚମ୍ପଲା ଧୀରେ ଧୀରେ ଚାଲୁଛି । ମୁକ୍ତ ବନ୍ଦୀ ଗୋଟିଏ ଗଛର ଉଢ଼ୁଆଳରେ ଠିଆ ହୋଇ ଜ୍ୱଳନ୍ତ ନିଆଁ ଆଡ଼କୁ ଚାହିଁ ଭୟରେ ଥରୁଛି । ସେ ସମସ୍ତ ଘଟଣା ବୁଝିପାରିଲା; ସେ ଜାଣି ପାରିଲା ଯେ, ଅସଭ୍ୟ ଲୋକମାନେ ନିଆଁର ବ୍ୟବହାର ଜାଣନ୍ତି ନାହିଁ । ତାକୁ ହାତ୍ଠାରି

ପଛେ ପଛେ ଆସିବାକୁ ଇଙ୍ଗିତ କରି କ୍ଳାନ୍ତ ଏବଂ ଦୁର୍ବଳ ଚଞ୍ଚଳାର ହାତ ଧରି ଦ୍ରୁତ ପଦରେ ନଦୀକୂଳ ଆଡ଼େ ଚାଲିଲା ।

ବନ୍ଦୀଟି ତାର ଅନୁସରଣ କଲା ।

ଉଜ୍ଜ୍ୱଳ ଚନ୍ଦ୍ର ଆକାଶ ବକ୍ଷରେ । ନୌକା ଭିତରେ କ୍ଳାନ୍ତ ମଣିଆଁ ନିଦ୍ରାମଗ୍ନ । ନିକଟରେ ପ୍ରଭୁଭକ୍ତ ଅଜଙ୍ଗ । ଟିକିଏ ଆଡ଼ ହୋଇ ଦୂରରେ ଚଞ୍ଚଳା ।

ଦୁଇଦିନ ହେଲା ଚଞ୍ଚଳା ଏବଂ ଅଜଙ୍ଗ (ଅଜଙ୍ଗ ପର୍ବତର ଅଧିବାସୀ ହୋଇଥିବାରୁ ମୁକ୍ତବନ୍ଦୀକୁ ବର୍ତ୍ତମାନଠାରୁ ଅଜଙ୍ଗ ବୋଲି ଡକାଯିବ) ଶତ୍ରୁ ହାତରୁ ମୁକ୍ତହୋଇ ଆସିଛନ୍ତି । ସେମାନଙ୍କର ଶାରୀରିକ ଅସୁସ୍ଥତା ନାହିଁ, ମାତ୍ର ଯେ ସେମାନଙ୍କୁ ମୁକ୍ତ କରିଛି ସେ ପୀଡ଼ିତ । ଦେହରୁ ଅପର୍ଯ୍ୟାପ୍ତ ରକ୍ତ କ୍ଷୟ ହୋଇଥିବାରୁ ସେ ଦୁର୍ବଳ ହୋଇପଡ଼ିଛି । ବେଦନାରୁ ରକ୍ଷା ପାଇବାକୁ ସେ ଶୋଇବାକୁ ଚେଷ୍ଟା କରିଥିଲା । ଦୁଇଦିନ ପରେ ଆଜି ତାକୁ ନିଦ ହୋଇଛି ।

ଅଜଙ୍ଗ ମୁକ୍ତ ହୋଇ ମଧ୍ୟ ପଳାଇଗଲା ନାହିଁ । ମଣିଆଁ ତାକୁ ବାରମ୍ବାର କହିଲେ ମଧ୍ୟ ସେମାନଙ୍କୁ ଛାଡ଼ି ଚାଲିଯିବାକୁ ଅସମ୍ମତ । ପଳାଇ ଯିବାକୁ କହିଲେ ସେ ମୁହଁ ଶୁଖାଇ ତଳକୁ ଅନାଇ ଚୁପ୍ କରି ବସିପଡ଼େ, କିଛି କହେ ନାହିଁ ।

ଏମାନଙ୍କ ମଧ୍ୟରେ ଅନେକ ଦିନ ରହି ଚଞ୍ଚଳା ସେମାନଙ୍କ ଭାଷା କିଛି କିଛି ଶିଖିଛି । ଯେତେବେଳେ ମଣିଆଁ ନିଦ୍ରିତ ଥାଏ, ଚଞ୍ଚଳା ମଣିଆଁ ନିକଟରୁ ଉଠିଆସି ଅଜଙ୍ଗକୁ ହାତଠାରି ଅନେକ କାର୍ଯ୍ୟ କରିବାକୁ ଆଦେଶ ଦିଏ । ଅଜଙ୍ଗ ବିନା ଆପତ୍ତିରେ ଠାରରୁ ବୁଝିପାରି ଚଞ୍ଚଳାର ସମସ୍ତ କାର୍ଯ୍ୟ କରେ । ନିକଟସ୍ଥ ଜଙ୍ଗଲକୁ ଯାଇ ଏକ ପ୍ରକାର ଲତା ଦେହରୁ ପତ୍ର ଛିଣ୍ଡାଇ ଆଣେ । ଚଞ୍ଚଳା ନିଜ ହାତରେ ପତ୍ରରୁ ରସ କାଢ଼ି ମଣିଆଁର କ୍ଷତସ୍ଥାନମାନଙ୍କରେ ଲଗାଏ । ଚଞ୍ଚଳାର ଇଙ୍ଗିତରେ ଅଜଙ୍ଗ ଦୁଇଦିନ ହେବ ଲୁଗା ପିନ୍ଧୁଛି । ଅବଶ୍ୟ ତାକୁ ଅଡୁଆ ଅଡୁଆ ଲାଗେ ।

ମଣିଆଁର ନିଦ୍ରାଭଙ୍ଗ ହେଲା । ସେ ହାଇ ମାରୁ ମାରୁ ଦେଖିଲା, ନିକଟରେ ଅଜଙ୍ଗ ବସିଛି । ସେପାଖେ ଚଞ୍ଚଳା ବସି ଅନ୍ୟମନସ୍କ ଭାବେ ଜଙ୍ଗଲ ଆଡ଼କୁ ଅନାଇଁ ରହିଛି ।

ଦୁଇଦିନ ପୂର୍ବେ ଜଙ୍ଗଲରେ ସେ ଯେଉଁ ଅଗ୍ନି ଲଗାଇ ଆସିଥିଲା, ତାହା ଅଦ୍ୟାପି ନିର୍ବାପିତ ହୋଇନାହିଁ । ବେଳକୁବେଳ ଅଧିକ ହୋଇଁ ଶେଷରେ

ମନ୍ଦର ନିକଟ ପର୍ଯ୍ୟନ୍ତ ମାଡ଼ିଆସିଲାଣି । ଦୂରରୁ ଅଗ୍ନିଶିଖା କ୍ରମେ ଉପରକୁ ଉଠିବା ଦେଖାଯାଉଛି । ସେହି ଦିଗରୁ ପବନ ବହି ଆସୁଥିବାରୁ ଗରମ ପବନ ନୌକାର ଅଧିବାସୀଙ୍କୁ ଅଥୟ କରିପକାଉଛି । କ୍ରମେ ଉତ୍ତାପ ଅସହ୍ୟ ହେଲା । ଚଞ୍ଚଳା ପର୍ବତ ଆଡ଼ୁ ମୁହଁ ଫେରାଇ ମଣିଆଁ ନିକଟକୁ ଆସିଲା । ମଣିଆଁକୁ ଜାଗ୍ରତ ଦେଖି କହିଲା, ଜଙ୍ଗଲରେ ନିଆଁ ଲଗିଛି ବୋଲି ଆଜି ଭୀଷଣ ଗରମ ହେଉଛି । ବଡ଼ ଅସହ୍ୟ—

ମଣିଆଁ ଉତ୍ତର ଦେଲା, ଜଙ୍ଗଲରେ ନିଆଁ ଲଗାଇ ମୁଁ ଭୁଲ୍ କରିଛି । ଯେଉଁଥି ପାଇଁ ଏଠାକୁ ଏତେ କଷ୍ଟ ସହି ଆସିଛି, ହୁଏତ ସେ କାର୍ଯ୍ୟ ସାଧନ କରିବାରେ ବିଳମ୍ବ ହୋଇପାରେ । ଧୀରେ ଧୀରେ ଖାଦ୍ୟ ସାମଗ୍ରୀ କମିଆସୁଛି । ଯଦି ଶେଷ ହୋଇଯାଏ, ହୁଏତ ଆମକୁ ଖାଦ୍ୟାଭାବରେ ଜୀବନ ହରାଇବାକୁ ପଡ଼ିବ ।

ଚଞ୍ଚଳା କହିଲା, ଖାଦ୍ୟ ଅଭାବରୁ ଜୀବନ ହରାଇବାକୁ ହେବ ନାହିଁ । ନୌକାରେ ଚାଉଳ ଡାଲି ପ୍ରଭୃତି ଯାହା କିଛି ଅଛି, ସେ ସବୁ ସେହିପରି ଥାଉ ।

ତେବେ ଖାଇବା କଣ ?

ଯେଉଁଦିନ ମୋତେ ନାରାୟଣ ସାଧବର ଲୋକମାନେ ଆଣି ଏଠାରେ ଛାଡ଼ିଦେଇ ଗଲେ, ତା'ର ପରଦିନ ମୁଁ ଏଠାର ନରମାଂସ ଭକ୍ଷଣକାରୀ ଅସଭ୍ୟଙ୍କ ହାତରେ ପଡ଼ିଲି । ସେମାନେ ଯେପରି କଞ୍ଚା ମାଂସରେ ଲୁଣ ଏବଂ ମସଲା ଦେଇ ଖାଆନ୍ତି, ମୋତେ ମଧ୍ୟ ସେହିପରି ଦେଲେ । ମୁଁ ସେ ସମସ୍ତ କିଛି ଖାଇଲି ନାହିଁ । ମୋତେ ସେମାନେ କ ମାରି ଏତେଦିନ ଯାଏ କାହିଁକି ଯେ ରଖିଥିଲେ, ମୁଁ କହି ପାରିବି ନାହିଁ । କଞ୍ଚା ମାଂସ ଖାଉ ନାହିଁ ଦେଖି ସେମାନେ ମୋତେ ଦୁଧ ଏବଂ ସରବଡ଼ି ଆଣିଦେଲେ । ମୁଁ ପ୍ରଥମେ କାବା ହୋଇ ଭାବିଲି, ଏମାନେ ଦୁଧ ପାଇଲେ କାହୁଁ । ଦୁଧକୁ ସରବଡ଼ି କଲେ କିପରି, ଅଉଟିଲେ କିପରି, ଏମାନେ ତ ନିଆଁର ବ୍ୟବହାର ଜାଣନ୍ତି ନାହିଁ । ଜାଣିଥିଲେ ନରମାଂସ ହେଉ ପଛକେ ଅନ୍ତତଃ ସିଝାଇକରି ଖାଆନ୍ତେ ତ । ଯାହା ହେଉ ମୁଁ ସେହିଦିନ ଠାରୁ ଦୁଧ ଏବଂ ଦୁଧସର ଖାଇ ଜୀବନ ବଞ୍ଚାଇ ରଖିଛି ।

ବୋଧହୁଏ ସେମାନେ ଗାଈ ରଖିଥିବେ ?

ସେମାନଙ୍କର ଗାଈ ନାହିଁ । ଯେଉଁମାନେ ମୁର୍ଦ୍ଦାର ମାଂସ ସଢ଼ାଇ ଖାଇବାକୁ ଘୃଣା କରନ୍ତି ନାହିଁ, ସେମାନେ କି କେବେ ଗାଈ ପାଖରେ ଥିଲେ ତା' ମାଂସ ନ ଖାଉଥାନ୍ତେ । ଦୁଧ କେଉଁଠାରୁ ଆଣନ୍ତି, ଏ ବିଷୟ ମୁଁ ପରେ ବୁଝିପାରିଲି । ଯେଉଁଠାରେ ଆମେ ବନ୍ଦୀଥିଲୁ, ଯେଉଁଠାରୁ ଆମକୁ ତୁମେ ମୁକ୍ତ କରି ଆଣିଲ ସେହି ସ୍ଥାନର ଅନତି ଦୂରରେ ଗୋଟିଏ ପ୍ରକାଣ୍ଡ

ଗଛ ଅଛି । ହୁଏତ ବର୍ତ୍ତମାନ ବିଶ୍ୱାସ ନ କରିପାର, କିନ୍ତୁ ପରେ ନିଜେ ଦେଖିବାକୁ ପାଇବ ଯେ, ସେହି ପ୍ରକାଣ୍ଡ ଗଛର କ୍ଷୀର ହେଉଛି ଦୁଧ । ଗଛର ବକଳ କାଟିଦେଲେ ସେ ଗଛରୁ ଗାଢ଼ା ଅଜଣ୍ଠା ଦୁଧ ପରି କ୍ଷୀର ବାହାରେ । ଗାଈଦୁଧ ଏବଂ ସେହି ବୃକ୍ଷରୁ ବାହାରୁଥିବା ଦୁଧ ମଧ୍ୟରେ କୌଣସି ପ୍ରଭେଦ ବୁଝାଯାଏ ନାହିଁ । ଯେଉଁସବୁ କ୍ଷୀର ଶୁଖି ଯାଇ ମୁଣ୍ଡା ମୁଣ୍ଡା ହୋଇ ଅଠାପରି ଗଛରେ ଲାଗିଥାଏ, ତାର ସ୍ୱାଦ ଠିକ୍ ଦୁଧସର ପରି । ଗଛରେ ଯେଉଁ ଫଳ ଫଳେ, ତାକୁ ଭାଙ୍ଗିଲେ ତା ଭିତରୁ ଯେଉଁ ରସପୂର୍ଣ୍ଣ ଶସ ବାହାରେ ତାର ସ୍ୱାଦ ତ କହିଲେ ନ ସରେ । ବର୍ତ୍ତମାନ ମୋର କହିବାର କଥା, ନିଆଁ ଲିଭିଗଲେ, ଆମେ ସେହି ଗଛରୁ ଦୁଧ ଆଣି ଖାଇବା ।

ଏ ଆଶ୍ଚର୍ଯ୍ୟ ଘଟଣା ଯଦି ସତ୍ୟ ହୋଇଥାଏ, ଆଉ ଖାଦ୍ୟର କୌଣସି ଅଭାବ ରହିବ ନାହିଁ । ଅଚ୍ଛା କହିବ କି, ତୁମକୁ ନାରାୟଣ ସାଧବର ଲୋକମାନେ କାହିଁକି ଆଣି ଏଠାରେ ଛାଡ଼ିଗଲେ ? ସେମାନେ ତୁମକୁ ପାଇଲେ କିପରି ?

ଚଞ୍ଚଳା ଚନ୍ଦ୍ରାକାନ୍ତ ତାର ଏ କାହାଣୀ କେଉଁଠାରୁ ଆରମ୍ଭ କରିବ ! ବିବାହ କଥାରୁ ଆରମ୍ଭ କରିବ ଭାବି କିପରି ତାକୁ ଲାଜ ମାଡ଼ିଲା, କିନ୍ତୁ ତାର ଜୀବନ ଯେ ରକ୍ଷା କରିଛନ୍ତି, ତାଙ୍କ ଆଗରେ ନ କହିଲେ କାଳେ ସେ ଅନ୍ୟ କିଛି ଭାବନ୍ତି । କାଳେ ତାଙ୍କ ମନରେ କଷ୍ଟ ହୁଏ । ଏପରି ଚନ୍ଦ୍ରାକର ଗୋଟି ଗୋଟି କରି ସମସ୍ତ ଘଟଣା ବର୍ଣ୍ଣନା କଲା ।

ରାଧାଶ୍ୟାମଙ୍କ କଥାରୁ ପ୍ରକାଶ ଯେ, ସେ ଶିଶୁପାଳ ହୋଇ ତାମ୍ରଲିପ୍ତ ଫେରିଲେ । ଏହାର କାରଣ ଚଞ୍ଚଳାଙ୍କ ଘରେ ଡକାୟତର ଆକ୍ରମଣ । ଡକାୟତମାନେ ନାରାୟଣ ସାଧବଙ୍କର ଲୋକ । ଚଞ୍ଚଳାର ପିତା ଜୀବନ ହରାଇଲେ । ସେ ଏବଂ ତାର ଭାଇ ବନ୍ଦୀ ହେଲେ । ସେମାନଙ୍କୁ ବନ୍ଦୀ କରି ତାମ୍ରଲିପ୍ତ ଅଣାଗଲା । ତାମ୍ରଲିପ୍ତଠାରେ ଭାଇ ଭଉଣୀଙ୍କର ବିଚ୍ଛେଦ ହେଲା । ଅଧିରାଜ କୁଆଡ଼େ ଗଲେ ଚଞ୍ଚଳା ଜାଣି ନାହିଁ । ଯେଉଁ ବୋଇତରେ ସେ ବନ୍ଦିନୀ ଥିଲା, ତାହାର କୌଣସି ଲୋକକୁ ପଚାରିବାରୁ ଜଣାଗଲା, ଅଧିରାଜ ମୃତ । ଚଞ୍ଚଳା ହତାଶ ହେଲା । କିଛିଦିନ ପରେ ବୋଇତ ସମୁଦ୍ରକୁ ଗଲା । ତାମ୍ରଲିପ୍ତରୁ ବୋଇତ ଆସିବା ପୂର୍ବରୁ ଚଞ୍ଚଳାକୁ ଯେପରି ଟିକିଏ ସ୍ୱାଧୀନତା ଦେଉଥିଲେ, ବୋଇତ ସମୁଦ୍ରରେ ପଶିଲାରୁ ସେତିକ ତାକୁ ହରାଇବାକୁ ପଡ଼ିଲା । ସକାଳୁ ସନ୍ଧ୍ୟାଯାଏ ଗୋଟିଏ କୋଠରିରେ ବନ୍ଧାହୋଇ ଥାଏ । କିଛିଦିନ ପରେ ତାକୁ ସେ ବୋଇତରୁ ଅନ୍ୟ ବୋଇତକୁ ନେଇଗଲେ । ସେ ବୋଇତର ଲୋକମାନେ ଆଣି ତାକୁ ଏଠାରେ ଛାଡ଼ିଦେଇ ଯାଇଛନ୍ତି । ଏ ସବୁର କାରଣ ଚଞ୍ଚଳା କହି ପାରିଲା ନାହିଁ ।

ତା'ର କଥା ଶୁଣି ମଣିଅଁ ମୁଣ୍ଡରେ ହାତ ଦେଇ କେତେ କଣ ଚିନ୍ତାକଲା । ଚଞ୍ଚଳା ତାର ମୁହଁକୁ ଅନାଇ ରହିଲା ତୃଷିତ-ନୟନରେ ।

ଏହି ସମୟରେ ସେମାନେ ଅଜଙ୍ଗକୁ ଓଦା ସର ସର ହୋଇ ନଦୀକୂଳରୁ ଆସୁଥିବାର ଦେଖିଲେ । ସେ ତାର ଦୁଇ ହାତରେ ଗୋଟିଏ ବଡ଼ ମାଛ ଧରିଛି । ଚଞ୍ଚଳା ଅଜଙ୍ଗକୁ କଣଠାରି ମଣିଅଁକୁ କହିଲା, ଅସଭ୍ୟ ଆଦିମ ଅଧିବାସୀଙ୍କ ମଧ୍ୟରେ ମୁଁ ଏତେ ଦିନ ରହି ବୁଝିପାରୁଛି ଯେ ସେମାନେ ବଡ଼ ନିଷ୍ଠୁର ହୃଦୟ । ମନୁଷ୍ୟ ପଶୁପକ୍ଷୀ ଯାହା ପାଇବେ ଠିକ ଠିକ କରି ଜୀବନ୍ତ କାଟି ଖାଇବେ । ଅଜଙ୍ଗ କିନ୍ତୁ ସେମାନଙ୍କ ଭିତରୁ ବାହାର । ସେ ଯେ ନରମାଂସ କିମ୍ବା ଅନ୍ୟ କୌଣସି ମାଂସ ନ ଖାଏ, ତାହା ନୁହେଁ । ହେଲେ କଣ ହେଲା, ତାର ହୃଦୟଟି ଅନ୍ୟ ଉପାଦାନରେ ଗଠିତ, ମନରେ ଦୟା ମାୟାର ସ୍ଥାନ ଅଛି । ମୋର କଷ୍ଟ ଦେଖି ସେ ମୋତେ ମୁକ୍ତ କରିବାକୁ ବସିଥିଲା । ଧରା ପଡ଼ିବାରୁ ତାକୁ ବନ୍ଦୀ କଲେ । ଆହା ବିଚରା ମୋତେ ମୁକ୍ତ କରିବାକୁ ଯାଇ ନିଜର ଜୀବନ ଦେବାକୁ ବସିଥିଲା । ଯେଉଁ ଜାତି ମୃତ ପିତା ମାତାଙ୍କର ମାଂସ ଖାଇବାକୁ କୁଣ୍ଠିତ ନୁହନ୍ତି, ସେପରି ଅସଭ୍ୟ ଜାତିରେ ଅଜଙ୍ଗ ଗୋଟିଏ ରତ୍ନ ।

ମଣିଅଁ ମୁଣ୍ଡ ଟେକି ଅଜଙ୍ଗ ଆଡ଼କୁ ଚାହିଁଲା । ଚଞ୍ଚଳାର କଥା ଶୁଣି ମଧ୍ୟ କିଛି ଉତ୍ତର ଦେଲା ନାହିଁ । ତାର ମନ ସେତେବେଳେ ଅନ୍ୟ ଭାବନାରେ ଆନ୍ଦୋଳିତ । ଚଞ୍ଚଳାକୁ ଦେଖି ଓ ତା କଥା ଶୁଣି ସୁଶୀଳା ତାର ମନେ ପଡ଼େ । ଇଚ୍ଛା ବିରୁଦ୍ଧରେ କେବେ କେବେ ଚଞ୍ଚଳା ଉପରେ ଆଖି ପକାଇ ଦେଖେ ସେ ତାର ଆଡ଼କୁ ଚାହିଁଛି । ମଣିଅଁର ମୁହଁକୁ ଚାହିଁଲେ ସେ କେଜାଣି କାହିଁକି ଲଜ୍ଜିତ ହୁଏ । ଗଣ୍ଡ ରକ୍ତିମ ଦେଖାଯାଏ । କିଛି ନ ଜାଣିଲାପରି ଅନ୍ୟଆଡ଼କୁ ଚାହିଁ ଭିନ୍ନ ପ୍ରସଙ୍ଗରେ ବାଁରେଇ ଦିଏ ।

ସେଦିନ ମଣିଅଁର ଦୃଷ୍ଟି ଚଞ୍ଚଳା ଉପରେ ପଡ଼ିବାରୁ ଚଞ୍ଚଳା ବାଁରେଇ ହୋଇ ଅଜଙ୍ଗ ଆଡ଼କୁ ଅନାଇଁ ହାତ ଠାରି ନିକଟକୁ ଡାକିଲା । ଅଜଙ୍ଗ ନିକଟକୁ ଆସିଲାରୁ ସେ ତାକୁ ପଚାରିଲା, ମାଛ କେଉଁଠୁ ଧରିଲୁ ?

ଅଜଙ୍ଗ ବଲ ବଲ କରି ମୁହଁକୁ ଅନାଇଁ ରହିଲା, ଉତ୍ତର ଦେଲା ନାହିଁ । ବୋଧହୁଏ ବୁଝି ପାରିଲା ନାହିଁ ।

ଚଞ୍ଚଳା ହାତଠାରି ତାକୁ ବୁଝାଇ ଦେଲାରୁ ସେ ମଧ୍ୟ ହାତଠାରି ନଦୀଜଳକୁ ଦେଖାଇ ଦେଲା । ମଣିଅଁ ଆନନ୍ଦରେ ଦୁଇଜଣଙ୍କର ମଜା ଦେଖୁଥାଏ । କିଛି ସମୟ ପରେ ଅଜଙ୍ଗ ଚଞ୍ଚଳା ନିକଟରେ ମାଛ ରଖି ପୁନର୍ବାର ଡଙ୍ଗାରୁ ଓହ୍ଲାଇଗଲା । ଚଞ୍ଚଳା ବୁଝିଲା ସେ ଶୁଖିଲା କାଠ ଅନ୍ବେଷଣରେ ଯାଉଛି । ଜ୍ୱଳନ୍ତ-ଅଗ୍ନି ଦେଖିବାକୁ ଭାରି ଭଲ ଲାଗେ । ଚଞ୍ଚଳା ନିଅାଁ ଜାଳି ପୋଡ଼ାଇ

କରୁଥିବା ସମୟରେ ସେ ଦୂରରେ ବସି ନାଆଁ କପର ଉଚ୍ଛ୍ୱଳ-ଭାବରେ ଜଳୁଛି, ତାହାହିଁ ଦେଖୁଥାଏ ।

ଅଗରୁ ଶୁଖିଲା କାଠ ପାଖରେ ଥିଲା । ଚଞ୍ଚଳା ଅଜଙ୍ଗକୁ ରାତିରେ ବୃଥା କଷ୍ଟ ଦେବ ନାହିଁ ଭାବି ଡାକିଲା, ଅଜଙ୍ଗ ଶୁଣ ।

ଅଜଙ୍ଗ ବୁଝିନି, ତାକୁ ଏ ଦୁଇଜଣ ଅଜଙ୍ଗ ବୋଲି ଡାକନ୍ତି । ସେ ଫେରିଆସି ଚଞ୍ଚଳାକୁ କହିଲା, କାଠେଁ ଏବଂ ହାତ ବଢ଼ାଇ ଜଙ୍ଗଲ ଆଡ଼କୁ ଦେଖାଇ ଦେଲା ।

ଚଞ୍ଚଳା ଅଜଙ୍ଗର ଓଡ଼ିଆ କଥା ଶୁଣି ମୁରୁକି ମୁରୁକି ହସି କହିଲା, ଆରେ ଅଲକ୍ଷଣା ତୁ କଣ ଓଡ଼ିଆ କହି ଶିଖିଲୁଣି ?

ଅଜଙ୍ଗ ଚଞ୍ଚଳାର କଥାରୁ କଣ ବୁଝିଲା କେଜାଣି ପୁନର୍ବାର ଜଙ୍ଗଲ ଆଡକୁ ଯିବାକୁ ବସିଲା । ଚଞ୍ଚଳା ଡାକିଲା, ଅଜଙ୍ଗ, କାଠ ଅଛି । ଯା ନା ରାତିଟା ପରା । ଅଜଙ୍ଗ ଉତ୍ତର କଲା, କାଠୋ । ଅଛି ଯାଁ ନାଁ ।

ଚଞ୍ଚଳା ହାତ ଏବଂ ମୁଖର ଭାବଭଙ୍ଗୀ ଦେଖାଇ ନିଜର ଉଦ୍ଦେଶ୍ୟ ବୁଝାଇ ଦେଲା । ଅଜଙ୍ଗ ତାର ନିଜ ଭାଷାରେ କଣ କହୁ କହୁ ବାଲି ଉପରେ ବସି ପଡ଼ିଲା ।

ଏହି ସମୟରେ ପଚ୍ଛଆଡ଼ୁ ମଣିଅାଁ ଆସି ହଠାତ୍ ପଚାରିଲା, ତୁମେ ସୁଶୀଳାର କୌଣସି ଖବର ଜାଣ କି ?

ମୁଁ ତ ତମକୁ ସେହି ବିଷୟରେ ପଚାରିବି ପଚାରିବି ହେଉଛି । କାଳେ ମନରେ କଣ ଭାବିବ, ସେଥିପାଇଁ ଆଜିଯାଏ କିଛି ପଚାରି ନାହିଁ । ସେ ମୋର ପିଲାଦିନର ସାଙ୍ଗ । ଆହା ସେ ମୋତେ କେଡ଼େ ଭଲ ପାଏ । ମୁଁ ଜାଣିଥିଲି, ତେମେ ଦୁଇଜଣ ଜୀବନରେ କେବେ କୈବର୍ତ୍ତି ନୁହଁ । ବାପା ମା କାହିଁକି ସେହିପରି ସନ୍ଦେହ କରୁଥିଲେ ।

ଚଞ୍ଚଳାର ମୁଖ ଆରକ୍ତ ହେଲା । ସେ ଆଉ ମଣିଅାଁକୁ ଅନାଇ ପାରିଲା ନାହିଁ । ଦୃଷ୍ଟି ଅନ୍ୟ ଦଗକୁ ଫେରାଇ କିଛି ସମୟ ପରେ ରୁଦ୍ଧକଣ୍ଠରେ ଆରମ୍ଭ କଲା, ମୋର ଆଜି ଭଲ ଭାବରେ ମନେ ପଡ଼ୁଛି, ଜନ୍ମଦିନ ଦିନ ମୁଁ ଓ ସୁଶୀଳା ତମକୁ ଅପେକ୍ଷା କରି ଅନେକ ବେଳଯାଏ ବସିଥିଲୁ । ବନ୍ଦାପନା ଶେଷ ହେଲା । ମା ମୋତେ ଖାଇବାକୁ ଯେତେ କହିଲେ ମୁଁ ଖାଇଲି ନାହିଁ । ତମ ଦୁଇ ଜଣଙ୍କୁ ଡାକି ଆଣିବାକୁ ମୁଁ ଲୋକ ପଠାଇଲି । ଲୋକ ରାତି ଦିଘଡ଼ିକୁ ଫେରିଆସି କହିଲା ଯେ ତମର ଦେଖା ପାଇଲା ନାହିଁ ।

ମଣିଅାଁ ଆଗ୍ରହର ସହିତ ପଚାରିଲା, ସତେ ?

ସତ କହୁଛୁ, ସୁଶୀଳା ପ୍ରତି ମୋର ଖୁବ୍ ରାଗ ହେଲା । ସେହି ରାତିରେ ମୁଁ ଖାଇ ପିଇ ଶୋଇଲି । ପରଦିନ ସକାଳେ ତମକୁ ଦେଖି ସମସ୍ତ ଘଟଣା ପଚାରିବି ଭାବିଥିଲି । ତେମେ କି ସୁଶୀଳା କେହି ଆସିଲ ନାହିଁ । ଏହିପରି ଅନାଇ ଅନାଇ ଅନେକ ଦିନ ଚାଲିଗଲା । ପରେ ବୁଝି ପାରିଲି ତେମେମାନେ ନାହଁ । ଲୋକେ କିଏ କେତେ ପ୍ରକାର କହିଲେ ।

କ'ଣ କହିଲେ—?

ଥରେଇ ଥରେଇ ହୋଇ ଚଞ୍ଚଳା କହିଲା, ଆମ ଗାଁର ଅନେକ ଲୋକ ବିଶ୍ବାସ କରିଲେ ଯେ, ତେମେ ଦୁଇଜଣ ଭଜନା ଓ ରୂପେଇଙ୍କର ପୁଅ ଝିଅ ନୁହଁ ।

କଣ ବୋଲି ବିଶ୍ବାସ କରିଥିଲେ ?

ତମମାନଙ୍କୁ ସେମାନେ ଶତ୍ରୁ ହାତରୁ ରକ୍ଷାକରି ପୁଅ ପରି ପାଳିଥିଲେ । ସେଥି କପରେ ଲୋକେ କହିଲେ, ବୋଧହୁଏ ତେମେ ଜାଣି ପାରିଛ ତେମେ କାହାର ପୁଅ ଏବଂ ତମ ଘର କେଉଁଠି । ସେଥିପାଇଁ ଭାଇ ଭଉଣୀ ଦୁହେଁ ନିଜ ଘରକୁ ଚାଲି ଯାଇଛନ୍ତି । ଆହୁରି ମଧ୍ୟ ଲୋକଙ୍କୁ କହିବାର ଶୁଣିଛି, ତେମେ କୁଆଡ଼େ ଜଣେ ମସ୍ତବଡ଼ ବଣିକର ପୁଅ ।

ଆଚ୍ଛା, ଲୋକେ କପରି ଜାଣିଲେ ଆମେ ଭଜନା ଓ ରୂପେଇଙ୍କର କିଛି ନୋହୁ ବୋଲି ?

ମୁଁ ତା ଠିକ୍ କହିପାରୁ ନାହିଁ । ଯେତେଦୂର ସମ୍ଭବ ଅନୁମାନ । ଚଞ୍ଚଳାକୁ ମୁହଁର ଓଢ଼ଣା କାଢ଼ିବାର ଦେଖି ମଣିଅଁ ନୌକାର କାନ୍ଥକୁ ଆଉଜି ତାକୁ ଅନାଇଲା । ସତେ ଯେପରି ସେ ଚଞ୍ଚଳାର ହୃଦୟ ଭିତରୁ କଥାର ସତ୍ୟତା ପ୍ରମାଣ କରିବାକୁ କଣ ଦେଖୁଛି । କିଛି ସମୟ ପରେ ନିଜକୁ ନିଜେ କହିଲାପରି ଉଚ୍ଚାରଣ କଲା, ଅନୁମାନ ନା । ଲୋକଙ୍କର ତ ଅନୁମାନ କରିବାର କ୍ଷମତା ବେଶୀ ।

ହଁ, ଅନୁମାନ ।

ମୋ ମତରେ—ଚଞ୍ଚଳାର ସୁନ୍ଦର ମୁହଁରେ ଚକ୍ଷୁ ନ୍ୟସ୍ତ କରି ।

ମୁଁ ଆଉ ଅନୁମାନ କରିବି କ'ଣ ? ସୁଶୀଳାଠାରୁ ତ ଶୁଣିଥିଲି ଯେ ତୁମେ ଦୁଇଜଣ ସମ୍ପର୍କରେ କିଛି ନୁହଁ । ତମକୁ ଭଜନା ପାଳିଥିଲା ଏବଂ ତାକୁ ତୁମେ ପାଳିଥିଲ । ତାଠାରୁ ଏତିକି ଶୁଣି ମୁଁ ହତାଶ—

କଣ କହିବାକୁ ବସିଥିଲା କହିଲା ନାହିଁ ଜାଣି ମଣିଅଁ ଘଟଣାଟି ଅନୁମାନ କରିନେଲା । ତାର ମନେ ପଡ଼ିଗଲା ଦିନେ ସୁଶୀଳା ତାକୁ କହୁଥିଲା, ଚଞ୍ଚଳାପରି

ଗୁଣବତୀ କନ୍ୟାକୁ ସ୍ତ୍ରୀରୂପେ ପାଇ ତୁମେ ଭାରି ସୁଖୀ ହେବ । ସେ ଯଦି ଚଞ୍ଚଳାର ମନ ଆଗରୁ ବୁଝି ନଥାନ୍ତା, ଏପରି କହନ୍ତା କାହିଁକି ?

ସେଥିରେ ତମର ବ୍ୟତୀତ ହେବାର କାରଣ ? ମଣିଆଁ ପଚାରିଲା ।

ଉଭୟେ କିଛି ସମୟ ନୀରବ ରହିଲେ । ନୀରବତା ଭଙ୍ଗକରି ମଣିଆଁ ପଚାରିଲା, ଲୋକେ ଭଲା ଆମର ଆକସ୍ମିକ ଅନ୍ତର୍ଦ୍ଧାନ ବିଷୟରେ ଆନ୍ଦାଜ କଣ ଅନୁମାନ କରିଥିବେ କହି ପାରିବ କି ? ଲୋକଙ୍କର ଅନୁମାନ କରିବାର କ୍ଷମତା ଦେଖୀ କି ନା !

କେତେକ କହିଲେ ମଣିଆଁ ବୋଧହୁଏ ସୁଶୀଲାକୁ ବିବାହ କରି ନିକଟସ୍ଥ କୌଣସି ଗ୍ରାମରେ ଘରକରି ରହିବାକୁ ଚାଲି ଯାଇଛି ।

ଏଥିରେ ତମର କ'ଣ ବିଶ୍ୱାସ ହେଲା ?

ମୋ ବିଶ୍ୱାସ— ?

ହଁ, ତମର—

ସତ କହୁଛି, ଏ କଥା କାହିଁକି ମୋର ମନକୁ ଆସିଲା ।

ତମମାନଙ୍କର ଶେଷ ଅନୁମାନଟି ଯେ ଏକାଅରେ ଯୁକ୍ତିସଙ୍ଗତ ନୁହେଁ, ତା ନୁହେଁ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା ଯେ ଅସଲ କଥାଟା କେହି ଅନୁମାନ କରି ପାରିଲେ ନାହିଁ ।

ଚଞ୍ଚଳା ଦୀର୍ଘନିଶ୍ୱାସ ତ୍ୟାଗକରି ପଚାରିଲା, ତେବେ ତମର ସୁଶୀଲା ସଙ୍ଗେ ବିବାହ ହୋଇ ଯାଇଛି ? ବର୍ତ୍ତମାନ ଦୟାକରି ମୋତେ କହ ସୁଶୀଲାକୁ କେଉଁଠି ରଖିଛ ।

ଏତେ ଶୀଘ୍ର ମୋର ପ୍ରଶ୍ନ ଯେ ଭୁଲିଗଲ । ମୁଁ ତମକୁ ଠିକ୍ ତାହା ହିଁ ପଚାରୁଥିଲି । ତୁମେ ଯେତେବେଳେ ନାରାୟଣ ସାଧବଙ୍କ ବୋଇତରେ ବନ୍ଦିନୀ ଥିଲ, ସୁଶୀଲା ବିଷୟରେ ନିଶ୍ଚୟ କିଛି ଜାଣିଥିବ ।

ଚଞ୍ଚଳା ଟିକିଏ ନିମ୍ନ ସ୍ୱରରେ ମନକୁ ମନ କହିଲା, ମୋର ଅନୁମାନ କ'ଣ ତାହା ହେଲେ ସତ ? ସେ ସ୍ୱର କ'ଣ ସୁଶୀଲାର ? ତାପରେ ମଣିଆଁକୁ ସମ୍ବୋଧନ କରି କହିଲା, କହ, କହ, ସୁଶୀଲା ସଙ୍ଗେ ନାରାୟଣ ସାଧବର କି ସମ୍ପର୍କ ? ପ୍ରଥମେ କହ ତୁମେ କ'ଣ ସୁଶୀଲାକୁ ପ୍ରକୃତରେ ବିବାହ କରିଛ ?

ମଣିଆଁ ଉଦ୍‌ବିଗ୍ନତାର ସହିତ କହିଲା, ଆଗ କହ ତମର ଅନୁମାନ କ'ଣ ? କେଉଁ ସ୍ୱର ସୁଶୀଲାର ବୋଲି କହୁଥିଲ । ପଛେ ମୁଁ ସବୁକଥା କହିବି ।

ମୁଁ ଏ ସବୁ କଥା ଭାବି, ପାଗଳ ହୋଇ ଯାଉଛି । ବର୍ତ୍ତମାନ୍ ମୋର ମୁଣ୍ଡ ବୁଲାଉଛି, ମୋର ପ୍ରଶ୍ନ ଗୁଡ଼ିକର ଉତ୍ତର ଦିଅ ଭଲା ।

ମଣିଆଁ ଠିକେ ଠିକେ ସମସ୍ତ ଘଟଣା ବର୍ଣ୍ଣନା କଲା । ସୁଶୀଲାର ପତ୍ର, ପତ୍ରର ବିଭିନ୍ନ ଅର୍ଥ, ସେମାନଙ୍କର ପ୍ରତିଜ୍ଞା, ମଣିଆଁର ମାଛସହ ପ୍ରତ୍ୟାବର୍ତ୍ତନ, ସୁଶୀଲାର ଅନ୍ତର୍ଦ୍ଧାନ, ସମୁଦ୍ରରେ ବୋଇତ, ମଣିଆଁର ବନ୍ଦୀ ଜୀବନ, ମୁକ୍ତି, ରିଧାଶର୍ମାଙ୍କ ସହ ସାକ୍ଷାତ । ରିଧାଶର୍ମାଙ୍କ ମନର ଅବସ୍ଥା, ପ୍ରତିଜ୍ଞା, ସଧର୍ମନଗର, ସିଙ୍ଗାପୁର, ଜାଭା ଏବଂ ବାଲି । ମଣିଆଁର ଉଦ୍ଦେଶ୍ୟ—

ଚମ୍ପଲା ସ୍ଥିର ହୋଇ ଗୋଟି ଗୋଟି କରି ସମସ୍ତ ଘଟଣା ଶୁଣିଗଲା । ମଣିଆଁର ବକ୍ତବ୍ୟ ଶେଷ ହେଲାରୁ ସେ ଡାକିଲା,—ଅଜଙ୍ଗ ।

ଅଜଙ୍ଗ, ହଁ, କହି ନିକଟରେ ଉପସ୍ଥିତ ହେଲା । ଚମ୍ପଲା ତାକୁ ମାଛ ଓ ଛୁରି ବଢ଼ାଇ ଦେଇ କହିଲା, ନେ ଆଲୁ କାଟ । ହାତ ଓ ମୁହଁର ଭାବଭଙ୍ଗୀ କରି ମନର ଭାବ ବୁଝାଇ ଦେଲା । ମାଛ କାଟିବାକୁ ହେବ ଅଜଙ୍ଗ ଏହା ବୁଝିପାରି କହିଲା, ନେ ଅଁକ୍ କାଟୋ । ମାଛ ଓ ଛୁରି ନେଇ ଚାଲିଗଲା ।

ଏମାନଙ୍କର କଥୋପକଥନ ଶୁଣି ମଣିଆଁ ମନେ ମନେ ହସିଲା ।

ଅଜଙ୍ଗ ନିକଟରୁ ଚାଲିଯିବା ପରେ ଚମ୍ପଲା କହିଲା, ତେବେ ସେ ନିଶ୍ଚୟ ସୁଶୀଲା । ତଥାପି ସନ୍ଦେହ ହେଉଛି । ସୁଶୀଲା ପ୍ରତିଜ୍ଞା କରିଥିଲା, ତମ ବ୍ୟତୀତ ଅନ୍ୟ କାହାକୁ ସେ ବିବାହ କରିବ ନାହିଁ । ନାରାୟଣ ସାଧବଙ୍କ ସଙ୍ଗେ ତାର କଥୋପକଥନ ଶୁଣିଲେ ଯେ କେହି ଅନୁମାନ କରି ପାରିବ ଯେ ବକ୍ତା ନିଶ୍ଚୟ ନାରାୟଣ ସାଧବର ସ୍ତ୍ରୀ । ଅତଏବ ସେ କେବେ ସୁଶୀଲା ହୋଇ ନ ଥିବ । ତାମ୍ରଲିପ୍ତଠାରେ ନାରାୟଣ ସାଧବ ସଙ୍ଗରେ ମୋର ଅନେକ ଥର ଦେଖା ହୋଇଥିଲା । ମୁଁ ଯେଉଁ ବୋଇତରେ ଥିଲି, ସେ ସେହି ବୋଇତକୁ ଅନେକ ଥର ଆସେ । ଅନ୍ୟ କୌଣସି କାରଣ ନାହିଁ । କେବଳ ମୋ ସଙ୍ଗେ କଥୋପକଥନ କରି ନାନାପ୍ରକାର ପ୍ରଲୋଭନ ଦେଖାଇବାକୁ । ଅବଶ୍ୟ, ବିଚାର କେତେ ହତାଶ ହୋଇ ଫେରେ । ମୁଁ ତାର ସ୍ୱର ଉତ୍ତମରୂପେ ମନେ ରଖିଥିଲି । ପରେ ବୋଇତ ସମୁଦ୍ରରେ ଚାଲିଲା । ମୁଁ ବନ୍ଦିନୀ ହୋଇ ଗୋଟିଏ କୋଠରୀରେ ରହିଲି । ମୁଁ ଯେଉଁ କୋଠରୀରେ ରହିଥିଲି, ତାହା ପ୍ରଶସ୍ତ, ଅଲଙ୍କୃତ । ତେଣୁ ବନ୍ଦିନୀ ହୋଇ ତମପରି ମୋତେ ବିଶେଷ କଷ୍ଟ ସହିବାକୁ ପଡ଼ି ନ ଥିଲା । ମୁଁ ଯେଉଁ କୋଠରୀରେ ଥିଲି, ତାକୁ ଲାଗି ଅନ୍ୟ ଗୋଟିଏ କୋଠରୀ । ସେହି କୋଠରୀରେ ଅନେକ ସମୟରେ ମୁଁ ଦୁଇଜଣଙ୍କ କଥୋପକଥନ ହେବାର ଶୁଣେ । ଦୁଇଜଣଙ୍କ ଭିତରୁ ଜଣେ ପୁରୁଷ ଅନ୍ୟ ଜଣକ ସ୍ତ୍ରୀ । ପୁରୁଷର ସ୍ୱରକୁ ଅନୁମାନ କରି ନେଲି ସେ ନିଶ୍ଚୟ ନାରାୟଣ ସାଧବ । ସ୍ତ୍ରୀର ସ୍ୱର ମୋର ପରିଚିତ ପରି ବୋଧହେଲା, ଯେପରି କି ସୁଶୀଲାର ।

ତାର ଚେହେରା କିପରି ?

ଚେହେର ଦେଖିଲେ କ'ଣ ମୁଁ ତାକୁ ଚିହ୍ନି ପାରି ନ ଥାନ୍ତି ? ଦେଖିବାକୁ ଚେଷ୍ଟା କରୁଛି, କିନ୍ତୁ ପାରୁନାହିଁ ।

ପାହାଡ଼ ଆଡ଼େ ଜଳୁଥିବା ନିଆଁ ଆଡ଼କୁ ମୁହଁ ଫେରାଇ ମଣିଆଁ ପଚାରିଲା, ତମର କ'ଣ ବିଶ୍ୱାସ ସେ ନିଶ୍ଚୟ ସୁଶୀଲା !

ସେ ସୁଶୀଲା ହେଉ କିମ୍ବା ଆଉ କେହି ହେଉ, ନାରାୟଣ ସାଧବର ସ୍ତ୍ରୀ । ସୁଶୀଲା କି ନୁହେ ? ମୁଁ କହି ପାରିବି ନାହିଁ ତାର କଣ୍ଠସ୍ୱର ଏବଂ ମୋର ବାଲ୍ୟ-ସଙ୍ଗିନୀ ସୁଶୀଲାର କଣ୍ଠ-ସ୍ୱର ଏକା ।

ତମର କାହିଁକି ବିଶ୍ୱାସ ସେ ନାରାୟଣ ସାଧବର ସ୍ତ୍ରୀ ବୋଲି ?

ଉଭୟଙ୍କର କଥୋପକଥନରୁ ।

ବିଶ୍ୱାସଘାତିନୀ ?

ହୁଏତ ସେ ସୁଶୀଲା ନ ହୋଇ ଆଉ କେହି ହୋଇଥିବ । ଟିକିଏ ଭୀତ ହୋଇ ଚଞ୍ଚଲା କହିଲା ।

ସୁଶୀଲା ! ତୁ ନାରାୟଣର ସ୍ତ୍ରୀ ? କହି ମଣିଆଁ ଦୁଃଖରେ ସେଠାରୁ ଚାଲିଗଲା । ଚଞ୍ଚଲା ମଣିଆଁକୁ ଅନାଇଁ କେତେ କଣ ଚିନ୍ତା କରି ଡାକିଲା, ଅଜଙ୍ଗ, ଏଆଡ଼େ ଆ ।

ଅଜଙ୍ଗ ଖଣ୍ଡେ କଦଳୀ ପତ୍ରରେ କଟା ମାଛ ନେଇ ଉପସ୍ଥିତ ହେଲା ଏବଂ କହିଲା, ଏଁଆଡ଼େଏଁ ।

ଚୁଲ୍ଲୀପଣା କଣ କହୁଛୁ ରେ, ଯା ବାଲି ଉପରେ ବସିବୁ ଯା—କହି ତାକୁ ହାତ ଠାରି ବୁଝାଇ ଦେଲା ।

ଅଜଙ୍ଗ ଚାଲିଯିବା ପରେ ଚଞ୍ଚଲା ଆସିଲା ଚୁଲ୍ଲୀ ଲଗାଇବାକୁ । ବ୍ୟସ୍ତ ହୋଇ ନିଜକୁ ନିଜେ କହିଲା, ଓଃ ଆଜି ବଡ଼ ଡେରି ହୋଇଗଲାଣି ।

ଆହୁରି ଅନେକ ଦିନ କଟିଗଲାଣି । ଏଣିକି ମଣିଆଁ ପ୍ରଭୃତି ଆଉ ନୌକାରେ ରହୁ ନାହାନ୍ତି । ପ୍ରତ୍ୟହ ନୌକାରୁ ଯାଇ ବହୁ ଦୂରରେ ଜଙ୍ଗଲ ମଧ୍ୟରେ ପଶି ଧନର ଅନ୍ୱେଷଣ କରିବା କଷ୍ଟକର ହେଲା । ତେଣୁ ନୌକା ନଦୀକୂଳରେ ବାନ୍ଧି ସେମାନେ ହିନ୍ଦୁ ମନ୍ଦିରରେ ଆଶ୍ରୟ ଗ୍ରହଣ କରିଛନ୍ତି । ମଣିଆଁ ପ୍ରତ୍ୟହ ଯାଇ ତାର ନୌକା ଦେଖିଆସେ । କିନ୍ତୁ ଆଣିବାର ଥିଲେ ଆଣେ ।

ପ୍ରାୟ ଦଶଦିନ ପରେ ଜଙ୍ଗଲରୁ ନିଆଁ ସମ୍ପୂର୍ଣ୍ଣରୂପେ ଲିଭିଗଲା । ନିଆଁ ଲଗାଇବା ଦ୍ୱାରା ମଣିଆଁ ପ୍ରଥମେ ଯାହା ଭାବିଥିଲା କ୍ଷତି କରିଛି, ସେ ଧାରଣା ତାର ପରିବର୍ତ୍ତିତ ହୋଇଗଲା । ଅଗ୍ନିର ପ୍ରଭାବରେ କେଉଁ କାଳର ପୁରାତନ ବୌଦ୍ଧ ମନ୍ଦିରଟି ଏକାଥରକେ ଭଙ୍ଗି ଭୂପତିତ ହୋଇଛି । ତହିଁରେ ମଣିଆଁର କ୍ଷତି କଣ ? ବରଂ ଲାଭ ହେଲା । ଜଙ୍ଗଲ ଜଳିଯାଇ ଥିବାରୁ କୌଣସି ହିଂସ୍ର ଜନ୍ତୁଙ୍କର ଭୟ ରହିଲା ନାହିଁ । ସେମାନେ ନିର୍ଭୟରେ ଯଥେଚ୍ଛା ଭ୍ରମଣ କରି ପାରିଲେ । ଧନ ଖୋଜିବାରେ ମଧ୍ୟ ସୁବିଧା ହେଲା ।

ଦୁଇ ଛୋଟ ପର୍ବତର ମଧ୍ୟରେ ଉପତ୍ୟକା । ହିନ୍ଦୁ ମନ୍ଦିରଠାରୁ ଆରମ୍ଭ କରି ପର୍ବତକୁ ସତ ଅର୍ଦ୍ଧବୃତ୍ତାକାରରେ ଅନେକ ଗୁଡ଼ାଏ ପଥରର ଖୋଲ ବା ଗହ୍ୱର ଭଗ୍ନ ବୌଦ୍ଧ ମନ୍ଦିର ପର୍ଯ୍ୟନ୍ତ ଅଛି । ଏହି ଗହ୍ୱରମାନଙ୍କ ମଧ୍ୟରୁ କେଉଁଟିରେ ଧନ ଅଛି, କପଟ ବା ମଣିଆଁ ଜାଣିବ ? ସୂର୍ଯ୍ୟଦ୍ୱୀପରେ ତାର ପିତା ଯେଉଁ ଏକବିଂଶ ଗହ୍ୱରର କଥା କହିଥିଲେ, ସେ କଥା ମଣିଆଁର ବେଶ୍ ମନେ ଅଛି । ଗଣି ଗଣି କେଉଁ ଗୋଟିକ ଯେ ଏକବିଂଶ ଗହ୍ୱର ସେ ସ୍ଥିରକରି ପାରୁନାହିଁ । ଯହିଁରେ ତାର ସନ୍ଦେହ ହେଉଛି ସେ ତାକୁ ଉତ୍ତମରୂପେ ପରୀକ୍ଷା କରି ଦେଖେ । ପରେ ଅନ୍ୟଟି ଦେଖିବାକୁ ଯାଏ । ଏଥିରେ ଚମ୍ପିଲା ତାକୁ ସାହାଯ୍ୟ କରେ ।

ଅଜଙ୍ଗ ଏ ସବୁର କୌଣସି କାରଣ ବୁଝି ପାରେ ନାହିଁ । ତାର ପ୍ରଭୁମାନେ ଯେପରି ଧନ ଖୋଜିବାରେ ଲାଗିଯାନ୍ତି, ସେ ଅନୁକରଣ କରି ସେହିପରି ପଥର ଅଡ଼େଇ, ଲଟାପତ୍ର ଅଡ଼େଇ ଅନୁସନ୍ଧାନ କରି ଦେଖେ । ଚମ୍ପିଲା ଏବଂ ମଣିଆଁ ତାର କାର୍ଯ୍ୟ ଦେଖି ସମୟ ସମୟରେ ହସନ୍ତି । କିନ୍ତୁ ସେ କାହାର ହସକୁ ଖାତିର ନ କରି ନିଜ କାର୍ଯ୍ୟରେ ଲାଗିଥାଏ ।

ଦିନେ ଦିନେ ଚମ୍ପିଲା ହିନ୍ଦୁ ମନ୍ଦିରରେ ଆଇ ରୋଷାଇ କରେ । ଅଜଙ୍ଗ ଏବଂ ତାର ପ୍ରଭୁ ଦୁଇଜଣ ଜଙ୍ଗଲରେ ପକ୍ଷୀ ପୂର୍ବପରି ଖୋଜନ୍ତି ।

ହିନ୍ଦୁ ମନ୍ଦିରଟି ଉଚ୍ଚରେ ଅଧିକ ନୁହେଁ । ଉତ୍କଳୀୟ ଶିଳ୍ପୀ ଦ୍ୱାରରେ ନିର୍ମିତ । ଅବଶ୍ୟ ତାହାର ଦେହରେ ଏପରି କିଛି ଅସାଧାରଣ କାରିଗରୀ ହୋଇ ନାହିଁ, ଯାହା କି ଜଗତ୍‌ବିଖ୍ୟାତ ଉତ୍କଳୀ ଶିଳ୍ପୀର ସିଦ୍ଧହସ୍ତ ନିର୍ମିତ ବୋଲି ଚିହ୍ନାଇ ଦେବ । ହେଲେ ମଧ୍ୟ, ଉତ୍କଳୀୟ ମନ୍ଦିରମାନଙ୍କର ଗଠନ ପ୍ରଣାଳୀ ଯେପରି, ଏହି ହିନ୍ଦୁ ମନ୍ଦିରର ଗଠନପ୍ରଣାଳୀ ଠିକ୍ ସେହିପରି । ଏହାକୁ କିଏ ନିର୍ମାଣ କରିଛି ଜାଣିବା ସହଜ ନୁହେଁ । ଉତ୍କଳରୁ ଶିଳ୍ପୀ ଆସି ଏ ମନ୍ଦିର ନିର୍ମାଣ କରିଛନ୍ତି କି ଜବଦ୍ୱୀପର ଉତ୍କଳ ବାସିନ୍ଦା ଏଠାରେ ନିଜ ଜାତିର କୃତିତ୍ୱ ଦେଖାଇ ଯାଇଛନ୍ତି, ମଣିଆଁ ସ୍ଥିରକରି ନ ପାରି ଭଜନାର ମତକୁ ଉଚିତ ବୋଲି ଗ୍ରହଣ କରିଛି । ଭଜନା ତାର ଦୈନିକ ଜୀବନୀରେ ମନ୍ଦିରର ସମସ୍ତ ବର୍ଣ୍ଣନାକରି ଶେଷରେ

ଲେଖିଛି, ଓଲନ୍ଦାଜ ବଣିକ ବା ସାଧାରଣ ଲୋକଙ୍କର ପ୍ରକୃତି—ସେମାନେ ଉପନିବେଶ ସ୍ଥାପନ କରିବାକୁ ଯେଉଁଠିକି ଯିବେ, ପ୍ରଥମେ ଧର୍ମର ଠେକ ରଖିବାକୁ ଏବଂ ପୂଜାର ସୁବିଧା ପାଇଁ, ସେଠାରେ ଦେଉଳ ତୋଳିବେ । ବୋଧହୁଏ କେହି ଓଲନ୍ଦାଜ ସୌଦାଗର ଏବଂ ତାଙ୍କର ଅନୁଚରମାନେ କମ୍ବା ଜବଦ୍ୱୀପର ଓଲନ୍ଦାଜ ଉପନିବେଶକମାନେ ଏହି ସ୍ଥାନରେ ଉପନିବେଶ ସ୍ଥାପନ କରିବାକୁ ମନସ୍ଥ କରି ପ୍ରଥମେ ଦେଉଳ ତୋଳାଇଛନ୍ତି; କିନ୍ତୁ ପରେ ହୁଏତ ଏଠାକାର ଆଦିମ ଅଧିବାସୀଙ୍କ ଅତ୍ୟାଚାରରୁ, ଜୀବ ଜନ୍ତୁଙ୍କ ଭୟରୁ ସେମାନେ ଉପନିବେଶ ତ୍ୟାଗ କରିବାକୁ ବାଧ୍ୟ ହୋଇଛନ୍ତି ।

ଦୈନିକ ଲିପିର ଅନ୍ୟ ଗୋଟିଏ ସ୍ଥାନରେ ଲେଖାଅଛି, ଯେତେବେଳେ ବୌଦ୍ଧଧର୍ମ ଏବଂ ହିନ୍ଦୁଧର୍ମ ମଧ୍ୟରେ ବରାବର ବିବାଦ ଅବହମାନ କାଳରୁ ଚାଲି ଆସିଛି, ଉଭୟ ଧର୍ମର ନେତାମାନେ ଚେଷ୍ଟାକରି ଆସିଛନ୍ତି କିପରି ପୂର୍ବଦେଶମାନଙ୍କରେ ନିଜ ନିଜର ଧର୍ମର ପ୍ରଭାବ ବଢୁ । ବୋଧହୁଏ ସେହି ସମୟରେ ଚୀନଦେଶର କୌଣସି ରାଜା ( ଯେ ଜଗତରେ ଘୋଷଣା କରାଇ ଥିଲେ—କେଉଁଠାରେ ପର୍ବତର ପଥର ଦେହରେ ଖୋଳାଇ ବା ଲିଖିତ ପତ୍ର ସମୁଦ୍ରରେ ଭସାଇ,—ଯେଉଁ ଲୋକ ବାଲିଦ୍ୱୀପସ୍ଥ ଧନର ଅଧିକାରୀ ହେବ, ସେ ଜଗତରେ ବୌଦ୍ଧଧର୍ମ ପ୍ରଚାର କରିବ ) ଏଠାରେ ବୌଦ୍ଧ ମନ୍ଦିର ପ୍ରଥମେ ତୋଳାଇ ଥିଲେ । ଦୁଇ ମନ୍ଦିରକୁ ତୁଳନା କଲେ ଜଣାଯାଏ, ବୌଦ୍ଧ ମନ୍ଦିରଟି ହିନ୍ଦୁ ମନ୍ଦିର ଅପେକ୍ଷା ପୁରାତନ । ବୋଧହୁଏ କେହି ଓଲନ୍ଦାଜ ଧନୀ ବଣିକ ବୌଦ୍ଧ ମନ୍ଦିର ଦେଖି ନିଜ, ଧର୍ମର ଠେକ ରଖିବାକୁ ଏଠାରେ ହିନ୍ଦୁ ମନ୍ଦିର ନିର୍ମାଣ କରାଇ ଅଛନ୍ତି । ଭଜନାର ଏହି ଶେଷ ଯୁକ୍ତିରେ ସମସ୍ତେ ଏକମତ ହେଲୁ ।

ମନ୍ଦିର ମଧ୍ୟରେ ଶିବଲିଙ୍ଗ ସ୍ଥାପିତ । ଶିବମୂର୍ତ୍ତିର ସମ୍ମୁଖରେ ବିସ୍ତୃତ ମୁଖଶାଳା । ଏହାର ଡାହାଣ ଜରକୁ ବଖୁରିଏ ଏକମହଲା ପକ୍କା । ଦେବାଳୟର କୌଣସି ସ୍ଥାନରେ ଦ୍ୱାର ନାହିଁ । ଏଠାରେ ଅଜ ଚୋର ଡକାୟତର ଭୟ ନାହିଁ । ଅବଶ୍ୟକୀୟ ସମସ୍ତ ପଦାର୍ଥ ପୂର୍ବୋକ୍ତ କୋଠରିଟିରେ ଥାଏ । ଘୋଡାଇବାସ ହୁଏ ମୁଖଶାଳା ଭିତରେ ଏବଂ ସମସ୍ତେ ରାତିରେ ସେହି ମୁଖଶାଳାରେ ଶୁଅନ୍ତି ।

ଚମ୍ପଲା ବ୍ରାହ୍ମଣର କନ୍ୟା । ପିତା ଗୃହରେ ସେ ମାଛମାଂସ ଖାଇ ନ ଥିଲା । ତାଙ୍କ ଘରର ପୁରୁଷମାନେ ମାଛମାଂସ ଖାଆନ୍ତି, କିନ୍ତୁ ସ୍ତ୍ରୀମାନେ ଖାଆନ୍ତି ନାହିଁ । ଏଠାରେ ଚମ୍ପଲା ମାଛମାଂସ ଖାଇବାକୁ ବାଧ୍ୟ ହେଲା । ନୋହିଲେ ଜୀବନ ରକ୍ଷା କରନ୍ତା କିପରି ? ଇଚ୍ଛା କରିଥିଲେ ଦୁଧ ଗଛର ଦୁଧ ଖାଇ ସେ ନିଜର କ୍ଷୁଧା ନିବାରଣ କରି ପାରିଥାନ୍ତା, କିନ୍ତୁ ଏତେ ତ୍ୟାଗକରି କଷ୍ଟରେ ଜୀବନଧାରଣ କରିବାକୁ ସେ ଇଚ୍ଛା କଲା ନାହିଁ ।

ଆକାଶ ମେଘାଚ୍ଛନ୍ନ । ମଣିଆଁ ଅଭ୍ୟାସାନୁଯାୟୀ ଧନର ଅନ୍ୱେଷଣ କରିବାକୁ ଚାଲିଗଲା । ଅଜଙ୍ଗ ମାଛ, ମାଂସ ଓ ଦୁଧ ସଂଗ୍ରହ କରିବାକୁ ବଡ଼ସକାଳୁ ଚାଲିଗଲା । ସଙ୍ଗରେ ଖଣ୍ଡେ ଧନୁ ଓ ମଣିଆଁଠୁ ମାଗି ନେଇଥିବା କେଇଖଣ୍ଡି କାଣ୍ଡ ରଖିଥିଲା । କିପରି ଧନୁଶର ବ୍ୟବହାର କରିବାକୁ ହୁଏ, ମଣିଆଁ ତାକୁ ଆଗରୁ ବତାଇ ଦେଇଥିଲା । ସେ ଅଳ୍ପଦିନ ଅଭ୍ୟାସ କରି ଭଲ ଲକ୍ଷ୍ୟକରି ପାରୁଥିଲା । ଆଜି ଚଞ୍ଚଳା ନିକଟରେ ପ୍ରତିଜ୍ଞା କରି ଯାଇଛି ଯେ କୌଣସି ଉପାୟରେ ନିଶ୍ଚୟ ଗୋଟାଏ ଠୋକୁ (ଠେକୁଅ) ମାରି ଆଣିବ ।

ଚଞ୍ଚଳା ଏକାକିନୀ ଦେଉଳ ଆଗରେ ବସି ଚିନ୍ତାମଗ୍ନ ଥିଲା । ଆଜି ମୋର ବାପ ମା କାହାନ୍ତି ? ଭାଇ କାହିଁ ? ସମାଜ ଛାଡ଼ି ଦେଶ ଛାଡ଼ି ମୁଁ ଅପନ୍ତରାରେ ପଡ଼ିଛି । ବାପା ମୋର ମୃତ । ମାଙ୍କର କୌଣସି ସମ୍ବାଦ ଜାଣେ ନାହିଁ । ଶତ୍ରୁପକ୍ଷର ଲୋକମାନେ ଭାଇଙ୍କୁ ମାରି ପକାଇଛନ୍ତି । ମୋ କପାଳରେ ଏତେ କଷ୍ଟ ଠାକୁରେ ରଖିଥିଲେ କାହିଁକି । ଆମର ଏ ଦୁରବସ୍ଥା ହେଲା କାହିଁକି ? ଭଗବାନ, ଯଦି ତୁମେ ସତ୍ୟ, ନାରାୟଣ ସାଧବକୁ ଦଣ୍ଡ ଦେଉ ନାହଁ କାହିଁକି ? ତମ ରାଜ୍ୟରେ କ'ଣ ପାପ ପୁଣ୍ୟର ପ୍ରଭେଦ ନାହିଁ ? କାହିଁ ନାରାୟଣ ସାଧବ ପରି ରାକ୍ଷସ, କାହିଁ ମଣିଆଁ ଭାଇପରି ପୁଣ୍ୟବାନ ପୁରୁଷ ! ଏ ଯୁଗରେ କ'ଣ ପାପର ଜୟ ହେବ ବୋଲି ତମର ଆଦେଶ ଅଛି ଭଗବାନ୍ । ଚଞ୍ଚଳାର ଚକ୍ଷୁ ଛଳ ଛଳ ହେଲା ।

ଆଉ ବୃଥା ଚିନ୍ତାରେ ଲାଭନାହିଁ । ଯାହା ହେବାର ହୋଇ ସାରିଛି । ବୃଥା ଅତୀତକୁ ଭାବି ମନରେ କଷ୍ଟ ଆଣିବା ନିଷ୍ପ୍ରୟୋଜନ । ତହିଁରେ ନିଜର ଜୀବନ କେବଳ ଦୁଃଖମୟ ହେବ । ମଣିଆଁ ଭାଇ ତେବେ ଧୀବରପୁତ୍ର ନୁହେ । ଭଜନାର ଦୈନିକ ଜୀବନୀ ପଢ଼ିବା ଦ୍ୱାରା ଜଣାଯାଉଛି ମଣିଆଁ ଭାଇ ଜଣେ ବିଖ୍ୟାତ ବଣିକଙ୍କ ପୁଅ । ସୁଶୀଳା କଥାରୁ ଯାହା ସନ୍ଦେହ କରୁଥିଲି, ଏବେ ତାହା ଏକପ୍ରକାର ପ୍ରମାଣିତ ହୋଇଛି । ସୁଶୀଳା ଯେ ୟାଙ୍କର କେହି ନୁହେଁ, ଏହା ନିଶ୍ଚୟ—

ମଣିଆଁ ଭାଇ ମୋତେ ମୃତ୍ୟୁ ମୁଖରୁ ବଞ୍ଚାଇଛନ୍ତି । ମୋର ଜୀବନ ଉପରେ ସବୁ ଅଧିକାର ତାଙ୍କର ।

ଚଞ୍ଚଳାର ଚକ୍ଷୁପ୍ରାନ୍ତରୁ ଲୋତକବିନ୍ଦୁ ଶୁଷ୍କ ହେବା ପୂର୍ବରୁ ମଣିଆଁ ହସହସ ମୁହଁରେ ସେଠାରେ ଉପସ୍ଥିତ ହେଲା । ଚଞ୍ଚଳାର ଚକ୍ଷୁରେ ଜଳ ଦେଖି ତାର ମୁହଁଟି ଗମ୍ଭୀର ହୋଇ ଉଠିଲା । ସେ କୋମଳ ସ୍ୱରରେ ପଚାରିଲା, ଚଞ୍ଚଳା ତମେ କାନ୍ଦୁଛ କାହିଁକି ?

ଚଞ୍ଚଳା ହାତପାପୁଲିରେ ଆଖି ପୋଛି ଟିକିଏ ଲଜ୍ଜିତା ହୋଇ ଉତ୍ତର କଲା, କାହିଁ, ନାହିଁ ତ ।

ମୁଁ ତ ନିଜେ ଦେଖୁଛି । ଭୁରୁଡ଼େଇଲେ ମୁଁ ମାନିବି କାହିଁକି ?

ଚଞ୍ଚଳାକୁ ନୀରବ ଦେଖି ମଣିଅଁ ପ୍ରବୋଧ କରିବାକୁ କହିଲା, ଅତୀତକୁ ଭୁଲିଯାଅ । ଦୁଃଖମୟ ଅତୀତ ମନରେ କେବଳ ଦୁଃଖ ଆଣେ । ଭବିଷ୍ୟତ ଉପରେ ଆଶା ରଖି ନିଶ୍ଚିନ୍ତ ରହ । ଯେଉଁ ଲୋକ ଧନର ପ୍ରଭାବରୁ କେବଳ ତମର ନୁହେଁ ସମଗ୍ର ଦେଶ ଉପରେ ଅତ୍ୟାଚାର କରିଛି, ତାକୁ ଉପଯୁକ୍ତ ଦଣ୍ଡ ଦେବାକୁ ମୁଁ ଦୃଢ଼ପ୍ରତିଜ୍ଞ । ଏତେ ପରିଶ୍ରମ, ଏତେ କଷ୍ଟ ସହିଥିଲି ଯେଉଁଥିପାଇଁ, ତାହା ଆଜି ସଫଳ ହୋଇଛି । ଆଜି ମୋର ଧନର ଅଭାବ ନାହିଁ । ଭଗବାନଙ୍କ କୃପାରୁ ମୁଁ ବର୍ତ୍ତମାନ ଅଗାଧ ସମ୍ପତ୍ତିର ଅଧିକାରୀ । ମୋ ଧନ ତୁଳନାରେ ନାରାୟଣ ସାଧବର ଧନ ସାମାନ୍ୟ ମାତ୍ର । ଭାବିଛି ଏଥର ଉତ୍କଳକୁ ଯାଇ ନାରାୟଣ ସାଧବ ବିଷୟରେ ଉତ୍କଳ ସମ୍ରାଟ ଲଳାଟେନ୍ଦୁଙ୍କ ନିକଟରେ ଅଭିଯୋଗ କରିବି । ସେ ଯଦି ଶୁଣନ୍ତି ଉତ୍ତମ, ନୋହିଲେ ବାଲିରାଜା ନିଜେ ନାରାୟଣର ବିଚାର କରିବେ ।

ବାଲିରାଜା କିଏ ।

ଏତିକି ବୁଝିପାରୁନା ଚଞ୍ଚଳା ! ତେବେ କିହ ରମଣୀର ଉର୍ବର ମସ୍ତିଷ୍କ, ଏହି ସାମାନ୍ୟ କଥାଟି ବୁଝି ନ ପାରି ପରାସ୍ତ ହେଲା । ମୁଁ ବାଲି ଅଧିକାର କରିଛି । ତେଣୁ ଆଜିଠାରୁ ମୁଁ ନିଜକୁ ବାଲିରାଜା ବୋଲି ଘୋଷଣା କରୁଛି । ଯେଉଁ ବାଲିର ଅଧିବାସୀମାନଙ୍କୁ ଅସଭ୍ୟ ବୋଲି ଭାରତୀୟମାନେ ଘୃଣା କରନ୍ତି, ସେହି ଅସଭ୍ୟ ଜାତିକୁ ନେଇ ମୁଁ ରାଜ୍ୟ ସ୍ଥାପନ କରିବି । ତାଙ୍କୁ ସଭ୍ୟତା ଶିଖାଇବି ।

ଚଞ୍ଚଳା ସ୍ମିତ ହସି କହିଲା, ତେବେ ତ ଆପଣ ଆପଣଙ୍କର ଅତୀତକୁ ଭୁଲି ପାରିନାହାନ୍ତି । ଯଦି ଅତୀତକୁ ଭୁଲି ଯାଇଥାନ୍ତେ ଆଜି ପ୍ରତିଶୋଧ ନେବାକୁ ଦୃଢ଼ପ୍ରତିଜ୍ଞ ହୋଇ ନ ଥାନ୍ତେ ।

ଚଞ୍ଚଳା ବାଲିରାଜାଙ୍କୁ ଆପଣ ବୋଲି ସମ୍ବୋଧନ କଲା । ଦେଶର ରାଜାଙ୍କୁ ଆପଣ ନ କହି ଅନ୍ୟ କିଛି କହିବା ଅନ୍ୟାୟ ।

ବାଲିରାଜା ଆପତ୍ତି କରି କହିଲେ, ମାତ୍ର ତମପରି ମୁଁ ଅତୀତକୁ ସ୍ମରଣ କରି କାନ୍ଦୁନାହିଁ ।

ମୁଁ ତ ଅତୀତକୁ ଚିନ୍ତାକରି କାନ୍ଦୁ ନ ଥିଲି ।

ତେବେ ଭବିଷ୍ୟତକୁ ଚିନ୍ତାକରି ହୋଇଥିବ । ଭବିଷ୍ୟତ ଚିନ୍ତାରେ ମନରେ କଷ୍ଟ ଆଣି କାନ୍ଦିବା ଉଚିତ ନୁହେଁ । ଆମ୍ଭେମାନେ ବୋଧହୁଏ ଦିନେ ଦୁଇଦିନ ମଧ୍ୟରେ ଜାଭା ଫେରିଯିବା । ଜାଭାରେ କେଇଦିନ ଡେରି ହେବ । ଯେତେ ଧନ ଖର୍ଚ୍ଚ ହେଉ, ଯେତେ ସମୟ ବ୍ୟୟ ହେଉ ପଛେ ଏଥର ଗୋଟିଏ ଅତି ବଡ଼-

ବୋଇତ ଗଢ଼ାଇବାକୁ ହେବ, ଯେପରିକି ଗୋଟିଏ ବୋଇତରେ ପାଞ୍ଚଶହ ଲୋକଙ୍କର କୁଟୁମ୍ବ ଅକ୍ଳେଶରେ ଆରାମରେ ରହି ପାରିବେ । ଅଧିକ ମଧ୍ୟ ଅନେକଗୁଡ଼ିଏ ଛୋଟ ଛୋଟ ବୋଇତ ସଙ୍ଗରେ ନେଇ ଉତ୍କଳ ଯିବାକୁ ହେବ । ମୋର ଇଚ୍ଛା, ଉତ୍କଳ ଯିବା ପଥରେ ବ୍ରହ୍ମଦେଶ ଓ ସୁବର୍ଣ୍ଣଦ୍ୱୀପ ବାଟ ଦେଇ ଯିବା । ତଦ୍ୱାରା ସମସ୍ତଙ୍କୁ ଜଣାଇ ଦେବା ଯେ ବଣିକମାନେ ବାଲିରେ ବ୍ୟବସାୟ କରି ପାରିବେ । ଯେଉଁମାନେ ବଣିଜ କରିବାକୁ ଇଚ୍ଛୁକ, ବାଲିରାଜା ତାଙ୍କୁ ସାହାଯ୍ୟ କରିବେ । ଉତ୍କଳରେ ପହଞ୍ଚିବା ପୂର୍ବରୁ ବୋଧହୁଏ ରାଧାଶ୍ୟାମ ସେଠାରେ ଉପସ୍ଥିତ ହୋଇ ସାରିଥିବେ । ମୁଁ ଭଲକରି ଜାଣେ, ରାଧାଶ୍ୟାମ ନାରାୟଣ ସାଧବଙ୍କୁ ସମୁଦ୍ରରେ ପାଇ ନ ଥିବେ । ତେବେ ଚମ୍ପଲା ଆଉ ଭବିଷ୍ୟତ ଚିନ୍ତା କରୁଛ କାହିଁକି ? ତାମ୍ରଲିପ୍ତରେ ମୁଁ ତୁମକୁ ତମର ସ୍ୱାମୀଙ୍କ ପାଖରେ ଛାଡ଼ି ଆସିବି । ତାହା ମୋର କର୍ତ୍ତବ୍ୟ ।

ଚମ୍ପଲା ବିସ୍ମୟ ଭାବ ଦେଖାଇ ପଚାରିଲା, ମୋର ସ୍ୱାମୀ ?

ହଁ, ତମର ସ୍ୱାମୀ—

ମୋର ସ୍ୱାମୀ କାହୁଁ ଆସିଲେ ? ମୁଁ ତ ବିବାହିତା ନୁହେଁ ! ଲଜ୍ଜାବନତା ଚମ୍ପଲା କହିଲା ।

ତା ମୁଁ ବେଶ୍ ଜାଣେ । କିନ୍ତୁ ରାଧାଶ୍ୟାମଙ୍କ ସଙ୍ଗେ ତମର ବିବାହ ହେବାର ସବୁ ଠିକ୍ ହୋଇଥିଲା । ବୋଧହୁଏ ତୁମେ ଜାଣ ଯେ ରାଧାଶ୍ୟାମ ଏବଂ ବରଯାତ୍ରୀ ମୁନାହାଟ ନିକଟରେ ଉପସ୍ଥିତ ହେବା ପୂର୍ବରୁ ତମ ଘରେ ନାରାୟଣ ସାଧବଙ୍କର ଲୋକେ ଡକାୟତି କରିଥିଲେ ।

ମୁଁ ଏତେ କଥା ଜାଣେ ନାହିଁ । ଏତିକି ଜାଣେ ଯେ, ମୋର ବିବାହ ତାମ୍ରଲିପ୍ତର ଜଣେ ଧନୀ ବଣିକପୁତ୍ରଙ୍କ ସଙ୍ଗେ ବାପା ସ୍ଥିର କରିଥିଲେ ।

ରାଧାଶ୍ୟାମ ସେହି ଧନୀ ବଣିକ-ପୁତ୍ର ।

ତାମ୍ରଲିପ୍ତର ସେହି ଧନୀ ବଣିକ ପୁତ୍ରଙ୍କୁ ବିବାହ କରିବି ନାହିଁ ବୋଲି ମୁଁ ତ ବାପଙ୍କୁ ବାରଣ କରି ପଠାଇଥିଲି ।

ବାପା କ'ଣ କହିଲେ ?

ସେ ମୋ କଥାରେ କର୍ଣ୍ଣପାତ କଲେ ନାହିଁ । ସେଥିପାଇଁ ଠାକୁରେ ଏ ଦଣ୍ଡ ଦେଲେ ।

ତମେ ତେବେ ଆଗରୁ ଜାଣିଥିଲ ଯେ ଏପରି ଗୋଟିଏ ଘଟଣା ଘଟିବ ?

ଏଥିରୁ ମୁଁ ଅନୁମାନ କରୁଛି, ନାରାୟଣ ସାଧବଙ୍କୁ ବିବାହ କରିବାକୁ ତମର ଇଚ୍ଛା ଥିଲା ?

ନା—

କେଉଁ ବାକ୍ୟର ଉତ୍ତର ଦେଉଛ ? ପ୍ରଥମଟିର କି ଦ୍ୱିତୀୟଟିର ।

ଉଭୟର ।

ତେବେ ତମର ଅନ୍ୟ କାହାକୁ ବିବାହ କରିବାକୁ ଇଚ୍ଛା ଥିଲା ?

ଚଞ୍ଚଳା ମୁଖ ଅବନତ କଲା । ଉତ୍ତର ଦେଲାନାହିଁ ।

ତୁମକୁ ମୌନ ଦେଖି ମୁଁ ଅନୁମାନ କରୁଛି ତୁମେ ବୋଧହୁଏ ଉତ୍ତର ଦେବ, ହଁ । ତାହାହିଁ ଯଦି ହୁଏ, ମୋତେ ଦୟା କରି ବତାଇ ଦିଅ, ସେ ଭାଗ୍ୟବାନ୍ ଲୋକଟି କିଏ । ମୁଁ ତୁମକୁ ତାଙ୍କ ନିକଟରେ ଛାଡ଼ିବାକୁ ଚେଷ୍ଟା କରିବି ।

ଚଞ୍ଚଳା ହାତ ଆଙ୍ଗୁଠିରେ ତଳେ ଗାର ପକାଉ ପକାଉ କି ଉତ୍ତର ଦେବ ଚିନ୍ତା କଲା । ତାର ମୁଖର ଆଭା ଲଜ୍ଜାରୁଣ ହେଲା । ସେ ସେହି ଭାବ ଗୋପନ କରିବାକୁ ଓଢ଼ଣା ତଳକୁ ଟାଣିଦେଲା । ମଣିଆଁ ଚଞ୍ଚଳାର ମୁଖଭାବର ପରିବର୍ତ୍ତନ ଲକ୍ଷ୍ୟ କରି ମନେ ମନେ କେତେ କଣ ତର୍କକରି ପଚାରିଲା, ଉତ୍ତର ଦେଲ ନାହିଁ ଯେ ଚଞ୍ଚଳା ?

ଚଞ୍ଚଳା ଉତ୍ତେଜିତ ହୋଇ କହିଲା, ଯଦି ମୋର ଏଠି ରହିବା ଦ୍ୱାରା ଆପଣଙ୍କୁ ଅସୁବିଧା ହେଉଥାଏ, ଲଜ୍ଜା ହେଉଥାଏ, କିମ୍ବା କଷ୍ଟ ହେଉଥାଏ, ତେବେ ମୋତେ ଆପଣ ଯେଉଁଠାରୁ ଉଦ୍ଧାର କରି ଆଣିଥିଲେ ସେହିଠାରେ ଛାଡ଼ିଦେଇ ଆସନ୍ତୁ, କିମ୍ବା ଚାଲିଯିବାକୁ କୁହନ୍ତୁ । ମୁଁ ମୋର ଭାଗ୍ୟ ଅନୁସରି ଭଗବାନଙ୍କୁ ସାକ୍ଷୀ ରଖି ଯାହା ଉଚିତ ଏବଂ ସହଜ ମନେ କରିବି ତାହା କରିବି ।

ଭୁଲିଯାଉଛ ଚଞ୍ଚଳା, ମୁଁ ଦେଶର ରାଜା । ଏ ଦେଶର ସମସ୍ତ ଲୋକଙ୍କର ସୁଖ ଦୁଃଖ ପାଇଁ ମୁଁ ଦାୟୀ । ଯଦି ଆଜି ତୁମକୁ ଅନାଥ କରି ଛାଡ଼ିଦିଏ, ତେବେ ତମେ ବିପଦରେ ପଡ଼ିବ, ଏପରି କି ଜୀବନ ମଧ୍ୟ ହରାଇପାର ।

ତେବେ ଆପଣ ଯାହା ଉଚିତ ମନେ କରୁଛନ୍ତି, ତାହା କରନ୍ତୁ ।

ଏହି ସମୟରେ ଅଜଙ୍ଗ ଧଇଁ ସଇଁ ହୋଇ ସେଠାରେ ଉପସ୍ଥିତ ହେଲା । ବେକରେ ତାର ମସ୍ତବଡ଼ ବୋଝ—ଶିକାର । ସେ ଶିକାରକୁ ତଳେ ପକାଇ ଏକାଥରେ ମନ୍ଦିର ମଧ୍ୟକୁ ଦଉଡ଼ିଗଲା । କାହାକୁ କିଛି କହିଲା ନାହିଁ । ମନ୍ଦିର ମଧ୍ୟରେ ନିଜକୁ ଲୁଚାଇ ରଖିଲା । ସତେ ଯେପରି ସେ କାହାକୁ ଦେଖି ଭୟରେ ପଳାଇ ଆସିଛି ।

ମଣିଆଁ ଆଗରୁ ସାବଧାନ ହୋଇ ଧନୁରେ ଗୁଣ ଲଗାଇ ରଖିଲା ।

ଉଭୟେ ଚଞ୍ଚଳା ଏବଂ ମଣିଅଁ ଶିକାରକୁ ଦେଖି ଆଶ୍ଚର୍ଯ୍ୟ ହେଲେ । ନ ହସି ରହି ପାରିଲେ ନାହିଁ । ଏହା ଗୋଟିଏ ମୋଟା ଶୃଗାଳ ।

କିଛି ସମୟ ପରେ ଦଳେ ଲୋକ ମନ୍ଦିର ଆଡ଼କୁ ଆସୁଥିବା ବାଲରାଜା ଦେଖି ପାରିଲେ । ସେମାନେ ଏଠାକାର ଆଦିମ ଅଧିବାସୀ । ସେମାନେ କ୍ରମେ ନିକଟତର ହେଲେ । ବାଲରାଜା ଧନୁରେ ଗୁଣ ଚଢ଼ାଇଲେ । ଚଞ୍ଚଳା ସ୍ଥିତା ହୋଇ କହିଲା ଏମାନେ ତ ସେହିମାନେ । ମୁଁ ଯାଙ୍କ ଭିତରୁ କେତେକଙ୍କୁ ଚିହ୍ନି ପାରୁଛି । ଚାଲ ପଳାଇବା ।

ଠିକ୍ କହୁଛ ତ, ସେମାନଙ୍କ ମଧ୍ୟରୁ ତେବେ ଅନେକଙ୍କୁ ଚିହ୍ନି ପାରିଛ ?

ହଁ, ଦେଖିଲୁ, ସେ ଯେଉଁ ଲୋକଟି ଗଛରୁ ଗୋଟାଏ ପତର ଛିଣ୍ଡାଇ କାନରେ ଖୋସିଲା, ତାକୁ ତୁମେ ସେଦିନ ଆହତ କରି ତଳେ ପକାଇଥିଲ । ତା ଦେହରେ ପତ୍ରର ରସ ଦେବାରୁ ସେ ବଞ୍ଚିଗଲା । ତା ପାଖ ଜଣର ବଙ୍କା ପାଟିଟା ମୋର ଠିକ୍ ମନେ ଅଛି । ମୁଁ ଯେତେବେଳେ ତାଙ୍କ ହାତରେ ବନ୍ଦିନୀ ଥିଲି, ସେହି ଲୋକଟି ମୋତେ ପ୍ରତ୍ୟହ ଦୁଧ ଆଣି ଦେଉଥିଲା । ଆଉ ଡେରି କରନାହିଁ । ସେମାନେ ଆମକୁ ହୁଏତ ଆକ୍ରମଣ କରିବେ । ଆସ ମନ୍ଦିର ଭିତରେ ଲୁଚିଯିବା ।

ମଣିଅଁ କହିଲା, ଆମେ ଯଦି ଲୁଚିବା ସେମାନେ ଭାବିବେ ଆମେ ତାଙ୍କୁ ଡରିଲେ । ତାଙ୍କ ଢଙ୍ଗଢାଙ୍ଗରୁ ଜଣା ପଡ଼ୁଛି ତାଙ୍କ ମନରେ କୌଣସି ବିଦ୍ୱେଷ ଭାବ ନାହିଁ । ତଥାପି ଯଦି ତମକୁ ଡର ମାଡ଼ୁଥାଏ, ତୁମେ ଯାଇ ମନ୍ଦିର ଭିତରେ ଲୁଚ ।

ଚଞ୍ଚଳା କୌଣସି ଉତ୍ତର ନ ଦେଇ ଟିକିଏ ପଛକୁ ଘୁଞ୍ଚିଯାଇ ବାଲରାଜାଙ୍କର ପଛଆଡ଼େ ଚୁପ୍ ହୋଇ ଠିଆ ହେଲା ।

କାଣ୍ଡ ଲକ୍ଷ ହେଲା ଭଳି ନିକଟକୁ ସେମାନେ ଆସିଲାରୁ ଦୁଇ ପାଦ ଆଗକୁ ଘୁଞ୍ଚି ବାଲରାଜା ହାତ ଟେକିଲେ । ସେମାନେ ତାଙ୍କର ଠାର କେହି ବୁଝି ନ ପାରି ପରସ୍ପରକୁ ଅନାଅନି ହୋଇ ଆଗକୁ ଅଗ୍ରସର ହେଲେ । ବାଲରାଜା ଧନୁରେ କାଣ୍ଡ ଦେଇ ବିନ୍ଧିବାର ଉପକ୍ରମ କରି ଧନୁଶର ତଳେ ରଖି ପୁନର୍ବାର ଦୁଇହାତ ଉପରକୁ ଟେକିଲେ । ସେମାନେ କିଛି ସ୍ଥିର କରି ନ ପାରି ଠିଆ ହୋଇ ରହିଲେ । ବାଲରାଜା ବୁଝିଲେ ସେମାନଙ୍କ ମନରେ

ବିଦ୍ୱେଷ ଭାବ ନାହିଁ । ତଥାପି, ନିଃସନ୍ଦେହ ହେବା ପାଇଁ ସେ ପୁନର୍ବାର ହାତଠେକି ସଙ୍କେତ କଲେ । ସେମାନଙ୍କ ମଧ୍ୟରୁ ଜଣେ ବାଲରାଜାଙ୍କର ସଙ୍କେତ ବୁଝିପାରି ଅନ୍ୟମାନଙ୍କୁ ଜଣାଇଲା । ସମସ୍ତେ ଏକ ସମୟରେ ଏକ ସ୍ଥାନରେ ନିଜ ନିଜର ଅସ୍ତ୍ର ରଖି ଠିଆ ହେଲେ । ବାଲରାଜା ସେମାନଙ୍କ କାର୍ଯ୍ୟରେ ସନ୍ତୁଷ୍ଟ ଏହିଭାବ ଦେଖାଇ ହସ ହସ ହୋଇ ମୁଣ୍ଡ ହଲାଇଲେ । ପରେ ସେମାନଙ୍କୁ ନିକଟକୁ ଆସିବାକୁ ହାତ ଠାରିଲେ । ସେମାନେ ବାଲରାଜାଙ୍କର ମନର ଭାବ ବୁଝିପାରି ଶୂନ୍ୟ ହସ୍ତରେ ନିକଟକୁ ଆସିଲେ । କାଳେ ସେମାନଙ୍କ ମନରେ ସନ୍ଦେହ ହୁଏ ସେଥି ନିମନ୍ତେ ସେ ନିଜର ଧନୁଶର ଏବଂ ଖଣ୍ଡା ପଛଆଡ଼େ ଥୋଇ ଦେବାକୁ ମୁହଁ ବୁଲାଇ ଦେଖିଲେ କିଛି ଦୂରରେ ଚମ୍ପଲା ଠିଆ ହୋଇ ହସ ହସ ମୁଖରେ ଲୋକମାନଙ୍କୁ ଅନାଇଁ ରହିଛି । ବାଲରାଜାଙ୍କୁ ତା ଆଡ଼କୁ ଅନାଇବାର ଦେଖି ସେ ମୁଖାବନତ କଲା । ବାଲରାଜା କହିଲେ, ଭୟ ନାହିଁ ଚମ୍ପଲା, ଭୟ ନାହିଁ, ସେମାନେ ଆମର କୌଣସି ଅନିଷ୍ଟ କରିବେ ନାହିଁ । ନିଅ, ଏଗୁଡ଼ିକ ଧର ।

ଚମ୍ପଲା ଇଚ୍ଛା ବିରୁଦ୍ଧରେ ଧନୁଶର ଏବଂ ଖଣ୍ଡାଟି ବାଲରାଜାଙ୍କ ହାତରୁ ନେଇ ନିକଟରେ ଠିଆହେଲା, କାଳେ କେତେବେଳେ ଦରକାର ପଡ଼େ । ସେମାନେ ନିକଟକୁ ଆସି ଉଭୟ ବାଲରାଜା ଏବଂ ଚମ୍ପଲାର ପାଦ-ତଳେ ଲମ୍ବ ଲମ୍ବ ହୋଇ ପଡ଼ିଗଲେ ।

ବାଲରାଜା ସେମାନଙ୍କୁ ଉଠିବାକୁ କହି ହାତ ଉପରକୁ ଉଠାଇଲେ । ଆଗନ୍ତୁକମାନେ ତତ୍ପର ଉଠି ଠିଆହେଲେ । ବାଲରାଜା ଡାକିଲେ ଅଜଙ୍ଗ, ଅଜଙ୍ଗ— ।

ଅଜଙ୍ଗ ଉତ୍ତର ଦେଲା, ଯେଁ । କିନ୍ତୁ ମନ୍ଦିର ଭିତରୁ ପଦାକୁ ବାହାରିଲା ନାହିଁ ।

ଚମ୍ପଲା ବାଲରାଜାଙ୍କର ଉଦ୍ଦେଶ୍ୟ ବୁଝିପାରି ଉଚ୍ଚସ୍ୱରରେ ଡାକି କହିଲା, ଅଜଙ୍ଗ, ଯାଡ଼େ ଆ ।

ଅଜଙ୍ଗ ଉତ୍ତର ଦେଲା ୟାଁ-ଢୌଁ-ୟାଁ ।

ସେ ମନ୍ଦିର ଭିତରୁ ଥରି ଥରି ଆସି ଚମ୍ପଲାର ପଛଆଡ଼େ ଠିଆ-ହୋଇ ରହିଲା । ସତେ ଯେପରି ଛାତ୍ର କୌଣସି ଦୋଷ କରି ଶିକ୍ଷକଙ୍କ ସମ୍ମୁଖରେ ଦଣ୍ଡାଜ୍ଞାର ଅପେକ୍ଷା କରି ଠିଆ ହୋଇଛି ।

ଅଜଙ୍ଗକୁ ଦେଖି ଅନ୍ୟାନ୍ୟମାନେ ନିଜ ଭାଷାରେ କାଣ କୁହାକୁହି ହେଲେ । ପରେ ମୃତଶୃଗାଳକୁ ଅଙ୍ଗୁଠି ଦେଖାଇ ଅଜଙ୍ଗକୁ ଅନେକ କଥା କହିଲେ । ପ୍ରଭୁ ନିକଟରେ ଥିଲେ ପୋଷା କୁକୁର ଯେପରି ସାହସରେ

ଅନ୍ୟ କୁକୁରଙ୍କ ଉପରକୁ ଭୁକିଉଠେ, ଅଜଙ୍ଗ ବାଲିରାଜା ଏବଂ ଚଞ୍ଚଳାଙ୍କର ନିକଟରେ ଥାଇ ସେମାନଙ୍କ ଉପରକୁ ସେହିପରି ଖେଙ୍କି ଉଠିଲା ।

ବାଲିରାଜା ଏମାନଙ୍କ କଥାରୁ କିଛି ବୁଝି ପାରିଲେ ନାହିଁ ।

-ଚଞ୍ଚଳା ମନେ ମନେ ଗୋଟିଏ ବିଷୟ ଠଉରେଇ ନେଇ ଅଜଙ୍ଗକୁ ଜିଜ୍ଞାସା କଲା, ଅଜଙ୍ଗ ଏତେ କୌ।କଣି ତୁ ମାରିଛ ?

ଅଜଙ୍ଗ ବୋଧହୁଏ କଥାଟି ବୁଝି ପାରିଲା । ଯେ ପ୍ରକୃତରେ ଦୋଷ କରିଥାଏ, ସେ ସର୍ବଦା ସନ୍ଦେହୀ । ହୁଏତ ଏଥିପାଇଁ ସେ ଚଞ୍ଚଳାର ପ୍ରଶ୍ନ ବୁଝି ପାରିଲା । ପୋଷା କୁକୁର ପ୍ରଭୁଙ୍କଠାରୁ ଗାଳି ଖାଇ ଯେପରି ଧାଲପାରି ଲାଙ୍ଗୁଳ ଯାକି ସ୍ଥିର ରହେ, ଅଜଙ୍ଗ ଚଞ୍ଚଳାର ପ୍ରଶ୍ନରେ ସେହିପରି ମୁଣ୍ଡ ତଳକୁ ନୁଆଁଇ ନୀରବ ରହିଲା । ଚଞ୍ଚଳା ଆଉ ଥରେ ସେହି ପ୍ରଶ୍ନ ପଚାରିବାରୁ ସେ ନିଜ ମନକୁ କଣ ଗାଉଁ ଗାଉଁ ହେଲା । ଚଞ୍ଚଳା ଟିକିଏ କ୍ରୋଧ ପ୍ରକାଶ କରି ତୃତୀୟ ଥର ପଚାରିବାରୁ ସେ ଧୀରେ ଧୀରେ ଉତ୍ତର ଦେଲା, ମେଁ— ମାଁ—ମଁ— ।

ତେବେ ତୁ ସେମାନଙ୍କଠାରୁ ଛଡ଼ାଇ ଆଣିଛୁ ନା ?

ଅଜଙ୍ଗ ବୁଝି ନ ପାରି ଚଞ୍ଚଳା ବାକ୍ୟର ଶେଷଅଂଶ ପୁନରୁଦ୍ଧାର କଲା,- ୟାଁ ଣେଁ ଣ୍ଠୋନାଁ ।

ଚଞ୍ଚଳା ଜାଣେ ଅଜଙ୍ଗ ନ ବୁଝି ପାରିଲେ ତାହାର ବାକ୍ୟର ଶେଷଅଂଶ ଉଦ୍ଧାର କରେ । ସେ ଟିକିଏ ହସି ତାକୁ ମୁଖ ଏବଂ ହାତର ଭାବଭଙ୍ଗି କରି ବୁଝାଇ ଦେଲାରୁ ଅଜଙ୍ଗ ଟିକିଏ ଲଜ୍ଜିତ ହୋଇ ଉତ୍ତର ଦେଲା, ହେଁୟା—

ଚଞ୍ଚଳା ସମବେତ ଅଗନ୍ତୁକମାନଙ୍କୁ ହାତଠାରି ଶୃଗାଳଟିକୁ ନେଇ-ଯିବାକୁ କହିଲା । ସେମାନେ ଆନନ୍ଦରେ ଶୃଗାଳଟାକୁ ନେଇଯିବାକୁ ବସିଲାରୁ ବାଲିରାଜା ହାତ ଦେଖାଇ ଅପେକ୍ଷା କରିବାକୁ କହିଲେ । ଅଜଙ୍ଗ ଆଡ଼କୁ ମୁହିଁ ବୁଲାଇ କହିଲେ, କାଠୋ—

ଅଜଙ୍ଗ ବୁଝିପାରି ସଙ୍ଗେ ସଙ୍ଗେ ନିକଟସ୍ଥ ବୃକ୍ଷମାନଙ୍କରୁ ଶୁଖିଲା କାଠ ଭାଙ୍ଗି ତଳେ ପକାଇଲା । ନିଜେ ବାଲିରାଜା ସେ ସମସ୍ତ କାଠ ଏକତ୍ର କରି ଟିକିଏ ଦୂରରେ ଜମା କଲେ । ଅଜଙ୍ଗ ଓହ୍ଲାଇ ଆସିଲାରୁ ତାକୁ ଶୃଗାଳଟିକୁ କାଠ ଉପରେ ଲଦି ଦେବାକୁ ଆଦେଶ ଦେଲେ । ଆଦେଶ ପାଳିତ ହେଲାରୁ ନିକଟରୁ ଚକ୍‌ମକି ପଥର କାଢ଼ି ତହିଁରେ ଅଗ୍ନି ସଂଯୋଗ କଲେ । ବାଲିରାଜା ଆଗରୁ ହୁସିଆର ହୋଇଥିଲେ, ଯେପରି ଅଗ୍ନି ଜଙ୍ଗଲ ଭିତରକୁ ବ୍ୟାପି ନ ଯାଏ । ନିଆଁ ଜଳିବାର ଦେଖି ଅଜଙ୍ଗ ଆନନ୍ଦରେ ନାଚିଉଠିଲା, ମାତ୍ର ଅଗନ୍ତୁକମାନେ ଚିତ୍କାର ଦେଲେ ।

ଫୁରୁକୁଟିଆ ଗନ୍ଧ ଲୋପ ପାଇବାର କିଛି ସମୟ ପରେ ନିଆଁର ତାଉ କମିଗଲା । ବାଲରାଜାଙ୍କ ଆଦେଶମତେ ପୋଡ଼ା ବଲ୍ଲଅକୁ ନିଆଁରୁ ଠାଣି ଆଣି ନିଜର ଅସ୍ତ୍ର ଧରି ଖଣ୍ଡ ଖଣ୍ଡକରି କାଟିଲେ । ସେମାନଙ୍କ ମଧ୍ୟରୁ ଜଣେ ଖଣ୍ଡେ କଦଳୀ ପତ୍ରରେ ଲୁଣ ଏବଂ ଅନ୍ୟ ଜଣେ ଆଉ ଗୋଟିଏ କଦଳୀ ପତ୍ରରେ ବଟା ମସଲା ଆଣି ନିକଟରେ ରଖିଥିଲେ । ବଟା ମସଲା ଏବଂ ଲବଣ ସାହାଯ୍ୟରେ ସେମାନେ ପୋଡ଼ା ବଲ୍ଲଅକୁ ଖାଇବାରେ ଲାଗିଲେ । ଅଜଙ୍ଗ ସେମାନଙ୍କ ସଙ୍ଗେ ଯୋଗ ଦେବାକୁ ଚେଷ୍ଟା କରୁଥିଲା, ମାତ୍ର ଚଞ୍ଚଳାର ରକ୍ତଚକ୍ଷୁର ବିରୁଦ୍ଧରେ ସେ ବିଦ୍ରୋହ କରି ପାରିଲା ନାହିଁ ।

ବାଲରାଜାଙ୍କ ଆଦେଶମତେ ଚଞ୍ଚଳା ମନ୍ଦିର ମଧ୍ୟରୁ କେତେଖଣ୍ଡି ପୁରୁଣା ଲୁଗା ଓ ଖଣ୍ଡେ ଦୁ'ଖଣ୍ଡ ଚକମକି ପଥର ଆଣିଲା । ଆଗନ୍ତୁକମାନଙ୍କର ଭୋଜନ ଶେଷ ହେଲା ପରେ ବାଲରାଜା ସେମାନଙ୍କ ମଧ୍ୟରୁ ମୁଖିଆ କେତେଜଣଙ୍କୁ ପୁରୁଣା ଲୁଗା ଉପହାର ଦେଲେ । ଯେଉଁ ଜଣକ ସେମାନଙ୍କର ନେତାପରି ଦିଶୁଥିଲା, ବାଲରାଜା ତାକୁ ଉଜ୍ଜଳାୟୁ ଉତ୍କୃଷ୍ଟ ଛୁରୀରୁ ଖଣ୍ଡେ ଓ ଚକମକି ପଥର ଓ ଲୁହାଦେଇ କିପରି ବ୍ୟବହାର କରିବାକୁ ହୁଏ ବତାଇ ଦେଲେ । ଶେଷରେ ସେମାନଙ୍କୁ ବିଦାୟ ଦେଲେ ।

ସେମାନେ ଆନନ୍ଦରେ ନାଚି ନିଜ ନିଜ ହତିଆର ଧରି ଜଙ୍ଗଲରେ ଅଦୃଶ୍ୟ ହୋଇଗଲେ ।

ବାଲରାଜା ହସି ହସି ଚଞ୍ଚଳାକୁ ଅନାଇ କହିଲେ, ସେଦିନ ମୁଁ ବାଲି ଜୟ କରିଥିଲି । ଆଜି ମୁଁ ମୋର ପ୍ରଜାଙ୍କର ହୃଦୟ ଜୟ କରିଛି । ନ୍ୟାୟ ବିଚାର କରି ସେମାନଙ୍କ ପଦାର୍ଥ ତାଙ୍କୁ ଫେରାଇ ଦେଇଛି । ଏପରି ବ୍ୟବହାର ଦ୍ୱାରା ଲାଭ କଣ ହେଲା ବୁଝି ପାରିଛ ଚଞ୍ଚଳା ?

ସେ ପୁଣି କହିଲେ, ସେମାନଙ୍କର ମନରେ ବିଶ୍ୱାସ ହେଲା ଯେ, ଆମେ ତାଙ୍କର କୌଣସି ଅନିଷ୍ଟ କରିବୁ ନାହିଁ । ଅତଏବ ସେମାନେ ଆମର କୌଣସି ପ୍ରକାର ଅନିଷ୍ଟ କରିବାକୁ ଚେଷ୍ଟା କରିବେ ନାହିଁ । ଆଗ ଲୋକଙ୍କର ମନ ନେଇ କାମ କରିବାକୁ ହୁଏ । ଯେତେବେଳେ ସେମାନେ ପୋଷା ମାନିଯିବେ, ପ୍ରଭୁତ୍ୱ ବିସ୍ତାର କରୁ ଥା ତେଣିକି— ।

ସେମାନଙ୍କୁ ଧନୁଶରର ବ୍ୟବହାର ଶିଖାଇଲେ ନାହିଁ ତ ?

ଏତେ ଶୀଘ୍ର ତାଙ୍କୁ ଏତେଗୁଡ଼ାଏ ସୁବିଧା ଦେବା ଉଚିତ ବୋଲି ମୁଁ ମନେ କରୁ ନାହିଁ । ଅବଶ୍ୟ ଧନୁଶରର ବ୍ୟବହାର ଶିଖାଇ ଦେଇଥିଲେ, ସେମାନଙ୍କର ଉପକାର ହୋଇଥାନ୍ତା, ମାତ୍ର ଯଦି ସେମାନେ ଧନୁଶର ନେଇ ଆମକୁ ଆକ୍ରମଣ କରନ୍ତି ସେତେବେଳକୁ ? ଏତେଗୁଡ଼ାଏ ଲୋକଙ୍କ ବିପକ୍ଷରେ ଆମେ ମୋଟେ ଦୁଇ

ଅନ୍ୟ କୁକୁରଙ୍କ ଉପରକୁ ଭୁକିଉଠେ, ଅଜଙ୍ଗ ବାଲରାଜା ଏବଂ ଚଞ୍ଚଳାଙ୍କର ନିକଟରେ ଥାଇ ସେମାନଙ୍କ ଉପରକୁ ସେହିପରି ଖେଙ୍କି ଉଠିଲା ।

ବାଲ୍‌ରାଜା ଏମାନଙ୍କ କଥାରୁ କିଛି ବୁଝି ପାରିଲେ ନାହିଁ ।

ଚଞ୍ଚଳା ମନେ ମନେ ଗୋଟିଏ ବିଷୟ ଠଉରେଇ ନେଇ ଅଜଙ୍ଗଙ୍କୁ ଜିଜ୍ଞାସା କଲା, ଅଜଙ୍ଗ ଏତେ କୌଣ କଣ ତୁ ମାରିଛ ?

ଅଜଙ୍ଗ ବୋଧହୁଏ କଥାଟି ବୁଝି ପାରିଲା । ଯେ ପ୍ରକୃତରେ ଦୋଷ କରିଥାଏ, ସେ ସବଦା ସନ୍ଦେହୀ । ହୁଏତ ଏଥିପାଇଁ ସେ ଚଞ୍ଚଳାର ପ୍ରଶ୍ନ ବୁଝି ପାରିଲା । ପୋଷା କୁକୁର ପ୍ରଭୁଠାରୁ ଗାଳି ଖାଇ ଯେପରି ଧାଳପାରି ଲାଙ୍ଗୁଳ ଯାକି ସ୍ଥିର ରହେ, ଅଜଙ୍ଗ ଚଞ୍ଚଳାର ପ୍ରଶ୍ନରେ ସେହିପରି ମୁଣ୍ଡ ତଳକୁ ନୁଆଇଁ ନୀରବ ରହିଲା । ଚଞ୍ଚଳା ଆଉ ଥରେ ସେହି ପ୍ରଶ୍ନ ପଚାରିବାରୁ ସେ ନିଜ ମନକୁ କଣ ଗାଉଁ ଗାଉଁ ହେଲା । ଚଞ୍ଚଳା ଟିକିଏ କ୍ରୋଧ ପ୍ରକାଶ କରି ତୃତୀୟ ଥର ପଚାରିବାରୁ ସେ ଧୀରେ ଧୀରେ ଉତ୍ତର ଦେଲା, ମେଁ— ମାଁ—ମଁ— ।

ତେବେ ତୁ ସେମାନଙ୍କଠାରୁ ଛଡ଼ାଇ ଆଣିଛୁ ନା ?

ଅଜଙ୍ଗ ବୁଝି ନ ପାରି ଚଞ୍ଚଳା ବାକ୍ୟର ଶେଷଅଂଶ ପୁନରୁଚ୍ଚାର କଲା,- ଯାଁ ଣେଁ ଆେନାଁ ।

ଚଞ୍ଚଳା ଜାଣେ ଅଜଙ୍ଗ ନ ବୁଝି ପାରିଲେ ତାହାର ବାକ୍ୟର ଶେଷଅଂଶ ଉଚ୍ଚାର କରେ । ସେ ଟିକିଏ ହସି ତାକୁ ମୁଖ ଏବଂ ହାତର ଭାବଭଙ୍ଗି କରି ବୁଝାଇ ଦେଲାରୁ ଅଜଙ୍ଗ ଟିକିଏ ଲଜ୍ଜିତ ହୋଇ ଉତ୍ତର ଦେଲା, ହେଁୟା—

ଚଞ୍ଚଳା ସମବେତ ଅଗନ୍ତୁକମାନଙ୍କୁ ହାତଠାରି ଶୃଗାଳଟିକୁ ନେଇ- ଯିବାକୁ କହିଲା । ସେମାନେ ଅନନ୍ଦରେ ଶୃଗାଳଟାକୁ ନେଇଯିବାକୁ ବସିଲାରୁ ବାଲ୍‌ରାଜା ହାତ ଦେଖାଇ ଅପେକ୍ଷା କରିବାକୁ କହିଲେ । ଅଜଙ୍ଗ ଆଡ଼କୁ ମୁହଁ ବୁଲାଇ କହିଲେ, କାଠୌ—

ଅଜଙ୍ଗ ବୁଝିପାରି ସଙ୍ଗେ ସଙ୍ଗେ ନିକଟସ୍ଥ ବୃକ୍ଷମାନଙ୍କରୁ ଶୁଖିଲା କାଠ ଭାଙ୍ଗି ତଳେ ପକାଇଲା । ନିଜେ ବାଲରାଜା ସେ ସମସ୍ତ କାଠ ଏକତ୍ର କରି ଟିକିଏ ଦୂରରେ ଜମା କଲେ । ଅଜଙ୍ଗ ଓହ୍ଲାଇ ଆସିଲାରୁ ତାକୁ ଶୃଗାଳଟିକୁ କାଠ ଉପରେ ଲଦି ଦେବାକୁ ଆଦେଶ ଦେଲେ । ଆଦେଶ ପାଳିତ ହେଲାରୁ ନିକଟରୁ ଚକ୍‌ମକି ପଥର କାଢି ତହିଁରେ ଅଗ୍ନି ସଂଯୋଗ କଲେ । ବାଲରାଜା ଅଗରୁ ହୁସିଆର ହୋଇଥିଲେ,- ଯେପରି ଅଗ୍ନି ଜଙ୍ଗଲ ଭିତରକୁ ବ୍ୟାପି ନ ଯାଏ । ନିଆଁ ଜଳିବାର ଦେଖି ଅଜଙ୍ଗ ଅନନ୍ଦରେ ନାଚିଉଠିଲା, ମାତ୍ର ଅଗନ୍ତୁକମାନେ ହୁର୍ତ୍ତ ଦେଲେ ।

ଫୁରୁକୁଟିଆ ଗନ୍ଧ ଲୋପ ପାଇବାର କିଛି ସମୟ ପରେ ନିଆଁର ତାତି କମିଗଲା । ବାଲରାଜାଙ୍କ ଆଦେଶମତେ ପୋଡ଼ା ବଲ୍ଲଆକୁ ନିଆଁରୁ ଟାଣି ଆଣି ନିଜର ଅସ୍ତ୍ର ଧରି ଖଣ୍ଡ ଖଣ୍ଡକରି କାଟିଲେ । ସେମାନଙ୍କ ମଧ୍ୟରୁ ଜଣେ ଖଣ୍ଡେ କଦଳୀ ପତ୍ରରେ ଲୁଣ ଏବଂ ଅନ୍ୟ ଜଣେ ଆଉ ଗୋଟିଏ କଦଳୀ ପତ୍ରରେ ବଟା ମସଲା ଆଣି ନିକଟରେ ରଖିଥିଲେ । ବଟା ମସଲା ଏବଂ ଲବଣ ସାହାଯ୍ୟରେ ସେମାନେ ପୋଡ଼ା ବଲ୍ଲଆକୁ ଖାଇବାରେ ଲାଗିଲେ । ଅଜଙ୍ଗ ସେମାନଙ୍କ ସଙ୍ଗେ ଯୋଗ ଦେବାକୁ ଚେଷ୍ଟା କରୁଥିଲା, ମାତ୍ର ଚଞ୍ଚଳାର ରକ୍ତଚକ୍ଷୁର ବିରୁଦ୍ଧରେ ସେ ବିଦ୍ରୋହ କରି ପାରିଲା ନାହିଁ ।

ବାଲରାଜାଙ୍କ ଆଦେଶମତେ ଚଞ୍ଚଳା ମନ୍ଦିର ମଧ୍ୟରୁ କେତେଖଣ୍ଡି ପୁରୁଣା ଲୁଗା ଓ ଖଣ୍ଡେ ଦୁ'ଖଣ୍ଡ ଚକମକି ପଥର ଆଣିଲା । ଆଗନ୍ତୁକମାନଙ୍କର ଭୋଜନ ଶେଷ ହେଲା ପରେ ବାଲରାଜା ସେମାନଙ୍କ ମଧ୍ୟରୁ ମୁଖିଆ କେତେଜଣଙ୍କୁ ପୁରୁଣା ଲୁଗା ଉପହାର ଦେଲେ । ଯେଉଁ ଜଣକ ସେମାନଙ୍କର ନେତାପରି ଦିଶୁଥିଲା, ବାଲରାଜା ତାକୁ ଉଲ୍ଲାସ୍ୟ ଉତ୍କୃଷ୍ଟ ଛଟରୁ ଖଣ୍ଡେ ଓ ଚକମକି ପଥର ଓ ଲୁହାଦେଇ କପରି ବ୍ୟବହାର କରିବାକୁ ହୁଏ ବତାଇ ଦେଲେ । ଶେଷରେ ସେମାନଙ୍କୁ ବିଦାୟ ଦେଲେ ।

ସେମାନେ ଆନନ୍ଦରେ ନାଚି ନିଜ ନିଜ ହତିଆର ଧରି ଜଙ୍ଗଲରେ ଅଦୃଶ୍ୟ ହୋଇଗଲେ ।

ବାଲରାଜା ହସି ହସି ଚଞ୍ଚଳାକୁ ଅନାଇ କହିଲେ, ସେଦିନ ମୁଁ ବାଲି ଜୟ କରିଥିଲି । ଆଜି ମୁଁ ମୋର ପ୍ରଜାଙ୍କର ହୃଦୟ ଜୟ କରିଛି । ନ୍ୟାୟ ବିଚାର କରି ସେମାନଙ୍କ ପଦାର୍ଥ ତାଙ୍କୁ ଫେରାଇ ଦେଇଛି । ଏପରି ବ୍ୟବହାର ଦ୍ୱାରା ଲାଭ କଣ ହେଲା ବୁଝି ପାରିଛ ଚଞ୍ଚଳା ?

ସେ ପୁଣି କହିଲେ, ସେମାନଙ୍କର ମନରେ ବିଶ୍ୱାସ ହେଲା ଯେ, ଆମେ ତାଙ୍କର କୌଣସି ଅନିଷ୍ଟ କରିବୁ ନାହିଁ । ଅତଏବ ସେମାନେ ଆମର କୌଣସି ପ୍ରକାର ଅନିଷ୍ଟ କରିବାକୁ ଚେଷ୍ଟା କରିବେ ନାହିଁ । ଆଗ ଲୋକଙ୍କର ମନ ନେଇ କାମ କରିବାକୁ ହୁଏ । ଯେତେବେଳେ ସେମାନେ ପୋଷା ମାନିଯିବେ, ପ୍ରଭୁତ୍ୱ ବିସ୍ତାର କରୁ ଥା ତେଣିକି— ।

ସେମାନଙ୍କୁ ଧନୁଶରର ବ୍ୟବହାର ଶିଖାଇଲେ ନାହିଁ ତ ?

ଏତେ ଶୀଘ୍ର ତାଙ୍କୁ ଏତେଗୁଡ଼ାଏ ସୁବିଧା ଦେବା ଉଚିତ ବୋଲି ମୁଁ ମନେ କରୁ ନାହିଁ । ଅବଶ୍ୟ ଧନୁଶରର ବ୍ୟବହାର ଶିଖାଇ ଦେଇଥିଲେ, ସେମାନଙ୍କର ଉପକାର ହୋଇଥାନ୍ତା, ମାତ୍ର ଯଦି ସେମାନେ ଧନୁଶର ନେଇ ଆମକୁ ଆକ୍ରମଣ କରନ୍ତି ସେତେବେଳକୁ ? ଏତେଗୁଡ଼ାଏ ଲୋକଙ୍କ ବିପକ୍ଷରେ ଆମେ ମୋଟେ ଦୁଇ

କିଏ ଠିଆହୋଇ ପାରିବା କି ? ମୋର ଇଚ୍ଛା, ଧୀରେ ଧୀରେ ସେମାନେ ଯେତିକି ସଭ୍ୟ ହେଉଥିବେ, ତାଙ୍କୁ ସେତିକି ପରିମାଣରେ ଶିଖାଉଥିବା ।

ନରମାଂସ ଭକ୍ଷଣରୁ ବିରତ କରାଯାଇ ପାରିବ ନାହିଁ ସେମାନଙ୍କୁ !

ଏତେ ଶୀଘ୍ର କରିବା କଠିନ । ଦେଖୁ ନା, ଆମ ଦେଶର ସବାଜିଆ କେଲାଙ୍କୁ; ଆମ ପାଖରେ ଶହ ଶହବର୍ଷ ରହି ସୁଦ୍ଧା ମୃତ ପିତା ମାତାଙ୍କର ମାଂସ ଖାଇବାକୁ ଟିକିଏ ଘୃଣା କରନ୍ତି ନାହିଁ ।

ତେବେ ତ ଏମାନଙ୍କୁ ବିଶ୍ବାସ କରି ହେବ ନାହିଁ । ସୁବିଧା ପାଇଲେ ଆମକୁ ମାରି ଖାଇବା ଏମାନଙ୍କପକ୍ଷେ ବିଚିତ୍ର ନୁହେ ।

ବିଚିତ୍ର କିଛି ନୁହେ । ତଥାପି ତୁମେ ଯଦି ତାଙ୍କପ୍ରତି ଭଲ ବ୍ୟବହାର କରିବ, ସେମାନେ ତୁମପ୍ରତି ନିଶ୍ଚୟ ଭଲ ବ୍ୟବହାର କରିବେ । କୁକୁର ମାଙ୍କଡ଼ଙ୍କ ପରି ଜନ୍ତୁ କଥା ମାନି ଚଳୁଛନ୍ତି, ଏମାନେ ତ ମଣିଷ ।

ଏମାନଙ୍କର କଥୋପକଥନ ଶେଷ ହେବା ପୂର୍ବରୁ ଅଜଙ୍ଗ ତାର ଧନୁଶର ଧରି ଜଙ୍ଗଲକୁ ଚାଲି ଯାଇଥିଲା ।

ବାଲ୍‌ରାଜା ଚଞ୍ଚଳାକୁ ମନ୍ଦିରକୁ ଯିବାକୁ କହି ନିଜେ ହାତରେ ଖଣ୍ଡା ଧରି ଜଙ୍ଗଲ ଭିତରେ ପଶିଲେ ।

ଯାତ୍ରା ଯିବାର ସମସ୍ତ ଆୟୋଜନ ହୋଇ ସାରିଥିଲା । କ୍ଷୁଦ୍ର ନୌକାଟିରେ ବ୍ୟବହାର ନିମନ୍ତେ ଯାହା କିଛି ରଖା ଯାଇପାରେ ରଖା ଯାଇଥିଲା । ନୌକାରେ ଅନେକଗୁଡ଼ିଏ ମାଠିଆ ଥିଲା ! ଚଞ୍ଚଳାର ଇଚ୍ଛା ଥିଲା ସେ ସବୁମାଠିଆ ଦୁଧରେ ପୂର୍ଣ୍ଣକରି ନେବ । ବାଲ୍‌ରାଜା ବାରଣ କରି କହିଲେ, ଚଞ୍ଚଳା, ଭବିଷ୍ୟତରେ କ'ଣ ଘଟିବ, ତୁମେ ତାହା ଚିନ୍ତା କର ନାହିଁ । ଦୁଧ ବିନା ମନୁଷ୍ୟର ଜୀବନ ରହିପାରେ, କିନ୍ତୁ ଜଳ ଅଭାବରେ ଜୀବନ ବଞ୍ଚାଇବା କଷ୍ଟକର । ମାଠିଆଗୁଡ଼ିକରେ ଦୁଧ ପରିବର୍ତ୍ତେ ଜଳ ରଖିବା ଉଚିତ । ତା'ପର ଦୁଧ କେତେଦିନ ରହି ପାରିବ ? ଦିନେ ଦୁଇଦିନ ପରେ ନଷ୍ଟ ହୋଇଯିବ । ସେତେବେଳେ ସମୁଦ୍ର ମଝିରେ ବୁନ୍ଦାଏ ଜଳ ଅଭାବରେ ପ୍ରାଣ ଛାଡ଼ିଯିବ ।

କିନ୍ତୁ ଚଞ୍ଚଳା ଲୁଚାଇ କରି ମାଠିଆଟିଏ ଦୁଧ ଏବଂ କିଛି ସର ନୌକାରେ ରଖିଲା । କେତେବେଳେ ନୌକା ସମୁଦ୍ରରୁ ଯିବ, ସେମାନେ ଆନନ୍ଦରେ ଜନ୍ମଭୂମି ଅଭିମୁଖେ ଚାଲିବେ ତାର କେବଳ ସେହି ଚିନ୍ତା ।

ସମୁଦ୍ର ପାର ହୋଇ ଅନ୍ୟ ଦେଶକୁ ଯିବେ, ଏହା ଶୁଣି ଅଜଙ୍ଗ ପ୍ରଥମେ ଭୀତ ଏବଂ ଅନିଚ୍ଛୁକ ହୋଇଥିଲା । ବାଲ୍‌ରାଜା ତାକୁ ଓହ୍ଲାଇ ଯିବାକୁ କହିଲେ । ସେ ସେଥିରେ ଅମଙ୍ଗ ହେଲା । ପରେ ଚଞ୍ଚଳା ତା କାନରେ କି ମନ୍ତ୍ର ଫୁଙ୍କିଲା

କେଜାଣି ଅଜଙ୍ଗ ସମୁଦ୍ରକୁ ଯିବାକୁ ଗୋଡ଼ ଠେକ ଦସିଲା । ବାଲିରାଜା ଇଚ୍ଛା କରିଥିଲେ ଧନରତ୍ନ ଯାହା କିଛି ଗହ୍ୱରରେ ଥିଲା, ସବୁ ସଙ୍ଗରେ ନେଇଯିବେ । ପରେ ଭାବିଲେ, କେଜାଣି ଭଗବାନ ଭାଗ୍ୟରେ କଣ ରଖିଛନ୍ତି । ଯଦି ସବୁ ଧନ ସଙ୍ଗରେ ନେଇଯା'ଏ, ହୁଏ ତ ଆକସ୍ମିକ କୌଣସି ଦୁର୍ଘଟଣାରୁ ଜଳମଗ୍ନ ହେଲେ, ଏତେଗୁଡ଼ିଏ ସମ୍ପତ୍ତି ମନୁଷ୍ୟର ମଙ୍ଗଳକର କାର୍ଯ୍ୟରେ ନ ଲାଗି ବୃଥା ସମୁଦ୍ର ଗର୍ଭରେ ସମାଧି ନେବ ।

ବାଲିରାଜା ମନେ ମନେ ହିସାବ କରି ସ୍ଥିର କଲେ, ଯେତିକି ଆବଶ୍ୟକ ସେତିକି ନେବେ । ପ୍ରଥମେ ଜବଦ୍ୱୀପରେ ଉପସ୍ଥିତ ହୋଇ ଗୋଟିଏ ବଡ଼ ଏବଂ ଦୁଇଟି ଛୋଟ ବୋଇତ କରିବା ଦରକାର । ବୋଇତରେ ନାଉରୀ ରହିବେ । ସେମାନଙ୍କର ଖାଦ୍ୟ ଓ ବେତନ, ଅସ୍ତ୍ରମାନର ବନ୍ଦୀ, ତାମ୍ରଲିପ୍ତର ଖରଚ ଇତ୍ୟାଦି । ହାତରେ କିଛି ଅଧିକା ରଖିବା ଆବଶ୍ୟକ । ଅଣ୍ଟ କାଅଣ୍ଟ ବେଳକୁ ହାତରେ ନ ଥିଲେ ଦେବ କିଏ ?

ବାଲିରାଜା ଧନରତ୍ନରୁ କେତେକ ନେଇ ନୌକାରେ ରଖିଲେ । ବାକି ସମସ୍ତ ପୂର୍ବପରି ବନ୍ଦକରି ଗହ୍ୱର ମୁହଁରେ ପଥର ଜମା କଲେ ।

ଚଞ୍ଚଳା ନୌକା ଉପରେ ଏକାକିନୀ ନୀରବରେ ବସି କେତେ କଣ ଚିନ୍ତା କରୁଥିବା ସମୟରେ ବାଲିରାଜା ପଛରୁ ଡାକି କହିଲେ, ଚଞ୍ଚଳା, ତମକୁ ଗୋଟିଏ କଥା ପଚାରିବି ।

ଚଞ୍ଚଳା ପଛକୁ ଅନାଇଁ ଦେଲା, ଦେଖିଲା ବାଲିରାଜା । ତାର ମୁଖ ବିବର୍ଣ୍ଣ ହେଲା । ସେ ଉଠି ଠିଆହୋଇ ପଚାରିଲା, କଣ ?

ବାଲିରାଜା ତାର ମୁଖଭାବ ପରିବର୍ତ୍ତନ ଦେଖି କଣ ଚିନ୍ତାକରି ମୁଖ ଗମ୍ଭୀର କଲେ । କିଛି ସମୟ ଅପେକ୍ଷା କରି ସମୁଦ୍ର ଆଡ଼କୁ ଅନାଇଁ କହିଲେ, ଆଜି ଆମର ନୌକା ସମୁଦ୍ରମୁହାଁ ହୋଇ ଚାଲିବ । ସ୍ରୋତର ଅନୁକୂଳରେ ଯିବ । କୌଣସି କଷ୍ଟ ହେବ ନାହିଁ । ମୁଁ ଭାବୁଛି ନୌକାକୁ ଉତ୍ତର କିମ୍ବା ଦକ୍ଷିଣକୁ ନ ଚଳାଇ ଏକାଥରେ ପଶ୍ଚିମମୁହାଁ କରି ଚଳାଇବା । ଏହି ମାନଚିତ୍ର ଦେଖ । ତାହା ହେଲେ ଦିନେ ଦୁଇଦିନ ମଧ୍ୟରେ ଆମେ ଜବଦ୍ୱୀପର ଉପକୂଳରେ ଉପସ୍ଥିତ ହେବା । କଣ କହୁଛ ?

ଚଞ୍ଚଳା ବାଲିରାଜାଙ୍କର ହାତରୁ ମାନଚିତ୍ର ନେଲା । କିଛି ବୁଝି ନ ପାରି ଫେରାଇ ଦେଇ କହିଲା; ଆପଣ ଯାହା ଭଲ ବିବେଚନା କରନ୍ତି କରନ୍ତୁ । ମୁଁ ମାଈପି ଲୋକ । ସମୁଦ୍ର କଥା କଣ ଜାଣେ ?

ସୁନାହାଟରେ ଥିବାବେଳେ ଯେଉଁ ମଣିଷ ଚଞ୍ଚଳାଙ୍କ ଘରେ ପ୍ରତ୍ୟହ ମାଛ ଯୋଗାଉ ଥିଲା ସେ ଆଜି ବାଲିଦ୍ୱୀପର ରାଜା । ସମୟହିଁ ମନୁଷ୍ୟର ଅବସ୍ଥାକୁ ବଦଳାଇ ଦିଏ ।

ବାଲ୍ୟରାଜା କହିଲେ, ନୌକାକୁ ପ୍ରଥମେ ଜବଦ୍ୱୀପକୁ ନେବାର ପ୍ରଧାନ କାରଣ ସମୁଦ୍ର କୂଳେ କୂଳେ ନୌକା ଚଳାଇଲେ, ବିପଦର ବିଶେଷ ଭୟ ରହିବ ନାହିଁ । ଅମ୍ଭମାନଙ୍କର ଖାଦ୍ୟ ଏବଂ ପାନୀୟର ବିଶେଷ ଭାବନା ମଧ୍ୟ ରହିବ ନାହିଁ ।

ଯାହା ଭଲ ବିବେଚନା କରୁଛନ୍ତି, ତା ହିଁ କରନ୍ତୁ । ବର୍ତ୍ତମାନ କହନ୍ତୁ, ମୋତେ କଣ ପଚାରିବେ ବୋଲି କହୁଥିଲେ ?

ଅଟେଇ ଅଟେଇ ହୋଇ ବାଲ୍ୟରାଜା କହିଲେ, ହଁ କଣ ପଚାରିବି ବୋଲି ବସିଥିଲି ପରା । ଭୁଲି ଗଲିଣି । ହଁ, ମନେ ପଡ଼ିଲା ।

ଚମ୍ପିଲା କହିଲା, କଣ କହନ୍ତୁ ।

ମନରେ କିଛି ଭାବିବ ନାହିଁ ତ ?

ଚମ୍ପିଲାର ଆଶା ଜାଗି ଉଠିଲା । ସେ ଟିକିଏ ଆନନ୍ଦର ଚିହ୍ନ ଦେଖାଇ କହିଲା, ନାଁ—

ତମକୁ ମୋର ପଚାରିବାର କଥା ଉତ୍କଳରେ ଉପସ୍ଥିତ ହେଲେ ତେମେ କେଉଁଠିକି ଯିବ । ତୁମର ଯେଉଁଟି ଇଚ୍ଛା ମୁଁ ତମକୁ ସେହିଠାରେ ଛାଡ଼ି ଦେଇ ଆସିବି ନିଜେ । ଯଦି କହ ସୁନାହାଟରେ କିମ୍ବା ତାମ୍ରଲିପ୍ତରେ ରାଧାଶ୍ୟାମଙ୍କ ଘରେ କିମ୍ବା ଅନ୍ୟ ଯେଉଁଠି ତମର ଇଚ୍ଛା, ମୋର କିଛି ଆପତ୍ତି ନାହିଁ ।

ଆହା ! ଚମ୍ପିଲାର ଆଶା ଉପରେ ବଜ୍ରପାତ ହେଲା । ସେ ବାଲ୍ୟରାଜାଙ୍କ କଥାର ଢଙ୍ଗ ତାଙ୍କରୁ ଆଶା କରିଥିଲା ବୋଧହୁଏ ସେ ପଚାରିଥାନ୍ତେ, ଚମ୍ପିଲା ତୁ ମତେ ଭଲ ପାଉ ? ଆଉ ସେ କିଛି ଉତ୍ତର ନ ଦେଇ ଚୁପ୍ ରହିଥାନ୍ତା । ବାଲ୍ୟରାଜା ଯାହା ବୁଝିବାର ବୁଝି ନେଇ ଥାନ୍ତେ । ଆନନ୍ଦରେ ବୋଧହୁଏ ତା ନିକଟକୁ ଆସି ତା ହାତଧରି—

ବାଲ୍ୟରାଜାଙ୍କର କଥାରେ ଚମ୍ପିଲା ନିରୁତ୍ତର ହେଲା । ଚକ୍ଷୁରେ ଲୋତକ ଉଦୟ ହେଲା । ବାଲ୍ୟରାଜା ପଚାରିଲେ, ମୋ କଥାରେ ତମ ମନରେ କଷ୍ଟ ହେଉଛି; କିନ୍ତୁ କଷ୍ଟ ହେବାର କିଛି କାରଣ ଦେଖି ପାରୁନାହିଁ । ପ୍ରକୃତ କଥାଟି ମୁଁ ପଚାରିଲି । ଉତ୍କଳରେ ଉପସ୍ଥିତ ହେବା ପୂର୍ବରୁ ମୁଁ ଜାଣିବାକୁ ଚାହେଁ ତେମେ—

ଯଦି ନିତାନ୍ତ ଜାଣିବାକୁ ଇଚ୍ଛୁକ ଥାନ୍ତି ଶୁଣନ୍ତୁ । ମୋର ଏ ସଂସାରରେ କେହି ନାହିଁ । ଆପଣ ଏହା ଜାଣନ୍ତି । ମୋତେ ମୃତ୍ୟୁ ମୁଖରୁ ଯେ ବଞ୍ଚାଇଛନ୍ତି ମୁଁ ତାଙ୍କୁହିଁ କେବଳ ମୋର ବୋଲି ମନେ କରେ । ସୁନାହାଟରେ ମୋର କେହି ନାହିଁ କି ରାଧାଶ୍ୟାମ ସାଧବ ମୋର କିଛି ନୁହନ୍ତି । ଚମ୍ପିଲା ଆଖିରୁ ଲୁହ ପୋଛିଲା ।

କିଛି ସମୟ ଚନ୍ଦ୍ରାକର ବାଲିରାଜା ହସି ହସି ହୋଇ କହିଲେ, ମୁଁ ତୁମକୁ ବଞ୍ଚାଇଛି ସତ, କିନ୍ତୁ ମୁଁ ତ ତମର ସମ୍ପର୍କୀୟ ନୁହେଁ ।

ଚଞ୍ଚଳା ଉତ୍ତେଜିତ ହୋଇ କହିଲା, ଛାଡ଼ନ୍ତୁ ସେ କଥା । ବର୍ତ୍ତମାନ କହନ୍ତୁ ଆପଣ ମୋତେ ପାଖରୁ ତଡ଼ିବାକୁ ଏତେ ବ୍ୟସ୍ତ କାହିଁକି ? ନିଶ୍ଚୟ ଏହା ଭିତରେ କିଛି ରହସ୍ୟ ଅଛି ।

ଅଛି ।

କ'ଣ ! କହିବାକୁ ଯଦି ଆପତ୍ତି ନ ଥାଏ—

ମୁଁ ଚାହେଁ, ମୋତେ ନାରୀ ଜାତିର ବିଶ୍ୱାସଘାତକତାରୁ ମୁକ୍ତ କରିବ । କାରଣ ସ୍ତ୍ରୀ ଜାତି ପ୍ରତି ମୋର ଅଶ୍ରଦ୍ଧା ଜନ୍ମିଛି ।

ସ୍ତ୍ରୀ ଜାତି ପ୍ରତି କହୁଛନ୍ତି କାହିଁକି ? କହନ୍ତୁ ସୁଶୀଳା ପ୍ରତି । ମୁଁ ଦିନେ ତାର ସଙ୍ଗିନୀ ଥିଲି, ତେଣୁ ମୋ ପ୍ରତି । ମନେ ରଖନ୍ତୁ, ସୁଶୀଳା ବିଶ୍ୱାସ ଘାତିନୀ ବୋଲି ପ୍ରମାଣ ନ ପାଇବା ଯାଏ କଦାପି ବିଶ୍ୱାସ କରିବେ ନାହିଁ ଯେ···

ତେବେ ସେ ସୁଶୀଳା ନୁହେଁ ?

ନ ହୋଇ ପାରେ ।

ଆହା, ସୁଶୀଳା ତେବେ ଆତ୍ମଘାତିନୀ ? ମୁଁ କେଡ଼େ ସୁଖୀ ହେବି ।

ଯଦି ସେ ସୁଶୀଳା ହୋଇଥାଏ—

ତେବେ, ନାରୀ ଜାତିଠାରୁ ମୋର ସମସ୍ତ ବିଶ୍ୱାସ ତୁଟି ଯିବ ।

ଜଗତର ନାରୀଜାତି—ମାତୃଜାତି ଉପରେ ଏପରି ଦୋଷାରୋପ କରନ୍ତୁ ନାହିଁ । କୌଣସି ଚରିତ୍ର ରମଣୀ ଉପରେ ହୁଏତ ଆପଣଙ୍କର ଦୋଷାରୋପ ହୋଇ ପାରେ । ନାରାୟଣ ସାଧବ ଦସ୍ୟୁ, ନାରାୟଣ ସାଧବ ଲମ୍ପଟ, ରାକ୍ଷସ, ତା ବୋଲି ସମଗ୍ର ପୁରୁଷଜଗତକୁ ଆମେ ସେହି ନାରାୟଣ ସାଧବର ପଦବୀରେ ମଣ୍ଡିତ କରିବା କି ? ଜଗତରେ ତ ପୁଣି ଆପଣଙ୍କ ପରି ଦେବତା ଜନ୍ମ ହୋଇ ସଂସାରର ହିତ କରିବାକୁ ଦୃଢ଼ ପ୍ରତିଜ୍ଞ ହୋଇ ପାରନ୍ତି । ସେହିପରି ବିଶ୍ୱାସ କରନ୍ତୁ, ନାରୀ ସମାଜର ସମସ୍ତେ ରାକ୍ଷସୀ ନୁହନ୍ତି । ସେମାନଙ୍କ ମଧ୍ୟରେ ଦେବୀ ମଧ୍ୟ ସମ୍ଭବ—

ଚଞ୍ଚଳାର ମୁଖଭଙ୍ଗୀ ବାକ୍ୟାଳାପର ଚତୁରୀ ଏବଂ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ବାଲିରାଜା ତାର ହାତ ପାପୁଲିକୁ ଚିପିଧରି ଟିକିଏ ଜୋରରେ କହିଲେ, ଏବଂ ସେହି ନାରୀ-ଜାତି,' ରାକ୍ଷସୀ ଜାତି ମଧ୍ୟରେ ତୁମେ ହେଉଛ ଦେବୀ । ନୁହଁ ଚଞ୍ଚଳା ?

ଚଞ୍ଚଳା ମୁଖାବନତ କଲା । ତାର ଦେହ ଥରି ଉଠିଲା ।

ବାଲ୍ୟସଖା ପରମୁହୂର୍ତ୍ତରେ ହଠାତ୍ ଚମ୍ପଲାର ହାତ ଛାଡ଼ି କହି ଉଠିଲେ,- ସୁଶୀଳା ତୁଇ ଏକା ମୋର ହୃଦୟର ରାଣୀ । ତୁ ଆଜି କେଉଁଠାରେ ?

ସେ ଲଜ୍ଜିତ ହୋଇ ଚମ୍ପଲା ପାଖରୁ ଦୂରେଇ ଗଲେ । ଉତ୍ତେଜନାରେ ସେ ଗୋଟିଏ ବଡ଼ ଭୁଲ କରି ପକାଇଛନ୍ତି । ଜଣେ ନିସ୍ସହା, ନିରାଶ୍ରୟା ନାରୀର ହାତ ଧରି ତା ମନରେ ବୃଥା ଆଶା ଜନ୍ମାଇବା କେଡ଼େ ଅନ୍ୟାୟ ।

ଚମ୍ପଲା ପୁଲକ ବିସ୍ମୟରେ ଠିଆହୋଇ ରହିଲା । ଆଖିରେ ଛଳ ଛଳ ହେଲା ଲୋତକ ।

ସେଟା ରାଜଭବନର ଗୋଟିଏ ସୁବୃହତ୍ ପ୍ରକୋଷ୍ଠ । ପ୍ରତ୍ୟେକ ଅଂଶ ଉତ୍ତମ ଭାବରେ ସଜ୍ଜିତ । କାନ୍ଥଗୁଡ଼ିକ ନାନା ରଙ୍ଗରେ ଚିତ୍ରିତ । କେଉଁଠାରେ ବୁଦ୍ଧଦେବଙ୍କର ପ୍ରତିମୂର୍ତ୍ତି, କେଉଁଠାରେ ବୌଦ୍ଧମନ୍ଦିର ବା ପ୍ୟାଗୋଡ଼ା, କେଉଁଠାରେ କେବଳ ବୃକ୍ଷ, ପଶୁ, ପକ୍ଷୀ, ଚିତ୍ର । ପ୍ରକୋଷ୍ଠର ଚଟାଣ ଉତ୍କୃଷ୍ଟ ଉଜ୍ଜଳୀୟ ଟାଇଲରେ ଆବୃତ । ଚଟାଣରେ କଟାର ଗଦି । ଗୃହ ମଧ୍ୟରେ ସୁବୃହତ୍ ଅଣ୍ଡାକୃତି ଟେବୁଲ ରକ୍ତ ଏବଂ ପୀତବର୍ଣ୍ଣର ମର୍ମର ପ୍ରସ୍ତର ନିର୍ମିତ । ଟେବୁଲକୁ ବେଷ୍ଟନ କରି ଅନେକ ଗୁଡ଼ିଏ କାଷ୍ଠାସନ । ନିମ୍ନରେ ଏବଂ ଆଉଜି ବସିବାକୁ କରରେ ମଖମଲ୍ ଗଦି ।

ଗୋଟିଏ କାଷ୍ଠାସନ ଉପରେ ଜଣେ ଭଦ୍ରଲୋକ ଉପବିଷ୍ଟ । ମସ୍ତକରେ ରେସମୀ ପଗଡ଼ି, ଦେହରେ ବ୍ରହ୍ମପୁରୀ ଉତ୍କୃଷ୍ଟ ମଠାର ଚେନ୍ଦନ । ପରିଧେୟ ସମ୍ବଲପୁରୀ ମଠା । ପାଦରେ ରକ୍ତବର୍ଣ୍ଣର ପାଣ୍ଡୋଇ ।

ଭଦ୍ରଲୋକ ଦେଖିବାକୁ ହୃଷ୍ଟପୁଷ୍ଟ । ମସ୍ତକର ବାବୁରିବାଳ ପଛଆଡ଼େ ଚୁଲ ବୃତ୍ତାକୃତ ହୋଇଅଛି । ଦାଢ଼ି ନାହିଁ । ନିଶ ମୋଡ଼ା ହୋଇ ଦୁଇ ପାଖେ ତୁଣ୍ଡ ପରି ଗୋଜା ହେଲେ ମଧ୍ୟ ଘଞ୍ଚ ନୁହେ । କେହି ଅନୁମାନ କରିବେ ନାହିଁ ଯେ ଭଦ୍ରଲୋକ ପ୍ରୌଢ଼ । ଯୌବନର ଜ୍ୱଳନ୍ତ ଆଭା, ଚକ୍ଷୁ ଏବଂ କପାଳରୁ ଫୁଟି ବାହାରୁଛି ।

ଅନେକ ସମୟ ନୀରବରେ ବସି ବସି ଭଦ୍ରଲୋକ କ୍ଳାନ୍ତ ହୋଇ ପଡ଼ିଲେଣି । ଅସ୍ଥିର ହୋଇ ମସ୍ତକରୁ ପଗଡ଼ି କାଢ଼ି ଟେବୁଲ ଉପରେ ରଖିଲେ ; ପକେଟରୁ ରୁମାଲ କାଢ଼ି ମୁହଁ ପୋଛିଲେ । ଗରମରୁ ରକ୍ଷା ପାଇବେ ବୋଲି ରୁମାଲ ହଲାଇଲେ ମୁହଁ ପାଖରେ, ଅଥଚ ଝରକା ବାଟେ ପବନର ସ୍ରୋତ ଅନବରତ ଚାଲିଛି, ଏପରିକି ଭଦ୍ରଲୋକଙ୍କର ପଗଡ଼ିଟି ଉଡ଼ାଇ ନେବାକୁ

ଉପକ୍ରମ କରୁଛି । ଏଥିରୁ ଅନୁମିତ ହେଉଛି ଯେ ଭଦ୍ରଲୋକ ଅନ୍ୟମନସ୍କ ହୋଇ କିଛି ଚିନ୍ତା କରୁଛନ୍ତି ।

ନିମ୍ନସ୍ୱରରେ ଭଦ୍ରଲୋକ ମନକୁ ମନ କହିଲେ, ବଡ଼ ଅଭଦ୍ର ତ ପେଗୁର ରାଜା ।

ଏହି ସମୟରେ ବାହାରେ ପାଣ୍ଡୋଇର ଶବ୍ଦ ଶୁଭିଲା । ସଙ୍ଗେ ସଙ୍ଗେ ଦ୍ୱାର ରକ୍ଷକ ଆସି ହାତ ଯୋଡ଼ି ଜଣାଇଲା, ହଜୁର ରାଜା ବିଜେ କରୁଛନ୍ତି ।

ଭଦ୍ରଲୋକ ଶୁଣି ନ ଶୁଣିଲା ପରି ଚଉକିକୁ ଆଉଜି ବସିଲେ, ଯେପରି ଘୋର ଚିନ୍ତାରେ ମଗ୍ନ । କେବଳ ଟେବୁଲ ଉପରୁ ପଗଡ଼ି ନେଇ ମୁଣ୍ଡଉପରେ ଥୋଇଲେ ।

ଦ୍ୱାରରକ୍ଷକ ସମ୍ବାଦ ଜଣାଇ ଯିବା ସଙ୍ଗେ ସଙ୍ଗେ ହାତ ଧରାଧରି ହୋଇ ଦୁଇ ଜଣ ଭଦ୍ରଲୋକ ପ୍ରକୋଷ୍ଠରେ ପ୍ରବେଶ କଲେ । ସେମାନଙ୍କ ମଧ୍ୟରେ ଯେ ବୃଦ୍ଧ ସେ ଅନ୍ୟ ଜଣଙ୍କୁ ସମ୍ବୋଧନ କରି କହିଲେ, ଦେଖନ୍ତୁ ସାଧବ, ଏହି ମୋର ବିଶିଷ୍ଟ ବନ୍ଧୁ— ବାଲିରାଜା ।

ନିଜର ନାମୋଚ୍ଚାରିତ ହେବା ଶୁଣି ବାଲିରାଜା ଚଉକିରୁ ଉଠି ଆଗନ୍ତୁକ ଉଭୟଙ୍କୁ ଯଥାବିଧି ମାନ୍ୟ ପ୍ରଦର୍ଶନ କଲେ । ପରସ୍ପର ମଧ୍ୟରେ ସଦ୍‌ଭାବର ବିନିମୟ ପରେ ତିନିଜଣ ପାଖାପାଖି ହୋଇ ଚଉକିରେ ବସିଲେ । ପ୍ରଥମେ ପେଗୁର ବୃଦ୍ଧରାଜା ବାଲିରାଜାଙ୍କୁ ଉଦ୍ଦେଶ୍ୟ କରି ଜଣାଇଲେ, ଅଶାକରେ, ମୋର ବିଳମ୍ବ ଜନିତ ତ୍ରୁଟି ମାର୍ଜନା କରିବେ । ମୋର ଏହି ବନ୍ଧୁପୁତ୍ରଙ୍କ ନିମନ୍ତେ ବିଳମ୍ବ ହୋଇଗଲା । ଆପଣଙ୍କୁ ଅନେକ ସମୟ ବସାଇ ରଖିଲି । ଭାବିଥିଲି କୌଣସି କର୍ମଚାରୀ ହାତରେ କହି ପଠାଇବି, ଟିକିଏ ଡେରି ହେବ ବୋଲି । ପରେ ସ୍ଥିରକଲି, ଯଦି ଏପରି ସମ୍ବାଦ ପଠା ହୁଏତ ଆପଣ ଚାଲିଯିବେ । ଶୁଣିଛି ଆଜି ଆପଣମାନେ ଚାଲିଯିବେ । ଆପଣଙ୍କର ଆନନ୍ଦ ପ୍ରଦାୟକ-ସଙ୍ଗ କାଳେ ଆଉ ଜୀବନରେ ନ ମିଳିବ ସେଥି ନିମନ୍ତେ ମୋର ଇଚ୍ଛା ବିରୁଦ୍ଧରେ ମୁଁ ସମ୍ବାଦ ପଠାଇଲି ନାହିଁ । ଅଶାକରେ କ୍ଷମା କରିବେ ।

ବାଲିରାଜା ପେଗୁରାଜାଙ୍କର ଏତେ ଗୁଡ଼ାଏ କଥାର ସମସ୍ତ ଅଂଶ ଶୁଣି ନାହାନ୍ତି । ଦ୍ୱିତୀୟ ଭଦ୍ରଲୋକଙ୍କର ଆପାଦ ମସ୍ତକ ନିରୀକ୍ଷଣ କରି ମନେ ମନେ କଅଣ ଚିନ୍ତା କରୁଛନ୍ତି । ମୁଖଭଙ୍ଗୀରୁ ଜଣାଯାଏ ଯେପରି କୌଣସି ଗୁରୁତର ଭାବନାରେ ମଗ୍ନ । ମୁଖର ରଙ୍ଗ ଦେଖୁ ଦେଖୁ ଏକା ଥରେ ପରିବର୍ତ୍ତିତ ହେଲା । ସମସ୍ତ ଶରୀର କମ୍ପମାନ । ଦକ୍ଷିଣହସ୍ତ ସ୍ୱତଃ ଯାଇ ତରବାରିର ବେଣ୍ଟରେ । ବାଲିରାଜା ସମସ୍ତ ଭାବ ଗୋପନ କରିବାକୁ ଚେଷ୍ଟାକଲେ; ପାରିଲେ ନାହିଁ । ଅତି କଷ୍ଟରେ ହୃଦୟର ବେଦନା ଲୁଚାଇ ରଖିବାକୁ ଛାତିରେ ହସ୍ତସ୍ଥାପନ କରି

ବାଲରଜା ପରମୁହୂର୍ତ୍ତରେ ହଠାତ୍ ଚଞ୍ଚଳାର ହାତ ଛଡ଼ କହ ଉଠିଲେ,-
ସୁଶୀଳା ତୁଇ ଏକା ମୋର ହୃଦୟର ରାଣୀ । ତୁ ଅଜ କେଉଁଠାରେ ?

ସେ ଲଜ୍ଜିତ ହୋଇ ଚଞ୍ଚଳା ପାଖରୁ ଦୂରେଇ ଗଲେ । ଉତ୍ତେଜନାରେ ସେ ଗୋଟିଏ ବଡ଼ ଭୁଲ କର ପକାଇଛନ୍ତି । ଜଣେ ବିବାହିତା, ବୟସ୍କା ନାରୀର ହାତ ଧର ତା ମନରେ ବୃଥା ଆଶା ଜନ୍ମାଇବା କେଡ଼େ ଅନ୍ୟାୟ ।

ଚଞ୍ଚଳା ପୁଲକ ବିସ୍ମୟରେ ଠିଆହୋଇ ରହିଲା । ଆଖିରେ ଛଳ ଛଳ ହେଲା ଲୋତକ ।

ଯେସୁ ରାଜଭବନର ଗୋଟିଏ ସୁବୃହତ୍ ପ୍ରକୋଷ୍ଠ । ପ୍ରତ୍ୟେକ ଅଂଶ ଉତ୍ତମ ଭାବରେ ସଜ୍ଜିତ । କାନ୍ଥଗୁଡ଼କ ନାନା ରଙ୍ଗରେ ଚିତ୍ରିତ । କେଉଁଠାରେ ବୁଦ୍ଧଦେବଙ୍କର ପ୍ରତିମୂର୍ତ୍ତି, କେଉଁଠାରେ ବୌଦ୍ଧମନ୍ଦିର ବା ପ୍ୟାଗୋଡ଼ା, କେଉଁଠାରେ କେବଳ ବୃକ୍ଷ, ପଶୁ, ପକ୍ଷୀ, ଚିତ୍ର । ପ୍ରକୋଷ୍ଠର ଛାତତଳ ଉତ୍କୃଷ୍ଟ ଉଜ୍ଜ୍ୱଳୀୟ ଛିଟରେ ଆବୃତ । ଚତୁଃପାଶରେ କତାର ଗଦି । ଗୃହ ମଧ୍ୟରେ ସୁବୃହତ୍ ଅଣ୍ଡାକୃତି ଟେବୁଲ ରକ୍ତ ଏବଂ ପୀତବର୍ଣ୍ଣର ମର୍ମର ପ୍ରସ୍ତର ନିର୍ମିତ । ଟେବୁଲକୁ ବେଷ୍ଟନ କର ଅନେକ ଗୁଡ଼ଏ କାଷ୍ଠାସନ । ନିମ୍ନରେ ଏବଂ ଆରାମ ବସିବାକୁ କରରେ ମଖମଲ୍ ଗଦି ।

ଗୋଟିଏ କାଷ୍ଠାସନ ଉପରେ ଜଣେ ଭଦ୍ରଲୋକ ଉପବିଷ୍ଟ । ମସ୍ତକରେ ରେସମୀ ପଗଡ଼ି, ଦେହରେ ବ୍ରହ୍ମପୁରୀ ଉତ୍କୃଷ୍ଟ ମଠାର ଚେପ୍‌କନ । ପରିଧେୟ ସମ୍ବଲପୁରୀ ମଠା । ପାଦରେ ରକ୍ତବର୍ଣ୍ଣର ପାଣ୍ଡୋଇ ।

ଭଦ୍ରଲୋକ ଦେଖିବାକୁ ହୃଷ୍ଟପୁଷ୍ଟ । ମସ୍ତକର ବାବୁରିବାଳ ପଛଆଡ଼େ ବୁଲ କୁଣ୍ଡଳୀକୃତ ହୋଇଅଛି । ଦାଢ଼ି ନାହିଁ । ନିଶ ମୋଡ଼ା ହୋଇ ଦୁଇ ପାଖେ ଛୁଞ୍ଚି ପରି ଗୋଜା ହେଲେ ମଧ୍ୟ ଘଞ୍ଚ ନୁହେ । କେହି ଅନୁମାନ କରିବେ ନାହିଁ ଯେ ଭଦ୍ର ଲୋକ ପ୍ରୌଢ଼ । ଯୌବନର ଜ୍ୱଳନ୍ତ ଆଭା, ଚକ୍ଷୁ ଏବଂ କପାଳରୁ ଫୁଟି ବାହାରୁଛି ।

ଅନେକ ସମୟ ନୀରବରେ ବସି ବସି ଭଦ୍ରଲୋକ କ୍ଲାନ୍ତ ହୋଇ ପଡ଼ିଲେଣି । ଅସ୍ଥିର ହୋଇ ମସ୍ତକରୁ ପଗଡ଼ି କାଢ଼ି ଟେବୁଲ ଉପରେ ରଖିଲେ ; ପକେଟରୁ ରୁମାଲ କାଢ଼ି ମୁହଁ ପୋଛିଲେ । ଗରମରୁ ରକ୍ଷା ପାଇବେ ବୋଲି ରୁମାଲ ହଲାଇଲେ ମୁହଁ ପାଖରେ, ଅଥଚ ଝରକା ବାଟେ ପବନର ସ୍ରୋତ ଅନବରତ ଚାଲିଛି, ଏପରିକି ଭଦ୍ର ଲୋକଙ୍କର ପଗଡ଼ିଟି ଉଡ଼ାଇ ନେବାକୁ

ଉପକ୍ରମ କରୁଛି । ଏଥିରୁ ଅନୁମିତ ହେଉଛି ଯେ ଭଦ୍ରଲୋକ ଅନ୍ୟମନସ୍କ ହୋଇ କିଛି ଚିନ୍ତା କରୁଛନ୍ତି ।

ନିମ୍ନସ୍ୱରରେ ଭଦ୍ରଲୋକ ମନକୁ ମନ କହିଲେ, ବଡ଼ ଅଭଦ୍ର ତ ପେଗୁର ରାଜା ।

ଏହି ସମୟରେ ବାହାରେ ପାଣ୍ଡୋଇର ଶବ୍ଦ ଶୁଭିଲା । ସଙ୍ଗେ ସଙ୍ଗେ ଦ୍ୱାର ରକ୍ଷକ ଆସି ହାତ ଯୋଡ଼ି ଜଣାଇଲା, ହଜୁର ରାଜା ବିଜେ କରୁଛନ୍ତି ।

ଭଦ୍ରଲୋକ ଶୁଣି ନ ଶୁଣିଲା ପରି ଚଉକିକୁ ଆଉଜି ବସିଲେ, ଯେପରି ଘୋର ଚିନ୍ତାରେ ମଗ୍ନ । କେବଳ ଟେବୁଲ ଉପରୁ ପଗଡ଼ି ନେଇ ମୁଣ୍ଡଉପରେ ଥୋଇଲେ ।

ଦ୍ୱାରରକ୍ଷକ ସମ୍ବାଦ ଜଣାଇ ଯିବା ସଙ୍ଗେ ସଙ୍ଗେ ହାତ ଧରାଧରି ହୋଇ ଦୁଇ ଜଣ ଭଦ୍ରଲୋକ ପ୍ରକୋଷ୍ଠରେ ପ୍ରବେଶ କଲେ । ସେମାନଙ୍କ ମଧ୍ୟରେ ଯେ ବୃଦ୍ଧ ସେ ଅନ୍ୟ ଜଣଙ୍କୁ ସମ୍ବୋଧନ କରି କହିଲେ, ଦେଖନ୍ତୁ ସାଧବ, ଏହି ମୋର ଘନିଷ୍ଠ ବନ୍ଧୁ— ବାଲିରାଜା ।

ନିଜର ନାମୋଚ୍ଚାରିତ ହେବା ଶୁଣି ବାଲିରାଜା ଚଉକିରୁ ଉଠି ଅାଗନ୍ତୁକ ଉଭୟଙ୍କୁ ଯଥାବିଧି ମାନ୍ୟ ପ୍ରଦର୍ଶନ କଲେ । ପରସ୍ପର ମଧ୍ୟରେ ସଦ୍‌ଭାବର ବିନିମୟ ପରେ ତିନିଜଣ ପାଖାପାଖି ହୋଇ ଚଉକିରେ ବସିଲେ । ପ୍ରଥମେ ପେଗୁର ବୃଦ୍ଧରାଜା ବାଲିରାଜାଙ୍କୁ ଉଦ୍ଦେଶ୍ୟ କରି ଜଣାଇଲେ, ଆଶାକରେ, ମୋର ବିଳମ୍ବ ଜନିତ ତ୍ରୁଟି ମାର୍ଜନା କରିବେ । ମୋର ଏହି ବନ୍ଧୁପୁତ୍ରଙ୍କ ନିମନ୍ତେ ବିଳମ୍ବ ହୋଇଗଲା । ଆପଣଙ୍କୁ ଅନେକ ସମୟ ବସାଇ ରଖିଲି । ଭାବିଥିଲି କୌଣସି କର୍ମଚାରୀ ହାତରେ କହି ପଠାଇବି, ଟିକିଏ ଡେରି ହେବ ବୋଲି । ପରେ ସ୍ଥିରକଲି, ଯଦି ଏପରି ସମ୍ବାଦ ପଠା ହୁଏତ ଆପଣ ଚାଲିଯିବେ । ଶୁଣିଛି ଆଜି ଆପଣମାନେ ଚାଲିଯିବେ । ଆପଣଙ୍କର ଆନନ୍ଦ ପ୍ରଦାୟକ-ସଙ୍ଗ କାଳେ ଆଉ ଜୀବନରେ ନ ମିଳିବ ସେଥି ନିମନ୍ତେ ମୋର ଇଚ୍ଛା ବିରୁଦ୍ଧରେ ମୁଁ ସମ୍ବାଦ ପଠାଇଲି ନାହିଁ । ଆଶାକରେ କ୍ଷମା କରିବେ ।

ବାଲିରାଜା ପେଗୁରାଜାଙ୍କର ଏତେ ଗୁଡ଼ାଏ କଥାର ସମସ୍ତ ଅଂଶ ଶୁଣି ନାହାନ୍ତି । ଦ୍ୱିତୀୟ ଭଦ୍ରଲୋକଙ୍କର ଆପାଦ ମସ୍ତକ ନିରୀକ୍ଷଣ କରି ମନେ ମନେ କଅଣ ଚିନ୍ତା କରୁଛନ୍ତି । ମୁଖଭଙ୍ଗୀରୁ ଜଣାଯାଏ ଯେପରି କୌଣସି ଗୁରୁତର ଭାବନାରେ ମଗ୍ନ । ମୁଖର ରଙ୍ଗ ଦେଖୁ ଦେଖୁ ଏକା ଥରେ ପରିବର୍ତ୍ତିତ ହେଲା । ସମସ୍ତ ଶରୀର କମ୍ପମାନ । ଦକ୍ଷିଣହସ୍ତ ସ୍ୱତଃ ଯାଇ ତରବାରିର ବେଣ୍ଟରେ । ବାଲିରାଜା ସମସ୍ତ ଭାବ ଗୋପନ କରିବାକୁ ଚେଷ୍ଟାକଲେ; ପାରିଲେ ନାହିଁ । ଅତି କଷ୍ଟରେ ହୃଦୟର ବେଦନା ଲୁଚାଇ ରଖିବାକୁ ଛାତିରେ ହସ୍ତସ୍ଥାପନ କରି

ବାଲ୍ୟରାଜା ପରମୁହୂର୍ତ୍ତରେ ହଠାତ୍ ଚଞ୍ଚଳାର ହାତ ଛାଡ଼ି କହି ଉଠିଲେ, ସୁଶୀଳା ତୁଇ ଏକା ମୋର ହୃଦୟର ରାଣୀ । ତୁ ଆଜି କେଉଁଠାରେ ?

ସେ ଲଜ୍ଜିତ ହୋଇ ଚଞ୍ଚଳା ପାଖରୁ ଦୂରେଇ ଗଲେ । ଉତ୍ତେଜନାରେ ସେ ଗୋଟିଏ ବଡ଼ ଭୁଲ କରି ପକାଇଛନ୍ତି । ଜଣେ ନିରୀହା, ନିରାଶ୍ରୟା ନାରୀର ହାତ ଧରି ତା ମନରେ ବୃଥା ଆଶା ଜନ୍ମାଇବା କେତେ ଅନ୍ୟାୟ ।

ଚଞ୍ଚଳା ପୁଲକ ବିସ୍ମୟରେ ଠିଆ ହୋଇ ରହିଲା । ଆଖିରେ ଛଳ ଛଳ ହେଲା ଲୋତକ ।

---

ସେଟା ରାଜଭବନର ଗୋଟିଏ ସୁବୃହତ୍ ପ୍ରକୋଷ୍ଠ । ପ୍ରତ୍ୟେକ ଅଂଶ ଉତ୍ତମ ଭାବରେ ସଜ୍ଜିତ । କାନ୍ଥଗୁଡ଼ିକ ନାନା ରଙ୍ଗରେ ଚିତ୍ରିତ । କେଉଁଠାରେ ବୁଦ୍ଧଦେବଙ୍କର ପ୍ରତିମୂର୍ତ୍ତି, କେଉଁଠାରେ ବୌଦ୍ଧମନ୍ଦିର ବା ପ୍ୟାଗୋଡ଼ା, କେଉଁଠାରେ କେବଳ ବୃକ୍ଷ, ପଶୁ, ପକ୍ଷୀ, ଚିତ୍ର । ପ୍ରକୋଷ୍ଠର ଛାତତଳ ଉତ୍କୃଷ୍ଟ ଉତ୍କଳୀୟ କାଠରେ ଆବୃତ । ଚଟାଣରେ କତାର ଗଦି । ଗୃହ ମଧ୍ୟରେ ସୁବୃହତ୍ ଅଣ୍ଡାକୃତ ତକ୍ତା ରକ୍ତ ଏବଂ ପୀତବର୍ଣ୍ଣର ମର୍ମର ପ୍ରସ୍ତର ନିର୍ମିତ । ତକ୍ତାକୁ ବେଷ୍ଟନ କରି ଅନେକ ଗୁଡ଼ିଏ କାଷ୍ଠାସନ । ନିମ୍ନରେ ଏବଂ ଆଉଜି ବସିବାକୁ କରରେ ମଖମଲ୍ ଗଦି ।

ଗୋଟିଏ କାଷ୍ଠାସନ ଉପରେ ଜଣେ ଭଦ୍ରଲୋକ ଉପବିଷ୍ଟ । ମସ୍ତକରେ ରେଶମୀ ପଗଡ଼ି, ଦେହରେ ବ୍ରହ୍ମପୁରୀ ଉତ୍କୃଷ୍ଟ ମଠାର ଚେକନ । ପରିଧେୟ ସମ୍ବଲପୁରୀ ମଠା । ପାଦରେ ରକ୍ତବର୍ଣ୍ଣର ପାଣ୍ଡୋଇ ।

ଭଦ୍ରଲୋକ ଦେଖିବାକୁ ହୃଷ୍ଟପୁଷ୍ଟ । ମସ୍ତକର ବାବୁରିବାଳ ପଛଆଡ଼େ ବୁଲି ବୃତ୍ତାକୃତ ହୋଇଅଛି । ଦାଢ଼ି ନାହିଁ । ନିଶ ମୋଡ଼ା ହୋଇ ଦୁଇ ପାଖେ ଛୁଞ୍ଚି ପରି ଗୋଜା ହେଲେ ମଧ୍ୟ ଘଞ୍ଚ ନୁହେଁ । କେହି ଅନୁମାନ କରିବେ ନାହିଁ ଯେ ଭଦ୍ର ଲୋକ ପ୍ରୌଢ଼ । ଯୌବନର ଜ୍ୱଳନ୍ତ ଆଭା, ଚକ୍ଷୁ ଏବଂ କପାଳରୁ ଫୁଟି ବାହାରୁଛି ।

ଅନେକ ସମୟ ନୀରବରେ ବସି ବସି ଭଦ୍ରଲୋକ କ୍ଳାନ୍ତ ହୋଇ ପଡ଼ିଲେଣି । ଅସ୍ଥିର ହୋଇ ମସ୍ତକରୁ ପଗଡ଼ି କାଢ଼ି ଟେବୁଲ ଉପରେ ରଖିଲେ ; ପକେଟରୁ ରୁମାଲ କାଢ଼ି ମୁହଁ ପୋଛିଲେ । ଗରମରୁ ରକ୍ଷା ପାଇବେ ବୋଲି ରୁମାଲ ହଲାଇଲେ ମୁହଁ ପାଖରେ, ଅଥଚ ଝରକା ବାଟେ ପବନର ସ୍ରୋତ ଅନବରତ ଚାଲିଛି, ଏପରିକି ଭଦ୍ର ଲୋକଙ୍କର ପଗଡ଼ିଟି ଉଡ଼ାଇ ନେବାକୁ

ଉପକ୍ରମ କରୁଛ । ଏଥିରୁ ଅନୁମିତ ହେଉଛି ଯେ ଭଦ୍ରଲୋକ ଅନ୍ୟମନସ୍କ ହୋଇ କିଛି ଚିନ୍ତା କରୁଛନ୍ତି ।

ନିମ୍ନସ୍ୱରରେ ଭଦ୍ରଲୋକ ମନକୁ ମନ କହିଲେ, ବଡ଼ ଅଭଦ୍ର ତ ପେଗୁର ରାଜା ।

ଏହି ସମୟରେ ବାହାରେ ପାଣ୍ଡୋଇର ଶବ୍ଦ ଶୁଭିଲା । ସଙ୍ଗେ ସଙ୍ଗେ ଦ୍ୱାର ରକ୍ଷକ ଆସି ହାତ ଯୋଡ଼ି ଜଣାଇଲା, ହଜୁର ରାଜା ବିଜେ କରୁଛନ୍ତି ।

ଭଦ୍ରଲୋକ ଶୁଣି ନ ଶୁଣିଲା ପରି ଚଉକିକୁ ଆଉଜି ବସିଲେ, ଯେପରି ଘୋର ଚିନ୍ତାରେ ମଗ୍ନ । କେବଳ ଟେବୁଲ ଉପରୁ ପଗଡ଼ି ନେଇ ମୁଣ୍ଡଉପରେ ଥୋଇଲେ ।

ଦ୍ୱାରରକ୍ଷକ ସମ୍ବାଦ ଜଣାଇ ଯିବା ସଙ୍ଗେ ସଙ୍ଗେ ହାତ ଧରାଧରି ହୋଇ ଦୁଇ ଜଣ ଭଦ୍ରଲୋକ ପ୍ରକୋଷ୍ଠରେ ପ୍ରବେଶ କଲେ । ସେମାନଙ୍କ ମଧ୍ୟରେ ଯେ ବୃଦ୍ଧ ସେ ଅନ୍ୟ ଜଣଙ୍କୁ ସମ୍ବୋଧନ କରି କହିଲେ, ଦେଖନ୍ତୁ ସାଧବ, ଏହି ମୋର ବିଶିଷ୍ଟ ବନ୍ଧୁ— ବାଲରାଜା ।

ନିଜର ନାମୋଚ୍ଚାରିତ ହେବା ଶୁଣି ବାଲରାଜା ଚଉକିରୁ ଉଠି ଆଗନ୍ତୁକ ଉଭୟଙ୍କୁ ଯଥାବିଧି ମାନ୍ୟ ପ୍ରଦର୍ଶନ କଲେ । ପରସ୍ପର ମଧ୍ୟରେ ସଦ୍‌ଭାବର ବିନିମୟ ପରେ ତିନିଜଣ ପାଖାପାଖି ହୋଇ ଚଉକିରେ ବସିଲେ । ପ୍ରଥମେ ପେଗୁର ବୃଦ୍ଧରାଜା ବାଲରାଜାଙ୍କୁ ଉଦ୍ଦେଶ୍ୟ କରି ଜଣାଇଲେ, ଅଶାକରେ, ମୋର ବିଳମ୍ବ ଜନିତ ତ୍ରୁଟି ମାର୍ଜନା କରିବେ । ମୋର ଏହି ବନ୍ଧୁପୁତ୍ରଙ୍କ ନିମନ୍ତେ ବିଳମ୍ବ ହୋଇଗଲା । ଆପଣଙ୍କୁ ଅନେକ ସମୟ ବସାଇ ରଖିଲି । ଭାବିଥିଲି କୌଣସି କର୍ମଚାରୀ ହାତରେ କହି ପଠାଇବି, ଟିକିଏ ଡେରି ହେବ ବୋଲି । ପରେ ସ୍ଥିରକଲି, ଯଦି ଏପରି ସମ୍ବାଦ ପଠା ହୁଏତ ଆପଣ ଚାଲିଯିବେ । ଶୁଣୁଛି ଆଜି ଆପଣମାନେ ଚାଲିଯିବେ । ଆପଣଙ୍କର ଆନନ୍ଦ ପ୍ରଦାୟକ-ସଙ୍ଗ କାଳେ ଆଉ ଜୀବନରେ ନ ମିଳିବ ସେଥି ନିମନ୍ତେ ମୋର ଇଚ୍ଛା ବିରୁଦ୍ଧରେ ମୁଁ ସମ୍ବାଦ ପଠାଇଲି ନାହିଁ । ଅଶାକରେ କ୍ଷମା କରିବେ ।

ବାଲରାଜା ପେଗୁରାଜାଙ୍କର ଏତେ ଗୁଡ଼ାଏ କଥାର ସମସ୍ତ ଅଂଶ ଶୁଣି ନାହାନ୍ତି । ଦ୍ୱିତୀୟ ଭଦ୍ରଲୋକଙ୍କର ଆପାଦ ମସ୍ତକ ନିରୀକ୍ଷଣ କରି ମନେ ମନେ କଅଣ ଚିନ୍ତା କରୁଛନ୍ତି । ମୁଖଭଙ୍ଗୀରୁ ଜଣାଯାଏ ଯେପରି କୌଣସି ଗୁରୁତର ଭାବନାରେ ମଗ୍ନ । ମୁଖର ରଙ୍ଗ ଦେଖୁ ଦେଖୁ ଏକା ଥରେ ପରିବର୍ତ୍ତିତ ହେଲା । ସମସ୍ତ ଶରୀର କମ୍ପମାନ । ଦକ୍ଷିଣହସ୍ତ ସ୍ୱତଃ ଯାଇ ତରବାରିର ବେଣ୍ଟରେ । ବାଲରାଜା ସମସ୍ତ ଭାବ ଗୋପନ କରିବାକୁ ଚେଷ୍ଟାକଲେ; ପାରିଲେ ନାହିଁ । ଅତି କଷ୍ଟରେ ହୃଦୟର ବେଦନା ଲୁଚାଇ ରଖିବାକୁ ଛାତିରେ ହସ୍ତସ୍ଥାପନ କରି

ଧୀରେ ଧୀରେ କହିଲେ, ହଁ ଅବଶ୍ୟ ଡେରି ହେଲା । ମାତ୍ର ଆପଣଙ୍କ ପରି ସ୍ନେହୀ ଗୁରୁଜନଙ୍କର ମନର କଥା ଶୁଣିବାକୁ ମୁଁ ଅଧିର ଗୁରଘଡ଼ ଅପେକ୍ଷା କରିପାରିଥାନ୍ତି । ତା ପରେ, ମୁଁ ଏଠି ବସି ଏହି ପ୍ରକୋଷ୍ଠର କାନ୍ଥମାନଙ୍କରେ ଅଙ୍କା ହୋଇଥିବା ଚିତ୍ର ଗୁଡ଼ିକ ଦେଖୁଥିଲି । ତେଣୁ ସମୟ ଅତି ସହଜରେ କଟିଗଲା ।

ବାଲିରାଜା ଅଧିର ଥରେ ଅପର ଜଣକର ଆପାଦ ମସ୍ତକ ନିରୀକ୍ଷଣ କଲେ । କ୍ରୋଧରେ ରକ୍ତର ପ୍ରବାହ ଦ୍ରୁତତର ହେଲା । କ୍ରୋଧ ପ୍ରକାଶ କରିବାର ଉପଯୁକ୍ତ ସ୍ଥାନ ଏ ନୁହେ । ଯେଗୁରାଜାଙ୍କର ପ୍ରସାଦରେ ଏବଂ ଯେଗୁରାଜାଙ୍କର ସମ୍ମୁଖରେ ସେ ସ୍ଥିର ହୋଇ ପୁନର୍ବାର ଚଉକିକୁ ଆଉଜି ବସିଲେ ।

ଏହା ଦେଖି ଯେଗୁରାଜା ପଚାରିଲେ, ଆପଣ କ'ଣ ପୀଡ଼ିତ ? ହଠାତ୍ ଆପଣଙ୍କ ମୁଖରେ ଏ ପରିବର୍ତ୍ତନ କାହିଁକି ?

ସାଧବ ସ୍ଥିର ହୋଇ ପୂର୍ବପରି ବସିଛନ୍ତି । ଭାବର କୌଣସି ପରିବର୍ତ୍ତନ ନାହିଁ ।

ବାଲିରାଜା ଉତ୍ତର ଦେଲେ, ହଁ ମୋର ଦେହ ଟିକିଏ ଅସୁସ୍ଥ ଅଛି, ସେ କିଛି ନୁହେଁ । ହଁ ମହାରାଜ, ଆପଣଙ୍କର ଏ ବିଶିଷ୍ଟ ବନ୍ଧୁଙ୍କର କୌଣସି ପରିଚୟ ତ ପାଇଲି ନାହିଁ ।

କ୍ଷମା କରିବେ, ମୁଁ ଜାଣିଥିଲି ବୋଧହୁଏ ଆପଣ ନାରାୟଣ ସାଧବଙ୍କୁ ଚିହ୍ନନ୍ତି । ସେ ତାମ୍ରଲିପ୍ତର ଜଣେ— ।

କିଏ ନାରାୟଣ ସାଧବ ? ବାଧାଦେଇ ବାଲିରାଜା କହିଲେ । ତାଙ୍କର ଶରୀର ଚମକି ହେଲା । ମୁଖ କ୍ରୋଧରେ ରକ୍ତବର୍ଣ୍ଣ ଧାରଣ କଲା । ଏ ସମସ୍ତ ଭାବ ଗୋପନ କରିବାକୁ ଯାଇ, ସେ ହସି ହସି କହିଲେ, ଆଉ ବିଶେଷ ପରିଚୟର ଆବଶ୍ୟକତା ନାହିଁ । ନାରାୟଣ ସାଧବଙ୍କ ସଙ୍ଗେ କେବେ ସାକ୍ଷାତ କରିବାର ସୁଯୋଗ ପାଇନାହିଁ । ତେଣୁ ଆଜି ତାଙ୍କୁ ସମ୍ମୁଖରେ ଦେଖିବାକୁ ପାଇ ମୁଁ ନିଜକୁ ଭାଗ୍ୟବାନ ମନେ କରୁଛି । କିନ୍ତୁ ଏଥି ପୂର୍ବରୁ ତାମ୍ରଲିପ୍ତର ଏ ବିଖ୍ୟାତ ସାଧବଙ୍କର କଥା ମୋ କାନରେ ବହୁବାର ପଡ଼ିଛି ।

ଏଥିରେ ଆଉ ଭୁଲ କିଛି ନାହିଁ । ନାରାୟଣ ସାଧବ ଏବଂ ତାଙ୍କ ପିତାଙ୍କର ନାମ କିଏ ନ ଜାଣେ ଦେଶରେ । ଏହି ନାରାୟଣ ସାଧବଙ୍କର ପିତା ଯେ ମୋର ଜଣେ ପ୍ରଧାନ ବନ୍ଧୁ ଥିଲେ, ସେଥିପାଇଁ ମୁଁ ଗର୍ବିତ । ନାରାୟଣ ସାଧବ ସେତେବେଳେ ପିଲା ଥିଲେ । ସେ ତାଙ୍କ ସ୍ୱର୍ଗୀୟ ପିତାଙ୍କ ସଙ୍ଗେ ବ୍ରହ୍ମଦେଶକୁ ଅନେକ ଥର ଆସି ମୋର ଆତିଥ୍ୟ ଗ୍ରହଣ କରିଛନ୍ତି । ତାଙ୍କୁ ପିଲାଦିନୁ ଦେଖି ଏ ଦେଶରେ ସମସ୍ତେ କହୁଥିଲେ, ଏ ପରେ ଜଣେ ବଡ଼ଲୋକ ହେବେ ।

ଏବେ ତାହା ହିଁ ହେଲା, କିନ୍ତୁ ବାଲିରାଜା ନିଜର ହସକୁ ବନ୍ଦ କରିବାକୁ ମୁହଁରେ ରୁମାଲ ଦେଇ ଅନ୍ୟ ଆଡ଼କୁ ଅନାଇଲେ ।

ନିଶ୍ଚୟ । ଆଜି ନାରାୟଣ ସାଧବଙ୍କର ଦୟାରୁ କେବଳ ଉତ୍କଳରେ କାହିଁ ପୂର୍ବୋପକୂଳର ସମସ୍ତ ଦେଶମାନଙ୍କରେ କେତେ କେତେ କାମ ଯେ ହୋଇଛି ଏବଂ ହେଉଛି ତା'ର ସୀମା ନାହିଁ । ଦରିଦ୍ରଙ୍କ ନିମନ୍ତେ ସେ ଯେତେ ଧନ ଦାନ କରନ୍ତି, ଆମପରି ରାଜା ତାହା ସ୍ୱପ୍ନରେ ଭାବି ପାରିବେ ନାହିଁ ।

ନାରାୟଣ ସାଧବ ବାଲିରାଜାଙ୍କ ଆଡ଼କୁ ଅନାଇ ହଠାତ୍ ପ୍ରଶ୍ନ କଲେ, ମାନନୀୟ ସେପୁର ରାଜା ଆପଣଙ୍କୁ ବାଲିରାଜା ବୋଲି ପରିଚୟ ଦେଲେ । କିନ୍ତୁ ମୁଁ କଥାଟା ଠିକ୍ ବୁଝି ପାରିଲି ନାହିଁ । ଯଦି ଆପଣ ମନରେ କିଛି ନ ଭାବନ୍ତି, ମୁଁ ଏତିକି କହିପାରେ ଯେ ମୁଁ ଯେତେଦୂର ଜାଣେ ସମଗ୍ର ବାଲି ଦେଶରେ ଜଣେ କେହି ରାଜା ବର୍ତ୍ତମାନ ନାହାନ୍ତି । ଅବଶ୍ୟ ବହୁବର୍ଷ ପୂର୍ବେ ମୁଁ ଅନେକ ବୁଢ଼ା ଲୋକଙ୍କଠୁ ଶୁଣିଛି, ଯେ ସେମାନଙ୍କ ମତରେ ପ୍ରାୟ ଗୁରିଶ ପାଞ୍ଚଶ ବର୍ଷ ପୂର୍ବେ ଭାରତୀୟ ହିନ୍ଦୁମାନେ ବାଲିର ପଶ୍ଚିମ ଉପକୂଳମାନଙ୍କରେ ଅର୍ଥାତ୍ ଜବଦ୍ୱୀପ ନିକଟରେ ରାଜ୍ୟ ସ୍ଥାପନ କରିଥିଲେ । କିନ୍ତୁ ଏକଶତ ବର୍ଷ ପୂର୍ବେ ଯେଉଁ ଭୀଷଣ ଆଗ୍ନେୟଗିରିର ବିସ୍ଫୋରଣ ହେଲା, ତାହାରି ଫଳରେ ଅନେକ ପରିବାର ବାଲି ତ୍ୟାଗ କରି ଜବଦ୍ୱୀପରେ ଆଶ୍ରୟ ଗ୍ରହଣ କଲେ । ଯେଉଁ କେତେ ଜଣ ସେଠାରେ ରହିଥିଲେ, ସେମାନେହିଁ ପରେ ସେଠାକାର ଶାସକ ହୋଇ ଛୋଟ ଛୋଟ ରାଜ୍ୟ ସ୍ଥାପନ କଲେ । ବାଲିର ଯେଉଁମାନେ ରାଜା ବୋଲି ନିଜକୁ ପରିଚୟ ଦିଅନ୍ତି ସେମାନେ ଆମ ଦେଶର ଛୋଟ ଛୋଟ ଜମିଦାରଙ୍କଠାରୁ ମଧ୍ୟ ହୀନ କହିଲେ ଚଳେ ।

ଉଚରେ ଛୋଟ ବୁହନ୍ତି, ବାଲିରାଜା ହସି ହସି କହିଲେ, ହଁ କହନ୍ତୁ ।

ନିଶ୍ଚୟ ଉଚରେ ଛୋଟ । ବାଲିର ଅଧିବାସୀଙ୍କ ପରି ବାମନ ବୁହନ୍ତି, ତେବେ ଉଚରେ ଛୋଟ । ବହୁଦିନରୁ ସେ ଦେଶରେ ବାସ କରି ସେଠାକାର ଲୋକଙ୍କ ସହିତ ମିଶି ଏପରି ଘଟିଛି । ସେଠାରେ ବୌଦ୍ଧଧର୍ମ ଅଦ୍ୟାପି ପ୍ରବେଶ କରିପାରି ନାହିଁ । ଲୋକେ ହିନ୍ଦୁ । ସେମାନଙ୍କର ବାନ୍ଧବ ମାନେ ସଚ୍ଚା ଯାନ୍ତି; ତଥାପି ତାଙ୍କର ଚେହେରା ଭାରତୀୟ ହିନ୍ଦୁମାନଙ୍କଠାରୁ······ ।

ସେ ସବୁ ମୁଁ ବେଶ୍ ଜାଣେ । ଅନ୍ୟ କିଛି କହିବାର ଅଛି ତ କହନ୍ତୁ ।

କ୍ଷମା କରିବେ ମୁଁ ଭୁଲି ଯାଇଥିଲି ଯେ ଆପଣ ବାଲିର ରାଜା । ଭୁଲିଯିବାର କାରଣ ରହିଛି । ପ୍ରଧାନ କାରଣ, ମୋର ଗୋଟିଏ କିପରି ଧାରଣା ଥିଲା ଯେ ବାଲିରେ କେହି ଜଣେ ରାଜା ନାହାନ୍ତି ।

ମୁଁ ବାଲିର ରାଜା ବୋଲି ଆପଣଙ୍କୁ ଧନ୍ୟବାଦ ଦେବାର କ୍ଷମତା ଅଛି । ଆପଣ ଉତ୍କଳର ଜଣେ ସାଧବ ହୋଇ ବାଲିର ତେର ଖବର ରଖିଛନ୍ତି । ଅଚ୍ଛା, ଆପଣ ବାଲିର ପୂର୍ବଉପକୂଳ ସମ୍ବନ୍ଧେ କିଛି ଜାଣନ୍ତି କି ?

ପୂର୍ବ ଉପକୂଳ ? ହଁ, ନିଶ୍ଚୟ ଜାଣେ । ପୂର୍ବ ଉପକୂଳରେ ଅଜଙ୍ଗ ପର୍ବତ । କିନ୍ତୁ ସ୍ଥାନ ତ ସେତେ ଉର୍ବର ନୁହେଁ ? ଆପଣ ପୂର୍ବ ଉପକୂଳର ରାଜା ?

ଠିକ୍, ମୁଁ ପୂର୍ବ ଉପକୂଳର ରାଜା । ଆପଣ ବୋଧହୁଏ ସମୁଦ୍ରରେ ଥାଇ ଅଜଙ୍ଗ ପର୍ବତକୁ ଦୂରରୁ ଦେଖି ଅନୁମାନ କରି ନେଇଛନ୍ତି ଯେ ପୂର୍ବଉପକୂଳ ଉର୍ବର ନୁହେ । ନୋହିଲେ ଏହା କଦାପି କହି ନ ଥାନ୍ତେ ।

ଆପଣଙ୍କର ଅନୁମାନ ଯଥାର୍ଥ । ସାଧବଙ୍କର ମୁଖର ତେଜ ମଳିନ ଦେଖାଗଲା । ସତେ ଯେପରି ତାଙ୍କ ମନରେ କୌଣସି ବିଷୟରେ ଭୟ ଜାତ ହୋଇଛି । ଟିକିଏ ରହି ଆରମ୍ଭ କଲେ, ଆପଣଙ୍କର ଅନୁମାନ ଯଥାର୍ଥ । ବାଣିଜ୍ୟ ସମ୍ବନ୍ଧୀୟ କୌଣସି କାରଣରୁ ଲେମ୍ବକ ଯାଉଥିବା ସମୟରେ ବାଲିର ପୂର୍ବ ଉପକୂଳସ୍ଥ ଅତ୍ୟୁଚ୍ଚ ପର୍ବତ ଦେଖି ମୁଁ ସେହିପରି ଅନୁମାନ କରିଥିଲି । ତେବେ ଆପଣ ପୂର୍ବ ଉପକୂଳର ରାଜା ? ଆମର ସେଆଡ଼େ ବୋଇତର କାରବାର ନାହିଁ ।

ପୂର୍ବ ଉପକୂଳର ରାଜା, କେବଳ ସେତିକି ନୁହେଁ—ସମଗ୍ର ବାଲିଦ୍ୱୀପର ରାଜା କହିଲେ ଚଳେ ।

କହିଲେ ଚଳେ ? ନାରାୟଣ ସାଧବଙ୍କର ବିବର୍ଣ୍ଣ ବିକୃତ ମୁଖରେ ହସ ଦେଖାଗଲା । ବାଲିରାଜା ଛଳେଇ କହିଲେ, ପୂର୍ବ ଉପକୂଳକୁ ବୋଇତ ନେଇ କେବେ କୌଣସି ଭାରତୀୟକୁ ବଣିଜ କରି ଯିବାର ଦେଖି ନାହିଁ । ଆମର ଲୋକମାନେ କହୁଥିଲେ, କିଛିଦିନ ପୂର୍ବେ ଗୋଟିଏ ଛୋଟ ବୋଇତ ସେଠାରେ ଲାଗିଥିଲା, ମାତ୍ର ଗୋଟିଏ ଦିନ ରହି ପୁଣି କେଉଁଆଡ଼େ ଚାଲିଗଲା । ଏବଂ—

ଏବଂ କଣ ?

ଉଦ୍‌ବିଗ୍ନତାର ଚିହ୍ନ ଦେଖାଇ ସାଧବ ପଚାରିଲେ, ଏବଂ ? ଏବଂ ସେ ବୋଇତ ତାମ୍ରଲିପ୍ତର କୌଣସି ଜଣେ ବିଖ୍ୟାତ ସାଧବଙ୍କର ଓ······

ଓ ?——

ଓ, ତହିଁରେ ଜଣେ ବନ୍ଦିନୀ ରମଣୀ ଥିଲା ।

ତା ପରେ ଦୀର୍ଘ ନିଶ୍ୱାସ ପକାଇ ତକିଆକୁ ଆଉଜି ବସି ସାଧବ ପଚାରିଲେ । ମୁଁ ସେ ନୌକାର ବିଶେଷ କିଛି ଖବର ରଖି ନାହିଁ । ନାରାୟଣ ସାଧବଙ୍କ ମୁହଁକୁ ଅନାଇ ବାଲିରାଜା ହସିଦେଲେ । ସେ ହସରେ କି ବିଷ ମିଶ୍ରିତ ଥିଲା କେଜାଣି, ସାଧବଙ୍କର ଆପାଦ ମସ୍ତକ ଥରି ଉଠିଲା । ମୁଁଠ ମୃତ ମନୁଷ୍ୟର ମୁଖ ପରି

ଦେଖାଗଲା । ପାପ କେତେଦିନ ହୃଦୟରେ ଦମ୍ଭ ରଖିପାରେ ? ଦୁର୍ବଳ କ୍ଷଣରେ ସେ ଦମ୍ଭ ନିଜେ ନିଜେ ଅନ୍ତର୍ହିତ ହୋଇଯାଏ । ନାରାୟଣ ସାଧବଙ୍କର ତାହା ଥିଲା ଦୁର୍ବଳ ସମୟ । ତାଙ୍କର ସମଗ୍ର ଶରୀର ଘର୍ମାକ୍ତ ଦେଖାଗଲା । ସେ ଯେପରି କୁଣ୍ଠିତ ହୋଇ ପଚାରିଲେ, ବିଶେଷ କିଛି ଖବର ରଖି ନାହାନ୍ତି ?

ବାଲିରାଜାଙ୍କ ମୁଖରେ ପୁନର୍ବାର ସେହି ବିଷମୟ ହସ ଫୁଟି ଉଠିଲା । ସେ ହସରେ ଜଣାଗଲା, ସତେ ଯେପରି ନାରାୟଣ ସାଧବଙ୍କର ଅନ୍ତରାତ୍ମା ଜଳି ଉଠୁଛି । ବାଲିରାଜା ଠିକ୍ ଏ ଜୋରରେ ଉତ୍ତର ଦେଲେ ନା, କିଛି ସମୟ ପରେ କହିଲେ, ଆଚ୍ଛା ସାଧବ, ଆପଣ ସେ ନୌକା ବିଷୟରେ କିଛି ଜାଣନ୍ତି, କହି ପାରିବେ ?

କ୍ଷମା କରନ୍ତୁ ମୁଁ କିଛି ଜାଣେ ନାହିଁ ।

କିନ୍ତୁ ଆପଣଙ୍କର କଥାର ଢଙ୍ଗ ଏବଂ ମୁଖର ଚେହେରା କହୁଛି ଆପଣ ସେ ବିଷୟରେ କିଛି ଜାଣନ୍ତି, ପେଗୁର ବୃଦ୍ଧ ରାଜା କହିଲେ ।

ବାଲିରାଜା କହିଲେ, ପ୍ରକୃତରେ ଭଗବାନ ବୃଦ୍ଧଙ୍କୁ ଏହି ଯେଉଁ ପ୍ରଶଂସନୀୟ ଗୁଣ ଦେଇଛନ୍ତି ତାହା ଦ୍ୱାରା ସେ ଯୁବକର ମୁଖର ପରିବର୍ତ୍ତନ, କଥାର ଢଙ୍ଗ ଦେଖି ମନର କଥା ବେଶ୍ ଅନୁମାନ କରି ପାରନ୍ତି । କ'ଣ କହୁଛନ୍ତି ସାଧବ ?

ସାଧବ ସେତେବେଳକୁ ପଥର ପରି ବସି ରହିଛନ୍ତି । ତାଙ୍କର ଏପରି ଅବସ୍ଥା ଦେଖି ପେଗୁରାଜା କହିଲେ, ଏଥିରେ-ତ ବାହାଦୁରି କିଛି ନାହିଁ । ଯୁବକ ସଂସାର ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ, କିନ୍ତୁ କେବଳ ସଂସାର ଜ୍ଞାନ ନିମନ୍ତେ ବୃଦ୍ଧ କୌଣସି କଥା ଶୀଘ୍ର ଅନୁମାନ କରି ନିଏ ।

କିନ୍ତୁ ଅନୁମାନଟା ସବୁବେଳେ······ସାଧବ କହିଲେ ।

ବାଲିରାଜା ବାଧା ଦେଇ ସାଧବଙ୍କୁ ପଚାରିଲେ ଆପଣ ସେ ରମଣୀଙ୍କ ବିଷୟରେ କିଛି ଜାଣନ୍ତି କି ? ମୁଁ ମୋର ଲୋକଙ୍କଠାରୁ ଶୁଣିଥିଲି ସେ ଭାରି ସୁନ୍ଦରୀ, ସ୍ୱର୍ଗର ଅପ୍ସରା ।

ହୋଇଥିବେ ମୁଁ, ମୁଁ—ସେ କଥା—ସେ ବିଷୟ ଜାଣେ ନାହିଁ···

ଆପଣ ବିବାହିତ ? ବୃଦ୍ଧ ହସି ହସି ବାଲିର ରାଜାଙ୍କୁ ପଚାରିଲେ ।

ମୁଁ । କାହିଁକି ?

ଏ ପ୍ରଶ୍ନ ପଚାରିବାର ଅଧିକାର ମୋର ନାହିଁ । ପଚାରିବାର କାରଣ, ସ୍ଥିର କରିବାକୁ ଯେ, ମୋର ଅନୁମାନ ଠିକ୍ କି ନୁହେଁ ।

ଆପଣଙ୍କର ଅନୁମାନ କ'ଣ କହିବାରେ କିଛି ଆପତ୍ତି ଅଛି ?

କିନ୍ତୁ ଆପତ୍ତି ନାହିଁ । ମୁଁ ଅନୁମାନ କରୁଛି, ଆପଣ ବିବାହିତ ନୁହନ୍ତି । ଯଦି ହୋଇଥାନ୍ତେ ତେବେ କୌଣସି ଜଣେ ସୁନ୍ଦରୀ ରମଣୀ ବିଷୟରେ ଏତେ ଜାଣିବାକୁ ଅସ୍ଥିର ହୁଅନ୍ତେ ନାହିଁ ।

କଥାଟି ନାରାୟଣ ସାଧବଙ୍କ ମନକୁ ପାଇଲା । ସେ ମୁଣ୍ଡ ହଲାଇ ପେଗୁ-ରାଜାଙ୍କ ବାକ୍ୟର ସତ୍ୟତା ପ୍ରମାଣ କଲେ । ତାଙ୍କ ମୁଖର ଭାବ ତଥାପି କୌଣସି-ମତେ ପରିବର୍ତ୍ତିତ ହେବାର ଦେଖାଗଲା ନାହିଁ । କିପରି ପେଗୁରାଜଭବନରୁ ମୁକ୍ତ ହୋଇ ଯିବେ ଏହାହିଁ ଚିନ୍ତା କରିବାକୁ ଲାଗିଲେ ।

କିଛି ସମୟ ଚିନ୍ତାକରି ବାଲରାଜା କହିଲେ, ମୁଁ ତ ଅସ୍ଥିରତା ଦେଖାଇ ନାହିଁ । ପଚ୍ଛରି ଦେଲି କଥା ପ୍ରସଙ୍ଗରେ । ମୁଁ ଅନୁମାନ କରୁଛି, ପ୍ରତ୍ୟେକ ମନୁଷ୍ୟର ପ୍ରକୃତି ଏପରି । ଗୋଟିଏ ପ୍ରସଙ୍ଗର କଥୋପକଥନ କରୁ କରୁ ଅନ୍ୟ ପ୍ରସଙ୍ଗକୁ ଡେଇଁପଡ଼େ ଏକାଥରେ ।

ଯାଉ ସେ କଥା, ବର୍ତ୍ତମାନ କହନ୍ତୁ ଆପଣ ବିବାହିତ କି ?

ତା ମୁଁ ଠିକ୍ କହି ପାରୁନାହିଁ ।

ଠିକ୍ କହି ପାରୁନାହାନ୍ତି ଅପଣ ନିଜେ ବିବାହିତ କି ନୁହନ୍ତି !

ଆଶ୍ଚର୍ଯ୍ୟ ?

ଆଶ୍ଚର୍ଯ୍ୟର କୌଣସି କଥା ନାହିଁ । ଶ୍ରୀମନ୍ତ, ମୁଁ ଯାହାକୁ ବିବାହିତ ବୋଲି ମନେ କରିଥିଲି, କାର୍ଯ୍ୟରେ ଭୁଲ ହେଲା । ମୁଁ ଜୀବନର ପ୍ରଥମ କରି ଯାହାକୁ ଭଲ ପାଇଥିଲି, ଅଶାକରେ ସ୍ତ୍ରୀ ଜାତିକୁ ଭଲ ପାଇବାର ସେହି ମୋର ଶେଷ ଏବଂ ସ୍ଥିର କରି ଜାଣିଲି ଯେ ସେ ମୋତେ ଜୀବନରୁ ଅଧିକ ଭଲପାଏ । ତାକୁ ଜଣେ ବିଖ୍ୟାତ ବଣିକ-ଦସ୍ୟୁ ମୋର ଅନୁପସ୍ଥିତିରେ ହରଣ କରି ନେଇଛନ୍ତି ।

ଆଃ, ପାପିଷ୍ଠ ।

ସେ ଯେ ନିଜକୁ ପାପିଷ୍ଠ ବୋଲି ମନେ କରେ ନାହିଁ । ଆମର ବିବାହର ସମସ୍ତ ଆୟୋଜନ ହୋଇ ସାରିଥିଲା । ଭାବିଥିଲି ଆମ ଦୁଇଜଣଙ୍କର ପ୍ରାଣର ମିଳନ ହୋଇ ସାରିଥିଲା; ବାକି ଥିଲା ବାହ୍ୟିକ ହସ୍ତର ମିଳନ । ଏହି ସମୟରେ ବଣିକ-ଦସ୍ୟୁ ତାକୁ ହରଣ କରି ନେଲେ ।

ହାଃ, ହତଭାଗ୍ୟ ! ଏବେ ବୁଝିଲି ଆପଣ ସେ ବନ୍ଦିନୀ ବିଷୟରେ ଜାଣିବାକୁ ଏତେ ଅସ୍ଥିର ହୋଇଥିଲେ କାହିଁକି ? ମୋତେ କ୍ଷମା କରନ୍ତୁ, ବିନୟୀ ହୋଇ ବୃଦ୍ଧ କହିଲେ । ତାଙ୍କର ଚକ୍ଷୁରେ ସହାନୁଭୂତିର ସଙ୍କେତ ଦେଖାଗଲା ।

ନା, ସେ ବନ୍ଧନ ସଙ୍ଗେ ମୋର କୌଣସି ସମ୍ପର୍କ ନାହିଁ । ମୁଁ ଜାଣେ ଯାହାର ଆତ୍ମା ସଙ୍ଗେ ମୋ ଆତ୍ମା ମିଳିତ ବୋଲି ଭାବିଥିଲି ସେ ମୋତେ ତା ହୃଦୟରୁ ବହିଷ୍କୃତ କରି ଅନ୍ୟକୁ ସେ ସ୍ଥାନରେ ବସାଇଛି । ସେ ବିବାହିତା ।

ବିବାହିତା ! ପାପିୟସୀ ବିଶ୍ୱାସଘାତିନୀ !

ସେହିଦିନଠାରୁ—ନା—ଏହି ଖବର ଶୁଣିଲା ଦିନଠାରୁ ମୋର ସ୍ତ୍ରୀ ଜାତି ଉପରେ ଘୃଣା ଜନ୍ମିଛି । ମୁଁ ଭାବେ ଭଗବାନଙ୍କର ସୃଷ୍ଟିରେ ସ୍ତ୍ରୀଜାତି କେବଳ ନରକର କୀଟ ।

ମାତୃଜାତି ପ୍ରତି ଏପରି ଅବମାନନା ଦେଖାଇବେ ନାହିଁ । ଆପଣ ଯୁବକ, ତେଣୁ ମାତୃଜାତିର ମହତ୍ତ୍ୱ ବୁଝି ପାରିବେ ନାହିଁ । ସେମାନେ ନରକର କୀଟ ନୁହନ୍ତି, ସେମାନେ ମୂର୍ତ୍ତିମତି ଦୟା, କ୍ଷମା, ଲକ୍ଷ୍ମୀ— ।

ଆପଣଙ୍କର ଏ ଭ୍ରମ ଧାରଣା ଶୀଘ୍ର ସଂଶୋଧିତ କରିଦେବି । ଶୁଣିବାକୁ ଚାହାନ୍ତି ? ଶୁଣନ୍ତୁ । ସେ ରମଣୀ କାହାକୁ ବିବାହିତା ଜାଣନ୍ତି ? ଯେଉଁ ବଣିକ-ଦସ୍ୟୁ ତାକୁ ହରଣ କରିଥିଲେ, ସେ ତାମ୍ରଲିପ୍ତର ଜଣେ ବିଖ୍ୟାତ ସାଧବ ।

ବାଲିରାଜା ଏତିକ ଉଚ୍ଚାରଣ କରିବା ସଙ୍ଗେ ସଙ୍ଗେ ନାରାୟଣ ସାଧବ ଚିତ୍କାର କରି ଉଠିଲେ, ଓଃ ! ଜଣାଗଲା ଯେପରି ତାଙ୍କର ମସ୍ତିଷ୍କରେ ସହସ୍ର ବୃଶ୍ଚିକ ଦଂଶନ କରୁଛନ୍ତି ।

ଉଭୟ ବାଲିରାଜା ଏବଂ ପେଗୁରାଜାଙ୍କର ଦୃଷ୍ଟି ସାଧବଙ୍କ ଆଡ଼କୁ ଆକୃଷ୍ଟ ହେଲା ।

ସାଧବ ଚିନ୍ତା କରୁଛନ୍ତି, ଏ ବାଲିରାଜା କିଏ ? ମୋ ବିଷୟରେ ସେ ଏତେ ଗୁଡ଼ାଏ ଜାଣିଲେ କିପରି ? କଳିଙ୍ଗ ଉପକୂଳସ୍ଥ ବାଲୁକା ପ୍ରାନ୍ତରେ ଦରିଦ୍ର ମଣିଆଁ ସଙ୍ଗେ ବାଲିରାଜାଙ୍କର ସମ୍ପର୍କ କଣ ? ମଣିଆଁ ବର୍ତ୍ତମାନ ସ୍ୱର୍ଣ୍ଣ ଦ୍ୱୀପରେ ବନ୍ଦୀ । ତେବେ ବାଲିରାଜା ମଣିଆଁ ବିଷୟରେ ଏତେ କଥା ଯୋଗାଡ଼ କଲେ କିପରି ? ହଁ ବୁଝିଲି । ମୋର ଲୋକମାନେ ବୋଇତରେ ଚଞ୍ଚଳାକୁ ନେଇ ବାଲିଦ୍ୱୀପର ପୂର୍ବ ଉପକୂଳରେ ଛାଡ଼ି ଆସିଥିଲେ । ବୋଧ-ହୁଏ ବାଲିରାଜା, ଚଞ୍ଚଳାକୁ ପାଇ ତାଠାରୁ ସମସ୍ତ ଖବର ବୁଝିଛନ୍ତି । ଚଞ୍ଚଳା ଯେ ଉଭୟ ସୁଶୀଳା ଏବଂ ମଣିଆଁ ବିଷୟରେ ଜାଣେ ଏହା ନିଶ୍ଚୟ । କାରଣ ଚଞ୍ଚଳା ସୁଶୀଳାର ସାଙ୍ଗ । ମାତ୍ର ସେ ପର ଜୀବନର ଘଟଣା ଜାଣିଲା କିପରି ? ମୁଁ ଭାରି ମୂର୍ଖ । ଚଞ୍ଚଳା ପରି ଜଣେ ସାଧାରଣ ରମଣୀକୁ ମାରି ସମୁଦ୍ର ଭିତରେ ଫିଙ୍ଗାଇ ଦେଇଥିଲେ ଏତେ ଚିନ୍ତା ଆଜି କରିବାକୁ ପଡ଼ନ୍ତା ନାହିଁ । ଏତେ ଅପମାନ ସହିବାକୁ ହୁଅନ୍ତା ନାହିଁ । ଆଚ୍ଛା ମଣିଆଁର ଜୀବନ ସଙ୍ଗେ ବାଲିରାଜାଙ୍କ ଜୀବନର କି ସମ୍ପର୍କ । ସେ ମଣିଆଁ

ଜୀବନର ପ୍ରତ୍ୟେକ ଘଟଣା ନିଜ ଜୀବନ ସଙ୍ଗେ ସଂଯୋଜିତ କରିବାକୁ ଚାହାନ୍ତି । କାହିଁକି ? ଏହା ମୋର ଭ୍ରମ ହୋଇପାରେ । ବାଲରାଜାଙ୍କ ଜୀବନ ହୁଏତ ମଣିଅଁ ଜୀବନ ପରି ଦୁଃଖମୟ ହୋଇ ପାରେ । ତାଙ୍କର ସ୍ତ୍ରୀଙ୍କୁ ତାମ୍ରଲିପ୍ତର ଅନ୍ୟ କେହି ଦସ୍ୟୁ ସାଧବ ହୁଏତ ବାଲିରୁ ହରଣ କରି ଆଣି ଥାଇ ପାରନ୍ତି ।

ସାଧବଙ୍କର ମୁଖ ଉଜ୍ଜ୍ୱଳ ଦେଖାଗଲା । ସେ ଗୃହର ନୀରବତା ଭଙ୍ଗକରି ପେଗୁର ରାଜାଙ୍କୁ କହିଲେ, ବିଳମ୍ବ ହେଲାଣି । ବର୍ତ୍ତମାନ ମେଲାଣି ଦିଅନ୍ତୁ । ଅନ୍ତଃପୁରକୁ ସମ୍ବାଦ ପଠାନ୍ତୁ । ବୋଧହୁଏ ଏଥର ଆଉ ଆପଣଙ୍କ ସଙ୍ଗେ ଦେଖା କରି ପାରିବି ନାହିଁ ।

ପେଗୁରାଜା ଘଣ୍ଟି ଧ୍ୱନି କରିବା ସଙ୍ଗେ ସଙ୍ଗେ ବାହାରୁ ପ୍ରହରୀ ଆସି ଛାମୁରେ ହାଜର ହେଲା । ରାଜା ଆଦେଶ ଦେଲେ, ଯା ସବାରି ପ୍ରସ୍ତୁତ କର, ଅନ୍ତଃପୁରକୁ ଦାସୀ ହାତରେ ଖବର ଦେଇପଠା ସାଧବଙ୍କର ସ୍ତ୍ରୀ ଆସିବେ । ସେ ଯିବାକୁ ଉଚ୍ଛନ୍ନ ହେଲେଣି ।

ପ୍ରହରୀ ପ୍ରଣାମ କରି ଚାଲିଯିବା ପରେ ନାରାୟଣ ସାଧବଙ୍କର ହାତଧରି କହିଲେ, ଆପଣଙ୍କୁ ଡାକିବାର କାରଣ ବର୍ତ୍ତମାନ ସୁଦ୍ଧା ଜଣାଇ ନାହିଁ । ପ୍ରାୟ ଏକମାସ ପୂର୍ବେ ମୁଁ ଉତ୍କଳରୁ ସମ୍ବାଦ ପାଇଛି—ତାମ୍ରଲିପ୍ତଠାରେ ପ୍ରକାଣ୍ଡ ବଣିକ ସଭା ଏହିବର୍ଷ କାର୍ତ୍ତିକ ପୂର୍ଣ୍ଣିମା ଦିନ ବସିବ । ସ୍ୱୟଂ ଉତ୍କଳ ସମ୍ରାଟ ସଭାପତିର ଆସନ ଗ୍ରହଣ କରିବେ ବୋଲି ଦୟାକରି ସ୍ୱୀକାର କରିଛନ୍ତି । କୈବର୍ତ୍ତରାଜା କାହ୍ନୁଭୂୟାଁ ତାମ୍ରଲିପ୍ତ ଫେରନ୍ତା ବା ତାମ୍ରଲିପ୍ତ ଯା ଆସା କାରୀ ସାଧବମାନଙ୍କୁ ଅଭ୍ୟର୍ଥନା କରିବାର ଭାର ସ୍ୱୟଂ ଗ୍ରହଣ କରିଛନ୍ତି । ଏହା ତାମ୍ରଲିପ୍ତ ରାଜାଙ୍କର ଉଦାରତା । ଆଶ କରେ ଆପଣ ସଭାରେ ଯୋଗ ଦେବେ । କାହ୍ନୁ ଭୂୟାଁ ମୋ ପାଖକୁ ସମ୍ବାଦ ପଠାଇ ଅନୁରୋଧ କରିଥିଲେ, ଏ ଦେଶରେ ଭାରତୀୟ ହେଉ କିମ୍ବା ଅନ୍ୟ କୌଣସି ଦେଶୀୟ ବଣିକ ହେଉ ସମସ୍ତଙ୍କୁ ଏ ସମ୍ବାଦ ଦେବେ । ବୋଧହୁଏ ସେ ଅନ୍ୟାନ୍ୟ ଦେଶମାନଙ୍କୁ ଏହିପରି ସମ୍ବାଦ ପଠାଇ ଥିବେ । ଆପଣ କାର୍ତ୍ତିକ ପୂର୍ଣ୍ଣିମା ଦିନ ତାମ୍ରଲିପ୍ତରେ ଉପସ୍ଥିତ ହୋଇ ପାରିବେ ତ ?

ସାଧବ କହିଲେ, ନିଶ୍ଚୟ ! ତେବେ କାଲି ଆମ୍ଭମାନଙ୍କୁ ବ୍ରହ୍ମଦେଶ ତ୍ୟାଗ କରିବାକୁ ପଡ଼ିବ । ଆଶ୍ୱିନ ପୂର୍ଣ୍ଣିମା ଆଜିକି ତିନି ଦିନ ଅଛି । ଆଜି ଶନିବାର । ଯଥେଷ୍ଟ ସମୟ ରହିଛି, ତଥାପି ଆଗରୁ ଯାଇ ତାମ୍ରଲିପ୍ତରେ ଉପସ୍ଥିତ ଆବଶ୍ୟକ । ସାଧବ ସଭା କିପରି ହେବ, ତାହାର ଆୟୋଜନ କରିବା ଦରକାର । ଏହା କ'ଣ ଆମର କାର୍ଯ୍ୟ ନୁହେଁ ? ପ୍ରକୃତରେ ଦିନକୁ ଦିନ ଭାରତୀୟ ବାଣିଜ୍ୟ ଯେପରି କମି ଆସୁଛି, ଏପରି ସଭା ସମିତି ଦ୍ୱାରା ସାଧବମାନଙ୍କୁ ଉତ୍ସାହିତ ନ କରିଲେ କିଛି ଦିନପରେ ଭାରତୀୟ ବାଣିଜ୍ୟ ଲୋପ ପାଇବ ଦେଖୁଛି । ଦୁଇଶ ବର୍ଷ ପୂର୍ବେ ଯେପରି ଭାରତ ମହାସାଗର ବୋଇତରେ ପୂର୍ଣ୍ଣଥିଲା, ଆଜି ତାହା ନାହିଁ । ତେଣେ

ଭାରତ ସମ୍ରାଟ ହର୍ଷବର୍ଦ୍ଧନ ନିଜର ଉଚ୍ଚାଶା ପୂରଣ କରିବାକୁ ଅସ୍ଥିର ହୋଇ ଅଯଥା ଲୋକକ୍ଷୟରେ ଲଗିଛନ୍ତି । ଏଣେ ସ୍ୱାଧୀନ ଉତ୍କଳ ହର୍ଷବର୍ଦ୍ଧନଙ୍କର କ୍ଷମତା ସ୍ୱୀକାର ନ କରି ବୃଥା ଧନବ୍ୟୟ କରି ଏକାମ୍ରରେ ପ୍ରକାଣ୍ଡ ଶିବ ମନ୍ଦିର ନିର୍ମାଣ କରିବାରେ ଲଗି ଯାଇଛି । ସମୁଦ୍ରରେ ବାଣିଜ୍ୟ କରିବା ଭାରି ବିପଜ୍ଜନକ ହୋଇ ପଡ଼ିଲାଣି । ଜାଭା, ବାଲି, ପ୍ରଭୃତିର କଥା ଦୂରେ ଥାଉ ତାମ୍ରପର୍ଣ୍ଣୀର ଅନୁରାଧାପୁର ସଙ୍ଗେ ବାଣିଜ୍ୟ କରିବା, ଜଳଦସ୍ୟୁଙ୍କ ପ୍ରଭାବରୁ ବିପଦପୂର୍ଣ୍ଣ ହୋଇ ପଡ଼ିଲାଣି । ଅତଏବ ଏପରି ସମୟରେ ତାମ୍ରଲିପ୍ତଠାରେ ସାଧବ ସଭା କରି ଏ ସମସ୍ତ ବିଷୟର ସମାଧାନ କରିବା ନିତାନ୍ତ ଆବଶ୍ୟକ ।

ହଁ, ନିତାନ୍ତ ଆବଶ୍ୟକ । ତେବେ ଆପଣ କହି ପାରିବେ କି ସେ ଜଳ ଦସ୍ୟୁମାନେ କିଏ ? ଏବଂ ସେମାନଙ୍କୁ ଦମନ କରିବାର କୌଣସି ଉପାୟ ଅଛି କି ? ବାଳରଜା ସାଧବଙ୍କ ମୁହଁକୁ ଅନାଇଁ ହସି ହସି ପଚାରିଲେ ।

ସାଧବ କିଛିକ୍ଷଣ ନୀରବ ରହିବା ପରେ ଧୀରେ ଧୀରେ ଭୟ ବିଜଡ଼ିତ କଣ୍ଠରେ କହିଲେ, ଯଦି ଦସ୍ୟୁମାନଙ୍କୁ ଚିହ୍ନିବାର କୌଣସି ଉପାୟ ଥାନ୍ତା, ସେମାନେ ସମୁଦ୍ରରେ ଏତେ ଉପଦ୍ରବ କରୁଥାନ୍ତେ କି ? ସହଜରେ ଦମନ କରି ହୁଅନ୍ତା ।

ଯଥାର୍ଥ କହିଛନ୍ତି । ସମୁଦ୍ରରେ ଏତେ ଉପଦ୍ରବ କରୁଥାନ୍ତେ କି ? ସୂର୍ଯ୍ୟ ଦ୍ୱୀପ ପରି ନିରୋଳା ସ୍ଥାନରେ ନିର୍ଦ୍ଦୋଷ ପ୍ରାଣୀଙ୍କୁ ବନ୍ଦୀକରି ନରକ ଯନ୍ତ୍ରଣା ଦଉଥାନ୍ତେ କି ?

ସୂର୍ଯ୍ୟ ଦ୍ୱୀପର ନାମ ଶୁଣିବା ସଙ୍ଗେ ସଙ୍ଗେ ନାରାୟଣ ସାଧବ ଚମକି ପଡ଼ିଲେ । ଚଉକିରୁ ଉଠି ଠିଆହୋଇ ସମୟ ଓ ସ୍ଥାନର ଗୁରୁତ୍ୱ ବୁଝି ନିଜର ଏପରି ଢଙ୍ଗକୁ ଲୁଚାଇବାକୁ ପଚାରିଲେ, ସୂର୍ଯ୍ୟ ଦ୍ୱୀପ କେଉଁଠି ? ମୁଁ ତ ଏ ନାମ ଆଉ କେବେ ଶୁଣି ନାହିଁ ?

ଏହାର କାରଣ ଆପଣ ଆଖିରେ ଅନାଇଁ କାନରେ ହାତ ଦେଇ, ନିଜ କାର୍ଯ୍ୟ କରନ୍ତି । ନୋହିଲେ ସୂର୍ଯ୍ୟଦ୍ୱୀପର ଆର୍ତ୍ତନାଦ ଆପଣଙ୍କ ମନ ଏବଂ ହୃଦୟକୁ ତରଳାଇ ଦଅନ୍ତା । ବାଳରଜା ଜୋର କରି କହିଲେ ।

ନାରାୟଣ ସାଧବ ବିସ୍ମିତ ହୋଇ ବାଳରଜାଙ୍କର ଆପାଦମସ୍ତକ ନିରୀକ୍ଷଣ କରିବାରେ ଲାଗିଗଲେ । ଏହି ସମୟରେ ପ୍ରହରୀ ଆସି ଜଣାଇଲା, ସବାରି ପ୍ରସ୍ତୁତ ଅଛି । ସାଧବ ପତ୍ନୀ ସବାରିରେ ବସି ଅପେକ୍ଷା କରିଛନ୍ତି ।

ତିନିଜଣ ଯାକ ଏକାସଙ୍ଗେ ଉଠିଲେ । ବାଳରଜା ନାରାୟଣ ସାଧବଙ୍କର ଦକ୍ଷିଣ ହସ୍ତର ପାପୁଲି ମୁଠାଇ ଧରି କହିଲେ, ବନ୍ଧୁ, ଭୁଲିଯିବ ନାହିଁ । ଆଉ କେବେ ଦେଖା ହେଉଛି କେଜାଣି ।

ନାରାୟଣ ସାଧବ ଶୁଣିଲା ହସ ହସି ନିଜ ହାତକୁ ବାଳିରାଜାଙ୍କର ହାତରୁ ମୁକ୍ତକରି କହିଲେ, ବୋଧହୁଏ ତାମ୍ରଲିପ୍ତରେ ସାକ୍ଷାତ ହେବ । ଆପଣ ସେଠାରେ ମୋ ଆଗରୁ ପହଞ୍ଚିବେ । କାରଣ ଆପଣ ଆଜି ବାହାରୁଛନ୍ତି ।

ନା, ମୋର କିଛିଏ ଡେରି ହୋଇ ପାରେ । ବାଟରେ ମୋର କାର୍ଯ୍ୟ ଅଛି ।

ତାମ୍ରଲିପ୍ତରେ ଅପଣଙ୍କୁ ମୁଁ ଅପେକ୍ଷା କରି ରହିଥିବି । ଆଶାକରେ ସେଠାରେ ଆପଣ ମୋର ଆତିଥ୍ୟ ଗ୍ରହଣ କରିବେ ।

ନିଶ୍ଚୟ, ଅପଣଙ୍କ ପରି ଦୟାବାନ ସାଧବଙ୍କର ଅତିଥି ହେବା କାହା ଭାଗ୍ୟରେ ଘଟେ ?

ବିଦାୟ ଗ୍ରହଣ କରି ନାରାୟଣ ସାଧବ ସବାରି ଚଢ଼ି ଆଗେ ଆଗେ ଚାଲିଲେ । ସାଧବ ପତ୍ନୀଙ୍କର ସବାରି ପଛରେ ଚାଲିଲା । ବାଲିରାଜା ଏବଂ ପେଗୁରାଜା । ସିଂହଦ୍ୱାରରେ ଠିଆ ହୋଇ ସେମାନଙ୍କୁ ଅନାଇଁ ରହିଲେ ।

ଅଳ୍ପଦୂର ଯିବାପରେ ସାଧବାଣୀ ସବାରିରୁ ମୁହଁ କାଢ଼ି ପଦାକୁ ଚାହିଁଲେ । ବାଳିରାଜା ସାଧବାଣୀଙ୍କୁ ଏକ ମୁହୂର୍ତ୍ତି ନିମନ୍ତେ ଦେଖି ପାରିଛନ୍ତି । ପେଗୁର ରାଜା ଅନ୍ୟ ଆଡ଼କୁ ଅନାଇଁ ଥିଲେ, ତେଣୁ ସେ କିଛି ଦେଖି ପାରିଲେ ନାହିଁ । ହଠାତ୍ ବାଲିରାଜା ଅବୋଧ ଭାଷାରେ କଣ ଚିତ୍କାର କରି ଉଠିଲେ । ସଙ୍ଗେ ସଙ୍ଗେ ତରବାରି ଖୋଲରୁ କାଢ଼ି ଦୁଇପାଦ ଆଗକୁ ଅଗ୍ରସର ହେଲେ । ଆଉ ଯାଇ ପାରିଲେ ନାହିଁ । ପେଗୁରାଜା ଯେ ଅଗରେ ଠିଆହୋଇ ବାଟ ଓଗାଳି ପଚାରିଛନ୍ତି, କଥା କ'ଣ ?

ବାଲିରାଜା ହୃଦୟରେ ହସ୍ତ ସ୍ଥାପନ କରି ନୀରବରେ ଦଣ୍ଡାୟମାନ ରହିଲେ । ସେ ଧୈର୍ଯ୍ୟ ଧରି ତରବାରୀ ଖୋଲରେ ପୁରାଇଲେ । ପେଗୁରାଜାଙ୍କ ପ୍ରଶ୍ନର କୌଣସି ଉତ୍ତର ନ ଦେଇ, ନମସ୍କାର କରି ଧୀରେ ଧୀରେ ଚାଲିଗଲେ, ନାରାୟଣ ସାଧବ ଯାଉଥିବା ରାସ୍ତାର ବିପରୀତ ଦଗକୁ ।

ବାଲିରାଜାଙ୍କର ଆଦେଶ ମତେ ନିଶୁଆ ଲୋକଟି ଆସି ହାତ ଯୋଡ଼ି ପାଖରେ ଠିଆହେଲେ । ଭୟରେ ତାଙ୍କର ଦେହରୁ ରକ୍ତ ଶୁଖି ଯାଇଥିଲା । ବାଲିରାଜା ତାଙ୍କୁ ନିକଟରେ ବସିବାକୁ ଅନୁରୋଧ କଲେ, ମାତ୍ର ସେ ନ ବସି ପୂର୍ବପରି ଠିଆହୋଇ ରହିଲେ । ବାଲିରାଜା ପଚାରିଲେ, ତୁମେ କିଏ ?

ହାତକୁ ହାତରେ ଘଷି ଭଦ୍ରଲୋକଙ୍କ ଭୟ ବିହ୍ୱଳ ସ୍ୱରରେ କହିଲେ, ଆଜ୍ଞା, ମୁଁ ଅଜ୍ଞ ।

ତମର ଭୟର କାରଣ ନାହିଁ । ମୁଁ ଯାହା ପଚାରୁଛି ଉତ୍ତର ଦିଅ ।

ଆଜ୍ଞା, ମୁଁ ପାଞ୍ଜିଆ । ଏଠାରେ ମୁଁ ହିସାବପତ୍ର ରଖେ । ଏମାନଙ୍କର ଚଳାଚଳ ନିମନ୍ତେ ମୁଁ ଭଣ୍ଡାରରୁ ସରଞ୍ଜାମ କାଢ଼ିଦିଏ । ମୋର କେଉଁ ଦୋଷ ? ମୁଁ ନୌକର ଲୋକ ।

ମୁଁ ସେଇଆ କହୁଚି ତମର ଦୋଷ ନାହିଁ । ତେମେ ମୋର ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦିଅ ।

ଆଜ୍ଞା, କଅଣ ପଚାରିବା ହେଉନ୍ତୁ ।

ପ୍ରଥମେ କହ, ଏଠାରେ ବର୍ତ୍ତମାନ କେତେ ଜଣ ବନ୍ଦୀ ଅଛନ୍ତି ।

ଆପଣଙ୍କର ପ୍ରଶ୍ନର ଉତ୍ତର ଦେବାକୁ ମୁଁ କ'ଣ ବାଧ୍ୟ ?

ନିଶ୍ଚୟ ବାଧ୍ୟ, ଯଦି ଜୀବନର ଲୋଭ ଥାଏ । ତମର ଖୁସି । ଦୁଇଟିରୁ ଗୋଟିକୁ ତମକୁ ବାଛି ନେବାକୁ ହେବ । ତମର ମୃତ୍ୟୁ ଲୋଡ଼ା କି ମୋର ପ୍ରଶ୍ନର ଉତ୍ତର ଦେଇ ଜୀବନ ଲୋଡ଼ା ।

ଆପଣ କ'ଣ ପ୍ରତିଜ୍ଞା କରୁଛନ୍ତି ମୋର ଜୀବନ ରକ୍ଷାକରି ପାରିବେ ? ନାରାୟଣ ସାଧବଙ୍କ ଆଦେଶ, କୌଣସି ବାହାରିଆ ଲୋକକୁ ଆମର ଗୋପନୀୟ କଥା ପ୍ରକାଶ ନ କରିବା । ଯଦି ପ୍ରକାଶ କରେ ତେବେ ମୋର ଏ ମୁଣ୍ଡ ନାରାୟଣ ସାଧବଙ୍କ ଖଣ୍ଡା ଦାଢ଼ରେ ପଡ଼ିବ । ମୋ ମୁଣ୍ଡ ତାଙ୍କ ହାତରୁ ରକ୍ଷାକରି ପାରିବେ ତ କହନ୍ତୁ ।

ପ୍ରତିଜ୍ଞା କରୁଛି, ତମର ଜୀବନ ନାରାୟଣ ସାଧବଙ୍କ ଖଣ୍ଡା ଦାଢ଼ରେ ଯିବନାହିଁ । ବର୍ତ୍ତମାନ ମୋର ପ୍ରଶ୍ନ ଗୁଡ଼ିକର ଉତ୍ତର ଦେବାକୁ ପ୍ରସ୍ତୁତ ତ ? ତେବେ କହ, ବର୍ତ୍ତମାନ ଏଠାରେ କେତେ ଜଣ ବନ୍ଦୀ ଅଛନ୍ତି ? କେତେ ଜଣ ପ୍ରହରୀ ଅଛନ୍ତି ? ତୁମେ କେତେ ଦିନ ହେଲା ଏଠାରେ ଅଛ ? ନାରାୟଣ ସାଧବ ଶେଷ ଥର ଏଠାକୁ କେବେ ଆସିଥିଲେ ? ତାଙ୍କ ସଙ୍ଗରେ ଆଉ କେହି ଥିଲେ କି ନାହିଁ ? ବନ୍ଦୀମାନଙ୍କ ନାମ କ'ଣ ଏବଂ ସେମାନେ କେଉଁଠିକାର ଲୋକ ? ଏହାର କୌଣସି ତାଲିକା ରଖିଛ କି ?

ଆପଣଙ୍କର ଏତେଗୁଡ଼ିଏ ପ୍ରଶ୍ନର ଉତ୍ତର ମୁଁ ଏକାଥରେ ଦେଇ ପାରିବି ନାହିଁ । ଗୋଟି ଗୋଟି କରି ପଚାରନ୍ତୁ । ମୁଁ ପ୍ରଶ୍ନର ଉତ୍ତର ଦେବାକୁ ରାଜି ।

ଅଚ୍ଛା, ଏଠାରେ କେତେ ଜଣ ବନ୍ଦୀ ଅଛନ୍ତି ?

ପାଞ୍ଚଶ ଡରଶ । ଗୃର ମାସ ପୂର୍ବେ ପାଞ୍ଚଶ ପଇଁତିଶ ଜଣ ଥିଲେ । ଏମାନଙ୍କ ମଧ୍ୟରୁ ଆଜି ସୁଦ୍ଧା ପାଞ୍ଚ ଜଣ ମରି ଯାଇଛନ୍ତି ।

କିଛି ସମୟ ଚିନ୍ତାକରି ବାଲ୍ଯରଜା ପଗୃରିଲେ, ଠିକ୍ ଖବର ରଖିଛ ପାଞ୍ଚ ଜଣ ମରି ଯାଇଛନ୍ତି ? ମୋ ଆଗରେ ମିଛ କଥା କହୁନା ତ ?

ଭୀତ ହୋଇ ପାଞ୍ଜିଆ କହିଲା, ମୁଁ ତେବେ ଭୁଲ କହିଲି ନା କଣ ? ହଁ ଭୁଲ କହିଛି । ଗୃରି ଜଣ ମରି ଯାଇଛନ୍ତି, ଆଉ ଜଣେ—ଆଉ ଜଣେ— ।

ଆଉ ଜଣେ ?

ମୋର ସେଥିରେ କି ଦୋଷ ? ସେ ଚାଲାକି କରି ପଳାଇଛି ।

ପଳାଇଛି ? ବେଶ୍ ଶତା କାଟିଛି ତ । ଏବେ କହ ଯେଉଁ ଗୃରି ଜଣ ମରି ଯାଇଛନ୍ତି—ସେମାନେ କିଏ ?

ଜଣେ ଲୋକ ହ୍ୟାଉଁ ମ୍ୟାଉଁ କରି କଥା କହେ । ତା କଥା ଆମର କେହି ବୁଝିପାରନ୍ତି ନାହିଁ । ସେ ମୋଟେ ଦୁଇ ଦିନ ହେଲା ମରିଛି । ତା ପୂର୍ବରୁ ଯେ ମରିଥିଲା ସେ ସବୁବେଳେ ଅଲ୍ଲା, ଅଲ୍ଲା, କହି ଉଚ୍ଚ ସ୍ୱରରେ ଚିତ୍କାର କରୁଥାଏ । ସେ ପ୍ରଥମରେ ଯେତେବେଳେ ଏଠାକୁ ଆସେ ଦେଖିବାକୁ ଭାରି ସବଳ, ଲମ୍ବା, ମିଷ୍ଟଭାଷୀ ଥିଲା । ଶୁଣିଲୁ ତା ଘର ପାରସ୍ୟ ଦେଶ । ସେ ଜଣେ ଧର୍ମପ୍ରଗୃରକ ବଣିକ । ତାଙ୍କ ଧର୍ମ ନା, ଅଲ୍ଲାଧର୍ମ । ଭାରତରେ ଏବଂ ପୂର୍ବ ଦେଶମାନଙ୍କରେ ଧର୍ମପ୍ରଗୃର କରିବାକୁ ସେ ପାରସ୍ୟରୁ ଆସିଥିଲେ । ପରେ ନାରାୟଣ ମାଧବ ତାଙ୍କୁ କେଉଁଠାରୁ କପରି ଆଣିଲେ ମୁଁ କହି ପାରିବି ନାହିଁ ।

ତା ସାଙ୍ଗରେ ଆଉ କେହି ଥିଲେ ?

ସୁନାର ପ୍ରତିମା ପରି ଝିଅଟିଏ, ସେ ଅଛି ।

ବାକି ଦୁଇ ଜଣ ?

ବାକି ଦୁଇ ଜଣଙ୍କ ମଧ୍ୟରୁ ଜଣେ ସୁନ୍ଦରୀ ସ୍ତ୍ରୀ । ଯେଉଁ ଦିନ ଆସିଲା ତା ପରଦିନଠାରୁ ପାଗଳ ହୋଇଗଲା । ସବୁବେଳେ କହୁଥାଏ ମୋ ମଣିଅାଁ କାହିଁ, ମୋ ସ୍ୱାମୀ କାହାନ୍ତି, ମୋତେ ମୋ ସ୍ୱାମୀଙ୍କ ଘରେ ବନ୍ଦୀ କରି ରଖ । ମୁଁ ବିନା ଆଦେଶରେ ତାହା କରନ୍ତି କପରି ? ପ୍ରାୟ ଏହିପରି ଦୁଇ ଗୃରି ଦିନ ବକିବା ପରେ ସେ ମରିଗଲା ।

ବାଲ୍ଯରଜାଙ୍କର ଚକ୍ଷୁ ଲୋତକରେ ଟଳ ଟଳ ହେଲା । ନିକଟରେ ଉପବିଷ୍ଟା ଚମ୍ପଲା ଏବଂ କିଛିଟା ଦୂରରେ ଦଣ୍ଡାୟମାନ ଅଜଙ୍ଗ ବାଲ୍ଯରଜାଙ୍କର ଏପରି ଆକସ୍ମିକ ଭାବ ଦେଖି ବିସ୍ମିତ ହେଲେ ।

ଏବଂ ଅନ୍ୟ ଜଣକ ?

ଆଜ୍ଞା ମୁଁ ଅବାଲ୍ୟରୁ ଏଠାରେ ଅଛି । କେହି କେହି କହନ୍ତି ମୋର ଜନ୍ମ ଏହିଠାରେ । ନାରାୟଣ ସାଧବଙ୍କ ପିତାଙ୍କ ଅମଳରୁ ମୁଁ ଏହିଠାରେ କାର୍ଯ୍ୟକରି ଆସୁଛି ।

ଘୁରାଇ ବାଜେ ବକିବା ଅପେକ୍ଷା ମୋ ପ୍ରଶ୍ନର ଉତ୍ତର ଦିଅ ।

ଆଜ୍ଞା ମୁଁ ବାଜେ ବକିଲି ନା କ'ଣ ? ମୋର କହିବାର କଥା ମୁ ଏତେଦିନ ଏଠାରେ ରହିଲି । ତା ପରି ଜଣେ ଚଲାଖ ଲୋକ ଦେଖି ନାହିଁ । ତାକୁ ନାରାୟଣ ସାଧବ କେଉଁଠାରୁ ଧରି ଆଣିଥିଲେ ମୁଁ ଜାଣେ ନା । ସେ ଏଠାରେ ଅନେକ ଦିନ ରହିଥିଲା । ଯେଉଁଦିନ ଯୁବକବନ୍ଦୀ କାନ୍ଥରେ କଣା କରି ଦୁଇ ଜଣ ଯାକ ସଙ୍ଗ ହୋଇ ଯୁବକ ପଳାଇଲା, ତାର ଦୁଇ ଦିନ ପରେ ସେ ମରିଗଲା ।

ମରିଗଲେ ସତେରେ ? ନା ତୁମ୍ଭେମାନେ ତାକୁ ନିଜ ହାତରେ ମାରି ପକାଇଛ ।

ମୁଁ କ'ଣ ମିଛରେ କହୁଛି ଆପଣଙ୍କ ଆଗରେ ? ଅବଶ୍ୟ ତା ଉପରେ ଆମେ ଭାରି ରାଗିଥିଲୁ । କିନ୍ତୁ ତାକୁ ମାରିବାକୁ ହାତ ଚଳିଲା ନାହିଁ । ତାକୁ ଦେଖି ଦେଖି ବୁଝି ପାରିଲୁ ସେ ଦିନେ ଦୁଇ ଦିନ ମଧ୍ୟରେ ମରିଯିବ । ଆମର କଥା ବି ସତ ହେଲା ।

ବାଲରଜା ଚକ୍ଷୁରୁ ଜଳ ପୋଛିଲେ ।

ଅଜଙ୍ଗ ପ୍ରଭୁଙ୍କ ଚକ୍ଷୁରେ ଲୋତକ ଦେଖି ନିକଟକୁ ଆସିଲା । ଗୋଡ଼ତଳେ ଲମ୍ବ ହୋଇ ପଡ଼ି କାତରତାପୂର୍ଣ୍ଣ ସ୍ୱରରେ ଚିତ୍କାର କରି କହିଲା, ସାଁ ଭୌଁ, କାନ୍ଦୋ ନା ।

ଅଜଙ୍ଗକୁ ତଳୁ ଉଠାଇ ବାଲରଜା ତାର ମୁହଁକୁ ସ୍ନେହପୂର୍ଣ୍ଣ ଚକ୍ଷୁରେ ଅନାଇ ହସି ଦେଲେ । ମାତ୍ର ଚକ୍ଷୁର ଲୋତକ ବନ୍ଦ ହେଲା ନାହିଁ । ପ୍ରଭୁଙ୍କ ମୁହଁରେ ହାସ୍ୟ ଦେଖି ଅଜଙ୍ଗ ସୁଖୀ ହୋଇ ନାଚି ନାଚି ଦୂରକୁ ଚାଲିଗଲା ।

ବାଲରଜା ପଚାରିଲେ, ତୁମ୍ଭେମାନେ ଏଠାରେ କେତେ ଜଣ ପ୍ରହରୀ ଅଛ ?

ବନ୍ଦୀମାନଙ୍କୁ ଛାଡ଼ିଲେ ଆମେ ଏଠାରେ ସବମୋଟ, ଅଙ୍ଗୁଳି ଗଣି କିଛି ସମୟରେ ପାଞ୍ଜିଆ କହିଲେ, ସବମୋଟ ଚାଳିଶି ଜଣ । ପଚିଶି ଜଣ ଲୋକ, ପନ୍ଦର ଜଣ ମାଇକିନିଆଁ । ପିଲାଙ୍କୁ ଧରିବ ନା କଣ ? ପିଲାଙ୍କୁ ଗଣିଲେ ମୋଟ ପଚାଶ ।

ଆଉ ତୁମକୁ କୌଣସି ପ୍ରଶ୍ନ ପଚାରିବା ଅବଶ୍ୟକ ମନେ କରୁନାହିଁ । ବର୍ତ୍ତମାନ ମୋର ଆଦେଶ ପାଳନ କରିବାକୁ ପ୍ରସ୍ତୁତ ହୁଅ । ଅଶାକରେ ଯାହା କହିବ ତାହା ସଙ୍ଗେ ସଙ୍ଗେ ପାଳନ କରିବ ।

ଆପଣଙ୍କର ଆଜ୍ଞା ମୁଁ କେବେ ଅମାନ୍ୟ କରିବି ନାହିଁ । କହନ୍ତୁ କ'ଣ କରିବାକୁ ହେବ ।

ବନ୍ଦୀମାନେ ଯେଉଁ ସବୁ କୋଠରୀମାନଙ୍କରେ ଜୀବନ୍ତ ସମାଧି ପାଇଛନ୍ତି ସେ ସବୁର ବାହାର ପାଖ ତାଲା ବନ୍ଦ ନୁହେଁ ତ ? ଯଦି ବନ୍ଦ ହୋଇଥାଏ ସେ ସବୁର କଞ୍ଚି ମୋତେ ଦିଅ ।

କୋଠରୀଗୁଡ଼ିକରେ ତାଲା ବନ୍ଦ ନାହିଁ, ସେପରି ଆଦେଶ ଆମେ ପାଇନୁ । ବାହାର ପାଖୁ ଜଞ୍ଜିର ବନ୍ଦ ।

ମୋତେ ସେମାନଙ୍କ ପାଖକୁ ନେଇ ଚାଲ । ବିନା କାଳ ବ୍ୟୟରେ ମୁଁ ସେମାନଙ୍କୁ ମୁକ୍ତ କରିବି ।

ମୋତେ ସେପରି ଆଦେଶ କାହିଁ ?

ମୁଁ ଆଦେଶ ଦେଉଛି ।

ଆପଣ ନାରାୟଣ ସାଧବ ନା କିଏ ?

ମୁଁ ତାଙ୍କର ବନ୍ଧୁ ।

ନାରାୟଣ ସାଧବଙ୍କ ବନ୍ଧୁଙ୍କ କଥାରେ ଆମେ ତ ଆଉ ଜୀବନକୁ ପାଣି ଛଡ଼ାଇ ଦେବୁ ନାହିଁ । ମୁଁ ତାହା କରି ପାରିବି ନାହିଁ । ମତେ କ୍ଷମା କରନ୍ତୁ ।

ତୁମେ ତାହା କରି ନ ପାର । ମୁଁ ନିଶ୍ଚୟ କରିବି । ଯାହା ଥରେ ପ୍ରତିଜ୍ଞା କରିଛି ତାହା କରିବି । ମୋ କାର୍ଯ୍ୟରେ ଯଦି ବାଧା ଦିଅ ପରେ ଫଳ କ'ଣ ହେବ ଜାଣ ? ଏଠାରେ ତୁମ୍ଭେମାନେ ମୋଟେ ପଚାଶ ଜଣ ଲୋକ । ମୋର ଲୋକସଂଖ୍ୟା ଢେର ଅଧିକ । ଯଦି ବାଧା ଦିଅ ନିଶ୍ଚୟ ସମସ୍ତେ ବନ୍ଦୀ ହୋଇ ତାମ୍ରଲିପ୍ତ ଯିବ ।

ଆପଣ କିଏ ? ତାମ୍ରଲିପ୍ତ ଆମେ କାହିଁକି ଯିବୁ ?

ମୁଁ କିଏ ଏ ବିଷୟ ତୁମକୁ ଜଣାଇ ଦେବା ମୋର ଇଚ୍ଛା ନୁହେଁ । ଭଗବାନ ଯଦି ତୁମକୁ ବଞ୍ଚାଇ ରଖନ୍ତି, ତେବେ ମୋ ବିଷୟରେ ତମେ ଅନେକ କଥା ଜାଣି ପାରିବ । ଆସନ୍ତା କାର୍ତ୍ତିକ ପୂର୍ଣ୍ଣିମା ଦିନ ତାମ୍ରଲିପ୍ତଠାରେ ବଣିକ ସଭା ବସିବ । ଉତ୍କଳ ସମ୍ରାଟ ସଭାପତିର ଆସନ ଗ୍ରହଣ କରିବେ । ତାଙ୍କର ସମ୍ମୁଖରେ ନାରାୟଣ ସାଧବଙ୍କ ବିପକ୍ଷରେ ଏହି ପାଞ୍ଚଶ ବନ୍ଦୀଙ୍କ ପକ୍ଷରୁ ମୁଁ ଅଭିଯୋଗ ଉତ୍‌ଥାପନ କରିବି । ଏହି ବନ୍ଦୀମାନେ ଓ ତୁମ୍ଭେମାନେ ସେଠାରେ ନାରାୟଣ ସାଧବଙ୍କ ବିପକ୍ଷରେ ସାକ୍ଷ୍ୟ ଦେବ ।

ମୁଁ ଏହା କରି ପାରିବି ନାହିଁ । ମୋର ଖାମିନ୍ଦଙ୍କ ବିପକ୍ଷରେ ଜୀବନ ଯିବାଯାଏ ପଛେ ହେଲେ କଥା ମୋ ତୁଣ୍ଡରୁ ବାହାରିବ ନାହିଁ ।

ବେଶ୍, ତାହା ତମର ବାହାଦୂର, ବୀରତ୍ୱ । ଦେଖାଯାଉ ତମର ପ୍ରତିଜ୍ଞା ତମେ କେତେଦୂର ପାଳନ କରି ପାରୁବ ।

ଏତିକି କହି ବାଲରାଜା ସମୁଦ୍ରକୂଳରୁ ବଙ୍କାରାସ୍ତା ଦେଇ ବନ୍ଦୀଶାଳା ଆଡ଼େ ଗୃଲିଲେ । ତାଙ୍କ ପଛେ ପଛେ ଅଜଙ୍ଗ ଓ ଚଞ୍ଚଳା, ଶେଷରେ ନାବିକମାନେ ।

ସେମାନେ ବନ୍ଦୀଶାଳାର ସମ୍ମୁଖରେ ଠିଆହୋଇ ଦେଖିଲେ ଦ୍ୱାର ବନ୍ଦ । ବନ୍ଦଶାଳା ଏପରି ଭାବରେ ପ୍ରସ୍ତୁତ ଯେ ଦରଜା ବ୍ୟତୀତ ଅନ୍ୟ କୌଣସି ପଥ ଦେଇ ଭିତରକୁ ପ୍ରବେଶ କରିବା ଅସମ୍ଭବ । ଦ୍ୱାର ପାଖରେ କୌଣସି ଲୋକର ପତ୍ତା ନାହିଁ । ବାଲରାଜା ଘାଞ୍ଜିଅକୁ ଅପେକ୍ଷା କରି ରହିଲେ ।

ଅଥଚ ପାଞ୍ଜିଅ ଅସିଲେ ନାହିଁ । ନାବିକମାନେ ଉଚ୍ଛନ୍ନ ହୋଇ ବାଲରାଜାଙ୍କ ଆଦେଶକୁ ଅପେକ୍ଷା କରି ରହିଲେ । ଟିକିଏ ଇସାରା ପାଇଲେ ଦ୍ୱାର ଭାଙ୍ଗି ଭିତରେ ପଶିବେ ।

ଏହି ସମୟରେ ଅଜଙ୍ଗ ଧଇଁସଇଁ ହୋଇ ପଛଆଡ଼ୁ ଦଉଡ଼ି ଅସିଲା । ହାତରେ ତାର ଖଣ୍ଡେ ଜ୍ୱଳନ୍ତ-କାଷ୍ଠ । ସମସ୍ତେ ଆଶ୍ଚର୍ଯ୍ୟ ଭାବରେ ଅଜଙ୍ଗର କାର୍ଯ୍ୟ ଦେଖୁଥିଲେ । କେହି ବାଧା ଦେବାକୁ ସାହସ କଲେ ନାହିଁ ବା ଇଚ୍ଛା କଲେ ନାହିଁ । ଅଜଙ୍ଗ ସେହି ଜ୍ୱଳନ୍ତ କାଷ୍ଠ ଖଣ୍ଡି ଧରି ଦରଜାର ନାନା ସ୍ଥାନରେ ଦେଖାଇଲା ।

ଚଡ଼ ଚଡ଼ ଶବ୍ଦ ଶୁଣି ସମସ୍ତେ ପଛକୁ ଅନାଇଲେ । ଏ କଣ ? ନିଆଁ ଧୂଆଁ ଅସିଲା କୁଆଡ଼ୁ ? ଏହା ଅଜଙ୍ଗର କାମ ।

ଚଞ୍ଚଳା ଧୀରେ ଧୀରେ ବାଲରାଜାଙ୍କର କାନ ପାଖରେ କହିଲା, ସେ ଜଙ୍ଗଲରେ ନିଆଁ ଲଗାଇବାକୁ ଭାରି ଭଲ ପାଏ । ବୋଧହୁଏ ଜଙ୍ଗଲରେ ନିଆଁ ଲଗାଇଛି ।

ବାଲରାଜା କହିଲେ, ସେ ଜଙ୍ଗଲରେ ନିଆଁ ଲଗାଇ ନାହିଁ ।

ତେବେ କେଉଁଠି ସମୁଦ୍ରରେ ? ଚଞ୍ଚଳା ହସିଦେଲା ।

ବାଲରାଜା ମଧ୍ୟ ହସି ହସି କହିଲେ, ନା, ସମୁଦ୍ରରେ ନୁହେଁ ଯେ, ବାହାରେ ପ୍ରହରୀମାନଙ୍କର ଯେଉଁ ଘର ସବୁ ଥିଲା ବୋଧହୁଏ ସେଥିରେ ।

ଏଣେ ଅଜଙ୍ଗ ଦରଜାରେ ନିଆଁ ଲଗାଇବାରେ ଅକୃତକାର୍ଯ୍ୟ ହୋଇ ହତାଶ ପୂର୍ଣ୍ଣ ଚକ୍ଷୁରେ ତାର ଜ୍ୱଳନ୍ତ କାଷ୍ଠ ଖଣ୍ଡକୁ କ୍ରୋଧରେ ଅନାଇଁ ନିଜ ଭାଷାରେ କେତେ କଣ ଗାଳିଦେଲା ।

ପଛରୁ ବାଲସଙ୍କା ଡାକିଲେ ଅଜଙ୍ଗ ।

ଅଜଙ୍ଗ ସ୍ୱଗରେ ନଥାଁ ଝୁଣ୍ଟା ଖଣ୍ଡ ବନ୍ଦଶାଳା ଭିତରକୁ ପକାଇ ଲଜ୍ଜାରେ ମୁଖାବନତ କରି ପାଖରେ ଠିଆ ହେଲା । ବାଲସଙ୍କା ପଛଆଡ଼କୁ ଅଙ୍ଗୁଠି ବଢ଼ାଇ ଜ୍ୱଲନ୍ତ ଅନଳକୁ ଦେଖାଇ ପଚାରିଲେ, ପ୍ରହରୀମାନଙ୍କର ଘର ପୋଡ଼ିଛୁ ତୁ ।

ଭୟରେ ଥର ଥର ମୁଣ୍ଡ ଠୁଙ୍କାରି ସମ୍ମତି ପ୍ରକାଶ କରି କହିଲା, ଓଁଁୟୋଁଁ ।

ଦରଜା ଅଡ଼କୁ ହାତ ବଢ଼ାଇ କହିଲେ, ଦରଜା ପୋଡ଼ୁଥିଲୁ ? ସେ ଗୁଡ଼ାକ ଲୁହା, ପୋଡ଼ିହେବ ନାହିଁ ।

ସମସ୍ତେ ଏକାସଙ୍ଗରେ ହସି ଉଠିଲେ । ଅଜଙ୍ଗ ହନୁମାନ ପରି ନାଚ ନାଚ ବସି ପଡ଼ିଲା ଚମ୍ପଲା ପାଖରେ ।

ବାଲସଙ୍କା ତାଙ୍କର ଲୋକମାନଙ୍କୁ ଆଗକୁ ଆସିବାକୁ କହିଲେ । ଆଦେଶ ପାଳିତ ହେଲାରୁ କହିଲେ, ବୃଥା ଅପେକ୍ଷା କରି ସମୟ ନଷ୍ଟ କରିବା ଅନୁଚିତ । ଦରଜା ଭାଙ୍ଗିକରି ଭିତରକୁ ପଶିବାକୁ ହେବ ।

ଯେ ଆଜ୍ଞା ! ଏକସ୍ୱରରେ ଚିତ୍କାର କଲେ ।

ଏପରି ଗୋଳମାଳ କର ନାହିଁ । ଆହୁରି ଗୋଟିଏ କଥା କହିବାକୁ ଅଛି । ଦରଜା ଭାଙ୍ଗି ତୁମମାନଙ୍କ ଭିତରୁ କେତେଜଣ ଦରଜାରେ ଜଗି ରହିବ । ହୁସିଆର, କାହାକୁ ଯେପରି ପଦାକୁ ଛାଡ଼ ନ ଦିଅ । ପାଞ୍ଚିଆର କହିବାମତେ ଏଠାରେ ପଚାଶଜଣ ପ୍ରହରୀ ଅଛନ୍ତି । ସେମାନଙ୍କୁ ବନ୍ଦୀ କରିବାକୁ ହେବ । ଦେଖ, ସେମାନଙ୍କ ଭିତରୁ ଯେପରି କେହି ଆହତ ନ ହୁଅନ୍ତି କିମ୍ବା ଅନର୍ଥକ ଯେପରି ସେମାନଙ୍କର ଜୀବନ ନଷ୍ଟ ନ କର ।

ଯଦି ସେମାନେ ଆକ୍ରମଣ କରନ୍ତି ?

ନିଶ୍ଚୟ କରିବେ ।

ଯଦି ଆମର ଜୀବନ ଉପରେ ପଡ଼େ ?

ସେତେବେଳେ ଅବଶ୍ୟ ତମେ ତାଙ୍କ ଜୀବନ ନେଇ ପାର । ନିତାନ୍ତ ଅବଶ୍ୟକ ନହେଲେ କେବେ ସେମାନଙ୍କ ଜୀବନ ନେବ ନାହିଁ । ଆଉ ଗୋଟିଏ କଥା । ବନ୍ଦୀମାନଙ୍କୁ ମୁକ୍ତ କରିବ ନାହିଁ । ଆମେ ଦୁଇ ଜଣ ସେ ଗଛ ତଳ ଛାଇରେ ବସିଛୁ । ତୁମ୍ଭେମାନେ ପ୍ରହରୀ ଓ ବନ୍ଦୀମାନଙ୍କୁ ଆଣି ଆମ ପାଖରେ ହାଜର କରିବ, ବୁଝିଲ ।

ଯେ ଆଜ୍ଞା ।

ବାଲସଙ୍କା ଏବଂ ଚମ୍ପଲା ନିକଟସ୍ଥ ଆମ୍ବଗଛ ତଳକୁ ଚାଲିଯିବା ପରେ ନାବିକମାନେ ଦରଜା ଭାଙ୍ଗିବାକୁ ଲାଗିଲେ । ଅଜଙ୍ଗ କିଛି ସମୟ ଚିନ୍ତା କରି

ପାତମାଙ୍କର ପଚ ଦରଜାରେ ଚଢ଼ି ଅଁରପାଖରୁ ଡେଇଁ ପଡ଼ିଲା । ତା ଦେଖାଦେଖି ଆହୁରି କେତେଜଣ ତାକୁ ଅନୁସରଣ କଲେ । ଗୋଳମାଳ ନ କରି ସମସ୍ତେ ନିଜ ନିଜର କାମରେ ଲାଗିଲେ । ଭିତରକୁ ପଶିଥିବା ଲୋକମାନେ ତାଲା ଭାଙ୍ଗିବାକୁ ଚେଷ୍ଟା କଲେ ।

ହଠାତ୍ ଭଡ଼ ଭଡ଼ ହୋଇ ଅଗ୍ନିଶିଖା ଉପରକୁ ଉଠିଲା । ନାବିକମାନେ ଦେଖିଲେ, ବନ୍ଦଶାଳା ଭିତରେ ଧାଡ଼ିଏ ଛଣ ଘରରେ ନିଆଁ ଲାଗିଛି । ନାବିକମାନେ ନିଆଁକୁ ଅନାଇଁ ଥିବା ସମୟରେ ଜଣେ ଜଣେ ଦଉଡ଼ି ଆସି ତାଲା ଭାଙ୍ଗିବାରେ ଲାଗିଗଲା । ସମସ୍ତେ ଦେଖି ଆଶ୍ଚର୍ଯ୍ୟ ହେଲେ, ସେ ହେଉଛି ଅଜଙ୍ଗ ।

ଏଣେ ବାଲରାଜା ଓ ଚଞ୍ଚଳା ଦୁଇଖଣ୍ଡି ପଥର ଉପରେ ପାଖାପାଖି ହୋଇ ବସି ସୂର୍ଯ୍ୟଦ୍ୱୀପର ଗୃହଆଡ଼କୁ ଅନାଉଥିଲେ । ତାଙ୍କୁ ଜଣାଗଲା ଯେପରି ସୂର୍ଯ୍ୟଦ୍ୱୀପର ପ୍ରତ୍ୟେକ ବୃକ୍ଷଲତା ପ୍ରତ୍ୟେକ ଜୀବଜନ୍ତୁ ବନ୍ଦୀର କଷ୍ଟମୟ ଜୀବନଯାପନ କରୁଛନ୍ତି; ହତାଶର ଦୀର୍ଘଶ୍ୱାସ ତ୍ୟାଗ କରୁଛନ୍ତି । ସେତେବେଳେ ସୂର୍ଯ୍ୟ ମଧ୍ୟ ଆକାଶ ତ୍ୟାଗ କରି ପଶ୍ଚିମଦିଗକୁ ଟିକିଏ ଢଳି ପଡ଼ିଲେଣି ।

ବାଲରାଜା ଦୀର୍ଘନିଶ୍ୱାସ ଛାଡ଼ି ନିଜକୁ ନିଜେ କହିଲେ, କାଲି ବଡ଼ିସକାଳୁ ସମସ୍ତଙ୍କୁ ସଙ୍ଗରେ ନେଇ ତାମ୍ରଲିପ୍ତାଭିମୁଖେ ବୋଇତ ଚଲାଇବାକୁ ହେବ । ସାଧବସଭା ହେବା ପୂର୍ବରୁ କୌଣସି ମତେ ସେଠାରେ ପହଞ୍ଚିବା ଉଚିତ । ନାରାୟଣ ସାଧବଙ୍କ ବିପକ୍ଷରେ ସାଧବ ସଭାରେ କହିବାକୁ ହେଲେ ଅନେକ ବିଷୟର ଅନୁଯୋଜନ ଆବଶ୍ୟକ । ନୋହିଲେ ଲୋକେ ଆମ କଥାରେ ବିଶ୍ୱାସ କରିବେ ନାହିଁ ।

ଚଞ୍ଚଳା କହିଲା, ଆମମାନଙ୍କ ନିମନ୍ତେ ସଭାରେ କୌଣସି ବନ୍ଦୋବସ୍ତ କରାଯିବ କି ?

ତମର ପ୍ରଶ୍ନ ମୁଁ ଠିକ୍ ବୁଝିପାରୁ ନାହିଁ ଚଞ୍ଚଳା ।

ମୁଁ ପଚାରୁଛି, ସ୍ତ୍ରୀଲୋକମାନେ ସଭାରେ ଯୋଗ ଦେଇ ପାରିବେ କି ?

ଯଦି କେହି ସ୍ତ୍ରୀ-ସାଧବ ଉତ୍କଳରେ ଥାନ୍ତି । କିନ୍ତୁ ଯେପରି ବୋଧ ହେଉଛି, ସେମାନେ ସ୍ତ୍ରୀଲୋକମାନଙ୍କ ପାଇଁ କୌଣସି ବନ୍ଦୋବସ୍ତ କରି ଥିବେ ।

ଯାହାହେଉ, ନାରାୟଣ ସାଧବଙ୍କ ସ୍ତ୍ରୀ ନିଶ୍ଚୟ ସଭାଗୃହ ଅଲଙ୍କୃତ କରିବେ । ସେ ବଡ଼ଲୋକର ପତ୍ନୀ ।

କଣ କହିଲ ଚଞ୍ଚଳା । ସୁଶୀଳା ସଭାଗୃହ ଅଲଙ୍କୃତ କରିବ ? ନା, ତମେ ଭୁଲ ବୁଝିଛ । ଅଲଙ୍କୃତ କରିବ ନାହିଁ ଯେ କଳଙ୍କିତ କରିବ । ଅହା ଚଞ୍ଚଳା, ତମର ବାଲ୍ୟସଙ୍ଗିନୀ ସୁଶୀଳାର ମୁଖ ଦେଖି ଥରେ ମୁଁ ଚମତ୍କୃତ ହେଉଥିଲି ।

ଯେଉଁ ସୁନ୍ଦରୀର ଜୀବନରକ୍ଷା କରିବାକୁ ମୁଁ ମୋର ପ୍ରାଣପଣ ଚେଷ୍ଟା କରି କୃତକାର୍ଯ୍ୟ ହୋଇଛି, ଯେଉଁ ସୁଶୀଳାର ସୁନ୍ଦର ମୁହଁଟିକୁ ଦେଖି ଦିନେ ମୁଁ ମୋହିତ ହୋଇଥିଲି, ଯେଉଁ ସଙ୍ଗିନୀ ତମର କାର୍ଯ୍ୟବ୍ୟସ୍ତ ଥିଲାବେଳେ ମୁଁ ମୋର ସମସ୍ତ କାର୍ଯ୍ୟ ତ୍ୟାଗ କରି ଦୂରରେ ଠିଆ ହୋଇ ତା'ର ସେ ସୁନ୍ଦର ମୁହଁକୁ ଅନାଇ ରହିଥିଲି, ଆଜି ଇଚ୍ଛା ହେଉଛି ଚଞ୍ଚଳା, ତାର ସେ ସୁନ୍ଦର ମୁହଁରେ ବାରମ୍ବାର ପଦାଘାତ କରି ମୋର ହୃଦୟର ଅନଳ ନିର୍ବାପିତ କରିବି । କାରଣ ମୁଁ ଭଲ କରି ଜାଣେ ତାର ସେ ସୁନ୍ଦର ମୁହଁକୁ ଅନାଇଁ ମୋର ଦଗ୍ଧ ହୃଦୟର ଜ୍ୱଳନ୍ତ ଅନଳ ଅଗ୍ନିରେ ଘୃତାହୁତି ଦେଲା ପରି ଜଳି ଉଠିବ ।

ରାଜା, ମୋର ସଙ୍ଗିନୀର ପକ୍ଷ ନେଇ ଗୋଟିଏ କଥା କହିବାକୁ ଅନୁମତି ଦିଅନ୍ତୁ ।

ପକ୍ଷ ନେଇ କହିବ ? ନା ସେ ଅନୁମତି ମୁଁ ତମକୁ ଦେଇ ନ ପାରେ । ମୁଁ ଜାଣେ, ତମର କୋମଳ ହୃଦୟ ସଙ୍ଗିନୀର ଅପମାନ ସହି ପାରିବ ନାହିଁ । ଆଗରୁ କହୁଛି ତେମେ ଦେବୀ, ସେ ନରକର କୀଟ । ସେ ଅସତୀ ବିଶ୍ୱାସ ଘାତକୀ । ହିନ୍ଦୁ ସ୍ତ୍ରୀ ହୋଇ ବ୍ରାହ୍ମଣର କନ୍ୟା ହୋଇ ସେ ଦ୍ୱିତୀୟ ପତି ଗ୍ରହଣ କରିଛି । ନରକକୁ ନିଜର ପଥ ସଫା କରିଛି ।

ସୁଶୀଳା ବ୍ରାହ୍ମଣର କନ୍ୟା ?

ବ୍ରାହ୍ମଣର କନ୍ୟା । ମୋର ପାଳକ ପିତାଙ୍କର ଜୀବନୀ ପାଠ କଲେ ଜାଣି ପାରିବ । ଅବଶ୍ୟ ସେ ନିଶ୍ଚିତ କରି ଏହା ଜାଣି ନାହାନ୍ତି, କିନ୍ତୁ ଅନୁମାନ କରି ଯେଉଁ ସମସ୍ତ ଯୁକ୍ତି ଦେଖାଇ ଲେଖି ଯାଇଛନ୍ତି, ତାହା ଯେ ଅକାଟ୍ୟ ଏଥିରେ ମୁଁ ତିଳେମାତ୍ର ସନ୍ଦେହ କରି ପାରୁ ନାହିଁ । ବ୍ରାହ୍ମଣର କନ୍ୟା ସେ, ଅପରେ କାଣକୁ ତା'ର ଜୀବନ-ଯୌବନ ଅର୍ପଣ କରି—

ଜୀବନ-ଯୌବନ ଅର୍ପଣ କରି ?

ଯଦି ପ୍ରକୃତରେ ସେ ସାଧବସଭାକୁ କଳଙ୍କିତ କରେ ତାହାର ସମ୍ମୁଖରେ ଜଗତକୁ ଜଣାଇଁ ଦେବି ରମଣୀର ପ୍ରେମ କି ତୁଚ୍ଛ । ଜଗତକୁ ଦେଖାଇ ଦେବି ସୁସ୍ପଷ୍ଟ ପ୍ରମାଣ ଦେଇ, ରମଣୀ କେଡ଼େ ବିଶ୍ୱାସଘାତକୀ । ଯାହାକୁ ଜଗତରେ ସରଳା ବୋଲି ଘୋଷଣା କରନ୍ତି, କପଟ କୁଟିଳା ସେ ।

ଆପଣଙ୍କୁ ଆପଣଙ୍କର ଠାକୁରଙ୍କ ଦୋହି ସୁଶୀଳାକୁ ସଭା ଆଗରେ ଅପମାନିତା କରିବେ ନାହିଁ । ସେ ମୋର ବାଲ୍ୟସଙ୍ଗିନୀ, ସେ ଆପଣଙ୍କର ବାଲ୍ୟବନ୍ଧୁ ।

ଉତ୍ତେଜିତ ହୋଇ ବାଳରାଜା କହିଲେ, ଚଞ୍ଚଳା ତୁମେ ମୋର ଉଦ୍ଦେଶ୍ୟରେ ବାଧା ଦେବାକୁ ଚାହଁ ? ମନେ ରଖିଥାଅ ତୁମକୁ ମୁଁ ଜୀବନ ଦେଇଛି,

ଯଦି ମୋ ନିକଟରୁ ଦୂର ହେବାକୁ ନ ଚାହଁ ତେବେ ତୁମକୁ ସେହି ଭଗବାନଙ୍କ ଦୋହି, ସୋର କଥାରେ ଆଉ କେବେ ବାଧା ଦେବନାହିଁ ।

ଚଞ୍ଚଳା ଦୀର୍ଘନିଶ୍ୱାସ ତ୍ୟାଗ କରି କହିଲା, ଅହା ସୁଶୀଳା ! ତାର ଚକ୍ଷୁରୁ ଦୁଇବିନ୍ଦୁ ଲୋତକ ଟଳ ଟଳ ହେଲା ।

ଉତ୍ତେଜିତ ବାଳରାଜା ଚଞ୍ଚଳାର ଚକ୍ଷୁରେ ଲୋତକ ଦେଖି ନ ଦେଖିଲା ପରି ରୂଢ଼ ସ୍ୱରରେ କହିଲେ, ଚଞ୍ଚଳା, ଆଜିଠାରୁ ସୁଶୀଳାକୁ" ନାରାୟଣ ପତ୍ନୀ ଡାକିବାକୁ ହେବ । ଏଇ ସୁଶୀଳା ନାମଟି ମୋ ମନରେ ଅତୀତ ସ୍ମୃତି ଜଗାଇ ଦେଉଛି । ମୋର ହୃଦୟର ଅନଳଶିଖାକୁ ପ୍ରଜ୍ୱଳିତ କରୁଛି । ଚଞ୍ଚଳା ପାପୀୟସୀର ନାମ ଆଉ କେବେ ମୋ ପାଖରେ ଉଚ୍ଚାରଣ କରିବ ନାହିଁ ।

ନାରାୟଣ ସାଧବଙ୍କର ସ୍ତ୍ରୀ ଯଦି ମୋର ବାଲ୍ୟସଙ୍ଗିନୀ ହୋଇ ନ ଥାଏ।

ତୁମେ କଣ କହିବାକୁ ଚାହଁ, ମୁଁ ଅନ୍ଧ ? ମୁଁ ମୋର ଚକ୍ଷୁକୁ କର୍ଣ୍ଣ ଅପେକ୍ଷା ଅଧିକ ବିଶ୍ୱାସ କରେ । ଆଜି ତମର କୋମଳ କଥାରେ ମୋର ଚକ୍ଷୁକୁ ଅବିଶ୍ୱାସ କରି ନ ପାରେ । ସେଦିନ ତାକୁ କ୍ଷଣକ ନିମନ୍ତେ ଦେଖିଛି । ସେହି କ୍ଷଣକ ଭିତରେ ମୁଁ ତାକୁ ଭଲ କରି ଚିହ୍ନି ପାରିଛି । ତାର ମନର ସମସ୍ତ ପୈଶାଚିକ ଭାବନା ଉତ୍ତମରୂପେ ପଢ଼ି ପାରିଛି । କ'ଣ ଶୁଣିବ ? ସେ ଜାଣେ ମୋତେ ନାରାୟଣ ସାଧବ ବନ୍ଦୀ କରିଛି । ଚେଷ୍ଟା କରିଥିଲେ ଅନାୟାସରେ ମୋତେ ସେ ଏଠାରୁ ମୁକ୍ତ କରିପାରି ଥାନ୍ତା । ନ କଲା କାହିଁକି ? ଏହାର କାରଣ ବଡ଼ ସହଜ । ମୁଁ ମୁକ୍ତିଲାଭ କଲେ ଯେ ତାର ଲଜ୍ଜା ହେବ । ତାର ଅପମାନ ହେବ । ଲୋକେ, ତାର ଗୁପ୍ତ ଆଚରଣର ସମସ୍ତ କଥା ଜାଣି ପାରିବେ । ଦେଖ ଚଞ୍ଚଳା, ତମର ସଙ୍ଗିନୀ କପରି ସ୍ୱାର୍ଥପର । ତାକୁ ଅପମାନ ହେବ, ଏହି ଚିନ୍ତାରେ ମୋର ଜୀବନ ବି ସେ କଷ୍ଟମୟ କରିବାକୁ ଚାହେଁ । ମୋର ମୃତ୍ୟୁ ଖବର ଶୁଣିଲେ ସେ ଆନନ୍ଦିତ ହେବ ନାହିଁ କି ? ବୋଧ ହୁଏ ଭଗବାନଙ୍କ ନିକଟରେ ପ୍ରାର୍ଥନା କରୁଥିବ ମୁଁ କିପରି ଶୀଘ୍ର ମରେ, ଅଥଚ ସେ ଉତ୍ତମ ଭାବରେ ଜାଣେ ମୁଁ ତାହାରି ନିମନ୍ତେ ବନ୍ଦୀ ।

ରାଜା, କ୍ଷମାକର, ମୁଁ ଗୋଟିଏ କଥା କହିବାକୁ ବସିଛି । ବୋଧ ହୁଏ ସୁଶୀଳାର—

ପୁଣି ସେ ଅପବିତ୍ର ନାମ ତୁଣ୍ଡରେ ଧରି ମୁହଁ ଖରାପ କରୁଛ ।

ବୋଧ ହୁଏ ତାର ଦୋଷ ନାହିଁ ।

ଆଉ ଦୋଷ କାହାର, ମୋର ? ହଁ ଠିକ୍ କହୁଛ ନିଶ୍ଚୟ ମୋର ଦୋଷ, ମୁଁ ତାକୁ ବିଶ୍ୱାସ କରିଥିଲି । ମୁଁ ତାକୁ ବିଶ୍ୱାସ କରି ହୃଦୟରେ ସ୍ଥାନ ଦେଇଥିଲି । ଏହା ମୋର ଦୋଷ ।

ମୁଁ ତାହା କହୁନାହିଁ । ମୁଁ କହୁଛି, ସେ ଯଦି ପ୍ରକୃତରେ ନାରାୟଣ ସାଧବଙ୍କୁ ସ୍ୱାମୀରୂପେ ଗ୍ରହଣ—

କ'ଣ ? ତଥାପି ତମର ଅବିଶ୍ୱାସ ? ନାରାୟଣ ସାଧବର ପତ୍ନୀ ସୁଶୀଳା ନୁହେଁ ?

କ୍ଷମା କର ରାଜା, ମୋର ଅବିଶ୍ୱାସ ହେଉ ନାହିଁ । ମୋର କଥାର ଭୁଲ ହୋଇଗଲା । ମାଇକିନିଆଁ ଲୋକ ଆମେ, କଥା କହି ଜାଣୁନାହିଁ ।

ମାଇକିନିଆ ଜାତି କଥା କହି ଜାଣନ୍ତି ନାହିଁ ଆଉ ଜାଣେ କିଏ ? ସେମାନଙ୍କର ପ୍ରତ୍ୟେକ ଶବ୍ଦ ପ୍ରତ୍ୟେକ ଭାବଭଙ୍ଗୀରେ କିଛି ନା କିଛି ଅର୍ଥ ଗୁପ୍ତ ରହିଥାଏ । ଭାରି ବାଗରେ ସେମାନେ କଥା କହି ପାରନ୍ତି । ବର୍ତ୍ତମାନ ଯାହା କହିଛନ୍ତି ଗୋଟିଏ ପ୍ରକାର ଭାବଭଙ୍ଗୀ ଦେଖାଇ, ପରକ୍ଷଣରେ ଠିକ୍ ସେଇଆ କହିବେ, କେବଳ ସ୍ୱର ଓ ଭାବଭଙ୍ଗୀରେ ପ୍ରଭେଦ ମାତ୍ର ଥିବ । କି ଆଶ୍ଚର୍ଯ୍ୟ ! ପ୍ରଥମ ବାକ୍ୟରେ ଯେତିକି ଗୁଡ଼ିଏ ଶବ୍ଦ ଥିଲା ଦ୍ୱିତୀୟ ବାକ୍ୟରେ ଠିକ୍ ସେତିକି, ଯେଉଁ ଯେଉଁ ଶବ୍ଦ ଥିଲା ଠିକ୍ ସେଇଆ, ଅଥଚ ବାକ୍ୟର ଅର୍ଥ ସମ୍ପୂର୍ଣ୍ଣ ପରିବର୍ତ୍ତିତ । କୌଣସି ବିଷୟର ଦୋଷଟା ଆସି ଶ୍ରୋତା ମୁଣ୍ଡରେ ମାଡ଼ିବସିଛି । ରମଣୀ ମୁରୁକି ହସି ମୁଣ୍ଡ ଗଳାଇ ଖଲାସ ।

ଆପଣ ବୋଧହୁଏ ଜୀବନରେ ଦୁଇଟି ସ୍ତ୍ରୀ ବ୍ୟତୀତ ଅନ୍ୟ କାହାର ସଂସର୍ଗରେ ଆସି ନାହାନ୍ତି । ପ୍ରଥମ ଜଣକୁ ତ ସରଳ ବୋଲି ଭାବିଥିଲେ । ଦ୍ୱିତୀୟ ହେଉଛି ମୁଁ । ଏପରି ବାକ୍ୟ କାହାଠାରୁ ଶୁଣିଛନ୍ତି ? ପ୍ରଥମାଠାରୁ ? କଦାପି ନୁହେଁ । ତାଙ୍କୁ ଆପଣ ବିଶ୍ୱାସ କରିଥିଲେ । ଅତଏବ ଦ୍ୱିତୀୟା ଠାରୁ । ଯଦି ତାହା ହୋଇଥାଏ କେବଳ ମୋର ଆଚରଣ ଦେଖି ଆପଣ ସ୍ତ୍ରୀ ଜଗତକୁ ଦୋଷୀ କରି ନ ପାରନ୍ତି ।

ନା ଚମ୍ପଲା, କଥାକୁ ଚାଁରେଇ ବାଲରାଜା କହିଲେ, ତମେ ସ୍ତ୍ରୀ ଜଗତର ରତ୍ନ । ତମେ ପ୍ରକୃତରେ ସରଳ । ତମ ଉପରେ ମୁଁ ଏ ଦୋଷାରୋପ କରୁ ନାହିଁ । ପ୍ରତ୍ୟେକ ନିୟମର ବହିର୍ଭୂତ ଅଛି । ତାପରେ, ମୁଁ ଯାହା କହିଲି, ତାହା ମୋର ନିଜର ଅଭିଜ୍ଞତା ନୁହେଁ । ମୋର ପୂଜନୀୟ ପାଳକ ପିତାଙ୍କର । ସେ ଭାରି ଚତୁର । ପ୍ରକୃତରେ ସେ ଜଗତଟାକୁ ଭଲରୂପେ ଚିହ୍ନିଥିଲେ । ତାଙ୍କ ପରେ ଯେଉଁମାନେ ଆସିବେ ସେମାନଙ୍କୁ ସତର୍କ କରାଇ ଦେବାପାଇଁ ସେ ତାଙ୍କର ଜୀବନୀ ଲେଖି ଯାଇଛନ୍ତି । ମୁଁ ତାଙ୍କର ଜୀବନୀ ପଢ଼ି ଏତକ କହୁଛି । ଏଥିରେ ତମ ମନରେ କଷ୍ଟ ହେବ କାହିଁକି ? ତଳକୁ ମୁହଁ ପୋତି କାନ୍ଦୁଛ ? ଛିଃ ! ଏହି ଦେଖ, ଦୂରରୁ କିପରି ଆମର ଲୋକେ ବିଜୟୀ ହୋଇ ଚିତ୍କାର କରି ଆସୁଛନ୍ତି । ହଁ, ବର୍ତ୍ତମାନ କହ, ତମେ ତମର ସଙ୍ଗିନୀର ନିର୍ଦ୍ଦୋଷତା ବିଷୟରେ

କ'ଣ କହିବାକୁ ବସିଥିଲି । ପ୍ରତିଜ୍ଞା କରୁଛି, ବାଧା ନ ଦେଇ ନିଶ୍ଚୟ ଶୁଣିବି ।' କହି ଚମ୍ପଲା, କାନ୍ଦ ନା !

ବାଲରାଜା ଅପଲକ ନୟନରେ ଅନାଇଁଲେ । ଦେଖିଲେ ଚମ୍ପଲାର ସୁନ୍ଦର ମୁହଁଟି ପଦ୍ମଫୁଲ ପରି ଫୁଟିଛି । ତାର ଉଜ୍ଜ୍ୱଳ ଚକ୍ଷୁ ଦିଓଟି ସତେ କି ଦୁଇଟି ପାଖୁଡ଼ା । ପଦ୍ମଫୁଲରେ ଶିଶିରବିନ୍ଦୁ ଲାଗି ରହିଥିଲା ପରି ତାର ଚକ୍ଷୁରେ ଦୁଇବିନ୍ଦୁ ଜଳ ଟଳଟଳ । ଯୌବନର ଦୀପ୍ତି ବାଲରାଜାଙ୍କର ଯୁବକ ହୃଦୟକୁ ତରଳାଇ ଦେଲା । କ୍ଷଣକ ପୂର୍ବେ ସେ ଯେଉଁ ରମଣୀଜାତିର ବିପକ୍ଷରେ ଚମ୍ପଲା ନିକଟରେ ଅଭିଯୋଗ କରୁଥିଲେ, ସେ ପୁଣି ସେହି ଜାତିର ଗୋଟିଏ ସାମାନ୍ୟ ଅଂଶ ପାଖରେ ନଇଁପଡ଼ି ନିଜ ହାତରେ ତାର ଚକ୍ଷୁରୁ ଜଳ ପୋଛି ଦେଲେ । ତାଙ୍କର ସମସ୍ତ ଦମ୍ଭ ଲୁପ୍ତ ହେଲା । ରମଣୀ ଜୟ କଲା ତାର ସୌନ୍ଦର୍ଯ୍ୟ ନିମନ୍ତେ ତାର ମୁଖର ଭାବଭଙ୍ଗୀ ନିମନ୍ତେ, ବାକ୍ୟର ଗୁରୁତ୍ୱ ନିମନ୍ତେ ।

ଚମ୍ପଲା ତାର ମସ୍ତକର ଭାର ବାଲରାଜାଙ୍କର ସୁଦୃଢ଼ ହାତ ଉପରେ ନ୍ୟସ୍ତକରି ଦୀର୍ଘ ନିଶ୍ୱାସ ପକାଇ କହିଲା, ରାଜା ଆପଣ ମୋତେ ଅବିଶ୍ୱାସ କରନ୍ତି ?

ନା ଚମ୍ପଲା, ତୁମକୁ ମୁଁ ଅବିଶ୍ୱାସ କରେ ନାହିଁ । ମାତ୍ର ତମ ଜାତିକୁ ମୁଁ ଅବିଶ୍ୱାସ କରେ । ତା' ବୋଲି ତମେ ମନରେ ଦୁଃଖ କରି କାନ୍ଦିବ କାହିଁକି ? ମୁଁ ତ କହୁଛି ତମେ ସ୍ତ୍ରୀ ଜାତିର ଉପରେ ।

ମୁଁ ଭଲ କରି ଜାଣେ ମୁଁ ସ୍ତ୍ରୀ ଜାତିର ଉପରେ ନୁହେଁ । ନିଷ୍ଠୁର ପୁରୁଷଜାତିର ହୋଇପାରେ ।

ମୁହୂର୍ତ୍ତେ ସମୟ ନିସ୍ତବ୍ଧ ରହି ବାଲରାଜା ହସି ହସି କହିଲେ, ଅର୍ଥାତ୍ ତୁମେ କହିବାକୁ ଚାହଁ ସ୍ତ୍ରୀଜାତି ପୁରୁଷଜାତିର ଢେର ଉପରେ, ନା ? ଏହି ତ, ସ୍ତ୍ରୀଜାତିର କଥାର ଢଙ୍ଗ ତମରି ମୁହଁରେ । ଆଉ ଦୂରକୁ ଦୃଷ୍ଟାନ୍ତ ନିମନ୍ତେ ଯିବାକୁ ପଡ଼ିବ ନାହିଁ । ଛି, ଛି, କି ଲଜ୍ଜା !

ବାଲରାଜା ଘୃଣାବ୍ୟଞ୍ଜକ ସ୍ୱରରେ ଏହା କହି ଚମ୍ପଲାର ନିକଟରୁ ଉଠିଗଲେ ।

ପ୍ରହରୀ ଏବଂ ସେମାନଙ୍କର ସ୍ତ୍ରୀ ଓ ସନ୍ତାନମାନଙ୍କୁ ଗୋଟିଏ ବୋଇତରେ ରଖି ସେମାନଙ୍କର ସବୁ ପ୍ରକାର ସୁବିଧା ନିମନ୍ତେ ବନ୍ଦୋବସ୍ତ କରାଗଲା । ବାଳିରାଜା ସେମାନଙ୍କ ମନରୁ ଭୟ ଦୂର କରି ଘର ଜୀବନ କିପରି ସୁଖମୟ ହେବ ସେଥିନିମନ୍ତେ ଯତ୍ନବାନ ହେବେ ବୋଲି ପ୍ରତିଜ୍ଞା କଲେ । ପାଞ୍ଜିଆ ଏବଂ ତାର ଆଉ ଦୁଇଜଣ ସଙ୍ଗୀଙ୍କୁ ଡକାଇ କହିଲେ, ତମମାନଙ୍କର ଭୟର କାରଣ ନାହିଁ । ତମେମାନେ ଆମ ବିପକ୍ଷରେ ଠିଆ ହୋଇଥିଲ ବୋଲି ମୁଁ ଯେ ତମ ଉପରେ ଅସନ୍ତୁଷ୍ଟ ତାହା ନୁହେଁ, ବରଂ ପ୍ରୀତ । ଯାହାର ନିମକ୍ ଖାଉଥିଲ ତାର ମଙ୍ଗଳ ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଥିଲ । ଏବେ ଗୋଟିଏ କାର୍ଯ୍ୟ କରିବାକୁ ପଡ଼ିବ । ତମେ ତିନିଜଣ ମୋ ବୋଇତରେ ତାମ୍ରଲିପ୍ତ ଯିବ । ନାରାୟଣ ସାଧବ ଯେ ବଡ଼ ଅତ୍ୟାଚାରୀ, ତୁମେମାନେ ଏହା ନିଶ୍ଚୟ ସ୍ୱୀକାର କରିବ । ଯଦି ଆବଶ୍ୟକ ପଡ଼େ ଉତ୍କଳ ସମ୍ରାଟ ଲଲାଟେନ୍ଦୁ କେଶରୀଙ୍କ ଆଗକୁ ଯାଇ ସତ ସତ ସମସ୍ତ କଥା ବର୍ଣ୍ଣନା କରିବାକୁ ପଡ଼ିବ ମୋର ସାକ୍ଷୀରୂପେ ।

ଆପଣ ଆମକୁ ନିମକହାରାମୀ ଶିଖାଉଛନ୍ତି କିପରି ?

ବାଳିରାଜା ଲଜ୍ଜିତ ହୋଇ କହିଲେ, ତେବେ ହେଉ ତୁମମାନଙ୍କୁ କିଛି କହିବାକୁ ହେବ ନାହିଁ । ଯଦି ଆବଶ୍ୟକ ପଡ଼େ ସମ୍ରାଟଙ୍କ ଆଗକୁ ଯିବାକୁ ପଡ଼ିବ । ପ୍ରମାଣ ନିମନ୍ତେ ମୁଁ ମୋର ଅନ୍ୟ ବନ୍ଦୋବସ୍ତ କରୁଛି ।

ସମସ୍ତଙ୍କୁ ତାମ୍ରଲିପ୍ତ ଯିବାକୁ ପଡ଼ିବ ତେବେ ।

ନା, କେବଳ ତୁମ ତିନିଜଣଙ୍କୁ । ମୁଁ ଭଲ କରି ଜାଣେ, ତୁମର ଭାରତ ସଙ୍ଗେ କୌଣସି ସମ୍ପର୍କ ନାହିଁ । ସୂର୍ଯ୍ୟଦ୍ୱୀପହିଁ ତୁମ ଘର । ଅତଏବ, ତୁମକୁ ବାଳିଦ୍ୱୀପ ଯିବାକୁ ପଡ଼ିବ । ମୁଁ ବାଳିଦ୍ୱୀପର ରାଜା । ବାଳିଦ୍ୱୀପରେ ମୁଁ ତୁମମାନଙ୍କୁ ଜମିବାଡ଼ି ଦେଇ ମୋର ପ୍ରଜା କରିବି । ଏଠାରେ ଯେଉଁ-ମାନେ ବନ୍ଦୀ ରହିଛନ୍ତି ସେମାନଙ୍କୁ ମଧ୍ୟ ବାଳିଦ୍ୱୀପ ଯିବାକୁ ହେବ । ଅତଏବ, ତୁମ ତିନିଜଣଙ୍କୁ ଛାଡ଼ି ଅନ୍ୟମାନଙ୍କୁ ମୋର ଲୋକଙ୍କ ଦ୍ୱାରା ଜବଦ୍ୱୀପକୁ ପଠାଇ ଦେବି । ମୋ ନିକଟରେ ପ୍ରଚୁର ଧନ ରହିଛି । ସେହି ଧନରେ ସେମାନେ ଜବଦ୍ୱୀପରେ ସୁଖରେ ରହିବେ ! ତାମ୍ରଲିପ୍ତରେ କାର୍ଯ୍ୟ ଶେଷ କରି ଜବଦ୍ୱୀପରୁ ସେମାନଙ୍କୁ ନେଇ ପରେ ଆମେମାନେ ବାଳିଦ୍ୱୀପକୁ ଯିବୁ ।

ଆଜ୍ଞା ଆପଣଙ୍କର ଆଦେଶ ଶିରୋଧାର୍ଯ୍ୟ । ଆମ୍ଭମାନେ ଏଠାରେ ଯେପରି ଜୀବନଯାପନ କରୁଥିଲୁ ପଶୁମାନେ କଣ ଏପରି ଭାବରେ ଜୀବନଯାପନ କରନ୍ତି ।

ଦେଶରୁ ବହୁଦୂରରେ ଏକୁଟିଆ ରହିଥିଲୁ । ଖାଦ୍ୟର ବନ୍ଦୋବସ୍ତ ନାହିଁ । ଯଦି ଆପଣ ଦୟାକରି ଆମ୍ଭମାନଙ୍କର ସେ ଦୁଃଖ ଦୂର କରିବାକୁ ଚାହାନ୍ତି, ଏଥିରେ ଆମେ ଆପତ୍ତି କରିବୁ କାହିଁକି ?

ତେବେ, ବନ୍ଦୀମାନଙ୍କୁ ଯେ ଦୁଇ ତିନି ଦିନରେ ଥରେ ଖାଇବାକୁ ଦିଆଯାଏ ସେଥିରେ ତମର କୌଣସି ଦୋଷ ନାହିଁ ?

ଜମ୍ପୟ ନାହିଁ । ଖାଦ୍ୟସାମଗ୍ରୀ ବରାବର ଅଭାବ । ଅଭାବ ନୋହିଥିଲେ, ଦୁଇ ତିନି ଦିନରେ ଥରେ ଆମର କୁଟୁମ୍ବ ଖାଆନ୍ତେ ?

ନାରାୟଣ ସାଧବ ଏଥିର କୌଣସି ପ୍ରତିକାର କରନ୍ତି ନାହିଁ ?

ସେ ଆମ କଥା ଶୁଣନ୍ତି ନାହିଁ । ତାଙ୍କର ଯାହା ଇଚ୍ଛା ସେ ତାହା କରନ୍ତି । ଆମେ ଉଦର ଜ୍ୱାଳାରେ ସମୟ ସମୟରେ ସମୁଦ୍ରରେ ଡକାୟତି କରୁଥିଲୁ ଏହା ମୁଁ ସ୍ୱୀକାର କରୁଛି ।

ସେ ସବୁକଥା ଛାଡ଼ । କହ, ତାମ୍ରଲିପ୍ତ ଯିବାକୁ ପ୍ରସ୍ତୁତ ଅଛ କି ନାହିଁ । ମୁଁ ଅନ୍ୟ ବନ୍ଦୋବସ୍ତ କରିବି ।

ଆପଣଙ୍କର ଆଦେଶ ପାଳନ ନ କରିବାର କ୍ଷମତା ମୋର ନାହିଁ । ଯଦି କ୍ଷମା କରିବେ ମୁଁ ଏତିକି କହିପାରେ ଯେ ତାମ୍ରଲିପ୍ତକୁ ଯିବା ମୋର ଇଚ୍ଛା ନୁହେଁ । ମୁଁ ସ୍ୱଚକ୍ଷୁରେ ମୋର ଖାମିନ୍ଦଙ୍କର ଦଣ୍ଡ ଦେଖି ସମ୍ଭାଳି ପାରିବି ନାହିଁ ।

ଦେଖୁଛି ତମେ ପ୍ରଭୁଭକ୍ତ, ବିଶ୍ୱାସୀ । ତୁମକୁ ମୁଁ ତାମ୍ରଲିପ୍ତ ନେବାକୁ ଚାହେଁ ନାହିଁ । ଏହି ଦୁଇଜଣଙ୍କ ଦ୍ୱାରା ମୁଁ ମୋର କାର୍ଯ୍ୟ ସମାଧାନ କରି ପାରିବି ।

ବାଲିରାଜା ଗୋଟିଏ ରତ୍ନର ଥଳି ଖୋଲି ତହିଁରୁ କେତେଗୁଡ଼ିଏ ପାଞ୍ଜିଆଙ୍କ ହାତକୁ ବଢ଼ାଇ କହିଲେ, ତୁମକୁ ମୁଁ ବିଶ୍ୱାସୀ ବୋଲି ଗ୍ରହଣ କରି ଏହି ଆଦେଶ କରୁଛି ଯେ ଏଠାକାର ବନ୍ଦୀମାନଙ୍କୁ ମୋର ଦୁଇ ଖଣ୍ଡି ବୋଇତରେ ନେଇ ତୁମେ ଜବଦ୍ୱୀପ ଯାଅ । ସମସ୍ତଙ୍କର ସୁବିଧା ପାଇଁ ତୁମକୁ ଦାୟୀ କରି ଯାଉଛି । ଯେପରି ତୁମେ କର୍ତ୍ତବ୍ୟରେ ହେଳା ନ କର । ଚାଲ, ବର୍ତ୍ତମାନ ବନ୍ଦୀମାନଙ୍କୁ ମୁକ୍ତ କରିବା ।

ପାଞ୍ଜିଆ ବାଲିରାଜା ଏବଂ ଚଞ୍ଚଳାକୁ ପ୍ରଣାମ କରି ଭକ୍ତି ଏବଂ ଆନନ୍ଦର ଚିହ୍ନ ଦେଖାଇ କହିଲା, ହେ ଭଗବାନ୍ । ମୋ ରାଜା ରାଣୀଙ୍କୁ ଦୀର୍ଘାୟୁ କର ।

ବାଲିରାଜା କଣ କହିବାକୁ ବସିଥିଲେ ନ କହି ମୁହଁ ଗମ୍ଭୀର କଲେ । ଚଞ୍ଚଳାର ପାପୁଲିକୁ ଟିକିଏ ଜୋରରେ ବୁଢ଼ା ଅଙ୍ଗୁଠିରେ ଚିପି ଦେଲେ । ଚଞ୍ଚଳା ମୁହଁ ଅବନତ କଲା । ଅଜଙ୍ଗ ନିକଟରେ ଠିଆ ହୋଇଥିଲା । ଆଗକୁ ପାଖକୁ ଆସି ଚଞ୍ଚଳାର ଆର ହାତ ଧରି କହିଲା, ରାଜୋ ଚାଲ ।

ସମସ୍ତେ ବନ୍ଦଶାଳା ଆଡ଼େ ଗଲେ ।

ବନ୍ଦଶାଳାରେ ଉପସ୍ଥିତ ହୋଇ—ବାଲ୍ୟରାଜା ନିଜ ହାତରେ ସମସ୍ତଙ୍କୁ ମୁକ୍ତ କରିବାକୁ ମନସ୍ଥ କଲେ । ପ୍ରଥମରୁ ଆରମ୍ଭ କଲେ ଉପର ମହଲାଅଞ୍ଚଳ। ଦେଖୁ ଦେଖୁ ଗୋଟି ଗୋଟି କରି କଙ୍କାଳସାର ବନ୍ଦୀମାନେ ମୁକ୍ତ ହୋଇ ବନ୍ଦଶାଳାର ପ୍ରାଙ୍ଗଣରେ ଠିଆ ହେଲେ । ପାଣ୍ଡିଅଙ୍କର କାର୍ଯ୍ୟ ଥିଲା, ସେ ବନ୍ଦୀମାନଙ୍କୁ ବୁଝାଇ ଦେବେ ଯେ ଦୟାବାନ୍ ବାଲ୍ୟରାଜା ସେମାନଙ୍କୁ ଚିରଦିନ ନିମନ୍ତେ ମୁକ୍ତ କରୁଛନ୍ତି । ପାଣ୍ଡିଅ ତାଙ୍କ କାର୍ଯ୍ୟ ଉପରେ ଯାଇ ଠିଆହେଲେ । ଅଜଙ୍ଗ ଲୁଚି ଲୁଚି ବାଲ୍ୟରାଜାଙ୍କ ଅଜ୍ଞାତରେ କେତେ ଜଣ ନର ନାରୀଙ୍କୁ ମୁକ୍ତ କଲା ।

ବାଲ୍ୟରାଜା ଉପର ଏବଂ ତଳର ସମସ୍ତ ବନ୍ଦୀଙ୍କୁ ମୁକ୍ତ କରି ସେମାନଙ୍କ ମନରେ ଦମ୍ଭ ଦେଲେ, ଆଶା ଦେଲେ । ମୁକ୍ତ ବନ୍ଦୀମାନେ ରାଜାଙ୍କର ଗୋଡ଼ତଳେ ଲମ୍ବ ଲମ୍ବ ହୋଇ ପଡ଼ିଲେ । ଅଧିକାଂଶ ଭାରତୀୟ ହେଲେ ମଧ୍ୟ ସମସ୍ତେ ନୁହନ୍ତି । ଏସିଆ ମହାଦେଶସ୍ଥ ଅନ୍ୟାନ୍ୟ ଦେଶର ଲୋକେ ମଧ୍ୟ ସେମାନଙ୍କ ମଧ୍ୟରେ ଅଛନ୍ତି । ରାଜା ପାଣ୍ଡିଅଙ୍କୁ ଡାକି କହିଲେ, ତୁମେ ଏବେ ସମୁଦ୍ରକୂଳକୁ ଯାଇ ମୋର ନାବିକମାନଙ୍କୁ କୁହ ସେମାନେ ଖାଦ୍ୟର ଆୟୋଜନ କରନ୍ତୁ । ବ୍ରହ୍ମଦେଶରୁ ମୁଁ ଏଥି ପାଇଁ କ୍ରୟ କରି ମଧ୍ୟଭଲଆ ଦୁଇଟି ବୋଇତ ଖାଦ୍ୟ-ସାମଗ୍ରୀରେ ପୂର୍ଣ୍ଣ କରି ଆଣିଛି । ଲୁଗାପଟା ମଧ୍ୟ ଯଥେଷ୍ଟ ଅଛି, ଯାଅ ।

ପାଣ୍ଡିଅ ଶନ୍ଦାୟମାନ ନରସମୁଦ୍ର ଭେଦ କରି ଚାଲିଗଲେ । ସେତେବେଳ ଯାଏ ବାଲ୍ୟରାଜା ଚନ୍ଦ୍ରଲାକୁ ଦେଖି ନ ଥିଲେ । ହଠାତ୍ ଚିନ୍ତାକଲେ, ଚନ୍ଦ୍ରଲା କାହିଁ ? ପ୍ରକୃତରେ ଚନ୍ଦ୍ରଲା କାହିଁ ? ସେ ତ ନିକଟରେ ନାହିଁ । ବାଲ୍ୟରାଜା ଉଦ୍‌ବଗ୍ନତାର ସହିତ ଏଣେ ତେଣେ ଚାହିଁଲେ । ଦେଖିଲେ, ନିକଟରେ ଅଜଙ୍ଗ ଠିଆ ହୋଇ ହାତ ହଲାଇ କାହା ସଙ୍ଗେ କଥାବାର୍ତ୍ତା କରୁଛି । ସେ ଅଜଙ୍ଗ ନିକଟକୁ ଯାଇ ଧୀରେ ଧୀରେ ତାର ମୁଣ୍ଡ ଉପରେ ହସ୍ତ ସ୍ଥାପନ କଲେ ।

ଅଜଙ୍ଗ ଚମକି ପଡ଼ି ପଛକୁ ଚାହିଁଲା, ତା ରାଜା ।

ରାଜା ସଙ୍ଗେ ସଙ୍ଗେ ପଚାରିଲେ, ଅଜଙ୍ଗ, ଚନ୍ଦ୍ରଲା କାହିଁ ?

ଅଜଙ୍ଗ ଜାଣେ ନାହିଁ ବୋଲି ମୁଣ୍ଡ ହଲାଇ କହିଲା, ଚନ୍ଦ୍ରୋଲା କାହେଁ। । ସେ ସଙ୍ଗେ ସଙ୍ଗେ ସେହି ଲୋକମାନଙ୍କ ଭିତରେ ଅଦୃଶ୍ୟ ହୋଇଗଲା ।

ବାଲ୍ୟରାଜା ଅଗଣାର ଗୋଟିଏ ସ୍ଥାନରୁ ଅନ୍ୟସ୍ଥାନକୁ ଯାଇ ମନେ ମନେ ଚନ୍ଦ୍ରଲାକୁ ଖୋଜିଲେ । ସେ ଯେଉଁଆଡ଼େ ଯାଉଥାନ୍ତି ଲୋକେ ଦୁଇ ପାଖକୁ ଅଡ଼େଇ ହୋଇ ତାଙ୍କୁ ବାଟ ଛାଡ଼ି ଦେଉଥାନ୍ତି । ବିନୀତ ଭାବରେ ମସ୍ତକାବନତ କରି ପ୍ରଣାମ କରୁଥାନ୍ତି ।

କିଛିଦୂର ଅଗ୍ରସର ହୋଇ ରାଜା ଦେଖିଲେ, ଗୋଟିଏ କାନ୍ଥର କରରେ ଅନେକ ଲୋକ ଠିଆ ହୋଇ ନିଜର ସମସ୍ତ ଦୁଃଖ ଭୁଲି ସ୍ଥିରଚକ୍ଷୁରେ କଣ ଦେଖୁଛନ୍ତି । ସେ ନିକଟକୁ ଯାଇ ଦେଖିଲେ ଜଣେ ପୁରୁଷ ଏବଂ ଜଣେ ସ୍ତ୍ରୀ ପରସ୍ପରକୁ ଆଲିଙ୍ଗନ କରି କାନ୍ଦୁଛନ୍ତି । ମୁକ୍ତବନ୍ଦୀମାନଙ୍କ ମଧ୍ୟରୁ କିଏ କେତେ ପ୍ରକାର ଅର୍ଥ କରି ତାର ନିକଟସ୍ଥ ଲୋକକୁ ଏହାର କାରଣ ବୁଝାଉଛି । ସେ ସନ୍ତୁଷ୍ଟ ନ ହୋଇ ମୁଣ୍ଡ ହଲାଉଛି ।

ବାଲରଜା ସଙ୍ଗେ ସଙ୍ଗେ ଘଟଣାଟି ବୁଝିନେଲେ । ଭାଇ ଭଉଣୀଙ୍କର ମିଳନ ଦେଖି ସେ ଭାରି ଖୁସି ହେଲେ । ତାଙ୍କର ଚକ୍ଷୁରୁ କରୁଣାର ଅଶ୍ରୁ ବିନ୍ଦୁ ଗଡ଼ି ପଡ଼ିଲା । ସେ ପୂର୍ବ ପରି ଦଣ୍ଡାୟମାନ ହୋଇ ଚିନ୍ତାକଲେ, ବୋଧହୁଏ ଚମ୍ପିଲା ତାର ଭାଇ ଅଧିରାଜ ନିକଟରେ ରହିବ । ସେଇଆ ତ ବାଞ୍ଛନୀୟ । ରମଣୀର ଅକଥନ ବୋଝରୁ ମୁଁ ମୁକ୍ତ ହେବି ।

କିଏ ଜଣେ ଆଉ ପାଖରୁ ବୁଲିପଡ଼ି ଚିତ୍କାର କଲା, ଚମ୍ପୋଲେଁ । ଚମ୍ପିଲା ଅଜାଙ୍ଗର ପାଟି ବାଉ ଗୃହଆଡ଼କୁ ଅନାଇଲା । ଦେଖିଲା, ଟିକିଏ ଦୂରରେ ସ୍ୱୟଂ ବାଲରାଜା ଦଣ୍ଡାୟମାନ ହୋଇ ସେମାନଙ୍କୁ ଅନାଇଛନ୍ତି । ଅଧିରାଜର କାନରେ ସେ କଣ ଚୁପ୍ କରି କହିଦେଲା ।

ଉଭୟେ ବାଲରାଜାଙ୍କ ନିକଟକୁ ଆସିଲେ । ରାଜା କିଛି କହିବା ପୂର୍ବରୁ ଦୁଇଜଣଯାକ ତାଙ୍କ ପଦତଳେ ମସ୍ତକ ଲଗାଇ ଦେଲେ । ବାଲରାଜାଙ୍କର ଆଦେଶ ପାଳିତ ହେଲା ।

ଚମ୍ପିଲା ବିନୀତ ଭାବରେ କହିଲା, ଆପଣଙ୍କୁ ଧନ୍ୟବାଦ ଦେବାର ସାହସ...

ସେ ସାହସ ତୁମଠାରେ ନାହିଁ, ଏ ସ୍ଥଳରେ ଧନ୍ୟବାଦ କେବଳ ଭଗବାନଙ୍କୁ ଦିଆଯାଇ ପାରେ, ମୋତେ ନୁହେଁ । ମୁଁ ମୋର କର୍ତ୍ତବ୍ୟ ପାଳିଛି, ଏତିକି ।

ଏକସ୍ୱରରେ କେତେଜଣ ଲୋକ ଆନନ୍ଦରେ କରତାଳି ମାରି ଚିତ୍କାର କଲେ ରାଜା ରାଣୀଙ୍କର ମଙ୍ଗଳ ହେଉ ।

ବାଲରାଜା ଅସମ୍ମତି ପ୍ରକାଶ କଲାଭଳି ମୁଣ୍ଡ ହଲାଇଲେ ସତ, ବାଧାଦେଲେ ନାହିଁ । ଦେଖିଲେ ଚମ୍ପିଲାର ମୁଖ ଅବନତ ।

ବାଲରାଜା ଯେତେ ଶୀଘ୍ର ସୂର୍ଯ୍ୟଦ୍ୱୀପ ତ୍ୟାଗ କରିବେ ବୋଲି ମନସ୍ଥ କରିଥିଲେ ସମୁଦ୍ର ଏବଂ ଆକାଶର ଅବସ୍ଥା ଯୋଗୁ ତାହା କାର୍ଯ୍ୟରେ ପରିଣତ କରି

ପାରିଲେ ନାହିଁ । ବାଧ୍ୟ ହୋଇ ଏକ ସପ୍ତାହ ଅଟକି ରହିଲେ । ପରେ ସମସ୍ତ ଆୟୋଜନ କରି ପ୍ରାୟ ସମସ୍ତଙ୍କୁ ଜବଦ୍ୱୀପ ପଠାଇଦେଲେ । ମୁକ୍ତ ବନ୍ଦୀମାନଙ୍କ ମଧ୍ୟରୁ ଦୁଇଜଣ, ପ୍ରହରୀ ଦୁଇଜଣ ଏବଂ ନାବିକମାନଙ୍କୁ ସଙ୍ଗରେ ନେଇ ଜବଦ୍ୱୀପରୁ ଆଣିଥିବା ପ୍ରକାଣ୍ଡ ବୋଇତରେ ତାମ୍ରଲିପ୍ତ ଯାତ୍ରା କଲେ ।

ବାଲିରାଜା, ଚଞ୍ଚଳା ଏବଂ ଅଧିରାଜ ତିନିଜଣଙ୍କର ମନ ଆନନ୍ଦରେ ନାଚି ଉଠିଲା । ବହୁଦିନ ପରେ ସହସ୍ର ବାଧାବିଘ୍ନ ଅତିକ୍ରମ କରି ସେମାନେ ପୁନର୍ବାର ଜନ୍ମଭୂମିକୁ ଫେରି ଆସୁଛନ୍ତି । ଜଗତର ରାଣୀ ଭାରତବର୍ଷ, ଭାରତର ସନ୍ତାନ ବୋଲି ଜଳଯାତ୍ରୀଙ୍କର ମନ ଆନନ୍ଦରେ ଅଧୀର । ସେମାନେ ମନେ ମନେ ଗର୍ବ କରୁଛନ୍ତି । ସଗର ଦ୍ୱୀପରେ ଉପସ୍ଥିତ ହେବାଯାଏ ଏମାନଙ୍କ ଉପରେ କୌଣସି ବିପଦ ପଡ଼ି ନ ଥିଲା । ସଗର ଦ୍ୱୀପର ନିକଟବର୍ତ୍ତୀ ହେଲା ବେଳେ ହଠାତ୍ ଦୁଇ ଖଣ୍ଡ ମଧ୍ୟଭଲିଆ ବୋଇତ ଝୁଲ ଭାଗର ନିକଟରେ ସେମାନଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ଥିଲା ଭଳି ଜଣା ଗଲା । ତେଣୁ ସେମାନେ ବାଧ୍ୟ ହୋଇ ସଗରଦ୍ୱୀପରେ ଗୃରିଦିନ କଟାଇଲେ । ତଥାପି, ବୋଇତ ଦୁଇଟି ସଗର ଦ୍ୱୀପ ତ୍ୟାଗ କଲେ ନାହିଁ । ଏଣେ ଦିନ ଯେତିକି ଡେରି ହେଉଛି, ବାଲିରାଜାଙ୍କର ମନ ସେତିକି ଅସ୍ଥିର ହେଉଛି । ତିଥି ଜଣା ନ ଥିଲେ ମଧ୍ୟ ଚନ୍ଦ୍ରଙ୍କୁ ଅନାଇଲେ ଜଣାଯାଉଛି, ଯେପରି ପୂର୍ଣ୍ଣିମା ମୋଟେ ତିନି ଗୃରି ଦିନ ଅଛି । କର୍ତ୍ତବ୍ୟ କଣ ?

ସେଦିନ ଦୁଇ ଖଣ୍ଡ ବୋଇତରୁ ଗୋଟିଏ ବୋଇତ ଅଦୃଶ୍ୟ ହୋଇଗଲା । ବାଲିରାଜାଙ୍କ ମନରେ ସନ୍ଦେହ ହେଲା । ଅନେକ ସମୟ ଚିନ୍ତା କରି ସେ ଘଟଣାର ମର୍ମ ସ୍ଥିର କରି ପାରିଲେ । ସେହି ରାତିରେ ସେ ବୋଇତ ଉପରେ ଚଢ଼ାଉ କଲେ ।

ମେଦିନୀପୁର ଜିଲ୍ଲାର ରୂପନାରାୟଣ ନଦୀକୂଳସ୍ଥ ଆଧୁନିକ ତାମୁଲୁକ ଗ୍ରାମଟିକୁ ଦେଖି କିଏ ବିଶ୍ୱାସ କରିବ ଯେ, ଏହା ଦିନେ ଭାରତର ଗୋଟିଏ ସମୃଦ୍ଧିଶାଳୀ ପ୍ରଧାନ ନଗରୀ ଥିଲା ? କେବଳ ଭାରତର କାହିଁକି, ପୂର୍ବ ଗୋଲାର୍ଦ୍ଧର ସମସ୍ତ ଦେଶରେ ଏହାର ଖ୍ୟାତି ବ୍ୟାପିଥିଲା । ଆଜି ଯେଉଁ ତାମୁଲୁକ ଗ୍ରାମଟି ସମୁଦ୍ର କୂଳରୁ ପ୍ରାୟ ଷାଠିଏ ମାଇଲ ଦୂରରେ ଅବସ୍ଥିତ, ଦିନେ ତାହା ସମୁଦ୍ର କୂଳରେ ଅବସ୍ଥିତ ଥିଲା ।

ଯେଉଁ ସମୟର ଘଟଣା ବର୍ଣ୍ଣନା କରାଯାଉଛି ସେତେବେଳକୁ ତାମ୍ରଲିପ୍ତ ସମୁଦ୍ରରୁ ପ୍ରାୟ ନଅ ମାଇଲ ଦୂରରେ ଥିଲା । କଳିଙ୍ଗ ଉପକୂଳରେ ଏହା ଥିଲା ପ୍ରଧାନ ବନ୍ଦର । ସହରର ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ହିନ୍ଦୁ ଧର୍ମାବଲମ୍ବୀ; କିନ୍ତୁ

ବୌଦ୍ଧ ସଂଘ ଏବଂ ବୌଦ୍ଧ ବିହାର ଅନେକ ଥିଲା । ଅନେକ ବୌଦ୍ଧ ସନ୍ନ୍ୟାସୀ ଥିଲେ । ତାମ୍ରଲିପ୍ତର କୈବର୍ତ୍ତ ରାଜା କାହ୍ନୁଭୂୟାଁ ପ୍ରତ୍ୟେକ ଧର୍ମକୁ ସମ୍ମାନ ଦେଖାଉଥିଲେ, ମାତ୍ର ନିଜେ ଥିଲେ ହିନ୍ଦୁ ।

ସହରଟି ଦେଖିବାକୁ ମନୋହର । ଦ୍ୱିତଳ, ତ୍ରିତଳ, ଏପରି କି ଚତୁସ୍ତଳ ପ୍ରାସାଦମାନ ରାଜପଥର ଦୁଇପାଖେ ଠିଆ ହୋଇଥିଲେ । ତାମ୍ରଲିପ୍ତରେ କେବଳ ସାଧବମାନେ ବାସ କରୁ ନ ଥିଲେ । ସାଧବ ମାନଙ୍କର ବୋଇତ ଚଳାଇବାକୁ ନାବିକ, ବାଣିଜ୍ୟ ପଦାର୍ଥ ଯୋଗାଇବାପାଇଁ ଅନେକ ଯୋଗାଣିଆ ବରାବର କାର୍ଯ୍ୟବ୍ୟସ୍ତ ଥିଲେ ।

ତାମ୍ରଲିପ୍ତରୁ ବିଦେଶକୁ ପଠାହେଉଥିବା ପଦାର୍ଥମାନଙ୍କ ମଧ୍ୟରେ ଛିଟ, ରେସମୀ, ମଠା ପ୍ରଭୃତି ନାନା ଜାତିର ଲୁଗା, ସ୍ୱର୍ଣ୍ଣ ଏବଂ ରୌପ୍ୟର ଅଳଙ୍କାର, ନାନାଜାତି ରତ୍ନ, ଲବଣ, ଚନ୍ଦନକାଠ ଇତ୍ୟାଦି ହେଉଛି ପ୍ରଧାନ । ଏ ସମସ୍ତ ଯୋଗାଇବାକୁ ତାମ୍ରଲିପ୍ତରେ ଅନେକ ଲୋକ ଥିଲେ । କିନ୍ତୁ ସାଧାରଣତଃ ସାଧବମାନେ ଥିଲେ ବଡ଼ଲୋକ ।

ତାମ୍ରଲିପ୍ତରୁ ଗୌଡ଼ ଏବଂ ଉତ୍କଳର ଅନ୍ୟାନ୍ୟ ଅନେକ ସ୍ଥାନକୁ ସେ କାଳର ପକ୍କା ରାସ୍ତା ପଡ଼ିଥିଲା । ଏହି ରାସ୍ତାବାଟେ ଲୋକେ ବଣିଜ ପଦାର୍ଥ ନେଇ ତାମ୍ରଲିପ୍ତକୁ ଆସୁଥିଲେ । ତେଣୁ ଦେଶ ଭିତରର ସଙ୍ଗେ ତାମ୍ରଲିପ୍ତର ଘନିଷ୍ଠ ସମ୍ପର୍କ ଥିଲା ।

ରୂପନାରାୟଣ ନଦୀର ବକ୍ଷ ଶତଶତ ବୋଇତରେ ପୂର୍ଣ୍ଣ ଥିଲା । ବିଭିନ୍ନ ଦେଶରୁ ଲୋକେ ବାଣିଜ୍ୟ କରିବାକୁ ଆସି ନଦୀ କୂଳରେ ଆଶ୍ରୟ ଗ୍ରହଣ କରୁଥିଲେ । ଏପରି କି କେବଳ ତାମ୍ରଲିପ୍ତ ସହର ଦେଖିବାକୁ ଲୋକେ ବହୁଦୂରରୁ ଆସୁଥିଲେ । କୋଟି-କୀର୍ତ୍ତି-ମାଳିନୀ ଉତ୍କଳ-କମଳାଙ୍କ ମସ୍ତକସ୍ୱରୂପ ତାମ୍ରଲିପ୍ତ ଆଜି ବଙ୍ଗଦେଶରେ ଗୋଟିଏ କ୍ଷୁଦ୍ର ନଗଣ୍ୟ ପଲ୍ଲୀ । ତାର ଅତୀତ ଆଜି ଭୂଗର୍ଭରେ ଲୁପ୍ତ ।

ସହରଟି ଅନେକଗୁଡ଼ିଏ ସାହିରେ ବିଭକ୍ତ । ସାଧବମାନେ ସମସ୍ତେ ଗୋଟିଏ ସାହିରେ ବାସ କରୁ ନ ଥିଲେ । ସହରର ପ୍ରତ୍ୟେକ ପଡ଼ା ବା ସାହିରେ ନିଜ ନିଜର ବୃହତ୍ ଅଟ୍ଟାଳିକାମାନ ନିର୍ମାଣ କରିଥିଲେ । ଯେଉଁ ସମୟର ଘଟଣା, ସେ ସମୟକୁ ତାମ୍ରଲିପ୍ତର ନୌବାଣିଜ୍ୟ ହ୍ରାସ ଲଭିଥିଲା । ଏହାର ପ୍ରଧାନ କାରଣ, ରୂପନାରାୟଣ ନଦୀ ପ୍ରତିବର୍ଷ ସମୁଦ୍ରରେ ପଟୁ ପକାଇ ସମୁଦ୍ରକୁ ଦୂରକୁ ଠେଲି ନେଉଥିଲା । ଦ୍ୱିତୀୟତଃ ସାଧବମାନେ ସମୁଦ୍ରର ଜଳଦସ୍ୟୁ ଭୟରେ ଆଉ ବୋଇତ ନେଇ ଅଧିକ ଦୂର-ଦେଶରେ ବାଣିଜ୍ୟ କରିବାକୁ ନ ଯାଇ ବାପ ଅଜାଙ୍କର ସଞ୍ଚିତ ଧନ ବ୍ୟୟ କରି ସୁଖରେ ରହିବାକୁ ଇଚ୍ଛା କଲେ । ପାଶ୍ଚାତ୍ୟ

ଦେଶମାନଙ୍କ ପରି ଉତ୍କଳର ରାଜାମାନେ ସେମାନଙ୍କୁ ଉତ୍ସାହିତ କରୁ ନ ଥିଲେ। ସେମାନେ ଧର୍ମ ଏବଂ ଚିନ୍ତାରେ ବରଂ ତାମ୍ରଲିପ୍ତର ରାଜାମାନେ ବୃଥା କଥା ନେଇ ସାଧବମାନଙ୍କ ଉପରେ ଅତ୍ୟାଚାର କରିବାକୁ କୁଣ୍ଠିତ ହେଉ ନ ଥିଲେ।

ସପ୍ତମ ଶତାବ୍ଦୀରେ ଯେତେବେଳେ ହର୍ଷବର୍ଦ୍ଧନ ଭାରତ ସିଂହାସନ ଅଳଂକୃତ କରି ଦେଶବିଦେଶ ବିଜୟ କରିବାରେ ବ୍ୟସ୍ତ ଥିଲେ, ସେତେବେଳେ ଲଲାଟେନ୍ଦୁ କେଶରୀ ଲିଙ୍ଗରାଜଙ୍କର ଜଗତ ବିଖ୍ୟାତ ମନ୍ଦିର ନିର୍ମାଣରେ ନିଯୁକ୍ତ ଥିଲେ। ଏଣେ ତାମ୍ରଲିପ୍ତରେ କାହ୍ନୁ ଭୂୟାଁ ରାଜତ୍ୱ କରି ବଣିକମାନଙ୍କୁ ବାଣିଜ୍ୟ କରିବାକୁ ଉତ୍ସାହିତ କରୁଥିଲେ। କେବଳ ତାଙ୍କର ପ୍ରରୋଚନାରେ ସାଧବ ସଭା ତାମ୍ରଲିପ୍ତରେ ବସିବାର ଆୟୋଜନ ହୋଇଥିଲା।

ବ୍ରହ୍ମଦେଶରୁ ଫେରି ନାରାୟଣ ସାଧବ ସେହି ଆୟୋଜନ କରିବାରେ ଲାଗିଗଲେ। ଧନ ସ୍ରୋତମୁହଁରେ ଛୁଟିଲା। ବ୍ରହ୍ମଦେଶରୁ ଫେରି ନାରାୟଣ ସାଧବ ଅପରିମିତ ଧନ ଭୁବନେଶ୍ୱର ପଠାଇଦେଲେ। ବାହାରେ କହି ବୁଲିଲେ, ମନ୍ଦିରର ପ୍ରତିଷ୍ଠା ନିମନ୍ତେ ସେ ଧନ ଦେବାଳୟକୁ ଦାନ କରି-ଛନ୍ତି। ତତ୍ପରେ ଅପର୍ଯ୍ୟାପ୍ତ ଧନ ବ୍ୟୟ କରି ତାମ୍ରଲିପ୍ତର ଆବାଲବୃଦ୍ଧ-ବନିତାଙ୍କୁ ଭୋଜି ଖୁଆଇଲେ। ଦେଶର ନାନା ସ୍ଥାନରେ ବ୍ରାହ୍ମଣମାନଙ୍କୁ ଭୋଜନ ଦେଇ ବହୁ ଧନ ଅର୍ପଣ କଲେ। କାହ୍ନୁ ଭୂୟାଁଙ୍କୁ ମଧ୍ୟ ଉପହାର ସ୍ୱରୂପ ସେ ବହୁ ଧନ ଉପହାର ଦେଲେ। ଏ ସମସ୍ତର ଭିତିରିଆ କାରଣ କଣ ରାଧାଶ୍ୟାମଙ୍କ ପରି ପ୍ରଧାନ ଶତ୍ରୁ ସୁଦ୍ଧା ଶତ୍ରାକରି କୌଣସିମତେ ସ୍ଥିର କରି ପାରିଲେ ନାହିଁ। ଯହିଁ ଶୁଣ ତହିଁ ନାରାୟଣ ସାଧବଙ୍କର ପ୍ରଶଂସା। ପ୍ରତ୍ୟେକ ଦେବାଳୟରେ ନାରାୟଣ ସାଧବଙ୍କର ମଙ୍ଗଳ କାମନା କରି ପୁରୋହିତମାନେ ପୂଜା କରୁଛନ୍ତି।

ବ୍ରହ୍ମଦେଶରୁ ଫେରିବାର ଏକ ସପ୍ତାହ ପରେ ଶୁଣାଗଲା ନାରାୟଣ ସାଧବଙ୍କର ଗୋଟିଏ ପୁତ୍ର ସନ୍ତାନ ଜାତ ହୋଇଛି। ଏ ସମ୍ବାଦ ଶୁଣି ଲୋକେ ସନ୍ତୁଷ୍ଟ ହୋଇ ପୁତ୍ରର ଦୀର୍ଘାୟୁ କାମନା କଲେ। ଯେଉଁ ମୁଷ୍ଟିମେୟ ଶତ୍ରୁ ତାଙ୍କ ବିପକ୍ଷରେ ନାନା କଥା କହିଲେ, ସେମାନେ ଲୋକଙ୍କର ଚକ୍ଷୁ-ଶୂଳ ହୋଇ ପଡ଼ିଲେ। ନାରାୟଣ ସାଧବ ଲୋକଙ୍କୁ ପଚେଇ ରଖିଥିଲେ। ନଦୀକୂଳରେ ସାଧବ ସଭାର ଆୟୋଜନ ହେଉଥିଲା। ବହୁମୁଦ୍ରା ବ୍ୟୟକରି ଦୂରଦେଶାଗତ ବିଦେଶୀ ବଣିକମାନଙ୍କର ରହିବା ପାଇଁ ନଦୀ କୂଳେ କୂଳେ ଅନେକ କୋଠା ତୋଳା ହୋଇଥିଲା। ଏ ସବୁର ବ୍ୟୟଭାର ନାରାୟଣ ସାଧବ ନିଜେ ବହନ କରିଥିଲେ।

ସହରଟି ବଡ଼ ବଡ଼ିଆ ଭାବରେ ସଜା ହୋଇଥିଲା । ପ୍ରତ୍ୟେକ ଅଟ୍ଟାଳିକା ଉପରେ ପତାକା, ପ୍ରତ୍ୟେକ ଲୋକ ମୁହଁରେ ହସ, ସତେ ଯେପରି ସମସ୍ତେ ଆନନ୍ଦମଗ୍ନ । କାହାର ମନରେ ଟିକିଏ ହେଲେ ଦୁଃଖ ନାହିଁ । ସେ ସମୟରେ ପରଦା ପ୍ରଥା ନ ଥିଲା । ସ୍ତ୍ରୀଲୋକମାନେ ନିର୍ଭୟରେ ରାଜପଥରେ ଭ୍ରମଣ କରୁଥିଲେ ।

ତ୍ରୟୋଦଶୀ ଦିନ ସନ୍ଧ୍ୟା ସମୟରେ ବାଲିରାଜାଙ୍କର ବୋଇତ ତାମ୍ରଲିପ୍ତରେ ଲାଗିଲା । ସ୍ୱୟଂ କାହ୍ନୁ ଭୂୟାଁ ଆସି ତାଙ୍କୁ ଅଭ୍ୟର୍ଥନା କରି ସଭାରେ ଯୋଗ ଦେବା ନିମନ୍ତେ ଅନୁମତି ପତ୍ର ଦେଲେ । ବାଲିରାଜା ଅନୁମତି ପତ୍ର ପଢ଼ି ମନେ ମନେ ଖୁସି ହେଲେ । ସେହି ପତ୍ର ନେଇ ଚଞ୍ଚଳା ଏବଂ ଅଧିରାଜ ପ୍ରଭୃତି ସଭାଗୃହରେ ପ୍ରବେଶ କରିପାରିବେ । କାହ୍ନୁ ଭୂୟାଁଙ୍କୁ ପଚାରି ବୁଝିଲେ ଯେ ଭଦ୍ର ଘରର ସ୍ତ୍ରୀଲୋକମାନଙ୍କ ନିମନ୍ତେ ଉପଯୁକ୍ତ ବନ୍ଦୋବସ୍ତ କରାଯାଇଛି ।

ବୋଇତରୁ ଓହ୍ଲାଇ ବାଲିରାଜା, ଅଜଙ୍ଗ, ଚଞ୍ଚଳା ଏବଂ ଅଧିରାଜ ନଦୀକୂଳରେ ବୁଲି ବୁଲି ତାମ୍ରଲିପ୍ତର ସୌନ୍ଦର୍ଯ୍ୟ ଅବଲୋକନ କରି ବିସ୍ମିତ ହେଉଥିଲେ । ବାଲିରାଜାଙ୍କର ଆଗମନ ବାର୍ତ୍ତା ଶୁଣି ନାରାୟଣ ସାଧବ ତାଙ୍କୁ ନିମନ୍ତ୍ରଣ କରିବାକୁ ପାଲିଙ୍କି ଚଢ଼ି ନଦୀ କୂଳକୁ ଆସିଲେ । ମାତ୍ର ସେ ଦୂରରୁ ଯାହା ଦେଖିଲେ, ସେଥିରେ ତାଙ୍କର ହୃଦୟ ଭୟରେ ଥରି ଉଠିଲା । ଚଞ୍ଚଳା ଏବଂ ଅଧିରାଜ ! ଏମାନେ ବାଲିରାଜାଙ୍କ ସାଙ୍ଗରେ ଆସିଲେ କୁଆଡ଼ୁ ? ଅଧିରାଜ ତ ସ୍ୱର୍ଣ୍ଣ-ଦ୍ୱୀପରେ ବନ୍ଦୀ ଥିଲା । ଚଞ୍ଚଳାକୁ ତ ବାଲିଦ୍ୱୀପରେ ଛାଡ଼ି ଆସିଥିଲେ ? ତେବେ ସେମାନେ ଆସିଲେ କିପରି ? ସେ ସଭା ଭବନର ଅସମ୍ପୂର୍ଣ୍ଣ ଗୃହ ମଧ୍ୟକୁ ପାଲିଙ୍କି ନେବାକୁ କହିଲେ । ଆଦେଶ ପାଳିତ ହେଲା । ନାରାୟଣ ଗୋଟିଏ ପ୍ରକୋଷ୍ଠରେ ପଶି ଏମାନଙ୍କ ଗତି ଲକ୍ଷ୍ୟ କଲେ ।

ନାରାୟଣ ସାଧବ ଦେଖିଲେ, କିଛି ସମୟ ପରେ ଖଣ୍ଡେ ସବାରି ଓ ଛଅ ଖଣ୍ଡ ପାଲିଙ୍କି ଆସି ବାଲିରାଜା ଠିଆହୋଇଥିବା ସ୍ଥାନରେ ଉପସ୍ଥିତ ହେଲା । ଆଗ ପାଲିଙ୍କିରୁ ଜଣେ ଭଦ୍ରଲୋକ ଓହ୍ଲାଇ ବାଲିରାଜାଙ୍କୁ ପ୍ରଣାମ କଲେ । ସେ ଭଦ୍ରଲୋକ ଆଉ କେହି ନୁହନ୍ତି—ସ୍ୱୟଂ ରାଧାଶ୍ୟାମ । ରାଧାଶ୍ୟାମଙ୍କୁ ଦେଖି ନାରାୟଣ କ୍ରୋଧରେ ଗର୍ଜି ଉଠିଲେ । ଚିତ୍କାର କରି ନିଜକୁ ନିଜେ କହିଲେ, ଷଡ଼ଯନ୍ତ୍ର ! ଭୀଷଣ ଷଡ଼ଯନ୍ତ୍ର ଓଃ !

ବାଲିରାଜା ରାଧାଶ୍ୟାମଙ୍କୁ ଏକାଥରେ ଆଲିଙ୍ଗନ କରି, ତାଙ୍କ କାନରେ କଣ ଦୁଇପଦ କହିଲେ । ରାଧାଶ୍ୟାମ ଟିକିଏ ଦୂରକୁ ଘୁଞ୍ଚିଯାଇ ବାଲିରାଜାଙ୍କୁ ସ୍ଥିରଦୃଷ୍ଟିରେ ଅନାଇଁ ମୁଣ୍ଡ ଝୁଙ୍ଗାଇଲେ । ସନ୍ଧ୍ୟା ହୋଇ ଆସୁ ଥିବାରୁ ନାରାୟଣ

ବିଶେଷ କିଛି ଦେଖି ପାରିଲେ ନାହିଁ; ତାଙ୍କୁ ଜଣାଗଲା, ଯେପରି ବାଲରାଜା ଏବଂ ଅନ୍ୟମାନେ ପାଲିଙ୍କି ଚଢ଼ି ତାମ୍ରଲିପ୍ତର ଜନସ୍ରୋତ ଭିତରେ ମିଶିଗଲେ ।

ବାଲରାଜା ଅଦୃଶ୍ୟ ହୋଇଯିବା ପରେ ନାରାୟଣ ସାଧବ ପାଗଳ ପରି ନଦୀ କୂଳକୁ ଧାଇଁଲେ । ବେହେରାମାନେ ତାଙ୍କର ଅନୁଗମନ କଲେ । ନଦୀ କୂଳରେ ଉପସ୍ଥିତ ହୋଇ ଦେଖିଲେ, ବୋଇତରେ କେତେଜଣ ଲୋକ ଚିହ୍ନୁଛନ୍ତି । ହାତ ଠାରି ସେମାନଙ୍କ ମଧ୍ୟରୁ ଜଣକୁ ପାଖକୁ ଡାକିଲେ । ସେ ନିକଟକୁ ଆସିବାରୁ ନାରାୟଣ ସାଧବ ଗୃହଆଡ଼କୁ ଗୃହିଁ ପଚାରିଲେ, ଏ ବୋଇତ କାହାର ?

ଲୋକଟି ବାଲରାଜାଙ୍କର ଜଣେ ନାବିକ । ସେ କୌଣସି ସନ୍ଦେହ ନ କରି ମାନ୍ୟ ଦେଖାଇ କହିଲା, ବାଲରାଜାଙ୍କର ।

କେଉଁଠୁ ଆସିଛ ?

ଆଜ୍ଞା, ସୁବର୍ଣ୍ଣଦ୍ୱୀପରୁ ।

ସୁବର୍ଣ୍ଣଦ୍ୱୀପରୁ ?

ନାରାୟଣ ସାଧବଙ୍କର ଆପାଦ ମସ୍ତକ ଭୟରେ କମ୍ପିତ ହେଲା । ସେ କିଛି ସମୟ ଚିନ୍ତା କରି ପଚାରିଲେ, ଆଛା ନାବିକ, କହି ପାରିବ କି ବାଲରାଜା ସୁବର୍ଣ୍ଣଦ୍ୱୀପକୁ କାହିଁକି ଯାଇଥିଲେ ?

ଆପଣଙ୍କର ତହିଁରେ ଅବଶ୍ୟକ କଣ ?

ଅବଶ୍ୟକ ଅଛି ।

ଆପଣ କିଏ ?

ମୁଁ ରାଜାଙ୍କର ଲୋକ । ଏଠାକାର ନିୟମ, ଯେଉଁ ନୂଆ ବୋଇତ ଆସି ଏ ସହରରେ ଲାଗେ, ସେ ବିଷୟରେ ସମସ୍ତ ଘଟଣା ଉତ୍ତମରୂପେ ନ ବୁଝିଲେ ବୋଇତକୁ କୂଳରେ ରହିବାକୁ ଅନୁମତି ଦିଆଯିବ ନାହିଁ ।

ଆପଣ ଏ ସମସ୍ତ ଘଟଣା ବାଲରାଜାଙ୍କଠୁ ଭଲଭାବରେ ବୁଝି ପାରିବେ ।

ବାଲରାଜା କେଉଁଠିକୁ ଯାଇଛନ୍ତି ?

ରାଧାଶ୍ୟାମ ସାଧବ ସେମାନଙ୍କୁ ନିମନ୍ତ୍ରଣ କରି ନେଇଛନ୍ତି ।

ତମର ବାଲରାଜା କ'ଣ ରାଧାଶ୍ୟାମ ସାଧବଙ୍କୁ ଆଗରୁ ଚିହ୍ନିଥିଲେ ?

ଯେତେଦୂର ସମ୍ଭବ ଚିହ୍ନି ଥିଲେ । ଆପଣ ଏ ପ୍ରଶ୍ନଗୁଡ଼ାକ ମୋତେ ପଚାରୁଛନ୍ତି କିଆଁ ?

ନା, ବିଶେଷ କିଛି କାରଣ ନାହିଁ । ତେବେ ବାଲିରାଜାଙ୍କ ନାମ ଶୁଣି ମୋର ମନରେ କିପରି ଆନନ୍ଦ ଆସୁଛି । ସେ ମୋର ପରିଚିତ ବନ୍ଧୁ । ଅଛା ନାବିକ, ସୁବର୍ଣ୍ଣଦ୍ୱୀପର ବନ୍ଦୀମାନଙ୍କୁ ମୁକ୍ତ କରିବାର କଥା ଥିଲା । ମୁଁ ସେଥିନିମନ୍ତେ ବ୍ରହ୍ମଦେଶରେ ରାଜାଙ୍କୁ ଉପର କହିଥିଲି । ସେଥି ନିମନ୍ତେ ମୁଁ ଭାରି ଉଦ୍‌ବିଗ୍ନ ଅଛି । କହି ପାରିବ କି ବାଲିରାଜା ସେମାନଙ୍କୁ ମୁକ୍ତ କରିଛନ୍ତି କି ?

ଆଜ୍ଞା ହଁ କରିଛନ୍ତି । ନାବିକ ଭାବିଲା, ବୋଧହୁଏ ଏ ବାଲିରାଜାଙ୍କର କିନୈକ ଅନ୍ତରଙ୍ଗ ବନ୍ଧୁ । ନୋହିଲେ ଏତେ କଥା ଜାଣନ୍ତେ କିପରି ?

ପ୍ରହରୀମାନେ ବାଧାଦେଲେ ନାହିଁ ?

ଦେଲେ, କିନ୍ତୁ ଶେଷରେ ପରାସ୍ତ ହେଲେ ।

ବନ୍ଦୀମାନେ ଅଛନ୍ତି କେଉଁଠାରେ ?

ବାଲିରାଜା ସେମାନଙ୍କୁ ଜବଦ୍ୱୀପକୁ ପଠାଇ ଦେଇଛନ୍ତି । ସେମାନଙ୍କ ମଧ୍ୟରୁ କେବଳ ଦୁଇ ଜଣ, ନା, ପୋତାଧ୍ୟକ୍ଷଙ୍କୁ ଧରି ତିନି ଜଣ ତାମ୍ରଲିପ୍ତ ଆସିଛନ୍ତି ।

ପୋତାଧ୍ୟକ୍ଷ କିଏ ?

ସେ ରାଣୀଙ୍କର ଭାଇ । ବାଲିରାଜା ତାଙ୍କୁ ଅଧିରାଜ ବୋଲି ଡାକନ୍ତି ।

ବନ୍ଦୀମାନଙ୍କ ମଧ୍ୟରେ ମଣିଆଁ ବୋଲି କେହି ଥିଲା କି ?

ବୋଧହୁଏ ଥିଲା, ମାତ୍ର ପାଞ୍ଜିଆ ବାଲିରାଜାଙ୍କୁ କହୁଥିବାର ଶୁଣିଛି, ସେ ଅନେକ ଦିନୁ କୌଶଳରେ ବନ୍ଦଶାଳାରୁ ପଳାଇଛି ।

ପଳାଇଛି ? ମଣିଆଁ ପଳାଇଛି ଠିକ ଜାଣ ? ନା ମରିଯାଇଛି ?

ଭୀତ ହୋଇ ନାରାୟଣ ସାଧବ ପଚାରିଲେ ।

ନାବିକ ଉତ୍ତର ଦେଲା, ଆପଣ ଏତେ ଅସ୍ଥିର ହେଉଛନ୍ତି କାହିଁକି ? ମଣିଆଁ କିଛି ଆପଣଙ୍କର କେବେ ଅନିଷ୍ଟ କରିଥିଲା ? ମଣିଆଁ ପଳାଇ ଯାଇଥାଉ କିମ୍ବା ନ ଯାଇଥାଉ, ଏହା ନିଶ୍ଚିତ ଯେ ସେ ମରି ନାହିଁ । ପାଞ୍ଜିଆ ଗୁରିଜଣ ମଲା ଲୋକଙ୍କର କଥା ବାଲିରାଜାଙ୍କୁ କହୁ ଥିଲେ । ସେମାନଙ୍କ ଭିତରେ ମଣିଆଁ ନ ଥିଲା ।

କୃତ୍ରିମ ସନ୍ତୋଷ ପ୍ରକାଶକରି ନାରାୟଣ ସାଧବ କହିଲେ, ଭଗବାନ ବିଚ୍ଚରା ମଣିଆଁକୁ ଜୀବିତ ରଖିଥାନ୍ତୁ । ସେ ମୋର ଶତ୍ରୁ ନୁହେଁ ଯେ ପରମବନ୍ଧୁ, କେବଳ ତାକୁ ଉଦ୍ଧାର କରିବାକୁ ଏତେ ଆୟୋଜନ । ଯଦି ଜାଣ ସେ କେଉଁଠି ଅଛି ମୋତେ କହ ।

ମୁଁ ଜାଣେ ନାହିଁ ।

ଏ ବୋଇତ ଏଠି କେତେଦିନ ରହିବ ?

ବୋଧହୁଏ ସାଧବସଭ୍ୟ଼ଁ ଶେଷ ହେବାଯାଏ ।

ନାରାୟଣ ସାଧବ ନାଁବକ ହାତରେ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଗୁଞ୍ଜିଦେଇ ଘାଲକ୍ଷି ଚଢ଼ି ଘରକୁ ଫେରିଲେ । କଣ କରିବେ ତାଙ୍କୁ ବୁଦ୍ଧି ଦିଶିଲା ନାହିଁ । ସେ ଭାବିଲେ ସମସ୍ତ ଭିତର କଥା ଜଣା ପଡ଼ିଗଲାଣି । ମଣିଅ ଁ ମୁକ୍ତ । ସେ ଯେ ଧୂମକେତୁ ପରି କେତେବେଳେ ଆସି ତାମ୍ରଲିପ୍ତରେ ଉପସ୍ଥିତ ହୋଇ ସମସ୍ତ ଗୁପ୍ତ ବିଷୟ ପଦାରେ ପକାଇ ଦେବ, ତା କିଏ କହି ପାରିବ ? ସାତ ସମୁଦ୍ରର ସେ ପାଖେ ବାଲିଦ୍ୱୀପ; ସେଠାକାର ରାଜା ଚମ୍ପିଲାକୁ ହାତରେ ପାଇ ତାଙ୍କ ବିଷୟରେ ଅନେକ କଥା ଜାଣି ପାରିଛନ୍ତି । ଚମ୍ପିଲାକୁ ନ ମାରି ଛାଡ଼ି ଆସିବା ଠିକ୍ ହୋଇ-ନାହିଁ । କାଲି ଛାଡ଼ ପନ୍ଦର ଦିନ ସାଧବସଭା । ଏହି ଦିନକ ଭିତରେ ହୁଏ ତ ବାଳରାଜା, ଅଧିରାଜ ଏବଂ ଚମ୍ପିଲାଙ୍କୁ ବନ୍ଦୀକରି ହତ୍ୟା କରିବାକୁ ହେବ କିମ୍ବା ତାଙ୍କ ସଙ୍ଗେ ବନ୍ଧୁତ୍ୱ ସ୍ଥାପନ କରି ନିଜର କରିବାକୁ ହେବ । ନୋହିଲେ ମୁକ୍ତି ନାହିଁ । ସାଧବସଭାରେ ସମସ୍ତଙ୍କ ସମ୍ମୁଖରେ ବାଳରାଜା ତାଙ୍କୁ ଦୋଷୀ ବୋଲି ପ୍ରମାଣ କରାଇବେ । ନୋହିଲେ ସଙ୍ଗରେ ଦୁଇଜଣ ବନ୍ଦୀ ଆଣିଥାନ୍ତେ କାହିଁକି ? ଥରେ ଦୋଷୀ ବୋଲି ପ୍ରମାଣିତ ହେଲେ, ତେଣିକି କାହ୍ନୁ ଭୂୟାଁଙ୍କ ହାତରେ ଦଣ୍ଡ ଅନିବାର୍ଯ୍ୟ ।

ଏହି ସମସ୍ତ ବିଷୟ ଚିନ୍ତା କରୁ କରୁ ନାରାୟଣ ସାଧବ ହତାଶ ହୋଇ ପଡ଼ିଲେ । ସେ ନିଜର ବୈଠକ ଘରେ ଆରାମ ଚଉକିରେ ବସି ମୁକ୍ତିଲାଭର ଉପାୟ ଚିନ୍ତା କରିବାରେ ଲାଗିଲେ । ଦୁଃଖ ଏବଂ ଭାବୀ ବିପଦର ସମ୍ଭାବନାରେ ତାଙ୍କ ମୁଖ ମଳିନ ଦେଖାଗଲା । ନିଶ୍ୱାସ ଘନ ଘନ ପ୍ରବାହିତ ହେଲା । ଆଖିବୁଜି ଆରାମ-ଚଉକିରେ ପଡ଼ି ଛଟପଟ ହେଲେ । ସତେ ଯେପରି କୃତକର୍ମମାନଙ୍କର ଅନୁଶୋଚନା ଏବଂ ବିବେକର ତାଡ଼ନା ସେ ଆଉ ସହ୍ୟ କରି ପାରୁ ନାହାନ୍ତି । ସତେ ଯେପରି ସମସ୍ତେ ଏକାଠି ହୋଇ ତାଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗିବାକୁ ଦୃଢ଼ପ୍ରତିଜ୍ଞ ।

ନାରାୟଣ ସାଧବ ଅଗତ ପ୍ରାୟ ଘଟଣାବଳୀର ଭୀଷଣ ଦୃଶ୍ୟ ଜାଗ୍ରତ-ସ୍ୱପ୍ନରେ ଦେଖୁଥିବା ସମୟରେ ସେହି ଅନ୍ଧକାରମୟ ପ୍ରକୋଷ୍ଠ ମଧ୍ୟରେ ଜଣେ ରମଣୀ ପ୍ରବେଶ କଲେ । କିଛି ସମୟ ପରେ ଜଣେ ଦାସୀ ଆଲୋକ ନେଇ ଉପ-ସ୍ଥିତ ହେଲା । ଆଲୋକଟିକୁ ତକ୍ତା ଉପରେ ରଖି ନିଃଶବ୍ଦରେ ପ୍ରକୋଷ୍ଠ ତ୍ୟାଗ କଲା । ସେତେବେଳକୁ ରମଣୀ ଅନ୍ୟ ଗୋଟିଏ ଆରାମ ଚଉକି ଉପରେ ବସି ତୀକ୍ଷ୍ଣ ଭୟପୂର୍ଣ୍ଣ ଲୋଚନରେ ନାରାୟଣ ସାଧବଙ୍କର ବିରସ ମୁଖକୁ ଅନାଇ ରହିଥିଲେ ।

କାଲିକାର ଧୂସର ମରୁପ୍ରାନ୍ତରବାସିନୀ ସୁଶୀଳା, ଆଜି ନୂଆ ସାଜରେ ବିମଣ୍ଡିତା ହୋଇ ତାମ୍ରଲିପ୍ତର ବିଖ୍ୟାତ ଧନୀ ବଣିକ ନାରାୟଣ ସାଧବଙ୍କ ନିଭୃତ ପ୍ରାସାଦ ଉପରେ । ଏହି ତ ସଂସାରର ପରିବର୍ତ୍ତନ । ଧୀବରକନ୍ୟା ଆଜି ପ୍ରାସାଦ-ବାସୀ ବ୍ରାହ୍ମଣ ବଣିକଙ୍କର ସ୍ତ୍ରୀ । ଯେଉଁ ସୁଶୀଳା କାଲି ବାଲୁକା ପ୍ରାନ୍ତର ଉପରେ ନାଚି ପ୍ରକୃତିର ଦେହରେ ନିଜର ନଗ୍ନ ଅଙ୍ଗ ମିଶାଇ ଦେବାକୁ ଅସ୍ଥିର ହେଉଥିଲା, ଆଜି ସେ ବସ୍ତ୍ର ଉପରେ ବସ୍ତ୍ର ପରିଧାନ କରି ସ୍ଥିର, ଅଚଞ୍ଚଳ । ଅଳଙ୍କାର ଧାରଣକୁ ଯେ ଦିନେ ରମଣୀର ବନ୍ଧନ ଏବଂ ଦଣ୍ଡ ବୋଲି ମନେ-କରୁଥିଲା ଆଜି ସେ ହୀରା, ନୀଳାଦି ଖଚିତ ନାନା ଅଳଂକାର ଦେହରେ ଧରି ଭାରବାହୀ ପଶୁଟିରେ ପରିଣତ । ଯେଉଁ ବନ୍ଧନକୁ ସେ ଦିନେ ଘୃଣା କରୁଥିଲା, ତାହାକୁ ହିଁ ଆଜି ସାଦରେ ବରଣ କରିଛି । ତାର ସେ ପୂର୍ବ ପ୍ରାକୃତିକ ସୌନ୍ଦର୍ଯ୍ୟ ଆଉ ନାହିଁ । ତାର ବଳିଷ୍ଠ ଅଙ୍ଗ ଶୀର୍ଣ୍ଣ । ଚିନ୍ତାଶୂନ୍ୟ ହାସ୍ୟମୟ ମୁଖଟିକୁ ସତେ ଯେପରି ଗୋଟିଏ ଭୀଷଣ ଚିନ୍ତା ଘୋଡ଼ାଇ ରଖିଛି । କାଲିକାର ବାଳିକା ସୁଶୀଳା ଆଜି ଜନନୀ । ସେ ଜନନୀ, ଏତିକି ମାତ୍ର ତା'ର ଜୀବନର ଆନନ୍ଦ । ଏହାହିଁ କେବଳ ତା ମନରେ ଗର୍ବ ଆଣେ ।

ସେ ରମଣୀ, ସେ ସତୀ ସାଧ୍ୱୀ ସ୍ତ୍ରୀ—ଏହାହିଁ ତା ମନରେ ସନ୍ଦେହ ଆଣେ । ଅତୀତ କାଳର ଗୋଟିଏ କଥା ଏତିକିବେଳକୁ ତାର ମନ ଅଧିକାର କରି ବସେ । ମାରିବଦ୍ୱୀପର ସେହି ଉଦ୍ୟାନଟିରେ, ପ୍ରଥମେ ସନ୍ଦେହ, ତା ପରେ ଅଶ୍ରୁ, ତା ପରେ ବରଣମାଳା, ତା ପରେ ଆଲିଙ୍ଗନ ଏବଂ ତା ପରେ···?

ପରଦିନ ସଙ୍ଗୀନୀର ଜନ୍ମୋତ୍ସବ ଦିନ । ପ୍ରଥମେ ଫୁଲର ହାର···ତାପରେ ଆକ୍ରମଣ ଏବଂ ତାପରେ ? ଶେଷରେ ଆଜି, ବହୁଦିନ ପରେ ! ଓଃ···ଏହି ତ ପ୍ରଥମେ ତା ମନକୁ ଅସ୍ଥିର କରି ପକାଇଥିଲା । ବିବାହ ହେଲା ତେବେ ସୁଦ୍ଧା ସେ ବୁଝି ପାରି ନ ଥିଲା ସେ କାହାର ଏବଂ କିଏ ତାହାର ?—ଯାହାକୁ ସେ ଭଲ ପାଉଥିଲା ତାର କି, ଯାହାକୁ ସେ ଘୃଣା କରୁଥିଲା ତାହାର ? ଯିଏ ତାକୁ ମୃତ୍ୟୁ-ମୁଖରୁ ବଞ୍ଚାଇ ନିଜର ବକ୍ଷରେ ବନ୍ଧାଇ ଆଣିଥିଲା ସେ, କି ଯିଏ ବଳାତ୍କାରରେ ହରଣ କରି ଆଣିଛି, ସେ ।

ଏହି ପ୍ରଶ୍ନଗୁଡ଼ିକ ବରାବର ତା ମନକୁ ଅସ୍ଥିର କରୁଥିଲା । ଅବଶ୍ୟ ସମୟର ପ୍ରବାହ ସଙ୍ଗେ ସଙ୍ଗେ ଏ ସମସ୍ତ ଚିନ୍ତା ଟିକିଏ କମିଯାଏ, ମାତ୍ର ଏକାଥରେ ନୁହେଁ । କେବେ କେବେ ନିଜେ ନିଜେ ଆସି ସ୍ଥିର ମନକୁ ଅସ୍ଥିର କରେ । ଦୁର୍ବଳ ମନକୁ ମାଡ଼ିବସେ । କିନ୍ତୁ, ବର୍ତ୍ତମାନ ସେ ସବୁ ଦୂର ହୋଇ ଗଲାଣି । ସେ ବୁଝି ପାରିଲାଣି ସେ କାହାର, ମାତ୍ର, ସେ ବୁଝି ପାରି ନାହିଁ ତାର କିଏ ? ସେ ମନେ କରେ, ଆଉ ବୁଝିବା ଆବଶ୍ୟକ ନାହିଁ । ଆଉ ବୁଝି ଲାଭ ନାହିଁ । ସେ ଜନନୀ ।

ସେ ବୁଝି ପାରନ୍ତି, ସେ କାହାର । ସେ ଯାହାର ତାଙ୍କୁ ଚିନ୍ତାମଗ୍ନ ଦେଖି ତାର ପ୍ରାଣ ଅସ୍ଥିର ହୋଇ ପଡ଼ିଲା । ସେ ଦେବତା ହେଉ, ମନୁଷ୍ୟ ହେଉ ବା ରାକ୍ଷସ ହେଉ, ସେ ଯାହାର ତାଙ୍କର ମନରେ କଷ୍ଟ । ହୃଦୟରେ ବେଦନା ଅନୁଭବ କରି ସୁଶୀଳା ସ୍ଥିର ହୋଇ ବସି ନାରାୟଣଙ୍କର ମୁଖକୁ ଅନାଇ ରହିଥିଲା; ତାଙ୍କୁ ଉଠାଇବାକୁ ସାହସ କଲାନାହିଁ ।

କିଛି ସମୟ ପରେ ସେ ନିଜେ ନିଜେ ଉଠି ଡେରି ହୋଇ ବସିଲେ । ଚକ୍ଷୁ ଅର୍ଦ୍ଧମୁଦ୍ରିତ । ଦୀର୍ଘନିଃଶ୍ୱାସ ପକାଇ ଅନାଇ ଦେଖିଲେ ସମ୍ମୁଖରେ ଉପବିଷ୍ଟ ସୁଶୀଳା । କହି ପକାଇଲେ, କିଏ ସୁଶୀଳା ? ହଉ ବସ ।

ସୁଶୀଳା ଆରାମ ଚଉକିଟିକୁ ପାଖକୁ ଟାଣି ଆଣି କହିଲା, କାହିଁକି ମନମାରି ବସିଛ ? ତମର କଣ ହୋଇଛି ଶୁଣେ ?

ନ ଶୁଣିଲା ପରି ନାରାୟଣ ପଚାରିଲେ, ଏଁ ?

ସୁଶୀଳା ନାରାୟଣ ସାଧବଙ୍କର ହାତ ଧରି ପଚାରିଲା, କାହିଁକି ମନ ମାରି ବସିଛ ?

କାହିଁକି, ନାହିଁ ତ ?

ଲୁଚେଇବ ତ ? ହଉ ଲୁଚାଅ । କାହିଁକି ନ ଲୁଚାଇବ । ମୁଁ ସିନା ତମର, ତମେ ତ ମୋର ନୁହଁ ।

କଣ କହିଲ ?

ମୁଁ ଯାହା କହୁଛି ଠିକ୍ କହୁଛି । ହଉ ତେବେ ଚୁମ୍ଚି କରି ବସି ଏଠି କଣ ଭାବୁଛ ଭାବୁଥାଅ । ମୁଁ ଯାଉଛି—କହି ସୁଶୀଳା ସେଠାରୁ ଚାଲିଯିବାକୁ ବସିଲା ।

ନାରାୟଣ ସାଧବ ତାର ହାତ ଧରି ଚଉକିରେ ବସାଇ ଦେଲେ । ମଳିନ ମୁଖରେ ଶୁଷ୍କ ହାସ୍ୟ ଫୁଟାଇ କହିଲେ, ତମେ ବଡ଼ ଅଭିମାନିନୀ ସୁଶୀଳା ।

ମୁଁ ତ କିଛି ଅଭିମାନ କରିନାହିଁ ! ତମେ ସିନା ଅଭିମାନ କରିଛ । ମନରେ ତମର କି କଷ୍ଟ ହୋଇଛି ପଚାରିଲେ କହୁନାହଁ । ଓଲଟା ମୋ ଉପରେ, କାଲର ନିୟମ । ତେମେ କ'ଣ କରିବ ?

ସୁଶୀଳା, ମୋର···ଆଉ କହି ପାରିଲେ ନାହିଁ । ମୁହଁ ତଳକୁ ପୋତିଲେ ।

ସୁଶୀଳା ଚଉକିରୁ ଉଠି ନାରାୟଣ ସାଧବଙ୍କର ମୁଣ୍ଡ ହାତରେ ଟେକି ଟିକିଏ ବ୍ୟଥିତ ଭାବରେ, ଉତ୍କଣ୍ଠା ପୂର୍ଣ୍ଣ ସ୍ୱରରେ ପଚାରିଲା, କଣ କହୁଥିଲ କହିଲ ନାହିଁ ଯେ । ମୋ ରାଣଟି ସତକରି କହ, ତମର ମଳିନ ମୁହଁ ଦେଖି ମୋର ହୃଦୟ ଯେ ଫାଟିଯିବ । କହ, କହ, କ'ଣ କହୁଥିଲ ।

ମୋର ଜୀବନରେ ଘୋର ବିପଦ ଉପସ୍ଥିତ ସୁଶୀଳା, ଘୋର ବିପଦ ।

ବିପଦ ? ବିପଦ ତମର କ'ଣ ? କି ବିପଦ ?

ନାରାୟଣ ସୁଶୀଳାର ହାତ ଧରି ଅନ୍ୟ ହାତରେ ତାର ମୁଣ୍ଡ ନୁଆଇଁ ଆଣି ଗଣ୍ଡଦେଶରେ ଗୋଟିଏ ଚୁମ୍ବନ ଦେଇ କହିଲେ, ସୁଶୀଳା, ସେ ଯେତେ ବଡ଼ ବିପଦ ହୋଇ ପଡ଼ିଛି ତମକୁ ସ୍ତ୍ରୀ ରୂପେ ପାଇ ମୁଁ ସୁଖୀ । ତମର ମୁହଁକୁ ଅନାଇଁ ଦେଲେ କ୍ଷଣକରେ ମୋର ସବୁ ଦୁଃଖ ଉଭେଇ ଯାଏ । ତମର ଗଣ୍ଡଦେଶରେ ଗୋଟିଏ ଚୁମ୍ବନ ଦେଲେ ମୁଁ ଆଉ କୌଣସି ବିପଦକୁ ମନରେ ସ୍ଥାନ ଦଏନାହିଁ ।

ସୁଶୀଳାର ମୁଖ ଲଜ୍ଜାରେ ଅରକ୍ତ ହେଲା । ନାରାୟଣ ତାକୁ କୋଳ-ଆଡ଼କୁ ଟାଣିନେଇ ହୃଦୟରେ ଅଉଜାଇ କପାଳରେ ଆଉରି ଗୋଟିଏ ଚୁମ୍ବନ ଦେଲେ । ସୁଶୀଳା ଉଠିଆସି ସମ୍ମୁଖରେ ଖଣ୍ଡେ ଚଉକିରେ ବସି ଓଢଣା ଟାଣି କହିଲା, ମୁଁ ଜାଣେ ତମର ଏ ସବୁ ସ୍ନେହ କେବଳ ବାହାରଆ । ମୋ ପରି ଅନେକଙ୍କୁ ତମେ ସ୍ନେହ କର ।

ସୁଶୀଳା, ତମେ ମୋତେ ଆଜିଯାଏ ଚିହ୍ନିପାରିନାହିଁ ତେବେ । ଅନେକଙ୍କୁ ମୁଁ ସ୍ନେହ କରୁଥାଇ ପାରେ; କିନ୍ତୁ ସମସ୍ତଙ୍କ ଉପରେ ତମର ସ୍ଥାନ । ମନେ ନାହିଁ, ତମେ ଧୀବର କନ୍ୟା, ଅଥଚ ମୁଁ ବ୍ରାହ୍ମଣ ବଣିକ । କୌଶଳରେ ତୁମକୁ ମୁଁ ମୋର ସମସ୍ତ ସମ୍ପତ୍ତିର ଲକ୍ଷ୍ମୀ କରିଛି ।

ଏହା ତ ମହାପାପ ।

ପାପ କାହିଁକି ହେବ ? ତମେ କ'ଣ ଧୀବର କନ୍ୟା ବୋଲି ମନୁଷ୍ୟ ନୁହଁ ? ତମେ କ'ଣ ସୁନ୍ଦରୀ ନୁହଁ ? ବ୍ରାହ୍ମଣ କନ୍ୟାଠାରୁ କେଉଁ ଗୁଣରେ ଊଣା ତମେ ? ବ୍ରାହ୍ମଣର ଅଧିକାର ଅଛି ସେ ଯେ କୌଣସି ବର୍ଣ୍ଣରେ ବିବାହ କରିପାରେ । ସୁଶୀଳା—

ସୁଶୀଳାର ଅତୀତ କଥା ମନେ ପଡ଼ିଗଲା । ଚକ୍ଷୁରୁ ଲୋତକଧାର ଗଡ଼ି ପଡ଼ିଲା । ଅହା, ତାର ମଣିଆଁ ଭଲ କାହିଁ, ଯାହାକୁ ସେ ପ୍ରଥମେ ହୃଦୟ ଦାନ କରି ସାରିଥିଲା । ସେ ଆଜି ସ୍ୱର୍ଗପୁରରେ । ସୁଶୀଳା ଭାବିଲା, ମୃତ୍ୟୁପରେ ମୋ ଆତ୍ମାର ଗତି ହେବ କେଉଁ ସ୍ଥାନକୁ ? ରମଣୀର ପ୍ରକୃତ କାର୍ଯ୍ୟ ମୁଁ କରିଛି କି ? ରମଣୀର ସତୀତ୍ୱ ମୁଁ ଅକ୍ଷୁଣ୍ଣ ରଖି ପାରିଛି କି ?

ସୁଶୀଳା, ଏତେ ଚିନ୍ତା କାହିଁକି ? ଅତୀତ କଥା ମନେ ପଡ଼ିଗଲା ପରା ? ନା ଆଉ ସେ ସବୁ କଥା ଭାବ ନା । ତୁମ୍ଭେ ମୋର ହୋଇ ସାରିଛ ।

ମୁଁ ତମର ସ୍ୱାମୀ । ମୋ ଉପରେ ଘୋର ବିପଦ ପଡ଼ିଛି । ବର୍ତ୍ତମାନ ବତାଇ ଦିଅ କର୍ତ୍ତବ୍ୟ କଣ ?

କି ବିପଦ ସେ ।

ହଁ କହିବି, ତୁମକୁ ନ କହିବି ଏପରି କଥା ଅଛି କ'ଣ ? ତେବେ—

କ'ଣ କହ—

ତେବେ— କିନ୍ତୁ—ମୋତେ କ୍ଷମା କରି ପାରିବ ତ ସୁଶୀଳା ?

କ୍ଷମା ! ମୁଁ କ'ଣ କ୍ଷମା କରିବି ତୁମକୁ ।

ସୁଶୀଳାର ମନରେ କି ଏକ ଅଜଣା ସନ୍ଦେହର ଛାୟାପାତ ହେଲା । ସେ ଚଉକିରୁ ଉଠିଯାଇ ନାରାୟଣ ସାମନ୍ତଙ୍କର ହାତ ଧରି ଟିକିଏ ଜୋରରେ କହିଲା, କି ବିପଦ ପଡ଼ିଛି ଶୀଘ୍ର କହ ।

ନାରାୟଣ କହିଲେ, ସ୍ଥିର ହୋଇ ଚଉକିରେ ବସ, ମୁଁ ଧୀରେ ଧୀରେ ସବୁ କଥା କହିବି । ମାତ୍ର, ମନେ ରଖ, ମୁଁ ତୁମର ସ୍ୱାମୀ । ଯାହା କହିବି ମୋତେ କ୍ଷମା କରିବାକୁ ହେବ ।

ସୁଶୀଳା ଚଉକି ଉପରେ ବସି ଦୀର୍ଘନିଃଶ୍ୱାସ ତ୍ୟାଗ କରି କହିଲା, ହଁ କ୍ଷମା କରିବି ।

ନାରାୟଣ କହିଲେ, ତୁମେ ବୋଧହୁଏ ଜାଣିଥିବ, ତାମ୍ରଲିପ୍ତରେ ବିରାଟ ବଣିକ ସଭାର ଆୟୋଜନ ହେଉଛି । ଦିନେ ଦୁଇଦିନ ପରେ ସଭା କାର୍ଯ୍ୟ ଆରମ୍ଭ ହେବ । ସେଥିପାଇଁ ଦେଶ ବିଦେଶରୁ ଅନେକ ବଣିକ ଆସି ତାମ୍ରଲିପ୍ତ ନଗରରେ ବସା କରି ରହିଲେଣି । କାହ୍ନୁ ଭୂୟାଁ ସେମାନଙ୍କୁ ଅଭ୍ୟର୍ଥନା କରିବାକୁ ନିଯୁକ୍ତ ଅଛନ୍ତି । ରାତି ପାହିଲେ ଉତ୍କଳ କେଶରୀ ଲଳାଟେନ୍ଦୁ ତାମ୍ରଲିପ୍ତରେ ଉପସ୍ଥିତ ହେବେ । ସେ ସଭାପତି ଆସନ ଗ୍ରହଣ କରିବେ ।

ହଁ ଜାଣେ, ସେଇଠୁ ?

ବାଲରଜା ଆସି ତାମ୍ରଲିପ୍ତରେ ଉପସ୍ଥିତ ହୋଇଛନ୍ତି । ସେ ରାଧାଶ୍ୟାମଙ୍କର ଆତିଥ୍ୟ ଗ୍ରହଣ କରିଛନ୍ତି ।

ବାଲରଜାଙ୍କ ନାମ ତମ ମୁହଁରୁ ମୁଁ ଅନେକ ଥର ଶୁଣିଛି । ବ୍ରହ୍ମଦେଶରେ ତମେ କହୁଥିଲ ବ୍ୟବସାୟରେ ସେ ଓ ରାଧାଶ୍ୟାମ ତମର ଶତ୍ରୁ ହେଉ ଆସନ୍ତି । ତହିଁରେ ତମର କ୍ଷତି କଣ ?

କିଛି ନାହିଁ । ତେବେ, ବାଲରଜାଙ୍କ ସଙ୍ଗେ ଚଞ୍ଚଳା ଓ ଅଧିରଜ—

ଚଞ୍ଚଳା ଓ ଅଧିରଜ ! ବାଲରଜାଙ୍କ ସଙ୍ଗେ ? ବେଶ୍ ଭଲ ହେଲା, ସେମାନଙ୍କୁ ନିମନ୍ତ୍ରଣ କର । ମୁଁ ମୋର ବାଲ୍ୟସଙ୍ଗିନୀ ସଙ୍ଗେ ଦେଖା କରିବି ।

ସରଳା, ତୁମେ କିଛି ଜାଣ ନାହିଁ । ସେ ଚଞ୍ଚଳା ଆଉ ନାହିଁ । ସେ ବାଲି-ରାଜାଙ୍କୁ ବରଣ କରି ସାରିଛି ।

ସୁସମ୍ବାଦ ଦେଲ ଆଜି । ପ୍ରାଣସଙ୍ଗିନୀ ଚଞ୍ଚଳା ମୋର ବାଲିରାଜାଙ୍କୁ ବିବାହ କରିଛି ? ମୁଁ ଭାରି ସୁଖୀ ହେଲି । ତେବେ ତ ବାଲିରାଜା ତୁମର ବନ୍ଧୁ ହେବେ । ଆଉ ବିପଦ କ'ଣ ? କାଲି ସେମାନଙ୍କୁ ନିମନ୍ତ୍ରଣ କର ।

ସେଥିପାଇଁ କହିଲି ସୁଶୀଳା ତୁମେ କିଛି ଜାଣ ନାହିଁ । 'ତୁମେ ସରଳା । ତେବେ ତୁମକୁ ମୁଁ ସବୁ ଖୋଲି କହିବି ?

କ'ଣ ଖୋଲି କହିବ । ମୋତେ କ'ଣ ପାଗଳ କରିବାକୁ ଅଭିପ୍ରାୟ କରିଛ । କହିନା କାହିଁକି ଶୀଘ୍ର ? ମୁଁ ମୂର୍ଖ କିଛି ବୁଝିପାରୁ ନାହିଁ ।

କ୍ଷମା କରିବ ତ ?

ପୁଣି ସେହି କ୍ଷମା କଥା । କହ, କ'ଣ କହିବାର ଅଛି । ମୁଁ କିଛି ବୁଝି ପାରୁ ନାହିଁ । ଥରେ କାହିଁ ସହସ୍ର ଥର କ୍ଷମା କରିବି ମୁଁ ତୁମକୁ । କହିବାର କ୍ଷମାକରି ଆସିଛି । ତୁମକୁ କ୍ଷମା କରି କରି ମୁଁ ମୋର ପରଜନ୍ମ ନଷ୍ଟକରି ସାରିଛି । ତଥାପି ଚାହୁଁଛ କ୍ଷମା ?

ବାଲିରାଜା ତାମ୍ରଲିପ୍ତ ଆସିଛନ୍ତି ମୋର ସର୍ବନାଶ କରିବାକୁ । ବଣିକ ସଭାରେ ମୋର କାର୍ଯ୍ୟକଳାପ ବର୍ଣ୍ଣନା କରି ରାଜ ଛାମୁରେ ଦଣ୍ଡିତ କରାଇବେ । ସେଥିପାଇଁ ସେ ସାକ୍ଷୀ ଠିକଣା କରି ଆଣ୍ଡାମାନ ଓ ବାଲିଦ୍ୱୀପରୁ ଲୋକ ଆଣିଛନ୍ତି । ବ୍ରହ୍ମଦେଶରେ ଥରେ ତାଙ୍କ ସଙ୍ଗେ ଆଳାପ କରି ମୁଁ ବୁଝିଛି ମୋର ପ୍ରତ୍ୟେକ ଗୁପ୍ତ ବିଷୟ ସେ ଜାଣନ୍ତି । ସବୁ କଥା ବଣିକ ସଭାରେ ରାଜଛାମୁରେ ପ୍ରକାଶ କରିବେ । ଏହାଠାରୁ ବଳି ବିପଦ ଆଉ କ'ଣ ହୋଇ ପାରେ ?

ତୁମେ ଯଦି ପ୍ରକୃତରେ ନିର୍ଦ୍ଦୋଷ ହୋଇଥାଅ, ତେବେ ତୁମର ଭୟ କଣ ?

ନିର୍ଦ୍ଦୋଷ ? ମୁଁ ଦୋଷୀ । କିନ୍ତୁ, ମନେ ରଖିଥାଅ, ମୁଁ ତୁମର ସ୍ୱାମୀ । ନିର୍ଦ୍ଦୋଷ ବାଳିକା ତୁମେ ଥିଲ, ତୁମକୁ ତୁମ ସ୍ୱାମୀ ନିକଟରୁ କିଏ ଅପହରଣ କରି ଆଣିଛି ? ମଣିଅାଁକୁ ଆଣ୍ଡାମାନର କାରାଗାରରେ ବନ୍ଦୀ କରି କିଏ ତୁମ ଆଗରେ କହିଥିଲା, ମଣିଅାଁ ମୃତ ବୋଲି—?

ମଣିଅାଁ ବନ୍ଦୀ । ହେ ନିଷ୍ଠୁର ପ୍ରାଣ ! ମଣିଅାଁକୁ କାରାଗାରରେ ବନ୍ଦୀ କରି ମୋତେ ସ୍ୱର୍ଗସୁଖ ଦେଉଛ ? କହୁଥିଲ, ଆଣ୍ଡାମାନରେ ତୁମର ବଣିଜଘର ଅଛି ବୋଲି । ତେବେ ସବୁ ମିଛ । ସେଠାରେ ତୁମର କାରାଗୃହ । ମୋର ସ୍ନେହର, ନା, ମୋହର ମଣିଅାଁ ଭାଇ ବନ୍ଦୀ ଅଛି ?

ସୁଶୀଳାର ଅଧୀରତା ଦେଖି ନାରାୟଣ ସାଧବ ଉଚ୍ଚରେ କହିଲେ, ସୁଶୀଳା ମନେ ରଖ ମୁଁ ତୁମର ସ୍ୱାମୀ । ମଣିଅାଁ ନୁହେ ।

ମଣିଅାଁ ମୋର କିଛି ନ ହେଉ ପଛେ ସେ ମୋର ପିଲାଦିନର ମଣିଅାଁ ଭାଇ । ସେ ମୋର ଜୀବନଦାତା । ସେ କାରାଗାରରେ ବନ୍ଦୀ, ମୋତେ ମିଛରେ ଏତେ କଥା କହି ଏତେ ନାରଖାର କରିଛ ? ମୋର ସ୍ତ୍ରୀ ଜନ୍ମ ଅପବିତ୍ର କରିଛ ? ମୁଁ ତ ସହଜରେ ତାଙ୍କ ପାଇଁ ଜୀବନ ଦେଇ ପାରି ଥାନ୍ତି ।

ମନେରଖ ସୁଶୀଳା, ମୁଁ ତମର ସ୍ୱାମୀ । ତମେ ମୋର ସ୍ତ୍ରୀ ।

ମନେ ରଖିଛି, ଅଗ୍ରାହ୍ୟ କରିବାର ବାଟ ନାହିଁ । ମଣିଅାଁ ଭାଇକୁ ମୋର ମୁକ୍ତ କରିଦିଅ । ସେ ପଛେ—ସେ ପଛେ—

ବାଲରାଜା ସେମାନଙ୍କୁ ମୁକ୍ତ କରିଛନ୍ତି ।

ବାଲରାଜାଙ୍କ ସଙ୍ଗେ ମଣିଅାଁ ଭାଇ ମୋର ଅସିଛି ? କାଲି ସେମାନଙ୍କୁ ନିମନ୍ତ୍ରଣ କର । ମୁଁ ତାକୁ ଦେଖିବି । ସବୁ ଦୋଷ ମାଗିନେବି । ସ୍ୱାମୀ ମୋର ଏହି ଅନୁରୋଧଟି ରକ୍ଷା କର । ନା, ନା, ଦରକାର ନାହିଁ । କିପରି ମୋର କଳଙ୍କିତ ମୁହଁ ତାଙ୍କୁ ଦେଖାଇବି ? ଓଃ ମୃତ୍ୟୁ, ମୃତ୍ୟୁ, ମୃତ୍ୟୁ, । ନା, ମୁଁ ମୋର ମୁହଁ ଆଉ କାହାକୁ ଦେଖାଇବି ନାହିଁ । ବିଷ ଦିଅ ମୁଁ ଖାଇବି, ବିଷ ଦିଅ । ଏ କଳଙ୍କିତ ଜୀବନକୁ ଏ କଳଙ୍କିତ ପ୍ରାସାଦରୁ ଉଡ଼ାଇ ଦେବି ।

କହୁ କହୁ ସୁଶୀଳା ମୂର୍ଚ୍ଛ୍ୟମାନା ହୋଇ ଚଉକି ଉପରୁ ତଳକୁ ଗଡ଼ିପଡ଼ିଲା । ଦେହରେ ଜ୍ଞାନ ନାହିଁ । ନାରାୟଣ ସାଧବ କ୍ଷଣକାଳ ସୁଶୀଳାର ରକ୍ତଶୂନ୍ୟ ମୁଖକୁ ଅନାଇଁ ସ୍ତମ୍ଭୀତ ହେଲେ । ତାଙ୍କ ମନକୁ କେତେ କଣ ଚିନ୍ତା ଅସି ମାଡ଼ି ବସିଲା । ସେ ଧୀରେ ଧୀରେ ସୁଶୀଳାକୁ ତଳୁ ଉଠାଇ ଧରିଲେ । ପରେ ତାକୁ ଆରାମ ଚଉକିରେ ବସାଇ ରଖି ପଙ୍ଖା ଧରି ନିଜେ ବ୍ୟଜନ କଲେ ।

କିଛି ସମୟ ପରେ ସୁଶୀଳାର ଜ୍ଞାନ ହେଲାରୁ ଚକ୍ଷୁ ଖୋଲି ଦେଖିଲା, ସମ୍ମୁଖରେ ନାରାୟଣ ସାଧବ ସ୍ୱୟଂ ତାକୁ ବ୍ୟଜନ କରୁଛନ୍ତି । ସେ କୃତଜ୍ଞତାପୂର୍ଣ୍ଣ ସ୍ୱରରେ ଚକ୍ଷୁ ଅର୍ଦ୍ଧ କରି କହିଲା, ମଣିଅାଁ ଭାଇ ଜୀବିତ । ମୁଁ ତାକୁ ଦେଖିବାକୁ ଚାହେଁ ନାହିଁ । ସ୍ୱାମି ! ଶିଶୁଟି ତମର । ତମର ହାତରେ ତାକୁ ଦେଇଗଲି । ତାର ଭଲମନ୍ଦ ଭାର ତମେ ଜାଣ । ମୁଁ ନିଶ୍ଚୟ ମରିବି । ମୋର ପ୍ରାଣ କଳଙ୍କିତ । ମୋର ଆତ୍ମା କଳଙ୍କିତ । ମୁଁ ଆଉ ଏତେ କଳଙ୍କ ବହନ କରି ପାରିବି ନାହିଁ । ମୁଁ ମୋର କଳଙ୍କରେ ଜଗତକୁ କଳଙ୍କିତ କରି ପାରିବି ନାହିଁ । ବିଦାୟ ଦିଅ ।

ସୁଶୀଳା ପୁଣି ମୋହି ଗଲା ।

କ୍ଷମା କରନ୍ତୁ ବାଲରାଜା, ଲଣ୍ଡାମୁଣ୍ଡରେ ହାତ ବୁଲାଉ ବୁଲାଉ ରାଧାଶ୍ୟାମ ମିଶ୍ର ଅଶ୍ଚର୍ଯ୍ୟ ହୋଇ କହିଲେ, ଅପଣଙ୍କ କଥାରେ ମୁଁ ଏକାଥରେ ବିଶ୍ୱାସ କରି ପାରୁ ନାହିଁ । ମନ ମାନୁ ନାହିଁ । ଆପଣଙ୍କୁ ଏପରି ଭାବରେ ଦେଖି କପରି ବିଶ୍ୱାସ ଯିବ ଯେ ଆପଣ ସେହି ହତଭାଗ୍ୟ ଯୁବକ ମଣିଅଁ—ଯାହାକୁ ଦିନେ ମୁଁ ସମୁଦ୍ର ବିପଦରୁ ଉଦ୍ଧାର କରି ସିଙ୍ଗାପୁର ପର୍ଯ୍ୟନ୍ତ ନିଜ ବୋଇତରେ ନେଇଥିଲି ? ଯେତେବେଳେ ସମ୍ବାଦ ପାଇଲି, ବାଲରାଜା ସ୍ୱୟଂ ମୋ ଗୃହରେ ଅଶ୍ରୟ ନେବାକୁ ବସିଛନ୍ତି, ମୋର ମନ ଆନନ୍ଦରେ ନାଚି ଉଠିଲା । ମୁଁ ତ ପ୍ରଥମରୁ ଜାଣି ନ ଥିଲି ବାଲରାଜା ସେହି ହତଭାଗ୍ୟ ଯୁବକ ବୋଲି । ବର୍ତ୍ତମାନ ସୁଦ୍ଧା ମୋର ବିଶ୍ୱାସ ହେଉ ନାହିଁ ।

ବିଶ୍ୱାସ ହେବ କପରି ତେବେ ? ମୁଁ ଅକ୍ଷରେ ଅକ୍ଷରେ ମୋର ଜୀବନର ସମସ୍ତ ଘଟଣା ଆପଣଙ୍କୁ କହିସାରିଛି । ଚମ୍ପଲା ଏବଂ ଅଧିରାଜଙ୍କୁ ଆପଣ ଆଖି ଆଗରେ ଦେଖି ମୋ କଥାରେ ବିଶ୍ୱାସ କରି ପାରୁ ନାହାନ୍ତି ?

ମୁଁ ବିଶ୍ୱାସ କରି ପାରୁ ନାହିଁ କହିଲି ବୋଲି କ'ଣ, ସତରେ ଭାବୁଛନ୍ତି ମୁଁ ବିଶ୍ୱାସ କରୁନାହିଁ ? ନା, ମୁଁ ସମ୍ପୂର୍ଣ୍ଣ ବିଶ୍ୱାସ କରୁଛି । ତେବେ ଭାରି ଅଶ୍ଚର୍ଯ୍ୟ ଲାଗୁଛି । ବୁଝିବାକୁ ପରି ଜଣା ପଡ଼ୁଛି । ଆପଣ ଯଦି ମଣିଅଁ ହୋଇ ନ ଥାନ୍ତେ, ମୋ ବିଷୟରେ ଏତେ ଜାଣନ୍ତେ କପରି ? ଚମ୍ପଲା ଓ ଅଧିରାଜଙ୍କ କଥା ଯେ କହିଲେ, ମୁଁ ତାଙ୍କ ନାମ ମାତ୍ର ଜାଣେ । ତାଙ୍କୁ ତ ମୁଁ ଆଉ ଏଥିପୂର୍ବେ କେବେ ଦେଖି ନ ଥିଲି ! ବୁଝି ପାରିଲି ଆପଣ କେବଳ ଜଗତରେ ମୋର ପରମ ବନ୍ଧୁ । ନାରାୟଣ ପଣ୍ଡା ଉପରେ ପ୍ରତିହିଂସା ସାଧନ କରିବାରେ ଆପଣ କେବଳ ମୋତେ ସାହାଯ୍ୟ କରି ପାରିବେ । ମୋର ବଂଶ ମର୍ଯ୍ୟାଦା ରକ୍ଷା କରି ପାରିବି କେବଳ ଆପଣଙ୍କର ସାହାଯ୍ୟରେ । ସ୍ୱର୍ଗୀୟ ପିତାଙ୍କର ଅଭିପ୍ରାୟ ସାଧିତ ହୋଇ ପାରିବ ଆପଣଙ୍କ କୃପାରୁ । କାଲି ସାଧବ ସଭା । ସଭାରେ ସମସ୍ତ କଥା ପଡ଼ିବ । ପ୍ରମାଣ ନିମନ୍ତେ ସବୁତ ଯୋଗାଡ଼ କରିଛନ୍ତି । ବାଃ, ବାଃ, ଉପରେ ତ ଫେର୍ ଜଣେ ଅଛି !

ଭୁଲ ବୁଝିଛନ୍ତି ମିଶ୍ର ମହାଶୟ, ଭୁଲ ବୁଝିଛନ୍ତି ଆପଣ । ଆପଣଙ୍କ ବଂଶ ମର୍ଯ୍ୟାଦା ରକ୍ଷା କରିବାକୁ କିମ୍ବା ଆପଣଙ୍କ ପିତାଙ୍କର ଶେଷ ଅନୁରୋଧ ରକ୍ଷା କରିବାକୁ ନାରାୟଣ ସାଧବଙ୍କ ବିପକ୍ଷରେ ମୁଁ ଅଭିଯୋଗ କରିବି ନାହିଁ ।

କ୍ଷମା କରିବେ, ମୁଁ ବୁଝି ପାରି ନ ଥିଲି । ଏବେ ବୁଝି ପାରିଛି । ଆପଣଙ୍କ ସ୍ତ୍ରୀକୁ ସେ ଅପହରଣ କରିଛି...

ଆତ୍ମର ଭ୍ରାନ୍ତ ଅପଣ । ଏ ତ ସାମାନ୍ୟ କଥା । ସେଥି ନିମନ୍ତେ ନାରାୟଣ ସାଧବଙ୍କର ଯେତେ ଦୋଷ ତଦପେକ୍ଷା ଅଧିକ ଦୋଷ ହେଉଛି, ଯେ ଅପହୃତା ତା'ର । ନାରାୟଣ ସାଧବଙ୍କ ବିପକ୍ଷରେ ଅଭିଯୋଗ କରିବ ସେ ଜଗତର ଅମଙ୍ଗଳ କରିଛନ୍ତି । ଶତ ଶତ ନିର୍ଦ୍ଦୋଷ ପ୍ରାଣୀଙ୍କୁ ବିନା ଦୋଷରେ ଆଜୀବନ କାରାରୁଦ୍ଧ କରିଛନ୍ତି । ଅବଶ୍ୟ ଏଥି ସଙ୍ଗେ ମୋର ସ୍ୱାର୍ଥ ଜଡ଼ିତ ଅଛି । ସେ ମୋର ପିତା ମାତାଙ୍କୁ ଅନ୍ଧାମାନରେ ବନ୍ଦୀ କରି ରଖିଥିଲେ । କାରାବାସରେ ଉଭୟେ ପ୍ରାଣତ୍ୟାଗ କରିଛନ୍ତି । ଭାରତର ନୌବାଣିଜ୍ୟର ଏ ଅବନତି କେବଳ ତାଙ୍କର ପାଇଁ ଘଟିଛି ।

ବାଲରାଜାଙ୍କର କଥା ଶେଷ ନ ହେଉଣୁ ଜଣେ ବୃଦ୍ଧା ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲେ । ବୃଦ୍ଧାଙ୍କର ପଛେ ପଛେ ଚଞ୍ଚଳା ଏବଂ ହେମ । ବୃଦ୍ଧା ରାଧାଶ୍ୟାମଙ୍କର ଜନନୀ । ହେମ କନିଷ୍ଠା ଭଗ୍ନୀ । ହେମର ବିବାହ ବୟସ ହୋଇଥିଲେ ମଧ୍ୟ ଉପଯୁକ୍ତ ପାତ୍ର ଅଭାବରୁ ତାର ବିବାହ ହୋଇ ନାହିଁ । ସେ ସମୟରେ ପିଲା କନ୍ୟା ବିବାହ ପ୍ରଥା ବ୍ରାହ୍ମଣଘରେ ପ୍ରଚଳିତ ଥିଲା ସତ, ତେବେ ବଡ଼ କନ୍ୟା ବିବାହରେ ସେତେ ଆପତ୍ତି କେହି କରୁ ନ ଥିଲେ । ତେଣୁ, ହେମ ଏବଂ ଚଞ୍ଚଳା ଅଦ୍ୟାପି ଅବିବାହିତା ।

ମାଙ୍କୁ ଆସିବାର ଦେଖି ରାଧାଶ୍ୟାମ ଟିକିଏ ବିରକ୍ତ ହୋଇ କହିଲେ, ଆମର କଥା ଭିତରେ ବାଧାଦେଲ କାହିଁକି ମା ।

ମା ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ରାଧାଶ୍ୟାମଙ୍କର ଚକ୍ଷୁ ଚଞ୍ଚଳା ଉପରେ ପଡ଼ିଲା । ସେ ଚୁପହୋଇ ତଳକୁ ଅନାଇଁଲେ । ନୀରବରେ ସେ ତାଙ୍କ ପ୍ରଶ୍ନର ଉତ୍ତର ପାଇ ଗଲେ ।

ବୃଦ୍ଧା କୋମଳ ସ୍ୱରରେ ଉତ୍ତର କଲେ, ବାପ ଟିକିଏ ରହ । ମୋ ମନରେ ଗୋଟାଏ ଭାରି ସନ୍ଦେହ ହୋଇଛି । ଆମର ଇଚ୍ଛୁଣି ଏଣୁ ତେଣୁ ବହୁତ କଥା ପଡ଼ିଥିଲା । ଚଞ୍ଚଳା ବାଲରାଜାଙ୍କ ବିଷୟରେ ମୋତେ ଯାହା କହିଲା, ତହିଁରେ ମୋର ଭାରି ସନ୍ଦେହ ହେଲା । ମୁଁ ତୋ ବନ୍ଧୁ ବାଲରାଜାଙ୍କୁ ପଦେ ଅଧେ କଥା ପଚାରିବି ।

ତାଙ୍କର ଚକ୍ଷୁପ୍ରାନ୍ତ ଦେଇ ଲୋତକଧାରା ଗଡ଼ି ପଡ଼ିଲା । ରାଧାଶ୍ୟାମ ଉତ୍ତର ଦେବା ପୂର୍ବରୁ ବାଲରାଜା କହିଲେ, କଣ ପଚାରିବ ମା, ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବାକୁ ପ୍ରସ୍ତୁତ ଅଛି । ଠିଆହେଲେ କାହିଁକି, ବସନ୍ତୁ ।

ଚଞ୍ଚଳା ଏବଂ ହେମକୁ ଚାହିଁ, ତେମେ ସବୁ ବସ ।

ଚଞ୍ଚଳା ଏବଂ ହେମ ଆସନ ଗ୍ରହଣ କଲାରୁ ବୃଦ୍ଧା ବାଲରାଜାଙ୍କ ନିକଟକୁ ଯାଇ ଚକ୍ଷୁ ଛଳ ଛଳ କରି ପଚାରିଲେ, ବାପ, ସତ କହ କିଏ ତେମେ କିଏ । ମୋ

ଅଗରେ କିଛି ଆଉ ଲୁଚନା—ସବୁ ସତ କରି କହ । ମୁଁ ବୁଢ଼ୀମାଇପୀ ଲୋକ । ସରଳ କଥାରେ ନ କହିଲେ କିଛି ବୁଝି ପାରିବ ନାହିଁ ।

ବାଲିରାଜା କହିଲେ, ମା, ମୁଁ କିଏ ଏବେ କଣ କହିବ । ମୁଁ ଯେ ମୁଁ ନୁହେ ମା । ପ୍ରଜାପତି ପରି କେତେ ଅବସ୍ଥା ଭୋଗ କରି କରି ଆସି ଆଜି ଆପଣଙ୍କ ଅଗରେ ମୁଁ ବାଲିରାଜା ।

ବୁଝି ପାରିଲି ନାହିଁ ବାପା ମୋତେ ସରଳ କଥାରେ ବୁଝାଇ ଦିଅ । ବୃଦ୍ଧା କହିଲେ ମୋର ଯେ ପେଟ ଭିତରୁ କ'ଣ ଉଠୁଛି । ଚଞ୍ଚଳାଠାରୁ ତମର ଇତିହାସ ଶୁଣି—କହ ବାପ, ଆଉ ସେ ବେଦନା ସମ୍ଭାଳି ପାରିବ ନାହିଁ ।

ସବୁ ତ ଚଞ୍ଚଳାଠାରୁ ଶୁଣିଛ ମା ମୁଁ ଆଉ କଣ ଅଧିକା କହିବ ।

ହଁ, ମୁଁ ତମ ମୁହଁରୁ ଆହୁରି ଥରେ ଶୁଣିବାକୁ ଚାହେଁ । ନୋହିଲେ ମୋର ପରତେ ହେଉ ନାହିଁ ବାପା—ସତ କହୁଛି ।

କ'ଣ ପରତେ ହେଉ ନାହିଁ ମା ? ମୁଁ ଜଣେ ସାମାନ୍ୟ ଧୀବରପୁତ୍ର ଏହି କଳିଙ୍ଗର ସମୁଦ୍ର କିନାରରେ ମାଛଧରି ବଢ଼ି ଅସିଥିଲି । ମୋର ଗୋଟିଏ ଭଉଣୀ, ନା ସ୍ତ୍ରୀ, ନା ଭଉଣୀ ଥିଲା, ପରେ ଅମର ବୟସ ହେଲା । ଏ ସହରର ନାରାୟଣ ସାଧବ ମୋର ତାକୁ ଚୋରାଇ ଅଣି ମୋତେ ବନ୍ଦୀ କଲା । ମୁଁ କୌଣସି ମତେ ଉଦ୍ଧାର ପାଇ ବାଲିଦ୍ୱୀପ ଗଲି । ସେଠାକାର ରାଜା ହୋଇ ଦେଶକୁ ଫେରିଛି ।

ତମର ଏ ସବୁ କଥା ମୋ କାନରେ ପଶୁ ନାହିଁ । ସତ କରି କୁହ, ତମେ କ'ଣ ଧୀବରପୁତ୍ର ।

ମା, ମୁଁ ମୋର ଜନ୍ମବୃତ୍ତାନ୍ତ ଭଲ କରି ଜାଣେ ନାହିଁ । କପରି ବା ଜାଣନ୍ତି ମୋର ଜ୍ଞାନ ହେଉ ନ ଥିଲା । ମୋର ପାଳକ ପିତାଙ୍କର ଦୈନିକ ଲିପିରୁ ମୁଁ ବୁଝି ପାରିଛି ପ୍ରକୃତରେ ମୁଁ ଧୀବରସନ୍ତାନ ନୁହେ, କିନ୍ତୁ ମୋର ପାଳକପିତା ଧୀବର । ମୁଁ ନିଜକୁ ଧୀବର ବୋଲି ପରିଚିତ କରେ ।

ରାଧାଶ୍ୟାମ କହିଲେ, ମୁଁ ତ ନିଜେ ଅପଣଙ୍କ ମୁହଁରୁ ଶୁଣିଛି ଆପଣ ଧୀବର ସନ୍ତାନ ନୁହନ୍ତି । ଅପଣଙ୍କର ପିତାମାତାଙ୍କୁ ନାରାୟଣ ସାଧବ ସୁର୍ଯ୍ୟ ଦ୍ୱୀପରେ ବନ୍ଦୀ କରି ରଖିଥିଲା । ଅପଣ ତ ବର୍ତ୍ତମାନ କହୁଥିଲେ, ସେମାନେ କାରାଗାରରେ ମରିଛନ୍ତି ।

ବାଲିରାଜା କହିଲେ ହଁ, ମୁଁ କହୁଥିଲି, ବର୍ତ୍ତମାନ ମଧ୍ୟ ତା ମୁଁ ନାହିଁ କରୁ ନାହିଁ । ମୋର ପିତା ମାତା କିଏ ମୁଁ ଜାଣେ, କିନ୍ତୁ ସେମାନଙ୍କୁ ତ ମୁଁ ଚିହ୍ନେ ନାହିଁ । ସେମାନେ କିଏ, ତାଙ୍କର ଘର କେଉଁଠି ଏ ବିଷୟରେ ଅତ୍ୟଳ୍ପ ମାତ୍ର ଦୈନିକ ଲିପିରେ ଲେଖା ଅଛି ।

ଚଞ୍ଚଳା କହିଲେ, ମହାରାଜା, ଯେତିକି ଲେଖା ଅଛି ସେତିକିରୁ ତ ବେଶ୍ ପ୍ରମାଣ ମିଳୁଛି । ଅହୁରି ମଧ୍ୟ ସୁନାହାଟରେ ଥିବା ସମୟରେ ବାପାଙ୍କ ମୁହଁରୁ ତମ ଦୁ'ଜଣଙ୍କ ବିଷୟରେ ଯାହା ଶୁଣିଥିଲି ଦୈନିକଲିପି ସଙ୍ଗେ ତା'ର କେତେ ଅଂଶ ମିଳୁଛି ।

ବାଲିରାଜା କହିଲେ, ଯଦି ଚଞ୍ଚଳାର କଥା ସତ ହୋଇଥାଏ—

ଚଞ୍ଚଳା କହିଲା, କାହିଁକି ? ଭାଇ ମଧ୍ୟ ସେ ବିଷୟରେ କେତେକ କଥା କହି ପାରିବେ ।

ବାଲିରାଜା କହିଲେ, ଚଞ୍ଚଳା, ଏତେ କଥା ଏଠାରେ କାହିଁକି କହୁଛୁ ? ମୁଁ ଚାହେଁ ନାହିଁ ମୋର ଜନ୍ମବୃତ୍ତାନ୍ତ ଅନ୍ୟ କାହାରିକୁ ଜାଣିବାକୁ ଦେବି । ମୁଁ ଚାହେଁ ମୁଁ ଧୀବରର ପୁତ୍ର ହୋଇ ରହିବି । ବ୍ରାହ୍ମଣ ସମାଜ ଉଚ୍ଚ ହେଲେ ମଧ୍ୟ ନାରାୟଣ ସାଧବ ତା'କୁ କଳଙ୍କିତ କରି ସାରିଛି । ତେଣୁ ମୋର ଜନ୍ମ ସେହି ସମାଜରେ, ମୁଁ ଏହା ସ୍ୱୀକାର କରିବାକୁ ଅମଙ୍ଗ । ମୁଁ ତ ଆଉ ଉପବୀତଧାରୀ ବ୍ରାହ୍ମଣ ନୁହେଁ ।

ବୃଦ୍ଧା ଉତ୍କଣ୍ଠାପୂର୍ଣ୍ଣ କଣ୍ଠରେ କହିଲେ, ବାବା, ବ୍ରାହ୍ମଣସମାଜକୁ ନିନ୍ଦା କର ନାହିଁ । ଦେବତାଙ୍କ ଭିତରେ ଜଣେ ରାକ୍ଷସ ଥିଲେ କ'ଣ ସବୁ ଦେବତାଙ୍କୁ ରାକ୍ଷସ କହିବା ? ତା'ତ ନୁହେଁ । ଏବେ କହ ବାପ ତୁମର ଜନ୍ମବୃତ୍ତାନ୍ତ ।

ଜଣାଗଲା ବାଲିରାଜା ଯେପରି ନିଜର ଜନ୍ମବୃତ୍ତାନ୍ତ ପ୍ରକାଶ କରିବାକୁ ଏକାଥରେ ଅମଙ୍ଗ । ବୃଦ୍ଧାଙ୍କର ଢଙ୍ଗଢାଙ୍ଗ ଏବଂ ତାଙ୍କ ମନରେ ସନ୍ଦେହ ଏହାର ମର୍ମ ବୁଝି ନ ପାରି ସେ ସନ୍ଦିହାନ ହୋଇ ପଡ଼ିଲେ । ନିଜକୁ ନିଜେ ପଚାରିଲେ, ବୃଦ୍ଧାଙ୍କର ଚକ୍ଷୁରେ ଜଳ କାହିଁକି ? ମୋର ଜନ୍ମବୃତ୍ତାନ୍ତରୁ ତାଙ୍କୁ କଣ ମିଳିବ ଯେ ସେ ଏତେ ଅଧୀର ହୋଇ ମୋତେ ପଚାରୁଛନ୍ତି ? ଚଞ୍ଚଳା ଯଦି ମୋର ଜୀବନୀ ତାଙ୍କ ଆଗରେ ପ୍ରକାଶ କରିଥାଏ, ସେ ତ ଯାହା ବୁଝିବାର ବୁଝି ସାରିବେଣି । ମୋର ମୁହଁରୁ ମୋ ଜୀବନୀ ଶୁଣିବାକୁ ଏତେ ଆଗ୍ରହ କାହିଁକି ତାଙ୍କର ? ଏ ଭିତରେ ନିଶ୍ଚୟ କିଛି ଗୂଢ଼ ରହସ୍ୟ ଲୁଚି ରହିଛି । ବୃଦ୍ଧା ସେହି ରହସ୍ୟକୁ ଭେଦ କରିବାକୁ ବସିଛନ୍ତି । ମୁଁ ଏବେ କ'ଣ ବୋଲି ନିଜକୁ ପରିଚିତ କରାଇବି ।

ବାଲିରାଜା ମୁଖ ଗମ୍ଭୀର କରି କହିଲେ, ଯଦି ନିତାନ୍ତ ଶୁଣିବାକୁ ଚାହାନ୍ତି ତ ଶୁଣନ୍ତୁ । ମୁଁ ଯାହା କହିବି ତହିଁରେ ଯେ ମୋର ପୂର୍ଣ୍ଣ ବିଶ୍ୱାସ ଏହା ନୁହେଁ । ମୋର ପାଳକ ପିତାଙ୍କ ଦୈନିକ ଲିପିରୁ ଯେତିକି ଜାଣେ କହୁଛି । ଯଦି ଆପଣମାନଙ୍କର ବିଶ୍ୱାସ ହୁଏତ, ସତ ବୋଲି ଗ୍ରହଣ କରିବେ ।

ମୋର ପାଳକପିତାଙ୍କର ଦୈନିକ ଲିପିରୁ ପ୍ରକାଶ, ତାଙ୍କ ସ୍ତ୍ରୀ ବା ମୋର ପାଳକ ମାଆ କୌଶଳରେ ମୋତେ ଡକାଇତ ମାନଙ୍କ ହାତରୁ ଉଦ୍ଧାର କରି ଆଣିଥିଲେ । ଅନୁମାନ, ଡକାଇତ ନାରାୟଣ ସାଧବଙ୍କର ପିତା । ମୋର ପିତା ଜଣେ ବଣିକ । ତାଙ୍କର ଘର ଚିଲିକା କୂଳରେ । ସେ ହେଉଛନ୍ତି କୌଣସି ସୌଦାଗରଙ୍କର ଦ୍ୱିତୀୟ ପୁତ୍ର । ଯୌବନ ସମୟରେ ସସ୍ତ୍ରୀକ ସେ ବଣିଜ କରିବାକୁ ବାହାରିଥିଲେ । ମୋର ଜନ୍ମ ସମୁଦ୍ରରେ—

ବୃଦ୍ଧା କହିଲେ, ସେତିକି ଥାଉ ବାପ, ସେତିକି ଥାଉ । ତାପରେ ତୋର ଜୀବନରେ ଆଉ କ'ଣ ଘଟିଛି ମୁଁ ଜାଣିବାକୁ ଚାହେଁ ନାହିଁ—ବୃଦ୍ଧା ଆନନ୍ଦରେ ଅଧୀର ହୋଇ କହିଲେ । ଚକ୍ଷୁରୁ ପୁନର୍ବାର ଲୋତକଧାର ଗଡ଼ିପଡ଼ିଲା । ସେ ବାଷ୍ପଜଡ଼ିତ କଣ୍ଠରେ ପଚାରିଲେ, ବାପ ମା'ଙ୍କର ନାମ ଜାଣୁ ତ ?

ନା ମା, ଜାଣେ ନାହିଁ । ବାଳରାଜାଙ୍କର ବିସ୍ମୟର ସୀମା ରହିଲା ନାହିଁ ।

ସେ ଅବାକ୍ ହୋଇ ବୃଦ୍ଧାଙ୍କର ପ୍ରଶ୍ନର ପ୍ରତୀକ୍ଷାରେ ରହିଲେ ।

ବୃଦ୍ଧା ପଚାରିଲେ, ତୋ'ର ବାପ ମା ବ୍ରାହ୍ମଣ ଘରର ତ ?

ହଁ, ଦୈନିକ ଲିପିରୁ ପ୍ରକାଶ ସେମାନେ ବ୍ରାହ୍ମଣ । ମା ମୋର ଗରିବ ଘରର ଝିଅ । କିନ୍ତୁ ବାପା ବଡ଼ଲୋକର ସନ୍ତାନ ।

ଚିଲିକା କୂଳରେ ତ ?

ହଁ ମା ଚିଲିକା କୂଳରେ । ଆଉ ଗୋଟିଏ କଥା । ସେମାନେ ବ୍ରାହ୍ମଣ ଘରର ହେଲେ କ'ଣ ହେବ ଦୈନିକଲିପିରୁ ପ୍ରକାଶ, ବୌଦ୍ଧଧର୍ମ ଉପରେ ତାଙ୍କର ଅଚଳା ବିଶ୍ୱାସ, ପ୍ରତି କଥାରେ ସେମାନେ ବୁଦ୍ଧଦେବଙ୍କୁ ସାକ୍ଷୀ କରନ୍ତି ।

ବୃଦ୍ଧା କଅଣ ଚିନ୍ତା କରି ବାଳରାଜାଙ୍କ ନିକଟକୁ ଘୁଞ୍ଚିଗଲେ । ଶିଶୁଟି ପରି ତାଙ୍କର କପାଳ ଚୁମ୍ବନ କରି ନିଜ ଆଡ଼କୁ ଟାଣି ଆଣିଲେ । ଚକ୍ଷୁରେ ଲୋତକ; ଅଥଚ ମୁଖ ଆନନ୍ଦର ଅପୂର୍ବ ଆଲୋକରେ ଉଦ୍ଭାସିତ । ମୃଦୁ ହସି କହିଲେ, ବୁଝିଲୁ ବାପ, ପରମପିତାଙ୍କର ଲୀଳା ବିଚିତ୍ର । ମା' ମଙ୍ଗଳା ରକ୍ତଠାରୁ ରକ୍ତକୁ ଦୂରରେ ରଖିପାରନ୍ତି ନାହିଁ । ମୁଁ କିଏ ମୋତେ ଚିହ୍ନି ପାରୁଛୁ ବାପ ? ନା, ଯେ ନିଜର ବାପ ମା'ଙ୍କୁ ଚିହ୍ନି ପାରିନାହିଁ, ସେ ମୋତେ କାହୁଁ ଚିହ୍ନି ପାରିବ ? ମୁଁ ତ ଦୂରସମ୍ପର୍କୀୟା ।

ବୃଦ୍ଧସମ୍ରାଟଙ୍କ ! ବାଳରାଜା ବିସ୍ମୟରେ ଚକ୍ଷୁ ବିସ୍ଫାରିତ କରି କହିଲେ, କିଏ ତେବେ ମା' ଆପଣ ?

ହଁ ମୋର ପରିଚୟ ଦେବି । ତାପରେ ସେ ବାଳରାଜାଙ୍କର ମୁହଁକୁ କ୍ଷଣକାଳ ଏକଦୃଷ୍ଟିରେ ଚାହିଁ ଖୁସି ହୋଇ ନିଜକୁ ନିଜେ କହିଲେ—ଖଣ୍ଡାଦାଢ଼ ପରି ନାକଟି ତ ଅବିକଳ ତାରି ନାକ ପରି, ଭ୍ରୂଲତା ଦିଓଟି ଠିକ୍ ସେମିତ । ନିଶ୍ଚୟ, ଆଉ ସନ୍ଦେହ କ'ଣ ?

ପୁଣି ସେ କହିଲେ ଅହା, ଆଜକୁ କେତେବର୍ଷ ହେଲଣି । ତାଙ୍କର କୌଣସି ଖବର ମିଳି ନ ଥିଲା । ସମସ୍ତେ ନିରାଶ ହୋଇଥିଲୁଁ । ବାପା ଶେଷ ସମୟ ପର୍ଯ୍ୟନ୍ତ ମଣିଅାଁ ଭାଇଙ୍କର କଥା ବରାବର ଭାବୁଥିଲେ । ଶେଷ ମୁହୂର୍ତ୍ତରେ ତାଙ୍କ ମୁହଁରେ ମଣିଅାଁ ଭାଇଙ୍କର ନାମ । ନାରାୟଣ ସାଧବର ବାପର ଏ କାଣ୍ଡ । ହାତୀ ବନସ୍ତରେ ବଢ଼ିଲେ ରଜାଙ୍କର ବାପ ! ତତେ ଯେ କେହି ପାଳି ଥାଉ, ତୁ ଯେଉଁଠାରେ ବଢ଼ିଥା ପଛେ ତୁ ମୋର । ମଣିଅାଁ ଭାଇଙ୍କି କୋଉ କାଳରୁ ଦେଖି ନାହିଁ । କିନ୍ତୁ ଆଜି ଦେଖିଲି । ତାଙ୍କୁ ମୁଁ ଆଜି ତୋଠାରେ ଦେଖିଲି, ତୁ ତ ତାଙ୍କର ପ୍ରତିମୂର୍ତ୍ତି । ତୋ ଦେହରେ ତାଙ୍କର ଚିହ୍ନ ସେ ଛାପ ମାରି ରଖିଛନ୍ତି । ଏବେ ଚିହ୍ନିଲୁ ବାପ, ମୁଁ କିଏ ? ଅହା, ଭାଇ ମୋତେ କେତେ ସ୍ନେହ କରୁଥିଲେ । ଏବେ ମୁହଁ ଛପା ଦେଇ କେଉଁଠି ରହିଲେ !

ଅଫ୍ରିକାର ଗୁଣିଅାଁ ଅହ୍ଲାଦନର ଦାଦି, ଏହା ଶୁଣି ଅହ୍ଲାଦନର ଜନନୀ ପ୍ରଥମେ ଯେତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ, ବୃଦ୍ଧାଙ୍କର କଥା ଏବଂ ବ୍ୟବହାରରେ ବାଳରାଜା ତଦପେକ୍ଷା ବେଶି ଆଶ୍ଚର୍ଯ୍ୟ ହେଲେ । ତୀକ୍ଷ୍ଣ ଦୃଷ୍ଟିରେ ବୃଦ୍ଧାଙ୍କୁ ଚାହିଁ ଚିନ୍ତା କଲେ ଅତୀତର ସେହି ଅଣ୍ଡାମାନରେ ବନ୍ଦୀ ଥିବା ସମୟ କଥା । ସୂର୍ଯ୍ୟଦ୍ୱୀପର ଅନ୍ଧକାରମୟ ପ୍ରକୋଷ୍ଠ ମଧ୍ୟରେ ରକ୍ତମାଂସଶୂନ୍ୟ କଙ୍କାଳସାର ବୃଦ୍ଧ ପୁତ୍ର ବୋଲି ନ ଜାଣି ମଧ୍ୟ ନିଜର ଜୀବନ ବିନିମୟରେ ମଣିଅାଁର ସ୍ୱାଧୀନତା କ୍ରୟ କରିଛନ୍ତି ସେ । ପୁତ୍ର ବୋଲି ନ ଜାଣି ମଧ୍ୟ ନିଜର ମୂଲ୍ୟବାନ୍ ଉପଦେଶ ଦ୍ୱାରା ମଣିଅାଁକୁ ଆଜି ବାଳଦ୍ୱୀପର ଅଧୀଶ୍ୱର କରି ପାରିଛନ୍ତି । ମଣିଅାଁ ତାଙ୍କୁ ପିତା ବୋଲି ଜାଣି ନ ଥିଲା । ତଥାପି, ସେ ବୃଦ୍ଧଙ୍କର ଶେଷ ସମୟକୁ ଯେତେ ସେବା କରିଛି, କୌଣସି ପୁତ୍ର ପିତାଙ୍କର ଏତେ ସେବା କରିବାରେ ନିଶ୍ଚୟ କୁଣ୍ଠିତ ହୋଇଥାନ୍ତା । ମଣିଅାଁର ସେବାରେ କୁଣ୍ଠାର ଚିହ୍ନ ନ ଥିଲା । ଏତେ କରି ମଧ୍ୟ ମଣିଅାଁ ମନକୁ ଗୋଟିଏ କଥା ବାରମ୍ବାର ଅଧୀର କରେ । ବୋଇତ ଶତ ବାଧାବିଘ୍ନ ଅତିକ୍ରମ କରି ସମୁଦ୍ର କୂଳରେ ଜଳମଗ୍ନ ହେଲା ପରେ ଏତେ ସେବା କରି କରି ମଣିଅାଁ ଶେଷ ମୁହୂର୍ତ୍ତରେ ବୃଦ୍ଧଙ୍କ ମୃତ୍ୟୁଯନ୍ତ୍ରଣାରେ ଘାଣ୍ଟି ହେଉଥିବାର ଜାଣି ମଧ୍ୟ, ତାଙ୍କୁ ଏକାକୀ ପକାଇ ପ୍ରାଣବିକଳରେ ପଳାୟନ କରିଥିଲା । ମା ବନ୍ଦିନୀ ଥିଲେ । ତାଙ୍କୁ ସେ ଦେଖି

ପାରୁଲ ନାହିଁ । ଏହାଠାରୁ ବଳି ଦୁର୍ଭାଗ୍ୟର ବିଷୟ କ'ଣ ହୋଇପାରେ ? ମଣିଅାଁ ତା'ର ଦୁର୍ବଳ କ୍ଷଣରେ ଭାବେ ।

ବୃଦ୍ଧାଙ୍କର କଥା ଶୁଣି ଅତୀତର ପ୍ରତ୍ୟେକ ଘଟଣା ବିଦ୍ୟୁତ୍‌ପରି କ୍ଷଣକ ମଧ୍ୟରେ ମଣିଅାଁର ମନ ମଧ୍ୟରେ ଚହଟିଗଲା ।

ବାଲରାଜା ଚିନ୍ତାମଗ୍ନ । ସମସ୍ତେ ନୀରବ । ବୃଦ୍ଧାଙ୍କର ଚକ୍ଷୁରୁ ଲୋତକ ଧାର ଧାର ହୋଇ ଗଡ଼ିପଡ଼ୁଛି । ରାଧାଶ୍ୟାମ ଓ ହେମ ଉଭୟେ ଅବାକ୍ ହୋଇ ତାଙ୍କର ନତନ ପରିଚିତ ଭାଇକୁ ଅନାଇଛନ୍ତି । ଚଞ୍ଚଳା ଅନ୍ୟମନସ୍କା ହୋଇ ଆଙ୍ଗୁଠିରେ ତଳେ ଗାର କାଟୁଛି ।

ଏହି ସମୟରେ ହଠାତ୍ ପବନ ଟିକିଏ ଜୋର୍‌ରେ ବନ୍ଦ କବାଟକୁ ଖୋଲି ଦେଲା । ଗୃହର ଅଭ୍ୟନ୍ତରରୁ ଆଲୋକ ବାହାରେ ପଡ଼ିଲାରୁ ଜଣାଗଲା, ଯେପରି କିଏ ଜଣେ ଠିଆ ହୋଇଛି । ଆଲୋକ ପଡ଼ିବାରୁ ଟିକିଏ ଅନ୍ଧାରକୁ ଘୁଞ୍ଚିଗଲା ।

ବାଲରାଜା ଭାବିଲେ, ବୋଧହୁଏ ଅଜଙ୍ଗ ଠିଆ ହୋଇଛି । ତେଣୁ କୌଣସି ସନ୍ଦେହ କଲେ ନାହିଁ । ରାଧାଶ୍ୟାମ ଚଉକିରୁ ଉଠିଆସିଲେ । ଆଲୋକଟିକୁ ଟିକିଏ ତେଜଦେଇ ବାହାରକୁ ଆସି ଦେଖିଲେ, କେହି ନାହିଁ । ନୀରବରେ ସିଡ଼ିରେ ତଳକୁ ଓହ୍ଲାଇ ଆସୁଛନ୍ତି, ଏହିପରି ସମୟରେ କିଏ ଜଣେ ତାଙ୍କ ପୃଷ୍ଠଦେଶରେ ସଜୋରରେ ଆଘାତ କଲା । ସେ ଭୟରେ ଚିତ୍କାର କରି ଭୂପତିତ ହେଲେ । ଗୃହଆଡ଼କୁ ଅନାଇ ଦେଖିଲେ, କେହି ନାହିଁ । କେବଳ ଅନ୍ଧକାର । ନିକଟରେ ଅଜଙ୍ଗ ଏବଂ ଅଧିରାଜଙ୍କର କଥୋପକଥନ ଶୁଣାଯାଉଛି । ତତ୍ପରେ ଉଠି ଆଉଥରେ ଚିତ୍କାର କରି ଫେରିଯିବାକୁ ବସିଛନ୍ତି, ଏହିପରି ସମୟରେ କିଏ ଜଣେ ତାଙ୍କର ହୃଦୟରେ ଛୁରିକାଘାତ କଲା । ସଙ୍ଗେ ସଙ୍ଗେ ସେ ଚିତ୍କାର କରି ଭୂପତିତ ହେଲେ ।

ରାଧାଶ୍ୟାମଙ୍କର ଆର୍ତ୍ତନାଦ ଶୁଣି ବାଲରାଜା ପ୍ରଭୃତି ସମସ୍ତେ ଆଲୋକ ଧରି ପଦାକୁ ଆସିଲେ । ଅଧିରାଜ ଏବଂ ଅଜଙ୍ଗ ମଧ୍ୟ ଦ୍ରୁତପଦରେ ସେ ସ୍ଥାନରେ ଉପସ୍ଥିତ ହେଲେ ।

ଦେଖିଲେ, ରାଧାଶ୍ୟାମ ଭୂପତିତ । ସମଗ୍ର ଶରୀର ରକ୍ତାକ୍ତ, ମୃତ୍ୟୁଯନ୍ତ୍ରଣାରେ ଛଟପଟ ହେଉଛନ୍ତି । କେଉଁ ପାଷଣ୍ଡ ଏ ନିର୍ମମ କାର୍ଯ୍ୟ କଲା କେହି ବୁଝି ପାରିଲେ ନାହିଁ । ପୁଅର ଅବସ୍ଥା ଦେଖି ବୃଦ୍ଧା ହତଜ୍ଞାନ ହୋଇ ତଳେ ପଡ଼ିଗଲେ । ଅଧିରାଜ ଓ ଅଜଙ୍ଗ ଉନ୍ମତ୍ତ ପରି ପଦାକୁ ଛୁଟିଗଲେ ।

ବାଲରାଜା ନିଶ୍ଚଳ, ତାଙ୍କର ଚକ୍ଷୁ ବିସ୍ଫାରିତ ! ଚଞ୍ଚଳା ହୃଦୟକୁ ଦୃଢ଼ କରି ରାଧାଶ୍ୟାମଙ୍କର ଚିକିତ୍ସା କରିବାକୁ ବସିଲା । ନିରର୍ଥକ । ସେତେବେଳକୁ ଆଉ ସେ ନାହାନ୍ତି ।

ସୁଶୀଳାର ମୋହ ଭାଙ୍ଗିଲା । ଆଖି ମେଲାଇ ଚାହିଁଲା, ପାଖରେ ନାରାୟଣ ସାଧବ ବସି ତାକୁ ପଙ୍ଖା କରୁଛନ୍ତି । ମୁହଁ ମଳିନ ଦେଖାଯାଉଛି । ସତେ କି ପୂର୍ବ-କଥିତ ବିପଦ ଆସି ଅତି ନିକଟରେ ପହଞ୍ଚିଗଲାଣି । ଆଉ ଉପାୟ ନାହିଁ ରକ୍ଷା ପାଇବାର । ତାର ମୁଣ୍ଡ ବୁଲାଇଲା । ଜଣାଗଲା, ଯେପରି ଘରର ପ୍ରତ୍ୟେକ ପଦାର୍ଥ ତାକୁ କେନ୍ଦ୍ର କରି ପ୍ରଖର ବେଗରେ ତାର ଚାରିପାଖେ ବୁଲୁଛନ୍ତି । ଆଖିରୁ ଯେପରି ଜୁଳୁଜୁଳିଆ ପୋକ ବାହାରୁଛି । ଅଧୀର ହୋଇ ଉଠିବସିବାକୁ ଚେଷ୍ଟା କଲା । ହେଲା ନାହିଁ । ମୁଣ୍ଡ ବୁଲି ଚଉକି ଦେହରେ ସଜୋରରେ ବାଜିଥାନ୍ତା ଯଦି ନାରାୟଣ ଚଉକି ଏବଂ ମୁଣ୍ଡର ମଝିରେ ହାତ ଦେଇ ନ ଥାନ୍ତେ । ଉଠିବାର ଚେଷ୍ଟା ନ କରି ସୁଶୀଳା ଆଖିବୁଜି ପଡ଼ିରହିଲା ।

ନାରାୟଣ ସାଧବଙ୍କର ମନ ଅନ୍ୟଆଡ଼େ ଭ୍ରମୁଥିଲା । ତଥାପି, ସେ ସୁଶୀଳା ନିକଟରେ ବସି ତା ମୁଣ୍ଡରେ ହାତ ବୁଲାଉଥିଲେ । ଏହି ସମୟରେ ପଦାରୁ ଦାସୀ ଆସି ଧୀରେ ଧୀରେ ଡାକି କହିଲା, ସାଆନ୍ତାଣୀ, ପୁଅ କାନ୍ଦୁଛି ପରା । ଯେତେବେଳେ ଦ୍ୱାରର ପରଦା ଆଡ଼େଇ ଭିତରକୁ ଚାହିଁଲା, ନାରାୟଣ ହାତ ଠାରି ତାକୁ ଚାଲି-ଯିବାକୁ ଆଦେଶ କଲେ । ଦାସୀ ତାର ପ୍ରଭୁ ଏବଂ ପ୍ରଭୁପତ୍ନୀଙ୍କୁ ସେପରି ଅବସ୍ଥାରେ ଦେଖି ପରଦା ଟାଣି ସେଠାରୁ ପାଞ୍ଚ ଛଅ ପାଦ ଚାଲିଆସିଲା । ପରେ କଣ ଭାବି ପଛକୁ ଫେରି ଅତି ଭୟରେ ଧୀରେ ଧୀରେ ପର୍ଦ୍ଦା ଆଡ଼େଇ ଘର ଭିତରକୁ ଚାହିଁଲା । ନାରାୟଣ ସାଧବ ବିରକ୍ତିପୂର୍ଣ୍ଣ ଚକ୍ଷୁରେ ତା ଆଡ଼କୁ ଚାହିଁ ପଚାରିଲେ—କ'ଣ ?

ଦାସୀ ଭୟପୂର୍ଣ୍ଣ ସ୍ୱରରେ ଗଳା ଅରାଇ ଅରାଇ କହିଲା, ସାଆନ୍ତାଣୀ କଣ ଇଚ୍ଛୁଣି···, ଆଉ ବିଶେଷ କିଛି ନ କହି ନୀରବ ରହିଲା । ସାଧବ ତାକୁ ହାତ ଠାରି ପାଖକୁ ଡାକଲେ । ଦାସୀ ଅଡ଼େଇ ଅଡ଼େଇ ହୋଇ ନିକଟକୁ ଗଲା । ନାରାୟଣ ସାଧବ ତାକୁ ପଙ୍ଖା ଖଣ୍ଡିଦେଇ କହିଲେ, ବିଞ୍ଚ । ସୁଶୀଳାର ଦେହ ଭଲ ନାହିଁ ।

କ'ଣ ହୋଇଛି ? ଇଚ୍ଛୁଣି ତ ଭଲ ଥିଲେ । ଇଚ୍ଛୁଣିକା ପୁଣି······

ହଁ ଭଲ ଥିଲେ, ମୁଣ୍ଡ ବୁଲାଉଛି—

ଦାସୀ କିଛି ସମୟ ବ୍ୟଜନ କରି କହିଲା, ତେଣେ ପୁଅ ଭାରି ବିକଳ ହୋଇ କାନ୍ଦୁଛି । ମୁଁ ଯାଇ ଆଉ ଜଣକୁ ପଠାଇ ଦେବି ।

ତେବେ ଯା, ଶୀଘ୍ର ବୁଲାକୁ ପଠାଇ ଦେବୁ, ସେ ଚାରିବାଟା ନେଇ ଆସିବ ।

ବୁଲି ବୀଣା ନେଇ ଅସିବା ଶୁଣି ସୁଶୀଳା ଆଖି ଖୋଲି ସାଧବଙ୍କ ଅଡ଼କୁ ଅନାଇଲା । ଜଣାଗଲା, ଯେପରି ତାର ଚକ୍ଷୁରୁ ଜ୍ୟୋତି ନଷ୍ଟ ହୋଇଛି । ତାର ମନ ମଧ୍ୟରେ କେଉଁ ଚିନ୍ତାର ଝଟିକା ପ୍ରବାହିତ ହେଉଛି ବୁଝି ନ ପାରି ସାଧବ କୋମଳ ସ୍ୱରରେ କହିଲେ, ସୁଶୀଳା, ବୁଲିକୁ ଡକାଇ ପଠାଇଛି । ସେ ଆସି ଗୋଟିଏ ଗୀତ ଗାଇଲେ ତମର ମନରୁ ଦୁଃଖ ଘୁଞ୍ଚିଯିବ । ଅତୀତକୁ ମନରେ ଆଣି ଦୁଃଖୀ କରିବା ବିବେକୀର କାର୍ଯ୍ୟ ନୁହେଁ । ଯାହା ହୋଇଯାଇଛି, ହୋଇଯାଇଛି ! ଦୁଃଖ କଲେ ଆଉ ପରିବର୍ତ୍ତନ କରାଯାଇ ନ ପାରେ ?

ସୁଶୀଳାର ଅଧରଦ୍ୱୟରେ ଶୁଷ୍କ ହାସ୍ୟ ଫୁଟିଉଠିଲା । ସେ କିଛି ନ କହି ନାରାୟଣଙ୍କର ଆପାଦ ମସ୍ତକ ନିରୀକ୍ଷଣ କରିବାକୁ ଲାଗିଲା । ସାଧବ ଭାବିଲେ, ବୋଧହୁଏ ସୁଶୀଳା ତାଙ୍କର ପ୍ରସ୍ତାବ ଗ୍ରହଣ କରିଛି ! ତେଣୁ ବୁଲିର ପ୍ରଶଂସା କରିବାରେ ଲାଗିଗଲେ । ବୁଲି ଦେଖିବାକୁ ଅସୁନ୍ଦର, କୋଇଲି ପରି କଳା; କିନ୍ତୁ କୋଇଲି ପରି ଗଳାଟିଏ ପାଇଛି ଏକା । ଭିଟଘରର ଝିଅ କିନା, ବେଶ୍ ଗାଇ ପାରେ । ତା ଗୀତକୁ ତ ମୁଁ ଭାରି ଭଲପାଏ । ତମେ କେମିତି ପସନ୍ଦ କର ସୁଶୀଳା ? ସେ ବର୍ତ୍ତମାନ ଆସି ଗୋଟିଏ ଗୀତ ଗାଇଲେ ତମର ମନ ବଦଳି ଯିବ ।

ସୁଶୀଳାର ଅବସ୍ଥା ଟିକିଏ ଭଲ ଅଛି । ମୁଣ୍ଡ ସେତେ ବୁଲଉ ନାହିଁ । ସ୍ୱାମୀଙ୍କର କଥା ଶୁଣି ଉତ୍ତର ଦେଲା, ବୁଲିର ଗୀତ ଆଜି ଶୁଣିବାକୁ ଭଲ ଲାଗିବ ନାହିଁ । ତାର ଆସିବା ଆବଶ୍ୟକ ନାହିଁ ।

ମନ ଏତେ ଖରାପ କରୁଛ କାହିଁକି ସୁଶୀଳା ? ମନୁଷ୍ୟର ଜୀବନ କେତେଦିନକୁ ? ଯଦି ସେ କେଇଦିନ ମନ ଆନନ୍ଦରେ ନ କଟାଇବ, ଜୀବନଟା ଯେ ଦୁଃଖମୟ ହେବ ! ମୁଁ ତୁମକୁ ଆଗରୁ କହୁଛି, ଅତୀତକୁ ଭୁଲିଯାଅ । ମୁଁ ସ୍ୱୀକାର କରୁଛି, ମୁଁ ଦୋଷୀ । ମୋତେ ସେଥିନିମନ୍ତେ କ୍ଷମା କର । ଦୋଷ କରି ସାରିଛି ତ……

ବତାସ ପାଇଲେ ଅର୍ଦ୍ଧନିର୍ବାପିତ ଅଗ୍ନି ଯେପରି ଜଳି ଉଠେ ନାରାୟଣଙ୍କ କଥାରେ ସୁଶୀଳାର କ୍ରୋଧ ସେହିପରି ଜଳିଉଠିଲା । ସତେ ଯେପରି ତାର ଚକ୍ଷୁରୁ ଅଗ୍ନିକଣା ବାହାରିଲା । ସେ ବାଧା ଦେଇ କହିଲା, ଓଃ । ଦୁନିଆଁର କଥା ବୁଝିବା କଠିଣ । ଯେ ଯାହା ନୁହେଁ, ବାହାରେ ନିଜକୁ ସେ ସେଇଆ ବୋଲି ଦେଖାଏ । ଅନ୍ୟ କାହାକୁ ଭୟ ନ ଥିଲେ କ'ଣ ନିଜର ବିବେକକୁ ଭୟ ନାହିଁ ! ତୁମେ ରାକ୍ଷସ ହୋଇ ଦେବତାର ବେଶ ଧରି ମୋତେ ଭୁଲାଇବାକୁ ଚେଷ୍ଟା କରୁଛ । ମୁଁ ତ ଥରେ ଭୁଲିସାରିଛି । ବାଟବଣା ହୋଇସାରିଛି । ଆଉ ଏବେ ଜାଣି ଜାଣି ଭୁଲିଲେ କ୍ଷତି କ'ଣ ? କ୍ଷତିର ଶେଷ ସୀମାରେ ତ ପହଞ୍ଚିସାରିଛି । ଯୋଗୀ ଋଷିଙ୍କ ପରି ଶାସ୍ତ୍ରକଥା କହି ଆଉ ଲାଭ ନାହିଁ । ତମର ଶାସ୍ତ୍ରଜ୍ଞାନ, ମନୁଷ୍ୟତ୍ୱ, ବିବେକଶକ୍ତି ମୋତେ ସବୁ ଜଣା । ବୃଥା ନିଜକୁ ଘୋଡ଼ାଇ ରଖିବାକୁ ଚେଷ୍ଟା କର ନାହିଁ ।

ଅନ୍ୟ କୌଣସି ନୂତନ ପ୍ରେମିକା ନିକଟରେ ଆତ୍ମଗୋପନ କଲେ ବରଂ ଲାଭ ଅଛି । ମୋ ନିକଟରେ ନିଜକୁ ଏତେ ଜ୍ଞାନୀ ବୋଲି ପରିଚୟ ଦେଉଛ କାହିଁକି ବୃଥାରେ । ମନୁଷ୍ୟ ଜୀବନ କେତେ ଦିନକୁ, ଏହା ଯଦି ତମକୁ ଜଣାଥିଲି, ପାପ କାର୍ଯ୍ୟରେ ନିଯୁକ୍ତ ହେଲ କାହିଁକି ? ପାପର ବୋଝ ମୁଣ୍ଡରେ ଲଦି ହେଲ କାହିଁକି ? ଜୀବନ ଦୁଃଖମୟ ହେବ ବୋଲି ତମର ଏତେ ଭାବନା, ବୁଝିପାରୁ ନାହିଁ । ପଥର ଭିଖାରୀର ଜୀବନ ତମଠାରୁ ସୁଖମୟ, ସେ ପାପମୁକ୍ତ । ନିଜକୁ ଦୋଷୀ ବୋଲି ସ୍ୱୀକାର କରୁଛ; କିନ୍ତୁ ତମେ କେବଳ ମୋ ନିକଟରେ ଦୋଷୀ ନୁହଁ; ଭଗବାନଙ୍କ ନିକଟରେ ମଧ୍ୟ ଦୋଷୀ ଏବଂ ପାପର ଦଣ୍ଡ ନ ହେବାଯାଏ ତୁମେ କଳଙ୍କିତ । ଭଗବାନଙ୍କ ନିବିଷ୍ଟଚିତ୍ତରେ ପ୍ରାର୍ଥନା କର । ସେ ତମର ପାପର ପ୍ରାୟଶ୍ଚିତ୍ତ ଶୀଘ୍ର ବିଧାନ କରନ୍ତୁ । ମୋତେ ବୁଝାଇବାକୁ ଯାଇ ଆହୁରି ପାପ ଅର୍ଜନ କରୁଛ । ମୁଁ ଦେଖିଛି, ଦୁଃଖ ପଡ଼ିଲେ ତମେ ଚିନ୍ତିତ ହୋଇ ଗୀରବରେ ବସିରହ । ଆଜି ଅନ୍ୟର ମନ ଆନନ୍ଦ କରିବାକୁ କହୁଛ, ନିଜର ପ୍ରକୃତିକୁ ଘୋଡ଼ାଉଛ । କି ଆତ୍ମଗୋପନ !

ବିନୀତ ହୋଇ ସାଧବ କହିଲେ, ସୁଶୀଲା ମୁଁ ଆତ୍ମଗୋପନ କରୁ ନାହିଁ, କରିବାକୁ ମଧ୍ୟ ଚେଷ୍ଟା କରୁ ନାହିଁ । ଆଉ କାହା ପାଖରେ ହୁଏ ତ କରିଥାନ୍ତି; କିନ୍ତୁ ତୁମ ପାଖରେ ନୁହେଁ । ତମଛଡ଼ା ମୋର ପ୍ରକୃତ ବନ୍ଧୁ କିଏ ଅଛି ? ବରଂ ହୁଅନ୍ତା, ହୁଏ ତ ମୋର କଥା କହିବାରେ ଭୁଲ ହୋଇଥାଇ ପାରେ; ମାତ୍ର, ସେ ସବୁ ଭୁଲ ମୁଁ ଅଜାଣତରେ କରିଛି, ତମର ମନରୁ ଦୁଃଖ ଘୁଞ୍ଚାଇବାକୁ । ମୁଁ ତମର ସ୍ୱାମୀ—ସ୍ୱାମୀକୁ ତମେ କ୍ଷମା କରିବ ନାହିଁ ? ସ୍ୱାମୀ ଯଦି କୁପଥରେ ଯାଉଥାଏ ତାକୁ ତହିଁରୁ ନିବୃତ୍ତ କରିବ ନାହିଁ ? ତମେ ହିଁ ତ ମୋର ପ୍ରକୃତ ବନ୍ଧୁ !

ସୁଶୀଲା ଅବାକ୍ ହେଲା । ନାରାୟଣ ସାଧବଙ୍କର କ'ଣ ପ୍ରକୃତିରେ ପରିବର୍ତ୍ତନ ହୋଇଛି ନା କହିବାର ଚତୁରୀ, ସେ ବୁଝିପାରିଲା ନାହିଁ । ଅପଲକ ନୟନରେ ତାଙ୍କର ମୁଖକୁ କିଛି ସମୟ ନିରୀକ୍ଷଣ କରି କହିଲା—ମୁଁ ଶୁଣୁଛି ଦେଶଯାକ ତମର ପ୍ରଶଂସା କରନ୍ତି । ଦେଶଯାକ ତମର ବନ୍ଧୁ । ଅବଳା ମୁଁ ଅଳ୍ପ କଥାରେ ବିଶ୍ୱାସ କରିପକାଏ । କିନ୍ତୁ ଆଉ କରିବ ନାହିଁ । ବିଶ୍ୱାସ କରିବାର ଫଳ ପାଇଛି । ବନ୍ଧୁ ବନ୍ଧୁ କହି ବୃଥାରେ ମୋତେ ଭୁଲାଇବାକୁ ବସ ନାହିଁ ।

ସାଧବ କହିଲେ, ଦେଶଯାକ ମୋର ବନ୍ଧୁ ? କିଏ କହିଲା ତମକୁ ? ତୁମେ ଯାହା ଜାଣ, ଯଦି ଦେଶଯାକ ସେଇଆ ଜାଣନ୍ତି, ସମସ୍ତେ ମୋର ଶତ୍ରୁ ହୋଇ ପଡ଼ିବେ ।

ସୁଶୀଲା, ଦେଖିମାରୁଛି ଆତ୍ମରକ୍ଷାର ଆଉ ଉପାୟ ନାହିଁ । ବାଲସ୍ୱରାଜା କାଲି ସାଧବସଭାରେ ପ୍ରତ୍ୟେକ କଥା ଘୋଷଣା କରିବେ । ଧର୍ମର ଅବତାର ପ୍ରଜାରଞ୍ଜକ ଲଳାଟେନ୍ଦୁ ମୋର ଏତେ ଦୋଷ ଦେଖି କ୍ଷମା କରିପାରିବେ ନାହିଁ ।

ଫଳରେ କ'ଣ ହେବ ? ମୁଁ ତାଙ୍କର ସହସ୍ର ନିରୀହ ପ୍ରଜାଙ୍କୁ ପଶୁ ପରି ବଧ କରିଛି । କେତେକଙ୍କୁ ସୁମାତ୍ରାଦ୍ୱୀପରେ ଅଜୀବନ ବନ୍ଦୀ କରି ନରକର ଯନ୍ତ୍ରଣା ଭୋଗ କରିବାକୁ ଦେଇଛି । ଉତ୍କଳର ନୌବାଣିଜ୍ୟର ଅଧଃପତନ କାହା ପାଇଁ ଜାଣ ? ସବୁ—ସବୁ ମୋହ ପାଇଁ । ଧନ ଲୋଭରେ କେତେ ବୋଇତ ଉପରେ ଚଢ଼ାଉ କରିଛି । ରାଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ବେଳେ ବେଳେ ମୁଁ ବହୁମୂଲ୍ୟର ରତ୍ନମାନ ଏକାମ୍ରକୁ ପଠାଇଥାଏଁ । ଦେଶରେ ଲୋକମାନଙ୍କର ମନ ନେବାକୁ ସେମାନଙ୍କୁ ପ୍ରଚୁର ଧନ ଅର୍ପଣ କରେ । ସେ ସବୁ ଧନ କାହାର ? ଯାହାଙ୍କୁ ଦାନ କରେ ସେହିମାନଙ୍କର ସିନା ! ପ୍ରଜାବତ୍ସଳ ମହାରାଜ, ବାଲିରାଜାଙ୍କ ମୁହଁରୁ ମୋର ଏ ସମସ୍ତ ଘଟଣା ଶୁଣି ମୋତେ କ୍ଷମା ଦେଇ ପାରିବେ ? ପାରିବେ ନାହିଁ । ଆଗରୁ ବୁଝିପାରିଛି ପ୍ରାଣଦଣ୍ଡ ଆଦେଶ କରିବେ । କହ ସୁଶୀଳା, ରକ୍ଷା ପାଇବାର ଉପାୟ କ'ଣ । ମୁଁ ମୋର ଦୋଷଯାକ ତମ ନିକଟରେ ପ୍ରକାଶ କରୁଛି ।

ସୁଶୀଳା କ'ଣ କହିବ ବୁଝି ପାରିଲା ନାହିଁ । ହଠାତ୍ କହି ପକାଇଲା, ପୁଣି ଆତ୍ମଗୋପନ କରୁଛ ? ତମେ ତମର ସବୁ ଦୋଷ ପ୍ରକାଶ କରି ନାହଁ । ତମ ନାମରେ ମୁଁ କହୁଛି ଶୁଣ—

କେତେ ନିରୀହା ଅବଳାଙ୍କର ଅମୂଲ୍ୟ-ଧନ ବଳାତ୍କାରରେ ଅପହରଣ କରିଛ କହିଲ ? ରୂପର ମୋହରେ ପଡ଼ି କେତେ ସୁଖର ସଂସାର ପୋଡ଼ି ଛାରଖାର କରିଛ ମନେ କଲ ? ଏ ସବୁ କ'ଣ ତମର ଦୋଷ ନୁହେଁ ? ଦୋଷ କରି ଦୋଷ ଗୋପନ କରୁଛ ? ପାପ କେବେ ଛପି ରହେ ନାହିଁ; ସତ୍ୟ ପ୍ରକାଶ ପାଏ । ଧର୍ମ ହବାଲୋକପରି ଉଜ୍ଜ୍ୱଳ ଦିଶେ । ଅଧର୍ମ, ଅସତ୍ୟ, ପାପ ବଳେ ପ୍ରକାଶ ପାଏ । ତମେ ଅଧର୍ମୀ, ମିଥ୍ୟାବାଦୀ, ତମେ ମହାପାପୀ ।

ହଁ, ସୁଶୀଳା, ମୁଁ ମହାପାପୀ । ଯେତେ ପ୍ରକାର ପାପ ହୋଇପାରେ ମୁଁ ସେ ସବୁ କରିଛି । କେବଳ ମୁଁ ନୁହେଁ, ମୋର ପିତା ଏବଂ ପିତାମହମାନେ ମଧ୍ୟ ମୋପରି ଥିଲେ । ମୁଁ ସେମାନଙ୍କ ପରି, ମୁଁ ଏ ସବୁ ଶିକ୍ଷା କଲି କାହାଠାରୁ ? ସେହିମାନଙ୍କଠାରୁ ସିନା । ସୁଶୀଳା, ନଦୀ ଉନ୍ମାଦିନୀ ହୋଇ ଯୌବନଉନ୍ମତ୍ତ ହୋଇ ଅନ୍ଧ ପରି ବହିଯାଏ । ସେ କ'ଣ କରୁଛି, ନିଜେ କେଉଁଠାକୁ ଯାଉଛି, ବୁଝିପାରେ ନାହିଁ । କିନ୍ତୁ ଯେତେବେଳେ ଯାଇ ଅନନ୍ତ ସାଗରରେ ମିଶିଯାଏ, ତାର ସେ ଉନ୍ମାଦନା ଯାଏ କୁଆଡ଼େ ? କେଉଁଠାକୁ ଯାଉଥିଲା କ୍ଷଣକରେ ସେ ତା ବୁଝିପାରେ । ସେହିପରି ମୋ'ର ସୌନ୍ଦର୍ଯ୍ୟପିପାସା । ତମଠାରେ ହିଁ ତାର ଶେଷ ତୃପ୍ତି, ଶେଷ ଉନ୍ମାଦନା । କ୍ଷମାକରି, ବତାଇଦିଅ ଆତ୍ମରକ୍ଷାର ଉପାୟ କ'ଣ ?

ମୁଁ ନିର୍ବୋଧ ରମଣୀ । ଆତ୍ମରକ୍ଷାର କି ଉପାୟ ବତାଇ ପାରିବି ? ତେବେ ଗୋଟିଏ ଉପାୟ ଅଛି । ଯଦି ପ୍ରକୃତରେ ମୋତେ ବନ୍ଧୁ ବୋଲି ମନେ କର ମୋର

ଉପଦେଶ ପାଳନ କରିବାକୁ ମନସ୍ଥ କରିଛ, ମୁଁ ଭଗବାନଙ୍କୁ ସାକ୍ଷୀ ରଖି ଏହାହିଁ ବତାଇ ଦେଉଛି, ଯାଅ, କାଳ ବିଳମ୍ବ ନ କରି ବାଲରାଜାଙ୍କ ଶରଣାପନ୍ନ ହୁଅ । ତାଙ୍କର ଉଦ୍ଦେଶ୍ୟ ପୂରଣରେ ତାଙ୍କୁ ସାହାଯ୍ୟ କର । କାଲି ସାଧବସଭାକୁ ଯାଇ ସର୍ବସମ୍ମୁଖରେ ତମର ସମସ୍ତ ଦୋଷ ପ୍ରକାଶ କର । ନତଶିରରେ ଲଲାଟେନ୍ଦୁଙ୍କର ଦଣ୍ଡାଜ୍ଞା ଅମ୍ଳାନ ବଦନରେ ବରଣ କର । ଅନ୍ୟର ରକ୍ତ ବିନିମୟରେ ଯେଉଁ ବିପୁଳ ସମ୍ପତ୍ତିର ଅଧିକାରୀ ବୋଲି ନିଜକୁ ପ୍ରମାଣିତ କରୁଛ, ସେ ବିପୁଳ ସମ୍ପତ୍ତିକୁ ଦରିଦ୍ରଙ୍କୁ ବଣ୍ଟନ କର । ତେବେ କେଜାଣି ତମର ଆତ୍ମରକ୍ଷା ସମ୍ଭବ ହୋଇ ପାରିବ । ମୃତ୍ୟୁ ପରେ ହେଲେ ଆତ୍ମାର ସଦଗତି ହେବ ।

ସୁଶୀଳା, ବିରକ୍ତ ହୋଇ ମୋତେ ଆଉ ଉପହାସ କର ନାହିଁ । ମୁଁ ଅନୁତପ୍ତ । ସାଧବସଭାରେ ଯଦି ମୁଁ ମୋର ସବୁ ଦୋଷ ପ୍ରକାଶ କରେ, ମୁକ୍ତିଲାଭର ଆଶା ଅତ୍ୟଳ୍ପ । ଲଲାଟେନ୍ଦୁ ନିଶ୍ଚୟ ମୋର ପ୍ରାଣଦଣ୍ଡର ଆଦେଶ କରିବେ ।

ସାଧବ ଦୀର୍ଘନିଶ୍ୱାସ ତ୍ୟାଗ କଲେ ।

ସୁଶୀଳା ଟିକିଏ କ୍ରୁଦ୍ଧା ହୋଇ ଉତ୍ତେଜିତ ସ୍ୱରରେ କହିଲା, ଯେଉଁ ନରାଧମ ସହସ୍ର ସହସ୍ର ନିରୀହ ପ୍ରାଣୀଙ୍କର ଜୀବନ ନଷ୍ଟ କରି ଏତେ ପାପ ଅର୍ଜନ କରିଛି, ତାର ଜୀବନ କଳଙ୍କିତ । ସେହି କଳଙ୍କିତ ଜୀବନ ରକ୍ଷା କରିବାକୁ ସେ ଏଡ଼େ ଉଦ୍‌ବିଗ୍ନ ? ତେବେ ବୃଥାଠାରେ ଆତ୍ମରକ୍ଷା କରିବାକୁ ଏତେ ବ୍ୟସ୍ତ କାହିଁକି ? ସତ କହୁଛି, ଯଦି ତମ ଜୀବନ ନେଇ ତମର କଳଙ୍କିତ ଶରୀରକୁ ଶାଳୁଆ କୁକୁରଙ୍କର ଭୋଜନ ନିମନ୍ତେ ଦିଆଯାଏ, ତମର ମୁକ୍ତି ନାହିଁ । ନରକରେ ମଧ୍ୟ ସେ ଆତ୍ମାର ସ୍ଥାନ ନାହିଁ । ଏପରି ସ୍ଥଳେ ମୁଁ ତମକୁ ଉପଦେଶ ଦେଇ ନ ପାରେ । ତମେ ଅନୁତପ୍ତ ନୁହଁ । ଯେଉଁ ପାପକାର୍ଯ୍ୟ ନିଜ ହସ୍ତରେ ସମ୍ପାଦନ କରିଛ କେବଳ ଜୀବନର ଆନନ୍ଦ ବର୍ଦ୍ଧନ ନିମନ୍ତେ, ସେଥିପାଇଁ ତମେ ଟିକିଏ ହୋଇ ଅନୁତପ୍ତ ନୁହଁ । ଜୀବନରକ୍ଷାର ଉପାୟ ଆଉ ତମର ନାହିଁ । ସେଥିପାଇଁ ହତାଶ ହୋଇ ଦୁଃଖ କରୁଛ । ପାପ ନିମନ୍ତେ ଅନୁତାପ କରୁନାହଁ । ଯଦି ଜୀବନରକ୍ଷାର କୌଣସି ନୂତନ ବାଟ ଦେଖିପାରି, ତେବେ ଜଳରେ ଲବଣ ପରି ତମର ମିଥ୍ୟା ଅନୁତାପ, ଆଶା ଏବଂ ଉତ୍ସାହର ନୂତନ ତେଜରେ ମିଳାଇଯିବ । ବୃଥା ଛଳନା କରିବା ଅନାବଶ୍ୟକ । ଦୟା କରି ମୋତେ ଏଠାରେ ଏକୁଟିଆ ରହିବାକୁ ଦିଅ । ମୋର ପାପ ନିମନ୍ତେ ଭଗବାନଙ୍କଠାରେ କ୍ଷମା ପ୍ରାର୍ଥନା କରେ ।

ପର୍ଦ୍ଦା ଆଡ଼େଇ କୁଳା ବୀଣା ଧରି ଧୀରେ ଧୀରେ ପ୍ରକୋଷ୍ଠରେ ପ୍ରବେଶ କଲା ।

ସୁଶୀଳାର କଠୋର ବାକ୍ୟରେ ନାରାୟଣ ମୂକବତ୍ ବସି ମୁଖ ନିମ୍ନ କଲେ । ଆଉ ପଦେ କହିବାର ସାହସ କଲେ ନାହିଁ । କୁଳା ବୀଣା ଧରି ଦ୍ୱାରବନ୍ଧ ପାଖରେ ଠିଆ ହୋଇ ରହିଲା ଆଦେଶର ପ୍ରତୀକ୍ଷାରେ ।

କିଛିକ୍ଷଣ ନୀରବରେ ଅତିବାହିତ ହେଲା । ଜଣାଗଲା, ଯେପରି କିଏ ଜଣେ ଦ୍ରୁତପଦରେ ଦ୍ୱିତଳର ବାରଣ୍ଡା ଉପର ଦେଇ ତାଙ୍କର ଅଡ଼କୁ ଆସୁଛି । ତା'ର ପଦଶବ୍ଦରେ ପ୍ରକାଣ୍ଡ କୋଠାଟା ଦମକି ଉଠୁଛି । ନାରାୟଣ ଖୁବ୍ ଉତ୍ସୁକ ହୋଇ ପ୍ରତୀକ୍ଷା କରି ରହିଲେ ।

ଧୂନ୍‌ବାର ଶବ୍ଦାଙ୍କଲେ, ପଦଶବ୍ଦରୁ ଜଣାଯାଉଛି ଯେପରି ଜଣେ କେହି ଆସୁଛି । ଜଣେ ତ ? ଭୟର କାରଣ ନାହିଁ । ହୁଏତ ସେ ପ୍ରହରୀ କିମ୍ବା ଅନ୍ୟ କେହି ଭୃତ୍ୟ ହୋଇଥିବ । ସେ ପୁର୍ବପରି ଅରାମଚଉକି ଉପରେ ବସି ଦ୍ୱାର ଅଡ଼କୁ ସତୃଷ୍ଣ ନୟନରେ ଅନାଇ ରହିଲେ ।

ପଦଶବ୍ଦ ନିକଟରୁ ନିକଟତର ହେଲା । କିଛିକ୍ଷଣ ପରେ ଜଣେ ଲୋକ ଦ୍ରୁତପଦରେ ସେହି ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲା ।

ଦେଖିବାକୁ ସେ ବଳିଷ୍ଠକାୟ । କଳାକଳା । ଦେହରୁ ରକ୍ତ ବୁନ୍ଦା ବୁନ୍ଦା ହୋଇ ତଳେ ପଡ଼ୁଯାଉଛି । ମୁଣ୍ଡରେ ତାର ସ୍ତ୍ରୀଲୋକଙ୍କ ପରି ବେଙ୍କାଏ ବାଳ । ଆଖି ଦୁଇଟି ଚକ ପରି ବୁଲୁଛି । ଠିକ୍ କପାଳ ଉପରେ ଅବୁ । ଦେହରୁ ରକ୍ତଧାର ବହିଯାଉଥିଲେ ମଧ୍ୟ ସେଥି ପ୍ରତି ତା'ର ଭ୍ରୁକ୍ଷେପ ନାହିଁ । ହାତ ଦୁଇଟି ଛାତି ଉପରେ ଗୁଡ଼ି ରଖିଛି । ଆପାଦମସ୍ତକ ପ୍ରକମ୍ପିତ । ଶରୀରର ଅନେକ ସ୍ଥାନରେ କ୍ଷତ । କାନ୍ଧରେ ଖଣ୍ଡେ ଛୁରୀ ଲାଗି ରହିଛି । ନିଃଶ୍ୱାସ ଘନଘନ ପ୍ରବାହିତ ହେଉଛି ।

ଆଗନ୍ତୁକ ନାରାୟଣ ସାଧବଙ୍କ ସମ୍ମୁଖରେ ଖୁଣ୍ଟ ପରି ଠିଆ ହୋଇ ରହିଲା । ତାକୁ ଦେଖି ସୁଶୀଳା ଓ ବୁଲୀ ଭୟରେ ଚିତ୍କାର କରି ପ୍ରକୋଷ୍ଠର ଗୋଟିଏ କୋଣକୁ ଘୁଞ୍ଚିଗଲେ । ସୁଶୀଳା ଭାବିଲା, ମହାବିପଦ ଉପସ୍ଥିତ । ତଥାପି ପଳାୟନ କରିବାର ଉପାୟ ଦେଖିପାରିଲା ନାହିଁ । ପଳାଇଯିବାକୁ ଉଦ୍ୟତ ହୋଇ ମଧ୍ୟ ପଦେ ସୁଦ୍ଧା ଅଗ୍ରସର ହୋଇପାରିଲା ନାହିଁ । ଜଣାଗଲା, ତାର ପାଦ ଦୁଇଟିରୁ ଜୀବନ ଚାଲିଗଲାଣି । ଇଚ୍ଛା ହେଉଥାଏ, ଉଚ୍ଚ ସ୍ୱରରେ ଡାକି ନାରାୟଣଙ୍କୁ ସାବଧାନ କରିଦେବ । ପଳାୟନ କରି ଜୀବନ ରକ୍ଷା କରିପାରିବେ । ମାତ୍ର ଅବାଧ୍ୟ କଣ୍ଠଟି ଖୋଲିଲା ନାହିଁ । ଆଗନ୍ତୁକର ଭୟାବହ ଚେହେରା ଦେଖି ବୁଲୀ ସୁଶୀଳାକୁ ଜାବୁଡ଼ି କରି ଧରିଲା । ଉଭୟେ ଥରହରପାନ ପରି ଥରିବାକୁ ଲାଗିଲେ ।

ପ୍ରଥମେ ନାରାୟଣ ସାଧବ ଭୟରେ ଚମକିପଡ଼ିଲେ । ଆଗନ୍ତୁକ ହେଉଛି ତାଙ୍କର ବିଶ୍ୱସ୍ତ ଅନୁଚର ଭୀମା । ସେ ଭୀମାର ଦୁରବସ୍ଥା-ପ୍ରକମ୍ପିତ ଭୀଷଣ ମୂର୍ତ୍ତିକୁ ଭୟପୂର୍ଣ୍ଣ କାତର ଦୃଷ୍ଟିରେ ଅନାଇ ରହିଲେ ।

ଉପଦେଶ ପାଳନ କରିବାକୁ ମନସ୍ଥ କରିଛ, ମୁଁ ଭଗବାନଙ୍କୁ ସାକ୍ଷୀ ରଖି ଏହାହିଁ ବତାଇ ଦେଉଛି, ଯାଅ, କାଳ ବିଳମ୍ବ ନ କରି ବାଲରାଜାଙ୍କ ଶରଣାପନ୍ନ ହୁଅ । ତାଙ୍କର ଉଦ୍ଦେଶ୍ୟ ପୂରଣରେ ତାଙ୍କୁ ସାହାଯ୍ୟ କର । କାଲି ସାଧବସଭାକୁ ଯାଇ ସର୍ବସମ୍ମୁଖରେ ତମର ସମସ୍ତ ଦୋଷ ପ୍ରକାଶ କର । ନତଶିରରେ ଲଲ୍ଲଚନ୍ଦ୍ରଙ୍କର ଦଣ୍ଡାଜ୍ଞା ଅମ୍ଳାନ ବଦନରେ ବରଣ କର । ଅନ୍ୟର ରକ୍ତ ବିନିମୟରେ ଯେଉଁ ବିପୁଳ ସମ୍ପତ୍ତିର ଅଧିକାରୀ ବୋଲି ନିଜକୁ ପ୍ରଚାରିତ କରୁଛ, ସେ ବିପୁଳ ସମ୍ପତ୍ତିକୁ ଦରିଦ୍ରଙ୍କୁ ବଣ୍ଟନ କର । ତେବେ କେଜାଣି ତମର ଆତ୍ମରକ୍ଷା ସମ୍ଭବ ହୋଇ ପାରିବ । ମୃତ୍ୟୁ ପରେ ହେଲେ ଆତ୍ମାର ସଦଗତି ହେବ ।

ସୁଶୀଲା, ବିରକ୍ତ ହୋଇ ମୋତେ ଆଉ ଉପହାସ କର ନାହିଁ । ମୁଁ ଅନୁତପ୍ତ । ସାଧବସଭାରେ ଯଦି ମୁଁ ମୋର ସବୁ ଦୋଷ ପ୍ରକାଶ କରେ, ମୁକ୍ତିଲାଭର ଆଶା ଅତ୍ୟଳ୍ପ । ଲଲ୍ଲଚନ୍ଦ୍ର ନିଶ୍ଚୟ ମୋର ପ୍ରାଣଦଣ୍ଡର ଆଦେଶ କରିବେ ।

ସାଧବ ଦୀର୍ଘନିଶ୍ୱାସ ତ୍ୟାଗ କଲେ ।

ସୁଶୀଲା ଟିକିଏ କ୍ରୁଦ୍ଧା ହୋଇ ଉତ୍ତେଜିତ ସ୍ୱରରେ କହିଲା, ଯେଉଁ ନରାଧମ ସହସ୍ର ସହସ୍ର ନିରୀହ ପ୍ରାଣୀଙ୍କର ଜୀବନ ନଷ୍ଟ କରି ଏତେ ପାପ ଅର୍ଜନ କରିଛି, ତାର ଜୀବନ କଳଙ୍କିତ । ସେହି କଳଙ୍କିତ ଜୀବନ ରକ୍ଷା କରିବାକୁ ସେ ଏତେ ଉଦ୍‌ବିଗ୍ନ ? ତେବେ ବୃଥାଠାରେ ଆତ୍ମରକ୍ଷା କରିବାକୁ ଏତେ ବ୍ୟସ୍ତ କାହିଁକି ? ସତ କହୁଛି, ଯଦି ତମ ଜୀବନ ନେଇ ତମର କଳଙ୍କିତ ଶରୀରକୁ ବାଲୁଆ କୁକୁରଙ୍କର ଭୋଜନ ନିମନ୍ତେ ଦିଆଯାଏ, ତମର ମୁକ୍ତି ନାହିଁ । ନରକରେ ମଧ୍ୟ ସେ ଆତ୍ମାର ସ୍ଥାନ ନାହିଁ । ଏପରି ସ୍ଥଳେ ମୁଁ ତମ୍ଭକୁ ଉପଦେଶ ଦେଇ ନ ପାରେ । ତମେ ଅନୁତପ୍ତ ନୁହଁ । ଯେଉଁ ପାପକାର୍ଯ୍ୟ ନିଜ ହସ୍ତରେ ସମ୍ପାଦନ କରିଛ କେବଳ ଜୀବନର ଆନନ୍ଦ ବର୍ଦ୍ଧନ ନିମନ୍ତେ, ସେଥିପାଇଁ ତମେ ଟିକିଏ ହୋଇ ଅନୁତପ୍ତ ନୁହଁ । ଜୀବନରକ୍ଷାର ଉପାୟ ଆଉ ତମର ନାହିଁ । ସେଥିପାଇଁ ହତାଶ ହୋଇ ଦୁଃଖ କରୁଛ । ପାପ ନିମନ୍ତେ ଅନୁତାପ କରୁନାହଁ । ଯଦି ଜୀବନରକ୍ଷାର କୌଣସି ନୂତନ ବାଟ ଦେଖିପାର, ତେବେ ଜଳରେ ଲବଣ ପରି ତମର ମିଥ୍ୟା ଅନୁତାପ, ଆଶା ଏବଂ ଉତ୍ସାହର ନୂତନ ତେଜରେ ମିଳାଇଯିବ । ବୃଥା ଛଳନା କରିବା ଅନାବଶ୍ୟକ । ଦୟା କରି ମୋତେ ଏଠାରେ ଏକୁଟିଆ ରହିବାକୁ ଦିଅ । ମୋର ପାପ ନିମନ୍ତେ ଭଗବାନଙ୍କଠାରେ କ୍ଷମା ପ୍ରାର୍ଥନା କରେ ।

ପର୍ଦ୍ଦା ଆଡ଼େଇ ବୁଲି ବୀଣା ଧରି ଧୀରେ ଧୀରେ ପ୍ରକୋଷ୍ଠରେ ପ୍ରବେଶ କଲା ।

ସୁଶୀଲାର କଠୋର ବାକ୍ୟରେ ନାରାୟଣ ମୂକବତ୍ ବସି ମୁଖ ନିମ୍ନକୁ କଲେ । ଆଉ ପଦେ କହିବାର ସାହସ କଲେ ନାହିଁ । ବୁଲି ବୀଣା ଧରି ଦ୍ୱାରବନ୍ଧ ପାଖରେ ଠିଆ ହୋଇ ରହିଲା ଆଦେଶର ପ୍ରତୀକ୍ଷାରେ ।

କିଛିକ୍ଷଣ ନୀରବରେ ଅତିବାହିତ ହେଲା । ଜଣାଗଲା, ଯେପରି କିଏ ଜଣେ ଦ୍ରୁତପଦରେ ଦିତଳର ବାରଣ୍ଡା ଉପର ଦେଇ ତାଙ୍କର ଆଡ଼କୁ ଆସୁଛି । ତା'ର ପଦଶବ୍ଦରେ ପ୍ରକାଣ୍ଡ କୋଠାଟା ଦମକି ଉଠୁଛି । ନାରାୟଣ ଭୀତ ବିସ୍ମୟରେ ପ୍ରତୀକ୍ଷା କରି ରହିଲେ ।

ଧୁନବାର ଶବ୍ଦ ଶୁଣିଲେ, ପଦଶବ୍ଦରୁ ଜଣାଯାଉଛି ଯେପରି ଜଣେ କେହି ଆସୁଛି । ଜଣେ ତ ? ଭୟର କାରଣ ନାହିଁ । ହୁଏତ ସେ ପ୍ରହରୀ କିମ୍ବା ଅନ୍ୟ କେହି ଭୃତ୍ୟ ହୋଇଥିବ । ସେ ପୂର୍ବପରି ଆରାମଚଉକି ଉପରେ ବସି ଦ୍ୱାର ଆଡ଼କୁ ସତୃଷ୍ଣ ନୟନରେ ଅନାଇ ରହିଲେ ।

ପଦଶବ୍ଦ ନିକଟରୁ ନିକଟତର ହେଲା । କିଛିକ୍ଷଣ ପରେ ଜଣେ ଲୋକ ଦ୍ରୁତପଦରେ ସେହି ପ୍ରକୋଷ୍ଠ ମଧ୍ୟରେ ପ୍ରବେଶ କଲା ।

ଦେଖିବାକୁ ସେ ବଳିଷ୍ଠକାୟ । କଳାକାଳିଆ । ଦେହରୁ ରକ୍ତ ବୁନ୍ଦା ବୁନ୍ଦା ହୋଇ ତଳେ ପଡ଼ୁଯାଉଛି । ମୁଣ୍ଡରେ ତାର ସ୍ତ୍ରୀଲୋକଙ୍କ ପରି ବେକଯାଏ ବାଳ । ଆଖି ଦିଓଟି ଚକ ପରି ବୁଲୁଛି । ଠିକ୍ କପାଳ ଉପରେ ଆବୁ । ଦେହରୁ ରକ୍ତଧାର ବହିଯାଉଥିଲେ ମଧ୍ୟ ସେଥି ପ୍ରତି ତା'ର ଭ୍ରୂକ୍ଷେପ ନାହିଁ । ହାତ ଦିଓଟି ଛାତି ଉପରେ ଚାପି ରଖିଛି । ଆପାଦମସ୍ତକ ପ୍ରକମ୍ପିତ । ଶରୀରର ଅନେକ ସ୍ଥାନରେ କ୍ଷତ । ବାଳରେ ଖଣ୍ଡେ ଛୁରୀ ଲାଗି ରହିଛି । ନିଃଶ୍ୱାସ ଘନଘନ ପ୍ରବାହିତ ହେଉଛି ।

ଆଗନ୍ତୁକ ନାରାୟଣ ସାଧବଙ୍କ ସମ୍ମୁଖରେ ଖୁଣ୍ଟ ପରି ଠିଆ ହୋଇ ରହିଲା । ତାକୁ ଦେଖି ସୁଶୀଳା ଓ ବୁଲା ଭୟରେ ଚିତ୍କାର କରି ପ୍ରକୋଷ୍ଠର ଗୋଟିଏ କୋଣକୁ ଘୁଞ୍ଚିଗଲେ । ସୁଶୀଳା ଭାବିଲା, ମହାବିପଦ ଉପସ୍ଥିତ । ତଥାପି ପଳାୟନ କରିବାର ଉପାୟ ଦେଖିପାରିଲା ନାହିଁ । ପଳାଇଯିବାକୁ ଉଦ୍ୟତ ହୋଇ ମଧ୍ୟ ପଦେ ସୁଦ୍ଧା ଅଗ୍ରସର ହୋଇପାରିଲା ନାହିଁ । ଜଣାଗଲା, ତାର ପାଦ ଦୁଇଟିରୁ ଜୀବନ ଚାଲିଗଲାଣି । ଇଚ୍ଛା ହେଉଥାଏ, ଉଚ୍ଚ ସ୍ୱରରେ ଡାକି ନାରାୟଣଙ୍କୁ ସାବଧାନ କରିଦେବ । ପଳାୟନ କରି ଜୀବନ ରକ୍ଷା କରି ପାରିବେ । ମାତ୍ର ଅବାଧ୍ୟ ଜିଭଟି ଓଲଟିଲା ନାହିଁ । ଆଗନ୍ତୁକର ଭୟାବହ ଚେହେରା ଦେଖି ବୁଲା ସୁଶୀଳାକୁ ଜାବୁଡ଼ି କରି ଧଇଲା । ଉଭୟେ ବରଡ଼ାପତ୍ର ପରି ଥରିବାକୁ ଲାଗିଲେ ।

ପ୍ରଥମେ ନାରାୟଣ ସାଧବ ଭୟରେ ଚମକିପଡ଼ିଲେ । ଆଗନ୍ତୁକ ହେଉଛି ତାଙ୍କର ବିଶ୍ୱସ୍ତ ଅନୁଚର ଭୀମା । ସେ ଭୀମାର ଦୁରବସ୍ଥା-ପ୍ରକମ୍ପିତ ଭୀଷଣ ମୂର୍ତ୍ତିକୁ ଭୟପୂର୍ଣ୍ଣ କାତର ଦୃଷ୍ଟିରେ ଅନାଇଁ ରହିଲେ ।

ଭୀମା ନାରାୟଣଙ୍କର ମୁହଁକୁ ଅନାଇଁ କ'ଣ କହିବାକୁ ଚେଷ୍ଟା କଲା । କହିପାରିଲା ନାହିଁ । ତା'ର ଓଠ ଥରିଲା । ନାରାୟଣ ଚକିତ ହୋଇ ଭୟ-ବିଜଡ଼ିତ କଣ୍ଠରେ ପଚାରିଲେ, କଥା କ'ଣ ଭୀମା ! ତୋର ଏପରି ଦୁର୍ଦ୍ଦଶା କାହିଁକି ?

ଭୀମାର ଅଧରରେ, ଆକାଶର ବିଦ୍ୟୁତ୍ ପରି ସ୍ମିତହାସ୍ୟ ଫୁଟି ଆସୁ ଆସୁ ପୁଣି ସେହି ପ୍ରକମ୍ପିତ ଅଧରରେ ମିଳାଇଗଲା । ସେ ହୃଦୟରୁ ହସ୍ତ କାଢ଼ି ସାଧବଙ୍କର ପାଦତଳେ ନଇଁପଡ଼ିଲା । ପାଦ ଦୁଇଟି ହାତରେ ଧରି ମୁଣ୍ଡରେ ଲଗାଇ ଟିକିଏ ଜୋର୍‌ରେ କହିଲା, ଆପଣଙ୍କର ଆଦେଶ ପାଳନ କରିଛି ।

ମୋ ଆଦେଶ—କହି ସାଧବ ଭୀମାକୁ କି ଆଦେଶ ଦେଇଥିଲେ ଚିନ୍ତା-କଲେ । ଭୀମା ଆଉ ବିଳମ୍ବ ସହ୍ୟ କରି ନ ପାରି ବ୍ୟଥିତ ଚିତ୍ତରେ କହିଲା, ମଣିଆଁକୁ ଶେଷକରି ଆସିଛି ।

ମଣିଆଁକୁ ? ମଣିଆଁ କେଉଁଠୁ ଆସିଲା ଏଠାକୁ ।

ସାଧବ ଭୀମାର କାନ୍ଧରୁ ଛୁରୀଖଣ୍ଡି ଜୋର୍‌ରେ ଟାଣି ଆଣି ତଳେ ନିକ୍ଷେପ କଲେ ।

ଭୀମା ଚିତ୍କାର କରି ପଛକୁ ଘୁଞ୍ଚିଗଲା । କୃତଜ୍ଞତାପୂର୍ଣ୍ଣ ସ୍ୱରରେ ଆରମ୍ଭ କଲା, ମୁଁ ଆହତ । ବେଶିବେଳ ନାହିଁ । ମୋ କଥାରେ ବିଶ୍ୱାସ କର—ବାଲରାଜା ଯେ ସେହି ହିଁ ମଣିଆଁ । ମୁଁ ତାଙ୍କର ମୁହଁରୁ ଶୁଣିଛି । ସାଧବ—ତମପାଇଁ ପ୍ରାଣ—ଦେ-ଏ-ଲି-ଇ—ମୋର ପିଲାଏ ତମକୁ..... ।

କହୁ କହୁ ଭୀମା ତଳେ ପଡ଼ିଗଲା । ତା'ର ହୃଦୟରୁ ରକ୍ତସ୍ରୋତ ପିଚ୍ ପିଚ୍ ହୋଇ ବାହାରି ଗୃହର ଚଟାଣକୁ ଲୋହିତ କଲା । ସାଧବ ନିଶ୍ଚଳ ରହି ଲୋକଟିର ମୃତ୍ୟୁ ଯନ୍ତ୍ରଣା ଦେଖୁ ଦେଖୁ ମୃତ୍ୟୁର ଶୀତଳସ୍ପର୍ଶ ଭୀମାର ସମଗ୍ର ଶରୀରରେ ଖେଳିଗଲା ।

ସାଧବଙ୍କର ମିଥ୍ୟା ଅନୁତାପ କ୍ଷଣକରେ ଆଶା ଏବଂ ଉତ୍ସାହର ନୂତନ ତରଙ୍ଗରେ ମିଳାଇଗଲା । ଭୀମାର ମୃତ୍ୟୁ ନିମନ୍ତେ ମଧ୍ୟ ମନରେ ଟିକିଏ ଦୁଃଖ ହେଲା ନାହିଁ । ଭୀମାକୁ ଛାଡ଼ି ପୁନର୍ବାର ଅଗ୍ନିମଣ୍ଡଳକର ଆଶ୍ରୟ ଗ୍ରହଣ କଲେ । ମୁଖ ଉଜ୍ଜ୍ୱଳ ଦେଖାଗଲା ।

ବର୍ତ୍ତମାନ ଉପାୟ କ'ଣ ? ସାଧବ ଚିନ୍ତାକଲେ, ସେ କ'ଣ ପ୍ରକୃତରେ ତେବେ ମୁକ୍ତ ? ବାଳିରାଜା ମୃତ; କିନ୍ତୁ ଚମ୍ପିଲା ଓ ଅଧିରାଜ ତ ଜୀବିତ । ଚମ୍ପିଲା ଏବଂ ଅଧିରାଜ ଯଦି ସାଧବସଭାରେ ସବୁ କଥା ପ୍ରକାଶ କରନ୍ତି ?

ଦେଖୁ ଦେଖୁ ସାଧବଙ୍କର ଆନନ୍ଦ କ୍ଷଣକରେ ବିଲୁପ୍ତ ହେଲା ହତାଶାର ଅମାନ୍ଧକାରରେ । ଅନ୍ଧକାର ଦେହରେ ବିଦ୍ୟୁତପରି ତାଙ୍କର ହତାଶାକ୍ଳିଷ୍ଟ ମନରେ ଆଶାର ବିଦ୍ୟୁତ୍ ରେଖା ଖେଳିଉଠୁଥାଏ । ହଠାତ୍ ସାଧବଙ୍କ ମନରେ ଗୋଟିଏ ଦୃଢ ଆଶାର ଉଦୟ ହେଲା । ସେ ସବୁ କଥା ଭୁଲି ଡାକଲେ, ବୁଲ୍ଲୀ, ବୁଲ୍ଲୀ ।

ସାଧବଙ୍କ ଡାକରେ ବୁଲ୍ଲୀ ସୁଶୀଳାକୁ ଛାଡ଼ି ନିକଟକୁ ଆସିଲା । ସାଧବ ବ୍ୟଗ୍ରଭାବରେ କହିଲେ, ଲୋକମାନଙ୍କୁ ଡାକି ଦେ ସେମାନେ ଏ ମୁର୍ଦ୍ଦାରଟାକୁ ନେଇ ଯାଆନ୍ତୁ । ହଁ, ଦେଖ୍ ବେଶି ଲୋକଙ୍କୁ ଡାକିବା ଦରକାର ନାହିଁ । ଜଣେ, ଦି'ଜଣ ।

ବୁଲ୍ଲୀ ଆଦେଶ ପାଳନ କରିବାକୁ ଚାଲିଗଲା ।

ସୁଶୀଳାକୁ ନିକଟରେ ଦେଖି ସାଧବ ମନ ଆନନ୍ଦରେ କହିଲେ, ଏଥର ସୁଶୀଳା, ଆଉ ମୋର ଭୟ ନାହିଁ । ଭୀମା ବାଳିରାଜାକୁ ମାରି ଆସିଛି । ବାଳିରାଜା କିଏ ଜାଣ ?

ସୁଶୀଳା ଉତ୍ତର ନ ଦେଇ ଭୀମାର ମୃତପିଣ୍ଡକୁ ଘୃଣାବ୍ୟଞ୍ଜକ ଦୃଷ୍ଟିରେ ଅନାଇଁ ରହିଲା ।

ସାଧବ ପୁଣି ପଚାରିଲେ, ବାଳିରାଜା କିଏ ଜାଣ ସୁଶୀଳା ?

ଭୀମାର କଥା ସୁଶୀଳା ଶୁଣି ପାରିଥିଲା, କିନ୍ତୁ ବୁଝି ପାରିଲା ନାହିଁ । ସାଧବଙ୍କର ପ୍ରଶ୍ନ ଶୁଣି ହଠାତ୍ ବିଳବିଳେଇ ଉଠିଲା ପରି କହିଲା, ମଣିଅାଁ ଭାଇକୁ ମାରି ଆସିଛି ଭୀମା ? ମଣିଅାଁ ଭାଇକୁ । ତମେ ପାରିଲ ?

ସାଧବଙ୍କ ଆଡ଼କୁ ମୁହଁ ବୁଲାଇ କହିଲା, ଏତେ ପାପ ସହିପାରୁଛ ସାଧବ ? ତମର ରାକ୍ଷସ-ହୃଦୟ କିଣାହିର ରକ୍ତଧାରରେ ତରଳ ହେଉ ନାହିଁ । କାହିଁଗଲା ତମର ଅନୁତାପ ? କାହିଁ ଗଲା ତମର ଦୁଃଖ ସାଧବ ? ବୁଝିଲି, ସବୁ ତମର ଛଳନା । ତମର ହୃଦୟ ହଳାହଳମୟ । ଓଃ, ମଣିଅାଁ ଭାଇ, କ୍ଷମାକର ମୋତେ । କିଏ ଆସି ମୋର କାନରେ କହି ଯାଉଛି ମଣିଅାଁ ଭାଇ ତୋର ରକ୍ତ ଚାହେଁ, ମଣିଅାଁ ଭାଇ ତୋର ରକ୍ତ ଚାହେଁ । କାହାର ରକ୍ତ ? ନାରାୟଣ ସାଧବର ? ନାରାୟଣ ସାଧବର କଳୁଷିତ ରକ୍ତ ? ନାରାୟଣ ସାଧବର କଳଙ୍କିତ ରକ୍ତ ? ରକ୍ତ ଚାହେଁ ମଣିଅାଁ ଭାଇ !

ତମର ପବିତ୍ର ଆତ୍ମା କଳୁଷିତ ରକ୍ତରେ କଳୁଷିତ କରିବ କାହିଁକି ? ହା ହା, ପୁଣି ସେହି ସ୍ୱର, ସେହି ଚିର ପରିଚିତ ମଣିଅାଁ ଭାଇର ସ୍ୱର କାନରେ

କହୁ ଯାଉଛି, ତୋର ରକ୍ତ ଚାହେଁ । କି କର୍କଶ ସେ ସ୍ୱର—କେତେ ଯାତନା-ବିଜଡ଼ିତ ହୃଦୟଦାହକ ସେ ସ୍ୱର! ମୋର ହୃଦୟ ଆହୁରି କଳଙ୍କିତ । ମୋର ପ୍ରାଣ ଆହୁରି କଳୁଷିତ—ମୋର କଳଙ୍କିତ ରକ୍ତ ଚାହେଁ ମଣିଆଁ ଭାଇର ଆତ୍ମା । ଏଇ ନେ—

ସୁଶୀଳା ରୂପଛଡ଼ା ଛୁରିକା ଖଣ୍ଡି କମ୍ପିତ ହସ୍ତରେ ଠେକି ହୃଦୟରେ ଲଗାଇଲା । ପୁଣି ପାଗଳ ପରି କହିଲା, ମୋର ରକ୍ତ ଚାହଁ ନା । ତେବେ ଭଦ୍ରଯୁଙ୍କର । ଭଦ୍ରଯୁଙ୍କର ରକ୍ତରେ ତମର ଦଗ୍ଧଆତ୍ମା ଶୀତଳ କରିବ ! ଦେବି, ରକ୍ତ ଦେବି । ଭଦ୍ରଯୁଙ୍କର ରକ୍ତ ଦେବି, ତମର ଦଗ୍ଧ ଆତ୍ମା ଶାନ୍ତ କରିବ । ପ୍ରଥମେ ସାଧବର ରକ୍ତ ! ସେ ରାକ୍ଷସ । ସାଧବ ପ୍ରସ୍ତୁତ ହୁଅ । ମଣିଆଁ ଭାଇ ତମର ରକ୍ତ ଚାହେଁ । ମଣିଆଁ ଭାଇ, ମୋର ରକ୍ତ ଚାହେଁ ।

ସୁଶୀଳା ସ୍ଥିର ହୁଅ ।

ସ୍ଥିର ହେବି ? ସେ ସ୍ଥିର କରି ଦେବେ କାହିଁକି । ତାଙ୍କର ଆତ୍ମା ଯେ ଆଜି ଅସ୍ଥିର । ଉଃ ! ଏ କାହାର ମୂର୍ତ୍ତି । କି ଭୟଙ୍କର ! ସାଧବ, ସାଧବ ରକ୍ଷା କର । ମଣିଆଁ ଭାଇ ମୋର ରକ୍ତ ନେବାକୁ ଆସିଛି, ମଣିଆଁ ଭାଇ ତମର ରକ୍ତ ନେବାକୁ ଆସିଛି ।

କହୁ କହୁ ସୁଶୀଳା ତ୍ରସ୍ତ ହୋଇ ସାଧବକୁ ଆଲିଙ୍ଗନ କଲା । ସାଧବ ସାନ୍ତ୍ୱନା ଦେବାକୁ ସୁଶୀଳାର ମୁଣ୍ଡରେ ହାତ ବୁଲାଇ ବୁଲାଇ କହିଲେ, ଆଉ ମଣିଆଁ ଭାଇକୁ ଭୟ କରୁଛ କାହିଁକି ସୁଶୀଳା, ତମେ ମୁକ୍ତ । ମୁଁ ବି ମୁକ୍ତ । ସ୍ଥିର ହୁଅ । ମଣିଆଁ ଭାଇ ତମର କିଛି କରିପାରିବ ନାହିଁ । ସେ ଯେ ମୃତ । ଉଠ ସୁଶୀଳା, ଉଠ । ରାତି ଗଲି ଅଧିକ ହେଲାଣି, ଆହୁରି ତେର୍ କାମ ବାକି ଅଛି । ମୋତେ ବର୍ତ୍ତମାନ ରାଧାଶ୍ୟାମଙ୍କ ଘରକୁ ଯିବାକୁ ହେବ । ଆହୁରି ଦୁଇ ଜଣ ବାକି ଅଛନ୍ତି । ସେ କେଇଟା ମାଛି । ମାଛି କେଇଟାଙ୍କୁ ହଟାଇ ପାରିଲେ ଆମର ସବୁ ଚିନ୍ତା ଲୋପ ପାଇବ । ଚମ୍ପଳା, ଅଧିରାଜ ଓ—

ସୁଶୀଳା ଚମକିଉଠିଲା । ଆହୁରି ରକ୍ତ ଚାହଁ ସାଧବ ? ତମର ରକ୍ତ ପିପାସା ମେଣ୍ଟି ନାହିଁ ?

ସୁଶୀଳା ନାରାୟଣ ସାଧବଙ୍କ କୋଳରୁ ଉଠି ଆସି ଆଗରେ ଠିଆ ହେଲା । ନାରାୟଣ ସାଧବଙ୍କର ଆପାଦମସ୍ତକ ନିରୀକ୍ଷଣ କରି କ୍ରୁଦ୍ଧିତା ସର୍ପିଣୀ ପରି ଛୁରିଖଣ୍ଡି ଉପରକୁ ଟେକି କହିଲା, ରକ୍ତ ଚାହଁ ? ଚମ୍ପଳାର ରକ୍ତ ଚାହଁ ? ଅଧିରାଜର ରକ୍ତ ଚାହଁ ? ଏତେ ନିରୀହ ବ୍ୟକ୍ତିଙ୍କର ରକ୍ତପାନ କରିପାରିବ ନାହିଁ । ତମର ରକ୍ତରେ ଆଜି ତମର ଆତ୍ମାକୁ ଶାନ୍ତ କରିବି ।

ସାଧବ ଭାବଲେ ବୋଧହୁଏ ସୁଶୀଳା ପାଗଳ ହୋଇଗଲା । ପାଗଳର କେଉଁ ସ୍ଥିରତା । ସୁଶୀଳା ହୁଏତ ତାଙ୍କର ଅନିଷ୍ଟ କରିପାରେ । ପ୍ରଥମେ ଜୀବନ, ତାପରେ ସୁଶୀଳା । ଜୀବନ ଥିଲେ କେତେ ସୁଶୀଳା ଆସି ପାରିବେ ।

ସାଧବ ସୁଶୀଳାର ହାତରୁ ଛୁରିଖଣ୍ଡ ଟାଣିନେଇ କହିଲେ, ସୁଶୀଳା, ମନେ ରଖ, ମୁଁ ସ୍ୱାମୀ । ମୋତେ ମାରି କ'ଣ ସ୍ୱାମୀଘାତକୀ ହେବ ? ସୁଶୀଳା ପୁଣି ପାଗଳୀ ପରି ବକିଲା, ସ୍ୱାମୀ ? ହଁ ସ୍ୱାମୀ । ନିଶ୍ଚୟ ! ନାରାୟଣ ସାଧବ ମୋର ସ୍ୱାମୀ । ମଣିଆଁ ମୋର ନୁହେଁ । ତାକୁ କେବେ ଥରେ ଭଲ ପାଇଥିଲି ଅତୀତରେ, ସେଥିପାଇଁ ସ୍ୱାମୀଘାତକୀ ହୋଇ ନ ପାରେ । ମଣିଆଁ ସ୍ୱାର୍ଥପର । ଜାଣୁ ଜାଣୁ ସେ ମୋର ସ୍ୱାମୀଙ୍କୁ ବିପଦରେ ପକାଇବାକୁ ଇଚ୍ଛା କରିଥିଲା । ସ୍ୱାମୀ, ମୋତେ କ୍ଷମାକର । ମୁଁ ଆଉ ତମର ଅବାଧ ହେବ ନାହିଁ ।

ନାରାୟଣ ସାଧବ ପ୍ରକୋଷ୍ଠ ତ୍ୟାଗ କରି ଚାଲି ଯାଇଥିଲେ । ସୁଶୀଳା ଦେଖିଲା, ଘରେ ସେ ଏବଂ ଭ୍ରମାର ମୃତପିଣ୍ଡ ଛଡ଼ା ଆଉ କେହି ନାହିଁ ।

ସେ ମଧ୍ୟ ପ୍ରକୋଷ୍ଠ ତ୍ୟାଗ କରି ଚାଲିଗଲା ।

ରାଧାଶ୍ୟାମଙ୍କର ଦୁର୍ଘଟଣା ଦେଖି ବାଲସ୍ୱଜା ଏକାଥରେ କାତର ହୋଇ ପଡ଼ିଲେ । ବୃନ୍ଦା ଏବଂ ହେମଙ୍କୁ କଣ କହି ସାନ୍ତ୍ୱନା ଦେବେ, ବୁଝି ପାରିଲେ ନାହିଁ । ପାଟିରୁ କଥା ବାହାରିଲା ନାହିଁ । ସେ ବୁଝି ପାରିଲେ, ଏ ଦୁର୍ଘଟଣାର ପ୍ରଧାନ କାରଣ ସେ ନିଜେ । ସେ ଯଦି ରାଧାଶ୍ୟାମଙ୍କ ଘରେ ଆଶ୍ରୟ ନେଇ ନ ଥାନ୍ତେ, ତାଙ୍କର ଏ ଦୁରବସ୍ଥା ହୋଇ ନ ଥାନ୍ତା । ଏ ନରହତ୍ୟାକାରୀ ଯେ ହେଉ, ସେ ନିଶ୍ଚୟ ନାରାୟଣ ସାଧବର ପ୍ରରୋଚନାରେ ଏହା କରିଛି । ନୋହିଲେ ନିର୍ଦ୍ଦୋଷକୁ କାହିଁକି କିଏ ମାରିବାକୁ ଯାନ୍ତା ? ରାଧାଶ୍ୟାମଙ୍କୁ ମାରିବା ଉଦ୍ଦେଶ୍ୟ ତାର ନ ଥିଲା—ବାଲସ୍ୱଜା ଏହା ସ୍ପଷ୍ଟ ବୁଝି ପାରିଥିଲେ । ଆଉ ମଧ୍ୟ ବୁଝି ପାରିଥିଲେ, ଅତି ଶୀଘ୍ର ଯଦି ଏହାର ପ୍ରତିକାର କରି ନ ଯାଏ ପରେ ବଡ଼ ବିପଦରେ ପଡ଼ିବାକୁ ହେବ । ସେଥି ନିମନ୍ତେ ତାଙ୍କର ଭୟ ନୁହେଁ । ଯେପରି ତାଙ୍କର ନିମନ୍ତେ ଗୋଟିଏ ନିର୍ଦ୍ଦୋଷ ପ୍ରାଣୀର ପ୍ରାଣନାଶ ହୋଇଛି, ସେହିପରି ଅନ୍ୟାନ୍ୟମାନଙ୍କର ହୋଇ ପାରେ । ଏହାର ପ୍ରତିକାର, କାହ୍ନୁ ଭୂୟାଁଙ୍କୁ ଜଣାଇ ତାଙ୍କର ସାହାଯ୍ୟ ପ୍ରାର୍ଥନା କରିବା !

ବାଲସ୍ୱଜା ରାଧାଶ୍ୟାମଙ୍କୁ ସେହିପରି ଅବସ୍ଥାରେ ଛାଡ଼ି କାହ୍ନୁ ଭୂୟାଁଙ୍କ ପ୍ରାସାଦାଭିମୁଖରେ ଚାଲିଲେ । ମନ ମଧ୍ୟରେ ସହସ୍ର ଚିନ୍ତାର ତରଙ୍ଗ ଖେଳି

ଉଠିଲା । କେତେବେଳେ କେଉଁ ବସ୍ତୁରେ ଭାବନା ମନ ମଧ୍ୟରେ ଆସି ପ୍ରବେଶ କରୁଥାଏ । ପ୍ରଥମେ ଆସିଲା ବାଲ୍ୟ ସୁଶୀଳାର ନଗ୍ନ ରୂପ, ହାସ୍ୟ କୌତୁକ, ପ୍ରେମ, ବ୍ରହ୍ମଦେଶରେ ସାକ୍ଷାତ । କ୍ଷଣକ ଭିତରେ ସେ ଯାହା ଦେଖିଛନ୍ତି, ତାହାହିଁ ଯଥେଷ୍ଟ । ଏହି ଅଳ୍ପ ସମୟ ସାକ୍ଷାତରେ ସେ ବୁଝି ପାରିଛନ୍ତି, ସୁଶୀଳାର ମନର ଭାବ, ସେ ଜାଣି ପାରିଛନ୍ତି ସୁଶୀଳା ଜଣେ ଦସ୍ୟୁର ସ୍ତ୍ରୀ । ପାପୀୟସୀ ! ପାପକୁ ପ୍ରଶ୍ରୟ ଦେଇଛି ।

ବାଲ୍ୟରାଜା ଚିନ୍ତାକଲେ । ଆଉ ଚଞ୍ଚଳା, ସେ କଣ ପ୍ରକୃତରେ ଭଲ ପାଏ ମୋତେ ? ତାର ଆଶା ବୃଥା । ମୁଁ ଜଣକୁ ଥରେ ଭଲ ପାଇଥିଲି, ଜଣକୁ ମୋର ଜୀବନର ସମସ୍ତ ପ୍ରେମ ଅର୍ପଣ କରିଥିଲି । ଆଉ ଜଣକୁ ପୁଣି ସେ ପ୍ରେମ ଅର୍ପଣ କରିବି କିପରି ? ତାହା ଯେ ପ୍ରଦତ୍ତ । ପ୍ରଦତ୍ତ ପଦାର୍ଥକୁ ଫେରାଇ ଆଣି ପୁଣି ଅନ୍ୟକୁ ଦାନ କରିବା ଅବିଧି । ଯାହାକୁ ଦାନ କରିଥିଲି, ସେ ଯଦି ଗ୍ରହଣ ନ କରେ ?

ଚଞ୍ଚଳା, ତୁମେ ଦେବୀ—ମୋର ହୃଦୟ ଅଧିକାର କରିବାକୁ ବସିଛ । ଓଃ, ଚଞ୍ଚଳା ଦେବୀ ଏହା ମୁଁ ଜାଣିବି କିପରି ? ସୁଶୀଳାକୁ କଣ ଥରେ ମୁଁ ଦେବୀ ବୋଲି ଭାବି ନ ଥିଲି ? ସୁଶୀଳାକୁ କଣ ନାରୀଜାତିର ଅତି ଉଚ୍ଚରେ ଦିନେ ମୁଁ ସ୍ଥାନ ଦେଇ ନ ଥିଲି । ହେଲା କଣ ? କି ଆଶ୍ଚର୍ଯ୍ୟ । ଅମୃତ ବୋଲି ଯାହାକୁ ଭକ୍ଷଣ କରିବାକୁ ବସିଥିଲି, ସେ ହଳାହଳ ପାଲଟିଗଲା । ଦେବୀ ବୋଲି ଯାହାକୁ ଭାବିଥିଲି, ସେ ଦାନବୀ । ଦାନବୀର ହୃଦୟରେ ପ୍ରେମର ପବିତ୍ର ତରଙ୍ଗ ଖେଳି ପାରେ ! କିନ୍ତୁ ସୁଶୀଳା ହୃଦୟରେ ପ୍ରେମ କାହିଁ ? ସେ ଜଣକୁ ପରିତ୍ୟାଗ କରି ଅନ୍ୟ ଜଣକୁ ଗ୍ରହଣ କରିଛି । ହୁଏତ ସମୟରେ ତାଙ୍କୁ ମଧ୍ୟ ତ୍ୟାଗ କରି ଅନ୍ୟ ଜଣକୁ ଗ୍ରହଣ କରିପାରେ । ଏହାହିଁ କଣ ନାରୀଜାତିର ପ୍ରେମ ?

ଏହି ଛାର ପ୍ରେମ ନିମନ୍ତେ ସଂସାର ପାଗଳ । ରୂପ ଯଦି ଏ ପ୍ରେମର ଅସ୍ତ୍ର ହୁଏ, ତେବେ ସେ ପ୍ରେମ କେବଳ ମିଥ୍ୟା ।

କେଉଁଠାରେ ରମଣୀର ଆକର୍ଷଣ ଲୁକ୍‌କାୟିତ ଯାହା ପାଇଁ ଜଗତ ଅନ୍ଧ, ପାଗଳ, ବନ୍ଦୀ ? ଏହା କି ତାର ଚକ୍ଷୁରେ ଥାଏ ? ଏହା କି ତାର ଓଷ୍ଠକରେ ଥାଏ ? ଏହା କି ତାର ବାକ୍ୟର ମଧୁରତାରେ ଥାଏ ?

ଚଞ୍ଚଳାର ଆଶା ବୃଥା । ମୋର ହୃଦୟକୁ, ମୋର ପ୍ରାଣକୁ ତାର କୋମଳ ମଧୁର କଥା ବଦଳାଇ ନ ପାରେ । ତେବେ, ଚଞ୍ଚଳାକୁ ଆଶ୍ରୟ ଦେଇଛି କାହିଁକି ? ଚଞ୍ଚଳାକୁ ଏତେ ସ୍ୱାଧୀନତା ଦେଇଛି କାହିଁକି ? 'ମୁଁ କ'ଣ ତାର ବାକ୍ୟରେ ମୁଗ୍ଧ ହୁଏନି, ତାର ରୂପରେ ମୁଗ୍ଧ ହୁଏନି ?

ପ୍ରକୃତ ଜ୍ୟୋତ୍ସ୍ନାସ୍ନାତ । ତାମ୍ରଲିପ୍ତର ପ୍ରାସାଦ ଗୁଡ଼ିକ ନୀରବରେ ସେହି ଜ୍ୟୋତ୍ସ୍ନାମଧୁ ପାନ କରୁଛନ୍ତି । ଏଡ଼େ ବଡ଼ ସହରର କୋଳାହଳ ଅନ୍ତର୍ହିତ । କେବଳ ସମୁଦ୍ରର ଗଭୀର ଗର୍ଜନ ମନ ପ୍ରାଣରେ ନୂତନ ସ୍ଫୂର୍ତ୍ତି ଆଣୁଛି । ବୃକ୍ଷଲତା ସ୍ଥିର; କିନ୍ତୁ ଚଞ୍ଚଳ ବାଲରାଜାଙ୍କର ମନ । ଅସ୍ଥିର ବାଲରାଜାଙ୍କର ପ୍ରାଣ । ସେ ଏକାକୀ ଦ୍ରୁତପଦରେ ପ୍ରାସାଦାଭିମୁଖେ ଚାଲିଛନ୍ତି । କେତେବେଳେ ସୁଶୀଳାର, କେତେବେଳେ ଚଞ୍ଚଳାର, ପୁଣି କେତେବେଳେ ରାଧାଶ୍ୟାମର ମୃତ୍ୟୁ ଏହି ସମସ୍ତ ଚିନ୍ତା ତାଙ୍କର ମନକୁ ଅସ୍ଥିର କରୁଛି ।

ସେ ପ୍ରାସାଦ ନିକଟରେ ଉପସ୍ଥିତ ହେଲେ । ନିକଟରେ କେହି ନାହାନ୍ତି । କାହାକୁ ଜଣାଇବେ ? ଭୂୟାଁ ବୋଧହୁଏ ସୁଖରେ ନିଦ୍ରାମଗ୍ନ ଥିବେ, କିଏ ତାଙ୍କୁ ଏ ସମ୍ବାଦ ଦେବ ? କଠୁଆଳ ଅଛନ୍ତି କେଉଁଠି ? ରାଜଭବନ ସମ୍ମୁଖରେ ଦଣ୍ଡାୟମାନ ହୋଇ ବାଲରାଜା କୌଣସି ପ୍ରହରୀର ପ୍ରତୀକ୍ଷା କରୁଥିବା ସମୟରେ ଦେଖିପାରିଲେ କିଏ ଜଣେ ଦୂରରୁ ତାଙ୍କୁହିଁ ଲକ୍ଷ୍ୟ କରି ଚାଲିଛି । ଆଗନ୍ତୁକ ନିକଟରେ ହେଲାରୁ, ବାଲରାଜା ଡାକି ପଚାରିଲେ, କିଏ ?

ଆଗନ୍ତୁକ କୌଣସି ଉତ୍ତର ନ ଦେଇ ଖୋଳରୁ ଖଣ୍ଡା କାଢ଼ି ହାତରେ ଧରିଲେ । ବାଲରାଜା ନିଜର ତରବାରି କାଢ଼ି ହାତରେ ଧରି ପୁଣି ପଚାରିଲେ, କିଏ ସେ ?

ଉତ୍ତର ଆସିଲା ରୁକ୍ଷ ସ୍ୱରରେ, ତୁମେ କିଏ ?

ବାଲରାଜା ବିଳମ୍ବ ନ କରି ଉତ୍ତର ଦେଲେ, ମୁଁ ବାଲରାଜା ।

ଆଗନ୍ତୁକ ଖଣ୍ଡାଟିକୁ ପୁଣି ଖୋଳ ଭିତରେ ରଖି ନିକଟକୁ ଆସିଲେ ।

ସେ ସ୍ୱୟଂ କାହ୍ନୁ ଭୂୟାଁ । ନିକଟକୁ ଆସି ପଚାରିଲେ, ଏଡ଼େ ରାତ୍ରରେ ରାଜପ୍ରାସାଦକୁ ଆସିବାର ଉଦ୍ଦେଶ୍ୟ କ'ଣ ?

ବାଲରାଜା କାହ୍ନୁ ଭୂୟାଁଙ୍କୁ ଚିହ୍ନିପାରି ନିର୍ଭୟରେ କହିଲେ, ମହାରାଜ, ଆପଣ ଏଡ଼େ ରାତ୍ରରେ କୁଆଡ଼େ ଯାଇଥିଲେ ଯଦି ଆପତ୍ତି ନ ଥାଏ କୁହନ୍ତୁ । ମୁଁ ଆପଣଙ୍କ ପାଖକୁ ଆସିଥିଲି ।

ଭୂୟାଁ କହିଲେ, ଉତ୍କଳକେଶରୀ ଲଳିତେନ୍ଦୁଙ୍କର ସମସ୍ତ ସୁବିଧା କରିଦେବାକୁ ନଦୀକୂଳକୁ ଯାଇଥିଲି । କାଲି ସାଧବ ସଂଘ । ସଭାମଣ୍ଡପରେ କାର୍ଯ୍ୟ ଲାଗିଛି । ସେ ସମସ୍ତ କାର୍ଯ୍ୟ ମୁଁ ନିଜେ ଦେଖିବାକୁ ଯାଇଥିଲି । ସମ୍ରାଟ୍ କାଲି

ଗଳେ କରବେ। ସଭାର ଆୟୋଜନ ନ କଲେ ହେବ କପର? ହଁ ଆପଣ ଏତେ ରାତରେ ଏକାକୀ ରାଜଭବନକୁ ଆସିଛନ୍ତି କାହିଁକି ? ତାମ୍ରଲିପ୍ତ ଆପଣଙ୍କର ଅପରିଚିତ ସ୍ଥାନ। ଏପରି ଏକା ଆସିବା ଉଚିତ ନୁହେଁ। ବର୍ତ୍ତମାନ ତାମ୍ରଲିପ୍ତର ଅବସ୍ଥା ଯେପରି ହେଲାଣି, ଏକାକୀ—

ଆପଣ ଯେ ଏକାକୀ।

ନା, ପଛରେ ଅନେକ ଅନୁଚର ଆସୁଛନ୍ତି। ଆଚ୍ଛା, ରାଜପ୍ରାସାଦକୁ ବାଟ ଦେଖିଲେ କପରି ?

ସନ୍ଧ୍ୟା ସମୟରେ ରାଧାଶ୍ୟାମଙ୍କୁ ପଚାରିବାରୁ ସେ ବାଟ ବତାଇ ଦେଇଥିଲେ।

ଆଗମନର କାରଣ ?

ମହାଶୟ! ରାଧାଶ୍ୟାମଙ୍କ ଘରେ ମହାବିପଦ ଉପସ୍ଥିତ।

କି ବିପଦ ?

ରାଧାଶ୍ୟାମଙ୍କୁ କିଏ ଜଣେ ହତ୍ୟାକରି ପଳାୟନ କରିଛି। ଆମର ଦୁଇ ଜଣ ଲୋକ ହତ୍ୟାକାରୀ ପଛେ ପଛେ ଯାଇଛନ୍ତି। ବର୍ତ୍ତମାନ ଆପଣଙ୍କ ନିକଟକୁ ଆସିଛି ସାହାଯ୍ୟ ପାଇଁ—

କିଏ ହତ୍ୟା କରିଛି ? ଆଶ୍ଚର୍ଯ୍ୟ। ରାଧାଶ୍ୟାମ...

କିଏ ହତ୍ୟା କରିଛି ମୁଁ କହିପାରିବି ନାହିଁ। ହତ୍ୟାର ଉଦ୍ଦେଶ୍ୟ ଭିନ୍ନ ପ୍ରକାର। ଆପଣ ତା ବିଲେ ପରେ ଜାଣି ପାରିବେ। କେବଳ ସେତିକିରେ ସେ ସନ୍ତୁଷ୍ଟ ହେବ ନାହିଁ। ଆମମାନଙ୍କୁ ସମସ୍ତଙ୍କୁ ମାରିବା ତା ଇଚ୍ଛା—

ଆପଣ କଣ କହୁଛନ୍ତି ମୁଁ ବୁଝିପାରୁ ନାହିଁ।

ପରେ ସବୁ ବୁଝି ପାରିବେ। ବର୍ତ୍ତମାନ ବୁଝାଇଦେବାକୁ ବେଳ ନାହିଁ। ଆପଣଙ୍କୁ ମୋର ଏତିକି ଅନୁରୋଧ ଯେ, ରାଧାଶ୍ୟାମ ସାଧବଙ୍କର ଘର ଜଗିବାକୁ ଅଳ୍ପ ରାତକ ପାଇଁ ପ୍ରହରୀ ପଠାନ୍ତୁ। ହତ୍ୟାକାରୀର ଅନୁସନ୍ଧାନ କରିବାକୁ ତାମ୍ରଲିପ୍ତର ଗୁପ୍ତଚର ଲୋକ ପଠାନ୍ତୁ। ମୁଁ ଗଲି।

ରହନ୍ତୁ କହି କାନ୍ଧରୁ ମୁହାଁ ଖଣ୍ଡିଏ ଶିଙ୍ଗା କାଢ଼ି ତିନିଥର ଫୁଙ୍କିଲେ। ସଙ୍ଗେ ସଙ୍ଗେ ପ୍ରାୟ ଏକଶତ ପାଇକ ନିକଟସ୍ଥ ବୌଦ୍ଧଶ୍ରମଣର ପଛପାଖୁ ବାହାରି ପଡ଼ି ରାଜାଙ୍କ ନିକଟରେ ଉପସ୍ଥିତ ହେଲେ। ରାଜା ସେମାନଙ୍କୁ ପାଞ୍ଚ ଭାଗ କରି ଗୁଳ ଭାଗକୁ ସହରର ଭିନ୍ନ ଭିନ୍ନ ସ୍ଥାନକୁ ପଠାଇଲେ। ସେମାନଙ୍କୁ ତାଙ୍କର ଉଦ୍ଦେଶ୍ୟ ଜଣାଇଦେଲେ। ଗୁପ୍ତଭାଗ ଲୋକ ନିଃଶବ୍ଦରେ ପ୍ରତ୍ୟାବର୍ତ୍ତନ କଲ

ତହାରୁ ସ୍ୱୟଂ ରାଜା ଅନ୍ୟ ଲୋକଙ୍କୁ ସଙ୍ଗରେ ନେଇ ବାଲରାଜାଙ୍କର ଅନୁଗମନ କରି ରାଧାଶ୍ୟାମଙ୍କ ଗୃହାଭିମୁଖେ ଗଲେ ।

କାହ୍ନୁଭୂୟାଁ ପଚାରିଲେ, ଆପଣଙ୍କର ଏଥିରେ କାହା ଉପରେ ସନ୍ଦେହ ହେଉଛି ?

ବାଲରାଜା କହିଲେ, ଯାହା ଉପରେ ସନ୍ଦେହ ହେଉଛି ସେ କମ୍ ଲୋକ ନୁହେଁ । କ୍ଷମା କରନ୍ତୁ, ମୋର ଯାହା ଉପରେ ସନ୍ଦେହ ମୁଁ ଯଦି ପ୍ରକାଶ କରେ କେବଳ ଆପଣ କାହିଁକି, ଦେଶରେ କେହି ବିଶ୍ୱାସ କରିବେ ନାହିଁ । ଯଦି ଭଗବାନ୍ ଆଜି ରାତିକ ବଞ୍ଚାଇ ରଖନ୍ତି, କାଲି ସାଧବ ସଭାରେ ସବୁ କଥା ପ୍ରକାଶ କରିବି ।

ଆପଣଙ୍କ କଥାରୁ ପ୍ରକାଶ ଯେପରି ସେ ଆପଣଙ୍କ ଶତ୍ରୁ । ତେବେ ରାଧାଶ୍ୟାମଙ୍କୁ ମାରିବାର କାରଣ ?

ମୁଁ ବୋଲି ଭୁଲରେ । ମୋତେ ମାରିବାହିଁ ତା'ର ଉଦ୍ଦେଶ୍ୟ ଥିଲା । ତେବେ ଏସବୁ ମୁଁ କେବଳ ସନ୍ଦେହ କରୁଛି ।

ନାରାୟଣ ସାଧବ କେତେକ ବିଶ୍ୱସ୍ତ ଅନୁଚରଙ୍କୁ ସଙ୍ଗରେ ନେଇ ରାଧାଶ୍ୟାମଙ୍କ ପ୍ରାସାଦରେ ଉପସ୍ଥିତ ହେଲେ । ପ୍ରାସାଦଦ୍ୱାର ଉନ୍ମୁକ୍ତ ଥିଲା । କାଳବିଳମ୍ବ ନ କରି ସମସ୍ତେ ପ୍ରାସାଦ ମଧ୍ୟରେ ପ୍ରବେଶ କଲେ । ଯେଉଁଠାରେ ହେମ, ଚମ୍ପିଲା ଓ ବୃଦ୍ଧା ବସି ରାଧାଶ୍ୟାମଙ୍କର ଜୀବନହୀନ ପିଣ୍ଡ ଉପରେ ଅଶ୍ରୁ ବର୍ଷଣ କରୁଥିଲେ ନିଃଶବ୍ଦରେ, ସେହିଠାରେ ଉପସ୍ଥିତ ହେଲେ ।

ଏମାନଙ୍କୁ ଦେଖି ରମଣୀ ତିନିଜଣ ଭୟରେ କାତର ହୋଇପଡ଼ିଲେ । ପଳାଇବାକୁ ଗୋଡ଼ ଚଳିଲା ନାହିଁ । ଚିତ୍କାର କରିବାକୁ ଜିଭ ଓଲଟିଲା ନାହିଁ । ଆଦେଶମତେ ଅନୁଚରମାନଙ୍କ ମଧ୍ୟରୁ କେତେଜଣ ଚମ୍ପିଲା ଓ ହେମକୁ ବଳାତ୍କାରରେ ଧରି ନେଇଗଲେ । ଅବଳା ସେମାନେ । ତାଙ୍କର ବଳ କେବଳ ପାଟି ଓ ଚକ୍ଷୁର ଜଳ । ପ୍ରଥମ ଅସ୍ତ୍ର ପରାସ୍ତ ହେଲା, କାରଣ ସେମାନେ ପାଟିରେ ଲୁଗାବିଣ୍ଡା ମାଡ଼ି ଦେଇଥିଲେ । ଦ୍ୱିତୀୟ ଅସ୍ତ୍ର ପ୍ରୟୋଗ କଲେ; କିନ୍ତୁ କୌଣସି ଫଳ ହେଲା ନାହିଁ । ରମଣୀର ଚକ୍ଷୁଜଳ ପ୍ରେମିକର ହୃଦୟ ତରଳାଇ ପାରେ, ଅପହରଣକାରୀମାନଙ୍କର ହୃଦୟ ତରଳାଇ ପାରିବ କିପରି ? ବୃଦ୍ଧା ବିମୋହିତ ହୋଇ ଶବ ନିକଟରେ ପଡ଼ିଗଲେ ।

ଅଲୋକ ସାହାଯ୍ୟରେ ନାରାୟଣ ସାଧବ ପ୍ରତ୍ୟେକ ପ୍ରକୋଷ୍ଠ ଖୋଜିଲେ । ବାଲ୍ୟରାଜାଙ୍କର ମୃତପିଣ୍ଡ କୌଣସି ସ୍ଥାନରେ ପାଇଲେ ନାହିଁ । ରାଧାଶ୍ୟାମର ମୃତପିଣ୍ଡ ଦେଖି ଛାମାର କଥାରେ ସନ୍ଦେହ କଲେ । ବୋଧହୁଏ ଭ୍ରମବଶତଃ ଛାମା ରାଧାଶ୍ୟାମଙ୍କୁ ମାରି ବାଲ୍ୟରାଜା ବୋଲି ମନେକରିଛି । ତେବେ ବାଲ୍ୟରାଜା କାହାନ୍ତି ?

ବାଲ୍ୟରାଜା କାହାନ୍ତି ! ଏ ବିଷୟ ଭାବୁ ଭାବୁ ସମୟ ଚାଲିଯିବ । ଅଗତ୍ୟା ନାରାୟଣ ସାଧବ ତାଙ୍କର ଲୋକମାନଙ୍କର ଅନୁଗମନ କଲେ । କିଛିଦୂର ଯାଇ ସେମାନଙ୍କ ସଙ୍ଗେ ମିଶିଲେ । ସେମାନଙ୍କ ମଧ୍ୟରୁ ଜଣକୁ ଡାକି ବ୍ୟସ୍ତ ହୋଇ କହିଲେ, ବାଲ୍ୟରାଜାଙ୍କର ତ ଶବ ମିଳିଲା ନାହିଁ ? ଏହାର କୌଣସି କାରଣ ମୁଁ ବୁଝିପାରୁ ନାହିଁ । ଯାହା ହେଉ, ଶୀଘ୍ର ଏ ଦୁଇ ଜଣଙ୍କୁ ନେଇ ପ୍ରାସାଦ ଭିତରେ ଯେଉଁ ଗୁପ୍ତ ବନ୍ଦୀଶାଳା ଅଛି, ସେହିଠାରେ ରଖିବ । ତମମାନଙ୍କ ଭିତରୁ ଅଧେ ଲୋକ ଏହି କାର୍ଯ୍ୟ କର । ଆଉ ଅଧିକ ମୋ ପଛେ ପଛେ ଆସ । ଅଧିରାଜକୁ ଦେଖିଲେ ବନ୍ଦୀ କରିବାକୁ ହେବ ।

ଆଦେଶମତେ ଅନୁଚରମାନଙ୍କ ମଧ୍ୟରୁ କେତେଜଣ ଚଞ୍ଚଳା ଓ ହେମକୁ ନେଇ ଗୋଟିଏ ବାଟରେ ନାରାୟଣ ସାଧବଙ୍କ ଘରଆଡ଼େ ଚାଲିଲେ । ବାକିତକ ସାଧବଙ୍କ ଅନୁଗମନ କରି ଅନ୍ୟ ପଥରେ ଚାଲିଲେ । ସାଧବଙ୍କ ମନ ମଧ୍ୟରେ ସେତେବେଳେ ଆଶା ଦୁରାଶାର ତୁମୁଳ ଆନ୍ଦୋଳନ ଲାଗିଥାଏ । ମୃତ ଛାମାର କଥା ଉପରେ ବିଶ୍ୱାସ କରି ସେ ଯେଉଁ ଆନନ୍ଦ ଅନୁଭବ କରିଥିଲେ, ସେ ଆନନ୍ଦ ନୈରାଶ୍ୟରେ ବିଲୀନ ହେବାକୁ ବସିଲା ।

ଏହିପରି ଚିନ୍ତା କରୁ କରୁ ଚନ୍ଦ୍ରାଲୋକ ସାହାଯ୍ୟରେ ସାଧବ ଦେଖିପାରିଲେ, କିଏ ଜଣେ ଅନତିଦୂରରେ ରାସ୍ତା ଉପରେ ପଡ଼ିଛି । ପୁଣି ଆଶା ତେଜି ଉଠିଲା । ଏ ଆଉ ବାଲ୍ୟରାଜା କି ? ଛାମାର ଖଣ୍ଡାରେ ମରିକରି ଏଠାରେ ପଡ଼ିଛନ୍ତି ? ନିକଟକୁ ଯାଇ ନିରୀକ୍ଷଣ କରି ଦେଖିଲେ, ସେ ବାଲ୍ୟରାଜା ନୁହନ୍ତି, ଅଧିରାଜ ।

ସାଧବ ଦେଖିଲେ ଅଧିରାଜ ମରି ନାହିଁ । କେବଳ ଆହତ ହୋଇ ତଳେ ପଡ଼ିଛି । ମନ ମଧ୍ୟରେ ପୁଣି ଆଶାର ଉଦୟ ହେଲା । ଅନୁଚରମାନଙ୍କୁ ଆଦେଶ ଦେଲେ, ଆହତ ଅଧିରାଜକୁ ସଙ୍ଗରେ ନେଇ ଚାଲ । ତାକୁ ମଧ୍ୟ ବନ୍ଦୀ କରିବାକୁ ହେବ ।

ଆଦେଶ ପାଳିତ ହେଲା ।

ଏହି ସମୟରେ ଦୂରରୁ କାହାର ପଦଶବ୍ଦ ଶୁଭିଲା । ଆଦେଶମତେ ସମସ୍ତେ ଗୋଟିଏ ଦ୍ୱିତଳ ପ୍ରାସାଦର କରରେ ଲୁଚିଗଲେ । ପଛରୁ ପଦଶବ୍ଦ ଶୁଭୁଛି ବୁଝିପାରି ନାରାୟଣ ସାଧବ ଅପେକ୍ଷା କଲେ । କିଛି ସମୟ ପରେ ଚଞ୍ଚଳା ଓ

ଙ୍କେମକୁ ଧରି ତାଙ୍କର ଲୋକେ ସେହି ପଥ ଦେଇ ଯାଉଥିବା ଦେଖି ସେ ରାସ୍ତା ଉପରକୁ ଉଠି ସେମାନଙ୍କୁ ରହିବାକୁ କହିଲେ । ସମସ୍ତେ ରାସ୍ତା ଉପରେ ଅପେକ୍ଷା କଲେ । ନାରାୟଣ ସାଧବ ଅନ୍ୟମାନଙ୍କୁ ନିକଟକୁ ଡାକିବାରୁ ସେମାନେ ଲୁଚିଥିବା ସ୍ଥାନ ତ୍ୟାଗ କରି ପାଖକୁ ଆସିଲେ । ପୂର୍ବରୁ ଦଉଡ଼ି ଦଉଡ଼ି ଆସୁଥିବା ଲୋକମାନେ କହିଲେ, ସାଧବ, ଆମକୁ ପଛରୁ ଦଳେ ଲୋକ ଗୋଡ଼ାଇଛନ୍ତି । ଆମେ ଭୟରେ ଫେରିଆସିଛୁ ।

ଏମାନଙ୍କର କଥା ଶେଷ ନ ହେଉଣୁ ରାସ୍ତାର ଦୁଇ ପାଖରେ କେତେ-ଗୁଡ଼ିଏ ଅଟ୍ଟାଳିକାର ଦ୍ୱାର ଉଦ୍‌ଘାଟିତ ହେଲା । ଏଣେ ମଧ୍ୟ ପଛରୁ ଲୋକମାନେ ଜୋର୍‌ରେ ଦଉଡ଼ି ଦଉଡ଼ି ସେମାନଙ୍କୁ ଗୋଡ଼ାଇଛନ୍ତି । ଜଣେ ଦୁଇଜଣ ହୋଇ-ଥିଲେ ଆତ୍ମଗୋପନ କରିବା ସୁବିଧା ହୋଇଥାନ୍ତା । ଏକାଥରେ ଏତେଗୁଡ଼ାଏ ଲୋକ କେଉଁଠି ନିଜକୁ ଲୁଚାଇ ରଖିବେ ? ଉଦ୍‌ଘାଟିତ ଦ୍ୱାରମାନଙ୍କରୁ, କିଏ ? କିଏ ? ବୋଲି ମଧ୍ୟ ପ୍ରଶ୍ନ ଆସିଲାଣି । ସାଧବ ସମସ୍ତଙ୍କୁ ଆଗକୁ ଯିବାକୁ କହିଲେ ।

ଅହୋ ଏ କି ବିପଦ ! ଆଗରୁ ପୁଣି ଏତେ ଲୋକ ଆସିଲେ କେଉଁଠୁ ? ପଳାଇବାର ଉପାୟ ନାହିଁ । ସାଧବ ଆଦେଶ ଦେଲେ, ପ୍ରସ୍ତୁତ ହୁଅ । ଯଦି କେହି ଆମକୁ ବାଧା ଦିଏ, ଏହିଠାରେ ତାକୁ ଶେଷ କରିବାକୁ ହେବ । ଦେଖୁ ଦେଖୁ ଆଗ ଓ ପଛର ଲୋକେ ଆସି ସେମାନଙ୍କ ସଙ୍ଗେ ମିଶିଗଲେ । ବିପଦ ବୁଝି, ସାଧବଙ୍କ ଲୋକେ ଅସ୍ତ୍ର ଧରି ବାଧା ଦେବାକୁ ପ୍ରସ୍ତୁତ ରହିଲେ ।

ବାଲିରାଜା ଓ କାହ୍ନୁ ଭୂୟାଁ ରାସ୍ତା ମଝିରେ ଏତେ ଲୋକଙ୍କୁ ସମବେତ ଦେଖି କିଛି ବୁଝି ପାରିଲେ ନାହିଁ । କିନ୍ତୁ ପଛରୁ ଆସୁଥିବା ଆଉ ଦଳକ ଏମାନଙ୍କୁ ଡକାଇତ ବୋଲି ବୁଝି ପାରିଥିଲେ । ସେମାନେ ସମସ୍ତେ ଚିତ୍କାର କଲେ, ଡକାଇତ, ଡକାଇତ, ଆଗରୁ ବାଧା ଦିଅ । ଡକାଇତ ଡାକ ଶୁଣି ବାଲିରାଜା ଓ ଭୂୟାଁ ନିଜର ଲୋକମାନଙ୍କୁ ସେନା ଆକ୍ରମଣ କଲେ ।

ଉଭୟପକ୍ଷର ତୁମୁଳ ଯୁଦ୍ଧ ଲାଗିଲା । ସେମାନଙ୍କର ଚିତ୍କାରରେ ତାମ୍ରଲିପ୍ତର ଅନେକ ଲୋକ ଜାଗିଉଠିଲେ । ଡକାଇତ ନାମ ଶୁଣି ଠେଙ୍ଗା ବାଡ଼ି ଯିଏ ଯାହା ପାଇଲା, ହାତରେ ଧରି ରାସ୍ତା ଉପରକୁ ଛୁଟିଲେ । ପରସ୍ପର ମଧ୍ୟରେ ଘୋର ଯୁଦ୍ଧ ଆରମ୍ଭ ହେଲା । କିଏ କାହାକୁ ଚିହ୍ନିଛି ? ଡକାଇତ କିଏ ? ଅନେକ ଲୋକ ଜୀବନ ହରାଇଲେ । ଅନେକ ଆହତ ହୋଇ ଧୂଳି ଆଶ୍ରୟ କଲେ । ତାମ୍ରଲିପ୍ତ ଗୋଟାକଯାକ ଭୟରେ ଥରିଉଠିଲା ।

ଏ ସମ୍ବାଦ ପାଇ କୋଟୁଆଲ ବହୁସଂଖ୍ୟକ ଅଶ୍ୱାରୋହୀ ସୈନିକ ନେଇ ଘଟଣାସ୍ଥଳରେ ଉପସ୍ଥିତ ହେଲେ । ଅଶ୍ୱାରୋହୀଙ୍କୁ ଦେଖି ନାଗରିକମାନେ ଛନ୍ନଭଙ୍ଗ

ଦେଲେ । ନାରାୟଣଙ୍କ ପକ୍ଷର ଅନେକ ଲୋକ ମଧ୍ୟ ପଳାଇଲେ । ବାକୀ ଯେତେକ ରହିଲେ ସେମାନଙ୍କୁ ବନ୍ଦୀ କରାଗଲା ।

ସେମାନଙ୍କ ସଙ୍ଗେ ନାରାୟଣ ସାଧବ ମଧ୍ୟ ବନ୍ଦୀ ହେଲେ । ହେବ ଏବଂ ଚଞ୍ଚଳା ମୁକ୍ତ ହୋଇ ବାଲିରାଜାଙ୍କ ସଙ୍ଗ ଧରିଲେ । ଅଙ୍ଗଙ୍ଗ କାହିଁ ଥିଲା ଆସି ସେଠାରେ ମିଳିଲା । ତା ସଙ୍ଗେ ଅନ୍ତରେ ଦୁଇ ତିନି ଜଣ ଲୋକ ଦେଇ ଆହତ ଅଧିରାଜଙ୍କୁ ରାଧାଶ୍ୟାମଙ୍କ ଗୃହକୁ ପଠାଇଦେଲେ ।

ସକାଳ ହେଲା । ତାମ୍ରଲିପ୍ତର ସେ ପଥଟି ରକ୍ତରଞ୍ଜିତ । ବହୁ ମୃତଦେହ ଭୂପତିତ । ଯେଉଁମାନେ ଆହତ ହୋଇଥିଲେ, ସେମାନଙ୍କୁ କାହ୍ନୁ ଭୂୟାଁ ଚିକିତ୍ସାଗାରକୁ ପଠାଇଦେଲେ । ବାଲିରାଜାଙ୍କଠାରୁ ନାରାୟଣ ସାଧବର ସମସ୍ତ ଘଟଣା ଶୁଣିଲେ ।

ଆଜି ସାଧବସଭା । ସାଧବ ସଭାରେ ହିଁ ନାରାୟଣଙ୍କର କଥା ପଡ଼ିବ । ଏହି ପ୍ରସ୍ତାବ କରି ଭୂୟାଁ କହିଲେ, ବାଲିରାଜା, ଅପଣଙ୍କର କଥା ଶୁଣି ଓ ସାଧବଙ୍କର ପ୍ରକୃତ ଆଚରଣ ଦୁଇ ଆଖିରେ ଦେଖି ମଧ୍ୟ ବିଶ୍ୱାସ କରିପାରୁ ନାହିଁ । ଲୋକଙ୍କୁ ନାରାୟଣ ସାଧବ ଏପରି ଭାବରେ ଭୁଲାଇ ରଖିଛନ୍ତି ଯେ, ଲୋକେ ସର୍ବଦା ତାଙ୍କର ପ୍ରଶଂସା କରନ୍ତି । ସେମାନଙ୍କର ପ୍ରଶଂସା ଶୁଣି ଓ ସାଧବଙ୍କର ବାହାରର ଢଙ୍ଗଢାଙ୍ଗ ଦେଖି ମୁଁ ଏକାଥରେ ଭୁଲିଯାଇଛି । ଏତେ ବଡ଼ଲୋକ ସେ, ମାତ୍ର ପ୍ରକୃତ ଏପରି ମନ୍ଦ ବୋଲି ମୁଁ ଜାଣିବି କିପରି ?

ବାଲିରାଜା ପଚାରିଲେ, ନାରାୟଣ ସାଧବଙ୍କର ବିଚାର ସାଧବ ସଭାରେ ହେବ କାହିଁକି ? ଅପଣଙ୍କର ପ୍ରଜା ସେ, ଅପଣ ତ ନିଜେ ବିଚାର କରିପାରିବେ ? ସାଧବ ସଭାର କାର୍ଯ୍ୟ କଣ ମକଦ୍ଦମା ବିଚାର କରିବା ? କାହ୍ନୁ ଭୂୟାଁ କହିଲେ, ହଁ ନାରାୟଣ ସାଧବ ମୋର ପ୍ରଜା; କିନ୍ତୁ ପ୍ରଜା ହୋଇ ମଧ୍ୟ ସେ ଏତେ ବଡ଼ଲୋକ ଯେ ତାଙ୍କର ବିଚାରର ଭାର ମୁଁ ନିଜେ ଗ୍ରହଣ କରି ନ ପାରେ । ଉତ୍କଳକେଶରୀ ଲଲାଟେନ୍ଦୁ କେବଳ ଏତେ ବଡ ଲୋକର ବିଚାର କରିପାରନ୍ତି । କେବଳ ଏକା ଲଲାଟେନ୍ଦୁ କାହିଁକି, ସାଧବସଭାରେ ଭାରତର ପ୍ରତ୍ୟେକ ସ୍ଥାନରୁ ସାଧବମାନେ ଉପସ୍ଥିତ ଥିବେ । ଯେଉଁ ସାଧବମାନଙ୍କର ସେ ଏତେ ଅନିଷ୍ଟ କରିଛନ୍ତି, ଯେଉଁମାନଙ୍କର ଆତ୍ମୀୟମାନଙ୍କୁ ଆଜୀବନ ବନ୍ଦୀ କରି ନରକର ଯନ୍ତ୍ରଣା ଦେଇଛନ୍ତି ବୋଲି ଅପଣଙ୍କ କଥାରୁ ପ୍ରକାଶ, ସେହିମାନେ ଲଲାଟେନ୍ଦୁଙ୍କ ସଙ୍ଗେ ଯୋଗଦେଇ ସାଧବଙ୍କର ବିଚାର କରିବେ ।

କାଲି ରାତିର ଯେ ସମସ୍ତ ଘଟଣା ମୁଁ ଦେଖିଛି, ସେ ବିଷୟରେ ସାଧବ-ସଭାରେ ମୁଁ ସାକ୍ଷ୍ୟ ଦେଇପାରିବ । ଅନ୍ୟାନ୍ୟ ସବୁ ପ୍ରମାଣ ଆପଣ ଜାଣନ୍ତି । ସବୁ ପ୍ରମାଣ ସାଧବ ସଭାରେ ଆପଣ ପହଞ୍ଚାଇବେ । ପ୍ରମାଣ ପାଇ ସାଧବମାନେ ଯାହା ବିଚାର କରିବେ, ଲଳିତେନ୍ଦୁ ଯାହା ଆଦେଶ ଦେବେ, ତାହା ହିଁ ହେବ । ଆପଣ ପଚାରିଲେ, ସାଧବସଭାର କାର୍ଯ୍ୟ କ'ଣ ଦୋଷାଦୋଷ ବିଚାର ? ଅବଶ୍ୟ ସବୁ ସମୟରେ ଏବଂ ସବୁ ବିଷୟରେ ନୁହେଁ । ବାଣିଜ୍ୟ ସମ୍ବନ୍ଧୀୟ ଯାବତୀୟ ମୋକଦ୍ଦମା ସାଧବ ସଭାରେ ବିଚାର ହେବା ବିଧେୟ । ନାରାୟଣ ପଣ୍ଡା ଜଣେ ସାଧବ । ତାଙ୍କ ନାମରେ ଯେଉଁ ସବୁ ଅଭିଯୋଗ ସାଧବ ସଭାରେ କରିବାକୁ ବସିଛନ୍ତି, ସେ ସବୁ ପ୍ରମାଣ କରିବାଦ୍ୱାରା ସାଧବଙ୍କର କି ଦଣ୍ଡ ହେବ କହି ପାରୁ ନାହିଁ ।

ସତ କହୁଛି ବାଳରାଜା, ନାରାୟଣଙ୍କୁ ଏତେ ଗୁଡ଼ାଏ ପାପର କର୍ତ୍ତା ବୋଲି ଧନେ ହେଲେ କେବେ ଭାବି ନ ଥିଲି । ତାଙ୍କର ଧର୍ମକାର୍ଯ୍ୟମାନ ଦେଖି ମୁଁ ତାଙ୍କୁ ମୋର ଜଣେ ବନ୍ଧୁ ବୋଲି ଗ୍ରହଣ କରିଥିଲି । ଆପଣ ମୋର ଅପରିଚିତ, ବିଦେଶୀ, ଆପଣଙ୍କ କଥାରେ ବିଶ୍ୱାସ କରି ମୁଁ ନାରାୟଣ ସାଧବଙ୍କ ପରି ଲୋକକୁ କଦାପି ଅବିଶ୍ୱାସ କରି ନ ଥାନ୍ତି; କିନ୍ତୁ ଯାହା ଦେଖିଲି ତହିଁରେ ବିଶ୍ୱାସ କରିବାକୁ ବାଧ ହେଉଛି । ଆପଣ ବର୍ତ୍ତମାନ ବିଦାୟ ନିଅନ୍ତୁ । ମୋର ବହୁତ କାର୍ଯ୍ୟ ଅଛି । ରାଧାଶ୍ୟାମଙ୍କର ଶୋକସନ୍ତପ୍ତ ମା ଓ ଭଗ୍ନୀଙ୍କ ପାଇଁ ମୁଁ ଆନ୍ତରିକ ଦୁଃଖ ପ୍ରକାଶ କରୁଛି । ମୋର ବିଶେଷ ଦୁଃଖ ହେଉଛି ନାରାୟଣ ସାଧବଙ୍କର ଆତ୍ମଗୋପନ ପାଇଁ । ସେ ବ୍ରାହ୍ମଣ ହୋଇ କୈବର୍ତ୍ତ କନ୍ୟାର ପାଣିଗ୍ରହଣ କରିଛନ୍ତି । ଚକ୍ରାନ୍ତରେ ଦରିଦ୍ର ମଣିଆଁକୁ ଆଜୀବନ କାରାଦଣ୍ଡ ଦେଇଛନ୍ତି । ସୂର୍ଯ୍ୟଦ୍ୱୀପରେ ସମସ୍ତଙ୍କର ଅଜ୍ଞାତରେ ଶତ ଶତ ଲୋକ ବନ୍ଦୀ କରି ରଖିଥିଲେ । ଆପଣ ସେମାନଙ୍କୁ ମୁକ୍ତ କରିଛନ୍ତି । ଭଗବାନ ଆପଣଙ୍କର ମଙ୍ଗଳ କରିବେ । ଯଦି ପ୍ରକୃତ କଥା ହୋଇଥାଏ, ସାଧବସଭା ତରଫରୁ ଆପଣଙ୍କୁ ମୁଁ ଧନ୍ୟବାଦ ଦେଉଛି ।

ବାଳରାଜା ବିଦାୟ ଗ୍ରହଣ କଲେ । ଚମ୍ପଲା ଓ ହେମଙ୍କୁ ସଙ୍ଗରେ ନେଇ ରାଧାଶ୍ୟାମଙ୍କ ଘରକୁ ଫେରି ଆସିଲେ ।

ସାଧବସଭାର ପ୍ରଥମ ଅଧିବେଶନ ହୋଇଗଲା । ଲଳିତେନ୍ଦୁ ସଭାପତିର ଆସନ ଅଳଂକୃତ କଲେ । ସଭାର ଉଦ୍ଦେଶ୍ୟ କାହ୍ନୁ ଭୂୟାଁ ସମବେତ ସାଧବ-ମଣ୍ଡଳୀଙ୍କୁ ଜଣାଇଲେ । ତାଙ୍କର ପ୍ରସ୍ତାବ ଗୃହୀତ ହେଲା । ପ୍ରସ୍ତାବର ମର୍ମ ହେଉଛି, ଭାରତୀୟ ନୌବାଣିଜ୍ୟର ଉନ୍ନତି-କରଣ । ଯେଉଁ ଭାରତ ନୌବାଣିଜ୍ୟ ନିମନ୍ତେ

ଜଗଦ୍‌ବିଖ୍ୟାତ ଥିଲା, ସେ ଭାରତର ନୌବାଣିଜ୍ୟର ହ୍ରାସ ହୋଇଛି ସାଧବ-ମାନଙ୍କର ବିଳାସ ପାଇଁ ଏବଂ ସମୁଦ୍ରରେ ଦସ୍ୟୁମାନଙ୍କର ଅତ୍ୟାଚାର ପାଇଁ । ଭୂୟାଁ କହିଲେ, ସାଧବମାନେ ଦୃଢ଼ପ୍ରତିଜ୍ଞ ହୋଇନ୍ତୁ, ସେମାନଙ୍କର ସନ୍ତାନମାନଙ୍କୁ ବିଳାସର ମଝିରେ ନ ବଢ଼ାଇ ବୋଇତରେ ନେଇ ବାଣିଜ୍ୟ ବ୍ୟବସାୟ କପର କରିବାକୁ ହୁଏ ତାହା ଶିକ୍ଷା ଦେବେ ।

ବିପଦରୁ ରକ୍ଷା ପାଇବାକୁ ହେଲେ ପ୍ରତ୍ୟେକ ନାବିକକୁ ଯୁଦ୍ଧବିଦ୍ୟା ଶିକ୍ଷା କରିବାକୁ ହେବ । ସେଥି ନିମନ୍ତେ ତାମ୍ରଲିପ୍ତରେ ଯୁଦ୍ଧବିଦ୍ୟା ଶିକ୍ଷା ଓ ନୌବାଣିଜ୍ୟ ସମ୍ବନ୍ଧୀୟ ନାନାକଥା ଶିଖାଇବାକୁ ଅନୁଷ୍ଠାନ ଖୋଲାହେବ । ପ୍ରତ୍ୟେକ ସାଧବ ଅନୁଷ୍ଠାନର ଉନ୍ନତି ପାଇଁ ଯଥାଶକ୍ତି ସାହାଯ୍ୟ ଦେବେ ।

କାହ୍ନୁ ଭୂୟାଁ ଲଳିତେନ୍ଦୁ କେଶରୀଙ୍କୁ ଅନୁରୋଧ କଲେ, ଭୁବନେଶ୍ବର ମନ୍ଦିର ନିର୍ମାଣ ଏବଂ ପ୍ରତିଷ୍ଠା କରିବା ଦ୍ୱାରା ଦେଶର ଆଧ୍ୟାତ୍ମିକ ଭାବର ଉନ୍ନତି ହେବ ସନ୍ଦେହ ନାହିଁ, କିନ୍ତୁ ନୌବାଣିଜ୍ୟକୁ ଦସ୍ୟୁମାନଙ୍କ ହାତରୁ ରକ୍ଷା କରିବା ଦ୍ୱାରା ଦେଶ ସମୃଦ୍ଧିଶାଳୀ ହେବ । ଅତଏବ ସାଧବ ସଭା ପକ୍ଷରୁ ଉତ୍କଳ ସମ୍ରାଟଙ୍କୁ ଏହି ଅନୁରୋଧ ଯେ, ଭାରତ ମହାସାଗରରେ ବାଣିଜ୍ୟପଥରେ ସ୍ଥାନେ ସ୍ଥାନେ ନୌସେନା ଜଗାଇ ରଖନ୍ତୁ । ସେମାନଙ୍କର ପ୍ରଧାନ କାର୍ଯ୍ୟ ହେବ ସମୁଦ୍ରରେ ନୌବାଣିଜ୍ୟ ରକ୍ଷା । ଧନ ନିମନ୍ତେ ଭାରତର ପ୍ରତ୍ୟେକ ସାଧବ ଦାୟୀ । ଏ ପ୍ରସ୍ତାବ ମଗଧ ରାଜସଭାକୁ ପଠାଯାଉ ।

କାହ୍ନୁ ଭୂୟାଁଙ୍କ ପ୍ରସ୍ତାବ ଗୃହୀତ ହେଲା । ଲଳିତେନ୍ଦୁ ଏହି ପ୍ରସ୍ତାବ କଲେ ଯେ, ପ୍ରତ୍ୟେକ ବର୍ଷ ଏହିପରି ସାଧବସଭା ବସି ବାଣିଜ୍ୟର ଭଲ ମନ୍ଦ ବିଚାର କରି ପ୍ରତିକାର ନିମନ୍ତେ ଏକାମ୍ରକୁ ପ୍ରସ୍ତାବ ପଠାଯିବ । ତାହା ହେଲେ ତାର ପ୍ରତିକାର କରାଯିବ ।

ସଭାସଦ୍‌ମାନେ ଲଳିତେନ୍ଦୁଙ୍କୁ ଧନ୍ୟବାଦ ଦେଲେ ।

ତତ୍ପରେ, ଅନ୍ୟାନ୍ୟ କେତେକ ଗୁରୁତର ପ୍ରସ୍ତାବର ଆଲୋଚନା ହେଲା । ଶେଷରେ କାହ୍ନୁ ଭୂୟାଁ ଗତ ରାତିର ସବୁ ଘଟଣା ବର୍ଣ୍ଣନା କରି ନାରାୟଣ ସାଧବଙ୍କର ବିଚାର ନିମନ୍ତେ ଲଳିତେନ୍ଦୁଙ୍କୁ ଅନୁରୋଧ କଲେ । ନାରାୟଣ ସାଧବଙ୍କର ଗୁଣଗ୍ରାମ ବର୍ଣ୍ଣନା କରିବାକୁ ବାଳରାଜା ଆଦିଷ୍ଟ ହେଲେ । ଏତେ ବଡ଼ ସାଧବଙ୍କ ବିଷୟରେ ଅଭିଯୋଗ ! ତାମ୍ରଲିପ୍ତର ଆବାଳ-ବୃଦ୍ଧବନିତା ସଭାଭବନର ଚାରିପାଖରେ ଉପସ୍ଥିତ ହୋଇଅଛନ୍ତି । ସମସ୍ତେ ଉତ୍କଣ୍ଠିତ ହୋଇ ଚାହିଁ ରହିଛନ୍ତି ସାଧବଙ୍କର କି ଦଣ୍ଡ ହେବ । ଲୋକେ କାହ୍ନୁ ଭୂୟାଁଙ୍କ କଥାରେ ବିଶ୍ୱାସ କରିପାରୁ ନାହାନ୍ତି । ସ୍ୱୟଂ ଲଳିତେନ୍ଦୁ ମଧ୍ୟ ଆଶ୍ଚର୍ଯ୍ୟ ହେଲେ ।

ବାଳରାଜା ନାରାୟଣ ସାଧବଙ୍କର ଅତୀତ ଜୀବନର ପାପକାହାଣୀ ବର୍ଣ୍ଣନା କଲେ । ସାକ୍ଷ୍ୟ ନିମନ୍ତେ ଆଣିଥିବା ଲୋକଙ୍କୁ ସଭାରେ ଉପସ୍ଥିତ କରାଇ ତାଙ୍କର

ଅଭିଯୋଗର ସତ୍ୟତା ପ୍ରମାଣ କରାଇଲେ । ଲଳିତେନ୍ଦୁଙ୍କ ଆଦେଶମତେ ନାରାୟଣ ସାଧବ ବନ୍ଦୀ ବେଶରେ ସଭାଭବନରେ ଉପସ୍ଥିତ ହେଲେ । ସେତେବେଳେ ତାଙ୍କ ଦୁର୍ଦ୍ଦଶା ଦେଖିଲେ ମାନବର ଗର୍ବ ଉପରେ ଭଗବାନଙ୍କର କି କଠୋର ଦଣ୍ଡ ବ୍ୟବସ୍ଥା ସହଜରେ ବୁଝିହୁଏ । ପୂର୍ବ ଭାରତର ବିଖ୍ୟାତ ବଣିକ ନାରାୟଣ ସାଧବ ଆଜି ବନ୍ଦୀବେଶରେ ସଭାରେ ଅଭିଯୁକ୍ତ ! ତାଙ୍କର ଗର୍ବିତ ଚକ୍ଷୁଦ୍ୱୟ ନିଷ୍ପ୍ରଭ । ମୁଖ ଅବନତ ! ଯେଉଁ ସାଧବଙ୍କର ଗୁଣ ସାରା ଭାରତ ଘୋଷଣା କରୁଚି, ସେହି ମହାମାନ୍ୟ ସାଧବ ସହସ୍ର ପାପର କର୍ତ୍ତା ବୋଲି ଆଜି ପ୍ରମାଣିତ । ତାଙ୍କର ଦୁର୍ଭାଗ୍ୟକୁ, କେତେ ଦୂରରୁ କାହିଁ ବାଲିଦ୍ୱୀପରୁ ଧୂମକେତୁ ପରି ବାଲରାଜା ଉପସ୍ଥିତ ହୋଇ ତାଙ୍କର ସବୁ ଗର୍ବ ଚୂର୍ଣ୍ଣକଲେ ।

ସେତେବେଳେ ନାରାୟଣ ସାଧବଙ୍କର ଅବସ୍ଥା କହିଲେ ନ ସରେ । ନାରାୟଣ ସାଧବ ଏତେ ଦିନରେ ଉପଲବ୍ଧି କରି ପାରିଛନ୍ତି ପାପର ପ୍ରାୟଶ୍ଚିତ୍ତ ଭଗବାନ୍ ଦିଅନ୍ତି । ସରଳା ସୁଶୀଳାର ବାକ୍ୟ ତାଙ୍କର ମନକୁ ବାରମ୍ବାର ଆଲୋଡ଼ିତ କଲା । ସେ ଏତେବେଳେ ବୁଝି ପାରିଛନ୍ତି, ଆତ୍ମରକ୍ଷା କରିବାକୁ ହେଲେ ସାଧବସଭାରେ ନିଜର ସବୁ ଅତୀତ ଦୋଷ ପ୍ରକାଶ କରି ଉପଯୁକ୍ତ ଦଣ୍ଡ ଗ୍ରହଣ କରିବାକୁ ହେବ ।

ଯେତେବେଳେ ଲଳିତେନ୍ଦୁ ଦୁଃଖିତ ହୋଇ ନାରାୟଣ ସାଧବଙ୍କୁ ପ୍ରତିବାଦ କରିବାକୁ କହିଲେ, ସେ କଲେ କ'ଣ ? ତାଙ୍କର ପୂର୍ବ ପୁରୁଷଙ୍କର ଅମୋଘ ଆତ୍ମା ଗୁଡ଼ାକ ଆସି ତାଙ୍କ କାନେ କାନେ ଅଲକ୍ଷରେ ଶିଖାଇଗଲେ ବାଲରାଜାଙ୍କର ଅଭିଯୋଗ ଅସ୍ୱୀକାର କରିବାକୁ; କିନ୍ତୁ ସୁଶୀଳାର କଥା ତାଙ୍କର ମନକୁ ଆଲୋଡ଼ିତ କରି ସାରିଥିଲା । ସେ ସତ ସତ ସବୁ କଥା କମ୍ପିତ ସ୍ୱରରେ ସମ୍ରାଟଙ୍କ ସମ୍ମୁଖରେ ଜଣାଇଲେ । ତାହା ବାଲରାଜାଙ୍କର ପ୍ରତ୍ୟେକ କଥା ସଙ୍ଗେ ପ୍ରମାଣିତ ହେଲା । ଲୋକେ ସାଧବଙ୍କ କଥା ଶୁଣି ସ୍ତମ୍ଭିତ ହେଲେ ।

ନିଜେ ଉତ୍କଳକେଶରୀ ବନ୍ଧୁ ସମସ୍ୟୁ ଚିନ୍ତା କରି ଲିଙ୍ଗରାଜ ମହାପ୍ରଭୁଙ୍କୁ ସ୍ମରଣ କରି ଦଣ୍ଡାଜ୍ଞା ଶୁଣାଇ ଦେଲେ—

ଦେଶଦ୍ରୋହୀ, ସମାଜକଣ୍ଟକ, ଅଗଣିତ ଲୋମହର୍ଷଣକର ପାପକର୍ମର କର୍ତ୍ତା, ଭାରତର ନୌବାଣିଜ୍ୟର ଧୂମକେତୁ, ଚରିତ୍ରହୀନ ଦସ୍ୟୁପତି, ଅଭିଯୁକ୍ତ ନାରାୟଣ ସାଧବଙ୍କୁ ନିରପେକ୍ଷ ବିଚାରରେ ଦୋଷୀ ବୋଲି ପ୍ରମାଣ ପାଇ ଏବଂ ଦୋଷୀ ସାବ୍ୟସ୍ତ କରି ଅମ୍ଭେ ଲଳିତେନ୍ଦୁ କେଶରୀ ବଣିକ ସଭାର ସଭାପତି ଉତ୍କଳ ସମ୍ରାଟ ତାଙ୍କର ପ୍ରାଣଦଣ୍ଡାଜ୍ଞା ପ୍ରଦାନ କରି ଆଦେଶ କରୁଅଛୁ କି, ସାଧବ ସଭାର କର୍ମ ସମାପ୍ତି ପରେ ତାମ୍ରଲିପ୍ତର ଶାସନକର୍ତ୍ତା ଶ୍ରୀଯୁକ୍ତ କାହ୍ନୁ ଭୂୟାଁ ଆମ୍ଭର ଏହି ଦଣ୍ଡାଜ୍ଞା ଅଚିରେ ପାଳନ କରି ରାଜଧାନୀ ଏକାମ୍ରକୁ ସମ୍ବାଦ ପଠାଇବାକୁ ତତ୍ପର ହେବେ ଏବଂ ସେ ସାଧବଙ୍କର ଅନ୍ୟାୟୋପଲବ୍ଧ ବିପୁଳ ସମ୍ପତ୍ତି

ଭବିଷ୍ୟତରେ ସାଧବ ସଭାର ପରିଚାଳନା, ଶ୍ରୀ ଲିଙ୍ଗରାଜ ମନ୍ଦିରର ପ୍ରତିଷ୍ଠା, ନାରାୟଣ ସାଧବଙ୍କ ଶିଶୁପୁତ୍ରର ରକ୍ଷଣାବେକ୍ଷଣ ଓ ଦରିଦ୍ରନାରାୟଣ ସେବାରେ ସମଭାବରେ ବ୍ୟୟିତ ହେବାର ସୁବ୍ୟବସ୍ଥା କରିବେ ।

ଏହି ସମ୍ବାଦ ସୁଶୀଳା ନିକଟରେ ପହଞ୍ଚିଲାବେଳକୁ ସନ୍ଧ୍ୟା । ସୁଶୀଳା ପୁତ୍ରଟିକୁ କୋଳରେ ଧରି ଏକାକିନୀ ଗୋଟିଏ ପ୍ରକୋଷ୍ଠରେ ବସି ମଣିଅାଁ ଭାଇର ଭାଗ୍ୟ କଥା ଚିନ୍ତା କରୁଥିଲା । ଆହା, ମଣିଆଁ ଭାଇର ଜୀବନ କି କଷ୍ଟମୟ ! ତାର ଯନ୍ତ୍ରଣାମୟ ଜୀବନରେ କେହି ଜଣେ ରହିଲେ ନାହିଁ ଟିକିଏ ଆଶ୍ୱାସନା ଦେବାକୁ ! ଶେଷରେ ସେ ଜଣେ ଦୁର୍ଦ୍ଦାନ୍ତର ଛୁରିକାଘାତରେ ନିଜର ଅମୂଲ୍ୟ ଜୀବନ ହରାଇ ବସିଲେ । ସେ ଦିନେ ଯାହାକୁ ଭଲ ପାଉଥିଲେ, ସେହି ପାଷାଣୀ ମୁଁ, ଦିନେ ତାଙ୍କର ସ୍ନେହର ପ୍ରତ୍ୟୁତ୍ତର ଦେଇ ଆଜି କଠୋର ପ୍ରାଣରେ ଅନାଇ ବସିଛି । ଯାହାକୁ ଦିନେ ଘୃଣା କରିଥିଲି, ତାହାରି ହାତରେ ପୁଣି ମଣିଆଁ ଭାଇର ମୃତ୍ୟୁ । ଆହା ! କି ଅସହନୀୟ ଘଟଣା ଦେଖି ଆଜି ବି ଏ ହୃଦୟ ସମ୍ଭାଳି ରହିଛି !

ନାରୀ ଜାତିର କଳଙ୍କ ମୁଁ, ନାରୀ ଜାତିର କଳୁଷ । କିଛି କରି ପାରୁ ନାହିଁ । କିଛି ବୁଝି ପାରୁ ନାହିଁ । ବିବେକ ମୋର ଗଲା କୁଆଡ଼େ ? ମିଥ୍ୟା କଥାରେ ବିଶ୍ୱାସ କରି ମୁଁ ମୋର ନାରୀତ୍ୱ ହରାଇବସିଲି । କିନ୍ତୁ ସେ ଯେ ବାର୍‌ବର୍ଷ କାରାଦଣ୍ଡ ଭୋଗକରି ଆସୁଥିଲେ । ମୋର ଚିନ୍ତା ବ୍ୟତୀତ ସେ ଅନ୍ୟ କାହାକୁ ସ୍ୱପ୍ନରେ ହେଲେ ଭାବି ନ ଥିବେ । ଯଦି ଭାବିଥାନ୍ତେ, ମୋ ପରି ସହସ୍ର ରମଣୀ ଆସି ତାଙ୍କର ପାଣିପ୍ରାର୍ଥନା କରନ୍ତେଣି । ସେ ସେମାନଙ୍କ ମଧ୍ୟରୁ ଉପଯୁକ୍ତା ବାଛି ନିଶ୍ଚୟ ବିବାହ କରିଥାନ୍ତେ । ଏପରି କି ଚଞ୍ଚଳା, ଯେ କି ଦିନେ ତାଙ୍କୁ ପ୍ରେମ-ଚକ୍ଷୁରେ ଦେଖୁଥିଲା, ସେ ନିକଟରେ ଥାଇ ମଧ୍ୟ ମଣିଅାଁ ଭାଇର ମନ ବଦଳାଇ ପାରିଛି କି ? ନାରୀ ଜାତିର ହେର୍ ତଳେ ମୁଁ, ନରଜାତିର ଢେର ଉପରେ ତୁମେ ମଣିଆଁ ଭାଇ । ଆଜି ମୋର ଆଖି ଆଗରେ ସମୁଦ୍ର କୂଳସ୍ଥ ସେହି ମରୁ ଉଦ୍ୟାନରେ ଦିନକର ଘଟନାର ଚିତ୍ର ନାଚି ଯାଉଛି । କିପରି ଉଭୟେ ଉଭୟଙ୍କୁ କୁସୁମ ହାରରେ ଛନ୍ଦି ବିମଳ ଚନ୍ଦ୍ରାଲୋକିତ ସନ୍ଧ୍ୟାରେ ପରସ୍ପରକୁ ପରସ୍ପରର ବୋଲି ପ୍ରତିଜ୍ଞା କରିଥିଲେ । କିନ୍ତୁ ତା' ପରେ, ତା'ପରେ କଣ ହେଲା । ...

ଭଲ ପାଏ ନ ପାଏ, ଯାହାକୁ ମୁଁ ସ୍ୱାମୀରୂପେ ଗ୍ରହଣ କରିଛି ସେ ନର-ପାଷଣ୍ଡ । ମୁଁ ତାଙ୍କୁ ଘୃଣା କରିବାକୁ ଶିଖିଛି । ହଁ, ଯେପରି ଲୋକ ହୋଇଥାନ୍ତୁ, ସେ ମୋର ସ୍ୱାମୀ । ତାଙ୍କୁ ଘୃଣା କଲେ, ତାଙ୍କୁ ଅବିଶ୍ୱାସ କଲେ, ନାରୀଜାତିର ପ୍ରକୃତି ବାହାରକୁ ଯିବାକୁ ହେବନି ଏହା ତ ମୁଁ କରିସାରିଛି । ନାରୀ, ଅହୋ ! କନ୍ୟା

ରୂପେ, ଭଗିନୀ ରୂପେ, ସ୍ତ୍ରୀ ରୂପେ ଏବଂ ଜନନୀ ରୂପେ ଜଗତକୁ କେତେ ଉପରକୁ ଉଠାଇ ପାରନ୍ତି । ମୁଁ କଣ କରିଛି ? ନାରୀର କେଉଁ କାର୍ଯ୍ୟଟି ମୋ ଦ୍ୱାରା ପୂରଣ ହୋଇପାରିଛି ?

ସାଧବଙ୍କ ଦୁର୍ଦ୍ଦଶାର ସମ୍ବାଦ ଶୁଣି ପ୍ରଥମେ ସୁଶୀଳା ନିଜର କାନକୁ ବିଶ୍ୱାସ କରିପାରିଲା ନାହିଁ । ଜଣାଗଲା ତାକୁ, ଯେପରି ସେ ସ୍ୱପ୍ନ ଦେଖୁଛି—ଜାଗ୍ରତ ସ୍ୱପ୍ନ । ତାର ଚକ୍ଷୁ ଥରିବାକୁ ଲାଗିଲା । ସେ ଗତରାତ୍ରିର ଘଟଣା ସଙ୍ଗେ ଆଜି ରାତ୍ରିର ଘଟନାର ତୁଳନା କରି କିଛି ବୁଝିପାରିଲା ନାହିଁ । ସମ୍ବାଦଦାତା ବାରମ୍ବାର କରି ସାଧବ ସଭାର ସବୁ ଘଟଣା ବର୍ଣ୍ଣନା କଲା । ସୁଶୀଳାର ଚକ୍ଷୁ ଲୋତକପୂର୍ଣ୍ଣ ହେଲା । ଯେଉଁ ମଣିଆଁ ଭାଇର ଆତ୍ମା ନିମନ୍ତେ ସେ ଭଗବାନଙ୍କଠାରେ ମୁକ୍ତି କାମନା କରିଥିଲା, ଯେଉଁ ମଣିଆଁ ଭାଇର ଦୁଃଖ ନିମନ୍ତେ ସେ ସହାନୁଭୂତି ଦେଖାଇ ଥିଲା, ଯେଉଁ ମଣିଆଁ ଭାଇର ଅତୀତ ସ୍ମୃତିରେ ତାର ପ୍ରାଣ ଅତୁଳ ହୋଇ ଉଠିଥିଲା; ଆଜି ତାହାକୁହିଁ ହୃଦୟର ସହିତ ଘୃଣା କରିବ । ମଣିଆଁ ଭାଇ ମୋର ଜୀବନ ରକ୍ଷା କରିଛି—ସେ ଅକ୍ଲେଶରେ ମୋର ଜୀବନ ନେଇ ପାରିଥାନ୍ତା । ମୋର ସ୍ୱାମୀଙ୍କର ଜୀବନ ଉପରେ ତା'ର କେଉଁ ଅଧିକାର ? ଆହା, ସ୍ୱାମୀଙ୍କୁ ଉଦ୍ଧାର କରିବାର ଆଉ ଉପାୟ କଣ ? କାଲି ସ୍ୱାମୀଙ୍କୁ ସେ ଯେଉଁ ଉପଦେଶ ଦେଇ କହିଥିଲା କିପରି ସେ ଆତ୍ମରକ୍ଷା କରିବେ, ଆଜି ତାହାହିଁ ହୋଇଛି । ରମଣୀ ଏଡ଼େ ଅସ୍ଥିର ! ରମଣୀର ଚକ୍ଷୁ ଲୋତକ ମାନୁ ନାହିଁ । ହୃଦୟ, ମନର କୌଣସି ପ୍ରବୋଧନା ମାନୁ ନାହିଁ । କେବଳ ତାର ଚିନ୍ତା—ରକ୍ଷା କରିବାର ଉପାୟ କଣ ? ମଣିଆ ଭାଇ ପ୍ରତିହିଂସା ସାଧନ କରିଛି, ତା ବିପକ୍ଷରେ ହୃଦୟ ଆଜି ବିଦ୍ରୋହୀ ।

ସୁଶୀଳା କୋଡ଼ର ଶିଶୁଟିକୁ ଚୁମ୍ବନ କରି ଅସ୍ପଷ୍ଟ ସ୍ୱରରେ କହିଲା, ପିତା ତୋର ପ୍ରାଣଦଣ୍ଡ ପାଉଛି । ତୁ କଣ ପ୍ରତିହିଂସା ସାଧନ କରିପାରିବୁ ନାହିଁ, ଧନ ? ସମ୍ବାଦଦାତା ଫେରିଗଲାରୁ ସୁଶୀଳା ପାଗଳିନୀ ପରି ହସି ନିଜକୁ ନିଜେ କହିଲା, ଯେଉଁ ମଣିଆଁ ଭାଇ ଈର୍ଷାକରି ମୋର ସ୍ୱାମୀଙ୍କୁ ପ୍ରାଣଦଣ୍ଡ ଦିଆଇଛି, ସେହି ମଣିଆଁ ଭାଇର ରକ୍ତରେ ହସ୍ତରଞ୍ଜିତ କରିବ । ଜଗତକୁ ଦେଖାଇ ଦେବ କିପରି ରମଣୀ ପ୍ରତିଶୋଧ ନେଇପାରେ । ଜଗତର ନାରୀଜାତିକୁ ଶିଖାଇଦିବ କିପରି ସ୍ୱାମୀ ନିମନ୍ତେ ରମଣୀ ରାକ୍ଷସୀ ହୋଇ ରକ୍ତପାନ କରିପାରେ ।

ଏତିକି ଚିନ୍ତାକରି କିଛିକ୍ଷଣ ପରେ ସୁଶୀଳା ଗର୍ଜନ କରିଉଠିଲା । ଚକ୍ଷୁ ପ୍ରାନ୍ତରୁ ଲୋତକ ତାର ଶୁଖିଯାଇ ନାହିଁ । ତଥାପି ଛାର ଲୋତକାଜଳିତ ଚକ୍ଷୁ

ଭବିଷ୍ୟତରେ ସାଧବ ସଭିର ପରିଚାଳନା, ଶ୍ରୀ ଲିଙ୍ଗରାଜ ମନ୍ଦିରର ପ୍ରତିଷ୍ଠା, ନାରାୟଣ ସାଧବଙ୍କ ଶିଶୁପୁତ୍ରର ରକ୍ଷଣାବେକ୍ଷଣ ଓ ଦରିଦ୍ରନାରାୟଣ ସେବାରେ ସମଭାବରେ ବ୍ୟୟିତ ହେବାର ସୁବ୍ୟବସ୍ଥା କରିବେ ।

ଏହି ସମ୍ବାଦ ସୁଶୀଳା ନିକଟରେ ପହଞ୍ଚିଲାବେଳକୁ ସନ୍ଧ୍ୟା । ସୁଶୀଳା ପୁତ୍ରଟିକୁ କୋଳରେ ଧରି ଏକାକିନୀ ଗୋଟିଏ ପ୍ରକୋଷ୍ଠରେ ବସି ମଣିଅାଁ ଭାଇର ଭାଗ୍ୟ କଥା ଚିନ୍ତା କରୁଥିଲା । ଅହା, ମଣିଅାଁ ଭାଇର ଜୀବନ କି କଷ୍ଟମୟ ! ତାର ଯନ୍ତ୍ରଣାମୟ ଜୀବନରେ କେହି ଜଣେ ରହିଲେ ନାହିଁ ଟିକିଏ ଆଶ୍ୱାସନା ଦେବାକୁ ! ଶେଷରେ ସେ ଜଣେ ଦୁର୍ଦ୍ଦାନ୍ତର ଛୁରିକାଘାତରେ ନିଜର ଅମୂଲ୍ୟ ଜୀବନ ହରାଇ ବସିଲେ । ସେ ଦିନେ ଯାହାକୁ ଭଲ ପାଉଥିଲେ, ସେହି ପାଷାଣୀ ମୁଁ, ଦିନେ ତାଙ୍କର ସ୍ନେହର ପ୍ରତ୍ୟୁତ୍ତର ଦେଇ ଅଜି କଠୋର ପ୍ରାଣରେ ଅନାଇ ବସିଛି । ଯାହାକୁ ଦିନେ ଘୃଣା କରିଥିଲି, ତାହାରି ହାତରେ ପୁଣି ମଣିଅାଁ ଭାଇର ମୃତ୍ୟୁ । ଅହା ! କି ଅସହନୀୟ ଘଟଣା ଦେଖି ଅଜି ବି ଏ ହୃଦୟ ସମ୍ଭାଳି ରହିଛି !

ନାରୀ ଜାତିର କଳଙ୍କ ମୁଁ, ନାରୀ ଜାତିର କଳୁଷ । କିଛି କରି ପାରୁ ନାହିଁ । କିଛି ବୁଝି ପାରୁ ନାହିଁ । ବିବେକ ମୋର ଗଲା କୁଆଡ଼େ ? ମିଥ୍ୟା କଥାରେ ବିଶ୍ୱାସ କରି ମୁଁ ମୋର ନାରୀତ୍ୱ ହରାଇବସିଲି । କିନ୍ତୁ ସେ ଯେ ବାର୍ଦ୍ଧବର୍ଷ କାରାଦଣ୍ଡ ଭୋଗକରି ଅସୁଥିଲେ । ମୋର ଚିନ୍ତା ବ୍ୟତୀତ ସେ ଅନ୍ୟ କାହାକୁ ସ୍ୱପ୍ନରେ ହେଲେ ଭାବି ନ ଥିବେ । ଯଦି ଭାବିଥାନ୍ତେ, ମୋ ପରି ସହସ୍ର ରମଣୀ ଆସି ତାଙ୍କର ପାଣିପ୍ରାର୍ଥନା କରନ୍ତେଣି । ସେ ସେମାନଙ୍କ ମଧ୍ୟରୁ ଉପଯୁକ୍ତା ବାଛି ନିଶ୍ଚୟ ବିବାହ କରିଥାନ୍ତେ । ଏପରି କି ଚଞ୍ଚଳା, ଯେ କି ଦିନେ ତାଙ୍କୁ ପ୍ରେମ-ଚକ୍ଷୁରେ ଦେଖୁଥିଲା, ସେ ନିକଟରେ ଥାଇ ମଧ୍ୟ ମଣିଅାଁ ଭାଇର ମନ ବଦଳାଇ ପାରିଛି କି ? ନାରୀ ଜାତିର ତେର୍ ତଳେ ମୁଁ, ନରଜାତିର ତେର ଉପରେ ତୁମେ ମଣିଅାଁ ଭାଇ । ଅଜି ମୋର ଆଖି ଆଗରେ ସମୁଦ୍ର କୂଳସ୍ଥ ସେହି ମରୁ ଉଦ୍ୟାନରେ ଦିନକର ଘଟନାର ଚିତ୍ର ନାଚି ଯାଉଛି । କିପରି ଉଭୟେ ଉଭୟଙ୍କୁ କୁସୁମ ହାରରେ ଛନ୍ଦି ବିମଳ ଚନ୍ଦ୍ରାଲୋକିତ ସନ୍ଧ୍ୟାରେ ପରସ୍ପରକୁ ପରସ୍ପରର ବୋଲି ପ୍ରତିଜ୍ଞା କରିଥିଲେ । କିନ୍ତୁ ତା' ପରେ, ତା'ପରେ କଣ ହେଲା । •••

ଭଲ ପାଏ ନ ପାଏ, ଯାହାକୁ ମୁଁ ସ୍ୱାମୀରୂପେ ଗ୍ରହଣ କରିଛି ସେ ନର-ପାଷଣ୍ଡ । ମୁଁ ତାଙ୍କୁ ଘୃଣା କରିବାକୁ ଶିଖିଛି । ହଁ, ଯେପରି ଲୋକ ହୋଉନ୍ତୁ, ସେ ମୋର ସ୍ୱାମୀ । ତାଙ୍କୁ ଘୃଣା କଲେ, ତାଙ୍କୁ ଅବିଶ୍ୱାସ କଲେ, ନାରୀଜାତିର ପ୍ରକୃତି ବାହାରକୁ ଯିବାକୁ ହେବ । ଏହା ତ ମୁଁ କରିସାରିଛି । ନାରୀ, ଅହା ! କନ୍ୟା

ରୂପେ, ଭଗିନୀ ରୂପେ, ସ୍ତ୍ରୀ ରୂପେ ଏବଂ ଜନନୀ ରୂପେ ଜଗତକୁ କେତେ ଉପରକୁ ଉଠାଇ ପାରନ୍ତି । ମୁଁ କଣ କରିଛି ? ନାରୀର କେଉଁ କାର୍ଯ୍ୟଟି ମୋ ଦ୍ଵାରା ପୂରଣ ହୋଇପାରିଛି ?

ସାଧବଙ୍କ ଦୁର୍ଦ୍ଦଶାର ସମ୍ବାଦ ଶୁଣି ପ୍ରଥମେ ସୁଶୀଳା ନିଜର କାନକୁ ବିଶ୍ଵାସ କରିପାରିଲା ନାହିଁ । ଜଣାଗଲା ତାକୁ, ଯେପରି ସେ ସ୍ୱପ୍ନ ଦେଖୁଛି—ଜାଗ୍ରତ ସ୍ୱପ୍ନ । ତାର ଚକ୍ଷୁ ଥରିବାକୁ ଲାଗିଲା । ସେ ଗତରାତିର ଘଟଣା ସଙ୍ଗେ ଆଜି ରାତିର ଘଟନାର ତୁଳନା କରି କିଛି ବୁଝିପାରିଲା ନାହିଁ । ସମ୍ବାଦଦାତା ବାରମ୍ବାର କରି ସାଧବ ସଭାର ସବୁ ଘଟଣା ବର୍ଣ୍ଣନା କଲା । ସୁଶୀଳାର ଚକ୍ଷୁ ଲୋତକପୂର୍ଣ୍ଣ ହେଲା । ଯେଉଁ ମଣିଆଁ ଭାଇର ଆତ୍ମା ନିମନ୍ତେ ସେ ଭଗବାନଙ୍କଠାରେ ମୁକ୍ତି କାମନା କରିଥିଲା, ଯେଉଁ ମଣିଆଁ ଭାଇର ଦୁଃଖ ନିମନ୍ତେ ସେ ସହାନୁଭୂତି ଦେଖାଇ ଥିଲା, ଯେଉଁ ମଣିଆଁ ଭାଇର ଅତୀତ ସ୍ମୃତିରେ ତାର ପ୍ରାଣ ଅସ୍ଥିର ହୋଇ ଉଠିଥିଲା; ଆଜି ତାହାକୁହିଁ ହୃଦୟର ସହିତ ଘୃଣା କରିବ । ମଣିଆଁ ଭାଇ ମୋର ଜୀବନ ରକ୍ଷା କରିଛି—ସେ ଅକ୍ଳେଶରେ ମୋର ଜୀବନ ନେଇ ପାରିଥାନ୍ତା । ମୋର ସ୍ୱାମୀଙ୍କର ଜୀବନ ଉପରେ ତା'ର କେଉଁ ଅଧିକାର ? ଆହା, ସ୍ୱାମୀଙ୍କୁ ଉଦ୍ଧାର କରିବାର ଆଉ ଉପାୟ କଣ ? କାଲି ସ୍ୱାମୀଙ୍କୁ ସେ ଯେଉଁ ଉପଦେଶ ଦେଇ କହିଥିଲି କିପରି ସେ ଆତ୍ମରକ୍ଷା କରିବେ, ଆଜି ତାହାହିଁ ହୋଇଛି । ରମଣୀ ଏତେ ଅସ୍ଥିର ! ରମଣୀର ଚକ୍ଷୁ ଲୋତକ ମାନୁ ନାହିଁ । ହୃଦୟ, ମନର କୌଣସି ପ୍ରବୋଧନା ମାନୁ ନାହିଁ । କେବଳ ତାର ଚିନ୍ତା—ରକ୍ଷା କରିବାର ଉପାୟ କଣ ? ମଣିଆ ଭାଇ ପ୍ରତିହିଂସା ସାଧନ କରିଛି, ତା ବିପକ୍ଷରେ ହୃଦୟ ଆଜି ବିଦ୍ରୋହୀ ।

ସୁଶୀଳା କୋଳର ଶିଶୁଟିକି ଚୁମ୍ବନ କରି ଅସ୍ପଷ୍ଟ ସ୍ୱରରେ କହିଲା, ପିତା ତୋର ପ୍ରାଣଦଣ୍ଡ ପାଉଛି । ତୁ କଣ ପ୍ରତିହିଂସା ସାଧନ କରିପାରିବୁ ନାହିଁ, ଧନ ? ସମ୍ବାଦଦାତା ଫେରିଗଲାରୁ ସୁଶୀଳା ପାଗଳିନୀ ପରି ହସି ନିଜକୁ ନିଜେ କହିଲା, ଯେଉଁ ମଣିଆଁ ଭାଇ ଈର୍ଷାକରି ମୋର ସ୍ୱାମୀଙ୍କୁ ପ୍ରାଣଦଣ୍ଡ ଦିଆଇଛି, ସେହି ମଣିଆଁ ଭାଇର ରକ୍ତରେ ହସ୍ତରଞ୍ଜିତ କରିବି । ଜଗତକୁ ଦେଖାଇ ଦେବି କିପରି ରମଣୀ ପ୍ରତିଶୋଧ ନେଇପାରେ । ଜଗତର ନାରୀଜାତିକୁ ଶିଖାଇଯିବି କିପରି ସ୍ୱାମୀ ନିମନ୍ତେ ରମଣୀ ରାକ୍ଷସୀ ହୋଇ ରକ୍ତପାନ କରିପାରେ ।

ଏତିକି ଚିନ୍ତାକରି କିଛିକ୍ଷଣ ପରେ ସୁଶୀଳା ଗର୍ଜନ କରିଉଠିଲା । ଚକ୍ଷୁ ପ୍ରାନ୍ତରୁ ଲୋତକ ତାର ଶୁଖିଯାଇ ନାହିଁ । ତଥାପି ତାର ଲୋତକଜଡ଼ିତ ଚକ୍ଷୁ

ଦ୍ୱୟ ପ୍ରାତଃକାଳୀନ ପ୍ରାଚୀ ଆକାଶର ରକ୍ତିମା ଧାରଣ କଲା । ସେ ପାଗଳିନୀ ପରି ଖଣ୍ଡେ ଛୁରିକା ଧରି ପ୍ରକୋଷ୍ଠରୁ ପଦାକୁ ଚାଲିଆସିଲା । କେଶବାସର ଠିକ୍ ନାହିଁ । ପୃଷ୍ଠଦେଶରେ କଳ୍ଲକଳା କୁନ୍ତଳ । ପୁଣି କଣ ଚିନ୍ତାକରି ଛୁରିକା ଖଣ୍ଡି ଲୁଗା ଭିତରେ ଲୁଚାଇ ରଖିଲା । ଶିଶୁର କପାଳ ଚୁମ୍ବନ କରି କମ୍ପିତ ଦ୍ରୁତପଦରେ ନିତଲର ପାବଚ୍ଛ ଶ୍ରେଣୀ ଗୋଟିକ ପରେ ଗୋଟିଏ ଓହ୍ଲାଇ ଆସିଲା । ସ୍ୱାଆନ୍ତାଣୀଙ୍କଂର ଏପରି ଦୁର୍ଦ୍ଦଶା ଦେଖି ମଧ୍ୟ ଭୟରେ କେହି ବାଧା ଦେଇ ପାରିଲେ ନାହିଁ । ଦୁଇ ତିନିଜଣ ଦାସୀ ତାଙ୍କର ଅନୁଗମନ କଲେ ।

ଆଜ କାର୍ତ୍ତିକ ପୂର୍ଣ୍ଣିମା । ରାତିରୁ ଉଠି ତାମ୍ରଲିପ୍ତର ସାଧବ ସ୍ତ୍ରୀ, କନ୍ୟା, ଭଗ୍ନୀ ଏବଂ ଜନନୀମାନେ ରୂପନାରାୟଣ ନଦୀକୂଳକୁ ଯାଇ ଅଣ୍ଡାମାନ, କାମାକ୍ଷା, ମାଲାକାସ ବା ମସଲା ଦ୍ୱୀପ ଓ ବୈବର୍ତ୍ତି ଦେଶ ପ୍ରଭୃତି ଦୂରଦେଶାଗତ ବୋଇତ ସବୁ ବନ୍ଦାଇ ଆସିବେ ଏବଂ ମା' ମଙ୍ଗଳାଙ୍କୁ ପୂଜା କରିବେ ବୋଲି ମନ ଆନନ୍ଦରେ ନିଜ ନିଜ ଘରେ ବସି ଆୟୋଜନ କରୁଛନ୍ତି । ଭାରତର ବିଖ୍ୟାତ ସାଧବ ନାରାୟଣଙ୍କର ପତ୍ନୀ ଆଜି ପାଗଳିନୀ ହୋଇ ଶିଶୁଟିକୁ ହୃଦୟରେ ଧରି ତାମ୍ରଲିପ୍ତର ଅଜଣା ଗଳି ପଥଦେଇ ଦ୍ରୁତଗତିରେ କେଉଁଆଡ଼େ ଚାଲି ଯାଉଛନ୍ତି । କେହି ବାଧା ଦେଉ ନାହିଁ । ଏପରି କି ମୁଖ ଫେରାଇ ତାଙ୍କ ଆଡ଼କୁ ଥରେ ଚାହୁଁ ନାହିଁ । ଦାସୀଗୁଡ଼ାକ କୁଆଡ଼େ ପଛରେ ପଡ଼ିଲେଣି ।

ରାଧାଶ୍ୟାମ ସାଧବଙ୍କର ତଳ ମହଲାର କୌଣସି ଗୋଟିଏ ପ୍ରକୋଷ୍ଠ ମଝିରେ ସୁବୃହତ୍ ଟେବୁଲ ଉପରେ ମଖମଲ କନା । ଟେବୁଲର ଚାରିପାଖେ କେତେଖଣ୍ଡ କାଷ୍ଠାସନ । ଗୃହର ସାଜସଜା ସାଧାରଣ ।

ବାଳସ୍ୱରାଜ ଗୋଟିଏ କାଷ୍ଠାସନ ଉପରେ ଉପବେଶନ କରି କପାଳରେ ହସ୍ତ ସ୍ଥାପନ କରି ଚିନ୍ତାମଗ୍ନ, ସମ୍ମୁଖରେ ଅଧିରାଜ ଉପବିଷ୍ଟ । ଅଧିରାଜ ଚିନ୍ତାମଗ୍ନ ନ ହେଲେ ମଧ୍ୟ ଚୁପ୍ ହୋଇ ବସିଛନ୍ତି । ଅଧିରାଜଙ୍କ ପଛରେ ହେମ ଓ ଚଞ୍ଚଳା ଦଣ୍ଡାୟମାନ । ନିକଟରେ ବୃଦ୍ଧା ଆଉ ଖଣ୍ଡେ କାଠର ଆସନ ଉପରେ ଆଖି ବୁଜି ବସିଛନ୍ତି । ଚକ୍ଷୁରୁ ଜଳ ଧାର ଧାର ହୋଇ ଗଡ଼ିପଡ଼ୁଛି ।

ଜନନୀଙ୍କର ଏପରି ଅବସ୍ଥା ଦେଖି ହେମ କାତର ହୋଇ ପଡ଼ିଲାଣି । ଭାଇଙ୍କର ମୃତ୍ୟୁଶୋକ ତାର ହୃଦୟକୁ ଅଧୀର କରି ପକାଉଛି । ଅଗଣା ବାହାରେ କାନ୍ଥକୁ ଆଉଜି ବସି ଘୁମାଉଛି ।

ବାଳସ୍ୱରାଜ୍ ଚିନ୍ତା କରୁଥିଲେ ସୁଶୀଳାର କଥା । ଦେଶର ମଙ୍ଗଳ ନିମନ୍ତେ ହେଉ ଅଥବା ପ୍ରତିହିଂସା ସାଧନ ନିମନ୍ତେ ହେଉ ନାରାୟଣ ସାଧବଙ୍କୁ ସାଧବ-ସଭାରେ ମୁଁ ଦଣ୍ଡିତ କରିଛି । ପୁଣି କାହିଁକି ମନ ଏଡ଼େ ଅସ୍ଥିର ? ନାରାୟଣ ସାଧବ

ମୋର ଶତ୍ରୁ, ଦେଶର ଶତ୍ରୁ । ଅତଏବ ତାର ଦଣ୍ଡାଜ୍ଞା ଶୁଣି ହୃଦୟ ଅହ୍ଲାଦରେ ନାଚି ଉଠନ୍ତା କଣ, ଦୁଃଖରେ ବ୍ୟଥିତ ହେଉଛି କାହିଁକି ? କେବଳ ସୁଶୀଳା ନିମନ୍ତେ ନୁହେଁ କି ? ବର୍ତ୍ତମାନ ସୁଦ୍ଧା ମୋର ଦ୍ୱିଖଣ୍ଡିତ ହୃଦୟସ୍ଥଳରେ ସୁଶୀଳାର ଚିତ୍ର ଅଙ୍କିତ । ବର୍ତ୍ତମାନ ସୁଦ୍ଧା ମୋର ମାନସ-ଚକ୍ଷୁରେ ତାର ବାଲ୍ୟ-ଚପଳ ପ୍ରତିମୂର୍ତ୍ତିଟି ନାଚିଉଠୁଛି । ଅହା ସେହି ସୁଶୀଳା, ମୋର ପ୍ରାଣର ସୁଶୀଳାର ମୁଁ ଆଜି ସର୍ବନାଶ କରିସାରିଛି । ଏହା କଣ ମୋର ସୁଶୀଳା ପ୍ରତି ସ୍ନେହ ନା ଘୃଣା ! ଘୃଣା ବୋଲି କଣ ମନୁଷ୍ୟର ଅଧିକାର ଅଛି ଅନ୍ୟ ଜଣେ ରମଣୀର ସର୍ବନାଶ କରିବ ?

ସୁଶୀଳାର ଅବସ୍ଥା ହେବ କଣ ? ସେ ଯଦି ଜାଣେ, ତାର ବାଲ୍ୟସଖା ମଣିଆଁ ଭାଇ ତାର ସ୍ୱାମୀକୁ ଦଣ୍ଡିତ କରାଇଛି, ସେ ଭାବିବ କଣ ? ନା, ମୁଁ ନିଜେ ଯାଇ ସୁଶୀଳାଠାରୁ କ୍ଷମା ମାଗିବି । ସେ ଜାଣେ ନାହିଁ, ବାଳରଜା ତାର ବାଲ୍ୟ ପରିଚିତ ମଣିଆଁ ଭାଇ । ଏତିକି ଜାଣିଲେ ସେ ମୋତେ କ୍ଷମା ଦେଇପାରିବ ନାହିଁ ? ଅହା, ସ୍ୱର୍ଗର କୁସୁମ ପରି ଶିଶୁଟି ତାର ବାଲ୍ୟକାଳରୁହିଁ ପିତୃହୀନ ହେବ । ତାର ଦୁର୍ଦ୍ଦଶା କଣ ହେବ !

ଏହିପରି ଚିନ୍ତା କରୁଥିବା ସମୟରେ ଚଞ୍ଚଳା ନିକଟସ୍ଥ ଅଭ୍ରନାଳଟିଣକୁ ଟିକିଏ ଠେଲି ଦେଇ କହିଲା—ରଜା, ଆପଣ ବଡ଼ କଠୋର-ପ୍ରାଣର କାର୍ଯ୍ୟ କରିଛନ୍ତି ।

ବାଲରଜା ଚମକି ପଡି ବଲବଲେଇଲା ପରି କହି ଉଠିଲେ, ଭାରି ନିଷ୍ଠୁର କାର୍ଯ୍ୟକରି ପକାଇଛି ତୋ ପ୍ରତି ସୁଶୀଳା, ମୋତେ କ୍ଷମା କର । ସମ୍ମୁଖକୁ ଚାହିଁ ଦେଖିଲେ ଚଞ୍ଚଳା, ସୁଶୀଳା ନୁହେଁ । ସେ ଦୀର୍ଘନିଃଶ୍ୱାସ ପକାଇଲେ ।

ଚଞ୍ଚଳା ପୁଣି କହିଲା, ଉପାୟ କରି ନାରାୟଣ ସାଧବଙ୍କୁ ମୁକ୍ତ କରନ୍ତୁ ।

ବାଲରଜା ଦୁଃଖିତ ହୋଇ କହିଲେ, ଆଉ ଯେ ଉପାୟ ନାହିଁ । ଉତ୍କଳ ସମ୍ରାଟଙ୍କର ଆଜ୍ଞା ଅଟଳ । କିଏ ଯାଇ ବିପକ୍ଷରେ କହିବ ?

ନା, ତାଙ୍କର ବିପକ୍ଷରେ କହିବାକୁ ମୁଁ କହୁ ନାହିଁ । ଯଦି ତାଙ୍କୁ କୌଣସି ମତେ ସନ୍ତୁଷ୍ଟ କରି ପ୍ରାଣଦଣ୍ଡ ପରିବର୍ତ୍ତେ କାରାବାସ ବ୍ୟବସ୍ଥା କରି ପାରନ୍ତି ··· ।

ପୁଣି କଣ ଆଣ୍ଡାମାନର ନରକ କୁଣ୍ଡରେ ଧାଡ଼ି ହେବାକୁ ମନସ୍ଥ କରିଛ— କହୁ କହୁ ବାଲରଜାଙ୍କର କ୍ରୋଧାନଳ ଜଳିଉଠିଲା । ସେ ତେଜ ହୋଇ କହି ଆରମ୍ଭ କଲେ, ନାରାୟଣ ସାଧବ ଦେଶର କି ଅମଙ୍ଗଳ ନ କରିଛି ? ଏହି ତ ସମ୍ମୁଖରେ ବୃନ୍ଦା । ତାଙ୍କର ଏକମାତ୍ର ସନ୍ତାନ ରାଧାଶ୍ୟାମର ମୃତ୍ୟୁର କାରଣ କିଏ ? ଆଜି ବୃନ୍ଦାଙ୍କର ବ୍ୟଥିତ ହୃଦୟ ଭିତରେ ପ୍ରବେଶ କରି ତାଙ୍କର ଯନ୍ତ୍ରଣା ଯଦି ବୁଝିପାରୁଥାନ୍ତ ଚଞ୍ଚଳା, ମୋ ନିକଟରେ ଏପରି ଅନୁରୋଧ କରନ୍ତ ନାହିଁ ।

ହେମ ବାଳକା ଭୁ, କାନ୍ଦ ନା । ତୋର ଭ୍ରାତୃହନ୍ତାର ଉପଯୁକ୍ତ ଦଣ୍ଡ ହୋଇ ଯାଉଛି । ଦୁଃଖ କର ନା ଆଉ ଚମ୍ପଲା, ତମର ପିତାଙ୍କର ମୃତ୍ୟୁର କାରଣ କିଏ ? ଏହି ନାରାୟଣ ସାଧବ ନୁହେଁ କି ?

ନାରାୟଣ ସାଧବର ସବୁ ଦୋଷ ଭୁଲି ଯିବାକୁ ହେଉଛି ସୁଶୀଳାର ମୁହଁକୁ ଅନାଇ ! ଚମ୍ପଲା କହିଲା, ସୁଶୀଳା ତ ନିର୍ଦ୍ଦୋଷା ।

ବାଲରାଜାଙ୍କର ପୂର୍ବ ଶାନ୍ତ୍ୱନା ଲୋପ ପାଇଲା । ଚମ୍ପଲା ଉପରେ କ୍ରୁଦ୍ଧ ହୋଇ ସେ କହିଲେ, ସୁଶୀଳା ତମର ନିର୍ଦ୍ଦୋଷା ? ନାରୀ ଜାତିର କଳଙ୍କ ସୁଶୀଳା ! ଅକୃତଜ୍ଞ ସ୍ୱାର୍ଥପର ସୁଶୀଳା, ନିର୍ଦ୍ଦୋଷା ? ସୁଶୀଳାର ଦୋଷ କଣ ନାରାୟଣ ସାଧବର ତୁଳନାରେ ଅଳ୍ପ । ସୁଶୀଳା କଣ ଜାଣି ନ ଥିଲା ସୁର୍ଯ୍ୟଦ୍ୱୀପର ବନ୍ଦୀଙ୍କ କଥା ? ସେ ତାର ସ୍ୱାମୀକୁ ଉପଦେଶ ଦେଲା ନାହିଁ କାହିଁକି ? ପାପୀୟସୀର ପାପ ନିମନ୍ତେ ତାର ନରକରେ ସୁଦ୍ଧା ସ୍ଥାନ ନାହିଁ । ଏତକି କହି ବାଲରାଜା ଚୁପ୍ ହେଲେ ।

ସମସ୍ତେ ଅବାକ୍ ହୋଇ ଅନାଇଁ ରହିଛନ୍ତି—ଜଣେ ରମଣୀ କୋଳରେ ଗୋଟିଏ ଶିଶୁ ଧରି ସେ ପ୍ରକୋଷ୍ଠରେ ପ୍ରବେଶ କଲା । ଦେଖିଲେ ଜଣାଯାଉଛି, ଯେପରି ସେ ପାଗଳିନୀ । ତରଙ୍ଗ ତରଙ୍ଗ କରି ଗୃହଅଡ଼କୁ ଚାହୁଁଛି । ମୁଣ୍ଡର ବାଳ ଏଣେ ତେଣେ ଝୁଲି ପଡ଼ୁଛି । ବହୁମୂଲ୍ୟ ପରିହିତ ବସ୍ତ୍ର ଅନେକ ଜାଗାରେ ଛିଣ୍ଡି ତଳେ ଲୋଟୁଛି ।

ସେ ଗୃହର ଅଭ୍ୟନ୍ତରକୁ ଆସି ଦ୍ୱାରବନ୍ଧ ନିକଟରେ ଅବନତ ହୋଇ ଠିଆହେଲା । ଅସ୍ଥିର ପଦ ତାର ପ୍ରକମ୍ପିତ । ସମ୍ମୁଖରେ ତାର ମଣିଆଁ ଭାଇକୁ ରାଜବେଶରେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲା । ଝର ଝର ହୋଇ ଚକ୍ଷୁରୁ ଲୋତକ ଗଡ଼ିପଡ଼ିଲା । ହୃଦୟ ଅସ୍ଥିର ହୋଇ ପଡ଼ିଲା । ଆହା ଏହି ମଣିଆଁ ଭାଇକୁ ସେ ମାରିବାକୁ ଆସିଛି ! ମଣିଆଁ ଭାଇର ରକ୍ତରେ ସେ ହସ୍ତ ରଞ୍ଜିତ କରିବ ? ଯେଉଁ ମଣିଆଁ ଭାଇକୁ ଦିନେ ସେ ଅନ୍ତରର ସହିତ ଭଲ ପାଇଥିଲା, ତାହାର ରକ୍ତରେ ହସ୍ତ ରଞ୍ଜିତ କରିବ ? ସୁଶୀଳାର ଚକ୍ଷୁ ଅବନତ ହେଲା । ତା'ର ସବୁ ଦମ୍ଭ, ସବୁ ପ୍ରତିଜ୍ଞା ଗଲା କୁଆଡ଼େ ?

ପ୍ରକୋଷ୍ଠର ସମସ୍ତେ ଅବାକ୍ ହୋଇ ସୁଶୀଳାକୁ ଚାହିଁ ରହିଲେ । ଅଧିରାଜ ବସ୍ତ୍ରୟରେ ଏକାଥରେ, ଚିତ୍କାର କରିଉଠିଲା । ଚମ୍ପଲା ଅଧୀର ହୋଇ ତା'ର ବାଲ୍ୟସଙ୍ଗିନୀକୁ ଆଲିଙ୍ଗନ କରି ସହାନୁଭୂତିର ଲୋତକ ବର୍ଷଣ କଲା । ହେମ କିଛି ବୁଝିଲା ନାହିଁ, କି ବୃଦ୍ଧାଙ୍କର ଚକ୍ଷୁ ଖୋଲିଲା ନାହିଁ ।

ବାଲ୍ୟରାଜା ବିସ୍ଫାରିତ ଲୋଚନରେ ତାହାର ଅଡ଼କୁ ଏକଦୃଷ୍ଟିରେ ଅନାଇ ରହିଲେ । ଚକ୍ଷୁରୁ ବୁନ୍ଦାଏ ହୋଇ ଲୋତକ ଝରିଲା ନାହିଁ । ହୃଦୟ ଟିକିଏ ହୋଇ ସ୍ପନ୍ଦିତ ହେଲା ନାହିଁ । ମନ ଟିକିଏ ହୋଇ ଚଞ୍ଚଳ ହେଲା ନାହିଁ । କେବଳ ଚକ୍ଷୁ ବିସ୍ଫାରିତ ହେଲା, ପଲକ ପଡ଼ିଲା ନାହିଁ ।

ଏହିପରି ଅନେକ ସମୟ ଅତୀତ ହେଲା । ସୁଶୀଳା ଧୀରେ ଧୀରେ ବାଲ୍ୟ-ରାଜାଙ୍କ ନିକଟକୁ ଆସିଲା । କମ୍ପିତ ପଦରେ ଥରେ ଭଲ କରି ରାଜାଙ୍କ ମୁହଁକୁ ଅନାଇଁ ଶିଶୁଟିକୁ ତଳେ ଶୁଆଇ ଦେଲା । ନିଜର ଅଞ୍ଚଳରେ ଚକ୍ଷୁର ଲୋତକ ପୋଛି କ'ଣ କହିବାକୁ ଯାଉଥିଲା, କଣ୍ଠ ରୁଦ୍ଧ ହେଲା, କହିପାରିଲା ନାହିଁ । ଶିଶୁକୁ ସେହିଠାରେ ଛାଡ଼ି ପୁଣି ପଛକୁ କେଇ ପାଦ ଫେରି ଲଜ୍ଜାରେ ଚକ୍ଷୁ ନତ କଲା ।

ବାଲ୍ୟରାଜା ଦୀର୍ଘ ନିଶ୍ୱାସ ପକାଇ ଆସନ ଘୁଞ୍ଚାଇ ଟିକିଏ ଦୂରକୁ ହଟି ଗଲେ । ତାଙ୍କର ଇଚ୍ଛା ହେଲା ଗୃହ ତ୍ୟାଗକରି ପଦାକୁ ଚାଲିଯିବେ, ମାତ୍ର ଦ୍ୱାରବନ୍ଧ ନିକଟରେ ଯେ ସୁଶୀଳା । କିଛି ଭାବି ନ ପାରି ଗଲା ଥରାଇ ଥରାଇ କହିଲେ, ସୁ—ଉ—ଶୀ—ଳା—ଅ··· ।

ଏତିକିରେ ସୁଶୀଳା ତଳେ ମୁଣ୍ଡ ଲଗାଇ ଗଳା ଥରାଇ ଥରାଇ କହିଲା, ମଣି—ଇ—ଆଁ ଭା—ଇ—ଇ, ମୋତେ କ୍ଷମା—କର—

ଆଉ କିଛି କହିପାରିଲା ନାହିଁ । ଇତ୍ୟବସରେ ଚଞ୍ଚଳା ଶିଶୁଟିକୁ ଟେକି ନେଲା । ମଣିଆଁ ନିରୁତ୍ତର । ସୁଶୀଳା ମଧ୍ୟ ସେହିପରି ଅବସ୍ଥାରେ ତଳେ ମୁଣ୍ଡ ଲଗାଇ କହିଁ କହିଁ ହୋଇ କାନ୍ଦିଲା । ଚଞ୍ଚଳା ସୁଶୀଳାର ହାତ ଧରି ତାକୁ ଠିଆ କରି ଦେଲା । ସୁଶୀଳା ମନରେ ସାହସ ବାନ୍ଧି କହିଲା, ମଣିଆଁ ଭାଇ, ସାଧବକୁ କ୍ଷମାକର । ତା'କୁ ତାର ଜୀବନ ଦିଅ ।

ମଣିଆଁ ଅନିମେଷ ଚକ୍ଷୁରେ ସୁଶୀଳାକୁ ଅନା'ଇ ରହିଛି । ତାର ପାଟିରୁ କଥା ବାହାରୁ ନାହିଁ । ଚଞ୍ଚଳା ତାର ସଙ୍ଗିନୀର ସହାୟ ହୋଇ ପ୍ରାର୍ଥନା କଲା, ବାଲ୍ୟରାଜା, ଏହି ଶିଶୁଟିର ମୁହଁ ଦେଖି ସବୁ ଭୁଲିଯାଅ—

ଭୁଲିଯିବି ?

ଏହାର ପିତାକୁ କ୍ଷମାକର ।

କ୍ଷମା···?

ହିଁ, ମହାରାଜ !

କ୍ଷମା କରିବାର ଶକ୍ତି ମୋ ପାଖରୁ ଚାଲିଗଲାଣି ।

ତେବେ କାହ୍ନୁ ଭୂୟାଁଙ୍କୁ କହି···

ତାଙ୍କ ହାତରେ ମଧ୍ୟ କିଛି ନାହିଁ । ସବୁ ଲାଲତେନ୍ଦିଙ୍କ ହାତରେ ।

ରାଜା, ମୋ ଉପରେ ବିରକ୍ତ ହେଉନ୍ତୁ ପଛେ, ମୁଁ ମୋର ବାଲ୍ୟସଙ୍ଗିନୀର ପକ୍ଷ ନେଇ ଆପଣଙ୍କୁ ଏହି ଅନୁରୋଧ କରୁଛି, ଆପଣ ଲଲିତେନ୍ଦୁଙ୍କ ନିକଟକୁ ଯାଇ ମାଧବଙ୍କୁ ମୁକ୍ତ କରିବାକୁ ଅନୁରୋଧ କରନ୍ତୁ ।

ଚଞ୍ଚଳା, ମୁଁ ଆଗରୁ କହିଛି, ଲଲିତେନ୍ଦୁଙ୍କର ଆଦେଶ ଅଟଳ ।

ଆପଣ ଏତିକି ଚେଷ୍ଟା କରନ୍ତୁ ।

ଚେଷ୍ଟା ? ଭାରତର ନୌବାଣିଜ୍ୟ ଭାଗ୍ୟର ଧୂମକେତୁ ଯେ, ତା'ର ଜୀବନ ପାଇଁ ଚେଷ୍ଟା ? ମନୁଷ୍ୟ ସମାଜକୁ ଯେଉଁ ନରାଧମ ପଶୁଠାରୁ ହୀନ ବୋଲି ଜ୍ଞାନ କରି ଅକ୍ଳେଶରେ ଅସଂଖ୍ୟ ନିରୀହ ପ୍ରାଣୀଙ୍କର ଜୀବନ ବିନଷ୍ଟ କରିଛି, ତାହାର ନିମନ୍ତେ ଚେଷ୍ଟା ? ତାହାର ପାଇଁ ଅନୁରୋଧ ? ପୁଣି, ଉତ୍କଳକେଶରୀ ନିକଟରେ ? ରମଣୀର ରମଣୀତ୍ୱକୁ ଯେ ବଜାରର ପଣ୍ୟ ଦ୍ରବ୍ୟ ପରି ଭାବି ଅକାତରରେ ସହସ୍ର ରମଣୀଙ୍କ ସର୍ବନାଶ କରିଛି, ସେହି ପାଷାଣ୍ଡ, ସେହି ନର-ରାକ୍ଷସର ଜୀବନ ନିମନ୍ତେ ଚେଷ୍ଟା ? ବୃଥା ତମର ଅନୁରୋଧ ।

ସୁଶୀଳା କହିଲା, ଏଡ଼େ ନିଷ୍ଠୁର କାହିଁକି ମଣିଅଁ ଭାଇ । ଏକାଥରେ କ'ଣ ଭୁଲିଗଲ, ବାଲ୍ୟ ଜୀବନର········

ଚଞ୍ଚଳା କହିଲା, କ୍ଷମାକର ସୁଶୀଳାକୁ । ମନେକର ବାଲ୍ୟଜୀବନର ଘଟଣା ଗୁଡ଼ିକ ।

ବାଲରାଜା ଉତ୍ତର ଦେଲେ, ସେତିକି ଯେ ମୋ ମନରେ ଦୁଃଖ ଆଣେ ଚଞ୍ଚଳା । ଯଦି ବାଲ୍ୟସ୍ମୃତି କୌଣସି ମତେ ମନ ମଧ୍ୟରୁ ତିରୋହିତ ହୋଇ ପାରନ୍ତା, ଯଦି ତୋର ସଙ୍ଗିନୀ ମୋର ଏକାଥରେ ଅପରିଚିତା ହୋଇଥାନ୍ତା, ତେବେ କେଜାଣି—

ସୁଶୀଳା ଉତ୍ତେଜିତ ହୋଇ ଚିତ୍କାର କରି ଉଠିଲା, ଥାଉ, ଆଉ ମୁଁ କ୍ଷମା ଚାହିଁବି ନାହିଁ । ନିଷ୍ଠୁର ହୃଦୟ, ଆଉ ମୁଁ କ୍ଷମା ଚାହିଁବି ନାହିଁ । ନାରୀଜାତିର କଳଙ୍କ ମୁଁ । ନାରୀ ସମାଜର ବହିର୍ଭୂତ ମୁଁ, ମୋତେ କେହି କ୍ଷମା କରିପାରିବେ ନାହିଁ । ଅଃ । ମଣିଅଁ ଭାଇ, ପାପୀୟସୀ ମୁଁ । କଳଙ୍କିନୀ ମୁଁ । ତମର ପବିତ୍ର ହୃଦୟ ନିକଟରୁ କ୍ଷମା ଚାହିଁବାକୁ ଆସିଥିଲି । ଓଃ ! ନାଁ, ଆସିଥିଲି ତମର ହୃଦୟର ରକ୍ତରେ ମୋର ଏ କଳଙ୍କିତ ହସ୍ତ ରଞ୍ଜିତ କରି ପ୍ରତିଶୋଧ ନେବାକୁ । ଯାହାକୁ ଥରେ ମୁଁ ଘୃଣା କରୁଥିଲି, ତାହାକୁ ଆଜି ମୁଁ ଭଲପାଇଛି । ଯାହାକୁ ମୁଁ ଆଜି ଭଲପାଇଛି, ତାହାର ବିପକ୍ଷରେ ଅଭିଯୋଗ କରି ତାକୁ ପ୍ରାଣଦଣ୍ଡ ଦେବାର ଚେଷ୍ଟା କରୁଛ । ଏଥିରେ ତମର ସ୍ୱାର୍ଥପରତା ନିଜେ ନିଜେ ଫୁଟି ବାହାରୁଛି । ତମେ ଯଦି ନିଜର ସ୍ୱାର୍ଥ ନିମନ୍ତେ ଏତେ ଉଦ୍‌ବିଗ୍ନ

ମୁଁ କାହିଁକି ନ ହେବ ? ଏଇଆ ଭାବି ମୁଁ ଆସିଥିଲି ପ୍ରତିଶୋଧ ନେବାକୁ, କିନ୍ତୁ ମଣିଆଁ ଭାଇ ମୁଁ ବୁଝିପାରୁ ନାହିଁ ଏଥିରେ ତମ୍ଭର କେଉଁ ସ୍ୱାର୍ଥ ଚରିତାର୍ଥ ହେବ ?

ସୁଶୀଳା, ଭ୍ରାନ୍ତ, ରକ୍ତ ଗୃହ୍ନୁଁ ? ପ୍ରତିଶୋଧ ନେବୁ ? ବାନ୍ଦିରାଜା ଗଳା ଥରାଇ ଥରାଇ କହିଲେ । ତାଙ୍କର ହୃଦୟ ମଧ୍ୟରେ ଯେଉଁ ଝଟିକା ପ୍ରବାହିତ ହେଉଥିଲା, ବର୍ଣ୍ଣନାତୀତ ।

ସୁଶୀଳାର କଥାରେ ତାଙ୍କର ପ୍ରାଣ ବିଗଳିତ ହେଲା । ସୁଶୀଳାର ଦୁର୍ଦ୍ଦଶା ଦେଖି ତାଙ୍କର ଚକ୍ଷୁରୁ ଲୋତକ ଝରିପଡ଼ିଲା । ସେ ସହାନୁଭୂତି ଦେଖାଇ କହିଲେ, ମୋର ଏ ଅସ୍ଥିର ହୃଦୟ ପ୍ରସ୍ତୁତ ରଖିଛି ସୁଶୀଳା, ଭୟ ନାହିଁ । ପ୍ରତିଶୋଧ ନେବୁ ? ନେ । ମୋର ହୃଦୟ ବିଦୀର୍ଣ୍ଣ କରି ରକ୍ତରେ ହସ୍ତ ରଞ୍ଜିତ କର ! ସଙ୍ଗେ ସଙ୍ଗେ ଦେଖିନେ କିପରି ଅଦ୍ୟାପି ମୋର ହୃଦୟର ଅନ୍ତଃସ୍ଥଳରେ ସୁଶୀଳାର ସ୍ମୃତିଚିହ୍ନ ଅଙ୍କିତ ଅଛି । ସୁଶୀଳା, ସୁଶୀଳା ବୁଝି ପାରୁ ନାହୁଁ ଅବଳା, ମୃତ୍ୟୁରାଜ୍ୟର ସନ୍ନିକଟବର୍ତ୍ତିନୀ ହୋଇଥିଲୁ ତୁ । ସେ ବାହ୍ମବର୍ଷ ତଳର କଥା, କିନ୍ତୁ ଅଦ୍ୟାପି ସେ ଦୃଶ୍ୟ ମୋର ମନ ମଧ୍ୟରେ ଅଙ୍କିତ ରହିଛି । ଡକାଇତମାନେ ତୋତେ ମାତୃକୋଡ଼ରୁ ବଳାତ୍କାର କରି ଅପହରଣ କରିଥିଲେ । ତୋର ପୃଷ୍ଠଦେଶରେ ଛୁରିକାଘାତ କରି ବାଲୁକା ଉପରେ ନିକ୍ଷେପ କରି ଯାଇଥିଲେ । କିଏ ତୋତେ ନିଜର ଜୀବନ ବିପନ୍ନ କରି ସୁନ୍ଦା ବକ୍ଷରେ ବଡ଼ାଇ ଆଣିଥିଲା ସୁଶୀଳା ?

ସେହି ଅସ୍ଥିର ବକ୍ଷରେ ଥାଇ ତୁ ଦିନେ ସ୍ୱୀକାର କରିଥିଲୁ ମୋର ରାଣୀ ବୋଲି । ମନେ ଅଛି କଳଙ୍କିନୀ, ମନେ ଅଛି ନିଷ୍ଠୁରି, ନିଜେ ନିଜେ ଦିନେ ତୁ ମୋର ଗଳଦେଶରେ କୁସୁମହାର ଲମ୍ବାଇ ମୋତେ ପତି ରୂପେ ବରଣ କରିଥିଲୁ । ପୁଣି, ମନେ ଅଛି ନିର୍ଲଜ୍ଜୀ, ବିଦାୟକାଳରେ ଚକ୍ଷୁ ଛଳଛଳ କରି କହି ଯାଇଥିଲୁ ଭୁଲି ନ ଯିବାକୁ ?

କାହୁଁ ଜାଣିବୁ ପାଷାଣୀ, କିପରି ତୋର ଶେଷବାକ୍ୟଟି ଜୀବନର ସର୍ବସ୍ୱ କରି ମୁଁ ସୂର୍ଯ୍ୟଦ୍ୱୀପର କାରାଗାରରେ ବାହ୍ମବର୍ଷ ନରକ ଯନ୍ତ୍ରଣା ଭୋଗ କରିଥିଲି । ଦିନକ ପାଇଁ ତ ହେଲେ କେବେ ତୋର ସ୍ମୃତିକୁ ମୁଁ ମନରୁ ଅନ୍ତର କରି ନାହିଁ । ଆଃ ! ସୁଶୀଳା, ଏହାହିଁ କ'ଣ ନାରୀଜାତିର ପ୍ରତିଜ୍ଞା, ଏହାହିଁ କଣ ରମଣୀର ରମଣୀତ୍ୱ । ଆଜି ପ୍ରତିଶୋଧ ନେବାକୁ ଆସିଛୁ ତୁ, ଦସ୍ୟୁପତ୍ନୀ, ପ୍ରତିଶୋଧ ନେବାକୁ ଆସିଛୁ ? ନେ, ଯଥେଚ୍ଛା ପ୍ରତିଶୋଧ ନେ । ହୃଦୟ ମୋର

କଲୁ.୍କ୍ତ । ଯେଉଁ ହୃଦୟ ଉପରେ ତୋତେ ପାଳନ କରି ଆସିଥିଲି, ସେହି ହୃଦୟରୁ ଅକ୍ଳେଶରେ ରକ୍ତପାନ କରିପାରୁ ରାକ୍ଷସୀ । ଏତିକି କହି ବାଲସଖା ଉପବେଶନ କରି ହୃଦୟ ଖୋଲି ଦେଖାଇଦେଲେ ।

ଚଞ୍ଚଳା ବାଲସଖାଙ୍କର ସମ୍ମୁଖୀନ ହୋଇ ଉଦ୍‌ବିଗ୍ନତାର ସହିତ କହିଲା, ବାଲସଖା, ସୁଶୀଳା ତମର ଶ୍ରୀଚରଣରେ ଅପରାଧିନୀ, ତାକୁ କ୍ଷମାକର ।

ସୁଶୀଳାର କଣ୍ଠ ରୁଦ୍ଧ ହେଲା । ପାଦଦ୍ୱୟ ଥରିବାକୁ ଲାଗିଲା । ସେ ହୃଦୟରୁ ଛୁରିକା ଖଣ୍ଡି କାଢ଼ି କହିଲା, ଚଞ୍ଚଳା, ବାଲ୍ୟସଙ୍ଗିନୀ ମୋର ! ଆଉ ମୋ ନିମନ୍ତେ କ୍ଷମା ପ୍ରାର୍ଥନା କର ନା । ମୁଁ ଜାଣେ, ମୋର ଦୋଷ କ୍ଷମଣୀୟ ନୁହେ ।

ମଣିଆଁ ଭାଇ, ନାରାୟଣ ସାଧବର ଚକ୍ରାନ୍ତରେ ପଡ଼ି ମୁଁ ତାର ବିବାହିତା ବଳାତ୍କାରରେ । ଦେଶରେ ଘୋଷଣା କରାଇଲେ କଳଙ୍କ ପଲ୍ଲୀରେ ବିବାହ କରୁଛନ୍ତି ବୋଲି । ମୋତେ ମିଥ୍ୟାରେ କହିଥିଲେ, ମଣିଆଁ ମୃତ । ଏଥି ନିମନ୍ତେ ମୁଁ ଯାହା କରିଛୁ ସେଇଆ କରି କେହି ନାରୀ ସମାଜରେ ମୁଖ ଦେଖାଇ ନ ପାରେ । ଠିକ୍ କରିଛ ମଣିଆଁ ଭାଇ, ଠିକ୍ କରିଛ । ନାରାୟଣ ସାଧବ ନରରାକ୍ଷସ । ତା'ର ଉପଯୁକ୍ତ ଦଣ୍ଡବିଧାନ କରିଛ । ତଥାପି ଭାଇ, ସେ ମୋର ସ୍ୱାମୀ ।

ଚଞ୍ଚଳା, ଭଉଣୀ, ଶିଶୁ କେବେ କଳଙ୍କିତ ନୁହେଁ । ସେ ଯେ ସ୍ୱର୍ଗର କୁସୁମ । ଶିଶୁକୁ ହୃଦୟରେ ରଖିବୁ । ଆଜିଠାରୁ ତୁ ତା'ର ଜନନୀ ।

ମଣିଆଁ ଭାଇ, ରାକ୍ଷସୀର ଶେଷ ଉପହାର ଗ୍ରହଣ କର । ଶିଶୁ ଦେହରେ କିଛି କଳଙ୍କ ନାହିଁ । ତାକୁହିଁ ପୁତ୍ରରୂପେ ଗ୍ରହଣ କର । ନା, ତମର ବାରଣ ଆଉ ମାନିବି ନାହିଁ ।

ସୁଶୀଳା ସୁପ୍ତ ପୁତ୍ରର ମୁଖାବଲୋକନ କଲା । ଚକ୍ଷୁରୁ ଲୋତକ ଝରି ଝରି ହୋଇ ବହିପଡ଼ିଲା । କମ୍ପିତ ହସ୍ତରେ ସୁତୀକ୍ଷ୍ଣ ଛୁରିକା ଉତ୍ତୋଳନ କରି କହିଲା ମଣିଆଁ ଭାଇ, ଯେଉଁ ସୁତୀକ୍ଷ୍ଣ ଛୁରିକା ଗୋପନ କରି ଆଣିଥିଲି ତମର ହୃଦୟ ବିଦୀର୍ଣ୍ଣ କରିବି ବୋଲି ସେହି ସୁତୀକ୍ଷ୍ଣ ଛୁରିକା ଆଜି ଭାରତର ନାରୀ ସମାଜର କଳଙ୍କ ଲିଭାଇ ଦେଉ । ଅଧିରାଜ, ବ୍ୟସ୍ତ ହେଉଛ କାହିଁକି ? ବାଧା ଦେବାକୁ ଚେଷ୍ଟା କର ନାହିଁ । ଏ କଳଙ୍କିନୀ ଆଉ କଳୁଷିତ ଜୀବନ ବହନ କରିପାରିବ ନାହିଁ । ଚଞ୍ଚଳା, ଭଉଣୀ ମୋର—

କହୁ କହୁ ସୁଶୀଳା ନିଜ ହୃଦୟରେ ଛୁରିକାଘାତ କଲା । ଚଞ୍ଚଳା ଚମକି ପଡ଼ି ବାଲିରାଜାଙ୍କର ସମ୍ମୁଖରୁ ଧାଇଁଗଲା । ସୁଶୀଳା ଛିନ୍ନ ରମ୍ଭାବୃକ୍ଷପରି ବାଲିରାଜାଙ୍କର ବିସ୍ମିତ ହୃଦୟ ଉପରେ ପଡ଼ିଲା । ସୁଶୀଳାର ଦୁର୍ଦ୍ଦଶା ଦେଖି ବାଲିରାଜା ମୂହ୍ୟମାନ ହେଲେ । ହେମ ଏବଂ ଅଧିରାଜ ଚିତ୍କାର କରି ଉଠିଲେ ।

ଏତେବେଳେ ବୃଦ୍ଧା ଚମକି ଉଠିଲେ । ସେହି ସୁଦୂର ଅତୀତର କଥା, ଭୁଲାଇଥିବା କଥା ସ୍ୱପ୍ନ ପରି ଆସି ତାଙ୍କର ମନକୁ ଅସ୍ଥିର କରି ପକାଇଥିଲା । ସେ ପାଗଳିନୀ ପରି ଉଠି ଆସିଲେ । ସୁଶୀଳାର ମୁଖକୁ ଗୃହିଁ ବିସ୍ମୟରେ ଥରେ ସ୍ଥିରଅଙ୍ଗକୁ ଅନାଇଁଲେ । ଚିତ୍କାର କରି ଉଚ୍ଚସ୍ୱରରେ କହିଲେ, ପାଇଛି, ପାଇଛି, ମୋର ହଜିଲା ଧନ ହୃଦୟର ମଣି ସୁଶୀଳାକୁ ଏତେଦିନେ ପାଇଛି ! ରାଧାଶ୍ୟାମ, ରାଧାଶ୍ୟାମ, କାହିଁ ବାବା ତୁ ? ତୋର ଭଉଣୀ, ସ୍ନେହର ଭଉଣୀ ସୁଶୀଳା, ଆଜି—ହୃଦୟ, ଭଗବାନ—ମାତୃହୃଦୟ ମୋର—ଭଗବାନ୍—ସୁଶୀଳା—କନ୍ୟା ମୋର···

କହୁଁ କହୁଁ ବୃଦ୍ଧା ସୁଶୀଳାର ଆହତ ହୃଦୟ ଉପରେ ପଡ଼ି ଶେଷଥର ପାଇଁ ତାର ଗଣ୍ଡଦେଶରେ ଗୋଟିଏ ଚୁମ୍ବନ ଦେଲେ ।

ସାଧବ ସଭାର କାର୍ଯ୍ୟ ଶେଷ ହେଲା । ଲଳିତେନ୍ଦୁ ସଗର୍ବରେ ଏକାମ୍ର ଫେରିଲେ ।

ବାଲିରାଜା ସୁଶୀଳାର ଶିଶୁପୁତ୍ରକୁ ସଙ୍ଗରେ ନେବାକୁ ରାଜା କାହ୍ନୁ ଭୂୟାଁଙ୍କଠାରୁ ଅନୁମତି ନେଲେ । ବାଲିରାଜା ପ୍ରକାଶ କଲେ ଯେ ସେ ବାଲିର ଉତ୍ତରାଧିକାରୀ ହେବ ।

ଅଧିରାଜ ଏବଂ ହେମଙ୍କର ଶୁଭ ପରିଣୟ ହେବାର ସ୍ଥିର ହେଲା । ବାଲିରାଜା ସେ ଶୁଭବିବାହରେ ଯୋଗ ଦେଇ ପାରିବେ ନାହିଁ ବୋଲି ଦୁଃଖ ପ୍ରକାଶ କଲେ । କାରଣ, ତାଙ୍କୁ ଅତିଶୀଘ୍ର କନ୍ଦର୍ପ ଦେଇ ଲୋକମାନଙ୍କୁ ସଙ୍ଗରେ ଧରି ବାଲିଦ୍ୱୀପ ଯିବାକୁ ହେବ । ମାରିବଦ୍ୱୀପରେ ମଧ୍ୟ ଅନେକ ଗୁଡ଼ିଏ କାର୍ଯ୍ୟ ବାକି ରହିଛି ।

ହେମ କାତର ହୋଇ ପଡ଼ିଥିଲା । ମା, ଭାଇ, ଭଉଣୀ ଏମାନଙ୍କୁ ହରାଇବାରୁ ତାର ମନରେ ବିଶେଷ କଷ୍ଟ । ନାରାୟଣ ସାଧବଙ୍କ ସମ୍ପତ୍ତିର ଯେଉଁ ଏକ ଚତୁର୍ଥାଂଶ ତାଙ୍କର ଶିଶୁପୁତ୍ରକୁ ଦିଆଯାଇଥିଲା, ବାଲିରାଜା ସେତକ ଅଧିରାଜ ଓ ହେମକୁ ଯୌତୁକ ରୂପେ ଦେଲେ । ଅଧିରାଜ ରାଧାଶ୍ୟାମଙ୍କ ସମ୍ପତ୍ତିର ଅଧିକାରୀ ହେଲେ ।

ଚାହୁଁଛି । ଯେଉଁ ହୃଦୟ ଉପରେ ତୋତେ ପାଳନ କରି ଆସିଥିଲି, ସେହି ହୃଦୟରୁ ଅକ୍ଳେଶରେ ଉନ୍ମୋଚନ କରିପାରୁ ସ୍ୱଦେଶୀ । ଏତିକି କହି ବାଲ୍ୟସଖା ଉପବେଶନ କରି ହୃଦୟ ଖୋଲି ଦେଖାଇଦେଲେ ।

ଚମ୍ପଲା ବାଲ୍ୟସଖାଙ୍କର ସମ୍ମୁଖୀନ ହୋଇ ଉଦ୍‌ବିଗ୍ନତାର ସହିତ କହିଲା, ବାଲ୍ୟସଖା, ସୁଶୀଳା ତମର ଶ୍ରୀଚରଣରେ ଅପରାଧିନୀ, ତାକୁ କ୍ଷମା କର ।

ସୁଶୀଳାର କଣ୍ଠ ରୁଦ୍ଧ ହେଲା । ପାଦଦ୍ୱୟ ଥରିବାକୁ ଲାଗିଲା । ସେ ହୃଦୟରୁ ଛୁରିକା ଖଣ୍ଡି କାଢ଼ି କହିଲା, ଚମ୍ପଲା, ବାଲ୍ୟସଙ୍ଗିନୀ ମୋର ! ଆଉ ମୋ ନିମନ୍ତେ କ୍ଷମା ପ୍ରାର୍ଥନା କର ନା । ମୁଁ ଜାଣେ, ମୋର ଦୋଷ କ୍ଷମଣୀୟ ନୁହେଁ ।

ମଣିଆଁ ଭାଇ, ନାରାୟଣ ସାଧବର ଚକ୍ରାନ୍ତରେ ପଡ଼ି ମୁଁ ତାର ବିବାହିତା ବଳାତ୍କାରରେ । ଦେଶରେ ଘୋଷଣା କରିଥିଲେ କଳିଙ୍ଗ ପଲ୍ଲୀରେ ବିବାହ କରୁଛନ୍ତି ବୋଲି । ମୋତେ ମିଥ୍ୟାରେ କହିଥିଲେ, ମଣିଆଁ ମୃତ । ଏଥି ନିମନ୍ତେ ମୁଁ ଯାହା କରିଛି ସେଇଥି କରି କେହି ନାରୀ ସମାଜରେ ମୁଖ ଦେଖାଇ ନ ପାରେ । ଠିକ୍ କରିଛ ମଣିଆଁ ଭାଇ, ଠିକ୍ କରିଛ । ନାରାୟଣ ସାଧବ ନରରାକ୍ଷସ । ତା'ର ଉପଯୁକ୍ତ ଦଣ୍ଡବିଧାନ କରିଛ । ତଥାପି ଭାଇ, ସେ ମୋର ସ୍ୱାମୀ ।

ଚମ୍ପଲା, ଭଉଣୀ, ଶିଶୁ କେବେ କଳଙ୍କିତ ନୁହେଁ । ସେ ଯେ ସ୍ୱର୍ଗର କୁସୁମ । ଶିଶୁକୁ ହୃଦୟରେ ରଖିଛୁ । ଆଜିଠାରୁ ତୁ ତା'ର ଜନନୀ ।

ମଣିଆଁ ଭାଇ, ସହଧର୍ମିଣୀର ଶେଷ ଉପହାର ଗ୍ରହଣ କର । ଶିଶୁ ଦେହରେ କିଛି କଳଙ୍କ ନାହିଁ । ତାକୁହିଁ ପୁତ୍ରରୂପେ ଗ୍ରହଣ କର । ନା, ତମର ବାରଣ ଆଉ ମାନିବି ନାହିଁ ।

ସୁଶୀଳା ସୁପ୍ତ ପୁତ୍ରର ମୁଖାବଲୋକନ କଲା । ଚକ୍ଷୁରୁ ଲୋତକ ଝରି ଝରି ହୋଇ ବହିପଡ଼ିଲା । କମ୍ପିତ ହସ୍ତରେ ସୁତୀକ୍ଷ୍ଣ ଛୁରିକା ଉତ୍ତୋଳନ କରି କହିଲା ମଣିଆଁ ଭାଇ, ଯେଉଁ ସୁତୀକ୍ଷ୍ଣ ଛୁରିକା ଗୋପନ କରି ଆଣିଥିଲି ତମର ହୃଦୟ ବିଦୀର୍ଣ୍ଣ କରିବି ବୋଲି ସେହି ସୁତୀକ୍ଷ୍ଣ ଛୁରିକା ଆଜି ଭାରତର ନାରୀ ସମାଜର କଳଙ୍କ ଲିଭାଇ ଦେଉ । ଅଧିରାଜ, ବ୍ୟସ୍ତ ହେଉଛ କାହିଁକି ? ବାଧା ଦେବାକୁ ଚେଷ୍ଟା କର ନାହିଁ । ଏ କଳଙ୍କିନୀ ଆଉ କଳୁଷିତ ଜୀବନ ବହନ କରିପାରିବ ନାହିଁ । ଚମ୍ପଲା, ଭଉଣୀ ମୋର—

କହୁ କହୁ ସୁଶୀଳା ନିଜ ହୃଦୟରେ ଛୁରିକାଘାତ କଲା । ଚଞ୍ଚଳା ଚମକି ପଡ଼ି ବାଲିରାଜାଙ୍କର ସମ୍ମୁଖରୁ ଘୁଞ୍ଚିଗଲା । ସୁଶୀଳା ଛିନ୍ନ ରମ୍ଭାବୃକ୍ଷପରି ବାଲିରାଜାଙ୍କର ବକ୍ଷିତ ହୃଦୟ ଉପରେ ପଡ଼ିଲା । ସୁଶୀଳାର ଦୁର୍ଦ୍ଦଶା ଦେଖି ବାଲିରାଜା ମୂର୍ଚ୍ଛ୍ୟମାନ ହେଲେ । ହେମ ଏବଂ ଅଧିରାଜ ଚିତ୍କାର କରି ଉଠିଲେ ।

ଏତେବେଳେ ବୃଦ୍ଧ ଚମକି ଉଠିଲେ । ସେହି ସୁଦୂର ଅତୀତର କଥା, ଭୁଲାଇଥିବା କଥା ସ୍ୱପ୍ନ ପରି ଆସି ତାଙ୍କର ମନକୁ ଅସ୍ଥିର କରି ପକାଇଥିଲା । ସେ ପାଗଳ ପରି ଉଠି ଆସିଲେ । ସୁଶୀଳାର ମୁଖକୁ ଗୃହି ବକ୍ଷରେ ଥରେ ବୁକୁ ଆଡ଼କୁ ଅନାଇଲେ । ଚିତ୍କାର କରି ଉଚ୍ଚସ୍ୱରରେ କହିଲେ, ପାଇଛି, ପାଇଛି, ମୋର ହଜିଥିବା ହୃଦୟର ମଣି ସୁଶୀଳାକୁ ଏତେଦିନେ ପାଇଛି ! ରାଧାଶ୍ୟାମ, ରାଧାଶ୍ୟାମ, କାହିଁ ବାବା ତୁ ? ତୋର ଭଉଣୀ, ସ୍ନେହର ଭଉଣୀ ସୁଶୀଳା, ଆଜି—ହୃଦୟ, ଭଗବାନ—ମାତୃହୃଦୟ ମୋର—ଭଗବାନ୍—ସୁଶୀଳା—କନ୍ୟା ମୋର...

କହୁଁ କହୁଁ ବୃଦ୍ଧ ସୁଶୀଳାର ଆହତ ହୃଦୟ ଉପରେ ପଡ଼ି ଶେଷଥର ପାଇଁ ତାର ଗଣ୍ଡଦେଶରେ ଗୋଟିଏ ଚୁମ୍ବନ ଦେଲେ ।

ସାଧବ ସଭାର କାର୍ଯ୍ୟ ଶେଷ ହେଲା । ଲଲାଟେନ୍ଦୁ ସଗର୍ବରେ ଏକାମ୍ର ଫେରିଲେ ।

ବାଲିରାଜା ସୁଶୀଳାର ଶିଶୁପୁତ୍ରକୁ ସଙ୍ଗରେ ନେବାକୁ ରାଜା କାଳୁ ଭୂୟାଁଙ୍କଠାରୁ ଅନୁମତି ନେଲେ । ବାଲିରାଜା ପ୍ରକାଶ କଲେ ଯେ ସେ ବାଲିର ଉତ୍ତରାଧିକାରୀ ହେବ ।

ଅଧିରାଜ ଏବଂ ହେମଙ୍କର ଶୁଭ ପରିଣୟ ହେବାର ସ୍ଥିର ହେଲା । ବାଲିରାଜା ସେ ଶୁଭବିବାହରେ ଯୋଗ ଦେଇ ପାରିବେ ନାହିଁ ବୋଲି ଦୁଃଖ ପ୍ରକାଶ କଲେ । କାରଣ, ତାଙ୍କୁ ଅତିଶୀଘ୍ର ନବଦ୍ୱୀପ ଦେଇ ଲୋକମାନଙ୍କୁ ସଙ୍ଗରେ ଧରି ବାଲିଦ୍ୱୀପ ଯିବାକୁ ହେବ । ମାରିବଦ୍ୱୀପରେ ମଧ୍ୟ ଅନେକ ଗୁଡ଼ିଏ କାର୍ଯ୍ୟ ବାକି ରହିଛି ।

ହେମ କାତର ହୋଇ ପଡ଼ିଥିଲା । ମା, ଭାଇ, ଭଉଣୀ ଏମାନଙ୍କୁ ହରାଇବାରୁ ତାର ମନରେ ବିଶେଷ କଷ୍ଟ । ନାରାୟଣ ସାଧବଙ୍କ ସମ୍ପତ୍ତିର ଯେଉଁ ଏକ ଚତୁର୍ଥାଂଶ ତାଙ୍କର ଶିଶୁପୁତ୍ରକୁ ଦିଆଯାଇଥିଲା, ବାଲିରାଜା ସେତକ ଅଧିରାଜ ଓ ହେମକୁ ଯୌତୁକ ରୂପେ ଦେଲେ । ଅଧିରାଜ ରାଧାଶ୍ୟାମଙ୍କ ସମ୍ପତ୍ତିର ଅଧିକାରୀ ହେଲେ ।

ବାଳରଜା ଚମ୍ପିଲାକୁ ତାର ସବ ନିକଟରେ ରହିବାକୁ ବାରମ୍ବାର ଅନୁରୋଧ କଲେ । ଚମ୍ପିଲା ବାରଣ କରି କହିଲା, ସୁଶୀଲା ଆପଣଙ୍କୁ ଯେଉଁ ରତ୍ନଟି ଉପହାର ଦେଇଛି ତାହାର ପରିଚର୍ଯ୍ୟା କରିବାକୁ ମୁଁ ଆପଣଙ୍କ ସଙ୍ଗରେ ଯିବି । ମୋର ସଙ୍ଗିନୀର ଆଦେଶ ମୋତେ ପାଳନ କରିବାକୁ ଦିଅନ୍ତୁ ।

ଏହି ସମୟରେ ଅଜଙ୍ଗ ଆସି କହିଲା, ରଜୌ, ରାଣୀକୌ ଛଡୌ ନୌ ।

ବାଳରଜା ଚକ୍ଷୁ ରକ୍ତବର୍ଣ୍ଣ କରି ଥରେ ଅଜଙ୍ଗ ଆଡ଼କୁ ଚାହିଁଲେ । ମୁଖ ଫେରାଇ ଚମ୍ପିଲାକୁ ଚାହିଁ ଦେଖିଲେ ସେ ହସୁଛି । ବାଳରଜା ତା ଆଡ଼କୁ ଅନାଇବାର ଦେଖି ଶିଶୁଟିର ମୁଖରେ ଅଜସ୍ର ଚୁମ୍ବନର ଧାର ଢାଳିଦେଲା ଚମ୍ପିଲା ।

ବାଳରଜା ଚିନ୍ତିତ ଦେଖାଗଲେ । କଣ ଭାବି ଅନ୍ୟ ଆଡ଼କୁ ମୁହଁ ବୁଲାଇ ଦୀର୍ଘନିଶ୍ୱାସ ତ୍ୟାଗ କଲେ । ଜଣାଗଲା ଯେପରି ସେ ଦୀର୍ଘନିଶ୍ୱାସଟି ଅତୀତର କେତେ ବ୍ୟଥାପୂର୍ଣ୍ଣ ସ୍ମୃତି ବିଜଡ଼ିତ ।

ବାଳରଜା ସଙ୍ଗରେ ଚମ୍ପିଲା ଓ ସୁଶୀଲାର ଶିଶୁପୁତ୍ରକୁ ନେଇ ଜିବଦ୍ୱୀପ ଯିବା ପୂର୍ବରୁ ମରୁଉଦ୍ୟାନରୁ ଭଜନାର ଦୈନିକ ଜୀବନୀଗୁଡ଼ିକ ସଂଗ୍ରହ କରି ନେଲେ । ତାଙ୍କର ଜନନୀ ଦେଇଥିବା ଉପହାର ରତ୍ନଟି ସଙ୍ଗରେ ନେଲେ ।

ଆଣ୍ଡାମାନରେ ଉପସ୍ଥିତ ହୋଇ ସୂର୍ଯ୍ୟଦ୍ୱୀପ ଖୋଜି ଆଉ ପାଇଲେ ନାହିଁ । ଜଣେ ବୃଦ୍ଧ ନାବିକ କହିଲେ, ତାମ୍ରଲିପ୍ତରେ ଥିବା ସମୟରେ ଯେଉଁ ସାମାନ୍ୟ ଭୂମିକମ୍ପ ହୋଇଥିଲା ବୋଧହୁଏ ସେହି ଭୂମିକମ୍ପ ସୂର୍ଯ୍ୟଦ୍ୱୀପକୁ ରସାତଳକୁ ପଠାଇଅଛି ।

ବୃଦ୍ଧଙ୍କର ଅନୁମାନ ଯଥାର୍ଥ ବୋଲି ସମସ୍ତେ ଗ୍ରହଣ କଲେ ।

ଢେଙ୍କାନାଳ
୨୪-୪-୧୯୨୯

## ୨

ସାଧୁଚରଣ ବାଁ ହାତରେ ଜଗନ୍ନାଥର ପିଠିରେ ଗୃପୁଡ଼ା ମାରି ଟିକିଏ ଯୋର୍‌ରେ କହି ଉଠିଲେ, ଅଃ, ତୋର ଖାଲି ସବୁବେଳେ ସେଇ କଥା । ସଂଯତ ହୋଇ କଥାଭାଷା କର । ସବୁବେଳେ ପାଟିରୁ ସଂସ୍କୃତ ବାହାର କରିବାକୁ ତୋତେ ଲଜ୍ଜ ମାଡ଼େ ନାହିଁ ? ଜଗନ୍ନାଥ ଉତ୍ତେଜିତ ହୋଇ କହିଲା, ଓଃ, ଭାରି ତ, ହ୍ୟାପ୍, ଭଉଣୀ ନ ଥାଇ ଏତେ ଯୋର୍‌ସେ ଆପତ୍ତି, ଥିଲେ ଆଉ ରକ୍ଷା ଦିଅନ୍ତୁ ନାହିଁ । ଏଇ, ଦେଟ୍, ଦେଖ୍ ।

ଜଗନ୍ନାଥ ସଯୋରେ ସାଧୁଙ୍କର ମୁଣ୍ଡକୁ ଦୁଇହାତରେ ଧରି ସମୁଦ୍ର ଆଡ଼କୁ ବୁଲାଇ ଦେଲା । ସାଧୁ ବିରକ୍ତ ହୋଇ କହିଲେ, ଅଚ୍ଛା, ତୋର ସେଥିରେ ଥାଏ କଅଣ କହିଲୁ ? ପରଦାରେଷୁ ମାତୃବତ୍—ଏହି ବାକ୍ୟଟି ପଣ୍ଡିତ ମହାଶୟ କ୍ଲାସରେ ଗର୍ଜି ଗର୍ଜି ଘଣ୍ଟାଏଁ ବୁଝାଇଲେ । ତାଙ୍କ କଥା ତୋର ଭଣ୍ଡାରଘଲାବାଟେ ଗଲା ନା ? ସାଧୁ ଯୋର୍‌ରେ ଦୁଇ ପାଦ ଅଗକୁ ଗଲେ । ଜଗନ୍ନାଥ ଛାଡ଼ିବାର ପିଲା ନୁହେଁ । ସେ ମଧ୍ୟ ଦୁଇପାଦ ଅଗକୁ ଯାଇ କହିଲା, ବାଃ, ବେଶ୍ ବେଶ୍, ଏଥର ପଣ୍ଡିତେ ପେନ୍‌ସନ୍ ନେଲେ, ଜଣା ପଡ଼ୁଛି ତାଙ୍କ ସ୍ଥାନ ତୁ ପୂରଣ କରିବୁ । ଆଗରୁ କହି ରଖିଛି ଯେତେ ସଂସ୍କୃତ ପଢ଼ ପଛେ, ମୋ ପାଖେ ତୋତେ ବରାବର ହାର୍ ମାନିବାକୁ ହେବ ।

ମୁଁ ସେଥିରେ ସମ୍ପୂର୍ଣ୍ଣ ରାଜି । ଥରେ କାହିଁକି ହଜାର ଥର ମାନିବାକୁ ପ୍ରସ୍ତୁତ ।

ଦେଖ୍ ଦେଖ୍, ଉଁ ବେଳେରେ, ଟିକିଏ ଲଜ୍ଜ ସରମ ଅଛି ? ହ୍ୟାପ୍, ବିଦେଶକୁ ଆସିଛନ୍ତି ହାଓ୍ୱା ଖାଇବାକୁ ପରା, ଖାଲି ପାଟିବାଟେ କି ନାକବାଟେ ହାଓ୍ୱା ଖାଇ ସନ୍ତୋଷ ହେବେ କାହିଁକି ? ଯେତେ ସମ୍ଭବ ଖର୍ଚ୍ଚ ଗୁଡ଼ାକ ହାଓ୍ୱାଖାଇ ଆଦାୟ କରିନେଲେ ହେଲା । ଅରେ ଭାଇ, ଦେହି ହାତ ଯନ୍ତ ଘୋଡ଼ାଇ ରଖିବ ଏତେ ପଇସା ଖରଚ କରି ଏଠିକି ଆସିବାର ପ୍ରୟୋଜନ କଅଣ ?

ତୁଉଠା ନିତାନ୍ତ ବଜାସି, ଜଗା !

ତୁଉଠୀ ନିପଟ ମଫସଲିଆ, ନିରେଖା ଗାଉଁଲି, ଏକଥା କହିବାକୁ ଚାହୁଁଛ ? ହେଲା, ମୁଁ ସେଥିରେ ଅମତ ନୁହେଁ । ତେବେ କଥା ହେଉଛି,

ପଣ୍ଡିତେ ଶ୍ଳୋକ ବୁଝାଇଲା ବେଳେ ଭୁ ଭୁଲଉ ଥାଉ । ସେଥିପାଇଁ ଭିତର ଅର୍ଥଟା ବୁଝି ପାରୁ ନାହିଁ । ଅଚ୍ଛା, ଦାର ଶବ୍ଦଟା ପୁଂଲିଙ୍ଗ ବୋଲି ପଣ୍ଡିତେ କହି ନାହାନ୍ତି ? ପଣ୍ଡିତେ କ'ଣ ମିଛରେ କହିବେ ? ଅର୍ଥ ହେଉଛି, ଭିତରେ ସ୍ତ୍ରୀ କିନ୍ତୁ ବାହାରଟା ଦେଖିବାକୁ ପୁଂ । ତାଙ୍କ ତାଙ୍କରୁ ବ୍ୟବହାରରେ ମଧ୍ୟ ପୁଂ— ଅବିକଳ, ଅବିକଳ । ଗୁରୁଆଡ଼କୁ ଅନାଇଲେ ଯଥାର୍ଥ ବୁଝିପାରିବୁ ।

ସାଧୁ ନୀରବରେ ତଳକୁ ଅନାଇଁ ଆଗକୁ ଚାଲିବାକୁ ଲାଗିଲେ । ବନ୍ଧୁର କଥାର ଉତ୍ତର ଦେଲେ ନାହିଁ । ଜଗନ୍ନାଥ ହସି ହସି କହିଲା, ଯଦି ମୋ କଥାରେ ପ୍ରତିବାଦ କରିବାକୁ ଇଚ୍ଛା, ମୁଁ ଭାଇ ଛାଡ଼ିବାର ଲୋକ ନୁହେଁ । ଗୋଟାଏ ରଫା କରିବାକୁ ହେବ । ସେଟା ଆପୋସ୍‌ରେ । ମୁଁ କହୁଛି, ବ୍ୟାକରଣ କର୍ତ୍ତା ଟେଲାଏ ଭାଙ୍ଗବନ୍ଧା ପାଟିରେ ଥୋଇ ବ୍ୟାକରଣ ଲେଖୁ ଲେଖୁ ଅକାରାନ୍ତ ପୁଂଲିଙ୍ଗ ଶବ୍ଦଟିକୁ ଏହିମାନଙ୍କୁ ବୁଝାଇବାକୁ ଲେଖୁ ଲେଖୁ ଭୁଲାଇ ପଡ଼ିଲେ । କିନ୍ତୁ, ଗୋଟିଏ ଇନ୍ ପ୍ରତ୍ୟୟ ଲଗାଇବା ଦରକାର ଥିଲା, ନା, କ'ଣ କହୁଛୁ ସାଧୁ ? ସାଧୁ ହସକୁ ଚାପିରଖି ଜଗନ୍ନାଥର ମୁଣ୍ଡରେ ହାତ ମାରି ବିରକ୍ତିସୂଚକ ସ୍ୱରରେ କହିଲେ, ତୋଠାରେ ଭଦ୍ରତାର ଚିହ୍ନ ଦେଖିଲି ନାହିଁ ଜଗା । କିଏ କ'ଣ କରୁଛି ସେଥିରେ ଆମର ଥାଏ କ'ଣ ? ପରକୁ ଏପରି ଅଭଦ୍ର ଭାବରେ ସମାଲୋଚନା କରିବାକୁ ତୋର ଅଧିକାର ନାହିଁ ।

ଜଗନ୍ନାଥ ମୁହଁ ଶୁଖାଇ ମୁଣ୍ଡର ଟେରି ସଜାଡ଼ୁ ସଜାଡ଼ୁ କହିଲା, ମୁଁ ପଛେ ଅଭଦ୍ର ହୁଏ ଭାଇ, ତୋହର ଏ ଅଯଥା ଅତ୍ୟାଚାର ସହି ପାରିବି ନାହିଁ । ଖାଲି ସମୁଦ୍ରକୂଳକୁ ବୁଲି ଆସିବି ବୋଲି ଘଣ୍ଟାଏ ଲାଗି ଏତେ ଯତ୍ନରେ ଯେଉଁ ଟେରି ବାଗେଇଥିଲି, ତୁ ବିନା ଆପତ୍ତିରେ ଏଡ଼େ ସହଜରେ ଭାଙ୍ଗିଦେଇ ମୋର ସବୁ ଅମୂଲ୍ୟ ପରିଶ୍ରମ-ପଣ୍ଡ କରି ଦେଲୁ, ହାୟରେ !

ସାଧୁ ସ୍ମିତ ହସି କହିଲେ, ଆହା ହା, ଚନ୍ଦ୍ରମୁଖଟି ତୋର ଦେଖିଲେ···

ବାଧା ଦେଇ ଜଗନ୍ନାଥ କହିଲା, ଭାରି ଲୋଭ ହେଉଥିବ, କ'ଣ କହୁଛୁ ?

ଏ କଥା ପଚାରୁଛୁ ନା ? ବିଶେଷତଃ ତୋର ହସ ଖଣ୍ଡିକ, ସତେ କି କଳାମେଘରେ ଦାମିନୀର ଛଟା ! ସାକ୍ଷାତ୍ ଗୋଜଣାରେ ନିଆଁ ଲାଗିଲା ଭଳି ! ଆହା, କେଡ଼େ ସୁନ୍ଦର ଟେରିଟା ଭାଙ୍ଗିଗଲା ! ମୁଁ ଅତି ଦୁଃଖିତ ସେଥିପାଇଁ । ଜଗୁ, ଗୋଟିଏ କାମ କର, ଏଥର ଭାଇ, ଆମ କଲିକତିଆ ଭାଇଙ୍କ ପରି ପକେଟରେ ଖଣ୍ଡେ ଛୋଟ ଅରସି, ଆଉ ଖଣ୍ଡେ ଛୋଟ ଚିରୁଣୀ ରଖିଥା । ଅଜାଣତରେ ଟେରିଟା ଭାଙ୍ଗିଗଲେ ଦୁଃଖ କରିବାକୁ ହେବ ନାହିଁ ।

ତୋର ଉପଦେଶ ମାନିବାକୁହିଁ ପଡ଼ିବ । ଏଇ, ଦେଖ୍ ଦେଖ୍—କହି ଜଗନ୍ନାଥ ହାତ ବଢ଼ାଇ ଅଦୂରସ୍ଥ ସଦ୍ୟସ୍ନାତା ଜଣେ ରମଣୀକୁ ଦେଖାଇ ଦେଲା । ଖଣ୍ଡିକାଏ ମାତ୍ର କହିଲା, ବେହିସେପୋ ରଙ୍ଗ ତ ! ଅରେ, ଅଧେ ବାୟୁ ସେବନ କଲେ ବାକି ଅଧିକ ଜଳ ସେବନ କରନ୍ତୁ । ବାଃ, ବୁଦ୍ଧି ହ୍ୱ୍ୟାଜ୍ । କାରଣ, ପୁରୀର ଜଳ ବାୟୁ ଉଭୟ ଭଲ । ସଞ୍ଜବୁଡ଼ଠାରେ ଲଙ୍ଗଳାମୁକୁଳା ହୋଇ ବାପଭାଇ ଏବଂ ଅନ୍ୟାନ୍ୟ ଭଦ୍ର ଲୋକଙ୍କ ଆଗରେ ଗାଧୋଇବା କଅଣ କମ୍ ସାହସର କଥା ! ଧନ୍ୟ ଧନ୍ୟ ।

ସ୍ଟପ, ଅସଭ୍ୟ, କହି ସାଧୁ ମୁଣ୍ଡ ନୁଆଇଁ ଅନ୍ୟମନସ୍କ ଭାବରେ ସମୁଦ୍ରବେଳାରୁ ଚିକିତ ଶାମୁକା ଗୋଟାଇବାକୁ ଲାଗିଗଲେ । ଜଗନ୍ନାଥ ସାଧୁଙ୍କ ଅନୁକରଣ କରି ଗୋଟାଉ ଗୋଟାଉ କହିଲା, ତୋତେ ଲାଜ ମାଡ଼ୁଥିବ ସାଧୁ, ଲାଜ ମାଡ଼ିବାର କଥା । ତମମାନଙ୍କ ପରି ମୋରାଲିଷ୍ଟ୍ । ବାପ୍‌ରେ, ଦୂରରୁ ଦେଖି ସଲାମ୍ ବଜାଇବାକୁ ମନ ହୁଏ । ମୋର ଗୋଟିଏ କଥା ମାନ । କାଲିଠୁଁ ସମୁଦ୍ର କୂଳରେ ହାଓ୍ୱା ଖାଇବା ଆଶାଟି ଛାଡି ଦେ, ନୋହିଲେ ଘୋଡ଼ାଙ୍କ ଆଖିରେ ଠୋପର କରପଟି ଦିଆଯାଏ, ସେଥିରୁ ବି ଖଣ୍ଡି ଯୋଗାଡ଼ କର, କେତେବେଳେ କେଉଁ କଥା, ବୁଝିଲୁ ନା ?

ତୋର ପରି ଦୁର୍ବଳମନା ଲୋକଙ୍କ ପାଇଁ ଉପଦେଶଟା ଲାଭଜନକ ହେବ । ମୋର ମନ ସବଳ । ତୁ ମୋ ବିଷୟରେ ନିଶ୍ଚିନ୍ତ ରହ । ଅଚ୍ଛା, ତା ହେଲେ ଆଉ ଗୋଟିଏ ଉପଦେଶ ଶୁଣ ।

କ୍ଷମା କର, ଘରୁ ବାହାର ପର୍ଯ୍ୟନ୍ତ ଅନେକ ଉପଦେଶ ପ୍ରତିଦିନ ଶୁଣେ । ଆଉ ଅଧିକ ଶୁଣିବାକୁ ଇଚ୍ଛା ନାହିଁ । ଜଗା, ତୋ ସାଙ୍ଗେ ବୁଲି ଆସିବା ଗୋଟାଏ ଦଣ୍ଡ । ଭୁଲଟା ଏତେ ଗଭୀର ଯେ ତୋ କଥା ଶୁଣିଲେ ମସ୍ତିଷ୍କ ବିରକ୍ତ ହେବାକୁ ବାଧ୍ୟ ହେବ । ଗପରେ କିଛି ଲାଭଅଛି, ନା ମୂଲ୍ୟ ଅଛି ? ଖାଲି ସେହି ବଜାରୀ କଥା । ଦୁଃଖ ସୁଖ ନାହିଁ, କି ଦେଶର ହାଲଚାଲ ବୁଝିବା ନାହିଁ, ସବୁବେଳେ ହେରେଷ୍ଟାମି ।

ଅରେ, ରଖ ତୋର ଦେଶ ! ଆମ ଭଳିଆ ବଜାରି ପିଲା ଯଦି ଦେଶର ହାଲଚାଲ ବୁଝିବେ ତମେ ବୋହିସେପୋ ମୋରାଲିଷ୍ଟ୍ ଯିବ କୁଆଡ଼େ ? ତମେ ସବୁ ଭଲବାଟରେ ଯାଇ ନାମ କଲେ ଆମେ କଅଣ ଖରାପ ବାଟରେ ଯାଇ ଟେକ କର ପାରିବୁ ନାହିଁ ? ନାଁ କମାଇବାର ତ କଥା, ହ୍ୱାପ୍ !

ସ୍ଟପ୍, ପାଟି ସମ୍ଭାଳ, କଥାରେ ସଂଯତ—

ସଂଯତ ହେଲି, ଆଉ କଅଣ ? ବାଧାଦେଇ ଜଗନ୍ନାଥ କହିଲା, ଏବେ ଚାଲ ଫେରିବା ।

ନା ଭାଇ, ମୁଁ ତୋ ସଙ୍ଗେ ଯାଇ ପାରିବ ନାହିଁ । ତୁ ଆଗରେ ଯା । ହଉ ତେବେ, ସଲାମ୍, ବାକି କଥା କାଲି ।

ଜଗନ୍ନାଥ ଓ୍ଵାଲ୍ କଲା ପରି ଦ୍ରୁତପଦରେ ବିପରୀତ ଦିଗକୁ ଚାଲିଲା । ସାଧୁ ଥରେ ପଛକୁ ଚାହିଁ ଆଗକୁ ଚାଲିଲେ । ଜଗନ୍ନାଥ ପ୍ରତି ମନରେ ଘୃଣା ଭାବ । ଲୋକଟା ଭଲ ନୁହେଁ । ଅଭଦ୍ର, ଅସଭ୍ୟ, ତଥାପି ତା ପାଖରୁ ଦୂରେଇ ରହିବା ସମ୍ଭବ ହୁଏ ନାହିଁ । ସେ ଉପରେ ପଡ଼ି ବନ୍ଧୁତା କରେ । ଯୋକ ପରି ଲାଗି ରହିଥାଏ । ଏପରି ଲୋକଙ୍କୁ ଦୂରରୁ ସାବଧାନ !

୨

ସମୁଦ୍ର କୂଳ । ଦଳ ଦଳ ହୋଇ ଛନ୍ତି, ଭଦ୍ରଲୋକ ଏବଂ ଭଦ୍ରମହିଳା ବସି ତନ୍ମୟ ହୋଇ ସମୁଦ୍ରର ଡେଉ ଦେଖୁଛନ୍ତି । କେହି କେହି ହାତ ଧରାଧରି ହୋଇ ଚହଲୁଛନ୍ତି । ଟିକିଏ ଦୂରରେ, କେତେଜଣ ପ୍ରୌଢ଼ା ଓ ବାଳିକା ନାନାପ୍ରକାର କୌତୁକପୂର୍ଣ୍ଣ କଥାକହି ଆନନ୍ଦରେ ହସି ହସି ଶାମୁକା ଆହରଣ କରିବାରେ ବ୍ୟସ୍ତ । କେତେଗୁଡ଼ିଏ ଶିଶୁ ବେଳାଭୂମି ଉପରେ ବେଗଗାମୀ କଙ୍କଡ଼ା ଧରିବାକୁ ବାରମ୍ବାର ବ୍ୟର୍ଥଚେଷ୍ଟା କରି, ନିଜ ନିଜ ଭିତରେ କଳହ ସୃଷ୍ଟି କରୁଛନ୍ତି । କିଏ କିଏ ବାଳିକା ଶଯ୍ୟାରେ ଶୟନ କରି ସୁସ୍ୱରରେ ସଙ୍ଗୀତ ଲହରୀ ମେଲି ଦେଇଛନ୍ତି । ମାତ୍ର ସମୁଦ୍ରର ଗମ୍ଭୀର ଅବୋଧ ସଙ୍ଗୀତ ଦେହରେ ମନୁଷ୍ୟର ସ୍ୱର ନିଜକୁ ହଜାଇ ଦେଉଛି ।

ବାଲିଗଦାର ଅନ୍ତରାଳରେ ପ୍ରଣୟୀ ଯୁଗଳ ପାଖାପାଖି ହୋଇ ଅର୍ଦ୍ଧଶାୟିତାବସ୍ଥାରେ ପ୍ରେମାଳାପରେ ନିମଗ୍ନ । ଜଣକର ରମଣୀକ ମୁହଁରେ ଫୁଟି ଉଠିଛି ଗୋଲାପର ଆଭା । ନୟନରେ ଭୟ ଓ ସରମର କୋମଳ ଦୀପ୍ତି । ଅନ୍ୟ ଜଣଙ୍କର ଚଞ୍ଚଳ ଚକ୍ଷୁରେ ଉଦ୍‌ବିଗ୍ନତା, ପୁଣି ଅସ୍ଥିରତା !

ସାଧୁ ଏହି ସବୁ ଦୃଶ୍ୟ ଦେଖି ଦୂରକୁ ଚାଲିଗଲେ । ମନରେ ସ୍ଫୂର୍ତ୍ତି । ସମସ୍ତଙ୍କର ପ୍ରଫୁଲ୍ଲ ବଦନ ଦେଖି ସେ ମଧ୍ୟ ଅନ୍ତରରେ ଆନନ୍ଦ ଉପଲବ୍ଧି କରୁଛନ୍ତି । ଗୁଣୁ ଗୁଣୁ ହୋଇ ସଙ୍ଗୀତ ଗାଇ ଅସ୍ତଗାମୀ ସୂର୍ଯ୍ୟଆଡ଼କୁ ଅନାଇଲେ । ଦିଗ୍‌ବଳୟର ପ୍ରାନ୍ତଦେଶରେ ସୂର୍ଯ୍ୟଦେବ ଧୀରେ ଧୀରେ ଜଳ ଭିତରକୁ ପ୍ରବେଶ କରୁଛନ୍ତି । କେତେ ଖଣ୍ଡ ସୁନେଲି ବଉଦରେ ପ୍ରତୀଚୀ ଆକାଶର ପ୍ରାନ୍ତଦେଶ ରଞ୍ଜିତ ହୋଇଛି । ମନୋରମ ।

କିଏ ଜଣେ ଡାକିଲେ, ସାଧୁ ନା ?

ପରିଚିତ କଣ୍ଠର ଆଭାସ ପାଇ ସାଧୁ ବିସ୍ମିତ ହୋଇ ପଛକୁ ଚାହିଁଲେ । ଟିକିଏ ଦୂରରେ ବସି ବିପ୍ରଚରଣ ତାଙ୍କୁ ହାତ ଠାରି ନିକଟକୁ ଡାକୁଛନ୍ତି । ସେ କାଳବିଳମ୍ବ ନ କରି ନିକଟକୁ ଯାଇ ପ୍ରଣାମ କଲେ । ଆଶ୍ଚର୍ଯ୍ୟାନ୍ୱିତ ହୋଇ

ପଚାରିଲେ, ଦାଦା, ଆପଣ କେବେ ? ବିପ୍ରଚରଣ ଖଣ୍ଡେ ମଇଳା ଖଦଡ଼ ରୁମାଲରେ ଆଖି ପୋଛୁ ପୋଛୁ କହିଲେ, ଆଜି । ତା ପରେ ଠିଆ ହୋଇ ପଚାରିଲେ, ତୋର ସବୁ ଭଲ ତ, ସାଧୁ ?

ସାଧୁ ଉତ୍ତର ଦେଇ ପାରିଲେ ନାହିଁ । କରୁଣାପୂର୍ଣ୍ଣ ଲୋଚନରେ ବିପ୍ରଚରଣଙ୍କର ଆପାଦ ମସ୍ତକ ନିରୀକ୍ଷଣ କଲେ । ମସ୍ତକର କେଶଗୁଚ୍ଛ ବାୟୁରେ ଫୁର୍ ଫୁର୍ ହୋଇ ଉଡ଼ୁଛି । ପରିହିତ ଖଦଡ଼ର ଅପରିଷ୍କାର କାମିଜ ବାର ଜାଗାରେ ଚିରା । ସ୍ଥାନେ ସ୍ଥାନେ ପଟି । ଲୁଗାଖଣ୍ଡି କାମିଜ ଅପେକ୍ଷା ଟିକିଏ ସଫା । ଲମ୍ବା କାମିଜ୍ ମଧ୍ୟରେ ଏହାର ଅଧିକାଂଶ ଲୁଚି ଯାଇଥିବାରୁ ଅବସ୍ଥା ଭଲ ରକମ ଜଣା ପଡ଼ୁନାହିଁ । ପାଦରେ ଜୋତା ନାହିଁ । ସାଧୁଚରଣଙ୍କ ମୁଖରେ ବିଷାଦର ଛାୟା ଦେଖାଦେଲା । ସେ ମନକଥା ଗୋପନ କରି ପଚାରିଲେ, ହଠାତ୍ ଏପରି ଚାଲି ଆସିଲେ, ମୋତେ ଚିଠି ଲେଖି ପାରିଲେ ନାହିଁ ?

ମୋର ଆସିବାର ନ ଥିଲା । ଆଜି ଦିନ ଏଗାରଟା ବେଳେ ଜଣେ ବନ୍ଧୁଙ୍କ ସଙ୍ଗେ ଷ୍ଟେସନରେ ଦେଖା ହେଲା । ତାଙ୍କର ପୁରୀ ଆସିବାର କଥା । ପିଲାପିଲି ନେଇ ସେ ପୁରୀରେ ଦୁଇ ତିନି ମାସ ରହିବାକୁ ଆସିଛନ୍ତି । ପୁରୀର ହାଲଚାଲି ଜାଣନ୍ତି ନାହିଁ ବୋଲି ମୋତେ ଆସିବାକୁ ବାଧ୍ୟ କଲେ । ମୁଁ ବି ବିଶେଷ ବାଳେଇଲି ନାହିଁ । ବହୁଦିନ ହେଲା ତୋତେ ଦେଖି ନ ଥିଲି । ଥରେ ଦେଖିଯିବାକୁ ମୋର ଇଚ୍ଛା ହେଲା । ଧାଇଁ ଧାଇଁ ଚାଲି ଆସିଛି ।

ଲେକ୍‌ଚର୍ ମାରି ହେବ ନାହିଁ ?

ଲେକ୍‌ଚର ? କହି, ବିପ୍ରଚରଣ ସାଧୁଚରଣଙ୍କୁ ବାରମ୍ବାର ଅନାଇ ଚାରିକଡ଼ଟାକୁ ଚାହିଁନେଇ କହିଲେ, ହଁ, ଦିନେ ଦି ଦିନ ମାରି ହେଲେ ହେବ । ମୁଁ କାଲି ସକାଳ ଗାଡ଼ିରେ ଚାଲିଯିବି । ଚାଲ, ଆଗ ବସାକୁ ଯିବା । ତୋ ସଙ୍ଗେ ଅନେକ ବିଷୟର କଥା ଅଛି । ପୁଣି କହିଲେ—ପଢ଼ାପଢ଼ି କେମିତି ଚାଲିଛି । ପରୀକ୍ଷା ଆସି ପାଖ ହୋଇଗଲା । ତୋ ଠେଇଁ ଆମର ସବୁ ଆଶା ବାବୁ, ବଂଶର ନାଁ ରଖିବୁଟି । ଦେଖାଯାଉ । ସାଧୁ ଲଜ୍ଜିତ ହୋଇ ଆଗେ ଆଗେ ଚାଲିଲେ । ବିପ୍ରଚରଣ ନୀରବରେ ତାଙ୍କର ଅନୁଗମନ କଲେ । ସ୍ୱର୍ଗଦ୍ୱାର ନିକଟରେ ସାଧୁଚରଣ କହିଲେ, ବାପା ଆସି ପହଞ୍ଚିଛନ୍ତି ।

ସମୁଦ୍ରକୂଳରୁ ପଥ ଭାଙ୍ଗି ଉଭୟେ ମନ୍ଦିର ରାସ୍ତାରେ ଯାଉଁ ଯାଉଁ, ବିପ୍ରଚରଣ କେତେ ବିଷୟ ଚିନ୍ତାକରି ପଚାରିଲେ, କେବେ ଆସିଛନ୍ତି, ଏକା ନା ?

କାଲି ସନ୍ଧ୍ୟାଗାଡ଼ିରେ ଆସି ପହଞ୍ଚିଛନ୍ତି । ବୋଉ ଆସିଛି, ସରି ଆସିଛି ।

କିଛିକ୍ଷଣ ଚିନ୍ତା କରି ମୁଣ୍ଡ ହଲାଇ ବିପ୍ରଚରଣ କହିଲେ, ହେଲା ଯେ । ଏଥର ବୁଝିଲି କାହିଁକି ଆସିଛନ୍ତି । ହସି ହସି ପୁଣି କହିଲେ, ଏବେ ହେଲା ତ ।

ନା ଭାଇ, ମୁଁ ତୋ ସଙ୍ଗେ ଫେରି ପାରିବ ନାହିଁ । ତୁ ଆଗରେ ଯା । ହଜ ତେବେ, ସଲାମ୍, ବାକି କଥା କାଲି ।

ଜଗନ୍ନାଥ ଉତ୍ତର କଲା ପରେ ବୃଲପଡ଼ି ଦ୍ରୁତପଦରେ ବିପରୀତ ଦିଗକୁ ଗୃଲିଲା । ସାଧୁ ଥରେ ପଛକୁ ଗୃହିଁ ଆଗକୁ ଗୃଲିଲେ । ଜଗନ୍ନାଥ ପ୍ରତି ମନରେ ଘୃଣା ଭାବ । ଲୋକଟା ଭଲ ନୁହେଁ । ଅଭଦ୍ର, ଅସଭ୍ୟ, ତଥାପି ତା ପାଖରୁ ଦୂରେଇ ରହିବା ସମ୍ଭବ ହୁଏ ନାହିଁ । ସେ ଉପରେ ପଡ଼ି ବନ୍ଧୁତା କରେ । ଯୋକ ପରି ଲାଗି ରହିଥାଏ । ଏପରି ଲୋକଙ୍କୁ ଦୂରରୁ ସାବଧାନ !

୨

ସମୁଦ୍ର କୂଳ । ଦଳ ଦଳ ହୋଇ ଛାତ୍ର, ଭଦ୍ରଲୋକ ଏବଂ ଭଦ୍ରମହିଳା ବସି ତନ୍ମୟ ହୋଇ ସମୁଦ୍ରର ଢେଉ ଦେଖୁଛନ୍ତି । କେହି କେହି ହାତ ଧରାଧରି ହୋଇ ଚହଲୁଛନ୍ତି । କିଛିଏ ଦୂରରେ, କେତେଜଣ ପ୍ରୌଢ଼ା ଓ ବାଳିକା ନାନାପ୍ରକାର କୌତୁକପୂର୍ଣ୍ଣ କଥାକହି ଆନନ୍ଦରେ ହସି ହସି ଶାମୁକା ଆହରଣ କରିବାରେ ବ୍ୟସ୍ତ । କେତେଗୁଡ଼ିଏ ଶିଶୁ ବେଳାଭୂମି ଉପରେ ବେଗଗାମୀ କଙ୍କଡ଼ା ଧରିବାକୁ ବାରମ୍ବାର ବ୍ୟର୍ଥଚେଷ୍ଟା କରି, ନିଜ ନିଜ ଭିତରେ କଳହ ସୃଷ୍ଟି କରୁଛନ୍ତି । କିଏ କିଏ ବାଲୁକା ଶଯ୍ୟାରେ ଶୟନ କରି ସୁସ୍ୱରରେ ସଙ୍ଗୀତ ଲହରୀ ମେଲି ଦେଇଛନ୍ତି । ମାତ୍ର ସମୁଦ୍ରର ଗମ୍ଭୀର ଅବୋଧ ସଙ୍ଗୀତ ଦେହରେ ମନୁଷ୍ୟର ସ୍ୱର ନିଜକୁ ହଜାଇ ଦେଉଛି ।

ବାଲିଗଦାର ଅନ୍ତରାଳରେ ପ୍ରଣୟୀ ଯୁଗଳ ପାଖାପାଖି ହୋଇ ଅର୍ଦ୍ଧଶାୟିତାବସ୍ଥାରେ ପ୍ରେମାଳାପରେ ନିମଗ୍ନ । ଜଣକର ଧର୍ମାକ୍ତ ମୁହଁରେ ଫୁଟି ଉଠିଛି ଗୋଲାପର ଆଭା । ନୟନରେ ଭୟ ଓ ସରମର କୋମଳ ଦୀପ୍ତି । ଅନ୍ୟ ଜଣଙ୍କର ଚଞ୍ଚଳ ଚକ୍ଷୁରେ ଉଦ୍‌ବିଗ୍ନତା, ପୁଣି ଅସ୍ଥିରତା !

ସାଧୁ ଏହି ସବୁ ଦୃଶ୍ୟ ଦେଖି ଦୂରକୁ ଗୃଲିଗଲେ । ମନରେ ସ୍ଫୁର୍ତ୍ତି । ସମସ୍ତଙ୍କର ପ୍ରଫୁଲ୍ଲ ବଦନ ଦେଖି ସେ ମଧ୍ୟ ଅନ୍ତରରେ ଆନନ୍ଦ ଉପଲବ୍ଧି କରୁଛନ୍ତି । ଗୁଣୁ ଗୁଣୁ ହୋଇ ସଙ୍ଗୀତ ଗାଇ ଅସ୍ତଗାମୀ ସୂର୍ଯ୍ୟଆଡ଼କୁ ଅନାଇଲେ । ଚକ୍ରବାଳର ପ୍ରାନ୍ତଦେଶରେ ସୂର୍ଯ୍ୟଦେବ ଧୀରେ ଧୀରେ ଜଳ ଭିତରକୁ ପ୍ରବେଶ କରୁଛନ୍ତି । କେତେ ଖଣ୍ଡ ସୁନେଲି ବଉଦରେ ପ୍ରତୀଚୀ ଆକାଶର ପ୍ରାନ୍ତଦେଶ ରଞ୍ଜିତ ହୋଇଛି । ମନୋରମ ।

'କିଏ ଜଣେ ଡାକିଲେ, ସାଧୁ ନା ?

ପରିଚିତ କଣ୍ଠର ଆଭାସ ପାଇ ସାଧୁ ବିସ୍ମିତ ହୋଇ ପଛକୁ ଗୃହିଁଲେ । କିଛିଏ ଦୂରରେ ବସି ବିପ୍ରଚରଣ ତାଙ୍କୁ ହାତ ଠାରି ନିକଟକୁ ଡାକୁଛନ୍ତି । ସେ କାଳବିଳମ୍ବ ନ କରି' ନିକଟକୁ ଯାଇ ପ୍ରଣାମ 'କଲେ । ଅଷ୍ଟପ୍ରାନ୍ୱିତ ହୋଇ

ପଚାରିଲେ, ଦାଦା, ଆପଣ କେବେ ? ବିପ୍ରଚରଣ ଖଣ୍ଡେ ମଇଳା ଖଦଡ଼ ରୁମାଲରେ ଆଖି ପୋଛୁ ପୋଛୁ କହିଲେ, ଆଜି । ତା ପରେ ଠିଆ ହୋଇ ପଚାରିଲେ, ତୋର ସବୁ ଭଲ ତ, ସାଧୁ ?

ସାଧୁ ଉତ୍ତର ଦେଇ ପାରିଲେ ନାହିଁ । କରୁଣାପୂର୍ଣ୍ଣ ଲୋଚନରେ ବିପ୍ରଚରଣଙ୍କର ଆପାଦ ମସ୍ତକ ନିରୀକ୍ଷଣ କଲେ । ମସ୍ତକର କେଶଗୁଚ୍ଛ ବାୟୁରେ ଫୁର୍ ଫୁର୍ ହୋଇ ଉଡ଼ୁଛି । ପରିହିତ ଖଦଡ଼ର ଅପରିଷ୍କାର କାମିଜ ବାର ଜାଗାରେ ଚିରା । ସ୍ଥାନେ ସ୍ଥାନେ ପଟି । ଲୁଗାଖଣ୍ଡି କାମିଜ ଅପେକ୍ଷା ଟିକିଏ ସଫା । ଲମ୍ବା କାମିଜ୍ ମଧ୍ୟରେ ଏହାର ଅଧିକାଂଶ ଲୁଚି ଯାଇଥିବାରୁ ଅବସ୍ଥା ଭଲ ରକମ ଜଣା ପଡ଼ୁନାହିଁ । ପାଦରେ ଯୋତା ନାହିଁ । ସାଧୁଚରଣଙ୍କ ମୁଖରେ ବିଷାଦର ଛାୟା ଦେଖାଦେଲା । ସେ ମନକଥା ଗୋପନ କରି ପଚାରିଲେ, ହଠାତ୍ ଏପରି ଚାଲି ଆସିଲେ, ମୋତେ ଚିଠି ଲେଖି ପାରିଲେ ନାହିଁ ?

ମୋର ଆସିବାର ନ ଥିଲା । ଆଜି ଦିନ ଏଗାରଟା ବେଳେ ଜଣେ ବନ୍ଧୁଙ୍କ ସଙ୍ଗେ ଷ୍ଟେସନରେ ଦେଖା ହେଲା । ତାଙ୍କର ପୁରୀ ଆସିବାର କଥା । ପିଲାପିଲି ନେଇ ସେ ପୁରୀରେ ଦୁଇ ତିନି ମାସ ରହିବାକୁ ଆସିଛନ୍ତି । ପୁରୀର ହାଲଚାଲ ଜାଣନ୍ତି ନାହିଁ ବୋଲି ମୋତେ ଆସିବାକୁ ବାଧ୍ୟ କଲେ । ମୁଁ ବି ବିଶେଷ ବିବେଚନା କଲି ନାହିଁ । ବହୁଦିନ ହେଲା ତୋତେ ଦେଖି ନ ଥିଲି । ଥରେ ଦେଖିଯିବାକୁ ମୋର ଇଚ୍ଛା ହେଲା । ଧାଇଁ ଧାଇଁ ଚାଲି ଆସିଛି ।

ଲେକ୍‌ଚର୍ ମାରି ହେବ ନାହିଁ ?

ଲେକ୍‌ଚର ? କହି, ବିପ୍ରଚରଣ ସାଧୁଚରଣଙ୍କୁ ବାରମ୍ବାର ଅନାଇ ଚାରିକ୍ତଠାକୁ ଚାପିନେଇ କହିଲେ, ହଁ, ଦିନେ ଦି ଦିନ ମାରି ହେଲେ ହେବ । ମୁଁ କାଲି ସକାଳ ଗାଡ଼ିରେ ଚାଲିଯିବି । ଚାଲ, ଆଗ ବସାକୁ ଯିବା । ତୋ ସଙ୍ଗେ ଅନେକ ବିଷୟର କଥା ଅଛି । ପୁଣି କହିଲେ—ପଢ଼ାପଢି କେମିତି ଚାଲିଛି । ପରୀକ୍ଷା ଆସି ପାଖ ହୋଇଗଲା । ତୋ ଠେଇଁ ଆମର ସବୁ ଆଶା ବାବୁ, ବଂଶର ନାଁ ରଖିବୁଟି । ଦେଖାଯାଉ । ସାଧୁ ଲଜ୍ଜିତ ହୋଇ ଆଗେ ଆଗେ ଚାଲିଲେ । ବିପ୍ରରଣ ନୀରବରେ ତାଙ୍କର ଅନୁଗମନ କଲେ । ସ୍ୱର୍ଗଦ୍ୱାର ନିକଟରେ ସାଧୁଚରଣ କହିଲେ, ବାପା ଆସି ପହଞ୍ଚିଛନ୍ତି ।

ସମୁଦ୍ରକୂଳରୁ ପଥ ଭାଙ୍ଗି ଉଭୟେ ମନ୍ଦିର ରାସ୍ତାରେ ଯାଉଁ ଯାଉଁ, ବିପ୍ରଚରଣ କେତେ ବିଷୟ ଚିନ୍ତାକରି ପଚାରିଲେ, କେବେ ଆସିଛନ୍ତି, ଏକା ନା ?

କାଲି ସନ୍ଧ୍ୟାଗାଡ଼ିରେ ଆସି ପହଞ୍ଚିଛନ୍ତି । ବୋଉ ଆସିଛି, ସରି ଆସିଛି ।

କିଛିକ୍ଷଣ ଚିନ୍ତା କରି ମୁଣ୍ଡ ହଲାଇ ବିପ୍ରଚରଣ କହିଲେ, ହେଲା ଯେ । ଏଥର ବୁଝିଲି କାହିଁକି ଆସିଛନ୍ତି । ହସି ହସି ପୁଣି କହିଲେ, ଏବେ ହେଲା ତ ।

ମୁଁ ତତେ ସବୁ ମନା କରି ଲେଖିଥିଲି ? ଦେଖ, ସଂସାରରେ ସମସ୍ତଙ୍କର ଭାଗ୍ୟ ସମାନ ନୁହେଁ । ଭଗବାନଙ୍କର ଇଚ୍ଛାନୁରୂପ ସବୁ । ତାଙ୍କର ଯାହାକୁ ଦଣ୍ଡ ଦେବାର ଇଚ୍ଛା, ସେ କଷ୍ଟସ୍ୱ ଦୁଃଖଭୋଗ କରିବ । ତା ଉପରେ ଅନ୍ୟ ଯେଉଁମାନେ ସହାନୁଭୂତି ଦେଖାଇବେ ଅଜାଣତରେ ଭଗବାନଙ୍କର ଦଣ୍ଡ ଯେ ସେମାନଙ୍କ ଉପରେ ନ ପଡ଼ିବ, ଏପରି ନୁହେଁ । ନିତାନ୍ତ କମ୍‌ରେ ବିଜୁଳିର ଚମ୍‌କଟା ଲାଗିବ ତ ?

ଏପରି କାହିଁକି କହୁଛନ୍ତି ? କଥାଟା ଠିକେ ଖୋଲିକରି କହନ୍ତୁ । ମୁଁ ବୁଝି ପାରୁ ନାହିଁ ।

ତୋପରି ସରଳ ପ୍ରକୃତିର ପିଲା ଏତେ ତର୍କତାର୍କରେ ପଶିମାରିବ ନାହିଁ, ଦର୍କାର ମଧ୍ୟ ନାହିଁ ! ତେବେ, ଆଜଠୁ ମୋର ଗୋଟିଏ କଥା ମାନି ତୋତେ ଚଳିବାକୁ ହେବ । ପାରିବୁ ?

କ'ଣ କହନ୍ତୁ ।

ତୋ ବାପାଙ୍କର ଅଜ୍ଞାତରେ, ସାହାଯ୍ୟ ତ ଦୂରର କଥା, ମୋ ନିକଟକୁ ଆଉ ଚିଠିପତ୍ର ମଧ୍ୟ ଦେବୁ ନାହିଁ । ତାଙ୍କ ମନରେ ସନ୍ଦେହ ହେଉଛି । ବିପ୍ରଚରଣ ରୁମାଲରେ ଆଖି ପୋଛି କହିଲେ, ତାଙ୍କୁ କୌଣସି କଥା ଅଛପା ରହେ ନାହିଁ ।

କିଏ ଲେଖେ ।

ମୁଁ ନିଜେ । ସେ ମୋତେ ଚିଠିଲେଖି ପଚାରନ୍ତି, ତୁ ମୋ ନିକଟକୁ ଚିଠି ଦେଇ ଥିଲୁ କି ନାହିଁ, ମୋ ପାଖକୁ ଟଙ୍କା ପଠାଇ ଥିଲୁ କି ନାହିଁ ।

ଆପଣ ନାହିଁ କରି ପଠାନ୍ତି ନାହିଁ ?

ବାଃ, ବେଶ୍ ତ, ପାଠ ପଢ଼ିବାର ଏହାହିଁ ଲାଭ ? ବଡ଼ଭାଇଙ୍କୁ ମିଛ କହି ଠକାଇବା ଅପେକ୍ଷା ପାଠ ନ ପଢ଼ିବା ସହସ୍ର ଗୁଣେ ଭଲ ।

କିଛି ସମୟ ଚୁପ୍ ରହି ସାଧୁଚରଣଙ୍କର ପିଠିରେ ହାତ ମାରି କହିଲେ, ଟଙ୍କା ଅଭାବରୁ ଫାଇନାଲ ଦେଇପାରି ନ ଥିଲି । ସପ୍ଲିମେଣ୍ଟାରି ପରୀକ୍ଷା ଦେବାକୁ ତୁ ଖାଟିଏ ଟଙ୍କା ପଠାଇଥିଲୁ । ଯେଉଁଦିନ ତୋର ଟଙ୍କା ପାଇଲି, ତାର ପୂର୍ବଦିନ ଭାଇଙ୍କର ଚିଠି ପାଇଥିଲି । ତୋର ଟଙ୍କା ସାଙ୍ଗେ ସାଙ୍ଗେ ସେତିକି ଭାଇଙ୍କ ପାଖକୁ ପଠାଇଦେଲି ।

ସାଧୁଚରଣ ରାଗିଯାଇ କହିଲେ, କାହିଁକି ବାପଙ୍କ ପାଖକୁ ପଠାଇଲେ ? ମୋ ଟଙ୍କା ମୋତେ ଫେରାଇ ଦେଲେ ନାହିଁ ?

ମୁହଁ ସଞ୍ଜ ହୋଇ ଆସୁଥିବାରୁ ବିପ୍ରଚରଣ ପୁତ୍ରସ୍ୱର ଚକ୍ଷୁର ଲୋତକ ଦେଖି ପାରିଲେ ନାହିଁ । ସେ ପୂର୍ବବତ୍ କହିଲେ, କାରଣ ମୁଁ ଭଲ କରି ଜାଣେ

ତୋର ଯଦ ହଜାର ଟଙ୍କା ମୁଁ ନଷ୍ଟ କରିଦଏଁ, ତୁ ଟିକିଏ ହେଲେ ଦୁଃଖିତ ହେବୁ ନାହିଁ କି ରାଗିବୁ ନାହିଁ। ଛାଡ଼ ସେ କଥା। ଏଥର ଭାଇ ପୁଣି ଅସିଛନ୍ତି, ତୋର ସ୍ୱାଧୀନତାଟିକି ସଙ୍ଗରେ ନେଇଯିବେ ବୋଲି। ପରେ ଦେଖିବୁ।

ସାଧୁଚରଣ ଦୁଃଖିତ ହୋଇ କହିଲେ, ଆପଣ ତେବେ ଫେଲ୍ ହୋଇ ନାହାନ୍ତି, ନା! ଛାର କେଇଟା ଟଙ୍କା ପାଇଁ ବର୍ଷଗୋଟାଏ ଲୋକସାନ୍। ଧାର ଉଧାର କରି ଚଳାଇ ନେବାକୁ ଚେଷ୍ଟା କରିଥିଲେ ତ ହୋଇଥାନ୍ତା!

ମୁଁ ଯଥାସାଧ୍ୟ ଚେଷ୍ଟାକରି ବିଫଳ ହେଲି। ଅରେ ବାବୁ, ଯାହାର ଅନାବଶ୍ୟକ, ଲୋକେ ତାକୁହିଁ ଧାର ଦେବାକୁ ଅଗଭର ହୁଅନ୍ତି। ଯାହାର ପ୍ରକୃତରେ ଅଭାବ, ବିନା ଭବିଷ୍ୟତ୍ ଆଶାରେ ତାକୁ କିଏ କାହିଁକି ପଚାରିବ? ଆଉ ଅଧିକା ପାଠ ଦରକାର ନାହିଁ। ଯେନେତେନେ ମାଟ୍ରିକୁ୍ୟଲେସନ ଖଣ୍ଡିକ ତ ହୋଇପାଇଛି, ସେହି ଢେର୍।

ଆପଣ କଲେଜରେ ଆଉ ପଢ଼ିବେ ନାହିଁ?

ଉପାୟ?

କରିବେ କଅଣ?

ତାହାହିଁ ତ ମୋର ଭାବନା! ଅବଶ୍ୟ କିଛି ଗୋଟାଏ କରିବାକୁ ହେବ। କଲିକତା ଆର୍ଟସ୍କୁଲରେ ପଢ଼ିବାକୁ ମୋର ଇଚ୍ଛା ଥିଲା। କଟକ ଜିଲ୍ଲାବୋର୍ଡ଼ ଶିଳ୍ପବିଦ୍ୟା ପଢ଼ିବାକୁ ଆରବର୍ଷ ଗୋଟିଏ ସ୍କଲରସିପ୍ ଦେବ ବୋଲି ଶୁଣୁଛି। ଚେଷ୍ଟା କରୁ କରୁ ଭାଗ୍ୟରେ ଯାହା ଥିବ ହେବ, ଆଉ କଅଣ କରିବା?

"ଭାରତବର୍ଷରେ ସଙ୍ଗୀତ" ବୋଲି ଯେଉଁ ଚିତ୍ରଟି ଦେଇଥିଲେ, ପ୍ରକୃତରେ ବଡ଼ ଚମତ୍କାର ହୋଇଥିଲା। କାହିଁକି, ଏହି ବର୍ଷ କଲିକତା ଯାଉ ନାହାନ୍ତି? ବୃଥାରେ ଅଧିକରେ ଗୋଟିଏ ବର୍ଷ ହରାଇ ଲାଭ କଅଣ? ଟଙ୍କା ମୁଁ ଦେବି, ନଇଲେ ବାପା ଦେବେ।

ହସି ହସି ବିପ୍ରଚରଣ କହିଲେ, ଯଦ ତୁ ଦେଉ, ମୁଁ ଗ୍ରହଣ କରିବି ନାହିଁ। ଯଦ ଭାଇ ଦଅନ୍ତି, ତେବେ ଏହି ବର୍ଷ କାହିଁ, ବର୍ତ୍ତମାନ କହିଲେ ମୁଁ କଲିକତା ଯାଇପାରେ। ଏହିପରି କଥୋପକଥନ ହୋଇ ଉଭୟେ ଜଗନ୍ନାଥ ମନ୍ଦିର ସମ୍ମୁଖରେ ଉପସ୍ଥିତ ହେଲେ। ସନ୍ଧ୍ୟା ହେବାର ଦେଖି ବିପ୍ରଚରଣ କହିଲେ, ତୁ ବସାକୁ ଯା, ମୁଁ ଅସିଛି ବୋଲି ଭାଇ ଜାଣିଲେ କଅଣ ଭାବି ପାରନ୍ତି।

ସାଧୁଚରଣ ପ୍ରତିବାଦ ନ କରି ଦୁଃଖରେ ପ୍ରଣାମ କଲେ। ବିଦାୟ ନେବା ପୂର୍ବରୁ ଦୁଇଜଣଙ୍କର ଚକ୍ଷୁ ଲୋତକାର୍ଦ୍ର ହେଲା। କାହାର ପାଟି ଫିଟିଲା ନାହିଁ।

ବସା ଆଗରେ ପହଞ୍ଚି ସାଧୁ ଦେଖିଲେ, ଦାଣ୍ଡରେ ଖଣ୍ଡେ ମସିଣା ଉପରେ ପିତା ବସି ରସାନନ୍ଦ ବାବୁଙ୍କ ସଙ୍ଗେ ଅତି ଗୁପ୍ତରେ କଅଣ କଥାବାର୍ତ୍ତା ହେଉଛନ୍ତି । ନାଲଟେଣଟି ଦୂରେଇ ହୋଇ ଧୂଆଁ ହୋଇଛି । ଭିତର ପାଖ କବାଟକୁ ଦରଅଉଜା କରି ବୋଉ ନାକ ଦେଖାଇ ବସି କଥୋପକଥନ ସବୁ ଶୁଣୁଛନ୍ତି । ଆବଶ୍ୟକ ହେଲେ ସରଳୁ ମଧ୍ୟସ୍ଥ କରି ଧୀରେ ଧୀରେ କଅଣ ପଦେ ଅଧେ କହି ଦେଉଛନ୍ତି । ସର ନିକଟରେ ନାହିଁ । ସେ ବୋଧହୁଏ ସାଧୁଚରଣର ପଢ଼ା ଘରେ ବହିପତ୍ର ଘଣ୍ଟାଘାଣ୍ଟି କରୁଥିବ ।

ଶବ୍ଦ ହେବ ବୋଲି ସାଧୁଚରଣ ଗୋଡ଼ରୁ ଯୋତା କାଢ଼ି ବାଁ ହାତରେ ଧରିଲେ । ନଇଁପଡ଼ି ହାତଦେଇ ନିଃଶବ୍ଦରେ ପିତାଙ୍କର ସମ୍ମୁଖ ଦେଇ ଚାଲି ଯାଉଥିବା ସମୟରେ ଅଭୟଚରଣ ମୁଣ୍ଡ ଟେକି ଆଜ୍ଞାସୂଚକ ସ୍ୱରରେ କହିଲେ, ସାଧୁ ! ଏତେବେଳ ଯାଏ କୁଆଡ଼େ ଥିଲୁ ? ହୁଁ, ଏମିତି ତମର ପଢ଼ାପଢ଼ି ପରା, ନା ? ଜାଣିଲେ ନା ରସାନନ୍ଦ ବାବୁ, ପିଲାଟା କିହାତି ବିଗିଡ଼ିଗଲା । ହୁଁ— ନୀରବ ହେଲେ । ପୁନର୍ବାର ନିମ୍ନସ୍ଥ ଲୁଗା ତାଲିକାରେ ମନ ନିବେଶ କଲେ । ସୁବିଧା ସମୟ ବୁଝି ସାଧୁ ଝଟ୍‌ ମନରେ ଯାଇଁ ଭିତରପାଖ କବାଟ ନିକଟରେ ଉପସ୍ଥିତ ହେଲେ । ଭୟରେ ଗୋଟାଛଇଁ ଥରୁଛନ୍ତି ।

ପିତା ମୁଣ୍ଡ ଟେକି କହିଲେ, ହୁଁ, ବୁଝିଲେନା ରସାନନ୍ଦ ବାବୁ, ପିଲାଟାକୁ ତାଙ୍କ ମା ଟେକ୍ରାପ କରିଦେଲେ । ଏକେ ତ ନାନା ପ୍ରକାର ଅସୁବିଧା ଯୋଗୁ ସାଧୁକୁ ସ୍ୱତନ୍ତ୍ର ଗୋଟାଏ ବସାରେ ରଖିବାକୁ ହୋଇଛି । ଏଥିନେଇ ତ କମ୍ ଖରଚ ନୁହେଁ । ବସାଭଡ଼ା ଦଶଟଙ୍କା । ପୂଜାହାଣ୍ଡି ଚାକରଙ୍କ ଦରମା ସମେତ ଟ୫୲, ଏମିତି ଏମିତି ହୋଇ ମାସକୁ ମାସ ଗାଏମୋଟ ଟ୩୫୲/ ମୋତେ ତା ପାଖକୁ ପଠାଇବାକୁ ହୁଏ । ବେଳେ ବେଳେ ଲୁଗାପଟା, ଯାତ୍ରା ଖରଚ ଇତ୍ୟାଦି ମଧ୍ୟ ପଠାଯାଏ । ତଥାପି ବାବୁଙ୍କୁ କିଅଣ୍ଟ ପଡ଼େ ଯେ ଗୁପ୍ତରେ ମାଆଙ୍କ ପାଖକୁ ଚିଠି ଲେଖି ଅଧିକ ଟଙ୍କା ମଗାଇ ଆଣନ୍ତି । ହୁଁ, ସେ ଫେର୍ କଅଣ ଟଙ୍କାଏ ଦି ଟଙ୍କା ? ଟାହି ପଚିଶ କହି ନାହାନ୍ତି କାହିଁକି ? ମୁଁ ଦେଖୁଛି ବେ-ମୁରବୀ ହୋଇଗଲା । ଗଲା, ସେ ବିଗିଡ଼ିଲା । ଆଉ ହବାର କଥା ନୁହେଁ—କହି ମୁଣ୍ଡ ହଲାଇ ହଲାଇ ଗୋଟିଏ ଦୀର୍ଘ ନିଶ୍ୱାସ ଛାଡ଼ିଲେ । ତକ୍ତୁ ଲୁଗା ତାଲିକାଟି ଟେକି କହିଲେ, ନା କଅଣ କହୁଛନ୍ତି ?

ରସାନନ୍ଦ ଅଭୟଚରଣଙ୍କ କଥାକୁ ସମର୍ଥନ କରି ଚିଁଚିଁଆ ସ୍ୱରରେ କହିଲେ, ହଁ, ତା ନୁହେଁ କଅଣ । ପିଲାଙ୍କ ହାତରେ ଟଙ୍କା ପଇସା ପଡ଼ିଲେ ଯାହା ହେବାର କଥା ଠିକ୍ ତାହାହିଁ ହୋଇଛି । ଯେତେହେଲେ, ଇସ୍କୁଲିଆ ପିଲା ନା ? ବିନା ମୁରବିରେ ବିଗିଡ଼ିଯିବାର ତ କଥା ।

ହଁ, କହନ୍ତୁ, କହନ୍ତୁ, ତାଙ୍କ ମାଆଙ୍କୁ କହନ୍ତୁ । ପୁଅ ଭାଗୀ ହୋଇଛନ୍ତି ସେ ! ହଁ ହଁ, ଭଲା ଗାର୍ଜିଆନରେ କୁଆଡ଼େ ସ୍କୁଲରେ ପାଠ ପଢ଼ି ସରିବେ ନାହିଁ । ସେଥି ପାଇଁ ଧରି ବାନ୍ଧି କରି ଜଣକୁ ଗାର୍ଜିଆନ କରି ଦେଇଛି ଯେ ସେଥିରୁ କେଉଁ ଲାଭ ? ଗାର୍ଜିଆନ ଥାଆନ୍ତି ଠାଏ, ପିଲା ରହନ୍ତି ଠାଏ ।

ସାଧୁ ସଙ୍କୁ ପାରିଲେ ନାହିଁ । ସେ ଧୀରେ ଧୀରେ ଘରୁ ବାହାରି ଗଲେ । ତାଙ୍କ ମା ଅଭିମାନ କରି କହିଲେ, କହନ୍ତୁ ଟି ଲୋ ସର, ସେ ସବୁବେଳେ ମୋ ମୁଣ୍ଡରେ ଦୋଷପାକ କାହିଁକି ଲଦି ଦିଅନ୍ତି ? ଆଗୋ, ମୁଁ କେଉଁଠୁ ଟଙ୍କା ପାଇବି ଯେ ପଠାଇବି ? ମତେ କଅଣ ଶହ ପଚିଶ କେବେ ଦେଇ ଥାଅନ୍ତି ଚେହିଁକି ?

ମୋର ଦେବା କିଛି ଦରକାର ପଡ଼େ ନାହିଁ । ବୁଝିଲ ନା ରସାନନ୍ଦ ବାବୁ, ମୁଁ ବାବତ ବାବତ କରି ହାତବାକ୍ସର ଭିନ୍ନ ଭିନ୍ନ ଜାଗାରେ ଟଙ୍କା ପୁଳା ବାନ୍ଧି ରଖିଥାଏ । ବାଉଳା ମଣିଷ ତ ମୁଁ, ଅକସ୍ମାତ୍ କେଉଁଠି ଯଦି ଗୁଡ଼ାଏ ଛାଡ଼ି ଗଲି ତ,—ଛାଡ଼, ସେ ସବୁ ଘରୋଇ କଥା, କହିଲେ ଲୋକନିନ୍ଦା । କିଛି ସମୟ ଚୁପ୍ ରହି କହିଲେ, ନା, ନା, ଆପଣ ମନକଷ୍ଟ କଲେ କି ? ଆପଣଙ୍କୁ ମୁଁ ପର ବୋଲି ଭାବେ ନାହିଁ । ମୋ ଘର କଥା ଯିଏ, ଆପଣଙ୍କ ଘର କଥା ସିଏ । ହଁ, ବାକ୍ସ ଖୋଲି ହିସାବ ମିଳେଇ ଦେଖିଲା ବେଳକୁ ଯେଉଁ ବାବତରୁ ଦେଖ, ଟଙ୍କାଏ ମସାଏ ଅମେଳ ନ ଖାଇ ନ ଯାଏ ।

କହନ୍ତୁ ନି ଲୋ ସର, ଏଥିରେ ମୋର କୋଉ ଦୋଷ ? ମତେ କଅଣ ଚୋରଣୀ କରି ପାଇଲ କି ? ଆଗୋ, ତମେ ତ ବାଉଳା ମଣିଷ, ଭୁଲରେ କାହାକୁ ଟଙ୍କା ଦେଇ ହିସାବରେ ମନେ କଲେ ଲେଖି ନ ଥିବ କି ହିସାବ କରୁ କରୁ କୋଉଁଠି ବାଉଳା ଧରିଯିବ । ଯିଏ ଯାହା କରୁ ସବୁ ତ ମୁଁ । ମୋଟାଦେହଟି ଉଠି ଚାଲିଗଲେ ।

ମଲର ଝମ୍ ଝମ୍ ଶୁଣି ଅଭୟଚରଣ ବୁଝି ପାରିଲେ ସ୍ତ୍ରୀ ବିରକ୍ତ ହୋଇ ଉଠି ଗଲେଣି । ମନରେ ତାଙ୍କର କ୍ରୋଧର ମାତ୍ରାଟା ସଙ୍ଗେ ସଙ୍ଗେ ପ୍ରବଳ ହୋଇ ଉଠିଲା । ମାତ୍ର ଅଦୂର ଭବିଷ୍ୟତରେ ତାଙ୍କର ପ୍ରକୃତି ପାଇଁ ତାଙ୍କୁ ଯେ ଜବାବଦେବାକୁ ପଡ଼ିବ ଏହି ବିଷୟ ଚିନ୍ତା କରି ମନରେ ଭୟ ହେଲା । ସ୍ତ୍ରୀଙ୍କ ବିଷୟରେ ରସାନନ୍ଦଙ୍କ ମନରେ ଯେଉଁ ଧାରଣା ଜନ୍ମାଇ ଦେଇଥିଲେ, ସେତିକି ମୂଳୋତ୍ପାଟନ କରିବାକୁ ହେବ ।

ସେ କହିଲେ, ବୁଝିଲେ ନା ରସାନନ୍ଦ ବାବୁ, ଘର କରି ଚଳିବାକୁ ହେଲେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ବେଳେ ବେଳେ ଟିକିଏ ଖଟ୍ ଖାଟ୍ ଲାଗି ଥାଏ । ସଂସାରରେ କାହା ଘରେ ଏପରି ନ ହୁଏ କହନ୍ତୁ ଭଲା ! ବିଷୟ ନ ଥିଲେ ହାସ ପରିହାସରେ ହେଲେ ପଦେ ଅଧେ ଝଗଡ଼ା ନ ଲାଗିଲେ ଘରକରଣା ସୁନ୍ଦର ହୁଏ

ନାହିଁ । ଖୁଁ, ଯେତେବେଳେ ସାଧୁ ବୋଉ ପରି ଲୋକ ! କପାଳ ଆଉ, ସବୁ କପାଳ । ଏମିତି ହିସାବ ଲୋକ !‐ଏଗୁଡ଼ା ସବୁ ଆମ ଘରୋଇ କଥା । ତଥାପି, ଆପଣ ତ ପର ମଣିଷ ନୁହନ୍ତି । ସାଧୁବୋଉ ମୋ ଘରେ ଗୋଡ଼ ନ ଦେଇଥିଲେ ଅବସ୍ଥା ବାରଣ୍ଡା ଦ ଢଡ଼ା ହୁଅନ୍ତାଣି ।

ରସାନନ୍ଦ ବାବୁ ସ୍ୱରକୁ ପଞ୍ଚମ ପର୍ଯ୍ୟନ୍ତ ଠେଲି କହିଲେ, ମୁଁ ସବୁ ଜାଣେ । ଦେଖିଲି ତ ଗୋଟାଏ ମଣିଷ ! ଯେମିତି ବୁଦ୍ଧିମତୀ ସେମିତି ସଚ୍ଚୋଟ୍ ।

ହସି ହସି ଅଭୟଚରଣ କହିଲେ, ହଁ , ସାଧୁବୋଉ ମୋ ବାଉଳା କଥା ଯାହା କହିଲେ, ସେତକ ହେଉଛି ଅଛା । ଅଉ ଅଉ କଥାରେ କେବେ କେମିତି ପଛେ ବାଉଳା ଧରୁଥିବ, ସେତ ଅଲଗା କଥା, ହିସାବ କିତାବରେ, ଖୁଁ, କଉଡ଼ା କାନ୍ତ ଛାଡ଼ି ଯିବ ନାହିଁ । ଯେତେବେଳେ କରଣ ବଛା, ନା କଅଣ କହୁଛନ୍ତି ? ମହାଜନୀ କାରବାରରେ ଖାତକ ବଳ ଇ ଯିବେ ? ହିଁ—ନା !

ଜୁଆଡ଼ୁ ? ଅନ୍ୟମନସ୍କ ହୋଇ ରସାନନ୍ଦ ଉତ୍ତର ଦେଲେ ।

ସାଧୁକୁ ପୁରୀରେ ନ ରଖି କଟକ ପଠାଇ ଦେଉ ନାହାନ୍ତି ? ଶୁଣିଛି, ସେଠି ଭଲ ପଢ଼ାପଢ଼ି ହୁଏ ।

ହୁଏ । ତେବେ କଥା ହେଉଛି, ଜାଗା ଭଲ ନୁହେଁ, ଜଳବାୟୁ ଖରାପ । ଜାଣିଲେ ନା ରସାନନ୍ଦବାବୁ, କଟକ ଭଳି ଜାଗାରେ ଏକୁଟିଆ ଛାଡ଼ିବାକୁ ମୋର ଡର । ପିଲାଟା ନଷ୍ଟ ହୋଇଯିବ ।

ଏ ବର୍ଷ ନ ହେଲେ, ଆର ବର୍ଷ ତ ଦିବାକୁ ପଡ଼ିବ ? କହି ରସାନନ୍ଦ ବାବୁ ପାନଥାଳିଅରୁ ଟିକିଏ ଗୁଆ ନେଇ ପାଟିରେ ପକାଇଲେ ।

ଅଭୟଚରଣ ବ୍ୟସ୍ତ ହୋଇ କହିଲେ, ପାନ ସରି ଗଲାଣି ପରା ? କୋମଳ ସ୍ୱରରେ ଡାକିଲେ,ଅଲୋ ସର, ପାନ ଦି ଖଣ୍ଡି ଆଣିଲୁ ମା । ରସାନନ୍ଦଙ୍କ ଆଡ଼କୁ ମୁହଁ ଫେରାଇ କହିଲେ, ରାମ ରାମ, କଲେଜରେ ପଢ଼ିବ, ସେ କଥା ମତେ କହନ୍ତୁ ନାହିଁ । ଏତିକରେ ଶେଷ, ଏତିକରେ ଶେଷ । ବପ୍ରାଟାକୁ କଲେଜରେ ପଢ଼ାଇ ମୁଁ ସର୍ବସ୍ୱାନ୍ତ ହେବାକୁ ବସିଛି । ସାଧୁଆକୁ ଛାଡ଼ିଲେ ଆମ କଥା ଶେଷ ହୋଇଯିବ ।

ହଁ, ତା ବି ସତ କଥା ନୁହେଁ କି ? କଲେଜରେ ଗୋଟିଏ ପିଲା ପଢ଼ାଇବା କଅଣ ସହଜ ବ୍ୟାପାର ? ଆଗ ବାବୁଆନିକୁ ଟଙ୍କା ଯୋଗାଉ ଯୋଗାଉ— କହୁ କହୁ ବନ୍ଦ ହୋଇଗଲେ ।

ଅଭୟଚରଣ ଆହୁରି ଥରେ ଡାକିଲେ, ଅଲୋ ସର, ଦି ଖଣ୍ଡି ପାନ ଆଣ ଭଲ ମା । ହୁଁଃ, ଏହି ଦେଖୁନାହାନ୍ତି ବପାଟାକୁ । ମୁଁ ଆଉ ସେଠାକୁ ପାରିବ ନାହିଁ । ଏତିକି କହି ଅଭୟଚରଣ ହିସାବ କାଗଜ ଖଣ୍ଡି ପାଞ୍ଜି ଭିତରେ ରଖି ଖଣ୍ଡା

ଭିତରକୁ ଉଠିଗଲେ । ରସାନନ୍ଦ ବାବୁ ବସି ବସି କ୍ଳାନ୍ତ ହୋଇଗଲେଣି— ତଥାପି ଅଭୟଚରଣଙ୍କର ଦେଖା ନାହିଁ । କଅଣ କରିବେ ? ନ କହି ଚାଲିଯିବାଟା ଭଲ ହେବ ନାହିଁ । ଏପରି ଅଭୟଚରଣଙ୍କ ପରି ଲୋକ । ଠିକ୍ ଏ କଥାରେ ବିଗିଡ଼ିଯାଇ ମୁହଁ ନଦ ବସିବା ଅଭ୍ୟାସ ପିଲାଦିନୁ ତାଙ୍କର ଅଛି । ରସାନନ୍ଦବାବୁ ଅଗତ୍ୟା ମନ ବଦଳାଇବାକୁ ପାଞ୍ଜି ଖଣ୍ଡି ଧରି ଅନ୍ୟମନସ୍କ ଭାବରେ ପତର ଓଲଟାଇବାକୁ ଲାଗିଲେ ।

କିଛି ସମୟ ପରେ ଅଭୟଚରଣ ପୁଣି ଆସି ମଶିଣା ଉପରେ ବସିଲେ । କାନ୍ଥକୁ ଆଉଜି ଠେକା ପକାଇ ବସି, ଦକ୍ଷିଣ ପାଦରେ ବାମହସ୍ତ ଘଷୁ ଘଷୁ, ମୁରୁକି ହସି କହିଲେ, ବୁଝିଲେ ନା ରସାନନ୍ଦ ବାବୁ, କି କଥଟାଏ ବା କହିଦେଲି ଯେ ସାଧୁବୋଉ ଏଥିକି ଛଳ କରି ବସିଥିଲେ । ଆରେ, ମୁଁ ତ ବାଉଳା ମଣିଷ, କହୁ କହୁ କେଉଁଠି କେମିତି ବାଉଳା ଧରିବ, ତାକୁ ଫେର୍ ସୁଧାରି ଦେବ କିଏ ? ଖୁଁ, କହୁଛନ୍ତି, ଯାହାପାରି ତା ଆଗରେ ମୋର ନିନ୍ଦା କରୁଛି । ଆରେ, ରସାନନ୍ଦ ତ ଆଉ କିଏ ନୁହନ୍ତି, ସେ ଘରର ଲୋକ । ଏ କଥା କଣ ମାଇପେ ବୁଝିବେ ?

ଏହି ସମୟରେ ଆଉ ଖଣ୍ଡେ କାଚ ଥାଳିଆରେ କେତେ ଖଣ୍ଡ ଭଙ୍ଗାପାନ ନେଇ ସରି ଉପସ୍ଥିତ ହେଲା । ଦଶ ଏଗାର ବରଷର ଝିଅ, ପିଲାଳିଆ ବୁଦ୍ଧି ଛାଡ଼ି ନାହିଁ । ବାଁହାତରେ ଗୋଟିଏ ରବର କଣ୍ଢେଇ ଚାପି ଧରିଛି । ସରିର ଉପସ୍ଥିତିରେ ଦାଣ୍ଡଘରେ ଆନନ୍ଦର ଲହରୀ ଖେଳିଗଲା । ରସାନନ୍ଦ ଏବଂ ଅଭୟ ଚରଣ ଆଗ୍ରହର ସହିତ ତାକୁ ଅନାଇଲେ । ସରି ପାନ ଥାଳିଆ ବିଛଣା ଉପରେ ରଖି ଫେରିଯିବାକୁ ବସିବାରୁ ଅଭୟଚରଣ କୋମଳ ସ୍ୱରରେ ପଚାରିଲେ, ଆରେ ହାତରେ ସେଇଟା କଅଣ କି ମା ? ଭୟରେ ବାଳିକାର ମୁହଁ ଫିକା ପଡ଼ିଗଲା । ସେ ଖେଳଣାଟିକୁ ଲୁଚାଇବାକୁ ଚେଷ୍ଟା କରୁ କରୁ ଠିକ୍ ଏ ଯୋର୍‌ରେ ଚାପି ହୋଇ କେଁ କରି ଶବ୍ଦ କଲା । ଅଭୟଚରଣ କୌତୂହଳୀ ହୋଇ କହିଲେ, ଦେଖେଁ ଦେଖେଁ ।

ସରି ଖେଳଣାଟି ବାପାଙ୍କ ହାତକୁ ବଢ଼ାଇ ଦେଇ ଲଜ୍ଜା ଓ ଭୟରେ ଘରୁ ବାହାରିଗଲା । ଅଭୟଚରଣ ଯେତେ ଡାକିଲେ ଆଉ ଶୁଣିଲା ନାହିଁ । ଅଭୟଚରଣ ଖେଳଣାଟିକୁ ଓଲଟ୍ ପାଲଟ୍ କରି ବାରମ୍ବାର ଦେଖିଲେ । ଦି ଚାରିଥର ଚାପାଚାପି କରି ବ୍ୟସ୍ତ ହୋଇ କହିଲେ, ହୁଁ, କହୁଛି ପରା, ସାଧୁଆଟା ଏକାଥରେ ବିଗିଡ଼ିଗଲା । କିରେ ବାବା, ପଇସା ଖରଚ କଲେ କଅଣ ଭାଇସ୍ନେହ ଜଣା ପଡ଼େ, ନୋହିଲେ ନାହିଁ । ଛିଃ, ଛିଃ, ଚାରି ଗଣ୍ଡା କି ପାଞ୍ଚ ଗଣ୍ଡା ପଇସା ଖର୍ଚ୍ଚ କରି ଯେ ବଜାରରୁ ଏଇଟା କିଣି ଆଣିଛି, କାହିଁକି ଭଲା କହିଲେ ? କିଛି ସମୟ ଚୁପ୍ ରହି ମୁଣ୍ଡ ହଲାଇ କହିଲେ, ହବାର କଥା ନୁହେଁ, ହବାର କଥା ନୁହେଁ ।

ରସାନନ୍ଦ ଖେଳଣାଟି ଅଚ୍ୟୁତଚରଣଙ୍କ ହାତରୁ ନେଇ ପରୀକ୍ଷା କରି କହିଲେ, ନା, ନା, ସାଧୁର କିଛି ଦୋଷ ନାହିଁ । ଏଟି ମୁଁ ବଜାରରୁ କିଣି ତାକୁ ଦେଇଛି । ଅଚ୍ଛା, ଆପଣ ଚିହ୍ନା ବଡ଼ ଲୋକ, ମୋର ଯେତିକି ସାଧ ମୁଁ ସେତିକିରେ ସ୍ନେହ ଦେଖାଇଲି ।

ବଡ଼ଙ୍କର ଅଭିମାନଆଁ କଥାରେ ଅଚ୍ୟୁତଚରଣ ଅପ୍ରତିଭ ହୋଇ ଥଙ୍ଗେଇ ଥଙ୍ଗେଇ କହିଲେ, ତେବେ, ଜିନିଷଟା ମନ୍ଦ ନୁହେଁ । ମୁଁ ରେ ଛଅଣାର କାମ କଅଣ ହୋଇ ନାହିଁ କହୁଛନ୍ତି ? ଦଶଟଙ୍କା ଦେଲେ ଭଲ ଏଠି କିଏ ବନେଇ ପାରିବ ? ଯେତେହେଲେ ଗୋରାମୁଣ୍ଡ ପରା ! ଗୋରା ହାତ ନ ଲାଗିଲେ କି ଏପରି ପଦାର୍ଥ ସହଜରେ ହୁଅନ୍ତା ! ଓଃହୋ, ଧନ୍ୟ ସେ ଗୋରା ଜାତି । ନୋହିଲେ କି ବାଘ ବକରି ଏକା ଘାଟରେ ପାଣି ପିଅନ୍ତା ! ହୁଁ,—ଏ ତ ଭାଙ୍ଗିବାର ପଦାର୍ଥ ନୁହେଁ । ରବର କି ନା, ରଖି ଜାଣିଲେ ସାତପୁରୁଷ ଯାଏ ଯେମିତି ବସିଥିବ ।

ରସାନନ୍ଦ ନୀରବ ରହିଲେ । ସେ ଜାଣନ୍ତି କଣ୍ଢେଇଟି ଜାପାନ ତିଆରି । ତାଙ୍କର ମନ ଅସ୍ଥିର ହେଲା । ଘରେ ତେଣେ ଏକା । ପୁଣି ସହର । ହାତେ ମାପି ଗୃହଖଣ୍ଡକରେ ଗୃହଲେ ତ ବିପଦ ଛଡ଼ ନାହିଁ । ବାର ଜାଗାରୁ ବାର ଲୋକ ଆସି ସହରରେ ପଶନ୍ତି । ଦିନ ଦିପହରେ, ଯେଉଁଠି ଭିକ ମାଗି ଆସି ଘରେ ପଶୁଛନ୍ତି ରାତିରେ କେଉଁ ଠିକଣା । ରସାନନ୍ଦ ବାବୁଙ୍କ ମନ ଦକ୍ ଦକ୍ ହେଲା । ଘରେ ତେଣେ ଏକୁଟିଆ ଅନେଇ ବସିଥିବେ । ସେ ଅସ୍ଥିର ହୋଇ କହିଲେ, ରାତି ଆଠଟା ହେବଣି, ମୁଁ ଆସୁଛି ।

ଅଚ୍ୟୁତଚରଣ କହିଲେ, ହିଁ ଯିବେ ତ ତେବେ ଅସଲ ଯେଉଁ ବିଷୟ ନେଇ ଆପଣଙ୍କୁ ଡକେଇଥିଲି ସେ ବିଷୟର କିଛି ମୀମାଂସା ହେଲା ନାହିଁ ।

କେଉଁ ବିଷୟ କହନ୍ତୁ ?

ଅଚ୍ୟୁତଚରଣ ଚିନ୍ତା କରି ଅଗ୍ରହର ସହିତ ପଚାରିଲେ, ଆପଣ ଔଷଧ ବ୍ୟବହାର କରୁଛନ୍ତି ନା ? ଦିନୁଦିନ ତ ସ୍ୱାସ୍ଥ୍ୟ ବଡ଼ ଖରାପ ହୋଇ ଗଲାଣି । ଫୁଙ୍କ ଦେହେ ରାତ୍ର ଜାଣିହୁଏ ନାହିଁ । ହୁଁ,—ଫୁଙ୍କି ଦେଲେ ଠଳ ପଡ଼ିବା ଆପଣଙ୍କ ପକ୍ଷେ ଅସମ୍ଭବ ନୁହେଁ । ବ୍ୟସ୍ତ ହୋଇ କହିଲେ, ପିଲାଦିନର କଥା ମନେ ପଡ଼ିଲେ, ମନରେ ଯେତିକି ଦୁଃଖ ହୁଏ, ସେତିକି ଆନନ୍ଦ ହୁଏ । ଯେତେବେଳେ ଏକା ସାଙ୍ଗରେ, ନିମାପଡ଼ା ମାଇନର ସ୍କୁଲରେ ପାଠ ପଢୁଥିଲେ, ଯିଏ ଦେଖେ କହେ, ଦି ଭାଇ । ସେ କଥା ଆଜି ଆଉ······

ଔଷଧ ଖାଇବା କଥା ପଚାରୁଛନ୍ତି ? ଯେତେ ଯୁଆଡ଼ୁ ଖାଇଲେ କିଛି ହେଲା ନାହିଁ । ଆଉ ଔଷଧପତ୍ର କିଛି ଖାଉ ନାହିଁ । କବିରାଜମାନେ କେହି

ମୋର ଏ ବେଗ ସହି ପାରିଲେ ନାହିଁ । ମିଛରେ ପଇସା ଖରଚ କରି ଲାଭ କଣ ? ଯାହା ହେବାର ହେବ କହି ରସାନନ୍ଦ ବଦ୍ରୂପ କରି ହସି ପକାଇଲେ । ବଦ୍ରୂପ ନିଜର ଅବସ୍ଥା ଓ ଭାଗ୍ୟ ଉପରେ । ମନୁଷ୍ୟ କୌଣସି ବିପଦରେ ଏକାଥରେ ହତାଶ ହେଲେ, ଦୁଃଖକୁ ହସି ହସି ଉଡ଼ାଇ ଦେବାକୁ ଚେଷ୍ଟା କରେ । ହସ ହିଁ ତାର ଜୀବନର ଏକମାତ୍ର ସାନ୍ତ୍ୱନା ।

ଦୁଃଖ ପ୍ରକାଶ କରି ଅଭୟଚରଣ କହିଲେ, ନା, ହତାଶ ହୁଅନ୍ତୁ ନାହିଁ । ଚେଷ୍ଟା କରୁ କରୁ ଯାହା ହେବ । ଭଗବାନଙ୍କ ଉପରେ ନିର୍ଭର କରନ୍ତୁ । ପିଲାଦିନର କଥା, ଆମ ଦୁଇ ବନ୍ଧୁଙ୍କୁ ଦେଖି, ଅଉ ପିଲାଏ ଈର୍ଷାରେ ଜଳି ପୋଡ଼ି···।

ଅଉ ଚେଷ୍ଟା କଅଣ ? ଚେଁ ଚେଁ ସ୍ୱରରେ ରସାନନ୍ଦ କହିଲେ, ଚେଷ୍ଟାର ବାହାରକୁ ସବୁ ଗଲାଣି । ଏଥର ହାତରେ ଧନ ଥିଲେ ତ ଚେଷ୍ଟା କରିବ ? ମଠରେ ମୋହନ୍ତଗିରି କରି ଠକା କୋଡ଼ିଏ ପଚାଶକୁ ପୁଞ୍ଜି ପରି ସହରରେ ଚଳିବାକୁ ଦ ଦ ଜଣ, ପେଟକୁ ନିଅଣ୍ଟ । ଔଷଧ ଖାଇବାକୁ କାଢ଼ କାହିଁ ? ଛାଡ଼ନ୍ତୁ ମୋର ଆଶା । ଏଣିକି ଶେଷ ତଲବ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । କିନ୍ତୁ ସତ କହୁଛି ଅଭୟ ବାବୁ, ସେଥିକି ମୋର ଭୟ ନାହିଁ । ଯେବେ ହେଲେ ଧ ଦିନେ ମରିବାକୁ ପଡ଼ିବ ।

ରସାନନ୍ଦ ହସିବାକୁ ଚେଷ୍ଟା କଲେ । ମୃତ୍ୟୁର ନାମଟି ନିଜ ତୁଣ୍ଡରେ ଉଚ୍ଚାରଣ କରି, ନିଜେ ଭୟରେ କଳାକାଠ ପଡ଼ିଗଲେ । ତାଙ୍କର କୋଠରଗତ ଚକ୍ଷୁପ୍ରାନ୍ତ ଆର୍ଦ୍ର ହୋଇ ଆସିଲା । ପାଟିରେ ଖଣ୍ଡେ ପାନ ଗୁଞ୍ଜି କହିଲେ, ବାପା ଯାହା କମାଇ ଯାଇଥିଲେ, ନିଜ ଅମଳରେ ସେ ସବୁ ଉଡ଼ାଇ ଦେଇଛନ୍ତି । ମଲା ପରେ ବି ଗାଁର ଘରଡିହ ଖଣ୍ଡି ବିକି ଦେଣା ସୁଝିବାକୁ ହେଲା ।

ପିଲାଦିନର କଥା ଆମ ଦିହିଁଙ୍କି ଯିଏ ଦେଖୁଥିଲା, କହୁଥିଲା ରଜା ଘରର ପିଲା । ସତେ, ମଣିଷର ଭାଗ୍ୟ କଣ ? ଆମ ବାପେ ମଲାବେଳକୁ ଦଶ ପନ୍ଦର ହଜାର ଦେଣା କରି ଯାଇଥିଲେ । ହୁଁ, ମରିବାର ଦିନ ପନ୍ଦରଟା ନ ଯାଉଣୁ ମହାଜନ ସବୁ ଏକଯୁଟ ହୋଇ ଆସି ହାଜର । ମାସକ ଭିତରେ ସମ୍ପତ୍ତି ବିକୀ କରି ଦେଏଣା ନ ସୁଝିବା ଯାଏ ବାର ସହିଲା ନାହିଁ । ଏତେ କରି ମଧ୍ୟ ଯେଉଁ ଲୋକନିନ୍ଦା, କଅଣ କହିବ ? ଅରେ, ଆଜି ସିନା ମହାଜନୀ କରି ହାତରେ ଦୁଇପଇସା ହେଲା, ସେତେବେଳେ ଥିଲା କଅଣ ? ପେଟରେ ଓଦାକନା ଦେଇ ଦୁଇପଇସା ସଞ୍ଚି ରଖିଛୁ । ତହିଁରେ ପୁଣି ନିନ୍ଦା । ଶୁଣିଲେ କାନରେ ମଣିଷ ହାତ ଦେବ । ଏକା ଦେଖିଲା ସାଧୁବୋଉ, ଲକ୍ଷ୍ମୀଟିଏ ତ, ତାଙ୍କରି ପାଇଁ ସବୁ ।

ଅଚ୍ୟୁତଚରଣ କେଜାଣି କାହାକୁ ସନ୍ଦେହ କରି ପଦାକୁ ଅନାଇଲେ । ପରେ ଗଲା ସଫା କରି କହିଲେ, ନା ରସାନନ୍ଦ ବାବୁ, ବିନା ଔଷଧରେ ଚଳିବ ନାହିଁ । ଅଚ୍ଛା, ମୁଁ ଗୋଟିଏ ପ୍ରସ୍ତାବ କରୁଛି ଶୁଣିଲେ । ଆପଣଙ୍କ ମନକୁ ଯଦି ପାଏ ତ,···ଆପଣ କିଛି ଭାବିବେ ନାହିଁ ତ ?···

କହନ୍ତୁ ।

ସାଧୁବୋଉ କହି ପଠାଇଛନ୍ତି, ସାଧୁର ଏଠି ଭାରି ଅସୁବିଧା ହେଉଛି । ପିଲାଟା କିହାତ ବେମୁରବ୍ୟା ହୋଇ ବିଗିଡ଼ି ଯାଉଛି । ସେ କଅଣ ଏକା ମୋଅର, ଆପଣଙ୍କର କିଛି ନୁହେଁ ? ପଇସା ହାତରେ ପଡ଼ିବାରୁ ଯାହାକୁ ମନ ତାକୁ ଦେଇ ଦେଉଛି । ସେ ଭାରି ଦୟାଳୁ କି ନା ? ପରର ଦୁଃଖ କଷ୍ଟ ସହିପାରେ ନାହିଁ । ହୁଁ—ତା ଦୟାକୁ ଆମେ ଫେର୍ ପାରି ଉଠିଲେ ହୁଏ ।

କେତେବେଳୁ ସାଧୁବୋଉ ଆସି କବାଟ ପାଖରେ ନୋଥ ଦେଖାଇ ଠିଆ ହୋଇଥିଲେ । ସ୍ୱାମୀଙ୍କର କଥା ଶେଷ ହେଲାରୁ ସେ କହିଲେ, କହିବୁଝି ଲୋ ସର, ଚୁଲିପଶା ପୁଷାଣ୍ଡ ଟୋକାଟା ତାକୁ କଅଣ ଖାଇବାକୁ ଦେଉଛି କେଜାଣି, ପୁଅର କଣ୍ଠା ଦୋହଲିଲାଣି ଅସି । ମା ମାଉସୀଙ୍କ ହାତରୁ ପାଣି ମନ୍ଦାଏ ପିଇଲେ ପିଲାଙ୍କ ମନରେ ଯେଉଁ ଶାନ୍ତି !

ସ୍ତ୍ରୀଙ୍କ କଥା ଅଚ୍ୟୁତଚରଣଙ୍କ ମନକୁ ପାଇଲା । ସେ ମୁଣ୍ଡ ହଲାଇ କହିଲେ, ହିଁ, ବୁଝିଲେ ନା ରସାନନ୍ଦ ବାବୁ, ସାଧୁ ବୋଉଙ୍କୁ ନେଇ ମୋ ଘର । ସେ ବେଳେ ବେଳେ ଏମିତ ଠିକ୍ କଥା କହନ୍ତି ଯେ··· । ବାକ୍ୟର ବାକି ଅଂଶଟା ତାଙ୍କର ମୁଣ୍ଡହଲା ହିଁ ସମାପ୍ତ କଲା ।

ମୋତା ଦେଇ କହିଲେ, କହିବୁଝି ଲୋ ସର, ପିଲାଟାକୁ ଆପଣମାନଙ୍କ ଭରସାରେ ସିନା ବିଦେଶରେ ଛାଡ଼ି ଦେଇଛି, ଘରେ ଥାଇ ମୁଁ ଖାଲି ଛୁଆଖାଇ ବିଲେଇ ପରି ହେଉଥାଏଁ । ଅଜ ଦେହମୁଣ୍ଡ ହେଲେ ପାଖରେ କିଏ ଅଛି ଯେ ଟିକିଏ ପଚାରିବ ?

ରସାନନ୍ଦ ବାବୁଙ୍କୁ ନିରୁତ୍ତର ଦେଖି ଅଚ୍ୟୁତଚରଣ କହିଲେ, ମୋ ଇଚ୍ଛା, ମାସକୁ ତିରିଶି ଟଙ୍କା ମୁଁ ଆପଣଙ୍କ ନିକଟକୁ ମନିଅର୍ଡ଼ର କରିଦେବି । ବୃଥାରେ ଦି ଦିଟା ପରଙ୍କୁ ପୋଷି କିଛି ଲାଭ ନାହିଁ । ଘରଟାଏ ଭଡ଼ା କରିବା ବି ଗୋଟାଏ ଅଧିକା ବୋଝ, ନା କଅଣ କହୁଛନ୍ତି ?

ଅଚ୍ୟୁତଚରଣଙ୍କ ଉଦ୍ଦେଶ୍ୟ ବୁଝିପାରି ରସାନନ୍ଦ ଗୁମ୍ ମାରି ବସି ଚିନ୍ତା କଲେ । ଅବଶ୍ୟ ସାଧୁଚରଣ ପାଖରେ ରହିଲେ ଯେ ଦୁଇ ପକ୍ଷରେ ମଙ୍ଗଳ ହେବ ଏଥିରେ ସନ୍ଦେହ ନାହିଁ । ଟଙ୍କା କୋଡ଼ିଏ ପଚିଶଟା ପାଇଁ ଦିନ ଦଶଟାରୁ ରାତି ଦଶଟା ପର୍ଯ୍ୟନ୍ତ ଗଧ ଖଟଣି । ବେଳେ ବେଳେ ରାତି ଅଧ ହୋଇଯାଏ ଫେରୁ

ଫେରୁ । ସାଧୁଚରଣ ପରି ସୁସ୍ୱଭାବ ଓ ସଚ୍ଚରିତ୍ର ପିଲା ପାଖରେ ଥିଲେ ଘରକଥା ନେଇ ତାଙ୍କୁ ବିଶେଷ ଭାବିବାକୁ ପଡ଼ିବ ନାହିଁ । ଠିକ୍‌ଏ ନିଶ୍ଚିନ୍ତ ହୋଇ ପାରିବେ । ଏକେତ ବାଲ୍ୟବନ୍ଧୁ, ତହିଁରେ ପୁଣି ଅଭୟଚରଣଙ୍କ ପରି ଲୋକ ଓ ତାଙ୍କର ସ୍ତ୍ରୀ ନିଜେ ଅନୁରୋଧ କରୁଛନ୍ତି । ମୋହବତ୍ ଭାଙ୍ଗିବେ କିପରି ? ତଥାପି, ସ୍ତ୍ରୀଙ୍କର ମତାମତ ନ ବୁଝି ସାଫ୍ ଜବାବ ଦେବା ଅନ୍ୟାୟ ।

ସେ କଥାକୁ ବଙ୍କାଇ ବଙ୍କାଇ କହିଲେ, ବଡ଼ଘରର ପିଲା, ଅଏସରେ ପିଲାଦିନୁ ବଢ଼ି ଆସିଛନ୍ତି । ଗରିବଘରେ ରହିଲେ କାଳେ କେତେ ରକମର ଅସୁବିଧା ହେବ, ଏଇ ନେଇ ମୋର ଡର ।

ପରିହାସ କରି କଥାଟାକୁ ଉପରେ ଉପରେ ଉଡ଼େଇ ଦେବାକୁ ଅଭୟଚରଣ ଉଚ୍ଚସ୍ୱରରେ ହସି ହସି କହିଲେ, ହୁଁ, ଆଉ ତେମେ କଅଣ ଛୋଟ ଘରର ପିଲା ନା ? ନମାପଡ଼ାରେ ପାଠ ପଢ଼ିଲା ବେଳେ ତମ ପଛରେ ପଚିଶ ପାଞ୍ଚଟା ପିଲା ଗୋଡ଼ାଉଥିଲେ ?

ସ୍ୱାମୀଙ୍କର କଥା ଶେଷ ହେଲାରୁ ମୋତାଦେଈ କହିଲେ, କହିବୁଝି ଲୋ ସରି, ହଉ ହେଲା, ଅସୁବିଧା ହେଲେ ହେବ । ଘରକରି ସୁବିଧା ଅସୁବିଧା ତ ଲାଗିଛି । ପେଜପାଣି, କି ଶାଗମାଛ ଯାହାହେଉ, ସେଥିରେ ମୋର ରାଜି । ସାଧୁ ମୋର ପେଜପାଣିରେ ସନ୍ତୋଷ । ତମ କତରେ ଥିଲେ ତା ଚିନ୍ତା ମୋତେ ଲାଗିବ ନାହିଁ । ସେ ତ ଯେମିତି ନିରୀହ ସୁଧାର ପିଲା ମୁଁ ଆଉ ଅଧିକା କଅଣ କହିବି ।

ହଉ ହେଲା, ଆପଣଙ୍କ କଥାରୁ ମୁଁ ବାହାର ନୁହେଁ ।

ତେବେ··· !

ତେବେ ଆଉ କଅଣ ? କହିବୁଝି ଲୋ ସରି, ତୋ ମଉସା ଯଦି ରାଜି ହେଲେ ତ ଆଉ ଥାଏ କଅଣ ? କାଲି ସାଧୁକୁ ନେଇ ତା ମାଉସୀ ପାଖରେ ମୁଁ ନିଜେ ଥିଁପି ଦେଇ ଆସିବି । ମୋତାଦେଈ ଖଞ୍ଜା ଭିତରକୁ ଗଲେ । ରାତି ଅଧିକ ହେବାର ଦେଖି ରସାନନ୍ଦ ମଧ୍ୟ ବିଦାୟ ଗ୍ରହଣ କଲେ ।

## ୩

ରସାନନ୍ଦ ବାବୁ ବିଦାୟ ଗ୍ରହଣ କରିବାର କିଛି ସମୟ ପରେ ବିପ୍ରଚରଣ ଆସି ଦାଣ୍ଡ ଦରଜାରେ ହାତ ମାରିଲେ । ସାଧୁଚରଣଙ୍କ ନିକଟରୁ ବିଦାୟ ନେଇ, ସହରର ଅନେକ ସ୍ଥାନରେ ପଚରାପଚରି କରି ନରେନ୍ଦ୍ର ପୋଖରୀ କୋଣରେ ସେ ଗୋଟିଏ ବସା ଠିକଣା କଲେ । ବସାଟି ବେଶ୍ ଖୋଲା । ପିଲାପିଲି ଟିକିନିଇ ଅକ୍ଲେଶରେ ଯେ କେହି ଚଳି ପାରିବେ । ଭଡ଼ା ମାସକୁ ପନ୍ଦର ଟଙ୍କା । ବନ୍ଧୁଙ୍କ ନିମନ୍ତେ ଏତିକ

କାର୍ଯ୍ୟ କରି ସେ ଆଜ ସ୍ଥିର ହୋଇ ରହି ପାରିଲେ ନାହିଁ । ପାଖରେ ଥାଇ ସରକୁ ନ ଦେଖି ତାଙ୍କ ପ୍ରାଣ ଛଟପଟ ହେଲା । ଶିବ ପ୍ରସାଦ ବାବୁଙ୍କର ବାରଣ ନ ମାନି ସେ ଧାଇଁ ଆସିଲେ ।

ଦାଣ୍ଡ କବାଟରେ ହାତ ମାରିବା ସଙ୍ଗେ ସଙ୍ଗେ କବାଟ ଖୋଲିଗଲା । ସେ ଅତି ସନ୍ତର୍ପଣରେ ସାଧୁଚରଣଙ୍କ ପଢ଼ାଘରେ ଉପସ୍ଥିତ ହେଲେ । ସାଧୁଚରଣ ଚଉକିରେ ବସି ଟେବୁଲ ଉପରେ ଖଣ୍ଡେ କଅଣ ଏଣୁ ତେଣୁ ବହି ରଖି ପଢ଼ୁଛନ୍ତି । ଏପରି ମନ ଦେଇ ପଢ଼ୁଛନ୍ତି ଯେ ଘର ଭିତରକୁ କିଏ କେତେବେଳେ ଯିବା ଆସିବା କରୁଛି, ସେ ଆଡ଼କୁ ତାଙ୍କର ମୋଟେ ନଜର ନାହିଁ ପରି । ବିପ୍ରଚରଣ ନିକଟକୁ ଯାଇ ଡାକିଲେ, ସାଧୁ— ।

ସାଧୁ ବିପ୍ରଚରଣଙ୍କୁ ଦେଖି ଉଠି ଠିଆହେବା ସଙ୍ଗେ ସଙ୍ଗେ ଆଶ୍ଚର୍ଯ୍ୟର ସହିତ କହିଲେ, ଦାଦା, ହଠାତ୍ ଏତେ ରାତିରେ ?

ବିପ୍ରଚରଣ ସ୍ୱଭାବସୁଲଭ ହସଟିଏ ହସି କହିଲେ, ମୋର ମନ ଥୟ ହେଲା ନାହିଁ । ପାଖରେ ସମସ୍ତେ ଅଛନ୍ତି, ଦେଖା ନ କରି କେମିତି ଚାଲିଯିବି କହିଲ ? ଭାଇ କାହାନ୍ତି ?

ସେ ଘରେ ବସି ସନ୍ଧ୍ୟା କରୁଛନ୍ତି ।

ରାତି ଦଶଟାରେ ?

କଅଣ କରିବେ ? ରସାନନ୍ଦବାବୁଙ୍କ ସଙ୍ଗେ ଗଳ୍ପ କରୁ କରୁ ଡେରି ହୋଇଗଲା । ଦାଦା, ଆପଣ ଯାହା କହିଥିଲେ ସବୁ ସତ । ମୋତେ ଏଣିକି ରସାନନ୍ଦ ବାବୁଙ୍କ ଘରେ ରହି ପାଠ ପଢ଼ିବାକୁ ହେବ । ବାପା କହୁଛନ୍ତି ଟଙ୍କା ପଇସା ଏଣିକି ରସାନନ୍ଦବାବୁଙ୍କ ନାମରେ ଆସିବ ।

ଭଲ ହେଲା । ସେଥିରେ ତୋର କ୍ଷତି କଅଣ ? ପାଠ ପଢ଼ିଲେ ହେଲା । ରସାନନ୍ଦ ବାବୁଙ୍କ ଘରେ ରହ, କି ହଷ୍ଟେଲରେ ରହ, ଏଥିରେ ତୋର ଆପତ୍ତି କରିବା ଅନାବଶ୍ୟକ । ଭାଉଜ ବୋଉ ଆଉ ସର କାହାନ୍ତି ?

ବୋଉ ରୋଷଘରେ, ଏ କଅଣ ସର, କହି ସାଧୁଚରଣ ଟେବୁଲ ଆର ପାଖକୁ ହାତ ଦେଖାଇ ଦେଲେ । ସ୍ଥାନଟି ଅନ୍ଧାରୁଆ ହୋଇ ଥିବାରୁ ସର ଖଣ୍ଡେ ସପ ପକାଇ ଟେବୁଲ ସେପାଖେ ଶୋଇ ପଡ଼ିଛି । ବିପ୍ରଚରଣ ନଳଟଣିଟି ଟେବୁଲ କଡ଼କୁ ଘୁଞ୍ଚାଇ ଦେଇ ଦେଖିଲେ, ସତକୁ ସତ ସର । ଦରଫୁଟା ପଦ୍ମଫୁଲ ପରି ସୁନ୍ଦର ମୁହଁଟିରେ କେଜାଣି କେତେ ଗୁଡ଼ାଏ ମଶା ବସି ରକ୍ତ ପିଉଛନ୍ତି । ବିପ୍ରଚରଣ ମଶାଙ୍କୁ ଘଉଡ଼ ଦେଇ ପାଖରେ ବସିଲେ । କପାଳରେ ହାତ ବୁଲାଇ ବୁଲାଇ ଡାକିଲେ, ମାମି, ମାମି—

ପରେ ଦୀର୍ଘନିଶ୍ୱାସ ଛାଡ଼ି କଡ଼ ମୋଡ଼ିଲା । ନିଶ୍ୱାସ ନିଅଁଅଣା କରି ପୂର୍ବବତ୍ ଶୋଇପଡ଼ିଲା । ବିପ୍ରଚରଣ ଲୋତକରେ ଚକ୍ଷୁ ଛଳଛଳ କରି ତାର ନିଦ୍ରିତ କପାଳ ଚୁମ୍ବନ କଲେ । ବାମ ହାତରେ ମଣା ତଡ଼ୁ ତଡ଼ୁ କହିଲେ, ସାଧୁ, ମୋର କଲିକତା ଯିବା ଠିକ୍ ହେଲା । ବୋଧହୁଏ କାଲି ପନ୍ଦର ଦିନ ଅଡ଼ିକୁ ଯିବି ।

ପ୍ରୀତ ହୋଇ ସାଧୁଚରଣ ପଚାରିଲେ, ଷ୍ଟାଇପେଣ୍ଡ ପାଇଲେ ? ସନ୍ଧ୍ୟାରେ ପରା କହୁଥିଲେ—

ନା, ଷ୍ଟାଇପେଣ୍ଡ ପାଇ ନାହିଁ । ଶିବପ୍ରସାଦ ବାବୁ ମୋତେ ଟଙ୍କା ଦେଇ ପଠାଉଛନ୍ତି ।

ସେ କିଏ ?

ଶିବପ୍ରସାଦ ବାବୁ ସୋନପୁରର ଜଣେ ଜମିଦାର । ସେ ଆଧୁନିକ ରୁଚି ସମ୍ପନ୍ନ ଲୋକ । ମୋର ଚିତ୍ର ଅଙ୍କନ ଦେଖି ସେ ତାଙ୍କ ମନରୁ ପ୍ରତିଶ୍ରୁତି ଦେଇଛନ୍ତି ଟଙ୍କା ଦେବାକୁ । ଏପରି ସୁନ୍ଦର ଲୋକ !

ସାଧୁଚରଣ ସ୍ପଷ୍ଟ ବୁଝି ପାରିଲେ ନାହିଁ, ଶିବପ୍ରସାଦ ବାବୁ ସ୍ୱତଃପ୍ରବୃତ୍ତ ହୋଇ ଜଣେ ବାହାରିଆ ଲୋକକୁ ସାହାଯ୍ୟ ଦେବାକୁ କାହିଁକି ପ୍ରସ୍ତୁତ । କୌଣସି ସ୍ୱାର୍ଥସିଦ୍ଧିର ଅଭିଳାଷ ନ ଥିଲେ ଲୋକେ ଏତେ ପର କାର୍ଯ୍ୟରେ ସହାୟ ହୁଅନ୍ତି, ଏପରି ଧାରଣା ଆଣିବା ମୂର୍ଖତାର କଥା । ଲୋକେ ନିଜ ନିଜର ସ୍ୱାର୍ଥ ନେଇ ପାଗଳ । ପରର ଉନ୍ନତି ଦେଖିଲେ ଆଖିରେ ନିଆଁ ହୁଳା ମାଡ଼ିଲା ପରି ଲାଗେ । ଏତେ ବଡ଼ ଦେଶରେ ଏତେ ଧନୀ, ମହାଜନ ଅଛନ୍ତି, ଏତେ ରାଜା ମହାରାଜା ଅଛନ୍ତି, ତଥାପି ଲୋକଙ୍କର ଦୁଃଖ ଫେରୁନାହିଁ । ଓଡ଼ିଆ ଛାତ୍ରଙ୍କର ଦକ୍ଷତା, ଶିକ୍ଷାଭାବରେ ପେଟଜ୍ୱାଳାରେ ଆପେ ଆପେ ନଷ୍ଟ ହୋଇ ଯାଉଛି । ଯକ୍ଷଙ୍କ ପରି ଟଙ୍କା ଗଦା କରି କିମ୍ବା ବୃଥା ଦେଶଭ୍ରମଣ କରି ପଦ ଲୋଭରେ ରାଜାମାନେ ବିଦେଶରେ ଲକ୍ଷ ଲକ୍ଷ ଟଙ୍କା ଦାନ କରି ଯାଉଛନ୍ତି, ଘର ଭିତରକୁ ଦେଖୁଛି କିଏ ? ଶିବପ୍ରସାଦ ବାବୁ ଯେ ଜଣେ ଦରିଦ୍ର ଓଡ଼ିଆ ଛାତ୍ରକୁ ସାହାଯ୍ୟ କରିବାକୁ ପ୍ରକୃତରେ ଦୃଢ଼ସଂକଳ୍ପ, ଏ ବିଷୟରେ ସନ୍ଦିହାନ ହୋଇ ସାଧୁଚରଣ ପଚାରିଲେ, କେଉଁ ସର୍ତ୍ତରେ ସେ ଟଙ୍କା ଦେବେ ? ଧାର ?

ବିପ୍ରଚରଣଙ୍କର ମୁଖ ଗମ୍ଭୀର ହେଲା । ସେ ଭାବି ଭାବି କହିଲେ, ବୋଧହୁଏ ସେହିପରି କିଛି । ତେବେ ମୁଁ ଠିକ୍ କହି ପାରୁ ନାହିଁ । କିନ୍ତୁ ଟଙ୍କା ଦେବେ ନିଶ୍ଚୟ । କହୁ କହୁ ସରଳକୁ ଟିକିଏ ହଲାଇ ଦେଇ ଡାକିଲେ, ମାମି, ମାମିଲୋ··· ····· ।

ସର ଭଡ଼ମୋଡ଼ ହୋଇ ଧୀରେ ଧୀରେ ଗୃହିଁଲା । ଦାଦାକୁ ଦେଖି ପ୍ରଥମେ ଅବାକ୍ ହେଲା । କେଜାଣି କାହିଁକି ଅଭିମାନ କରି ଟିକିଏ ହସିଦେଇ ପୁଣି ଆଖି ବୁଜିଲା । ବିପ୍ରଚରଣ ସରର ପ୍ରକୃତି ଭଲକରି ଜାଣନ୍ତି । ସେ ବୁଝି ପାରିଲେ, ସରର ନିଦ ଭାଙ୍ଗି ଲାଣି, ମାତ୍ର ଲାଜରେ, ଅଭିମାନରେ ମିଛଟାରେ ଆଖିବୁଜି ପଡ଼ିଛି । ସେ କିଛି ନ କହି ତୁନିହୋଇ ବସି ରହିଲେ ।

ସରର ସବୁ ସ୍ନେହ, ସବୁ ଆଦର ତାର ଦାଦା ପାଖରେ । ବାପାକୁ ସେ ଭୟ କରେ । ଯେତେ ଆଦର କରି ଡାକିଲେ ପାଖକୁ ନ ଯାଇ ଲୁଚି ପଳାଏ । ଭାଇ ତ ସବୁବେଳେ ଚିଡ଼ଚିଡ଼ ହେଉଥାନ୍ତି । ସର ଉପରେ ତାଙ୍କର ଅବହେଳା । ଖଣ୍ଡେ ଭଲଲୁଗା ପିନ୍ଧିଲେ, କି ଗୋଟିଏ ନୂଆ ଗହଣା ନାଇଲେ, ଭାଇ କେତେ କଣ କହି ଚିଡ଼ାନ୍ତି । ଟିକିଏ ଭଲକରି ମୁଣ୍ଡ ବାନ୍ଧିଲେ ମଧ୍ୟ ସେ ସହି ପାରନ୍ତି ନାହିଁ, ଖାଲି ଗାରୁ ଗାରୁ ହେଉଥାଆନ୍ତି । ମାଇକିନିଆଁ ଝିଅଗୁଡ଼ା ତାଙ୍କୁ ବିଷ ପରି ଲାଗନ୍ତି । ଏତେ ଘୃଣା ! ଏକା ବିପ୍ରଦା, ସବୁ ପ୍ରକାର ଅଳି ତାଙ୍କରି ପାଖରେ—କଥା କହି, ଛବି ଦେ, ମୋତେ କାଖେ ଇତ୍ୟାଦି ।

ସବୁ କଥା ସାଧୁମତେ ବିପ୍ରଦାଦି ପିଲାଦିନୁ କରି ଆସିଛନ୍ତି । ମାନ ଅଭିମାନରେ, ରାଗ ରୋଷରେ, କାନ୍ଦା ଗେହ୍ଲାରେ ସର ତାଙ୍କୁ କେତେ ମାରେ । ସେ ସବୁ ହସ ହସ ମୁହଁରେ ସହି ବିନମ୍ରରେ ଗେହ୍ଲା କରନ୍ତି । ମାମି ମାମି ଡାକି କେତେ ଗୋଳାଇ ହୁଅନ୍ତି । କିଏ କେଉଁଠି ସରକୁ ପଦେ କଟୁକଥା କହିଲେ ସେ କାନ୍ଦି କାନ୍ଦି ଗୃଲିଆସେ ଦାଦା ପାଖକୁ । ଦାଦା ତାକୁ କୋଡ଼ରେ ବସାଇ ବୁଝାସୁଝା କରନ୍ତି, ମାଡ଼ ସହନ୍ତି ।

ଏହି ସମୟରେ ମୋତା ଦେଇ ଆସି ଡାକିଲେ, ସାଧୁ, ସରକୁ ଉଠାଇ ଆସ ଖାଇବ ।

ବିପ୍ରଚରଣ ଉଠି ଭ୍ରାତୃଜାୟାଙ୍କୁ ପ୍ରଣାମ କଲେ । ମୋତାଦେଈ ଅସମୟରେ ଦେବରଙ୍କୁ ଦେଖି କିଛି ବୁଝି ପାରିଲେ ନାହିଁ । ଘୃଣାରେ ତାଙ୍କର ମୁଖ ବିକୃତ ହେଲା । ଅନ୍ତରର ଭାବ ଗୋପନ କରି, ସେ ଗୋଟିଏ ନିର୍ଜୀବ ଶୁଖିଲା ହସ ବଳାତ୍କାରରେ ଟାଣି ଆଣି କହିଲେ, ତମେ କେତେବେଳେ ବିପ୍ର ?

ବିପ୍ରଚରଣଙ୍କର ଉତ୍ତରକୁ ଅପେକ୍ଷା ନ କରି ଟିକିଏ ଉଚ୍ଚସ୍ୱରରେ କହିଲେ, ଅଗୋ, ଏ ବିପ୍ର ଆସିଛନ୍ତି ମ-ଅ ।

ସାଧୁଚରଣଙ୍କୁ ଗୃହିଁ କହିଲେ—ସାଧୁଆ, ଭୂତଗୁଡ଼ା ପରି ତେଣେ ଶୁଖିଗଲୁ ? ସର କାହିଁ—?

ସର ଧଡ଼ପଡ଼ି ହୋଇ ଉଠିବସି କହିଲା, ବୋଉ ମୁଁ ଦାଦା ସାଙ୍ଗେ ଖାଇବି ।

ମୋତା ଦେଈ କୃତ୍ରିମ କୋଧ ଦେଖାଇ ଧମକ ଦେଇ କହିଲେ, ମଲ୍‌-ମୋର ଦାଦସୁଆଗୀ ! କଲେ ଆସୁଚୁ, ପୁଜାଣ୍ଡ ପର୍ବ ଭୂତ ବାଡ଼ିଲାଣି । ସର କହିଲା, ନାଇଁ ମୁଁ ଖାଇବ ନାହିଁ—ଯାଅ ।

ମୋତା ଦେଈ ଏଥର ସତକୁ ସତ ରାଗିଯାଇ ଘର ଭିତରକୁ ଚମକି ଅସିଲେ । କହିଲେ, ଖୁମାଣ,—ଏଁ ଲୋ, ଏଇଦନ୍ତୁ ଖୁମାଣ । ଗୃଲ ଗୃଲ, ଦ ଗୋଇଠାରେ ତୋ ମୁହଁ ଭାଙ୍ଗିଦେବ; କୋଉ ଦାଦ ତୋ ପିଠିରେ ପଡ଼ିବ ରହ ।

ସର ଅତ୍ମରକ୍ଷାର ଅନ୍ୟ କୌଣସି ଉପାୟ ନ ଦେଖି ଭୟରେ ବପ୍ରଚରଣଙ୍କୁ କୁଣ୍ଢାଇ ଧରିଲା । ବପ୍ରଚରଣ ଅଶ୍ରୁପୂର୍ଣ୍ଣ ଲୋଚନରେ ବାଳକାକୁ କୋଳକରି ପଛକୁ ଘୁଞ୍ଚିଗଲେ । ମୋତା ଦେଈଙ୍କର ରାଗ ଶାନ୍ତ ହେଲା ନାହିଁ, ସେ ବାଳକାର ହାତ୍ୟରି ଘୋଷାଡ଼ି ଘୋଷାଡ଼ି କହିଲେ, ଛାଡ଼, ଚୁଲାପଶୀର ମୁହଁ ଭାଙ୍ଗେ । ବପ୍ରଚରଣ ଭ୍ରାତୃଜାୟାଙ୍କର କାର୍ଯ୍ୟରେ ବାଧା ଦେଇ ଭୁଲି ପଡ଼ିଲେ । ମୋତା ଦେଈ ଅଧିକ ରାଗି; ମଲ ଝମ୍ ଝମ୍ କରି ଘରୁ ବାହାରି ଯାଉଁ ଯାଉଁ କହିଲେ, ବୁଆଠାକୁ ବପ ମୁହଁଦେଇ ଖରାପ କରିଦେଲେ । ଅଗୋ, ଏଇଥିରେ କଣ ଝିଅସ୍ନେହ ଜଣାପଡ଼େ ? ମଲ୍‌ମୋର ।

ବପ୍ରଚରଣ ଭ୍ରାତୃଜାୟାଙ୍କର କୋଧର ଉଦ୍ଦେଶ୍ୟ ଜାଣନ୍ତି ! ସେ ବୁଝିଛନ୍ତି, ଭାଉଜବୋଉ ତାଙ୍କ ଉପରେ ରାଗ କଲେ ରାଗଟା ସୁଝାନ୍ତି ସର ଉପରେ । ତାଙ୍କ ଉପରେ ସେ ବିନା କାରଣରେ କୋଧ କରନ୍ତି । ମିଛଠାରେ ହେଲେ ସର୍ବଦା ରବେଇ ଖବେଇ ହୁଅନ୍ତି । କଥାରେ କହନ୍ତି—"ଯିଏ ଯାହାକୁ ଦେଖି ନ ପାରେ, ଅଙ୍କାର ବାଟରେ ଉଲୁଣୀ ମାରେ ।" ସେ ସବୁକଥା ଭୁଲି, ସରକୁ ହୃଦୟରେ ଚାକି ଧରିଲେ । ତା କାନ ପାଖେ ଧୀରେ ଧୀରେ କହିଲେ, ମାମି, ଯା, ଖାଇବୁ । ବୋଉ ପରା ରାଗିଲାଣି ?

ଦାଦାକୁ ଦେଖିଲେ ସରର ଅବାଧ୍ୟତାର ମାତ୍ରା ବଢ଼ିଯାଏ । ସେ ଗୋଙ୍ଗେଇ ଗୋଙ୍ଗେଇ କହିଲା, ନାଇଁ, ମୁଁ ତୋ ସଙ୍ଗେ ବସିବ । କିଛି କ୍ଷଣ ଚନ୍ତାକରି ବପ୍ରଚରଣ ଅତ୍ୟନ୍ତ ନମ୍ର ସ୍ୱରରେ କହିଲେ, ମୋ ଦେହ ଆଜି ଭଲ ନାହିଁ ।

ଦାଦାର ପିଠିରେ ଗୃମୁଡ଼ା ମାରି ସର କହିଲା, ତୁ ପରା କୁଆଡ଼େ ମିଛ କହୁ ନାହିଁ । ? ସେଦିନ କହୁଥିଲୁ ମୁଁ ତୋ ବୋଉ ବୋଲି । ହଁ ଦାଦା, ତୁ ମୋ ପୁଅ । ନଇଲେ ମୁଁ ତୋ ଝିଅ ହେବି, ଏଁ ?

ଆର ଘରୁ ଅଭୟଚରଣ ଡାକିଲେ, ବପ୍ର, ଇଆଡ଼େ ଅଇଲୁ ।

ବପ୍ରଚରଣ ସରକୁ କାଖରୁ ଓହ୍ଲାଇ ଆର ଘରକୁ ଗଲେ ।

ବପ୍ର ଭାଇଙ୍କର ପାଦଧୂଳି ଗ୍ରହଣ କରି କାନ୍ଥକୁ ଆଉଜି ଠିଆହେଲେ । ଝାଳକୁ ଅନାଇଁ ଚିନ୍ତାକଲେ, ଅଳି କପଟ ଭାବରେ କଥାଭାଷା କରିବେ । ଭାଉଜବୋଉ ମୁହଁ ଲଦି ବସି ଗୁଆ ଭାଙ୍ଗୁଛନ୍ତି । ଅଭୟଚରଣ ବପ୍ରଚରଣଙ୍କ ଗୋଡ଼ରୁ ମୁଣ୍ଡଯାଏ ଅନାଇଁ ଅନାଇଁ କହିଲେ, କହୋ, ଆଜିକାଲି ତମେ ସ୍ୱରାଜ ହେଲଣି ପରା । ହୁଁ, ବାପ ଅଜାଙ୍କ ନାଁ ପକାଇବ ! ବେଶ୍ ବେଶ୍ , ବୁଝିଲ ନା ସାଧୁବୋଉ, ଆମ ବପ ଏଥର ସରକାରଙ୍କୁ ଦେଶରୁ ତଡ଼ିବେ ! ହାଃ-ହାଃ-ହାଃ, ଏହିକ୍ଷଣି କଅଣ ସବୁ ହଉଚି ?

ବପ୍ରଚରଣ କହିଲେ, ଆଜ୍ଞା, ନା, କିଛିନାହିଁ । କଲେଜରେ ନାଁ ଲେଖା ହୋଇପାରିଲା ନାହିଁ । ଟଙ୍କା ଅଭାବରୁ ପରୀକ୍ଷା ଦେଇପାରିଲି ନାହିଁ । କଟକରେ ବସି ବିରକ୍ତ ଲାଗିଲାରୁ......

ପୁଣି ଚାଲିଆସିଛୁ ହାଓ୍ୱା ଖାଇବାକୁ ? ଭଲ ଭଲ ! ହଁ, ମୁଁ ଶୁଣୁଛି, ତୁ ମୋର ବାର ନିନ୍ଦା କରି ବନ୍ଧୁବାନ୍ଧବଙ୍କ ଆଗରେ କହୁଛୁ । ଏ ନେଇ ଆମ ମନରେ ଭାରି କଷ୍ଟ, ନା କଅଣ କହୁଛ ସାଧୁବୋଉ ? ଏଡ଼େଟିରୁ ଏଡ଼େଟିଏ କଲି । ମୋର ଯଥାସାଧ୍ୟ ଚେଷ୍ଟାକରି ମାସକୁ ମାସ ପାଞ୍ଚ ବୋଲି ଠିକ୍ ନାହିଁ ଦଶ ବୋଲି ଠିକ୍ ନାହିଁ, ଟଙ୍କା ପଠାଇ, ସ୍କୁଲ କଲେଜରେ ପାଠ ପଢ଼ାଇଲି, ତଥାପି ବାରଲୋକଙ୍କ ଆଗରେ ମୋର ନିନ୍ଦା କରୁଛୁ ? ହୁଁ, ହଇରେ, ବାପେ ମଲାବେଳକୁ ତୁ ଥିଲୁ କେଉଁଠି ? ସମସ୍ତେ ବାଡ଼ ବନ୍ଧ ଦେଣା ପଣ ସୁଝି ସାରିଲା ବେଳକୁ ଦାଉଁକି ଲୋକ ଚଳିବାକୁ ବି ଘରେ ଦାନା ନାହିଁ । କରେ କଅଣ ? ଏକା ତୋଓର ଏଇ ଭାଉଜବୋଉ, ଯେ ପୁଅ, ସେ ଦିଅର, ଏପରି ପ୍ରଭେଦ ସେ ମରିବେ ପଛେ କରିବେ ନାହିଁ । ତଥାପି ଯା' ତା ଆଗରେ ତାଙ୍କ ନିନ୍ଦା ଗାଇ ହେଉଛୁ ?

ଭାଇ, ମୁଁ ତ କାହା ଆଗେ କିଛି କହିନାହିଁ ।

ହୁଁ, ତୁ ଏବେ ନ ମାନିବୁ, ସେଥିକି କାହା ଗୁହାରି । ମୁଁ ନିଜେ ଶୁଣିଛି । ତୋ ଭାଉଜବୋଉ କେତେଥର ଶୁଣିଛନ୍ତି । ତୁ ଯାହାଙ୍କୁ ବିଶ୍ୱାସରେ କହୁ ସେହିମାନେ ଆସି କହନ୍ତି । ହଇରେ, ତୁ ପାଠ ଛାଡ଼ିଲୁ, ମୁଁ ସେଥିକି କଅଣ କରିବି ? ମୋର ବଳ ପାଉଥିଲା ପଢ଼ାଉଥିଲି, ବଳ ନ ପାଇଲା ନ ପଢ଼ାଇଲି ।

ଭାଇ, ମୁଁ ଶପଥ କରି କହିପାରେ, ଆପଣଙ୍କର ନିନ୍ଦା କି ଭାଉଜବୋଉଙ୍କର ନିନ୍ଦାକଥା ଆଜିଯାଏ କାହା ଆଗରେ ମୁଁ କହିନାହିଁ ।

ସ୍ୱରାଜୀ ଲୋକମାନେ ଦେବାଦେବୀ କିଛି ମାନନ୍ତି ନାହିଁ । ଯିଏ ସରକାରକୁ ନ ମାନେ, ସିଏ କଅଣ ଦେବାଦେବୀଙ୍କୁ ମାନୁଥିବ ଯେ ଶପଥଟା ବଡ଼ କଥା ହୋଇଗଲା !

ବିପ୍ରଚରଣ କାନ୍ଦି ପକାଇଲେ । କୌଣସି ପ୍ରକାର ମିଥ୍ୟା ନିନ୍ଦା ସେ ସହି ପାରନ୍ତି ନାହିଁ । ସେ କହିଁ କହିଁ ହୋଇ କାନ୍ଦି କହିଲେ, ମୋର କଥାରେ ଆପଣ ବିଶ୍ୱାସ କରନ୍ତୁ ।

ମୋଟା ଦେଈ ପାନରେ ଚୂନ ଲଗାଉ ଲଗାଉ କହିଲେ, ଆମେ ସବୁ ତା ହେଲେ କଅଣ ମିଛୁଆ, ବିପ ?

ବିପ୍ରଚରଣ ଲୁହ ପୋଛି କହିଲେ, ଆପଣଙ୍କୁ ମିଛୁଆ କହିଲେ ମୋର ପାପ ହେବ ଭାଉଜବୋଉ । ଯିଏ ଆସି ମୋ ନାମରେ ଲଗାଇ କରି କହୁଛି, ସେମାନେ ମିଛୁଆ ।

ମୋଟା ଦେଈ ଚକ୍ଷୁରୁ ଲୋତକ ଗଡ଼ାଇ ଆଖି ପୋଛୁ ପୋଛୁ ହସି ହସି କହିଲେ, ଏକା ସଚ୍ଚିଆ ତମେ ।

ବିପ୍ରଚରଣ ଏଥର କାନ୍ଦ ବନ୍ଦକରି ଦୃଢ଼ ସ୍ୱରରେ ଭାଇଙ୍କୁ କହିଲେ, ଭାଇ, ମୋ ଦେହରେ ଜୀବନ ଥିବାଯାଏ ମୁଁ ଆପଣଙ୍କର ପ୍ରଶଂସା ବ୍ୟତୀତ ନିନ୍ଦା କରିବି ନାହିଁ । ଏତେ ଜନକେ ଆପଣଙ୍କ ଆଗରେ ମୁଁ ମୋର ମନ ଖୋଲି କହୁଛି, ବିଶ୍ୱାସ କରନ୍ତୁ । ଲୋକେ ଅନେକ ସମୟରେ ଆପଣଙ୍କର ନିନ୍ଦାକରି ମୋ ଆଗରେ କହନ୍ତି । ମୁଁ ସେମାନଙ୍କ କଥାରେ କାନ ନ ଦେଇ, ବରଂ ସେମାନଙ୍କୁ ଶୋଧେ, ସେମାନଙ୍କ ଆଗରେ ଆପଣଙ୍କର ପ୍ରଶଂସା କରି କହେ । ତଥାପି ଦୋଷ ମୋର ?

ଅଭୟଚରଣଙ୍କର ମୁହଁ କଳାକାଠ ପଡ଼ିଗଲା । ସେ ଟିକେ ଦବିଯାଇ କହିଲେ, ହୁଁ, ଲୋକେ କରନ୍ତି ମୋ ନିନ୍ଦା, ହଇରେ, ଲୋକେ କରନ୍ତି ମୋ ନିନ୍ଦା ? ଭଲ ହବ ନାହିଁ, ଭଲ ହବନାହିଁ । ବୁଝିଲନା ସାଧୁବୋଉ, ଲୋକେ ଯାହାର ଖାଆନ୍ତି ତାଆରି ନିନ୍ଦା କହି ବୁଲନ୍ତି । ହଇରେ, ତତେ ମଣିଷ କିଏ କଲା ? ହୁଁ, ହଇରେ, କାହାନେଇ ଅକ୍ତ ତୋଓର ଏ ତୋଡ଼ ?

ମୋଟା ଦେଈ କହିଲେ, ଆମେ ଆଉ କୋଉ ନିନ୍ଦା କାମଠା କରି ପକାଇଛୁ ଯେ, ତମେ ଆମର ପ୍ରଶଂସା କରି ଅଧିକା କରି ପକାଇଲ ? ତୁମ ଭାଇଙ୍କ ପରି ଗୋଲା ମଣିଷ କଳିକାଳରେ ଆଉ ଜଣେ କୋଉଁଠୁ ବାହାର କର । ହଁଅ ନା…?

ତମ ଭାଉଜଙ୍କ ପରି ସ୍ନେହୀ ଲୋକ—ଅଭୟଚରଣ ମୁଣ୍ଡ ହଲାଇ ବାକ୍ୟଟି ଶେଷ କଲେ ।

ଅଭୟଚରଣ ପୁଣି କହିଲେ, ପଟାପଟି ତ ସରିଲା, ଏବେ ଗୁଡ଼କର ବାକିଟିର ଯୋଗାଡ଼ ଚାଲିଛି ନା ? ବସି ଖାଇଲେ ନଦୀବାଲି ସରେ । ଏଣିକି ମୁଁ ଆଉ ପାରିବି ନାହିଁ । ହୁଁ, ପେଟରେ ଗୋଟିଏ କଥା ରଖି ମୁହଁରେ ଆଉ ଗୋଟିଏ କଥା କହିବା ମୋର ଅଭ୍ୟାସ ନୁହେଁ । ଏଥର ତମେ ଜମିର ବାଟ କାଟ । ଭାଇ ବୋଲି ଯଦି ସ୍ନେହ ଶରଧା ହୁଏ ବେଳେ ବେଳେ ପଚାରିବ କି ନ ପଚାରି ପାରି,

ମୋ ମନରେ କିଛି କଷ୍ଟ ହେବନାହିଁ । ନା କଣ କହୁଛ ସାଧୁବୋଉ ? ମୁଁ ଆଉ ପାରିବ ନାହିଁ ।

ମୋତା ଦେଈ ନିରୁତ୍ତର ରହିଲେ । ଭାଇଙ୍କର ମନକଥା ବୁଝି ବିପ୍ର କହିଲେ, ଆପଣ ମୋ ବିଷୟରେ ଏଣିକି ନିଶ୍ଚିନ୍ତ ରହନ୍ତୁ । ମୋ ଜୀବନରେ ମୁଁ ଯାହା ଅର୍ଜ୍ଜନ କରିବ ସେ ସବୁ ଆପଣଙ୍କର । ମୋତେ ଚିରଜୀବନ ଋଣୀ କରିଛନ୍ତି ।

ମୋତା ଦେଈ ହସି ହସି କହିଲେ, ଆଉ ରାତି ବେଶି ହେଲାଣି । ଆସ ଖାଇବ । ଭାତ ତ କାଞ୍ଜିପାଣି ହେବଣି । ମୁଁ ଯାଏ, ଭାତ ବଢ଼ାଏଁ—।

ମୋତା ଦେଈ ଉଠି ଚାଲିଗଲେ । ଅଭୟଚରଣ ବିପ୍ରଚରଣଙ୍କୁ ଅନ୍ୟ କୌଣସି ପ୍ରଶ୍ନ ନ କରି କହିଲେ, ଯାଅ, ଖାଅ ଯା ।

ବିପ୍ରଚରଣ ସେ ଘରୁ ବାହାରି ଆସିବା ସଙ୍ଗେ ସଙ୍ଗେ ସରି ପିଅଦା ପରି ତାଙ୍କ ପଛରେ ଲାଗିଲା । ତାର ସେହି ଗୋଟିଏ ଅଳି, ମୁଁ ତୋ ସଙ୍ଗରେ ଖାଇବ । ବିପ୍ରଚରଣ ଆଉ ସବୁ କଥା ଭୁଲି ସରିକୁ କୋଳ କରି କହିଲେ, ମାମି, ମୁଁ ପରା ତୋ ପୁଅ ?

ସରି କହିଲା, ହିଁ ଅ— ।

ବିପ୍ରଚରଣ ଧୀରେ ଧୀରେ ତା କାନ ପାଖରେ କହିଲେ, ମାମି ମ, ତୁ ଯେଉଁଦିନ ଘର କରିବୁ, ମୁଁ ତୋ ଘରକୁ ଯିବି ଯେ, ମୋତେ ଶୋଇଦେବୁ, ଏଁ—? ତୁ ପରା ମୋ ବୋଉ ?

ହଉ ଦାଦା, ମୁଁ କୋଉ ଦିନ ଘର କରିବ ?

ବିପ୍ରଚରଣ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ମୋତା ଦେଈ ଉପସ୍ଥିତ ହୋଇ ମା ପୁଅଙ୍କର ମଧୁରାଳାପରେ ବାଧାଦେଲେ । ସରିର ହାତ ଧରି ଓଟାରି ନେଇ ଟିକିଏ ବିରକ୍ତ ହୋଇ କହିଲେ, ଆ, ଗିଳିବୁ ।

ସରି ନିଃସହାୟ ଲୋଚନରେ ଦାଦାକୁ ଚାହିଁ ରୋଷଘରେ ପ୍ରବେଶ କଲା ।

ସାଧୁଚରଣ ଡାକିଲେ, ଦାଦା, ଶୁଣନ୍ତୁ— ।

ବିପ୍ର ପଢ଼ାଘରେ ପ୍ରବେଶ କରିବାରୁ ସାଧୁଚରଣ ବିନୀତ ହୋଇ କହିଲେ, ମୁଁ ଆପଣଙ୍କୁ ଯାହା ଦେବି ନେବାକୁ ହେବ ।

ବିପ୍ରଚରଣ କହିଲେ, ହଁ, ନେବି; କିନ୍ତୁ ଯାହା ଦେବୁ, ସେ ଯଦି ତୋ ନିଜର ଅର୍ଜିତ ହୋଇଥାଏ, ତେବେ ।

ସାଧୁଚରଣ କହିଲେ, ଯଦି ଶିବପ୍ରସାଦ ବାବୁ ଆପଣଙ୍କର ସହାୟ ନ ହୁଅନ୍ତି, କଅଣ କରିବେ ?

ବିପ୍ରଚରଣ ତାଙ୍କୁ କୋଳ କରି ହସି ହସି କହିଲେ, ମଣିଷର ଅଙ୍ଗପ୍ରତ୍ୟଙ୍ଗ ସକଳାଙ୍ଗ ନ ହେବାଯାଏ, ସେ ଯଦି ନିଜର ଉଦ୍ଦେଶ୍ୟ ସାଧନ କରି ନ ପାରେ, ତେବେ ସେ ପଶୁ । ମୋତେ ବିଦାୟ ଦେ । ରାତି ଅଧିକ ହେଉଛି ।

ଅଖିଅ ? ······ପୁଣି ବିପ୍ରଚରଣଙ୍କର ପଦତଳେ ମୁଣ୍ଡ ଲଗାଇ କହିଲେ, ହଁ ଦାଦା ଅଖିଅ ଯାଅନ୍ତୁ । ସ୍ନେହଠାରୁ ଭୋଜନ ବଡ଼ ନୁହେଁ ।

ବିପ୍ରଚରଣ ସାଧୁଚରଣଙ୍କୁ ଆଲିଙ୍ଗନ କରି ଅନ୍ୟ କାହାକୁ ନ ଜଣାଇ ବିଦାୟ ଗ୍ରହଣ କଲେ ।

୪

କୋକିଳ ଅଳ୍ପବୟସ୍କା ବାଳିକା । ଅନାଥିନୀ ହୋଇ ସେ ବାଟରେ ବୁଲୁଥିଲା । ଅହା ବୋଲି ପଦେ କହିବାକୁ ତାର କେହି ନ ଥିଲେ । ଦୈବୀ ଯୋଗ । ଦିନକର ଅନଦୃତ ସେ ଆସି ଜଣେ ମାଉସୀଙ୍କ ହାବୁଡ଼େ ପଡ଼ିଲା ।

ଏହି ମାଉସୀ ଆଖି ଶପିଶପି ଦିବିନ୍ଦୁ ଲୁହ କାଢ଼ି କୋକିଳର ସବୁ ଦୁଃଖ ଶୁଣି ନିଜେ ସମଦୁଃଖ ପ୍ରକାଶ କଲେ । କୋକିଳ ପିନ୍ଧିଥିବା ଛିଣ୍ଡା ମଇଳା ଲୁଗାର କାନିରେ ଦୟାବନ୍ତ ଝିଅଟିର ମୁହଁଟି ପୋଛି କହିଲେ, ଅହା ମା, ପିଲାଦିନୁ ନିଆଁ ଲଗା ଦଇବ ତୋତେ କେତେ ଦୁଃଖ ଦେଲା ! ହଉ, ଦୁଃଖ କରିଥିଲେ ସୁଖ ମିଳେ । ନାଁ, ନାଁ, ଏଥର ଆଉ ତୋତେ ଏ ଘର ସେ ଘର ବୁଲିବାକୁ ମୁଁ ଛାଡ଼ି ଦେବି ନାହିଁ । ମୋର ପିଲା ପାଞ୍ଚୋଟି ଯେମିତି, ତୁ ବି ତାଙ୍କପରି ଜଣେ ସେମିତି ।

ଲୋକେ କହନ୍ତି, ମାଉସୀ ପିଲାଛୁଆବାଲି । ପିଲାଛୁଆଙ୍କ ନେଞ୍ଜରା ସହି ନ ପାରି ସେ ମନେ ମନେ କାହାକୁ ଖୋଜୁଥିଲେ । କପାଳକୁ ଆସି କୋକିଳ ଯୁଟିଲା । କୋକିଳ ମାସ ଗୋଟାକରେ ସବୁ ଠଉରାଇ ନେଲା । ବଜାର କରିବା, ବାସନ ମାଜିବା, ପିଲାଛୁଆଙ୍କୁ କାଖ କରିବା, ବେଳ ପଡ଼ିଲେ ମାଉସୀଙ୍କର ଗୋଡ଼ ଘଷିବା ଇତ୍ୟାଦି ନାନାପ୍ରକାର ଘରକାମ ସେ କରେ । ମନରେ ଦୁଃଖ ନ ଥାଏ । ମୁହଁ ସବୁବେଳେ ହସ ହସ । ମନ ପ୍ରଫୁଲ୍ଲ । ବିନା କାରଣରେ ମାଉସୀ ଗୁରପଦ କହି ଗଲେ, କି ଗୁଳମାଡ଼ ମାରିଗଲେ, ସେ ଊଁ ଚୁଁ ନ ହୋଇ ସବୁ ସହି ଯାଉଥିଲା । ଦାଣ୍ଡଲୋକେ ଅଲଣା ସ୍ନେହ ଦେଖାଇ ମାଉସୀଙ୍କୁ କଥାରେ କଥାରେ କିଛି କହିଲେ କୋକିଳ ଅଗଭର ହୋଇ ମୁହେଁ ମୁହେଁ କହିଦିଏ, ମୋ ମାଉସୀ ମତେ କହିଲା, ତମର ସେଥିରେ ଥାଏ କଅଣ ? ସେ ଦିନ କୋକିଳର ଭାଗ୍ୟକୁ ମୁଠିଏ ଭଲ ପଖାଳ ମିଳେ; ନୋହିଲେ ସବୁଦିନ ପରି ପିଲାଛୁଆଙ୍କ ଛାଡ଼ ଖାଇଥିବା ଅଇଁଠା ଭାତ । କାହିଁରେ କୋକିଳର ଆପତ୍ତି ନ ଥାଏ ।

ଘରେ ସେ ଦୁଇବର୍ଷ କାଳ ରହିଲା; ତଥାପି ତାର ଦୁଃଖ ଫେରିଲା ନାହିଁ । ମନରେ ଭବିଷ୍ୟତ ଆଶା ପୋଷି ସେ ପୂର୍ବପରି ଆନନ୍ଦରେ ସମସ୍ତ କଟାଉଥାଏ ।

ଭବିଷ୍ୟତ ଆସି ବର୍ତ୍ତମାନରେ ପରିଣତ ହେଲା । ମାଉସୀ କହିଲେ, ଏଁ, ବଡ଼ିଲା ଝିଅ. ପଥର ବୋଝ । ବଢ଼ିଲା ଝିଅର ନିଃଶ୍ୱାସ ନାଗସାପର ନିଃଶ୍ୱାସ । ମଉସା ପାତ୍ରଟିଏ ଖୋଜୁ ଖୋଜୁ ନିଜେ ରସାନନ୍ଦ ବାବୁ ଆସି ପ୍ରାର୍ଥୀ ହେଲେ । ନିର୍ବିଘ୍ନରେ ଆଜକୁ ପ୍ରାୟ ଦୁଇବର୍ଷ ହେବ ବାହାଘର ହୋଇ ଯାଇଛି । ବେଳ ନାସ୍ତି ହେଲା ପରି । ବାହାଘରର ପରଦିନଠାରୁ ମଉସା ମାଉସୀ ନିଶ୍ଚିନ୍ତ । କୋକିଳ ଦେଈଙ୍କର ମଙ୍ଗ ହଜିଲା ଖବର ବୁଝନ୍ତି ନାହିଁ । କୋକିଳ ଦେଈ ସେଥିରେ ମନ ଦୁଃଖ କରିବେ କାହିଁକି ? ତାଙ୍କ ଜାଣିବାକୁ ତାଙ୍କର କେହି ନାହିଁ ।

ଯେଉଁ ରସାନନ୍ଦ ବାବୁଙ୍କ ହାତ ସେ ଧରିଥିଲେ, ତାଙ୍କ କଥା କହିଲେ ନ ସରେ । ତାଙ୍କୁ ବାର ମାସରେ ତେର ରୋଗ । ସେ ଅବା କରିବେ କଅଣ ? ନିଜ ସୁନା ଭେଣ୍ଡି ହେଲେ ଦୋଷ କାହାର ? ଏଥିରେ କୋକିଳ ଦେଈଙ୍କ ଅବସ୍ଥା ବଦଳନ୍ତା କିପରି ? ଅବଶ୍ୟ ଘରର ସବୁ ଭାର ତାଙ୍କ ଉପରେ । ମନ କଲେ, ଇଚ୍ଛା ମାଫି ଖାଇ ପିନ୍ଧି ସେ ବେଶ ଭଲରେ ରହି ପାରନ୍ତେ । ମାଇପି ଜାତିର ଖାଇବା ପିନ୍ଧିବାଟା ବଡ଼କଥା ନୁହେଁ । ଯୁବତୀମାନଙ୍କୁ ଯାହା ବଡ଼, କୋକିଳ ଦେଈଙ୍କର ସେହି କଥାଟିର ଅଭାବ । ପ୍ରାଣପଣେ ସେ ସ୍ୱାମୀଙ୍କ ସେବାରେ ଲାଗିଥାନ୍ତି । ବେଳ ଜାଣି ଔଷଧ ଦେବା, ଖାଇବା ପିନ୍ଧିବା ଖବର ଯୀତମତ ବୁଝିବା, ଘଷା ଆଉଁଷା କରିବା, ଏହିପରି କେତେ ପ୍ରକାର କାମ । ରସାନନ୍ଦ ବାବୁ ସକାଳୁ ଉଠି ସ୍ନାନ ଭୋଜନାଦି କାର୍ଯ୍ୟ ଶେଷକରି ଅଠଟା ବେଳକୁ ବାଡ଼ି ଖଣ୍ଡିଏ ଠୁକୁଠୁକୁ କରି ମଠକୁ ଯାଆନ୍ତି । ଫେରୁ ଫେରୁ ପ୍ରାୟ ରାତି ଅଠଟା । କେବେ କେବେ ନଅଟା ବାଜିଯାଏ ।

ରସାନନ୍ଦ ମଠରେ ବୋଲାଟିଏ ପ୍ରସାଦ ସେବା କରନ୍ତି । ଏହି ସମୟତକ କୋକିଳ ଦେଈ ଏକୁଟିଆ କଟାନ୍ତି । କଅଣ କରିବେ ? ହସିକରି ପଦେକଥା କହିବାକୁ ସାଙ୍ଗସାଥୀ କେହି ନାହିଁ । ପୁଣି ସହରରେ କଅଣ ସାଙ୍ଗସାଥୀର ଅଭାବ ? କହନ୍ତି ପରା, ବନ ପୋଡ଼ିଲେ ସମସ୍ତେ ଜାଣନ୍ତି, ମନ ପୋଡ଼ିଲେ ଜାଣିବ କିଏ ? ନିଜ ଦୁଃଖକୁ ହାରଗୁହାରି ନାହିଁ; ସାଙ୍ଗସାଥୀ ଖୋଜିଛନ୍ତି କେଉଁଠୁ ? ରସାନନ୍ଦ ମଠକୁ ଗଲେ, କୋକିଳ ଦେଈ ଘର ଧନ୍ଦାରେ ଲାଗିଯାନ୍ତି । ଦୁଇ ପ୍ରାଣୀ କୁଟୁମ୍ବ । ସେଥିକି ବା ଘରଧନ୍ଦା କଅଣ ଅଛି ? ତଥାପି ସମୟ କାଟିବାକୁ ହେବ । ବାସନ କୁସନ ମାଜିବା, ଘରକୁ ସାତଥର କରି ଓଳେଇବା, କୂଅରୁ ପାଣି କାଢ଼ିଆଣି ହାଣ୍ଡି କୁଣ୍ଢେଇ ଧୋଇବା, ନୋହିଲା ବେଳକୁ ବୁଥାରେ ହେଲେ ଡାଳିମ୍ବ ଗଛ ମୂଳରେ ମନ୍ଦା ଖୋଳି ଲୋଟା ଲୋଟାକରି ପାଣି ଟାଳିବା ଏଇ ତ କାମ ।

କାମରେ ମନ ଦେଲେ, ମନରେ ଦୁଃଖ ସନ୍ତାପ ପଶିବାକୁ ବେଳ ପାଏ ନାହିଁ । ଯେତେ ହେଲେ ସମୟ ଅଛି ଯାଏ ନାହିଁ । ସଜେଠ କି ଅଦଉତି ସାଧିବାକୁ ସେ କାହୁଁ କାହୁଁ ମାଡ଼ି ଆସେ । କୋକିଳ ଦେଈ କରିବେ କଅଣ ? ପଞ୍ଚିମପଟ

ଘରେ ଝରକା ପାଖରେ ଯେଉଁ ଖଟଟି ପଡ଼ିଛି, ତାହାର ଉପରେ ଖଣ୍ଡେ ସପମସିଣା ପକାଇ ଶୋଇବାକୁ ଚେଷ୍ଟା କରନ୍ତି । ନିଦ ବି ଉଗାଣ ହୁଏ । ଏକର ସେକର ହୋଇ ଖଟ ଉପରେ ଛଟର ପଟର ହେବା ହିଁ ସାର ହୁଏ । ମନକୁ ପ୍ରବୋଧ ଦେଇ ଆଖିବୁଜି ଖଣ୍ଡେ ପୁରୁଣା ମସିଆ ତକିଆ ଦେହରେ ମୁହଁ ମାଡ଼ି ପଡ଼ନ୍ତି । ଆଖିରୁ ଲୁହଧାର ଗଡ଼ି ତକିଆ ତିନ୍ତିଯାଏ ।

ସେ ଉଠି ବସନ୍ତି । ଘଡ଼ିଏ କାଳ ଝରକାବାଟେ କାହାକୁ ଅପେକ୍ଷା କଲା ପରି ଅନାଇ ରହନ୍ତି । ପୁଣି ସହରର ରାସ୍ତା, ପ୍ରତି ମୁହୂର୍ତ୍ତରେ ଦେଶୀ ବିଦେଶୀ କେତେ ବା ଲୋକ ନ ଯାଉଛନ୍ତି ମାତ୍ର । ସେ କାହାକୁ ଦେଖି ପାରନ୍ତି ନାହିଁ । ଆଖି ସିନା ରାଜପଥ ଉପରେ, ମନ ଯାଇ କେତେଆଡ଼େ ଭ୍ରମୁଥାଏ । ବିରକ୍ତ ହୋଇ ଖଟ ଉପରୁ ଉଠି ଆସନ୍ତି । ଦାର୍ଢ୍ୟତାଭକ୍ତି ଖଣ୍ଡି କାଢ଼ି ପୁଣି ଖଟ ଉପରେ ଶୋଇ କ, ବ, ଚ କରି ଅକ୍ଷର ଚିହ୍ନି ଚିହ୍ନି ପାଞ୍ଚ ଦଶପଦ ନ ପଢୁଣୁ ନିଦ ଆସେ ।

ଉଠିଲା ବେଳକୁ ଦିନ ଶେଷ । ନଳଟଣିକୁ ଭଲକରି ପୋଛି, କାଚକୁ ତିନିଥର କରି ଚୂନ ଦେଇ ସଫାକରି ଶେଷକୁ ଲଗାନ୍ତି । ତା ପରେ କରିବେ କଅଣ ? ପୁଣି ଆରମ୍ଭ ହୁଏ ଘର ପହଁରା ଇତ୍ୟାଦି । ପ୍ରାୟ ରାତି ଆଠଟା ବେଳକୁ ରସାନନ୍ଦ ଆସି କବାଟରେ ହାତ ମାରନ୍ତି । ତାଙ୍କର ଖଣ୍ଡି କାଶ ଓ ବାଡ଼ି ଠକ୍ ଠକ୍‌ରେ ସ୍ୱତନ୍ତ୍ରତା ଅଛି । ଏହା କେବଳ କୋକିଳ ଦେଈଙ୍କୁ ଜଣା । ରସାନନ୍ଦଙ୍କୁ ଦେଖିଲେ, ତାଙ୍କର ଗୋଡ଼ ହାତ ଚଳେ ନାହିଁ । ଆଖିରୁ ଲୁହଧାର ବହେ । ମନକୁ ମନ କହନ୍ତି, ଆହା ମୋ ଭାଗ୍ୟରେ ଏହା ହିଁ ଥିଲା ! ଆଉ କିଛି କହନ୍ତି ନାହିଁ । ନୀରବରେ କର୍ତ୍ତବ୍ୟ କର୍ମରେ ଲାଗିଯାନ୍ତି । ଗୋଡ଼ ହାତ ଧୋଇବା ପାଇଁ ପାଣି କାଢିଦେବା, ଔଷଧ ଖାଇବାକୁ ଦେବା ଓ ବିଛଣା ପାରିବା ଇତ୍ୟାଦି କାମ ନୀରବରେ ସମାପ୍ତ ହୁଏ ।

ରସାନନ୍ଦ କିଛି ପଚାରିଲେ, କୋକିଳ ତାର ଠିକ୍ ଜବାବ ଅତି ଧୀରେ ଅତି କୋମଳ ସ୍ୱରରେ ଦିଅନ୍ତି । ଦୁହିଙ୍କ ମଧ୍ୟରେ କଥୋପକଥନ ଅଳ୍ପ ହୁଏ । ରସାନନ୍ଦ ଖଟ ଉପରେ ଶୋଇ ପଡ଼ନ୍ତି । ନଳଟଣିଟି ଥାକ ଉପରେ ରଖି କୋକିଳ ପଦସେବା କରିବାରେ ଲାଗିଯାନ୍ତି । ବାବୁଙ୍କର ଶୀର୍ଣ୍ଣ ଅଙ୍ଗ କୋଟରଗତ ଚକ୍ଷୁ ଓ ମଳିନ ମୁଖ ଦେଖି କୋକିଳ କେତେ କଅଣ ଭାବନ୍ତି । ମଣିଷର ମନ, କେତେ ପାପ ଛୁଏଁ । କୋକିଳ ଦେଈ ଚମକି ଉଠନ୍ତି, ଦେଖନ୍ତି ସେ ପୂର୍ବପରି ଶୋଇ ଘୁଙ୍ଗୁଡ଼ି ମାରୁଛନ୍ତି । ରାତି ଅଧ ହୁଏ । କୋକିଳ ଦେଈ ଧୀରେ ଧୀରେ ଖଟ ଉପରୁ ଉଠି ନଳଟଣି କମାଇ ଦିଅନ୍ତି । ସିମେଣ୍ଟ ଚଟାଣ ଉପରେ କାନି ପାରି ଶୋଇ ପଡ଼ନ୍ତି ।

ରବିବାର ଦିନ ବାବୁ ଡେରିକରି ଯାଆନ୍ତି । ଅସିଲାବେଳକୁ ଅସନ୍ତି ସହିଲ । ଏହି ଦିନ ଅନନ୍ଦରେ ପଦେ ଅଧେ କଥାଭାଷା କରିବାକୁ ଫୁରସତ୍ ମିଳେ । ମାତ୍ର ଅନନ୍ଦଟା ଦୁଇ ତରଂଫରୁ ଦେଖାଣିଆଁ । ସ୍ତ୍ରୀଙ୍କ ଉପରେ ସୋହାଗ କରିବାକୁ ବାଧ୍ୟ ହୋଇ ହସି କହନ୍ତି, ଦେଖ, ନିଜ ଦେହର ଯତ୍ନ ନିଅ, ଯିଏ ଦେଖିବ କହିବ କଅଣ ? କୋକିଳ ସ୍ମିତ ହସି କହନ୍ତି, ଅମେ ମାଇପି ଜାତି, ନିଜ ଦେହକୁ ଅନାଉଁ ନାହିଁ । ଯାହାକୁ ଦେବତା ବୋଲି ଅମେ ମାନି ନେଉ ତାଙ୍କର ଦେହ ଭଲ ଥିଲେ, ଅମର ସବୁ ଭଲ ।

ରସାନନ୍ଦ କହନ୍ତି, ହଁ, ତା ନୁହେଁ କଅଣ, ତେବେ—ଠେଁ ଠେଁ ସ୍ୱରରେ କହନ୍ତି, କବିରାଜଙ୍କର ଏହି ନୂଆ ଔଷଧ ବେଶ ଭଲ; ଦଶଟଙ୍କା ନେଉନ୍ତି ପଛେ ଉପକାର ବେଶ ହେଉଛି ବୋଲି ମୋର ମନେ ହୁଏ । ଦେହରେ ଜୋର୍ ନ ଥିଲା ଟିକିଏ ଜୋର ହୋଇ ଅସୁଛି ।

ରସାନନ୍ଦ ଭଲକରି ଜାଣନ୍ତି କୌଣସି ଔଷଧରେ ତାଙ୍କର ଦେହ ଭଲ ହେବ ନାହିଁ । ଦିନୁ ଦିନୁ ତାଙ୍କର ଦେହିକ ଶକ୍ତି କ୍ଷୟ ହେଉଛି । ଯୁବତୀ ସ୍ତ୍ରୀଙ୍କୁ ସାନ୍ତ୍ୱନା ଦେବାକୁ ଓ ତା'ର ମନରେ ଭବିଷ୍ୟତ ଅଶା ଦୃଢ଼ୀଭୂତ କରିବାକୁ ସମୟ ସମୟରେ ଏପରି ଉତ୍ସାହିତ ନ କଲେ ନ ଚଳେ । କେଉଁ ସାହସରେ, କେଉଁ ଅଶାରେ, ସେ ତାଙ୍କର ତୀବ୍ର, ଯୌବନତରଳ ମନ ଓ ଅଥୟ ପ୍ରବୃତ୍ତିକୁ ପ୍ରବୋଧ କରି ଅଟକାଇ ରଖିବେ ? ରକ୍ତମାଂସଧାରୀ ମଣିଷ ଦେହ ! କୋକିଳ ସ୍ୱାମୀଙ୍କ ମନରେ ଦମ୍ଭ ଦେଇ କହନ୍ତି, ବେଶ୍ ଔଷଧ, ଠିକମତ ଏହାକୁ ବ୍ୟବହାର କଲେ, ଅତି ଅଳ୍ପ ଦିନରେ ଦେହ ଭଲ ହୋଇଯିବ ଯେ ! ସେ ଜାଣନ୍ତି, ଭଲ ହେବା ପରିବର୍ତ୍ତେ ବରଂ ତାଙ୍କର ଅବସ୍ଥା ଦିନୁଦିନ ଖରାପ ହେଉଛି ।

ସବୁବେଳେ ଚିନ୍ତା । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ କଥା ଭାବି ସେ ହତାଶ ହୋଇ ପଡ଼ନ୍ତି । ଘୁରିଅଡ ଅନ୍ଧାର ଦିଶେ । ଦୁଇକୂଳରେ ଅଗକୁ ପଛକୁ କେହି ନାହାନ୍ତି । ଏ କଥା ମନକୁ ଅସିଲେ, ଗୋଡ଼ ହାତ ଚଳେ ନାହିଁ । ଦେହର ବେଶଭୂଷାପ୍ରତି ସେ ହୁଅନ୍ତି ଅଯତ୍ନଶୀଳା । କୌଣସିମତେ ଜୀବନ ବଞ୍ଚାଇ ରଖିବାକୁ ମୁଠିଏ ଭୋଜନ ଓ ଲଜ୍ଜା ନିବାରଣ ପାଇଁ ଖଣ୍ଡିଏ ଲୁଗା ହେଲେ ହେଲା । ବିଳାସ କଅଣ ସେ ଜାଣନ୍ତି ନାହିଁ ।

ବିଟିନେ ଦିନେ ସେ ସଜଳ ଚକ୍ଷୁରେ ଭାବନ୍ତି, ତାଙ୍କ ସ୍ୱାମୀଙ୍କ କଥା । ଏତେ ବୟସରେ ଏପରି ସ୍ୱାସ୍ଥ୍ୟ ନେଇ ସେ ବିବାହ କଲେ କାହିଁକି ? ମାଉସୀ ବା ଏପରି ସ୍ଥାନ ଦେଖି ତାଙ୍କ ହସ୍ତରେ ସମର୍ପଣ କଲେ କାହିଁକି ? ବିବାହିତା ହୋଇ ମଧ୍ୟ ସେ କୁମାରୀ, ହୁଏତ ଚିରଦିନ ତାଙ୍କୁ ଏପରି କୁମାରୀ ହୋଇ ରହିବାକୁ ପଡ଼ିବ ।

ତାହା ହେଲେ ଏ ବୃଥା ବନ୍ଧନ ଡ୍ରାଏଁରେ ବାନ୍ଧି ବନ୍ଦୀ ହୋଇ ଓ ଚିରଦିନ ଦାସୀ ହୋଇ ରହିବା କି ଲୋଡ଼ା ? ଯେଉଁମାନେ ବାଧ୍ୟକରି ଏପରି ବନ୍ଧନରେ ତାଙ୍କୁ ବାନ୍ଧିଛନ୍ତି, ସେମାନେ ଏପରି କରିଛନ୍ତି କେବଳ ଦେଖି ନାହିଁ, ହେଲେ ଆଉ କଥାରେ ସାର୍ଥକତା କରି ନିଜେ ମୁକ୍ତ ହେବେ ବୋଲି ସିନା ! ମାତ୍ର, ଯାହା ନେଇ ଏତେ କଥା, ସେ ଯେ ଅଥଳ ଜଳରେ ପଡ଼ି ଢ଼ିବେଇଠୁବେଇ ହେଉଛି । ସେ କଥା ଦେଖୁଛି କିଏ ? ଦେଖିବାକୁ ବା ମନ କରୁଛି କିଏ ? ଯେତେ ଯାହା ଭାବିଲେ ସେ କିଛି ସ୍ଥିରକରି ପାରନ୍ତି ନାହିଁ, ମନ ଅଧିକ ଅକୁଳ ହୁଏ ।

ରବିବାର ।

କୋକିଳ ଦେଇ ଘରକାମ ଶେଷକରି ମଝିଘର ଝରକା ପାଖରେ ବସି ରାସ୍ତା ଉପରକୁ ଅନାଇଛନ୍ତି । ଉଦ୍‌ଭ୍ରାନ୍ତ ଚକ୍ଷୁରେ ସେ ରାସ୍ତା ଉପରେ କଅଣ ଦେଖୁଛନ୍ତି ? ରାସ୍ତା ଉପରେ ବା ଦେଖିବେ କଅଣ ? ସେ ଦେଖୁଛନ୍ତି ନିଜର ଭିତର, ବାହାର ସଙ୍ଗେ ସମ୍ପର୍କ ନାହିଁ । ସନ୍ଧ୍ୟାବାୟୁ ରାଜପଥ ଉପରୁ ଧୂଳି ଉଡ଼ାଇ ଝରକା ବାଟେ ଘର ଭିତରେ ପକାଉଛି, କୋକିଳଙ୍କର ଅନାବୃତ ଇତସ୍ତତଃ କେଶଗୁଚ୍ଛ ସଙ୍ଗେ ଫଗୁଖେଳ ଆରମ୍ଭ କରୁଛି । ଧୂଳିର ଆକ୍ରମଣରୁ ରକ୍ଷା ପାଇବାକୁ ସେ କ୍ଷଣକ ପାଇଁ ଆଖି ବୁଜି ଅବା ଆଖିରେ ହାତଦେଇ ବସୁଛନ୍ତି । ଧୂଳିର ବେଗ କମିଗଲେ, ମିଞ୍ଜିମିଞ୍ଜି କରି ଶେଷକୁ ଆଖି ଖୋଲି ପୂର୍ବପରି ବାଟକୁ ଚାହୁଁଛନ୍ତି ।

ରାସ୍ତା ଉପରେ କେତେ ପ୍ରକାର ଲୋକ ଅନବରତ ଚାଲି ଯାଉଛନ୍ତି, ତାର କଳନା ନାହିଁ । କଳନା କରିବାକୁ ଚେଷ୍ଟା କରିବ କିଏ, କାହିଁକି ? ସମସ୍ତେ ନିଜ କାର୍ଯ୍ୟରେ ବ୍ୟସ୍ତ । ବାଟୋଇଙ୍କ ଚଞ୍ଚଳ ଅବା ଅଳସ ଆଖି ମୁହୂର୍ତ୍ତିକ ପାଇଁ ତାଙ୍କ ଉପରେ ପଡ଼ୁଛି । କେହି ଅଳସ ପ୍ରକୃତିର ଲୋକ ରାଜପଥ ଉପରେ କଅଣ ଖୋଜିବାର ବାହାନା କରି ରସାନନ୍ଦଙ୍କ ଗୃହ ସମ୍ମୁଖରେ ଆଗକୁ ପଛକୁ ହୋଇ ଟହଲୁଛନ୍ତି । ସନ୍ଦିହାନ ହୋଇ ଯୁବକ ତାକୁ, ଅବା କୋକିଳ ଦେଇଙ୍କୁ ଅନାଇ, ମଧୁର ବା କର୍କଶ ସ୍ୱରରେ ପଦେ ଅଧେ ଗୀତ ଗାଇ କୋକିଳ ଦେଇଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚେଷ୍ଟା କରୁଛନ୍ତି । ମାତ୍ର ପିଞ୍ଜରାବଦ୍ଧ ପକ୍ଷୀଟି ଭଲ କରି ଜାଣେ ମାର୍ଜାରର ସହଜରେ ତାହାର କିଛି ଅନିଷ୍ଟ କରି ପାରିବ ନାହିଁ । ନିଜେ ଅକୁଳରେ ମ୍ୟାଉଁ ମ୍ୟାଉଁ ହୋଇ ଲମ୍ବା ପିଞ୍ଜରାର ଚାରିପାଖେ ବୁଲି ପଥ ନ ପାଇ ହତାଶ ହେବ ।

ଏହିପରି ଚିନ୍ତାମଗ୍ନ ଥିବା ସମୟରେ ଗୋଟିଏ ମଣିପଂଠଣା ଗାଡ଼ି ଆସି ରାସ୍ତା ଉପରେ ରହିଲା । ଗାଡ଼ିଟି ରହିବା ସଙ୍ଗେ ସଙ୍ଗେ ଜଣେ ପ୍ରୌଢ଼ ଭଦ୍ରଲୋକ ତହିଁରୁ ଅବତରଣ କଲେ । ତାଙ୍କ ପଛେ ପଛେ ଜଣେ ଯୁବକ । କିଛି ସମୟ ପରେ ଜଣେ ସ୍ତ୍ରୀଲୋକ ଓ ଗୋଟିଏ ବାଳିକା ଗାଡ଼ିରୁ ବାହାରି ଆସିଲେ ।

କୋକିଳ ଏମାନଙ୍କ ମଧ୍ୟରୁ କାହାକୁ ଚିହ୍ନି ପାରିଲେ ନାହିଁ । ତାଙ୍କୁ ମଧ୍ୟ ଏହା ଗୋଟିଏ ନୂଆକଥା ପରି ଲାଗିଲା । ସେ ଏ ଗୃହରେ ପାଦ ଦେଲାଦିନୁ କେହି କେବେ ଅତିଥି କିମ୍ବା ବନ୍ଧୁ ବାନ୍ଧବ ତାଙ୍କ ଘରକୁ ଆସିଥିବାର ସେ ଦେଖି ନାହାନ୍ତି—ବିଶେଷତଃ ସ୍ତ୍ରୀ ପିଲା ଘେନି । ସେ ଜାଣନ୍ତି, ରସାନନ୍ଦଙ୍କର ଏପରି କେହି ବନ୍ଧୁବାନ୍ଧବ ନାହାନ୍ତି । ସେ ଝରକାର କବାଟ ଆଉଜାଇ ଝରକା ଫାଙ୍କରେ ଏମାନଙ୍କର କାର୍ଯ୍ୟପ୍ରତି ନିଘା ଦେଲେ ।

ଏମାନେ ଅଭୟଚରଣଙ୍କର ପରିବାର । ଅଭୟଚରଣ ଗାଡ଼ିବାଲାକୁ ବିଦା କରିବାକୁ ଅଣ୍ଟାରୁ କାଢ଼ି କେତୋଟି ପଇସା ଦେଲେ । ଗାଡ଼ିବାଲା ତହିଁରେ ଅସନ୍ତୁଷ୍ଟ ହୋଇ ଆପତ୍ତି କଲା । ଘୋର ବାଦାନୁବାଦ ତର୍କ ବିତର୍କ ଓ ସର୍ବଶେଷରେ ମଧୁରତମ ସମ୍ବନ୍ଧର ସୃଷ୍ଟି ଓ ସ୍ନେହ ସମ୍ଭାଷଣର ଆଦାନ ପ୍ରଦାନ ପରେ ଅଭୟଚରଣ ଅଣ୍ଟାରୁ କାଢ଼ି ଆଉ ଗୋଟିଏ ପଇସା ଦେଇ କହିଲେ, ହଉ ନେ, ପାନ ଖାଇବୁ । ଉଁ, ଏଠାକା ଲୋକଙ୍କ ଢଙ୍ଗ ଦେଖିଲେ, ମଣିଷ କାବା ହୋଇଯାଏ । ଆରେ, ତମର ଯାହା ହକ, ସେଇଆ ନିଅ; ମାଗିକରି ପଛେ ପାନ ଖାଇବାକୁ ପଇସେ ଅଧେଲେ ନେବ, ଠକିବାକୁ ବସିଛ କାହିଁକି ଭଲା !

ଗାଡ଼ିବାଲା ହସି ହସି କହିଲା, ଆଜ୍ଞା, ହଁ, ଯାହା କହିଲେ ସବୁ ଠିକ୍, ତେବେ ମୁଁ ମନେ କରୁଛି, ଆଜି ତେମେ ନୂଆ ଗାଡ଼ି ଚଢ଼ିଲ ।

ଅଭୟଚରଣ ଗାଡ଼ିବାଲାର କଥାରେ କର୍ଣ୍ଣପାତ ନ କରି ରସାନନ୍ଦ ବାବୁଙ୍କ ନାମ ଧରି ଡାକିଲେ । ସାଧୁଚରଣ ମଧ୍ୟ ମଉସା ମଉସା କହି ଅନେକ ଥର ଡାକିଲେ ।

କୋକିଳ ସବୁ ଶୁଣି ମଧ୍ୟ କବାଟ ଫିଟାଇବାକୁ ଆସିଲେ ନାହିଁ । ତାଙ୍କର ମନରେ କୌଣସି ପ୍ରକାର ଭୟ ନ ହେଲେ ମଧ୍ୟ ମନରେ ସଂକୋଚ ଆସିଲା । ଅଭେକାଙ୍କ ପରି ଅପରିଚିତମାନଙ୍କ ଉପରେ ନିଜର ଅବସ୍ଥା ଦେଖାଇବେ ? କାଳେ ସେମାନେ ଘୃଣା କରିବେ, କାଳେ ସେମାନେ ତାଙ୍କର ଅବସ୍ଥା ଦେଖି ଉପହାସ କରିବେ ।

ସେ ତରତର କରି ଖଣ୍ଡେ ବାସି ଲୁଗା ପାଲଟି ପକାଇଲେ । ଘର୍ମାକ୍ତ ମୁଖରେ ଧୀରେ ଧୀରେ ଦାଣ୍ଡ କବାଟର କିଳଣି ଖୋଲିଲେ ।

ମୋଟା ଦେଈ ଗୃହ ଭିତରେ ପ୍ରବେଶ କରିବାରୁ, କୋକିଳ ଲଜ୍ଜାରେ ଜଡ଼ୁଣୀ ଠାଣି ଅଡ଼ହୋଇ ରହିଲେ । ମୋଟାଦେଈ ଉଚ୍ଚ ସ୍ୱରରେ ହସି ହସି କୋକିଳ ଦେଈଙ୍କୁ ଆଲିଙ୍ଗନ କରି କହିଲେ, ଆଗୋ, ଏ କଅଣ ? ପର ଲୋକଙ୍କ ପାଖେ ସିନା ଅଡ଼ୁଆଳ ସାଜେ, ଆପଣା ଲୋକଙ୍କ ପାଖେ ଏ କଥା ସୁନ୍ଦର ଦିଶେ ? ପୁଣି ଅନ୍ୟକୁ ମୁହଁ ବୁଲାଇ କହିଲେ, ମାଉସୀଙ୍କୁ ପ୍ରଣାମ କର ସାଧୁ, ମା କଏ ଅଉ ମାଉସୀ କିଏ ?

ସାଧୁଚରଣ ନୀରବରେ, ଗମ୍ଭୀର ଭାବରେ ଟିକିଏ ଦୂରେଇ ହୋଇ ପ୍ରଣାମ କରିବାକୁ ବସିବାରୁ, ବାଧା ଦେଇ ମୋତା ଦେଈ କହିଲେ, ଏ କଅଣ ବାପ, ମା ମାଉସୀଙ୍କ ପାଖେ ଲଜ୍ଜା କଅଁଣ, ସଂକୋଚ କଅଣ ? ଗୋଡ଼ଧରି ପ୍ରଣାମ କର ବାପ, ମାଉସୀର ପଦରେଣୁ ମୁଣ୍ଡରେ ଲାଗିଲେ ଭଗବାନ୍ ସନ୍ତୁଷ୍ଟ ହେବେ । ଷଠୀ ତୋତେ ଦୀର୍ଘାୟୁ କରିବେ । ସାଧୁଚରଣ ମାତୃଆଜ୍ଞା ପାଳନ କରି କୋକିଳ ଦେଈଙ୍କର ପଦଦ୍ୱୟ ଧରି ପ୍ରଣାମ କଲେ ।

କୋକିଳ ଦେଈ ବାଧା ଦେଲେ ନାହିଁ । ଏହି ଅଭିନୟର ଅର୍ଥ ବୁଝି ପାରିଲେ ନାହିଁ । ମୋତା ଦେଈଙ୍କୁ ନିଜର କେହି ସମ୍ପର୍କୀୟ ବୋଲି ମନେ କରି ଧୀରେ ଧୀରେ କହିଲେ, ଆସ··· । ମୋତା ଦେଈଙ୍କର ହାତ ଧରି ନେଇ ଘରକୁ ନେଲେ । ଖଣ୍ଡିଏ ପୁରୁଣା ସପ କାନ୍ଥକୁ ଲଗାଇ ତଳେ ପାରି କହିଲେ—ବସ, ଆଉ ଖଣ୍ଡିଏ ସପ ନିଜେ ଯାଇ ଦାଣ୍ଡଘରେ ପାରିଦେଇ ଆସିଲେ । ମୋତା ଦେଈ ଏହାର ଅର୍ଥ ବୁଝି ପାରି, ସାଧୁଚରଣଙ୍କୁ କହିଲେ, ବାପାଙ୍କୁ ଡାକଦେ । ସେ ବସନ୍ତୁ । ସମୁଦୁଣୀ ଆମର ଏକୁଟିଆ ଲୋକ, କଅଣ କରିବେ ? ସମୁଦିଙ୍କର ତ କାହିଁ ଦେଖା ନାହିଁ, କୁଆଡ଼େ ଯାଇଛନ୍ତି କି ?

କୋକିଳ ଦେଈ ଉତ୍ତର ନ ଦେଇ ପାନ ଭାଙ୍ଗି ବସିଲେ ।

ମୋତା ଦେଈଙ୍କ କୋଳକୁ ଆଉଜି ବସିଥିଲା ସରି; ଆହା, ସତେ ଯେପରି ଭାରି ନିରୀହ, ସତେ ଯେପରି କିଛି ଜାଣେ ନାହିଁ । ଖଣ୍ଡିଏ ପାନଶିରି ଧରି ତଳେ ଅ, ଆ, କେତୋଟି ଆଦ୍ୟବର୍ଣ୍ଣ ଅତି ମନୋଯୋଗପୂର୍ବକ ଲେଖୁଛି ।

ମୋତା ଦେଈ ଅତି ସ୍ନେହରେ ତାର ମୁଣ୍ଡରେ ହାତ ବୁଲାଉଛନ୍ତି । ଆଗ୍ରହର ସହିତ କୋକିଳ ଦେଈଙ୍କର ପାନଭଙ୍ଗା ଦେଖୁଛନ୍ତି । କିପରି ଅସଲ କଥାଟି ଆରମ୍ଭ କରିବେ, ମନରେ ସେହି ଚିନ୍ତା । ଉପାୟାନ୍ତର ନ ଦେଖି ସେ ସ୍ମିତହାସ୍ୟ କରି ଆରମ୍ଭ କଲେ, ସରିଟି ମୋର ତମକୁ ଭାରି ଭଲ ପାଏ ସମୁଦୁଣୀ । ପୂର୍ବେ ଆସିଲା ଦିନୁ ଗଲା ତ ମୋ ସଙ୍ଗେ ଲଗାଇଛି, ମୁଁ ମାଉସୀକି ଦେଖିବି । ମୋଓର ତର ଥାଏ କେଉଁଠି ? ତର ଥିଲେ ବି, ତମ ସମୁଦି ଯେପରି ଲୋକ, ଆହା··· ।

କୋକିଳ ପୂର୍ବବତ୍ ପାନ ଭଙ୍ଗାରେ ମନ ନିଯୁକ୍ତ କଲେ । ନିତାନ୍ତ ଆପଣାର ପରି କଥା କହୁଛନ୍ତି ସତ, ଯେତେହେଲେ ତ ଅପରିଚିତ । ଏତେ କଥାର କଅଣ କହି ଉତ୍ତର ଦେବେ ! ସେ ପାନଭଙ୍ଗା କ୍ଷଣକପାଇଁ ବନ୍ଦ କରି ସରିର ହାତ ଧରି ନିଜ ଆଡ଼କୁ ଟାଣିଲେ । ସରି ଲଜ୍ଜିତ ହୋଇ ବିନା ଆପତ୍ତିରେ ଉଠି ଆସିବାରୁ କୋକିଳ ତାକୁ କୋଳକୁ ଆଉଜାଇ ତାର ମସ୍ତକରେ ମସ୍ତକ ଲଗାଇଲେ ।

ମୋତା ସସ୍ନେହରେ କହିଲେ, ତେମେ କାହୁଁ ଜାଣିବ ସମୁଦୁଣୀ, ତମର ଆମର ସମ୍ବନ୍ଧ ଦିନକର ନୁହେଁ । ବହୁ ଦିନରୁ, ତମ ଶଶୁର ଓ ଆମ ଶଶୁରଙ୍କ ଅମଳରୁ ଏପରି ଭାବ ପ୍ରୀତି ବରାବର ଲାଗି ଆସିଛି । ଏପରି ବନ୍ଧୁ ସେ ଥିଲେ, ଆହା,

ଅଭେଦ୍ୟ ପୀରତ ଟେ ଗୋ, ଅଭେଦ୍ୟ ପୀରତ, ଯାହା କହନ୍ତି ପଗ ପାଣି ଗଳୁ ନ ଥିଲା । ତାଙ୍କ ଅମଳଟା ସେ ବେଶ୍ ସୁଖରେ, ବେଶ ଆନନ୍ଦରେ କଟାଇଦେଲେ । ସେମାନେ ଥିଲେ ସେମିତ । କିଛି ଅଭାବ ନ ଥିଲା । ଆମ ଭଳିକା ତାଙ୍କୁ ପେଟ ଗୃହଖଣ୍ଡକର ଚନ୍ତା କରିବାକୁ ପଡ଼ୁ ନ ଥିଲା । ସେଇଠୁ ଆସିଲା ଆମ ଅମଳ । ସମୁଦ୍ର ଆଉ ସେ୍ୱ ପିଲାଦିନେ ଏକା ସାଙ୍ଗରେ ପାଠ ପଢ଼ୁଥିଲେ । ଏକାଠି ଥିଲେ । ସମ୍ପଦ ବିପଦରେ ଦୁହେଁ ଦୁହିଁଙ୍କର ସାହା ହେଉଥିଲେ । ଏହିପରି ବରାବର ଲାଗିଥାଏ ।

ବର୍ଷେ ଦୁଇ ହେବ, ଦୁଇ ସମୁଦ୍ରଙ୍କ ଉପରେ ବିପଦ ପଡ଼ିଲା । ନିଜ କଥା ନିଜକୁ ସମ୍ଭାଳିବାକୁ କାଠିକର ପାଠ, ଅନ୍ୟ କଥା ଭାବୁଛି କିଏ ? ଆଉ ସମୁଦୁଣୀ ଥିଲାବେଳେ, ମୁଁ ଯଦି କେବେ ପୁରୀ ଆସେ ତ, ଆମ ଦୁହିଁଙ୍କର ବରାବର ଯା ଆସ ଲାଗିଥାଏ । ପୁରୀରେ ଥିବା:ଯାକେ, ଦିହିଁଙ୍କର ଦେଖାଦେଖି ଦିନେ ନ ହେଉଥିଲେ ମନ ଯାହା ଖରାପ ହେଉଥିଲା, କଅଣ କହିବି ସମୁଦୁଣୀ, ଏକା ସେହି ନୀଳାଚଳନାଥ ଜାଣନ୍ତି । ପାଗଳ ପରି ମୁଁ ଛୁଟି ଆସୁଥିଲି, ନୋହିଲେ ସେ ଆମ ବସାକୁ ଯାଉଥିଲେ । ଏକାଠି ଖିଆପିଆ, ଏକାଠି ଜଗନ୍ନାଥ ଦର୍ଶନ, ଆଉ, ଏକାଠି ସମୁଦ୍ର ଗାଧୁଆ । କିଛି ଭେଦଭେଦ ନ ଥାଏ ପରା, କହୁଛି । ଠାକୁରେ ତାଙ୍କୁ ପିଲାଛୁଆରେ ଦୁଃଖୀ କରିଥିଲେ । ହଁ, ସତ କହୁଛି, ମୋ ପିଲାଙ୍କୁ ଗଳାରେ ମାଳ ପରି କରିଥାନ୍ତି; ସତେ ଯେମିତି ଏ ପିଲାଏ ମୋର ନୁହନ୍ତି, ତାଙ୍କର ।

ସେ ଚାଲିଗଲା ଦିନୁ ମୁଁ ଆଉ ଏଣିକି ଆସେ ନାହିଁ । ଅନେକ ଥର ପୁରୀ ଆସେ, ତାଙ୍କ କଥା ମନେ ପଡ଼ିଲେ ପେଟ ଭିତର କଅଣ ହୋଇଯାଏଟି । ତାଙ୍କର ଅଭାବ ମୁଁ ଅନୁଭବ କରେ । ଦର୍ଶନ କରିବାକୁ ଆସିଥାଏ ବୋଲି ଦର୍ଶନ କରିଯାଏ । ନୋହିଲେ ମନରେ ଗୋଟାଏ ଆଗ୍ରହ କି ସରାଗ ନ ଥାଏ । କେମିତି ପୁରୀ ଗ୍ରଡ଼ ଗାଁକୁ ଯିବି ମୋଓର ଖାଲି ସେହି ଚନ୍ତା । ଦୁଇ ସମୁଦ୍ରଙ୍କର ଦେଖା ସାକ୍ଷାତ୍ ହୁଏ । କେତେ ପ୍ରକାର ଦୁଃଖ ସୁଖ ହୁଅନ୍ତି । ମୋ ମନ କି ସେଥିରେ ଶାନ୍ତ ହୁଏ । ମୁଁ ଝୁରୁଥାଏ ଯାହା ପାଇଁ ତା ପାଇଁ । ସାଧୁ ସିନା ମୋର ହୁସିଆର ପିଲା ଯେ ସେ ବୁଝିପାରେ, ସର ତ ନିହାତି ପିଲାଲୋକ, ସେ ତା ମାଉସୀର ସ୍ନେହ ଭୁଲି ପାରୁଛି କେଉଁଠି ? ସବୁବେଳେ ପିଆଦା ପରି ମୋ ପଛେ ପଛେ ଲାଗିଥାଏ, ଏପରି କି, ମାଉସୀ ପାଖକୁ ଆସିବ ବୋଲି ଖୁଣ୍ଟ କରି ବସେ ।

ଏବେ ତ ହେଲା । ମୋ ମନକଥା ପୂର୍ତ୍ତି ହେଲା । ଯେଉଁ ସମୁଦୁଣୀକି ସେହି ସମୁଦୁଣୀ ଫେରି ପାଇଲି । ସାଧୁ ସର ତାଙ୍କର ମାଉସୀ ପାଇଲେ । ଏଥରକି ପୁରୀ ଆସିବା ମୋର ସାର୍ଥକ ହୋଇଛି । ମନ ମୋର ଭାରି ଖୁସି ।

କୋକିଳ ନୀରବରେ ସବୁ ଶୁଣି ଗୋଟିଏ ଦୀର୍ଘଶ୍ୱାସ ପକାଇଲେ । କେତେଖଣ୍ଡି ପାନଖିଲି ମୋଡ଼ିଲେ । ଗୋଟିଏ ସିଗାରେଟ ଟିଣର ଉପର ଖୋଳରେ ପାନ

କେତେଖଣ୍ଡି ରଖି, ପାଖରେ ଅଳ୍ପ ଗୁଣ୍ଡି ଦେଲେ । ଅଳେଇଚ, ଗୁଜୁରାଟ ଓ ଲବଙ୍ଗ କେତୋଟି ପାନ ପାଖରେ ରଖି, ସର ଆଡ଼କୁ ହସ ହସ ମୁହଁରେ ଅନାଇ କହିଲେ, ଦେଖ, ବାପାଙ୍କୁ ପାନ ଦେଇ ଆସ ଯା ।

ମାଉସୀ ଯେ ହସି ହସି ତାକୁ କଥା କହୁଛନ୍ତି, ଏଥିକରେ ସର ଆନନ୍ଦିତ ହେଲା, ମାତ୍ର ତାକୁ ଯେ ବାପାଙ୍କ ନିକଟକୁ ପାନନେଇ ଯିବାକୁ ହେବ, ଏହି କଥା ଶୁଣି ମୁହଁ ଶୁଖିଗଲା । ମୋତା ଦେଈ ସରର ମନକଥା ବୁଝିପାରି ତାଙ୍କ ମନ୍ତ୍ରକରେ ପୂର୍ବବତ୍ ହସ୍ତ ସଞ୍ଚାଳନ କରି କହିଲେ, ନା, ସେ ତା ମାଉସୀକି ଛାଡ଼ି ଯିବ ନାହିଁ, ମୁଁ ସାଧୁକୁ ଡାକଦିଏ । ଡାକଲେ-ସାଧୁ—

ସାଧୁ ଆସିବା ପୂର୍ବରୁ କୋକିଳ ଆଉ କେତେଖଣ୍ଡି ଖିଲି ମୋଡ଼ି ମୋତା ଦେଈଙ୍କୁ ଦେଲେ । ଖଣ୍ଡେ ନିଜ ହାତରେ ସର ପାଟିରେ ଗୁଞ୍ଜିଦେଇ ସ୍ନେହରେ ତାର ଗାଲ ଟିପିଦେଲେ । ସର ହସି ହସି ଲଜ୍ଜାରେ ମାତୃକୋଡ଼ରେ ମୁହଁ ଲୁଚାଇଲା ।

ମାଆଙ୍କର ଡାକ ଶୁଣି ସାଧୁଚରଣ ଆସି ଉପସ୍ଥିତ ହେଲେ । ଆସିବାକୁ ମନରେ ଯେ ସଙ୍କୋଚ ପ୍ରବେଶ କରି ନ ଥିଲା ଏହା ନୁହେଁ, ମାତା ସମ୍ମୁଖରେ ସଙ୍କୋଚ କଲେ, କାଳେ ସେ କଅଣ ଭାବିବେ ତେଣୁ ସେ ନିଃସଙ୍କୋଚରେ ଓ ଗମ୍ଭୀରମୁଖରେ ଠିଆ ହେଲାରୁ କୋକିଳ ଉଢ଼ୁଣୀ ଟାଣି ଟିକିଏ ଆଡ଼ ହେବାକୁ ଚେଷ୍ଟା କଲେ ।

ମୋତା ଦେଈ ହସି ହସି କହିଲେ, ଏ କଅଣ ସମୁଦୁଣୀ, ପୁଅ କିଏ ପୁରୁଷ କିଏ ? ପୁଅକୁ କି ମା ଆଡ଼ ହୁଏ ? ସାଧୁ କଅଣ ଏକା ମୋ ପୁଅ, ସେ କଅଣ ତମ ପୁଅ ନୁହେଁ ? ଛିଃ, ଏ ଗୋଟାଏ କଅଣ ? ଦିଅ, ତାକୁ ପାନ ଦିଅ—

କୋକିଳ ପାନଥାଳିଆଟି ଟେକି ସାଧୁଚରଣଙ୍କ ଆଡ଼କୁ ବଢ଼ାଇ ଦେଲେ କିନ୍ତୁ ତାଙ୍କ ମୁହଁକୁ ଅନାଇଁବାକୁ ଲାଜ ମାଡ଼ିଲା । ସାଧୁଚରଣ ମାଉସୀଙ୍କ ହାତରୁ ପାନଟିଏଟି ନେଇ, ପଚାରିଲା ଆଖିରେ ମାଆଙ୍କୁ ଚାହିଁବାରୁ ସେ କହିଲେ, ତୋ ମାଉସୀ ତାଙ୍କ ସମୁଦିଙ୍କ ପାଖକୁ ପାନଗୁଡ଼ିକ ପଠାଉଛନ୍ତି । ନେଇଯା ··

ମୋତା ଦେଈ ଏହିପରି ଅନେକ କଥା କହି ବାକ୍ୟ ପ୍ରଭାବରେ କୋକିଳ ଦେଈଙ୍କର ମନକୁ କିଣିନେଲେ । କୋକିଳ ମଧ୍ୟ ଅଧିକ ସମୟ ସଙ୍କୋଚ କରି ବସି ରହିଲେ ନାହିଁ । ପରସ୍ପର ମଧ୍ୟରେ କଥୋପକଥନ ଚାଲିଲା । ଦୁଃଖ, ସୁଖ, ରସାନନ୍ଦ ବାବୁଙ୍କ ସ୍ୱାସ୍ଥ୍ୟ ଓ ଔଷଧର ବ୍ୟବସ୍ଥା ଇତ୍ୟାଦି ବିଷୟ ପଡ଼ିଗଲା । ଶେଷରେ ମୋତା ଦେଈ ସାଧୁଚରଣଙ୍କର ପଢ଼ାପଢ଼ି ସମ୍ବନ୍ଧ ନେଇ କହିଲେ, ସମୁଦୁଣୀ, ସାଧୁଆନେଇ ମୁଁ ବ୍ୟସ୍ତରେ ପଡ଼ିଛି । ପିଲାଲୋକ, ବିଦେଶରେ ଏକୁଟିଆ ରହିଥିବାରୁ ମୋ ମନ ସବୁବେଳେ ଦକ୍ ଦକ୍ । ତାଆର ବି ଖାଇବା ବିନା କଣ୍ଠା ଦୋହଲିଲାଣି । ଖର୍ଚ୍ଚର ସୀମା ନାହିଁ । ହେଲେ କଅଣ ହେଲା, ମନ ଜାଣି ସୁସ୍ଥରେ ମୁଠିଏ ବେଳ ଦିଣ୍ଡି ଖାଇବାକୁ ଦେବାକୁ କିଆଁ ଲଗା ସେପେଇଆ ଟୋକାଟା ପାରୁ ନାହିଁ । ତା ବାପା

ସମୁଦିଙ୍କ ଆଗରେ କହୁଥିଲେ, କେହି ମୁରବି ନ ଥିବାରୁ ପିଲାଟା ବଜାରି ଟୋକାଙ୍କ ସାଙ୍ଗେ ମିଶି ଦିନସାରା ବୁଲୁଛି। ପଢ଼ାପଢ଼ିର ନାଁ ଧରୁ ନାହିଁ। ଏଥକୁ ମୁଁ କଅଣ କରିବି କହିଲ ?

କୋକିଳ ନିରୁତ୍ତର ରହିଲେ।

ମୋତି ଦେଈ ଅଟେଇ ଅଟେଇ କହିଲେ, ମୁଁ ଗୋଟିଏ କଥା ମନରେ ପାଞ୍ଚୁଛି ସମୁଦୁଣୀ, ତମ ମନକୁ ଆସିଲେ ତ ହୁଏ !

କଣ କହୁନା ?

ମୋ କହିବାର କଥା ଏହି ଯେ, ତେମେ ତ ହେଲ ନିର୍ଜଞ୍ଜାଳୀ ମଣିଷ; ପିଲାଛୁଆଙ୍କ ନେଣ୍ଟେରି ନାହିଁ; ଆଉ କୌଣସି କାମ ନାହିଁ, ମାମୁଁ ମାଇଁ ଦୁଇ ପ୍ରାଣୀ। ସାଧିକୁ ଯଦି ତମ ପାଖରେ ଛାଡ଼ି ଦେଇଯାଏଁ, ମୁଁ ଭାବୁଛି ସମସ୍ତଙ୍କର ଭଲ ହେବ। ସବୁବେଳେ ମଉସା ମାଉସୀଙ୍କ ଆଖି ଆଗରେ ରହିଲେ ତାଆର ଟିକିଏ ଭୟ ହେବ। ପଢ଼ାପଢ଼ି ଭଲ କରିବ । ଆଉ ୯ଟେ ବଡ଼ ପିଲାଟା ଯେତେବେଳେ, ଅବଶ୍ୟ ତମ ମନରେ ବି ଦମ୍ଭ ଆସିବ। ସାହାଯ୍ୟ ହେବ। ଇଏ ଏ ବିଷୟ ସମୁଦିଙ୍କୁ କହିଥିଲେ। ସମୁଦି କହିଲେ, ତାଙ୍କର କିଛି ଆପତ୍ତି ନାହିଁ । ମୁଁ ତମ ସମୁଦିଙ୍କୁ ସାଙ୍ଗରେ ଘେନି ନିଜେ ଆସିଚି, ତମୁକୁ ପଚାରିବାକୁ।

କୋକିଳ ଦେଈ ଗୁମ୍‌ମାରି କିଛି ସମୟ ବସିଗଲେ। ଗୃହର ଅଧିକାରୀ ଯେ, ଗୃହର କର୍ତ୍ତା ଯେ, ସେ ଯଦି ଅନୁମତି ଦେଇଛନ୍ତି ସ୍ତ୍ରୀଙ୍କର ବା ଆପତ୍ତି କଅଣ ? ନିଜପାଇଁ ଗଣ୍ଡାଏ ଫୁଟାଉଛନ୍ତି, ନହେଲେ ସେଇଥିରେ ଆଉରି ଗଣ୍ଡିଏ ଚାଉଳ ପକାଇବେ। ଦୁଇଖଣ୍ଡି ଥାଳି ଧୋଇବାକୁ ପଡ଼ୁଛି, ନ ହେଲେ ଆଉରି ଖଣ୍ଡିଏ ଥାଳି ଧୋଇବାକୁ ପଡ଼ିବ, ଏଇତ କଥା ! ବରଂ, କାମ ପାଇଟି ବଢ଼ିଲେ ସେ ଦୁଃଖର ଚିନ୍ତାରୁ ମୁକ୍ତି ଲାଭ କରିବେ। ପୁଣି ମନେହେଲା, ଆଳଆ ନେଖାରେ ବାଳଆ ବନ୍ଧୁ ତ ! ତା ହେଲେ ପରପାଇଁ ନିଜେ କଷ୍ଟ ସ୍ୱୀକାର କରିବେ କାହିଁକି ? ମାତ୍ର, ପର ତ ସମସ୍ତେ, ଆପଣାର ହୋଇ ଅଛି କିଏ ? ଯାହାକୁ ଆପଣାର କରିବ ସେହି ଆପଣାର।

କୋକିଳ ଦେଈ ଆଡ଼ନେତ୍ରରେ ସାଧୁଚରଣଙ୍କୁ କ୍ଷଣକାଳ ଅନାଇଁଲେ। ଶାନ୍ତ ଶିଷ୍ଟ ଯୁବକ। ପାଖରେ ଥିଲେ ବଳେଇଛୁଆ ବି ସାହା ହୁଏ । ଏ ତ ମରଦ ପୁଅ ! ସେ ଦୀର୍ଘଶ୍ୱାସ ଛାଡ଼ି କହିଲେ, ମୋର ଏଥିରେ 'ଆପତ୍ତି କାହିଁକି ହେବ ? ଭୟ ହେଉଛି, କାଳେ କିଛି ଅସୁବିଧା ହୁଏ । ବଡ଼ଘର ପିଲା ଅଲିଅଲି ହୋଇ ବଢ଼ି ଆସିଛନ୍ତି। ସ୍ତ୍ରୀଙ୍କର ତ ସବୁବେଳେ ଅଭାବ। ଗରିବ ଘର କଥା ତ।

ମୋତି ଦେଈ କଥାର ଅର୍ଥ ଭିନ୍ନ ପ୍ରକାର ଗ୍ରହଣ କରି କହିଲେ, ସ୍ତ୍ରୀ ନେଇ କିଛି ଅଭାବ ରହିବ ନାହିଁ ସମୁଦୁଣୀ। ଫଳେ ପୁଣ୍ଟେ ଯାହା ମିଳିବ ଅବଶ୍ୟ ମୁଁ

ପଠାଉଥିବ । ପୂର୍ବରେ ପାଠ ପଢ଼ିଗଲଦିନ୍ ତାଙ୍କ ଅଲ୍‌ଅଲପଣିଆ ସବୁ ସରିଛି । ତୋଗଣି ମଧ୍ୟ ହେଉ ପଛେ ମା ମାଉସୀଙ୍କ ହାତ ପରଶା ଖାଇଲେ ପିଲ୍‌ଙ୍କ ମନରେ ଶାନ୍ତି । ଏହିପରି ଅନେକ ଆଳାପ ପରେ ମୋଟା ଦେଇ ସାଧୁଚରଣଙ୍କୁ କୋକିଳ ଦେଈଙ୍କି ସମର୍ପିଦେଲେ । ରସାନନ୍ଦ ବାବୁଙ୍କୁ ଅପେକ୍ଷା କରି ରହିଲେ, ସେ ଆସିଲେ ନାହିଁ ।

କାଲ୍‌ଠାରୁ ସାଧୁ ଏ ବସାରେ ରହିବ, ଏହି ବିଷୟ ସ୍ଥିର କରି ପରସ୍ପରଠାରୁ ବିଦାୟ ନେଲେ ।

୫

ଦୁଇମାସ ଅତୀତ ହେଲଣି । ଆଜି ମଧ୍ୟ ରବି ପୂର୍ବଦିଗରେ ଉଦୟ ହୋଇ ପଶ୍ଚିମରେ ଅସ୍ତ ହେଉଛନ୍ତି । ବଙ୍ଗୋପସାଗର ନାଚି ନାଚି ପୁରୀର ବେଳାଭୂମିରେ ଅବିରି ପାନ୍ଥପର ମସ୍ତକ ନୁଆଁଉଛି । ସମୁଦ୍ରକୂଳର ବାଲିପଡ଼ିଆ ଉପରେ ସଗର୍ବରେ ଠିଆ ହୋଇଥିବା ଅଟ୍ଟାଳିକାମାନଙ୍କ ଉପରେ ଦୂରଦେଶାଗତ ଦର୍ଶକମାନେ ଦଣ୍ଡାୟମାନ ହୋଇ ସାଗରର ଅତୁଳନୀୟ ଶୋଭା ଦେଖୁଛନ୍ତି । ନିମ୍ନରେ ଦରିଦ୍ର, ଧର୍ମପ୍ରାଣ ବିଦେଶୀ ଯାତ୍ରୀ ଓ କେତେଜଣ ଭଦ୍ରଲୋକ କାହିଁ କେଉଁ ଅଟ୍ଟାଳିକା ଉପରେ ଅଥବା ବାଲିଗଦାର ଉହାଡ଼ରେ ନବୀନ ନବୀନା ବାୟୁ ସେବନ କରୁ କରୁ ଆନନ୍ଦରେ ଉନ୍ମତ୍ତ ହୋଇ ହାସ୍ୟ ପରିହାସରେ ବାହ୍ୟଜ୍ଞାନ-ଶୂନ୍ୟ ହୋଇ ପଡ଼ୁଛନ୍ତି । କେତେଜଣ ସୌନ୍ଦର୍ଯ୍ୟ-ପିପାସୁ ରୁମାଲରେ ମୁହଁ ପୋଛୁ ପୋଛୁ ସମୁଦ୍ର କୂଳରେ ଟହଲି ଟହଲି କିଛି ନ ଜାଣିଲା ପରି ସତର୍କ ହୋଇ ଏମାନଙ୍କର ଆନନ୍ଦ ଦେଖି ନିଜେ ଆନନ୍ଦିତ ହେଉଛନ୍ତି । କେତେଜଣ ନୋଳିଆ ଜାଲ ଟାଣି ମାଛ ଧରୁଛନ୍ତି । ଆଉ କେତେଜଣ ଡୋଙ୍ଗି ଚଢ଼ି ଢେଉ ଉପରେ ଢେଉ ଅତିକ୍ରମ କରି ପଡ଼ିଉଠି ସମୁଦ୍ର ଭିତରକୁ ଗ୍ଲଲିଛନ୍ତି ।

ଜଗନ୍ନାଥ ସାଇକଲକୁ ଆଉଜି ଠିଆହୋଇ ଏହି ସମସ୍ତ ଦୃଶ୍ୟ ପ୍ରଫୁଲ୍ଲ ପ୍ରାଣରେ ଦେଖୁଛି । ମଝିରେ ମଝିରେ ମୁଣ୍ଡହଲାଇ ସିଟିମାରି ଫୁଟକ ଫୁଟାଉଛି । କେତେବେଳେ ବା ଗୁଣଗୁଣ ହୋଇ ଧୀରେ ଧୀରେ ଗୋଟିଏ ସଙ୍ଗୀତରୁ ପଦେଅଧେ ବୋଲି ସନ୍ଦିଗ୍ଧ ଚକ୍ଷୁରେ ଚ୍ଛରି ଆଡ଼କୁ ଗ୍ଲହୁଁଛି । ଗୋଧୂଳିର ବିଚିତ୍ର ଶୋଭାରେ ସେ ଏକାଥରେ ତନ୍ମୟ । ଚ୍ଛରିଆଡ଼କୁ ଅନ୍ୱେଷିଷ୍ଟ ଚକ୍ଷୁରେ ଗ୍ଲହୁଁ ଗ୍ଲହୁଁ ସହସା ତାର ଦୃଷ୍ଟି ପଡ଼ିଲା ସାଧୁଚରଣ ଉପରେ । ସାଧୁଚରଣ ସମୁଦ୍ରକୂଳରେ ଠିଆହୋଇଛନ୍ତି । ନିକଟରେ ଜଣେ ଷୋଡ଼ଶୀ ରମଣୀ ନଇଁପଡ଼ି କଅଣ କରୁଛନ୍ତି । କୌତୁହଳୀ ହୋଇ ଜଗନ୍ନାଥ ପାଖକୁ ଘୁଞ୍ଚିଯାଇ ଡାକିଲା, କିହେ ସାଧୁଆ—

ସାଧୁଚରଣ ଶୁଣି ନ ଶୁଣିଲା ପରି ମାଣ୍ଟେଇ ଦେଲେ । କିନ୍ତୁ, ଜଗନ୍ନାଥ ଯେ ନିଛୋଡ଼ବନ୍ଧା । ସେ ଆହୁରି ଜୋର୍‌ରେ ଡାକିଲା, ସାଧୁ ବାବୁ, ହୋ କାଳିବାବୁ, ହଇ ହେ ମୋଗ୍ଲଲିଷ୍ଟ୍ ବାବୁ··· ।

ଏଥର ସାଧୁଚରଣ ନ ଶୁଣି ରହି ପାରଲେ ନାହିଁ । ସେ ବସ୍ମିତ ହେଲାପରି ଏଣେ-ତେଣେ ଅନାଇ ଶେଷରେ ଅତି ଗମ୍ଭୀର ଭାବରେ ଜଗନ୍ନାଥଙ୍କୁ ଚାହିଁଲେ । ଜଗନ୍ନାଥ ହସ ହସ ହୋଇ ହାତଠାର ପାଖକୁ ଡାକିଲା । ସାଧୁଚରଣ ଅଗତ୍ୟା ଅନିଚ୍ଛାସତ୍ତ୍ୱେ ଧୀରେ ଧୀରେ ପାଖକୁ ଆସିଲେ । ଶୁଖିଲା ହସ ହସି କହିଲେ, କଅଣ କହୋ, ବଟରଫ୍ଲାଇ ବାବୁ ? ଜଗନ୍ନାଥର ନଣ ହେଲକ ଆଧୁନକ ଭଦ୍ରତା ରୁଚି-ଅନୁଯାୟୀ ।

ଜଗନ୍ନାଥ ଉଚ୍ଚହାସ୍ୟ କରି କହିଲା, ଅର୍ଥାତ୍ ପ୍ରଜାପତି ବାବୁ ନା କଅଣ ? ହାଃ, ହାଃ, ଯଦି ପ୍ରକୃତରେ ସେଇଆ ହୋଇଥାନ୍ତରେ, ହ୍ୟାପ୍ ତମଭଳିଆ କେତେ ବେହିପୋ ମୋଗ୍ରାଲଷ୍ଟ, ମାଇପିମୁହାଁ, ଫୁଲ ଚନ୍ଦନ ଘେନ ମୋ ଦୁଆରେ ହନଗାତ ଉପାଧିଆ ପଡ଼ିଥାନ୍ତେ ।

ସାଧୁଚରଣ ପଛକୁ ଚାହିଁ ମୁହଁ ଶୁଖାଇ କହିଲେ, ତୋର ଏହି ବଜାରଗିରି, ଅସଭ୍ୟପଣିଆ ଆଉ ଯିବ ନାହିଁ ନା ? ମୋର କାମ ଅଛି, ମୁଁ ଯାଉଛି ଭାଇ, ପ୍ରଣାମ !

ଜଗନ୍ନାଥ କହିଲା, ଖାଲି କାମ ତ ନାହିଁରେ ଧନ, ଏକାଥରେ ସବୁ । ଯଥା କାମ, କ୍ରୋଧ, ଲୋଭ, ମୋହ··· । ତୁ ବଚ୍ଛା ବିଗିଡ଼ିଗଲୁ ରେ··· । ଆହା ! ବଡ଼ ଦୁଃଖ ହେଉଛି ମୋର ମନରେ । ବେଲେରେ ! ମୁଣ୍ଡରେ ଟେରି, ପକେଟରେ ଫୁଲମାଳ, ରୁମାଲରେ ଗୋଲାପ ଅତର, ଛି······ ।

ତୁ ଟା ନରକକୁ ଯାଉଛୁ ଜଗା, ତୋର ବ୍ୟବହାର ଯେପରି ହେଲୁଛନ ତଳକୁ ଯାଉଛି··· ।

ଆଉ, ତୁ ଯାଉଛୁ ସ୍ୱର୍ଗକୁ, ମୁଁ ଏକଥା ଶହେ ଏକଥର ମାନ ନେଉଛି । ବନ୍ଧୁ ବୋଲି ଦସ୍ୟାକରି ମଝିରେ ମଝିରେ ଏମିତି ଟିକିଏ ଚେଡେଇ ଦେଉଥିଲେ, ଆମେ ବି ହନେ ତମ ପିଚ୍ଛ ଧରି ସ୍ୱର୍ଗକୁ ଚାଲିବା । ଆଚ୍ଛା ଭାଇ, ଆଜକାଲି ଟିକିଏ ଶ୍ରୀମୁଖର ଦର୍ଶନ ମିଳୁନାହିଁ । ସ୍କୁଲ ଯିବା ତ ଏକାଥରେ ବନ୍ଦ କରିଦେଲି ଦେଖୁଛି । ହନେ ଗଲେ ଚାରିହନ ବନ୍ଦ ! ଏହାର କାରଣ ?

ସାଧୁଚରଣ ପଛକୁ ଅନାଇଁ ଉଦ୍‌ବିଗ୍ନତାର ସହିତ କହିଲେ, ଦେହଟା ଭଲ ନାହିଁ ଭାଇ, କପରି ଟିକିଏ ବଗିଡ଼ି ଯାଇଛି । ପଢ଼ାପଢ଼ିରେ ମନ ଲାଗୁନାହିଁ ଜମା ।

ଦେହ ତ ବେଶ୍ ଗୋଲଗାଲ୍ ଅଛି, ମନ ବିଗିଡ଼ି ଯାଇଛି କହ । ପ୍ରଜାପତିଙ୍କ ଆଉ୍ ଓ୍ୱାରେଣ୍ଟ ଆସିଛି କରେ ? ସେ କିଏ କରେ ? ଏତେ ଯେ ଚାହୁଁଛୁ ତାଙ୍କୁ ?

ଲଜ୍ଜିତ ହେଲାପରି ସାଧୁଚରଣ କହିଲେ, ସେ ହେଉଛନ୍ତି, କହିବାକୁ ଗଲେ ଏକରକମ ମାଉସୀ ସମ୍ପର୍କ ।

ହସି ହସି ଜଗନ୍ନାଥ ଚକ୍ଷୁଡ଼ୋଳା କପାଳକୁ ଟେକି କହିଲା, ଓଃ, କହିବାକୁ ଗଲେ ସିନା, ନ କହିବାକୁ ଗଲେ, ଭଉଣୀ, ମାଉସୀ, ଆଉ କିଛି, ଆଉ କିଛି···

ସଲାମ୍ ଭାଇ, ମୁହଁରେ ମୋର ୧୪୪ । ତୋ ଗୁଣ ।,ଜଗନ୍ନାଥ ଗୁଲପଡ଼ି ବାନ୍ଧରେ ସାଇକେଲଟା ଗଡ଼ାଇ ସେଠାରୁ ଗୁଲିଗଲା ।

ସାଧୁଚରଣ ରାଗିଯାଇ କୋପକଷାୟିତ ଚକ୍ଷୁରେ ଥରେ ଜଗନ୍ନାଥକୁ ଗୁହିଁଲେ । ନାକ ଫଣଫଣ କରି କୋକିଳା ଦେଈଙ୍କ ନିକଟକୁ ଫେରି ଆସୁ ଆସୁ ମନକୁ-ମନ କହିଲେ—ଲୋକଙ୍କ କଥା, ସଜ ମ ଛରେ ଦଣ୍ଡକେ ପୋକ ପକାଇ ପ୍ରାରନ୍ତ ପରା !

ସଞ୍ଜ ହେଲା । ଦଳଦଳହୋଇ ଲୋକେ ସ୍ୱର୍ଗଦ୍ୱାର ବାଟେ ସହର ଭିତରକୁ ଗୁଲିଲେ । ସାଧୁଚରଣ ସେହି ଲୋକମାନଙ୍କ ଭିତରେ ପଶି ଜନତା ସ୍ରୋତ ସଙ୍ଗେ ଗୁଲିଲେ ଜଗନ୍ନାଥ ମନ୍ଦିର ଅଭିମୁଖରେ । କୋକିଳା ତାଙ୍କ ପଛେ ପଛେ ଗୁଲିଛନ୍ତି । ଯେତେହେଲେ ସ୍ତ୍ରୀଲୋକ । ସାଧୁଚରଣଙ୍କ ସଙ୍ଗେ ଗୁଲି ନ ପାରି ପଛରେ ପଡ଼ି ଯାଉଛନ୍ତି । ସାଧୁଚରଣ କିଛି ଦୂର ଆଗକୁ ଗୁଲିଯାଇ କୋକିଳା ଦେଈଙ୍କୁ ଅପେକ୍ଷା କରି ରହୁଛନ୍ତି । କୋକିଳା ପାଖକୁ ଲାଗି ଆସିଲେ ପୁଣି ଦ୍ରୁତବେଗରେ ଖଣ୍ଡେ ଦୂର ଗୁଲି ଯାଉଛନ୍ତି । ଗୁଲି ଗୁଲି କୋକିଳା ଥକିଗଲେ । ସାଧୁଚରଣଙ୍କୁ ଲକ୍ଷ୍ୟ କରି କହିଲେ, ଓଃ, ତେମେ ଯଦି ଏତେ ଜୋର୍‌ରେ ଗୁଲିବ, ମୁଁ ଆଉ ଗୁଲି ପାରିବି ନାହିଁ । କାହିଁକି ? ଘରେ କି କାମଟା ବଳେଇ ପଡ଼ିଛି କି ଏଡ଼େ ତରତର ? କୋକିଳା ଦେଈ ମୃଦୁହାସ୍ୟ କଲେ ।

ସାଧୁଚରଣ ଗତିର ବେଗ କମାଇ ଲଜ୍ଜିତ ହେଲାପରି କହିଲେ, ସଞ୍ଜ ଯେ ହେଲାଣି ·· ।

ହେଉ ନା । ପୁରୀ ସହର ତ, ଜଙ୍ଗଲ ନୁହେଁ ଯେ ବାଘ ଭାଲୁର ଡର ହେବ ।

ଟିକିଏ ନମ୍ରସ୍ୱରରେ ସାଧୁଚରଣ କହିଲେ, ଜଙ୍ଗଲଠୁଁ ବଳେ ମାଉସି ! ପୁରୀ ସହରରେ ଯେଉଁ ଲୋକେ, ସେମାନେ ବାଘ ଭାଲୁଙ୍କଠୁ ବଳନ୍ତି ।

କାମୁଡ଼ି ଗୋଡ଼ାନ୍ତି ?

ପୁଲାଏ କାମୁଡ଼ି ଦେଲେ ସେ କାମୁଡ଼ା ରହେ କେତେଦିନ, ଆଉ ସେ କଷ୍ଟ ବା ରହେ କେତେ କ୍ଷଣ ? ଏଠାକାର ଲୋକେ କଥାରେ କଥାରେ ଯେଉଁ କାମୁଡ଼ା ଦିଅନ୍ତି ସେଥିରୁ ପରିତ୍ରାଣ ପାଇବା ସହଜ କଥା ନୁହେଁ । ସେ ଘା ଦିନରାତି ସବୁ ବେଳେ ପୋଡ଼ୁଥାଏ ।

କୋକିଳା ଦେଈ କିଛି ନ ବୁଝିଲାପରି ମୁହଁ ମୋଡ଼ି କହିଲେ, ତେମେ ଯେଉଁ କଥାଗୁଡ଼ାକ କହ ସେଥିରୁ ·ପଦେ ବୁଝିବାକୁ ମୋର ସାଧ ନାହିଁ । ଛଳହାସ୍ୟ କରି ସାଧୁଚରଣର ହାତ ଧରି କହିଲେ, ହୁଁ, ଭାବିଛ କି କଥାରେ ମୋତେ ଭୁଲାଇ ଡର ଦେଖାଇ ଘରକୁ ଫେରାଇ ନେବ ? ସେ ଭୁଲାଭୁଲି ଆଜି ଫଟିବ ନାହିଁ । ଆଜି ଜଗନ୍ନାଥ ମନ୍ଦିରକୁ ଯିବାକୁ ପଡ଼ିବ । ସବୁଦିନେ ଠକ ଠକ ଆଜି ଧରା ପଡ଼ିଛ ।

ମଉସା ତେଣୁ ସିରସ୍ତାରୁ ଫେର ପିଣ୍ଡାରେ ଅନାଇ ବସିଥିବେ ।

କେବେ ଦେଖିଛ ଏତେ ଜଲଦି ଆସିବା ? ବାଡ଼ି ଠୁକ୍ ଠୁକ୍ କରି ଆସୁ ଆସୁ ରାତି ଦି ଘଡ଼ିରୁ କମ୍ ହେବ ନାହିଁ ।

ଆଜି ଯଦି ଆଗରୁ ଆସିଥିବେ ତ ।

ବଉଳ ପୂର୍ଣ୍ଣ ସ୍ୱରରେ କୋକିଳ ଦେଈ କହିଲେ, ଆସିଥିଲେ ତ ଆସିଥିବେ ଏଥିକି ମୁଁ କଅଣ କରିବି ? ସବୁଦିନେ ତ କିଛି ନୁହେଁ, ଃ କାଲେସକାଲେ କେବେ ଦିନେ । ଏଥିକି ଯାହା କରିବାର ପଛେ କରିବେ । ମଲାମରି, ଭଣ୍ଡ ପଡ଼ିଛି କି ? ହାଣ୍ଡିରେ ପୂରାଇ ଫାଶିକି ନେଲେ ନେବେ ପଛେ । ଲୋତକରେ ଚକ୍ଷୁ ଛଳ ଛଳ କରି କହିଲେ, ମଣିଷ ଜନ୍ମ ପାଇ ଆଉ ତ କିଛି ନାହିଁ, ଦିନେ ଟିକିଏ ପୁଣ୍ୟ କରିବ ନାହିଁ ? ଖାଲି କାମ, କାମ,... । କାହିଁକି, ସେ କଅଣ ମୋ ମୁଣ୍ଡ କିଣିଛନ୍ତି କି, ନା ମୁଁ ଆସିଲା ଦିନ ଲେଖି ଦେଇଛି ଖାଲି ଏ ନରକରେ ଘାଣ୍ଟି ହେଉଥିବି ?

ସାଧୁଚରଣ କହିଲେ, ସ୍ୱାମୀ ସେବାଠୁଁ ବଳି ସ୍ତ୍ରୀର ଅଧିକ ପୁଣ୍ୟଧର୍ମ କଅଣ ଅଛି ଶୁଣେ ? ସ୍ୱାମୀ ସେବାରେ ଯେ ଦିନ କାଟେ ଭଗବାନ୍ ତା ଉପରେ ସନ୍ତୁଷ୍ଟ ହୁଅନ୍ତି ।

ବିଦ୍ରୂପର ହାସ୍ୟଚ୍ଛଟାରେ ଅଧର ଚମକାଇ କୋକିଳ ଦେଈ କହିଲେ, ଭାରି ତ, ଓହୋ, ସ୍ୱାମୀ । ହଉ ହଉ, ରଖ ତମର ଧର୍ମ କଥା । ସେଗୁଡ଼ା ଆଉ କାହା ଆଗେ କହିବ । ମନ୍ଦିରକୁ ନେବ କି ନାହିଁ କହିଲ ଭଲା ? କୋକିଳ ରାସ୍ତାର ଗୋଟିଏ ପାଖକୁ ଘୁଞ୍ଚିଯାଇ ଉତ୍ତର ପ୍ରତୀକ୍ଷାରେ ରହିଲେ । ଉପାୟାନ୍ତର ନ ଦେଖି ସାଧୁଚରଣ କହିଲେ, ଆଜି ପଶ୍ଚିମା ଯାତ୍ରୀଙ୍କର ଭାରି ଭିଡ଼ ମନ୍ଦିର ଭିତରେ । ଏଇ ଦେଖୁନା, ରାସ୍ତାରେ କେତେ ଲୋକ ।

ଲୋକେ ଯିବାରୁ ତ ପୁଣି ଭିଡ଼ ହେଲା । ଆମେ କଅଣ ଲୋକ ନୁହଁ, ଭିଡ଼ ତ କିଛି ତା ମନକୁ ହୁଏ ନାହିଁ । ତେମେ ଯାହା ଭାବ ପଛେ ଅସଲ କଥା ହେଉଛି ତେମେ ଭାରି ମନୁଆ ସାଧୁ, ମନ ଯାହା ହେଉଥିବ ତାହାହିଁ କରିବ । ଯେତେ ଫାଟିଫୁଟିଗଲେ ତମର ସେହି ଏକା ରାହା, ଏକା ଜଗର୍ ।

କୋକିଳ ସାଧୁଚରଣଙ୍କର ମୁହଁକୁ ଅନାଇଁ ହସିଦେଲେ । ସାଧୁଚରଣ ଗମ୍ଭୀର ଭାବରେ ପୂର୍ବପରି ଚାଲିଲେ । କୋକିଳ ଦେଈଙ୍କର ଅଭିମାନଭରା ଛଳକଥା ଓ ହାସ୍ୟଭରା କୁଟିଳ ଚାହାଁଣୀ ଯେ ତାଙ୍କର ସବୁ ତର୍କକୁ ପରାସ୍ତ କଲା ଏଥିରେ ସନ୍ଦେହ ନାହିଁ । ତଥାପି, ସେ ନିଜେ ବ୍ୟସ୍ତ ହେଲାପରି ମନକୁମନ କହିଲେ, କେତେ ପରିଚିତ ଲୋକେ ଆଜି ମନ୍ଦିରକୁ ଆସିଥିବେ । କଅଣ କହିବେ କଅଣ ନାହିଁ—କାହା ପାଟିରେ କିଏ ହାତ ଦେବ ।

ଶରବିଦ୍ଧା ସିଂହୀପରି ଚମକିପଡ଼ି କୋକିଳ ଦେଈ କହିଲେ, ଚାଲ, ଚାଲ, ଘରକୁ ଚାଲ । ମୋର ଜଗନ୍ନାଥ ଦର୍ଶନ ଏତିକି । ମୋତେ ସଙ୍ଗରେ ନେଇ ଜଗନ୍ନାଥ ମନ୍ଦିରକୁ ଗଲେ ତେମେ ନିଜକୁ ଅପମାନିତ ମନେ କରୁଛ । ଆଉ, କିଏ ବା କଣ କହିବ, କାହିଁକି ? କେତେ ଲୋକ ଆସୁଛନ୍ତି, ଯାଉଛନ୍ତି, ଆମକୁ ଏବେ ଅନାଇ ବସିଛି କିଏ ? କାହାର ଏତେ ଗରଜ ? କହିଲେ ବା ଲୋକଙ୍କ ଅଲଣା କଥାରେ ଯେ କାନ ଦିଏ ତାଠୁଁ ବଳି ଓଲୁ କିଏ ଅଛି । ଚାଲ, ମନ୍ଦିରକୁ ଯିବା ଦରକାର ନାହିଁ ।

ସାଧୁଚରଣ ଆପତ୍ତି ନ କରି କୋକିଳ ଦେଈଙ୍କୁ ସଙ୍ଗରେ ଘେନି ବସାକୁ ଫେରିଲେ ।

## ୭

ସାଧୁଚରଣଙ୍କ ଉପରେ କୋକିଳ ଦେଈଙ୍କର ଅଯଥା ଅଭିମାନ ଫଳରେ ଏହା ହିଁ ହେଲା ଯେ କୋକିଳ କେତେଦିନ ପାଇଁ ସାଧୁଚରଣଙ୍କୁ ଆଉ କଥା କହିଲେ ନାହିଁ । ଯଦି କେବେ ନିତାନ୍ତ ବାଧ୍ୟ ହୋଇ କହନ୍ତି ଜଣାପଡ଼େ ସେ କଥାରେ ସରସତା ନାହିଁ । କହିବାକୁ ହେବ ବୋଲି କହନ୍ତି । ସାଧୁଚରଣଙ୍କ ମନରେ ଏଥିପାଇଁ ଅବଶ୍ୟ ଦୁଃଖ ହୁଏ, ମାତ୍ର ଦୁଃଖ ଘୁଞ୍ଚାଇବାର କୌଣସି ସହଜ ଉପାୟ ଦେଖି ପାରନ୍ତି ନାହିଁ । ଉପରେ ପଡ଼ି ମାଉସୀଙ୍କ ପାଇଁ ସେ ନିଜେ ଗୃହପାଇଟି କରିବାକୁ ଚେଷ୍ଟା କରନ୍ତି । ଯେତେ ଗୋଳେଇହେଲେ ମାଉସୀଙ୍କର ମନ ପରିବର୍ତ୍ତିତ ହୁଏ ନାହିଁ ।

କୋକିଳ ଯେ ନିଜର ପରିବର୍ତ୍ତିତ ପ୍ରକୃତି ପାଇଁ ମନରେ କିଛି ନ ଭାବନ୍ତି ଏହା ନୁହେଁ । ସେ ଯେତେବେଳେ ନିଜର ବର୍ତ୍ତମାନ ଅବସ୍ଥା ସଙ୍ଗେ ଅତୀତ ଅବସ୍ଥାକୁ ତୁଳନା କରନ୍ତି, ନିଜର ପ୍ରକୃତିର ସନ୍ତୋଷଜନକ ଉତ୍ତର ଦେଇ ପାରନ୍ତି ନାହିଁ । କାଲିକାର ଆଲୁଳାୟିତକେଶା, ଛିନ୍ନମଳିନ-ବସ୍ତ୍ରପରିହିତା କୋକିଳଙ୍କର ଆଜି ଏ ପରିବର୍ତ୍ତନ କାହିଁକି ? ନିଜ ଅଙ୍ଗ ଓ ରୂପର ଯତ୍ନ ନେବା ଯେ ଦିନେ ବିଡ଼ମ୍ବନା ବୋଲି ମନେ କରୁଥିଲେ, ଆଜି କାହିଁକି ମନ ଚାହେଁ ଭିନ୍ନ ପ୍ରକାର ।

ସାଧୁଚରଣଙ୍କର ଟଙ୍କାର ଅଭାବ ନ ଥାଏ । ବାପା ଯାହା ପଠାଇବାର ପଠାନ୍ତି । ସ୍ନେହମୟୀ ମାତା, କାଳେ ପୁଅ କଷ୍ଟ ପାଇବ ବୋଲି ମଝିରେ ମଝିରେ ଦଶ ହେଉ ପାଞ୍ଚ ହେଉ ପଠାଇ ଦିଅନ୍ତି । ସାଧୁଚରଣ ସାମାନ୍ୟ କିଛି ହାତରେ ରଖି ବାକିତକ ମାଉସୀଙ୍କୁ ଦେଇଦିଅନ୍ତି । ଏ କଥା ରସାନନ୍ଦ ଜାଣି ମଧ୍ୟ ନ ଜାଣିଲା ପରି ରହନ୍ତି । ନାନାପ୍ରକାର ବ୍ୟାଧି ସଙ୍ଗେ ଅବିରତ ସଂଗ୍ରାମ କରି, ଟିକିଏ ଅବସର ପାଇଲେ ସିରସ୍ତାରେ ବସି କାଗଜ ଘାଣ୍ଟି ଘାଣ୍ଟି ବେଳ ସରେ । କେଉଁ ପାର୍ଟି କେଉଁ ସୁଅରେ ଚାଲିଛି, ସେଥିପ୍ରତି ନଜର ରଖିବାକୁ ତର କାହିଁ ? ଯାହା ହେଉ ପଛେ ରସାନନ୍ଦ

ବାବୁଙ୍କ ଔଷଧଖିଆରେ ତ୍ରୁଟି ନ ଥାଏ । କୋକିଳ ପୂର୍ବପରି ବେଲ ଜାଣି ଉପଦେଶମତେ ଔଷଧ ଦିଅନ୍ତି । ରୋଗର ଉପଶମ ହେଉ ନ ହେଉ ମନରେ ଦମ୍ଭ, ପଦେ ଅଧେ କହନ୍ତି । ଔଷଧ ଶେଷହେଲେ ସାଧୁଚରଣଙ୍କୁ କହି, ନୂଆ ଦାମୀ ଔଷଧ କଲିକତାରୁ ମଗାଇ ଖୁଆନ୍ତି ।

ରସାନନ୍ଦ ଏଥିନିମନ୍ତେ ଉଭୟ କୋକିଳ ଓ ସାଧୁଚରଣଙ୍କ ଉପରେ ପ୍ରୀତ । କୋକିଳଙ୍କର ଉଦାସଭାବ ଯେ ପରିବର୍ତ୍ତିତ ହୋଇଛି ଏହାର କାରଣ ଯେ ସ୍ନେହର ସାଧୁ, ଏଥିରେ ସନ୍ଦେହ ନାହିଁ । କେବେ କେବେ ସେ ରସିକତାର ସୀମା ଲଙ୍ଘନ କରି ରୋଗକ୍ଳିଷ୍ଟ ଜୀର୍ଣ୍ଣ ମୁଖରେ ହସ ଫୁଟାଇ ମିଁ ମିଁ ସ୍ୱରରେ କୋକିଳ ଦେଈଙ୍କୁ କହନ୍ତି, ବଡ଼ ଭାଗ୍ୟବତୀ ତୁମେ, ଶୁଖିଲାରେ ବାଲିଆ ପିଟିବା କଥା । ସାଧୁପରି ପୁଅ ପାଇ ତମେ ସୁଖୀ ।

କୋକିଳଙ୍କର ମୁଖ ମଳିନ ହୁଏ । କଣ କହିବେ କହିବେ ହୋଇ ସେ କିଛି କହି ପାରନ୍ତି ନାହିଁ । ଅନ୍ୟ କାର୍ଯ୍ୟର ବାହାନାରେ ରସାନନ୍ଦଙ୍କ ସମ୍ମୁଖରୁ ଚାଲିଯାଆନ୍ତି ।

କେବେ କେବେ ସାହସ କରି କହନ୍ତି, ହଁ, ଭାଗ୍ୟବତୀ ନୁହେଁ ତ କଣ ! ତମପରି ସ୍ୱାମୀର ହାତ ଧରି, ଭାଗ୍ୟବତୀ ବୋଲି ନିଜକୁ ନ କହିବ କିଏ ?

ବିଦ୍ରୂପରି ହସଟିଏ ହସିଦେଇ କୋକିଳ ଦେଈ ଉଠି ଚାଲିଯାଆନ୍ତି । ତାଙ୍କ କଥାରେ ରସାନନ୍ଦ ନୀରବ ହୁଅନ୍ତି । ମନରେ ତାଙ୍କର କି ଭାବ ଆସେ ଏକା ତାଙ୍କୁ ହିଁ ଜଣା । ଖାଲି ଦୀର୍ଘନିଶ୍ୱାସ ପକାଇ କୋକିଳ ଦେଈଙ୍କର ଅର୍ଦ୍ଧାବୃତ ମୁଖକୁ ଅନାଇ ରହନ୍ତି ।

ଅଭିମାନ ବେଶି ଦିନ ରହି ପାରିଲା ନାହିଁ । ଅଭିମାନ ସିନା ବାହାରେ ବାହାରେ, କୋକିଳ ଦେଈଙ୍କ ଭିତରେ ଯେ ଘାଣ୍ଟି ଚକଟି ହେଉଥାଏ । ଗାମ୍ଭୀର୍ଯ୍ୟ ଓ ବିଷାଦର ପରଦାରେ ମୁହଁ ଢାଙ୍କି ଭିତରେ ଭିତରେ ପୋଡ଼ିଜଳି ହୋଇ ମରିବେ କେତେ ଦିନ । ମିଛଟାରେ ହେଲେ କୌଣସି କାର୍ଯ୍ୟ ବାହାନାରେ ସାଧୁଚରଣଙ୍କ ପଢ଼ାଘରେ ପଶି କଅଣ ଖୋଜିଲା ପରି ଏଥିରେ ସେଥିରେ ହାତ ମାରି ଧୀରେ ଧୀରେ ପାଖକୁ ଯାଇ ଗୋଟିଏ ପ୍ରଶ୍ନ ପଚାରି ଦିଅନ୍ତି ।

ସାଧୁଚରଣ ଦର୍ପଣରେ ମୁହଁ ଦେଖିଲା ପରି ବହି କି ଅନାଇଁ ବସିଥାନ୍ତି । ମାଉସୀଙ୍କର ଅପ୍ରତ୍ୟାଶିତ ପ୍ରଶ୍ନ ଶୁଣି ସେ ଆଉ ଚୁପ୍ ହୋଇ ବସି ପାରନ୍ତି ନାହିଁ । ଅତି ଆଗ୍ରହର ସହିତ ସେ ସେତେବେଳେ ଅନ୍ୟ ଆଡ଼କୁ ଚାହିଁ କୋକିଳ ଦେଈଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଚେଷ୍ଟା କରନ୍ତି ।

ମାଉସୀ, ଝାଳ ଗରମ ହେଉଛି କହି ବିଚଣା ଧରି ବିଞ୍ଚି ବସନ୍ତି । ଥଣ୍ଡା ପବନ ଦେହରେ ଘୁଁ ଘୁଁ ଲାଗି ଲୋମ ଟାଙ୍କୁରାଇ ଦିଏ । ସାଧୁଚରଣ ତାଙ୍କର

ଆଗ୍ରହ ଭାଙ୍ଗି ପାରନ୍ତି ନାହିଁ । କେବେ କେବେ ମୁଣ୍ଡଟେ ଖଣ୍ଡେ କୁଟା ପଡ଼ିଛି ବୋଲି କି ପିଠିରେ ଟିକିଏ ଧୂଳି ଲାଗିଛି ବୋଲି କୋକିଳ ଦେଈ ଅତ୍ୟଧିକ ସ୍ନେହରେ ଗୋଟିଏ ଆଙ୍ଗୁଠିରେ ମୁଣ୍ଡର ବାଳ ସାଉଳି ଦିଅନ୍ତି, ଅବା ପିଠି ଆଉଁସି ଦିଅନ୍ତି । ଧନ୍ୟ ତାଙ୍କର ସ୍ନେହ ! ଏହିପରି ଘଣ୍ଟାଟିଏ ଗଲା ପରେ । ଚୁଲି ଉପରେ ତେଣେ ଡାଲିହାଣ୍ଡିରୁ ପାଣି ମରି ପୋଡ଼ା ଗନ୍ଧ ନାକରେ ବାଜିଲେ କୋକିଳ ବ୍ୟସ୍ତ ହୋଇ କହନ୍ତି, ପଢ଼ ପଢ଼, ମୁଁ ଆସୁଛି ।

କୋକିଳ ଚାଲିଗଲା ପରେ ସାଧୁଚରଣ ବହିତକ ଆଡ଼େଇ ଦେଇ ଗୋଡ଼ ଦୋଟି ଟେବୁଲ ଉପରେ ଥୋଇ, ଚଉକିକୁ ଆଉଜି ଶୋଇ ପଡ଼ନ୍ତି । ପ୍ରକୃତରେ ଶୋଇଥାନ୍ତି କି ଆଖିବୁଜି ଆକାଶ ପାତାଳ କେତେ କଅଣ ଭାବୁଥାନ୍ତି ତାଙ୍କୁ ହିଁ ଜଣା । ଯେତେବେଳେ କୋକିଳ ଡାଲି ବଘାର ତରକାରି ପାଇଁ ପରିବା ଯୋଗାଡ଼ି ଫେରି ଆସନ୍ତି, ଦେଖନ୍ତି ସାଧୁଚରଣ ଶୋଇଛନ୍ତି । ସେ ଚଉକି ପଛରେ ଠିଆହୋଇ ସାଧୁଚରଣଙ୍କ ହାତକୁ ଚୁଲିଏ ଚିମୁଟି ଦିଅନ୍ତି । ସାଧୁ ଧଡ଼ପଡ଼ ହୋଇ ଉଠି ବସିଲେ କୋକିଳ ଆଗକୁ ଆସି ମୁରବିଗିରି ଦେଖାଇ କହନ୍ତି, ଏଇ ପଢ଼ା ହେଉଛି ପରା, ନା ? ରହ ରହ ତମ ବୋଉଙ୍କ ପାଖକୁ ଲେଖୁଛି ।

ସାଧୁ ମୁରୁକି ହସି କହନ୍ତି, ଆଜି କାହିଁକି ପଢ଼ାରେ ମନ ଲାଗୁନାହିଁ, ମୁଣ୍ଡ କଅଣ ହେଉଛି । କୋକିଳ ବ୍ୟସ୍ତ ହୋଇ ମୁହଁ ଶୁଖାଇ ସାଧୁଚରଣଙ୍କର ମୁଣ୍ଡ ଚିପି ଦିଅନ୍ତି । କେବେ କେବେ ଗୋଟିଏ ସୁନ୍ଦର ଗଳ୍ପ କହିବାକୁ ଅନୁରୋଧ କରନ୍ତି ।

ସାଧୁ ଗଳ୍ପ ଆରମ୍ଭ କରନ୍ତି । କୋକିଳ ମନଦେଇ ଶୁଣୁଥାନ୍ତି । କୌଣସି ଜାଗାରେ ସନ୍ଦେହ ହେଲେ ମଝିରେ ମଝିରେ ପଦେ ଅଧେ ପଚାରି ଦିଅନ୍ତି । ମାତ୍ର ଅଭିମାନ କଲା ଦିନୁ କେହି କାହାର ପାଖ ପଶନ୍ତି ନାହିଁ । ଯେଝା ଯେଝାର ସୁବିଧା ମତେ ନିଜର କାମ କରିଯାଉଥାନ୍ତି । ଯେତେହେଲେ, ଉଭୟଙ୍କୁ କିପରି ଅଲଗା ଅଲଗା ଲାଗୁଥାଏ । କୋକିଳଙ୍କର କାମରେ ମନ ଲାଗେ ନାହିଁ । ସାଧୁଚରଣଙ୍କୁ ମଧ୍ୟ ଘର ଭଲ ଲାଗେ ନାହିଁ । ବାତଚନ୍ଦ ପରି ସେ ପୁରା ସହରଯାକ ବୁଲୁଥାନ୍ତି । ଇଚ୍ଛାହେଲେ ଖାଇବାକୁ ଘଣ୍ଟାଏ ବସାକୁ ଫେରିଲେ ଫେରନ୍ତି, ନୋହିଲେ ନାହିଁ । ପକେଟରେ ପଇସା ଥିଲେ ମନ୍ଦିରରେ ମହାପ୍ରସାଦ ସେବାକରି ସେ ବୁଲୁଥାନ୍ତି ସଞ୍ଜବୁଡ଼ ଯାଏ ।

କେହି ଜାଣି ନ ଥିଲେ ଯେ ସାମାନ୍ୟ ଝିଙ୍ଗିଟି ଖେଳରୁ ମହାଭାରତ ଯୁଦ୍ଧ ଆରମ୍ଭ ହେବ । କଥା କଅଣ ବୁଝିଲାବେଳକୁ କିଛି ନାହିଁ, ଅଥଚ ଏତେ କାଣ୍ଡ । କୋକିଳ ଦେଈଙ୍କୁ ଏ ନେଇ କାନ୍ଦି ମାଡ଼େ । ଯେତେବେଳେ ସାଧୁଚରଣ ପୁରା ସହରର ଏଣେ ତେଣେ ବୁଲୁଥାନ୍ତି, କୋକିଳ ତାଙ୍କ ପଢ଼ାଘରେ ଚଉକି ଉପରେ

ମନମାରି ଚୁପ୍ ହୋଇ ବସିଥାନ୍ତି । ଆଖିରୁ ଧାର ଧାର ଲୁହ ଗଡ଼ି ପଡ଼ୁଥାଏ । କେବେ କେବେ ହଠାତ୍ ଚମକ ପଡ଼ି ସନ୍ତ୍ରସ୍ତ ହୋଇ ଦୁଆରଆଡ଼କୁ ଚାହାନ୍ତି । କେଜାଣି କଅଣ ଭାବି ଦାଣ୍ଡପାଖ ଝରକା ବନ୍ଦକରି ପୁଣି ଆସି ଚଉକି ଉପରେ ବସନ୍ତି । ବସି ବସି ବିରକ୍ତି ଲାଗେ । ଟେବୁଲ ଉପରେ ବହିଗୁଡ଼ିକ ଯତ୍ନକରି ସଜାଡ଼ି ରଖନ୍ତି ।

ଲୁଗାପଟା କୁଣ୍ଢାଇ ରାକ୍ ଉପରେ ସଜାଡ଼ି ରଖନ୍ତି । ବିଛଣା ଭାଙ୍ଗି ଭୁଙ୍ଗି ଖଟର ଗୋଟିଏ ପାଖରେ ରଖନ୍ତି । ଘରକୁ ଓଳାଇ କାଚକେନ୍ଦୁ ପରି ଉଜ୍ଜ୍ୱଳ କରନ୍ତି । ତଥାପି ମନ ଶାନ୍ତ ହୁଏ ନାହିଁ, ତଥାପି ମନରୁ ଦୁଃଖ ଦୂର ହୁଏ ନାହିଁ । ପ୍ରତୀକ୍ଷା କରନ୍ତି, ଯାହା ହେବାର ହେଉ ଆଜି କଥା କହିବ ।

ସାଧୁ ଦାଣ୍ଡରେ ଝିଞ୍ଜିରି ଖଡ଼ଖଡ଼ କରନ୍ତି । କୋକିଳ ସବୁ ପାଇଛି ଛାଡ଼ି ଆଗ ଦଉଡ଼ି ଆସନ୍ତି କବାଟ ଖୋଲିବାକୁ । ମୁଣ୍ଡରେ ଓଢ଼ଣା ଟାଣି ଝିଞ୍ଜିରି ଖୋଲିଲା ବେଳକୁ ହାତ ଥରେ । ପ୍ରତୀକ୍ଷା ପଣ୍ଡ ହୁଏ । ସାଧୁ ଗମ୍ଭୀରମୁଖରେ ଘର ଭିତରକୁ ଆସନ୍ତି । ମାଉସୀଙ୍କର ମୁହଁ ଦେଖି ସେ ମୁଖଟିକୁ ଆହୁରି ଗମ୍ଭୀର କରି ମଝିଘରେ ପଶନ୍ତି । କୋକିଳ ବ୍ୟଥିତ ମନ ଘେନି ଫେରି ଆସନ୍ତି କଣ ଘରକୁ ।

ସେଦିନ ପାଗଟା କିପରି ମେଘୁଆ ହୋଇଥିଲା । ସକାଳୁ ଉଠି ରସାନନ୍ଦ ନିଜର କାମଧନ୍ଦା ସାରି ମଠକୁ ଚାଲିଗଲେ । କୋକିଳ ଦେଇ ଘରର ବାସିକାମ ସାରିଲେ । ଗାଧୁଆ ପାଧୁଆ ସାରି ଚୁଲି ଲଗାଇ ରନ୍ଧା କାମରେ ଲାଗିଲେ । ପୋଲିସ ଥାନାରୁ ଘଣ୍ଟାର ଆବାଜ୍ ଆସିଲା, ସମସ୍ତ ଆଠଟା । କୋକିଳ ପରିବା କାଟୁ କାଟୁ ହଠାତ୍ ଚମକି ପଡ଼ିଲେ, ଏଁ, ବେଳ ହେଲାଣି ଆଠଟା, ସାଧୁ ଉଠି ନାହାନ୍ତି ଯେ ! ଏତେ ଡେରିଯାଏ କେବେ ସେ ଶୁଅନ୍ତି ନାହିଁ ।

ପରିବା କଟା ଛାଡ଼ି ସେ ଉଠି ଆସିଲେ । ମଝିଘରର କବାଟ ଆଉଜା ହୋଇଥିଲା । କବାଟକୁ ଧୀରେ ଧୀରେ ଖୋଲି ଦେଖିଲେ ସାଧୁ ଚଦର ଘୋରହୋଇ ଶୋଇଛନ୍ତି । ବେଳେବେଳେ କରି ନେଉଟାଇ ବ୍ୟସ୍ତ ହୋଇ କୁହାଉଛନ୍ତି । କୋକିଳ ସାହସ କରି ଆସି ଖଟ ପାଖରେ ଠିଆହେଲେ । ସେ ଯେ ଆସିଛନ୍ତି ଏହା ଜଣାଇ ଦେବାକୁ ଗୋଡ଼ର ମଲ ଝମ୍‌ଝମ୍ କରି, ଗଳା ଖଙ୍କାରି ଖଟକୁ ଆଉଜି ଠିଆ ହେଲେ ।

ସାଧୁ ମୁହଁରୁ ଚାଦର ଘୁଞ୍ଚାଇ ଦେଖିଲେ, ପାଖରେ ମାଉସୀ । ସେ କିଛି ନକହି ଆଖି ବୁଜିଲେ । ଆଖିକୋଣରୁ ଦୁଇଧାର ଲୁହ ଗଡ଼ିପଡ଼ିଲା ।

ଘଟଣା କଅଣ ବୁଝିବାକୁ କୋକିଳ ଉତ୍କଣ୍ଠିତା ହୋଇ ଡାକିଲେ, ସାଧୁ···ତାଙ୍କର କଣ୍ଠରୁଦ୍ଧ ହେଲା । ନେତକରେ ବକ୍ଷୁ ଛଳଛଳ ହେଲା ।

"ସାଧୁ ଆଖିପତା ଖୋଲି କହିଲେ, ଦେହ ଭଲନାହିଁ ମାଉସି !

ଅଧୀର ହୋଇ କୋକିଳ ପଚାରିଲେ, ଏଁ, ଭଲ ନାହିଁ ? କଅଣ ହୋଇଛି ଶୁଣେ ?

ଜର୍‌ଆ ଲାଗୁଛି, ମୁଣ୍ଡ ବଥାଉଛି ।

କୋକିଳ ମୁଣ୍ଡରେ ହାତ ମାରି ବ୍ୟସ୍ତ ହୋଇ କହିଲେ, ଓହୋ, ଧିଅରେ ତାତି ଭରତି ହୋଇଛି । ଏ ଯେଉଁ ବୁଲା, ଖିଆ ନାହିଁ ତିଆ ନାହିଁ, ଅଖିଆ ଅପିଆ ଦିନଯାକ ପୁରୀସହରର ଗୋଟାକଯାକ ବୁଲିବାର ଫଳ ବାହାରି ପଡ଼ୁଛି । କଥା ମାନିଲେ ସିନା ହୁଏ ! ବାର ଜାଗାରେ ଗାଧୁଆ, କେଉଁଦିନ ନରେନ୍ଦ୍ର ତ କେଉଁଦିନ ଇନ୍ଦ୍ରଦ୍ୟୁମ୍ନ, କେଉଁ ଦିନ ଜଗନ୍ନାଥବଲ୍ଲଭ ତ କୋଉଦିନ ସମୁଦ୍ର । ଏଥିରେ ଜର ହେବ ନାହିଁ ? ଘରେ କଅଣ କୂଅ ନାହିଁ ?

ସାଧୁ ନୀରବ ରହିଲେ । ଏତେ ଦିନକେ ମାଉସୀ ଅଳିକଟି କରି ପଦେ କହୁଛନ୍ତି, ସେ ବାଧା ଦେବେ କାହିଁକି ? ମାଉସୀ ବୟସରେ ତାଙ୍କଠାରୁ ଦୁଇବର୍ଷ ଶ୍ରେଷ୍ଠ, ତଥାପି, ମା ଯେତେବେଳେ ତାଙ୍କ ହାତରେ ସମର୍ପି ଦେଇ ଯାଇଛନ୍ତି, ଆକଟ କରି କହିବାର ଅଧିକାର ତାଙ୍କର ଅଛି ।

ସାଧୁଚରଣ ସାତଦିନ ଜର ଭୋଗିଲେ । କୋକିଳ ଦେଇ ଜୀବନ ପଣ କରି, ଖିଆ ପିଆ ଭୁଲି ତାଙ୍କର ସେବାରେ ଲାଗିଥାନ୍ତି । ପୁରୀସହରରେ ଡାକ୍ତର ଅଭାବ ନାହିଁ । କୋକିଳ ଦେଇଙ୍କର ଏହି ଡାକ୍ତରଙ୍କ ଉପରେ ବିଶ୍ୱାସ ନ ଥାଏ । ସେ ଜାଣନ୍ତି, ରୋଗ ବୈରାଗ ଆସେ କପାଳ ଘେନି, କପାଳରେ ଥିଲେ ପାଣି ମନ୍ଦାକରେ ସନ୍ନିପାତ ମଲ୍ଲ ଉଠି ବସିବ । କପାଳରେ ନ ଥିଲେ ପଣ ପଣ ଡାକ୍ତର କବିରାଜ କିଛି କରିପାରିବେ ନାହିଁ । ରସାନନ୍ଦ ବାବୁହିଁ ଏହାର ଜୀବନ୍ତ ଉଦାହରଣ । ତେଣୁ, ରସାନନ୍ଦ ବାବୁଙ୍କ ଅନୁରୋଧକୁ ଉପେକ୍ଷା କରି ସେ ଡାକ୍ତର ଡକାଇବାକୁ ମଙ୍ଗିଲେ ନାହିଁ । କହିଲେ, ହଁ ଜର ଟିକିଏ ହୋଇଛି, ଭଲ ହୋଇଯିବ ନାହିଁ ଯେ !

ଏହି କେତେଦିନର ଅଭିଜ୍ଞତାରେ ସାଧୁ ବୁଝିପାରିଲେ, ନାରୀର ଦକ୍ଷତା କେତେ, ମହତ୍ତ୍ୱ କେତେ ! ପୁରୁଷ ଗର୍ବ କରି କହେ ନାରୀ କୋମଳଦେହା, କୋମଳମନା, କଷ୍ଟ ସହି ପାରେ ନାହିଁ । ମାତ୍ର ସାଧୁଚରଣ ନିଜେ ଅଙ୍ଗରେ ଯାହା ଲଭିଛନ୍ତି ସେ ବିଷୟରେ ପରର କଥା ଶୁଣିବାକୁ ଯିବେ ନାହିଁ । ନାରୀ କୋମଳ-ଦେହା ହୋଇପାରେ, କୋମଳମନା ଏଥିରେ ସନ୍ଦେହ ନାହିଁ, ମାତ୍ର ସେ ସବୁ ପର ନିମନ୍ତେ । ପରର ଦୁଃଖ କଷ୍ଟ ନାରୀ ସହି ପାରେ ନାହିଁ, ତେଣୁ ସେ କୋମଳମନା । ସହିଷ୍ଣୁତାରେ ନାରୀକୁ ବଳିପଡ଼ିବ ଏପରି ପୁରୁଷ ନାହିଁ ।

ଗୃହର ଯାବତୀୟ କାର୍ଯ୍ୟ କରି ରସାନନ୍ଦଙ୍କର ସେବାରେ ତ୍ରୁଟି ନ କରି, ଖିଆପିଆ ଭୁଲି, ତାଙ୍କର ରୋଗଶଯ୍ୟା ପାଖରେ ଅନିଦ୍ରାରେ କିଏ ବସି ରହିବ ? ଦାନ୍ତଘଷାଇ ଦେବାଠାରୁ ଆରମ୍ଭ କରି ନିଜ ହାତରେ ପଥି କରାଇ ଦେବା ପର୍ଯ୍ୟନ୍ତ

କରବେ ତାଙ୍କର ମାଉସୀ । ରସାନନ୍ଦ ଯେତେବେଳେ କଣ ଘରେ ନିଦ୍ରାରେ ଅଚେତନ, କୋକିଳ ସାଧୁଚରଣଙ୍କ ପାଖରେ ବସି ତାଙ୍କର ମୁଣ୍ଡ ଚପୁଥାନ୍ତି । ନିଦ ଭାଙ୍ଗିଲେ କୋକିଳ ବେଦାନାରୁ ମଞ୍ଜି କାଢ଼ି ତାଙ୍କର ପାଟିରେ ଦିଅନ୍ତି । ମାଉସୀଙ୍କୁ ଅନବରତ ନିଜପାଇଁ କଷ୍ଟ ପାଉଥିବାର ଦେଖି କୃତଜ୍ଞତା ପୂର୍ଣ୍ଣ ସ୍ୱରରେ ସାଧୁ ଅନୁରୋଧ କରି କହନ୍ତି, ଯାଅ ମାଉସୀ ଶୋଇବ, ମୋ ପାଇଁ ଏତେ କଷ୍ଟ କରୁ କରୁ ଯଦି ନିଜେ ପଡ଼ିଯାଅ ତ ସର୍ବନାଶ ।

କୋକିଳ ସାଧୁଙ୍କର ହାତ ପାପୁଲିକୁ ହାତରେ ଚିପିଧରି କହନ୍ତି, କଷ୍ଟ ହେବ କହୁଛ କାହିଁକି ? ଏ ତ ଆମର କାମ । ଏଥିରେ ଆମର ଆନନ୍ଦ ବଢ଼େ ।

ସାଧୁ ନୀରବ ହୋଇ ଆଖି ବୁଜି ଦିଅନ୍ତି । କେତେବେଳେ ତାଙ୍କୁ ନିଦ ହୋଇଯାଏ ସେ ଜାଣି ପାରନ୍ତି ନାହିଁ । ନିଦ ଭାଙ୍ଗିଲେ ଦେଖନ୍ତି ବାହାରଟା ଫର୍ଚ୍ଚା ଦେଖା ଯାଉଛି । ମାଉସୀ ରାତିସାରା ବସି ବସି ତାଙ୍କର ହାତପାପୁଲି ଉପରେ କପାଳ ରଖି ଶୋଇ ପଡ଼ିଛନ୍ତି ।

ସାଧୁଚରଣ ତାଙ୍କର ପୂର୍ବ ସ୍ୱାସ୍ଥ୍ୟ ଫେରି ପାଇଛନ୍ତି । ଏଥିନିମନ୍ତେ ସେ ମାଉସୀଙ୍କ ନିକଟରେ କୃତଜ୍ଞ । ଗ୍ରୀଷ୍ମଛୁଟି ଆରମ୍ଭ ହେଲା । ସ୍କୁଲର ଛାତ୍ର ଓ ଶିକ୍ଷକମାନେ ଗ୍ରାମକୁ ଗଲେ । ଘରକୁ ଯିବାକୁ ସାଧୁଙ୍କର ମନ ଛକ୍ ପକ୍ ହେଲା । ମାଙ୍କର ସ୍ନେହ, ସରର ଖେଳ, ବାପାଙ୍କର ଆକଟ ତାଙ୍କ ମନେ ପଡ଼ି ତାଙ୍କୁ ଅସ୍ଥିର କରି ପକାଇଲା । ସର ବାରମ୍ବାର ଚିଠି ଲେଖିଛି, ଭାଇ, ମୋ ରାଣ, ଭଜକୁ ନିଶ୍ଚେ ଆସିବ ।

ମାଉସୀଙ୍କୁ ଅଭିପ୍ରାୟ ଜଣାଇବାରୁ ମାଉସୀ ଦୁଃଖରେ ମୁଖ ଗମ୍ଭୀର କଲେ । ସେଦିନ ଏକାଦଶୀ ବୋଲି କହି ଜଳ ଗ୍ରହଣ କଲେ ନାହିଁ । ପରଦିନ ଲୋତକଭରା ଚକ୍ଷୁରେ କହିଲେ, ତେମେ ଅତି କପଟୀ ସାଧୁ, ମୋତେ ପର ବୋଲି ମନେ କରିଛ । ପର ସିନା କେବେ ଥିଲି, ତେମେ ଯେଉଁ ମାୟାମମତା ଲଗାଇ ଦେଇଛ, ପରବୋଲି ମନେ କରିବାକୁ ମୋର ସାହସ ହୁଏ ନାହିଁ । ତମ କଥା ତମେ ଜାଣ ।

ଲଜ୍ଜିତ ହେଲାପରି ସାଧୁ ତଳକୁ ଚାହିଁ କହିଲେ, ସର ଲେଖିଥିଲା ବୋଲି ସିନା ।

ଚକ୍ଷୁରୁ ଲୋତକ ପୋଛି କୋକିଳ କହିଲେ, ଯିବାର କଥା ତ ଯିବ, ମୋତେ ପଚାରିଲ କାହିଁକି ? ମୋର ଯଦି ବାନ୍ଧି ରଖିବାର ଅଧିକାର ଥାନ୍ତା···ସାଧୁ, ତେମେ ଗଲେ ମୁଁ ଚଳିବି କିପରି ଏକୁଟିଆ ? ପୁଣି ମୋର ପୂର୍ବାବସ୍ଥା ଫେରି ଆସିବ । ହାତପିଠିରେ ଲୁହ ପୋଛୁ ପୋଛୁ ଦିନ ସରିବ ନାହିଁ । ତେମେ କଅଣ ମୋ ଅବସ୍ଥା ଜାଣ ନାହିଁ ? କେଜାଣି କ'ଣ କହିବାକୁ ବସିଥିଲେ । ସାଧୁଚରଣଙ୍କ ମୁହଁକୁ ଚାହିଁ କଥା ଚାପିନେଲେ ।

ସାଧୁ କହିଲେ, ଏକୁଟିଆଟା କାହିଁକି କହୁଛ, ମଉସା ଅଛନ୍ତି ।

ଅବକ୍କାସ୍ ଚକ ହସ ହସି କୋକିଲ କହିଲେ, ହଁ, ତମ ମଉସା, ସେ ଦିନରେ ଅଠର ଘଣ୍ଟା ତେଣେ ରହନ୍ତି । ଘରେ ରହିଲେ, ତାଙ୍କର କଥାଭାଷା, ହସ ଖେଳ ଭୋଗ ସାଙ୍ଗେ । ମୁଁ ସିନା ଏଠି ପାଇଟି କରି ପେଟ ପୋଷିବାକୁ ଅଛି ।

ମୁଁ ଯଦି ଯାଏଁ, ଦିନେ ଦି ଦିନ ରହି ଫେରି ଆସିବି ।

ସେହି ଦିନେ ଦି ଦିନ ମୋତେ ବାର ବରଷ ପରି ଲାଗିବ । ଗଲା ତ ଏକା ଥରେ ନିର୍ଜଞ୍ଜାଳୀ ହୋଇ, ନିରସ ହୋଇ ପଡ଼ିଥିଲି, କାନ୍ଦି କାନ୍ଦି ଦିନ ସବୁ ନ ଥିଲି । ତେମେ ଯେଉଁ ମାୟା ଲଗାଇ ଦେଇଛ ସେତିକରେ ମୁଁ ସବୁ ଦୁଃଖ ଭୁଲି ଯାଇଛି । ଦୁଃଖ ଯେ ବେଳେ ବେଳେ ନ ହୁଏ ଏହା ନୁହେଁ, କିନ୍ତୁ ମନରେ ଦୁଃଖ ଆସିଲେ ତମ ସଙ୍ଗେ ପଦେ ଅଧେ କଥାଭାଷା କଲେ କ୍ଷଣକରେ ସେ ଦୁଃଖ ଚାଲିଯାଏ । କିଛି ସମୟ ଚୁପ୍ ରହି ପୁଣି କହିଲେ, ତମେ ହୁଏତ ଭାବୁଥିବ, ମୋଠୁଁ ବଳି ନିର୍ଲଜ୍ଜା ଆଉ କେହି ନାହିଁ କାରଣ ତମ ଉପରେ ମୋଓର କି ଅଧିକାର ଅଛି ? ମୁଁ ତମକୁ କିଛି ଚିରଦିନ ଅଟକାଇ ରଖି ପାରିବି ନାହିଁ । ତେବେ ଏତିକି କହିପାରେ ଯେ—

ବାଧାଦେଇ ସାଧୁ କହିଲେ, ମାଉସୀ, ତମର କଥାରୁ ହିଁ ପ୍ରମାଣ ମିଳୁଛି ତମ ସ୍ନେହଟା ବାହାରିଆ । କାହିଁକି, ମୋ ଉପରେ କଅଣ ତମର କିଛି ଅଧିକାର ନାହିଁ ? ବୋଉର ଯେତିକି ଅଧିକାର, ତମର ମଧ୍ୟ ସେତିକି । ତମେ କଅଣ ଭାବିଛ ମୁଁ ଏତେ଼ ଅକୃତଜ୍ଞ ? ତମର ଅକୁଣ୍ଠିତ ଯତ୍ନ ଓ ପବିତ୍ର ନିର୍ମଳ ସ୍ନେହ କି ମୁଁ ଏ ଜନ୍ମରେ ଭୁଲି ପାରିବି ? ସୁଝାଇ ପାରିବି ? ନା ମୋର ଘରକୁ ଯିବା ଆବଶ୍ୟକ ନାହିଁ । ଆଜି ବୋଉକୁ ଲେଖି ଦେଉଛି, ମାଉସୀ ମତେ ପାଖରୁ ଛାଡ଼ିବାକୁ ଅମଙ୍ଗ ।

କୋକିଲ କ୍ଷଣକାଳ ମୂକଙ୍କ ପରି ସାଧୁଚରଣଙ୍କ ମୁହଁକୁ ଅନାଇ ରହିଲେ । ତାଙ୍କର କାନ ପାଖେ ବାରମ୍ବାର ପ୍ରତିଧ୍ୱନିତ ହେଲା ସାଧୁଚରଣଙ୍କର ଗୋଟିଏ ବାକ୍ୟ, ମାଉସୀ ମତେ ଛାଡ଼ିବାକୁ ଅମଙ୍ଗ ।

କାହିଁକି ଅମଙ୍ଗ ?

ମନଗହନର ଏହି ପ୍ରଶ୍ନରେ ତାଙ୍କର ଅନ୍ତରାତ୍ମା କାନ୍ଦି ଉଠିଲା । ଅଜଣା ଭୟରେ ସେ ଥରି ଉଠିଲେ । ସାଧୁଚରଣ ପାଖରେ ଥିଲେ ତାଙ୍କର ଦୁଃଖ କଅଣ ଦୂର ହୋଇପାରେ ? ଛାଡ଼ିବାକୁ ଅମଙ୍ଗ କାହିଁକି ?

ସେ କହିଲେ, ତେମେ ଯାଅ ସାଧୁ, ମା ତମର ଅନେଇଁ ବସିଥିବେ । ମୋ ପକ୍ଷରେ ସ୍ୱାର୍ଥପରତା ଭଲ ଦିଶିବ ନାହିଁ ।

ତମେ କଅଣ ମା ନୁହଁ ? ତମ ମନରେ କଷ୍ଟଦେଇ ମା ପାଖକୁ ଯିବାକୁ ମୋର ଆଉ ଇଚ୍ଛା ନାହିଁ ।

ମୁଁ ତମର ମା ନୁହେଁ ସାଧୁ !

ମା ଓ ମାଉସୀ ଭିତରେ ପ୍ରଭେଦ ମୁଁ ଦେଖେ ନାହିଁ ।

ରକ୍ତର ସମ୍ପର୍କ ନାହିଁ, ଭ ।

ରକ୍ତର ସମ୍ପର୍କ ସବୁଠୁଁ ବଡ଼ ସମ୍ପର୍କ ନୁହେଁ । ସ୍ନେହ, ଶ୍ରଦ୍ଧା, ଭଲ ପାଇବା ପାଖରେ ରକ୍ତର ସମ୍ପର୍କ ହାରିଯାଏ । ତମର ସ୍ନେହ ଦେଖିଲେ କେଉଁ ସାହସରେ ମା ଟାଣ କରି କହିବ ଯେ ସେ ତମଠାରୁ ମତେ ବେଶି ଭଲ ପାଏ ?

ତମର କଅଣ ବିଶ୍ୱାସ ମୁଁ ତମକୁ ଭଲ ପାଏ ?

ମଣିଷ ଯାହା ଅନୁଭବ କରେ ତହିଁରେ ବିଶ୍ୱାସ ଅବିଶ୍ୱାସର ପ୍ରଶ୍ନ ଉଠେ ନାହିଁ ।

ତମର ଧାରଣା ଠିକ୍ ନୁହେଁ ସାଧୁ, ଆଉ କଅଣ କେହି...

ସ୍ୱୀତପୂର୍ଣ୍ଣ ଚକ୍ଷୁରେ ସାଧୁଙ୍କୁ ଚାହିଁଲେ । ମନ ଭିତରେ ଭାବନାର ସଂଘର୍ଷ । କିଛି କ୍ଷଣ ନୀରବ ରହି, ବିମର୍ଷ ହୋଇ କହିଲେ, ତମେ ମତେ ସତରେ ଭଲ ପାଅ ସାଧୁ, ମୋ ଧିଅ ଝୁଅଁ କହିଲ ?

ସାଧୁ ହସି ହସି କହିଲେ, ମନର କଥା ମୁହଁରେ ମୁଁ କିପରି କହିବି ? ମୁହଁରେ କହିଲେ ତା ମୂଲ୍ୟ ରହିବନି ? ତେବେ, ଏତିକି କହିପାରେ, ସ୍ନେହ ଅସୁଝା ରହେ ନାହିଁ ।

ଏ ତୁମର ହୃଦୟର କଥା ନୁହେଁ, ମୁହଁର କଥା । କିଏ କହିଲା ସ୍ନେହ ଅସୁଝା ରହେ ନାହିଁ ? ଏ ଧାରଣା ଭୁଲ । ମୁଁ ତୁମଠାରୁ ବୟସରେ ଜ୍ୟେଷ୍ଠ, ମାତ୍ର ଦରିଦ୍ରର କୁଡ଼ିଆରେ ଜନ୍ମହୋଇ ହେତୁ ପାଇଲା ଦିନୁ ପରଘରେ ପରକୁ ଆପଣାର କରି ଚଳି ଆସିଛି । କେତେ ଦୁଃଖ, କେତେ ଯନ୍ତ୍ରଣା ସହି ହସି ଦେଇଛି—ସତେ କି ମୁଁ ନିର୍ବୋଧ, ସତେ କି ମୁଁ କିଛି ବୁଝିପାରେ ନାହିଁ । ମୁଁ ଜାଣେ, ମୁଁ ସବୁ ବୁଝେ । କହିବି କାହାକୁ ? ଅଭିମାନ କରିବି କାହା ଉପରେ ? ଅଭିମାନ କଲେ ଯେ ମୁଣ୍ଡ ଗୁଞ୍ଜିବାର ଜାଗା ନାହିଁ । ଏହିପରି କେତେ ବୟସରେ ଅଭିଜ୍ଞତା ଲଭି ମୁଁ କଅଣ ବୁଝିଛି ଜାଣ ସାଧୁ ? ବୁଝିଛି, ସୁଖର ସାଥି ସଭିଏଁ । ଦୁଃଖ ବେଳକୁ ସମସ୍ତେ ଆଖି ବୁଜି ଦିଅନ୍ତି । ବିରକ୍ତ ହୁଅ ନା, କହୁ କହୁ ନିଜର କଥା ଦି ପଦ କହୁଛି ।

ବିରକ୍ତ ହେବି କାହିଁକି ? କହ ।

ସୁଖର ସାଥି ସଭିଏଁ । କାମ ନେବାକୁ ଅଳଣାରେ ସାଲୁଲେଇ ହୋଇ ଆଖି ଚିପି ଚିପି ଦି ବୁନ୍ଦା ଲୁହ ଗଡ଼ାଇ ପାରନ୍ତି ଅନେକ । ନୋହିଲେ କି ଜାଣୁ ଜାଣୁ ମୋତେ ଏ ଦାହଗର୍ତ୍ତର ମଝିକି ଠେଲି ଦେଇଥାନ୍ତେ ? ସ୍ନେହ ଯଦି ଅସୁଝା ରହୁ ନ ଥାନ୍ତା, ମତେ ଏ ବିଡ଼ମ୍ବନାରେ ପକାଇବାକୁ ତାଙ୍କର ସତ ବଳିଥାନ୍ତା ? ତେଣୁ ପଚାରୁଛି, ତମେ ବୋଉ ରାଣ, ସତ କହିଲ, ତମେ ମତେ ଭଲ ପାଅ ?

ତମ ରାଣ କଅଣ ବୋଉ ରାଣଠୁଁ କଅମ୍ ! ତମେ ଯେତେବେଳେ ଏତେ ପ୍ରଭେଦ ଦେଖୁଛ, ମୁଁ କିପରି ହଁ କହିବି ? ସାଧୁଙ୍କର ଚକ୍ଷୁ ଛଳ ଛଳ ହେଲା ।

କୋକିଳ ସ୍ପନ୍ଦିତ ହୃଦୟରେ ତାଙ୍କର ଓଠ ଧରି ସ୍ନେହରେ ଟିକିଏ ହଲାଇଦେଇ ଉଦ୍‌ବେଗ ଭରା କଣ୍ଠରେ କହିଲେ, ଯାଅ ସାଧୁ, ଗାଆଁକୁ । ମୋଓର ଆଉ କିଛି ଆପତ୍ତି ନାହିଁ । ଘରକୁ ଯାଇ ଏକାଥରେ ଭୁଲି ଯିବ ନାହିଁ । ଆଜି ହେଲା ଶନିବାର, ବୁଧବାରଦିନ ଯିବ । ସାଧୁଚରଣ ମଙ୍ଗିଲେ ।

୬

ଏହିପରି ମୋର ଆଶା ଆକାଶ କୁସୁମରେ ପରିଣତ ହେଲା । ସେଥିପାଇଁ ମନରେ ଟିକେ ହୋଇ ଦୁଃଖ ନାହିଁ । ଦୁଃଖ ହେବ କାହିଁକି ? ଠାକୁରଙ୍କର ଯାହା ଇଚ୍ଛା ତାହା ହିଁ ହୋଇଛି । ମଣିଷ ହାତରେ ଥାଏ ଯେତିକି ମୁଁ ସେତିକି କରିବାରେ ହେଳା କରି ନାହିଁ । ତଥାପି ଭାବୁଛି, ମୁଁ ଅକର୍ମୀ ·· ।

ଆର୍ଟସ୍କୁଲରେ ପଢ଼ିବାର ଆଶା ଛାଡ଼ିଦେଲି । ପେଟ ପୋଷିବାକୁ ହେବ ଯେ କୌଣସି ଉପାୟରେ । କହନ୍ତି, ପେଟ ପୋଷ ନାହିଁ ଦୋଷ । କଲିକତା ପରି ସହରରେ ପରିଶ୍ରମ କଲେ ପେଟ ଗୁଣ୍ଡିକ ଅପୋଷା ରହିବ ନାହିଁ । ପରଘରେ ଗ୍ଭକିରି କରି, ପରର ମର୍‌ଜି ଜଗି ଗ୍ଭରିପଇସା ଉପାୟ କରିବାକୁ ମନ କାହିଁକି ଡାକିଲା ନାହିଁ ।—

ଏମାନେ ପଶୁଠୁଁ ବଳନ୍ତି । ଘର କଥାଁ ବୋଲି ଅଣ୍ଟିରେ ପୂରାଇବ ନାହିଁ । ଏଠାକାର ଓଡ଼ିଆ ଭାଇମାନେ ଝୋଟ ବୋହି, ଚଟକଲ, ତେଲକଲରେ କୁଲିଗିରି କରି, ବେକରେ ପଇତା ପକାଇ ବ୍ରାହ୍ମଣ ବୋଲାଇ ବାବୁମାନଙ୍କ ଘରେ ଠାକୁର୍‌ କାମ କରି, ଯଦିବା କଷ୍ଟେ ନିଜର ସଂସାର ଚଳାଉଛନ୍ତି । କୁକୁରଙ୍କ ପରି ନିଜ ନିଜ ଭିତରେ କାମୁଡ଼ା କାମୁଡ଼ି ବରାବର ଲାଗି ଥାଏ, ଏକତା ଆସିବ କାହୁଁ···? ସେତିକିରେ ସେ ନିଜକୁ ଭାଗ୍ୟବାନ୍ ମନେ କରନ୍ତି । ଯାହା ଅର୍ଜନ କରନ୍ତି, ମାଟିଆବ୍ରୁଜ୍, ହାଡ଼କଟା ଗଳି ପ୍ରଭୃତି ନାମଯାଦା ଜାଗାମାନଙ୍କର ଖାନଗୀମାନଙ୍କ ଘରେ ଦେଇ ଆସନ୍ତି । ସେମାନଙ୍କ ମୁହଁରୁ ଓଡ଼ିଆ କଥା ବାହାରେ ନାହିଁ, କାଳେ କିଏ ଓଡ଼ିଆ ବୋଲି ଚିହ୍ନିଲେ ଘୃଣା କରିବ । ତାଙ୍କ ଚେହେରା ଖଣ୍ଡିକ ମୁଣ୍ଡରେ ଓ ଅଣ୍ଟାରେ ଦୋହୁଲିମାନ ବଟୁଆ ଖଣ୍ଡିକ ଦେଖି ସନ୍ଦେହ କରିବାର କାରଣ ନ ଥାଏ । ମନରେ ଦୁଃଖ ହୁଏ । କଅଣ କରିବା ? ଗ୍ରହ ଟିକିଏ ବଗଡ଼ା ପଡ଼ିଛି ··

ମୁଁ ଏବେ ପିଠିରେ ଲୁଗାର ଗଣ୍ଠିରୀ ଧରି କଲିକତା ସହରର ଘରେ ଘରେ ବୁଲି ବିକି କରୁଛି । ମୋ ସଙ୍ଗେ ଆହୁରି ଦୁଇଜଣ ସ୍ୱଜାତୀୟ କୁଲି ଲଗା ବୋଝ ଧରି ବୁଲୁଛନ୍ତି···। ଘରକୁ ଫେରି ଯିବାକୁ ଇଚ୍ଛା ହେଉଛି, ପୁଣି ଭାବୁଛି କାଳେ ଭାଇ କଅଣ କହିବେ··· ।

କେତେବେଳେ ଇଚ୍ଛା ହେଉଛି ବର୍ମା ଯାଇ ବ୍ୟବସାୟ ଖୋଲି ବସିବି, ମାତ୍ର ଟଙ୍କା ଅଭାବ । ବିନା ମୂଳଧନରେ କି ବେଉସା ଚଳିବ ?

ସାଧୁ ଚିଠି ଖଣ୍ଡି ମନଦେଇ ପଢ଼ୁଥିଲେ । କୋକିଳ ଗୋଡ଼ ଚିପି ଚିପି ଆସି ପାଖରେ ଠିଆ ହେଲେ । କେଶଗୁଚ୍ଛ ଫିଟି ପିଠି ଉପରେ ଦୋହଲୁଛି । ମୁଣ୍ଡରେ ଲୁଗା ନାହିଁ । ସାଧୁ ଜାଣି ପାରିଲେ ନାହିଁ । ସେ ଅଧାଶୁଆ ଠାଣିରେ ତକିଆ ଉପରେ ଛାତି ଭରାଦେଇ ଚିଠିଖଣ୍ଡି ପଢ଼ୁଛନ୍ତି । କୋକିଳ ଖଟ ଉପରେ ତାଙ୍କ ପାଖେ ବସିଲେ । କିଛି ସମୟ ଚିଠିଟିକୁ ଚାହିଁ ପଚାରିଲେ, କଅଣ ଏତେ ପଢ଼ୁଛ ସାଧୁ ?

ସାଧୁ ଉଠି ବସିବାକୁ ଚେଷ୍ଟା କଲାରୁ, କୋକିଳ ତାଙ୍କ ପିଠିରେ ହାତ ରଖି କହିଲେ, ଓ ଚିଠି, କିଏ ଦେଇଛି ଦେଖେଁ ? ନଇଁପଡ଼ି ଚିଠିଟିରୁ ଧାଡ଼ିଏ ଦିଧାଡ଼ି ଉଚ୍ଚ ସ୍ୱରରେ ପଢ଼ିଲେ । ମୁହଁ ନେଫେଡ଼ି ବସି, କହିଲେ, ଆସୁନା, ଜଳଖିଆ କରିବା । ଚୂଡ଼ା ଖଣ୍ଡିକ ତେଣେ ଫୁଲି ଯାଉଛି, ଏଣେ ଚିଠି ପଢ଼ା ଲାଗିଛି । ଆସ— ।

ସାଧୁ ଉଠି ବସିଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ଭୋକ ନାହିଁ ମାଉସୀ ।

ଭ୍ରୂଲତା ଟେକି ହସ ହସ ମୁହଁରେ କୋକିଳ କହିଲେ, କାହିଁକି ମ, ଚିଠି ପଢ଼ୁ ପଢ଼ୁ ପେଟ ପୂରିଗଲା କି ? ହଉ ହଉ, ପଢ଼ୁଥା ବସି, ମୁଁ ଜଳଖିଆ ଆଣେ ।

କୋକିଳ ଆର ଘରୁ ଖଣ୍ଡେ କଂସା ଓ ଗୋଟିଏ ଜଳପୂର୍ଣ୍ଣ ଗିଲାସ ଆଣି ପାଖରେ ରଖିଲେ । ସାଧୁ ଆପତ୍ତି କରି କହିଲେ, ଏଇକ୍ଷଣି ଖାଇବି ନାହିଁ ।

ତେମେ ସିନା ଖାଇବ ନାହିଁ, ମୁଁ ଖୁଆଇ ଦେଉଛି, କହି କୋକିଳ ଚୂଡ଼ା କଦଳୀ ନବାତ ଚକଟାରୁ ପୂଳାଏ ନେଇ ସାଧୁଙ୍କ ମୁହଁ ପାଖେ ଧରିଲେ । ସାଧୁ ବାଧ୍ୟ ହୋଇ ଚିଠି ବୁଜି ତକିଆ ତଳେ ରଖିଲେ । କହିଲେ, ହଉ, ମୁଁ ହାତରେ ଖାଉଛି ।

କାହିଁକି ? ମୋ ହାତରେ ଅସନା ଲାଗିବ ?

ସାଧୁ ଲଜ୍ଜିତ ହୋଇ କହିଲେ, ଅସନା କାହିଁକି ଲାଗିବ ? ଅସନା ପଦାର୍ଥ ମା ମାଉସୀଙ୍କ ହାତରେ ଖାଇଲେ ଅମୃତ ପାଲଟି ଯାଏ—ଟିକିଏ ଲାଜ ମାଡ଼େ ସିନା !

ଅନାଇଲେ ଲାଜମାଡ଼େ, ଆଖି ବୁଜି ଦେଉନା ।

ସାଧୁ ଆପତ୍ତି କରିବାକୁ ସୁବିଧା ପାଇଲେ ନାହିଁ । ଜଳଖିଆ ସରିଲାରୁ ସାଧୁ ଦୁଃଖିତ ହୋଇ କହିଲେ, କଲିକତାରୁ ଦାଦା ଚିଠି ଦେଇଛନ୍ତି । ତୁମେ ତାଙ୍କୁ ଦେଖିନା ମାଉସି, ଦେଖିଲେ ତମ ମନରେ ତାଙ୍କ ପ୍ରତି ଉଚ୍ଚ ଧାରଣା ଆସିବ । ତାଙ୍କୁ ଯେ ଦେଖିବ, ସେ ଭଲ ପାଇବ । ପର ଆପଣା ଜାଣନ୍ତି ନାହିଁ । ଅଖିଳା, ନିଷ୍କପଟୀ ମଣିଷ । ପରର ଦୁଃଖ ସେ ସହି ପାରନ୍ତି ନାହିଁ । ତାଙ୍କପରି ଭାଇକି ବାପା ଯେପରି ବ୍ୟବହାର କରନ୍ତି ଶୁଣିଲେ ତୁମ ମନରେ ଦୁଃଖ ହେବ ।

କେଉଁ ଦାଦା ଯେ ତୁମର ?

ଯାହାଙ୍କ କଥା ସେଦିନ କହୁଥିଲ, ସେହି ତ ଜଣେ ।

ତାଙ୍କ ଉପରେ ତମ ବାପାଙ୍କର ଏତେ ଅକସ ହେବାର କାରଣ ?

ମୋତେ ସେ କଥା ଅଜଣା । ତାଙ୍କପରି ଲୋକ ଉପରେ ଅବଉଡ଼ା କରିବ ଏପରି ଲୋକ ବାପାଙ୍କ ବ୍ୟତୀତ ଆଉ କେହି ନାହିଁ । ତାଙ୍କୁ ଭାଇ ଅଣ୍ଡୁଆ । ସମ୍ପତ୍ତିରୁ ଭାଗ ନେବ ପରା !

ଅତଃ ତମ ବାପା । ସମ୍ପତ୍ତି କଅଣ ସ୍ୱର୍ଗକୁ ନେବ ? ତମ ଦାଦା ବି ସେମିତି ଅନାଡ଼ି । ସମ୍ପତ୍ତିରେ ତାଙ୍କର ଭାଗ ଅଛି ତ ?

ଭାଗ ଥାଉ ନ ଥାଉ, ସେ ଭିନ୍ନ ଢଙ୍ଗର ଲୋକ । ନିଜେ ପଛେ ହାଇରାଣ ହୋଇ କଷ୍ଟ ପାଇବେ ଅନ୍ୟ କାହାକୁ କିଛି କହିବେ ନାହିଁ । ନିଜ ଉପରେ ତାଙ୍କର ବିଶ୍ୱାସ । ବାପାଙ୍କୁ ଆଜଯାଏ କିଛି କହି ନାହାନ୍ତି । ବାପା ଯେପରି ଅଖାଡ଼ୁଆ ଲୋକ ଦାଦା ଯଦି କିଛି କହୁଥାନ୍ତେ, ଆମ ଘରେ ଚଳି ହୁଅନ୍ତା ନାହିଁ । ସତେ ମାଉସି, ତାଙ୍କର ଏ ଚିଠିଖଣ୍ଡି ପଢ଼ି ମୋ ମନ ବିକଳ ହେଉଛି । କଲିକତାରେ କେଉଁଠି ଅଛନ୍ତି ମୁଁ ଯଦି ଜାଣିଥାନ୍ତି, ଗୋପନରେ କେଉଁଠୁ ଟଙ୍କା ପଠାନ୍ତି ।

ତେମେ ପଛେ ଅବଗୁଣ ପାଅ ସାଧୁ, ତମର ବାପା ଜଣେ ଅର୍ଥପିଶାଚ ।

ଅର୍ଥପିଶାଚ ନୁହନ୍ତି ଯେ, ଅସଲ ଯେଉଁଠି ଖର୍ଚ୍ଚ କରିବାର କଥା ନ କରି ଅବ୍ୟାଜରେ ଏଣେତେଣେ ଖର୍ଚ୍ଚ କରନ୍ତି । ମକଦ୍ଦମା ହାବୁଡ଼େ ପଡ଼ିଲେ, ସୁଅମୁହଁରେ ଟଙ୍କା ଖର୍ଚ୍ଚ ହେଲେ ଭାବନା ନ ଥାଏ ।

ସେମାନଙ୍କର ମଧୁରାଳାପରେ ବାଧାଦେଇ କିଏ ଜଣେ ପଦାରୁ ଡାକିଲା, ସାଧୁ, ଆରେ ସାଧୁ, ଆବେ ସାଧୁଆ··· ।

ସାଧୁ ଅସ୍ତବ୍ୟସ୍ତ ହୋଇ ଉଠିଲେ । ନାକ ଫଣଫଣ କରି ବିରକ୍ତିସୂଚକ ସ୍ୱରରେ କହିଲେ, ଜଗନ୍ନାଥ ଡାକୁଛି, ଯାଏଁ । ମାଉସୀ, ଦି ଖଣ୍ଡି ପାନ··· ।

ଦ୍ୱାର ଖୋଲି ହସହସ ମୁହଁରେ ଜଗନ୍ନାଥର ହାତ ଧରି କହିଲେ, ହଠାତ୍ କୁଆଡ଼େ ଗଡ଼ି ପଡ଼ିଲୁ ମ ?

ଜଗନ୍ନାଥ ଚମକି ପଡ଼ିଲା ପରି ମୁଣ୍ଡରେ ଧିଅରେ ହାତମାରି ବିସ୍ମିତ ହୋଇ କହିଲା, କିନ୍ତୁ ଭାଇ, ଆଘାତ ତ କିଛି ହୋଇ ନାହିଁ ।

ମୋ ପଚାରିବାର କଥା, ଦିନେ କାଲେ ତ ଦେଖା ନାହିଁ, ଆଜି ହଠାତ୍ କୁଆଡ଼େ ଅଇଲୁ ?

ଜଗନ୍ନାଥ ଚଞ୍ଚଳ ଗୃହିଣୀରେ ଝରକା ଆଡ଼େ ଅନାଇଁ ଚକ୍ଷୁ ଫେଡ଼ି କହିଲା, ତୋ ଗଣ, କୁ—ଆଡ଼େ ନୁହେଁ, ସୁ—ଆଡ଼େ ।

ତୁ ଆଉ ମୋତେ କଥା ଲୁହାଇ ଦେବୁ ନାହିଁ । ତା ହେଲେ, ଶୁଭାଗମନର ଉଦ୍ଦେଶ୍ୟ ?

ଶ୍ରୀମୁଖର ଦର୍ଶନ ।

କେତେବେଳେ ଇଚ୍ଛା ହେଉଛି ବର୍ମା ଯାଇ ବ୍ୟବସାୟ ଖୋଲି ବସିବ, ମାତ୍ର ଟଙ୍କା ଅଭାବ । ବିନା ମୂଳଧନରେ କି ବେଉସା ଚାଲିବ ?

ସାଧୁ ଚିଠି ଖଣ୍ଡି ମନଦେଇ ପଢ଼ୁଥିଲେ । କୋକିଳ ଗୋଡ଼ ଚପି ଚପି ଆସି ପାଖରେ ଠିଆ ହେଲେ । କେଶଗୁଚ୍ଛ ଫିଟି ପିଠି ଉପରେ ଦୋହଲୁଛି । ମୁଣ୍ଡରେ ଲୁଗା ନାହିଁ । ସାଧୁ ଜାଣି ପାରିଲେ ନାହିଁ । ସେ ଅଧାଶୁଆ ଠାଣିରେ ତକିଆ ଉପରେ ଛାତି ଭରାଦେଇ ଚିଠିଖଣ୍ଡି ପଢ଼ୁଛନ୍ତି । କୋକିଳ ଖଟ ଉପରେ ତାଙ୍କ ପାଖେ ବସିଲେ । କିଛି ସମୟ ଚିଠିଟିକୁ ଚାହିଁ ପଚାରିଲେ, କଅଣ ଏତେ ପଢ଼ୁଛ ସାଧୁ ?

ସାଧୁ ଉଠି ବସିବାକୁ ଚେଷ୍ଟା କଲାରୁ, କୋକିଳ ତାଙ୍କ ପିଠିରେ ହାତ ରଖି କହିଲେ, ଓ ଚିଠି, କିଏ ଦେଇଛି ଦେଖେଁ ? ନଇଁପଡ଼ି ଚିଠିଟିରୁ ଧାଡ଼ିଏ ଦିଧାଡ଼ି ଉଚ୍ଚ ସ୍ୱରରେ ପଢ଼ିଲେ । ମୁହଁ ନେଫେଡ଼ି ବସି, କହିଲେ, ଆସୁନା, ଜଳଖିଆ କରିବ । ଚୂଡ଼ା ଗଣ୍ଡିକ ତେଣେ ଫୁଲି ଯାଉଛି, ଏଣେ ଚିଠି ପଢ଼ା ଲାଗିଛି । ଆସ—।

ସାଧୁ ଉଠି ବସିଲେ । ଦୀର୍ଘଶ୍ୱାସ ଛାଡ଼ି କହିଲେ, ଭୋକ ନାହିଁ ମାଉସୀ ।

ଭ୍ରୂଲତା ଟେକି ହସ ହସ ମୁହଁରେ କୋକିଳ କହିଲେ, କାହିଁକି ମ, ଚିଠି ପଢ଼ୁ ପଢ଼ୁ ପେଟ ପୂରିଗଲା କି ? ହଉ ହଉ, ପଢ଼ୁଥା ବସି, ମୁଁ ଜଳଖିଆ ଆଣେ ।

କୋକିଳ ଆର ଘରୁ ଖଣ୍ଡେ କଂସା ଓ ଗୋଟିଏ ଜଳପୂର୍ଣ୍ଣ ଗିଲାସ ଆଣି ପାଖରେ ରଖିଲେ । ସାଧୁ ଆପତ୍ତି କରି କହିଲେ, ଏଇକ୍ଷଣି ଖାଇବ ନାହିଁ ।

ତେମେ ସିନା ଖାଇବ ନାହିଁ, ମୁଁ ଖୁଆଇ ଦେଉଛି, କହି କୋକିଳ ଚୂଡ଼ା କଦଳୀ ନବାତ ଚକଟାରୁ ମୁଠାଏ ନେଇ ସାଧୁଙ୍କ ମୁହଁ ପାଖେ ଧରିଲେ । ସାଧୁ ବାଧ୍ୟ ହୋଇ ଚିଠି ଭୁଜି ତକିଆ ତଳେ ରଖିଲେ । କହିଲେ, ହଉ, ମୁଁ ହାତରେ ଖାଉଛି ।

କାହିଁକି ? ମୋ ହାତରେ ଅସନା ଲାଗିବ ?

ସାଧୁ ଲଜ୍ଜିତ ହୋଇ କହିଲେ, ଅସନା କାହିଁକି ଲାଗିବ ? ଅସନା ପଦାର୍ଥ ମା ମାଉସୀଙ୍କ ହାତରେ ଖାଇଲେ ଅମୃତ ପାଲଟି ଯାଏ—ଟିକିଏ ଲାଜ ମାଡ଼େ ସିନା !

ଅନାଇଲେ ଲାଜମାଡ଼େ, ଆଖି ବୁଜି ଦେଉନା ।

ସାଧୁ ଆପତ୍ତି କରିବାକୁ ସୁବିଧା ପାଇଲେ ନାହିଁ । ଜଳଖିଆ ସରିଲାରୁ ସାଧୁ ଦୁଃଖିତ ହୋଇ କହିଲେ, କଲିକତାରୁ ଦାଦା ଚିଠି ଦେଇଛନ୍ତି । ତୁମେ ତାଙ୍କୁ ଦେଖିନା ମାଉସି, ଦେଖିଲେ ତମ ମନରେ ତାଙ୍କ ପ୍ରତି ଉଚ୍ଚ ଧାରଣା ଆସିବ । ତାଙ୍କୁ ଯେ ଦେଖିବ, ସେ ଭଲ ପାଇବ । ପର ଆପଣା ଜାଣନ୍ତି ନାହିଁ । ଅଖିଳା, ନିଷ୍କପଟୀ ମଣିଷ । ପରର ଦୁଃଖ ସେ ସହି ପାରନ୍ତି ନାହିଁ । ତାଙ୍କପରି ଭାଇକି ବାପା ଯେପରି ବ୍ୟବହାର କରନ୍ତି ଶୁଣିଲେ ତୁମ ମନରେ ଦୁଃଖ ହେବ ।

କେଉଁ ଦାଦା ଯେ ତୁମର ?

ଯାହାଙ୍କ କଥା ସେଦିନ କହୁଥିଲି, ସେହି ତ ଜଣେ ।

ତାଙ୍କ ଉପରେ ତମ ବାପାଙ୍କର ଏତେ ଅକସ ହେବାର କାରଣ ?

ମୋତେ ସେ କଥା ଅଜଣା । ତାଙ୍କପରି ଲୋକ ଉପରେ ଅଦଉତି କରିବ ଏପରି ଲୋକ ବାପାଙ୍କ ବ୍ୟତୀତ ଆଉ କେହି ନାହିଁ । ତାଙ୍କୁ ଭାଇ ଅଡ଼ୁଆ । ସମ୍ପତ୍ତିରୁ ଭାଗ ନେବ ପରା !

ଅତିଃ ତମ ବାପା । ସମ୍ପତ୍ତି କଅଣ ସ୍ୱର୍ଗକୁ ନେବ ? ତମ ଦାଦା ବି ସେମିତି ଅନାଡ଼ି । ସମ୍ପତ୍ତିରେ ତାଙ୍କର ଭାଗ ଅଛି ତ ?

ଭାଗ ଥାଉ ନ ଥାଉ, ସେ ଭିନ୍ନ ଢଙ୍ଗର ଲୋକ । ନିଜେ ପଛେ ହଇରାଣ ହୋଇ କଷ୍ଟ ପାଇବେ ଅନ୍ୟ କାହାକୁ କିଛି କହିବେ ନାହିଁ । ନିଜ ଉପରେ ତାଙ୍କର ବିଶ୍ୱାସ । ବାପାଙ୍କୁ ଆଜଯାଏ କିଛି କହି ନାହାନ୍ତି । ବାପା ଯେପରି ଅଖାଡ଼ୁଆ ଲୋକ ଦାଦା ଯଦି କିଛି କହୁଥାନ୍ତେ, ଆମ ଘରେ ଚଳି ହୁଅନ୍ତା ନାହିଁ । ସତେ ମାଉସି, ତାଙ୍କର ଏ ଚିଠିଖଣ୍ଡି ପଢ଼ି ମୋ ମନ ବିକଳ ହେଉଛି । କଲିକତାରେ କେଉଁଠି ଅଛନ୍ତି ମୁଁ ଯଦି ଜାଣିଥାନ୍ତି, ଚୋରିକରି ହେଲେ କେଉଁଠୁ ଟଙ୍କା ପଠାନ୍ତି ।

ତେମେ ପଛେ ଅବଗୁଣ ପାଅ ସାଧୁ, ତମର ବାପା ଜଣେ ଅର୍ଥପିଶାଚ ।

ଅର୍ଥପିଶାଚ ନୁହନ୍ତି ଯେ, ଅସଲ ଯେଉଁଠି ଖର୍ଚ୍ଚ କରିବାର କଥା ନ କରି ଅବ୍ୟାଜରେ ଏଣେତେଣେ ଖର୍ଚ୍ଚ କରନ୍ତି । ମକଦ୍ଦମା ହାବୁଡ଼େ ପଡ଼ିଲେ, ସୁଅମୁହଁରେ ଟଙ୍କା ଖର୍ଚ୍ଚ ହେଲେ ଭାବନା ନ ଥାଏ ।

ସେମାନଙ୍କର ମଧୁରାଳାପରେ ବାଧାଦେଇ କିଏ ଜଣେ ପଦାରୁ ଡାକିଲା, ସାଧୁ, ଆରେ ସାଧୁ, ଆବେ ସାଧୁଆ··· ।

ସାଧୁ ଅସ୍ତବ୍ୟସ୍ତ ହୋଇ ଉଠିଲେ । ନାକ ଫଣଫଣ କରି ବିରକ୍ତିସୂଚକ ସ୍ୱରରେ କହିଲେ, ଜଗନ୍ନାଥ ଡାକୁଛି, ଯାଏଁ । ମାଉସୀ, ଦି ଖଣ୍ଡି ପାନ··· ।

ଦ୍ୱାର ଖୋଲି ହସହସ ମୁହଁରେ ଜଗନ୍ନାଥର ହାତ ଧରି କହିଲେ, ହଠାତ୍ କୁଆଡ଼େ ଗଡ଼ି ପଡ଼ିଲୁ ମ ?

ଜଗନ୍ନାଥ ଚମକି ପଡ଼ିଲା ପରି ମୁଣ୍ଡରେ ଧିଅରେ ହାତମାରି ବିସ୍ମିତ ହୋଇ କହିଲା, କିନ୍ତୁ ଭାଇ, ଆଘାତ ତ କିଛି ହୋଇ ନାହିଁ ।

ମୋ ପଚାରିବାର କଥା, ଦିନେ କାଳେ ତ ଦେଖା ନାହିଁ, ଆଜି ହଠାତ୍ କୁଆଡ଼େ ଅଇଲୁ ?

ଜଗନ୍ନାଥ ଚଞ୍ଚଳ ଚାହାଁଣୀରେ ଝରକା ଆଡ଼େ ଅନାଇଁ ଚକ୍ଷୁ ଫେରାଇ କହିଲା, ତୋ ରାଣ, କୁ—ଆଡ଼େ ନୁହେଁ, ସୁ—ଆଡ଼େ ।

ତୁ ଆଉ ମୋତେ କଥା ଲୁହାଇ ଦେବୁ ନାହିଁ । ତା ହେଲେ, ଶୁଭାଗମନର ଉଦ୍ଦେଶ୍ୟ ?

ଶ୍ରୀମୁଖର ଦର୍ଶନ ।

ଦର୍ଶନ ତ କଲ, ଏଥର ବିଦାୟ ।

ଦର୍ଶନ କି କରିବାର ଜିନିଷ ଭାଇ, ଦର୍ଶନ ଯେ ଚନ୍ଦ୍ରର ବିଷୟ...ହସି ହସି ଖଣ୍ଡିଆ ନଖରେ ହାତ ମାରି କହିଲା, ଏକ ଅନୁରୋଧ ଅଛି ।

କଅଣ ଶୁଣେ ?

ମାଗିବି ହିଁ, ତୁ ଦେଲେ ସିନା ?

ଦେବାର କଥା ହୋଇଥିଲେ ତ !

ନ ଦେବାର କଥା ଅଛି କଅଣ, ଯଦି ଦେବା ଲୋକର ଇଚ୍ଛା ଥାଏ ? ତୋ ପିସ୍ତଲଟା ଆଉ ଟର୍ଚ୍ଚ ଲାଇଟ୍‌ଟା ।

କଅଣ କରିବୁ ?

ଆମେ କେଇଜଣ ଭାବିଛୁ ସାଇକେଲରେ ଗଞ୍ଜାମଆଡ଼ୁ ଯେଉଁଟାଏ ବୁଲି ଆସିବୁଁ । ବାଟଘାଟରେ ଏ ଦୁଟି ପଦାର୍ଥ ପାଖରେ ଥିବା ଆବଶ୍ୟକ ।

ତୁ ପଛେ ଯାହା ଭାବ ଭାଇ, ତୋର ଏ ଅଯଥା ଅନୁରୋଧ ରଖିପାରିବି ନାହିଁ ।

ଆଚ୍ଛା, ଟର୍ଚ୍ଚଟା ନ ହେଲା ତୋ ପାଖରେ ଥାଉ, ମୁଁ ଅନ୍ୟ କେଉଁଠୁ ଯୋଗାଡ଼ କରିନେବି, ପିସ୍ତଲଟା ଦେ । ମୁଁ ଦିନ ସୁରିଟାରେ ଫେରି ଆସିବି ଯେ ।

ପିସ୍ତଲଟା ଘରେ ବାପାଙ୍କ ପାଖରେ । ମୁଁ ବୁଧବାର ଦିନ ଘରକୁ ଯିବି । ଆସିଲା ବେଳକୁ ସଙ୍ଗରେ ନେଇ ଆସିବି । ତୋର ଯେ ଲାଇସେନସ୍ ନାହିଁ ?

ନ ଦେବାର ଇଚ୍ଛା ଥିଲେ କେତେ ପ୍ରକାର ଛଳନା ବାହାରିବ । ଯାବେ, ନ ଦେଲେ ନାହିଁ । ଭ୍ରମଣଟା ବନ୍ଦ ହୋଇଯିବ ଏଥର । ଆଚ୍ଛା, ତୁ ଘରୁ ଫେରିବୁ କେବେ ?

ଦିନେ ଦି ଦିନ୍ ପରେ ।

କାହିଁକି ଏଡ଼େ ଜଲ୍‌ଦି ? ପୁରୀ ଛାଡ଼ି ଦୂରରେ ରହିବାକୁ ଭଲ ଲାଗେ ନାହିଁ ପରା ! କୁଆଡ଼ୁ ଲାଗିବ ? ପୁରୀର ଯେଉଁ ମଉଜ, ମଜଲିସ୍ !

ମଉଜକୁ ପରୁରେ କିଏ ? ତମ ଭଳିକା ସମୁଦ୍ରକୂଳରେ ବୁଲିବାକୁ ତ ଆମେ ଯାଉ ନାହୁଁ ।

ଯିବା ଦରକାର ପଡ଼େ ନାହିଁ । ଦୂର କି ନା, ପାଖ ଛାଡ଼...

ପଢ଼ାପଢ଼ି କିଛି ହୋଇନାହିଁ । ଘରୁ ଆସିଲେ ରୀତିମତ ପଢ଼ାପଢ଼ି କରିବାକୁ ହେବ ।

ସାଧୁ, ମୁଁ ଆସିଲେ କେମିତି ହୁଅନ୍ତା ? ଦିଜଣ ଏକାଠି ବସି ପଢ଼ନ୍ତେ, ଦିପହରେ । ହ୍ୟାପ୍, ବୁଢ଼ା ତ ହେଲେଣି, ଛୁଆଙ୍କ ସାଥିରେ ପଢ଼ିବାକୁ କଅଣ ଇଚ୍ଛା ହେଉଛି ! କଅଣ କହୁଛୁ ?

ଅସୁବିଧା ହେବ ।

କ ଅସୁବିଧା ?

ମାଇପୀ ଘର... । ଅଙ୍ଗେଇ ଅଙ୍ଗେଇ ସାଧୁ କହିଲେ ।

ହସି ହସି ଜଗନ୍ନାଥ ସାଇକଲ ଚଢ଼ି ପ୍ରସ୍ଥାନ କଲାବେଳେ କହିଗଲା, ଠିକ୍ କଥା, ଅସୁବିଧା ତ ହେବାର କଥା । ହଉ ଭାଇ, ସଲାମ୍... ।

ସାଧୁ ଉତ୍ତର ନ ଦେଇ ଘର ଭିତରକୁ ଗଲେ । ମୁହୂର୍ତ୍ତିକ ପାଇଁ ଜଗନ୍ନାଥ ଉପରେ ରାଗ ହେଲା । ମାତ୍ର କରିବେ କଅଣ ? ସେ ତ ସେମିତିକା ।

## ୮

ମଙ୍ଗଳବାର ରାତି ଦଶଘଡ଼ିକୁ ସାଧୁଚରଣ ବଜାରରୁ ଫେରିଲେ । ସେ ରହିଲାଦିନୁ ରସାନନ୍ଦ ଘର ବିଷୟରେ ନିଶ୍ଚିନ୍ତ । ସେଥି ନିମନ୍ତେ ଘରକୁ ତରତର ହୋଇ ଫେରିବାକୁ ସେ ଚେଷ୍ଟା କରନ୍ତି ନାହିଁ । ବେଳାଥରେ କାମ ଶେଷକରି ଆସନ୍ତି । ସେଦିନ ସାଧୁ ଫେରିଲାବେଳକୁ ରସାନନ୍ଦ ଆସି ନ ଥାନ୍ତି । କୋକିଳ ଘରେ ଏକୁଟିଆ ।

ସାଧୁ ଆଣିଥିବା ପଦାର୍ଥଗୁଡ଼ିକ ମାଉସୀଙ୍କ ଆଗରେ ଥୋଇ ଦେଇ ଖଟ ଉପରେ ବସିଲେ । ଦେହରୁ ଗମ୍ ଗମ୍ ଝାଳ ବୋହି ପଡ଼ୁଛି । କାମିଜ ଖଣ୍ଡି କାଢ଼ି ପାଖରେ ରଖିଲେ । କୋକିଳ ଖଣ୍ଡେ ବିଚଣାରେ ତାଙ୍କୁ ବିଞ୍ଚୁ ବିଞ୍ଚୁ କହିଲେ, ସନ୍ଧ୍ୟାବୁଡ଼େ ତମ ଜଗନ୍ନାଥ ଆସି କାହିଁକି ଡାକୁଥିଲା ମ, ସେ ଭାରି ନବକଥା ଲୋକ, ନୁହେଁ ସାଧୁ ?

ସାଧୁ ବିସ୍ମିତ ହୋଇ ପଚାରିଲେ, କାହିଁକି ଡାକୁଥିଲା ?

କେଜାଣି । ଡାକ ଡାକ ବିଚରା ବ୍ୟସ୍ତ ହୋଇ ପଡ଼ିଲା । ଘରେ କିଏ ଅଛି ଯେ ଜବାବ୍ ଦେବ । କିଏ କାଳେ ହୋଇଥିବ ବୋଲି ମୁଁ କବାଟ ଫିଟାଇଲି ନାହିଁ । ଶେଷକୁ କେତେ ଅଛା କରି ଗାରୁ ଗାରୁ ହୋଇ ଚାଲିଗଲା ।

ଗମ୍ଭୀର ହୋଇ ସାଧୁ କହିଲେ, ଭଲ କରିନା ମାଉସି, କବାଟ ଫିଟାଇ ତାକୁ ବସିବାକୁ କହିଥାନ୍ତି । ଗୁଡ଼, ଯଦି ବିଶେଷ ଦର୍କାର ଥାଏ ସେ କାଲି ପୁଣି ଆସିବ ।

ତତ୍‌ପରେ ସାଧୁ ଟ୍ରଙ୍କ୍ ଖୋଲି ଜିନିଷଗୁଡ଼ିକ ତହିଁରେ ସଜାଇ ରଖିଲେ । ଲେବୁଲ୍‌ମରା ଦୁଇଟି ବୋତଲ ମାଉସୀଙ୍କୁ ଦେଇ କହିଲେ, ମଉସାଙ୍କ ଔଷଧ ନିଅ । ଏ ଯେଉଁ ବୋତଲରେ ନାଲି-କାଗଜ ଲଗିଛି ସେଥିରୁ ଦାଗେ ଗିଲାସରେ ଢାଳିବ, ଏ ନେଳୀ କାଗଜମରା ବୋତଲରୁ ଏକ ବୁନ୍ଦା ତହିଁରେ ମିଶାଇ ମଉସାଙ୍କୁ ଖାଇବାକୁ ଦେବ । ସକାଳେ ଥରେ ସନ୍ଧ୍ୟାରେ ଥରେ । ମନେ ରହିଲା ତ ? ଏଥିରୁ ଦାଗେ, ସେଥିରୁ ବୁନ୍ଦାଏ ।

ହଉ ।

ଗୋଳମାଳ କରିବ ନାହିଁ ତ ?

ମୋତେ କଅଣ ଏଡ଼େ ହୁଣ୍ଡୀ ମଣୁଛ ସାଧୁ ?

ସାଧୁ ଲଜ୍ଜିତ ହୋଇ ରହିଲେ । ମାଉସୀ ବୋତଲ ଦୋଟି ଥାକ ଉପରେ ରଖି ମନକୁ ମନ କହିଲେ, କେତେ ବୋତଲ ତ ଗଲାଣି, ବାକି ରହିଛି ଏତିକି । ସାଧୁଚରଣଙ୍କୁ ଲକ୍ଷ୍ୟ କରି କହିଲେ, ଏଥିରେ କଅଣ ଭଲ ହେବାର ଆଶା ଅଛି ?

ବିଶ୍ୱାସ ହିଁ ମୂଳ । ହୋଇ ପାରେ । ଠାକୁରଙ୍କ ହାତରେ ସବୁ, ମଣିଷର କାହିଁରେ ହାତ ଅଛି !

ତମର କଅଣ ବିଶ୍ୱାସ ଅଛି ଏ ଆଉ ଭଲ ହେବେ ?

ଭଲ ନ ହେବେ ବା କାହିଁକି ?

ମନରଖା କଥା ମୁଁ ଚାହୁଁ ନାହିଁ ତ, ଚାହେଁ ସତ କଥା । ତେମେ କଅଣ ଭାବିଛ, ମୋର ଏଥିରେ କାଣିଚାଏ ପରିଆରି ଅଛି ? ତାହା ନୁହେଁ । କଅଣ କହିବି ସାଧୁ, କହିଲାବେଳକୁ ପେଟଭିତରେ ଘାଣ୍ଟି ଚକଟି ହୋଇ ଯାଉଛି । ସବୁ ମୋ ପୋଡ଼ା କରମର ଦୋଷ । କାହା ଆଗେ ଗୁହାରି କରିବ ? ଯେଉଁଦିନ ବେଦୀଉପରେ ହାତଗଣ୍ଠି ପଡ଼ିଲା, ମୁଁ ସେହି ଦିନଠୁ ବୁଝିଲି ମୋ ଜୀବନଟା ବୃଥା, ଉଚ୍ଛୁଳା ଡହଳ ବିକଳ ହୋଇ କଟିବ । ମୁଁ ସେଥିପାଇଁ ଆଗରୁ ପ୍ରସ୍ତୁତ । ମୁଁ ଜାଣେ, ଯଦି ବଞ୍ଚିବାର ପ୍ରୟାସ ଥିବ ତ ମୋ ଭଳି ଲୋକର ଅନ୍ୟ ଉପରେ ନିର୍ଭର କରି ରହିବା ଓଲମି । ସଂସାରରେ କିଏ କାହାର ? ସମସ୍ତେ ନିଜ ନିଜ ପାଇଁ ଧାଇଁଛନ୍ତି । ନୋହିଲେ କି ଏପରି ସ୍ୱାସ୍ଥ୍ୟ ଘେନି ଏ ବୟସରେ ତମର ରସାନନ୍ଦ ବାବୁ ବାହା ହୋଇଥାନ୍ତେ ? ସ୍ୱାର୍ଥପରତା ନୁହେଁ ତ ଆଉ କଅଣ କହିବ ? ଯାହାର ହାତ ଧରି ଆଣିଛନ୍ତି ତାଆର ଆଗପଛ, ଭଲମନ୍ଦ ଥରେ ବିଚାରି କଲେ ନାହିଁ ? ସେ କଅଣ ଭାବିଛନ୍ତି, ସ୍ତ୍ରୀ ଜାତିର ଜୀବନ ନାହିଁ, ହୃଦୟ ନାହିଁ, ମନ ନାହିଁ ? ଲଜ୍ଜା କରି ମୁହଁରେ କିଛି କହେ ନାହିଁ ବୋଲି ସେ ତ ଗୋଟିଏ ସେବାକାରୀ ଯନ୍ତ୍ର ନୁହେଁ ?

ଏଥିରେ ମଉସାଙ୍କର ଅପରାଧ କିଛି ନାହିଁ । ତମର ମଉସା ମାଉସୀ ମାଗିଲେ ବୋଲି ସିନା ?

ଚକ୍ଷୁରୁ ଲୋତକ ପୋଛି କୋକିଲ କହିଲେ, ମଉସା ବୋଲି ଉପରେ ପଡ଼ି ତାଙ୍କ ଆଡ଼ ଧରି ମୁଁ ପରହିଁଅ ବୋଲି ମୋତେ ଉଡ଼ାଇ ଦେବାକୁ ବସିଛ ପରା ? ତମେ ଶିକ୍ଷିତ ହୋଇ ଯଦି ଏପରି କହିବ ଆଉ ନ କହିବ କିଏ ? ମୁଁ ନ ହୋଇ ଆଉ ଜଣେ କିଏ ହୋଇଥିଲେ ତାର ଅବସ୍ଥା ମୋଠାରୁ ପରି ହୋଇଥାନ୍ତା । ତାର ଗୃହ ଭିତରେ ସେହିପରି ଦାଉଦାଉ ହୋଇ ନିଆଁ ଜଳୁଥାନ୍ତା । ଏପରି ଡହଳ ବିକଳିଆ

ଜୀବନଠାରୁ ଗେରୁଆ ଲୁଗା ପିନ୍ଧି ପୁଣି ସହରର ଦାଣ୍ଡେ ଦାଣ୍ଡେ ବୁଲି ଭିକ ମାଗିବା ଭଲ । ସେଥିରେ ଭଗବାନଙ୍କୁ ଆଶ୍ରାକରି ରହିବା ହେବ । ସେ ଏକପ୍ରକାର ଭଲ । ଏହିକ୍ଷଣି ଯେ ଦି ନାବରେ ଗୋଡ଼ ଦେଇ ଝଲ ପଡ଼ିବାକୁ ବସିଛ !

ସ୍ୱାମୀ ଯେ ଦେବତା । ସାବିତ୍ରୀଙ୍କ କଥା ମନେ କର । ସ୍ୱାମୀଙ୍କୁ ଯମ ହାତରୁ ସେ ଉଦ୍ଧାର କରିଥିଲେ ।

ଠିକ୍ କଥା । ସ୍ୱାମୀ ଦେବତା, ଏହା ବିରୁଦ୍ଧରେ ପଦେ କହିବାକୁ କେହି ସାହସ କରିବେ ନାହିଁ । ଜଗନ୍ନାଥ ଦେବତା ବୋଲି ଖ୍ରୀଷ୍ଟିୟାନ୍ ତ ମାନେ ନାହିଁ କି ଅର୍ଘ୍ୟ ଥାଳି ନେଇ ହିନ୍ଦୁ କେବେ ଯୀଶୁଙ୍କୁ ବନ୍ଦାଇବାକୁ ଯାଏ ନହିଁ । ନିଜ ନିଜର ରୁଚି ଓ ବିଶ୍ୱାସ ନେଇ ଲୋକେ ନିଜର ଠାକୁର ବାଛି ନିଅନ୍ତି । ସେହିପରି ସାବିତ୍ରୀ ବି ନେ ତାଙ୍କର ସ୍ୱାମୀ-ଦେବତାଙ୍କୁ ବାଛି ନେଇଥିଲେ ।

ତମ ମୁହଁରୁ ଏପରି କଥା ସୁନ୍ଦର ଶୁଭୁନାହିଁ ମାଉସି ! ତମେ ତମ ହୃଦୟର କଥା କହୁନାହଁ । ତମ ପରି ପତିପରାୟଣା, ପତିଗତପ୍ରାଣା ସ୍ତ୍ରୀ କେତେ ଜଣ ଅଛନ୍ତି ? ତମର କଥା ଶୁଣି ଆଉ କେହି ବିଶ୍ୱାସ କରିପାରେ, ମୁଁ ବିଶ୍ୱାସ କରି ପାରିବି ନାହିଁ । ମଉସାଙ୍କ ମନରେ ଆନନ୍ଦ ଓ ପ୍ରାଣରେ ଶାନ୍ତି ଆଣିବାକୁ ତମେ ଜୀବନ ଦେଇପାର ।

ପାରେ ହିଁ, କେବଳ ମଉସାଙ୍କ ପାଇଁ ତ ନୁହେଁ, ସଭିଙ୍କପାଇଁ । ତମ ପାଇଁ କଅଣ ପାରିବି ନାହିଁ ସାଧୁ, ସତ କହିଲି ? ଆଉ, ଏ ଜୀବନ ଦେବା କଥା କେବଳ ଭଲ ପାଇବାର ଚିହ୍ନ ନୁହେଁ, କର୍ତ୍ତବ୍ୟ । ଅଦୂର ଭବିଷ୍ୟତ୍‌ରେ ଯେତେବେଳେ ଏହି ସାମାନ୍ୟ କର୍ତ୍ତବ୍ୟ ଆପେ ଆପେ ଲୁଚିଯିବ, ସେତେବେଳେ ମୁଁ ଜୀବନ ଦେଇ ପାରିବି ନାହିଁ । ବାଧହୋଇ ହେବ ଅନାଥିନୀ । ସେତେବେଳେ ମୋର ବୋଲି କହିବାକୁ ଦୁନିଆଁରେ କେହି ନ ଥିବେ ।

ସାଧୁ ସବୁକଥା ବୁଝିଲେ । କୋକିଳ ଦେଈଙ୍କର ମନ ଭିତରେ ଯେଉଁ ଅନଳ କୁହୁଳି ଉଠୁଛି, ଦିନେ ତାହା ଜଳଉଠି ତାଙ୍କର ମନକୁ ପୋଡ଼ି ଜାଳି ଛାରଖାର କରିଦେବ, ଏହା ସେ ଅନୁମାନ କରିନେଲେ । ଆହା, ସେହି ଛପିଲା ଅନଳକୁ ଲିଭାଇବାର ଯଦି ଶକ୍ତି ନାହିଁ, ଫୁଙ୍କି ଫୁଙ୍କି ଜଳାଇବାକୁ ଚେଷ୍ଟା କରିବା ମୂର୍ଖତା, ନିଷ୍ଠୁରତା । ସାନ୍ତ୍ୱନା ଦେବାକୁ ଦୃଢ଼ ସ୍ୱରରେ କହିଲେ, ଯଦି ସେହି ଅଶୁଭ କ୍ଷଣ ତମ ଜୀବନରେ କେବେ ଆସେ, ତମେ ଅନାଥିନୀ ହୋଇ ଦାଣ୍ଡରେ ବୁଲିବାକୁ ଯିବନାହିଁ ।

ତମେ ମୋଓର ହୋଇ ମୋ ପାଖରେ ଠିଆହୋଇ ପାରିବ ?"

ପାରିବି ନାହିଁ କାହିଁକି ? ମୋତେ କଅଣ ଏଡ଼େ ଅକୃତଜ୍ଞ ଭାବିଛ ମାଉସୀ ?'

ତମର ନିର୍ମଳ ସ୍ନେହ କି ମୁଁ ଜୀବନ ଦେଇ ସୁଝାଇ ପାରିବି ?

ସାଧୁ, ସାଧୁ,···କହୁ କହୁ ଉତ୍ତେଜିତ କୋକିଳ ସାଧୁଚରଣଙ୍କୁ ଆଲିଙ୍ଗନ କଲେ । ଅଶ୍ରୁସିକ୍ତ ଚକ୍ଷୁ ଓ ହାସ୍ୟଭରା ଅଧରରେ ସାଧୁ ଚରଣଙ୍କର ଗଣ୍ଡ ଚୁମ୍ବନ କରି କହିଲେ, ପାରିବ ନାହିଁ ସାଧୁ, ପାରିବ ନାହିଁ । ନାରୀ ହୃଦୟର ଭାଷା ବୁଝିବା ତମ ପକ୍ଷେ କଠିନ । ତଥାପି ସାଧୁ, ଏଥିକରେ ମୁଁ ନିଜକୁ ଭାଗ୍ୟବତୀ ମନେ କରୁଛି ।

କୋକିଳ ଅନ୍ୟ ଘରକୁ ଚାଲିଗଲେ ।

ସାଧୁ ନିର୍ବାକ୍ ହୋଇ ବସି ରହିଲେ ।

## ୯

ହୁଁ ଃ···ବୁଝିଲନା ସାଧୁ ବୋଉ, ତମ ମୁହଁ ପାଇ ଏ ଟୋକା ଗୁଖଣ୍ଡକ ବି ସତ୍ୟାନାଶ ହୋଇଗଲା । ଛିଃ, ଅଥର୍ପା ପଣକୁ ସରିଛି । ପ୍ରତି କଥାରେ ବୋଲଣା । ପିଲାପାକରେ ଅଗାଡ଼ିଟାଏ । ଆହା ହା—!

ଆଗୋ, ସବୁ କଥାରେ ଏ ମୋ ଦୋଷ ଦିଅନ୍ତି କାହିଁକି ମ ? କାଣୀ ବଳେଇ କୁଜ ଅସର୍ପା ଉପରକୁ ଟାଣ । ତମ ଝିଅ ଏବେ ଆଗଚଲା ହେଲା କି ଅଭଲ ହେଲା, ତେବେ ସିନା ବୁଝିବ, ମୁଁ କଅଣ କରିବ ?

ମା ମାନେ ପିଲାଙ୍କୁ ଆକଟ କରି ରଖନ୍ତି । ତମେ ଆଗରୁଯା କହି ପକାଉଛ କଅଣ ?

କାହ୍ନୁକୁ ଆଉଜି ସରି ଚୁପ୍ ହୋଇ ଠିଆ ହୋଇଥିଲା । ଭୟରେ କାଠ ହୋଇଗଲାଣି । ଦାଦା ଥିଲେ କାଖକରି ବାଆଁରେଇ ନେଇଯାନ୍ତା ? ଆହା, ଆଜି ସରି ତାର ବୁଢ଼ା ପୁଅଟିକୁ ଝୁରୁଛି । ପାଖରେ ଥିଲାବେଳେ ସେ ତାଙ୍କୁ କେତେ ମାରିଛି, ମୁହଁ ଶୁଖାଇ ଅଭିମାନ କରି କେତେ କହିଛି । ଦାଦା ଏହିସବୁ କଥା ମନରେ ଧରି ମୁହଁଛପା ଦେଇ ରହିଛନ୍ତି ।

କଟକରେ ଥିଲାବେଳେ ସେ କେତେଥର ସରିପାଖକୁ ଚିଠି ଦିଅନ୍ତି । ସରି ତ ପଢ଼ି ଜାଣେନାହିଁ, ଆଉ ଯିଏ ହେଲେ ଚିଠିଖଣ୍ଡି ପଢ଼ିଦିଏ । ସେ ଚିଠିଖଣ୍ଡି ଧରି ପଢିବାକୁ ଚେଷ୍ଟା କରେ । ପାରେ ନାହିଁ ବୋଲି ଭାରି ହାଇଁପାଇଁ ହୁଏ । ଆଜି କାହିଁକି ଦାଦା ଚିଠି ଦେଉନାହିଁ ! ସରି ଏହିପରି ଭାବୁ ଭାବୁ କାନ୍ଦି ପକାଇଲା । ସରିର ଲୋତକସିକ୍ତ ଚକ୍ଷୁ ଦେଖି ମୋଟା ଦେଈଙ୍କ ମନ ତରଳିଲା । ସେ ସ୍ୱାମୀଙ୍କ ଉପରେ ବିରକ୍ତ ହୋଇ କହିଲେ, ସବୁବେଳେ ପିଲାଟାକୁ ଖୁଣି ଖୁଣି ତାକୁ ଗେହ୍ଲା କରି ଦେଲଣି । କାହିଁକି, କଅଣ କଲା କି ?

ମୋଟା ଦେଈଙ୍କର ରାଗ ଦେଖି ଅଭୟଚରଣ ଦବିଗଲେ । ନରମ ସ୍ୱରରେ କହିଲେ, ସେ ଘରେ କଅଣ ନୁଚୁରୁ ଖୁଚୁରୁ କରୁ କରୁ ତେଲଘଡ଼ିଟା ଭାଙ୍ଗି ଦେଲା । ଘଡ଼ିରେ ତେଲ ନାହିଁ ବୋଲି କଅଣ ସେ ଘଡ଼ି ନୁହେଁ । କେଡ଼େ ସୁନ୍ଦର ଘଡ଼ିଟି; ହୁଁ···

ମୋତା ସ୍ୱାମୀଙ୍କ କଥାରେ ପ୍ରତିବାଦ ନ କରି ସରକୁ ଆଲିଙ୍ଗନ କଲେ । ଏହି ସମୟରେ ସାଧୁଚରଣ ସେଠାରେ ଉପସ୍ଥିତ ହୋଇ କହିଲେ, ବୋଉ, ଦାଦା ଚିଠି ଦେଇଛନ୍ତି ।

ମୁଖ ବିକୃତ କରି ଅଭୟଚରଣ କହିଲେ, ଖୁଁ —ଘରି ତ ଦୟା ! ଟୋକାଟା କୁଲାଙ୍ଗାର ହୋଇଗଲା ସାଧୁବୋଉ । କଅଣ ମିଳିବ ସେ ଅଲଣାଚିଠିରୁ । ଖାଲି ଟଙ୍କା, ଟଙ୍କା, କରେ ବାବା, ଟଙ୍କା କେଉଁଠି ଗଛରେ ଫଳୁଛି ' ଲେଖି ଦେ, ଯେଉଁ ଗାଈର ଚେଲି ହୋଇଛି, ତାଠୁଁ ଟଙ୍କା ଆଣିବ ।

ବାପା, ସେ ଟଙ୍କା ପଠାଇବାକୁ ଲେଖି ନାହାନ୍ତି ।

ଆରେ ହେଲି ହୋ, ଘଡି ଗୋଟା ନ କହୁ, ଟୋକାଇ ପକାଇ ଦେଉଛି, ଏଇ ତ ? ଆଜିକାଲି ଗାଈଟୋକା ଗୁଡ଼ାକ, ଖୁଁ:—ଭାକୁଚଆଳି ହୋଇ ଗପନ୍ତି ଯେତିକି ବନେଇ ଚୁନେଇ ଲେଖନ୍ତି ସେତିକି । କଅଣ ମିଳିବ ସେଥିରୁ, ନିଜ ଦୁଃଖକୁ ହାରଗୁହାରି ନାହିଁ··· ।

ଏ ଚିଠି ଖଣ୍ଡି ରେଜିଷ୍ଟ୍ରି ହୋଇ ଆସିଛି ?

କମ୍ ହୁସିଆର ତ ନୁହେଁ ?

ସେ ଟଙ୍କା ପଠାଇଛନ୍ତି ।

ଟଙ୍କା ପଠାଇଛି ? ବିସ୍ମିତ ହୋଇ ଅଭୟଚରଣ ପଚାରିଲେ, କେତେ ଟଙ୍କା ?

ହଜାରେ ଟଙ୍କା ।

ଖୁଁ, ବାପାଙ୍କ ସଙ୍ଗେ ଫେର୍ ଥଟ୍ଟା ! ହବ ନାହିଁ, କାଲି ହବ ନାହିଁ !

ଏଇତ ଶହେଟଙ୍କିଆ ଦଶ ଖଣ୍ଡ ନୋଟ । ସାଧୁଚରଣ ଚିଠି ଭିତରୁ ନୋଟ୍‌ତକ କାଢ଼ି ବାପାଙ୍କ ହାତକୁ ବଢ଼ାଇ ଦେଲେ ।

ଅଭୟଚରଣ ଗୁମ୍‌ମାରି କିଛି ସମୟ ଠିଆ ହୋଇ ରହିଲେ । କଥା କଅଣ କିଛି ସ୍ଥିର କରି ପାରିଲେ ନାହିଁ ।

ମୋତା ବିସ୍ମୟବିସ୍ଫାରିତ ଚକ୍ଷୁରେ ସ୍ୱାମୀଙ୍କର ମୁଖକୁ ବଲବଲ କରି ଚାହିଁଛନ୍ତି । କଅଣ କହିବେ କିଛି ସ୍ଥିର କରିପାରୁ ନାହାନ୍ତି ।

ଅଭୟଚରଣ ଧୀରେ ଧୀରେ ମୁଣ୍ଡ ଟେକି ସାଧୁଚରଣଙ୍କୁ ପଚାରିଲେ, ଚିଠିରେ ଲେଖିଛି କଅଣ ଦେଖେଁ ?

ସାଧୁ ନୀରବରେ ପତ୍ର ଖଣ୍ଡ ପିତାଙ୍କ ହାତକୁ ବଢ଼ାଇ ଦେଲେ । ଅଭୟଚରଣ ପତ୍ରଟିକୁ ଓଲଟ ପାଲଟ କରି ବାରମ୍ବାର ଦେଖିଲେ ।। କହିଲେ, ଏଥିରୁ ତ ମୁଁ କିଛି ବୁଝିପାରୁ ନାହିଁ ! ସାଧୁବୋଉ, ଶୁଣ କଅଣ ଲେଖିଛି—

ମାମି, ତତେ ଅନେକ ଦିନୁ ନ ଦେଖି ମନ ବିକଳ ହେଉଛି । ପ୍ରତିଜ୍ଞା କରିଛି, ଘରକୁ ଫେରିବିନାହିଁ । ତୋ ଘର ହେଲେ ମୁଁ ଯିବି ତୋ ପାଖକୁ; ବୁଢ଼ାପୁଅକୁ ଭୁଲିଯିବୁ ନାହିଁ । କାଲି ମୁଁ ଥିଲି କଲିକତାର ଜଣେ ଦରିଦ୍ର ଭିଖାରି । ଆଜି ଲୋକେ ମୋତେ କହୁଛନ୍ତି ବଡ଼ଲୋକ । ବେପାର ବଣିଜ କରି ଯାହା ଉପାର୍ଜନ କରିଛି, ସେଥିରେ ସୁଖେ ଦୁଃଖେ ଦିନାକେତେ ଭଲରେ ଚଳିଯିବ । ବେଉସା ଭଲରେ ଚାଲୁଛି । ଏ ଟଙ୍କା କେଇଟି ତୋ ପାଇଁ ପଠାଇଲି । ତୁ ମୋର ମାଆ । ଯେତେବେଳେ ତୋର ଯାହା ଦରକାର ହେବ ମତେ ଲେଖିବୁ । ଇତି ।

ତୋ ପୁଅ,

ବିପି

ଚିଠି ଶୁଣି ମୋତି ସରକୁ କୋଳକରି କହିଲେ, ଦେଇଙ୍କ ପାଇଁ ଏ ଟଙ୍କା ଅସିଛି । ଯାହା କହ ପଛେ, ଏକା ପେଟରୁ ଜନ୍ମହୋଇ ସରକୁ ସାଧୁ ଯେତେ ଭଲ ନ ପାଏ, ବିପି ସେତେ ଭଲପାଆନ୍ତି । ଚକ୍ଷୁ ଛଳ ଛଳ କରି କହିଲେ, ସବୁବେଳେ ଗାଳାମାଲ କରି ବୁଲୁଥାଆନ୍ତି । ନା ଦରକାର ନାହିଁ ଆଉ ଟଙ୍କା । ଲେଖି ଦିଅ ସେ ଘରକୁ ଚାଲି ଆସନ୍ତୁ । ଘରଦ୍ୱାର ଛାଡ଼ି କେଉଁଠି ଅପନ୍ତରାରେ ପଡ଼ିଛନ୍ତି !

କିଛିକ୍ଷଣ ନୀରବତା ପରେ କହିଲେ, ସତ କଥା, ସ୍ତ୍ରୀର ଦିନ ଦଶା, ପୁରୁଷର କ୍ଷଣଦଶା । ସାଧୁ କହୁଥିଲା, ତା ପାଖକୁ ଯେଉଁ ଚିଠି ଦେଇ ଥିଲେ ସେଥିରେ ଲେଖିଥିଲେ ସେ କୁଆଡ଼େ ଭାରି କଷ୍ଟ ପାଇଛନ୍ତି, ଖାଇବା ପିଇବାର ଠିକ୍ ନାହିଁ । ଅଭାବ ପାଇଁ ଉପାସ ଭୋକରେ ପରି ପିଣ୍ଡାରେ ବେଳ କଟିଛି ।

ସାଧୁଚରଣଙ୍କ ଆଡ଼କୁ ଚାହିଁ ଅଭୟଚରଣ କହିଲେ, ଏ କଥା ତୁ ମୋତେ ଲେଖିନୁ । ମୁଁ ଶୁଣିଥିଲେ ସଙ୍ଗେ ସଙ୍ଗେ ତା ପାଖକୁ ଦଶ ବିଶ ଟଙ୍କା ପଠାଇଥାନ୍ତି । ଆଚ୍ଛା, ଯାହା ହେବାର ତ ହେଲା, ସାଧୁଟେବାଉ, କଷ୍ଟ ନ ପାଇଲେ ପିଲାଏ ଶିଖିବେ କେଉଁଠୁ, ଅକଲ ବଢ଼ିବ କେଉଁଠୁ ? ଭଗବାନ ଯାହା କରନ୍ତି ମଣିଷର ମଙ୍ଗଳକୁ । ଠକିଲେ ସିନା ଶିଖନ୍ତି । କଷ୍ଟ ପାଇଲେ ମରଦପୁଅ ସଂସାରକୁ ଚହ୍ନେ, ଟଙ୍କାର ମୂଲ୍ୟ ବୁଝେ । ଆଉ ବାହାରେ ଅସିବା କଥା ଯାହା କହିଲ ମୋ ବିବେଚନାରେ ତାହା ଭଲ ହେବ ନାହିଁ । ଟଙ୍କା କମାଇବାର ବୟସ ଆସିଛି, ବିଦେଶକୁ ଗଲେ ହେବ ନାହିଁ । କରଣପୁଅ, ତେଉ ଗଣି ପଇସା ଆଣେ । ବାଘ ପାଟିରେ ହାତ ପୂରାଇ ପଇସା ଟାଣେ । ତେବେ, ଖୁଁ କଲିକତା ପରି ଜାଗା, ଠୋକା ମଣିଷ । ଜଉ ଯିଏ, ଠୋକାଏ ସେ । ପାଖରେ ପଇସ ଥିଲେ ବିଗିଡ଼ିଯିବାର ଭୟ । ତାକୁ ଲେଖିଦେଉଛି ପାଖରେ ସାମାନ୍ୟ କିଛି ଟଙ୍କା ରଖି ବାକିତକ ପଠାଇଦେଉ ।

ଦିନକ ପାଇଁ ହେଲେ ଆସିବାକୁ ଲେଖିଦେବ, ମୋତିଦେଇ କହିଲେ । ତାଙ୍କ ଗଳାଦିନୁ ମୋ ପେଟଭିତର ଖାଲି ପାଣ୍ଡୁ ଚକଟି ହେଉଛି । ଏହି କୋଡ଼ରେ

ସାଧୁଙ୍କୁ ଯେମିତି ବଢ଼ାଇ ଆଣିଛୁ, ବପକୁ ମଧ୍ୟ ସେମିତି ବଢ଼ାଇଛୁ । ମୋର ଆଗ ବପ ତ, ପଛେ ସାଧୁ । ସତ କହୁଛୁ, ମୁଁ ଆଉ ତମ ଘର କାମକୁ ଏକୁଟିଆ ପାରିବ ନାହିଁ । ବପଙ୍କ ହାତକୁ ଆଜି ହାତ କଲେ ମୁଁ ନିଶ୍ଚିନ୍ତ; ଗୋଟିଏ ଭଲ ପାତ୍ରୀ ଅନ୍ଵେଷଣ କର ।

ହସି ହସି ଅଭୟଚରଣ କହିଲେ, ହଁ—ସେ କଥା କଅଣ ମୁଁ ଭୁଲିଯାଇଛୁ ଭାବିଛ ? ମନେ ମନେ ଖୋଜୁଛୁ । ହଁ, ବପ୍ରର ଠିକଣାଟା କଅଣ ସାଧୁ ?

ସାଧୁଚରଣ ମୁଣ୍ଡ ହଲାଇ କହିଲେ, ମୁଁ ଜାଣେ ନାହିଁ । ଏ ଚିଠିରୁ ମଧ୍ୟ କିଛି ଜଣାପଡ଼ୁ ନାହିଁ । ପରେ ହୁଏ ତ ଲେଖି ପାରନ୍ତି ।

ହଁ ସେ ଲେଖିବ ଯେ—। ମୁଁ ଯାଏଁ, କହି, ଅଭୟଚରଣ ଟଙ୍କା ଓ ଚିଠି ଧରି ଦାଣ୍ଡ ଘରକୁ ଗଲେ । ସାଧୁ କାହାକୁ କିଛି ନ କହି ବାଡ଼ବାଟେ ତୋଟାକୁ ଗଲେ ।

## ୧୦

ପନ୍ଦରଦିନ କଟିଗଲା, ସାଧୁଚରଣଙ୍କୁ ପନ୍ଦର ଘଣ୍ଟା ପରି ଲାଗିଲା ନାହିଁ । ସମୟ ଯେ କପରି କଟିଗଲା ସେ ଠିକ୍ ବୁଝି ପାରିଲେ ନାହିଁ । ପଢ଼ାପଢ଼ିର ନାମ ଧରି ନାହାନ୍ତି । ଖାଲି ଗାଁ ସାଙ୍ଗ ଟୋକାଙ୍କ ସଙ୍ଗେ ମିଶି ଦ୍ୱିପହର ଯାକ ଏ ତୋଟାରୁ ସେ ତୋଟା ବୁଲି ଆମ୍ବ ଖାଇବା ଓ ସଞ୍ଜ ବୁଡ଼େ ସ୍ତୂର ପାଞ୍ଚଜଣ ଏକାଠି ବସି କଦମ-ଦାଣ୍ଡରେ ମଧୁରାଳାପ କରିବାରେ ଅଧିକାଂଶ ସମୟ କଟିଯାଏ ।

ଦୁଇଦିନକୁ କଣ୍ଟ ଦେଇ ମାଉସୀଙ୍କୁ ଆସିଥିଲେ ସିନା, ମା ଛାଡ଼ି ଦେଉଛନ୍ତି କେଉଁଠି ? ମାଇପେ କି ଜାଣନ୍ତି ସମୟର ମୂଲ୍ୟ ? ପାଠ ନା ପାଠ, ପୁଅ ସ୍କୁଲରେ ପାଠ ପଢ଼ି ପଢ଼ି ଆସିଛୁ । ଘରେ ଗୁଡ଼ାଏ ପଢ଼ିବ କଅଣ ? ସାଧୁ ଯେତେବେଳେ ପୁରୀ ଯିବେ ବୋଲି ମାଆଙ୍କର ଅନୁମତି ମାଗନ୍ତି, ମୋତା ବାରଣ କରି କହନ୍ତି, ହଉ ଯିବୁ ତ ଆଉ ଦିଦିନ ଯାଉ ।

ମାଉସୀଙ୍କୁ କଣ୍ଟ ଦେଇ ଆସିଛନ୍ତି ବୋଲି କହିବାକୁ ତାଙ୍କୁ ଲାଜ ମାଡ଼େ । ସେ କହନ୍ତି, ପଢ଼ାପଢ଼ି ମାଟି ହେଉଛୁ ।

ମୋତାଦେଈ କହନ୍ତି, ଏତେଦିନ ଗଲାଣି, ଆଉ ଦୁଇଦିନ ରହ, ସବୁ ବିଷୟ ବନ୍ଦୋବସ୍ତ ହେଲେ ତ ଯିବୁ ।

ଦିନେ ସାଧୁଚରଣ ଅନ୍ୟମନସ୍କ ହୋଇ କଦମ୍‌ଦାଣ୍ଡରେ ବସିଛନ୍ତି, ମନ ମଧ୍ୟରେ କେତେବେଳେ କେଉଁ ଚିନ୍ତାର ଢେଉ ଖେଳି ଯାଉଛି, ଏହି ସମୟରେ ପୋଷ୍ଟ ପିଅନ୍ ଖଣ୍ଡେ ଚିଠି ଦେଇଗଲା । ସାଧୁ ଦେଖିଲେ ପବିଖଣ୍ଡି ଜଗନ୍ନାଥ ପାଖରୁ ଆସିଛି । ସେ ବିରକ୍ତ ହୋଇ ପୋଷ୍ଟମ୍ୟାନକୁ ପଚାରିଲେ, ସ୍ବରଧିନ ହେଲା ଚିଠି ଆସି

ଡାକଘରେ ପଡ଼ିଛୁ ଆଗରୁ ଟିକିଏ ଖବର ଦେଇ ନାହିଁ କି ଚିଠିଖଣ୍ଡ କାହା ହାତରେ ପଠାଇ ପାରିଲ ନାହିଁ ?

ପୋଷ୍ଟମ୍ୟାନ୍ ବିନୀତ ହୋଇ କହିଲା, ଆପଣଙ୍କ ଗ୍ରାମକୁ ଏ ଭିତରେ ପୋଷ୍ଟ ଅଫିସକୁ କେହି ଯାଇ ନାହାନ୍ତି । ସେଥିପାଇଁ ଅଟକି ଯାଇଥିଲା । ଆଜି ଗାଁ ବାର ।

କିଛି ନ କହି ପତ୍ର ଖୋଲିଲେ । ଭାବିଥିଲେ, ବୋଧହୁଏ ଜଗନ୍ନାଥ ପୁରୀ ଯିବାକୁ ଲେଖିଥିବ କିମ୍ବା ପିଲାଟିକୁ ସଙ୍ଗରେ ନେଇ ପୁରୀ ଯିବାକୁ ଅନୁରୋଧ କରିଥିବ । ଚିଠିପଢ଼ା ଆରମ୍ଭ କଲେ । ଏ କଣ ! ହଠାତ୍ ସାଧୁଙ୍କର ମୁହଁ କଳାକାଠ ପଡ଼ିଗଲା । ଚକ୍ଷୁ ଛଳ ଛଳ ହେଲା । ହାତ ଥରିବାକୁ ଲାଗିଲା । ସେ ପତ୍ର ବନ୍ଦକରି, କିଛି ସମୟ ଚିନ୍ତାକଲେ । ଜଗନ୍ନାଥ ଲେଖିଛି ବୋଲି ହଠାତ୍ ତାଙ୍କର ବିଶ୍ୱାସ ହେଲା ନାହିଁ । ମାତ୍ର ଏ ସବୁ ବିଷୟ କି ମିଛରେ କେହି କେବେ ଲେଖେ ? ସେ ଚିଠି ଖଣ୍ଡି ପୁନର୍ବାର ପାଠକଲେ ।

—ସାଧୁ, ହଠାତ୍ ଏ ଦୁଃସମ୍ବାଦଟା ତୋତେ ଦେବାକୁ ଇଚ୍ଛା ହେଉ ନାହିଁ, ମାତ୍ର ତୋ ମାଉସୀଙ୍କର ଅନୁରୋଧ ରକ୍ଷା କରିବାକୁ ବାଧ୍ୟ ହେଲି । ଅନ୍ୟ କିଛି ଭାବିବୁ ନାହିଁ । ଦୁଇଦିନ ପାଇଁ କହିଯାଇ କୋଡ଼ିଏ ଦିନ ରହିଗଲୁଣି । ଗ୍ରାମକୁ ଯାଇ ଏକାଥରେ ଭୁଲିଗଲୁ ଦେଖୁଛି । ଖଣ୍ଡେ ଚିଠି ଦେବାକୁ କଅଣ ତୋର ତର ନାହିଁ ? କଅଣ ଲେଖିବି ଭାଇ, କଲମ ଯେ ଚଳୁନାହିଁ । ଆଜକୁ ଦୁଇଦିନ ହେଲା ତୋ ମଉସା ରସାନନ୍ଦ ବାବୁଙ୍କର ମୃତ୍ୟୁ ହୋଇଛି । ବଡ଼ ଆକସ୍ମିକ ଏ ମୃତ୍ୟୁ, ବଡ଼ ହୃଦୟସ୍ପର୍ଶୀ, ଜାଣିଲେ ଦୁଃଖ ଯେତିକି ହୁଏ, କଷ୍ଟ ତତୋଽଧିକ ହୁଏ । ତୋ ମାଉସୀ ଅଦ୍ୟାପି ବିଛଣାରୁ ଉଠି ନାହାନ୍ତି । ସମସ୍ତ ବିଷୟ ଲେଖିବାକୁ ବସିଲେ ପୁରାଣ ହେବ । ସମସ୍ତାବିବରୁ ଠିକେ ଠିକେ ଗୃହପଦ ଲେଖିଦେଲି । ତୁ ପତ୍ର ପାଇବା ସାଙ୍ଗେ ସାଙ୍ଗେ ଚାଲି ଆସିବୁ । ତୋତେ ଦେଖିଲେ ନିଶ୍ଚୟ ତୋ ମାଉସୀଙ୍କର ମନ ବଦଳିବ । ଆମେ ମାନେ ନିର୍ବିଘ୍ନରେ ଶବ ସତ୍କାର କରିଛୁଁ । ମୁଁ ପହରିବାଲା ପରି ତୋ ମାଉସୀକୁ ଗୋଡ଼େ ଗୋଡ଼େ ଜଗିଛି । ଦିନ ସାରା ସେ ପାଗଳ ପରି ହେଉଛନ୍ତି । ଟିକିଏ ଅବହେଳା କଲେ ନିଶ୍ଚୟ ଆତ୍ମହତ୍ୟା କରିବେ । ସାକ୍ଷାତରେ ସବୁ ବୁଝିବୁ । ଇତି, ତୋର ଜଗା ।—

ସାଧୁଚରଣ ଦୀର୍ଘଶ୍ୱାସ ପକାଇ ଚକ୍ଷୁରୁ ଲୋତକ ପୋଛିଲେ । ମଉସାଙ୍କ ମୃତ୍ୟୁରେ ତାଙ୍କର ମନରେ ଯେତେଦୁଃଖ ହେଲା, ତତୋଽଧିକ ଦୁଃଖ ହେଲା ମାଉସୀଙ୍କର ଅବସ୍ଥା ବିଷୟ ଶୁଣି । "ଆହା, ସେ କେଡ଼େ ଅକୃତଜ୍ଞ । ତାଙ୍କର ଏହି ଅସମୟରେ ଟିକିଏ ସାନ୍ତ୍ୱନା ଦେଇ ପାରିଲା ନାହିଁ ମାଉସୀଙ୍କ ଅକୃତ୍ରିମ ପବିତ୍ର ସ୍ନେହର ପ୍ରତିଦାନ କଅଣ ଏହାହିଁ ହେଲା ! ବିପଦର ମଝିରେ ପଡ଼ି ସେ ଧାନ୍ଦି ହେଉଛନ୍ତି, ତାଙ୍କୁ ସଂସାରଟା ଶୂନ୍ୟ ଦେଖା ଯାଉଛି," ସାଧୁଚରଣ ଘରେ ବସି ମହାନନ୍ଦରେ ଦିନ କାଟୁଛି । ଏପରି

ସମୟରେ ତାଙ୍କର କଅଣ କିଛି କର୍ତ୍ତବ୍ୟ ନାହିଁ ? ଜଗନ୍ନାଥ ଜଣେ ଅପରିଚିତା । ଅନାଥା ଦେଖି, ଆଶ୍ରୟହୀନା ଦେଖି ତାର ପାଷାଣ ହୃଦୟ ତରଳିଛି । ସାଧୁଚରଣ କଅଣ ମାଉସୀଙ୍କର ଚିରଋଣୀ ହୋଇ ରହିଥିବ ?

ବହୁ ଚିନ୍ତା ପରେ ସ୍ଥିର କଲେ ଯେ ଅତି ଶୀଘ୍ର ସ୍ୱୟଂ ଯିବେ । ପଞ୍ଜିଖଣ୍ଡ ହାତରେ ଧରି କହି କାହି ଘର ଭିତରକୁ ଗଲେ । ପିତା ମାତାଙ୍କର ଅନୁମତି ନ ନେଇ ସେ ଯାଆନ୍ତେ କିପରି ? ଘଟଣା ଶୁଣି ଅଭୟ ଚରଣ ମୁଣ୍ଡରେ ହାତଦେଇ କ୍ଷଣକାଳ ବସି ପଡ଼ିଲେ । ସାଧୁବୋଉ କୋଳାହଳ ଶୁଣି ସରକୁ ନେଇ ପାଖରେ ପହଞ୍ଚି ଦେଖିଲେ ସ୍ୱାମୀ ଓ ପୁତ୍ରଙ୍କର ଆଖିରେ ଲୁହ । ସେ ଭରସି କରି କିଛି ପଚାରିଲେ ନାହିଁ । ଥକ୍କା ହୋଇ ଠିଆ ହୋଇ ରହିଲେ । କିଛିକ୍ଷଣ ପରେ ଅଭୟଚରଣ ଚୂ ଚୂ କରି ମନକୁ ମନ ବ୍ୟସ୍ତ ହୋଇ କହିଲେ, ଭଗବାନଙ୍କର କି ଅବୁଝାମଣା କଥା ! ଗୋଟି ଗୋଟି ହୋଇ ସମସ୍ତେ ଚାଲିଲେ । ଖୁଁ: - , ମୋର ଏ ନିର୍ଲଜ ନଉଛୁଣା ଜୀବନଟା ରହି ମାୟାରେ ପଡ଼ି ଏତେ କଲବଲ ହୋଇ ଘାଣ୍ଟି ହେଉଛି । ଭଗବାନଙ୍କର ମୋ ପ୍ରତି ଟିକିଏ ହେଲେ ଦୟା ନାହିଁ ।

ମୋତା ପଚାରିଲେ, କଅଣ ହେଲା କି ? ମଲାମର, ଏ କି ଅଲକ୍ଷଣା କଥା ! କାଲ ବିକାଲ ଜାଗିକରି ବସିଛନ୍ତି । ମରଦ ପୁଅ । ଏ ଚୂଲି ପାଉଁସ କଥା ମୁଣ୍ଡରେ ଧରନ୍ତି ?

ଖୁଁ, ଧଇଲେ କେତେ ନ ଧଇଲେ କେତେ । ମାଁଛିକୁ ଯେ ମ ନ କହନ୍ତି, ପରର ହାନି ଲାଭରେ ଯେ ନ ଥାନ୍ତି, ତାଙ୍କ ପରି ପୁଣ୍ୟବନ୍ତ ଲୋକ ତ ଚାଲିଗଲେ । ଆହା, ମଣିଷର ଜୀବନଟା କଅଣ ସାଧୁବୋଉ ! ଏଇ ଚିଠି ଆସିଛି, ରସାନନ୍ଦ ବାବୁଙ୍କର କାଳ ହୋଇଗଲା । ଆଜିକି ଛ ଦିନ ହେଲା ।

ଆ ହା ହା, କଅଣ ନ କଲୁରେ ଦଇବ ନିଆଁ ଲଗା, ଜଣକୁ ନେଇ ପଛେ ପଛେ ଆଉ ଜଣକୁ ଅକୂଳ ଅଥଳ ପାଣିରେ ଭସାଇ ଦେଲୁ । ରୋଗା ହେଉନୁ, ବୁଢ଼ା ହେଉନୁ, ସ୍ୱାମୀତ ! ଟୋକୀଟା କାହା ମୁହଁ ଦେଖି ଜୀବନ କଟାଇବଟି ' ଚୂ ଚୂ··· ।

ଯମ ଏତେ କଥା ବୁଝେ ନାହିଁ । ତାଆର ଯେତେବେଳେ ଯାହାକୁ ତଲବ ଆସେ ସେ ସୁବିଧା ଅସୁବିଧା ବୁଝିବାକୁ ଅପେକ୍ଷା କରେ ନାହିଁ । ମଣିଷର ଧୂଳିଘର ଭାଙ୍ଗିଦେଇ ଜୀବନ ଫୋଟକା ଫୁଙ୍କିଦେଇ ଯାଏ । ଆମେ ମୋର ମୋର ହୋଇ ପ୍ରପଞ୍ଚ ସଂସାରରେ ଘାଣ୍ଟି ଚକଟି ହେଉଥାଉଁ । ଖୁଁ —ଅହା, ଯେତେବେଳେ ଆମେ ନିମାପଢ଼ାରେ ପାଠ ପଢ଼ୁଥିଲୁ, ସବୁ ମନେ ପଡ଼ି ଯାଉଛି—

ମୋର ସେହି କୋକିଲ କଥା ମନେ ପଡ଼ୁଛି, ଷୋଳ ସତର ବର୍ଷର ଛୁଆଟା, ଘରେ ଥିଲେ, ଧୂଳି ଖେଳ ଭାଙ୍ଗି ନ ଥାନ୍ତା । ଆହା, କି କଲବଲ ନ

ହେଉଥିବ ସେ ! ଦଇବ ଏ ଝିନୁ ତା ମୁଣ୍ଡରେ ଚଡ଼କ ପକାଇଲା । ତାର ଆଉ କିଏ ଅଛି ?

ସାଧୁ ଆଖିରୁ ଲୁହ ପୋଛି କହିଲେ, ନା ବୋଉ; ତାଙ୍କର ଆତ୍ମୀୟ ଆଉ କେହି ନାହାନ୍ତି । ତୁ ଯଦି କହୁ, ମୁଁ ଯାଇଁ ତାଙ୍କୁ ସଙ୍ଗେ ନେଇ ଆସନ୍ତି ।

ମୋଚ୍ଛା ଉତ୍ତର ଦେବା ପୂର୍ବରୁ ଅଭୟ ଚରଣ କହିଲେ, ଯିବା ଆବଶ୍ୟକ ନାହିଁ । ସ୍କୁଲ ଖୋଲିଲେ ଏକା ଥରକେ ଯିବୁ । ଶୁଦ୍ଧି ଘରକୁ ମୁଁ ମନିଅର୍ଡ଼ର କରି ଟଙ୍କା ପଠାଇ ଦେଉଛି । ବୁଝିଲୁନା ସାଧୁବୋଉ, ଜଣେ ମଲେ ତ ଆଉ ଜଣେ ତା ପଛରେ ଗୋଡ଼ାଇ ଯିବ ନାହିଁ, ସଂସାରରେ ଏମିତି ଜନ୍ମ ମୃତ୍ୟୁ ସବୁବେଳେ ଲାଗିଛି । ନିଜର ସୁବିଧା ତ ପୁଣି ଦେଖିବାକୁ ହେବ । ଖୁଁ:—

ଯାହା' କହିଲ ଠିକ୍ କଥା । ଆହା, ସେହି କୋକିଳଟି, ତେମେ କଅଣ ଭାବିଛ ସତ୍ତ୍ୱଦିନେ ତାଆର ଏହି ଦୁଃଖ ରହିବ ? ମୁଁ ଶୁଣିଛି, ଗ୍ରାମରେ ପରା କିଏ ପଥର ଲ.ଦଦିଏ ହୋ ।

ସେ ଚଳାଚଳ ହେବେ କିପରି ?

ପରଘରେ କାମଧନ୍ଦା କରି ପେଟ ପୋଷିବା କଥା ତ, ନୋହିଲେ ଉପାୟ କଅଣ ?

ଅଭୟ ଚରଣ କିଛି ସମୟ ଚିନ୍ତିତ ରହିଲେ । ମନେ ମନେ ତର୍କବିତର୍କ କରି ମୁଣ୍ଡ ହଲାଇ ହଲାଇ କହିଲେ, ଖୁଁ:—ସାଧୁବୋଉ, ତମେ ପରା କହୁଥିଲ କାମକୁ ପାରୁନା, ଆଚ୍ଛା ମୁଁ ଗୋଟାଏ ଉପାୟ କରୁଛି ରହ । ରସାନନ୍ଦର ସିନା ଗୃହଜମି ନାହିଁ, ପୁରୀରେ ତାଙ୍କ ବାପେ ଯେଉଁ ଘରବାଡ଼ି କରି ଯାଇଛନ୍ତି ତାହାର ମୂଲ୍ୟ ଏକ ହଜାର ଟଙ୍କାରୁ କମ୍ ହେବ ନାହିଁ । ରସାନନ୍ଦଙ୍କ ପରେ ତାଙ୍କର ବିଧବା ସ୍ତ୍ରୀ ହେବ ସେ ସମ୍ପତ୍ତିର ଅଧିକାରିଣୀ । ସେ ତ ଏବେ ଯାହା କହିଲ—ଖୁଁ—, ଅଥଳ ଜଳରେ ଭାସୁଛନ୍ତି । କୂଳ କିନାରା କିଛି ନାହିଁ । କୁଟାଖଣ୍ଡେ ଦେଖିଲେ ବିକଳରେ ହାତ ବଢ଼ାଇବେ । ଏତେବେଳେ ହାତଛଡ଼ା କଲେ ଚଳିବ ନାହିଁ । ନା କଣ କହୁଛ ?

ଅବିକଳ ମୁଁ ସେହିକଥା ଭାବୁଥିଲି । ସେ କିଛି ତମ ଘରେ ମାହାଲିଆ ଖାଇବ ନାହିଁ, ବଅସ ଅଛି, ଘର ପାଇଟି କରିବ, ପିଲାଙ୍କ ଖବର ଅନ୍ତର ବୁଝିବ ।

ବେଶ୍ ବେଶ୍ । ତେବେ ସାଧୁ ଆଜ ସଞ୍ଜଗାଡ଼ିରେ ଯାଉ । ସାଙ୍ଗରେ ଟଙ୍କା ତିନିଶହ ନେଇଯାଉ । ଶୁଦ୍ଧିଘର କାମ ସରିଲେ ବସାଘରରେ କୋଲପ ଦେଇ ତାଙ୍କୁ ସଙ୍ଗରେ ନେଇ ଫେରି ଆସିବ । ତା ପରେ ଯାହା କରିବାର ମୁଁ କରିବି । ଆଉ ଦେଖ୍, କହିବୁ, ବାପା ଏ ତିନିଶ ପଠାଇଛନ୍ତି । ଯାହା ଖର୍ଚ୍ଚ ହେବ ତାଆର ହିସାବ

ଦେବୁ । ବାଜେ ଖର୍ଚ୍ଚ କରିବା ଉଚିତ ନୁହେଁ । ଯେ ମଲା, ସେ ଗଲା । ସେ କଣ କିଛି ଦେଖୁଥାଏ ? ଯେତେ କମ୍‌ରେ ହୋଇପାରେ, ବୁଝିଲୁ ?

ଘଣ୍ଟାରେ ସାଧୁଚରଣଙ୍କର ଓଠ ଟଣି ଆସିଲା । ଯାହା ହେଉ, ଶିବାଚ ଗୋଟାଏ ଉପାୟ ମିଳୁଛି । ସେ ଅତି କଷ୍ଟରେ କହିଲେ, ହେଉ ।

## ୧୧

ରଥଯାତ୍ରା ଦେଖିବାକୁ ଭାରତର ଅଧିକାଂଶ ସ୍ଥାନରୁ ଯାତ୍ରୀଦଳ ଆସି ବଡ଼ଦାଣ୍ଡରେ ଠୁଳ । ଲୋକଙ୍କର କୋଳାହଳ ଓ ଯାତ୍ରାସ୍ୱରରେ ହୁଲୁସ୍ଥୁଲ କମ୍ପୁଛି । ବିଚିତ୍ର ଏ ଦୃଶ୍ୟ, ଆନନ୍ଦପ୍ରଦ ! ଲୋକଙ୍କର କଳନା ନାହିଁ । ସ୍ତ୍ରୀ ପୁରୁଷ, ବାଳକ, ବୃଦ୍ଧ, ସମସ୍ତେ ଏକତ୍ର ଜୁଣ୍ଡ । ଦେବ ଦର୍ଶନ କରିବାକୁ ସମସ୍ତେ ଇଚ୍ଛନ୍ତି । ଜାତି, ପଦ, ମାନ ଏବଂ ଭାଷାର ପାର୍ଥକ୍ୟ ବିଶାଳ ଭକ୍ତି ସ୍ରୋତରେ ବିଲୀନ । ବ୍ରାହ୍ମଣ, ଚଣ୍ଡାଳ, ଧନୀ, ନିର୍ଧନ, ପଣ୍ଡିତ, ମୂର୍ଖ ଓ ବଙ୍ଗାଳି ଓଡ଼ିଆ ମଧ୍ୟରୁ ଆଜି ଭେଦ ଭାବ ଉଠିଯାଇଛି । ସମସ୍ତେ ଏକ ମନ ହୋଇ ଭକ୍ତ-ବତ୍ସଳ ପ୍ରାଣରେ ଦର୍ଶନ କରିବାକୁ ଅନାଇଁ ରହିଛନ୍ତି ।

ଦ୍ୱିତଳ ପ୍ରାସାଦମାନଙ୍କ ଉପରେ ସ୍ତ୍ରୀ-ପୁରୁଷ ଏକତ୍ର ଏହି ସମସ୍ତ ଅଭିନବ ଦୃଶ୍ୟ ଦେଖିବାକୁ ସ୍ଥିର ଚକ୍ଷୁରେ ତଳକୁ ଚାହିଁ ରହିଛନ୍ତି । ବଡ଼ଦାଣ୍ଡର ଦୁଇପାଖରେ ଅବସ୍ଥିତ କୋଠାମାନଙ୍କରେ ଲୋକ ଭିଡ଼ । ନାନା ରଙ୍ଗର ଲୁଗାପିନ୍ଧି, ନାନା ପ୍ରକାର ଗହଣାଗଣ୍ଠି ନାଇ, ଦେଶ ବିଦେଶ ସ୍ତ୍ରୀଲୋକମାନେ ଘଣ୍ଟାକ ପାଇଁ ହାତକ ଜାଗାକୁ କୋଠାବାଲାକୁ ଦଶ ପାଞ୍ଚ ଗଣିଦେଇ ନିଶ୍ଚିନ୍ତରେ ବସି ଦେଖୁଛନ୍ତି । ଗୋଏଙ୍କା ଓ ଅନ୍ୟାନ୍ୟ ଧର୍ମଶାଳାମାନଙ୍କର ଅବସ୍ଥା ତଦ୍ରୂପ । ଝରକାମାନଙ୍କରେ ଜୁଳୁ ଜୁଳୁ ଚକ୍ଷୁମାଳ ।

ବଡ଼ଦାଣ୍ଡ କଡ଼ରେ ଗୋଟିଏ ମନୋହାରୀ ଦୋକାନରେ ଠିଆ ହୋଇଥିଲା ଜଗନ୍ନାଥ । ବେଶଭୂଷାର ପାର୍ଥକ୍ୟ ଦେଖାଯାଉ ନାହିଁ । ମୁଖରେ ଉଦ୍‌ବିଗ୍ନତାର ଚିହ୍ନ । ମନ ଚଞ୍ଚଳ । ତରଙ୍ଗ ତରଙ୍ଗ ହୋଇ ସନ୍ଦେହ ପୂର୍ଣ୍ଣ ଚକ୍ଷୁରେ ଚାରିଆଡ଼କୁ ଚାହୁଁଛି । ତାର ତୀକ୍ଷ୍ଣ ଦୃଷ୍ଟି ସମ୍ମୁଖସ୍ଥ ଏ କୋଠାରୁ ସେ କୋଠା ବିଚରଣ କରି କାହାର ଅନ୍ୱେଷଣ କରୁଛି । ସ୍ଥାନେ ସ୍ଥାନେ ଅଟକି ରହୁଛି ମିନିଟିଏ ଦି ମିନିଟି । ଖୋଜୁଥିବା ଲୋକର ପତ୍ତା ମିଳୁ ନାହିଁ । ମନୁଷ୍ୟ ସାଗର ମଧ୍ୟରେ ପ୍ରତ୍ୟେକ ପ୍ରତ୍ୟେକଙ୍କର ସତ୍ତା ହଜାଇ ବସିଛନ୍ତି ।

ପରିଚିତ ଦୋକାନୀଟି ଅଟକାଇ କହିଲା, ଜଗବାବୁ, ଯାହାକୁ ଦେଖିବାକୁ ଏତେ ଲୋକ ଜମା ହୋଇଛନ୍ତି, ତାକୁ ଦେଖିବାକୁ ଯାଇ ଆକାଶକୁ ଚାହୁଁଛ କାହିଁକି ?

ଆଟେ ଭ ଭୁଟ୍ଟ୍‌ ଲୁଙ୍କ ? କାଳିଆ ବେଣ୍ଟପୋ ଆମ ଘରର ଠାକୁର, ଯେବେ ଇଚ୍ଛା ଦର୍ଶନ ମିଳିବ । ଆକାଶକୁ ଗୃହିଁବାର ସୁଯୋଗ ଯେ ବରଷକେ ଥରେ ।

ଠିକ୍ କହିଲ । ତେବେ, ସବୁବର୍ଷ ତ ସୁଯୋଗ ମିଳେ । ଯା, ଯା, କାଳିଆକୁ ଦେଖିବ ।

ସବୁ ବର୍ଷତ କାଳିଆର ପର୍ବ ଦେଖୁଛୁ । ଅଜାଙ୍କ ଅମଳରୁ ଯାହା ଅଛି ସେଇଆ । ନୂଆ କିଛି ନାହିଁ । କିନ୍ତୁ ଭାଇ, ଆକାଶର ଶୋଭା ସବୁବେଳେ ନୂଆ । କେତେବେଳେ କେଉଁ ତାରା ଆସି ଆକାଶର ଚେହେରା ବଦଳାଇ ଦେଇ ଯାଉଛି ତାର କଳନା ନାହିଁ ।

ଦିନ ଦି ପହରେ ତାରା ଉଠନ୍ତି ?

ହ୍ୟାପ୍, ଖାଲି ତାରା ! ଆକାଶରେ କେବେ ସିନା ଗୋଟାଏ ଗ୍ରହ ଉଠେ, ଆଜି ଯେ ଗ୍ରହର କଳନା ନାହିଁ !

ଜଗନ୍ନାଥ ହସି ହସି ବଡ଼ଦାଣ୍ଡ ଉପରକୁ ଓହ୍ଲାଇ ପଡ଼ିଲା । ସିଗାରେଟ୍ ଖଣ୍ଡେ ଲଗାଇ ଟାଆସିଲାଟି ପକେଟରେ ରଖୁ ରଖୁ ହଠାତ୍ ଖଣ୍ଡେ ଚିଠିରେ ତାର ହାତ ବାଜିଲା । ସତର୍କତାର ସହିତ ଚିଠିଖଣ୍ଡ ପକେଟରୁ କାଢ଼ିଲା । ସ୍ୱଶ ଆଡ଼କୁ ଥରେ ଅନାଇଁ ପତ୍ରଖଣ୍ଡି ଧୀରେ ଧୀରେ ଖୋଲି ପାଠକଲା । ମୁଣ୍ଡ ଟୁଙ୍ଗାଇ ମନକୁ ମନ ହସି କହିଲା ଓ ହୋ, ମସ୍ରଲଷ୍ଟ ? ବଢା ଜଗା ହାବୁଡ଼ରୁ ଯିବୁ କୁଆଡ଼େ, ରହ ।

ଚିଠିଖଣ୍ଡି ପୁଣି ପକେଟରେ ରଖି ଖଣ୍ଡିଆ ଜଣରେ ହାତ ମାରୁ ମାରୁ ଆଗକୁ ଗ୍ଲଲା । କିଛିଦୂର ଯାଇ ଆଗ ପଛକୁ ଗ୍ରହିଁ ମନକୁ ମନ କହିହେଲା, ବାଲମ୍ବେ-ନାଲମ୍ । ହାଃ-ହାଃ .. । ସାଧୁ, କୋକିଲ, ତମର ମାନ ମହତ୍ତ୍ୱ ତୁମ ଜୀବନର ସୁଖ, ଜଗା ବଜାର ଖଣ୍ଡେ ଚିଠିରେ ରଖିଛି ।

ପହଣ୍ଡିବିଜେ କାମ ସରିଲା । ଲୋକେ ଚତ୍କାର କରି ବଡ଼ଠାକୁରଙ୍କ ରଥର ଦଉଡ଼ା ଧରିଲେ । ସାରଥି ବେତ ଧରି ନାଚ ନାଚ ଉଚ୍ଚ ସ୍ୱରରେ ଖଣ୍ଡାଙ୍ଗ ପୁରାଣରୁ କାଣ୍ଡେ ଆରମ୍ଭ କଲେ । ପ୍ରଥମ ଅଧ୍ୟା ସମାପ୍ତ ହେଲା । ଲୋକେ ଦ୍ୱିଗୁଣ ଉତ୍ସାହରେ ରଥ ଟାଣିଲେ । ଜଗନ୍ନାଥ ଏ ଆନନ୍ଦରେ ଯୋଗ ଦେବାକୁ ପଛକୁ ଫେରିଲା ନାହିଁ । ଲୋକଙ୍କର କୋଳାହଳ ଶୁଣିବାକୁ ମୁହୂର୍ତ୍ତେ ଅପେକ୍ଷା କଲା ନାହିଁ । କେଉଁ ଉଦ୍ଦେଶ୍ୟରେ କେଜାଣି, ସେ ଦ୍ରୁତ ପଦରେ ଆଗକୁ ଛୁଟିଲା ।

ମେଘ ଅନ୍ଧାର ଗୁରିଆଡ଼େ ଘୋଟିଗଲାଣି । ବିଜୁଳି ଘନ ଘନ ମାରୁଛି । ଭୟରେ ସାହି ଲୋକେ ନିଜ ନିଜର ଗୃହ ଆଶ୍ରୟ କଲେ । ଯାତ୍ରୀମାନେ ରଥ ଟଣା କାର୍ଯ୍ୟ ସମାପ୍ତ କରି ଖାବନ ବକଳରେ କିଏ କେଉଁଠି ଆଶ୍ରୟ ଗ୍ରହଣ କଲେ । ପୁରୀର ରାଜପଥମାନ ପ୍ରାୟ ଜନଶୂନ୍ୟ । ଶ୍ରୀକ୍ଷେତ୍ରର ଇତିହାସରେ ଏହା ଏକ ନୂତନ ଘଟଣା । ଏକେ ତ ଦୁର୍ଗମ ରାତି, ତହିଁରେ ପୁଣି କଲେରା ରୋଗରେ ଶହ ଶହ ଲୋକ

ଶ୍ରୀକ୍ଷେତ୍ର ଲଭ କରୁନ୍ତୁ, ଲୋକେ ଭୟରେ କମ୍ପାପାଣି । ସଞ୍ଜହେଲେ ଘରଦ୍ୱାର ବନ୍ଦ । ସାହି ଲୋକ ପଦାକୁ ବାହାରୁଛନ୍ତି କେତେକେ ।

ସେଇ ଦୁର୍ଗମ ରାତ୍ରରେ ଜଗନ୍ନାଥ ଗୋଡ଼ ଚପି ଚପି ଆସି ଝରକାରେ ହାତ ମାରିଲା । ଝରକା ଫାଙ୍କ ଦେଇ ପଦାକୁ ଆସୁଥିବା କ୍ଷୀଣ ଆଲୋକରେଖା ସାହାଯ୍ୟରେ ଦେଖିଲା, କୋକିଳ ଅଧାଶୁଆ ଠାଣିରେ ମୁଣ୍ଡରେ ହାତ ଦେଇ ଖଟ ଉପରେ ବସିଛନ୍ତି । ପାଖରେ ବଟା ବୋତଲ ଓ ଗୋଟିଏ କାଚ ଗ୍ଲାସ ରଖା ହୋଇଛି । ଚକ୍ଷୁରୁ ଦୁଇ ଧାର ଲୁହ ଗଡ଼ି ପଡ଼ୁଛି ।

ଜଗନ୍ନାଥ ତାଙ୍କ କାର୍ଯ୍ୟ ପ୍ରତି ନଘା ରଖିଲା ।

କୋକିଳ ଗିଲାସଟିକୁ ମୁହଁ ପାଖରେ ଧରି ପୁଣି ଫେରାଇ ଆଣିଲେ । ତାଙ୍କର ମଳିନ ଚକ୍ଷୁ ବିସ୍ଫାରିତ ହୋଇ ଝଲସି ଉଠିଲା । ଗିଲାସଟି ରଖିଦେଇ ପ୍ରଳାପ କଲାପରି ମନକୁ ମନ କହି ଉଠିଲେ, ଏ ବୋତଲ ଆଣିଲି କାହିଁକି ସାଧୁ ? କେତେଦିନ ଅପେକ୍ଷା କରିବି ? ଦୁଇ ଦିନ ପରେ ଆସିବି କହି ଠକିଦେଇ ଚାଲିଗଲା । ନା, ଏଥିଥର ନିଶ୍ଚୟ ।

ପୁଣି ଗିଲାସଟିକୁ ଓଠରେ ଲଗାଇଲେ । ହାତ ଥରି ଉଠିଲା ।

ଜଗନ୍ନାଥ ବୁଝିଲା । ଝରକା ପାଖରୁ ଉଠିଗଲା । ଦ୍ୱାରରେ ହାତ ମାରିବା ସଙ୍ଗେ ସଙ୍ଗେ କବାଟ ଫିଟିଗଲା । ବୋଧହୁଏ କବାଟ ବନ୍ଦ କରିବାକୁ କୋକିଳ ଦେଈଙ୍କର ମନେ ନାହିଁ । ସେ ଏକାଥରେ ଯାଇ କୋକିଳ ଦେଈଙ୍କ ଆଗରେ ଠିଆ ହୋଇଗଲା ।

କୋକିଳ ଜଗନ୍ନାଥକୁ ଦେଖି ଟିକିଏ ଶଙ୍କିଗଲେ । କମ୍ପିତ ହସ୍ତରୁ ଗିଲାସଟି ତଳେ ଖସିପଡ଼ି ଚୂନା ହୋଇଗଲା । ସେ ଭୟରେ ଥରି ଥରି ଅସ୍ତବ୍ୟସ୍ତ ହୋଇ ତଳେ ଠିଆହେଲେ । ମୁହଁରୁ କଥା ବାହାରିଲା ନାହିଁ । ଜଗନ୍ନାଥ ସୁବିଧା ପାଇ କୋକିଳ ଦେଈଙ୍କ ହାତ ଧରି ଧୀରେ ଧୀରେ ପଚାରିଲେ, ଗିଲାସରୁ କଅଣ ପିଇବାକୁ ବସିଥିଲ କି ?

କୋକିଳ ଭୟରେ ଗଳା ଥରାଇ କହିଲେ, ପା···ଣି ··· ।

ଏ ପାଣି ନୁହେଁ, ଆଉ କିଛି ।

କୋକିଳ ବିରକ୍ତ ହୋଇ ଜଗନ୍ନାଥର ହାତରୁ ହାତ ଟାଣିନେଇ କହିଲେ, ସେଥିରେ ତମର ଯାଏ କଅଣ ଜଗନ୍ନାଥ ବାବୁ । ମୋର ଯାହା ଇଚ୍ଛା ମୁଁ ଖାଇବି, ଆପଣ ବାଧା ଦେଇ ପାରିବେ ?

ହଁ, ବାଧାଦେଇ ପାରିବି । କହି ଜଗନ୍ନାଥ ବୋତଲ ଧରିଁକି ଝରକା ଖୋଲି ପଦାକୁ ଫିଙ୍ଗାଇଦେଲା । କହିଲା, ସାଧୁ ଆସିବାଯାଏ ତମର ଭଲମନ୍ଦ ପାଇଁ ମୁଁ ଦାୟୀ ।

ଉଚ୍ଚସ୍ୱରରେ ହସି ହସି କୋକିଲ କହିଲେ, ସାଧୁଚରଣ ! ସେ ଆସିବେ ବୋଲି ମନେ କରୁଛନ୍ତି ଜଗନ୍ନାଥବାବୁ ? ଆସନ୍ତୁ ବା ନ ଆସନ୍ତୁ, ସାଧୁଚରଣଙ୍କଠେଇଁ ବା ଆପଣଙ୍କଠେଇଁ ମୋର ଥାଏ କଅଣ ? ବେଳ ଥାଉଁ ଥାଉଁ ମୁଁ ମୋର ବୁଝିଲି କାମ ଶେଷ କରି ଦେବି ।

ବିଷ ଖାଇ ଆତ୍ମହତ୍ୟା କରିବ ?

ଆତ୍ମହତ୍ୟା ! କହି କୋକିଲ ଚମକି ଉଠିଲେ । ଚିନ୍ତାକରି କହିଲେ, ଆତ୍ମହତ୍ୟା କଲେ କ୍ଷତି କଅଣ ? ଏହାଛଡ଼ା ଅନ୍ୟ ବାଟ ନାହିଁ । ଜୀବନଟା ଯାକ ଟିକି ଟିକି ହୋଇ ମରିବା ଅପେକ୍ଷା ଏକାଥରେ ମରି ଯିବା ଭଲ । ଲୋକ ତ୍ରାହିଗତି ପାଇଯିବ । ମଲାପରେ ଯେ ଯାହା କହିବାର କହୁ, ଶୁଣିବାକୁ ତ ନ ଥିବି ।

ଆତ୍ମହତ୍ୟା ମହାପାପ ।

ଭିତରେ ଯାହାର ନିଆଁ ଜଳୁଥାଏ, ସେ ଅନ୍ଧ । ତାକୁ ପାପ ପୁଣ୍ୟ କିଛି ଦିଶେ ନାହିଁ ।

ସେ ନିଆଁ କଣ କେହି ନିଭାଇ ପାରିବେ ନାହିଁ ?

ମୁଁ ଏତେ କଥାର ଜବାବ ଦେବାକୁ ରାଜି ନୁହେଁ । ବିପଦବେଳେ ବନ୍ଧୁ ରୂପେ ମୋ ପାଖରେ ଠିଆ ହୋଇ ମୋଅର ଉପକାର କରିଛନ୍ତି, ସେଥିପାଇଁ ମୁଁ ଋଣୀ । ନିଆଶ୍ରା ଦେଖି ଅପରିଚିତା ହେଲେ ମଧ୍ୟ ଆପଣ ମୋ ପାଇଁ ଅନେକ କଷ୍ଟ ସ୍ୱୀକାର କରିଛନ୍ତି, ସେଥିପାଇଁ ଧନ୍ୟବାଦ ଦେଉଛି ।

ଜଗନ୍ନାଥ କହିଲା, ଦେଖ, ମନକୁ ଅଧୀର କଲେ ଜୀବନ ବୃଥା ହୋଇଯିବ । ଜୀବନର ସାର ସମ୍ପତ୍ତି ଯୌବନ । ଯୌବନଟା ରହେ କେତେଦିନ ? ଇନ୍ଦ୍ରଧନୁର ଶୋଭାପରି କ୍ଷଣେ ରହି ପରକ୍ଷଣରେ ହଜିଭେଇ ଯାଏ ।

କୋକିଲ ଜଗନ୍ନାଥର କଥା ଶୁଣି ନୀରବ ହେଲେ ।

ଜଗନ୍ନାଥ ମୁରୁକି ହସି କହିଲା, ମନୁଷ୍ୟ ଜନ୍ମହୁଏ ମରିବାକୁ । ଚିରଦିନ କେହି ବଞ୍ଚି ରହେନାହିଁ । ଯେତେ ପ୍ରିୟପାତ୍ର ହେଉ ପଛେ ଯେ ମରିଯାଏ, ତା ପାଇଁ ଚିନ୍ତା କରିବା ମୂର୍ଖତା । ଯେତେଦିନ ବଞ୍ଚିରହିବା, ଜୀବନକୁ ସୁଖରେ କଟାଇବାକୁ ଚେଷ୍ଟା ନ କରିବ କାହିଁକି ?

କୋକିଲ ଦେବୀଙ୍କର ଚକ୍ଷୁ ପ୍ରଦୀପ୍ତ ହେଲା । ସେ ଦୀର୍ଘଶ୍ୱାସ ପକାଇ ଜଗନ୍ନାଥର କଥା ଚିନ୍ତାକଲେ । ସତ କଥା, ଜୀବନଟା ଯଦି ଦୁଃଖମୟ ହେବାର କଥା, ତାକୁ ସୁଖମୟ କରିବାକୁ ଚେଷ୍ଟାକଲେ କ୍ଷତି କଅଣ ! ସେ ଲଜ୍ଜିତା ହୋଇ କହିଲେ, ଉପାୟ ଦେଖି ପାରୁନାହିଁ । ଖାଲି ପେଟକୁ ଗଣ୍ଡାଏ ଖାଇ··· ।

ଆଜିକାଲି ସମାଜରେ ବିଧବାବିବାହ ପ୍ରଥା ପ୍ରଚଳିତ ହେଲାଣି ।

କୋକିଳ ଅଶ୍ରୁପୂର୍ଣ୍ଣ ନେତ୍ରରେ କହିଲେ, ମୋତେ କଅଣ ବିଧବା ମନେ କରିଛନ୍ତି ଜଗନ୍ନାଥ ବାବୁ ? କାହିଁକି ମୋତେ ଦେଖିଲେ କଅଣ—ଏଇ ତ ମୋ ହାତରେ ସୁନାର ଚୁଡ଼ି ରହିଛି । ରସାନନ୍ଦ ବାବୁଙ୍କ ମରଣ ଆଗରୁ ମୁଁ ଯେଉଁ ଅଳଙ୍କାର ନାଇଥିଲି ତହିଁରୁ ଗୋଟିଏ ହୋଇ ତ ଉତାରିନାହିଁ ।

ତମେ ଜୀବନ ଯୌବନର ପ୍ରକୃତ ଅର୍ଥ ବୁଝ । ରସାନନ୍ଦ ବାବୁଙ୍କୁ ବିବାହ କରିଥିଲି ବୋଲି ତ ··

ବିବାହ କରିଥିଲି କିଏ କହିଲା ? ମୁଁ କଣ ହାତରେ ବରଣମାଳା ଘେନି ରୋଗଣା ବୁଢ଼ା କଙ୍କାଳକୁ ବରଣ କରିଥିଲି ? ଆପଣ ଯଦି ମୋ ପରି ଆଶ୍ରୟହୀନା ହୋଇଥାନ୍ତେ, ଏପରି ଗୋଟିଏ ଲୋକକୁ ବରଣ କରିବାକୁ ରାଜି ହୁଅନ୍ତେ ? ଏବେ ଯଦି କିଏ ଜୋର କରି ଆପଣଙ୍କୁ ଜଣେ ରୁଗ୍‌ଣା ବୃଦ୍ଧା ସଙ୍ଗେ ବିବାହ କରି ଦିଅନ୍ତେ, ଆପଣ କରନ୍ତେ କଅଣ ? ଆପଣ ଯୁବକ, ଶକ୍ତି ଅଛି । ସମାଜର ବନ୍ଧନ ଛିଡ଼ାଇ ଦେଇ ଚାଲି ଆସନ୍ତେ । ମୁଁ ଅବଳା ନାରୀ । ମୋର ଗୃହ ନାହିଁ । ତା ବୋଲି କଅଣ ମୋର ଜୀବନ ଉପରେ ଅଧିକାର ନାହିଁ ?

ନିଶ୍ଚୟ ଅଛି ।

ଆପଣ କହିଲେ, କାରଣ ଆପଣ ମୋର ଦୁଃଖ ବୁଝି ପାରିଲେ । ସମାଜ ତାହା ବୁଝିବାକୁ ଯିବନାହିଁ । ଯଦି ମୁଁ ବିବାହ କରେ, ଲୋକେ ହସିବେ, ମୋତେ ଘୃଣା କରିବେ । କେହି ବୁଝିବ ନାହିଁ ଯେ ମୋର ଦେହ ଓ ମନ ବିଧବା ନୁହେଁ । ସମାଜର ନିୟମ ମତେ ବିଧବା କରିଛି । ତେଣୁ ଲୋକେ ମୋତେ କହିବେ ବିଧବା ।

ଲୋକଙ୍କ କଥାକୁ ଖାତିର ନ କଲେ ହେଲା । ଯେଉଁ ସମାଜ ଲୋକର ଦୁଃଖଶୋକ ବୁଝିବାକୁ ଚେଷ୍ଟା ନ କରି ଆଖିବୁଜି ବସେ, ସେ ସମାଜର କଥାରେ ଭ୍ରୂକ୍ଷେପ ନ କଲେ ହେଲା । ଠାକୁରେ ଆମୁକୁ ମଧ୍ୟ ଜୀବନ ଦେଇଛନ୍ତି । ଆମେ ନିଜର ଜୀବନକୁ ସୁଖମୟ କରିବାକୁ ଚେଷ୍ଟା କରିବା ।

କୋକିଳ ଉଦ୍‌ବିଗ୍ନତାର ସହିତ ଜଗନ୍ନାଥର ହାତଧରି କହିଲେ, ଜଗନ୍ନାଥ ବାବୁ, ଆଜି ମୋର ଧାରଣା ଆପଣଙ୍କ ପ୍ରତି ବଦଳି ଯାଇଛି । ମୁଁ ଦେଖୁଛି, ଆପଣ ଅତି ଉଦାର । ଯଦି ବିବାହ କରିବାକୁ ମୁଁ ପ୍ରସ୍ତୁତ ହୁଏ ସମାଜକୁ ଭ୍ରୂକ୍ଷେପ ନ କରି ମୋତେ ଗ୍ରହଣ କରିବାକୁ କେହି ଆଗଭର ହୋଇ ପାରିବ ?

ଜଗନ୍ନାଥ ଅବାକ୍ ହୋଇ କୋକିଳ ଦେଈଙ୍କ ମୁହଁକୁ ଅନାଇ ରହିଲା । ସତେ କଅଣ କୋକିଳ ଦେଈ ମନର କଥା କହୁଛନ୍ତି ? ସେ ଅଟକେଇ ଅଟକେଇ କହିଲା, କିପରି ଯୁବକ ?

କୋକିଳ ହାସ୍ୟଭରା ମୁଖରେ କହିଲେ, ଧନୀ ହୋଇଥାନ୍ତୁ, ଦରିଦ୍ର ହୋଇଥାନ୍ତୁ, ବ୍ରାହ୍ମଣ ଚଣ୍ଡାଳ ଯେ କେହି ହୋଇଥାନ୍ତୁ, ମୁଁ ଚାହେଁ ବନ୍ଧୁ, ସାଥୀ, ଯାହାଙ୍କର ଗୋଡ଼ତଳେ ନିଜକୁ ମୁଁ ସମର୍ପି ଦେବି ।

ଜଗନ୍ନାଥ ଅଧୀର ହୋଇ କହିଲା, ଆକାଶର ଚନ୍ଦ୍ର ପାଇବାକୁ ମୁଁ ବା ହାତ ବଢ଼ାଇବି କାହିଁକି କୋକିଳ ଦେଈ ? ତମକୁ ନିଜର କରିବାକୁ ସମାଜର ସହସ୍ର ବନ୍ଧନ ଛିଡ଼ାଇ କେଉଁ ଯୁବକ ଆଗେଇ ନ ଆସିବ ? କିଏ ନ ଚାହିଁବ ତମର ଗୋଲାପି ଗଣ୍ଡରେ ପ୍ରେମର ମୋହର ଆଙ୍କିବାକୁ ? ଜଗନ୍ନାଥ ଆଜି ତମରି ପାଇଁ ପାଗଳ । ତମର ହୃଦୟ ଲାଭ କରିବାକୁ ତମରି ସାଥିରେ ସେ ନରକ ଯିବାକୁ ପ୍ରସ୍ତୁତ ।

କୋକିଳ ଦେଈ ଅଶ୍ରୁଭରା ନୟନରେ କ୍ଷଣକାଳ ଜଗନ୍ନାଥର ମୁଖକୁ ଚାହିଁ ରହିଲେ । ତାର ଆପାଦମସ୍ତକ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ଦୀର୍ଘଶ୍ୱାସ ପକାଇ କହିଲେ, ଆପଣ ବିବେଚନା କରି ପ୍ରାଣର କଥା କହୁଛନ୍ତି ଜଗନ୍ନାଥ ବାବୁ ? ଭାବି ଦେଖନ୍ତୁ, ମୋପରି ଜଣେ ଅନାଥିନୀକୁ ବେକରେ ବାନ୍ଧି ସମାଜ ଆଗରେ ମୁଣ୍ଡ ଟେକି ବାଟ ଚାଲି ପାରିବେ ?

ଭଗ୍ନ କଣ୍ଠରେ ଜଗନ୍ନାଥ କହିଲା, ପାରିଲେ ପାରିବି, ନୋହିଲେ ସମାଜ ତ୍ୟାଗକରି ତୁମକୁ ହୃଦୟରେ ଧରି ଦେଶତ୍ୟାଗୀ ହେବି ।

ଜଗନ୍ନାଥ ସ୍ପନ୍ଦିତ ହୃଦୟରେ କୋକିଳ ଦେଈଙ୍କୁ ଆଲିଙ୍ଗନ କରିବାକୁ ବସିଲା । କୋକିଳ ଛିଡ଼ା ହୋଇ ପଛକୁ ଘୁଞ୍ଚିଗଲେ । ବିରକ୍ତ ହୋଇ କହିଲେ, ଉତ୍ତେଜନାର ଦାଉରେ ଭଦ୍ରତାର ବାହାରକୁ ଯାଆନ୍ତୁ ନାହିଁ । ମୁଁ କୁଳଟା ନୁହେଁ, ମୁଁ ବେଶ୍ୟା ନୁହେଁ । ମୁଁ କୁଳକନ୍ୟା । ସମାଜ ଚକ୍ଷୁରେ ଯାହାଙ୍କର ହାତଧରି ଏ ଘରେ ମୁଁ ଗୋଡ଼ ଦେଇଥିଲି, ଆଇନ୍ ଆଖିରେ ତାଙ୍କର ମୋ ଉପରେ ସମସ୍ତ ଅଧିକାର ଥାଇ ମଧ୍ୟ ସେ କେବେହେଲେ ଏପରି ସାହସ କରିବାକୁ ଭାବି ନ ଥିଲେ । ଅନ୍ୟ କଥାତ ନିଆରା । ଆପଣଙ୍କର ନିର୍ଲଜ ପ୍ରେମ ଦେଖାଇବାର ସ୍ଥାନ ବେଶ୍ୟାଘର ।

ଜଗନ୍ନାଥ ଲଜ୍ଜିତ ହେଲା । ଏ କଅଣ ! ନାରୀର ମନ ବୁଝିବା ସହଜ ନୁହେଁ ! ଦେଖୁ ଦେଖୁ ପରିବର୍ତ୍ତନ ! ମନର ଦୁର୍ବଳତା ଦେଖି ସେ ଉପହାସ କରିବାକୁ ଏତେ କଥା ଫାନ୍ଦିଗଲେ ? କିନ୍ତୁ, ଜଗା ବଳାର ପାଖରେ ସାମାନ୍ୟ ଗୋଟିଏ ବାଳିକାର ଚାଲାକି ବଳେଇ ପଡ଼ିବ ନାହିଁ । ସେ ଲୁହା ଦେଖି ପାଣି ଦେଇ ଜାଣେ ।

ରାଗରେ ଫଣ ଫଣ ହୋଇ ଜଗନ୍ନାଥ କହିଲା, ଭଦ୍ରତାର ସୀମା ଲଙ୍ଘନ କରୁଛ ତମେ କୋକିଳ ଦେଈ, ମୁଁ ନୁହେଁ । ମନେ ରଖ, ଜଗନ୍ନାଥ ସାଧୁଚରଣ ନୁହେଁ ଯେ ତମର ଗୋଡ଼ତଳେ ପଡ଼ି କ୍ଷମାଭିକ୍ଷା କରିବ । ହ୍ୟାପ୍, ସେ ତାକୁ ନିଜର ବାଟ ନିର୍ବିଘ୍ନରେ ସଫା କରି ପାରେ ।

କୋକିଳ ଦେଈ ନିଃସହାୟ ଚକ୍ଷୁରେ ଗୃହର ଚାରିଆଡ଼କୁ ଥରେ ଅନାଇ ଗଲେ । ମନରେ ସନ୍ଦେହ ହେଲା । ଜଗନ୍ନାଥର ମୁହଁକୁ ଚାହିଁବାକୁ ତାଙ୍କର ସାହସ ହେଲାନାହିଁ । ଝରକାଟି ପୂର୍ବପରି ଖୋଲା ଅଛି । ବାହାରଟା ଉଆସ ରାତିପରି ଅନ୍ଧାରୁଆ । ବେଳେ ବେଳେ ବିଜୁଳି ଝିକ୍ ଝିକ୍ କରି ଚମକି ଉଠୁଛି । ବର୍ଷା ବୁନ୍ଦାର ଟପ୍ ଟପ୍ ବ୍ୟତୀତ ଜନମାନବର ସ୍ୱର ଶବ୍ଦ ନାହିଁ ।

ଭୟରେ କୋକିଳଙ୍କର ଅନ୍ତରାତ୍ମା ଥରି ଉଠିଲା । ସେ ଉପାୟଶୂନ୍ୟା ହୋଇ, ବିନୀତ ହୋଇ କହିଲେ, ବିରକ୍ତ ହେଲେ ? ଯଦି ମୋଠାରେ ଦୋଷ ହୋଇଥାଏ, କ୍ଷମା କରନ୍ତୁ । ସତ କହୁଛି, ମୋଠାରେ ଅଭିଜ୍ଞତାରୁ ମୁଁ ଶିକ୍ଷା ପାଇଛି, ସହଜରେ କାହାର କଥାରେ ପଡ଼ିଆସି ଯିବି ନାହିଁ । ଠାକୁରଙ୍କ କୃପାରୁ ଯଦି ମୋ ଜୀବନରେ କେବେ ସେହି ଶୁଭ ମୁହୂର୍ତ୍ତ ଆସେ, ମୁଁ ତ ନିଜେ ହସି ହସି ଯାଇ ଆପଣଙ୍କ ଚରଣ ଆଲିଙ୍ଗନ କରିବି ।

ହସି ହସି ଜଗନ୍ନାଥ କହିଲା, ତମର ସେ ଅଭିଜ୍ଞତାଟା କଅଣ ଶୁଣେ ? ବୋଧହୁଏ ଅଭିଜ୍ଞତାଟି ସାଧୁଚରଣର ବ୍ୟବହାର ଦେଖି କହୁଛ ?

ସାଧୁଚରଣଙ୍କର ବ୍ୟବହାର ?

ହଁ, ତମେ ଭଲକରି ଜାଣ । ଛଳନା କଲେ ଲାଭ ନାହିଁ । ମୁଁ ବି ସବୁ ଜାଣେ । ତଥାପି, ତୁମକୁ ସ୍ତ୍ରୀରୂପେ ଗ୍ରହଣ କରିବାକୁ ମୁଁ ପ୍ରସ୍ତୁତ ।

ଆପଣଙ୍କର ଏହି ଧାରଣା ସମ୍ପୂର୍ଣ୍ଣ ଭୁଲ । ସାଧୁ ପରି ନିରୀହ ଓ ଦେବଦୁର୍ଲ୍ଲଭ ପ୍ରକୃତିର ଯୁବକ ଆଜିକାଲି ଯୁଗରେ ଦେଖାଯାନ୍ତି ନାହିଁ । ତାଙ୍କ ଆଚରଣରେ ମଳି ଧୂଳି ନାହିଁ ।

ତମେ ଏ କଥା ଅବଶ୍ୟ କହିବ । ତାଙ୍କୁ ନିରୀହ, ନିଷ୍କପଟ ଓ ସଚ୍ଚରିତ୍ର ବୋଲି ପ୍ରମାଣ କରି ନ ପାରିଲେ ନିଜ ଉପରୁ ଦୋଷଟି ଛଡ଼ାଇ ପାରିବ ନାହିଁ । ପ୍ରମାଣ ଯେ ମୋ ପାଖରେ ମହଜୁଦ୍ ଅଛି ।

ପ୍ରମାଣ ? ଅସମ୍ଭବ ! ଯୁବକ ଯୁବତୀ ହୋଇ ମନରେ ବିକାର ନ ଆସେ କାହାର ? କିନ୍ତୁ ମୁଁ ଜୋର କରି କହିପାରେ, ବିକାରକୁ ମୂଳରୁ ମାରିବାର ଉପାୟ ସାଧୁ ଭଲକରି ଜାଣନ୍ତି ।

ଛଳନା କରନା କୋକିଳ ଦେଈ, ମୁଁ ସବୁ ଜାଣେ ।" ମୋ ଆଖିରେ ଧୂଳି ପକାଇବା ସହଜ କଥା ନୁହେଁ । ଜଗନ୍ନାଥ ପକେଟରୁ ଖଣ୍ଡେ ଚିଠି କାଢ଼ି ହାତରେ ଧରିଲା । ହସି ହସି କହିଲା, ପ୍ରମାଣ ଖୋଜୁଥିଲ ପରା ? ଏଇ ଦେଖ । ରସାନନ୍ଦ ବାବୁ ଯେତେବେଳେ ବୁଝି ପାରିଲେ ଯେ ଔଷଧ ନାମରେ ତମେ ତାଙ୍କୁ ବିଷ ଦେଇଛ, ସେ ତମକୁ ମଟି ଘରୁ ତଡ଼ିଦେଇ ଏହି ଚିଠି ଖଣ୍ଡି ଲେଖିଥିଲେ ।

ଭୟରେ କୋକିଳ କଳାକାଠ ପଡ଼ିଗଲେ । ବାଧାଦେଇ କହିବାକୁ ତାଙ୍କର ସାହସ ହେଲା ନାହିଁ । ସେ ନିର୍ବାକ୍ ହୋଇ ଜଗନ୍ନାଥର ମୁହଁକୁ ଅନାଇ ରହିଲେ । ଜଗନ୍ନାଥ ସ୍ମିତହାସ୍ୟ କରି ମୁଣ୍ଡ ହଲାଇ ହଲାଇ କହିଲା, ତଥାପି ଅବିଶ୍ୱାସ ! ଦେଖିଲ ଏ ଅକ୍ଷର କାହାର ?

ଜଗନ୍ନାଥ ନାଲିଟଣ ଟେକି, ପତ୍ରଟି ଖୋଲି କୋକିଳ ଦେଈଙ୍କ ଆଖି ଆଗରେ ଧରିଲା । କୋକିଳ ଭୀତିପୂର୍ଣ୍ଣ ଚକ୍ଷୁରେ ପତ୍ର ଉପରେ ଆଖି ବୁଲାଇଗଲେ । ପଢ଼ିବାକୁ ସାହସ କଲେ ନାହିଁ ।

ଜଗନ୍ନାଥ ନାଲିଟଣ ଖଟ ଉପରେ ରଖି କହିଲା, ପଢ଼ିବାକୁ ଇଚ୍ଛା ହେଉନାହିଁ ପରା ! ନିଜ ତୁଣ୍ଡରେ ନିଜର କଥା ଶୁଣିବାକୁ ଇଚ୍ଛା ହେଉ ନଥିବ । ମୁଁ ପଢ଼ୁଛି ଶୁଣ—

—ଦୁଧ ଦେଇ ସାପ ପୋଷିଥିଲି । ସବୁ ଜାଣେ, କିନ୍ତୁ ଜାଣି ଜାଣି ଆଖି ବୁଜିଦିଏଁ । ମୋ'ର ଯେ ଏଥିରେ ଦୋଷ ନାହିଁ ତା ନୁହେଁ । ସାବଧାନ ! ସୁଖରେ ଜୀବନ କଟାଇବାକୁ ଇଚ୍ଛା ଥିଲେ ବୃଦ୍ଧ ହୋଇ, ରୁଗ୍ଣ ହୋଇ, ଯୁବତୀ ସ୍ତ୍ରୀ ବିବାହ କରିବ ନାହିଁ । ଦୁଇଟି ଆକୁଳ ପ୍ରାଣ ମରିବରେ ଜୀବନସାରା କାନ୍ଦିକାନ୍ଦି ଯନ୍ତ୍ରଣା ଭୋଗ କରିବ । କୋକିଳ ଦେଈଙ୍କୁ ବିବାହ କରିଥିଲି ସତ, ତାଙ୍କୁ ମୁଁ ମୋର କନ୍ୟା ପରି ମନେ କରିଥିଲି । ସାଧୁଚରଣ ତାଙ୍କୁ ମାଉସୀ ବୋଲି ଡାକେ ସତ,—

ସନ୍ଦେହ ହେବାର କଥା । ସନ୍ଦେହ ଯେ ସତ୍ୟ ହୋଇଥିବ ଏଥିରେ ମୋ'ର ସଂପୂର୍ଣ୍ଣ ବିଶ୍ୱାସ । ଯେଉଁ ଜୀବନ ଲୋଭରେ ଏତେ କାଣ୍ଡ, ଯେତେବେଳେ ସେହି ଜୀବନଟା ନେଇ ନିଜର ପାପାଭିଳାଷ ପୂରଣ କରିବାର ଇଚ୍ଛା ହେଲା ବୋଲି ଔଷଧ ଛଳରେ ବିଷ ଦେଲେ, ମୁଁ ମୋ'ର ଭ୍ରମ ବୁଝି ପାରିଲି । ମୁଁ ଛାଡ଼ିବ କାହିଁକି ? ଶୀଘ୍ର ମରିବ ତ, ଘଟଣାଟି ସଂସାର ଆଗରେ ଥୋଇଦିଏଁ । ଗୋଟିଏ ହାତରେ ତାଳି ବାଜେ ନାହିଁ । ଉଭୟେ ଦୋଷୀ ।—

ପତ୍ରପାଠ ଶେଷକରି ଜଗନ୍ନାଥ ହାତରେ ଟେରି ସଜାଡ଼ି ସଜାଡ଼ି କହିଲା, ଭୟନାହିଁ, ଏ ଘଟଣା ସଂସାରରେ ଆଉ କେହି ଜାଣି ପାରିବେ ନାହିଁ । ଜଗନ୍ନାଥ ପତ୍ର ଖଣ୍ଡିକ ଟିକି ଟିକି କରି ଚିରି ଝରକା ବାଟେ ପଦାକୁ ନିକ୍ଷେପ କଲା । ପୁଣି କହିଲା, ରସାନନ୍ଦ ବାବୁଙ୍କର ପିଣ୍ଡଟି ଦାହ କରିବାକୁ ନେବା ସମୟରେ ମୁଁ ଏହି ପତ୍ରଖଣ୍ଡି ତାଙ୍କ ତକିଆ ତଳୁ ପାଇଥିଲି ।

କୋକିଳ ଖଟ ଉପରେ ବସି ପଡ଼ିଲେ । ଚକ୍ଷୁରୁ ଲୋତକ ଗଡ଼ାଇ କାନ୍ଦିଲେ ।

ଜଗନ୍ନାଥ ସାନ୍ତ୍ୱନା ଦେବାକୁ କୋମଳ ସ୍ୱରରେ କହିଲା, ଅତୀତକୁ ଭୁଲିଯାଅ । ଆସ, ସମାଜକୁ ଗୋଇଠା ମାରି ଆନନ୍ଦରେ ଜୀବନ କଟାଇବା । ମୁଁ ତମର ଅତୀତର ସରଳ ପ୍ରକୃତିକୁ କ୍ଷମାକରି ତମକୁ ହୃଦୟରେ ଆସନ ଦେବି । ଜଗନ୍ନାଥ ଅତର ମସି ରୁମାଲରେ କୋକିଳ ଦେଈଙ୍କର ଚକ୍ଷୁ ପୋଛିଲା ।

କୋକିଳ ଟିକିଏ ଘୁଞ୍ଚିଯାଇ ଉଦ୍‌ବେଗ ଭରି ସ୍ୱରରେ କହିଲେ, ଜଗନ୍ନାଥ ବାବୁ, ସତ କହୁଛି, ଏହି ପାପୀୟସୀ ଅଜାଣତରେ ଔଷଧ ବୋଲି ବିଷ ଦେଇ ରସାନନ୍ଦ ବାବୁଙ୍କୁ ମାରିଛି । ସାଧୁ ଔଷଧର ଭାଗ ଯେପରି ବତାଇ ଯାଇଥିଲେ, ମୁଁ ତରତର କରି ବଦଳାଇ ଦେଇଛି । ସାଧୁ ନିର୍ଦ୍ଦୋଷ··· ।

ହୋଇପାରେ, କିନ୍ତୁ, ତମର ଆଚରଣ ସମ୍ବନ୍ଧରେ ଯାହା ସେ ଲେଖିଛନ୍ତି··· ?

ନିପଟ ମିଛ ଜଗନ୍ନାଥ ବାବୁ, ନିପଟ ମିଛ ।

ମିଛ ?

ହଁ, ମିଛ । ମୁଁ ସ୍ୱୀକାର ନ କରନ୍ତି କାହିଁକି ? ଲଜ ସରମ ଛାଡ଼ି ଆପଣଙ୍କ ପରି ଅପରିଚିତ ଲୋକ ନିକଟରେ ମୁଁ ମୋ' ଅନ୍ତରର କଥା ପ୍ରକାଶ କରିଛି ତ ! ସାଧୁ ମୋତେ ମା ପରି ଦେଖନ୍ତି । ମୋ ମନଟା ଅବଶ୍ୟ ନିର୍ମଳ ନ ଥାଏ··· ।

ଛାଡ଼, ସେ ସବୁ ବାଜେ କଥା । ଜଗନ୍ନାଥ କୋକିଳ ଦେଈଙ୍କ ନିକଟରେ ବସିପଡ଼ିଲା । ଦୁଇ ହାତରେ ତାଙ୍କର ଅଙ୍ଗ ବେଷ୍ଟନ କରି କହିଲା, ମୋର ଏ ଜ୍ୱାଳାମୟ ହୃଦୟର ଜଳନ୍ତା ନିଆଁ ଲିଭିବ କେବଳ ଥରେ ମାତ୍ର ତୁମ୍ଭକୁ ଆଲିଙ୍ଗନ କଲେ ।

କୋକିଳ ବିରକ୍ତ ହୋଇ ଉଠି ଆସିଲେ । ନିଜର ନିଃସହାୟ ଅବସ୍ଥା କଥା ଚିନ୍ତାକରି କହିଲେ, ଥରେ କହିଛି ଜଗନ୍ନାଥ ବାବୁ, ମୁଁ ବେଶ୍ୟା ନୁହେ ।

ମୁଁ ତା ବିଶ୍ୱାସ କରୁଛି, କିନ୍ତୁ ଯଦି ଛଳନା କରିବାର ଇଚ୍ଛା ଥିଲା ତ ମୋର ଏ ଦୁର୍ବଳ ହୃଦୟରେ ନିଆଁ ଜାଳିଦେଲ କାହିଁକି ?

ନିଆଁ ଲିଭାଇବାର ଇଚ୍ଛା ଥିଲେ ଶୀଘ୍ର ବିବାହର ଆୟୋଜନ କରନ୍ତୁ । ଆର୍ଯ୍ୟ ସମାଜକୁ ଏ ବିଷୟ ଜଣାନ୍ତୁ ।

ଜଗନ୍ନାଥର ମୁଖରେ ପୈଶାଚିକ ଆଭା । ସେ ଚକ୍ଷୁ ରଙ୍ଗକରି କହିଲା, ମନେରଖ, ତମେ ଏଠି ଏକାକିନୀ··· ।

କୋକିଳ ତ୍ରସ୍ତ ହୋଇ, ପଳାୟନର ଉପାୟ ନ ଦେଖି ଜଗନ୍ନାଥର ପାଦ ଧରି କହିଲେ, କ୍ଷମାକର, ମୁଁ ବିଧବା । ମୋର ବିବାହର ଆବଶ୍ୟକ ନାହିଁ । ମୁଁ ···ମୁଁ ବିବାହିତା । କ୍ଷମାକର, ମୁଁ ମରଣ ଗୁହେଁ, ମୋତେ ମରିବାକୁ ଛାଡ଼ି ଦିଅନ୍ତୁ । ଆପଣ

ଏଠାରୁ ଗ୍ଳଯାନ୍ତୁ । ଗୋଡ଼ଧରି କହୁଛି, ମୋତେ ମରିବାକୁ ଛାଡ଼ି ଦିଅନ୍ତୁ । ମୁଁ ହିନ୍ଦୁ ବିଧବା, ମୁଁ ମରଣ ଗ୍ହେଁ...

ହସି ହସି ଜଗନ୍ନାଥ କହିଲା, ଯୁବତୀ ମରଣ ଗ୍ହେ ନା ସୁନ୍ଦରୀ, ସେ ଗ୍ହେଁ ବରଣ । ଜଗନ୍ନାଥର ହୃଦୟ ଝୋଲ୍ ଆହୁଣ ତଳେ ଲୁଚିବାଟା ସୁନ୍ଦର ଦିଶିବ ନାହିଁ । ଜଗନ୍ନାଥ ନଇଁପଡ଼ି କୋକିଳ ଦେଈଙ୍କର ମସ୍ତକ ଓ ହସ୍ତଧରି ଉଠାଇବାକୁ ଚେଷ୍ଟାକଲା । ତାଙ୍କର କାକୁତି ମିନତି ଓ ଆକୁଳ ପ୍ରାର୍ଥନାରେ କର୍ଣ୍ଣପାତ କଲା ନାହିଁ ।

ଏହି ସମୟରେ ଝରକାର ବହିର୍ଦ୍ଦେଶରୁ ପିସ୍ତଲର ଆବାଜ ହେଲା, ଗୁଡ଼ୁମ୍—

ଚତ୍କାର କରି ଜଗନ୍ନାଥ କଟାଗଛ ପରି ଚଟାଣ ଉପରେ ଟଳି ପଡ଼ିଲା ।

କୋକିଳ ଦେଖିଲେ, ଘରଟା ଧୂଆଁରେ ପୂର୍ଣ୍ଣ ହୋଇଛି । ବାରୁଦିଆ ଗନ୍ଧରେ ନାକ ଫାଟି ପଡ଼ୁଛି ।

ସାଧୁ, ପାପର ପ୍ରାୟଶ୍ଚିତ୍ତ ହୋଇଛି... ।

ସାଧୁଚରଣଙ୍କର ଦୁଇ ଆଖିରୁ ଝର୍ ଝର୍ ହୋଇ ଲୁହ ଝରିଲା । ସେ ଆକୁଳ ପ୍ରାଣରେ ଜଗନ୍ନାଥର ମୁଣ୍ଡ ଦୁଇ ହାତରେ ଟେକିଧରି ବୁକୁ ଫଟା ଆର୍ତ୍ତସ୍ୱରରେ କହିଲେ, କ୍ଷମାକର ଭାଇ, ତତେ ଡରାଇଦେବ ବୋଲି ଫାଙ୍କା ଆବାଜ କରିବା ମୋର ଉଦ୍ଦେଶ୍ୟ ଥିଲା ।

ବେଦନା ବିକୃତ ମୁଖରେ ଜଗନ୍ନାଥ କହିଲା, ଫାଙ୍କା ଆବାଜ ନ ହୋଇଥିଲେ କି,...ଓ..

କ୍ଷମା କର ଭାଇ ।

ଓଃ, କ୍ଷମା ? ହଁ କ୍ଷମା କରୁଛି । ଅପେକ୍ଷା କର ।

ନା ମୋ ହାତରେ ପିସ୍ତଲଟା ଥାଉଣୁ ମୁଁ କ୍ଷମା ଗ୍ହିଁବ କାହିଁକି ? ଗ୍ଲ୍ ସାଙ୍ଗ ହୋଇ ଯିବା...ସାଧୁଚରଣ ପିସ୍ତଲ ସଜାଡ଼ିଲେ । କୋକିଳ ଦେଈ ଦୂରରେ ପଥର ଖୁଣ୍ଟ ପରି ଠିଆହୋଇ ସବୁ ଦେଖୁଥାନ୍ତି ।

ସାଧୁଚରଣଙ୍କର ଉଦ୍ଦେଶ୍ୟ ବୁଝିପାରି ଜଗନ୍ନାଥ ଧୀରେ ଧୀରେ କହିଲା, ହ୍ୟାପ, ଭୂତ ଏ, ପଳା ବେ, ପୋଲିସ ପଡ଼ି ପାଇଲେ ତ ! ଜଗନ୍ନାଥର ମୁଣ୍ଡର କ୍ଷତରୁ ରକ୍ତ ଝରୁଥାଏ । ସେ ବିକଳରେ ଏପାଖ ସେପାଖ ହୋଇ ଜ୍ଞାନଶୂନ୍ୟ ହୋଇ ପଡ଼ିରହିଲା । ସାଧୁଚରଣ ଦୃଢ଼ପଣ କରିଛନ୍ତି ଆତ୍ମହତ୍ୟା କରିବେ । ସେ ପିସ୍ତଲ ପ୍ରସ୍ତୁତ କରି କୋକିଳ ଦେଈଙ୍କୁ କହିଲେ, ମାଉସି ! ଡେରିକରି ଲାଭ କଅଣ ? ତମେ ତମର ସ୍ୱାମୀକୁ ବିଷଦେଇ ମାରିଛ ପରା ?

କୋକିଳ ଦେଈଙ୍କର ଭୟ ହେଲା । ଉତ୍ତେଜନାର ଦାଉରେ ଯଦି ସାଧୁଚରଣ ତାଙ୍କୁ ଗୁଳି କରନ୍ତି ! ସେ ଭୀତଜଡ଼ିତ କଣ୍ଠରେ କହିଲେ, ତମର ବିଶ୍ୱାସ ହେଉଛି ସାଧୁ ?

ବିଶ୍ୱାସ ତ ନ ହେବାର କଥା ! ସେ ଯେତେବେଳେ ନିଜେ ଲେଖି ଯାଇଛନ୍ତି··· ।

ଯଦି ବିଶ୍ୱାସ ହେଉଛି, ମୋର ଆଉ ବାଧା ଦେଇ କହିବାର କିଛି ନାହିଁ । ମୁଁ ବିଷ ଦେଇ ତାଙ୍କୁ ମାରି ନାହିଁ । ତମେ ଯେଉଁ ଔଷଧ ଦେବାକୁ କହି ଯାଇଥିଲ, ମୁଁ ତାଙ୍କୁ ତାହାହିଁ ଖାଇବାକୁ ଦେଇଛି ।

ଦୋଷଟା ମୋ ମୁଣ୍ଡରେ ଅଜାଡ଼ିଦେଇ ପୋଲିସ୍ ହାତରୁ ଉଦ୍ଧାର ପାଇବ ଭାବିଛ, ମାଉସି ? କିନ୍ତୁ, ଏତେଦୂର ଯିବାକୁ ପଡ଼ିବ ନାହିଁ । ପୋଲିସ ଜାଣିବା ପୂର୍ବରୁ ଏହି ପିସ୍ତଲ ଗୁଳିରେ ମୁଁ ସହଜରେ ଆତ୍ମହତ୍ୟା କରିପାରିବି । ତମେ ଏଥର ନିଶ୍ଚିନ୍ତ ରହି ମାଉସୀ··· ।

କୋକିଳ ସାଧୁଚରଣଙ୍କ ନିକଟକୁ ଘୁଞ୍ଚି ଆସି ଭୀତକମ୍ପିତ ଚକ୍ଷୁରେ କହିଲେ, ସତେ ତମେ ଆତ୍ମହତ୍ୟା କରିବ ସାଧୁ ?

ପିସ୍ତଲ ମୂହିଁକୁ କପାଳରେ ଲଗାଇ ସାଧୁଚରଣ କହିଲେ, ଏହା ବ୍ୟତୀତ ଅନ୍ୟ ଉପାୟ ଆଉ ନାହିଁ । ଯେତେବେଳେ ପୋଲିସ ଜାଣି ପାରିବ ଯେ ମୁଁ ଖୁଣୀ, ପ୍ରମାଣ ଖୋଜିବାକୁ ତାକୁ ସମୟ ଲାଗିବ ନାହିଁ । ଏତେ ଝଣା ଓଟରାରେ ପଡ଼ି କଷ୍ଟ ସହି ଅପମାନ ପାଇ ମରିବା ଅପେକ୍ଷା, ମରିବାକୁ ଯେତେବେଳେ ହେବ, ଆଗରୁ ମରିବାହିଁ ଭଲ । ପିସ୍ତଲଟି କପାଳରୁ କାଢ଼ି କହିଲେ, ଜଗନ୍ନାଥର ଗୁଣ ଅବଗୁଣ ସତ୍ତ୍ୱେ ମୁଁ ତାକୁ ଭଲ ପାଏ । ସେ ମୋର ବନ୍ଧୁ । ଅଜାଣତରେ ମୁଁ ତାର ଜୀବନ ନେଇଛି । ମୋର ହୃଦୟର ଜ୍ୱାଳା ଲିଭାଇବାକୁ ମୁଁ ଆତ୍ମହତ୍ୟା କରିବି ।

କୋକିଳ ଦେଈ କହିଲେ, ତେବେ ଦୋଷଯାକ ମୋ ମୁଣ୍ଡରେ ନିଦି ତମେ ଉଦ୍ଧାର ପାଇ ଗୁଳିଯିବ ପରା ? ସେ କଥାଟି ଘଟିବ ନାହିଁ । ସାଧୁଚରଣ, ଆତ୍ମହତ୍ୟା କରିବା ପୂର୍ବରୁ ମୋର ଏହି ଜଞ୍ଜାଳମୟ ଜୀବନଟା ଶେଷକରି ଯାଅ··· ।

କ୍ଷମାକର, ମୁଁ ଏତେ ବଡ଼ ପାପର ବୋଝ ମୁଣ୍ଡରେ ବୋହି ପାରିବି ନାହିଁ । ଯଦି ତମର ସାହସ ଅଛି ଏହି ନିଅ, ପିସ୍ତଲଟି ଟିପି··· । କହି ସାଧୁଚରଣ ପିସ୍ତଲଟି କୋକିଳ ଦେଈଙ୍କ ହାତକୁ ବଢ଼ାଇ ଦେଲେ । କୋକିଳ କମ୍ପିତ ହସ୍ତରେ ପିସ୍ତଲ ଗ୍ରହଣ କରି ଚିନ୍ତାମଗ୍ନ ହେଲେ ।

ସାଧୁ କହିଲେ, ଦ୍ୱିଧା କାହିଁକି କରୁଛ ? ଭାବିଛ କି ମଣିଷର ପାପ କେବେ ଲୁଚି ରହିବ ? ତାହା ନୁହେଁ । ଯେବେ ହେଲେ ଧରା ପଡ଼ିବ । ଏପରି ପାପ କରି ଉଧୁରି ଯିବା ସହଜ କଥା ନୁହେଁ । ଧରା ପଡ଼ିଲେ ମୃତ୍ୟୁ ସୁନିଶ୍ଚିତ । ଅପମାନ ଓ ଲାଞ୍ଛନା ସହିବାକୁ ଅପେକ୍ଷା କରିବାଠାରୁ··· ।

ସାଧୁ··· !

ଡେରି ହେଉଛି ଯେ, ଗାଡ଼ି ପାହିଗଲେ··· ।

ସାଧୁ, ଜୀବନର ମୂଲ୍ୟ କଅଣ ଏତେ ଅଳ୍ପ ! କେବଳ ଜୀବନ ଉପଭୋଗ କରିବାକୁ ଏତେ କଷ୍ଟ ଏତେ ଅପମାନ ସହି ଆସିଛୁ..., ନା, ନା...ମୁଁ ମରି ପାରିବି ନାହିଁ । ମୋର ସେ ସାହସ ନାହିଁ ।

ସାଧୁ ବିସ୍ମିତ ହୋଇ ଜଗନ୍ନାଥର ରକ୍ତଲିପ୍ତ ପିଣ୍ଡକୁ କ୍ଷଣକାଳ ଚାହିଁ ରହିଲେ । ତାଙ୍କର ମୁଣ୍ଡ ବୁଲିଗଲା । ସେ ହତାହତ ଜ୍ଞାନ ଶୂନ୍ୟ ହେଲେ । ବିରକ୍ତ ହୋଇ କହିଲେ, ଦିଅ ମୋ ଆଡ଼କୁ କପରି ସାହସ କରିବାକୁ ହୁଏ ଦେଖାଇ ଦେବି... ।

କୋକିଳ ପିସ୍ତଲଟି ପଦାକୁ ପକାଇ ବିନୀତ ହୋଇ କହିଲେ, ଶୁଣ, ମୋର ଗୋଟିଏ ଅନୁରୋଧ ଅଛି । ମୃତ୍ୟୁ ଯଦି ସୁନିଶ୍ଚିତ, ତେବେ ଜାଣି ଜାଣି ଆଗରୁ ମରିବା କାହିଁକି ? ଯେତେବେଳେ ମରିବାକୁ ବାଧ ହେବା, ଉଦ୍ଧାର କେହି କରି ପାରିବେ ନାହିଁ ! ମୁଁ ଖୁଣୀ, ତେମେ ମଧ ଖୁଣୀ ! ଯେତେଦିନ ବଞ୍ଚିଥାଉଁ, ସେତେଦିନ ସୁଖରେ ନ କଟାଇବା କାହିଁକି ? ଜୀବନ ଅମୂଲ୍ୟ, ଥରେ ହଜିଲେ ଆଉ ତ ମିଳିବ ନାହିଁ । ଅଧଘଣ୍ଟାଏ ପୂର୍ବେ ବିଷଖାଇ ମୁଁ ଆତ୍ମହତ୍ୟା କରିବାକୁ ବସିଥିଲି । ତମର ଏହି ବନ୍ଧୁଟି ଉଦ୍ଧାରରେ ବାଧା ଦେଲେ । ମୋତେ ଏହି ଅମୂଲ୍ୟ କଥା ଶିଖାଇ ଯାଇଛନ୍ତି । କୋକିଳ ସାଧୁଙ୍କର ହାତ ଧରି କହିଲେ, ଉଠ, ବର୍ତ୍ତମାନ ସୁଦ୍ଧା ସମସ୍ତ ଅଛି । ମନରେ ଦମ୍ଭ ଆଣ ।

ସାଧୁ ଚନ୍ଦ୍ରାକର ପଚାରିଲେ, ଉପାୟ ?

ଏତେବଡ଼ ସଂସାରରେ ଦୁଇଟି ପ୍ରାଣୀଙ୍କର ମୁଣ୍ଡ ଗୁଞ୍ଜିବାକୁ ସ୍ଥାନର ଅଭାବ ରହିବ ନାହିଁ । ଉପାୟ ନିଜେ ନିଜେ ଆସି ଯୁଟିଯିବ ।

## ୧୭

କଟି କଟି ଅନ୍ଧାର । ବର୍ଷା ଛାଡ଼ି ଯାଇଛି । ପବନର ବେଗରେ ବୃକ୍ଷଲତାର ପଲ୍ଲବ ଦୋହଲି ଉଠୁଛନ୍ତି । ବିନ୍ଦୁ ବିନ୍ଦୁ ଜଳକଣା ଝରି ପଡ଼ୁଛି । ଆକାଶରେ ତାରା ନାହିଁ । ଲଜ୍ଜାରେ ଅବା ଭୟରେ ବଉଦର ପଛଆଡ଼େ ମୁହଁ ଲୁଚାଇ ରହିଛନ୍ତି । ଝିଙ୍କାରିର ଝିଂ ଝିଂରେ କାନ ଅତରା ପଡ଼ୁଛି । ସେହି ଭୟଙ୍କର ରଜନୀରେ ନୀରବରେ ଦୁଇଟି ପ୍ରାଣୀ ଦ୍ରୁତ ବେଗରେ ଷ୍ଟେସନମୁହାଁ ଛୁଟିଛନ୍ତି । ଆଗରେ ସାଧୁଚରଣ । ଡାହାଣ ହାତରେ ସୁଟକେଶ ଓ ବାଁ ହାତରେ ଗ୍ଲେଟ ବ୍ୟାଗ୍ । ତାଙ୍କ ପଛରେ କୋକିଳ । ସେ ମଧ୍ୟ ଖଣ୍ଡେ ଗ୍ଲେଟ ସୁଟ୍‌କେଶ ଧରିଛନ୍ତି ।

କିଛିଦୂର ଯାଇ 'ସାଧୁ ଉଦ୍‌ବିଗ୍ନତାର ସହିତ କହିଲେ, ମାଉସୀ... !

ଗ୍ରେପ୍, କହି କୋକିଲ ଆକଟ କରି କହିଲେ, ଏଣିକି ଆଉ ମାଉସୀ ଡାକିବାକୁ ହେବ ନାହିଁ । ଲୋକେ ସନ୍ଦେହ କରିବେ । ଅନ୍ୟ କେଉଁ ନାମରେ ଡାକିଲେ ଭଲ ହେବ ।

କଅଣ ତେବେ ଡାକିବି ?

ନାମ ଧରି ଡାକିପାର । ମୁଁ ତ ତମ ଉକ୍ତର ମାଉସୀ ନୁହେଁ । ତମେ ବି ବୟସରେ ବଡ଼ । ରହ ରହ, ପଛରେ କିଏ ଆସୁଛି ପରି ·· । କୋକିଲ ପଛକୁ ଚାହିଁଲେ । ଅନ୍ଧାରରେ କିଛି ଜଣା ପଡ଼ିଲା ନାହିଁ । ମନରେ ଦମ୍ଭ ଆଣି କହିଲେ, ନା କେହି ନାହିଁ ।

କୁଆଡ଼େ ଯିବାକୁ ପ୍ରସ୍ତାବ କରୁଛ ? ମୋ ଗୋଡ଼ ଆଗକୁ ଚଳୁ ନାହିଁ । ମୁଁ ଫେରି ଯାଉଛି । ତୁମେ ଏକା ଯାଅ ?

ପୁଣି ସେହି ପାଗଳାମୀ, ଫେରିଯିବ କୁଆଡ଼େ ?

ଥାନାକୁ ।

ଥାନାକୁ କାହିଁକି ?

ମୋର ଏ ପାପର ବୋଝ ବୋହି ମୁଁ ଆଉ ବେଶିଦୂର ଯାଇ ପାରିବି ନାହିଁ ।

କୋକିଲ ଦୁଇପାଦ ଆଗକୁ ଖେପିଯାଇ ସାଧୁଙ୍କର ହାତ ଧରିଲେ । ଅନୁନୟ ହୋଇ କହିଲେ, ନା ସାଧୁ, ରକ୍ଷାକର, ଜୀବନ ଉପରେ ମୋର ମମତା ଅଛି । ମୁଁ ତମର ଶରଣ ପଶୁଛି । ଅନ୍ତତଃ ମୋ'ଓର ସକାଶେ ହେଲେ··· ।

ତମର କ୍ଷତି ହେବ ନାହିଁ । ସବୁ ଦୋଷ ମୁଁ ମୋ ଉପରକୁ ନେଇଯିବି । ଫାଶୀ ଖୁଣ୍ଟରେ ମୁଁ ଝୁଲିବି । କହିବି—

ସେ କଥା ମନରେ ଆଣ ନା । ଗତ କଥା ଭୁଲିଯାଅ । ତମକୁ ଛାଡ଼ି ମୁଁ ଏକୁଟିଆ ଯିବି କୁଆଡ଼େ, କାହିଁକି ବା ଯିବି ? ମୋ ଜୀବନ ତମ ଜୀବନଠୁଁ ବେଶି ମୂଲ୍ୟବାନ୍ ନୁହେଁ । ସାଧୁ, ତମେ ଫାଶୀ ପାଇଲେ ମୁଁ ବଞ୍ଚି ପାରିବି ନାହିଁ··· । ତମ ବିନା ମୋ ଜୀବନର ମୂଲ୍ୟ ନାହିଁ ·· ।

କାହିଁକି ?

ବୁଝି ପାରୁ ନାହିଁ ନିର୍ବୋଧ ! କାରଣ, ମୁଁ ତୁମକୁ ଭଲପାଏ, ମୁଁ ତମକୁ ଛାଡ଼ି ବଞ୍ଚି ପାରିବି ନାହିଁ । ଏତେ ଅଳ୍ପ ବୟସରେ ଯୌବନର ସବୁ ଶୋଭା ଅଙ୍ଗରେ ଧରି, ସୁନେଲି ସ୍ୱପ୍ନରେ ବିଭୋର ହୋଇ, ଆଶା ଦୁରାଶା, ଉତ୍ତେଜନା ଓ ବିକାର ମନରେ ଭରି ମୁଁ ମରିପାରିବି ନାହିଁ ସାଧୁ, ଚାଲ···

ସାଧୁ ମନ୍ତ୍ରମୁଗ୍ଧପରି ଆଗକୁ ଚାଲିଲେ ।

ପୁରୀ ହାବଡ଼ା ଏକ୍‌ସ୍‌ପ୍ରେସ ଷ୍ଟେସନ୍ ପରେ ଷ୍ଟେସନ ଅତିକ୍ରମ କରି ଚାଲିଛି । ବର୍ଷା ଅନ୍ଧାରକୁ ତାର ଖାତିର୍ ନାହିଁ । ରଥ ହେତୁ ଗାଡ଼ିରେ ସ୍ଥାନ ନାହିଁ । ଲୋକ-ଭିଡ଼ ଏତେ ଅଧିକ ଯେ ବସିବା କଥା ଦୂରେ ଥାଉ ଲୋକେ ଠିଆହେବାକୁ ମଧ୍ୟ ସୁବିଧା ପାଉ ନାହାନ୍ତି ।

ଟ୍ରେନ୍‌ର ଗୋଟିଏ ଇଣ୍ଟରକ୍ଲାସ ପ୍ରକୋଷ୍ଠରେ ଉପବିଷ୍ଟ ସାଧୁଚରଣ ଓ କୋକିଳ ଦେଈ । ସେଇ ଡବାଟିରେ ବେଶୀ ଭିଡ଼ ନାହିଁ । କେତେଜଣ ଭଦ୍ରମହିଳା ଦୁଇଖଣ୍ଡ ବେଞ୍ଚ ଅଧିକାର କରି ବସିଛନ୍ତି । ସେମାନଙ୍କ ମଧ୍ୟରୁ ଅଧିକାଂଶ କଲିକତା ନିବାସୀ ।

କୋକିଳ ଗଳ୍ପପ୍ରିୟ ମହିଳାମାନଙ୍କ ମଝିରେ ବସିଛନ୍ତି । ତାଙ୍କର ବାମ ଓ ଦକ୍ଷିଣ ପାର୍ଶ୍ୱରେ ଦୁଇଜଣ ଷୋଡ଼ଶୀ ଓ ସମ୍ମୁଖରେ ଜଣେ ପ୍ରୌଢ଼ା । ସମସ୍ତେ କଲିକତା ଫେସନରେ ଲୁଗା ପିନ୍ଧିଛନ୍ତି । ସାମାନ୍ୟ ସ୍ୱର୍ଣ୍ଣାଳଙ୍କାର ନାଇଛନ୍ତି । କୋକିଳ ଏକା ନୀରବରେ ବସି ସେମାନଙ୍କର କଥୋପକଥନ ଶୁଣୁଛନ୍ତି ।

କୋକିଳ ଦେଈଙ୍କ ବିପରୀତ ଦିଗରେ ତାଙ୍କର ଆଡ଼କୁ ମୁହଁକରି ବସିଛନ୍ତି ସାଧୁଚରଣ । ପାଖରେ ଆଉରି କେତେଜଣ ବଙ୍ଗୀୟ ନିଜ ନିଜ ମଧ୍ୟରେ ଗଳ୍ପ କରୁଛନ୍ତି । ସାଧୁଙ୍କର ମନ ସେଥିରେ ନାହିଁ । ସେ ନୀରବରେ ବସି ଚିନ୍ତା କରୁଛନ୍ତି, କରିବେ କଅଣ ? ଜଣେ ଷୋଡ଼ଶୀ ରମଣୀକୁ ସଙ୍ଗରେ ଘେନି ସେ କଲିକତା ସହରରେ ରହିବେ କେଉଁଠି ? ଲୋକଙ୍କୁ କଅଣ କହି ପରିଚୟ ଦେବେ ? ଇଚ୍ଛା ହେଉଛି ଫେରି ଯାଇ ଧରାଦେବେ । ପଲାତକ ହୋଇ ଆତ୍ମଗୋପନ କରି କେତେଦିନ ସେ ରହି ପାରିବେ ? ଯେତେଦିନ ବଞ୍ଚି ରହିଥିବେ ଅତୀତ ପାପର ଭୟ ଓ ଅନୁଶୋଚନା ତାଙ୍କ ମନପ୍ରାଣକୁ ଟିକି ଟିକି କରି ଜାଳୁଥିବ । ଏହାଠାରୁ ବରଂ ମୃତ୍ୟୁ ଭଲ । ପିତାମାତା ଓ ସ୍ନେହର ସରି ମନେ ପଡ଼ୁଛନ୍ତି । ଏମାନଙ୍କୁ ଛାଡ଼ି ଚିରଦିନ ନିର୍ବାସିତ ହୋଇ ରହିବେ କିପରି ? ସେ ଯାହା କରନ୍ତୁ, ସଂସାରର ଲୋକେ ପିତାମାତାଙ୍କୁ ତାଚ୍ଛଲ୍ୟ କରି କଥା କହିବେ । କାନ୍ଦି କାନ୍ଦି ସେମାନଙ୍କର ଦିନ ସରିବ ନାହିଁ ! ଆହା, କୁଳାଙ୍ଗାର ପୁଅ ଜନ୍ମକରି ଏତେ ସ୍ନେହ ମମତା ଦେଖାଇ, ଦହଗଞ୍ଜ ହୋଇ ଅପମାନ ସହି ମରିବାକୁ ହେବ !

ସାଧୁଙ୍କର ମନ ଦୁର୍ବଳ ହୋଇ ଆସିଲା । ସେ କୋକିଳଙ୍କୁ ଚାହିଁଲେ । କୋକିଳ ମନ ସ୍ଫୂର୍ତ୍ତିରେ ସମ୍ମୁଖସ୍ଥ ପ୍ରୌଢା ରମଣୀଙ୍କ ସଙ୍ଗେ ଗଳ୍ପ କରୁଛନ୍ତି । ସେ ବେଦନାଭରା ହୃଦୟ ଓ ଅଶ୍ରୁଭରା ଚକ୍ଷୁରେ ସେମାନଙ୍କ କଥା ଶୁଣିଲେ ।

ପ୍ରୌଢ଼ା ଅତି କୋମଳ ସ୍ୱରରେ ପଚାରିଲେ, ତୁମେ ଯିବ କୁଆଡ଼େ ?

କୋକିଳ ମିଷ୍ଟ-ହସି କହିଲେ, କଲିକତା ଯିବ ।

ସଙ୍ଗରେ କିଏ ଅଛି ?

କୋକିଳ ଲଜ୍ଜିତ ହେଲା ପରି ନୀରବ ରହିଲେ ।

ଲଜ୍ଜା କାହିଁକି ମା, କିଏ ଅଛି, ସ୍ୱାମୀ ?

କୋକିଳ ସାଧୁଙ୍କ ଆଡ଼କୁ ଗ୍ୱହିଁଲେ ।

ସାଧୁଚରଣ କପାଳରେ ହସ୍ତ ରଖି ନିମ୍ନକୁ ଗ୍ୱହିଁଛନ୍ତି । କୋକିଳ ମୁଣ୍ଡ ହଲାଇ ସମ୍ମତି ଜଣାଇ କହିଲେ, ହଁ... ।

ପ୍ରୌଢ଼ା ସାଧୁଚରଣ ଆଡ଼କୁ ଆଙ୍ଗୁଳି ଦେଖାଇ ପଗ୍ୱରିଲେ, ଏହି ତମର ସ୍ୱାମୀ ?

କୋକିଳ ମୁଣ୍ଡ ଟୁଙ୍ଗାରି କହିଲେ, ହଁ ...।

ସେମାନଙ୍କ ମଧ୍ୟରେ ଅର୍ଦ୍ଧଘଣ୍ଟା କାଳ କଥୋପକଥନ ଗ୍ୱଲିଲା । ସାଧୁଙ୍କର ଆଉ ଶୁଣିବାକୁ ଇଚ୍ଛା ହେଲା ନାହିଁ । କ୍ରୋଧରେ ଅନ୍ତରାତ୍ମା ଜଳି ଉଠିଲା । ଘୃଣା ଓ କ୍ଷୋଭରେ ସେ ଚୁପହୋଇ ଚିନ୍ତାକଲେ । ନିଜର ନିର୍ବୋଧତା ପାଇଁ ସେ ନିଜକୁ ବାରମ୍ବାର ଧିକକାର କଲେ । ଛିଃ, ଛିଃ, ଯାହାକୁ ମାତୃତୁଲ୍ୟ ମନେକରି ଭକ୍ତିକରି ଆସୁଥିଲି, ସେହି ପାପିୟସୀ ମାତୃଜାତିର ଏତେ ତଳେ ! ଯାହାର ମଧୁର କଥା, ସୁନ୍ଦର ମୁଖ ଓ ପ୍ରୀତି-ପୂର୍ଣ୍ଣ ବ୍ୟବହାରରେ ପାଗଳ ହୋଇଥିଲି, ସେହି ନାରୀ, କୁଳକଳଙ୍କିନୀର ହୃଦୟରେ ବିଷ ପରିପୂର୍ଣ୍ଣ ! ଏହା କଅଣ ସାଧୁ ଆଗରୁ ଜାଣି ନ ଥିଲେ ! ଜାଣିକରି ମଧ୍ୟ ଜାଣି ନ ଥିଲେ । ତାଙ୍କର ସରଳ ମନରେ ଯଦି କେବେ କୌଣସି ସନ୍ଦେହର ଉଦ୍ରେକ ହୋଇଥାନ୍ତା, ସେ କୋକିଳଙ୍କର ଭାବଭଙ୍ଗୀ ଓ ଆଚାର ବ୍ୟବହାରର ଭିନ୍ନ ଅର୍ଥ ଗ୍ରହଣକରି ଆଗରୁ ସାବଧାନ ହୋଇଥାନ୍ତେ । ମାତ୍ର, ସେ ତାଙ୍କର ଗତିମତିର ଅର୍ଥ ବୁଝିଥିଲେ ଭିନ୍ନ ପ୍ରକାରରେ । ପ୍ରତ୍ୟେକରୁ ମାତୃତ୍ୱର ଭାବ ଗ୍ରହଣ କରୁଥିଲେ । ବୟୋଧିକ ହୋଇ ମଧ୍ୟ ନିଜକୁ ଶିଶୁସ୍ଥାନରେ ବସାଇ ସେ କୋକିଳ ଦେଈଙ୍କୁ ମା ପରି ଭାବିଥିଲେ ।

ସାଧୁ ଦୀର୍ଘଶ୍ୱାସ ଛାଡ଼ିଲେ । ପୁନର୍ବାର କୋକିଳଙ୍କୁ ଗ୍ୱହିଁ ଥରେ ନୂଆ କରି ତାଙ୍କର ମୁହଁକୁ ଦେଖି ନେଲେ । ତାଙ୍କୁ ଜଣାପଡ଼ିଲା, ସବୁ ଜାଲ । ନାରୀରୂପର ଆବରଣ ତଳେ ନରକର କୀଟ ଆସି ପ୍ରବେଶ କରିଛି । ଏହି ରାକ୍ଷସୀ ପାଇଁ ଆଜି ସେ ଏତେବଡ଼ ଜଘନ୍ୟ କାର୍ଯ୍ୟ କରିଛନ୍ତି ! ଅଜାଣତରେ ହେଉ ପଛେ, ଜଗନ୍ନାଥ ପରି ବନ୍ଧୁର ଜୀବନ ନେଇଛନ୍ତି, ଜଣେ କୁଳଟାର ମାନରକ୍ଷା କରିବାକୁ ? ସାଧୁଙ୍କର ସନ୍ଦେହ ହେଲା, କେବଳ ମୋଓର ଦ୍ୱାରା ଯୌବନର ପାଶବିକ ଲାଲସା ଚରିତାର୍ଥ କରିବାକୁ ସେ ଜାଣି ଜାଣି ବିଷ ପ୍ରୟୋଗ କରି ରସାନନ୍ଦଙ୍କର ଜୀବନ ନେଇଛନ୍ତି । ମୁଁ କଅଣ ଏଡ଼େ ହୀନ; ମୁଁ କଅଣ ଏତେ ନୀଚ ? ଜୀବନ୍ତ ଭସ୍ମରେ ସୌନ୍ଦର୍ଯ୍ୟର

ଜୀତଦାସ ହୋଇ ମାୟାବିନୀ କୁଳଟାର ନୀଚ ଘୃଣିତ ପ୍ରବୃତ୍ତି ଚରିତାର୍ଥକରିବାରେ ସହାୟକ ହେବ ? ଅସମ୍ଭବ ! ଯାଉ ଯାଉ ସେ, ନିଜର ଭାଗ୍ୟ ଅନୁସରଣ କରି ଚାଲିଯାଉ । ପାପ ପିପାସା ମେଣ୍ଟାଇବାକୁ ସବୁତ୍ର ଜଳ ପାଇବ । ମାତ୍ର ସେ ଜଳ ନିର୍ମଳ, ସୁଶୀତଳ ନୁହେଁ, ପଙ୍କିଳ, ଉଷ୍ଣ । ଆଜିଯାଏ ତାଙ୍କୁ ମା ପରି ଦେଖି ଆସିଥିଲି । ଆଜି ସେହି ମାତୃଜ୍ଞାନରେ ମନେ ମନେ ବିଦାୟକାଳୀନ ପ୍ରଣାମ ଜଣାଉଛୁ । ସାଧୁ ଆଜି ପଳାତକ ହୋଇ ପାପର ପ୍ରାୟଶ୍ଚିତ୍ତ କରିବାକୁ ଯିବ !

କୋକିଳ ମଧୁରାଳାପରେ ନିଯୁକ୍ତ । ଏକ୍ସପ୍ରେସ ଆସି ଗୋଟିଏ ଷ୍ଟେଟ ଷ୍ଟେସନରେ ଛିଡ଼ା ହେଲା । ସାଧୁ ଧୀରେ ଧୀରେ ଦ୍ୱାର ଖୋଲି ପଦାକୁ ଆସିଲେ । କୋକିଳ ଦେଖିଲେ, ସାଧୁ ପଦାକୁ ଯାଉଛନ୍ତି । ମନେ କରିଥିଲେ, ଶୀଘ୍ର ଫେରି ଆସିବେ ।

ଏକ୍ସପ୍ରେସ ଦୁଇମିନିଟି ଅପେକ୍ଷା କରି ପୁଣି ସଜୋରେ ଚାଲିଲା । ସାଧୁ ଆଉ ଫେରିଲେ ନାହିଁ । ବଙ୍ଗାଳୀ ଭଦ୍ରଲୋକମାନେ ସେତେବେଳେ ଘୁମାଉ ଥିବାରୁ କେହି ଏ ଘଟଣା ଜାଣି ପାରିଲେ ନାହିଁ । ବାହାରେ ଘୋର ଅନ୍ଧାର । କୋକିଳଙ୍କର ହୃଦୟ ଶୁଖିଗଲା । ସେ କମ୍ପିତ ପଦରେ ଠିଆହୋଇ, ଉଚ୍ଚସ୍ୱରରେ ଅବୋଧ୍ୟଚିତ୍କାର କରି ସମ୍ମୁଖସ୍ଥ ବଙ୍ଗୀୟ ପ୍ରୌଢ଼ାଙ୍କ କୋଳରେ ଢଳିପଡ଼ିଲେ । ଘଟଣା କଅଣ ଜାଣିବାକୁ ଲୋକେ ହାଉ ହାଉ ହୋଇ ଉଠିଲେ । ଦେଖିଲେ, କୋକିଳ ଦେହି ମୂର୍ଚ୍ଛିତା ।

## ୧୩

କଲିକତା ସହରର କୌଣସି ଗୋଟାଏ ଗଳିର ଦକ୍ଷିଣ ପାର୍ଶ୍ୱରେ କ୍ଷୁଦ୍ର ଦ୍ୱିତଳ ପ୍ରାସାଦ । ପ୍ରସାଦର ମସ୍ତକୋପରି ବଡ଼ ବଡ଼ ଅକ୍ଷରରେ ଲେଖା, ମିତ୍ର ଭବନ । ଏହି ଅଟ୍ଟାଳିକାର ନାମ ନେଇ ଗଳିର ନାମ ହୋଇଛି ମିତ୍ର ଲେନ୍ । ଯେତେବେଳେ କୁଶିଦାର ବିଖ୍ୟାତ ଜମିଦାର ଶ୍ରୀଯୁକ୍ତ ଯୋଗୀନ୍ଦ୍ର ମିତ୍ର ଜୀବିତ ଥିଲେ, ସେ ଏହି ଭବନଟି ନିର୍ମାଣ କରାଇଥିଲେ । ମିତ୍ର ଭବନ ନିର୍ମାଣ ହେଲାପରେ ଯୋଗୀନ୍ଦ୍ର ବାବୁ କୁଶିଦା ଗ୍ରାମ ଛାଡ଼ି ସକୁଟୁମ୍ବ କଲିକତାରେ ବାସ କଲେ । ଜମିଦାରୀ ଭାର ଜଣେ ସୁଦକ୍ଷ ବୃଦ୍ଧ ଗୁମାସ୍ତାଙ୍କ ଉପରେ ନ୍ୟସ୍ତ ଥିଲା । ପ୍ରଜାଙ୍କର ଦୁଃଖ ସୁଖ ଦେଖିବାକୁ ଓ ଗୁହାରି ଶୁଣିବାକୁ ଦେବେନ୍ଦ୍ର ବାବୁ ବେଳେ ବେଳେ କୁଶିଦା ଯାଉଥିଲେ ।

ତାଙ୍କର ମୃତ୍ୟୁପରେ ଜମିଦାରୀ ଭାର ପୁତ୍ର ଦେବେନ୍ଦ୍ରଙ୍କ ଉପରେ ପଡ଼ିଲା । ଜମିଦାରୀ ହାଲ ବୁଝିବେ ବୋଲି ସେ ପ୍ରେସିଡେନ୍ସି କଲେଜର ତୃତୀୟ ବର୍ଷରୁ ବିଦାୟ ଗ୍ରହଣ କରି ଘରକୁ ଆସିଲେ ସତ, କିନ୍ତୁ ଜମିଦାରୀ ସିରସ୍ତାରେ ତାଙ୍କର ମୁଣ୍ଡ ଗଳିଲା ନାହିଁ । ସେ ମଧ୍ୟ ବୁଝିବାକୁ ବିଶେଷ ଚେଷ୍ଟା କଲେ ନାହିଁ । କଲିକତା ପରି ସହରରେ ଗୋଡ଼ ଖସାଇଲେ ଦେବେନ୍ଦ୍ର ବାବୁଙ୍କ ପରି ତରଳମତି ଯୁବକ ରସାତଳଗାମୀ ହେବାର କଥା । ତାହାହିଁ ଘଟିଲା । କେତେଜଣ ବନ୍ଧୁଙ୍କର ପ୍ରରୋଚନାରେ ସେ

ଏକାଥରେ ବିଗିଡ଼ିଗଲେ । ତାଙ୍କର ଅଧୋଗତି ଆରମ୍ଭ ହେଲ; ପ୍ରଥମେ ଥିଏଟର ସିନେମା ଦେଖାରୁ । ଷ୍ଟାର ମିନର୍ଭ ପ୍ରଭୃତି ନାଟ୍ୟମନ୍ଦିରମାନଙ୍କରେ ଦେବେନ୍ଦ୍ର ବାବୁ ତାଙ୍କ ସଙ୍ଗୀମାନଙ୍କ ସହ ପ୍ରାୟ ପ୍ରତ୍ୟହ ଅଭ୍ୟାଗତ । ବ୍ୟସ୍ତଭରଟା ନିଜେ ସେ ନିଜ ମୁଣ୍ଡକୁ ଟାଣି ନଥନ୍ତି ।

ବିଧବା ମାତାଙ୍କ ସଙ୍ଗେ କଳହ କରି ପିତାଙ୍କ ଗଚ୍ଛିତ ଧନରୁ ଯାହା ଇଚ୍ଛା ନେଇ ବ୍ୟୟ କରିବାରେ ଟିକିଏ ହେଲେ କୁଣ୍ଠା ନ ଥାଏ । ଏକମାତ୍ର ସନ୍ତାନର ଏପରି ନୈତିକ ଅଧୋଗତି ଦେଖି ସେ ନୀରବରେ ଅଶ୍ରୁ ମୋଚନ କରନ୍ତି । ଯେତେ ଉପଦେଶ ଦେଇ ବୁଝାଇଲେ ଦେବେନ୍ଦ୍ର ବୁଝନ୍ତି ନାହିଁ । ହସିଦେଇ ଆଗରୁ ଚାଲିଯାନ୍ତି ।

ଏହିପରି କିଛିଦିନ କଟିଗଲା । ଦେବେନ୍ଦ୍ର ବାବୁଙ୍କ ସ୍ୱଭାବର ପରିବର୍ତ୍ତନ ହେଲା ନାହିଁ । ଦିନକ୍ରୁଦିନ ତଳକୁ ଯିବାକୁ ବସିଲା । ମଦ ଖାଇ ମାତାଲ ହୋଇ କଲିକତାର ନାମଜାଦା ଗଳିମାନଙ୍କରେ ଅପ୍‌ସରୀ ଖୋଜି ବୁଲିଲେ । ନିତି ନୂଆ ଅପ୍‌ସରୀଙ୍କର ବାହ୍ୟ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ସେ ଏହି ବିଶ୍ୱଟା କେବଳ ଅପ୍‌ସରୀମୟ ଦେଖିଲେ । କ୍ରମେ ଘରୁ ସମସ୍ତ ସମ୍ପର୍କ ତୁଟିଗଲା । ଯେତେବେଳେ ଟଙ୍କା ପଇସାର ଅଭାବ ପଡ଼େ ଅକସ୍ମାତ୍ ଘରେ ପହଞ୍ଚି କିଛି ହାତକରି ଚାଲିଯାନ୍ତି । ମା ଯେତେ ଯାହା କହି ବୁଝାଇଲେ ତହିଁରେ ସେ କର୍ଣ୍ଣପାତ କରନ୍ତି ନାହିଁ ।

ପୁତ୍ରକୁ ନରକଯାତ୍ରାରୁ ରକ୍ଷା କରିବାକୁ ମା ଖୋଜି ଖୋଜି ଗୋଟିଏ ଅନିନ୍ଦ୍ୟସୁନ୍ଦରୀ, ସୁଶିକ୍ଷିତା ଓ ଉଚ୍ଚ ବଂଶୀୟା କନ୍ୟା ବୋହୂକରି ଘରକୁ ଆଣିବାର ପ୍ରସ୍ତାବ କଲେ । କନ୍ୟା ଠିକ୍ ହେଲା । ମା'ଙ୍କ ଅନୁରୋଧ ମତେ ବିନା ଆପତ୍ତିରେ ଦେବେନ୍ଦ୍ର ବାବୁ ଶୈଳବାଳାକୁ ବିବାହ କଲେ । ଲୋକେ ଆଶା କରିଥିଲେ, ଏଣିକି ତାଙ୍କର ସ୍ୱଭାବ ପରିବର୍ତ୍ତିତ ହେବ । ଦିନାକେତେ ଦେବେନ୍ଦ୍ର ଭଲ ପିଲାପରି କାଳ କଟାଇଲେ । ମାଙ୍କ ମନରେ ଆଶାର ବିଦ୍ୟୁତ୍ ଖେଳିଗଲା । କିନ୍ତୁ, ଭଗବାନଙ୍କର ଇଚ୍ଛା ଅନ୍ୟ ପ୍ରକାର । ଦେବେନ୍ଦ୍ରଙ୍କର ପୁଣି ସେହି ପୂର୍ବର ପାଗଳାମି ବାହାରିଲା । ଯାହାଙ୍କ ନିମନ୍ତେ କଲିକତା ଅପ୍‌ସରୀ ମହଲମାନଙ୍କର ଦ୍ୱାର ଚିର ଉନ୍ମୁକ୍ତ; ସେ କି ସହଜରେ ସରଳା ବାଳିକାର ରୂପ, ଗୁଣ ଓ ପ୍ରେମରେ ମୁଗ୍ଧ ହୋଇ ରହି ପାରନ୍ତେ ?

ମାଆଙ୍କ ମନର ଅବସ୍ଥା କହିଲେ ନ ସରେ । ଦୁଃଖ ପରେ ଦୁଃଖ ତାଙ୍କ ମନକୁ ଏକାଥରେ ଯନ୍ତ୍ରଣାରେ ପୂର୍ଣ୍ଣ କରିଦେଲା । ଏକମାତ୍ର ପୁତ୍ରର ଦୁରବସ୍ଥା ଦେଖି ସେ ଭାବିଥିଲେ, ପୁତ୍ରବଧୂର ହସ ହସ ସୁନ୍ଦର ମୁହଁଟି ଦେଖି ପ୍ରାଣରେ ଶାନ୍ତି ଆଣି ପାରିବେ । କିନ୍ତୁ ସ୍ୱାମୀଙ୍କର ଢଙ୍ଗ ଢାଙ୍ଗରେ ଶୈଳବାଳା ଦିନ ରାତି କାନ୍ଦିକାନ୍ଦି ସମୟ କଟାଇଲେ ! ଦୋଷ ଦେବେ କାହାର । ନିଜ ସୁନା ଯଦି ଭେଣ୍ଡି ହୁଏ ମାଇପେ ଦୋଷ ଦିଅନ୍ତି କପାଳର ସିନା ! ଶୈଳବାଳାଙ୍କ ହୃଦୟର ବ୍ୟଥା ବୁଝିପାରି ମା ତାଙ୍କୁ କୋଳକୁ ଟାଣିଆଣି ବୁଝାଇ କହନ୍ତି । ତହିଁରେ ତାଙ୍କର ଦୁଃଖ କେବଳ ବଢ଼େ ।

ସେ ଦିନ ଜନ୍ମାଷ୍ଟମୀ । ରାତି ଦଶଟା ହେଲା । ଦେବେନ୍ଦ୍ର ବାବୁଙ୍କର ଦେଖା ନାହିଁ । ଅବଶ୍ୟ ଏହିପରି କେତେ ରାତି କଟିଯାଇଛି, କିନ୍ତୁ କୌଣସି ଦିନ ଶୈଳ-ବାଳାଙ୍କ ମନ ଏତେ ବେଶି ଅଧୀର ହୁଏ ନାହିଁ । ଆଜି କଅଣ ହେଲା କେଜାଣି ତାଙ୍କର ମନ କେଉଁଠି ଲାଗିଲା ନାହିଁ । କେଉଁ ଦିନର କେତେ କଥା ମନେପଡ଼ି ତାଙ୍କର ପ୍ରାଣକୁ ଅସ୍ଥିର କଲା । ସେ ଦୁଃଖରେ ଦ୍ୱିତଳର ଗୋଟିଏ ପ୍ରକୋଷ୍ଠରେ ପଲଙ୍କ ଉପରେ ଶୋଇ ତକିଆରେ ମୁହଁ ମାଡ଼ି କାନ୍ଦିବାକୁ ଲାଗିଲେ ।

ମା ଏ ସମ୍ବାଦ ପାଇ, ମନ ଦୃଢ଼କରି ଶୈଳବାଳାଙ୍କ ନିକଟକୁ ଆସିଲେ । ପଲଙ୍କ ଉପରେ ବସି ଧୀରେ ଧୀରେ ଶୈଳବାଳାଙ୍କୁ ଉଠାଇ ଅଞ୍ଚଳରେ ଲୋତକ ପୋଛିଦେଲେ । ପ୍ରବୋଧନା ଦେଇ କହିଲେ, ମା ମୋଓର, ଲକ୍ଷ୍ମୀ ମୋଓର, ମନରେ ଦୁଃଖ କର ନା । ତୋର ନାହିଁ କଅଣ ? କୁଶିଦା ପରି ଜମିଦାରୀର ଅଧିକାରିଣୀ ତୁ, ତୋଓର ଅଭାବ କାହିଁରେ ? ଯାହା ନେଇ ମନରେ ଦୁଃଖ କରୁଛୁ ତାର ପ୍ରକୃତି କଅଣ ସବୁଦିନେ ଏହିପରି ଥିବ ? ଭଗବାନଙ୍କୁ ପ୍ରାର୍ଥନା କର । ତାଙ୍କର ସୁଦୟା ହେଲେ କ୍ଷଣକରେ ବଦଳିଯିବ । ମଣିଷ କୌଣସି ବିଷୟରେ ଚରମ ସୀମାରେ ଉପସ୍ଥିତ ହେଲେ ଆପେ ଆପେ ବଦଳିଯାଏ । ଅଖିଆ ଅପିଆ ଏକୁଟିଆଟା ଶୋଇ ଏତେ କାନ୍ଦୁଛୁ ? ତୋର କାନ୍ଦଣା ଦେଖିଲେ ମୋର ଛାତି ଫାଟିଯିବ, ଆ ମା··· । ଶାଶୁଙ୍କର ସାନ୍ତ୍ୱନା ବାଣୀ ଶୁଣି ଶୈଳବାଳାଙ୍କର କୋହ ବଢ଼ିଲା । ବୃଦ୍ଧାଙ୍କ ବକ୍ଷରେ ମୁହଁ ଲୁଚାଇ କଇଁକଇଁ ହୋଇ କାନ୍ଦି ଉଠିଲେ । ମା କିଛି ନ କହି ବଧୂକୁ ଆଲିଙ୍ଗନ କଲେ ।

ଏହି ସମୟରେ ଧଇଁ ସଇଁ ହୋଇ ଜଣେ ଚାକର ସେଠାରେ ଉପସ୍ଥିତ ହୋଇ ଭୟପୂର୍ଣ୍ଣ ତୀବ୍ର ସ୍ୱରରେ କହିଲା, ମା, ମା, ସର୍ବନାଶ ! ବାବୁ ଗୋଟାଗୁଏଁ ରକ୍ତରେ ଜୁଡ଼ୁବୁଡ଼ୁ ହୋଇ ଆସିଛନ୍ତି । ତାଙ୍କ ସଙ୍ଗେ ଆଉ ଦିଜଣ କିଏ ଅଛନ୍ତି । ଶୀଘ୍ର ତଳକୁ ଆସ । ମୁଁ ଗୋଟାଏ ପଙ୍ଖା ନେଇ ଯାଏ । ଏତିକି କହି ଚାକର ଟୋକା ଦ୍ରୁତପଦରେ ତଳକୁ ଓହ୍ଲାଇଲା ।

ମାଙ୍କର ଦୁଃଖ ଏହି ଆକସ୍ମିକ ଦୁଃସମ୍ବାଦ ପାଇ ବିସ୍ମୟରେ ପରିଣତ ହେଲା । ସେ ପୁତ୍ରବଧୂକୁ ଗୁଡ଼ା ଘଟଣା କଅଣ ବୁଝିବାକୁ ଅସ୍ତବ୍ୟସ୍ତ ହୋଇ ତଳକୁ ଆସିଲେ । ଶୈଳବାଳା ମଧ୍ୟ ଚକ୍ଷୁରୁ ଲୋତକ ପୋଛି ଅସମ୍ଭାଳ ହୋଇ ତଳକୁ ଓହ୍ଲାଇଲେ ।

ତଳକୁ ଆସି ଯାହା ଦେଖିଲେ, ତହିଁରେ ସେମାନଙ୍କର ଚକ୍ଷୁ ସ୍ଥିର ହେଲା । ଦେବେନ୍ ବାବୁ ହତଜ୍ଞାନ ହୋଇ ଦାଣ୍ଡଘର ପଲଙ୍କ ଉପରେ ପଡ଼ିଛନ୍ତି । ହାତରେ ଓ ମୁଣ୍ଡରେ ପଟି ବନ୍ଧା ହୋଇଛି । ଦେହର ଅନେକ ସ୍ଥାନରେ ରକ୍ତ ଲାଗି ରହିଛି । ଦେବେନ୍ ବାବୁଙ୍କ ନିକଟରେ ଦୁଇଜଣ ଭଦ୍ରଲୋକ ଠିଆ ହୋଇ ରହିଛନ୍ତି । ଜଣେ ଖଣ୍ଡେ ପଙ୍ଖା ଧରି ଧୀରେ ଧୀରେ ବ୍ୟଜନ କରୁଛନ୍ତି । ଆରଜଣ ଥର୍ମୋମିଟର ସାହାଯ୍ୟରେ ଦେହର ଉତ୍ତାପ ପରୀକ୍ଷା କରୁଛନ୍ତି ।

ଏମାନଙ୍କୁ ଦେଖି ସେ ତାଙ୍କର ବନ୍ଧୁଙ୍କୁ ସମ୍ବୋଧନ କରି କହିଲେ, ବିପବାବୁ ଆଘାତ ସେପରି ସାଙ୍ଘାତିକ ନୁହେଁ । ପ୍ରଚୁର ପରିମାଣରେ ମଦ ଖାଇଥିବାରୁ ଏପରି ହତଜ୍ଞାନ ହୋଇ ପଡ଼ିଛନ୍ତି । ଭୟର କାରଣ ନାହିଁ । ଆପଣ ରହନ୍ତୁ, ମୁଁ ଆସୁଛି ।

ବିପ୍ରବାବୁ ନମସ୍କାର କରି କହିଲେ ସତ୍ୟବାଦୀ ବାବୁ, ଆପଣ ଯେ ଜଣେ ଅପରିଚିତ ଭଦ୍ରଲୋକଙ୍କର ଏତେ ଉପକାର କରିଛନ୍ତି ସେଥିପାଇଁ ଆପଣଙ୍କୁ ଧନ୍ୟବାଦ ଦେଉଛି ।

ସତ୍ୟବାଦୀ ବାବୁ ଫେରି ଚାହିଁ ହସି ହସି କହିଲେ, ସେଇଟା ଆପଣଙ୍କର ପ୍ରାପ୍ୟ, ମୋର ନୁହେଁ । ବାଟରେ ଚାଲି ଯାଉଁ ଯାଉଁ ଜଣେ ଅପରିଚିତ ଆହତ ବ୍ୟକ୍ତିଙ୍କୁ ଦେଖି ତାଙ୍କର ଏତେ ଉପକାର ଆପଣଙ୍କ ଭଳି କରିବ କିଏ ?

ସତ୍ୟବାଦୀ ବାବୁ ଡାକ୍ତର ଚାଲିଯିବା ପରେ ବିପ୍ରଚରଣ ମାଆଙ୍କ ଆଡ଼କୁ ଚାହିଁ କହିଲେ, ଆପଣମାନଙ୍କର ବ୍ୟସ୍ତ ହେବାର କାରଣ ନାହିଁ । ଭାଗ୍ୟବଳରୁ ଅତି ବଡ଼ ବିପଦରୁ ଏ ଉଦ୍ଧାର ପାଇ ଆସିଛନ୍ତି ।

ବୃଦ୍ଧା କଅଣ କହି ଏହି ଅପରିଚିତ ଯୁବକଙ୍କ ନିକଟରେ ହୃଦୟର କୃତଜ୍ଞତା ଜଣାଇବେ ସ୍ଥିର କରିପାରିଲେ ନାହିଁ । ସେ ଏହି ଦୁଇ ଜଣଙ୍କୁ ଦେଖି ପ୍ରଥମେ ଭାବିଥିଲେ-ଏମାନେ ଦେବେନର ବନ୍ଧୁ । ଏହିମାନଙ୍କ ପ୍ରରୋଚନା ଓ କୁଶିକ୍ଷାରେ ପଡ଼ି ଅମୂଲ୍ୟ ଚରିତ୍ର ନଷ୍ଟକରି ଦେବେନ୍ ଏତେ ବଡ଼ ବିପଦରେ ପଡ଼ିଛି । ମାତ୍ର ବନ୍ଧୁ-ଦ୍ୱୟଙ୍କର କଥୋପକଥନ ଶୁଣି ଓ ବିପ୍ରଙ୍କର ପ୍ରଦୀପ୍ତ ଚକ୍ଷୁ, ଅମାୟିକ ସ୍ୱଭାବ ଦେଖି ଏପରି ଧାରଣା ମନରେ ଆଣିବାକୁ ସାହସ ହେଲା ନାହିଁ ।

ସେ ଲୋତକଭରା ଚକ୍ଷୁରେ ପଚାରିଲେ, ଦେବେନ୍‌ର ଏପରି ଅବସ୍ଥା କିପରି ହେଲା ବାବା ? ତମେ ତାକୁ ଦେଖିଲ କେଉଁଠି ?

ବିପ୍ରଚରଣ ସମସ୍ତ ଘଟଣା ବର୍ଣ୍ଣନା କଲେ—ସେ ମେଛୁଆବଜାର ନିକଟସ୍ଥ ଭବାନୀ ଲେନରୁ ବସାକୁ ଫେରୁଥିବା ସମୟରେ ଗୋଟିଏ କୋଠାର କଡ଼ରେ ଦେବେନ୍ ବାବୁଙ୍କୁ ଦେଖିଲେ । ଅନ୍ଧାରୁଆ ହୋଇଥିବାରୁ ଟର୍ଚ୍ଚ ମାରି ଦେଖିଲେ ଗୋଟିଏ ରକ୍ତଲିପ୍ତ ଲୋକ । ମଦଗନ୍ଧର ଉତ୍କଟତାରେ ତାଙ୍କର ମୁଣ୍ଡ କଅଣ ହେଲା । ଅନେକ ସମୟ ଯତ୍ନ କଲାପରେ ଆହତ ଦେବେନ୍‌ବାବୁ ଚକ୍ଷୁ ଖୋଲିଲେ । ପଚାରି-ବାରୁ କହିଲେ, ମିଷ୍ଟର୍ ଲେନ୍ ଯିବେ... । ଏତିକି କହି ପୁଣି ହତଜ୍ଞାନ ହେଲେ । ବିପ୍ରଚରଣ ଭଡ଼ା ଟାକ୍‌ସିରେ ପ୍ରଥମେ ତାଙ୍କୁ ସତ୍ୟବାଦୀ ବାବୁ ଡାକ୍ତରଙ୍କ ଘରକୁ ନେଇ ଗଲେ··· । ସେହିଠାରେ ପଟି ବନ୍ଧାହେଲା । ସତ୍ୟବାଦୀବାବୁ ନିଜ ମଟରରେ ଆଣି ଛାଡ଼ି ଦେଇଗଲେ ·· ।

ସେହିଦିନରୁ ଦେବେନ୍ଦ୍ର ବାବୁଙ୍କ ଘରସଙ୍ଗେ ବିପ୍ରଚରଣଙ୍କର ଘନିଷ୍ଠତା କ୍ରମେ ବଢ଼ିଗଲା । ଦେବେନ୍ଦ୍ର ବାବୁଙ୍କର ମାତାଙ୍କ ଅନୁରୋଧକ୍ରମେ ବିପ୍ରଚରଣ ପ୍ରତ୍ୟହ ଆସି

ରୋଗୀଙ୍କୁ ଦେଖିଯାନ୍ତି । ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କରିବାକୁ ଦେବେନ୍ଦ୍ର ବାବୁଙ୍କୁ ମାସାଧିକ ସମୟ ଲାଗିଲା । ହସ ହସ ମୁହଁରେ ବିପ୍ରଚରଣ ଆତ୍ମୀୟ ପରି ଡାକ୍ତର ଡକା ଠାରୁ ପଥ୍ୟର ବ୍ୟବସ୍ଥା ପର୍ଯ୍ୟନ୍ତ ସବୁ ନିଜେ କରନ୍ତି ।

ଏହି କେତେଦିନ ମଧ୍ୟରେ ସେ ମିତ୍ର ବଂଶର ପ୍ରତ୍ୟେକଙ୍କୁ ଆପଣାର କରି ପକାଇଛନ୍ତି । ନିଜର ମେଳାପୀ ସ୍ୱଭାବ ଓ ଚରିତ୍ରବଳରେ ବିପ୍ର ଚରଣ ସମସ୍ତଙ୍କର ସ୍ନେହଭାଜନ ହୋଇଛନ୍ତି । ଦେବେନ୍ଦ୍ର ବାବୁଙ୍କ ଜନନୀଙ୍କୁ ସେ ମା ବୋଲି ସମ୍ବୋଧନ କରନ୍ତି । ବାରମ୍ବାର ରକ୍ତଘନିଷ୍ଠ ହେତୁ ଶୈଳବାଳା ମଧ୍ୟ ତାଙ୍କୁ ଆଉ ଅପରିଚିତ ମନେ ନ କରି ଆଡ଼ ଆଢ଼ୁଆଳ ହୁଅନ୍ତି ନାହିଁ । ଶାଶୁଙ୍କର ଆଜ୍ଞାକ୍ରମେ ସେ ତାଙ୍କୁ ବିପିନ୍‌ଦା ବୋଲି ଡାକନ୍ତି ।

ମାଆଙ୍କ ମନରେ କିପରି ଧାରଣା ଜନ୍ମିଥିଲା ଯେ ଦେବେନ୍‌କୁ ଅସତ୍‌ପଥରୁ ସତ୍‌ପଥକୁ ଆଣିବାକୁ ହେଲେ ବିପିନ୍ ପରି ସଚ୍ଚରିତ୍ର ଯୁବକ ସଙ୍ଗେ ତାର ବନ୍ଧୁତ୍ୱ-ବନ୍ଧନ ଘନିଷ୍ଠତର କରିବା ଆବଶ୍ୟକ । ସେ ଜାଣନ୍ତି, ଜଣେ ବନ୍ଧୁର ଗୁପ୍ତ ମନ୍ତ୍ରଣା ମନରେ ବଡ଼ ପ୍ରଭାବ ପକାଏ ।

ଦେବେନ୍ଦ୍ର ବାବୁଙ୍କ ଆଚରଣ ଦେଖି ସମସ୍ତେ ହତାଶ ହେଲେ । ଦେହ ଭଲ ହେବା ସଙ୍ଗେ ସଙ୍ଗେ ପୁଣି ତାଙ୍କର ପୂର୍ବ ସ୍ୱଭାବ ଫେରି ଆସିଲା । ଜାଣି ଜାଣି ଯେ ନିଜ ପାଇଁ ନରକର ପଥ ସଫା କରେ, ସହସ୍ର ବିପ୍ରଚରଣ ହେଲେ ତା'ର ସ୍ୱଭାବ ବଦଳାଇ ପାରିବେ ନାହିଁ । ମା ଏବଂ ଶୈଳବାଳାଙ୍କର ସମୟ କାନ୍ଦି କାନ୍ଦି କଟିଲା । ସେମାନେ ବୁଝିପାରିଲେ, ମିତ୍ରବଂଶର ମାନମର୍ଯ୍ୟାଦା ତ ଲୋପ ପାଇଛି, ଏଥର ବଂଶ ଲୋପ ହେବ ।

ବିପ୍ରଚରଣ ସେମାନଙ୍କୁ ଆଶ୍ୱାସନା ଦେଇ ବୁଝାଇ ସୁଝାଇ କହନ୍ତି । ଦେବେନ୍ଦ୍ର ବାବୁ ହାବୁଡ଼େ ପଡ଼ିଲେ ତାଙ୍କୁ ଭଦ୍ର ଶୋଧନ ଦେଇ କେତେ ବୁଝାନ୍ତି । ସେ କିଛି ନ ଶୁଣି ହସି ଦେଇ ଚାଲି ଯାଆନ୍ତି । ବିପ୍ରଚରଣ ବା ଅଧିକା କରିବେ କଅଣ; ନିଜ ଦୁଃଖ ଧନ୍ଦାରେ ସେ ନିଜେ ବ୍ୟସ୍ତ ।

ଯେଉଁଦିନ ଖବରକାଗଜରୁ ପଢ଼ିଲେ ଯେ ସାଧୁଚରଣ ରସାନନ୍ଦ ନାମଧେୟ କୌଣସି ଜଣେ ଭଦ୍ରଲୋକଙ୍କୁ ଔଷଧ ଦେବା ବାହାନାରେ କୌଶଳରେ ବିଷ ଦିଆଇ ମରାଇ ଓ ତାଙ୍କର ଜନୈକ ବନ୍ଧୁ ଜଗନ୍ନାଥଙ୍କୁ ପିସ୍ତଲ ଗୁଳିରେ ଆଘାତ କରି, ରସାନନ୍ଦ ବାବୁଙ୍କର ବିଧବା, ଷୋଡ଼ଶୀ ଧର୍ମପତ୍ନୀ କୋକିଳ ଦେଈଙ୍କୁ ସଙ୍ଗରେ ନେଇ କୁଆଡ଼େ ପଳାଇଛନ୍ତି, ତାଙ୍କର ପ୍ରାଣରେ ଗୁରୁତର ଆଘାତ ଲାଗିଲା । ସେ ଆଉ କାହାକୁ ବିଶ୍ୱାସ କରି ପାରିଲେ ନାହିଁ । ନିଜ ଉପରୁ ମଧ୍ୟ ବିଶ୍ୱାସ କମି ଆସିଲା । ସାଧୁଚରଣ ଯଦି ଏପରି ଜଘନ୍ୟ କର୍ମ କରିପାରେ, ମନୁଷ୍ୟ ହୋଇ ନ କରିବ କଏ ।

ସବୁ ଦୋଷ ସେ ଭାଇଭାଉଜଙ୍କ ଉପରେ ଅଜାଡ଼ିଦେଇ ମନକୁ ମନ କହିଲେ, ମୋଓର ଆଉ ସଂସାରରେ କେହି ନାହିଁ । ଅବଶ୍ୟ ଏହି ବାକ୍ୟଟି ମନେ ମନେ କହିବା ସଙ୍ଗେ ସଙ୍ଗେ ସରଳ ହସ ହସ ମୁହଁ ଓ ଗୁଲୁଗୁଲିଆ ମିଠା କଥା ତାଙ୍କର ମନେପଡ଼ି ଅଜାଣତରେ ଚକ୍ଷୁ କୋଣରେ ଦୁଇବୁନ୍ଦା ଲୁହ ସୃଷ୍ଟି କରିଥିଲା ।

ସେହିଦିନଠାରୁ ଘରୁ ସବୁ ସମ୍ପର୍କ ତୁଟାଇ ଦେଲେ । ଲଟାରିଲବ୍ଧ ଧନରେ ଗୃହୀଲ ବ୍ୟବସାୟ କରି ଯଥେଷ୍ଟ ଧନ ଉପାର୍ଜନ କଲେ । ଧନ ଉପାର୍ଜନ କରିବା ସଙ୍ଗେ ସଙ୍ଗେ ସେହି ଧନକୁ ବ୍ୟୟ କରିବାର ସୁ-ଉପାୟ କରିଲେ ତ ହୁଏ !

ଧନଉପାର୍ଜନ ଯେତେ଼ ଶକ୍ତ, ବ୍ୟୟ କରିବା ତେତେ଼ ଶକ୍ତ ନୁହେଁ । ବ୍ୟୟ କରିବାକୁ ଅନ୍ୟର ଉପଦେଶ ଲୋଡ଼ା ହୁଏ ନାହିଁ । ନିଜର ଗ୍ରାସାଚ୍ଛାଦନ ନିମନ୍ତେ ସାମାନ୍ୟ କିଛି ଟଙ୍କା ରଖି ବାକିତକ ଯାହାର ଧନ ତାଙ୍କୁହିଁ ଭିନ୍ନ ଭାବରେ ଫେରସ୍ତ ଦିଅନ୍ତି । ସେ ଜାଣନ୍ତି, ବ୍ୟବସାୟୀ ମାନେ-ଅଦେଖା ଭାବରେ ଗରିବଙ୍କ ତଣ୍ଟିଚିପି ତାଙ୍କ ଅଣ୍ଟାରୁ ପଇସା କାଢ଼ିବା । ତେଣୁ ସେ ସାମାନ୍ୟ କିଛି ରଖି ବାକି-ତକରୁ କିଛି ବନ୍ୟା ପାଣ୍ଠିକୁ, କିଛି ଉତ୍କଳ-ସମାଜ ପାଣ୍ଠିକୁ, ବେଳେ ବେଳେ କଂଗ୍ରେସ ପାଣ୍ଠିକୁ ଏହିପରି ଅନ୍ୟାନ୍ୟ ନାନାପ୍ରକାର ପାଣ୍ଠିକୁ ଦାନ କରନ୍ତି ।

ଦୁଃଖୀରଙ୍କୀଙ୍କ ଦେବା ତ ପ୍ରତିଦିନ ଚାଲିଥାଏ । ତାଙ୍କର ଧାରଣା ପ୍ରତ୍ୟେକ ମଣିଷକୁ ଆଗ ମୁଠାଏ ଖାଇବାକୁ ଓ ଖଣ୍ଡେ ପିନ୍ଧିବାକୁ ହେବ । ଏହି ଦୁଇଟି ଛୋଟ-କଥା ଅଥଚ ସବୁଠୁଁ ବଡ଼ କଥାକୁ ନ ଜାଣି ଯେଉଁ ଧନରଙ୍କମାନେ ଆମର ଧନ ବୋଲି କହି ବିଳାସରେ ମାତିଯାଆନ୍ତି ଓ ସହସ୍ର ଲୋକଙ୍କର ଚକ୍ଷୁର ଜଳ ଓ ହୃଦୟର ରକ୍ତରେ ଅବଗାହନ କରି ଚିତ୍କାର କରି କହନ୍ତି, ଆମେ ସୁଖୀ, ତାଙ୍କଠୁ ବଳି ନିର୍ଲଜ ଆଉ କେହି ନାହାନ୍ତି ।

ବିପ୍ରଚରଣ ଭାବନ୍ତି, ସମସ୍ତଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରତି ନଜର ନ ଦେଲେ ସଭିଙ୍କୁ ଦିନେ ମରିବାକୁ ପଡ଼ିବ ।

ବିପ୍ରଚରଣଙ୍କୁ ସମସ୍ତେ ଭଲପାଆନ୍ତି । ମା ବାଇଁପାଇଁ ହୁଅନ୍ତି । ଆହା, ଟଙ୍କା ରଖିବାକୁ ବସିଲେ ବର୍ଷକରେ ପିଲାଟା ଧନୀ ହୋଇଯାନ୍ତା । ମିଛରେ ଟଙ୍କା ନଷ୍ଟ କରୁଛି ! ହଁ, ଦାନ ଧର୍ମ କରିବାକୁ ହୁଏ, ତା ବୋଲି ଏତେ ବେଶି !

ଦିନେ ସେ ଶୈଳବାଳାଙ୍କୁ ଡାକି ଶିଖାଇ କହିଲେ···ଏହି ସମସ୍ତ କଥା ରୁ ଯଦି ବିପିନକୁ କହି ସେ ମାନିପାରେ । ଆହା, ବାପ ମା ଛେଉଣ୍ଡ ପିଲାଟି ସଂସାରରେ ସୁଖୀ ହୋଇ ରହୁ । ଶୈଳବାଳାଙ୍କ ମନକୁ ପାଇଲା ।

ଦିନେ ବିପ୍ରଚରଣ ରକ୍ତ ଜରଜର ହୋଇ ସ୍ଟ୍ରେଚରଟା ବେଳେ, ମିତ୍ର ଭବନରେ ଉପସ୍ଥିତ ହେଲେ । ମିତ୍ରଭବନର ପ୍ରତ୍ୟେକ ଲୋକ ତାଙ୍କୁ ଦେଖିଲେ ରଙ୍କସରସର ହୁଅନ୍ତି । ତାଙ୍କୁ ଏପରି ଅବସ୍ଥାରେ ଆସିବାର ଦେଖି ଚହଳ ପଡ଼ିଗଲା । ମା ଏବଂ ଶୈଳବାଳା ଉତ୍କଣ୍ଠିତା ହୋଇ ତଳକୁ ଦଉଡ଼ି ଆସିଲେ ।

ମାଆଙ୍କୁ ଦେଖି ବିପ୍ରଚରଣ ଭକ୍ତି ସହକାରେ ହସ ହସ ମୁହଁରେ ପ୍ରଣାମ କଲେ । ବୃଦ୍ଧା ଛଳ ଛଳ ଚକ୍ଷୁରେ ତାଙ୍କ ଦେହରୁ ରକ୍ତର ଛିଟା ପୋଛି ବିସ୍ମୟର ସହିତ କହିଲେ, ଏ କଅଣ ହୋଇଛି ବିପିନ୍, ରକ୍ତ !

ତାଙ୍କର ଅଧୀରତା ବୁଝିପାରି ବିପ୍ରଚରଣ କହିଲେ, ହଁ ମା ଜଣେ ପଶ୍ଚିମା ଭଦ୍ରଲୋକଙ୍କ ଦେହରେ ହଠାତ୍ ମଟର ଧକ୍କା ଲଗିବାରୁ ସେ ପଡ଼ିଗଲେ । ତାଙ୍କର ମୁଣ୍ଡ ଫାଟିଗଲା । ତାଙ୍କୁ ଟେକାଟେକି କରି ସେହି ମଟରରେ ବସାଇ ସତ୍ୟବାଦୀ ବାବୁଙ୍କ ଡାକ୍ତରଖାନାକୁ ପଠେଇ ଦେଇ ଆସିଲି । ଅବସ୍ଥା ଭଲ ଅଛି ।

ସବୁଦିନେ ତମର ଏହି କାମ ! ହଉ ବାବା, ପରର ଯେ ଉପକାର କରେ, ଭଗବାନ ତାର ମଙ୍ଗଳ କରନ୍ତି । ଯା, ଲୁଗା ବଦଳି ଜଳଖିଆ କରି ନେ ! ଶୈଳ, ଦାଦାକୁ ଜଳଖିଆ ଦେ । ଏତିକି କହି ବୃଦ୍ଧା ଉପରକୁ ଗଲେ ।

ଶୈଳବାଳା ଭ୍ରୂଲତା ନଚାଇ କହିଲେ, ଦେଖନ୍ତୁ ବିପିନଦା, ପରର ଉପକାର କରିବାକୁ ଯାଇ ଦିନୁ ଦିନ ଆପଣଙ୍କର ଦେହ ଖରାପ ହୋଇଯାଉଛି । ହେବାର ତ କଥା, ନିଜର ଖିଆପିଆକୁ ନଜର ନ ରଖିଲେ ସ୍ୱାସ୍ଥ୍ୟଭଙ୍ଗ ନିଶ୍ଚୟ ହେବ ।

ବିପ୍ରଚରଣ ସ୍ମିତହାସ୍ୟ କଲେ । ଶୈଳବାଳା ଜଳଖିଆର ଆୟୋଜନରେ ଚାଲିଗଲେ ।

ବିପ୍ରଚରଣ ଜଳଖିଆ କରୁଥିବା ସମୟରେ ଶୈଳବାଳା ଅତି ଆଗ୍ରହ ସହକାରେ ତାଙ୍କୁ ବ୍ୟଜନ କରୁଥିଲେ । ଭାଇ ଭଉଣୀ ମଧ୍ୟରେ ନାନାପ୍ରକାର ମଧୁରାଳାପ ଚାଲିଥିଲା । ଶୈଳବାଳା କହିଲେ, ଆଚ୍ଛା ବିପିନ୍ ଦା, ଆପଣ ଚୌରଙ୍ଗୀ ପାଖରୁ ବସା ଉଠାଇ ଏ ପାଖକୁ ଚାଲି ଆସୁ ନାହାନ୍ତି, ମୁଁ ଶୁଣିଛି, ଚୌରଙ୍ଗୀ ଆଡ଼େ ବସାଭଡ଼ା ବେଶି ।

ବିପ୍ରଚରଣ କହିଲେ, ହଁ, ବସାଭଡ଼ା ଟିକିଏ ବେଶି, ତେବେ ବ୍ୟବସାୟର ସୁବିଧା । ଆଉରି ମଧ୍ୟ ବହୁଦିନ ରହିବା ହେତୁ ସେପାଖେ ସଙ୍ଗୀ ବ୍ୟବସାୟୀଙ୍କ ଭିତରେ ମୋ'ର ଟିକେ ନାମ ହୋଇ ଯାଇଛି ।

ଶୈଳବାଳା ଆଳାପର ଗତି ବଦଳାଇ ପଚାରିଲେ, ବଙ୍ଗାଳୀ ଓଡ଼ିଆ ଭିତରେ ପ୍ରଭେଦ କଅଣ ? ମୁଁ ତ ଅନେକ ଓଡ଼ିଆ ଭଦ୍ରଲୋକ ଦେଖିଛି ମାତ୍ର କେହି କେହି ନ ଦେଲେତ ଚିହ୍ନି ଠିକଣା କରିବା ସହଜ ନୁହେଁ ।

ବିପ୍ରଚରଣ କହିଲେ, ପ୍ରଭେଦ କଅଣ ଦେଖିବୁ ଶୈଳ ! ଓଡ଼ିଆଙ୍କର ତ ଗୋଟାଏ ଲାଙ୍ଗୁଡ଼ ନ ଥାଏ । ଏକା ଦେଶ, ଏକା ଲୋକ, ଯେ ଯେଉଁଠି ରହିଲା ସେହିଠାର ଭାଷା କହିଲା । ସ୍ୱଭାବ ମଧ୍ୟ ସ୍ଥାନ ଗୁଣରେ ପରିବର୍ତ୍ତିତ ହୋଇଗଲା । ଆଜି ଯେ ଓଡ଼ିଆ ପଠାଣ ବୋଲି କୁହ, ତମ ପିଢ଼ି ଦେଖାଇ କରି ତମମାନଙ୍କର

ଘୃଣାର ପାତ୍ର ହୋଇଛୁ ଏବଂ ସଙ୍ଗେ ସଙ୍ଗେ ଘରବାହ୍ମୀ ପଶୁବୋଲି ସମସ୍ତ ଜାତିଟାକୁ ବଙ୍ଗ ଅବଧାନରେ ଚହ୍ଲାଇ ଦେଉଛୁ, କାଲି ସେହି ହୁଏତ ଭଗବାନଙ୍କ ଦୟାରୁ ଭାଗ୍ୟଚକ୍ର ପରିବର୍ତ୍ତନ ହେଲେ ତମମାନଙ୍କର ବିସ୍ମୟର ପାତ୍ର, ଅଭ୍ୟର୍ଥନାର ପାତ୍ର ହେବ । ବଙ୍ଗାଳୀ ଓଡ଼ିଆ ମଧ୍ୟରେ ଏହି ଜନ୍ମଗତ ଘୃଣା କାହିଁକି ଜାଣୁ ଶୈଳ ?

ଲଜ୍ଜିତା ହୋଇ ଶୈଳ ପଚାରିଲା, କାହିଁକି ?

ତାର କାରଣ, ଦୁହିଙ୍କର ସ୍ୱାର୍ଥ ଏକାଥରେ ଛନ୍ଦାଛନ୍ଦି ହୋଇ ରହିଛି । ବାଟରେ ଭିକ୍ଷୁକଟିଏ ଦେଖିଲେ ଲୋକଙ୍କର ଦୟା ହୁଏ କିନ୍ତୁ ଯଦି ସେହି ଭିକ୍ଷୁକ ତୁମର ନଜର ଭାଇ ହୋଇଥାଏ ତ ହସ ମାଡ଼େ, ଉପହାସ କରି ଟିକିଏ ଚେଙ୍ଗେଇ ଦେବାକୁ ଇଚ୍ଛା ହୁଏ । ଦୟା ତା ପର କଥା ।

ଶୈଳବାଳାଙ୍କ ଚକ୍ଷୁ ପ୍ରଦୀପ୍ତ ହେଲା । ସେ ଦୃଢ଼ ସ୍ୱରରେ କହିଲେ, ଉଚିତ ହେଉଛି ଭିକ୍ଷୁକକୁ ପାଖକୁ ଆଣି ସାନ୍ତ୍ୱନା ଦେବା, ନିର୍ଦ୍ଦୟତା ଏବଂ ନିର୍ଦ୍ଦୟତାଜନିତ ଶିକ୍ଷାଭାବ ବା ଫେସନାଭାବ ତ ପାପ ନୁହେଁ, ଘୃଣ୍ୟ ନୁହେଁ । ଏହି ଘୃଣା ଘୁଞ୍ଚାଇବାର ଉପାୟ ମୁଁ ଜାଣେ ।

ଆଗ୍ରହର ସହିତ ବିପ୍ରଚରଣ ହାସ୍ୟୋଦ୍ଭାସିତ ଫୁଟନ୍ତ ପଦ୍ମପରି ଶୈଳବାଳାଙ୍କର ମୁଖକୁ ଚାହିଁ ପଚାରିଲେ, କଅଣ ଶୁଣେ ?

ବୈବାହିକ ସମ୍ବନ୍ଧ । ତା ହେଲେ ପରସ୍ପର ପ୍ରତି ଘୃଣାଭାବ ମନରୁ ଘୁଞ୍ଚିଯିବ ।

ଠିକ୍ କଥା ଶୈଳ, କିନ୍ତୁ ବିବାହ ପୂର୍ବରୁ ଜାତି ଅଜାତି ନେଇ ଟଣାଟଣି ଲାଗିବ । ଜାତି କଥାକୁ ମୁଁ ଘୃଣା କରେ ଶୈଳ, ମୁଁ ଜାଣେ,—ଜାତି ମୋଟେ ଦୁଇଟି, ସ୍ତ୍ରୀ ଜାତି ଓ ପୁରୁଷ ଜାତି । ହିନ୍ଦୁ, ମୁସଲମାନ, ବ୍ରାହ୍ମଣ, କାୟସ୍ଥ ବା ସୁନା ସିହ୍ଲା ଏ ସବୁ ଭେଦାଭେଦ ଉଠାଇଦେବା ଆବଶ୍ୟକ । ଧର୍ମ ବୋଲି କୌଣସି ଚହ୍ନିତ ଧର୍ମ ରହିଲେ ଜାତୀୟ ଜୀବନର ଉନ୍ନତି ଅସମ୍ଭବ । ଦାଓ ସବୁଦିନେ ପିଲା ଥାଇ ବିଦେଶୀ ତତ୍ତ୍ୱାବଧାରକ ଖୋଜୁଥିବ । ଅତଏବ, ଯାହାର ଯେପରି ଇଚ୍ଛା ସେ ଭଗବାନଙ୍କର ପୂଜା କରୁ, ଯାହାର ଯେପରି ଯହିଁରେ ସୁବିଧା ସେ ସେହି ବ୍ୟବସାୟ କରୁ, ଏଥିରେ କେହି ବାଧା ଦେବେ ନାହିଁ । ମିଛଟାରେ ଧର୍ମ ଧର୍ମ, ଜାତି ଜାତି, ହୋଇ ଦେଶ ରସାତଳକୁ ଯିବାକୁ ବସିଛି ।

ବିପିନ ଦା, ଆପଣଙ୍କର ଧର୍ମ ଓ ଜାତି ସମ୍ବନ୍ଧ ନେଇ ତର୍କ ଶୁଣିବାର ଯୋଗ୍ୟପାତ୍ର ମୁଁ ନୁହେଁ । ମୁଁ କେବଳ ଗୋଟିଏ ଅନୁମତି ଚାହିଁବି ।

କେଉଁ ବିଷୟରେ ?

ମୋଓର ସହୋଦର ଭାଇ କେହି ନାହିଁ ସତ, କିନ୍ତୁ ମୁଁ ଆପଣଙ୍କୁ ମୋ'ର ସହୋଦର ଭାଇ ବୋଲି ଗ୍ରହଣ କରି ନେଇଛି । ଆପଣଙ୍କୁ ଦାଦା, ବୋଲି ଡାକିଲେ ମୋର ପ୍ରାଣରେ ଯେ ଆନନ୍ଦ ହୁଏ, ମୋ ମନରେ ଯେଉଁ ଶାନ୍ତି ଆସେ, ବାକ୍ୟରେ

ପ୍ରକାଶ କରିବାର କ୍ଷମତା ମୋର ନାହିଁ । ଆପଣଙ୍କୁ ମୁଁ ଅଧିକ କଅଣ କହିବି ? ମୋଠାରେ କେଉଁ ଦୁଃଖ ଆପଣ ନ ଜାଣନ୍ତି ? ମୁଁ ଚାହେଁ......

କଅଣ ଚାହୁଁ ?

ଦୋଷ କ୍ଷମା କରିବେ ତ ?

କହ ।

ମୁଁ ଚାହେଁ, ଯେତେ ଶୀଘ୍ର ପାରେ ମୋ ପାଇଁ ଗୋଟିଏ ସୁଶିକ୍ଷିତା ଭ୍ରାତୃଜାୟା ଖୋଜିବି ।

ବିପ୍ରଚରଣ ହସି ହସି କହିଲେ, ତେବେ ତୁ ଚାହୁଁ ମୋର ସ୍ୱାଧୀନତାଟିକି ଶେଷକରି ମୋତେ ବନ୍ଧନରେ ପକାଇବୁ ?

ଯଦି ଆପଣ ଅନୁମତି ଦିଅନ୍ତି, ଯଦି ଆପଣ ଭାବନ୍ତି ଯେ ଆପଣଙ୍କର କନିଷ୍ଠାର ସେ ଅଧିକାର ଅଛି ।

ଏଥିରେ ତୋର କେଉଁ ସ୍ୱାର୍ଥ ସାଧିତ ହେବ ?

ଆପଣଙ୍କର ସୁଖ ଦେଖି ମୁଁ ସୁଖୀ ହୋଇ ପାରିବି ।

ମୁଁ ବେଶ୍ ସୁଖରେ ଅଛି । ମୋ ପରି ଅନାଥ ଗୃହହୀନ ବନ୍ଧୁ ବାନ୍ଧବହୀନ ଲୋକ ପକ୍ଷରେ ବିବାହବନ୍ଧନ କେବଳ ଦୁଃଖ ପ୍ରଦାୟକ ହେବ । ବର୍ତ୍ତମାନ ବିଶ୍ୱଟା-ଯାକ ମୋର । ବିବାହ କରି ସଂକୀର୍ଣ୍ଣତାକୁ ବରଣ କରିବି କାହିଁକି ?

ଶୈଳାବାଳା କହିଲେ, ବିଶ୍ୱଟାକୁ ଯେ ଆପଣାର ବୋଲି ଗ୍ରହଣ କରେ ତାଆର ବନ୍ଧୁ ବାନ୍ଧବ, କି ଗୃହର ଅଭାବ ରହେନାହିଁ । ସେ ଅନାଥ ହେବ ନାହିଁ । ବିବାହ କଲେ ମନ ସଂକୀର୍ଣ୍ଣ ହେବନାହିଁ । ଆପଣ ବିବାହ ନ କଲେ ମୁଁ ଆପଣଙ୍କୁ ସ୍ୱାର୍ଥପର ବୋଲି କହିବି ।

ବିପ୍ରଚରଣ ନିରୁତ୍ତର ରହିଲେ ।

ବୃଦ୍ଧା ହାତରେ ଖଣ୍ଡେ କାଗଜ ଧରି ସେଠାରେ ଉପସ୍ଥିତ ହେଲେ । ବିପ୍ରଚରଣ ହାତ ମୁହଁ ଧୋଇ ଖଣ୍ଡେ ରୁମାଲରେ ମୁହଁ ପୋଛିଲେ । ଶୈଳବାଳା ଗୃହାନ୍ତରକୁ ଯାଇ ଭଙ୍ଗାଗୁଆ, ଲବଙ୍ଗ ଓ ଅଳାଇଚ ଆଣି ଦେଲେ ।

ବୃଦ୍ଧା କହିଲେ, ଦେବେନ୍ଦ୍ର ଖଣ୍ଡେ ଚିଠି ଦେଇଛି । ଦୁଇଦିନ ହେଲା ତାର ଦେଖା ନାହିଁ । ଦୁଇଦିନ ପରେ ଏହି ଚିଠି ଖଣ୍ଡି ଦେଇଛି । ପଢ଼ ତ...।

ବିପ୍ରଚରଣ ଆଗ୍ରହରେ ପତ୍ରଖଣ୍ଡି ନେଇ ପାଠ କଲେ —

—ମା, ଲେଖିବାକୁ ଇଚ୍ଛା ହେଲେ ମଧ୍ୟ ସାହସ ହେଉନାହିଁ । ଭୟ ହେଉଛି । ମୋ ପତ୍ରଟିର ଅନ୍ୟ ଅର୍ଥ ଯେପରି ଗ୍ରହଣ ନ କରୁ । ମା, ମୁଁ ତୋର କୁଳାଙ୍ଗାର ପୁତ୍ର । ମିଶ୍ର ବଂଶରେ ମୋ ପରି ଅଧମ ସନ୍ତାନ ଆଉ କେବେ ଜନ୍ମ ହୋଇ ନ ଥିବେ । ତୋର ସହସ୍ର ଉପଦେଶ ସତ୍ତ୍ୱେ ମୁଁ ଅନ୍ଧପରି, ପାଗଳପରି କୁପଥରେ ଗଲିଥିଲି ।

ମୁଁ ତ ପାଗଳ ନଥିଲି ମା, ମୁଁ ଥିଲି ଅନ୍ଧ । ନୋହିଲେ କ କେତେକେ ବନ୍ଧୁଙ୍କ ପ୍ରରୋଚନାରେ ପଡ଼ି ତୋ ମନରେ ବାରମ୍ବାର ଏତେ କଷ୍ଟ ଦେଇଥାନ୍ତି ?

ଆଜ ମୁଁ ଚାହେଁ ପୁଣି ତୋଓର ଶାନ୍ତିମୟ କୋଳକୁ ଫେରିଯିବି । ମୋତେ କ୍ଷମା କରି ପାରିବୁ ତ ମା ? ତୋର କୁଳକଳଙ୍କ ପୁତ୍ର ବୋଲି ମୁଁ ନିଜେ ଲଜ୍ଜିତ । ତେଣୁ ତୋର ବିନା ଆଦେଶ, ବିନା ଅନୁମତିରେ ଘରକୁ ଫେରିବାକୁ ସାହସ ହେଉ ନାହିଁ । ତୁ ଭାବିପାରୁ ହଠାତ୍ ମୋ ମନରେ ଏପରି ପରିବର୍ତ୍ତନ ହେଲା କାହିଁକି ? ଏହାର ବିଶେଷ କାରଣ ଅଛି, ମାତ୍ର ଲେଖିବାକୁ ଲଜ୍ଜା ବୋଧ କରୁଛି, କାଳେ ତୁ ବିଶ୍ୱାସ ନ କରୁ । ତେବେ ଏତିକି କହିପାରେ, ମୁଁ ଯାହା ଲେଖୁଛି ସବୁ ସତ, ଟିକିଏ ହେଲେ ଛଳନା ନାହିଁ ।

ତୋର ସହସ୍ର ପ୍ରବୋଧନା, ବିପିନର ଅଜସ୍ର ତର୍କ ଓ ଶୈଳର ଛଳ ଛଳ ଚକ୍ଷୁ ଓ ନୀରବ ଅନୁରୋଧ ମୋଓର ଉନ୍ମତ୍ତ ପ୍ରାଣରେ କେବେ ପରିବର୍ତ୍ତିତ ଭାବ ଜନ୍ମାଇ ନ ଥିଲା । ଧନେ କେବେ ମୁଁ ମୋ କଥା ଭାବି ନ ଥିଲି । କିନ୍ତୁ କାଲି, ଆହା, କିଏ ବିଶ୍ୱାସ କରିବ ?

ଜଣେ ବାଳିକାର ଉପଦେଶବାଣୀ, ଚକ୍ଷୁର ଜଳ ଓ କରୁଣ ଅନୁରୋଧ ମୋଓର ହୃଦୟକୁ ଭେଦ କଲା । ସତେ ଯେପରି ତେଜସ୍ୱିନୀ ଦେବୀମୂର୍ତ୍ତି ପରି ମୋର ଚକ୍ଷୁ ଫିଟାଇଦେଲା । ପ୍ରଥମ କରି କାଲି ମୁଁ ହୃଦୟର କରୁଣ କାହାଣୀ ଶୁଣିଲି । ପ୍ରଥମ କରି କାଲି ମୁଁ ମୋ ଅନ୍ତରର ମଳିନ ନିର୍ବାଣୋନ୍ମୁଖ ଆଲୋକ ଦେଖିଲି ।

ଆହୁରି କଅଣ ଦେଖିଲି ମା ? ଦେଖିଲି, ଖଡକୁଟି ଗଦାରେ ଗୋଟିଏ ସୁବିମଳ ପବିତ୍ର ପଦ୍ମଫୁଲ ପଡ଼ିଛି । ସେହି ବାଳିକାର ଜୀବନ ବୃତ୍ତାନ୍ତ ଶୁଣି ମୁଁ ମୁଗ୍ଧ, ଦୁଃଖିତ ଏବଂ ପରିବର୍ତ୍ତିତ । ତାକୁ ଜ୍ୟେଷ୍ଠ ଭଉଣୀ ରୂପେ ଗ୍ରହଣ କରିଛି । ତୋର ଯେ କନ୍ୟା ନାହିଁ । ତାକୁ କନ୍ୟାରୂପେ ଗ୍ରହଣ କରିବୁ ତ ?

ମୁଁ ଦୃଢ଼ତାର ସହିତ କହିପାରେଁ, ତାକୁ ଦେଖି ଓ ତାର ଜୀବନର କାହାଣୀ ଶୁଣି ନିଶ୍ଚୟ ତୁ ସଜଳ ଚକ୍ଷୁରେ ତାକୁ କୋଳକୁ ଟାଣିନେବୁ । ତୋର ଅନୁମତି ଓ ପତ୍ରକୁ ଅପେକ୍ଷା କରି କହିଲି ।—

ପତ୍ରପାଠ ଶେଷ ହେଲା । ବିପ୍ରଚରଣ ପଚାରିଲେ, ଚିଠି କଅଣ ପୋଷ୍ଟରେ ଆସିଛି ?

ବୃଦ୍ଧା କହିଲେ, ନା, ଜଣେ ଲୋକ ନେଇ ଆସିଛି । ତାଙ୍କୁ ଯେତେ ପଚାରିଲି ଦେବେନ କେଉଁଠି ଅଛି ସେ କହୁ ନାହିଁ । ଉତ୍ତରକୁ ଅପେକ୍ଷା କରି ଠିଆ ହୋଇଛି । କଅଣ ଉତ୍ତର ଲେଖିଦେବି କହିତ ବିପିନ୍ ।

ଶୈଳବାଳା ମସ୍ତକ ଅବନତ କରି ନୀରବରେ ସବୁ ଶୁଣୁଥିଲେ । କଅଣ ଭାବି କେଜାଣି ଧୀରେ ଧୀରେ ସେଠାରୁ ଚାଲିଗଲେ ।

ପ୍ରକାଶ କରିବାର କ୍ଷମତା ମୋର ନାହିଁ । ଆପଣଙ୍କୁ ମୁଁ ଅଧିକ କଅଣ କହିବି ? ମୋଓର କେଉଁ ଦୁଃଖ ଅପଣ ନ ଜାଣନ୍ତି ? ମୁଁ ଗୃହେଁ......

କଅଣ ଗୃହୁଁ ?

ଦୋଷ କ୍ଷମା କରିବେ ତ ?

କହ ।

ମୁଁ ଗୃହେଁ, ଯେତେ ଶୀଘ୍ର ପାରେ ମୋ ପାଇଁ ଗୋଟିଏ ସୁଶିକ୍ଷିତା ଭ୍ରାତୃଜାୟା ଖୋଜିବ ।

ବିପ୍ରଚରଣ ହସି ହସି କହିଲେ, ତେବେ ତୁ ଗୃହୁଁ ମୋର ସ୍ୱାଧୀନତାଟିକି ଶେଷକରି ମୋତେ ବନ୍ଧନରେ ପକାଇବୁ ?

ଯଦି ଆପଣ ଅନୁମତି ଦିଅନ୍ତି, ଯଦି ଆପଣ ଭାବନ୍ତି ଯେ ଆପଣଙ୍କର କନିଷ୍ଠର ସେ ଅଧିକାର ଅଛି ।

ଏଥିରେ ତୋର କେଉଁ ସ୍ୱାର୍ଥ ସାଧିତ ହେବ ?

ଆପଣଙ୍କର ସୁଖ ଦେଖି ମୁଁ ସୁଖୀ ହୋଇ ପାରିବି ।

ମୁଁ ବେଶ୍ ସୁଖରେ ଅଛି । ମୋ ପରି ଅନାଥ ଗୃହହୀନ ବନ୍ଧୁ ବାନ୍ଧବହୀନ ଲୋକ ପକ୍ଷରେ ବିବାହବନ୍ଧନ କେବଳ ଦୁଃଖ ପ୍ରଦାୟକ ହେବ । ବର୍ତ୍ତମାନ ବିଶ୍ୱଟା-ଯାକ ମୋର । ବିବାହ କରି ସଂକୀର୍ଣ୍ଣତାକୁ ବରଣ କରିବି କାହିଁକି ?

ଶୈଳାବାଳା କହିଲେ, ବିଶ୍ୱଟାକୁ ଯେ ଆପଣାର ବୋଲି ଗ୍ରହଣ କରେ ତାଆର ବନ୍ଧୁ ବାନ୍ଧବ, କି ଗୃହର ଅଭାବ ରହେନି ହିଁ । ସେ ଅନାଥ ହେବ ନାହିଁ । ବିବାହ କଲେ ମନ ସଂକୀର୍ଣ୍ଣ ହେବନାହିଁ । ଆପଣ ବିବାହ ନ କଲେ ମୁଁ ଆପଣଙ୍କୁ ସ୍ୱାର୍ଥପର ବୋଲି କହିବି ।

ବିପ୍ରଚରଣ ନିରୁତ୍ତର ରହିଲେ ।

ବୃଦ୍ଧା ହାତରେ ଖଣ୍ଡେ କାଗଜ ଧରି ସେଠାରେ ଉପସ୍ଥିତ ହେଲେ । ବିପ୍ରଚରଣ ହାତ ମୁହଁ ଧୋଇ ଖଣ୍ଡେ ରୁମାଲରେ ମୁହଁ ପୋଛିଲେ । ଶୈଳବାଳା ଗୃହାନ୍ତରକୁ ଯାଇ ଭଙ୍ଗାଗୁଆ, ଲବଙ୍ଗ ଓ ଅଳାଇଚ ଆଣି ଦେଲେ ।

ବୃଦ୍ଧା କହିଲେ, ଦେବେନ୍ଦ୍ର ଖଣ୍ଡେ ଚିଠି ଦେଇଛି । ଦୁଇଦିନ ହେଲା ତାର ଦେଖା ନାହିଁ । ଦୁଇଦିନ ପରେ ଏହି ଚିଠି ଖଣ୍ଡି ଦେଇଛି । ପଢ଼ ତ...।

ବିପ୍ରଚରଣ ଆଗ୍ରହରେ ପତ୍ରଖଣ୍ଡି ନେଇ ପାଠ କଲେ –

—ମା, ଲେଖିବାକୁ ଇଚ୍ଛା ହେଲେ ମଧ୍ୟ ସାହସ ହେଉନାହିଁ । ଭୟ ହେଉଛି । ମୋ ପତ୍ରଟିର ଅନ୍ୟ ଅର୍ଥ ଯେପରି ଗ୍ରହଣ ନ କରୁ । ମା, ମୁଁ ତୋର କୁଳାଙ୍ଗାର ପୁତ୍ର । ମିତ୍ର ବଂଶରେ ମୋ ପରି ଅଧମ ସନ୍ତାନ ଆଉ କେବେ ଜନ୍ମ ହୋଇ ନ ଥିବେ । ତୋର ସହସ୍ର ଉପଦେଶ ସତ୍ତ୍ୱେ ମୁଁ ଅନ୍ଧପରି, ପାଗଳପରି କୁପଥରେ ଗ୍ଲଥିଲି ।

ମୁଁ ତ ପାଗଳ ନଥିଲି ମା, ମୁ ଥିଲି ଅନ୍ଧ । ନୋହିଲେ କି କେତେକ ବନ୍ଧୁଙ୍କ ପ୍ରରୋଚନାରେ ପଡ଼ି ତୋ ମନରେ ବାରମ୍ବାର ଏତେ କଷ୍ଟ ଦେଇଥାନ୍ତି ?

ଆଜି ମୁଁ ପୁଣି ତୋଓର ଶାନ୍ତିମୟ କୋଳକୁ ଫେରିଯିବି । ମୋତେ କ୍ଷମା କରି ପାରିବୁ ତ ମା ? ତୋର କୁଳକଳଙ୍କ ପୁତ୍ର ବୋଲି ମୁଁ ନିଜେ ଲଜ୍ଜିତ । ତେଣୁ ତୋର ବିନା ଆଦେଶ, ବିନା ଅନୁମତିରେ ଘରକୁ ଫେରିବାକୁ ସାହସ ହେଉ ନାହିଁ । ତୁ ଭାବିପାରୁ ହଠାତ୍ ମୋ ମନରେ ଏପରି ପରିବର୍ତ୍ତନ ହେଲା କାହିଁକି ? ଏହାର ବିଶେଷ କାରଣ ଅଛି, ମାତ୍ର ଲେଖିବାକୁ ଲଜ୍ଜା ବୋଧ କରୁଛି, କାଳେ ତୁ ବିଶ୍ୱାସ ନ କରୁ । ତେବେ ଏତିକି କହିପାରେ, ମୁ ଯାହା ଲେଖୁଛି ସବୁ ସତ, ଟିକିଏ ହୋଇ ଛଳନା ନାହିଁ ।

ତୋର ସହସ୍ର ପ୍ରବୋଧନା, ବିପିନର ଅଜସ୍ର ତର୍କ ଓ ଶୈଳର ଛଳ ଛଳ ଚକ୍ଷୁ ଓ ନୀରବ ଅନୁରୋଧ ମୋଓର ଉନ୍ମତ୍ତ ପ୍ରାଣରେ କେବେ ପରିବର୍ତ୍ତିତ ଭାବ ଜନ୍ମାଇ ନ ଥିଲା ! ଯଦି କେବେ ମୁଁ ମୋ କଥା ଭାବି ନ ଥିଲି । କିନ୍ତୁ କାଲି, ଆହା, କିଏ ବିଶ୍ୱାସ କରିବ ?

ଜଣେ ବାଳିକାର ଉପଦେଶବାଣୀ, ଚକ୍ଷୁର ଜଳ ଓ କରୁଣ ଅନୁରୋଧ ମୋଓର ହୃଦୟକୁ ଭେଦ କଲା । ସତେ ଯେପରି ତେଜସ୍ୱିନୀ ଦେବୀମୂର୍ତ୍ତି ପରି ମୋର ଚକ୍ଷୁ ଫିଟାଇଦେଲା । ପ୍ରଥମ କରି କାଲି ମୁଁ ହୃଦୟର କରୁଣ କାହାଣୀ ଶୁଣିଲି । ପ୍ରଥମ କରି କାଲି ମୁଁ ମୋ ଅନ୍ତରର ମଳିନ ନିର୍ବାଣୋନ୍ମୁଖ ଆଲୋକ ଦେଖିଲି ।

ଆହୁରି କଅଣ ଦେଖିଲି ମା ? ଦେଖିଲି, ଖତକୁଢ଼ ଗଦାରେ ଗୋଟିଏ ସୁକୋମଳ ପବିତ୍ର ପଦ୍ମଫୁଲ ପଡ଼ିଛି । ସେହି ବାଳିକାର ଜୀବନ ବୃତ୍ତାନ୍ତ ଶୁଣି ମୁଁ ମୁଗ୍ଧ, ଦୁଃଖିତ ଏବଂ ପରିବର୍ତ୍ତିତ । ତାକୁ ସ୍ନେହ ଭଉଣୀ ରୂପେ ଗ୍ରହଣ କରିଛି । ତୋର ଯେ କନ୍ୟା ନାହିଁ । ତାକୁ କନ୍ୟାରୂପେ ଗ୍ରହଣ କରିବୁ ତ ?

ମୁଁ ଦୃଢ଼ତାର ସହିତ କହିପାରେଁ, ତାକୁ ଦେଖି ଓ ତାର ଜୀବନର କାହାଣୀ ଶୁଣି ନିଶ୍ଚୟ ତୁ ସଜଳ ଚକ୍ଷୁରେ ତାକୁ କୋଳକୁ ଟାଣିନେବୁ । ତୋର ଅନୁମତି ଓ ପତ୍ରକୁ ଅପେକ୍ଷା କରି ରହିଲି ।—

ପତ୍ରପାଠ ଶେଷ ହେଲା । ବିପ୍ରଚରଣ ପଚାରିଲେ, ଚିଠି କଅଣ ପୋଷ୍ଟରେ ଆସିଛି ?

ବୃଦ୍ଧା କହିଲେ, ନା, ଜଣେ ଲୋକ ନେଇ ଆସିଛି । ତାଙ୍କୁ ଯେତେ ପଚାରିଲି ଦେବେନ କେଉଁଠି ଅଛି ସେ କହୁ ନାହିଁ । ଉତ୍ତରକୁ ଅପେକ୍ଷା କରି ଠିଆ ହୋଇଛି । କଅଣ ଉତ୍ତର ଲେଖିଦେବି କହିତ ବିପିନ୍ ।

ଶୈଳବାଳା ମସ୍ତକ ଅବନତ କରି ନୀରବରେ ସବୁ ଶୁଣୁଥିଲେ । କଅଣ ଭାବି କେଜାଣି ଧୀରେ ଧୀରେ ସେଠାରୁ ଚାଲିଗଲେ ।

ବିପ୍ରଚରଣ ଚନ୍ଦ୍ରାକର କହିଲେ, ଲେଖି ଦିଅନ୍ତୁ, ତୁ ମୋର ପୁଅ, ତୋତେ କ୍ଷମା କରିବାକୁ ମତେ ପଡ଼ିବ ନାହିଁ । ପୁଅର ଦୋଷ ସବୁବେଳେ ମା ନିକଟରେ କ୍ଷମଣୀୟ । ପତ୍ର ପ୍ରାପ୍ତି ମାତ୍ରେ ସୁନା ପୁଅ ପରି ଘରକୁ ଫେରିଆ; ଅତୀତକୁ ଭୁଲି ଯା । ତୁ ଯାହା ନିକଟରେ ଅପରାଧୀ, ସେହି କୋମଳମନା ଶୈଳ ନିକଟରେ କ୍ଷମା ପ୍ରାର୍ଥନା କର । ସେ ତୋତେ କ୍ଷମା କରି ପାରିବ । ଯେଉଁ ବାଳକାଟିର ବିଷୟ ଲେଖିଥିଲୁ, ତା ବିଷୟରେ ତୋ ମୁହଁରୁ ସବୁ କଥା ନ ଶୁଣିଲେ ମୁଁ କପରି କଅଣ କହିବ ? ତୁ ଆସିଲେ ସବୁ କଥା ସ୍ଥିର ହେବ । —

ବିପ୍ରଚରଣଙ୍କର ଉପଦେଶ ବୃଦ୍ଧାଙ୍କ ମନକୁ ପାଇଲା । ସେ ମୁଣ୍ଡ ହଲାଇ ହଲାଇ କହିଲେ, ଠିକ୍, ଏହାହିଁ ଲେଖୁଛୁ । ମୁଁ ଭାବୁଛି, ସେ ନିଶ୍ଚୟ ଆସିବ । ବିପିନ୍ ତୁ ଥିବୁ ତ ?

ନା । ମୁଁ ଆଜ ରାତି ଗାଡ଼ିରେ ଚାଉଳ ଯୋଗାଡ଼ କରିବାକୁ ମୋଫସଲ୍ ଯାଉଛି । ଫେରୁ ଫେରୁ ଚାରି ପାଞ୍ଚ ଦିନ ଲାଗିବ ।

ଆଚ୍ଛା ଯା, କିନ୍ତୁ କଲିକତା ଫେରି ନିଶ୍ଚୟ ଆଗ ମୋ ପାଖକୁ ଆସିବୁ ।

ହଁ, ଆସିବି ।

## ୧୪

ମୁଁ ତମ ନିକଟରେ ଅପରାଧୀ ଶୈଳ, ଆଜ ତମ ପାଖରେ ମୁଁ ମୋର ସବୁ ଅପରାଧ ସ୍ୱୀକାର କରୁଛି । ତମ ମନରେ ମୁଁ ବହୁତ କଷ୍ଟ ଦେଇଛି । ପାପୀ ମୁଁ, ଅଧମ ମୁଁ, କ୍ଷମାକର ।— ଦେବେନ୍ଦ୍ରବାବୁ ସଜଳ ଚକ୍ଷୁରେ ଶୈଳବାଳାଙ୍କର ହାତ ଧରିଲେ । ତାଙ୍କ ହୃଦୟର ସମସ୍ତ ଆକୁଳତା ଦୀପ୍ତିହୀନ ଚକ୍ଷୁରୁହିଁ ଫୁଟି ଉଠୁଥିଲା । ଅନୁତାପର କୁହେଳିକାରେ ତାଙ୍କର ମୁଖଟି ଢାଙ୍କି ହୋଇଛି । ସେ ନୀରବ ହୋଇ ଶୈଳବାଳାଙ୍କର ସଜଳଚକ୍ଷୁ ଓ ଗମ୍ଭୀର ମୁଖକୁ ଅନାଇଁ ରହିଲେ ।

ରାତ୍ରି ପ୍ରାୟ ଦଶଟା । ଅବରୁଦ୍ଧ ପ୍ରକୋଷ୍ଠ ଭିତରେ ଓ୍ୱାଲ ଲ୍ୟାମ୍ପଟି ଉଜ୍ଜ୍ୱଳ ଜଳୁଛି । ପଲଙ୍କର ବାଡ଼କୁ ଆଉଜି ଶୈଳ ନତମସ୍ତକ ହୋଇ ବସିଛନ୍ତି । ଦେବେନ୍ଦ୍ର ପଲଙ୍କ ଉପରେ ବସି ଉଦ୍‌ବିଗ୍ନତାର ସହିତ ତାଙ୍କର ଆଲୋକିତ ମୁଖକୁ ଚାହିଁଛନ୍ତି ।

ଶୈଳବାଳା ନିରୁତ୍ତର । ଆନନ୍ଦ, ଅଭିମାନ, ଦୁଃଖ ଓ ଆକୁଳତା ତାଙ୍କର କୋମଳ ମନକୁ ଆନ୍ଦୋଳିତ କରୁଛି । ମୁଖରୁ ବାକ୍ୟ ସ୍ଫୁରୁ ନାହିଁ ।

ଦେବେନ୍ଦ୍ର କହିଲେ, ମୁଁ ଜାଣେ ଶୈଳ, ତମେ ବିନା ଆପତ୍ତିରେ ତମର ଅଧମ ପଥଭ୍ରଷ୍ଟ ସ୍ୱାମୀକୁ କ୍ଷମା କରିପାରିବ, ମାତ୍ର ଏତିକରେ ତମର କର୍ତ୍ତବ୍ୟ ଶେଷ ହୋଇ ପାରିବ ନାହିଁ । ଯାହାର ଛଳଛଳ ଚକ୍ଷୁ ଦେଖି ଯାହାର ଜୀବନର କରୁଣ କାହାଣୀ ଶୁଣି

ଓ ଯାହାର ଅମୃତ ଉପଦେଶ ହୃଦୟରେ ଗ୍ରହଣ କରି ମୁଁ ନରକପଥରୁ ଫେରି ଆସିଛୁ, ଯାହାକୁ ଅଭୟ ଦେଇ ନିଜର ଭଉଣୀରୂପେ ନରକ ମଝିରୁ ଉଦ୍ଧାର କରି ଗୃହକୁ ଆଣିଛୁ, ସେହି କୁଂଦଲତା ପ୍ରତି କଅଣ ତମର କୌଣସି କର୍ତ୍ତବ୍ୟ ନାହିଁ ?...ନୀରବ ରହିଲ ଯେ ?

ଧୀରେ ଧୀରେ ଶୈଳବାଳା ମୁହଁ ଟେକି କହିଲେ, କିନ୍ତୁ ବେଶ୍ୟା ଘରେ... ।

ଶୈଳ, ଭୁଲ ଧାରଣା ତମର । ପଙ୍କମୟ ପୁଷ୍କରିଣୀ ଭିତରେ ପଦ୍ମ ଦେଖା ଦିଏ ! ସଂଦେହର କାରଣ ନାହିଁ । ଶୈଳ ! ତମେ ଯଦି ସମସ୍ତ ଘଟଣା ଶୁଣିବ, ନିଶ୍ଚୟ ତମର ମନର ଧାରଣା ବଦଳିଯିବ । ତମେ ଶୁଣ

ଦେବେଂଦ୍ର ବାବୁ ଗୋଟି ଗୋଟି କରି ପ୍ରତ୍ୟେକ ଘଟଣା ଶୈଳବାଳାଙ୍କୁ କହିଲେ । ଶୈଳବାଳା ମନ୍ତ୍ରମୁଗଧା ପରି ଧୀର ସ୍ଥିର ହୋଇ ସବୁ ଶୁଣିଲେ । ତାଙ୍କର କୋମଳ ପ୍ରାଣରେ କୁଂଦଲତାଙ୍କର ଅତୀତ ଦୁଃଖ କାହାଣୀ କଠୋରାଘାତ କଲା । ଚକ୍ଷୁରେ ଲୋତକ ଦେଖା ଦେଲା ।

ସ୍ୱାମୀଙ୍କର ପଦତଳେ ମସ୍ତକ ଲଗାଇ କହିଲେ, ମୋତେ କ୍ଷମାକର । ମୋର ଧାରଣା ଭୁଲ ଥିଲା ମୁଁ ଏଥର ବୁଝି ପାରିଛୁ । ଦେବତା ନିକଟରେ ପଡ଼ିଲେ ମଧ୍ୟ ଦେବତା । କୁଂଦଲତା ଦେବୀ, ମୁଁ ତାକୁ ମୋର ନଣଂଦରୂପେ ଗ୍ରହଣ କରିବି ।

କୁଂଦଲତା ଦେବେଂଦ୍ର ବାବୁଙ୍କ ଗୃହରେ ଆଶ୍ରୟ ନେଇ ନିଶ୍ଚିନ୍ତରେ ସମୟ କାଟିଲେ । ପ୍ରଥମ କେତେଦିନ ଅବଶ୍ୟ ତାଙ୍କୁ ଅଲଗା ଅଲଗା ଲାଗିଲା । ସ୍ଥାନ ଓ ଅବସ୍ଥା ପରିବର୍ତ୍ତନରେ ଏପରି ହୁଏ । କିଛି ଦିନପରେ ଆରେଇ ଗଲା ।

ଶୈଳବାଳାଙ୍କର ସ୍ନେହପୂର୍ଣ୍ଣ ହସ ହସ କଥା ଓ ସରଳ ଆତ୍ମୀୟ ବ୍ୟବହାରରେ ସେ ମୋହିତ ହେଲେ । ଅତୀତକୁ ମନରୁ ପୋଛି ପକାଇବାକୁ ଚେଷ୍ଟାକଲେ । ମଣିଷ ଯାହା ନିଜେ ଅନୁଭବ କରି ଥାଏ ଜୀବନ ଥିବାଯାଏ ତାହା ସେ ଭୁଲିପାରେ ନାହିଁ । ଭୁଲିବାକୁ ଚେଷ୍ଟା କଲେ ତାହା ଉହାଇ ଉହାଇ ଆସି ମନ ଭିତରେ ଘଣ୍ଟା ଚକଟାର ଉତ୍ପାତ ଆରମ୍ଭ କରେ । ଏଇଥିପାଇଁ ସମୟ ସମୟରେ କୁଂଦଲତା ଗମ୍ଭୀର ହୁଅନ୍ତି । ଅନିର୍ଦ୍ଦିଷ୍ଟ ଭାବରେ ଗୋଟିଏ ପଦାର୍ଥକୁ ଚାହିଁ ଅଥବା ଆକାଶକୁ ଚାହିଁ ସେ କେତେ କଅଣ ଭାବନ୍ତି । ଆଖିରୁ ଲୁହ ଧାର ଗଡ଼ିପଡ଼େ ।

ଶୈଳବାଳାଙ୍କୁ ତାଙ୍କର ଡର । ସେ ଆସି ନିକଟରେ ଉପସ୍ଥିତ ହେଲେ କୁଂଦଲତା ତରତର କରି ଆଖିରୁ ଲୁହ ପୋଛି ହସିବାକୁ ଚେଷ୍ଟା କରନ୍ତି । ଶୈଳ ସବୁ ଠଉରାଇ ନିଅନ୍ତି । ସେ ଚତୁରା । ଦୁଃଖର କାରଣ ପଚାରିଲେ ଜାଲେ ମନରେ ଆହୁରି ଅଧିକ ଦୁଃଖ ହେବ ଏହି ଭୟରେ ଶୈଳବାଳା କିଛି ନ ପଚାରି ନାନାପ୍ରକାର ହାସ୍ୟୋଦ୍ଦୀପକ କଥା କହି କୁଂଦଲତାଙ୍କୁ ହସାନ୍ତି ।

କୁନ୍ଦଲ । ଦେବେନ୍ଦ୍ର ବାବୁଙ୍କୁ ଦାଦା ବୋଲି ଡାକନ୍ତି । ଶୈଳବାଳା ବୋଉଦିଦିର ଆସନ ମାଡି ବସନ୍ତି । ବୁଢ଼ାଙ୍କୁ ଡାକନ୍ତି ମା ବୋଲି । ବୁଢ଼ୀ କୁନ୍ଦଲତାଙ୍କୁ କନ୍ୟାପରି ଦେଖନ୍ତି ଓ ସେହି ଅନୁରୂପେ ଭଲପାନ୍ତି । କୁନ୍ଦ ଯେପରି ପରର ଘର ବୋଲି ମନରେ ସଙ୍କୋଚ ନ ଆଣେ, ସେଥିପ୍ରତି ସେ ଯତ୍ନଶୀଳା । ଶୈଳବାଳାଙ୍କୁ ଏ ବିଷୟରେ ସେ ସତର୍କ କରିଯାନ୍ତି । ସେ ଭାବନ୍ତି, ଦେବେନ୍ଦ୍ରଙ୍କୁ ସେ ଫେରି ପାଇଛନ୍ତି କେବଳ କୁନ୍ଦଲତାଙ୍କ ପାଇଁ । ଉପଯୁକ୍ତ ସ୍ଥାନରେ ଏବଂ ଠିକ ସମୟରେ ଯଦି କୁନ୍ଦଲତା ତାଙ୍କ ପ୍ରାଣପ୍ରତିମ ପୁତ୍ରକୁ ସଦୁପଦେଶ ଦେଇ ସତ୍‌ପଥ ଦେଖାଇ ପଛକୁ ଫେରାଇ ନ ଥିଲେ ମିତ୍ରବଂଶର ଲୁପ୍ତପ୍ରାୟ ମାନମର୍ଯ୍ୟାଦା ଏକାଥରେ ଲୋପ ପାଇଥାନ୍ତା । ସଂସାର ଛାରଖାର ହୋଇଥାନ୍ତା ।

ଏହି ବିଷୟ ଚିନ୍ତାକରି ବୁଢ଼ୀ କୁନ୍ଦଲତାଙ୍କ ପ୍ରତି ଆକୃଷ୍ଟ । ସେ କୃତଜ୍ଞତା ପାଶରେ ଆବଦ୍ଧ । କିପରି ଏହି କୃତଜ୍ଞତା ପାଶରୁ ନିଜକୁ ଉଦ୍ଧାର କରି ପରୋପକାରୀର ଉପକାର ସାଧନ କରିବେ, ଏହାହିଁ ତାଙ୍କର ଏକମାତ୍ର ଚିନ୍ତା । ଦାସଦାସୀମାନଙ୍କ ଉପରେ ବୁଢ଼ୀ କଡ଼ା ହୁକୁମ ଜାରି କରିଥାନ୍ତି । ଯେପରି ସେମାନେ କୁନ୍ଦଲତାଙ୍କର ସୁବିଧା ଅସୁବିଧା ପ୍ରତି ସତତ ନଜର ରଖନ୍ତି ।

ସୁଖେ ଦୁଃଖେ କେତେଦିନ କଟିଗଲା । ଶୈଳବାଳା ଓ କୁନ୍ଦଲତା ଖେଳ କୌତୁକରେ ସମୟ କାଟୁଥାନ୍ତି । କେବେ କେବେ ଶୈଳବାଳା ଶିକ୍ଷୟିତ୍ରୀ ହୋଇ କୁନ୍ଦଙ୍କୁ ପଢ଼ାନ୍ତି । ପାଠ ନ ଆସିଲେ ରାଗିଯାଇ ନଣନ୍ଦର ଗାଲଟିପି ମୃଦୁହାସ୍ୟ କରି କହନ୍ତି, ଭଗବାନ୍ ତମକୁ ପଣ୍ଡିତ କରି ଜନ୍ମ ନ ଦେଲେ ଯାହା, ଆଜକାଲି କାଳର ପିଲା ହୋଇ ଯେ ଦି ଅକ୍ଷର ଲେଖି ନ ଜାଣେ, କି ଦିପଦ ପଢ଼ି ନଜାଣେ, ମଲାମର ସେ କି ଝିଅ ଗୋ । ଆଜକାଲିକାର କେଉଁ ପାଠୁଆ ବାବୁଟା ଆସି ତମର ହାତ ଧରିବ ଦେଖିବ ରହ ।

କୁନ୍ଦ ମୁଖ ଗମ୍ଭୀର କରି ଦୁଃଖିତା ହୋଇ କହନ୍ତି, ନୋହୁଲେ ତମର ହାତ ଧରୁ ।

ହଉ ଏ କଥା ତମ ଦାଦାଙ୍କ ଆଗରେ ପଡ଼ିବ ।

କୁନ୍ଦ ଲଜ୍ଜିତା ହୋଇ କହନ୍ତି, ତମର ଏ କି ବୁଦ୍ଧି, ସବୁ କଥା କଅଣ ଦାଦାଙ୍କ ଆଗରେ ପଡ଼ିବା ଉଚିତ ?

ବୁଣାବୁଣି କାମରେ କୁନ୍ଦଲତାଙ୍କର ଦକ୍ଷତା ଅଛି । ମୋଜା ବୁଣାରେ, କାର୍ପେଟରେ ନାନାପ୍ରକାର ଫୁଲ, ଗଛପତ୍ର କରିବାରେ ତାଙ୍କୁ ସହଜରେ କିଏ ହଟାଇଦେବ ଏ କଥା ନୁହେଁ । ଶୈଳ କୁନ୍ଦଲତାଙ୍କୁ ଲେଖାପଢ଼ା ଶିଖାଇଲାବେଳେ ଥଟ୍ଟା କରନ୍ତି । କୁନ୍ଦ ତାଙ୍କୁ ବୁଣା ବୁଣି ଶିଖାଇଲାବେଳେ ନକଲ କରି କହନ୍ତି, ମାଇପିଜାତି, ଆମେ କଅଣ ପାଠପଢ଼ି ଜଜ୍, କଲେକ୍‌ଟର ହବୁ ନା ଲେକ୍‌ଚରର ହବୁ ମ ?

ଏ କାର୍ପେଟ ବୁଣି କଅଣ କରିବ ଶୁଣେ !

କାହିଁକି, ଦାଦାଙ୍କୁ ମାଆଙ୍କୁ ଉପହାର ଦେବୁ । ତୁଣ୍ଡରୁ ପଦେ ପ୍ରଶଂସା ଶୁଣିଲେ ମନ ଖୁସି ହେବ ।

ଏବେ ଶୈଳ କୁନ୍ଦଲତାଙ୍କୁ ବୁଣା ପଢ଼ାଉଛନ୍ତି, କୌତୁକରେ କେତେ କଥାଭାଷା ହୋଇ ହସରେ ଘର ଫଟାଇ ଦେଉଛନ୍ତି, ହଠାତ୍ କି ଖିଆଲ ଆସିଲା କେଜାଣି ସେ ପଚାରିଦେଲେ କୁନ୍ଦ କହିତ, ତମେ ଯେ ଏତେଦିନ ବେଶ୍ୟାଘରେ ଥିଲ ତମ ପାଖକୁ କେହି ଭଦ୍ରଲୋକ କେବେ ଆସି ନାହାନ୍ତି କପରି ?

ମୁଣ୍ଡରେ ବଜ୍ର ପଡ଼ିଲାପରି କୁନ୍ଦ ନିର୍ବାକ୍ ନିସ୍ପନ୍ଦ ହୋଇ ସ୍ଥିରଚକ୍ଷୁରେ ଶୈଳବାଳାଙ୍କୁ ଗୁହିଁ ରହିଲେ । ମନଭିତରେ ବିଦ୍ୟୁତ୍ ଗତିରେ କେତେ ଚିନ୍ତା ଘନଘନ ଖେଳିଗଲା । ସେ ଅତି କରୁଣ ଦୃଷ୍ଟିରେ ଶୈଳବାଳାଙ୍କୁ ଗୁହିଁ କଅଣ କହି ଉତ୍ତର ଦେବେ ତାହାହିଁ ଚିନ୍ତା କଲେ ।

ଶୈଳ ପ୍ରଶ୍ନଟିଏ ପଚାରିଦେଇ ଦବିଗଲେ । ସ୍ୱାମୀଙ୍କ ନିକଟରେ ପ୍ରତିଜ୍ଞା କରିଥିଲେ କୁଂଦଲତାଙ୍କୁ ଏ ବିଷୟରେ କେବେ କିଛି ପଚାରିବେ ନାହିଁ, କିନ୍ତୁ ପଚାରି ତ ଦେଇଛନ୍ତି, କଥା ଫେରାଇ ଆଣିବାର ଉପାୟ ନାହିଁ । ସେ ଲଜ୍ଜିତା ହୋଇ ସଜଳ ଚକ୍ଷୁରେ ଭୂମିରେ ରେଖା ଅଙ୍କନ କଲେ ।

କୁଂଦ ପ୍ରକୋଷ୍ଠର ବାହାରକୁ ଥରେ ଅନାଇ ମନ ଦୃଢ଼କରି କହିଲେ, ବୋଉଦି, ଅନେକ ଭଦ୍ରଲୋକ ଆସିଛନ୍ତି । ମୁଁ ତାର ତାଲିକା ରଖି ନାହିଁ । ତେବେ ଏତିକି କହିପାରେ, ଯେଉଁ ଭଦ୍ରଲୋକ ହସି ହସି ମୋ ପାଖକୁ ଆସନ୍ତି, ସେ ଫେରନ୍ତି କାନ୍ଦି କାନ୍ଦି ।

କାହିଁକି କୁଂଦ ?

ମୋର ଦୁଃଖ ଶୁଣି ନିଜର ମଂଦ ସ୍ୱଭାବ ପାଇଁ ଅନୁତାପ କରି ଫେରନ୍ତି । ସତ କହୁଛି, ଯେଉଁମାନେ ଆସିଥାନ୍ତି ପାଗଳହୋଇ, ବେଶ୍ୟାର ପ୍ରେମ ପାଇବାକୁ, ତାଙ୍କୁ ମୁଁ ସାମାନ୍ୟ କେତୋଟି କଥାରେ ବେଶ୍ୟାର ପ୍ରେମଟା ଯେ କି ପ୍ରକାର, ଆଉ ପ୍ରକୃତ ପ୍ରେମ ଓ ବେଶ୍ୟାର ପ୍ରେମ ଭିତରେ ପ୍ରଭେଦ କଅଣ ବୁଝାଇ ଦିଏ । ଯେ ଆସିଥାଏ ମୋତେ ଆଲିଙ୍ଗନ କରିବାକୁ ସେ ସଜଳ ଚକ୍ଷୁରେ ଫେରିଯାଏ । ଗଲାବେଳେ ପ୍ରତିଜ୍ଞା କରିଯାଏ ଆଉ କେବେ ବେଶ୍ୟାଘରେ ପାଦ ପକାଇବ ନାହିଁ ।

ଶୈଳ କହିଲେ, ନିରାଶ୍ରୟା ଦେଖି ଯେଉଁ ବେଶ୍ୟାଟି ତମକୁ ହାବଡ଼ା ଷ୍ଟେସନରୁ ଦୟାକରି ଘରେ ଆଶ୍ରୟଦେବାକୁ ନେଇ ଯାଇଥିଲା, ଗରାଖ ଫେରିଯିବାର ଦେଖି ସେ ତମକୁ ଗାଳିଦିଏ ନାହିଁ ?

ଗାଳିଦେବ କାହିଁକି ? ଯେ ଫେରିଯାଏ ସେ ଯେ ମୋ କଥାର ମୂଲ୍ୟ ସ୍ୱରୂପ ଯାହା ଆଣିଥାଏ ସେତିକ ପାଖରେ ଥୋଇଦେଇ ଯାଏ ।

ଶୈଳ ଟେହ୍ଲାରେ କୁଂଦଲତାଙ୍କୁ ଆଲିଙ୍ଗନ କରି ତାଙ୍କର ମୁଖ ଚୁମ୍ବନ କରୁ କରୁ କହିଲେ, ଏତେ ଲୋକଙ୍କୁ ସିନା ଠକି ଦେଇଛ, ମତେ କେମିତି ଠକିବ ଦେଖିବ ଭଲ ! ଏଇତ ଆଲିଙ୍ଗନ କଲି, ଏଇତ...କହି ଚୁମ୍ବନ କଲେ ।

ବାହୁ ବନ୍ଧନରୁ ମୁକ୍ତ ହୋଇ କୁନ୍ଦ ଗମ୍ଭୀର ହୋଇ କହିଲେ, ପାଉଣା ?

ମୁଁ ପାଉଣା କୋଉଁଠୁ ପାଇବ ଯେ ଦେବ । ଏଠି ମୋର କେଉଁ କଥାରେ ଅଧିକାର ଅଛି ? ତମ ଘର, ସବୁ ତମର ।

କଅଁଳକୁହା କଥା ମୁଁ ଜାଣେ ନାହିଁ । ପାଉଣା ଦିଅ । ଭାରି ତ ଗୃହିଁ ।

ମୁହଁ ଶୁଖାଇ ଶୈଳ କହିଲେ, ମୋ ପାଖରେ ଧନ ନାହିଁ... ।

ମୁଁ କଣ ଧନ ଗୃହେଁ ବୋଉଛ ?

ଆଉ କଅଣ ମନ ? ପ୍ରେ—ମ ? ନାହିଁ ଗୋ ନାହିଁ, ମୋ ପାଖରେ ସେ ସବୁ କିଛି ନାହିଁ । ତମ ଦାଦା ସବୁ ନେଇ ଯାଇଛନ୍ତି । ଯା ମୋ ନାମରେ ଖଚକହି ତାଙ୍କଠୁଁ ଅଣିବ ।

ମଲ ନାହିଁ— ।

ତେବେ ରହ, ବିପିନ୍ ଦା ଚିଠି ଦେଇଛି ଆଜି ରାତିରେ ଆସି ପହଞ୍ଚିବ । ଆଗରୁ ସଜବାଜ ହୋଇଥା । ମୋ ପାଇଁ ତମକୁ ସବୁ ପାଉଣା ସେ ଦେବେ । ଧନ, ମନ, ଜୀବନ, ପ୍ରେମ—

ଚୁପ୍, ତମ ଦାଦାଙ୍କ ମୁହଁରେ ନିଆଁ, ଆଉ ତମ ମୁହଁରେ ଟିଆଁ । କୁଂଦଲତା ଆର ଘରକୁ ଗୃଲିଗଲେ ।

ଶୈଳବାଳା ଏକୁଟିଆ ବସି ଚିନ୍ତା କଲେ । ଯାହାକୁ ଗୃହରେ ଆଶ୍ରୟ ଦେବାକୁ କହି ତାଙ୍କର ସ୍ୱାମୀ ଆଗପଛ କିଛି ବିଗ୍ୱର ନ କରି ନେଇ ଆସିଛନ୍ତି, କେବଳ ମୁଠିଏ ମୁଷ୍ଟିରେ ଖାଇବାକୁ ଦେଇ ଖଣ୍ଡେ ପିନ୍ଧିବାକୁ ଦେଲେ କଅଣ ତାଙ୍କର କର୍ତ୍ତବ୍ୟ ଶେଷହେଲା ବୋଲି ସେ ମନେ କରନ୍ତି ? ସେ କଅଣ ଜାଣନ୍ତି ନାହିଁ ମଣିଷର ମନ ସବୁବେଳେ ସମାନ ନ ଥାଏ । ଆଜି ଯେଉଁ କୁଂଦଲତାଙ୍କର ନିଷ୍କଳଙ୍କ ଆଦର୍ଶ ଚରିତ୍ର ବଳରେ ସେ ନିଜକୁ ପ୍ରବୃତ୍ତିର ତାଡ଼ନାରୁ ରକ୍ଷା କରି ପାରିଛନ୍ତି, ସେହି କୁଂଦଲତାଙ୍କର ମନ ହୁଏତ କାଲି ବଦଳି ଯାଇପାରେ । ରକ୍ତ ମାଂସର ଦେହ ତ ଏ ମଣିଷ ! ଯୌବନର ଆରମ୍ଭ । ସୁଦୀର୍ଘ ଯୌବନ ଆଗରେ ଉଲଗ୍ନ ହୋଇ ପଡ଼ିଛି । ଯୌବନର ଜ୍ୱଳନ୍ତ ନିଆଁକୁ ଲିଭାଇବା ସହଜ କଥା ନୁହେଁ ! ଆଗରୁ ହୋଇ ପ୍ରତିକାର ବାଞ୍ଛନୀୟ । ଆହା, ହତଭାଗିନୀର କୋମଳ ଜୀବନ ଉପରେ କେତେ ଝଡ଼-ବତାସ ବହିଗଲାଣି ! ଲାଞ୍ଛିତ ପରି ନଇଁପଡ଼ି ସବୁ ଦୁଃଖ ସହି ଆସିଛି । ଶୈଳବାଳା ଦୀର୍ଘ ଶ୍ୱାସ ଛାଡ଼ିଲେ । ପରମୁହୂର୍ତ୍ତରେ ତାଙ୍କର ମୁଖ ଉଜ୍ଜ୍ୱଳ ଦେଖାଗଲା । କେଜାଣି କେଉଁ ଭାବ ଆସି ତାଙ୍କର ମନରେ ଉଦୟ ହେଲା ।

ଶାଶୁ ଆସି ଡାକଲେ, ଶୈଳ, ବିପିନ୍ ଆସିଲଣି ଲୋ ! ତତେ ଡାକୁଛି । ତୁ ତ ଏଠି, କୁନ୍ଦ କାହିଁ ?

## ୧୪

ଶୈଳବାଳାଙ୍କର ସମସ୍ତ କୌଶଳ ପଣ୍ଡ ହେଲା । ସେ ଭାବିଥିଲେ କୁନ୍ଦଲତାକୁ ବିପ୍ରଚରଣଙ୍କ ସଙ୍ଗେ ଅବାଧରେ ମିଳାମିଶା କରିବାକୁ ଛାଡ଼ିଦେଲେ ନିଶ୍ଚୟ ତାଙ୍କ ମନରେ ଟିକିଏ ପରିବର୍ତ୍ତନ ଆସିବ । ତେଣୁ ଯେତେବେଳେ ବିପ୍ରଚରଣ ଆସନ୍ତି, ଶୈଳ ହସିକରି ପଦେ ଅଧେ ଆଳାପ କରି ଅନ୍ୟ କାର୍ଯ୍ୟ ବାହାନାରେ ସେଠାରୁ ଚାଲିଯାନ୍ତି । କୁନ୍ଦଲତାଙ୍କ ହାତରେ ଜଳଖିଆ, ପାନ ଇତ୍ୟାଦି ପଠାଇ ଦିଅନ୍ତି । ନିଜେ ଛକି ଛକି ଅନ୍ୟ ଘରେ ବସି ଦୁଇଜଣଙ୍କର କଥୋପକଥନ ଶୁଣୁଥାନ୍ତି ।

କଅଣ ଶୁଣନ୍ତି କେଜାଣି ତାଙ୍କ ମୁହଁ ଫିକ୍‌କା ପଡ଼ିଯାଏ । ଅନ୍ୟମନସ୍କ ହୋଇ କପାଳରେ ହାତ ବୁଲାନ୍ତି । କେବେ କେବେ କୁନ୍ଦଲତାଙ୍କ ଉପରେ ମନେ ମନେ ରାଗକରି ଭାବନ୍ତି, ନିହାତି ଓଲମୀଠା । ଅଙ୍ଗରେ ତରଳ ଯୌବନର ଏତେ ଶୋଭା ଧରି ଜଣେ ଯୁବକର ଆଖି ଅଟକାଇ ପାରିଲା ନାହିଁ !

ବିପ୍ରଚରଣଙ୍କ ଉପରେ ବିରକ୍ତ ହୋଇ ଭାବନ୍ତି, ଆଉ, ତମେ ବି ସେମିତି ବିପିନ୍‌ଭାଇ । ତମର ଅନ୍ତରରେ କେବେ ପ୍ରେମର ତରଙ୍ଗ ଛୁଟେ ନାହିଁ ? କେଡ଼େ ଶୁଷ୍କ, କେଡ଼େ ନୀରସ ତମେ !

କୁନ୍ଦଲତା ଶୈଳବାଳାଙ୍କ ମନର କଥା ବୁଝି ପାରନ୍ତି । ସ୍ଥାନ ଓ ସମୟ ତାଙ୍କ ମନକୁ ଅବଶ୍ୟ ବଦଳାଇ ଦେଇଛି, ନୋହିଲେ, ବିପ୍ରଚରଣ କିଏ ସେ ! କୁନ୍ଦଲତା ସରମରଙ୍ଗା-ମୁଖରେ ଆଦେଶ ପାଳନ କରନ୍ତି । ବିପ୍ରଚରଣ ଆନନ୍ଦରେ, ଆଗ୍ରହରେ କୁନ୍ଦଲତାଙ୍କ ଠାରୁ ଗୁଆ ମସଲା ଗ୍ରହଣ କରନ୍ତି । କେବେ କେବେ ଶୈଳବାଳା କିମ୍ବା ଦେବେନ୍ଦ୍ର ବାବୁଙ୍କ ବିଷୟରେ ପଦେ ଅଧେ ପଚାରି ଦିଅନ୍ତି । କୁନ୍ଦ ଧୀରେ ଧୀରେ ପ୍ରଶ୍ନର ଯଥାର୍ଥ ଉତ୍ତର ଅଳ୍ପ କଥାରେ ଦିଅନ୍ତି ।

ଶୈଳବାଳା ବୁଝିଲେ, ଯଦି ସେ ନିଜେ ଏହି ଦୁଇଜଣଙ୍କର ମଧ୍ୟବର୍ତ୍ତିନୀ ହୋଇ ଆଳାପ ଏବଂ କାର୍ଯ୍ୟର ଗତି ନ ବଦଳାଇବେ ତ କିସ୍ମିନକାଳେ ତାଙ୍କ ମନକଥା ଫଳିବ ନାହିଁ । ଲୁହା ଯେପରି, କମାର ବି ସେହିପରି ! ଏହି ବିଷୟ ସ୍ଥିର କରି ସେ ତାଙ୍କର କୌଶଳକୁ ଅନ୍ୟ ଢଙ୍ଗରେ ବାଗେଇଲେ । ଏଥର ବିପ୍ରଚରଣ ଆସିଲେ ଶୈଳ ନିଜେ ତାଙ୍କର ଚର୍ଚ୍ଚା କରନ୍ତି । କୁନ୍ଦଙ୍କୁ ଏହି ଆଦେଶ କରିଥାନ୍ତି ଯେ ସେ ଯାହା କହିବେ କୁନ୍ଦଲତା ବିନା କାଳବ୍ୟୟରେ ପାଳନ କରିବେ ।

ବିପ୍ରଚରଣ ଖାଇ ବସନ୍ତି, ଶୈଳବାଳାଙ୍କ ଆଦେଶରେ କୁନ୍ଦଲତା ପଙ୍ଖାଧରି ବିଞ୍ଚନ୍ତି । ଶୈଳବାଳା ନିଜେ ପରସନ୍ତି । କେବେ କେବେ ବିପ୍ରଚରଣଙ୍କ ଆଗରେ କୁନ୍ଦକୁ ଥଟ୍ଟାକରି ପଦେ ଅଧେ କହନ୍ତି । କେବେ ଅବା ଗମ୍ଭୀର ଭାବରେ କୁନ୍ଦଲତାଙ୍କର ବୁଦ୍ଧି, ଗୁଣ ଓ କାର୍ଯ୍ୟକଳାପର ପ୍ରଶଂସା କରନ୍ତି । କୁନ୍ଦଲତାଙ୍କର ସରଳ ପ୍ରକୃତିକୁ ଓଲମୀ ଓ ସୁନ୍ଦର ମୁହଁଟିକୁ ଅସୁନ୍ଦର କରି ଦାଦାଙ୍କୁ ସାକ୍ଷୀ ରଖି ବର୍ଣ୍ଣନା କରନ୍ତି । କେତେ ନିନ୍ଦାକରି କହନ୍ତି, ମାତ୍ର ତାଙ୍କ ନିନ୍ଦା ଭିତରୁ କୁନ୍ଦଲତାଙ୍କର ପ୍ରଶଂସା ଫୁଟି ଉଠୁଥାଏ ।

ବିପ୍ରଚରଣ ହସହସ ମୁଖରେ ସବୁ ଶୁଣୁଥାନ୍ତି, ପଦେହେଲେ କିଛି କହନ୍ତି ନାହିଁ । ଶୈଳବାଳାଙ୍କ ବ୍ୟବହାରରୁ ଅବଶ୍ୟ ସେ ତାଙ୍କ ଅନ୍ତରର କଥା ଅନୁମାନ କରି ନେଇଥିଲେ । ତାଙ୍କ ମନଭିତରେ ସମୟ ସମୟରେ ଏହି ବିଷୟ ନେଇ ଆନ୍ଦୋଳନ ଜାଗି ଯାଇଥିଲା । କୁନ୍ଦଲତାଙ୍କ ସରଳ ବ୍ୟବହାର, ସୁନ୍ଦର ରୂପ ଓ ପ୍ରଶଂସନୀୟ ଗୁଣରେ ଆଭାସ ପାଇ ନିଜେ ସନ୍ତୁଷ୍ଟ । କୁନ୍ଦଲତାଙ୍କର ଜାତିଗୋତ୍ର ନ ଜାଣି ମଧ୍ୟ ସେ ତାଙ୍କୁ ସୁଶିକ୍ଷିତା, ସଚ୍ଚରିତ୍ରା ଓ ଉଚ୍ଚବଂଶୀୟା ବୋଲି ମନରେ ଗ୍ରହଣ କରି ନେଇଥିଲେ । ଯାହାଙ୍କର କେତୋଟି ମାତ୍ର କଥା ଓ କାତର ଅନୁରୋଧରେ ଦେବେନ୍ଦ୍ର ବାବୁଙ୍କ ପରି ଅସତ୍ ଚରିତ୍ରର ଯୁବକ ପୁନର୍ବାର ସତ୍-ପଥକୁ ଫେରିଆସିଛି, ସେ ତ କମ୍ ଲୋକ ନୁହନ୍ତି ! ନିଷ୍ଚୟ ତାଙ୍କଠାରେ ଦୈବୀ ଶକ୍ତି ପ୍ରଚ୍ଛନ୍ନ ଅଛି ।

ବିପ୍ରଚରଣଙ୍କର ମନ କେବେ କେବେ ତାଙ୍କ ପ୍ରତି ଆକୃଷ୍ଟ ହୁଏ । ସେ ସ୍ଥିର ବିସ୍ମିତ ଚକ୍ଷୁରେ କୁନ୍ଦଲତାଙ୍କର ଆପାଦମସ୍ତକ ନିରୀକ୍ଷଣ କରନ୍ତି । ଶରୀର ରୋମାଞ୍ଚିତ ହୁଏ । ପର ମୁହୂର୍ତ୍ତରେ ସେ ତାକୁ ଗୁହିଁ ଭାବନ୍ତି, ଅସମ୍ଭବ, ଏତେ ସହଜରେ ମୁଁ ମୋର ସ୍ୱାଧୀନତା ହରାଇବାକୁ ପ୍ରସ୍ତୁତ ନୁହେଁ । ପ୍ରତିଜ୍ଞାର ବେକ ମୋଡ଼ି, ନିର୍ଲଜ ଚକ୍ଷୁ ଦିଟା ପୁଣି କାହିଁକି କୁନ୍ଦଲତାଙ୍କ ସୁନ୍ଦର ମୁହଁରେ ଲାଗି ରହେ ! ନିଲଠା ହୃଦୟଟା ତାଙ୍କରି ଆଡ଼କୁ ଧାଇଁଆସେ । ଭାତଗ୍ରାସଟି ହାତରେ ଧରି ନୀରବରେ ଚିନ୍ତାମଗ୍ନ ହୁଅନ୍ତି । ସତେ ଯେପରି ତାଙ୍କର ଉଦରର ଜ୍ୱାଳା ମନ ଅଧିକାର କରିଛି ।

କୁନ୍ଦଲତା ବେଳବୁଝି ଖିଲ୍ ଖିଲ୍ କରି ହସି ଦିଅନ୍ତି ।

ବିପ୍ରଚରଣଙ୍କର ମୋହ ଭାଙ୍ଗେ । ଲଜ୍ଜାରେ ମୁହଁ ଲାଲ୍ ହୁଏ । ନ ଦେଖିଲା ପରି ଦେଖିବାକୁ ଶୈଳବାଳା ପାଖରେ ଥାନ୍ତି ।

ଢନକନ,' ଶୈଳବାଳା ପରିହାସ କରି କୁନ୍ଦଲତାଙ୍କୁ କହିଲେ କୁନ୍ଦ, ତମ୍ଭେ ଆଜିକାଲି ଅନ୍ୟମନସ୍କ ରହୁଛ ।

ନାହିଁ ତ !

ତମେ କଅଣ ନଜେ ବୁଝିପାରନ୍ତ ? ବୁଝିଲେ ତ ମୋ ଆଗରେ କହ୍ନ ପକାନ୍ତ ? କାରଣଟା କଅଣ ?

ମୁଁ କେମିତି ଜାଣିଲବା ?

ଜାଣିବ କଏ, ମୁଁ ? ମୋ ଜାଣିବାରେ, ତୁମେ ଯେପର ମନେ ମନେ କାହାକୁ ଖୋଜୁଛ ।

ତମୁକୁ ଖୋଜଲେ ଖୋଜୁଥିବ, ନୋହଲେ ଆଉ କାହାକୁ ?

ଆଉ କାହାକୁ କହବ ? ନା, ଆଉ । ହସି ହସି କୁଂଦଲତାଙ୍କୁ ଗେଲ କର ପଗ୍ଚରଲେ, ଆଚ୍ଛା, ବିଶ୍ୱାସରେ ଗୋଟିଏ କଥା ପଗ୍ଚରବ, କହବ ତ ? କହଲ ଭଲ, ବିପିନ୍ ଦାଙ୍କ ସଙ୍ଗେ ଆଳାପ କଲବେଳେ ତମ ମୁହଁଟା କାହିଁକ ଲାଲ୍ ପଡ଼ଯାଏ, ତମ ଆଖି ଦିଟା ତଳକୁ ହୋଇଯାଏ, ଗୋଡ଼ ଦିଟା କେମିତି ଥରଲ ଥରଲ ପର ଦିଶେ । ସତ କହବ, ତମୁକ୍, ତମୁକୁ କାହାଗୁଣ ପକାଇବ ? ଆଚ୍ଛା ମୋ ଗୁଣ ।

କୁଂଦଲତାଙ୍କର ମୁହଁ ଲାଲ ହୋଇଗଲ । ସେ ଶୈଳବାଳାଙ୍କୁ ପୁଳାଏ ଚିମୁଟି ଦେଇ କହଲେ, ମଲମର, ତମ ରଙ୍ଗ ପାଉଁଶ ବିପିନ୍ ଦା ।

ତମ ମନ ବିପିନ୍‌ଦା ପଛେ ପଛେ ଦିନସାରା ସବୁବେଳେ ଉଡ଼େ । ହଁ, ବିପିନ୍‌ଦା ମନଟା ବି ତମ ସାଙ୍ଗେ ସାଙ୍ଗେ ଉଡ଼ୁଥାଏ ।

ଆଗେ ମାସେ ପଂଦରଦିନେ ଥରେ ତାଙ୍କ ଗୋଡ଼ ଏଠି ପଡ଼ୁ ନ ଥିଲା । ଏବେ ଦିନେ ଛଡ଼ା ଦିନେ । ଏଇ ଗ୍ଚରି ଛଅ ଦିନ ହେଲ ଆସି ନାହାନ୍ତ ବୋଲ ତମେ ଲୁଆଖାଇ ବଲେଇ ପର ହଉଛ । ଏ ଘରକାରେ ଟିକେ ଅନା, ସେ ଘରକାରେ ଟିକେ ଅନା, ଦାଣ୍ଡକୁ ଯାଇଁ · ଭେଲକ ଲଗିଲ ପର···

ଆଉ କଅଣ ! ଗରଜ ପଡ଼ିଛ ?

ଗରଜ କଥା ଛାଡ଼ିଦିଅ । ସତ କହ ବିପିନ୍‌ଦାଙ୍କୁ ତମେ ଭଲପାଅ କ ନାହିଁ ।

ସେ ମୋଓର କଏ ଯେ ମୁଁ ତାକୁ ଭଲ ପାଇବ ?

ଘୃଣା କର ?

ସେ ମୋର ଅନଷ୍ଟ କର ନାହାନ୍ତ ।

ବେଶି ଅନଷ୍ଟ କରଛନ୍ତ କଏ ? ତମ ହୃଦୟରେ ଦାଉ ଦାଉ ନିଆଁ ଜାଳ ଦେଇଛନ୍ତ ବିପିନ୍ ଦା ତମ ମନକୁ ଚୋରକର ନେଇ ପଳାଇଛନ୍ତ ବିପିନ୍ ଦା ।

ଭାର ସାହସୀଟା—ଆ !

ନୋହଲେ କ ? ଏତେ ଗ୍ଳେପଗ୍ ହେଉଛ କାହିଁକ । ମନକଥାଟି ଖୋଲ୍‌କର ଗୁପ୍ତରେ ମୋତେ କହଦିଅ । ଜାଣ ତ ତମ ଦାଦା ଓ ମାଙ୍କ ପ୍ରସ୍ତାବ ? ଦୁହେଁ ଠିକ୍ କରଛନ୍ତ, ବିପିନ୍‌ଦା ବେକରେ ତମୁକୁ ବାନ୍ଧଦେବେ । ମୋର ସେଥିରେ ଏକମତ । ତମ ମନକଥାଟି ବୁଝିଲେ ତେଣିକ ଆମେ ଆଗେଇବୁଁ ।

ଲଜ୍ଜିତା ହୋଇ କୁଂନ୍ଦଲତା କହିଲେ, ମୁଁ କିଛି ଜାଣେ ନାହିଁ ଯା । କୁଂନ୍ଦ ହସି ହସି ଶୈଳବାଳାଙ୍କ ନିକଟରୁ ଚାଲିଗଲେ । ଶୈଳବାଳା ନଣଂଦଙ୍କ କଥାରୁ ତାଙ୍କ ପ୍ରଶ୍ନର ଉତ୍ତର ପାଇଲେ । ତାଙ୍କ ମନ ଆନଂଦରେ ନାଚିଉଠିଲା । ସେ ମଣିଲେ ସତେକି ଗୋଟିଏ ଦୁର୍ଭେଦ୍ୟ ଦୁର୍ଗ ଅତି ସହଜରେ ବିନା ଉଦ୍ୟମରେ ସେ ଜୟକରି ପାରିଛନ୍ତି । ପ୍ରଫୁଲ୍ଲଚିତ୍ତରେ ମୁଣ୍ଡତଳେ ତକିଆ ଦେଇ ଆଖିବୁଜି ଭାବୁ ଭାବୁ ନିଦ ହୋଇଗଲା । କେତେ ପ୍ରକାର ସୁନେଲି ରୂପେଲି ସ୍ୱପ୍ନ ଦେଖିବାକୁ ଲାଗିଲେ ।

ଦେବେନ୍ଦ୍ର ସେଠାରେ ଉପସ୍ଥିତ ହେଲେ । ଅବେଳାରେ ସ୍ତ୍ରୀଙ୍କୁ ଶୋଇ-ଥିବାର ଦେଖି ଜ୍ୱର ଆଶଙ୍କାରେ ତାଙ୍କର କପାଳରେ ହାତ ରଖି ଉତ୍ତାପ ପରୀକ୍ଷା କଲେ । ସ୍ୱାମୀଙ୍କର ଶୀତଳ କର ସ୍ପର୍ଶପାଇ ତାଙ୍କ ନିଦ ଭାଙ୍ଗିଗଲା । ସେ ଅସ୍ତବ୍ୟସ୍ତ ହୋଇ ଉଠି ବସିଲେ ।

ଦେବେନ୍ଦ୍ର, ପଚାରିଲେ, ଆଜି ଦିନ ଦିପହରେ ପହଡ଼ କାହିଁକି ?

ଶୈଳ ସ୍ମିତ ହସି କହିଲେ, ଯା, କେଡ଼େ ସୁଂଦର ସ୍ୱପ୍ନଟାଏ ଦେଖୁଥିଲି, ଶେଷ ନୋହୁଣୁ ଭାଙ୍ଗିଦେଲେ··· ।

ମୋ ଜାଣିବାରେ ଅବିବାହିତ ଯୁବକ ଯୁବତୀ କେବଳ ସୁଂଦର ସ୍ୱପ୍ନର ଅଧିକାରୀ ।

ବିବାହ କରି ଯେଉଁମାନେ ଅବିବାହିତ ପରି ରହିଥାନ୍ତି ?

ଯେଉଁମାନଙ୍କର ସ୍ୱପ୍ନ ସତ୍ୟରେ ପରିଣତ ହୋଇ ସାରିଥାଏ, ସେମାନଙ୍କର ଏପରି ସ୍ୱପ୍ନରେ ଅଧିକାର ନାହିଁ ।

ଅଧିକାର ନାହିଁ ମାନି ନେଉଛି, କିନ୍ତୁ, ଯଦି ରାଧିକାର ଶ୍ରୀକୃଷ୍ଣ ରାଧିକାଙ୍କୁ ଉପେକ୍ଷା କରି ରହନ୍ତି ?

ତମ କୃଷ୍ଣ ତମ ପାଖକୁ ଫେରି ଆସିଛନ୍ତି ।

ପୂର୍ବ ଅଭ୍ୟାସ ଏତେ ଶୀଘ୍ର, ଏଡ଼େ ସହଜରେ ରାଧା ଛାଡ଼ି ପାରୁନାହିଁ ।

ଦେବେନ୍ଦ୍ର, ପରାସ୍ତ ହେଲେ । ଶୈଳ ମୁଣ୍ଡ ଉପରକୁ ଲୁଗା ଆଣି କହିଲେ, କୃଷ୍ଣ ବୋଧହୁଏ ଦୂତୀଙ୍କୁ ଭୁଲି ଗଲେଣି । ରାଧାକୃଷ୍ଣ ମିଳନର ପ୍ରଧାନ ପୁରୋଧା ଦୂତିକା ଶ୍ରୀମତୀ କୁଂନ୍ଦଲତା ।

ଦେବେନ୍ଦ୍ର ବାବୁ ବିସ୍ମିତ ହୋଇ ଶୈଳବାଳାଙ୍କୁ ଚାହିଁଲେ ।

ମୋର ଏହି ସ୍ୱପ୍ନଟି ତମର ଭଉଣୀ କୁଂନ୍ଦଲତାଙ୍କ ଭବିଷ୍ୟତ୍ ଜୀବନ ନେଇ । ଶୁଣେ ।

ଶୁଣିବା ପୂର୍ବରୁ ଆଗ କୁହ, କୁଂନ୍ଦଲତାକୁ ଘରେ ଆଶ୍ରୟ ଦେବାକୁ ଆଣି ତମେ ଅଧିକା କରିଛ କଅଣ । ତାଙ୍କୁ କଅଣ ଗଣ୍ଡାଏ ଖାଇବାକୁ କି ଖଣ୍ଡେ ପିନ୍ଧିବାକୁ ମିଳି ନ ଥାନ୍ତା ? ଯୁବତୀ କନ୍ୟା, ଏଥର ତାଙ୍କ ବିବାହର ଯୋଗାଡ଼ କରୁଛ କି ନାହିଁ ?

କିଛି ତ କରି ନାହିଁ ।

ବେଶ୍ୟାଘର ଗ୍ରହ ମାଗ୍ଣାରେ ସାଙ୍ଗ ବନାରସ୍ ଯିବା ପରିବର୍ତ୍ତେ ଏଠାରେ ରହିବାର କାରଣ କଅଣ ? କାୟସ୍ଥଘର ଝିଅ, ଏଣିକି ବାଛିଂଦ ପଡ଼ିବ । ନିଂଦା କାହାକୁ ହେବ, କହିଲ ? ତାର ଆପଣାର ହୋଇ ତମ ଛଡ଼ା ସଂସାରରେ କେହି ନାହିଁ ।

ଦେବେନ୍ଦ୍ର ବାବୁ ଚିନ୍ତିତ ହେଲେ । ଜଣାଗଲା ଯେପରି ସେ ମନେ ମନେ ପାତ୍ର ଅନ୍ୱେଷଣ କରୁଛନ୍ତି । ମୁହଁ ଶୁଖାଇ କହିଲେ, କଅଣ କହିବାକୁ କହୁଛ କହ ?

ମୋର ପ୍ରସ୍ତାବରେ ତୁମେ ଏକମତ ହେଲେ ତ ହୁଏ, ବିପିନ୍ଦା କଅଣ କୁଂଦର ଉପଯୁକ୍ତ ?

ବାକ୍ୟ ଶେଷ ହେବା ପୂର୍ବରୁ ଦେବେନ୍ଦ୍ର ବାବୁ ଉଚ୍ଚହାସ୍ୟ କରି ପ୍ରସ୍ତାବଟିକୁ ଉଡ଼ାଇ ଦେବାକୁ କହିଲେ, ବାକ୍ୟଟି ଓଲଟେଇ କରି କହ, କହ କୁନ୍ଦ କଅଣ ବିପିନର ଉପଯୁକ୍ତ ? ଅସମ୍ଭବ ! ଏଥିରେ ଅନେକ ବାଧାବିଘ୍ନ ଅଛି । ଶୈଳ ମୋର ପାଗଳ ହୋଇଗଲାଣି । ପ୍ରଥମ କଥା, ବିପିନ ବାବୁ ଉତ୍କଳୀୟ କରଣ । ଦ୍ୱିତୀୟରେ ବିପିନବାବୁଙ୍କର ଶ୍ରଦ୍ଧା-ପ୍ରୀତିଙ୍କୁ ଭାଙ୍ଗିବାର ଶକ୍ତି କେଜାଣି ବା ମେନକାର ଥାଇପାରେ । ଏତେବଡ଼ ସାହସ କରିବାକୁ ମୁଁ ଅକ୍ଷମ ।

ତମର ମେନକା ସରି ହେବେ ନାହିଁ କୁନ୍ଦଲତାଙ୍କ ଦାସୀ ପଣକୁ । ତେବେ,— ପ୍ରଥମ କଥା ଯାହା କହିଲ, ସେପରି ଦେଶଗତ ଭେଦ ବା ଜାତିଗତ ଭେଦ ଗାନ୍ଧି ଅମଳରେ ଆଉ ନାହିଁ । ଏଣିକି ଆଉ ରହିବ ନାହିଁ । ବିପିନ୍ ଦାର ମନ ସଂକୀର୍ଣ୍ଣ ନୁହେଁ । ଆଉ, ତାଙ୍କର ଶ୍ରଦ୍ଧା-ପ୍ରୀତିଙ୍କୁ ଅନେକ ଦିନୁ ଭାଙ୍ଗିଛି ।

ପାଗଳ ! କିପରି ଜାଣିଲ ?

ଆମେ ମାଇପି ଜାତି ମୁହଁକୁ ଚାହିଁଲେ ମନର କଥା ବୁଝିନେଉ । ପଦେ କଥାରେ ପ୍ରାଣର ବେଦନା-ଭରା ଭାଷା ଶୁଣ । ବିପିନ୍ଦା ଏବେ ମନେ ମନେ ଗୋଟିଏ ପ୍ରାଣର ସାଥୀ ଖୋଜୁଛନ୍ତି ।

ସତେ ?

ଆଉ କଣ ମିଛେ ? ଚାଲିଚିରେ ପଚାରିଲେ ବୁଝିବ ! ସେ ସାଥୀ ଟି କିଏ ଜାଣ ? ତମର ଶ୍ରୀମତୀ କୁନ୍ଦଲତା । ତମେ ଏ ବିବାହ ପ୍ରସ୍ତାବଟି ଉଠାଇଲେ ସେ ମଙ୍ଗିଯିବେ ।

ଦେବେନ୍ଦ୍ର ବାବୁ ଶୈଳବାଳାଙ୍କ କଥାରେ ବିଶ୍ୱାସ କରିପାରିଲେ ନାହିଁ । ତଥାପି ଅନୁରୋଧ ରକ୍ଷା କରି ଥରେ ଚେଷ୍ଟା କରିବେ ବୋଲି ସ୍ୱୀକାର କହି ଚିନ୍ତିତ ହୋଇ ତଳକୁ ଓହ୍ଲାଇଲେ ।

# ୧୬

ବିପ୍ରଚରଣ ଚିଠିଲେଖା ଶେଷକରି ସଜଳ ଚକ୍ଷୁରେ ଚିଠିଖଣ୍ଡି ପୁଣି ପଢ଼ୁଛନ୍ତି ! ଏହି ସମୟରେ ଘୋଡାର ଘନ ଘନ ଶବ୍ଦକରି ଦେବେନ୍ଦ୍ର ବାବୁ ଉପସ୍ଥିତ ହେଲେ । ଦେବେନ୍ଦ୍ର ବାବୁଙ୍କୁ ଦେଖି ବିପ୍ରଚରଣ ସାଦରେ ଅଭ୍ୟର୍ଥନା କରି ବସିବାକୁ ଅନୁରୋଧ କଲେ । ତତ୍ପରେ ଚିଠିଖଣ୍ଡି ଓ କେତେଖଣ୍ଡ ଶହେଟଙ୍କିଆ ନୋଟ ଗୋଟିଏ ଲଫାଫାରେ ବନ୍ଦକରି ଉପରେ ଠିକଣା ଲେଖିଲେ । ଦେବେନ୍ଦ୍ର ବାବୁଙ୍କୁ କହିଲେ, ଏ ଚିଠିଖଣ୍ଡ ଦୟାକରି ତୁମେ ରେଜେଷ୍ଟ୍ରି କରିଦେବ ।

ଦେବେନ୍ଦ୍ର ବାବୁ ପଚାରିଲେ, ଅଚ୍ଛା ବିପିନ, ତୁମେ ଅନେକ ସମୟରେ ଏହିପରି ରେଜେଷ୍ଟ୍ରି ଚିଠି କାହା ନିକଟକୁ ପଠାଅ ।

ଭାଇ ପାଖକୁ ।

ମୁଁ ଦେଖିଛି, ରେଜେଷ୍ଟ୍ରି ଚିଠିଖଣ୍ଡି ପୋଷ୍ଟ ନ କରିବାଯାଏ ତମ ମନରେ ଶାନ୍ତ ନ ଥାଏ । ମୁଁ ଅନୁମାନ କରେ ଏଥିରେ କିଛି ରହସ୍ୟ ଅଛି । ଆଜି ମୋ ଆଗରେ ସବୁ ଖୋଲିକରି କହିବାକୁ ପଡ଼ିବ ।

ବିପ୍ରଚରଣ କହିଲେ, କିଛି ନାହିଁ ଭାଇ, ଜୀବନଟି ମୋର ଅତି ସରଳ । ସମୟ ସମୟରେ ଘରକଥା ମନେ ପଡ଼ିଲେ ଦୁଃଖ ହୁଏ ।

ଘରକୁ ଯାଇ ଥରେ ବୁଲି ଆସ ।

ଘରକୁ ଗଲେ ମୋର ଦୁଃଖ ବଳି ପଡ଼ିବ । ଯାହାକୁ ଦେଖିବାକୁ ଯାଆନ୍ତି ସେ ନାହିଁ । ଯେଉଁମାନେ ଅଛନ୍ତି ସେମାନଙ୍କର ମୁଁ ଚକ୍ଷୁଶୂଳ । ମୋତେ ଦେଖିଲେ ସେମାନେ ସୁଖୀ ହୋଇ ପାରିବେ ନାହିଁ । ସେମାନେ ଗୃହାନ୍ତ, କେବଳ ଟଙ୍କା । ଏକ ପ୍ରକାର ମୁଁ ଗୃହତ୍ୟାଗ କରିଛି । କେବଳ ଯଥାଶକ୍ତି ଟଙ୍କା ପଠାଇ ତାଙ୍କର ଧନ-ପିପାସା ମେଣ୍ଟାଇବି,ଏହା ମୋର ପ୍ରତିଜ୍ଞା ।

ଏହିପରି ତ୍ୟାଗୀବେଶ ପରି ସମୟ କଟାଇବ ?

ଅନ୍ୟ ଉପାୟ ନାହିଁ ।

ଉପାୟ ଘେନି ଆଜି ମୁଁ ତମ ନିକଟକୁ ଆସିଛି । ତମ ଭଉଣୀ ମୋତେ ପଠାଇଛନ୍ତି ।

ବିପ୍ରଚରଣ ଦୁଃଖିତ ହୋଇ କହିଲେ, ବୋଧହୁଏ ଛ ସାତ ଦିନ ହେବ ଶୈଳ ସଙ୍ଗେ ଦେଖା କରି ନାହିଁ ବୋଲି ସେ ଅଭିମାନ କରିଛି । କଣ କରିବି ଭାଇ, ସମୟର ଅଭାବ !

ଖାଲି ଅଭିମାନ ତ ନୁହେଁ, ତମକୁ ଓ୍ୱାରେଣ୍ଟ କରି ନେବାକୁ ଆଦେଶ ମିଳିଛି ।

କି ଉପାୟଟି ଘେନି ଆସିଛ କହିଲ ନାହିଁ ତ ।

ଦେବେନ୍ଦ୍ର ବାବୁ କହିଲେ, ଉପାସ୍ୟ ଶୁଣିବା ପୂର୍ବରୁ ମୋତେ ଆଗ କହ, ଯଦି ସୁଶିକ୍ଷିତା, ସୁନ୍ଦରୀ ଓ ଉପଯୁକ୍ତା ପାତ୍ରୀ ପାଅ ତୁମେ ବିବାହ କରିବାକୁ ପ୍ରସ୍ତୁତ କି ନୁହଁ ? ତୁମକୁ ବୁଝାଇ କହିବାର ଶକ୍ତି ମୋର ନାହିଁ । ତେବେ ନିଜ ଅଭିଜ୍ଞତାରୁ ଏତିକି ବୁଝିଛି ଯେ ଯୌବନରେ ପ୍ରତ୍ୟେକ ଯୁବକ ଯୁବତୀ ସାଥୀ ଖୋଜନ୍ତି । ଏହି ଅପରିଚିତା ବା ଅପରିଚିତ ଜୀବନ-ସାଥୀ ପାଇବାକୁ ପ୍ରତି ମୁହୂର୍ତ୍ତରେ ପ୍ରାଣ ବ୍ୟାକୁଳ ହୁଏ । ଅବଶ୍ୟ, ସାଂସାରିକ ଅବସ୍ଥା ଅନେକ ବାଧା ପାଇ ଯୁବକ ମୁହଁରେ କହେ ସେ ନିଶ୍ଚିନ୍ତ ଅଛି, ମନ ପ୍ରାଣ ତାର ସ୍ୱାଧୀନ, କିନ୍ତୁ ସେହି ଚିନ୍ତାହୀନତା ଭିତରେ ପୂର୍ଣ୍ଣଥାଏ ଜ୍ୱାଳାମୟ ଭାବନା । ତାର ସ୍ୱାଧୀନ ମନପ୍ରାଣ ଦିନୁଦିନ ନୀରସ, ନିଶ୍ଚେଷ୍ଟ ଓ ନିର୍ଜୀବ ହୋଇଯାଏ ।

ବିପ୍ରଚରଣ ଦେବେନ୍ଦ୍ର ବାବୁଙ୍କ କଥାର ଉତ୍ତର ନ ଦେଇ ତାଙ୍କ ମୁହଁକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଲେ । ସେ ଏହି ସହଜ ସରଳ ସତ୍ୟଟିକୁ ପ୍ରାଣେପ୍ରାଣେ ଅନୁଭବ କରିଛନ୍ତି ଓ କରୁଛନ୍ତି । ବାଧା ଦେଇ ପଦେ କହିବାକୁ ସାହସ କଲେନାହିଁ ।

ତାଙ୍କୁ ନୀରବ ଦେଖି ଦେବେନ୍ଦ୍ର ବାବୁ ପୁଣି କହିଲେ, ବିପିନ, ଯଦି ବିବାହ କରି ସଂସାର କରିବାର ଇଚ୍ଛା ଥାଏ ଡେରିକରି ଲଭ ନାହିଁ । ବୟସ ହେଲେ ବିବାହ ନ କରି ନିଜ ଉପରେ ଅତ୍ୟାଚାର କରିବା ମୋ ଜାଣିବାରେ ମହାପାପ । ବ୍ରହ୍ମଚାରୀ ହୋଇ ସାରାଜୀବନ କଟାଇବାର ପ୍ରୟାସ ଥିଲେ କଲିକତା ସହରରେ ସବୁପ୍ରକାର ପ୍ରଲୋଭନ ମଝିରେ ଏକାକୀ ବ୍ୟବସାୟ କରିବା ଅପେକ୍ଷା କୌପିନ ପିନ୍ଧି ହିମାଳୟରେ ଯୋଗସାଧନା କରିବା ଭଲ । ଅନେକେ ଭାବିଥାନ୍ତି ବିବାହ କଲେ ମନର ସ୍ୱାଧୀନତା ଲୋପ ହୁଏ, ତେଣୁ ଜାଣି ଜାଣି ଏପରି ବିଷମ ବନ୍ଧନରେ ବାନ୍ଧି ନ ହୋଇ ମୋରିପରି ନିତ୍ୟନୂତନ ଆଶାରେ କଲିକତାର ଅପ୍ସରା ମହଲରେ ବୁଲିଲେ ବିବାହ ନ କରି ବିବାହିତ ପରି ରହି ପାରିବ ।

ମାତ୍ର ଭାଇ, ଏ ଧାରଣା ଭୁଲ । ହିଁ ରୂପ ପାଇବ, ଭ୍ରମର ପିପାସା ମେଣ୍ଟାଇବାର ସବୁପ୍ରକାର ସୁବିଧା ସୁଯୋଗ ପାଇବ, ତଥାପି ତହିଁରେ ଅପୂର୍ଣ୍ଣତା ଭରି । ପବିତ୍ରତା ନାହିଁ, ସରଳତା ନାହିଁ । ପ୍ରକୃତ ସୁଖ, ପ୍ରକୃତ ଶାନ୍ତି ନାହିଁ । ଯାହାର ହୃଦୟକୁ ଉତ୍ତେଜନାରେ ନିଜର ହୃଦୟ ସଙ୍ଗେ ମିଶାଇ ଦେଇ ଏକାକାର କରି ଦେବାର ଇଚ୍ଛା, ତାଠାରେ ଦେଖିବ କଅଣ ? ତାଆର ହୃଦୟରେ ହୃଦୟ ନାହିଁ, ଅଛି କେବଳ ହାହାକାରମୟ, କପଟତା, ଧନ ଲଭର ଆକୁଳ ପିପାସା ।

ବିପ୍ରଚରଣ ମୂକଙ୍କ ପରି ସବୁ ଶୁଣି କହିଲେ, ମୋରି ଯେ ସଂସାରରେ କେହି ନାହିଁ କହିଲେ ଚଳେ ।

ଏହି କେତୋଟି ଦିନ ଭିତରେ ତୁମେ ଯାହାଙ୍କୁ ଆପଣାର କରିପାରିଛ ସେମାନେ ତମର ସୁଖ ଦେଖିବାକୁ ସତତ ଉଦ୍‌ବିଗ୍ନ । ଅଚ୍ଛା, ତମର ଆପତ୍ତି କଣ ଶୁଣେ ?

ଲଜ୍ଜିତ ହୋଇ ବିପ୍ରଚରଣ କହିଲେ, କିଛି ନାହିଁ ତେବେ,—

ତେବେ ପାତ୍ରୀ ବିଷୟରେ ତ ? ତମର ବିନା ପସଂଦରେ କେହି ତମକୁ ବାଧ୍ୟ କରିବାକୁ ଯାଉଁନାହିଁ । ବିବାହ କରିବାକୁ ପ୍ରସ୍ତୁତ ହେଲେ ମନମାଫି ବାଛି ନେବାକୁ ପାତ୍ରୀର ଅଭାବ ରହିବ ନାହିଁ । ଆଚ୍ଛା ତମର କୌଣସି ଜାତିଗତ ଘୃଣା, ମୋ କହିବାର ଉଦ୍ଦେଶ୍ୟ ବଙ୍ଗାଳୀ, ଓଡ଼ିଆ, କାୟସ୍ଥ କି ଅନ୍ୟ କେଉଁ ଜାତି ଏପରି କିଛି ନାହିଁତ ?

ରାମ ରାମ, ବିଶେଷତଃ ଏ ଯୁଗରେ ?

ମନରେ ଯଦି କିଛି ନ ଭାବ ଉପାୟଟି ଏବେ ମୁଁ ଖୋଲିକରି କହିବି । ଶୈଳ ନିଜ ଇଚ୍ଛାରେ ତାର ବୋଉଦି ବାଛି ନେଇଛି । ସେ ମୋତେ କହୁଥିଲା ତୁମେ ତାକୁ ସେ ଅଧିକାର ଦେଇଛ ।

ବିପ୍ରଚରଣ ହସି ହସି କହିଲେ, ଶୈଳର ଅଧିକାର ଉପରେ ମୁଁ ହସ୍ତକ୍ଷେପ କରିବାକୁ ଯାଉନାହିଁ, ମାତ୍ର କଥାଟି କଅଣ ? ମୋତେ ବୁଝାଇ କହିଲେ ଭଲ ହୁଅନ୍ତା ।

ଏତେ ଅଧୀର ହେଲେ ଚଳିବ ନାହିଁ । ଧୀରେ ଧୀରେ ମୁଁ ସବୁ କହିବି । ଟିକିଏ ଚନ୍ଦ୍ରାକର ପଚାରିଲେ, ବିପିନ୍, ସତ କହ କୁଂଦଲତା ବିଷୟରେ ତମ ମନର ଧାରଣା କିପରି ?

କୁଂଦଲତାଙ୍କ ନାମ ଶୁଣି ବିପ୍ରଚରଣଙ୍କ ମୁଖର ଭାବ ପରିବର୍ତ୍ତନ ହେଲା । ସେ ଆଗରୁ ଯାହା ଅନୁମାନ କରିଥିଲେ ତାହାହିଁ ଘଟିଲା । ସଙ୍ଗେ ସଙ୍ଗେ ମନ ମଧ୍ୟରେ ଦୁଇଟି ଭାବର ସଂଘର୍ଷ ଚାଲିଲା । ସେ କୌଣସି ବିଷୟ ସ୍ଥିର କରି ନପାରି ଅନ୍ୟମନସ୍କ ହୋଇ କହିଲେ, କୁଂଦଲତାଙ୍କର ଅତୀତ ସମ୍ବନ୍ଧେ ମୁଁ କିଛି ଜାଣେ ନାହିଁ । ତମ ଘରେ ତାଙ୍କୁ ମୁଁ କେତେଥର ଦେଖିବା ସୁଯୋଗ ପାଇଥିଲି । ଥରେ ଅଧେ କଥାଭାଷା କରିଥିଲି । ଏତିକି ଘନିଷ୍ଠତାରେ ଜଣେ ବାଳିକାର ଆଚରଣ ଉପରେ ମତାମତ ପ୍ରକାଶ କରିବା ମୋ ବିବେଚନାରେ ଅନ୍ୟାୟ ।

ଅନ୍ୟ କାହା ପାଖରେ ଏପରି ମତାମତ ପ୍ରକାଶ କରିବା ଅନ୍ୟାୟ କିନ୍ତୁ ମୋ ନିକଟରେ ମନୋଭାବ ବ୍ୟକ୍ତ କଲେ କିଛି କ୍ଷତି ନାହିଁ । କୁଂଦଲତାଙ୍କର ଅତୀତ ଜୀବନ ନେଇ ଟଣାଓଟରା ଲଗାଇବା ନିଷ୍ପ୍ରୟୋଜନ । ତାଙ୍କ କଥାରୁ ଏତିକି ପ୍ରକାଶ ଯେ ସେ ନଦୀୟା ଜିଲ୍ଲାର ସମ୍ଭ୍ରାନ୍ତ କାୟସ୍ଥ ଘରର କନ୍ୟା । ଦୁଃଖାବହ, ଦୈବୀଦୁର୍ଘଟନାରେ ସେ ପିତା ମାତା ସମସ୍ତଙ୍କୁ ହରାଇ ନିଜର ଜୀବନ ଘେନି କଲିକତା ଚାଲି ଆସିଥିଲେ । ଯାହାଙ୍କ ନିକଟକୁ ଆସିଥିଲେ ସେ ସମ୍ପର୍କରେ ତାଙ୍କର ମଉଳା ପୁଅ ଭାଇ ହୁଅନ୍ତି । ସେ ମହାଶୟ ଇତିମଧ୍ୟରେ ଗାନ୍ଧିମନ୍ତ୍ର ଜପି ଶ୍ରୀ ମନ୍ଦିରରେ ପ୍ରବେଶ କରିଛନ୍ତି ।

କୁଂଦଲତା ନିରାଶ୍ରୟା ହୋଇ ଦୁଇଦିନ କଲିକତାର ଏ ଗଳି ସେ ଗଳି ବୁଲି କଷ୍ଟ ପାଇଲେ । ଶେଷକୁ ସେ ଯେଉଁ ଦୟାମୟୀ ରମଣୀଙ୍କର ଶରଣାପନ୍ନ ହେଲେ ସେ

ମାଟିଆବ୍ରୁଜର ଜଣେ ନାମଜାଦା ଦେବଦାସୀ । ପରେ ଯେତେବେଳେ ସେ ବୁଝିପାରିଲେ ଯେ ସେ ଜଣେ ବେଶ୍ୟାଘରେ ଅଛନ୍ତି, ପଳାଇ ଯାଇ ନିଜର ମାନ ମହତ୍ତ୍ୱ ରକ୍ଷା କରିବାକୁ ସୁବିଧା ଖୋଜି ବସିଲେ । ବେଶ୍ୟା ତାଙ୍କ ମନକଥା ବୁଝିପାରି ତାଙ୍କୁ ଆଖିଏ ଆଖିଏ ରଖିଲା । ତତ୍ପରେ ଯାହା ହେଲା ତ ତୁମେ ସବୁ ଜାଣ ।

ବିପ୍ରଚରଣ ପଚାରିଲେ ମୁଁ କିଛି ଜାଣେନାହିଁ । ସେଇଠୁ କ'ଣ ହେଲା ?

କୁନ୍ଦଲତା ବେଶ୍ୟାର ତାଡ଼ନା ସହି ନ ପାରି ଆରମ୍ଭ କଲେ ବ୍ୟବସାୟ ।

ବିପ୍ରଚରଣଙ୍କ ମୁହଁ କଳା ପଡ଼ିଗଲା । ସତେ ସେ କି କୌଣସି ଅଲଙ୍ଘନୀୟ ବିପଦର ମଝିରେ ପଡ଼ିଲେ । ତାଙ୍କ ହୃଦୟ ମଧ୍ୟରେ ଯେପରି କିଏ ବିପ୍ଳବ ସୃଷ୍ଟି କଲା । ସେ କିଛି ନ ଶୁଣିଲା ପରି ପଚାରିଲେ, ସତ କହ ଦେବେନ୍, ସେଇଠୁ କଅଣ ହେଲା ।

ଦେବେନ୍ଦ୍ର ବିପ୍ରଚରଣଙ୍କ ପ୍ରାଣର ଆକୁଳତା ବୁଝିପାରି ହସି ହସି କହିଲେ, କୁଂଦଲତା ବ୍ୟବସାୟ ଆରମ୍ଭ କଲେ ।

ଦେବେନ୍ଦ୍ର ବାବୁଙ୍କ ମୁହଁରେ ହସ ଦେଖି ବିପ୍ରଚରଣ ଉତ୍ତେଜିତ ହୋଇ କହିଲେ, ଅସମ୍ଭବ ! ନିଜେ କୁଂଦଲତା ଯଦି ନିଜ ମୁହଁରେ କହନ୍ତି ମୁଁ ଏହାକୁ ସତ ବୋଲି ଗ୍ରହଣ କରି ପାରିବି ନାହିଁ । ମୁଁ ଜାଣେ ଦେବୀ କେବେ ତାଡ଼ନା ଭୟରେ ନରକ ଯାଇପାରେ ନାହିଁ ।

ନରକର କଥା ପଡ଼ିନାହିଁ ବିପିନ୍, ପଡ଼ିଛି ବ୍ୟବସାୟର କଥା । କୁଂଦଲତା ବ୍ୟବସାୟ ଆରମ୍ଭ କଲେ । କିପରି ବ୍ୟବସାୟ ଜାଣ ବିପିନ୍ ? ସେ ଏକ ଅପୂର୍ବ ବ୍ୟବସାୟ । ଯେ ଧନଦେଇ ରୋଗ ଓ ପିପାସା କିଣିବାକୁ ଯାଏ, ତାକୁ ସେ ଦିଅନ୍ତି ନୟନର ତପ୍ତଅଶ୍ରୁ । ଯେ ପାଗଳ ହୋଇ ଯାଇଥାଏ ଗୀତିକ ପାଇଁ ତାଙ୍କ ହୃଦୟ କିଣିବାକୁ ସେ ଦିଅନ୍ତି ତାଙ୍କ ପ୍ରାଣର ଅନନ୍ତ ବ୍ୟଥା । ଯିଏ ହସି ହସି ଯାଇଥାଏ ତାଙ୍କର ଶରୀର ଆଲିଙ୍ଗନ କରିବାକୁ ସେ ଫେରେ କାନ୍ଦି କାନ୍ଦି ତାଙ୍କ ଚରଣର ଧୂଳି ମୁଣ୍ଡରେ ବୋଳି । ଭାଇ ବିପିନ୍, ତାଙ୍କର ଏପରି ବ୍ୟବହାର ମୁଁ ମୋର ବନ୍ଧୁମାନଙ୍କ ମୁହଁରୁ ଶୁଣି ଅତି ଦମ୍ଭକରି ଯାଇଥିଲି ଅନେକ ଟଙ୍କାନେଇ । ବାଳିକାଟିଏ ସେ, କାନ୍ଦି କାନ୍ଦି, ହସି ହସି, ତାର ମର୍ମଭେଦୀ ଜୀବନଚରିତ ଅତି ଆକୁଳ ଭାବରେ ବର୍ଣ୍ଣନା କଲା । କିପରି ଭାବରେ କହି ପାରିବି ନାହିଁ, ଧୀରେ ଧୀରେ ମୋର ନଷ୍ଟ ମନରେ ପରିବର୍ତ୍ତନ ଭାବ ଆସିଲା । ମୁଁ ଯେତେବେଳେ ଲୋଭକଭରା ଚକ୍ଷୁରେ କୁଂଦଲତାଙ୍କର ମୁଖକୁ ଚାହିଁଲି, ଦେଖିଲି କଅଣ ? ଲୋତକରେ ଢଳଢଳ ଦୁଇଟି ଜ୍ୱଳନ୍ତ ଚକ୍ଷୁ ।

ରହ ଦେବେନ୍ । ଆଉ ଅଧିକ କଥା ମୁଁ ଶୁଣିବାକୁ ଇଚ୍ଛୁକ ନୁହେଁ ।

ଭାଇ, ପବିତ୍ରତାର ଆସନ ଅତି ଉଚ୍ଚରେ । ଜଣେ ସତୀ-ରମଣୀର ଜ୍ୱଳନ୍ତ ପ୍ରଭାବରେ ସହସ୍ର ସହସ୍ର କାମୁକଙ୍କର ମଳିନ-ଅନ୍ତର ପରିଷ୍କାର ହୋଇଯାଏ । କୁଂଦଲତା ପବିତ୍ର, କୁଂଦଲତା ଜ୍ୱଳନ୍ତ ଅଗ୍ନିଶିଖା ।

ବିପ୍ରଚରଣ ଦେବେନ୍ଦ୍ରଙ୍କ କଥା ଶୁଣି କୁନ୍ଦଲତାଙ୍କୁ ବିବାହ କରିବାକୁ ସମ୍ମତ ହେଲେ ।

ଅନନ୍ତର ତେଉ ଖେଳିଗଲା ମିତ୍ର ଭବନରେ । ଦିନ ସ୍ଥିର ହେଲା । ବାହାଘରର ଆୟୋଜନ ଚାଲିଲା ।

## ୧୬

ଶୁଭ ବିବାହ ସମ୍ପନ୍ନ ହେଲା । ଆଦର୍ଶ ବିବାହ । ବରପାତ୍ର ଓଡ଼ିଆ କରଣ ଘରର ପୁଅ, କନ୍ୟାପାତ୍ର ବଙ୍ଗାଳୀ କାୟସ୍ଥ ଘରର ଝିଅ । ଓଡ଼ିଆ, ବଙ୍ଗାଳୀ ଅନେକ ଭଦ୍ରଲୋକ ଏ ବିବାହରେ ଯୋଗ ଦେଇ ବରକନ୍ୟାଙ୍କୁ ଆଶୀର୍ବାଦ କରି ଗଲେ । ବରକର୍ତ୍ତା ହୋଇଥିଲେ ବିହାର ଓଡ଼ିଶା କାଉନ୍‌ସିଲର ସଦସ୍ୟ ସ୍ୱୟଂ ମିଶ୍ର । କନ୍ୟାକର୍ତ୍ତା ଶ୍ରୀଯୁକ୍ତ ଦେବେନ୍ଦ୍ର ମିତ୍ର ଜମିଦାର । ପତ୍ର ପତ୍ରିକାରେ ବଡ଼ ବଡ଼ ଅକ୍ଷରରେ ଏହି ଆଦର୍ଶ ବିବାହ କଥା ପ୍ରକାଶିତ ହେଲା । ଖବରକାଗଜ ମତ ଦେଲା ଭବିଷ୍ୟତରେ ବଙ୍ଗାଳୀ ଓଡ଼ିଆ ଦୁଇଟି ଜାତିର ମିଳନ ସୁନିଶ୍ଚିତ । ଏହାହିଁ ଦୁଇ ପ୍ରଦେଶର ମଙ୍ଗଳ ଦୃଷ୍ଟିରୁ ଏକାନ୍ତ ଆବଶ୍ୟକ ।

ବିପ୍ରଚରଣ ଏବଂ କୁନ୍ଦଲତାଙ୍କର ନୂତନ ଜୀବନ ସୁଖ ଆନନ୍ଦରେ ଆଗେଇ ଚାଲିଲା । ପରସ୍ପରକୁ ସୁଖୀ କରିବା ହେଲା ଉଭୟଙ୍କର ପଣ । କୁନ୍ଦଲତାଙ୍କର ଯେ ଗୋଟାଏ ଅତୀତ ଜୀବନ ଥିଲା ଏକଥା ଉଭୟେ ପାସୋରି ଗଲେ ।

ଶୈଳବାଳାଙ୍କର ଆନନ୍ଦ କହିଲେ ନ ସରେ । ବିପିନ୍ ଦା ଏବଂ କୁନ୍ଦଙ୍କର ନୂଆ ସଂସାରକୁ ସୁଖର ଓ ସୁନ୍ଦର କରିବାକୁ ସେ ସବୁବେଳେ ଚେଷ୍ଟିତ । ଦେବେନ୍ଦ୍ର ବାବୁଙ୍କର ମା କୁନ୍ଦଲତାଙ୍କୁ ନିଜର କନ୍ୟାପରି ମଣନ୍ତି ।

କୁନ୍ଦ ନୂଆ ସଂସାରକୁ ଆସି, ସ୍ୱାମୀଙ୍କର ସେବା ଯତ୍ନରେ ମନ ପ୍ରାଣ ଢାଳି ଦେଲେ । ଅବସର ସମୟରେ ଓଡ଼ିଆ ପଢ଼ିବାକୁ ମନ ବଳାଇଲେ । ବିପ୍ରଚରଣଙ୍କ ସାହାଯ୍ୟ ଓ ଉତ୍ସାହରେ ସେ ଦିନ କେଇଟାରେ ସବୁ ପାଠ ଅକ୍ଲେଶରେ ପଢ଼ି ପାରିଲେ । ବିପ୍ରଚରଣଙ୍କୁ ଏହା ବିଚିତ୍ର ଲାଗିଲା । ସେ ସ୍ନେହରେ ଦିନେ କୁନ୍ଦଲତାଙ୍କ ଅନାବୃତ ମସ୍ତକରେ ହାତ ରଖି କହିଲେ, ତମେ ନିଶ୍ଚୟ ଆଗରୁ ଓଡ଼ିଆ ଜାଣିଥିଲ ।

କୁନ୍ଦଲତାଙ୍କର ମୁହଁ ଫିକା ପଡ଼ିଗଲା । ସେ ସନ୍ଦେହପୂର୍ଣ୍ଣ ଆକୁଳ ଦୃଷ୍ଟିରେ ବିପ୍ରଚରଣଙ୍କ ମୁହଁକୁ ଚାହିଁଲେ । ତତ୍ପରେ କୁନ୍ଦଲତା ନଇଁ ସ୍ମିତହାସ୍ୟ କରି କହିଲେ, ପିଲାବେଳେ ଆଇମା ସଙ୍ଗେ ଜଗନ୍ନାଥ ଦର୍ଶନ କରିବାକୁ ମୁଁ ପୁରୀ ଯାଇଥିଲି । ପୁରୀରେ ଅମେ ଅନେକ ଦିନ ରହିଥିଲୁ । ସେତିକବେଳେ ମୁଁ ଓଡ଼ିଆରେ କଥା କହିବାକୁ ଶିଖିଥିଲି ।

ଓଡ଼ିଆ ଅକ୍ଷର ଚିହ୍ନିଲି କିପରି ?

ଆମ ଘରେ ଜଣେ ପୂଜାରୀ ଥିଲେ । ତାଙ୍କର ଗୋଟିଏ ସାନଭାଇ ଥିଲା । ସେ ମୋ ବୟସର । ତାକୁ ଓଡ଼ିଆ ବର୍ଣ୍ଣପରିଚୟ ପଢ଼ାଉଥିଲାବେଳେ ମୁଁ ତା ପାଖରେ ଠିଆ ହୋଇଥାଏ । ସେ ସିଲଟରେ ଯେପରି ଲେଖେ ମୁଁ ଖଣ୍ଡେ ଅଙ୍ଗାର ଧରି କାନ୍ଥରେ ଅବିକଳ ସେମିତି ଲେଖିବାକୁ ଚେଷ୍ଟାକରେ ।

କୁଂଦଲତାଙ୍କ କଥାରେ ବିପ୍ରଚରଣ ବିଶ୍ୱାସ କରି ସ୍ନେହରେ ତାଙ୍କର ଗଣ୍ଡ ଚୁମ୍ବନ କଲେ । ଏତେ ସ୍ନେହ, ଏତେ ଆଦର ସତ୍ତ୍ୱେ କୁଂଦଲତାଙ୍କ ଚକ୍ଷୁ ଲୋତକାର୍ଦ୍ର ହେଲା ।

ଏବେ ଶୈଳବାଳା କୁନ୍ଦଲତାଙ୍କ କଥା ପ୍ରସଙ୍ଗରେ ପଚାରିଲେ, ଆଚ୍ଛା କୁନ୍ଦ, କ୍ଷମାକର ଭଉଣୀ କହୁ କହୁ ଜିଭ ଖସିଗଲା । ଆଚ୍ଛା ବୋଉଦି ··ଗ୍ରେପ୍, ବୋଉଦି କଅଣ ? ଆଗ କୁନ୍ଦ ନା ଆଗ ବୋଉଦି ? କହି କୁଂଦଲତା ଅଭିମାନ କରି ଗମ୍ଭୀର ହେଲେ ।

ଶୈଳବାଳା କୁଂଦଲତାଙ୍କର ମସ୍ତକ ଦୁଇ ହାତରେ ହଲାଇ ଦେଇ କହିଲେ ଓହୋ,···ଅଭିମାନ । ହେଲା, ସେହି କଥା ହେଲା । ଆଚ୍ଛା ସତ କହି ତ, ଘର କରିବାକୁ କଣ ତମର ଇଚ୍ଛା ନାହିଁ ? ମୁଁ ଯେଉଁଦିନ ତମ ଘରକୁ ଆସେ ତମ ଘରର ଢଙ୍ଗ୍ ଢାଙ୍ଗ୍ ଦେଖି ମୋ ମନରେ ଭାରି କଷ୍ଟ ହୁଏ । ଜିନିଷପତ୍ରର ଠିକ୍ ନାହିଁ, ଏଠି ଟ୍ରଙ୍କଟା ତ ସେଠି ସୁଟକେଶ୍‌ଟା । ବାସନଗୁଡ଼ାକ ଖଣ୍ଡି ଖଣ୍ଡି ହୋଇ ଏଠି ସେଠି ପଡ଼ିଛି । ର୍‍ୟାକ୍‌ରେ ଲୁଗାପଟାଗୁଡ଼ା ଅଲଗା ହୋଇ ପଡ଼ିଛି,—ଛିଃ, ଛିଃ ।

ଲଜ୍ଜିତା ହୋଇ କୁଂଦଲତା ମୁହଁ ଶୁଖାଇ କହିଲେ, ମୁଁ କଅଣ କରିବ ?

ଆଉ କରିବ କିଏ ଶୁଣେ ? ଘରକୁ ତ ଘରଣୀ ତମେ ।

ତମେ ଏବେ ଆସି ଘରଣୀ ହୁଅ, ମୁଁ କଅଣ ମନା କରୁଛି ?

ମଲା ନାହିଁ, ଆହା କି ସୁଂଦର କଥା ! ସବୁବେଳେ ଥଟ୍ଟା । ସତରେ, ଏ ସବୁ କଅଣ ହୋଇଛି କହିଲ ? ଘର ପାଇଟି ହାତରେ କଲେ ମାନ୍ ଯାଏ ନାହିଁ କି ଲାଜ ମାଡ଼େ ନାହିଁ । ନ ହେଲା ଯଦି ଗଣ୍ଠି କି ଲାଗିଯିବବୋଲି ଡରମାଡ଼ୁଛି, ଚାକରବାକରଙ୍କୁ ବରାଦ ଦେଲେ ସେମାନେ କରିଦେବେ । ଘରଣୀ ହୋଇ ଚାକରଆଡ଼କୁ ଜଗା ରଖିଲେ ସିନା ହୁଏ ଖାଲି ଶରୀରେ ଷାଠିଏ ଧାଡ଼ିଲା ପରି ମୁହଁ ଶୁଖାଇ ବସିଲେ ତ ହେବ ନାହିଁ ।

କୁଂଦଲତା ବାଁରେଇଦେବାକୁ କହିଲେ, ସେ ସବୁ ହେବ, ମୁଁ ଯେଉଁକଥା କହି ପଠାଇଥିଲି ସେ ବିଷୟରେ କଅଣ ବୁଝିଲ କହ ।

ସେହି ପ୍ରସ୍ତାବ ନେଇ ଉଦୁଉଦିଆ ହି ପହରେ ମୋର ଆସିବାର କଥା । ସେ ନାହିଁ କଲେ । ମୁଁ ଯେତେ କହିଲି, ଫାଟିଫୁଟି ଗଲେ ବି ହେଲା ନାହିଁ ।

ଦେବେନ୍ ଦା କଣ କହିଲେ ?

ଆଉ କହିବେ କଣ ? ନାହିଁ କଲେ । ମୁଁ କହିଲି, ମା କହିଲେ, ସେ ଜମିଦାରୀର ଆଗ୍ରାଧର ଏକାଥରେ ମୂଳରୁ ଭାଙ୍ଗିଲେ ! ତମ ନାମ କହିବାରୁ ସେ କହିଲେ ଯଦି ବୁଲିଯିବାର କଥା ତ ବିପିନ୍ ନେଇଯାଉ ।

ସେତ କହୁଛନ୍ତି, ଦେବେନ୍ ନେଇଯାଉ । ସ୍ୱାଙ୍କର କୁଆଡ଼େ ଅଧିକ କାମ ଅଛି ।

ତମ ଦାଦା ଶେଷରେ ମଙ୍ଗିଲେ । ତେବେ, ସେ କହନ୍ତି ଆଗ କାଶୀ ନ ଯାଇ ପୁରୀ ଯାଇ ଦିନେ ଦୁଇଦିନ ରହି ଚାଲିଆସିବା । ସମୟର ସୁବିଧା ଦେଖି ପଛେ ଆଉ କେବେ କାଶୀ ଯିବା, ମନ୍ଦ କଣ ? ନାହିଁ ମାମୁ ଠୁଁ କଣା ମାମୁ ଭଲ । ମା ମଙ୍ଗିଛନ୍ତି, ମୋର ଆପତ୍ତି ନାହିଁ । ତମର କଥା ବୁଝିବାକୁ ଆସିଛି, ଯଦି କହ ତ ଯେତେ ଶୀଘ୍ର ସମ୍ଭବ ପୁରୀ ଯାଇ ଫେରି ଆସିବା ।

କୁନ୍ଦଲତା ବିଚଳିତ ହୋଇ କହିଲେ, ପୁରୀ ଯିବାକୁ ମୋର ଆଦୌ ଇଚ୍ଛା ନାହିଁ । ମୁଁ ପୁରୀ ଅନେକ ଥର ଯାଇଛି । ସତ କହୁଛି ବୋଉଦି, ପୁରୀରେ ଦେଖିବାର ଜିନିଷ କିଛି ନାହିଁ ।

ତୁମେ ଅତି ସ୍ୱାର୍ଥପର କୁନ୍ଦ ! ଲୋକେ କହନ୍ତି ପୁରୀରେ ଦେଖିବାର ଜିନିଷ ଅନେକ ଅଛି । ଜଗନ୍ନାଥ ମହାପ୍ରଭୁ, ମନ୍ଦିର, ସମୁଦ୍ର... । ତୁମେ ଏକାଧିକବାର ଯାଇଥିବାରୁ ତମ ମନ ଗୁଡ଼ିଗଲାଣି ।

ଜାଗାଟା କିଛି ଭଲ ନୁହେଁ ।

ମୁଁ ଶୁଣିଛି ଯାହାର ଦେହ ଖରାପ ଥାଏ ହାଓ୍ୱା ପରିବର୍ତ୍ତନ କରିବାକୁ ଡାକ୍ତରମାନେ ତାକୁ ପୁରୀ ଯିବାକୁ ଉପଦେଶ ଦିଅନ୍ତି । ମୋର ଅନୁମାନ ହେଉଛି, ପିଲାଦିନେ ସିନା ତମେ କେବେ ପୁରୀ ଦେଖି ଥିଲ, ଆଜିକାଲି ଆଉ ମନେ ନାହିଁ । ନିଶ୍ଚୟ ସେଠାକୁ ଯିବାକୁ ହେବ । କୁନ୍ଦଲତା ଶୈଳବାଳାଙ୍କ ପ୍ରସ୍ତାବରେ ବାଧାଦେଇ ଅଧିକ କହିବାକୁ ସାହସ କଲେ ନାହିଁ । କାଲେ ସେ କଅଣ ଭାବିବେ । ତାଙ୍କ ମନ ମଧ୍ୟରେ ତୀବ୍ର ଆନ୍ଦୋଳନ ସୃଷ୍ଟି ହେଲା । କପରିଭାବରେ ପୁରୀଯାତ୍ରାରୁ ରକ୍ଷା ପାଇବେ ବାରମ୍ବାର ସେହି ଚିନ୍ତା ଆସି ମନରେ ପଶିଲା ।

ଶୈଳବାଳା ଅନ୍ୟାନ୍ୟ ବିଷୟରେ କଥୋପକଥନ କରି ବିଦାୟ ଗ୍ରହଣ କଲେ । କୁନ୍ଦଲତା ଅନ୍ୟମନସ୍କା ହୋଇ ସବୁଥିରେ ହୁଁ ହାଁ କରି ପୁରୀଯାତ୍ରାରୁ ରକ୍ଷା ପାଇବାର ଉପାୟ ପାଞ୍ଚିଲେ ।

ସେଦିନ ଆଉ କୁଂଦଲତାଙ୍କ ମନ କେଉଁଠି ଲାଗିଲା ନାହିଁ । ଯେତେବେଳେ ବିପ୍ରଚରଣ ଦାନ୍ଧାରର କାମକାର୍ଯ୍ୟ ସାରି ସଞ୍ଜବୁଡ଼େ ବସାକୁ ଫେରିଲେ, କୁଂଦଲତା ହସହସ ମୁହଁରେ ସ୍ୱାମୀଙ୍କୁ ପାଛୋଟିଆଣିଲେ । ବିପ୍ରଚରଣ ହସି ହସି ତାଙ୍କର ଆରକ୍ତ ଗଣ୍ଡରେ ମୁଖ ଲଗାଇଲେ । ଲଜ୍ଜାରେ ଓ ଭୟର ଛଳନାରେ କୁଂଦଲତା ଓଢ଼ଣୀଟାଣି ପଛକୁ ଘୁଞ୍ଚି ଯିବାରୁ ବିପ୍ରଚରଣ ଗମ୍ଭୀର ହୋଇ ପକେଟରୁ କେତେଗୁଡ଼ିଏ ନୋଟ କାଢ଼ି କହିଲେ, ଏଇ ନିଅ କୁଂଦ, ଆଜି ଏତିକି । ମୋଟେ ଟ ୫୪୦୯ ।

କୁଂଦଲତା ନୋଟତକ ନେଇ ଆଗ୍ରହରେ ଗୋଟିଏ ଟ୍ରଂକରେ ଯତ୍ନସହକାରେ ରଖିଦେଲେ । ବିପ୍ରଚରଣ ଦୂରରେ ଠିଆହୋଇ ତାଙ୍କର ସୁଂଦର ଉଜ୍ଜ୍ୱଳ ମୁଖକୁ ପିପାସାକୁଳ ନେତ୍ରରେ ଚାହିଁ ରହିଥିଲେ । କୁଂଦଲତା ଟ୍ରଙ୍କ ବଂଦକରି ଚାବିଗୋଛାକ କାନରେ ବାନ୍ଧି ବିପ୍ରଚରଣଙ୍କ ନିକଟକୁ ଫେରି ଆସିବାରୁ ବିପ୍ରଚରଣ କହିଲେ, କୁଂଦ, ମୁଁ ବୁଝିପାରୁଛି ଯୁବକର ମନ ଚାହେଁ କଅଣ ଓ ପରାଧୀନ ଜୀବନରେ ଆନଂଦ କଅଣ ।

କିଛି ବୁଝି ନ ପାରି କୁଂଦଲତା ପଚାରିଲା ଆଖିରେ ବିପ୍ରଚରଣଙ୍କୁ ଚାହିଁଲେ । ବିପ୍ରଚରଣ କହିଲେ, ଦିନେ ମୁଁ ପ୍ରତିଜ୍ଞା କରିଥିଲି ସ୍ୱାଧୀନ ହୋଇ ସଂସାରରୁ ଦୂରରେ ରହି ପରସେବା କରିବି । ଆଜି ଭାବୁଛି କଅଣ ଜାଣ ? ତମର ଏହି ସୁଂଦର ମୁହଖଣ୍ଡ, ତମର ଅନାବିଲ ସରଳ ଉନ୍ମୁକ୍ତ ପ୍ରେମ, ମୋର ପ୍ରାଣ ଭିତରେ କି ମନ୍ତ୍ର ପଢ଼ିଛି କେଜାଣି, ଆଜି ଭାବୁଛି, ପରସେବା ଓ ଦେଶସେବା ମୋର ଗୋଟାଏ ଗୌଣ ଉଦ୍ଦେଶ୍ୟ, ତମର ସେବାହିଁ ମୁଖ୍ୟ ।

ହସିହସି କୁଂଦଲତା କହିଲେ, ହଉ, ଆଗ ଜାମା, ଜୋତା ଓହ୍ଲାଇ ଟିକିଏ ଜଳଖିଆ କର, ତାପରେ ରସିକତା ।

କୁଂଦଲତା ଜଳଖିଆର ଆୟୋଜନ କରିବାକୁ ଅନ୍ୟଘରକୁ ଚାଲିଗଲେ । କିପରି ଭାବରେ ବିପ୍ରଚରଣଙ୍କୁ ବନାରସ ଯିବାକୁ ପ୍ରବର୍ତ୍ତାଇବେ, କିପରି ପୁରୀଯାତ୍ରାରୁ ରକ୍ଷାପାଇବେ ସର୍ବଦା ତାଙ୍କର ସେହି ଚିନ୍ତା । ପୁରୀ ଯିବେ ଏତିକି ଭାବିଲେ ତାଙ୍କ ପେଟଭିତରେ ସତେ ଯେପରି କିଏ ନିଆଁ ହୁଳା ଜାଳିଦିଏ ।

ଜଳଖିଆ ସାରି ବିପ୍ରଚରଣ ଆରାମଚୌକିରେ ବସି ତାଳପତ୍ରର ପଙ୍ଖା ଧରି ବିଞ୍ଚି ହେଉଛନ୍ତି, କୁଂଦଲତା ଗୋଟିଏ ଚୌକି ଅଗକୁ ଟାଣି ଆଣି ସେଥିରେ ବସିଲେ । ସ୍ୱାମୀଙ୍କର ହାତରୁ ବିଚଣାଟି ଟାଣିନେଇ ଆପେ ବିଞ୍ଚି ବିଞ୍ଚି କହିଲେ, ଆଜି ଦିପହରେ ଶୈଳବାଳା ଆସିଥିଲେ ।

ଶୈଳବାଳାଙ୍କ ନାମ ଶୁଣି ବିପ୍ରଚରଣ ପ୍ରଫୁଲ୍ଲବଦନରେ କହିଲେ, କିଏ, ଶୈଳ ? ଭଗବାନ୍ ତାର ମନଟିକୁ ଏପରି ନିର୍ମଳ କରି ଗଢ଼ିଛନ୍ତି, ପ୍ରକୃତରେ କୁଂଦ ତାକୁ ଦେଖିଲେ ମୋ ମନ ଭାରି ଖୁସି ହୁଏ । ସେ ଭାବେ ସଂସାରଟାଯାକ ତାର ।

ଶୈଳ ବାଳାଙ୍କ ପ୍ରଶଂସା ଶୁଣି କୁନ୍ଦଲତା ଈର୍ଷାନ୍ୱିତା ହୋଇ କହିଲେ, ବୋଧହୁଏ ଭାଇ ଭଉଣୀ ଦୁହେଁ ଆଗରୁ ଶିଖାଶିଖି ହୋଇଛ । ନୋହିଲେ ତମ ମୁହଁରେ ସବୁବେଳେ ତାଙ୍କର ପ୍ରଶଂସା, ସତେ ଯେପରି ତାଙ୍କ ଛଡ଼ା ସଂସାରରେ ଆଉ କେହି ସେପରି ନାହିଁ, ଆଉ ତାଙ୍କ ମୁହଁରେ ତମର ପ୍ରଶଂସା ।

ଚଢ଼ିଲ ପରା ! ସତ କଥା କହିବାକୁ ଲୁଚଲୁଚି କାହିଁକି ? ତମେ ଭଲ ନିଜେ କହିଲ—

ହଉ ହେଲା । ତମ ଭଉଣୀ ଏବେ ସରଗର ଗୁଂଦ ହେଉନ୍ତୁ ।

ସରଗର ଗୁଂଦ ଯେ ତମେ, କିନ୍ତୁ ସେ ହେଉଛନ୍ତି ସରଗର ଦେବୀ ।

ଏହି ବାକ୍ୟଟିର ଅର୍ଥ ଚନ୍ଦ୍ରାକର କୁନ୍ଦଲତା ନୀରବ ହେଲେ । ମନୁଷ୍ୟର ପ୍ରକୃତି, ସବୁକଥା ସେ ନିଜ ମୁଣ୍ଡକୁ ଟାଣିନେଇ ନିଜର ଅଭିଜ୍ଞତାନୁଯାଇ ଅର୍ଥ ଗ୍ରହଣ କରେ । ସରଗର ଗୁଂଦ ଯେ କଳଙ୍କଶୂନ୍ୟ ନୁହେଁ ।

କୁନ୍ଦଲତା କହିଲେ, ଶୈଳ ଆସିଥିଲେ କାହିଁକି ଶୁଣିଲ ନାହିଁ ତ'

କହିଲ କେତେବେଳେ ଯେ ମୁଁ ନ ଶୁଣିଲି ବୋଲି ମୋର ଦୋଷ ?

ସେ କହି ଯାଇଛନ୍ତି, ଦାଦାଙ୍କୁ କହିବ, ସେ ଆମ୍ଭକୁ ନେଇ ଯେତେ ଶୀଘ୍ର ପାରନ୍ତି ବନାରସ୍ ଯିବେ । କୌଣସି ଆପତ୍ତି ଶୁଣାଯିବ ନାହିଁ ।

ଏ ସବୁ ନିଶ୍ଚୟ ତମର ଫିସାଦ, ନୋହିଲେ ତମର ଶିକ୍ଷା ।

ମୋର ଶିକ୍ଷା ହୋଇଥିଲେ କ୍ଷତି କଅଣ ? ଶୈଳବାଳା ମୁହଁ ଖୋଲି ଅନୁରୋଧ କରିଛନ୍ତି । ତାଙ୍କ ମନର ସରାଗ ଭାଙ୍ଗିବା ଉଚିତ ହେବ ନାହିଁ ।

କାମଧନ୍ଦା ଛାଡ଼ି ଏବେ ଗଲେ, ଅନେକ କ୍ଷତି ହେବ ।

କାମଧନ୍ଦା ତ ସବୁବେଳେ ଲାଗିଛି, ଯେବେ ଗଲେ ସେହି ଏକା କ୍ଷତି, ମୋଟେ ଚାରି ପାଞ୍ଚଦିନ ପାଇଁ ତ !

କିଛିଦିନ ଛାଡ଼ି ଗଲେ ହେବ ନାହିଁ ?

ତମ ନେଇ ତମ ଭଉଣୀଙ୍କର ଟାଣ ସେତେବେଳକୁ ଭାଙ୍ଗି ଯାଇଥିବ । ଯେତେ ଫୁଙ୍କି ଦେଲେ ପୋଡ଼ା-ଚିଅଣରେ କି ସୁଆଦ ରହେ ? ଶୈଳ ଦେବେନ୍‌ଦାଙ୍କୁ ଆଗ ଅନୁରୋଧ କରିଥିଲେ । ସେ ମୂଳରୁ ଭାଙ୍ଗିଲେ । ବୋଧହୁଏ ଅଭିମାନ କରି କହିଲେ, ତମେ ନ ନେଲେ ନାହିଁ, ବିପିନ୍‌ଦା ସଙ୍ଗେ ଯିବ । ମୁଁ କହିଲେ ବିପିନ୍‌ଦା ମୋ କଥା ଭାଙ୍ଗିବେ ନାହିଁ ।

ଚନ୍ଦ୍ରାକର ବିପ୍ରଚରଣ କହିଲେ, ଯଦି ଯିବାର କଥା ଯେତେ ଶୀଘ୍ର ସମ୍ଭବ ଯିବାକୁ ପ୍ରସ୍ତୁତ ହୁଅ । ଶୈଳକୁ କହିଦିଅ ମୋଟେ ତିନି ଚାରି ଦିନ ରହି ଫେରି ଆସିବା ।

ଏତେ ଶୀଘ୍ର ଓ ଏତେ ସହଜରେ ଯେ ବିପ୍ରଚରଣ ମଙ୍ଗିଯିବେ କୁଂଦଲତା ଏହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ଯାହାହେଉ, ବିପ୍ରଚରଣଙ୍କ ମୁହଁରୁ ଜବାବ୍ ପାଇ ତାଙ୍କ ମନ ଶାନ୍ତ ହେଲା । ପରଦିନ ସେ ଯାଇ ଶୈଳବାଳା ଓ ମାଙ୍କୁ ଏହି ସୁସମ୍ବାଦ ଜଣାଇ ଦେଲେ । ଦେବେନ୍ଦ୍ର ବାବୁ କୌଣସି ଆପତ୍ତି ନ କରି ଅନୁମତି ଦେଲେ । କାରଣ ଏତେ ନେଞ୍ଜରୀ ନେଇ ପୁରୀ ଯାତ୍ରାରୁ ସେ ଉଦ୍ଧାର ପାଇଲେ ।

ଠିକ୍ ହେଲା – ଦେବେନ୍ଦ୍ର ବାବୁଙ୍କ ମା, ସ୍ତ୍ରୀ ଓ କୁଂଦଲତା ବିପ୍ରଚରଣଙ୍କ ସଙ୍ଗେ କାଶୀ ଯିବେ । ସେମାନଙ୍କ ସଙ୍ଗେ ଜଣେ ଚାକର ଯିବ । ଦେବେନ୍ଦ୍ର ବାବୁଙ୍କର ଜଣେ ବନ୍ଧୁଙ୍କର ଗୋଟିଏ କୋଠା କାଶୀରେ ଅଛି । ଏମାନେ ଯାଇ ସେହି କୋଠାରେ ରହିବେ । ଯିବା ପୂର୍ବରୁ ଦେବେନ୍‌ବାବୁ ତାଙ୍କ ବନ୍ଧୁଙ୍କଠାରୁ କୋଠାର ଚାବି ଆଣି ବିପ୍ରଚରଣଙ୍କୁ ଦେବେ ।

ଯଥାସମୟରେ କାଶୀ ଯିବାର ଆୟୋଜନ ହେଲା । ଆନନ୍ଦୋତ୍ସାହରେ ସମସ୍ତଙ୍କ ମନ ଭରପୁର । ନୂଆ ଜାଗା ଦେଖିବେ, କାଶୀ ବିଶ୍ୱନାଥ ଦର୍ଶନ କରି ମନୁଷ୍ୟଜନ୍ମ ସାର୍ଥକ କରିବେ, ଏଥିରେ ଆନନ୍ଦ ନ ହେବ କାହାର ? ମନୁଷ୍ୟ ଭାବେ ଯାହା, ସବୁବେଳେ କଅଣ କାର୍ଯ୍ୟରେ ତାହା ପରିଣତ ହୋଇପାରେ ? କହନ୍ତି, ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ ।

ଯେଉଁଦିନ ଯିବା ପାଇଁ ଧାର୍ଯ୍ୟ ହୋଇଥିଲା ତାର ପୂର୍ବଦିନ ମିତ୍ର ଭବନରେ ଗୋଟିଏ ଆକସ୍ମିକ ଦୁର୍ଘଟଣା ଘଟିଗଲା । ଦେବେନ୍ଦ୍ର ବାବୁଙ୍କର ମା ଦ୍ୱିତଳରୁ ଓହ୍ଲାଉ ଓହ୍ଲାଉ ତାଙ୍କ ଗୋଡ଼ ଖସିଗଲା । ସେ ତଳେ ପଡ଼ିଲେ । ଆଘାତ ସାଙ୍ଘାତିକ ନୁହେଁ, ତଥାପି ବୁଢ଼ୀ ମଣିଷ ଆଘାତ ସହି ପାରିଲେ ନାହିଁ । ଡାକ୍ତର ଅବସ୍ଥା ପରୀକ୍ଷା କରି କାଶୀ ଯିବାକୁ ବାରଣ କଲେ ।

ଶାଶୁ ଯିବେ ନାହିଁ ଶୁଣି ଶୈଳବାଳା ପଛଘୁଞ୍ଚା ଦେଇ ରହିଲେ । କୁଂଦଲତାଙ୍କ ଇଚ୍ଛା ଥିଲେ ମଧ୍ୟ ସେ ବାଧ୍ୟ ହୋଇ ଯିବାକୁ ବାରଣ କଲେ ।

ବୃଦ୍ଧା କୁଂଦଲତାଙ୍କ ମନକଥା ବୁଝିପାରି ବିପ୍ରଚରଣଙ୍କୁ ଡକାଇ କହିଲେ, ବିପିନ୍, ତୁ କୁଂଦକୁ ସଙ୍ଗରେ ନେଇ ଆଗରୁ କାଶୀ ଚାଲିଯା, ଦିନେ ଦୁଇଦିନ ପରେ ମୋ ଦେହ ଭଲ ହୋଇଗଲେ ଦେବେନ୍ ଆମ ଦୁହିଁଙ୍କୁ ନେଇଯିବ ।

ଅନୁମତି ପାଇ ବିପ୍ରଚରଣ ବିନା ଆପତ୍ତିରେ କୁଂଦଲତାଙ୍କୁ ସଙ୍ଗରେ ନେଇ କାଶୀ ଗଲେ ।

ସେହି ପ୍ରସ୍ତାବ ନେଇ ଉଦ୍‌ଭଉଣୀଆ ଙ୍କ ପାହରେ ମୋର ଆସିବାର କଥା । ସେ ନାହିଁ କଲେ । ମୁଁ ଯେତେ କହିଲି, ଫାଟିଫୁଟି ଗଲେ ବି ହେଲା ନାହିଁ ।

ଦେବେନ୍ ଦା କଣ କହିଲେ ?

ଆଉ କହିବେ କଣ ? ନାହିଁ କଲେ । ମୁଁ କହିଲି, ମା କହିଲେ, ସେ ଜମିଦାରୀର ଆଗ୍ରହର ଏକାଥରେ ମୂଳରୁ ଭାଙ୍ଗିଲେ ! ତମ ନାମ କହିବାରୁ ସେ କହିଲେ ଯଦି ବୁଲିଯିବାର କଥା ତ ବିପିନ୍ ନେଇଯାଉ ।

ସେତ କହୁଛନ୍ତି, ଦେବେନ୍ ନେଇଯାଉ । ସ୍ୱାଙ୍କର କୁଆଡ଼େ ଅଧିକ କାମ ଅଛି ।

ତମ ଦାଦା ଶେଷରେ ମାନିଲେ । ତେବେ, ସେ କହନ୍ତି ଆଗ କାଶୀ ନ ଯାଇ ପୁରୀ ଯାଇ ଦିନେ ଦୁଇଦିନ ରହି ଚାଲିଆସିବା । ସମୟର ସୁବିଧା ଦେଖି ପଛେ ଆଉ କେବେ କାଶୀ ଯିବା, ମନ୍ଦ କଣ ? ନାହିଁ ମାମୁ ଠୁଁ କଣ ମାମୁ ଭଲ । ମା ମାନିଛନ୍ତି, ମୋର ଆପତ୍ତି ନାହିଁ । ତମର କଥା ବୁଝିବାକୁ ଆସିଛି, ଯଦି କହ ତ ଯେତେ ଶୀଘ୍ର ସମ୍ଭବ ପୁରୀ ଯାଇ ଫେରି ଆସିବା ।

କୁନ୍ଦଲତା ବିଚଳିତ ହୋଇ କହିଲେ, ପୁରୀ ଯିବାକୁ ମୋର ଆଦୌ ଇଚ୍ଛା ନାହିଁ । ମୁଁ ପୁରୀ ଅନେକ ଥର ଯାଇଛି । ସତ କହୁଛି ବୋଉଦି, ପୁରୀରେ ଦେଖିବାର ଜିନିଷ କିଛି ନାହିଁ ।

ତୁମେ ଅତି ସ୍ୱାର୍ଥପର କୁନ୍ଦି ! ଲୋକେ କହନ୍ତି ପୁରୀରେ ଦେଖିବାର ଜିନିଷ ଅନେକ ଅଛି । ଜଗନ୍ନାଥ ମହାପ୍ରଭୁ, ମନ୍ଦିର, ସମୁଦ୍ର... । ତୁମେ ଏକାଧିକବାର ଯାଇଥିବାରୁ ତମ ମନ ପୂରିଯାଇଛି ।

ଜାଗାଟା କିଛି ଭଲ ନୁହେଁ ।

ମୁଁ ଶୁଣିଛି ଯାହାର ଦେହ ଖରାପ ଥାଏ ହାଓ୍ୱା ପରିବର୍ତ୍ତନ କରିବାକୁ ଡାକ୍ତରମାନେ ତାକୁ ପୁରୀ ଯିବାକୁ ଉପଦେଶ ଦିଅନ୍ତି । ମୋର ଅନୁମାନ ହେଉଛି, ପିଲାଦିନେ ସିନା ତମେ କେବେ ପୁରୀ ଦେଖି ଥିଲ, ଆଜିକାଲି ଆଉ ମନେ ନାହିଁ । ନିଶ୍ଚୟ ସେଠାକୁ ଯିବାକୁ ହେବ । କୁନ୍ଦଲତା ଶୈଳବାଳାଙ୍କ ପ୍ରସ୍ତାବରେ ବାଧାଦେଇ ଅଧିକ କହିବାକୁ ସାହସ କଲେ ନାହିଁ । କାଲେ ସେ କଅଣ ଭାବିବେ । ତାଙ୍କ ମନ ମଧ୍ୟରେ ତୀବ୍ର ଆନ୍ଦୋଳନ ସୃଷ୍ଟି ହେଲା । କିପରିଭାବରେ ପୁରୀଯାତ୍ରାରୁ ରକ୍ଷା ପାଇବେ ବାରମ୍ବାର ସେହି ଚିନ୍ତା ଆସି ମନରେ ପଶିଲା ।

ଶୈଳବାଳା ଅନ୍ୟାନ୍ୟ ବିଷୟରେ କଥୋପକଥନ କରି ବିଦାୟ ଗ୍ରହଣ କଲେ । କୁନ୍ଦଲତା ଅନ୍ୟମନସ୍କା ହୋଇ ସବୁଥିରେ ହୁଁ ହାଁ କରି ପୁରୀଯାତ୍ରାରୁ ରକ୍ଷା ପାଇବାର ଉପାୟ ପାଞ୍ଚିଲେ ।

ସେଦିନ ଆଉ କୁଂଦଲତାଙ୍କ ମନ କେଉଁଠି ଲାଗିଲା ନାହିଁ । ଯେତେବେଳେ ବିପ୍ରଚରଣ ଦାହାରର କାମକାର୍ଯ୍ୟ ସାରି ସଞ୍ଜବୁଡ଼େ ବସାକୁ ଫେରିଲେ, କୁଂଦଲତା ହସହସ ମୁହଁରେ ସ୍ୱାମୀଙ୍କୁ ପାଛୋଟି ଅଣିଲେ । ବିପ୍ରଚରଣ ହସି ହସି ତାଙ୍କର ଆରକ୍ତ ଗଣ୍ଡରେ ମୁଖ ଲଗାଇଲେ । ଲଜ୍ଜାରେ ଓ ଭୟର ଛଳନାରେ କୁଂଦଲତା ଓଢ଼ଣାଟାଣି ପଛକୁ ଘୁଞ୍ଚି ଯିବାରୁ ବିପ୍ରଚରଣ ଗମ୍ଭୀର ହୋଇ ପକେଟରୁ କେତେଗୁଡ଼ିଏ ନୋଟ କାଢ଼ି କହିଲେ, ଏଇ ନିଅ କୁଂଦ, ଆଜି ଏତିକି । ମୋଟେ ଟ ୫୪୦୯ ।

କୁଂଦଲତା ନୋଟତକ ନେଇ ଆଗ୍ରହରେ ଗୋଟିଏ ଟ୍ରଂକରେ ଯତ୍ନସହକାରେ ରଖିଲେ । ବିପ୍ରଚରଣ ଦୂରରେ ଠିଆହୋଇ ତାଙ୍କର ସୁଂଦର ଉଜ୍ଜ୍ୱଳ ମୁଖକୁ ପିପାସାକୁଳ ନେତ୍ରରେ ଚାହିଁ ରହିଥିଲେ । କୁଂଦଲତା ଟ୍ରଙ୍କ ବଂଦକରି ଚାବିଗୋଛାକ କାନିରେ ବାନ୍ଧି ବିପ୍ରଚରଣଙ୍କ ନିକଟକୁ ଫେରି ଆସିବାରୁ ବିପ୍ରଚରଣ କହିଲେ, କୁଂଦ, ମୁଁ ବୁଝିପାରୁଛି ପୁରୁଷର ମନ ଚାହେଁ କଅଣ ଓ ପରାଧୀନ ଜୀବନରେ ଆନଂଦ କଅଣ ।

କିଛି ବୁଝି ନ ପାରି କୁଂଦଲତା ପଚାରିଲା ଆଖିରେ ବିପ୍ରଚରଣଙ୍କୁ ଚାହିଁଲେ । ବିପ୍ରଚରଣ କହିଲେ, ଦିନେ ମୁଁ ପ୍ରତିଜ୍ଞା କରିଥିଲି ସ୍ୱାଧୀନ ହୋଇ ସଂସାରରୁ ଦୂରରେ ରହି ପରସେବା କରିବି । ଆଜି ଭାବୁଛି କଅଣ ଜାଣ ? ତମର ଏହି ସୁଂଦର ମୁହଖଣ୍ଡି, ତମର ଅନାବିଳ ସରଳ ଉନ୍ମୁକ୍ତ ପ୍ରେମ, ମୋର ପ୍ରାଣ ଭିତରେ କି ମନ୍ତ୍ର ପଢ଼ିଛି କେଜାଣି, ଆଜି ଭାବୁଛି, ପରସେବା ଓ ଦେଶସେବା ମୋର ଗୋଟାଏ ଗୌଣ ଉଦ୍ଦେଶ୍ୟ, ତମର ସେବାହିଁ ମୁଖ୍ୟ ।

ହସିହସି କୁଂଦଲତା କହିଲେ, ହଉ, ଆଗ ଜାମା, ଜୋତା ଓହ୍ଲାଇ ଟିକିଏ ଜଳଖିଆ କର, ତାପରେ ରସିକତା ।

କୁଂଦଲତା ଜଳଖିଆର ଆୟୋଜନ କରିବାକୁ ଅନ୍ୟଘରକୁ ଚାଲିଗଲେ । କିପରି ଭାବରେ ବିପ୍ରଚରଣଙ୍କୁ ବନାରସ ଯିବାକୁ ପ୍ରବର୍ତ୍ତାଇବେ, କିପରି ପୁରୀଯାତ୍ରାରୁ ରକ୍ଷାପାଇବେ ସର୍ବଦା ତାଙ୍କର ସେହି ଚିନ୍ତା । ପୁରୀ ଯିବେ ଏତିକି ଭାବିଲେ ତାଙ୍କ ପେଟଭିତରେ ସତେ ଯେପରି କିଏ ନିଆଁ ହୁଲା ଜାଳିଦିଏ ।

ଜଳଖିଆ ସାରି ବିପ୍ରଚରଣ ଆରାମଚୌକିରେ ବସି ତାଳପତ୍ରର ପଙ୍ଖା ଧରି ବିଞ୍ଚି ହେଉଥିଲେ, କୁଂଦଲତା ଗୋଟିଏ ଚୌକି ଅଗକୁ ଟାଣି ଆଣି ସେଥିରେ ବସିଲେ । ସ୍ୱାମୀଙ୍କର ହାତରୁ ବିଚଣାଟି ଟାଣିନେଇ ଆପେ ବିଞ୍ଚୁ ବିଞ୍ଚୁ କହିଲେ, ଆଜି ଦିପହରେ ଶୈଳବାଳା ଆସିଥିଲେ ।

ଶୈଳବାଳାଙ୍କ ନାମ ଶୁଣି ବିପ୍ରଚରଣ ପ୍ରଫୁଲ୍ଲବଦନରେ କହିଲେ, କିଏ, ଶୈଳ ? ଭଗବାନ୍ ତାର ମନଟିକୁ ଏପରି ନିର୍ମଳ କରି ଗଢ଼ିଛନ୍ତି, ପ୍ରକୃତରେ କୁଂଦ ତାକୁ ଦେଖିଲେ ମୋ ମନ ଭାରି ଖୁସି ହୁଏ । ସେ ଭାବେ ସଂସାରଟାଯାକ ତାର ।

ଶୈଳ ବାଳାଙ୍କ ପ୍ରଶଂସା ଶୁଣି କୁନ୍ଦଲତା ଈର୍ଷାନ୍ୱିତା ହୋଇ କହିଲେ, ବୋଧହୁଏ ଭାଇ ଭଉଣୀ ଦୁହେଁ ଆଗରୁ ଶିଖାଶିଖି ହୋଇଛ । ନୋହିଲେ ତମ ମୁହଁରେ ସବୁବେଳେ ତାଙ୍କର ପ୍ରଶଂସା, ସତେ ଯେମିତି ତାଙ୍କ ଛଡ଼ା ସଂସାରରେ ଆଉ କେହି ସେପରି ନାହିଁ, ଆଉ ତାଙ୍କ ମୁହଁରେ ତମର ପ୍ରଶଂସା ।

ରୁଚିଲ ପରା ! ସତ କଥା କହିବାକୁ ଲୁଚେଇଚୋରା କାହିଁକି ? ତମେ ଭଲ ନିଜେ କହିଲ—

ହଉ ହେଲା । ତମ ଭଉଣୀ ଏବେ ସରଗର ଚାଂଦ ହେଉନ୍ତୁ ।

ସରଗର ଚାଂଦ ଯେ ତମେ, କିନ୍ତୁ ସେ ହେଉଛି ସରଗର ଦେବୀ ।

ଏହି ବାକ୍ୟଟିର ଅର୍ଥ ଚନ୍ଦ୍ରାକର କୁନ୍ଦଲତା ନୀରବ ହେଲେ । ମନୁଷ୍ୟର ପ୍ରକୃତି, ସବୁକଥା ସେ ନିଜ ମୁଣ୍ଡକୁ ଟାଣିନେଇ ନିଜର ଅଭିଜ୍ଞତାନୁଯାଇ ଅର୍ଥ ଗ୍ରହଣ କରେ । ସରଗର ଚାଂଦ ଯେ କଳଙ୍କଶୂନ୍ୟ ନୁହେଁ ।

କୁନ୍ଦଲତା କହିଲେ, ଶୈଳ ଆସିଥିଲେ କାହିଁକି ଶୁଣିଲ ନାହିଁ ତ ?

କହିଲ କେତେବେଳେ ଯେ ମୁଁ ନ ଶୁଣିଲି ବୋଲି ମୋର ଦୋଷ ?

ସେ କହି ଯାଇଛନ୍ତି, ଦାଦାଙ୍କୁ କହିବ, ସେ ଆମକୁ ନେଇ ଯେତେ ଶୀଘ୍ର ପାରନ୍ତି ବନାରସ୍ ଯିବେ । କୌଣସି ଆପତ୍ତି ଶୁଣାଯିବ ନାହିଁ ।

ଏ ସବୁ ନିଶ୍ଚୟ ତମର ଫିସାଦ, ନୋହିଲେ ତମର ଶିକ୍ଷା ।

ମୋର ଶିକ୍ଷା ହୋଇଥିଲେ କ୍ଷତି କଅଣ ? ଶୈଳବାଳା ମୁହଁ ଖୋଲି ଅନୁରୋଧ କରିଛନ୍ତି । ତାଙ୍କ ମନର ସରାଗ ଭାଙ୍ଗିବା ଉଚିତ ହେବ ନାହିଁ ।

କାମଧନ୍ଦା ଛାଡ଼ି ଏବେ ଗଲେ, ଅନେକ କ୍ଷତି ହେବ ।

କାମଧନ୍ଦା ତ ସବୁବେଳେ ଲାଗିଛି, ଯେବେ ଗଲେ ସେହି ଏକା କ୍ଷତି, ମୋଟେ ଚାରି ପାଞ୍ଚଦିନ ପାଇଁ ତ !

କିଛିଦିନ ଛାଡ଼ି ଗଲେ ହେବ ନାହିଁ ?

ତମ ନେଇ ତମ ଭଉଣୀଙ୍କର ଟାଣ ସେତେବେଳକୁ ଭାଙ୍ଗି ଯାଇଥିବ । ଯେତେ ଫୁଙ୍କ ଦେଲେ ପୋଡ଼ା-ଚିଅଣରେ କି ସୁଆଦ ରହେ ? ଶୈଳ ଦେବେନ୍ଦାଙ୍କୁ ଆଗ ଅନୁରୋଧ କରିଥିଲେ । ସେ ମୂଳରୁ ଭାଙ୍ଗିଲେ । ବୋଉଡ଼ି ଅଭିମାନ କରି କହିଲେ, ତମେ ନ ନେଲେ ନାହିଁ, ବିପିନ୍ଦା ସଙ୍ଗେ ଯିବି । ମୁଁ କହିଲେ ବିପିନ୍ଦା ମୋ କଥା ଭାଙ୍ଗିବେ ନାହିଁ ।

ଚନ୍ଦ୍ରାକର ବିପ୍ରଚରଣ କହିଲେ, ଯଦି ଯିବାର କଥା ଯେତେ ଶୀଘ୍ର ସମ୍ଭବ ଯିବାକୁ ପ୍ରସ୍ତୁତ ହୁଅ । ଶୈଳକୁ କହିଦିଅ ମୋଟେ ତିନି ଚାରି ଦିନ ରହି ଫେରି ଆସିବା ।

ଏତେ ଶୀଘ୍ର ଓ ଏତେ ସହଜରେ ଯେ ବିପ୍ରଚରଣ ମଙ୍ଗି ଯିବେ କୁନ୍ଦଲତା ଏହା ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ । ଯାହାହେଉ, ବିପ୍ରଚରଣଙ୍କ ମୁହଁରୁ ଜବାବ୍ ପାଇ ତାଙ୍କ ମନ ଶାନ୍ତ ହେଲା । ପରଦିନ ସେ ଯାଇ ଶୈଳବାଳା ଓ ମାଙ୍କୁ ଏହି ସୁସମ୍ବାଦ ଜଣାଇ ଦେଲେ । ଦେବେନ୍ଦ୍ର ବାବୁ କୌଣସି ଆପତ୍ତି ନ କରି ଅନୁମତି ଦେଲେ । କାରଣ ଏତେ ନେଣ୍ଡଗା ନେଇ ପୁରୀ ଯାତ୍ରାରୁ ସେ ଉଦ୍ଧାର ପାଇଲେ ।

ଠିକ୍ ହେଲା — ଦେବେନ୍ଦ୍ର ବାବୁଙ୍କ ମା, ସ୍ତ୍ରୀ ଓ କୁନ୍ଦଲତା ବିପ୍ରଚରଣଙ୍କ ସଙ୍ଗେ କାଶୀ ଯିବେ । ସେମାନଙ୍କ ସଙ୍ଗେ ଜଣେ ଚାକର ଯିବ । ଦେବେନ୍ଦ୍ର ବାବୁଙ୍କର ଜଣେ ବନ୍ଧୁଙ୍କର ଗୋଟିଏ କୋଠା କାଶୀରେ ଅଛି । ଏମାନେ ଯାଇ ସେହିଠାରେ ରହିବେ । ଯିବା ପୂର୍ବରୁ ଦେବେନ୍ଦ୍ରବାବୁ ତାଙ୍କ ବନ୍ଧୁଙ୍କଠାରୁ କୋଠାର ଚାବି ଆଣି ବିପ୍ରଚରଣଙ୍କୁ ଦେବେ ।

ଯଥାସମୟରେ କାଶୀ ଯିବାର ଆୟୋଜନ ହେଲା । ଆନନ୍ଦୋତ୍ସାହରେ ସମସ୍ତଙ୍କ ମନ ଭରପୁର । ନୂଆ ଜାଗା ଦେଖିବେ, କାଶୀ ବିଶ୍ୱନାଥ ଦର୍ଶନ କରି ମନୁଷ୍ୟଜନ୍ମ ସାର୍ଥକ କରିବେ, ଏଥିରେ ଆନନ୍ଦ ନ ହେବ କାହାର ? ମନୁଷ୍ୟ ଭାବେ ଯାହା, ସବୁବେଳେ କଅଣ କାର୍ଯ୍ୟରେ ତାହା ପରିଣତ ହୋଇପାରେ ? କହନ୍ତି, ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ତେଣିକି ଯାଇ ।

ଯେଉଁଦିନ ଯିବା ପାଇଁ ଧାର୍ଯ୍ୟ ହୋଇଥିଲା ତାର ପୂର୍ବଦିନ ମିତ୍ର ଭବନରେ ଗୋଟିଏ ଆକସ୍ମିକ ଦୁର୍ଘଟଣା ଘଟିଗଲା । ଦେବେନ୍ଦ୍ର ବାବୁଙ୍କର ମା ଦ୍ୱିତଳରୁ ଓହ୍ଲାଉ ଓହ୍ଲାଉ ତାଙ୍କ ଗୋଡ଼ ଖସିଗଲା । ସେ ତଳେ ପଡ଼ିଲେ । ଆଘାତ ସାଙ୍ଘାତିକ ନୁହେଁ, ତଥାପି ବୁଢ଼ୀ ମଣିଷ ଆଘାତ ସହି ପାରିଲେ ନାହିଁ । ଡାକ୍ତର ଅବସ୍ଥା ପରୀକ୍ଷା କରି କାଶୀ ଯିବାକୁ ବାରଣ କଲେ ।

ଶାଶୁ ଯିବେ ନାହିଁ ଶୁଣି ଶୈଳବାଳା ପଛଘୁଞ୍ଚା ଦେଇ ରହିଲେ । କୁନ୍ଦଲତାଙ୍କ ଇଚ୍ଛା ଥିଲେ ମଧ୍ୟ ସେ ବାଧ୍ୟ ହୋଇ ଯିବାକୁ ବାରଣ କଲେ ।

ବୁଢ଼ୀ କୁନ୍ଦଲତାଙ୍କ ମନକଥା ବୁଝିପାରି ବିପ୍ରଚରଣଙ୍କୁ ଡକାଇ କହିଲେ, ବିପିନ୍, ତୁ କୁନ୍ଦକୁ ସଙ୍ଗରେ ନେଇ ଆଗରୁ କାଶୀ ଚାଲିଯା, ଦିନେ ଦୁଇଦିନ ପରେ ମୋ ଦେହ ଭଲ ହୋଇଗଲେ ଦେବେନ୍ ଆମ ଦୁହିଁଙ୍କୁ ନେଇଯିବ ।

ଅନୁମତି ପାଇ ବିପ୍ରଚରଣ ବିନା ଆପତ୍ତିରେ କୁନ୍ଦଲତାଙ୍କୁ ସଙ୍ଗରେ ନେଇ କାଶୀ ଗଲେ ।

# ୧୮

ଗଙ୍ଗାକୂଳରେ ଭିଡ଼ ହୋଇ ନ ଥିଲା, ତଥାପି, ନାନା ଦେଶରୁ ନାନା ଜାତୀୟ ସ୍ତ୍ରୀପୁରୁଷ ପଞ୍ଚ ପଞ୍ଚା ହୋଇ ମନ ଆନନ୍ଦରେ ସ୍ନାନ କରୁଥିଲେ । ନିଜ ନିଜ ମଧ୍ୟରେ ନାନାବିଧ ବିଷୟରେ ଗଳ୍ପକରି ସ୍ଥାନଟିକୁ ମୁଖରିତ କରୁଥିଲେ । କେହି ବା ପବିତ୍ରତୋୟା ମା ଗଙ୍ଗାଦେବୀଙ୍କର ଶୀତଳ ପ୍ରବାହକୁ ପ୍ରଶଂସା କରି, ଅନ୍ୟ କେହି କାଶୀ ବିଶ୍ୱନାଥଙ୍କର ମହିମା ଗାନକରି, କେହି ସହରର ସୌନ୍ଦର୍ଯ୍ୟ ଓ ଗଙ୍ଗାର ପରପାରର ପ୍ରାକୃତିକ ଶୋଭା ଦେଖି ମନରେ ଆନନ୍ଦ ଆଣୁଥିଲେ ।

ନଦୀକୂଳରେ କେତେଜଣ ଭଦ୍ରଲୋକ ହାତରେ ସୌଖିନ ବାଡ଼ି ଧରି ଗଙ୍ଗାନଦୀର ଅତୁଳ ଶୋଭା ଦର୍ଶନ କରିବାରେ ବ୍ୟସ୍ତ । କେତେ ଜଣ ପଣ୍ଡା ଲୋଲୁପ ଦୃଷ୍ଟିରେ ଯାତ୍ରୀମାନଙ୍କୁ ଅନାଇଁ ଠିଆ ହୋଇଥାନ୍ତି । ଗଙ୍ଗା କୂଳରେ ସ୍ଥାନେ ସ୍ଥାନେ ସନ୍ନ୍ୟାସୀବେଶୀ ଭିକ୍ଷୁକ ପଦ୍ମାସନପାରି ଚକ୍ଷୁ ବୁଜି ବସିଛନ୍ତି । ସମ୍ମୁଖରେ ଗେରୁଆ ବସ୍ତ୍ର ପଡ଼ା ହୋଇଛି । ବସ୍ତ୍ର ଉପରେ ଇତସ୍ତତଃ ହୋଇ ଅଧଲା ପଇସା ପଡ଼ିଛି । କମଣ୍ଡଳୁ ଓ ଅଶା ବାଡ଼ି ନିକଟରେ ଥୁଆ । ଆଉ କେତେ କାତର ଭିକ୍ଷୁକ ନାନାପ୍ରକାର ଅବୋଧ ଶବ୍ଦକରି ଓ ବେଶଭୂଷା ବିଭିନ୍ନପ୍ରକାରେ ପିନ୍ଧି ଦର୍ଶକ ଦାତା-ମାନଙ୍କର ଚକ୍ଷୁ ଆକୃଷ୍ଟ କରି ସେମାନଙ୍କ ମନରେ ଦୟା ସଞ୍ଚାର କରିବାକୁ ଚେଷ୍ଟା କରୁଛନ୍ତି । କେହି ଅଧଲାଏ ପଇସାଏ ଦେଲେ ଦେଉଛି, ନୋହିଲେ ନାହିଁ ।

ଗାଧୁଆ ଘାଟ ନିକଟରେ ଶ୍ରେଷ୍ଠ ବରଗଛଟିଏ । ସମ୍ମୁଖରେ ରାଜପଥ । ରାଜପଥର କଡ଼େ କଡ଼େ କେତେଗୁଡ଼ିଏ ଦ୍ୱିତଳ ପ୍ରାସାଦ । ନଦୀକୂଳ ସଙ୍ଗେ ସମାନ୍ତରାଳ ହୋଇ ଦଣ୍ଡାୟମାନ । ସେହି ସମାନ୍ତରାଳ ପ୍ରାସାଦ ମଧ୍ୟରୁ ଗୋଟିଏ ଆଡ଼କୁ ମୁହଁ କରି ବରଗଛ ମୂଳରେ ଉପବିଷ୍ଟ ଜଣେ ସନ୍ନ୍ୟାସୀ । ପଦ୍ମାସନ ପକାଇ ବସିଛନ୍ତି । ଚକ୍ଷୁବନ୍ଦ । ଅନ୍ୟମାନଙ୍କ ପରି ସମ୍ମୁଖରେ ସେ ମଧ୍ୟ ଖଣ୍ଡେ ଗେରୁଆ ଲୁଗା ବିଛେଇ କରି ପକାଇଛନ୍ତି । ଝୁଲିମୁଣିରୁ କାଢ଼ି ସେ ମଧ୍ୟ କେତେଗୁଡ଼ିଏ ପଇସା ଓ ଅଧଲା ବସ୍ତ୍ର ଉପରେ ବିଞ୍ଚି ଦେଇଛନ୍ତି ସନ୍ନ୍ୟାସୀ, କିନ୍ତୁ କମଣ୍ଡଳୁ କିମ୍ବା ଅଶାବାଡ଼ି ପାଖରେ ନାହିଁ ।

ସୂର୍ଯ୍ୟରଶ୍ମି ଗଛଆଡ଼େ ବିଞ୍ଚିହୋଇ ପଡ଼ିଲା । ସନ୍ନ୍ୟାସୀ ଚକ୍ଷୁ ଖୋଲିଲେ । ମୁହଁ ବୁଲାଇ ଥରେ ଗାଧୁଆ ଘାଟକୁ ଚାହିଁ ଦୀର୍ଘଶ୍ୱାସ ଛାଡ଼ିଲେ । ଚକ୍ଷୁକୋଣ ଦେଇ ଦୁଇ ଧାର ଲୋତକ ଗଡ଼ି ଆସିଲା । ସେ ଅର୍ଦ୍ଧସ୍ପନ୍ନ ଚକ୍ଷୁରେ ଗଙ୍ଗାନଦୀର ଝଲସିତ ଜଳପ୍ରବାହକୁ ଚାହିଁ ଚାହିଁକଲେ, ତଥାପି ଏ ଜୀବନ ଉପରୁ ମମତା କମିଲା ନାହିଁ । ଆଜି ଏ ହତଭାଗ୍ୟ ଜୀବନରେ କି ଆଶା, କି ଆନନ୍ଦ ବା ଅଛି ? କେତେ ଦିନ ଆତ୍ମଗୋପନ କରି ରହିଥିବ ? ଭଗବାନଙ୍କ ରାଜ୍ୟରେ ନରହନ୍ତାର ପରିତ୍ରାଣ କାହିଁ ?

କାଣିକର ହେଉ ବା ଅଜାଣତରେ ହେଉ କ୍ଷଣିକ ଉତ୍ତେଜନାର ପ୍ରବଳ ଦାଉରେ ପଡ଼ି ଜଣେ ନାରୀର ସତୀତ୍ୱ ରକ୍ଷା ପାଇଁ ନରହତ୍ୟା କରି ମହାପାପର ଭାଗୀ ହେଲି ସିନା !

ବହୁଦିନ ପରେ ଆଜି ସନ୍ନ୍ୟାସୀ ସାଧୁଚରଣଙ୍କ ସଙ୍ଗେ ଦେଖା ! ଅଙ୍ଗରେ ଯୌବନର ପୂର୍ବ ଲାବଣ୍ୟ ନାହିଁ। ଅଙ୍ଗ ଶୀର୍ଣ୍ଣ । ଶିରା ଓ ଅସ୍ଥି ଗଣି ହେଉଛୁ । କୋଟରଗତ ଚକ୍ଷୁ ପ୍ରଭାହୀନ । ନିସ୍ତେଜ ଦେହରେ ରକ୍ତ ନାହିଁ। ମନରେ ସ୍ଫୂର୍ତ୍ତି ନାହିଁ। ଭୀତପୂର୍ଣ୍ଣ ଚକ୍ଷୁ ଦୁଇଟି ସବୁବେଳେ ସନ୍ଧାନ, ସତେ ଯେପରି କାହାର ଅନ୍ୱେଷଣ କରୁଛୁ ।

କେତେ ଦୁଃଖ କଷ୍ଟ ସହି ଦେଶ ବିଦେଶ ନାନା ସ୍ଥାନ ଭ୍ରମଣ କରି ପଳାତକ ସାଧୁ ଆଜି ସନ୍ନ୍ୟାସୀ ବେଶରେ ବାରାଣସୀ ସହରରେ ଆତ୍ମଗୋପନ କରିଛନ୍ତି। ତାଙ୍କର ପାପ ଖଣ୍ଡନ କରିବାକୁ ସେ ଆଜି ଅନ୍ତର୍ଯ୍ୟାମୀ ବିଶ୍ୱନାଥଙ୍କର ଶରଣାପନ୍ନ। ଦିନେ ଯେଉଁ ଭିକ୍ଷୁକ ସମାଜକୁ ଦେଶର ଅନ୍ନଧ୍ୱଂସକାରୀ ବୋଲି ଘୃଣା କରୁଥିଲେ ଏବଂ କର୍ମକରି ଉଦର ପୋଷିବାକୁ ଉପଦେଶ ଦେଉଥିଲେ, ଆଜି ସେ ସେହିମାନଙ୍କ ମଧ୍ୟରୁ ଜଣେ। କେତେ ଦ୍ୱାରରୁ ଲାଞ୍ଛନା ସହି କାର୍ଯ୍ୟ କରିବାର ଉପଦେଶ ଶୁଣି ସେ ଫେରିଛନ୍ତି। କେତେ ଥର ବୃଥା ଭୟକରି ସମାଜ ଓ ଗ୍ରାମ ତ୍ୟାଗକରି ନିଘଞ୍ଚ ବନ ମଧ୍ୟରେ ପଶୁ ପକ୍ଷୀଙ୍କର ସହାୟତା ଲୋଡ଼ିଛନ୍ତି। ଯହିଁ ଗଲେ ସେହି ଏକ ଦଶା, ଏକା ଭୟ, ଜୀବନର ଭୟ। ଗ୍ରାମ ଓ ସହରରେ ପୋଲିସ୍। ବନମଧ୍ୟରେ ହିଂସ୍ରଜନ୍ତୁ।

ଜୀବନ ରକ୍ଷାର ଶେଷ ଉପାୟ ହେଲା ସନ୍ନ୍ୟାସବ୍ରତ ଓ ଭିକ୍ଷା। ଲୋକେ ମୁକ୍ତି ଆଶାରେ ସନ୍ନ୍ୟାସୀ ହୋଇ ଭଗବତ୍ ଚିନ୍ତାରେ ସମୟ କଟାନ୍ତି । ସାଧୁଙ୍କର ଯନ୍ତ୍ରଣାକୁଳ ସମୟ କଟେ ଅତୀତ ଚିନ୍ତାରେ। ସେ ନିଜେ ସନ୍ନ୍ୟାସ ବ୍ରତକୁ ଘୃଣା କରି କହୁଥିଲେ, କର୍ମହିଁ ମନୁଷ୍ୟ ଜୀବନର ଲକ୍ଷ୍ୟ । କର୍ମରେହିଁ ଭଗବାନ୍ ସନ୍ତୁଷ୍ଟ ହୁଅନ୍ତି। ମନୁଷ୍ୟର ମୁକ୍ତି ହୁଏ ସତ୍‌କର୍ମ କଲେ । ଯେଉଁମାନେ କର୍ମବିରହିତ ହୋଇ ସନ୍ନ୍ୟାସ-ବ୍ରତ ଅବଲମ୍ବନ କରନ୍ତି ଓ ପରୋକ୍ଷଭାବରେ ପରର ପରିଶ୍ରମ ଲବ୍ଧ ଧନ ଖାଇ ଜୀବନ ବଞ୍ଚାନ୍ତି ସେହିମାନେ ନରକ ପଥର ଯାତ୍ରୀ।

ଆଜି ସାଧୁ ନିଜ ଇଚ୍ଛାରେ ନରକ ପଥର ଯାତ୍ରୀ ହେବାକୁ କୁଣ୍ଠିତ ନୁହନ୍ତି। ଘଟଣାଚକ୍ରର ଆବର୍ତ୍ତନରେ ମନୁଷ୍ୟ ମନରେ କି ଅଶାତୀତ ପରିବର୍ତ୍ତନ ହୁଏ! ସନ୍ନ୍ୟାସୀ ହୋଇ ସାଧୁ ସଂସାର-ଚିନ୍ତାକୁ ମନରୁ ନିର୍ବାସିତ କରିପାରି ନାହାନ୍ତି। ଅଳସ ହୋଇ ବସି ରହିଲେ ନାନାକଥା ଆସି ମନରେ ପଡ଼େ। ପିତା, ମାତା ଓ ସର ମନେ ପଡ଼ିଲେ ଚକ୍ଷୁ ଆର୍ଦ୍ର ହୁଏ। ଇଚ୍ଛାହୁଏ, ଥରେ ଯାଇ ଗୁପ୍ତରେ ସେମାନଙ୍କୁ ଦେଖାକରି ଆସିବେ। ମାତାଙ୍କର ଚରଣ ଛୁଇଁ ଶପଥକରି କହି ଆସିବେ, ସାଧୁଚରଣ ନରହନ୍ତା, ହଁ, କିନ୍ତୁ ତା ନାମରେ ଯେଉଁ କଳଙ୍କ ଲଗାଇ ସମାଜ ସମ୍ବାଦପତ୍ର

ମୁଖରେ ରଚନା କରୁଛ, ତାର ଅକ୍ଷରଟିଏ ସୁଦ୍ଧା ସତ୍ୟ ନୁହେଁ । ସାଧୁଙ୍କର ନୈତିକ ବଳ ଯଦି ଏତେ ନିମ୍ନକୁ ଗଡ଼ିକରିଥାନ୍ତା, ସେ ଜଗନ୍ନାଥର ସହାୟକ ନ ହୋଇ ଜଗନ୍ନାଥର ଜୀବନ ନେଇଥାନ୍ତା କାହିଁକି ?

ପ୍ରକୃତ ଘଟଣା ଶୁଣିଲେ ପିତା ମାତାଙ୍କର ମନରେ ଶାନ୍ତି ଆସନ୍ତା । ସାଧୁ ଧରାପଡ଼ିବା ଭୟରେ ଏତେବଡ଼ ସାହସ କରିପାରନ୍ତି ନାହିଁ । ବିପ୍ରଚରଣଙ୍କ କଥା ମନେ ପଡ଼େ । ସେ ଭାବନ୍ତି ବିପ୍ରଦାଦି ଲୁଣ ମାରିବାକୁ ଯାଇ ଜେଲ ଯାଇଥିବେ, ଜେଲରେ ଉପାସ କରି ପ୍ରାଣତ୍ୟାଗ କରିଥିବେ । ନରହତ୍ୟା କରି ଫାଶୀ ପାଇବା ଓ ଦେଶ ପାଇଁ ଅନଶନରେ ଜୀବନ ଉତ୍ସର୍ଗ କରିବା ମଧ୍ୟରେ ଆକାଶ ପାତାଳ ପ୍ରଭେଦ ।

କୋକିଳଙ୍କ କଥା ମନେ ପଡ଼ିଲେ ସାଧୁଙ୍କର ସର୍ବାଙ୍ଗ ଥରି ଉଠେ । ନିଜର ଅବସ୍ଥା ପ୍ରତି ଭ୍ରୂକ୍ଷେପ ନ କରି ସେ ତାଙ୍କର କଥା ଭାବି ବସନ୍ତି । ଆହା, ସେ କଅଣ କରୁଥିବେ ? ସେ କଣ ପ୍ରକୃତରେ କୁଳଟା, କୁଳଟା ନ ହୋଇଥିଲେ ଜାଣି ଜାଣି ସ୍ୱାମୀଙ୍କୁ ବିଷ ଦେଇଥାନ୍ତେ କାହିଁକି ? ମାଉସୀ ପୁରୁଣା ସମ୍ପର୍କ ଛାଡ଼ିଦେଲେ ମଧ୍ୟ ଜଣେ ପରପୁରୁଷ ପ୍ରତି ଆକୃଷ୍ଟ ହୋଇଥାନ୍ତେ କାହିଁକି ? ନିଶ୍ଚୟ କୋକିଳ ଦେଈ ଉତ୍ତେଜନାର ଦାଉରେ ଆଜି ବେଶ୍ୟାବୃତ୍ତି ଖୋଲି ବସିଥିବେ ।

ଉତ୍ତେଜନାର ଦାଉ ଯଦି ହୋଇଥାନ୍ତା, ଜଗନ୍ନାଥର ପାଦତଳେ ପଡ଼ି ସେ ମାନ ଭିକ୍ଷାକରି ନ ଥାନ୍ତେ ? ନା, କୋକିଳ ଦେଈ କୁଳଟା ନୁହନ୍ତି । ସେ ଜାଣି ଜାଣି ସ୍ୱାମୀ ହତ୍ୟା କରି ନାହାନ୍ତି । ବରଂ, ରସାନନ୍ଦଙ୍କୁ ସାଧୁଚରଣ ହତ୍ୟା କରିଛୁ । ସେ ରସାନନ୍ଦ ବାବୁଙ୍କୁ ସ୍ୱାମୀ ବୋଲି ସ୍ୱୀକାର କରନ୍ତି ନାହିଁ, କାରଣ ସେ ବୃଦ୍ଧ, ରୁଗ୍ଣ । ଏଥି ପାଇଁ ଦାୟୀ ସମାଜ, ଦାୟୀ ରସାନନ୍ଦ ବାବୁ । କୋକିଳ ଦାୟୀ ନୁହନ୍ତି । କୋକିଳ ନିର୍ଦ୍ଦୋଷ, ସେ କୁଳଟା ନୁହନ୍ତି, ସେ ସତୀ ।

ସତୀ ?

ତେବେ ମୋ ସାଙ୍ଗେ ତାଙ୍କର ସମ୍ପର୍କ କଅଣ ? ମୋ ପ୍ରତି ଅନୁରାଗ କାହିଁକି ? ସେଦିନ ମୁକ୍ତକଣ୍ଠରେ କହିଲେ, ମୁଁ ତାଙ୍କର ସ୍ୱାମୀ ! କାହିଁକି ? ସେ ମୋତେ ଭଲପାଆନ୍ତି, ମୋ ବିନା ତାଙ୍କର ଜୀବନ ବ୍ୟର୍ଥ ! ଜଗନ୍ନାଥକୁ ବିବାହ କରିବେ ବୋଲି ସେ ସ୍ୱୀକୃତା ହୋଇଥିଲେ । ସବୁ ମିଥ୍ୟା, ସବୁ ଛଳନା ? କୋକିଳ, କୋକିଳ, ନରାଧମ ପାଷାଣ୍ଡ ମୁଁ, କ୍ଷମାକର । ଅଧବାଟରେ ତମକୁ ନିଃସହାୟ କରି ଛାଡ଼ି ଆସିଛି । ମୁଁ ମୂର୍ଖ । ତମର ନିର୍ମଳ ପ୍ରେମାସ୍ୱାଦନ କରିବା ମୋ ଭାଗ୍ୟରେ ନାହିଁ । ତମର ଉପଦେଶ ମାନି ଦେଶତ୍ୟାଗୀ ହୋଇଥିଲେ ଭଲ ହୋଇଥାନ୍ତା । କହିଥିଲ ପରା, ଯେତେଦିନ ବଞ୍ଚିବା, ଜୀବନକୁ ସୁଖରେ କାଟିବାକୁ ଚେଷ୍ଟା ନ କରିବା କାହିଁକି ?

ସତ କଥା । ତମକୁ ହୃଦୟରେ ଧରି ଦୁଇଦିନ ଆନନ୍ଦରେ କଟାଇ ଫାଶି ଖୁଣ୍ଟରେ ଏକ ସଙ୍ଗେ ଝୁଲିଥିଲେ ଭଲ ହୋଇଥାନ୍ତା ! ଏପରି ଜ୍ୱାଳାମୟ ଜୀବନ ସହସ୍ର ବର୍ଷ କଟାଇଦେଲେ ଲାଭ ନାହିଁ । ସମାଜକୁ ଡରିଲି, ଲୋକ ଲଜ୍ଜାକୁ ଡରିଲି, ଫଳ ତ ଏଇଆ ହେଲା । ସମାଜ ବା ବାକି ରଖିଛି କ'ଣ ? ପ୍ରକୃତ କଥାଟି ବୁଝିବାକୁ ଚେଷ୍ଟା ନ କରି ସମାଜ ନିନ୍ଦା ରଟନା କରିବାକୁ ପଛଘୁଞ୍ଚା ଦେଇ ନାହିଁ ।

ଡରି କାହିଁକି କୋକିଳ ? ଆସ, ତମରି ଚିରାନୁଗତ ସାଧୁଚରଣକୁ ତାର ମୂର୍ଖତା ଓ ନିର୍ବୋଧତା ପାଇଁ କ୍ଷମାକରି ଯାଅ । ବିଶୁଦ୍ଧ ମୁକ୍ତ ପ୍ରେମର ନୂତନ ବହ୍ନି ତାଆରି ହୃଦୟରେ ଜଳାଇ ଦେଇଯାଅ । ତାକୁ ପାଗଳ କରି କୋକିଳ ।

ଚକ୍ଷୁ ବୁଜି ଚିନ୍ତା କରୁ କରୁ ସାଧୁଚରଣ ଚମକି ଉଠିଲେ । ସେ ସନ୍ନ୍ୟାସୀ । ସନ୍ନ୍ୟାସୀ ମନରେ ଏତେ ପାପଚିନ୍ତା ! ସନ୍ନ୍ୟାସୀର ପ୍ରାଣ ଉପରେ କନ୍ଦର୍ପର କି ଅଧିକାର ଅଛି ? ସାଧୁଙ୍କର ମନ ତ ସନ୍ନ୍ୟାସୀ ନୁହେଁ ! ଜୀବନ ଉପରେ ଘୃଣା ଆସିବାରୁ ଜୀବନର ଆଶା ଛାଡ଼ି ନ ପାରି ସେ ଗୃହାନ୍ତ ଜୀବନଦୀପକୁ ଟିକିଏ ଉଜ୍ଜ୍ୱଳ ଭାବରେ ଜଳାଇ ନିର୍ବାପିତ କରିଦେବେ । ମୃତ୍ୟୁପରେ ନରକରେ ପଡ଼ିବାର ଭୟ ତାଙ୍କର ନାହିଁ । ସେ ଜାଣନ୍ତି, ମନୁଷ୍ୟ ନିଜ ଜୀବନରେହିଁ ନରକ ଭୋଗ କରେ । ନରହନ୍ତାର ଜୀବନ କେବଳ ନରକମୟ । ମୃତ୍ୟୁ ତାର ମୁକ୍ତି ।

ନରକ କ'ଣ ? ଏହି ଜୀବନ ନରକ-ଯନ୍ତ୍ରଣା ଭିତରେ ଟିକିଏ ଆମୋଦ ପାଇଲେ ଭଲ । ସନ୍ନ୍ୟାସୀ ସାଧୁ, ପାଗଳ ସାଧୁ, ଅଜି ଭାବୁଛନ୍ତି, ତାଙ୍କ ଜୀବନର ଏକମାତ୍ର ଆମୋଦ ଏକା ତାଙ୍କ ପ୍ରାଣର କୋକିଳ, ଯେ ଦିନେ ନିଜର ସର୍ବସ୍ୱ ଦାନ କରିବାକୁ ପ୍ରସ୍ତୁତ ଥିଲେ । କିନ୍ତୁ ଆହା, ଆଜି ସେ କେଉଁଠି ?

ସାଧୁଚରଣ ଚକ୍ଷୁ ବୁଜିଲେ । ଚକ୍ଷୁ କୋଣରୁ ଦୁଇଧାର ଲୋତକ ଝରି ପଡ଼ିଲା । ଦୀର୍ଘଶ୍ୱାସ ଛାଡ଼ି ଚିନ୍ତାକଲେ, କାହିଁ, ସେ ଆଜି କାହିଁ ?

ସାଧୁ ଚକ୍ଷୁ ଖୋଲିଲେ । ଦେଖିଲେ ସମ୍ମୁଖଦେଇ ଦୁଇଜଣ ଆର୍ଦ୍ରବସନା ରମଣୀ ରାସ୍ତାଆଡ଼କୁ ଚାଲିଛନ୍ତି । ପଛରେ ଯାଉଥିବା ସ୍ତ୍ରୀ ଲୋକଟି ମୁଣ୍ଡରେ ଓଢ଼ଣା ଟାଣି ବାରମ୍ବାର ପଛକୁ ଫେରି ଚାହୁଁଛନ୍ତି । ସାଧୁ ସ୍ଥିର ଓ ବିସ୍ମିତ ଲୋଚନରେ ତାଙ୍କୁ ଚାହିଁ ରହିଲେ । ପରିଚିତା ପରି ମନେହେଲା, କିନ୍ତୁ କାଲେ ଆଉ କିଏ ହୋଇଥିବ ।

ପ୍ରଥମା ହୃଦରେ କହିଲେ, ମାଇଜି, ଏ ଯେଉଁ ବାବାଜୀମାନେ ଆଗରେ ଲୁଗାପାଟ ବସିଛନ୍ତି, ତାଙ୍କଠୁ ବଳି ଭଣ୍ଡ ଦୁନିଆରେ ଆଉ କେହି ନାହାନ୍ତି । ଦେଖୁନା ଏହି ଲୋକଟିକୁ । ଅଙ୍ଗୁଳି ନିର୍ଦ୍ଦେଶ କଲା । ପୁଣି କହିଲା, କ୍ଲୋଡ଼ିଗିରିର ଶେଷସୀମା ଲଙ୍ଘନ କଲାଣି । ମୁଁ ସବୁଦିନେ ଦେଖେଁ, ସକାଳୁ ସଞ୍ଜଯାଏ ଏକାଜାଗାକେ ଆଖିବୁଜି ସେ ବସିଥାଏ । ସଞ୍ଜରେ ଉଠି ସେ କୁଆଡ଼େ ଚାଲିଯାଏ । ପୁଣି ରାତି ନ ପାଉଣୁ

ଦେହରେ ପାଉଁଶ ବୋଳି ଢେର ଆସି ହାଜର୍ । ଏମାନଙ୍କୁ ଦେଖିଲେ ଅଧଲାଏ, ପଇସାଏ ଦେବାକୁ ମୋର ଜମା ଇଚ୍ଛା ହୁଏନାହିଁ ।

ଦ୍ୱିଜସ୍ୱାମୀ ବଙ୍ଗଳାରେ କହିଲେ, ସେପରି କହନା ଲୋ, ଏମାନଙ୍କୁ ଦେଖିଲେ ମୋ ମନ ତରଳିଯାଏ । ଯେଉଁମାନେ ଅନ୍ଧ, ଖଞ୍ଜ, ରୋଗୀ, ସେମାନଙ୍କୁ ଭଗବାନ ଦଣ୍ଡ ଦେଇଛନ୍ତି । ଯେଉଁମାନେ ସନ୍ନ୍ୟାସୀ ସାଜି ନିଜକୃତ ଅଜ୍ଞାତ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ ଭିକ୍ଷା କରି ଉଦର ପରିପୋଷଣ କରୁଛନ୍ତି, ସେମାନେ ମଧ୍ୟ ଦୟାର ପାତ୍ର ।

କୁନ୍ଦ ଚକ୍ଷୁ ଲୋତକରେ ଛଳ ଛଳ ହେଲା । ସେ ଓଢ଼ଣୀ କଣରେ ପୋଛିଲେ । ଭିତରେ ଚମକ ଲାଗିଲା । ଅବିକଳ ଦିଶୁଛନ୍ତି ସାଧୁଚରଣ ପରି ! ହଁ, ସାଧୁଚରଣ, ଏଥିରେ ସନ୍ଦେହ ନାହିଁ । ଶେଷକୁ, ତାଙ୍କର ଅବସ୍ଥା ହେଲା ଏଇଆ ? ଜୀବନ ଉପରେ ସନ୍ନ୍ୟାସ, ପୁଣି ପେଟ ପାଇଁ ଭିକ୍ଷା ?

ସେ ଚିହ୍ନିପାରି ନାହାନ୍ତି । ଆଗରୁ ପଳାଇ ଯିବା ପ୍ରୟୋଜନ । ଚିହ୍ନା ଦେଇ ହେବନାହିଁ । ଚିହ୍ନା ଦେଲେ ଦୁହିଙ୍କର ସର୍ବନାଶ ହେବ । କୁନ୍ଦ ବେକରୁ ଗୋଟିଏ ସ୍ୱର୍ଣ୍ଣହାର କାଢ଼ି ଦାସୀକୁ ଦେଇ କହିଲେ, ଯା, ଏହି ହାରଟି ସେ ସନ୍ନ୍ୟାସୀକୁ ଦେଇ ଆସିବୁ, ମୁଁ ଆଗରେ ଯାଉଛି ।

ଦାସୀ ଆଶ୍ଚର୍ଯ୍ୟ ହେଲା । ଆହା, ଦାନଟି ଯଦି ତା ଭାଗ୍ୟରେ ପଡ଼ିଥାନ୍ତା ! ଭବିଷ୍ୟତ ଆଶାରେ ସେ କୁନ୍ଦଲତାକୁ ପ୍ରଶଂସା କରି କହିଲା, ମାଈଜି, ତମେ ଦୟାର ଅବତାର । ତତ୍ପରେ ସେ ସ୍ୱର୍ଣ୍ଣ ହାରଟି ନେଇ ବାବାଜୀଙ୍କ ନିକଟକୁ ଫେରିଗଲା ।

ବାବାଜି ସ୍ୱର୍ଣ୍ଣହାର ଗ୍ରହଣ କରିବାକୁ ଅସମ୍ମତ ହୋଇ କହିଲେ, ସାଧୁର ସୁନାହାର ଲୋଡ଼ାନାହିଁ । ମା ମାଉସୀଙ୍କଠାରୁ ପଇସାଟିଏ ପାଇଲେ ତାର ଚଳିଯିବ ।

ଦାସୀ ଫେରି ଆସିଲା କୁନ୍ଦଲତାଙ୍କ ପାଖକୁ ।

କହିଲା, ବାବାଜୀ ହାରଟି ଗ୍ରହଣ କଲେ, କିନ୍ତୁ କେଜାଣି କଅଣ ଭାବି ଗଙ୍ଗାନଈ ଭିତରକୁ ଫୋପାଡ଼ିଦେଲେ । କହିଲେ, ସାଧୁର ସୁନାହାର ଲୋଡ଼ାନାହିଁ । ଚୋରିମାଲ ବୋଲି ପୋଲିସ ଗିରଫ କରିବ । ମା ମାଉସୀଙ୍କ ହାତରୁ ଅଧଲେ ପଇସେ ପାଇଲେ ସେ ଗ୍ରହଣ କରେ ।

କୁନ୍ଦଲତା ତୁନି ରହିଲେ । ସେ ବୁଝିପାରିଲେ, ସେଇ ସନ୍ନ୍ୟାସୀ ନିଶ୍ଚୟ ସାଧୁଚରଣ । କାଶୀରେ ଅଧିକ ଦିନ ରହିବା ନିରାପଦ ନୁହେଁ ।

## ୧୯

କୁନ୍ଦଲତାଙ୍କ ଫେରିଯିବାପାଇଁ ଜିଗର୍ ଦେଖି ବିପ୍ରଚରଣ ବିରକ୍ତ ହେଲେ । ଏ କଅଣ ? ଯେଉଁଲୋକ କାଶୀ ଦେଖିବ ବୋଲି ଆହାର ନିଦ୍ରା ଭୁଲି ଏକା ଜିଦ୍ ଧରି ଆସିଛି, ଦିନ ଦଶଟା ନ ପୂରୁଣୁ ଆଜି ହଠାତ୍ କଲିକତା ଫେରିଯିବାକୁ ଏଡ଼େ

ଉଚ୍ଛନ୍ନ କାହିଁକି ? ଶୈଳ ପ୍ରଭୃତି କେହି ଆସିଲେ ନାହିଁ କି ଚିଠି ପତ୍ର ଖଣ୍ଡେ ଦେଲେ ନାହିଁ । ଏପରିସ୍ଥଳେ ବୃଦ୍ଧାଙ୍କ ସ୍ୱାସ୍ଥ୍ୟ ସମ୍ବନ୍ଧେ ସନ୍ଦିହାନ ହେବା ତ ସ୍ୱାଭାବିକ । ମାତ୍ର, ଭଲମନ୍ଦ ହୋଇଥିଲେ ଦେବେନ୍ ବାବୁ ଟେଲିଗ୍ରାମ କରି ଜଣାଇଥାନ୍ତେ ।

କୁନ୍ଦଲତାଙ୍କ ଜିଗର,—ସେ ନିଶ୍ଚୟ ଆଜି ରାତି ଦୁଇଟା ଗାଡ଼ିରେ କଲିକତା ଫେରିବେ ।

ବିପ୍ରଚରଣ ଅଗତ୍ୟା ସ୍ୱୀକୃତ ହୋଇ ଦିନ ଗ୍ୟାରଟା ବେଳେ ବଜାରକୁ ବାହାରି ଗଲେ । ଉଦ୍ଦେଶ୍ୟ—କୁନ୍ଦଲତା ଓ ଶୈଳ ଦୁଇଜଣଙ୍କ ପାଇଁ ଏକ ମଗ୍ଗିର ଦୁଇଖଣ୍ଡି ବନାରସୀ ଶାଢ଼ୀ କିଣି ଆଣିବେ ।

କୁନ୍ଦ ଦାସୀର ସାହାଯ୍ୟରେ ଜିନିଷପତ୍ର ବନ୍ଧାବନ୍ଧି କରିବାରେ ଲାଗିଗଲେ । ଆଜି ତାଙ୍କର ମନ ଭଲ ନାହିଁ । ମୁଣ୍ଡ ବୁଲାଉଛି । କାମ କରୁ କରୁ ସେହି ବାବାଜୀ କଥା ମନେ ପଡ଼ିଗଲେ ସେ ସ୍ଥିର ହୋଇ ବସିପଡ଼ନ୍ତି । ଗୋଡ଼ହାତ ଚଳେ ନାହିଁ । ଆଖିବାଟେ ଜୁଳୁଜୁଳିଆ ପୋକ ବାହାରେ । ପୁଣି, ମୁଣ୍ଡ ବୁଲାଏ । ଆଖିରୁ ଲୁହଧାର ଗଡ଼ିପଡ଼େ । ସାଧୁର ପୁଣି ସୁନାହାର ହେବ କଅଣ ! ସାଧୁ ନିଶ୍ଚୟ ଚିହ୍ନି ପାରିଛନ୍ତି । ରକ୍ଷା ପାଇବାର ଉପାୟ ନାହିଁ । ଏଥର ଫାଶିଖୁଣ୍ଟରେ ଝୁଲିବାକୁ ହେବ । କିପରି ବିପ୍ରଚରଣ ବୁଝି ପାରିବେ, ସେ ପ୍ରତାରିତ । ସେ ଜଣେ ବିଧବା ସ୍ୱାମୀ ଘାତକୀକୁ ବିଶ୍ୱାସରେ ବିବାହ କରିଛନ୍ତି । ଏତେ ସ୍ନେହ, ଏତେ ମମତା ତାଙ୍କର, ଜଣେ ପ୍ରତାରିକା ପ୍ରତି । ମୃତ୍ୟୁହିଁ ଭଲ ।

କୁନ୍ଦଲତା ଖଟଉପରେ ଶୋଇ ଛଟପଟ ହେବାକୁ ଲାଗିଲେ । ଦାସୀ କିଛି ବୁଝି ନ ପାରି ନଳଟିଣ ଲଗାଇଲା ।

ବିପ୍ରଚରଣ କେତେ ଦୋକାନ ବୁଲି ଶେଷରେ ଗୋଟିଏ ବଡ଼ ଦୋକାନରେ ଉପସ୍ଥିତ ହେଲେ । ଶାଢ଼ୀ କିଣିବେ କଅଣ ? ଦୋକାନରେ ଉପସ୍ଥିତ ହୋଇ ସେ ଯାହା ଦେଖିଲେ ସେଥିରେ ତାଙ୍କର ଚକ୍ଷୁ ସ୍ଥିର ହେଲା । ସେ ନିଜକୁ ବିଶ୍ୱାସ କରି ପାରିଲେ ନାହିଁ । ଅନତି ଦୂରରେ ଜଣେ ଭଦ୍ରଲୋକ ଆଗରେ ଖଣ୍ଡେ ତାଲିକା ପକାଇ କେତେଖଣ୍ଡ ଶାଢ଼ୀ ମେଲାଇ ବସିଛନ୍ତି ।

ବିପ୍ରଚରଣ ତୀକ୍ଷ୍ଣ ଦୃଷ୍ଟିରେ ଆସୀନ ଭଦ୍ରଲୋକଙ୍କୁ ଅନାଇଁ ଚିନ୍ତାକଲେ, ଭାଇ ? ଏଇ କେତେଟା ବର୍ଷ ଭିତରେ ସେ ଏକାଥରକେ ବଦଳି ଯାଇଛନ୍ତି ! ଭାଇ ତ ଏଡ଼େ ବୁଢ଼ା ନୁହନ୍ତି ? ମୁଣ୍ଡର ବାଳ ପାଚି ଝୋଟ ପରି ହୋଇ ଯାଇଛି । ଶରୀର ଏଡ଼େ ଦୁର୍ବଳ ? ନାଁ, ଏ ଭାଇ ନୁହନ୍ତି ।

ତାଙ୍କ ହୃଦୟ ଭିତର କାନ୍ଦି ଉଠିଲା । ଉଦ୍‌ବେଗପୂର୍ଣ୍ଣ ହୃଦୟକୁ ସେ ଅତି କଷ୍ଟରେ ଗୁପିଧରି ଭଦ୍ରଲୋକଙ୍କ ନିକଟରେ ଉପସ୍ଥିତ ହେଲେ । ସେ ଦୋକାନକୁ କାହିଁକି ଆସିଛନ୍ତି ଏବଂ ସେ କେଉଁଠାରେ ଠିଆ ହୋଇଛନ୍ତି ସବୁ ଭୁଲିଗଲେ । କେବଳ ମୂକ ପରି ଠିଆ ହୋଇ ରହିଲେ ।

ଉପବିଷ୍ଟ ଭଦ୍ରଲୋକ ବିପ୍ରଚରଣଙ୍କୁ ଅନାଇଁ ଅବାକ୍ ହେଲେ । ତାଙ୍କ ହାତରୁ ପେନ୍‌ସିଲ୍ ଖଣ୍ଡି ଖସିପଡ଼ିଲା । ବିପ୍ରଚରଣଙ୍କ ମୁଖରେ ହିଁ ତାଙ୍କ ଚକ୍ଷୁ ସ୍ଥିର ହେଲା । ଚିହ୍ନାଇ ଦେବାକୁ କେହି ନାହିଁ । ଆବଶ୍ୟକ ବି ନାହିଁ । ରକ୍ତହିଁ ପରିଚୟ ଦେଲା । ବୃଦ୍ଧ ବିସ୍ଫାରିତ ନେତ୍ରରେ ଅନାଇ ଭଗ୍ନ କଣ୍ଠରେ କହିଲେ, ବିପ୍ର !

ବିପ୍ରଚରଣ ଉତ୍ତର ଦେଇ ପାରିଲେ ନାହିଁ । ତାଙ୍କ ଚକ୍ଷୁଦ୍ୱୟରୁ ଝର ଝର ହୋଇ ଶ୍ରାବଣର ଧାରା ପରି ଲୋତକ ଝରିଲା । ଏତେବର୍ଷର ସଞ୍ଚିତ ଅଭିମାନ, ଏତେ ବର୍ଷର ଏକୀକୃତ ରାଗରୋଷ, ସଙ୍କୋଚ, ଭୟ ଓ ଘୃଣା ସବୁ ସେହି ଲୋତକ-ଧାର ସଙ୍ଗେ ମିଶି ବୋହି ଚାଲିଗଲା । ସେ ନୀରବରେ ଭ୍ରାତୃଚରଣ ଧରି ପ୍ରଣାମ କଲେ । ଅଭୟଚରଣ ତାଙ୍କୁ ତଳୁ ଉଠାଇ ଦୁଇହସ୍ତ ବେଷ୍ଟନ କରି ଆଲିଙ୍ଗନ କଲେ । ଅଭୟଚରଣ ବିପ୍ରଚରଣଙ୍କର ହାତ ଧରି ରାସ୍ତାକୁ ଓହ୍ଲାଇଲେ । ରାସ୍ତାର ସେପାଖେ ଖଣ୍ଡେ ଘୋଡ଼ାଗାଡ଼ି ରଖା ହୋଇଥିଲା । ଗାଡ଼ି ଭିତରେ ବସିଥିଲେ ମୋତାଦେଈ । ବିପ୍ରଚରଣ ପ୍ରଣାମ କଲେ । ବିପ୍ରଚରଣଙ୍କୁ ଦେଖି ସେ ମଧ୍ୟ ଲୋତକ ଗଡ଼ାଇ କାନ୍ଦିଲେ । ଅଭୟଚରଣ ଗାଡ଼ି ଭିତରେ ବସି ଗାଡ଼ୁଆନ୍‌କୁ ମନ୍ଦିର ଆଡ଼କୁ ଗାଡ଼ି ନେବାକୁ କହିଲେ । ତିନିଜଣଙ୍କ ମଧ୍ୟରେ କେତେ ଦୁଃଖ ସୁଖ କଥା ପଡ଼ିଲା ।

ମୋତାଦେଈଙ୍କ କଥାରୁ ବିପ୍ରଚରଣ ବୁଝିଲେ ଯେ ସାଧୁଚରଣ କୋକିଳ-ଦେଈଙ୍କୁ ସଙ୍ଗରେ ନେଇ ଦେଶତ୍ୟାଗୀ ହେଲା ପରେ ପୋଲିସ ଯାଇ ରସାନନ୍ଦଙ୍କ ଘର ଖାନ୍‌ତଲାସ କଲା । ଆସନ୍ନମୃତ ଜଗନ୍ନାଥଙ୍କୁ ଡାକ୍ତରଖାନାକୁ ନେଇଗଲେ । ବହୁଯତ୍ନ ଓ ବହୁ ଶ୍ରମ ପରେ ଜଗନ୍ନାଥ ଜୀବନ ପାଇଲେ । ତାଙ୍କ କଥାରୁ ପ୍ରକାଶ ପାଇଲା ଯେ କୋକିଳ ଦେଈ ତାଙ୍କୁ ଗୁଳିକରି ମାରିବାକୁ ଚେଷ୍ଟା କରିଥିଲେ । କାରଣ ଯେତେବେଳେ ଜଗନ୍ନାଥ ଜାଣି ପାରିଲେ ଯେ କୋକିଳ ଜାଣି ଜାଣି ନିଜର ସ୍ୱାମୀଙ୍କୁ ବିଷ ପ୍ରୟୋଗ କରି ମାରିଛନ୍ତି, ସେ ଘଟଣାଟି ପୋଲିସରେ ଜଣାଇଁ ଦେବାକୁ ମନସ୍ଥ କଲେ ।

କୋକିଳ ଏ ବିଷୟ ବୁଝିପାରି ରଥଯାତ୍ରା ରାତ୍ରୀରେ ଜଗନ୍ନାଥଙ୍କୁ ନିମନ୍ତ୍ରଣ କରି କୌଶଳରେ ଗୁଳି ଫାଏର୍ କଲେ । ସେହି ସମୟରେ ସାଧୁ ଆସି ଉପସ୍ଥିତ ହେଲେ । ସେ ଏ ସମସ୍ତ କାଣ୍ଡ ଦେଖି ଅସ୍ଥିର ହୋଇ ପଡ଼ିଲେ । କୋକିଳ ତାଙ୍କୁ ଡରାଇ କହିଲେ, ଯଦି ସେ କୋକିଳଙ୍କୁ ସଙ୍ଗରେ ନେଇ ରାତାରାତି ପୁରୀ ଛାଡ଼ି ପଳାଇ ନ ଯାଏ, ସକାଳେ ଜଗନ୍ନାଥର ମୃତ୍ୟୁ ପାଇଁ ସାଧୁଚରଣହିଁ ଫାଶୀଖୁଣ୍ଟରେ ଝୁଲିବ । କେହି କେବେ ବିଶ୍ୱାସ କରିବ ନାହିଁ ଯେ କୋକିଳ ପରି ଜଣେ ନାରୀ ଜଗନ୍ନାଥ ପରି ଯୁବକକୁ ମାରିପାରେ । ଜଗନ୍ନାଥର ଜ୍ଞାନ ଥାଇ ମଧ୍ୟ ସେ ଅଜ୍ଞାନ ହୋଇ ପଡ଼ିଥାଏ ।

ନୂଆବୋଉଙ୍କ ମୁହଁରୁ ଏହି କଥା ଶୁଣି ବିପ୍ରଚରଣ ବିସ୍ମିତ ହେଲେ । ମୋତା ଦେଈ ପୁଣି କହିଲେ, ସାଧୁ ମୋର ସାଧୁ ପିଲା, ସେ କେବେ ଏପରି ପାପକାର୍ଯ୍ୟ କରିବାକୁ ଯାଇ ନ ଥିବ । ଡାହାଣୀ କଅଣ ଆଉଁଯାଏ ମୋ ପୁଅକୁ ଜୀବନରେ ରଖିଛି ?

ସାଧୁଚରଣଙ୍କ ନିରୁଦ୍ଦେଶ୍ୟରେ ବ୍ୟଥିତ ହୋଇ ସଂସାରର ସବୁ ବନ୍ଧନ ତୁଟାଇ ତୀର୍ଥବାସୀ ହେବାକୁ ଅଭୟଚରଣ ଓ ମୋତାଦେଈ ସେହି ଜଗନ୍ନାଥ ବାବୁଙ୍କ ହସ୍ତରେ ସବୁକୁ ସମର୍ପଣ କଲେ । ପ୍ରାୟ ଦୁଇମାସ ହେବ ବିବାହ କାର୍ଯ୍ୟ ଶେଷ କରି ଦୁହେଁ ତୀର୍ଥ ପର୍ଯ୍ୟଟନ କରିବାକୁ ବାହାରିଛନ୍ତି । ସବୁ ତ ପରଗୋତ୍ରୀ । ତା ଉପରେ ଏଣିକି ତାଙ୍କର କି ଅଧିକାର ଅଛି ଯେ ସଙ୍ଗରେ ଆଣିବେ ? ଯାହାହେଉ, ଜଗନ୍ନାଥବାବୁ ମାଟ୍ରିକ୍ୟୁଲେଶନ ପାସ୍ କରି ପୋଲିସ ମୁନ୍‌ସି ହୋଇଛନ୍ତି, ଉପାୟ କରି ନିଶ୍ଚୟ ସାଧୁକୁ ଯେଉଁଠୁ ହେଲେ ବାହାର କରିବେ, ଏହା ହିଁ ମୋତା ଦେଈଙ୍କର ଆଶା ।

ମୋତା ଦେଈ ବିପ୍ରଚରଣଙ୍କ ଓଠ ଧରି କହିଲେ, ସବୁ ମୋର ଦୋଷ ବିପ୍ର, ସବୁ ମୋର ଦୋଷ । ଠାକୁରେ ସେଥିପାଇଁ ଦଣ୍ଡ ଦେଲେଣି । ଆସ ବାବୁ ଘର ପୁଅ ଘରକୁ ଫେରିଯିବ । ତମ ମୁହଁ ଦେଖି ସାଧୁକୁ ମୁଁ ଭୁଲିଯିବାକୁ ଚେଷ୍ଟା କରିବି । କହୁଁ କହୁଁ, ଚକ୍ଷୁ ଲୋତକପୂର୍ଣ୍ଣ ହେଲା ।

ବିପ୍ରଚରଣ କହିଲେ, ମୋ ସଙ୍ଗେ ଯେ ଆଉରି ଜଣେ ଅଛି ନୂଆବୋଉ ।

ମୁଁ ସେ କଥା ଜାଣେ ।

ଅଭୟଚରଣ କହିଲେ, ମୁଁ ଖବରକାଗଜରୁ ପଢ଼ିଚି । ଆଜିକାଲି ତ ସେପରି ଚଳିଲାଣି । ଯେତେହେଲେ କରଣଘର କୁଳକନ୍ୟା । ହୁଁଃ...ଆମେ ଓଡ଼ିଆ ସେ ହେଲେ ବଙ୍ଗାଳି । ପ୍ରଭେଦ ଏତିକି । ସେଥିକି ଭାବନା ନାହିଁ ।

ବିପ୍ରଚରଣ ଲଜ୍ଜିତ ହୋଇ ଭ୍ରାତୃଜାୟାଙ୍କ କାନ ପାଖରେ କହିଲେ, ଯଦି ତମର ଆପତ୍ତି ନ ଥାଏ, ମୁଁ ଘରକୁ ଫେରି ଯିବାକୁ ଅମତ ହେବନାହିଁ । ତମ ବୋହୂତ ସାହାବାଣୀ ନୁହେଁ କି ଆଉ କିଛି ନୁହେଁ । ତାଙ୍କୁ ଦେଖିଲେ ନିଶ୍ଚୟ ଖୁସି ହେବ ।

ମୋତାଦେଈ କହିଲେ, ତେବେ ଦେଉଳ ଫେରନ୍ତି ତମ ବସାବାଟେ ଯିବା । ମୁଁ ମୋ ବୋହୂକୁ ସଙ୍ଗରେ ନେଇ ଆସିବି । ମନେ ରଖିଥା ବିପ୍ର, ଥରେ ପାଇଲେ ତାକୁ ଆଉ ମୁଁ ମୋ ପାଖରୁ ଛାଡ଼ିଦେଇ ପାରିବି ନାହିଁ ।

## ୨୦

ଶୀତଳ ଚନ୍ଦ୍ରାଲୋକରେ ଧରିତ୍ରୀବକ୍ଷ ପ୍ଲାବିତ । ପ୍ରକୃତି ଆଜି ହାସ୍ୟମୟୀ । **ପଞ୍ଚ**ମୀର ବଙ୍କିମ ଚନ୍ଦ୍ର ବିଶ୍ୱଜଗତକୁ ଆନନ୍ଦରେ ମତାଇ ପାଗଳ କରିବାକୁ ହସି ହସି ଧଳା ବଉଦର୍ ପଛଆଡ଼େ ଲୁଚକାଳି ଖେଳିବାରେ ବ୍ୟସ୍ତ । ସନ୍ଧ୍ୟାକାଳୀନ ଅବଶ ବାୟୁ ଆଜି ମନ୍ଥର ଗତିରେ ପ୍ରବାହିତ ।

ଯାହାର ମନ ଦୁଃଖପୂର୍ଣ୍ଣ, ତାକୁ ଏ ସମସ୍ତ ବିଷ ପରି ଲାଗେ । କୁନ୍ଦ ଦେଇ ଭବିଷ୍ୟତର କେଉଁ ଏକ ଭୟପ୍ରଦ ଚିନ୍ତାରେ ବ୍ୟଥିତା ହୋଇ ଏକାକିନୀ ଛଟପଟ ହେଉଛନ୍ତି । ନିଶ୍ଚୟ ଆଜି ରାତି ଦ'ଟା ଗାଡ଼ିରେ କଲିକତା ଫେରିବାକୁ ହେବ । ଏହି ଚିନ୍ତାରେ ସେ ଛଟପଟ । ମନୁଷ୍ୟର ପାପ ତାର ପଛେ ପଛେ ଗୋଡ଼ାଇ ଥାଏ । ନିଜର ମନ ହିଁ ସବୁ ପାପର ସାକ୍ଷୀ । ଯହିଁ ଗଲେ ଅନୁଶୋଚନାରୁ ମୁକ୍ତିଲାଭ କରିବା ସହଜ କଥା ନୁହେଁ । ମନୁଷ୍ୟ ସମସ୍ତଙ୍କ ଆଖିରେ ଧୂଳି ଦେଇ ନିଷ୍କୃତି ପାଇପାରେ, କିନ୍ତୁ ନିଜର ଅପରାଧୀ ମନ ନିକଟରୁ ଉଦ୍ଧାରିଯିବାର ଉପାୟ ନାହିଁ ।

ସମୟ ଡେରି ହେଲାରୁ କୁନ୍ଦଲତା ବେଳୁବେଳ ଅଧିକ ଅସ୍ଥିର ହେବାକୁ ଲାଗିଲେ । ମନ କେତେ ପାପ ଛୁଇଁଲା । ସେ ଅଧୀର ହୋଇ ଶଯ୍ୟା ତ୍ୟାଗ କଲେ । ଆଲୁଅ ଟେକି ଦାସୀର ନାମ ଧରି ଡାକଲେ । ଦାସୀ କାମ ଶେଷକରି ବୋଧହୁଏ ନିଜ ଘରକୁ ଯାଇଛି ।

ତାଠାରୁ ଜବାବ୍ ନ ପାଇ କୁନ୍ଦଲତା ଆଲୁଅ ଧରି ଦାଣ୍ଡଘରକୁ ଆସିଲେ । ଝରକାଗୁଡ଼ିକ ପୂର୍ବ ପରି ଠିଆ ମେଲା । ଜାଉଁଳି କବାଟର ଦୁଇପାଖ ଆଉଜା ହୋଇଛି । ସେ ଝରକାବାଟେ ପଦାକୁ ଅନାଇଁ ଠିଆ ହେଲେ । କାଲେ ବିପ୍ରଚରଣ ଆସୁଥିବେ । ବିପ୍ରଚରଣ ଆସିଲେ ନାହିଁ । ଦଳ ଦଳ ହୋଇ କେତେ ସ୍ତ୍ରୀ ପୁରୁଷ ରାଜପଥ ଉପରେ ମନ ଆନନ୍ଦରେ ଚାଲି ଯାଉଛନ୍ତି ।

କୁନ୍ଦଲତା ବ୍ୟସ୍ତ ହୋଇ କବାଟ ପାଖକୁ ଆସିଲେ । ଏକୁଟିଆ ଭଲ ଲାଗିଲା ନାହିଁ । ସେ କବାଟକୁ ସାମାନ୍ୟ ଟିକେ ମେଲାଇ ପଦାକୁ ଚାହିଁଲେ, ଦେଖିଲେ କିଏ ଜଣେ ବାରଣ୍ଡାର କାନ୍ଥକୁ ଆଉଜି ନୀରବରେ ବସିଛନ୍ତି ।

କୁନ୍ଦଲତା ମନରେ ସାହସ ଆଣି ଉଚ୍ଚ ସ୍ୱରରେ ପଚାରିଲେ, କିଏ ସେ ?

ଉପବିଷ୍ଟ ଲୋକଟି ଉତ୍ତର ନ ଦେଇ ଠିଆ ହେଲେ ମଦୁଆଙ୍କ ପରି । ଟଳି ଟଳି କବାଟ ପାଖକୁ ଆସିଲେ ।

କୁନ୍ଦଲତାଙ୍କ ଛାତି ଭିତରେ ସତେ ଯେପରି ଛନକା ପଶିଗଲା । ସେ ଭୟରେ ପଛକୁ ଘୁଞ୍ଚିଯାଇ ମୃଦୁ କମ୍ପିତ ସ୍ୱରରେ ଆତୁର ଥରେ ପଚାରିଲେ, କିଏ ?

ଆଗନ୍ତୁକ ଉତ୍ତର ନ ଦେଇ ଘର ଭିତରକୁ ପଶିଆସିଲେ । କୁନ୍ଦଲତାଙ୍କର ମୁହଁ କଳାକାଠ ହୋଇଗଲା । ତଣ୍ଟି ଶୁଖିଗଲା, ସେ ସ୍ତମ୍ଭିତ ହୋଇ ସ୍ଥିର ବିସ୍ଫାରିତ

ନେତ୍ରରେ ଆଗନ୍ତୁକଙ୍କର ଗୋଡ଼ରୁ ମୁଣ୍ଡଯାଏ ଅନାଇଁଗଲେ । ମୁହଁରୁ କଥା ବାହାରିଲା ନାହିଁ । ଭାବିବାକୁ ମଧ୍ୟ ବେଳ ପାଇଲେ ନାହିଁ । ମାଟି ପିତୁଳା ପରି ସ୍ଥିରହୋଇ ଠିଆହୋଇ ରହିଲେ ।

ଆଗନ୍ତୁକ ସାମାନ୍ୟ ହସି କହିଲେ, ଭୟ କାହିଁକି କୋକିଳ, ମୁଁ ସ୍ୱୟଂ ଜୀବନ୍ତ ସାଧୁଚରଣ, ସାଧୁ ଚରଣର ପ୍ରେତାତ୍ମା ନୁହେଁ··· ।

ତୁମେ କାହିଁକି ?

ସାଧୁଚରଣ ଦ୍ୱାର ଆଉଜାଇ ପୂର୍ବବତ୍ ହସି ହସି କହିଲେ, ତୁମକୁ ହତ୍ୟା କରିବାକୁ ଆସି ନାହିଁ । ମୁଁ ଆସିଛି କ୍ଷମା ମାଗିବାକୁ ତୁମକୁ ସେ ଦିନ ମୁଁ ଅଧବାଟରେ ଛାଡ଼ି ଚାଲି ଯାଇଥିଲି ବୋଲି ।

ଏଠାରୁ ଚାଲିଯାଅ ।

ଚାଲିଯିବାକୁ ଆସିଛି କୋକିଳ ? ଏ ତୁମର ଭୁଲ ଧାରଣା । ଏତେଦିନ ଯାଏ ଦେଶ ଦେଶ ବୁଲି ତୁମକୁ ଖୋଜି ଖୋଜି ଆଜି ପାଇଛି । ଦେଖି ଦେଖି ଚାଲିଯିବାକୁ କହୁଛ ? ପୂର୍ବର ସ୍ନେହ ସବୁଗ କଅଣ ଏକାଥରେ ଭୁଲିଗଲ ? ଯଦି ଚାଲି ଯିବି ଏକୁଟିଆ ଯିବିନାହିଁ । ମୋ ସଙ୍ଗେ ତୁମକୁ ମଧ୍ୟ ଯିବାକୁ ପଡ଼ିବ ?

ତୁମ ସଙ୍ଗେ ମୋର ଆଉ କି ସମ୍ପର୍କ ?

ସେଦିନ ଏତେ ଲୋକଙ୍କ ଆଗରେ ଟ୍ରେନ୍‌ରେ ତୁମ ମୁହଁରେ ତୁମେ ସମ୍ପର୍କ ସ୍ଥିର କରିଛ । ନ ଜାଣିଲା ପରି ମୋତେ ପଚାରୁଛ କାହିଁକି ? ସତ କହୁଛି କୋକିଳ, ନ ବୁଝି ନ ସୁଝି ଉତ୍ତେଜନାରେ ତୁମକୁ ମୁଁ ଛାଡ଼ି ଚାଲିଗଲି ସିନା ଅଦ୍ୟାପି ମୁଁ ଅନୁତାପର ତୀବ୍ର ତାଡ଼ନା ଅଙ୍ଗେ ଅଙ୍ଗେ ଭୋଗ କରୁଛି । ପରେ ମୁଁ ବୁଝିପାରିଲି, ତମର ଉପଦେଶହିଁ ଯଥାର୍ଥ । ମନୁଷ୍ୟ ଯେତେଦିନ ବଞ୍ଚି ରହିବ, ଜୀବନକୁ ଆନନ୍ଦରେ କଟାଇବାକୁ ଚେଷ୍ଟା ନ କରିବ କାହିଁକି ? ମୂର୍ଖ ମୁଁ, ନିର୍ବୋଧ ମୁଁ, ତୁମର ସୁଚିନ୍ତିତ ଉପଦେଶକୁ ମୁଁ ଅନ୍ୟ ଭାବରେ ଗ୍ରହଣ କରିଥିଲି । ମୋର ନିଜ ହୃଦୟର କଥା ମଧ୍ୟ ମୁଁ ବୁଝି ପାରି ନ ଥିଲି । ତୁମକୁ ଅସତ୍ ଚରିତ୍ରା ଯୁବତୀ ଭାବି ମୁଁ ଛାଡ଼ି ଚାଲିଆସିଲି । ସେଥିନିମନ୍ତେ ଆଜି ମୁଁ ତୁମ ନିକଟରେ କ୍ଷମା ଚାହୁଁଛି ।

କୋକିଳ ଦେଈଙ୍କର ଚକ୍ଷୁ ଲୋତକରେ ପୂର୍ଣ୍ଣ ହେଲା । କାଳେ ବିପ୍ରଚରଣ ଆସିଯିବେ ଏହି ଭୟରେ ସେ ଝରକା ବାଟେ ପଦାକୁ ଚାହିଁ କହିଲେ, ସତ କହିଲ, ତମେ କଅଣ ପୂର୍ବର ସେହି ସରଳ ସତ୍‌ଚରିତ୍ର ସାଧୁଚରଣ ନୁହଁ ।

ସେ ଦିନର ନିର୍ବୋଧ ସାଧୁଚରଣ ତୁମକୁ ହାତରେ ପାଇ ତୁମର ପ୍ରକୃତ ମୂଲ୍ୟ ବୁଝି ପାରି ନଥିଲା । ତୁମ ନିକଟରୁ ଦୂରରେ ରହି ଓ ଅହରହ ତୁମର ଚିନ୍ତାରେ ସମୟ କାଟି ସେ ବୁଝି ପାରିଲା, ତୁମର ପ୍ରକୃତ ଗୁଣ କଅଣ । ବିଚ୍ଛେଦ ହିଁ ନିରହନ୍ତା ସାଧୁଚରଣର ହୃଦୟରେ ପ୍ରେମର ଗଭୀର ଗାର ଟାଣିଦେଲା । ଗ୍ରାମ, ନଗରୀ, ବନ,

ପ୍ରାନ୍ତର ମଝିଁ ଯେବେ ଜୀବନ ଭିତରେ ବୁଲିଛୁ ତୁମର ଚନ୍ଦ୍ରାକୁ ମୋର ପ୍ରଧାନ ସଙ୍ଗୀ ବୋଲି ମୁଁ ମନେ କରିଛୁ । ତୁମେ ମୋତେ କେତେ ଭଲ ପାଅ । ମୁଁ ମୂର୍ଖ ! ତୁମ ପ୍ରେମର କି ପ୍ରତିଦାନ ଦେଇଥିଲି ? କ୍ଷମା କର । ଆସ । ମାଉସୀର ଆଭରଣରେ ସେ ଦିନ ଯେଉଁ ଗୁପ୍ତ ପ୍ରେମର ମଧୁର ଚୁମ୍ବନଟିଏ ଦେଇଥିଲ ଓରି ଓରିକା, ଆଜି ସେହି ଆଭରଣଟି ଫିଙ୍ଗିଦେଇ ଆସ । ବିସ୍ତୀର୍ଣ୍ଣ ବିଶ୍ୱମଧ୍ୟରେ ଆତ୍ମଗୋପନ କରି ଜୀବନ କଟାଇଦେବା । ତୁମେ ଯେପରି ପୁରୁଷହତ୍ୟା କରିଛ ମୁଁ ମଧ୍ୟ ସେହିପରି ଖୁଣୀ । ଜଣାପଡ଼େ ତ ପରସ୍ପରକୁ ଆଲିଙ୍ଗନ କରି ମନ ଆନନ୍ଦରେ ଫାଶୀ ଖୁଣ୍ଟରେ ଝୁଲିବା ।

ସନ୍ନ୍ୟାସୀ ମୁଖରେ ଏପରି ଆନନ୍ଦ କଥା ସୁନ୍ଦର ଶୁଭୁନାହିଁ ।

ସନ୍ନ୍ୟାସୀ କିଏ ? ମୁଁ ତ ସନ୍ନ୍ୟାସୀ ନୁହେଁ । ମୋର ମୁକ୍ତି କାମନା ନାହିଁ । ସହସ୍ରବର୍ଷ ନରକ କୁଣ୍ଡରେ ତୁମରି ଲାଗି ଘାଣ୍ଟି ହୋଇ କଷ୍ଟ ପାଉଥିବି, ମୁକ୍ତି କେବେ କାମନା କରିବି ନାହିଁ । ଆଉ, ସନ୍ନ୍ୟାସୀ ହେଲି କାହିଁକି ?

ଗତ କଥା ଭୁଲି ଯାଅ ।

ଭୁଲିଯିବି କୋକିଳ ? ତୁମକୁ ପାଇ ନିଶ୍ଚୟ ସବୁ ଭୁଲି ପାରିବି । ତୁମରି ପାଇଁ ନରହତ୍ୟା କରି ବନ୍ଧୁବାନ୍ଧବ ସମସ୍ତଙ୍କୁ ପରିତ୍ୟାଗ କରିଛି । ତୁମକୁ ପାଇଲେ—...

ସାଧୁଚରଣ, ମୁହଁରେ ଆଉ ଏତେ ପାପକଥା ଧରନାହିଁ । ମନେ ରଖ ମୁଁ ତମର ମାତୃସ୍ଥାନୀୟା ।

ତୁମେ ହିଁ ତ ମୋର ମନର ଧାରଣା ସର୍ବପ୍ରଥମେ ବଦଳାଇ ଦେଇଛ । ମୋର ହୃଦୟରେ ସର୍ବ ପ୍ରଥମେ ତୁମେ ଅନଳ ଲଗାଇ ତହିଁରେ ଘୃତାହୁତି ଦେଇଛ । ଯେତେବେଳେ ନିଆଁ ଦାଉ ଦାଉ ହୋଇ ଜଳି ଉଠିଛି, ବୃଥା ଛଳନା କରି ତାକୁ ଆଉ ଲିଭାଇବାକୁ ଚେଷ୍ଟା କରୁଛ କାହିଁକି ? ଆସ, ସେହି ପ୍ରବଳ ଜ୍ୱଳନ୍ତ ନିଆଁରେ ଜୀବନାହୁତି ଦେଇ ଚିର ଶାନ୍ତି ଲାଭ କରିବା ।

କୋକିଳ ଦେଈ ଝରକାବାଟେ ପୁନର୍ବାର ପଦାକୁ ଚାହିଁ କହିଲେ, ବୃଥା ଆଶା ସାଧୁଚରଣ, ଏ ତୁମର ବୃଥା ଆଶା । ନେଡ଼ିଗୁଡ଼ କହୁଣୀକି ବୋହିଯାଇଛି । ସମୟର ଗତି ସଙ୍ଗେ ମନର ଗତି ବଦଳି ଗଲାଣି । ମୋତେ କ୍ଷମାକର ।

ସାଧୁଚରଣ ବିସ୍ମିତ ହେଲେ । କ୍ରୋଧରେ ଯେପରି ତାଙ୍କର କୋଟରଗତ ଚକ୍ଷୁରୁ ଅଗ୍ନି ନିର୍ଗତ ହେଲା । ସେ ଘୃଣାରେ କୋକିଳ ଦେଈଙ୍କ ଘର୍ମାକ୍ତ ମୁଖକୁ ଚାହିଁ ଚିନ୍ତାକଲେ, ଧନ୍ୟ ନାରୀ ! ପ୍ରତି ମୁହୂର୍ତ୍ତରେ ଘୋର ପରିବର୍ତ୍ତନ ! ନାରୀ ଚରିତ୍ର ହୃଦୟଙ୍ଗମ କରିବା ସହଜ ବ୍ୟାପାର ନୁହେଁ ! ଯାହାହେଉ, ସାଧୁଚରଣ ନରକ

ଯିବାକୁ ପ୍ରସ୍ତୁତ । ନାରୀର ଛଳନାରେ ଭୁଲି ସେ ଥରେ ନରହତ୍ୟା କରିଛି । ଆଉ ତାକୁ ସହଜରେ କେହି ଭୁଲାଇ ପାରିବେ ନାହିଁ ।

ସାଧୁଚରଣ କୋକିଳ ଦେଈଙ୍କ ଆଡ଼କୁ ଅଗ୍ରସର ହୋଇ କହିଲେ, ଯାହାର ପାଇଁ ମୁଁ ନରହତ୍ୟା କରି ଫାଶୀ ଖୁଣ୍ଟରେ ଝୁଲିବାକୁ ପ୍ରସ୍ତୁତ ଅଛି, ମୃତ୍ୟୁ ପୂର୍ବରୁ ଥରେ ତାକୁ ଏହି ହୃଦୟରେ··· ।

କୋକିଳ ଦେଈ ତ୍ରସ୍ତ ହୋଇ କହିଲେ, କ୍ଷାନ୍ତହୁଅ ପାଗଳ, ମୁଁ ବିବାହିତା ।

ବିବାହିତା ବୋଲି ସେତେବେଳେ କଅଣ ଜାଣି ନ ଥିଲ କୋକିଳ ଦେଈ ? ଭଲ ମଣିଷକୁ ପାଗଳ କରିଲ ···

ମନରେ ପାପ ଭରି ମୋର ଏ ଦେହ ଛୁଅଁନା ସାଧୁ । ମୁଁ ତମର ମାତୃସ୍ଥାନୀୟା । ମୁଁ ତମର··· । ତୁମେ ମୋର ପଦଧୂଳି ଗ୍ରହଣ କର···, କାରଣ, ମୁଁ ତମର···, କାରଣ ମୁଁ ···ମୁଁ ପୁନର୍ବାର ବିବାହ କରିଛି···।

ସାଧୁ ଚରଣ ସ୍ତମ୍ଭିତ ହୋଇ ଠିଆହୋଇ ରହିଲେ । ମୁଣ୍ଡ ହଲାଉ ହଲାଉ ଦାନ୍ତ ରଗଡ଼ି କହିଲେ—ଓଃ ଏତେ ମିଛ, ଏତେ ଛଳନା ! ବିବାହ କରିଛ କୋକିଳା ? ତମେ ପରା ସେ ଦିନ କହୁଥିଲ ମୋ ବ୍ୟତୀତ ଅନ୍ୟ କାହାକୁ ଭଲ ପାଅ ନାହିଁ ?

ଲୋତକପୂର୍ଣ୍ଣ ନେତ୍ରରେ କୋକିଳ କହିଲେ, ମୋର ବୁଝିବା ଭୁଲ··· ।

ପୁନର୍ବାର ଦାନ୍ତ ରଗଡ଼ି ଆଙ୍ଗୁଠି ଦେଖାଇ ସାଧୁଚରଣ କହିଲେ, ନାରୀପ୍ରେମ କଅଣ ଏହିପରି ନିର୍ମଳ ହେବେ ?

କୋକିଳ ଦେଈ କହିଲେ, ପାଣିରେ ବୁଡ଼ିଯାଉଥିବା ଲୋକ ଯାହାର ଆଶ୍ରା ପାଏ ତାକୁ ଧରି ସେ ନିଜର ଜୀବନ ବଞ୍ଚାଇ ନିଏ । ଯିଏ ଯାହାର ଜୀବନ ବଞ୍ଚାଇ ଥାଏ ସେ ତା ପ୍ରତି ଅକୃତଜ୍ଞ ହେବ କିପରି ସାଧୁଚରଣ ?

ଯେ ତମରିପାଇଁ ପାଣିକି ଡେଇଁ ଜୀବନ ଉତ୍ସର୍ଗ କରିଛି; ତା ପାଇଁ କଅଣ ତମର କୌଣସି କର୍ତ୍ତବ୍ୟ ନାହିଁ କୋକିଳ ? ତମରି ଆଶାରେ ଆଜଯାଏ ଯେ ତାର ଜୀବନକୁ ଯନ୍ତ୍ରଣାର ମଧ୍ୟ ଦେଇ ବଞ୍ଚାଇ ଆସିଛି, ତା ପ୍ରତି ତା ହେଲେ ତମର କର୍ତ୍ତବ୍ୟ ନାହିଁ ? କାହା ପାଇଁ ଆଜି ମୁଁ ଏହି ଭଣ୍ଡ ତପସ୍ୱୀର ବେଶଧରି ଦ୍ୱାରେ ଦ୍ୱାରେ ଭିକ୍ଷା ମାଗୁଛି ? କାହା ପାଇଁ ମାନ ମହତ୍ତ୍ୱରେ ଜଳାଞ୍ଜଳିଦେଇ ଅପବାଦର ବୋଝ ମୁଣ୍ଡରେ ବୋହି ମୁଁ ଆଜି ବୃକ୍ଷମୂଳ ଆଶ୍ରୟ କରିଛି କହିଲ । କାହା ପାଇଁ ଜୀବନ ଭୟରେ ମୁଁ ଦିନରାତି ଲୁଚି ଲୁଚି ବୁଲି ତୀବ୍ରମାନସିକ ଯନ୍ତ୍ରଣା ପ୍ରଭାବରେ ଅଙ୍ଗର ଶକ୍ତି ଓ ତେଜ ହରାଇ ବସିଛି ? ମୋ ପ୍ରତି ତେବେ ତମର କୌଣସି କର୍ତ୍ତବ୍ୟ ନାହିଁ ? ମୁଁ ବା ଛାଡ଼ିବି କାହିଁକି ? ଏଥର ସଂସାର ଜାଣୁ, ତୁମର ସ୍ୱାମୀ ମଧ୍ୟ ଜାଣନ୍ତୁ, ତୁମେ ମୋରି ପରି ଜଣେ ଖୁଣୀ, ବିଧବା, କୁଳଟା । ମରିବାକୁ ହେଲେ ଦୁଇ ଜଣଙ୍କୁହିଁ ମରିବାକୁ ହେବ । ଆଜି ମୁଁ ଏହିଠାରେ ସବୁକଥା ପ୍ରଘଟ କରିବି ।

ସାଧୁଚରଣଙ୍କର କରୁଣ କାହାଣୀ ଶୁଣି କୋକିଳ ଦେଈଙ୍କର ଚକ୍ଷୁରୁ ଲୋତକ ଝରିଲା । ସେ ବିମୀତ ହୋଇ କହିଲେ, ଆଜି ଆଉ ମୁଁ ମରଣକୁ ଡରୁ ନାହିଁ । ଯଦି ଇଚ୍ଛାକର ତମର ଆଖି ଆଗରେ ମୁଁ ଏହି ଗଙ୍ଗାନଦୀ ଭିତରକୁ ଡେଇଁ ଆତ୍ମହତ୍ୟା କରିବି । ମୋର ଗୋଟିଏ ଅନୁରୋଧ ଅଛି । ଯେଉଁ ନିରୀହ ଭଦ୍ରଲୋକଟି ମୋତେ ଅନାଥା ବାଳିକା ଭାବି ସହସ୍ର ସହସ୍ର ଲୋକଙ୍କ ଆଗରେ ବେଦମତେ ବିବାହ କରିଛନ୍ତି, ମୋର ପ୍ରକୃତ ଜୀବନୀ ଜାଣିଲେ ତାଙ୍କର ହୃଦୟ ଭାଙ୍ଗିଯିବ । ସେ ଆଉ ବାଟରେ ମୁଣ୍ଡଟେକି ଚାଲି ପାରିବେ ନାହିଁ । ଅନାଥା ବାଳିକା ବୋଲି ଆଉ କେହି କେବେ କାହାରିକୁ ଘରେ ଆଶ୍ରୟ ଦେବେ ନାହିଁ । ସାଧୁ ! ଚାଲ ତମର ଆଗରେ ମୁଁ ଆଜି ଆତ୍ମହତ୍ୟା କରିବି ।

ସେଥିରେ ମୋର ଥାଏ କଅଣ ? ନିରୀହ ହୋଇ ମୁଁ ଯେ ମୁଣ୍ଡରେ ଅପବାଦର ବୋଝ ଜାଣି ଜାଣି ବୋହିଛି ।

କୋକିଳ କହିଲେ, ଆହୁରି ଅପବାଦ ନେବାକୁ ଚାହିଁ ତେବେ ? ଜାଣ ସାଧୁ ମୁଁ କାହାକୁ ବିବାହ କରିଛି ! ସଂସାର ଜାଣେ, କଲିକତାର ବିଖ୍ୟାତ ସୌଦାଗର ବିପ୍ରଚରଣ, କୁନ୍ଦଲତା ନାମରେ ଜଣେ ଅନାଥା କାୟସ୍ଥ କନ୍ୟାକୁ ବିବାହ କରିଛନ୍ତି । ପୁରୋହିତ ସ୍ୱୟଂ ଶ୍ରୀଯୁକ୍ତ— ମିଶ୍ର । ସେ ବିପ୍ରଚରଣ କିଏ ଜାଣ ତ ? ତମର ଦାଦା । କୁନ୍ଦଲତା ମୋ ବ୍ୟତୀତ ଆଉ କେହି ନୁହେଁ ସାଧୁ ! ଦାଦା ତମର କାଶୀ ଦେଖାଇବାକୁ ମୋତେ ନେଇ ଆସିଛନ୍ତି । ସେ ବଜାରକୁ ଯାଇଛନ୍ତି । ବର୍ତ୍ତମାନ ସୁଦ୍ଧା ସମୟ ଅଛି । ଯଦି ତମେ ମୋର ମୃତ୍ୟୁ କାମନା କର, ତେବେ ଶୀଘ୍ର ବାଟ କଢ଼ାଇ ଗଙ୍ଗା କୂଳକୁ ଚାଲ । ତମର ଦାଦା ଯଦି ପହଞ୍ଚି ଯିବେ··· । ନିଜ କୁଳର ମାନମହତ୍ତ୍ୱ ନିଜେ ରକ୍ଷାକର ସାଧୁଚରଣ ! ମୃତ୍ୟୁକୁ ମୋର ଭୟ ନାହିଁ ।

ସାଧୁଚରଣ ସ୍ଥିରହୋଇ ଠିଆହୋଇ ରହିଲେ । କୋକିଳ ଦେଈଙ୍କ କଥାରେ ତାଙ୍କର ଅବିଶ୍ୱାସ ହେଲା ନାହିଁ । ସେ ଖବର କାଗଜରୁ ସବୁକଥା ପଢ଼ିଥିଲେ । ତୀକ୍ଷ୍ଣ ଦୃଷ୍ଟିରେ କୋକିଳ ଦେଈଙ୍କର ମୁଖକୁ କ୍ଷଣକାଳ ଅନାଇଁ ଲୋତକପୂର୍ଣ୍ଣ ଚକ୍ଷୁରେ ଗୋଟିଏ ଦୀର୍ଘଶ୍ୱାସ ଛାଡ଼ିଲେ ।

କୋକିଳ ଦେଈ ଆକୁଳହୋଇ କହିଲେ, ଚାଲ ସାଧୁ, ଗଙ୍ଗାକୂଳ ବେଶି ଦୂର ନୁହେଁ । ଦେଖ, ଗୋଟାଏ ଘୋଡ଼ା ଗାଡ଼ି ଏହି ଆଡ଼କୁ ଆସୁଛି । ବୋଧହୁଏ ତମର ଦାଦା ଆସୁଛନ୍ତି । ରକ୍ଷାକର ସାଧୁ ! ତୁମ ବଂଶର ମର୍ଯ୍ୟାଦା ତୁମେ ରକ୍ଷାକର । ତମର ଦାଦା ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ।

ସାଧୁଚରଣ ହସି ହସି କହିଲେ, ବିପ୍ରଦାଙ୍କୁ ବି ନିଜର କବଳରେ ପକାଇଲ ? ହଉ, ନମସ୍କାର । ନିଶ୍ଚିନ୍ତରେ ଆନନ୍ଦରେ ଏଥର ଜୀବନ କାଟ । ପ୍ରତିଜ୍ଞା କରି ଯାଉଛି,

ଆଜ୍ଞ କେବେ ତମର ସୁଖ ଆନନ୍ଦରେ ବାଧା ଦେବାକୁ ମୁଁ ତମର ସମ୍ମୁଖୀନ ହେବ ନାହିଁ ।

ସାଧୁଚରଣ ଅଶ୍ରୁସିକ୍ତ ଚକ୍ଷୁରେ କୋକିଳ ଦେଇଙ୍କୁ ପ୍ରଣାମକରି ଦ୍ରୁତ ପଦରେ ଗୃହରୁ ବାହାରି ଆସିଲେ । ରାଜପଥରେ କିଛିଦୂର ଆଗକୁ ଚାଲିଯାଇ ଉଜ୍ଜ୍ୱଳ ଚନ୍ଦ୍ରାଲୋକରେ ଆସୁଥିବା ଗାଡ଼ିକି ଅନାଇଁ ରହିଲେ । ସତକୁସତ ଗାଡ଼ିଖଣ୍ଡି ଆସି ସେହି କୋଠାଆଗରେ ଠିଆହେଲା । ଗାଡ଼ିରୁ ଦୁଇଜଣ ଭଦ୍ରଲୋକ ବାହାରିଲେ । ତତ୍‌ପରେ ଜଣେ ସ୍ତ୍ରୀ ।

କେହି ଜଣେ ଅନ୍ୟ ଜଣକୁ ପଚାରିଲା, ଏହି ବସାରେ ଅଛୁ, ବାପ୍ର ?

କେହି ଜଣେ ଉତ୍ତର ଦେଲା, ଆଜ୍ଞା ହଁ ।

ତିନିଜଣ ଗୃହ ଭିତରକୁ ଗଲେ ।

ସାଧୁଚରଣ କେତେ କଅଣ ଭାବି ପୁନର୍ବାର କୋଠା ଆଡ଼କୁ ଫେରି ଆସୁଥିଲେ, ମାତ୍ର ଅଧବାଟରେ ଠିଆହୋଇ ମୁଣ୍ଡରୁ ବାଳ ଟାଣି ଟାଣି ମନକୁମନ କହିଲେ, ନା, ବରଂ ମୃତ୍ୟୁ ଭଲ ।

ଚୁଲିପଡ଼ୁ ପାଗଳ ପରି ସେ ଗଙ୍ଗାକୂଳ ଆଡ଼େ ଚାଲିଗଲେ ।



# ଏକ

ଜାଗର ଉଆଁସ । ରାତି ଅଧରେ ମହାଦୀପ ଉଠିଲା । ଲୋକଙ୍କର କୋଳାହଳ କମିଲା, ଆଉ କାନଅତରା ପଡ଼ୁନାହିଁ । ଲିଙ୍ଗରାଜ ମହାପ୍ରଭୁଙ୍କର ବଡ଼ ପରବ, କେତେ ଗ୍ରାମ, କେତେ ରାଇଜରୁ ସହସ୍ର ସହସ୍ର ଲୋକ ଆସି ଭୁବନେଶ୍ୱରରେ ରୁଣ୍ଡ ହୋଇଛନ୍ତି । କାହାର କେତେ ପ୍ରକାର ମନକାମନା, ବାସନା, ଉଜାଗର ରହି ମନ୍ଦିର ଭିତରେ ରାତି କାଟିବେ ।

ନେତ୍ରମଣି ଦାଣ୍ଡ ପିଣ୍ଡାରୁ ଉଠି ଘର ଭିତରକୁ ଆସିଲେ । ବିନ୍ଦୁସାଗର କଡ଼ରେ ତାଙ୍କର ଘର, ମନ୍ଦିର ପାଖରୁ ଅଧିକ ଦୂର ନୁହେଁ, ତଥାପି ସେ ଦିଅଁ ଦର୍ଶନ କରିବାକୁ ମନ୍ଦିରକୁ ଯାଇ ନାହାନ୍ତି । ସ୍ୱାମୀ କଟକରୁ ଆସି ନାହାନ୍ତି । ହାରା, ଆହା ହତଭାଗିନୀ ଝିଅ, ମନ୍ଦିରକୁ ଯିବାକୁ ମନାକଲା । ବଡ଼ଝିଅ, ଘରେ ତାକୁ ଏକା ଛାଡ଼ି ଯିବାକୁ ନେତ୍ରମଣିଙ୍କର ମନ ହେଲା ନାହିଁ ।

ଖଞ୍ଜା ଭିତରେ ଠାକୁର ଘର, ବଖରାଟିଏ, ଅଣଆଡ଼ୁଆ । ଦ୍ୱାରରେ ପିଉଳ-ଗୋବରା ଜାଉଁଳ କବାଟ, ଦରଆଉଜା । ଫାଙ୍କବାଟେ ଘିଅ ଦୀପର କ୍ଷୀଣ ଆଲୁଅ । ଉଆଁସ ରାତିର କଳିକିଟି ଅନ୍ଧାରକୁ ଦି ଭାଗ କରି ପାଖ ନଡ଼ିଆ ଗଛ ଦେହରେ ମିଶି ଯାଇଛି । ନେତ୍ରମଣି କବାଟକୁ ସାମାନ୍ୟ ଠେଲି ଘର ଭିତରକୁ ଚାହିଁଲେ । ଖଟୁଲି ଉପରେ ପୋଥିଆସନ ଉପରେ ବସିଛନ୍ତି ଗୋପାଳଜୀଉ । ପିଉଳ ବିଗ୍ରହ ଥରିଲା ଆଲୁଅ ଶିଖାରେ ଝଲସି ଉଠୁଛି । ଚନ୍ଦନଚର୍ଚ୍ଚିତ ଶାଳଗ୍ରାମଗୁଡ଼ିକ ତାଙ୍କ ଗୋଡ଼ତଳେ ଥୁଆ । ନାନାଜାତି ଫୁଲ ଓ ତୁଳସୀ ପତ୍ରରେ ଗୁନ୍ଥା ମାଳରେ ବିଗ୍ରହଙ୍କର ଦେହ ଲୁଚି ଯାଇଚି । ତାଙ୍କ ଆଗରେ ଭୁଇଁ ଉପରେ ମୁହଁମାଡ଼ି ଲମ୍ବ ହୋଇ ଶୋଇଛି ହାରାମଣି । ଡାହାଣ ହାତ ମୁଣ୍ଡତଳେ ତକିଆର କାମ ତୁଲାଉଛି । ଲଙ୍ଗଳା ବାଁ ହାତଟି ଧୋବ ଫରଫର ଶଙ୍ଖ ଉପରେ । କଳାଭଅଁର ପରି ଲମ୍ବ ଅସଜଡ଼ା କେଶ ଇତସ୍ତତଃ ହୋଇ ତଳେ ଲୋଟୁଛି ।

ନେତ୍ରମଣି ଭାବିଲେ, ହାରା ମାଳା ଧରି ସାରି ଠାକୁରଙ୍କୁ ପ୍ରଣାମ କରୁଛି । ଟିକିଏ ଅପେକ୍ଷା କରି ଦ୍ୱାର ମୁହଁରେ ଠିଆ ହୋଇ ରହିଲେ । ହାରା ଉଠିଲା ନାହିଁ । ସେ ଘର ଭିତରକୁ ଗଲେ । ଠାକୁରଙ୍କୁ ପ୍ରଣାମ କଲେ । ଦେଖିଲେ, ମାଳାଟି ଖଣ୍ଡେ ନାଲି ମଲାଟର ବହି ଉପରେ ଥୁଆ ହୋଇଛି । ମାଳାକୁ ତଳେ ରଖି ବହିଖଣ୍ଡି ଉଠାଇ ପଢ଼ିଲେ, 'ମୁକୁର' । ସାନଭାଇ ନେତ୍ରାନନ୍ଦ ମାସିକ ପତ୍ରିକା ମୁକୁର ମଗାଏ । ବୋଧହୁଏ ଏ ସେହିଥିରୁ ଖଣ୍ଡେ ।

ବନ୍ଧୁଖଣ୍ଡି ଯଥାସ୍ଥାନରେ ରଖି ହାରକୁ ଉଠାଇବାକୁ ଯାଉଛନ୍ତି, ମୁକୁରଟି ମଝିରୁ ଖୋଲିଗଲା । ଦେଖିଲେ, ମୁକୁର ଭିତରେ କେଣ୍ଟିଏ ଫୁଲ ଚନ୍ଥା ଦଆ ହୋଇଛି । ଫୁଲ କେଣ୍ଟିକ ଆଡ଼େଇ ଦେଇ ସେ ପଢ଼ିଲେ—'ଅଭିଶାପ' ଗୋଟିଏ କବିତା । ତାଙ୍କର ମୁହଁ ଶୁଖିଗଲା । ସତେ କି ହୃଦ ଭିତରେ କିଏ ନିଆଁ ହୁଳା ଜାଳିଦେଲା । ବନ୍ଧୁଖଣ୍ଡି ଦୀପ ପାଖକୁ ନେଇ ମନେ ମନେ କବିତାଟି ପଢ଼ିଲେ—

କେତେ ଭାବନାର ଢେଉ ଉଠୁଛି
ତରୁଣ ଏ ମୋର ମାନସ ସରେ,
ଅବଶ ଅଙ୍ଗେ କରେ ମୁଁ ଶୟନ,
ନ ଆସେ ନିଦ୍ରା ନ ଆସେ ସପନ,
ଖାଲି ଛଟପଟ,
ତୃଷ୍ଣା ଅପ୍ରକଟ,
ଆଣଇ ସଙ୍କଟ,
ହୃଦୟ ଥରେ ।
କାହାର ସେ ତୃଷ୍ଣା, ଜାଣେ ନା ମୁଁ ହର !
ଯାପିବି ଜୀବନ ତାରେ ଅନୁସର ?
ସମାଜର ବିଧି
ବିଧବା ପାଶଧି,
ଯାତନା ବାରିଧି
ହୃଦରେ ଭରେ ।
ଜୀବନ ପ୍ରଭାତେ ବୈଗ୍ୟ-ତପନ,
କିଏ ସେ ନିଠୁର କରିଛି ଗୋପନ,
ମହା ଅନ୍ଧକାରେ,
ବୃଥା ହାହାକାରେ,
ଜୀବନେ ଧିକ୍‌କାରେ,
ମରଣେ ଡରେ ।
ପୋଡ଼ି ଯାଇଛି ମୋ ସୁଖର ସଂସାର,
ଅଥୟ ଯୌବନ, ଜୀବନର ଭାର,
ବନ୍ଧୁ ସଦା ଗୁଡ,
କାଟେ ଦିବାରାତ,
ପଶେ ଶିବାରାତ
ଶରଣ ସ୍ମରେ ।

ବିଧବାର ତପ୍ତ ଲୋତକ ଜଳ,
ଝରେ ଯେ ସମାଜେ ଧ୍ୱଂସ ଅନଳ,
ଜାଳ ଜାଳ ଜାଳ,
ସମାଜ ଜଞ୍ଜାଳ,
ଗ୍ରାସରେ
କରାଳ କାଳ ସତ୍ୱରେ ।

ନେତ୍ରମଣି ପଦ୍ୟଟିକୁ ପଢ଼ି ହୃଦୟରେ ଅସୀମ ବ୍ୟଥା ଅନୁଭବ କଲେ । ତାଙ୍କର ବହୁଦିନର ନିଦ୍ରା ଭାଙ୍ଗିଲା । ସେ ସ୍ତମ୍ଭିତ ହୋଇ ସ୍ଥିର ଚକ୍ଷୁରେ ହୀରାର ମୁଣ୍ଡରୁ ଗୋଡ଼ଯାଏ ଅନେଇ ଗଲେ । ଏତେଦିନକେ ତାଙ୍କର କଅଁଳ ମାତୃ-ହୃଦୟରେ ଚେତନା ଆସିଲା ।

କେଡ଼େ ନିର୍ବୋଧ ସେ ସତେ, ସବୁଦିନେ କଅଣ ତାଙ୍କର ସ୍ନେହର ହୀରାଟି ପିଲା ଥିବ ? ସବୁଦିନେ କଅଣ ସେ ନିଜେ ପିଲା ଥିଲେ । ଆଖିରୁ ଲୁହ ଧାର ବହିଲା । ଝିଅର ଲଙ୍ଗଳା ହାତକୁ ଦେଖି ସେ ଚମକି ଉଠିଲେ । ଭାବିଲେ, ହୀରା ପିଲା ନୁହେଁ । କାଲି ତାକୁ କୋଡ଼ରେ ଶୁଆଇ କ୍ଷୀର ଦେଉଥିଲି । ଭଲରେ ମନ୍ଦରେ ଆକଟ କରି ପଦେ କହୁଥିଲି, ଆଜି ଆଉ ପାରିବିନାହିଁ । ସେ ତରୁଣୀ । ବାପେ ତାର ତାକୁ ଓଡ଼ିଆ ଓ ସଂସ୍କୃତ ପଢ଼ାଇ ଶିକ୍ଷିତା କରିଛନ୍ତି । ତାର ଜ୍ଞାନର ଆଲୋକ ଜଳାଇ ବୁଦ୍ଧି ବିବେକକୁ ଆଲୋକିତ ଓ ଉଜ୍ଜ୍ୱଳ କରିଛନ୍ତି । ହୀରାମଣିର ହିତାହିତ ଜ୍ଞାନ ହୋଇଛି । ଭଲମନ୍ଦ, ସାରଅସାର ବୁଝିବାର ଓ ଜାଣିବାର ଶକ୍ତି ହୋଇଛି ।

ନେତ୍ରମଣିଙ୍କର ଆଖି ସଜଳ ହୋଇ ଆସିଲା । ସେ ହୀରାମଣିର ନିଦ୍ରିତ ଦେହକୁ ବ୍ୟଥାତୁର ମନରେ ଚାହିଁ ରହିଲେ । ହଁ, ତାଙ୍କର ସ୍ନେହର ପିତୁଳା ଲାବଣ୍ୟ ପ୍ରତିମା ହୀରାମଣିଟି ଯୁବତୀ ହୋଇଛି । ଯୌବନର ମଳୟ ତାର ସର୍ବାଙ୍ଗ ସ୍ପର୍ଶ କରିଛି । ନିଷ୍ଠୁର ଯୌବନ ସ୍ରୋତ ତଳର କେଉଁ ଅନ୍ଧାରି ଗୁହାରେ ଲୁଚି ଲୁଚି ପ୍ରେମର ସଙ୍ଗୀତ ଗାଉଛି । କେବେ ହସାଉଛି, କେବେ କନ୍ଦାଇ ତାକୁ ବିବ୍ରତ କରୁଛି । ନେତ୍ରମଣିଙ୍କର ମାତୃ-ହୃଦୟ ଏବଯାଏ ଏହା ବୁଝି ପାରି ନ ଥିଲା, ବିଶ୍ୱାସ କରି ପାରି ନ ଥିଲା । ଆଖି ଆଗରେ ଆତଯାତ ହେଉଥିବା ଟିକି ଝିଅଟି ଧୀରେ ଧୀରେ ବଡ଼ ହୋଇ ତରୁଣୀ ହୋଇଛି, ଏହା ଜାଣି ମଧ୍ୟ ଯେପରି ସେ ଜାଣି ପାରି ନ ଥିଲେ ।

ସମାଜର କଳଙ୍କ କାହାଣୀ ଶୁଣି ସେ ଦିନେ ହସୁଥିଲେ । ବାପ ମାଆଙ୍କ ଉପରେ ସବୁ ଦୋଷ ଅଜାଡ଼ି ଦେଉଥିଲେ । କହୁଥିଲେ, ଆଖି ଆଗରେ ଆକଟରେ ରଖିଥିଲେ କଅଣ ଏପରି ଘଟି ଥାଆନ୍ତା ?

ଯେଉଁଦିନ ଖବର ପାଇଲେ, ହରି ମିଶ୍ରଙ୍କର ଷୋଳବର୍ଷର ଝିଅ ଅଫିମ ଖାଇ ଆତ୍ମହତ୍ୟା କଲା, ତାଙ୍କର ପ୍ରାଣରେ ଆତଙ୍କ ଉପସ୍ଥିତ ହେଲା । ବିଧବା ବାଳିକାର

ଆତ୍ମହତ୍ୟା ସଙ୍ଗେ ଯେଉଁ ସବୁ କଳଙ୍କ କାହାଣୀ ପ୍ରଚାରିତ ହେଲା, ସବୁ ଶୁଣି ନେତ୍ରମଣି ଦୀର୍ଘନିଶ୍ୱାସ ଛାଡ଼ି କହିଥିଲେ, କର୍ମର ଫଳ ସେ ଭୋଗିଲା, କିଏ କଅଣ କରିବ ?

ଆଖିପଚା ଓଦା ହୋଇ ଆସିଲା । ବାରବର୍ଷର ବିଧବା ଝିଅ ହୀରାମଣିକୁ ସେ ଛାତିରେ ଜାକି ସେଦିନ କାନ୍ଦିଥିଲେ ! ପ୍ରତିଜ୍ଞା କରିଥିଲେ, ହତଭାଗିନୀ ଝିଅଟିକୁ ଛାତିରୁ ଅଲଗା କରିବେ ନାହିଁ, ଆପଦବିପଦ, ନିନ୍ଦା ଅପମାନ ପାଖରେ ପଶିବେ ନାହିଁ ।

ବିଷ୍ଣୁ ହୋତାଙ୍କ ଅଠର ବର୍ଷର ବିଧବା ଝିଅ ରୁକୁଣୀ ଘରୁ କୁଆଡ଼େ ଚାଲି ଯାଇଛି । ଖୋଜି ଖୋଜି ଖବର ମିଳୁ ନାହିଁ । ହୋତାଙ୍କ ପଡ଼ୋଶୀ ରଘୁ ବିଶ୍ୱାଳଙ୍କର ପୁଅ କୁଞ୍ଜ ମଧ୍ୟ କୁଆଡ଼େ ପଳେଇଛି । ଲୋକେ ଏ ଦୁଇଜଣଙ୍କ ବିଷୟରେ ସନ୍ଦିହାନ । କୁଞ୍ଜ ଉପରେ ନେତ୍ରମଣିଙ୍କର ରାଗ ହେଲା । ମନକୁ ଯାହା ଆସିଲା ସେ ନିଜ ଘରେଥାଇ କୁଞ୍ଜକୁ ଗାଳିଦେଲେ । ପରେ ଖବର ପାଇଲେ କୁଞ୍ଜର ଦୋଷ ନାହିଁ, ସବୁ ଦୋଷ ସେଇ ମଉନମୁହାଁ କଅଁଳକହି ଟୋକୀର । କୁଆଡ଼େ ସେଇ ଝିଅର ଶିକ୍ଷାରେ ପଡ଼ି ସତର ବର୍ଷର ବାଳୁତ କୁଞ୍ଜ, ବାପଙ୍କ ପେଟରୁ ଖର୍ଚ୍ଚି ଟଙ୍କା ଚୋରିକରି ରୁକୁଣୀକୁ ସଙ୍ଗରେ ନେଇ ଚାଲି ଯାଇଛି । କୁଞ୍ଜ ଭଲ ପିଲା ଥିଲା, ଭଲ ପାଠ ପଢ଼ୁଥିଲା, ଏଡ଼େ ସୁଧାର ଯେ ମାଛିକୁ ମ କହେ ନାହିଁ, କାନ କାଟିଲେ ବଚନ ବାହାରେ ନାହିଁ ।

ଏହିପରି କେତେ ଘଟଣା ନେତ୍ରମଣି ଦେଖି ଶୁଣି କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରନ୍ତି ନାହିଁ । କେବେ ବାପମାଆଙ୍କ ଦୋଷ, କେବେ ଗାଁର, କେବେ ଅବା ଶିକ୍ଷା-ଅଭାବର କି ଅଶିକ୍ଷାର ଦୋଷ ଦେଇ ମନରେ ଶାନ୍ତି ଆଣିବାକୁ ସେ ଚେଷ୍ଟା କରନ୍ତି । ସର୍ବଦା ହୀରାମଣି ଉପରେ ନିଘା ନଜର ରଖି ତାକୁ ଗୋଡ଼େ ଗୋଡ଼େ ଜଗିଥାନ୍ତି ।

ତଥାପି ମନ 'ସନ୍ଦେହ ଦୋଳାରେ ଦୋହଲୁଥାଏ, ତରଙ୍ଗ ତରଙ୍ଗ ହେଉଥାଏ । ରାତିରେ ଭଲ ନିଦ ହୁଏ ନାହିଁ । ଝିଅର ବୈଧବ୍ୟ ପାଇଁ ସେ ଯେତେ ଚିନ୍ତିତ ନୁହନ୍ତି, ଚିନ୍ତିତ ତାର ଭବିଷ୍ୟତ୍ ପାଇଁ, ଦୁଇ କୁଳର ମାନ ମହତ୍ ପାଇଁ । ଭାଗ୍ୟରେ ଯାହା ଥିଲା ହୋଇ ସାରିଛି, କପାଳ ଲିଖନ, କେ କରିବ ଆନ ? ଭବିଷ୍ୟତ୍‌ରେ ଯେପରି ହୀରାମଣି ମୁହଁରେ ଚୂନକାଳି ନ ବୋଳେ ସେତିକି ତାଙ୍କର ଭାବନା, ସେତିକି ତାଙ୍କର ଡର ।

ଦିନେ ମନରେ ଗୋଟିଏ କଥା ପାଞ୍ଚିଲେ । ଆଜିକାଲି ସଂସାରର ଢଙ୍ଗଢାଙ୍ଗ ଯେପରି ହେଲାଣି କେତେବେଳେ ଯେ କଣ ହେବ କେହି କହି ପାରିବେ ନାହିଁ । ଭଗବାନ ହୋତାଙ୍କ ଘରଣୀ ଆଗରୁ ହୁସିଆର ହୋଇ ଯାହା କଲେ, ଛାତିକି ପଥର କରି ତାହା କଲେ ହୁଅନ୍ତା । ବିଧବା ଝିଅ, ଜୀବନରେ ତାର କେଉଁ ସୁଖ କେଉଁ ସୁଆଦ ଅଛି ? ବୃଥା ଦହଗଞ୍ଜି ଆ ହୀନମାନିଆ ଜୀବନ 'ଯେନ ବଞ୍ଚି ରହିବାଠାରୁ ମରଣ ବରଂ ଭଲ ।

ଟିକଏ ଜହର, କେହି ଜାଣିବେ ନାହିଁ । ସବୁ ଦୁଃଖ •ଯନ୍ତ୍ରଣା, ମାନସିକ ଦୁଶ୍ଚିନ୍ତାରୁ ନିଷ୍କୃତି ମିଳିବ । ଅହା, ମା ହୋଇ ଅନ୍ତଫାଡ଼ି ଜନ୍ମ ଦେଇ ଏଡ଼େ ନିଦାରୁଣ ପଣ କରିବାକୁ ଯାହାର ଗ୍ରୁତି ପଡ଼ାଏ ସେ କି ମଣିଷ ? ସେ ମଣିଷ ନୁହେଁ ପିଶାଚୀ । ନେତ୍ରମଣି ଭାବିଲି କଥା କରନ୍ତେ, କିପରି ? କେତେ ଗେଲବସର କରି ଝିଅକୁ ବଢ଼ାଇଥିଲେ ଜହର ଖୋଇ ମାରିବାକୁ ? ଅନାଗତ କଳଙ୍କର ,ଭୟରୁ ରକ୍ଷା ପାଇବାକୁ ସେ ନିଜେ ଆଗରୁ ଜହର ଖାଇ ମଲେ ତ ଭଲ ।

ତାଙ୍କର ସ୍ୱାମୀ ମହାପଣ୍ଡିତ, ଅତି ନୈଷ୍ଠିକ, ସମ୍ମାନିତ ବ୍ରାହ୍ମଣ । ସେ କହିଲେ, ଭବିଷ'ତ୍ ପାଇଁ ଆଗରୁ ସାବଧାନ ହେବାକୁ ପଡ଼ିବ । ହାସ୍ୟକୁ ସ୍ୱମାୟଣ, ମହାଭାରତ ପ୍ରଭୃତି ଧର୍ମଗ୍ରନ୍ଥମାନ ପଢ଼ିବାକୁ ଦିଅ । ପିଲାଦିନୁ କଠୋର ବ୍ରହ୍ମଚର୍ଯ୍ୟ ଶିକ୍ଷା ଦିଅ । ତେବେ ଭବିଷ୍ୟତରେ ଭୟର କାରଣ ନ ଥିବ ।

ନେତ୍ରମଣି ସ୍ୱାମୀଙ୍କୁ ଦେବତା ପରି ମାନନ୍ତି । ଦେବତାର ବାକ୍ୟ ପରି ସ୍ୱାମୀଙ୍କର ଉପଦେଶ ସେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ହାସ୍ୟକୁ ସବୁ ପ୍ରକାର ଧର୍ମଗ୍ରନ୍ଥ ପଢ଼ାଇ ତାର ମନରେ ଚରଦିନ ପବିତ୍ରତା ଜଗାଇ ରଖିବେ ବୋଲି ଆଶା କରିଥିଲେ ।

ହାସ୍ୟମଣି ଧର୍ମଗ୍ରନ୍ଥମାନ ପାଠ କରି, ବିଦ୍ୟା ଓ ଜ୍ଞାନ ଅର୍ଜ୍ଜନ କରି ନିଜେ ଲୁଚାଇ ଲୁଚାଇ କବିତା ଲେଖିଲା । ନେତ୍ରମଣି ଏହା ଜାଣିଲେ, ଆନନ୍ଦିତ ହେଲେ ! ହାସ୍ୟମଣି ଭକ୍ତିମତି ହୋଇଛି । ସଂସାରରେ ଯେତେ ଦେବାଦେବୀ ଅଛନ୍ତି ସମସ୍ତଙ୍କ ଉଦ୍ଦେଶ୍ୟରେ ଜଣାଣ ଲେଖିଛି । ସେ ତ ଜାଣି ନ ଥିଲେ ଯେ ହାସ୍ୟ ନିଜ ବିଷୟରେ କବିତା ଲେଖି ମାସିକ ପତ୍ରିକାରେ ଛପାଇବ ! ରଥ ଘରର ଉପର ମୁହଁ ତଳକୁ କରିବ, ସବୁ ମାନସମ୍ଭ୍ରମ ନେଇ ଦାଣ୍ଡରେ ଥୋଇବ .! କେଡ଼େ ଅଲାଜୁକ କଥା ! ତା ବାପା ଜାଣିଲେ କଣ ମଣିବେ ? ହୁଏ ତ ସବୁ ଦୋଷ ନେଇ ନେତ୍ରମଣିଙ୍କ ମୁଣ୍ଡରେ ଅଜାଡ଼ିବେ । ଛି, ଛି !

କେଜାଣି ସେ ତାଙ୍କ ଝିଅ ନ ହୋଇ ଆଉ କେଉଁ ହାସ୍ୟମଣି ହୋଇଥିବ !

## ଧୂଳି

ଖେଳ କୌତୁକ, ସ୍ନେହ ଆନନ୍ଦରେ ପିଲାଦିନ କଟିଗଲା । ଦେହ ଓ ମନରେ ନବ ଯୌବନର କାଉଁଶ ପରଶ ଲାଗିଲା । ଆଖିରୁ ଅଜ୍ଞତାର ପରଳ ଘୁଞ୍ଚିଲା । ଦୁନିଆ ଦିଶିଲା ନୂଆ, ବଚିତ୍ର, ସରସ । ସମବୟସୀ ବାନ୍ଧବୀମାନେ ବୁଝାଇ ଦେଲେ, ଜୀବନ ଯେ କେବଳ ସୁଖଦୁଃଖର ଲହରୀଗୁଡ଼ିକର ସମଷ୍ଟି । ମଥାଟେକି ମାଡ଼ିଆସେ ପୁଣି ମଥାପିଟି ନଇଁ ନଇଁ କାନ୍ଦିକାନ୍ଦିକା ଫେରିଯାଏ । ଦିନେ ଇନ୍ଦିରା କାନରେ,କହିଲା,

ଏଇଲେ ବଲ୍ଲଲ, କେଦାର-ଗୌରୀ । ପିଲାଦିନୁ ଦେଖି ଦେଖି ଆଖିକୁ କିଛି ନୂଆ ଦିଶୁନାହିଁ । କବିଙ୍କ କଥା କାନକୁ ନୂଆ ଶୁଭୁଛି — ପ୍ରେମ କଲା ପାଗଳଣୀ ।

ହାରି ହସିଥିଲି, ଭାବିଥିଲି, କବି ରାଧାନାଥ ବର୍ଣ୍ଣିଥିବା ଘଟଣା ସତ ନୁହେଁ ବୋଲି ସମସ୍ତେ କହନ୍ତି । କୁଆଡ଼େ ଆଉ କେଉଁ ବିଦେଶୀ ରାଇଜର ଚଳନ୍ତି ପ୍ରବାଦକୁ ଆଣି ଏଇ କେଦାରଗୌରୀ ପୀଠରେ ଅ ପି କବିତା ରଚିଛନ୍ତି । ସେ ଯାହା କରନ୍ତୁ ପଛେ, କେଡ଼େ ଜୀବନ୍ତ, କେଡ଼େ ମନଥରା କାହାଣୀ ସେ ! ପଢ଼ିଲେ ଆଖିରେ ଲୁହ ଆସେ । ସତେ, ପ୍ରେମ ଏମିତି ପାଗଳ କରେ ?

ଏବେ ସେ ବୁଝିଲା, ସେ ବିଧବା । ଧର୍ମଗ୍ରନ୍ଥ ଖୋଲି କେଉଁ ଆଦର୍ଶରେ ଭବିଷ୍ୟତ ଜୀବନ କଟାଇବ ? ସ୍ଥିର କରିବାକୁ ସେ ଗ୍ରନ୍ଥର ପୃଷ୍ଠା ଓଲଟାଇଲା । ଲାଭ ହେଲା ଉତ୍ତେଜନା । ପ୍ରତ୍ୟେକ ଗ୍ରନ୍ଥ ନାରୀ ପୁରୁଷଙ୍କର ଘେନାଦେନା ମଧୁର ପ୍ରେମର ବର୍ଣ୍ଣନାରେ ପୂର୍ଣ୍ଣ, କାହିଁ ମିଳନ, କାହିଁ ବିଚ୍ଛେଦ, କାହିଁ ହସ-କୌତୁକ, ଦେହର ଖେଳ, କାହିଁ ରାଗରୋଷ, ଅଭିମାନ । ଆଦର୍ଶର ଉପଦେଶ ପରିବର୍ତ୍ତରେ ଏହି ସବୁ ଚିତ୍ର ତାର ଆଖି ଆଗରେ ବାରମ୍ବାର ପଡ଼ିଲା, ଦେହ ଓ ମନ ଥରିଲା, ଶିରାପ୍ରଶିରାରେ ନିଆଁର ସୁଅ ଛୁଟିଲା ।

ଦେଖ୍ ମ ବଇଲ, ଏଇପରି ଭୁବନବିଖ୍ୟାତ ରାଜରାଣୀ ମନ୍ଦିର । ଏଥିରେ କାରୁକାର୍ଯ୍ୟର ପଟାନ୍ତର ନାହିଁ । ଇନ୍ଦିରା ଆଖିର ଇସାରାରେ ଦେଖାଇ ଦେଲା, ଉଲଗ୍ନ ଯୁଗଳ ମୂର୍ତ୍ତି । ମନ ପ୍ରଶ୍ନେଇ ଉଠିଲା, ଭାବନା ନିଜ ଭିତରେ ବିଳିବିଲେଇ ଉଠିଲା । ଥରଥର ପାଦ ଅଚଳ ହୋଇ ଆସିଲା ।

ଏକୁଟିଆ ବସି ହାତରେ ମାଳା ଧରି ସେ ଚିନ୍ତା କରୁଛି, କେଉଁ ଆଦର୍ଶରେ ସେ ଜୀବନ କଟାଇବ ? ସୀତା, ପାର୍ବତୀ, ସାବିତ୍ରୀ ଏମିତି କେତେ ସତୀ ରମଣୀଙ୍କର ଜୀବନ ଚରିତ୍ର ଆସି ତା' ଆଖି ଆଗରେ ଉଭା ହେଲା ।

ସେମାନଙ୍କ ମଝିରୁ ବାଲ୍ୟ ବିଧବା କିଏ ?

ସ୍ୱାମୀ ଯେ ଚଳନ୍ତି ଦେବତା, ସେ ଏହା ସ୍ୱୀକାର କରୁଛି; ମାତ୍ର ତାର ସ୍ୱାମୀ କିଏ, ସେ କେମିତିକା, କେଉଁଠି ଏବେ ଅଛନ୍ତି ? ତାଙ୍କ ଦେହ ଓ ମନର ପରଶ ତ ସେ ଏ ଜୀବନରେ ରକ୍ତମାଂସର ଦେହରେ ପାଇବ ନାହିଁ ! ଛାୟା, ଗୋଟାଏ ଅସ୍ପଷ୍ଟ ଶିଶୁର ଛାୟା ! ଜୀବନରେ ଥରେ ମାତ୍ର ଦେଖିବାର ସୁଯୋଗ କି ଦୁର୍ଯୋଗ ସେ ପାଇଥିଲା । ସେ କଣ, ଏହି ଅପ୍ରକଟ ଛାୟାକୁ ଅବଲମ୍ବନ କରି ତାର ଢଳ ଢଳ ଯୌବନ କଟାଇ ପାରିବ ? ସେ ଯେ ଅବାସ୍ତବ ସପନ ଚନ୍ଦ୍ରମା !

ଆଖି ଆଗରେ ଉଭା ହେଲା ଭୁବନେଶ୍ୱରର କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିରମାଳା । ଦୃଷ୍ଟି ଲାଖିଲା ଯୁଗଳି ମୂରତିଗୁଡ଼ିକରେ । ଅଙ୍ଗ ଲୋମାଞ୍ଚିତ ହେଲା । ମନରେ ତୀବ୍ର ବେଦନା-ଅନୁଭବ କଲା । କଲମ ଧରି କିଏ ଗୁରି ପଦ ଲେଖି ଦେଇଥିଲା କେବେ,

ଆଜି ଅବିକଳ ତାର ସେହି ଗୀତଟି ମୁକୁରରେ ପ୍ରକାଶିତ ହୋଇଛି । ସେ କିଛି ବୁଝି ପାରିଲା ନାହିଁ । ସେ କବିତାଟି ମୁକୁରକୁ ପଠାଇ ନାହିଁ, ପଠାଇଲା ତେବେ କିଏ ? ନେତ୍ରାନନ୍ଦ କେବେ ଏହା କରି ନ ଥିବ । ସେ ପିଲା ଲୋକ, ଏହାର ଅର୍ଥ ବୁଝିବ କାହୁଁ ? ଝିଣ୍ଟେ ଛିଣ୍ଡା କାଗଜରେ ଗୀତ ଲେଖି କାଳେ କିଏ ଦେଖିବ ବୋଲି କାଗଜକୁ ଦିଖଣ୍ଡ କରି ପଦାକୁ ଫିଙ୍ଗି ଦେଇଥିଲା । ଏବେ ତ ସମସ୍ତେ ପଢ଼ିବେ ! ନନା ଓ ବୋଉ କହିବେ କଣ ?

ଲଜ୍ଜାରେ ହୀରାମଣି ଠାକୁରଙ୍କ ଆଗରେ ପଡ଼ି ନିଜର ମୃତ୍ୟୁକାମନା କରୁଥିଲା, କେତେବେଳେ ତାକୁ ନିଦ ହୋଇ ଯାଇଛି । ନିଦ କୋଳରେ ସେ ଦେଖୁଛି ସପନ ।

ନେତ୍ରମଣି ଝିଅର ଏ କୀର୍ତ୍ତି ଦେଖି କାହାର ଦୋଷ ଦେବେ ? ବ୍ରାହ୍ମଣଘର ଝିଅର ପୁଣି ଏତେ ସାହସ, କବିତା ଲେଖି ନାଲିକ୍ଳୀ ପରି ଛପିବାକୁ ଦେବ ? ରାଗରେ ତାଙ୍କର ସର୍ବାଙ୍ଗ ଥରି ଉଠିଲା । ସେ ପୁଣି ଥରେ କନ୍ୟାର ଆପାଦମସ୍ତକ ଅନାଇଲେ । ଆହା, ଏହି ସୁକୁମାରୀ ନବନୀତକୋମଳା ତନୁ କି ବୈଧବ୍ୟର କଠୋର ଯନ୍ତ୍ରଣା ଆଜୀବନ ସହି ପାରିବ ? ଯୌବନର ଉତ୍ତେଜନାକୁ ଦମନ କରି ପବିତ୍ର ଭାବରେ ବ୍ରହ୍ମଚାରିଣୀ ହୋଇ ଜୀବନକାଳ କଟାଇ ପାରିବ ? ତାଙ୍କର ମାତୃ ହୃଦୟ ବିଗଳିତ ହେଲା । ଚକ୍ଷୁରୁ ଲୋତକ ଝରିଲା । ସେ ହୀରାର ପିଠିରେ ହାତ ବୁଲାଇ ଡାକିଲେ, ମା ହୀରା !

ହୀରା ଉଠି ବସିଲା । ମାଆଙ୍କ ଆଖିରେ ଲୁହଧାର ଦେଖି ସେ ପ୍ରଥମେ କିଛି ବୁଝି ପାରିଲା ନାହିଁ, କିନ୍ତୁ ଯେତେବେଳେ ନେତ୍ରମଣି କବିତା ବିଷୟରେ ତାକୁ ଗୋଟିଏ ଦିଓଟି ପ୍ରଶ୍ନ ପଚାରିଲେ, ତାର ଆଉ ବୁଝିବାକୁ ବାକି ରହିଲା ନାହିଁ । ଭୟରେ ମୁହଁ ଶୁଖିଗଲା । ଲଜ୍ଜାରେ ଚକ୍ଷୁ ଅବନତ ହେଲା । ସେ ଯେଉଁଥିକି ଭୟ କରୁଥିଲା ତାହା ହିଁ ତ ଘଟିଗଲା ! ଏ ଲାଜଠାରୁ ମରଣ ବରଂ ଭଲ ।

ନେତ୍ରମଣି ଝିଅର ମନକଥା ବୁଝି ଅତି କୋମଳ ସ୍ୱରରେ ପଚାରିଲେ, ତୁ ଏହି କବିତା ଲେଖିଛୁ ମା ? ସତ କହ ।

ହୀରାମଣି ଅନିଚ୍ଛାର ସହିତ କହିଲା, ହଁ, ଦିନେ ଉପରବେଳା ଖଣ୍ଡେ କାଗଜରେ କଣ ମନ ହେଲା ଏତିକି ଲେଖିଥିଲି । କାଗଜଟି ଚିରି ରାସ୍ତା ଉପରକୁ ପକାଇ ଦେଇଥିଲି । କିପରି ଛପା ହେଲା ମୁଁ କହି ପାରିବି ନାହିଁ ବୋଉ, ମୁଁ ସତ କହୁଛି ।

କନ୍ୟାର କଥାରେ ଅବିଶ୍ୱାସ କରିବାକୁ ନେତ୍ରମଣିଙ୍କର ମନ ହେଲା ନାହିଁ । ସେ ଅଧିକ କିଛି ନ ପଚାରି ବହିଖଣ୍ଡି ହାତରେ ଧରି ଚାଲିଗଲେ । ସନ୍ଦେହ ଓ ଦୁଃଖରେ ଆଗମନର ଉଦ୍ଦେଶ୍ୟ ଭୁଲିଗଲେ ।

ଘର ଅଳପ ଅଛୁ, ଏଥପରେ ଘିଅ ନାହିଁ, ଆଲୁଅ ଶୀଘ୍ର ଲିଭିବ । ତା ପରଦିନ ନେତ୍ରମଣି ମନକୁ ଯେତେ ବୁଝାଇଲେ ମନ ବୁଝିଲ ନାହିଁ । ଏଁ, ଅଜକାଲିକା ଟୋକାଗୁଡ଼ା କେଡ଼େ ବେଲଜ୍ଜା ହେଲେ ମ ! ବ୍ରାହ୍ମଣଘର ଝିଅ କଣ ପାଠ ପଢ଼େ ଗୀତ ଲେଖି ଛପେଇବାକୁ ? ଲୋକେ କଣ କହିବେ ? ସ୍ୱାମୀ ଆସି ମୋ ଉପରେ ବିରକ୍ତ ହେବେ । ଏଥିରେ ମୋର କି ଅପରାଧ ? ମୁଁ କଣ ହୀରାମଣିକୁ କହି ଦେଇଥିଲି, ଏମିତିକା ଗୀତ ଲେଖ ?

ନେତ୍ରମଣି ଚୂଲି ଭିତରକୁ ଜାଳ ଠେଲି ମୁଣ୍ଡରେ ହାତ ଦେଇ ବସିଗଲେ । ପୁଣି ଭାବିଲେ, ହୀରା କଣ ଶେଷକୁ ଏ କୁଳରେ କଳଙ୍କ ଲଗାଇ ବଣି ଦାସଙ୍କ ଝିଅ ପରି ମୁସଲମାନ ଟୋକା ସଙ୍ଗରେ କଲିକତା ପଳାଇବ ? ସେତେବେଳେ ରଥ ଘର ମାନ ମହତ ଯିବ କୁଆଡ଼େ ? ଜାତି ରହିବ କେଉଁଠି ? ଠାକୁରେ କଣ ପୋଡ଼ାକପାଳୀ ଝିଅକୁ ଏ ଘରେ ଜନ୍ମ ଦେଇଥିଲେ ଏଇଥିପାଇଁ ? ହାନକପାଳୀର ମରଣ ହେଉ ନାହିଁ କାହିଁକି, ସମସ୍ତେ ନିସ୍ତାର ପାଇଯିବେ ।

ନେତ୍ରମଣି ଉତ୍ତେଜିତ ହୋଇ ହାତରେ ଖଣ୍ଡେ କାଠଫାଳିଆ ଧରି ଉଠିଲେ । ଭାବିଲେ, ଯାହା ହେବାର ହେବ, ଆଜି ତାର ମୁହଁ ଭାଙ୍ଗିବେ । ହାନକପାଳୀ ବୋଲି ପିଲାଦିନୁ ଗେହ୍ଲାରେ ବଢ଼ାଇ ଆଣିଥିଲେ, ତାର ଫଳରେ ହୀରାର ମୁହଁ ବଢିଯାଇଛି । ମୁହଁ ନ ଭାଙ୍ଗିଲେ ଶେଷ ଫଳ ଖରାପ ହେବ । ରାଗ ତମତମ ହୋଇ ସେ ଠାକୁର ଘରକୁ ଛୁଟିଲେ । କବାଟ ପୂର୍ବପରି ଦିଅଉଜା । କବାଟକୁ ଠେଲି ଦେଖିଲେ, ତାଙ୍କ ସ୍ନେହର ପିତୁଳା ହୀରାମଣୀ କାହ୍ନୁକୁ ଆଉଜି ଚୁପ୍ ହୋଇ ବସିଛି, ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ୁଛି ।

ହାତରୁ କାଠଫାଳିଆ ଖସି ପଡ଼ିଲା । ମା ହୋଇ ତାଙ୍କର ହାତ କାପରି ହତଭାଗିନୀ କନ୍ୟାଟିର କଅଁଳ ଦେହରେ ଆଘାତ କରିବାକୁ ଚଳନ୍ତା ? ତାଙ୍କର ଆଖି ଛଳ ଛଳ ହେଲା, ପେଟ ଭିତର ଘାଣ୍ଟିଚକଟି ହେଲା । ସେ ଆଉ ସମ୍ଭାଳି ପାରିଲେ ନାହିଁ । ପାଗଳୀ ପରି ଛୁଟିଯାଇ ଝିଅକୁ କୁଣ୍ଢାଇ ଧରିଲେ । ଆଖିରୁ ଲୋତକ ପୋଛୁ ଥରିଲା ସ୍ୱରରେ ପଚାରିଲେ, ମାଆଟି ମୋର, ତୁନି ହୋଇ ବସି କାହିଁକି କାନ୍ଦୁଛୁ ଲେ ?

ମାଆଙ୍କର ଉଦ୍‌ବେଗପୂର୍ଣ୍ଣ ବାକ୍ୟର ଉତ୍ତର ସ୍ୱରୂପ ହୀରାମଣି ଅଶ୍ରୁସିକ୍ତ ମୁହଁଟି ନେତ୍ରମଣିଙ୍କ ବକ୍ଷ ଦେଶରେ ରଖି ରୋଦନ କଲା । ସେ କାହିଁକି କାନ୍ଦୁଛି, ତାର କାରଣ ଅଜ୍ଞାତ ? ଅତି ଲଜ୍ଜାର କଥା ! କିପରି କହିବ ସେ କାହିଁକି କାନ୍ଦୁଛି ? କିଏ ନ ଜାଣେ ? ମା କଣ ଜାଣନ୍ତି ନାହିଁ ? ଜାଣନ୍ତି, ତଥାପି ଏ ନିର୍ମମ ପ୍ରଶ୍ନ ! ସେ ଏ ପ୍ରଶ୍ନର ଉତ୍ତର ଦେଇ ପାରିବ ନାହିଁ ।

ନେତ୍ରମଣିଙ୍କର ଗୁଡ଼ଉପରୁ ହୀରା ମଥା ଟେକିଲା । ଆଗରେ ଦେବତା, ପାଖରେ ଜନନୀ । କଡ଼ର ଝରକା ବାଟେ ଉଆଁସୀ ଆକାଶରୁ ଚେନାଏ ଦିଶୁଛି । କେତେ ତାରା ମିଟି ମିଟି ହୋଇ ସତେ କି ଉପହାସ କରୁଛନ୍ତି । ବନ୍ଦୁ ସାଗରର ଅନ୍ଧାରିଆ ଗୁଡ଼ରେ ଆକାଶ ପ୍ରତିଫଳିତ । ପବନ ନାହିଁ । ଦେହ ଝାଳେଇ ଉଠିଛି ।

ନେତ୍ରମଣି କହିଲେ, ମା ଲୋ, ସତ କହ କାହିଁକି ତୋ ଆଖିରେ ଲୁହ ? ଦୁଃଖ କି ନୈରାଶ୍ୟର ଧାରଣା କେବେ ତୋ ମନରେ ପଶେ ନାହିଁ । ମୁହଁଟି ତୋର ସବୁବେଳେ ହସହସ । ଆଜି କାହିଁକି ତୋ ମନରେ ଦୁଃଖ, ଆଖିରେ ଲୁହ ?

ମୁହଁ ହସ ହସ ! ନାରୀଜାତିର ପ୍ରକୃତି ଯେ ଏହିପରି । ବାଳିକା ହୀରାର ଅନ୍ତରରେ ଯେତେବେଳେ ଦୁଃଖର ନିଆଁ ଦାଉ ଦାଉ ହୋଇ ଜଳି ଉଠେ, ହା-ହତାଶମୟ ପ୍ରାଣ କାନ୍ଦି ଉଠେ, ସେ କରୋଲାରେ ବସି ଆଖିରୁ ଦୁଇ ବନ୍ଦୁ ଲୁହ ଗଡ଼ାଇ ପକାଏ । ନେତ୍ରମଣି ଯଦି ପାଖରେ ଥାଆନ୍ତି, ହୀରା ଅନ୍ତରର ଦୁଃଖ ଘୋଡ଼ାଇ ହସିବାକୁ ଚେଷ୍ଟା କରେ, ମାତ୍ର ଆଜି ସେ ଲୁଚାଇ ପାର ନାହିଁ ।

ନେତ୍ରମଣି ଝିଅର ଆଖି ପୋଛି ବୁଝାଇ କହିଲେ, କପାଳରୁ ବଡ଼ କେହି ନାହିଁ । କପାଳରେ ବିଧାତା ଯାହା ଲେଖି ଦେଇଛି ମଣିଷ ତାକୁ ବଦଳାଇ ପାରିବ ନାହିଁ । କେତେ ପାପ କଲେ ସ୍ତ୍ରୀ ଜନ୍ମ ମିଳେ । ପାଣି ଫୋଟକା ପରି ଜୀବନ କେତେବେଳେ ମିଳାଇ ନିଶ୍ଚିହ୍ନ ହେବ କେହି ଜାଣି ପାରିବେ ନାହିଁ । ଯେତେ ଦିନଯାଏ ବଞ୍ଚିଥିବୁ ଲୋ ମା, ନିଷ୍ପାପ ମନରେ ଠାକୁରଙ୍କର ନାମ ଜପି ଜୀବନକୁ କଟାଇ ଦେ । ଭଗବାନ ଆଉ କେବେ ସ୍ତ୍ରୀ ଜନ୍ମ ଦେବେ ନାହିଁ । ମା, ଏପରି ଗୀତ ଆଉ କେବେ ଲେଖିବୁ ନାହିଁ, ଗୁପିବାକୁ ଦେବୁ ନାହିଁ । ଲୋକନିନ୍ଦା ହେବ ପରା !

ନେତ୍ରମଣି ଏହିପରି କନ୍ୟାକୁ ଅନେକ ସମୟ ବୁଝାଇଲେ । ହୀରାମଣି ନୀରବରେ ସବୁ ଶୁଣିଲା । କଥାରେ ବାଧା ଦେଇ କହିବାକୁ ତାର ସାହସ ହେଲା ନାହିଁ । ମାଆଙ୍କର ଅନୁପସ୍ଥିତିରେ ତାଙ୍କର ଉପଦେଶଗୁଡ଼ିକର ପ୍ରକୃତ ମୂଲ୍ୟ ବୁଝିବାକୁ ମନେ ମନେ ବହୁ ତର୍କ ସେ କରିଛି । ସଂସାରରେ କିଏ କାହାର ? ମା ଝିଅ ବର୍ଷେ ଦେଉଲେ ପଶିଲେ, ଯେଝା ଶୁଭ ଯେଝା ମନାସିଲେ । ମଣିଷର ପ୍ରକୃତି ଏହା ସିନା ! ଉପଦେଶ ଦେବା ଅତି ସହଜ, ମାତ୍ର ଉପଦେଶକୁ ମାନି ଚଳିବା ଦୁରୂହ । ସମସ୍ତେ କହିବେ ବିଧବା, ବିଧବା, ତାର ଆନନ୍ଦରେ ଅଧିକାର ନାହିଁ, ଶୁଭକାର୍ଯ୍ୟରେ ସେ ହାତ ଦେଇ ପାରିବ ନାହିଁ, ତାର ମୁହଁ ଗୁହିଁଲେ ଅମଙ୍ଗଳ । ସେ ଅଲୋଡ଼ା, ଅଖୋଜା ! ଭଲ ଲୁଗା ପିନ୍ଧିବ ନାହିଁ, ଗହଣା ନାଇବ ନାହିଁ । କାହା ସଙ୍ଗରେ କଥାଭାଷା ହେଲେ ଲୋକେ ଟେରେଇ ଟେରେଇ ଗୁହିଁବେ । ହସିକରି ପଦେ କଥା କହିବାର ଅଧିକାର ନାହିଁ । କାହା ଆଡ଼କୁ କଣେଇ ଗୁହିଁଲେ ମହାପାପ ।

ଗୀତ ଅଳପ ଅଛି, ଯାପରେ ଘିଅ ନାହିଁ, ଆଲୁଅ ଶୀଘ୍ର ଲଭିବ । ତା ପରଦିନ ନେତ୍ରମଣି ମନକୁ ଯେତେ ବୁଝାଇଲେ ମନ ବୁଝିଲା ନାହିଁ । ଏଁ, ଆଜିକାଲିକା ଟୋକାଗୁଡ଼ା କେଡ଼େ ବେଲଜ୍ଜା ହେଲେ ମ ! ବ୍ରାହ୍ମଣଘର ଝିଅ କଣ ପାଠ ପଢ଼ି ଗୀତ ଲେଖି ଛପେଇବାକୁ ? ଲୋକେ କଣ କହିବେ ? ସ୍ୱାମୀ ଆସି ମୋ ଉପରେ ବିରକ୍ତ ହେବେ । ଏଥିରେ ମୋର କି ଅପରାଧ ? ମୁଁ କଣ ହାରାମଣିକୁ କହି ଦେଇଥିଲି, ଏମିତିକା ଗୀତ ଲେଖ ?

ନେତ୍ରମଣି ଚାଲି ଭିତରକୁ ଜାଲି ଠେଲି ମୁଣ୍ଡରେ ହାତ ଦେଇ ବସିଗଲେ । ପୁଣି ଭାବିଲେ, ହାରା କଣ ଶେଷକୁ ଏ କୂଳରେ କଳଙ୍କ ଲଗାଇ ବଣି ଦାସଙ୍କ ଝିଅ ପରି ମୁସଲମାନ ଟୋକା ସଙ୍ଗରେ କଲିକତା ପଳାଇବ ? ସେତେବେଳେ ରଥ ଘର ମାନ ମହତ ଯିବ କୁଆଡ଼େ ? ଜାତି ରହିବ କେଉଁଠି ? ଠାକୁରେ କଣ ପୋଡ଼ାକପାଳୀ ଝିଅକୁ ଏ ଘରେ ଜନ୍ମ ଦେଇଥିଲେ ଏଇଥିପାଇଁ ? ହାନକପାଳୀର ମରଣ ହେଉ ନାହିଁ କାହିଁକି, ସମସ୍ତେ ନିସ୍ତାର ପାଇଯିବେ ।

ନେତ୍ରମଣି ଉତ୍ତେଜିତ ହୋଇ ହାତରେ ଖଣ୍ଡେ କାଠଫାଳିଆ ଧରି ଉଠିଲେ । ଭାବିଲେ, ଯାହା ହେବାର ହେବ, ଆଜି ତାର ମୁହଁ ଭାଙ୍ଗିବେ । ହାନକପାଳୀ ବୋଲି ପିଲାଦିନୁ ଗେହ୍ଲାରେ ବଢ଼ାଇ ଆଣିଥିଲେ, ତାର ଫଳରେ ହାରାର ମୁହଁ ବଢିଯାଇଛି । ମୁହଁ ନ ଭାଙ୍ଗିଲେ ଶେଷ ଫଳ ଖରାପ ହେବ । ରାଗ ତମତମ ହୋଇ ସେ ଠାକୁର ଘରକୁ ଛୁଟିଲେ । କବାଟ ପୂର୍ବପରି ଦରଆଉଜା । କବାଟକୁ ଠେଲି ଦେଖିଲେ, ତାଙ୍କ ସ୍ନେହର ପିତୁଳା ହାରାମଣୀ କାନ୍ଥକୁ ଆଉଜି ଚୁପ୍ ହୋଇ ବସିଛି, ଆଖିରୁ ଦୁଇଧାର ଲୁହ ଗଡ଼ି ପଡ଼ୁଛି ।

ହାତରୁ କାଠଫାଳିଆ ଖସି ପଡ଼ିଲା । ମା ହୋଇ ତାଙ୍କର ହାତ କପରି ହତଭାଗିନୀ କନ୍ୟାଟିର କଅଁଳ ଦେହରେ ଆଘାତ କରିବାକୁ ଚଳନ୍ତା ? ତାଙ୍କର ଆଖି ଛଳ ଛଳ ହେଲା, ପେଟ ଭିତର ଘାଣ୍ଟି ଚକଟି ହେଲା । ସେ ଆଉ ସମ୍ଭାଳି ପାରିଲେ ନାହିଁ । ପାଗଳୀ ପରି ଛୁଟିଯାଇ ଝିଅକୁ କୁଣ୍ଢାଇ ଧରିଲେ । ଆଖିରୁ ଲୋତକ ପୋଛି ଅଶ୍ରୁଳ ସ୍ୱରରେ ପଚାରିଲେ, ମା ଅଟି ମୋର, ତୁନି ହୋଇ ବସି କାହିଁକି କାନ୍ଦୁଛ ଲୋ ?

ମାଆଙ୍କର ଉଦ୍‌ବେଗପୂର୍ଣ୍ଣ ବାକ୍ୟର ଉତ୍ତର ସ୍ୱରୂପ ହାରାମଣି ଅଶ୍ରୁସିକ୍ତ ମୁହଁଟି ନେତ୍ରମଣିଙ୍କ ବକ୍ଷ ଦେଶରେ ରଖି ରୋଦନ କଲା । ସେ କାହିଁକି କାନ୍ଦୁଛି, ତାର କଅଣ ଅଭାବ ? ଅତି ଲାଜର କଥା ! କପରି କହିବ ସେ କାହିଁକି କାନ୍ଦୁଛି ? କିଏ ନ ଜାଣେ ? ମା କଣ ଜାଣନ୍ତି ନାହିଁ ? ଜାଣନ୍ତି, ତଥାପି ଏ ନିର୍ମମ ପ୍ରଶ୍ନ ! ସେ ଏ ପ୍ରଶ୍ନର ଉତ୍ତର ଦେଇ ପାରିବ ନାହିଁ ।

ନେତ୍ରମଣିଙ୍କର ଗୁଡ଼ଉପରୁ ହୀରା ମଥା ଟେକିଲା । ଆଗରେ ଦେବତା, ପାଖରେ ଜନନୀ । କଡ଼ର ଝରକା ବାଟେ ଉଆଁସୀ ଆକାଶରୁ ତେନାଏ ଦିଶୁଛି । କେତେ ତାରା ମିଟି ମିଟି ହୋଇ ସତେ କି ଉପହାସ କରୁଛନ୍ତି । ବନ୍ଦୁ ସାଗରର ଅନ୍ଧାରିଆ ଗୁଡ଼ରେ ଆକାଶ ପ୍ରତିଫଳିତ । ପବନ ନାହିଁ । ଦେହ ଝାଳେଇ ଉଠିଛି ।

ନେତ୍ରମଣି କହିଲେ, ମା ଲୋ, ସତ କହ କାହିଁକି ତୋ ଆଖିରେ ଲୁହ ? ଦୁଃଖ କି ନୈରାଶ୍ୟର ଧାରଣା କେବେ ତୋ ମନରେ ପଶେ ନାହିଁ । ମୁହଁଟି ତୋର ସବୁବେଳେ ହସହସ । ଆଜି କାହିଁକି ତୋ ମନରେ ଦୁଃଖ, ଆଖିରେ ଲୁହ ?

ମୁହଁ ହସ ହସ ! ନାରୀଜାତିର ପ୍ରକୃତି ଯେ ଏହିପରି । ବାଳିକା ହୀରାର ଅନ୍ତରରେ ଯେତେବେଳେ ଦୁଃଖର ନିଆଁ ଦାଉ ଦାଉ ହୋଇ ଜଳି ଉଠେ, ହା-ହୁତାଶମୟ ପ୍ରାଣ କାନ୍ଦି ଉଠେ, ସେ ନିରୋଳାରେ ବସି ଆଖିରୁ ଦୁଇ ବନ୍ଦୁ ଲୁହ ଗଡ଼ାଇ ପକାଏ । ନେତ୍ରମଣି ଯଦି ପାଖରେ ଥାଆନ୍ତି, ହୀରା ଅନ୍ତରର ଦୁଃଖ ଘୋଡ଼ାଇ ହସିବାକୁ ଚେଷ୍ଟା କରେ, ମାତ୍ର ଆଜି ସେ ଲୁଚାଇ ପାରି ନାହିଁ ।

ନେତ୍ରମଣି ଝିଅର ଆଖି ପୋଛି ବୁଝାଇ କହିଲେ, କପାଳରୁ ବଡ଼ କେହି ନାହିଁ । କପାଳରେ ବିଧାତା ଯାହା ଲେଖି ଦେଇଛି ମଣିଷ ତାକୁ ବଦଳାଇ ପାରିବ ନାହିଁ । କେତେ ପାପ କଲେ ସ୍ତ୍ରୀ ଜନ୍ମ ମିଳେ । ପାଣି ଫୋଟକା ପରି ଜୀବନ କେତେବେଳେ ମିଳାଇ ନିଶ୍ଚିହ୍ନ ହେବ କେହି ଜାଣି ପାରିବେ ନାହିଁ । ଯେତେ ଦିନଯାଏ ବଞ୍ଚିଥିବୁ ଲୋ ମା, ନିଷ୍ପାପ ମନରେ ଠାକୁରଙ୍କର ନାମ ଜପି ଜୀବନକୁ କଟାଇ ଦେ । ଭଗବାନ ଆଉ କେବେ ସ୍ତ୍ରୀ ଜନ୍ମ ଦେବେ ନାହିଁ । ମା, ଏପରି ଗୀତ ଆଉ କେବେ ଲେଖିବୁ ନାହିଁ, ଛାପିବାକୁ ଦେବୁ ନାହିଁ । ଲୋକନିନ୍ଦା ହେବ ପରା !

ନେତ୍ରମଣି ଏହିପରି କନ୍ୟାକୁ ଅନେକ ସମୟ ବୁଝାଇଲେ । ହୀରାମଣି ନୀରବରେ ସବୁ ଶୁଣିଲା । କଥାରେ ବାଧା ଦେଇ କହିବାକୁ ତାର ସାହସ ହେଲା ନାହିଁ । ମାଆଙ୍କର ଅନୁପସ୍ଥିତିରେ ତାଙ୍କର ଉପଦେଶଗୁଡ଼ିକର ପ୍ରକୃତ ମୂଲ୍ୟ ବୁଝିବାକୁ ମନେ ମନେ ବହୁ ତର୍କ ସେ କରିଛି । ସଂସାରରେ କିଏ କାହାର ? ମା ଝିଅ ଉଦ୍ବେ ଦେଉଳେ ପଶିଲେ, ଯେଉଁଠା ଶୁଭ ଯେଉଁଠା ମନାସିଲେ । ମଣିଷର ପ୍ରକୃତି ଏହା ସିନା ! ଉପଦେଶ ଦେବା ଅତି ସହଜ, ମାତ୍ର ଉପଦେଶକୁ ମାନି ଚଳିବା ଦୁରୂହ । ସମସ୍ତେ କହିବେ ବିଧବା, ବିଧବା, ତାର ଆନନ୍ଦରେ ଅଧିକାର ନାହିଁ, ଶୁଭକାର୍ଯ୍ୟରେ ସେ ହାତ ଦେଇ ପାରିବ ନାହିଁ, ତାର ମୁହଁ ଚାହିଁଲେ ଅମଙ୍ଗଳ । ସେ ଅଲେଢ଼ା, ଅଖୋଜା ! ଭଲ ଲୁଗା ପିନ୍ଧିବ ନାହିଁ, ଗହଣା ନାଇବ ନାହିଁ । କାହା ସଙ୍ଗରେ କଥାଭାଷା ହେଲେ ଲୋକେ ଟେରେଇ ଟେରେଇ ଚାହିଁବେ । ହସିକରି ପଦେ କଥା କରିବାର ଅଧିକାର ନାହିଁ । କାହା ଆଡ଼କୁ କଣେଇ ଚାହିଁଲେ ମହାପାପ ।

ଏଇ ତ ବିଧବାର ଜୀବନ ! ସମାଜର ଇଚ୍ଛା, ବିଧବାମାନେ ଅନ୍ଧ ହୋଇ, କାଲ ହୋଇ, ଖଞ୍ଜ ହୋଇ, ବୋକା ହୋଇ ରହିଥିବେ । ଘରର ସବୁ କାମ ତୁଲଇବେ, ବଜାର ହାଟ କରିବେ, ଅଟଳ ବ୍ରହ୍ମଚର୍ଯ୍ୟ ପାଳନ କରି ମାଳା କୋଥଳି ଧରି କୃଷ୍ଣନାମ ଜପି ନିଷ୍ପାପ ହୋଇ ସମୟ କଟାଇବେ । ନାରୀ ବେଳକୁ ଏ କଠୋର ନିୟମ । ପୁରୁଷ ପାଇଁ ନିୟମ ନାହିଁ । ସେ ସ୍ୱାଧୀନ । ସେ ପବିତ୍ର । ସେ ଚିରଦିନ ଶୁଦ୍ଧ ଓ ନିର୍ମଳ । ବ୍ୟଭିଚାର, ପୁରୁଷ ପକ୍ଷରେ ଅସୁନ୍ଦର ନୁହେଁ ।

ଏ ବିଡ଼ମ୍ବନା କାହା ଯୋଗୁଁ ? ସମାଜର ଅର୍ଦ୍ଧାଧିକ ନାରୀ । ସେମାନେ ପୁରୁଣ୍ଡର ଅତ୍ୟାଚାର ସହି ପୁରୁଷକୁ ଦେବତା ପରି ମାନି ଆସିଛନ୍ତି । ମନେ କରିଛନ୍ତି, ପୁରୁଷ ପ୍ରଭୁ । ଏଥିପାଇଁ ତ ପୁରୁଷର ଗର୍ବ ! ନାରୀର ଦେହ ଓ ମନ କୋମଳ । କୋମଳତା ଯଦି ଦୁର୍ବଳତା ହୁଏ, ନାରୀ ଦୁର୍ବଳ । ଜାଣି ଜାଣି ସେ ଏହି ଦୁର୍ବଳତା ବରଣ କରିଛି । ଜୀବନ ଦେଇ ରକ୍ତ ଦେଇ ସେ କଣ ପୁରୁଷକୁ ସବଳ କରେ ତାହାରି ଉପରେ ଅତ୍ୟାଚାର କରିବାକୁ, ତାହାରି ବିପକ୍ଷରେ କଠୋର ନିୟମ ବାନ୍ଧି ନୀତିର ଦୋହାଇ ଦେଇ ନିୟମର କାଳସର୍ପ ଗଳାରେ ଲମ୍ବାଇବାକୁ ? ନାରୀ କଣ ବିଦ୍ରୋହ କରି ଜାଣିବ ନାହିଁ ? ପୁରୁଷର ଅତ୍ୟାଚାରର ପ୍ରତିଶୋଧ ନେଇ ପାରିବ ନାହିଁ ?

ହାସ୍‌ମଣିର ଭାବନାର ଅନ୍ତ ନାହିଁ । ସବୁ ପୁରାଣ ସେ ପଢ଼ିଛି । କେତେ ନୀତିବାକ୍ୟ ସେ କଣ୍ଠସ୍ଥ କରିଛି । ପୁରାଣର ଆଦର୍ଶ, ନୀତିବାକ୍ୟର ଶିକ୍ଷା ଆଜି ତାର ଚଞ୍ଚଳ ଦୋହଲ ମନକୁ ସ୍ଥିର କରି ପାରୁ ନାହିଁ । କଅଣ ଗୋଟାଏ କରିବାକୁ ମନ ଆତୁର ହୋଇ ଉଠିଛି ।

କଅଣ ସେ କରି ପାରିବ ?

## ତିନି

ରଥ ଶର୍ମା ଦେଖିବାକୁ ମୋଟା । ବଲଲ ପରି ଦେହଟି ଗୋରା ତକ୍ ତକ୍ । ସୁନ୍ଦର ଚେହେରା । ଲଣ୍ଡିତ ମୁଣ୍ଡ । ମଧ୍ୟଦେଶରେ ସୁଦୀର୍ଘ ଚୁଟି । ହାତୀ ପରି ଦୋହଲି ଚାଲନ୍ତି । ଲୋକେ କହନ୍ତି ଅଗାଧ ପାଣ୍ଡିତ୍ୟର ଏହା ଲକ୍ଷଣ । ସୁରେନ୍ ଶ୍ରେଣୀର ଛାତ୍ରମାନେ ପଣ୍ଡିତ ମହାଶୟଙ୍କୁ ତନ୍ନ ତନ୍ନ କରି ପରୀକ୍ଷା କରି ବହୁ ତର୍କ ବିତର୍କ ଓ ଗବେଷଣା ପରେ ସ୍ଥିର କରିଛନ୍ତି ଯେ ଏହା ପଣ୍ଡିତ ମହାଶୟଙ୍କ ପୃଥୁଳ ଉଦରର ଦୋଷ ।

ରଥେ ଗମ୍ଭୀର ପ୍ରକୃତିର ଲୋକ । ଆବଶ୍ୟକ ନ ଥିଲେ କାହାକୁ କିଛି କହନ୍ତି ନାହିଁ । କିନ୍ତୁ, କ୍ଲାସରେ ବସି ରାଧାନାଥ ଗ୍ରନ୍ଥାବଳୀ ବୁଝାଉଲା ବେଳେ ପାଟିକିରି ବାଟୁଳି ବାଜେ ନାହିଁ । ରଥଙ୍କର ଆହୁରି ଗୋଟିଏ ଗୁଣ ଅଛି, ତାଙ୍କୁ କେହି

କେବେ ହସିବାର ଦେଖି ନାହିଁ । ଯେତେ ହସ କଥା ହେଉ ପଛେ, ଶହେ ଷାଠିଏ ଧାରଲା ପର ମୁହଁ ସବୁବେଳେ ଭୃକୁଣ୍ଡା କରିଥାନ୍ତି । ଏହା ମଧ୍ୟ ତାଙ୍କ ଅଗାଧ ପାଣ୍ଡିତ୍ୟର ଅନ୍ୟତମ ଲକ୍ଷଣ ବୋଲି ଛାତ୍ରମାନେ କହନ୍ତି ।

ପାଣ୍ଡିତ୍ୟର ଶେଷ ଲକ୍ଷଣ ସାଧୁଭାଷାରେ କଥାଭାଷା କହିବା । ସୁରେନ୍ କହେ, ପଣ୍ଡିତ ମହାଶୟ ଦିନେ ଚୌଧୁରୀ ବଜାରରେ ସଉଦା କଲାବେଳେ ଜଣେ ମାଛ ବିକାଳୀ କେଉଟୁଣୀକୁ ସମ୍ବୋଧିଲେ, ଭୋ ଭୋ ଧୀବର ପତ୍ନୀ, ମତ୍ସ୍ୟର ମୂଲ୍ୟ ନିରୂପଣ କର । କେଉଟୁଣୀ ଭାବିଲା, ବୋଧହୁଏ ଲୋକଟି ତାକୁ ଗାଳି ଦେଉଛି । ସେ ଆଖି ତରାଟି ପଦକ ଠେକା ଗର୍ଜି ଉଠିଲା, ଯୋଗମୀଖିଆ ଅଲଗାଇସା, ଭଣ୍ଡସଣ୍ଡ କହି ମାଛ କିଣିବାକୁ ଆଇଚ । ଲୋକେ ହାଁ ହାଁ କଲାରୁ ମହତ ରହିଲା । ରଥେ କୁଆଡେ ସେଇ ଦିନରୁ ଆମିଷ ଛାଡ଼ିଲେ ।

ନୈଷ୍ଠିକତାରେ ପଣ୍ଡିତ ମହାଶୟଙ୍କୁ ବଳେଇଯିବ ଏପରି ଲୋକ କଟକ ସହରରେ ନାହିଁ ନ ଥିବେ । ପୂଜାପଦ୍ଧତିରେ ତାଙ୍କର ଅଧିକାଂଶ ସମୟ କଟେ । ତାଙ୍କର ଧାରଣା, ଠାକୁରଙ୍କୁ ସଂସ୍କୃତରେ ନ ଡାକିଲେ ସେ କିଛି ବୁଝି ପାରନ୍ତି ନାହିଁ । ତେଣୁ ଶୁଣନ୍ତି ନାହିଁ । ସୁରେନ୍ କହେ, ପଣ୍ଡିତ ମହାଶୟ ଅତି ରକ୍ଷଣଶୀଳ, ବାଂଶ ଇତ୍ୟାଦିର ଚଳନ ତାଙ୍କ ଆଖିରେ ଯାଏ ନାହିଁ । ଆଜିକାଲିକା ଟୋକାଙ୍କର ନିଶକଟା, ଟେରିଭଙ୍ଗାଠୁଁ ଆରମ୍ଭ କରି ଫୁଟ୍‌ବଲ୍, ହକି ଖେଳ ଯାଏ ସବୁ ସେ ନିନ୍ଦା କରନ୍ତି ।

ଗ୍ରୀଷ୍ମାବକାଶ ପାଞ୍ଚ ଦିନ ଅଛି । ସ୍କୁଲ ବନ୍ଦ ହେବା ପୂର୍ବରୁ ଅନେକ ପିଲା କେତେ ପ୍ରକାର ଛଳନା ଦେଖାଇ ଘରକୁ ଚାଲିଗଲେଣି । ବାକି ଯେତେକ ଅଛନ୍ତି ସେମାନଙ୍କର ବହିପତ୍ର, ଲୁଗାପଟା ସବୁ ବନ୍ଧାବନ୍ଧି ସରିଛି । ସ୍କୁଲକୁ ଆସନ୍ତି କେବଳ ହାଜିରା ପକାଇ ଚାଲି ଯିବାକୁ । ଛୁଟି ପରେ ପରୀକ୍ଷା । ଏତେ ଆଗରୁ ପାଠପଢ଼ିବାକୁ କିଏ ପସନ୍ଦ କରିବ ? କ୍ଲାସକୁ ଶିକ୍ଷକମାନେ ଖାତିମତ ଆସୁନାହାନ୍ତି । ସେଥିପାଇଁ ପିଲାଙ୍କର ଆହୁରି ଆନନ୍ଦ । ସ୍କୁଲ ପଛପଟ ପଡ଼ିଆରେ ଡାବଲପୁଆ, ଗୁଲି, ବୋହୂଚୋରି ଇତ୍ୟାଦି ଖେଳର ଧୂମ୍ ! ପଣ୍ଡିତଙ୍କ ଭାଷାରେ ପିଲାଙ୍କୁ ସ୍ୱରାଜ ମିଳିଛି ।

କେହି ଆସନ୍ତୁ ନ ଆସନ୍ତୁ ପଣ୍ଡିତ ମହାଶୟ କ୍ଲାସକୁ ଆସିବାକୁ ଭୁଲନ୍ତି ନାହିଁ । ସେଦିନ ପଞ୍ଚମ ଘଣ୍ଟାରେ ପଣ୍ଡିତ ମହାଶୟଙ୍କର ଏକାଦଶ ଶ୍ରେଣୀରେ ସାହିତ୍ୟ ପଢ଼ାଇବାର କଥା । ଘଣ୍ଟି ବାଜିବା ସଙ୍ଗେ ସଙ୍ଗେ ସେ ଆସି କ୍ଲାସରେ ଉପସ୍ଥିତ । ସେତେବେଳକୁ ଅଧିକାଂଶ ଛାତ୍ର ଚାଲି ଯାଇଥିଲେ । ବାକି କୋଡ଼ିଏ ବାଇଶି ଜଣ କୌଣସି ବିଷୟର ତର୍କରେ ନିଯୁକ୍ତ । କୋଳାହଳରେ ସତେ କି ଘର ଫାଟି ପଡ଼ିବ । ପଣ୍ଡିତ ମହାଶୟଙ୍କୁ ଦେଖି ଗୋଳମାଳ ବନ୍ଦହେଲା । କେହି ପାଣି ପିଇବା

ଛଳନାରେ, କେହି ବା ଛେପ ପକାଇବା ବାହାନାରେ କ୍ଲାସରୁ ଖସି ଗ୍ଲଲଗଲେ । ବାକି ରହିଲେ ବାରଜଣ ।

ପଣ୍ଡିତ ମହାଶୟ ରାଧାନାଥ ଗ୍ରନ୍ଥାବଳୀ ଖୋଲି ଚିଲିକା ପଢ଼ାଇବାକୁ ଆରମ୍ଭ କଲେ । କିନ୍ତୁ ସୁରେନ ଏଥିରେ ପ୍ରତିବାଦ କରି କହିଲା, ନା, ଆଜି ଆମେ ପାଠ ପଢ଼ିବୁ ନାହିଁ । ଛୁଟି ପାଖରେ, ପାଠଗୁଡ଼ାକ ବଦହଜମି ହେବ । ଆଜି ଅନ୍ୟପ୍ରକାର ସାହିତ୍ୟର ଚର୍ଚ୍ଚା ହେଉ ।

ଅନ୍ୟ ପିଲାମାନେ ସୁରେନ୍‌ର କଥାକୁ ସମର୍ଥନ କଲେ । ପଣ୍ଡିତ ମହାଶୟ ମହା ବିପଦରେ ପଡ଼ିଲେ । ଏ ଯୁଗଟା ଭୋଟ ଯୁଗ, ପ୍ରଜାତନ୍ତ୍ର ଯୁଗ ! ସବୁ ଭୋଟ୍ ସୁରେନ୍ ପକ୍ଷରେ । ଯଦି ହାତର ପାଞ୍ଚ ଜୋରରେ ପ୍ରସ୍ତାବକୁ ଭେଟୋ କରି ଚିଲିକା ଆରମ୍ଭ କରନ୍ତି, ସବୁ ପିଲା ମିଶି ଅସହଯୋଗ ଆରମ୍ଭ କରିଦେବେ । ଆଇନ୍ ଅମାନ୍ୟ କରି କ୍ଲାସ ଛାଡ଼ି ଗ୍ଲଲଯିବେ । ପଣ୍ଡିତ ମହାଶୟ ତ ଚୌକି ବେଞ୍ଚକୁ ପଢ଼ାଇବେ ନାହିଁ ?

ସୁରେନ୍‌ର ଜୟ ହେଲା । ରାଧାନାଥ ଗ୍ରନ୍ଥାବଳୀ ବନ୍ଦ କରି ପଣ୍ଡିତେ ସୁରେନ୍‌କୁ ପଚାରିଲେ, ତେବେ କି ବିଷୟ ପଢ଼ାଇବାକୁ ଆଦେଶ କରୁଅଛ ?

ସୁରେନ୍ ସବୁ ପିଲାଙ୍କ ମୁହଁକୁ ଗ୍ଲହିଁଲା, ଦେଖିଲା ରାମ ହାତରେ ଖଣ୍ଡେ 'ମୁକୁର' । ସେ ନିଜ ସ୍ଥାନରୁ ଉଠିଯାଇ ରାମ ହାତରୁ ମୁକୁର ଖଣ୍ଡି ଟାଣି ଆଣିଲା । ଠିଆହୋଇ ଭଦ୍ରତା ସହକାରେ କହିଲା, ଆଜି ଏହି ମୁକୁରରୁ କିଛି ପଢ଼ାନ୍ତୁ ।

ପଣ୍ଡିତ ମହାଶୟ ଭ୍ରୂକୁଞ୍ଚିତ କରି କହିଲେ, ବ୍ରଜସୁନ୍ଦର ଦାସଙ୍କ ମୁକୁର ! କମ୍ବଳଯାକ ତ କେଶ, ଏଥିରେ କେଉଁ ଲେଖା ଦୋଷଶୂନ୍ୟ ଯେ ମୁଁ ପଢ଼ାଇବି ? ଆଜିକାଲି ତମର ଯେଉଁ ସାହିତ୍ୟ, ତାକୁ ମୁଁ କହେ ଗ୍ଲଗସାହିତ୍ୟ !

ଗ୍ଲଗ-ସାହିତ୍ୟ କଣ ?

ଯେତେ ଗଳ୍ପ, ଉପନ୍ୟାସ, କାବ୍ୟ, କବିତା ସବୁଗୁଡ଼ିକର ବିଷୟ ଏକ—ବେଶ୍ୟାର ସତୀତ୍ୱ ଓ ପରକୀୟା ପ୍ରେମ !

ସୁରେନ୍‌କୁ ଗୋଟାଏ ଆର ମିଳିଗଲା । ପଣ୍ଡିତ ମହାଶୟଙ୍କ ମନ୍ତବ୍ୟକୁ ସମାଲୋଚନା କରିବାକୁ ସେ ଅଣ୍ଟା ଭିଡ଼ି ଠିଆହେଲା । ତାକୁ ସାହାଯ୍ୟ କରିବାକୁ କ୍ଲାସର ସବୁ ପିଲାଏ ଏକଯୋଟ ହୋଇଗଲେ । କିଛି ସମୟ ବାଦାନୁବାଦ ତର୍କବିତର୍କ ଗ୍ଲଲିଲା । ପଣ୍ଡିତେ କେତେ କେତେ ଶ୍ଳୋକ ବୋଲି ପିଲମାନଙ୍କୁ ବୁଝାଇବାକୁ ଚେଷ୍ଟା କଲେ କିନ୍ତୁ ଫଳ କିଛି ହେଲା ନାହିଁ । ନମ୍ରନ୍ତି ଫଳିନୋ ବୃକ୍ଷାଃ, ନମ୍ରନ୍ତି ଗୁଣିନୋ ଜନାଃ । ପଣ୍ଡିତେ ସ୍ୱୀକାର କଲେ ଯେ ସେ ହାରିଛନ୍ତି । ଶୁଷ୍କ-କାଷ୍ଠଂଚ ମୂର୍ଖଶ୍ଚ ଭିଦ୍ୟତେ ନଚ ନମ୍ରତେ ।

ଜଗବନ୍ଧୁ ମୁକୁରଟି ଓଲଟ୍ ପାଲଟ୍ କରି ଗୋଟିଏ ପଦ୍ୟ ବାହାର କରି କହିଲା, ସାର୍, ଏହି ପଦ୍ୟଟି ଆମକୁ ବୁଝାଇ ଦିଅନ୍ତୁ । ଭାରି କଷ୍ଟ ଲେଖା, ବୁଝି

ହେଉନାହିଁ । ଜଗବନ୍ଧୁ ଭଲ ପିଲା । ପଣ୍ଡିତେ ତାଙ୍କୁ ସ୍ନେହ କରନ୍ତି । ସୁରେନ୍ କହେ, ଜଗବନ୍ଧୁର ବାପା ପଣ୍ଡିତ ମହାଶୟଙ୍କ ଜମିଦାର । ପଣ୍ଡିତେ ସନ୍ତୁଷ୍ଟ ହୋଇ କହନ୍ତେ, ପଢ଼—

ଜଗବନ୍ଧୁ ପଢ଼ି ପାରିଲା ନାହିଁ । ତୁ ପଢ଼, ତୁ ପଢ଼ କହି, ହସାହସି ହୋଇ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଅନୁରୋଧ କଲେ । ସୁରେନ୍‌ର ଅଉ ଧୈର୍ଯ୍ୟ ରହିଲା ନାହିଁ । ସେ ଗୋଟିଏ ବିଷୟ ଅନୁମାନ କରି ଉଚ୍ଚସ୍ୱରରେ କହିଲା, ଆଣ ମୋ ଅଡ଼କୁ । ତା ପରେ ମୁକୁରଟି ଧରି ଗଲା ସଫାକରି ପଢ଼ିଲା—'ମିନତି' ।

ପଣ୍ଡିତ ମହାଶୟ କହିଲେ,ଆଗ ପଦ୍ୟଟି ଥରେ ପଢ଼ିଯାଅ, ମୁଁ ଥରେ ଶୁଣେ, ପରେ ଅର୍ଥ କରି ବୁଝାଇ ଦେବ । ପଦ୍ୟଟିର ନାମ 'ମିନତି', ନା ? ହେଉ ପଢ଼ !

ସୁରେନ୍ ତାନମାନ ଧରି ଆରମ୍ଭ କଲା—

ଶିରୀଷକୋମଳ କମନୀୟ ଅଙ୍ଗ
କଜ୍ଜ୍ୱଳ ଚିକ୍‌କଣ କବରୀ ତରଙ୍ଗ
କଟାକ୍ଷ ଜଡ଼ିତ ନୟନ କୁରଙ୍ଗ
ରକ୍ତାଧର ଶୋଭାଧାର,
କେଉଁ ଦେବତାର ଉପଚାର ପାଇଁ
ହେଲ ପ୍ରଭୁ ଉପହାର ?
ଲୋଡ଼ା ନାହିଁ ତାର ତରଳ ଯୌବନ
ଲୋଡ଼ାନାହିଁ ତାର ପ୍ରଫୁଲ୍ଲ ଆନନ
ଲୋଡ଼ାନାହିଁ ହୃଦେ ପ୍ରୀତି ଶିହରଣ
ସବୁ ସିନା ଅକାରଣ,
ବିଧବା ପରାଣେ ପ୍ରବଳ ପିପାସା
କର କାହିଁ ଜାଗରଣ ?
ଲିଭାଇ ଦିଅ ତା ନୟନର ଜ୍ୟୋତି
ନ ଦେଖିବ ଯେହ୍ନେ ପ୍ରେମିକ ମୂରତି
କରକା କଠିଣ କର ତାର ଛାତି
ନ ଭେଦୁ ଅନଙ୍ଗ ବାଣ
ନ ଶୁଣିବ ଯେହ୍ନେ ପୀରତି ସଙ୍ଗୀତ
ବଧିର କର ଶ୍ରବଣ ।

ପଣ୍ଡିତ ମହାଶୟ ଅର୍ଥ କରି ଛାତ୍ରମାନଙ୍କୁ ବୁଝାଇ ଦେଲେ ସତ, ଛାତ୍ରମାନେ ବୁଝିଲେ କି ନାହିଁ ସନ୍ଦେହ । ସୁରେନ୍ କହେ, ରଥଶର୍ମାଙ୍କ ଭାଷା ଓ ଭାବ ବୁଝାଇ ଦେବାକୁ ଅନ୍ୟ ପଣ୍ଡିତ ଲୋଡ଼ା । ଯାହା ହେଉ ମୌଲବୀ ସାହେବଙ୍କ ଯିସକୁ ପୁଚ୍ଛା ଇସ୍‌କୁ ଲିଖା, ଆହୁର୍ ଥୋଡ଼ାଭି ଯ୍ୟାଦାଲିଖା, ନୀତି ଅବଲମ୍ବନ କରି ପଣ୍ଡିତ

ମହାଶୟ ସଂସ୍କୃତ ଶ୍ଳୋକ ଓ ନାନା ପ୍ରକାର ହିନ୍ଦି, ବଙ୍ଗଳା, ଓଡ଼ିଆ ପଦମାନ ଉଦାହରଣ ଦେଇ ବିଧବାର ପ୍ରାଣସ୍ପର୍ଶୀ ଦୁଃଖ ଯେ କେତେ ପ୍ରବଳ ଏବଂ କେତେ ହୃଦୟବିଦାରକ ସେ କଥା ଗ୍ରାହମାନଙ୍କୁ ବୁଝାଇ ଦେଲେ । ବିଧବାର ମନ ଓ ଜୀବନ କେତେ ଜ୍ୱାଳାମୟ । ସଂସାରରେ ଜନ୍ମ ଲାଭକରି ମଧ୍ୟ ତାର ସଂସାରରେ ଅଧିକାର ନାହିଁ । ତାର ରୂପ, ଗୁଣ, ଯୌବନ ସବୁ ବୃଥା, ଜୀବନଟା କେବଳ ହାହାକାରମୟ ପିପାସା ଜର୍ଜରିତ । କହୁ କହୁ ରଥଙ୍କର ଆଖି ଛଳ ଛଳ ହୋଇ ଆସିଲା ।

ନରେନ୍ଦ୍ର ସମବେଦନା ପ୍ରକାଶ କରି ପଚାରିଲା, ବିଧବାର ଦୁଃଖ ଦୂର କରିବା କଣ ସମ୍ଭବ ନୁହେ ?

ପଣ୍ଡିତ ମହାଶୟ ଦୃଢ଼ ସ୍ୱରରେ କହିଲେ, ଅସମ୍ଭବ ! ଗତ ଜୀବନର ପାପବୋଝ ଘେନି ମନୁଷ୍ୟ ସଂସାରରେ ଜନ୍ମଗ୍ରହଣ କରେ । ପାପର ଫଳରୂପେ ପରମେଶ୍ୱର ଦଣ୍ଡ ଦିଅନ୍ତି । ତାଙ୍କ ନିହିତ ଦଣ୍ଡ ଭିତରୁ ବୈଧବ୍ୟ ଅନ୍ୟତମ । ଭଗବାନଙ୍କର ଇଚ୍ଛା ବିରୁଦ୍ଧରେ ଯାଇ କିଏ ବିଧବାର ଦୁଃଖ ଦୂର କରିବାକୁ ଆଗଭର ହେବ ?

ରଘୁନାଥ ନିବେଦନ କଲା, ବିପତ୍ନୀକ ପୁଣି ବିବାହ କରେ, ନୂଆ ସଂସାର କରି ସୁଖ ଆନନ୍ଦରେ ସମୟ କଟାଏ । ବିପତ୍ନୀକ ହେବା କଣ ପୂର୍ବକୃତ ପାପର ଦଣ୍ଡ ନୁହେଁ ? ଆପଣମାନଙ୍କ ପରି ସମାଜନେତା ପଣ୍ଡିତମାନଙ୍କ ଆଖି ଆଗରେ ଏତେ ଅଧର୍ମ ଅନ୍ୟାୟ ହେଉଛି କିପରି ?

ପଣ୍ଡିତ ମହାଶୟ ମୁଣ୍ଡ ହଲାଇ ଉତ୍ତର ଦେଲେ, ବିପତ୍ନୀକ ପୁରୁଷ । ହିନ୍ଦୁ ସମାଜରେ ପୁରୁଷର ବହୁ ବିବାହ କରିବାର ଅଧିକାର ଅଛି । ରାମାୟଣ, ମହାଭାରତ ପ୍ରଭୃତି ପବିତ୍ର ଧର୍ମଗ୍ରନ୍ଥମାନଙ୍କରେ ଏହାର ଭୂୟସୀ ପ୍ରମାଣ ମିଳେ । ବିପତ୍ନୀକର ସ୍ତ୍ରୀ ମରେ କେବଳ ନିଜକୃତ ପାପରୁ ।

ଏତେବେଳେକେ ସୁରେନ୍ ବାପର କଥାଟାକୁ ମାଡ଼ିବସି କହିଲା, ପୁରାଣମାନଙ୍କରେ ବିଧବା ବିବାହର ଅଭାବ ନାହିଁ । ପ୍ରାତଃସ୍ମରଣୀୟା ତାରା ଓ ମନ୍ଦୋଦରୀ ବିଧବା ହୋଇ ପୁଣି ସ୍ୱାମୀ ଗ୍ରହଣ କଲେ । ଭଗବାନ ଶ୍ରୀରାମଚନ୍ଦ୍ର ଏ ପ୍ରଥା ପ୍ରଚଳନ କରିବାକୁ ଆଦେଶ ଦେଲେ ।

ହସି ହସି ରାଜକିଶୋର କହିଲା, ଏତକ ସମାଜର ଆର୍ଷ ପ୍ରୟୋଗ !

ସୁରେନ୍ ଚିଙ୍ଖାରିଲା, ସେହିପରି ଗୋଟି ଗୋଟି କରି ବିଧବା ବିବାହ କରାଇ ଏହି ଆର୍ଷ ପ୍ରୟୋଗର ସଂଖ୍ୟା ବଢାଇ ଦେଲେ କ୍ଷତି କଣ ? ଶେଷକୁ ଏହି ଆର୍ଷ ପ୍ରୟୋଗ ଗଡ଼ିଉଠି ନୂଆଟିଏ ନୀତି ବା ନିୟମ ହୋଇଯିବ ।

ପଣ୍ଡିତେ ଲାଗିଯାଇ ଖେଙ୍କି ଉଠିଲେ, ଆର୍ଯ୍ୟକୁଳ ତିଳକ ଶ୍ରୀମାନ ସୁରେନ୍ଦ୍ର ଆର୍ଯ୍ୟ କେଜାଣି ବା ବେଦ ପୁରାଣ କାଟି ବିଧବାଙ୍କର ଉଦ୍ଧାର ଶୁଣିବେ !

ସମାଜନେତା ରଘୁ ଆଗ୍ରୱାଲଙ୍କର କୁଳବଧୂ ବୋଧହୁଏ କେହି ଜଣେ ହତଭାଗିନୀ ବିଧବା ହେବେ ।

ରାଜକିଶୋର ଜଣାଇଲା, ବିଧବା ବିବାହ ଏବେ ବ୍ରାହ୍ମଣ ସମାଜରେ ପ୍ରଚଳିତ ହେଲାଣି । ଅନେକ ଶିକ୍ଷିତ ଲୋକ ଏଣିକି ଜାଣି ଜାଣି ବିଧବା ବିବାହ କରୁଛନ୍ତି ! ପୁରୁଣା ନିୟମ, ପୁରୁଣା ପ୍ରଥା ଧୀରେ ଧୀରେ ଲୋପ ପାଇବ ।

ପଣ୍ଡିତେ କହିଲେ, ହଁ, କେତେକଜଣ ଧର୍ମଛଡ଼ା, ଖିରସ୍ତାନ୍, ପଠାଣଙ୍କ ଅନୁକରଣ କରି ଏପରି କରୁଛନ୍ତି । ଯେଉଁମାନେ ରୂପ ଲୋଭରେ ଏପରି କରୁଛନ୍ତି ସେମାନେ କି ଆଉ ସମାଜରେ ପଶିବେ ? ସପ୍ତପୁରୁଷଙ୍କୁ ଘେନି ସମସ୍ତେ ଯାଇ ନରକରେ ପଡ଼ିବେ !

ସାମୁଏଲ ଅଭିଯୋଗଭରା ସ୍ୱରରେ ମୁହଁ ଫଣ ଫଣ କରି ବାକ୍ୟ ହାଣିଲା, ଆପଣ କଣ କହିବାକୁ ଚାହାନ୍ତି, ଯେଉଁ ଧର୍ମ ଓ ସମାଜମାନଙ୍କରେ ବିଧବା ବିବାହ ପ୍ରଚଳିତ ଅଛି, ସେମାନେ ସମସ୍ତେ ନରକକୁ ଯିବେ, କେବଳ ଆପଣଙ୍କ ପରି କେତେଜଣ ରକ୍ଷଣଶୀଳ ବ୍ରାହ୍ମଣ ଯାଇ ସ୍ୱର୍ଗରେ ଗାଦି ମାଡ଼ି ବସି ଚୁଡ଼ା ଦହିର ବ୍ୟବସ୍ଥା କରିବେ ? ଆମେ ଭାବୁ କଣ ଜାଣନ୍ତି ? ଆପଣଙ୍କ ପରି ପଣ୍ଡିତମାନେ, ଯେଉଁମାନେ କି ବିଧବାର ଦୁଃଖରେ ଲୁହ ଗଡ଼ାନ୍ତି, ଅଥଚ କୌଣସି ପ୍ରତିକାର କରିବାକୁ ଇଚ୍ଛା କରନ୍ତି ନାହିଁ, ସେହିମାନେ ଆଗ ନରକକୁ ଯିବେ । ଭଗବାନ ଆଗ ସେହିମାନଙ୍କୁ କଠୋର ଦଣ୍ଡ ଦେବେ ।

ଅଜିଜ୍ ପଚାରିଲା, ଆଚ୍ଛା ସୁରେନ୍, ଦେଖ ତ ଗୀତଟା କିଏ ଲେଖିଛି ? ପଣ୍ଡିତ ମହାଶୟଙ୍କ ବଜ୍ର-କଠିଣ ହୃଦୟକୁ ତରଳାଇ ଯେ ତାଙ୍କ ଆଖିରେ ଲୁହ ଆଣିପାରେ, ସେ ତ କମ୍ ଲେଖକ ନୁହେ । ପଣ୍ଡିତ ମହାଶୟଙ୍କର ଭାବବା ଉଚିତ, ଗୋଟିଏ ଗୀତର ପ୍ରଭାବ ତାଙ୍କ ମନରେ ଏତେ ଦୁଃଖ ଦେଲା, ଯେ ଲେଖକ ତାଙ୍କ ମନରେ କେତେ ଦୁଃଖ ଦୋଇ ନ ଥିବ ! ଆଉ ଯେ ଭୁକ୍ତଭୋଗୀ ବିଧବା, ତାର ଦୁଃଖ କିଏ କଳନା କରିବ ?

ସୁରେନ୍ 'ମୁକୁର' ଖୋଲି ପଢ଼ିଲା, ଲେଖିକା—ଶ୍ରୀମତୀ ହାରାମଣି ଦେବୀ । ପଣ୍ଡିତ ମହାଶୟ ବେହାହତ ପରି ଚମକି ଉଠିଲେ । ବିସ୍ମୟଜଡ଼ିତ ଭଗ୍ନକଣ୍ଠରେ ଜିଜ୍ଞାସିଲେ, କିଏ ? ସୁରେନ ଆଉଥରେ ଉଚ୍ଚସ୍ୱରରେ ପଢ଼ି ଶୁଣାଇ ଦେଲା ଶ୍ରୀମତୀ ହାରାମଣି ଦେବୀ ।

ଘଣ୍ଟା ବାଜିଲା । ଛାତ୍ରମାନେ କୋଲାହଳ କରି କ୍ଲାସରୁ ବାହାରିଗଲେ । ପଣ୍ଡିତ ମହାଶୟଙ୍କର ଗୋଡ଼ ଚଳିଲା ନାହିଁ । ତାଙ୍କ ମନ ସନ୍ଦେହାଚ୍ଛନ୍ନ ହେଲା । ନିଜକୁ ନିଜେ ସେ ପ୍ରଶ୍ନ ପଚାରିଲେ, ହାରାମଣି କିଏ ? ଆଖି ଆଗରେ ସାରା ସଂସାର ଭ୍ରମିବାକୁ ଲାଗିଲା । କିଏ ସେ ହାରାମଣି ?

# ଗୃହ

ଉଦୁଉଦୁଆ ଦ'ପହର । ଝାଇଁ ଝାଇଁଆ ଖରାତାତରେ ବୃକ୍ଷଲତା ଝୋଲା ମାରଲା ପରି ଝାଉଁଳି ପଡ଼ିଛନ୍ତି । ସଡ଼କ ଧୂଳି ନିଆଁ ଗୁଣ୍ଡା ପରି ତାତିଛି । ପଦାକୁ ବାହାରିବା ସମ୍ଭବ ହେଉ ନାହିଁ । ଘର ଭିତରେ ଶୋଇ ଲୋକେ ଛଟପଟ ହେଉଛନ୍ତି । ହାରାମଣି ଖଣ୍ଡେ ମସିଣା ଉପରେ ଶୋଇ ରାମାୟଣ ପଢୁଛି । ଅପବାଦକୁ ଡରି ଶ୍ରୀ ରାମଚନ୍ଦ୍ର ସୀତାଦେବୀଙ୍କୁ ନିର୍ବାସିତ କଲେ । ଏହି ବିଷୟ ଭାବୁ ଭାବୁ ତାର ଚକ୍ଷୁ ଛଳ ଛଳ ହେଲା । ସତେ, ଲୋକାପବାଦକୁ ମନୁଷ୍ୟ ଏତେ ଭୟ କରେ ! କେବଳ ପରକୁ ସନ୍ତୁଷ୍ଟ କରିବା ପାଇଁ ଜାଣି ଜାଣି ନିର୍ଦୋଷ ଉପରେ କଠିଣ ଦଣ୍ଡ ଦିଏ । ସେ ପୁଣି ନିଜେ ଭଗବାନ ରାମଚନ୍ଦ୍ର !

ବଉଳ, ବଉଳ, ଡାକ ଇନ୍ଦିରା ଉପସ୍ଥିତ ହେଲା । ଇନ୍ଦିରା ଆସୁଛି ଜାଣି ହାରାମଣି ରାମାୟଣ ବନ୍ଦ କଲା । ଇନ୍ଦିରା ହସି ହସି ଆସି ପାଖରେ ବସିଲା । ସେ ତା ପିଲା ଦିନର ସାଙ୍ଗ, ଲେଖାରେ କେଉଁ ଝିଅ ଭଉଣୀ । ଘର ପାଖରେ ଘର । ସମବୟସୀ । ମନ ମିଳେ । ଗରିବ ଘର ଝିଅ । ତା ବୋଲି ହାରାମଣିର ତା ପ୍ରତି କେବେ ଅବଜ୍ଞା ଭାବ ନ ଥାଏ । କାହିଁକି ବା ରହିବ, ମାଇକିନିଆଁ ଝିଅ, କାହା କପାଳରେ ଦଇବ କଣ ଲେଖିଛି କିଏ ଜାଣେ ? କାହା ହାଣ୍ଡିରେ କିଏ ଗୁଉଳ ପକାଇବାକୁ ଜନମ କିଏ କହି ପାରିବ ?

ସେ ଏବେ ଆଉ ଆଗର ଇନ୍ଦିରା ନାହିଁ ! ରୂପରେ ଗୁଣରେ ସବୁଥିରେ କୋଉବେଳକେ ବଦଳି ଯାଇଛି । ସମୟ ପଡ଼ିଲେ କପାଳ ଫିଟିଲେ ଲୋକଙ୍କର ଏପରି ପରିବର୍ତ୍ତନ ଘଟେ । କଳା ଝିଅ ବୋଲି ତାକୁ ପିଲାଦିନେ ଚିଡ଼ାଉଥିଲେ । ଏବେ ତ ଗୋରୀ ହୋଇଗଲାଣି ! ଗୋଡ଼ରୁ ମୁଣ୍ଡଯାଏ ଝଟକିଲା ସୁନା ଗହଣାରେ ଗ୍ରାଇ ହୋଇଛି । ନ ହେବ କାହିଁକି, କେତେବେଳେ ସିନା ଗରିବ ଘରର ଝିଅ ଥିଲା, ଏବେ ସେ ତ୍ରପୋଟି ଘରର ଘରଣୀ !

ହାରା ଇନ୍ଦିରାର ହାତ ଧରି ପାଖରେ ବସାଇଲା । ମଣିଷ ମନ, ପରର ସୁଖ ଦେଖିଲେ ମୁହଁରେ କହି ନ ହେଉ ପଛକେ ମନ ଭିତରେ କେମିତି କେମିତି ହୁଏ । ହଁ, ଏଇ ବଉଳର କପାଳରେ ଥିଲା ରାଜରାଣୀ ଭୋଗ, ଆଉ ମୋର ଏ ପୋଡ଼ା କପାଳକୁ ଥିଲା ଉହଲା ବିକଳ ଯୋଗ ! ମୁଁ କି ପାପ କରିଥିଲି ଯେ ଦଇବ ମୋ ମୁଣ୍ଡରୁ ସିନ୍ଦୂର ଲିଭାଇ ଦେଲେ, ହାତରୁ ଶଙ୍ଖା ଭଙ୍ଗାଇ ଦେଲେ ? ଏ ନିଉଛଣା ଜୀବନ ଥିଲେ କେତେ ଗଲେ କେତେ ! ହାରାମଣିର ଆଖିପତା ଓଦା ହୋଇ ଆସିଲା । କାଳେ ଇନ୍ଦିରା କଣ ଭାବିବ ଏହି ଡରରେ ସେ ହୃଦୟର ସବୁ ଯନ୍ତ୍ରଣା ଛପାଇ ଦେବାକୁ ହସିବାକୁ ଚେଷ୍ଟା କଲା ।

ଇନ୍ଦିରା ହାସିର ମନକଥା ସେ ନ ବୁଝିପାରୁଛି ଏପର ନୁହେଁ, ତଥାପି ମନ ରଖି ପଗ୍ଚରିଲ, ବନ୍ଧୁଲ, ସତ କହ, ଏ ଗତବ ସାଙ୍ଗ କେବେ କେମିତ ତୋର ମନେ ପଡ଼େ ?

ସବୁବେଳେ ତୁ ମୋର ମନେ ପଡ଼ୁଲୁ ବଉଲ ।

କେଜାଣି, ମୋର ତ ବିଶ୍ୱାସ ହେଉ ନାହିଁ ।

ବିଶ୍ୱାସ କାହିଁକି ହେବ, ନିଜ ପରି ମତେ ଭାବୁଛୁ । ତୁ ଯଦି ମତେ ମନେ ପକାଉଥାନ୍ତୁ କେବେ ସିନା ବିଶ୍ୱାସ ହୁଅନ୍ତା ? ମୁଁ ବା କାହିଁକି ତୋର ମନେ ପଡ଼ୁଥିବ ? ଲୋକେ ଆନନ୍ଦରେ ରହିଲେ ଦୁଃଖୀକୁ ଭୁଲି ଯାଆନ୍ତି । ହଉ ଭଉଣି, ଚିରଦିନ ସୁଖରେ ସଂସାର କର, ଠାକୁରଙ୍କ ପାଖରେ ମୋର ଏତିକି ମାଗୁଣି । ତୋ ସୁଖ ଦେଖି ହେଲେ ମୁଁ ଟିକିଏ ସୁଖୀ ହୋଇ ପାରିବି ।

ପ୍ରକୃତରେ ହାସମଣି ସୁଖୀ ହୋଇ ପାରିବ ! ସମସ୍ତେ ମୁହଁରେ ଏପରି କହୁଥାନ୍ତି, ପେଟ ଭିତର ତେଣେ ପାଣି ଚକଟି ହେଉଥାଏ । ସବୁ ଲୋକଙ୍କ ପ୍ରକୃତି ତ ଏକା ନୁହେ । ସମୟ ଓ ଅବସ୍ଥା ମନୁଷ୍ୟର ପ୍ରକୃତିକୁ ବଦଳାଇ ଦିଏ । ଅବୁଝା ମନ, ଅବେଇଜ ପ୍ରକୃତି ପରର ସୁଖ ଆନନ୍ଦ ଦେଖିଲେ ହାଇଁପାଇଁ ହୁଏ, ପେଡ଼ି ଭିତର ସାପ ପରି ସେ ମୋଡ଼ି ମୋଡ଼ି ହୋଇ ରହେ ।

ଦୁଇ ବନ୍ଧୁଙ୍କ ମଧ୍ୟରେ କେତେ ସୁଖ ଦୁଃଖ କଥା ପଡ଼ିଗଲା । ହାସମଣି ବା କହିବ କଣ ? ତା ଜୀବନରେ କେଉଁ ସୁଖ ଅଛି ଯେ ସେ ଖୁସି ହୋଇ ଗପିବ, ଆଉ ତାର ଦୁଃଖ କାହାକୁ ନ ଜଣା ? ଇନ୍ଦିରା କେତେ ଗପ କଲା, ତା ନିଜର ଚଳନ, ତା ସ୍ୱାମୀର ଭଲପଣ, ସ୍ନେହ ସୁଆଗ, ହାକିମ ପଣିଆ ଇତ୍ୟାଦି । କିପରି ସେ ଡ଼ିପୋଟି ହେଲେ, କିପରି ଆଜିକାଲି ପାଞ୍ଚ ପାଞ୍ଚଟା ଚାକର ତାଙ୍କ ପଛରେ ଗୋଡ଼ାଇଛନ୍ତି । ସ୍ତ୍ରୀର ଦିନଦଶା, ପୁରୁଷର କ୍ଷଣଦଶା ।

ଇନ୍ଦିରା କହିଲା—ସେ ତା ସ୍ୱାମୀକୁ ନିଜ ହାତମୁଠାରେ ରଖିଛି । ସେ ଯାହା କହିବ ସେଇଆ । ସେ ଯାହା କରିବ ତହିଁରେ ତା ସ୍ୱାମୀ ବାଧା ଦେଇ ପାରିବେ ନାହିଁ । କିଛି କହିଲେ ରୁସି, ଅଖିଆ ଅପିଆ ଶୋଇ ସେ କାନ୍ଦେ । ସ୍ୱାମୀ ପାଖକୁ ଆସି ଖୋସାମତି କରନ୍ତି, ନେହୁରା ହୁଅନ୍ତି, ବୁଝା ସୁଝା କରନ୍ତି । ଇନ୍ଦିରା ଉଠେ ନାହିଁ । ପଲଙ୍କ ଉପରେ ହାତେ ବହଳିଆ ଶେଯ ଉପରେ ମୁହଁ ମାଡ଼ି ଶୋଇ ଲୁହରେ ତକିଆ ଓଦା କରୁଥାଏ । ସେ ଧୀରେ ଧୀରେ ଇନ୍ଦିରା ପାଖରେ ବସନ୍ତି । ନିଜ ହାତରେ ତା ଆଖିରୁ ଲୁହ ପୋଛନ୍ତି, ପିଠି ଆଉଁସନ୍ତି, ମୁଣ୍ଡର କେଶ ସାଉଁଳନ୍ତି । କାନ ପାଖରେ କେତେ ମିଠା ମିଠା ଗେହ୍ଲାଳିଆ କଥା କହନ୍ତି । ହାତ ଛଡ଼ାଇଦେଲେ ବି ସେ ପିଲାଙ୍କପରି ଲାଗି ରହନ୍ତି । ଇନ୍ଦିରାର ଜସ୍ତ ହୁଏ । ସେ ଆଖି ଖୋଲି ହସିଦିଏ । ସ୍ୱାମୀ ତାର ଆନନ୍ଦରେ ଇନ୍ଦିରାକୁ ଗେଲ କରନ୍ତି । ଦୁଇ ହାତରେ ତାକୁ ଗୁଡ଼ାଇ

ଧରି ଟିକି ପିଲାଟିପରି ଗ୍ରାମରେ ଭୁଲନ୍ତି । ଗେଲର ସୁଅ ତ ଛୁଟିଥାଏ । ରାଗ-ଦ୍ୱେଷ, ମାନ-ଅଭିମାନ ଉପରେ ଯବନିକା ଗ୍ରାଣ୍ଡ ପଡ଼ନ୍ତି । ସେ ଦେହଟାକୁ କିଲିବିଲି·····

ଇନ୍ଦିରା କହିଲା, ଦାମ୍ପତ୍ୟ ପ୍ରେମର ମାଧୁରୀ ଯେ ଉପଭୋଗ କରିଛି ତା ନିକଟରେ ଯା ତୁ ଟିକିନିଖି କରି ବର୍ଣ୍ଣନା କରିବୁ । ବୃଥାରେ ଜଳିଲା ନିଆଁରେ ଘୃତାହୁତି ଦେଇ ତୋ ବଉଳର ପ୍ରାଣକୁ ପୋଡ଼ିଜାଳି ଅଙ୍ଗାର କରିବାକୁ ବସିଛୁ କାହିଁକି ? ସେ ବିଧବା, ସେ ତପସ୍ୱିନୀ, ତାର ଜୀବନ ନୀରସ !

ଇନ୍ଦିରା ବର୍ଣ୍ଣନା କଲା । ସେ ନିଜେ ତ ଅପରିପକ୍ୱ-ବୟସ୍କା ତରୁଣୀ, ଅନ୍ୟ ହୃଦୟର ଆକୁଳ ସ୍ପନ୍ଦନ ବୁଝିବ କିପରି ? ସେ ପର ହୃଦୟରେ ନିଜ ହୃଦୟର ପ୍ରେମୋନ୍ମାଦନା ଅନୁମାନ କରୁଛି; କିନ୍ତୁ ନିଜଠାରେ ପରର ଦୁଃଖ ଅନୁଭବ କରି ପାରୁନାହିଁ ।

ଇନ୍ଦିରା ଯେତିକି ବର୍ଣ୍ଣନା କରୁଥାଏ, ହୀରାମଣିର ମୁଖ ସେତିକି ଗମ୍ଭୀର ହେଉଥାଏ, ତାର କୋମଳ ଉରଲା ଥରିଲା ଛଟପଟ ମନ ସେତିକି ଆକୁଳ ବିକଳ ହୋଇ କାରୁଣ୍ୟ କରୁଥାଏ ! ତାର ରକ୍ତରେ ନିଆଁର ସୁଅ ଛୁଟୁଥାଏ, ସ୍ନାୟୁରେ ବିଜୁଳିର କମ୍ପନ । ଆଉ ସେ ସମ୍ଭାଳି ପାରିଲା ନାହିଁ । ତାର ଧୈର୍ଯ୍ୟ ଭାଙ୍ଗିଲା । ବଉଳର ହାତ ଧରି ଅତି କରୁଣ ଥରିଲା ସ୍ୱରରେ ସେ କହିଲା, ଥାଉଲେ ବଉଳ, ଆଉ ସେସବୁ ଗପ ମୋତେ କହନା । ତୋ ସୁଖ ତୋ ଆନନ୍ଦ ଅନୁଭୂତିର କାଣିଚାଏ ଏ ପୋଡ଼ା ଜୀବନରେ ପାଇବାର ଆଶା ଅଧିକାର ମୋର ନାହିଁ । ସପନରେ ଚିନ୍ତାକଲେ ମଧ୍ୟ ଇହକାଳ ଓ ପରକାଳ ପାଇଁ ମୁଁ ପାତକିନୀ ହେବି । ହୀରାମଣିର ଆଖି ସଜଳ ହେଲା ।

ଇନ୍ଦିରା ବନ୍ଧୁର ଏପରି ଭାବ ଦେଖି ବିସ୍ମିତ ହେଲା । ଲଜ୍ଜିତ ହୋଇ କହିଲା, କାନ୍ଦୁଛୁ ବଉଳ ? ମୋ ରାଣ ତୁନି ହ, ମୋ ମୁଣ୍ଡ ଖାଇବୁ !

ସହାନୁଭୂତି ପାଇଲେ ମଣିଷ ତା ପ୍ରାଣର ସବୁ ଦୁଃଖ ଲୋତକ ଛଳରେ ଗଡ଼ାଇ ଦିଏ । ହୀରାମଣି ଇନ୍ଦିରାର ହାତଧରି କାନ୍ଦିଲା, ମୁହଁ ଖୋଲି ଆଉ କିଛି କହି ପାରିଲା ନାହିଁ ।

ଇନ୍ଦିରା ଚିନ୍ତା କରି କହିଲା, କାନ୍ଦ ନା ବଉଳ, ଶୁଣ, ମୁଁ ଓ ବୋଉ ଦିନେ ଦି'ଦିନ ଭିତରେ ପୁରୀ ଯିବୁ । ପୁରୀରେ ପ୍ରାୟ ଦୁଇ ମାସ ରହିବୁ । ତୁ ବି ଚାଲ ଆମ ସଙ୍ଗରେ । ମୁଁ ଦେଢେଇଙ୍କି କହିଲେ ସେ ମୋ କଥା ଭାଙ୍ଗିବେ ନାହିଁ । ଯିବୁ ତୁ ବଉଳ ?

ହୀରାମଣି ଲୋତକସିକ୍ତ ନେତ୍ରରେ କହିଲା, ନାଇଁ ଲୋ ବଉଳ, ମୁଁ କେଉଁଠିକି ଯିବି ନାହିଁ । ଏ ସଂସାରରେ ମୋର କେଉଁଥିରେ ଅଧିକାର ନାହିଁ ।

ଧର୍ମରେ ସମସ୍ତଙ୍କର ଅଧିକାର ଅଛି ଲୋ ବଉଳ, ଜଗନ୍ନାଥ ଦର୍ଶନ କଲେ ମଣିଷ ଜନ୍ମ ସାର୍ଥକ ହୁଏ ।

ମୋର ଜନ୍ମ ସାର୍ଥକ ହୋଇ ସାରିଛି । ଆଉ ଅଧିକ ହେବ କଣ ? ଧର୍ମରେ ବି ମୋର ଅଧିକାର ନାହିଁ । ଜଗନ୍ନାଥଙ୍କ ଦର୍ଶନ କରି ମୁଁ କଣ ମାଗିବି ? ମୋର କେଉଁ କଥାର ଅଭାବ ଅଛି ? ହାରି ହସିବାକୁ ଲାଗିଲା । ହସ, ସେ ତାର ଭାଗ୍ୟ ବିରୁଦ୍ଧରେ ଉତ୍କଟ ଅଭିଯୋଗ, କିନ୍ତୁ ଭାଗ୍ୟର ନିୟନ୍ତା ତ ଇଶ୍ୱର ନୁହେଁ !

ଈଶ୍ୱର ସଙ୍ଗିନୀର ଛଳକଥା ବୁଝି ନ ପାରି କହିଲା, ତୁ କ'ଣ ଗଲେ ନାହିଁ ଲୋ, ମୁଁ ନିଶ୍ଚେ ଯିବି । ତୋ ପାଇଁ ଠାକୁରଙ୍କୁ କଅଣ ମାଗିବି ଆଗରୁ କହିଥା ।

ମୋର ତ କିଛି ଅଭାବ ନାହିଁ ବଉଳ, ତୋର ଯଦି ବିଶ୍ୱାସ ଯେ ମଣିଷ ଯାହା ମାଗେ ଠାକୁରେ ତାହା ଦିଅନ୍ତି, ତେବେ ତୋ ମନକୁ ଯାହା ଆସିବ ମାଗିବୁ । ମୋର ହୋଇ ତାଙ୍କୁ ପଚାରିବୁ, ମଣିଷର ଭାଗ୍ୟ ସେ ନିୟନ୍ତ୍ରଣ କରନ୍ତି କି ମଣିଷ ନିଜେ କରେ ? ସେ ଯାହା କହିବେ, ଆସି ମତେ କହିବୁ ।

ତୁ କଣ ପାଗଳ ହେଲୁ ବଉଳ ? ଜଗନ୍ନାଥ କଣ କାହାକୁ କେବେ କଥା କହିଲେଣି ?

କାହାକୁ ସିନା କହନ୍ତି ନାହିଁ, ମୋର ବିଶ୍ୱାସ ତତେ କଥା କହିବେ ।

କଥା କହିଲେ ମାଗିବି ! ଯାଉ ସେ ସବୁ, ଏବେ ସତ କହ, ଦିନୁଦିନ ତୁ କାହିଁକି ଚିନ୍ତାଶୀଳ ହୋଇ ଯାଉଛୁ, ମନରେ ସରାଗ ନାହିଁ ।

ହାରିର ଆଖିରୁ ଲୁହ ଗଡ଼ିଆସିଲା । ବଉଳର ନିର୍ବୋଧ ବାକ୍ୟର ସେ କି ଉତ୍ତର ଦେବ ? ସେ କହିଲା, ବୁଝି ପାରୁନୁ ? ମୁଁ ବିଧବା, ମୁଁ ବ୍ରହ୍ମଚାରିଣୀ, ତପସ୍ୱିନୀ । ଖାଲି ଭଗବାନଙ୍କୁ ଭାବି ଭାବି ଏପରି ଚିନ୍ତାଶୀଳ ହୋଇ ପଡ଼ୁଛି । ମାଳା ଧରି ଯେବେ ମୁଁ ହରେକୃଷ୍ଣ ହରେ ରାମ ଜପ କରୁଥାଏ, ମୋ ତୁଣ୍ଡ ସିନା ଠାକୁରଙ୍କ ନାମ ଧରୁଥାଏ ଲୋ, ମନ ଥାଏ କେଉଁଠି ଜାଣୁ ? କହୁଛି ତେବେ ଶୁଣ୍ । ଆଉ କିଏ ହୋଇଥିଲେ ମୋ ମନ ଗହନର ଗୋପନ ବଚନ କେବେ ଶୁଣି ପାରି ନ ଥାନ୍ତା । ତୁ ମୋ ପ୍ରାଣର ବଉଳ, ଯାହା ମନେକରି ପଛେ ତୋ ପାଖରେ ମନର ଭାଷା ଖୋଲି ନ କହିଲେ ମୋ ମନରେ ଶାନ୍ତି ଆସିବ ନାହିଁ । ତୁ ମଧ ଶୁଣିଲେ ନିର୍ବୋଧ ହେଲୁ ଆଉ କେବେ ପଚାରି ମୋ ମନରେ ଦୁଃଖ ଆଣିବୁ ନାହିଁ ।

ଆଉ ବଉଳ, ଆଉ କିଛି କହ ନା, ତୋ ଗୋଡ଼ତଳେ ପଡ଼ି କ୍ଷମା ମାଗୁଛି । ମତେ ଧବଳେଶ୍ୱରଙ୍କ ଦ୍ରୋହ, ଆଉ କେବେ ଏପରି ପଚାରି ତୋ ମନରେ କଷ୍ଟ ଆଣିବି ନାହିଁ ।

ହାରି କହିଲା—ଶୁଣ, ମୁଁ କିପରି ଭାବରେ ଦିନରାତି କଟାଉଛି । ମୋ ମନ କଥା ଶୁଣିଲେ ବୋଲେ ବୁଝି ପାରିବୁ, ତୋ ସ୍ନେହର ବଉଳ ସିନା ମାଳା ଧରି କୃଷ୍ଣ ନାମ ମୁହଁରେ ଜପୁଥାଏ, ତା ମନ ଧାଇଁଯାଏ ଯମୁନା କୂଳର କେଳିକଦମ୍ବ ମୂଳକୁ । ରାଧାକୃଷ୍ଣଙ୍କର ଯୁଗଳ ମୂରତି ଦେଖି, ଗୋପାଙ୍ଗନାମାନଙ୍କର ପ୍ରେମ କୁଳତା ଦେଖି ହେ

ଆତ୍ମହରା ହୋଇ ପଡ଼େ ! ତୋ ବଉଳକୁ ବିଧବା ବୋଲି କିଏ ତାର ମନରେ ପ୍ରେମୋଦସ୍ପୃହା ହୁଏ ନାହିଁ ? ଗୋପାଙ୍ଗନାମାନଙ୍କର ପ୍ରେମର ପ୍ରତିଦାନ ଦେବାକୁ କୃଷ୍ଣ ଅଛନ୍ତି, ମୋହନ ବଂଶୀ ବଜାଇ ଆସି ସେମାନଙ୍କୁ ଆଲିଙ୍ଗନ କରିବେ, ତାଙ୍କ ଦେହ ଓ ମନର ପ୍ରେମ-ପିପାସା ମେଣ୍ଟାଇବେ । ସେହିପରି ମୋ ବଉଳର ପିପାସା ମେଣ୍ଟାଇବାକୁ ରାଜକିଶୋର ବାଉଆ ହୋଇ ଧାଇଁ ଆସିବେ । ଏ ଜନମଦୁଖୀ ହାରାର ପିପାସା ହରଣ କରିବ କିଏ ? ଗୋଟିଏ ଗ୍ରନ୍ଥ, ସେ ପୁଣି ଅସ୍ପୃଷ୍ଟ, ଅକ୍ଲେଶସ୍ଥ ? ତପାନ୍ତିର ତୃଷା କିଏ ଅଗ୍ନି ପାନରେ ଲିଭେ ବଉଳ ! ହାରା ଦୀର୍ଘ ନିଶ୍ୱାସ ଛାଡିଲା । ଇନ୍ଦିରାର ଚକ୍ଷୁ ଛଳ ଛଳ ହେଲା ।

ହାରା କହିବାକୁ ଲାଗିଲା, ସମାଜରେ ମୋଅରି ପରି ଶହ ଶହ ହାରା ଅଜି ସର୍ବହରା ହୋଇ ମାଳା ଧରିଛନ୍ତି । ଦେହରେ ମୁହଁରେ ତିଳକ ଛାପା ମାରି କୃଷ୍ଣନାମ ଜପୁଛନ୍ତି । ନାହାନ୍ତି, ଜପୁଛନ୍ତି ସେ ସିନା କେବେ କାହିଁ କେଉଁ ବୃକ୍ଷ ମୂଳରେ ଯମୁନା କୂଳରେ ପ୍ରେମ ଖେଳରେ ବଂଶୀ ବାଉଥିଲେ, କିନ୍ତୁ ଏବେ ଆମ ସମାଜରେ ଧୂର୍ତ୍ତ ଲମ୍ପଟ କୃଷ୍ଣଙ୍କର ଅଭାବ ନାହିଁ ! ଘରୁ ପଦାକୁ ବାହାରିଲେ ମିଳି ମାଳ କୃଷ୍ଣ, କିଏ ବଂଶୀ ବାଉଛି, କିଏ ହସି ହସି ଆଡ ଚାହାଣୀରେ ଚାହୁଁଛି, ଅଖି ଠାରୁଛି । କହ ତ ବଉଳ, ଗୋଟାଏ କୃଷ୍ଣର ଦାଉ ସହିବାକୁ ଗୋପପୁରରେ ଷୋଳ ସହସ୍ର ନାରୀ ଠକିଗଲେ, ଆଉ ଆମର ଏ କୃଷ୍ଣପ୍ରବଳ ଦେଶରେ, ଏ କୃଷ୍ଣପ୍ରବଳ ଯୁଗରେ ଦୁର୍ବଳମନା ବାଳବିଧବା ଅବଳା, ଯାହାଙ୍କର କି ଗୋଟିଏ ସ୍ୱତନ୍ତ୍ର ବି ଅଭାବ, କିପରି ଏତେ କୃଷ୍ଣଙ୍କର ବାଙ୍କ ଚାହାଣୀ ସହିବେ ?

ମୁଣ୍ଡରେ ସିନ୍ଦୂର ନାହିଁ, ହାତରେ ଶଙ୍ଖା ନାହିଁ, ଦେହରେ ତିଳକ ଛାପା ମାରିଛନ୍ତି ବୋଲି କି ତାଙ୍କର ମନ ନାହିଁ, ପ୍ରାଣ ନାହିଁ, ଉତ୍ତେଜନା ନାହିଁ ? ମନକୁ ଯେତେ ଦାବିଲେ ସେ ଦବିବ ? ଅଖିକୁ ଯେତେ ତଳକୁ ନେଲେ ସେ ଅଟକିବ ? ଅପେ ଆପେ ଏଣେ ତେଣେ ହେବ । ଅଜି ଶହ ଶହ ହାରା ଅପବାଦର ବୋଝ ମୁଣ୍ଡରେ ବୋହି ଦ୍ୱାରେ ଦ୍ୱାରେ ଭିକ ମାଗି ବୁଲୁଛନ୍ତି । ସେମାନଙ୍କର କୃଷ୍ଣ ଯାହାଙ୍କ ପାଇଁ ତାଙ୍କର ଏ ଦୁରବସ୍ଥା, ସମାଜର ପ୍ରଭୁ ହୋଇ ଆଉ ଆଡ଼ ଅଖିରେ ଚାହୁଁ ନାହାନ୍ତି । କାହିଁକି ଜାଣୁ ? ଲଜ ଭୟରେ, ଅପମାନ ଭୟରେ ।

ଇନ୍ଦିରା କହିଲା, ଜାଣି ଜାଣି ପଙ୍କକୁ ଗଲେ ଗୋଡ଼ରେ କାଦୁଅ ଲାଗେ, ଏହା ତ ନିଜ କଲା କର୍ମର ଫଳ, ଭୁଞ୍ଜିବ କିଏ ?

ହାରା ପୁଣି କହିବାକୁ ଲାଗିଲା, ଜାଣି ଜାଣି ହେଉ କି ଅଜାଣତରେ ହେଉ ପଙ୍କକୁ ଗଲେ ଗୋଡ଼ରେ କାଦୁଅ ଲାଗିବ ମୁଁ ନାହିଁ କରୁ ନାହିଁ; କିନ୍ତୁ କାଦୁଅକୁ ଲୋକ ଯାଏ କାହିଁକି ? ତଣ୍ଡି ଶୁଖିଗଲାରୁ ସେ ପାଣିମନ୍ଦାକର ଆଶାରେ ଯାଏ ।

ଦୋଷ କାହାର ? ଯେଉଁମାନେ ଗୋଡ଼ ଖସାନ୍ତି ଏକା ତାଙ୍କର ଦୋଷ ! ଯେଉଁମାନେ ଗୋଡ଼ ଧରି ପଙ୍କ ଭିତରକୁ ଟାଣି ନିଅନ୍ତି ସେମାନେ ସମ୍ପୂର୍ଣ୍ଣ ନିର୍ଦ୍ଦୋଷ ? ସତ କହୁଛି, ନାରୀ ଜନ୍ମ ପାଇ କେହି ଟାଣ କରି କହି ପାରିବ ନାହିଁ ଯେ କେବେ ତାର ଧୈର୍ଯ୍ୟ ଭାଙ୍ଗି ନାହିଁ, ମନ ଚହଲି ନାହିଁ, ଓଲେଇ ଭାବନା ଅରମାକୁ ଧାଇଁ ନାହିଁ । ଦୈବ କରି ଯିଏ ଧରା ନ ପଡ଼ନ୍ତି, ସେ ସତୀ ଲକ୍ଷ୍ମୀ । ଧରା ପଡ଼ିଲେ ସେ ଅସତୀ, ଅଲକ୍ଷଣୀ ଅଶୁଭ । ସବୁ ଦଣ୍ଡ ତାରି ଉପରେ ଲଦାହେବ । ସେ ହେବ ଘରୁ ବାହାର, ସମାଜରୁ ବାହାର । ଆଶ୍ରୟ ହେବ ତାର ଗଛତଳ ! ତେଣିକି ଆଉ ତା'ର ଲାଜ କଣ, ମାନ ଅପମାନ କଣ ? ବୁନ୍ଦାଏ ଦହି ସହସ୍ର ହାଣ୍ଡି ଦୁଧ ଫଟାଇଲା ପରି ସେ ସ୍ୱାଧୀନ ହୋଇ, ନିର୍ଲଜ ଉଶୃଙ୍ଖଳ ହୋଇ ସମାଜର ଭାଗ୍ୟ କର୍ତ୍ତାମାନଙ୍କର ଭଲ ପଣକୁ ବିଷ ଜରଜର କରିବ । ହସି ହସି ନିର୍ଦ୍ଦୟ ସମାଜ ଉପରେ ଦାଉ ସାଧିବ । ନିର୍ମମ ସମାଜ ଅବଳା ନାରୀ ଉପରେ ଦାଉ ସାଧି ଜାଣେ । ଯେତେ ବ୍ୟଭିଚାରୀ ହେଲେ ପୁରୁଷ ଯେ ସୁନାପୁଅ, ପବିତ୍ର । ଟିକିଏ ଭୁଲ ପାଇଁ ନାରୀ ହୁଏ ପତିତା, ବାଟର ଭିଖାରୁଣୀ ।

ହାରାର ବିଚଳିତ ଭାବ ଦେଖି ଓ ଉତ୍ତେଜିତ ବାରଗୁଡ଼ିଲିଆ ଅମିଠି କଥା ଶୁଣି ଇନ୍ଦିରା ବିସ୍ମିତ ହେଲା । ବୁଝିଲା, ଅତି ଦୁଃଖରେ ସେ ବିବ୍ରତ ହୋଇଛି । ଧୀରେ ଧୀରେ କହିଲା, ଯାହା ଭାଗ୍ୟରେ ବନ୍ଧି ଯାହା ଲିହିଛି, ତାକୁ ଅନ୍ୟଥା କରି ପାରିବ କିଏ ବଉଳ ?

ହଁ, ଭାଗ୍ୟ ! ହାରା ହସିଲା । ଉପହାସ କଲାପରି କହିଲା, ସ୍ତ୍ରୀ ଜାତିର ଭାଗ୍ୟର ଡୋର ଧରି ଠିଆ ହୋଇଛି ଆମ ନିଷ୍ଠୁର ସମାଜ । କିଏ ଜାଣେ କାଲି ତୋ ବଉଳର କି ଅବସ୍ଥା ହେବ ? ଘରୁ ବାହାରି ହାତରେ ଛେଲୁଆ ଧରି ଭାତ ମୁଠିଏ ପାଇଁ, ତୋ ଦୁଆରେ ସେ ମୁଠିଏ ଅନ୍ନ ପାଇଁ ଠିଆ ନ ହେବ, ଏକଥା କିଏ କହି ପାରିବ ? ତୁଇ ପୁଣି କାଠଫାଳିଆ ଧରି ଘୃଣାରେ ତାକୁ ମାରିବାକୁ ଧାଇଁବୁ । କାହିଁକି, କଅଣ ହେଲା, ତୋ ବଉଳର ଦୁର୍ଭାଗ୍ୟ ପାଇଁ କିଏ ଦାୟୀ, ଏହା ବୁଝିବାକୁ ବି ତୋର ସାହସ କି ପ୍ରବୃତ୍ତି ହେବ ନାହିଁ !

ଇନ୍ଦିରା ସନ୍ଦେହରେ ହାରାର ମୁହଁକୁ ଚାହିଁଲା । ଘୃଣାରେ ତାର ନାକ ଫଣ ଫଣ ହୋଇ ଆସିଲା ।

ତାର ମନକଥା ଅନୁମାନ କରି ହାରା କହିଲା, ଏତେ ଦୂରକୁ ମୋତେ ଯିବାକୁ ପଡ଼ିବ ନାହିଁ ବଉଳ । ସଂସାର ଓ ତମମାନଙ୍କୁ ନେଇ ଗଢ଼ା ସମାଜର ଆଖିକୁ ପ୍ରାଣର ବେଦନା ଓ ମନର ଦୁଃଖ ଦିଶେ ନାହିଁ, ଖାଲି ଦିଶେ କାମ । ଜୀବନ ଉପରେ କାହାର ମମତା ନାହିଁ । ତଥାପି ଆଗରୁ ସାବଧାନ ହୋଇ ବାଟ କାଟିଲେ ଭଲ । ସେଥିପାଇଁ ବରଂ ତମେମାନେ ଖୁସି ହେବ । ବାରଆଡ଼ ଠନଅର ଗଛରେ ଏତେ ପାକଲା-ଫଳ ଲଦି ହୋଇଚି, କୋଚଲା ବଣ ବି ଦୂରରେ ନାହିଁ । ବୃନ୍ଦ ସାଗରର

ଗଭୀର ଜଳ ବାଟ ଗୁଣିଖୋଜ—ହାରା ଉଚ୍ଚ ସ୍ୱରରେ ହସି ଉଠିଲା । ହସି ହସି ଇନ୍ଦିରା ଉପରେ ଲୋଟିଗଲା ।

ଇନ୍ଦିରାର ଆଖିରେ କେବଳ ବିସ୍ମୟ, ମନରେ ପ୍ରଶ୍ନ, ଏଇ କଅଣ ସତେ ତାର ବଉଳ ? ମୁହୂର୍ତ୍ତକ ପାଇଁ ସେ ନିଜକୁ ଭୁଲିଲା ! ତାର ସୁଖ ସୌଭାଗ୍ୟର ଜୀବନକୁ ବିସ୍ମରି ଗଲା । ବିଧବା ହେଲେ ବି ରୂପଯୌବନର ପୂର୍ଣ୍ଣ ସମ୍ଭାର ଘେନି ଯେଉଁ ବିଜୁଳି ଲତାଟି, ତାର ବାଲ୍ୟ ସଙ୍ଗିନୀ, ଅତି ଆପଣାର ବଉଳ, ଅଧା ପାଗଳୀ ପରି ତାର କୋଳରେ ଲୋଟି ପଡ଼ୁଛି, ଆଖିରେ ଲୁହ, ଥରିଲା ଓଠରେ ଗୋଲାପୀ ହସ, ତାକୁ ସେ ଗୋଟାଇ ନେଲା । ଛାତିରେ ଧରି କୋହ ଦୋହଲା ନିଶ୍ୱାସ ଛାଡ଼ି ହାତ ପାପୁଲିରେ ନୁଖୁରା ଆଖିର ଲୋତକ ପୋଛି, ଝଲରା ବାଳକୁ ଆଙ୍ଗୁଠିରେ ସାଉଁଳି ଥରିଲା ସ୍ୱରରେ ଅଟକେଇ ଅଟକେଇ କହିଲା, ବନ୍ଧୁଲ ଲୋ, ମୋର ମରଣ ଆଗ ହେଉ, ସେଇଠୁ ତୁ ଯାହା ମନ ତାହା କରିବୁ ।

ଇନ୍ଦିରା ମେଲାଣି ନେଲା । ଘଣ୍ଟାକ ପରେ ନେତ୍ରମଣି ହାତରେ ଖଣ୍ଡେ କାଗଜ ଧରି ଉପସ୍ଥିତ ହେଲେ । ହାରା କାନ୍ଥକୁ ଆଉଜି ଉପରକୁ ଅନାଇ ଇନ୍ଦିରା ବିଷୟରେ ଚିନ୍ତା କରୁଥିଲା । ଇନ୍ଦିରା ଓ ସେ ! ଆଜି କେତେ ପ୍ରଭେଦ ! ଗାଲ ଚିପିଲେ କାଲି ଯାହାର ତୁଣ୍ଡରୁ ବଚନ ବାହାରୁ ନ ଥିଲା, ଆଜି ତା ମୁହଁରୁ ଅନର୍ଗଳ କଥା ବାହାରୁଛି । ଲଜ ସରମ ଟିକିଏ ନାହିଁ । ଅବସ୍ଥା ମଣିଷକୁ ଏମିତି ବଦଳାଇ ଦିଏ ! ହଉ, ସେ ସୁଖରେ ରହୁ, ଆନନ୍ଦରେ ସଂସାର କରୁ ।

ବୋଉଙ୍କୁ ଦେଖି ହାରା ଚମକି ଉଠିଲା । ସ୍ନେହମୟୀ ଜନନୀଙ୍କର ମୁଖରେ ଆଜି କାହିଁକି ସହାନୁଭୂତିର କରୁଣ ଆଭା ନାହିଁ, ରୁକ୍ଷ ଭାବ । ଆଖିରେ ସତେ କି ଅନଳ ଜଳୁଛି । ନାକପୁଡ଼ା ଥରି ଉଠୁଛି । ସେ ଉପସ୍ଥିତ ହେବା ସଙ୍ଗେ ସଙ୍ଗେ ଗର୍ଜନ କରି ପଚାରିଲେ, ହାରା, ତୋ ପାଇଁ ମୁଁ ଆଉ କେତେ ଦହଗଞ୍ଜ ହେବି କହିଲୁ ? କେତେ ନିନ୍ଦା ଅପମାନ ସହିବି ?

ହାରା କିଛି ବୁଝି ନ ପାରି ପ୍ରଶ୍ନିଳ ଲୋଚନରେ ନେତ୍ରମଣିଙ୍କୁ ଚାହିଁଲା । ନେତ୍ରମଣି କହିଲେ, ସେ ଦିନ ତୋତେ ଏଣ୍ଡୁଟଣ୍ଡ ଗୀତ ଲେଖିବାକୁ ମନା କରିଥିଲି ! ମୋ କଥା ନ ମାନି ତୁ ପୁଣି ଗୀତ ଲେଖିଲୁ, ଛାପିବାକୁ ଦେଲୁ ?

ନିର୍ଦ୍ଦୋଷର ଦୋଷ ଦେଲେ ଅଭିମାନରେ ଆଖିରୁ ଲୁହ ଝରେ । ହାରା ଆଖିରୁ ଲୁହ ଗଡ଼ାଇ କହିଲା, ନାଇଁ ବୋଉ, ମୁଁ ଆଉ ସେହି ଦିନରୁ କିଛି ଲେଖେ ନାହିଁ । ଘାଟରେ କାଗଜ ଥିଲେ କାଳେ କେବେ ଲେଖିବାକୁ ମନ ହେବ ବୋଲି ସେ ସବୁ ଛିଣ୍ଡାଇ ପକାଇଛି । କଲମକୁ ତିନି ଖଣ୍ଡ କରି ଭାଙ୍ଗି ଫିଙ୍ଗି ଦେଇଛି ।

ମୋ ରାଣ ପକାଉଛିଲୁ ।

ତୋ ରାଣ ଲୋ ?

ତେବେ, ଏ ଗୀତ କିଏ ଲେଖିଛି ଦେଖିଲୁ '। ନେତ୍ରମଣି ଖଣ୍ଡେ 'ମୁକୁର' ପତ୍ରିକା ହାବୁ ହାତକୁ ବଢ଼ାଇ ଦେଲେ ।

ହାବୁ ଗୀତଟିକୁ ବାରମ୍ବାର ପଢ଼ିଲା । ଲଜ୍ଜିତ ହୋଇ କହିଲା, ମୁଁ ଅନେକ ଦିନ ଆଗେ ଏ କବିତାଟି ଲେଖିଥିଲି ।

ଏତେ ବଡ଼ ସାହସ, ମୋତେ ତୁ ଭୁଲେଇବାକୁ ଚେଷ୍ଟା କରୁଛୁ ? ହଇଲେ, ତୁ ପରା ମୋର ପେଟରୁ ଜନମ, ମୋ ଆଗରେ ପୁଣି ଚଲାକି କାଢ଼ୁଛୁ ? ମୁଁ କଅଣ ପିଲା ହୋଇଛି ?

ବୋଉ, ସତ କହୁଛି, ମୁଁ ଏଥର ଭିତର କଥା କିଛି ବୁଝି ପାରୁ ନାହିଁ । ଆଗେ ଯାହା ମନ ହେଉଥିଲା ଖଣ୍ଡେ ଖାତାରେ ଲେଖି ଦେଉଥିଲି । ତୁ ମନାକଲାରୁ କାଳେ କିଏ ଦେଖିବ ବୋଲି ଦିନେ ସେ ଖାତା ଖଣ୍ଡ ଦଫାଲ କରି ଛୁଣ୍ଡାଇ ଝରକା ସେପାଖକୁ ଫୋପାଡ଼ି ଦେଇଥିଲି । ସେହି ଖାତାରୁ ଗୋଟିଏ ଗୋଟିଏ ଗୀତ ଉଦ୍ଧାର କିଏ ମୋ ନାମରେ ଛପାଇବାକୁ ଦେଉଛି ମୁଁ ଜାଣେ ନାହିଁ ।

ନେତ୍ରମଣିଙ୍କର କ୍ରୋଧର ମାତ୍ରା ବେଳୁବେଳ ବଢ଼ିବାକୁ ଲାଗିଲା । ଭାବିଲେ, ଦେଖ ତ, ମୋର ପେଟରୁ ଜନ୍ମ ହୋଇ ମୋତେ ପୁଣି ଅଲକ୍ଷଣୀ ଝିଅଟା ଠକିବାକୁ ବସିଛି । ଏପରି ଝିଅ ଥିଲେ କେତେ, ମଲେ କେତେ ? ଗମ୍ଭୀର ହୋଇ ସେ ପଚାରିଲେ, ତୁ କାହା ପାଖକୁ ଚିଠି ଲେଖୁ କହିଲୁ ?

ତୁ ଯେଉଁଦିନ କହୁ ସେହି ଦିନ ନନାଙ୍କ ପାଖକୁ ଲେଖେ ।

ଆଉ କାହା ପାଖକୁ ଲେଖୁ ନାହିଁ ?

ଆଉ କାହା ପାଖକୁ ଲେଖିବି ? ଏ ସଂସାରରେ ଆଉ ମୋର କିଏ ଅଛି ବୋଉ ?

ହାବୁର କଣ୍ଠ ରୁଦ୍ଧ ହୋଇ ଆସିଲା । ମନର କୋହ ସହି ନ ପାରି ସେ ଆଖି ବୁଜିଲା । ଅବାଧ ଲୋତକ ଗ୍ଳୁବ ଗ୍ଳୁବ ଝରି ପଡ଼ିଲା ଆଖି କୋଣରୁ । ସେ ଆଖି ଖୋଲିଲା ।

ନେତ୍ରମଣି ତା ମୁହଁକୁ ନ ଚାହିଁ ପୁଣି ପଚାରିଲେ, ବ୍ରଜବାବୁ କିଏ ?

ହାବୁ ଚମକି ଉଠିଲା । ଉତ୍ତର ଦେଲା, ମୁଁ ଜାଣେ ନାହିଁ ତ ।

ଜାଣୁ ନାହିଁ ? ତାଙ୍କ ପାଖକୁ ତୁ ଚିଠି ଦେଉ କିପରି ? ନଷ୍ଟକୀ, ଚୁଲିପଶୀ, ବାପ ମାଙ୍କ ମୁହଁରେ ଚୂନକାଳି ବୋଳିବାକୁ ତୁ ଜନ୍ମ ହୋଇଛୁ ନା ? କେଉଁ ଜନ୍ମର ପାପରୁ ତ ଆଜି ତୋର ଏ ଦଶା, ପୁଣି ଏ ଜନ୍ମରେ ପର ପୁରୁଷକୁ ଚିଠି ଲେଖି ପାତକ ଅରଜିଲେ ଆରଜନ୍ମ ପାଇଁ ଦୁଃଖ କଷ୍ଟ ସାଇତି ରଖୁଛୁ । ଏତେ ଗେହ୍ଲା ଅଲିଅଳ କରି ବଢ଼ାଇଥିଲି କଅଣ, ଶେଷକୁ ଏଇଆ କରିବାକୁ ? ଦେହରେ ତେଲ ଆଉ ଚାଏଁଟିପ ଛୁଇଁ ନ ଥିଲି, ହାତରେ ପାଣି ଲଗାଇ ଦେଇ ନ ଥିଲି, ପର ପୁରୁଷ

ପାଖକୁ ଗୁପ୍ତରେ ଚିଠି ଲେଖି ଗଧ ଘର ମାନ ମହତ ବୁଡ଼େଇବାକୁ ? ଆରେ, ଯାହା କହନ୍ତି କଅଁଳ ଲୁହା ବଳେଇ କାମୁଡ଼େ ସେଇଆ, ଗୋଇଠା ମାଡ଼ରେ ପିଠି ଭାଙ୍ଗି ଦେବ । ଗୁଞ୍ଚୁଣି ମାଡ଼ରେ ମୁହଁ ଭାଙ୍ଗିଦେବ । ମତେ କଅଣ କରି ମଣିଲୁ କି ?

ମାଆଙ୍କର ବୃଥା କ୍ରୋଧର କୌଣସି କାରଣ ବୁଝି ନ ପାରି ହୀରା ବେଳାଡ଼ ହେଲା । ଭୟଟରେ ଥରିବାକୁ ଲାଗିଲା । ଯେଉଁ ମା ଦିନେ ତାକୁ ବଡ଼ ପାଟି କରି ଡାକି ନ ଥିଲେ, ଆଜି ହଠାତ୍ ତାଙ୍କର ଏପରି କ୍ରୋଧ କାହିଁକି ? ବ୍ରଜ କିଏ ସେ ଜାଣେ ନାହିଁ, କେଉଁ ବ୍ରଜ ପାଖକୁ ସେ ବା ଚିଠି କାହିଁକି ଦିଅନ୍ତା ? ସେ ତାର ନାଆଁ ନା ପାଉଁଣ ? ଏପରି ବୃଥା ଦୋଷାରୋପ, ଏପରି ମିଛ ଅପମାନ ସେ ସହିବ ନାହିଁ । ସବୁ ତା ଫଟା କପାଳର ଦୋଷ । ମା ଆକଟ କରି କହୁଛନ୍ତି, ସେ ଜବାବ ଦେବ ନାହିଁ । ବଳେ ଦିନେ ସେ ନିଜର ଭୁଲ୍ ବୁଝି ପାରିବେ ।

ନେତ୍ରମଣି ନରମ ହୋଇ ନମ୍ରସ୍ୱରରେ କହିଲେ, ନା ଲୋ ମା, ଏପରି ଅଭିଲ ଝିଅକୁ ମୁଁ ଆଉ ପାଖରେ ଚଳାଇ ପାରିବି ନାହିଁ । ଯାଉ ସେ ତା ଶାଶୁ ଘରକୁ, ନିଜର କର୍ମ ଭୁଞ୍ଜିବ । ଟିକିଏ ରହି ପୁଣି କହିଲେ, ଏଇ ନେ, ତୋ ନନା କଅଣ ଚିଠି ଲେଖିଛନ୍ତି ପଢ଼ । ଆରେ ଆରେ ଯାହାକୁ ତୁଳସୀ ଗଛ ମଣିଥିଲି, ଦେଖିଲି ବେଳକୁ ସେ ହେଉଛି ବଛୁଆଗ !

ନେତ୍ରମଣି ଚିଠିଖଣ୍ଡି ହୀରା ପାଖକୁ ପକାଇ ଦେଲେ । ହୀରା ପୂର୍ବପରି ତଳକୁ ମୁହିଁ କାନ୍ଦିବାକୁ ଲାଗିଲା । ଲଜ୍ଜା ଓ ଭୟରେ ଚିଠିଖଣ୍ଡି ତଳୁ ଉଠାଇ ପଢ଼ିବାକୁ ତାର ସାହସ ହେଲାନାହିଁ ।

ନେତ୍ରମଣି ଖଟଉଇ ହେଲାପରି କହିଲେ, ମଲାମରି, ସକ, ସୁନା ଲୁହ ବୋହି ପଡ଼ୁଛି ପରା, କି ଲୋ ପଢ଼ୁନୁ ?

ହୀରା ଥରିଲା ହାତରେ ଚିଠି ଖଣ୍ଡି ତଳୁ ଗୋଟାଇଲା । ମନେ ମନେ ପଢ଼ିଲା—

ମୁଁ ମୁକୁର ପ୍ରେସକୁ ଯାଇ ପ୍ରେସ ରକ୍ଷକ ଗାୟକରନ୍ତୁଙ୍କୁ ପଚାରିବାରୁ ସେ କହିଲେ, ହୀରାମଣି ନିଜେ ତାଙ୍କର ଲେଖା ଏଠାକୁ ପଠାନ୍ତି ନାହିଁ । କଲେଜର ଚତୁର୍ଥ ବାର୍ଷିକ ଶ୍ରେଣୀର ଛାତ୍ର ବ୍ରଜକିଶୋର ଏହି ଲେଖାସବୁ ଆଣି ମୋତେ ଦେଇ ଯାଆନ୍ତି । ବ୍ରଜବାବୁ କହନ୍ତି, ଲେଖାରେ ହୀରାମଣି ତାଙ୍କର ଭଉଣୀ ସମ୍ପର୍କ ହେବେ ।

ଗାୟକରନ୍ତୁଙ୍କଠାରୁ ଆହୁରି ଅନେକ ବିଷୟ ବୁଝିବାକୁ ଇଚ୍ଛା ଥିଲା; କିନ୍ତୁ ସେ ଅଉ କିଛି କହିବେ ନାହିଁ ବୋଲି ବାରଣ କଲେ । ଏପରି ଲେଖା ଛପାଇବାକୁ ତାଙ୍କୁ ମୁଁ ବାରଣ କଲି କିନ୍ତୁ ସେ କହିଲେ, ଯେ କୌଣସି ଲେଖା ମନୋମତ ହେଲେ ଯେବି ବାଧାଜନକ ନ ହୋଇଥାଏ ସେମାନେ ନିଶ୍ଚୟ ପ୍ରକାଶ କରିବେ ।

ମୁଁ ତାଙ୍କ ସଙ୍ଗେ କଳହ ନ କରି ବାହୁଡ଼ିଲି । ବହୁଚିନ୍ତା କରି ମୁଁ ସ୍ଥିର କଲି ଯେ ହାବି କେଉଁ ବ୍ରଜବାବୁଙ୍କ ପାଖକୁ ଚିଠି ପତ୍ର ଦିଆନିଆ କରୁଛି । ଅବିକଳ ହାବିର ହସ୍ତାକ୍ଷରରେ ଗୋଟିଏ ଲେଖା ପ୍ରେସରେ ପଡ଼ିଥିବାର ଦେଖି ମୁଁ ପଗ୍ଚରିବାରୁ, ଗାସ୍ପକରନ୍ତି କହିଲେ ଯେ ବ୍ରଜବାବୁ ଲେଖାଟି ନିଜେ ତାଙ୍କୁ ଦେଇ ଯାଇଛନ୍ତି ।

ଆଉ ସନ୍ଦେହର କାରଣ ନାହିଁ । ଉପରି ଏ ବିଷୟ ଏଠାକାର ଲୋକେ ଅବଗତ ହେଲେ କେଜାଣି, ଘରୁ ବାହାରି ଯାଏ ଯେ ମୋତେ ଦେଖୁଛି ସେ ପଦେ ଉପହାସ କରି କହୁଛି, କହେ, ତମ ଝିଅ କଅଣ କବି ପାଲଟି ଗଲେଣି ! ମୋ ମୁହଁ ଜଳିଗଲାପରି ଲାଗୁଛି । କାହାକୁ ଏ ଲାଜର କଥା କହିବି ? ସେ ଆମ କର୍ମର ଦୋଷ । ଦାଉ ସାଧିବାକୁ ଭଗବାନ୍ ତାକୁ ମୋର ଝିଅ କରି ଜନ୍ମ ଦେଇଛନ୍ତି । ରଥଘରର ପବିତ୍ର ନାମରେ ଏ ଯେ ଦିନେ କାଳି ବୋଳିବ, ମୋ ଆଖିକୁ ଏହା ଜଳ ଜଳ ଦିଶୁଛି ।

ତୁମ୍ଭଙ୍କୁ ଏ ପତ୍ର ଲେଖି ଆଗରୁ ସାବଧାନ କରି ଦେଉଛି, ହାବିକୁ ଅତି ଶୀଘ୍ର ତା ଶାଶୁ ଘରକୁ ବିଦା କରିଦିଅ । ତେଣିକି ସେ ଜାଣେ, ତା ଶାଶୁ ଶ୍ୱଶୁର ଜାଣନ୍ତୁ । ଆମର ସେଥିରେ ଥାଏ କଅଣ ? ଜନ୍ମ ଦେଇଛୁ ବୋଲି ତ କର୍ମ ଦେଇ ନାହିଁ ।

ଏ ପତ୍ରକୁ ବିଶେଷ ଜରୁରୀ ମନେ କରିବ । ଯେତେ ଶୀଘ୍ର ପାରି ହାବିକୁ ତା ଶାଶୁ ଘରକୁ ବିଦା କରିବ । ମୁଁ ଆଜି ତା ଶ୍ୱଶୁରଙ୍କ ପାଖକୁ ପତ୍ର ଲେଖିଦେଲି । ତାଙ୍କର ବୋହୂ ସେ ନେଇ ଯାଆନ୍ତୁ । ଆମର ଗ୍ରୀଷ୍ମାବକାଶ ଆରମ୍ଭ ହେଲାଣି । ହାବି ଘରେ ଥିବାଯାଏ ମୁଁ ଘରକୁ ଯିବି ନାହିଁ ଏହା ନିଶ୍ଚୟ କରି ଜାଣିଥାଅ । ତାର ମୁହଁ ଦେଖିଲେ ମୋର ହାଡ଼ରେ ନିଆଁ ଲାଗିଲା ପରି ହେବ—

ପଢ଼ୁ ପଢ଼ୁ ହାବିର ଦେହ ଥରି ଉଠିଲା । ଆଖିରୁ ଧାର ଧାର ଲୋତକ ଝରି ନିଷ୍ଠୁର ପତ୍ରଖଣ୍ଡିକୁ ତିନ୍ତାଇ ଦେଲା । ସେ ଭାବିବାକୁ ଲାଗିଲା, ଭଗବାନ୍, ବିଧବା ଜୀବନ କଣ ଏହିପରି ଯନ୍ତ୍ରଣାରେ କଟିବ ? ତାର କଥା କେହି ବିଶ୍ୱାସ କରିବେ ନାହିଁ, ମିଛରେ ସବୁ ଦୋଷ ତା ମୁଣ୍ଡ ଉପରେ ଲଦି ଦେବେ ! ଅନ୍ୟମାନଙ୍କ କଥା ନିଆରା, ଜନ୍ମ ଦେଇ ବାପ ମା ସୁଦ୍ଧା ବିଧବା କପାଳକୁ ନିଷ୍ଠୁର ହେଲେ !

ନେତ୍ରମଣି କହିଲେ, ଚିଠି ପଢ଼ିଲୁ ତ ? ତୋ ନନା ଉପରି ଜିଦ୍‌ଖୋରିଆ ଲୋକ ତୁ ଜାଣୁ । ତାଙ୍କ କଥା ନ ମାନିଲେ ଘରେ ନିଆଁ ଲଗାଇ ଦେବେ । ମୋର ଏଥିରେ କି ଚାରା ଅଛି କହ ? ନିଜ କଲା କର୍ମର ଫଳ କିଏ ଭୁଞ୍ଜିବ ? କିଛିଦିନ ପାଇଁ ତୁ ଶାଶୁଘରକୁ ଚାଲି ଯା । ବାପାଙ୍କ ମନ ବଦଳିଲେ ପୁଣି ତତେ ପାଖକୁ ନେଇ ଆସିବି ।

ହାବି ଉତ୍ତେଜିତ ହୋଇ କହିଲା, ମୁଁ କୋଉଠିକି ଯିବି ନାହିଁ ।

ନେତ୍ରମଣି ବୁଝାଇ କହିଲେ, ଆଲୋ ମା, ମୁଁ ସବୁଦିନେ ବଞ୍ଚି ନ ଥିବ ଯେ ତୁ ମୋ ପାଖରେ ଅଲଅଲ ହୋଇ ରହିବୁ । ତୋର କର୍ମଭୂମି ଯେ, ସେଠିକି ଯା । ଶାଶୁ ଶ୍ୱଶୁର ଏମାନଙ୍କ ମନ ନେଇ ଚାଲ । ତେବେ କେଜାଣି ତୋ ଜୀବନରେ ଟିକିଏ ସୁଖ ଶାନ୍ତି ଆସିବ ।

ଯେତେ ବୁଝାଇ କହିଲେ ହୀରା ଶୁଣିଲା ନାହିଁ । ତାର ଏକା ଜିଦ୍ ସେ କେଉଁଠିକି ଯିବ ନାହିଁ । କାହିଁକି ଯିବ, ତାର ସେଠି କିଏ ଅଛି ? ସମସ୍ତେ ପର । ଆପଣାର ମଣିଷ ବିନା ଦୋଷରେ ଚଢ଼ିଚଢ଼ି ହେଉଛନ୍ତି, ପରଲୋକ ତ ଜୀଅନ୍ତା ଗଳା ଦେବେ । ସେ ପଛେ ଜହର ଖାଇ ମରିବ, ତେ ଘରକୁ କେବେ ଯିବ ନାହିଁ ।

ନେତ୍ରମଣି ଯେତେ ବୁଝାଇ କହିଲେ ହୀରା ରାଜି ହେଲା ନାହିଁ । ସେ ବିରକ୍ତ ହୋଇ କହିଲେ, ଯିବାକୁ ହିଁ ହେବ । ଜନମ ଦେଇଛୁ ବୋଲି କରମ ଦେଇ ନାହିଁ । ଯାହା ହାଣ୍ଡିରେ ଚାଉଳ ପକେଇବାକୁ ଷଠୀ ଦିନେ ଜନମ ଦେଇଛୁ, ସେ ଆଉ କି ନ ଆଉ, ତାହାର ଘର ତୋର କରମ ଭୂଇଁ । ବାପଘର ପରଘର । ଅବୁଝା ହୁଅ ନା ମା ।

ହୀରାମଣି କହିଲା, କାହା, ହାଣ୍ଡିରେ ଚାଉଳ ପକାଇବାକୁ ମତେ ଜନମ ଦେଇଥିଲୁ ତୁଇ ଏକା ଜାଣୁ, ମୁଁ ଜାଣେ ନାହିଁ । ମୋର ମରଣ ଲୋଡ଼ା ।

ନେତ୍ରମଣିଙ୍କ ମୁଣ୍ଡକୁ ରାଗ ଚଢ଼ିଲା । ଦିନପୁର ତାଙ୍କୁ ଅନ୍ଧାର ଦିଶିଲା । ଏ କି ବେହିଆ କାଳ ହେଲା, ଝିଅଟା ମା ଆଗରେ ଏମିତି କଥା କହିବ ? ଏତେ ବହପ ? ରାଗରେ ଅନ୍ଧ ହୋଇ ହୀରାମଣିର ହାତ ଧରି ଟାଣି ଆଣିଲେ । ଗମ ଗମ ହୋଇ କହିଲେ, ପଢ଼ିଲୁ ତ ବାପେ କଅଣ ଲେଖିଛନ୍ତି, ତୁ ଶାଶୁ ଘରକୁ ନଗଲେ ସେ ତୋର ମୁହଁ ଦେଖିବେ ନାହିଁ । ଜାଣୁ ତ କେମିତିକା ଲୋକ ସେ, ଅନ୍ତତଃ କିଛିଦିନ ପାଇଁ ଶାଶୁଘରକୁ ତତେ ଯିବାକୁ ପଡ଼ିବ ।

ଏତିକି କହି ହୀରାର ହାତ ଛାଡ଼ି ଆର ଘରକୁ ଚାଲିଗଲେ । ମା ହୋଇ ବୁଝିଲେ ନାହିଁ ଯେ ଟିକିଏ ଉତ୍ତେଜିତ ହୋଇ କନ୍ୟାର ଛାତିରେ କି ଦାରୁଣ ଆଘାତ ସେ ଦେଇଗଲେ ।

କାନ୍ଦି କାନ୍ଦି ହୀରା ଭୂଇଁ ତିନ୍ତାଇଲା । ତାର ମନର ଦୁଃଖ ବଖାଣିବାକୁ ଆପଣାର ହୋଇ ଦୁନିଆରେ ଅନ୍ୟ କେହି ନାହିଁ । ଭାବିଲା ବ୍ରଜବାବୁ ଲୋକଟି କିଏ ? ସେ କିପରି ତାର ଲେଖାଗୁଡ଼ିକ ହସ୍ତଗତ କଲେ ? କାହିଁକି ସେ ଲେଖାଗୁଡ଼ିକ ଛପାଉଛନ୍ତି ? ହୀରା ଭାବି ସ୍ଥିର କରି ପାରିଲା ନାହିଁ । ଏ ସମାଜରେ ବିଧବାର ଦୁଃଖ, ବିଧବାର ଗୁହାରି ଶୁଣିବାକୁ କେହି ନାହାନ୍ତି । ବିଧବାର ଅନୁଭୂତିକୁ ସେମାନେ ଟାପରା କରି ଉଡ଼ାଇ ଦିଅନ୍ତି । ଅତଏବ ଏ ସମାଜରେ ବିଧବାର ବଞ୍ଚି ରହିବା ଉଚିତ ନୁହେଁ ।

ଶାଶୁଘର କଣ ସେ ଜାଣେ ନାହିଁ । ଝିଅ ଶାଶୁଘରକୁ ଯାଏ ସଂସାର କରିବାକୁ । ହାରି ଯିବ କାହିଁକି ? କାହାକୁ ନେଇ ସେ ସଂସାର କରିବ ? ତାକୁ ଯାହାଙ୍କ ନିକଟରେ ପିତାମାତା ପିଲାଦିନେ ବାନ୍ଧିଦେଇ ଥିଲେ, ସେ ନାହାନ୍ତି । ହାରି-ମଣିର ସୁଖ ଦୁଃଖରେ କିଏ ଭାଗୀ ହେବ ? ତାର ଲୋତକ ଦେଖି କାହାର ପ୍ରାଣରେ ସହାନୁଭୂତି ଜାଗରିତ ହେବ ? ଶାଶୁ, ନଣନ୍ଦ ସେମାନେ ତ ଖାଲି ଛିଦ୍ର ଖୋଜି ବୁଲୁଥିବେ । ସେମାନଙ୍କର ଗଞ୍ଜଣା ସହି ହାରି ତାର ଝାନମାନିଆ ଜୀବନ କଟାଇବ କିପରି ? ଯିଏ ଯାହା କରିବ ସବୁ ଦୋଷ ହେବ ତାର, କାରଣ ସେ ବିଧବା । ନା, ସେ ଶାଶୁଘରକୁ ଯିବ ନାହିଁ, ମରିବ ପଛେ ଯିବ ନାହିଁ ।

ମରଣହିଁ ନିଶ୍ଚିତ । ପିତା ତାର ମୁହଁ ଦେଖିବେ ନାହିଁ । ସେ ବିଧବା, ସେଥିପାଇଁ କଣ ତାର ପିତା ଦୋଷୀ, ପିତା ଦାୟୀ ? ସେ କାହିଁକି ଦାୟୀ ହେବେ ? ସେ ତାଙ୍କର କର୍ତ୍ତବ୍ୟ ସାଧନ କରିଛନ୍ତି । ଅତି ଶୈଶବରେ ପିଲାଦିନୁ କନ୍ୟାଦାନ କରି ଧର୍ମ ଅର୍ଜିଛନ୍ତି । ବ୍ରାହ୍ମଣ କୁଳର ସମ୍ମାନ ରଖିଛନ୍ତି ।

ସାତ ବର୍ଷର ଲଙ୍ଗୁଳୀ ଝିଅ, ଭୁବନେଶ୍ୱର ଦାଣ୍ଡରେ ବାଲିଘର କରି ଆଉ ପିଲାଙ୍କ ସଙ୍ଗେ ମନ ଖୁସିରେ ଖେଳୁଥିଲା । ନନା ଅତି ଶୈଶବରେ ତାକୁ କାଖକରି ଘରକୁ ନେଇ ଆସିଲେ । ସ୍ନେହରେ ଧୂଳି ଝାଡ଼ି ଦେଉଥାନ୍ତି । ମୁହଁରେ ଚୋକ ଦେଉଥାନ୍ତି । ତାଙ୍କର ଚକ୍ଷୁ ଛଳ ଛଳ ହୋଇ ଆସୁଥାଏ । ବାଜା ବାଜିଲା, ବାଣ ଫୁଟିଲା, ଲୋକବାକ ଗହଳଚହଳ ହେଲା । ହାରିକୁ କୋଳରେ ଧରି ନନା ବେଦି ଉପରେ ବସିଲେ । ଦଶ ବରଷର ପିଲାଟିଏ ବି ତା ପାଖରେ ବସିଥାଏ । ହାରି ମନ ଆନନ୍ଦରେ ବାଲୁ ବାଲୁ କରି ସେଇ ପିଲାଟିକୁ ଗୃହିଁ ରହୁଥାଏ ।

ବାହାଘର ସରିଲା । ଲୋକେ ଧନ୍ୟ ଧନ୍ୟ ପ୍ରଶଂସା କଲେ । ବରକନ୍ୟା ଭୁବନେଶ୍ୱର ଦାଣ୍ଡରେ ଦଉଡ଼ା ଦଉଡ଼ି ହୋଇ ଧୂଳି ଖେଳିଲେ । ଏପରି ବାହାଘର ହାରି ଇତିପୂର୍ବ କେତେଥର କରିଛନ୍ତି । ଏଥିରେ ନୂଆ କିଛି ନାହିଁ ।

ସ୍ୱପ୍ନପରି ସବୁ ଘଟଣା ହାରିର ମନରୁ ପାଶୋରି ଗଲା ।

ଦିନେ ଦେଖିଲା, ମା ତଳେ ମୁଣ୍ଡ କୋଡ଼ି କାନ୍ଦୁଛନ୍ତି । ନଅ ବର୍ଷର ପିଲା ହୋଇ ମଧ୍ୟ ହାରି ମାଆଙ୍କର ଆଖିରୁ ଲୁହ ପୋଛି ଦେଲା । ମା କାନ୍ଦି କାନ୍ଦି ତା ମୁଣ୍ଡରୁ ସିନ୍ଦୂର ଲିଭାଇ ଦେଲେ । ଆଉ ମାଇପେ ଦେହରୁ ଗହଣା ଉତାରି ଦେଲେ । ସେ ଶୁଣିଲା, ସେ ବିଧବା । ଦୁଇ ବର୍ଷ ପୂର୍ବେ ଯେଉଁ ଶିଶୁଟି ପାଖରେ ବେଦି ଉପରେ ସେ ବସିଥିଲା, ସେ ଶିଶୁଟି କୁଆଡ଼େ ମରି ଯାଇଛି । ସେଥିରେ ତାର କି ଥାଏ ?

ତାର କି ଥାଏ, ଏହା ତାକୁ କେହି ଶିଖାଇ ଦେଲା ନାହିଁ । ସମସ୍ତର ଭାଷା ଥରି ଥରି କଣ ସବୁ କହିଲା ତା କାନରେ । ଦିନେ ପୁଣି ସେ ବୁଝିଲା ସେ ବିଧବା,

ଏଥିପାଇଁ ତାର ବାପା ମା ଦୋଷୀ ନୁହନ୍ତି । ଦୋଷୀ ସେ ନିଜେ, ଦୋଷୀ ତାର କପାଳ, ଦୋଷୀ ତାର ଗତ ଜୀବନର ପାପଫଳ, ଯାହା ସେ ନିଜେ ବୁଝି ପାରୁନାହିଁ । ସେଥିପାଇଁ ସବୁ ଦୁଃଖର ଭାଗୀ ସେ ହେବ । ସବୁ ଅପମାନ ସବୁ ଲାଞ୍ଛନା ତାକୁ ସହିବାକୁ ପଡ଼ିବ । ନନା, ଭଦେ ଯେ ତାଙ୍କୁ କାଖକରି ଦେହରୁ ଧୂଳି ଝାଡ଼ି ଦେଉଥିଲେ, ତା ମୁହଁରେ ଚୋକ ଦେଉଥିଲେ, ସେ ତାର ମୁହଁ ଚାହିଁବେ ନାହିଁ । ମା ମୁଣ୍ଡ ବାଳଟାଣି ତାକୁ ଟାଣକଥା କହି ଝିଙ୍ଗାସିବେ, କାରଣ ସେ ତା ମନର ଦୁଃଖ ପ୍ରକାଶିଲା, ଜୀବନର ଛଟପଟ ତହଲ ବିକଳ ଅନୁଭୂତି ବଖାଣିଲା ।

ହୀରାମଣିର ମନର କୋହ ବଢ଼ିଲା । ସେ ଭାବିଲା, ଆଉ ଏ ଜୀବନରେ ପ୍ରୟୋଜନ ନାହିଁ । ଏ ଜୀବନ ନ ଥିବା ବରଂ ଭଲ । କାହିଁକି ସେ ବଞ୍ଚିରହି ନିଜେ ଛଟପଟ ହେବ, ବିନା ଦୋଷରେ ନିନ୍ଦା ଗଞ୍ଜଣା ସହିବ ? କାହିଁକି ତା ପାଇଁ ପିତାମାତା ଅପମାନ ସହିବେ ?

ହୀରା ତାର ଥର ଥର ଅବଶ ଅଙ୍ଗ ଉଠାଇ ବସିଲା । ଗୃହଆଡ଼ ଅନ୍ଧାର ! ସେ ଟଳି ଟଳି ହୋଇ ଖଞ୍ଜା ଭିତରକୁ ଗଲା । ଶେଷଘରେ ଡିବିରି ମିଞ୍ଜି ମିଞ୍ଜି ହୋଇ ଜଳୁଛି । ମା କେଉଁଠି ଅଛନ୍ତି ଜାଣିବାକୁ ତାର ଇଚ୍ଛା ହେଲା ନାହିଁ । କୂଅ ମୂଳରୁ କତାଦଉଡ଼ି ଆଣି ପୁଣି ଘରେ ପଶିଲା । ଭିତରୁ କିଳଣୀ ବନ୍ଦକଲା । ଅନ୍ଧାରରେ ଦଗ୍ରଣ୍ଡି କୂଅ ଦଉଡ଼ି ଓଗ୍ରରେ ଝୁଲାଇ ଦେଲା । ଦଉଡ଼ି ତଳେ ଖଟୁଲି ରଖି ମନକୁ ମନ କହିଲା, ହେଲା, ଏଇଥର ସେ ଶାଶୁଘରକୁ ଯିବ । ତାର ସ୍ୱାମୀ ଯେଉଁଠି ଅଛନ୍ତି, ସେହି ତାର ଶାଶୁଘର ! ଆଜିଠାରୁ ଆଉ ବାପା ମାଆଙ୍କୁ ତା ପାଇଁ ଚିନ୍ତିତ ହେବାକୁ ପଡ଼ିବ ନାହିଁ । ଚିନ୍ତା କରିବାକୁ ସେ ବି ଆଜି ନ ଥିବ ।

ଅପବାଦ ଡରରେ ଅବା ନିର୍ଯ୍ୟାତନା ଭୟରେ, କି ଅଭିମାନରେ ଅନ୍ଧ ହୋଇ କେତେ ଅବଳା ଜୀବନ ହରାଉଛନ୍ତି, ତାର କଳନା ନାହିଁ । ସମାଜର ଦାଉରୁ ସେମାନେ ଉଦ୍ଧାର ପାଉଛନ୍ତି । କେହି ତାଙ୍କ ପଛରେ ଗୋଡ଼ାଇ ଯାଏ ନାହିଁ । ଯେଉଁମାନେ ତାଙ୍କୁ ପାପ ପଥକୁ ଓହ୍ଲାଇ ଦେଇ ସେମାନଙ୍କ ଦୁର୍ଗତିର କାରଣ ହୋଇଥାନ୍ତି, ସେମାନେ ଧରାଛୁଆଁ ନ ଦେଇ ଦୂରେଇ ରହନ୍ତି । ଆଡ଼େଇ ଚାହାନ୍ତି, ବିପଦ ଗଲା ବୋଲି ନିଶ୍ଚିନ୍ତରେ ନିଶ୍ୱାସ ଛାଡ଼ନ୍ତି । ଭଲଇ ହୋଇ ପାପ ଗଲା ବୋଲି ପ୍ରଚାର କରନ୍ତି । ହୀରାମଣି ନିଜକୁ ପଚାରିଲା, କି ପାପ ସେ କରିଛି ?

ନିଜର ପ୍ରଶ୍ନର ଉତ୍ତର ସେ ନିଜକୁ ଦେଇ ପାରିଲା ନାହିଁ । ଓଗ୍ରରେ ବନ୍ଧା ହୋଇଥିବା ଦଉଡ଼ିକୁ ହାତରେ ଧରି ଫାଶରେ ସେ ମୁଣ୍ଡ ଗଳାଇ ଠିଆହେଲା । ପାଦତଳର ଖଟୁଲିକୁ ଗୋଡ଼ରେ ଠେଲି ଦେଇ ଝୁଲି ପଡ଼ିଲେ ମୁହୂର୍ତ୍ତକରେ ଜୀବନ ଯିବ । ସବୁ ନିନ୍ଦା ଅପମାନରୁ ସେ ଉଦ୍ଧାର ପାଇବ । ବାପା ମା, ଶାଶୁ ଶ୍ୱଶୁର ନିଶ୍ଚିନ୍ତ

ହେବେ । ଆତ୍ମହତ୍ୟା କରି ମହାପାପର ବୋଝ ମୁଣ୍ଡାଇ ନରକକୁ ସେ ଯିବ । କେହି ତାକୁ ଉଦ୍ଧାର କରିବାକୁ ପଛରେ ଗୋଡ଼ାଇ ଯିବେ ନାହିଁ । କେଉଁ କାହିଁକି ?

ହୀରାମଣିର ସର୍ବାଙ୍ଗ ଥରି ଉଠିଲା । ତାର ପ୍ରତିଜ୍ଞା ପଣ୍ଡ ହେଲା । ଜୀବନ ଉପରେ ମଣିଷର କେତେ ଲୋଭ ସତେ ! ଆଶାହିଁ ତାର ବଞ୍ଚି ରହିବାର ଇଚ୍ଛାକୁ ଜିଆଁଇ ରଖେ । ବାଟରେ ଘାଟରେ ଶହଶହ ଲୋକ ନାନା ରୋଗର ଯନ୍ତ୍ରଣାରେ ସନ୍ତୁଳି ହୋଇ, ମରଣ ହାତ ପାହାନ୍ତରେ ଆସିବା ଜାଣି ସୁଦ୍ଧା ମରିବାକୁ ଅନିଚ୍ଛୁକ । ଲାଞ୍ଛନା, ଅପମାନ, ଅପବାଦର ବୋଝ ବୋହି ଶହ ଶହ ଲୋକ ଭିକ୍ଷାଥାଳି ହାତରେ ଧରି ବାଟରେ ବୁଲନ୍ତି । ହୀରାମଣି ଥରକୁଥର ଫାଶକୁ ଗଳାରେ ଲଗାଇ କଣ ଭାବି ପୁଣି ଝରକା ନିକଟକୁ ଫେରିଆସି ଅନ୍ଧକାରକୁ ଅନାଉଥାଏ । ମନକୁ ଯେତେ ଦୃଢ଼ କଲେ ବି ବଞ୍ଚି ରହିବାର ମମତା ଆଗରେ ମରିବାର ପଣ ପରାସ୍ତ ହୁଏ ।

ରାତି କେତେହେଲା ତାକୁ ଜଣା ନାହିଁ । ଜଣା ସାଇଁ ସାଇଁ ଗର୍ଜୁଛି । ଚାରିଆଡ଼ ଶୁନ୍‌ଶାନ୍ । ଏହି ଥର ଫାଶଟିକୁ ଗଳାରେ ଲଗାଇ ହୀରା ସ୍ଥିର କଲା ଯେ ସେ ଖଟୁଲିକୁ ଗୋଡ଼ରେ ଠେଲି ଦେବ । କେହି ତାକୁ ଆଉ ବଞ୍ଚାଇ ପାରିବେ ନାହିଁ । ତାର ଚିନ୍ତାକୁଳ ମନ ସହସା ଗୋଟିଏ ଦୂରାଗତ ସ୍ୱରଆଡ଼କୁ ଚାଲି ପଡ଼ିଲା । ଦୂରରୁ କିଏ ଜଣେ ଗୀତ ଗାଇ ଗାଇ ସେହି ଆଡ଼େ ଆସୁଛି । ହୀରା ମନ ଦେଇ ଶୁଣିଲା । ନୈଶ ସମୀରର ତାଳେ ତାଳେ ଗୀତର ଲହରୀ ଭାସି ଆସିଲା—

ଅର୍ଦ୍ଧଜଗତ ଅଧିକାରିଣୀ କାନ୍ଦନା ଆଉ ନୀରବେ
ମାନବ ଯୁଗ ଏ ସାମ୍ୟଯୁଗ ଉଠ ଲଳନେ ଗରବେ ।
ଲାଞ୍ଛିତ ତୁମେ ଅପମାନିତ, କଠୋର ସମାଜ ପଦଦଳିତ
ଅନ୍ଧ ଖଞ୍ଜ ବଧିର ତୁମେ ମୂକ ଦୁର୍ବଳ ସରବେ ।
ତୁମର ଜୀବନ ମରଣ ମୁକ୍ତି ନହିଁତ ତୁମରି କରମେ ।
ବିଶ୍ୱ ଜନନୀ ! ଆତ୍ମଶକ୍ତି ଭୁଲିଛ ବ୍ୟର୍ଥ ସରମେ ।
ନିଜେ ହିଁ ନିଜର ମୃତ୍ୟୁ ସାଧନେ ଅକାତରେ ରତ ଗରଳ ପାନେ ।
ଭ୍ରାନ୍ତ, ଜଗାଅ ବିଜୟୀ ଶକ୍ତି ଗୁପ୍ତ ତୁମର ମରମେ ।
ଫିଙ୍ଗିଦିଅ ଦୂରେ ଲଜ୍ଜା, ପରଦା, ସଙ୍କୋଚ, ଭୟ-ଭ୍ରାନ୍ତି,
ବିଶ୍ୱେ ତୁମର ସମାଧିକାର ପରାଣୁ ମୁଞ୍ଚ କ୍ଳାନ୍ତି;
ବିଦ୍ରୋହ, ଆଜି ବିଦ୍ରୋହ ନିଆଁ ଜଳାଇ ସମାଜେ କର ଗ୍ଲାନିଆଁ
ସମତା ମୁକ୍ତି ଆଣ ଲୋ ଶକ୍ତି, ବିଶ୍ୱେ ମହତୀ ଶାନ୍ତି ।

ହୀରା ବିଚଳିତ ହେଲା । ଖଟୁଲି ଉପରୁ ଓହ୍ଲାଇଲା, ଝରକା ନିକଟକୁ ଆସିଲା । ବାହାରକୁ ଚାହିଁ ଦେଖିଲା, ସେହି କଟିମିଟି ଅନ୍ଧାର ଭେଦକରି ବେଳେ ବେଳେ ଟର୍ଚ୍ଚ ଆଲୁଅ ଝିକ୍ ଝିକ୍ ହୋଇ ଏପାଖ ସେପାଖ ଉଜ୍ଜ୍ୱଳ କରୁଛି । ଟର୍ଚ୍ଚଧାରୀ

ଭଦ୍ରଲୋକ ଯୋତାର ସମତାଳ ଶବ୍ଦ କରି, ଦ୍ରୁତପଦରେ ଆଗକୁ ଚାଲିଛନ୍ତି । ଗୀତଟି କେବେ ଉଚ୍ଚସ୍ୱରରେ, କେବେ ନିମ୍ନ ସ୍ୱରରେ ଗାଉଛନ୍ତି ।

କେଜାଣି କାହିଁକି ଝରକା ପାଖକୁ ଆସି ସେ ଠିଆ ହେଲେ, ଆଲୁଅ ଏଣେ ତେଣେ ପକାଇ ଯେପରି କଅଣ ଖୋଜିଲେ, କିଛି ପାଇଲେ ନାହିଁ । ଦପ୍‌କରି ଥରେ ଆଲୁଅ ଯାଇ ହୀରାମଣିର ମୁହଁରେ ପଡ଼ିଲା । ତାର ଆଖି ବୁଜି ହୋଇଗଲା । ମୁହୂର୍ତ୍ତିକ ପରେ ସେ ଆଖି ଖୋଲି ପଦାକୁ ଚାହିଁଲା । ଦେଖିଲା, ଅନ୍ଧାର ଭିତରେ ଧୋବ-ଧାଉଳିଆ ଭଦ୍ରଲୋକ ଜଣକ ଆଗେଇ ଯାଉଛନ୍ତି । ଯୋତାପିନ୍ଧା ପାଦର ଠକ୍ ଠକ୍ ଶବ୍ଦ ଶୁଭୁଛି, ଦୂରେଇ ଯାଉଛି ।

ହୀରା ବିସ୍ମିତ ହେଲା, ଗୀତଟି ଯେ ତାରି ଲେଖା ! ଭଦ୍ରଲୋକ ପାଇଲେ କେଉଁଠୁ ? ଝରକା ପାଖରେ କଣ ସେ ଖୋଜିଲେ ? ସେ ଯେ କେହି ହେଉନ୍ତୁ, ନିଶ୍ଚୟ ହୀରାର ଲେଖାଗୁଡ଼ିକ ପାଇଚନ୍ତି । ଏହି ତେବେ କଣ ବ୍ରଜବାବୁ ? ଥରେ ଭଲକରି ଦେଖି ପାରିଲା ନାହିଁ । ତାର ଲେଖା ସଙ୍ଗେ ତା ହୃଦୟର ଅନନ୍ତ ବ୍ୟଥା ଯେ ପ୍ରଚାର କରିଛନ୍ତି, ଯାହାଙ୍କର ସହାନୁଭୂତି ପାଇଁ ସେ ତାଡ଼ନା ସହି ଆତ୍ମହତ୍ୟା କରିବାକୁ ବସିଛି, ସେହି ବ୍ରଜବାବୁଙ୍କୁ ଥରେ ସେ ଭଲ କରି ଦେଖି ପାରିଲା ନାହିଁ ।

ହୀରା ଗୀତଟି ବିଷୟରେ ଚିନ୍ତାକଲା । ସେ ଦିନେ ବସି ବସି ଗୀତ ଦି ଚାରିପଦ ଲେଖି ଦୁନିଆଁର ନାରୀ ଜାତିକୁ ଜଗାଇବା ପାଇଁ ଆହ୍ୱାନ କରିଥିଲା । ସେ ନିଜେ ତେବେ ଅପମାନ ଓ ଲାଞ୍ଛନା ଭୟରେ ଆତ୍ମହତ୍ୟା କରିବ ? ଦିନେ ତ ମରିବାକୁ ହେବ, ମରିବା ପୂର୍ବରୁ ସେ କଣ ତାରିପରି ଶତସହସ୍ର ଅନାଥିନୀଙ୍କର ଦୁଃଖର କାହାଣୀ ଗାଇ ସମାଜର ମନରେ ପରିବର୍ତ୍ତନ ଆଣି ପାରିବ ନାହିଁ ?

ହୀରା ଦୀର୍ଘଶ୍ୱାସ ଛାଡ଼ିଲା । ଧୀରେ ଧୀରେ ଝରକା ପାଖରୁ ଘୁଞ୍ଚି ଆସି ଚଟାଣ ଉପରେ ଲମ୍ବ ହୋଇ ଶୋଇଲା । ଦୁଇ ଆଖିରୁ ଦର ଦର ଲୁହ ଝରି ପଡ଼ୁଥାଏ । ମନ ଓ ଭାବନା ଗୋଡ଼ାଇଗଲା ଅପରିଚିତ ଭଦ୍ରଲୋକଙ୍କ ସାଥିରେ । କାହିଁ କେତେ ଦୂରରେ କେଦାର ଗୌରୀ କୁଣ୍ଡ ସେପାଖେ ସେହି ନିଘଞ୍ଚ ଅନ୍ଧାର ତଳେ ସେ ଠିଆହେଲେ । ନୈଶ ଆକାଶରେ ଲକ୍ଷ-କୋଟି ତାରା ମିଟି ମିଟି ହେଉଛନ୍ତି । ସେମାନଙ୍କର କ୍ଷୀଣ ଆଲୋକରେ ସବୁ ଝାପ୍‌ସା ଦିଶୁଛି । ପୁଣି ସେହି ଗୀତଟି ସେ ଗୁଣୁଗୁଣୁ ହୋଇ ବୋଲିଲେ ।

ହୀରାର ଉଦ୍‌ବେଳିତ ଭାବନା ତାଙ୍କର ବାଟ ଓଗାଳିଲା । ସେ ତା'ର ମୁହଁକୁ ଚାହିଁଲେ । ନିର୍ଭୟରେ ହୀରାମଣି ପଚାରିଲା, ଆପଣଙ୍କର ନାମ ବ୍ରଜକିଶୋର ?

ଟିକଏ ରହି ଥରିଲା ସ୍ୱରରେ ସେ ଉତ୍ତର ଦେଲେ, ହଁ । ତୁମେ, ତୁମେ କିଏ ?

ମୁଁ ହୀରାମଣି ।

ବିଧବା ?

ସେ ବାଟ ଭାଙ୍ଗି ଦ୍ରୁତପଦରେ ଗହିର ବାଟରେ ରାଜାରାଣୀ ମନ୍ଦିର ଆଡ଼କୁ ଆଗେଇ ଗଲେ, ଅଦୃଶ୍ୟ ହେଲେ । ହୀରାମଣିର ଭାବନା ବାହୁଡ଼ି ଆସିଲା ନିଜ କୋଠରୀକୁ । ହଁ, ସେ ବିଧବା ! ଆଗରେ ରାଧାମାଧବ, ପଛରେ ଓଁରାରୁ ଝୁଲୁଛି ଦଉଡ଼ି । ତାର ଭାବନା ବ୍ୟଭିଚାରିଣୀ ହୋଇଥିଲା, ପରପୁରୁଷର ପଛରେ ଧାଇଁଥିଲା ।

ସେଇ ରାତିଟି ନେତ୍ରମଣି କଲବଲ ହୋଇ କଟାଇଲେ । ଉତ୍ତେଜନାର ତାଡ଼ରେ ହତଭାଗିନୀ କନ୍ୟାକୁ ଯାହା କହିବାର ତ କହିଛନ୍ତି, ତହିଁରେ ପୁଣି ନିର୍ଦ୍ଦୟ ଭାବରେ ତାର କେଶ ଧରି ଟାଣିଛନ୍ତି । ନେତ୍ରମଣି ଉପବାସ ରହି ରାତିଟି କେବଳ ଏହି ଚିନ୍ତାରେ କଟାଇଲେ । ନେହାନନ୍ଦର କୌଣସି ପ୍ରଶ୍ନର ଉତ୍ତର ସେ ଦେଲେ ନାହିଁ । ପିଲାଲୋକ ସେ, କିଛି ନ ବୁଝି ନ ଶୁଝି ଗଣ୍ଡିଏ ପଖାଳ ଖାଇ ମା ପାଖରେ ଶୋଇ ଘୁଙ୍ଗୁଡ଼ି ମାରିଲା ।

ନେତ୍ରମଣିଙ୍କର କୋହ ବେଳୁବେଳ ବଢ଼ିଲା । ସେ କାନ୍ଦି କାନ୍ଦି ତକିଆ ତିନ୍ତାଇ ଦେଲେ । ରାତି ପାହିଲେ କିପରି ସେ ହୀରାମଣିକୁ ଦେଖିବେ, କିପରି ତାକୁ ଶୁଦ୍ଧରେ ନାକ ତାଙ୍କର ନିଷ୍ଠୁର କର୍ମର ପ୍ରାୟଶ୍ଚିତ କରିବେ ଏତିକି ତାଙ୍କର ଭାବନା । ରାତି ପାହିଲା । ନେତ୍ରମଣି ଅଧୀର ମନ ଘେନି ହୀରାମଣି ଥିବା ଘର ଆଡ଼େ ଗଲେ । କବାଟ ବନ୍ଦ ଅଛି ଦେଖି ସେ ଜଞ୍ଜିର ଖଡ଼ଖଡ଼ କରି କଅଁଳ ସ୍ୱରରେ ଡାକିଲେ, ହୀରା, ହୀରା !

ହୀରା ସବୁଦିନ ପରି ଆଜି ମଧ୍ୟ ଧଡ଼ପଡ଼ ହୋଇ ଉଠି କବାଟ ଫିଟାଇ ଦେଲା । ଗତରାତିର ସବୁ ଘଟଣା ଗୋଟିଏ ଦୁଃସ୍ୱପ୍ନ ପରି ଭୁଲି ଯାଇଥିଲା । ନେତ୍ରମଣି ଘର ଭିତରକୁ ଅନାଇଁଦେଇ ସବୁ କଥା ବୁଝିନେଲେ । ତାଙ୍କ ଅଧୀର ମନର ତୀବ୍ର ଉତ୍ତେଜନାକୁ ଆଉ ଦବାଇ ରଖି ପାରିଲେ ନାହିଁ । କନ୍ୟାକୁ କୁଣ୍ଢାଇ ଧରି ପିଲାଙ୍କ ପରି କାନ୍ଦିବାକୁ ଲାଗିଲେ, ପଚାରିଲେ, ସେ କିଏ ମା ?

ହୀରାମଣିର ଚେତନା ଆସିଲା । ସେ କେଡ଼େ ନିର୍ବୋଧ ସତେ, ଅସାବଧାନ ହୋଇ ନିଜକୁ ନିଜେ ଧରାଇ ଦେଇଛି ! କାନ୍ଦଣା ସ୍ୱରରେ କହିଲା, ନାଇଁ ମା, ସେ କିଛି ନୁହେଁ, ମୋ ମନର ଗୋଟିଏ ଭ୍ରମ !

ନେତ୍ରମଣି କହିଲେ, ଯେ ଯାହାକୁ ଯେତିକି ଭଲ ପାଏ; ଗାଳିମନ୍ଦ ଦେବାକୁ ତାର ସେତିକି ଅଧିକାର ଥାଏ ମା । ତୋ ମାଆର କଥା ସହି ନ ପାରି ତୁ କଅଣ କରିବାକୁ ବସିଛୁ ! ତୋତେ ଆଉ କେଉଁଠିକି ଯିବାକୁ ହେବନି ନାହିଁ । ତୁ ମୋ ପାଖେ ପାଖେ ରହିବୁ ।

ମୁଁ ତାଙ୍କ ଘରକୁ ଯିବି ।

ଭଦ୍ରଲୋକ ଯୋତାର ସମତାଲ ଶବଦ କରି, ଦ୍ରୁତପଦରେ ଆଗକୁ ଚାଲିଛନ୍ତି । ଗୀତଟି କେବେ ଉଚ୍ଚସ୍ୱରରେ, କେବେ ନମ୍ର ସ୍ୱରରେ ଗାଉଛନ୍ତି ।

କେଜାଣି କାହିଁକି ଝରକା ପାଖକୁ ଆସି ସେ ଠିଆ ହେଲେ, ଆଲୁଅ ଏଣେ ତେଣେ ପକାଇ ଯେପରି କଅଣ ଖୋଜିଲେ, କିଛି ପାଇଲେ ନାହିଁ । ହଠାତ୍ ଝଟିକରି ଆଲୁଅ ଯାଇ ହୀରାମଣିର ମୁହଁରେ ପଡ଼ିଲା । ତାର ଆଖି ବୁଜି ହୋଇଗଲା । ମୁହୂର୍ତ୍ତିକ ପରେ ସେ ଆଖି ଖୋଲି ପଦାକୁ ଚାହିଁଲା । ଦେଖିଲା, ଅନ୍ଧାର ଭିତରେ ଧୋବ-ଧାଉଳିଆ ଭଦ୍ରଲୋକ ଜଣକ ଆଗେଇ ଯାଉଛନ୍ତି । ଯୋତାପିନ୍ଧା ପାଦର ଠକ୍ ଠକ୍ ଶବ୍ଦ ଶୁଭୁଛି, ଦୂରେଇ ଯାଉଛି ।

ହୀରା ବିସ୍ମିତ ହେଲା, ଗୀତଟି ଯେ ତାର ଲେଖା ! ଭଦ୍ରଲୋକ ପାଇଲେ କେଉଁଠୁ ? ଝରକା ପାଖରେ କଣ ସେ ଖୋଜିଲେ ? ସେ ଯେ କେହି ହୋଇଥାନ୍ତୁ, ନିଶ୍ଚୟ ହୀରାର ଲେଖାଗୁଡ଼ିକ ପାଇଚନ୍ତି । ଏହି ତେବେ କଣ ବ୍ରଜବାବୁ ? ଥରେ ଭଲକରି ଦେଖି ପାରିଲା ନାହିଁ । ତାର ଲେଖା ସଙ୍ଗେ ତା ହୃଦୟର ଅନନ୍ତ ବ୍ୟଥା ଯେ ଚୋରି କରିଛନ୍ତି, ଯାହାଙ୍କର ସହାନୁଭୂତି ପାଇଁ ସେ ତାଡ଼ନା ସହି ଆତ୍ମହତ୍ୟା କରିବାକୁ ବସିଛି, ସେହି ବ୍ରଜବାବୁଙ୍କୁ ଥରେ ସେ ଭଲ କରି ଦେଖି ପାରିଲା ନାହିଁ ।

ହୀରା ଗୀତଟି ବିଷୟରେ ଚିନ୍ତାକଲା । ସେ ଦିନେ ବସୁ ବସୁ ଗୀତ ଦି ଚାରିପଦ ଲେଖି ଦୁନିଆଁର ନାରୀ ଜାତିକୁ ଜଗାଇବା ପାଇଁ ଆହ୍ୱାନ କରିଥିଲା । ସେ ନିଜେ ତେବେ ଅପମାନ ଓ ଲାଞ୍ଛନା ଭୟରେ ଆତ୍ମହତ୍ୟା କରିବ ? ଦିନେ ତ ମରିବାକୁ ହେବ, ମରିବା ପୂର୍ବରୁ ସେ କଣ ତାରିପରି ଶତସହସ୍ର ଅନାଥିନୀଙ୍କର ଦୁଃଖର କାହାଣୀ ଗାଇ ସମାଜର ମନରେ ପରିବର୍ତ୍ତନ ଆଣି ପାରିବ ନାହିଁ ?

ହୀରା ଦୀର୍ଘଶ୍ୱାସ ଛାଡ଼ିଲା । ଧୀରେ ଧୀରେ ଝରକା ପାଖରୁ ଘୁଞ୍ଚି ଆସି ଚଟାଣ ଉପରେ ଲମ୍ବ ହୋଇ ଶୋଇଲା । ଦୁଇ ଆଖିରୁ ଦର ଦର ଲୁହ ଝରି ପଡ଼ୁଥାଏ । ମନ ଓ ଭାବନା ଗୋଡ଼ାଇଗଲା ଅପରିଚିତ ଭଦ୍ରଲୋକଙ୍କ ସାଥିରେ । କାହିଁ କେତେ ଦୂରରେ କେଦାର ଗୌରୀ କୁଣ୍ଡ ସେପାଖେ ସେହି ନିଘଞ୍ଚ ଅନ୍ଧାର ତଳେ ସେ ଠିଆହେଲେ । ନୈଶ ଆକାଶରେ ଲକ୍ଷ-କୋଟି ତାରା ମିଟି ମିଟି ହେଉଛନ୍ତି । ସେମାନଙ୍କର କ୍ଷୀଣ ଆଲୋକରେ ସବୁ ଝାପ୍‌ସା ଦିଶୁଛି । ପୁଣି ସେହି ଗୀତଟି ସେ ଗୁଣୁଗୁଣୁ ହୋଇ ବୋଲିଲେ ।

ହୀରାର ଉତ୍ତେଜିତ ଭାବନା ତାଙ୍କର ବାଟ ଓଗାଳିଲା । ସେ ତାର ମୁହଁକୁ ଚାହିଁଲେ । ନିର୍ଭୟରେ ହୀରାମଣି ପଚାରିଲା, ଆପଣଙ୍କର ନାମ ବ୍ରଜକିଶୋର ?

ଟିକିଏ ରହି ଥରିଲା ସ୍ୱରରେ ସେ ଉତ୍ତର ଦେଲେ, ହଁ । ତୁମେ, ତୁମେ କିଏ ?

ମୁଁ ହୀରାମଣି ।

ବିଧବା ?

ସେ ବାଟ ଭାଙ୍ଗି ଦ୍ରୁତପଦରେ ଗମ୍ଭୀର ବାଟରେ ରାଜାରାଣୀ ମନ୍ଦିର ଆଡ଼କୁ ଆଗେଇ ଗଲେ, ଅଦୃଶ୍ୟ ହେଲେ । ହୀରାମଣିର ଭାବନା ବାହୁଡ଼ି ଆସିଲା ନିଜ କୋଠରୀକୁ । ହଁ, ସେ ବିଧବା ! ଆଗରେ ରାଧାମାଧବ, ପଛରେ ଓ୍ୱାଗ୍ରୁ ଝୁଲୁଛି ଦଉଡ଼ି । ତାର ଭାବନା ବ୍ୟଭିଚାରଣୀ ହୋଇଥିଲା, ପରପୁରୁଷର ପଛରେ ଧାଇଁଥିଲା ।

ସେଇ ରାତିଟି ନେତ୍ରମଣି କଲବଲ ହୋଇ କଟାଇଲେ । ଉତ୍ତେଜନାର ଝାଙ୍କରେ ହତଭାଗିନୀ କନ୍ୟାକୁ ଯାହା କହିବାର ତ କହିଛନ୍ତି, ତହିଁରେ ପୁଣି ନିର୍ଦ୍ଦୟ ଭାବରେ ତାର କେଶ ଧରି ଟାଣିଛନ୍ତି । ନେତ୍ରମଣି ଉପବାସ ରହି ରାତିଟି କେବଳ ଏହି ଚିନ୍ତାରେ କଟାଇଲେ । ନେହାନନ୍ଦର କୌଣସି ପ୍ରଶ୍ନର ଉତ୍ତର ସେ ଦେଲେ ନାହିଁ । ପିଲାଲୋକ ସେ, କିଛି ନ ବୁଝି ନ ଶୁଝି ଗଣ୍ଡିଏ ପଖାଳ ଖାଇ ମା ପାଖରେ ଶୋଇ ଘୁଙ୍ଗୁଡ଼ି ମାରିଲା ।

ନେତ୍ରମଣିଙ୍କର କୋହ ବେଳୁବେଳ ବଢ଼ିଲା । ସେ କାନ୍ଦି କାନ୍ଦି ତକିଆ ତିନ୍ତାଇ ଦେଲେ । ରାତି ପାହିଲେ କିପରି ସେ ହୀରାମଣିକୁ ଦେଖିବେ, କିପରି ତାକୁ ଛାତିରେ ଜାକି ତାଙ୍କର ନିଷ୍ଠୁର କର୍ମର ପ୍ରାୟଶ୍ଚିତ୍ତ କରିବେ ଏତିକି ତାଙ୍କର ଭାବନା । ରାତି ପାହିଲା । ନେହମଣି ଅଧୀର ମନ ଘେନି ହୀରାମଣି ଥିବା ଘର ଆଡ଼େ ଗଲେ । କବାଟ ବନ୍ଦ ଅଛି ଦେଖି ସେ ଜଞ୍ଜିର ଖଡ଼ ଖଡ଼ କରି କଅଁଳ ସ୍ୱରରେ ଡାକିଲେ, ହୀରା, ହୀରା !

ହୀରା ସବୁଦିନ ପରି ଆଜି ମଧ୍ୟ ଧଡ଼ପଡ଼ ହୋଇ ଉଠି କବାଟ ଫିଟାଇ ଦେଲା । ଗତରାତିର ସବୁ ଘଟଣା ଗୋଟିଏ ଦୁଃସ୍ୱପ୍ନ ପରି ଭୁଲି ଯାଇଥିଲା । ନେତ୍ରମଣି ଘର ଭିତରକୁ ଅନାଇଁଦେଇ ସବୁ କଥା ବୁଝିନେଲେ । ତାଙ୍କ ଅଧୀର ମନର ତୀବ୍ର ଉତ୍ତେଜନାକୁ ଆଉ ଦବାଇ ରଖି ପାରିଲେ ନାହିଁ । କନ୍ୟାକୁ କୁଣ୍ଢାଇ ଧରି ପିଲାଙ୍କ ପରି କାନ୍ଦିବାକୁ ଲାଗିଲେ, ପଚାରିଲେ, ସେ କିଏ ମା ?

ହୀରାମଣିର ଚେତନା ଆସିଲା । ସେ କେଡ଼େ ନିର୍ବୋଧ ସତେ, ଅସାବଧାନ ହୋଇ ନିଜକୁ ନିଜେ ଧରାଇ ଦେଇଛି ! କାନ୍ଦଣା ସ୍ୱରରେ କହିଲା, ନାଇଁ ମା, ସେ କିଛି ନୁହେଁ, ମୋ ମନର ଗୋଟିଏ ଭ୍ରମ !

ନେହମଣି କହିଲେ, ଯେ ଯାହାକୁ ଯେତିକି ଭଲ ପାଏ; ଗାଳିମନ୍ଦ ଦେବାକୁ ତାର ସେତିକି ଅଧିକାର ଥାଏ ମା । ତୋ ମାଆର କଥା ସହି ନ ପାରି ତୁ କଅଣ କରିବାକୁ ବସିଥିଲୁ ! ତୋତେ ଆଉ କେଉଁଠିକି ଯିବାକୁ ହେବ ନାହିଁ । ତୁ ମୋ ପାଖେ ପାଖେ ରହିବୁ ।

ମୁଁ ତାଙ୍କ ଘରକୁ ଯିବ ।

କାହା ଘରକୁ ?

ହୀରା ଅଟକେଇ ଅଟକେଇ କହିଲା, ତୁ କାଲି ଯାହାଙ୍କ ଘରକୁ ମୋତେ ଯିବାକୁ କହୁଥିଲୁ ।

ଶାଶୁ ଘରକୁ ? ତୁ ପରା ମନା କରୁଥିଲୁ ?

ହୀରା ମୁହଁ ଶୁଖାଇ କହିଲା, ତୁ ସେମାନଙ୍କୁ ଲେଖିଦେ, ମୁଁ ସେଇଠିକି ଯିବି । ନନା ଲେଖିଛନ୍ତି, ମୁଁ ଘରେ ଥିବାଯାଏ ସେ ଘରକୁ ଆସିବେ ନାହିଁ ।

ରାଗ ବେଳରେ ସେମିତି ଲେଖି ଦେଇଛନ୍ତି ସିନା, ମୁଁ ସବୁ ବିଷୟ ଭଲକରି ବୁଝାଇ ଲେଖିଲେ ସେ ବୁଝିଯିବେ ଯେ ।

ତୁ ଲେଖିଦେ, ମୁଁ ମୋ ଶାଶୁଘରକୁ ଯିବି ।

ହୀରାମଣିର ଆଖିରେ ଲୁହ ।

ବାପା ମାଅଙ୍କ ଉପରେ ଅଭିମାନ କରିବା ଭଲ ନୁହେଁ ମା ! ଭଲ ମନ୍ଦରେ ସେମାନେ ପଦେ ଆକଟି ନ କହିବେ ତ ଆଉ କହିବ କିଏ ?

ମୁଁ ସେଥିକି ଛଳ କରି ନାହିଁ । କାଲି ରାତିରେ ଭାବି ମୁଁ ସ୍ଥିର କରିଛି ମୋ ଶାଶୁଘରକୁ ଯିବି । ପରଙ୍କୁ ଆପଣାର କରି ଜୀବନ କଟାଇବାକୁ ହେବ ତ, ଆଗରୁ ଯାଇ ସେମାନଙ୍କ ସଙ୍ଗେ ମିଳିମିଶି ଚଳିବାକୁ ଚେଷ୍ଟା କରେଁ ।

ନେତ୍ରମଣି ଖୁସି ହୋଇ କହିଲେ, ହଉ ତେବେ ମା, ଭଗବାନ୍ ତୋତେ ସୁବୁଦ୍ଧି ଦିଅନ୍ତୁ । ଭଲ ମନ୍ଦରେ ବରାବର ମୋ ପାଖକୁ ଚିଠି ଲେଖୁଥିବୁ । ସେଠାରେ ତୋର କଷ୍ଟହେଲେ ନେତ୍ରାନନ୍ଦକୁ ପଠାଇ ତୋତେ ନେଇ ଆସୁଥିବି । ଆ, ଗଣ୍ଡାଏ ପଖାଳ ଖାଇବୁ । କାଲି ରାତିସାରା ଉପାସରେ ପଡ଼ି ମୋ ସୁନା କଣ୍ଢେଇର ମୁହଁ କଳା ପଡ଼ି ଯାଇଛି । ନେତ୍ରମଣିଙ୍କ ଚକ୍ଷୁରୁ ପୁଣି ଲୋତକ ଛଳ ଛଳ ହେଲା । ସେ କନ୍ୟାର ହାତ ଧରି ରୋଷଘରକୁ ନେଇଗଲେ ।

ଯାହା ସେ କେବେ ସ୍ୱପ୍ନରେ ଭାବି ନଥିଲା, ଜନନୀଙ୍କ ଆଗରେ ପ୍ରକାଶ କଲା ! ନିଜ ତୁଣ୍ଡର କଥା ହୀରାମଣିର ଗୋଡ଼ରେ ଫାଶ ଲଗାଇଲା । ଦିନ କେତୋଟି ପରେ କାନ୍ଦି କାନ୍ଦି ନେତ୍ରମଣି ଅଶ୍ରୁମୁଖୀ ହୀରାମଣିକୁ ତାର ଶ୍ୱଶୁରଙ୍କ ସଙ୍ଗେ ରାଇଜୋ ଗ୍ରାମକୁ ପଠାଇ ଦେଲେ ।

## ଛଅ

ରଘୁନାଥ ଆଚାର୍ଯ୍ୟ କଟକର ଜଣେ ବିଖ୍ୟାତ ଓକିଲ । ସେକାଳର ଲୋକ ବୋଲି ଆଜିକାଲିକା ଟୋକାଏ ତାଙ୍କୁ ରକ୍ଷଣଶୀଳ ବୋଲି କହିଥାନ୍ତି । ଛୁଆଁ ଛୁତଠୁ ଆରମ୍ଭ କରି ବାକ୍ୟରେ, କାର୍ଯ୍ୟରେ ସବୁବେଳେ ତାଙ୍କର ନୈଷ୍ଠିକତା । ଏଇଥିପାଇଁ ରଥଶର୍ମା ମହାଶୟ ତାଙ୍କୁ ଭଲ ପାଆନ୍ତି । ଅବସର ନେଲେ ପଣ୍ଡିତେ ଆସି ଆଚାର୍ଯ୍ୟଙ୍କ

ସଙ୍ଗରେ ଖୁସି ଗପରେ ଲାଗିଯାନ୍ତି । କିପରି ବ୍ରାହ୍ମଣ ସମାଜ ଦିନୁଦିନ ରସାତଳକୁ ଯାଉଛି, କିଏ ଦାଢ଼ି ନରଖି କେବଳ ନିଶ ରଖିଛି, କିଏ ସିଗାରେଟ୍ ଟାଣୁଛି, କିଏ ଯୋଡା ମାଡ଼ି ସଡ଼କ ମଝିରେ ଠିଆହୋଇ ଛକ୍ ଛକ୍ ସୋଡ଼ାପାଣି ପିଉଛି ଆଉ କିଏ ଲୁଗା ପିନ୍ଧି ପାଇଖାନା ଯାଉଛି—ଏହି ସବୁ ବିଷୟ ନେଇ ସେମାନଙ୍କର ଚର୍ଚ୍ଚା ହୁଏ ।

ବେଳେ ବେଳେ ପଣ୍ଡିତ ମହାଶୟ ସୁରେନ୍ଦ୍ରର କଥା ପକାନ୍ତି, କିନ୍ତୁ ତା ବିଷୟରେ ବେଶି ଚର୍ଚ୍ଚା କରିବା ସେ ନିରାପଦ ମନେ କରନ୍ତି ନାହିଁ । ଏକୁଟିଆ ଲୋକ ବୋଲି ତାଙ୍କୁ ଅନ୍ଧାର ରାତିରେ ହାଟ ବଜାରକୁ ଯିବାକୁ ପଡ଼େ । କଟକ ସହରର କନ୍ଦିବିକନ୍ଦି ସୁରେନ୍ଦ୍ରକୁ ସବୁ ମାଲୁମ୍ । କାହା ଘରେ କଣ ହେଉଛି ତାକୁ ସବୁ ଜଣା । କେତେବେଳେ ଯଦି ଅନ୍ଧାରଆ ଦି ପୁଞ୍ଜା ଥୋଇ ଦେବ, ସେଠିରେ ପଡ଼ିବ କିଏ ? ଆଜିକାଲିକା ଛାତ୍ରମାନଙ୍କ ଗୁରୁଭକ୍ତି ଅତି ପ୍ରବଳ ! ମୁହେଁ ମୁହେଁ ଶିକ୍ଷକଙ୍କର ସାତପୁରୁଷ ଉଦ୍ଧାଳିବାଠାରୁ ଦେହରୁ ମଜା ଛଡ଼ାଇବା ଯାଏ—ସବୁ ବିଷୟରେ ସେମାନେ ଭଲେ ହେଲେ କୁଣ୍ଠିତ ନୁହନ୍ତି ।

ଦିନକର ଘଟଣା—କ୍ଲାସରେ 'ଚଳିକା' ଶବ୍ଦର ବ୍ୟୁତ୍ପତ୍ତି ନେଇ ନାନା ବିତର୍କ ହେଲା । ସୁରେନ୍ଦ୍ରକୁ ପଚାରିବାରୁ ସେ କହିଲା, ଏହାର ବ୍ୟୁତ୍ପତ୍ତି ଦ୍ୱିବିଧ, ପ୍ରଥମତଃ—ଚଲ୍+ଇକା ଅର୍ଥାତ୍ ଚଲ୍ ଯେ ଅଣ୍ଡା, ବହୁଳାର୍ଥେ ଇକ ପ୍ରତ୍ୟୟ, ସ୍ତ୍ରୀ ଲିଙ୍ଗେ ଆ=ଚଲିକା କିମ୍ବା ଚଲ ଯେ ଚଲମାନେ+ଇକ୍ ଅର୍ଥାତ୍ ଅଛି, କାଳକ୍ରମେ ଇକ୍; ବହୁବଚନେ—ଆ, ଯଥା—ଚଲିକ, ଚଲିକୌ, ଚଲିକାଃ ।

ସୁରେନ୍ଦ୍ରର ବନ୍ଧୁମାନେ ଏଥିରେ ସନ୍ତୁଷ୍ଟ ହୋଇ କରତାଳି ଦେଇ ସାବାସ୍ ସାବାସ୍ କହିଲେ । ପଣ୍ଡିତ ମହାଶୟ ରାଗିଯାଇ ସୁରେନ୍ଦ୍ରକୁ ଜଳଜଳା, ଅସଭ୍ୟ, ଅଲଆଗଦା ଇତ୍ୟାଦି କେତେ ଉପାଧି ଦେଲେ । ନାନା ପ୍ରକାର ଶ୍ଳୋକ ବୋଲି କେତେ ଉଦାହରଣ ଦେଇ ପଣ୍ଡିତେ ପ୍ରମାଣ କଲେ ଯେ ସୁରେନ୍ଦ୍ର ଅପଦାର୍ଥ, ଅକାଳକୁଷ୍ମାଣ୍ଡ । ସୁରେନ ନଗ୍ରେଡ଼୍ ବନ୍ଧା । ପଣ୍ଡିତେ କହୁ କହୁ ଗୋଟିଏ ଚୁଇଁ ପ୍ରତ୍ୟୟର ନମୁନା ଦେଲେ ।

ପର ଦିନଠାରୁ ପଣ୍ଡିତଙ୍କର ନାମ ହେଲା ଚୁଇଁପଣ୍ଡିତ । ପିଲାଏ ପଛରୁ ଚୁଇଁ ପଣ୍ଡିତ, ଚୁଇଁ ପଣ୍ଡିତ କହି ଚଢ଼ାଇଲେ । ଖାଲି ସେତିକି ନୁହେଁ, କଟକର ସାଇନ ବୋର୍ଡ଼ମାନ ଯଥା, ଜେଲଖାନା କାନ୍ଥ, ଚଉଧୁରୀଙ୍କ କୋଠା, କାଠଯୋଡ଼ୀ ଓ ମହାନଦୀ କୂଳର ବେଞ୍ଚ ପଛ, ଏପରିକି ଏ ପାଖରେ ଧବଳେଶ୍ୱରଙ୍କ ମନ୍ଦିରରୁ ସେ ପାଖରେ ପରମହଂସଙ୍କ ଦେଉଳ କାନ୍ଥରେ ସୁଦ୍ଧା କେତେ ସଂଯୋଗ ବିଯୋଗ ବନ୍ଦନୀ ଚିହ୍ନମାନଙ୍କ ପାଖରେ ଲେଖା ହୋଇଗଲା, ଚୁଇଁ+ପଣ୍ଡିତ=ଚୁଇଁପଣ୍ଡିତ ।

ପଣ୍ଡିତେ ବୁଝିଲେ, ଏ ସବୁର ମୂଳରେ ଆଗ୍ରର୍ଯ୍ୟକୁଳତିଳକ ସୁରେନ୍ଦ୍ର ଅଛନ୍ତି । କିନ୍ତୁ କିଛି କହି ପାରିଲେ ନାହିଁ । ବୋଡ଼ା ସାପ ରାଗରେ ନିଜର ଲାଙ୍ଗୁଳ ଖାଇଲା ପରି ପଣ୍ଡିତ ମହାଶୟ ରାଗରେ ମୁଣ୍ଡର ଚୁଟି—ସୁରେନ୍ କଥାରେ ପିଗ୍‌ଟେଲ ଅର୍ଥାତ୍ ଘୁଷୁରି ଲାଙ୍ଗୁଡ଼—ଟାଣିବାହିଁ ନାଗପଦ ମନେ କଲେ । କାବ୍ୟତୀର୍ଥ, ବ୍ୟାକରଣତୀର୍ଥ ଇତ୍ୟାଦି ଉପାଧିମାନଙ୍କ ପରି ଚୁଟି ଉପାଧି ପଣ୍ଡିତଙ୍କ ନାମ ଆଗରେ ଲାଗିଗଲା । ସେହି ଦିନଠାରୁ ଉଥେ ସୁରେନ୍ଦ୍ରକୁ ପାଟି ଫିଟାନ୍ତି ନାହିଁ ।

ଏକମାତ୍ର ସନ୍ତାନ ବୋଲି ରଘୁ ଆଗ୍ରର୍ଯ୍ୟ କିମ୍ବା ତାଙ୍କର ସ୍ତ୍ରୀ ତିଳୋତ୍ତମା ସୁରେନ୍ଦ୍ରକୁ କିଛି କହନ୍ତି ନାହିଁ । ଫୁଲ ଫାଙ୍କୁଡ଼ିଆ ହୋଇ ସେ ମନଇଚ୍ଛା ବୁଲୁଥାଏ । କୋଡ଼ିଏ ବାଇଶି ବର୍ଷର ଭେଣ୍ଡା ପୁଅ, ମାଟ୍ରିକୁଲେସନ ଖଣ୍ଡ ହେଲା ନାହିଁ, ଆଉ ଅଧିକ କଅଣ ହେବ ? ପାଠ ତ ମନକୁ ଆସି ମୁଣ୍ଡରେ ପଶିବ ନାହିଁ ? ପଢ଼ିଲେ ହୁଏ । ସୁରେନ୍‌ର ବନ୍ଧୁପତ୍ର ସଙ୍ଗେ ସଙ୍ଗାତପଣ । ଘରେ ପଢ଼ାଇବାକୁ ଆଗେ ଯେଉଁ ଶିକ୍ଷକ ଆସୁଥିଲେ, ସେମାନେ ସୁରେନ୍ଦ୍ରର ବକ୍ତୃତା ଶୁଣି ଫେରନ୍ତି । ସେମାନେ ହେଲେ ଟଙ୍କାର ପ୍ରତ୍ୟାଶୀ, ମାସ ପୂରିଲା ତ ପାଉଣା ମିଳିଲେ ଖୁସି । କଟକରେ ଶିକ୍ଷକ ଅଭାବ ନାହାନ୍ତି, ମାସିକ ପାଞ୍ଚ ସାତ ଟଙ୍କା ଦରମା ପାଇଲେ ବି. ଏ. ପାସ୍ ଶିକ୍ଷକ ଘରକୁ ଆସି ପାଠ ପଢ଼ାନ୍ତି । ପାଠର ମୂଲ୍ୟ ତ ଆଜିକାଲି ଏଇଆ, ପୁଅ ପାଠ ନ ପଢ଼ିଲା ବୋଲି ଆଗ୍ରର୍ଯ୍ୟ ମନଦୁଃଖ କରିବେ କାହିଁକି ?

ସୁରେନ୍ଦ୍ରକୁ ଯେତେବେଳେ ସତର ବର୍ଷ, ରଘୁ ଆଗ୍ରର୍ଯ୍ୟ ତାର ହାତକ ଧାହାତ କରିଦେଲେ । କୁଳୀନ ବ୍ରାହ୍ମଣ ଘରର ରୂପବତୀ ସାତବର୍ଷର ଝିଅଟିଏ, ସୁବର୍ଣ୍ଣ ପ୍ରତିମା । ଠିକ ବୋହୂର ନାମ ହେମଲତା । ବାହାଘରର ଗୋଟିଏ ବର୍ଷ ନ ଯାଉଣୁ ବୋହୂକୁ ବସନ୍ତ ହେଲା । ଫଳରେ ହେମଲତାର ସର୍ବାଙ୍ଗ ବସନ୍ତ ଚିହ୍ନରେ ଛାଇ ହୋଇଗଲା । ଏଡ଼େ ସୁନ୍ଦର ମୁହଁ ଜାଲିଚଟୁ ପରି ହୋଇଗଲା । ଆହା ! ହତଭାଗିନୀ ପୁଣି ଡାହାଣ ଆଖିଟି ହରାଇ ବସିଲା । କାନ୍ଦି କାନ୍ଦି ତିଳୋତ୍ତମା ମନର କୋହ ମାରିଲେ । ଗୋଟିଏ ବୋଲି ବୋହୂ, ସେ ହେଲା କାଣୀ, ଅପଚ୍ଛନ୍ଦମା । କାହାକୁ କହିବେ, କପାଳର ଦୋଷ ।

ଏହି ଘଟଣାର ପ୍ରଭାବ ଯେ ସୁରେନ୍ଦ୍ର ମନରେ ବିଷାଦର ଗାର ଟାଣି ନଥିଲା ଏହା କିଏ କହି ପାରିବ ? କିନ୍ତୁ, ଏ ବିଷୟ ଚିନ୍ତା କରିବାକୁ ସୁରେନ୍ଦ୍ରର ସମୟ ନ ଥାଏ । ଫୁଟବଲ୍, ହକି ଇତ୍ୟାଦି ଖେଳ ଓ ସାଇକଲ୍ ଚଢ଼ି ଏକ୍‌ସକର୍‌ସନ୍ କରିବାରେ ତାର ବେଳ କଟେ । ବାହାପିଆପଣକୁ ଡାକୁ ବଳେଇଯିବ ଏପରି ଲୋକ ବିରଳ । କୌଣସି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ହୋଇ ମଧ୍ୟ ସେ ବାଜେ ତର୍କ କରି ନିଜର ପାଣ୍ଡିତ୍ୟ ଜ୍ଞାପନ କରିବାକୁ ଚେଷ୍ଟା କରେ । ତର୍କରେ ହାରିଯିବାର ସୂଚନା ପାଇଲେ ହାତକୁ କାମିଜର ଟେକ ମୁଠି କରିବାକୁ ନିମନ୍ତ୍ରଣ କରେ ।

ଦେଖିବାକୁ ସେ ସୁନ୍ଦର, ବଳିଷ୍ଠ । ଟିକିଏ କଥାରେ ରାଗିଯାଏ ସତ, କିନ୍ତୁ ତାର ରାଗ ବେଶି ବେଳ ରହେ ନାହିଁ । ଖର୍ଚ୍ଚ କରିବାକୁ ରାଜି । ଯଦି କେବେ ଦୋସ୍ତମାନେ ଅଡ଼ି ବସନ୍ତି, ଗୋବିନ୍ଦା ଗୁଡ଼ିଆ ଦୋକାନରେ ଦଶ ପାଞ୍ଚ ଟଙ୍କା ଖର୍ଚ୍ଚ ହୋଇଗଲେ ତାର କିଛି ପରବାଏ ନାହିଁ । ଫ୍ୟାସନ୍ ସମ୍ବନ୍ଧରେ ସୁରେନ୍ ଏକାଥରେ ଆଧୁନିକ ! ଭିନ୍ନ ଭିନ୍ନ ପ୍ରକାରର ଲୁଗା, କାମିଜ୍, ଯୋତା । ଦିନକୁ ପ୍ରକାରେ ପ୍ରକାରେ ବେଶ ଧରି ସେ ସାଇକଲ୍ ଚଢ଼ି ବଜାରକୁ ବାହାରି ପଡ଼େ ।

ସେ ବଡ଼ ଲୋକର ପୁଅ, ଏହି କଥା ଜଣାଇ ଦେବାକୁ ବେଳେ ବେଳେ ସେ ସର୍ବତ ଦୋକାନ ପାଖରେ ସାଇକଲ୍‌ରୁ ଓହ୍ଲାଇ ସୋଡ଼ାଦିଆ ସର୍ବତ ବରାଦ କରେ । ପିଇବ ତ ଗିଲାସେ,—ଉଁଃ ଦହି ଖଟା, ସୋଡ଼ା କାଲିକାର, ଏହିପରି ଛଳନା କରି ଢାଳିବ ଦୁଇ ଗିଲାସ । ପଇସା ଦେଲା ବେଳକୁ ପକେଟରୁ କାଢ଼ି ତିନି ବୋତଲର ଦାମ ଦେଇ ଆସିବ । ଗୁଡ଼ିଆ ଦୋକାନ, ପାନ ଦୋକାନ, ସବୁଠି ସେ ଏହି ନୀତିକୁ ପ୍ରୟୋଗ କରେ । ବଡ଼ଲୋକ ପିଲାର ଏ ସବୁ ଲକ୍ଷଣ ବୋଲି ସେ ମଣେ, ଦେଖାଇ ହୁଏ ।

ଟଙ୍କା କେଉଁଠୁ ଆଣେ ? ଆରେ, ପିତାର ସାଉଁଟାର ତୋଟା ମୂଲ୍ୟ କରିବା କି ଦରକାର ? ସୁରେନ୍‌ର ଚରିତ୍ର ସମ୍ବନ୍ଧରେ ଅନେକେ ନାନା ମତ ପ୍ରକାଶ କରିଥାନ୍ତି, କିନ୍ତୁ ବିନା ପ୍ରମାଣରେ ଖଳ ଲୋକଙ୍କର କଥାରେ ବିଶ୍ୱାସ ଯିବା ଅନ୍ୟାୟ । କେବେ କେବେ ସେ ଗୁପ୍ତରେ କାହା ପାଖକୁ ଚିଠି ଲେଖେ, ତା ପାଖରୁ ମଧ୍ୟ ଚିଠି ଆସେ, ଏଥିପାଇଁ ତାକୁ ଅବିଶ୍ୱାସ କରିବା ଉଚିତ ନୁହେଁ । ଚିଠି ଲେଖିବା କିଛି ଦୋଷାବହ ନୁହେଁ ।

କେବେ କେବେ ରାତି ଅଧରେ ସେ ଘରକୁ ଫେରେ ! ଖିରାଦିନ, କାଠଯୋଡ଼ି ନଦୀ କୂଳରେ ହାଓଆ ଖାଉ ଖାଉ ହୁଏତ ଡେରି ହୋଇ ଯାଇଥିବ । କେବେ କେବେ ତେଲେଙ୍ଗାବଜାର କି ମସ୍‌ଜିଦ୍ ଗଳି, କି ଜଗନ୍ନାଥବଲ୍ଲଭ ପ୍ରଭୃତି ନାମଯାଦା ସ୍ଥାନମାନଙ୍କରେ ଯାଉଥିବାର ଦେଖାଯାଏ । ରାସ୍ତା ହୋଇଛି ଚାଲିବାକୁ, ରାସ୍ତାରେ ଚାଲିଲେ କଣ ଦୋଷ ଅଛି ?

ଏ ସବୁ ବିଷୟ ସୁରେନ୍‌ର ବାପା ମା ଜାଣି ମଧ୍ୟ କିଛି କହନ୍ତି ନାହିଁ । ଭେଣ୍ଡାପୁଅ, କହିବେ କଣ ? କିନ୍ତୁ ଆଉ କେତେ ସହିବେ ? ବାର ଲୋକଙ୍କଠାରୁ ବାର କଥା ଶୁଣି ସେମାନଙ୍କ ମନ ବଦଳିଗଲା । ସୁରେନ୍ଦ୍ରର ଢଙ୍ଗ ଦେଖି ରଘୁ ଆଚାର୍ଯ୍ୟ ହତାଶ ହୋଇଥିଲେ । ସେ ବୁଝିଥିଲେ ଯେ ପାଠ ପଢ଼ାରେ ତାର ମନ ନାହିଁ । କୁସଙ୍ଗରେ ପଡ଼ି କଟକରେ ସେ ବିଗିଡ଼ି ଯାଇଛି । କଟକରୁ ତାକୁ ଗ୍ରାମକୁ ପଠାଇ ଘର ସମ୍ପତ୍ତି ବୁଝାସୁଝା କାମରେ ନିଯୁକ୍ତ କଲେ ତାର ଢଙ୍ଗ ବଦଳି ଧୀରେ ।

ଏବେ ସୁରେନ୍ଦ୍ରଙ୍କୁ ତାଙ୍କ ଆଗ୍ରହେୟ ଅନେକ ବୁଝାସୁଝା କରି ତିଲୋତ୍ତମାଙ୍କ ଆଗରେ କହିଲେ, ଆଜିକାଲି ପାଠର ମୂଲ୍ୟ ତ ଯାହା ଦେଖୁଛୁ, ବୁଝି ପାରୁଥିବୁ । ଘରେ ସମ୍ପତ୍ତି ରକ୍ଷଣାବେକ୍ଷଣ କରିବାକୁ ପଡ଼ । ଆଉ ତୋର ପାଠ ଦରକାର ନାହିଁ ! ରଘୁ ଆଗ୍ରୁର୍ଯ୍ୟଙ୍କ ପୁଅ ମୂର୍ଖ ବୋଲି କେହି କହିବେ ନାହିଁ ! ତୁ ଘରକୁ ଯାଇ ସମ୍ପତ୍ତି ବୁଝାସୁଝା କର । ଗୁମାସ୍ତାମାନେ ତୋତେ ସାହାଯ୍ୟ କରିବେ । କୌଣସି ବିଷୟ ବୁଝି ନ ପାରିଲେ ମୋ ପାଖକୁ ଆସି ବୁଝି ଯାଉଥିବୁ ।

ତିଲୋତ୍ତମା ମଧ୍ୟ ତାକୁ ସେହିପରି ବୁଝାଇଲେ । କହିଲେ, ଏତେ ଚେଷ୍ଟା କରାଗଲା, ତୋ ପାଠ ପଢ଼ାପାଇଁ । ଗଉଣି ଗଉଣି ଟଙ୍କା ଖରଚ କରାଗଲା, ତଥାପି ତୋର ହେଲା ନାହିଁ । ବେଶି ପାଠ ତୋର ଭାଗ୍ୟରେ ନାହିଁ । ଯେତିକି ହେଲା ସେତିକି । ଏବେ ଗ୍ରାମକୁ ଯାଇ ଘରକଥା ବୁଝ । ଗୃହବାସ ଓ ଜମିଦାରୀ ସିରସ୍ତା ଖବର ବୁଝିଲେ ତୁ ମଣିଷ ହୋଇ ପାରିବୁ ।

ବାପ ମାଆଙ୍କର ପ୍ରସ୍ତାବରେ ସୁରେନ୍ଦ୍ର ରାଜି ହେଲା । ସତ କଥା, ପାଠ ଯଦି ନ ହେଲା ଅନ୍ୟ କିଛି ହେଉ । ଗ୍ରାମରେ ସ୍ୱାଧୀନତା ସଙ୍ଗେ ଧନ ମଧ୍ୟ ମିଳିବ । ହାତରେ ଧନ ପଡ଼ିଲେ ବାପାଙ୍କ ବାକ୍ସରୁ କି ମାଆଙ୍କ ଟ୍ରଙ୍କରୁ ଚୋରି କରିବା ଲୋଡ଼ା ହେବ ନାହିଁ । ଯେତେବେଳେ ମନ ସେତେବେଳେ ସେ କଟକ ଆସି ପାରିବ । ତେବେ ସେ ବାପ ମାଆଙ୍କର ବାଧ୍ୟପୁତ୍ର ନ ହେବ କାହିଁକି ?

## ସାତ

ତୁଙ୍ଗ ଶିଖର ଚୁମ୍ବେ ସୁନୀଳ ଆକାଶେ,
ବଉଦ ଅଙ୍ଗେ ବିଜୁଳି ରଙ୍ଗେ ପ୍ରକାଶେ ।
ରସାଳ ଡାଳେ ମାଳତୀ ଲୋଲେ କୁସୁମ କୋଳେ ଭୃଙ୍ଗ ଭୋଳେ
ହରଷେ କିବା ବିକାଶେ !

ଦୀପ୍ତ ତପନ ଚୁମ୍ବେ ଅମଳ କମଳ,
କହ୍ଲାରେ ଢାଳେ ଚନ୍ଦ୍ରମା ପ୍ରେମ ବିମଳ
ଲହରୀ ପରେ ଲହରୀ ଢଳେ ତଟିନୀ ମିଳେ ସାଗର ଜଳେ
ଅନିଳ ଚୁମ୍ବେ ଅନଳ ।

ଦୁଇ ଦୁଇରେ ଛନ୍ଦା ଅବନୀ ଧଇନୀ,
ଯୁଗଳ ନୃତ୍ୟେ ମଗ୍ନ ଦିବସ ରଜନୀ ।
ବିଧବା ମୁଁ ଯେ ବିଧବାର ଚିର ମିଳନ ଦେଖି ପରାଣ ଥିର
ରଖିବି କେମନ୍ତେ କହନ ?

ପ୍ରେମେ ଏ ବିଶ୍ୱ ଜଡ଼ିତ ନିତ୍ୟ ମିଳନେ,
ସେ କି ଗୋ ସୁଖ ସେ କି ଗୋ ଶାନ୍ତି ଜୀବନେ ।
ଭଗ୍ନ ଏ ମୋ ଆକୁଳ ହିଆ ବିରହେ ଜଳେ ଦୁଃସହ ନିଆଁ
ମିଳନ ଅବଲୋକନେ ।

—ଶ୍ରୀମତୀ ହୀରାମଣି ଦେବୀ

ପଦ୍ୟଟି ବାରମ୍ବାର ପଢ଼ି ଇନ୍ଦିରା ବିସ୍ମିତ ହେଲା । ସେ ଜାଣେ ତା ବଉଳ ବେଳେ ବେଳେ ଗୀତ ଲେଖେ, ଏହିପରି ଗୀତ । ଅବିକଳ ଏହିପରି ତାର ହସ୍ତାକ୍ଷର । ବ୍ରଜ ଏ ଗୀତଟି କେଉଁଠୁ ପାଇଲେ ? ବ୍ରଜ କଣ ବଉଳକୁ ଚିହ୍ନନ୍ତି ?

ବ୍ରଜକିଶୋର ସେ ଦିନ ବସାକୁ ଫେରି ସେହି ପଦ୍ୟଟିକୁ ଗୋଟିଏ ଲଫାଫାରେ ବନ୍ଦ କଲେ । ଉପରେ ଠିକଣା ଲେଖିଲେ—ସମ୍ପାଦକ, 'ମୁକୁର' । ଚିଠିଖଣ୍ଡି ଚାକର ଦ୍ୱାରା ଡାକ ଘରକୁ ପଠାଇ ଦେଇ ନୂଆବୋହୂଙ୍କୁ ଜଳଖିଆ ମାଗିଲେ । ଇନ୍ଦିରା ବ୍ରଜକିଶୋରଙ୍କର ପ୍ରତ୍ୟେକ କାର୍ଯ୍ୟ ଉପରେ ସେଦିନ ନଜର ରଖି ସନ୍ଦିହାନ ହେଉଥାନ୍ତି ।

ବେଳ ଚାରିଟା । ସ୍ୱାମୀ ଅଫିସରୁ ଫେରି ନାହାନ୍ତି । ଇନ୍ଦିରା ବ୍ରଜଙ୍କୁ ଜଳଖିଆ ବାଢ଼ି ଦେଇ ପାଖରେ ବସିଲେ । କେଜାଣି କାହିଁକି ମନକୁମନ ହସୁଥାନ୍ତି । କିଛି ସମୟ ପରେ ମନକୁ ମନ କହିଲେ, ସତ୍ୟବାଦୀ ପାଖରେ, କେଜାଣି ସେ ଗାଁ ନାଁ କଣ, ସେଇଠି ପାତ୍ରୀ ଠିକଣା ହୋଇଛି ।

କିଏ ଠିକ କରିଛି ନୂଆଭାଉଜ, କାହା ପାଇଁ ?

ଏଁ କିଛି ଜାଣ ନାହିଁ ପରା, ଲୁଚେଇପରା ହଉଛ ?

ସତେ ନୂଆଭାଉଜ, ମୁଁ କିଛି ଜାଣେ ନାହିଁ ।

ତମ ଭାଇ ତମ ପାଇଁ ଗୋଟିଏ ଝିଅ ଠିକ୍ କରିଅଛନ୍ତି । ଦେଖିବାକୁ କୁଆଡ଼େ ଦେବୀ ପ୍ରତିମା ପରି । ମୋଟେ ଏଗାର କି ବାରବର୍ଷ । ତାଙ୍କ ମନକୁ ଆସିଛି ।

କିଛିସମୟ ଚିନ୍ତା କରି ବ୍ରଜ କହିଲା, ମୁଁ ବାହା ହେବି ନାହିଁ ।

ମନେ ମନେ ପିଲା ହୋଇଛ ପରା ! ବ୍ରାହ୍ମଣ ଘର । ଚାରି ଲୋକ ଚାରି କଥା କହୁଛନ୍ତି । ଆଉ କେତେ ଦିନ ଅପେକ୍ଷା କରିବ ? ନନା ଥିଲେ ସେ ଚିନ୍ତା ଆମକୁ କରିବାକୁ ପଡ଼ନ୍ତା ନାହିଁ ।

ଏବେ ସେ ଚିନ୍ତା ତମକୁ ଲାଗିଛି କାହିଁକି ଶୁଣେ ? ଯାହାର ପୋଷିବାର ଶକ୍ତି ନାହିଁ, ତାର ଏ ଯୁଗରେ ବିବାହ କରିବା ବିଡ଼ମ୍ବନା ।

ପୋଷିବାକୁ ତମକୁ କେହି କହୁ ନାହିଁ ।

ପୋଷିବାର ଭାର ଯଦି ମୋ ଉପରେ ନ ପଡ଼େ, ତେବେ ମୁଁ ତମମାନଙ୍କ ଆଗ୍ରହରେ ବାଧା ଦେବନାହିଁ । ବ୍ରଜକିଶୋର ହସିଲେ । ପୁଣି କହିଲେ, କିନ୍ତୁ ବାହାଘର କିଣ୍ଡେଇ ଖେଳପରି ହେବ ନାହିଁ । ମୋ ପାଇଁ ପାତ୍ରୀ ମୁଁ ନିଜେ ଠିକ୍ କରିବ ।

ସେଥିରେ ଆମର ଆପତ୍ତି ନାହିଁ । ଆମେ ଗୃହସ୍ଥ ଝିଅ ବୋହୂଟିଏ, ସୁନା କିଣ୍ଡେଇଟି ପରି ହୋଇଥିବ, ପାଠ ପଢ଼ିଥିବ ।

ମୁଁ ଯଦି ବଡ଼ କନ୍ୟା ବିବାହ କରେ ?

ବ୍ରାହ୍ମଣ କୁଳରେ ତମ ପାଇଁ ବଡ଼ କନ୍ୟା କିଏ ଧରି ବସିଛି ?

ଯଦି ବିଧବା ବିବାହ କରେ ?

ଇନ୍ଦିରା ଜିଭ କାମୁଡ଼ିଲେ । କହିଲେ ସେ କଥା ତୁଣ୍ଡରେ ଧରନା ।

କାହିଁକି ? ଆଜିକାଲି ସମାଜରେ ବିଧବା ବିବାହ ପ୍ରଚଳିତ ହେଲାଣି ।

ମୋର ତମ ଉପରେ ସନ୍ଦେହ ହେଉଛି ବ୍ରଜ ! ଇନ୍ଦିରା ମୁହଁ ଫଣଫଣ କରି କହିଲେ ।

କାହିଁକି ନୂଆଉ ?

ମୁହଁରେ ଲୁଗା ଦେଇ ଅଙ୍ଗେଇ ଥଙ୍ଗେଇ ଇନ୍ଦିରା ପଚାରିଲେ, ହୀରାମଣି କିଏ ବ୍ରଜ ?

ବ୍ରଜ ନିଜେ ତ ଜାଣନ୍ତି ନାହିଁ, ନୂଆଉଙ୍କ ପ୍ରଶ୍ନର କି ଉତ୍ତର ସେ ଦେବେ ? ହୀରାମଣି ପାଇଁ ତାଙ୍କ ମନରେ କେବେ କେବେ ଭାବନାର ତୋଫାନ ଉଠେ, ଆପେ ଆପେ ସେ ଥମେ । ଭୁବନେଶ୍ୱର ଦାଣ୍ଡରେ ଚାଲି ଯାଉଁ ଯାଉଁ ଦିନେ ସେ ଯେଉଁ ଖାତାଖଣ୍ଡି ଅନାହୂତ ପାଇଥିଲେ, ତାହାହିଁ ତାଙ୍କୁ ପରୋକ୍ଷରେ ହୀରାମଣିକୁ ଚିହ୍ନାଇ ଦେଇଥିଲା । ତାର ବୟସ, ରୂପ ଓ ବିଦ୍ୟାଳୟର ଶିକ୍ଷା ସମ୍ବନ୍ଧରେ ସେ କିଛି ଜାଣନ୍ତି ନାହିଁ କିନ୍ତୁ ତାର ବ୍ୟଥିତ ହୃଦୟ ସଙ୍ଗେ ବ୍ରଜ ଅତି ପରିଚିତ ।

ଜଣେ ଗ୍ରାମ୍ୟ ବାଳିକା ଯେ ଏପରି ପ୍ରାଣସ୍ପର୍ଶୀ କବିତା ଲେଖି ତାଙ୍କର ଆଖିରେ ଲୁହ ଆଣିପାରେ, ଏହା ସେ ଅହରହ ଅନୁଭବ କରିଛନ୍ତି । ଅଜଣା ଅଶୁଣା ହୀରାମଣିର ମନର ବେଦନା ତାଙ୍କୁ ନିଜର କରିଛି । ତାର ସରଳ ପ୍ରାଣ ଉପରେ ସମାଜର ଯେଉଁ କଠୋର ଅତ୍ୟାଚାର, ମଣିଷ ହୃଦୟ ଧରି କିଏ ସହି ପାରିବ ? କେଡ଼େ ସରଳ ସୁନ୍ଦର ଭାବରେ ସେ ତା ପ୍ରାଣର ଓ ମନର ଉଦ୍ଦେଶ୍ୟ କେତୋଟି କବିତା ଭିତରେ ଜୀବନ୍ତ କରି ପ୍ରକାଶ କରିଛି ।

ବ୍ରଜକିଶୋର ବୁଝି ପାରି ନ ଥିଲେ, ପଦ୍ୟଗୁଡ଼ିକ ଏତେ ଯତ୍ନ ଓ ପରିଶ୍ରମ କରି ଲେଖି ସେ କାହିଁକି ଫିଙ୍ଗି ଦେଇଥିଲା । କେତେବେ ଚିନ୍ତାକରି ସ୍ଥିର କଲେ ଯେ ଅସାବଧାନତା ପାଇଁ ଅନ୍ୟ କେହି ସେଗୁଡ଼ିକ ଫୋପାଡ଼ି ଦେଇଛି । ବ୍ରଜକିଶୋର

ସ୍ଥିର କଲେ ଯେ ନିଶ୍ଚୟ ସେ ପଦ୍ୟଗୁଡ଼ିକ ଗୋଟି ଗୋଟି କରି ମାସିକ ପତ୍ରିକାରେ ଛପାଇ ଦେବେ, ସମାଜର ଆଖି ଆଗରେ ବିଧବାର ପ୍ରାଣସ୍ପର୍ଶୀ ଯନ୍ତ୍ରଣାର ସ୍ୱରୂପ ପ୍ରକାଶ କରିବେ । ଏତଦ୍ୱାରା କଣ ସମାଜର ମନରେ ଟିକିଏ ହୋଇ ପରିବର୍ତ୍ତନ ଆସିବ ନାହିଁ ?

ଏତିକିରେ କଣ ବ୍ରଜକିଶୋରଙ୍କର କର୍ତ୍ତବ୍ୟ ଶେଷ ହେବ ? ଏହି ପ୍ରଶ୍ନଟି ବାରମ୍ବାର ତାଙ୍କ ମନକୁ ଆନ୍ଦୋଳିତ କରେ । ସେ ଚିନ୍ତା କରିକରି ଉନ୍ନିଦ୍ର ହୋଇ କେତେ ରାତି କଟାନ୍ତି । ଗୋଟିଏ ସୁନ୍ଦରୀ ବିଧବା ଷୋଡ଼ଶୀ ଲୋତକରେ ଚକ୍ଷୁ ଛଳ ଛଳ କରି ତାଙ୍କର ଆଗରେ ଆସି ଠିଆ ହୁଏ । ବ୍ରଜ ତାକୁ କେତେ ବୁଝାସୁଝା କରନ୍ତି । ତା ମନରେ ସାହସ ଆଣିବାକୁ ସାନ୍ତ୍ୱନାବାଣୀ ଶୁଣାନ୍ତି । ନାରୀମୂର୍ତ୍ତି ମାନସ ଚକ୍ଷୁ ଆଗରୁ ଅନ୍ତର୍ହିତ ହୁଏ । ବ୍ରଜ ଆଖି ମେଲି ଚାହାନ୍ତି, ରାତ୍ରି ଶେଷ ହୋଇଛି । ବ୍ରଜ ମନକୁ ମନ କେତେ ପ୍ରତିଜ୍ଞା କରନ୍ତି ।

ହୀରାମଣି କିଏ ଏ ପ୍ରଶ୍ନର କି ଉତ୍ତର ସେ ଦେବେ ? ସେ ବିଧବା, ସ୍ୱପ୍ନମୟୀ । ସେ ତାଙ୍କ ହୃଦୟର ରାଣୀ ! ନୂଆବୋଉଙ୍କୁ ସେ ଏପରି ନିଜର କଥା କିପରି କହିବେ ? ଜାଣନ୍ତି ନାହିଁ ବୋଲି ମନା କରିବେ ? ମିଛ କଥା କହିବେ କିପରି ? ସେହି ହୀରାମଣିକୁ ଦେଖିବେ ବୋଲି ବୃଥା ଛଳନା କରି ସେ କେତେ ଥର ଭୁବନେଶ୍ୱର ଯାଇଛନ୍ତି । କେତେ ଥର ଗୌରୀ କୁଣ୍ଡରେ ଗାଧୋଇଛନ୍ତି । ମନ୍ଦିର ବେଢ଼ାରେ ବୁଲିଛନ୍ତି । ତଥାପି ସେ ତାଙ୍କର ମାନସ ପ୍ରତିମା ହୀରାମଣିର ଦେଖା ପାଇନାହାନ୍ତି । ହୀରାମଣି ସ୍ୱପ୍ନମୟୀ, ହୀରାମଣି ପ୍ରହେଳିକା ହୋଇ ରହିଛି । ସେଦିନ ଅନ୍ଧାର ରାତିରେ ଟର୍ଚ୍ଚ ଆଲୁଅରେ ଝରକାର ଅନ୍ତରାଳରେ ବିଦ୍ୟୁତ୍ ପରି ଗୋଟିଏ ମୁହଁ ଝଲସି ଉଠିଥିଲା । ଅଶ୍ରୁସିକ୍ତ ନିରୀହ ଆଖି ଦିଓଟି, ଅନ୍ତରର କରୁଣ ଦୀପ୍ତି ଫୁଟି ଉଠିଥିଲା ତହିଁରୁ । ବ୍ରଜକିଶୋର ଯେଉଁ ଝରକା ତଳୁ ସେହି କବିତା ଖାତାଟି ସାଉଁଟି ନେଇଥିଲେ, ଏ ତ ସେହି ଝରକା ! ଏହି ତେବେ କଣ ନାରୀ କବି ଶ୍ରୀମତୀ ହୀରାମଣି ! ଏଡ଼େ ସୁନ୍ଦର ମୁହଁ ! ସେ ପୁଣି ବିଧବା ?

ପ୍ରତିକାର କରିବାକୁ ହେବ, ସମାଜର ବିପକ୍ଷରେ ଛାତି ଦେଖାଇ ଠିଆ ହେବାକୁ ହେବ ।

ବ୍ରଜକିଶୋରଙ୍କୁ ନୀରବ ଦେଖି ଇନ୍ଦିରା କହିଲେ, ଭାବିଛ କି ତୁମେ ନ କହିଲେ ମୁଁ ଜାଣି ପାରିବି ନାହିଁ ?

ହୀରାମଣି କିଏ ମୁଁ ଜାଣେ ନାହିଁ ନୂଆବୋଉ ।

ତମେ ସିନା ତାଙ୍କୁ ଜାଣ ନାହିଁ, ସେ ତୁମକୁ ଜାଣେ, ତୁମ ପାଖକୁ ଚିଠି ଲେଖେ, ଗୀତ ଲେଖି ପଠାଏ । କେତେ ଛପେଇଲେ କଥା କେଉଁ ଛପି ରହିବ ? ମୋ ସାନକୁହା ମାନ ବ୍ରଜ, ରାଣ୍ଡୀ ଖଣ୍ଡୀଙ୍କ ସଙ୍ଗରେ କୌଣସି ସମ୍ପର୍କ ରଖନାହିଁ ।

ତମେ ଭଲ ପିଲା, ସୁନା ପିଲା, ଅନାଥପଣିଆ ତମଠି ଶୋଭା ପାଏ ନାହିଁ । ଛି— । ଏତିକି କହି ଇନ୍ଦିରା ନାକ ଫଣ ଫଣ କରି ମୁହଁ ଲଦି ସେ ଘରୁ ଉଠି ଚାଲିଗଲେ ।

ରାଗରେ ବ୍ରଜକିଶୋରଙ୍କର ରକ୍ତ ଗରମ ହୋଇ ଆସିଲା । କୁମ୍ଭାଟୁଆ ଆଖିପରି ଆଖି ଲାଲ୍ ହୋଇଗଲା । ବୃଥା ଦୋଷାରୋପ ସେ ସହନ୍ତେ କିପରି ? 'ଆଉ କେହି ହୋଇଥିଲେ ସେଦିନ ତାକୁ କେଣ୍ଟା କେଣ୍ଟା କରି ଖାଇ ଯାଇଥାନ୍ତେ, କିନ୍ତୁ ଏ ଯେ ତାଙ୍କର ନୂଆଉ, ସ୍ନେହମୟୀ !

ବ୍ରଜକିଶୋର କାହାକୁ କିଛି ନ କହି ସେହିଦିନ କଟକ ଯାତ୍ରା କଲେ । ଏପରି ଅଯଥା ଦୋଷାରୋପ ପାଇଁ ନୂଆଉ ଦିନେ ଅବଶ୍ୟ ଅନୁତାପ କରିବେ । ନିଜେ ସେ ନିଜର ଭୁଲ୍ ନ ବୁଝିବା ଯାଏ ତାଙ୍କୁ ସେ ଆଉ କଥା କହିବେ ନାହିଁ । ଏହା ହିଁ ତାଙ୍କର ପ୍ରତିଜ୍ଞା ।

ଇନ୍ଦିରା ବ୍ରଜଙ୍କର ବ୍ୟବହାରରେ ନିଜ ମନମାଫି ସିଦ୍ଧାନ୍ତରେ ଉପନୀତ ହେଲେ । ବ୍ରଜଙ୍କର ତାଙ୍କ ବଉଳ ସଙ୍ଗରେ କିପରି ଭାବରେ ଚିଠି ପତ୍ର ଆଦାନ ପ୍ରଦାନର ସୂତ୍ରପାତ ହେଲା, ସେ ଭାବି ସ୍ଥିର କରି ପାରିଲେ ନାହିଁ । ପଚାରି ବୁଝିବାକୁ ସାହସ ହେଲା ନାହିଁ । ସେ ଭୁବନେଶ୍ୱରରେ ହୀରାମଣି ସଙ୍ଗେ କେତେ ଘଣ୍ଟା କଥାବାର୍ତ୍ତା ହୋଇ ବୁଝି ପାରିଥିଲେ ଯେ ପିଲାଦିନର ହୀରାମଣି ଏକାଥରେ ବଦଳି ଯାଇଛି । ତାର ମନ ଅପବିତ୍ରତା ଆଡ଼କୁ ଟାଣି ହୋଇ ଯାଇଛି । ଇନ୍ଦିରାଙ୍କ ମନରେ କ୍ରୋଧ ଜାତ ହେଲା, ହତଭାଗିନୀ ବଉଳ ନିଜେ ତ ପଙ୍କରେ ଘାଣ୍ଟି ହେବାକୁ ମନ କରିଛି, ଅଥଚ ନିରୀହ ସରଳ ବ୍ରଜକିଶୋରଙ୍କୁ ସେ ପଙ୍କକୁ ଟାଣି ନେବାକୁ ଚେଷ୍ଟା କରୁଛି କାହିଁକି ?, ଏଡ଼େ ସାହସ ? ତାକୁ ଆଉ କେହି ମିଳିଲେ ନାହିଁ !

କାହାକୁ କିଛି ନ କହି, ଏପରିକି ସ୍ୱାମୀଙ୍କୁ ନ ଜଣାଇ ଇନ୍ଦିରା ହୀରାମଣିର ମାଅଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲେ !

ଆଗପଛକୁ ନ ବିଚାରି ଚିଠି ସିନା ଲେଖିଦେଲେ, କେବଳ ବ୍ରଜକିଶୋରଙ୍କ ଅଜ୍ଞାତରେ ହୀରାମଣିକୁ ଆଗରୁ ସତର୍କ କରାଇ ତାର ମନରେ ଭୟ ସଞ୍ଚାର କରିବାକୁ, ସେ ତ ଜାଣି ନ ଥିଲେ ଯେ ତାଙ୍କର ସାମାନ୍ୟ ପିଲାମି ପାଇଁ ଭବିଷ୍ୟତରେ କି ବିଷମ କାଣ୍ଡ ଘଟିବ ?

ନେତ୍ରମଣି ପତ୍ରଖଣ୍ଡି ପଢ଼ି ମୁଣ୍ଡରେ ହାତଦେଇ ବସିଲେ । ଭାବିଲେ, ଆହା, ଶେଷକୁ ହତଭାଗିନୀ ଏହା କଲା ? ଯେ ପୁରେ ପଶିଲା ସେ ପୁର ନାଶିଲା ? ନା, ଆଉ ନୁହେଁ । ତାଙ୍କ ସଙ୍ଗେ କୌଣସି ସମ୍ବନ୍ଧ ରଖିବା ଉଚିତ ନୁହେଁ । ନିଜ ଭାଗ୍ୟର ଫଳ ସେ ଭୋଗ କରୁ । ସେ କିଛି ପିଲା ଛୁଆ ନୁହେଁ, ଭଲ ମନ୍ଦ ବୁଝିବାର ବୟସ

ହୋଇଛୁ, ପର ଘରେ ସଂସାର କରୁଛୁ, ନିଜର ଦାୟିତ୍ୱ ଯଦି ସେ ନ ବୁଝିବ କିଏ ତାକୁ ବୁଝାଇ ପାରିବ ?

ଇନ୍ଦିରାର ପତ୍ର ଖଣ୍ଡି ସେ ଯେତେଥର ପଢ଼ିଲେ, ସେତେଥର ତାଙ୍କ ଆଖିରୁ ଲୋତକ ଝରିଲା । ମନରେ ସେହି ଗୋଟିଏ ଭାବନା, ଶେଷକୁ ଏଇଆ କଲା ଗୃସ୍ଥାଳୁଣୀ, ଦୁଇ କୁଳର ମୁହଁରେ କଳଙ୍କ ବୋଳି ଆଉ ଗୋଟିଏ କୁଟୁମ୍ବରେ ଅଶାନ୍ତିର ନିଆଁ ଜାଳିଲା ? ଜନମ ତ କରିଛନ୍ତି, ତାଆର ମଙ୍ଗଳ ପାଇଁ ଥରେ ତାକୁ ଚେତାଇଦେବା ଉଚିତ, ତେଣିକି ତାର ଯାହା ମନ ସେ କରୁ, ପରିଣାମକୁ ମୁଣ୍ଡରେ ବୋହି ଚାଲୁ । ଜନ୍ମ ଦେଇଛନ୍ତି ବୋଲି କର୍ମ ତ ଦେଇ ନାହାନ୍ତି ! ନେତ୍ରମଣି ଚିଠାଉ ଲେଖିଲେ —

## ଆଠ

କଟକର ସଭ୍ୟ ମଜଲିସ୍ ରାଇଜୋ ପରି ଖଣ୍ଡେ ଶ୍ରେଷ୍ଠ ନିପଟ ମୋଫସଲ ଗ୍ରାମରେ ସମ୍ଭବ ନୁହେଁ । ତଥାପି ସୁରେନ୍ଦ୍ରକୁ ଗ୍ରାମ୍ୟ ଜୀବନ ମନ୍ଦ ଲାଗିଲା ନାହିଁ । ଗ୍ରାମରେ ତାକୁ ପୂର୍ଣ୍ଣ ସ୍ୱାଧୀନତା ମିଳିଗଲା । ପିତାମାତାଙ୍କଠାରୁ ଦୂରରେ, ଚକ୍ଷୁ ଅନ୍ତରାଳରେ ରହି ସେ ତାର ସ୍ୱାଧୀନ ଉଚ୍ଛୃଙ୍ଖଳ ଜୀବନକୁ ଭିନ୍ନ ଭାବରେ କଟାଇଲା । ଗ୍ରାମର ମଇଳାମୁଣ୍ଡିଆ ଅଶିକ୍ଷିତ ଲୋକଗୁଡ଼ାଙ୍କୁ ସେ ପାସଙ୍ଗରେ ପକାଏ ନାହିଁ । ଆଚାର୍ଯ୍ୟଙ୍କ ପୁଅ ବୋଲି ଲୋକେ ତାକୁ ଭକ୍ତି ପରିବର୍ତ୍ତିରେ ଭୟ କରନ୍ତି । ଗରିବ ଲୋକଙ୍କ ସଙ୍ଗେ କଥାଭାଷା କଲାବେଳେ କଥା କଥାରେ ସେ ଦୁଇ-ଅକ୍ଷର ଦେଶଜ ଶବ୍ଦ ପ୍ରୟୋଗ କରିଥାଏ । ବଡ଼ଲୋକର ଶିକ୍ଷିତ ପୁଅ, ଉରସିକର କିଏ ଉତ୍ତର ଦେବ ?

ପ୍ରତ୍ୟହ ନିରାପଦ କ୍ଷୁରରେ ମୁହଁକୁ ଥରେ ଘର୍ଷି ନେଇ ଚକ୍ ଚକ୍ କରିବା ଦରକାର । ଭେସ୍‌ଲିନ, ହେଜେଲିନ୍, ପୋମେଡ୍ ପ୍ରଭୃତି ସୁବାସିତ ମଲମ ମଧ୍ୟରୁ କୌଣସିଟିରୁ ଟିକିଏ ମୁହଁରେ ମରା ହୁଏ । କେଶ ଅତି ଯତ୍ନରେ ମଝିରୁ ଭଙ୍ଗାଯାଏ । ସିଲ୍‌କ ରୁମାଲରେ ଏସେନ୍‌ସ ପଡ଼େ । ଜୋତାରେ ରଙ୍ଗ ଦିଆଯାଏ । ତା ପରେ ସୁରେନ୍ ବାବୁର ଗ୍ରାମ ପରିଦର୍ଶନ । ଗୋଡ଼ରୁ ମୁଣ୍ଡଯାଏ ମହକ ମହକ ବାସୁଥାଏ । ଆଖିରେ ସୁନାର ଚଷମା, ନ ଦେଖିବା ଭୁଆସୁଣୀ ହେଲେ ବି ଓଢ଼ଣା ଭିତରୁ, ନୋହିଲେ କବାଟ ଫାଙ୍କରେ ଅବଶ୍ୟ ଥରେ ଚାହିଁଦେବ !

ପରି ବିଶ୍ୱାଳ, ଲକ୍ଷ୍ମୀଧର ମହାନ୍ତି, ହରେକୃଷ୍ଣ ଜେନା, ରାସବିହାରୀ ରଥ ଏହିପରି କେତେଜଣ ଭଦ୍ରଲୋକଙ୍କ ଘରକୁ ଆଚାର୍ଯ୍ୟ କୁଳତିଳକ ସାଧାରଣତଃ ଶୁଭା-ଗମନ କରେ । ଏହିମାନେହିଁ ଗ୍ରାମର ଖୁସବାସିଆ ଲୋକ, ମାମଲତକାରିଆ ମୁଣ୍ଡ । ବିଶେଷତଃ, ଏମାନଙ୍କ ଘରେ ଆଚାର୍ଯ୍ୟ ପୁଅ ସମ୍ମାନ ପାଏ । ବିଶ୍ୱାଳଙ୍କ ପୁଅ ନଟିଆ, ମହାନ୍ତିଙ୍କ ପୁଅ ଶ୍ରୀବତ୍ସ, ଜେନାଙ୍କ ପୁଅ ମଧୁଆ ଓ ରଥଙ୍କ ପୁଅ ରାମଚନ୍ଦ୍ର, ଏମାନେ

ନେହଉଛନ୍ତି ସୁରେନ୍ଦ୍ରର ସମବୟସ୍କ ସାଙ୍ଗ । ସୁରେନ୍ଦ୍ରକୁ ଦେଖିଲେ ଏମାନଙ୍କର ଗୋଡ଼ ତଳେ ଲଗେ ନାହିଁ । ସମସ୍ତେ ଦରପାଠୁଆ, ହେଲେ ସୁରେନ୍ଦ୍ରଠାରୁ ଡିଗ୍ରୀରେ କମ୍ । ସୁରେନ୍ଦ୍ର ଗ୍ରାମ ପରିଦର୍ଶନ କରି ବନ୍ଧୁମାନଙ୍କୁ ନିମନ୍ତ୍ରଣ କରି ଘରକୁ ଫେରେ । ଠାକୁର ଘରେ ମୁଠିଏ ଭୋଜନ ପକାଇ ଚାଲିଯାଏ ଭଗବାନ ମିଶ୍ରଙ୍କ ଘରକୁ । ଦି ପହର ଆଡ଼୍ଡା ତାର ସେଇଠି ହୁଏ ।

ରାତିରେ ବନ୍ଧୁମାନଙ୍କ ସଙ୍ଗେ ଏକାଠି ବସି ନାନା ପ୍ରକାର ଆମୋଦପୂର୍ଣ୍ଣ ଗଳ୍ପ କରିବାକୁ ବଳେ କରେ ଅନ୍ଦର ମହଲକୁ । ଏତେ ବଡ଼ ଘରେ କେହି ନାହିଁ । ପ୍ରଧାନ ଗୁମାସ୍ତା ମଧୁମହାନ୍ତିଙ୍କ ପ୍ରଭାବରୁ ଘର ସବୁ ପ୍ରତିଦିନ ସଫାସୁତୁରା ହୁଏ । ଯେତେବେଳେ ଦେଖ, କାଚକେନ୍ଦୁ ପରି ଜକ୍ ଜକ୍ ଦିଶୁଛି । ସୁରେନ୍ଦ୍ର ପାଇଁ ଗୁମାସ୍ତାବାବୁ ଯେଉଁ ତିନି ବଖରା ଘର ତଳ ଧାଡ଼ିରେ ଛାଡ଼ି ଦେଇଥିଲେ, ତାହାରି ମଝିରୁ କୌଣସିଟିରେ ଆଖଡ଼ା ଜମେ । ତାସ୍ ପଶା ଖେଳିବା, ହାରମୋନିୟମ୍ ଧରି ଗୀତ ଗାଇବା କିମ୍ବା କଲ ବାଜାର ଗୀତ ଶୁଣିବା ଓ କେବେ ବୃଥା ତର୍କ, ଗଳ୍ପ ଓ ଉପନ୍ୟାସ ପାଠରେ ବେଳ କଟାଇ ଦେବା, ଏହାହିଁ ତାର କାର୍ଯ୍ୟ ।

ସବୁଠାରୁ ବେଶି ହୁଏ ଗଳ୍ପ । ରାଜନୀତି, ଧର୍ମନୀତି, ଅର୍ଥନୀତି, କର୍ମନୀତି ଏହିପରି ଯେତେ ପ୍ରକାର ନୀତି ଅଛି, ଅନୀତି ଅଛି, ସେବୁଥିରୁ କାଣ୍ଡେ କାଣ୍ଡେ ପଡ଼ିଯାଏ । ଏ ସବୁଥିରେ ସୁରେନ୍ ବେଶି କଥା କହେ । ବକ୍ତୃତା ଦେଲାବେଳେ ପାଟିରେ ବାଟୁଲି ବାଜେ ନାହିଁ, ଅଜସ୍ର ଚାଲିଥାଏ । ଅନ୍ୟମାନେ ମନକର୍ଣ୍ଣ ଦେଇ ଶୁଣନ୍ତି । କଳାକୁ ଧଳା କହିଲେ ବି ବାଧା ଦିଅନ୍ତି ନାହିଁ, ସମର୍ଥନ କରନ୍ତି ।

ବନ୍ଧୁମାନେ କେହି ତାଳ ଦେଇ ପାରନ୍ତି ନାହିଁ, କିନ୍ତୁ ଯେତେବେଳେ ପାନ-ନୀତି କିମ୍ବା ପ୍ରେମ-ନୀତି ସମ୍ବନ୍ଧରେ ବିତର୍କ ହୁଏ, ସମସ୍ତେ ଯୋଗ ଦିଅନ୍ତି । ଏହି ଦିଓଟି ନୀତି ବା ଅ-ପୂର୍ବ ନୀତିରେ ସମସ୍ତେ ସେମାନେ ପଣ୍ଡିତ । କାହାର ଝିଅକୁ କେତେ ବର୍ଷ, କିଏ କେତେ ଉଚ୍ଚ, କିଏ ସୁନ୍ଦର, କିଏ ମୋଟ, ଭୁସୁଣ୍ଡା କିଏ ବା ଦୁର୍ବଳ, କାହାର ଚରିତ୍ର କିପରି ଏହିସବୁ ବିଷୟରେ ଆଲୋଚନା ଚାଲେ । ବନ୍ଧୁମାନେ ନିଜ ନିଜର ଅଭିଜ୍ଞତାମାନ ବର୍ଣ୍ଣନା କରନ୍ତି । କିଏ କେତେଜଣଙ୍କର ହୃଦୟ ଲୁଟି କରି ପାରିଛି ଏହି ବିଷୟ କହି ଗର୍ବ ଅନୁଭବ କରନ୍ତି । ଯେ ଯେତେ କହୁ ସୁରେନ୍ଦ୍ର ଜାଣେ ହୃଦୟ ଚୋରି କରିବା ବିଷୟରେ ସେ ଧୁରନ୍ଧର ।

ଏହିପରି ଆନନ୍ଦରେ ସୁରେନ୍‌ର ଦିନ ପାଣିପରି ବୋହିଗଲା । ଗୁମାସ୍ତାଏ କିନ୍ତୁ ତାଙ୍କ ଉପରେ କଡ଼ା ନଜର ରଖିଥାନ୍ତି । ବାବୁ କଟକରୁ ଚିଠି ଲେଖିଥିଲେ, ସୁରେନ୍ ପ୍ରତି ନଜର ଦେବ । ଜମିଦାରୀ ସିରସ୍ତାର କାମ ଶିଖାଇବ । ତାର ଯେପରି ଅଭାବ ନ ହୁଏ ସେ ବିଷୟ ବୁଝିବ । ଅଭାବ ହେଲେ ସେ ନିଷ୍ଟୟ କଟକ ଚାଲି ଆସିବ । ଅତି କଷ୍ଟରେ ସେ ଗ୍ରାମକୁ ଯାଇଛି ।

ମଧୁ ମହାନ୍ତିଏ ସୁରେନ୍‌ର ଦେହ ପ୍ରତି ନଜର ରଖିଥାନ୍ତି । ଟଙ୍କା ମାଗିଲେ ବେଳେ ବେଳେ ଦେଇ ହିସାବ ଲେଖନ୍ତି । ଜମିଦାରିର କାର୍ଯ୍ୟ ଶିଖାଇବାକୁ ବସିଲେ ସୁରେନ୍ଦ୍ର ଧରାଛୁଆଁ ଦିଏ ନାହିଁ । ସେ ସବୁ ଅତି ଜଟିଳ । ସ୍ୱତ୍ୱାସ୍ୱତ୍ୱ ତା ମୁଣ୍ଡରେ ପଶେ ନାହିଁ ।

ସୁରେନ୍‌ର ଆଖି ଦିଟା ଯେ ଏଥର ଏଣେତେଣେ କିଅଣ ହିଣ୍ଡିଲାଣି ଏ ବିଷୟ ତାର ବନ୍ଧୁମାନଙ୍କୁ ବି ଅଗୋଚର । ତା ଗୃହିଣୀର ପ୍ରତ୍ୟୁତ୍ତର ଦେବାକୁ ଏ ସଂସାରରେ ଲୋକର ଅଭାବ ନାହାନ୍ତି; କିନ୍ତୁ ସର୍ବପ୍ରଥମେ ଉତ୍ତର ଦେଲେ କିଶୋରୀମଣି ।

ହିସାବରେ ସେ ହେବେ ଆଈ, ଅନ୍ୟ ଏକ ଲେଖାରେ ସେ ପୁଣି ହେବେ ଦେଠେଈ । ଅଳପ ବୟସୀ, ଛନ ଛନ ଯୌବନା, ଡଉଲ ଡାଉଲ ରୂପବତୀ । ରକ୍ତର ସମ୍ପର୍କ ତ ନାହିଁ, ସୁରେନ୍ ପରି ଗୁଣଚନ୍ଦ୍ରା ଗୁଣିଆଁ ଟୋକା ଆଈ ନ ଡାକି ଦେଠେଈ ଡାକିବ କାହିଁକି ? ବିଶେଷତଃ ଶ୍ରୀମତୀ କିଶୋରୀ ଦେବୀଙ୍କ ବୃଦ୍ଧ ସ୍ୱାମୀଙ୍କୁ ପିଲାଦିନୁ ସେ ଭଗିଅଜା ବୋଲି ଡାକି ଆସିଛି । ଆଈଲେଖା କଲେ କିଶୋରୀ ସୁଖ ପାଆନ୍ତି ।

ଭଗବାନ ମିଶ୍ରଙ୍କ ଘର ଆଗ୍ନର୍ଯ୍ୟଙ୍କ ଘରର ବାଉପଟକୁ ପ୍ରାୟ ଲାଗିଛି । ମଝିରେ ଗୋଟିଏ ଗ୍ରେଟ ଆମ୍ବ ତୋଟାର ବ୍ୟବଧାନ । ମିଶ୍ରଙ୍କର ବୟସ ଅନ୍ଦାଜ ପଞ୍ଚାବନ ସେପାଖେ । ହେଲେ ବର୍ତ୍ତମାନ ବି ଦେହରେ ଯଥେଷ୍ଟ ଶକ୍ତି ଅଛି । ମୁଣ୍ଡର କେଶ ଅଧେ ଧଳା ଅଧେ କଳା, କିନ୍ତୁ ଦାନ୍ତ ଦି ପାଟି ସେମିତି ରହିଲା ପରି ଦେଖାଯାଏ । ଥରେ କଲିକତା ଯାଇ ନକଲି ଦାନ୍ତ ଲଗାଇ ଆସିଛନ୍ତି, ଗ୍ଳେବା ଗ୍ଳେବରେ ସୁବିଧା ହେବ ! ଗାଁରେ ସେ ଜଣେ ବଡ଼ ମାମଲତ୍‌କାର । ବ୍ରାହ୍ମଣର ପୂଜା ପଦ୍ଧତି ତାଙ୍କୁ ଏତେ ଅଧିକ ଜଣା ଯେ, ବ୍ୟବସ୍ଥା ଦେବାକୁ ଏ ଗାଁ ସେ ଗାଁ ବୁଲି ବର୍ଷରେ ସେ ଦଶ ମାସ କଟାନ୍ତି । ରୋଜଗାର ବି ଭଲ ହୁଏ ।

ମିଶ୍ରେ ନିଜକୁ କେବେ ବୁଢ଼ା ବୋଲି ମଣନ୍ତି ନାହିଁ । ଟୋକାଙ୍କ ସଙ୍ଗେ ମିଶି, ଗ୍ଳଲଚଲନ କଥାଭାଷାରେ ଟୋକାଙ୍କୁ ଅନୁକରଣ କରିବାରେ ତାଙ୍କର ବିଶେଷ ଆନନ୍ଦ । ଏପରି କରିବାର କାରଣ ଅଛି । ବଡ଼ ପୁଅ ବଞ୍ଚି ଥାଉଣୁ ତାଙ୍କର ପତ୍ନୀ-ବିୟୋଗ ଘଟିଥିଲା । ପତ୍ନୀ ବିୟୋଗର ବହୁଦିନ ପୂର୍ବରୁ ଅବଶ୍ୟ ପୁଅର ହାତକୁ ଦି ହାତ କରି ଦେଇଥିଲେ, କିନ୍ତୁ ବୋହୂ ତ ପିଲା, ବାପଘରେ, ଏଣେ ସଂସାର ଚଳେ କିପରି ? ତହିଁରେ ପୁଣି ଦି ବର୍ଷର ଗୋଟିଏ ପୁଅ କୋଳରେ ।

ଅନେକ ଭାବିଚିନ୍ତି ସେ ଦ୍ୱିତୀୟ ବିବାହ କଲେ । ଫଳହେଲା ଏକା । ଯାହାକୁ ବିବାହ କଲେ ସେ ବି ତ ପିଲା, ଅଗତ୍ୟା ପିଲା ପୁଅର ଲାଳନପାଳନ ପାଇଁ ଦାସୀଟିଏ ନିଯୁକ୍ତ କଲେ । ଏହି ଦାସୀ ସମ୍ବନ୍ଧ ନେଇ ଖଳ ଲୋକେ ମିଶ୍ରଙ୍କର ନିର୍ମଳ ଚରିତ୍ର ଉପରେ ନାନା ପ୍ରକାର ଦୋଷାରୋପ କରିଥିଲେ, କିନ୍ତୁ ଭଗବାନ ମିଶ୍ରେ

ବାପର ପୁଅ, ବାଜେ ଲୋକଙ୍କ ସମାଲୋଚନାରେ କର୍ଣ୍ଣପାତ ନ କରି ନିଜର ସଂସାର ସ୍ୱଚ୍ଛନ୍ଦରେ ଚଳାଇବାକୁ ଅଣ୍ଟା ଭିଡ଼ି ଠିଆ ହେଲେ । ତତ୍‌ପରେ ହେଲା ପୁତ୍ର ବିୟୋଗ । ମିଶ୍ରଙ୍କର ଟାଣ ମନ ଏକାଥରେ ଭାଙ୍ଗିଗଲା । କଣ କରିବେ, ଦୈବୀ ଦଣ୍ଡ ଉପରେ କାହାର ହାତ ! ସମୟର ପ୍ରଭାବରେ ପୁତ୍ରଶୋକ କ୍ରମେ ଭୁଲି କର୍ମସ୍ରୋତରେ ନିଜକୁ ଭସାଇ ଦେଲେ ।

ଦେଢ଼ ବର୍ଷ ହେଲା କିଶୋରୀ ତାଙ୍କ ଘରକୁ ଉଜ୍ଜ୍ୱଳ କରିଛନ୍ତି । ଦ୍ୱିତୀୟ ପକ୍ଷ ଯେପରି ହେବାର କଥା, ଏ ମଧ୍ୟ ସେହିପରି । ସ୍ୱାମୀ ତାଙ୍କର ହାତ ମୁଠାରେ । ସେ ଯାହା କହିବେ ତାହାହିଁ ହେବ, ନ ହେଲେ ଶ୍ରାବଣର ଧାରା ପରି ଯୁବତୀ ପତ୍ନୀଙ୍କ ଆଖିରୁ ଲୁହଧାର ଝରି ପଡ଼ିବ । ତାପରେ ରୁଷା ! ଏତେ-କାଣ୍ଡ ସହେ କିଏ ? ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା ଯେତେବେଳେ କଥା କଥାରେ ତାଙ୍କର ଶୋକ ବାହାରେ । ସେ କେତେ ଫରମାସ କରନ୍ତି, ଏଟା ଦରକାର, ସେଟା ଦରକାର, ନାହିଁ କହିବାକୁ ମିଶ୍ରଙ୍କର ସାହସ କୁଳାଏ ନାହିଁ । ଋଣ କରନ୍ତୁ, ଚୋରି କରନ୍ତୁ, ନାକ ପଛେ ତଳେ ଘୋଷାଡ଼ି ହେଉ, ଯୁବତୀ ସ୍ତ୍ରୀର ସାଧ ନ ମେଣ୍ଟାଇଲେ ନ ହୁଏ ।

ମାଳୀକୁ ଛେଳି ଅଡ଼ୁଆ, ତନ୍ତୀକୁ ମାଙ୍କଡ଼ ଅଡ଼ୁଆ; କିଶୋରୀମଣିଙ୍କୁ ଅଡ଼ୁଆ ସାବତ ପୁଅ ଶ୍ରୀନାଥ । ଘରେ ଗୋଡ଼ ଦେଉ ନ ଦେଉଣୁ ଗାଁ ମାଇପୀଙ୍କ ଶିକ୍ଷାରେ ସେ ତାଙ୍କୁ ମା ବୋଲି ଡାକିଲା । ଏଥିରେ ସେ ଆଦୌ ସନ୍ତୁଷ୍ଟ ହୋଇ ପାରିଲେ ନାହିଁ । କଣ କରିବେ, ଲୋକ ଦେଖଣାକୁ ସାକୁଲେଇ ହୋଇ ସାବତ ପୁଅର ଦେହରୁ ଧୂଳି ଝାଡ଼ିଦେବା, କି ମୁହଁରୁ ଝାଳ ପୋଛିଦେବାକୁ ପଡ଼େ । କେବେ କେବେ ସ୍ୱାମୀଙ୍କ ଆଗରେ ତାକୁ ଗେହ୍ଲା କରିବାର ଦେଖାଯାଏ । ଏ ସବୁ କିନ୍ତୁ ବାହାର ଦେଖାଣ, ମନରେ ଅଭିଶାପ । ତାଙ୍କ ଡରରେ ନାଥ ଘରେ ନ ରହି ଗାଁ ଦାଣ୍ଡ ଗାଁ ତୋଟାରେ ବୁଲେ ।

ସାତ ଆଠ ବର୍ଷର ଛୁଆଟିଏ, ବିଚକ୍ଷଣ ବୁଦ୍ଧି, ପଢ଼ାରେ ତାର ମନ । ବାପେ ଘରେ ଥିଲେ କାଗଜ ପେନ୍‌ସିଲ ଧରି ମନଇଚ୍ଛା ଗାରଉଥାଏ । ନୂଆବୋହୂ ଆସିଲା ଦିନୁ ତାକୁ ଆଉ ଦି ପହରେ ଏ ତୋଟା ସେ ତୋଟା ବୁଲିବାକୁ ପଡ଼େ ନାହିଁ । ନୂଆବୋହୂ ଛାଡ଼ି ଦିଅନ୍ତି ନାହିଁ । କେତେ ମିଠା କଥା କହି ଗଳ୍ପ କହି ଦି ପହରେ ତାକୁ ସେ ପାଖରେ ଅଟକାଇ ରଖନ୍ତି । ଛୋଟ ଛୋଟ ଗୀତ ସରଳ ଭାଷାରେ ଲେଖି ତାକୁ ମୁଖସ୍ଥ କରିବାକୁ ଦିଅନ୍ତି ।

ନାଥର ମନ ନୂଆବୋହୂଠାରେ ମାଜିଛି । ତାର ସବୁ ଅଳିଅର୍ଦ୍ଦଳି ତାଙ୍କରି ପାଖରେ । କିଶୋରୀ ବାହାରେ ନାକ ଫଣ ଫଣ କରନ୍ତି, ମାତ୍ର ମନ ଭିତରେ ଖୁସି । ଗୋଟାଏ ଚେଷ୍ଟା, ଗୋଟାଏ ନେଣ୍ଟ୍ରାରୁ ସେ ରକ୍ଷା ପାଇଛନ୍ତି । ବିଧବା ବୋହୂ

ହୀରାମଣି ଘରକୁ ଆସିଲା ଦିନରୁ ନାଥର ଦାୟିତ୍ୱ ଓ 'ରୋଷଘରର ଦାୟିତ୍ୱ ଆପେ ସେ ମୁଣ୍ଡକୁ ନେଇଛି ।

ବୟସରେ ବିଧବା ବୋହୂ ତାଙ୍କଠାରୁ ବଡ଼ ହେଲେ ବି କିଶୋରୀ ଶାଶୂପଣ ଦେଖାଇ ବିରକ୍ତ ହୁଅନ୍ତି । ଆଗେ ସେ ଥିଲେ ସ୍ୱାଧୀନ, ଏକାଙ୍ଗଚକ୍ରବର୍ତ୍ତୀ । ଦି ପହରେ ଯେତେବେଳେ ନାଥ ଖରା ତାତିରେ ଗାଁ ଯାକ ବୁଲୁଥାଏ, ମିଶ୍ରେ ବ୍ୟବସ୍ଥା ଦେବାକୁ ଏ ଗାଁ ସେ ଗାଁ ହେଉଥାନ୍ତି, କୌଣସି ଗୋଟିଏ ଆରା ଧରି ସେ ପୋଇଲାକୁ ସାହିକୁ ପଠାଇ ଦିଅନ୍ତି । ଠିକ୍ ବେଳ ଉଣ୍ଡି ଆଗ୍ରଫି କୁଳ ଚନ୍ଦ୍ରମା ସୁରେନ୍ ବାରମ୍ବାର ରୁମାଲରେ ମୁହଁ ପୋଛି, ଆଈ ଆଈ ଡାକି ଘରେ ପ୍ରବେଶ କରେ । ମନ ନ ଥିଲା ଛଳନା କରି କିଶୋରୀ ବିରକ୍ତ ହୁଅନ୍ତି । ପଲଙ୍କ ଉପରେ ବସିବାକୁ ଆଦେଶ ଦିଅନ୍ତି । ନାତି ଟୋକାକୁ ଆକଟି କହନ୍ତି, ଖରାତରାରେ ବୁଲୁଛ କାହିଁକି ? ସେଇଠୁ ଆରମ୍ଭ ହୁଏ ଆଈ-ନାତି ରହସ୍ୟ, ହାସ ପରିହାସ, ଟାହି ଟାପରା ।

ହୀରା ଆସିଲାଦିନୁ ଆଈ-ନାତି ଅଭିନୟ ଅବାଧରେ ଆଉ ହୋଇ ପାରୁ ନାହିଁ । ସବୁବେଳେ ଘରେ ମଣିଷ । ମନ ଯେତେ ନିର୍ମଳ ହେଲେ କି ଲୋକେ ବୁଝିବେ ? ମିଳାମିଶା ଟାହିଟାପରା ହସକୌତୁକ, ଗେଲରେ ଗେଲରେ ଟଣାଓଟରାର ଭିନ୍ନ ଅର୍ଥ କରିବେ, ନିନ୍ଦା ରଟାଇବେ ।

ଘରର କାମଧନ୍ଦାରୁ ସେ ଏକ ପ୍ରକାର ମୁକ୍ତ । ପାହାନ୍ତା ପହରୁ ଉଠି ନେଳଟଣୀ ପାରି ପରି ହୀରା କାମ କରି କରି ଲୋଟିଯାଏ । ମନରେ ହିଂସାବାଦ ନାହିଁ, ଦୁଃଖ ନାହିଁ । ମୁହଁ ସବୁବେଳେ ହସ ହସ । ଦେବାନେବାକୁ ହାତମୁଠା ଖୋଲା, ମନ ମଧ୍ୟ ସେହିପରି ପରିଷ୍କାର । ଦୋଷ ଭିତରେ ତାର ଏତିକି ଯେ ସେ କାହାକୁ ଆଡ଼ ହୁଏ ନାହିଁ, ସମସ୍ତଙ୍କ କଥା କହେ । ଶଶୁରଙ୍କୁ ନିଜେ ସେ ପରଷି ଦିଏ । ଶାଶୁ ପିଲା ମଣିଷ, ବୟସରେ ହୀରାଠାରୁ ସାନ, ତଥାପି ଶାଶୂ ତ, ନିତି ସଞ୍ଜରେ ଗୋଡ଼ରେ ହାତ ନ ମାରିଲେ ହୀରାମଣିକୁ ଅଶାନ୍ତି ଲାଗେ ।

କିଶୋରୀଙ୍କ ପହଡ଼ ଭାଙ୍ଗେ ଦିନ ଆଠଟାରେ । ଘରୁ ପଦାକୁ ବାହାରି ଆସିଲେ ସେ ଦେଖନ୍ତି ତାଙ୍କ ପାଇଁ ପାଣିନୋଟା, ଦାନ୍ତକାଠି ରଖା ହୋଇଛି । ଦାନ୍ତଲଗି ହୋଇ ବାରିଆଡ଼ କୂଅମୂଳକୁ ଯାଇ ଦେଖନ୍ତି, କୁଣ୍ଡରେ ପାଣି ଭରା ହୋଇଛି । ରୋଷ ଘରକୁ ଅନାଇଁ ଦେଖନ୍ତି ଧୂଆଁ ଉଠୁଛି । ଶାଗ ଖରଡ଼ା କି ଭଜା ଦି ଖଣ୍ଡ ଲଗାଇ ପଖାଳ କଂସାଏ ସେ ଆଗ ନ ଖାଇଲେ ବୋହୂ ତୁଣ୍ଡ ଓଦା କରିବ ନାହିଁ ।

ଏତେ ସେବା ପାଇ ସୁଦ୍ଧା କିଶୋରୀ ପଦେ ଅଧେ ନ ବାଛି ଛାଡ଼ନ୍ତି ନାହିଁ, ନୋହିଲେ ଶାଶୁପଣର ହାନି ହେବ ଯେ ! ନୋଟାରେ ମାଟି ଲାଗିଛି, ଶାଗ ଉଞ୍ଚ ଲୁଣିଆ ହୋଇଛି, ଦୁଆର କଣରେ ଝାଟୁଆ ପଡ଼ିଛି, ଏହିପରି କେତେ ଅଭିଯୋଗ

କଣୋଗୀ କରନ୍ତି । ଆଜ୍ଞାକୁ ଅବଧାନ କରି ସଙ୍ଗେ ସଙ୍ଗେ ସବୁ କାମ ହରଗ୍ରାମଣି କରିଦିଏ । ପ୍ରତିବାଦ କରେ ନାହିଁ, ଅକଥାରେ ଝାଣକରି କେବେ କଣୋଗୀ କହିଲେ ସେ ଓଲଟି ଜବାବ ଦିଏ ନାହିଁ । ଶାଶୁ ବୋଲି କଣୋଗୀଙ୍କୁ ସେ ବାହାରେ ଯେତେ ମାନ୍ୟ କଲେ ମଧ୍ୟ ମନ ଭିତରେ ନିଜକୁ ନିଜେ ସେ କହେ, ଶାଶୁ ନୁହନ୍ତି ଯେ ସେ ମୋର ସାନ ଭଉଣୀ, ତାଙ୍କ ଉପରେ ଗୋଟାଏ ମାନ କଣ ? ଆହା, ତାଙ୍କର ଅବସ୍ଥା ଯେ ମୋଠାରୁ ବଳେ ! ମୁଁ ଜାଣି ବାଳି ବିଧବା, ବ୍ରହ୍ମଚାରିଣୀ, କିନ୍ତୁ ସେ ବୃଦ୍ଧଙ୍କର ତରୁଣୀ ଭାର୍ଯ୍ୟା !

ଶାଶୁଙ୍କର ଢଙ୍ଗ ଦେଖି ଓ ସୁରେନ୍ଦ୍ର ସଙ୍ଗେ ଅତି ବେହିଆମିରେ ଅଛାନକଲି, ହାସ ପରିହାସ ଦେଖି ହାରାମଣି ନିଜେ ଲଜ୍ଜିତ ହୁଏ, ଦୁଃଖିତ ହୁଏ । ସହି ହୁଏନାହିଁ କି କହି ହୁଏନାହିଁ । ନିଜେ ସାବଧାନ ରହେ । କିପରି ଏହାର ପ୍ରତିକାର କରିବ ତାହାହିଁ ଚିନ୍ତାକରେ ।

ହାରାମଣିର ଆଖିକୁ ସେମାନଙ୍କର ଢଙ୍ଗ ଭଲ ଦେଖାଗଲା ନାହିଁ । ଅଛା ନକଲର ସୀମା ଅଛି, କିନ୍ତୁ ଏମାନେ ଏକାଥରେ ଭଦ୍ରତାର ସୀମା ଟପି ଆଗକୁ ବହକି ପଡ଼ୁଛନ୍ତି । ଶାଶୁ ହେଉନ୍ତୁ ବା ଯେ କେହି ହେଉ, ଅଭଦ୍ର ଚଳନ ଆଉ କଣ ତା ଆଖିକି ଭଲ ଦିଶନ୍ତା ? ସବୁବେଳେ ହେଁହେଁ ଫେଁଫେଁ, ସବୁ କଥାରେ ହେରେସାମି, ଛି ! ପିଲମି ବୋଲି କିଏ କାହିଁକି କହିବ ? ପିଲମି ଖାଲି ଏକୁଟିଆ ଜାଗାରେ ମାଗେଲାରେ ଚଳେ ? ଶବ୍ଦରେ ଆସି ପହଞ୍ଚିଲେ କିମ୍ବା ହାରା ନିଜେ ସେମାନଙ୍କ ପାଖକୁ ଗଲେ ହଠାତ୍ ଅଛା ତାମସା ବନ୍ଦ ହୋଇଯାଏ କାହିଁକି ?

ହାରାମଣିର ମନରେ ସନ୍ଦେହର ବଉଦ ଘୋଟେ । ଏପରି ଲୁଚକଚପା ଖେଳର ଶୀଘ୍ର ପ୍ରତିକାର୍ କରିବାକୁ ହେବ । ବଣରେ ନିଆଁ ଲଗିଲେ ନିଆଁ ଚନ୍ଦନ ଗଛକୁ ବାଛି ବାଛି ଗ୍ରୁଡ଼ିସିବା କେଉଁଠି ଦେଖା ନାହିଁ । ବନ୍ଧ ଭାଙ୍ଗିଲେ ବଢ଼ି ପାଣିରେ ସମସ୍ତେ ଉବୁଟୁବୁ ହୁଅନ୍ତି । ଚଳନ୍ତା ପାଣି ଭଲମନ୍ଦ କି ଠାକୁର ଘର ମାନେ ନାହିଁ, ସବୁ ଭସ୍ତିନିଏ ।

ଗ୍ରୁର ପୋଇଲଟା, ବାପ୍‌ରେ ତାର କେଡ଼େ ବହପ, ସେଦ୍ରେଶା ମାକୁ କହିଲା, ସ୍ୱେ କନିଆଁ ମାଇପ ତ ସେ ଗ୍ରଣ୍ଡ ବୋଡ୍ରୁ, ବାଘଘରେ ମିରଗର ନାଟ ଲଗିଛି । ତୁ ତ ମୁରୁଖ ମୁଁ ତ ମୁରୁଖ ହେଁସ କାହିଁପାଇଁ ଧୋଇବା ?

ସତ କଥା, ବିଲେଇ ଆଖି ବୁଜି ଦୁଧ ପିଇବ ବୋଲି ସଂସାର ଲୋକେ ଅନ୍ଧ ହୋଇ ବସିଥିବେ, ଦେଖିବେ ନାହିଁ କି ଜାଣିବେ ନାହିଁ ? ହାରା ଦୀର୍ଘଶ୍ୱାସ ଗ୍ରୁଡ଼ିଲା । ଗୋରୁମୁଣ୍ଡ ଥି ପିଲା ପରି ଗେରସ୍ତ ନାମରେ ଖଣ୍ଡେ ଟିକଟ ଯାହାର ଅଛି ତାକୁ କଣ ତିନି ଖୁଣ ମାଫ୍ ? ଧର୍ମ-ମନ୍ଦିର ଭିତରକୁ ପଶିବାକୁ ତ ଆଗ ଏହି ଟିକଟ ବା ପାସ୍ ଖଣ୍ଡି ଲୋଡ଼ା ! ଆଖି ଯେ ରହିଲେ, ସବୁ ପଡ଼ିବେ ପଛରେ । ଦୁର୍ବଳ ଉପରେ ଆଗ

ମାଡ଼ ବସେ । ବସ୍ତୁର ହେଲେ ଯେ ପଛେ ପଟରେ ଦୋଷୀ ସାବ୍ୟସ୍ତ ହେଉ, ମାଡ଼ର ଦୁଃଖ ତ ସହିବାକୁ ପଡ଼ିବ ?

କାହାକୁ ଘୃଣା କରିବାର ଅଭ୍ୟାସ ହାରୀର ନାହିଁ । ସେ ଭଲକରି ବୁଝିଛି ମଣିଷ ସବୁବେଳେ ମଣିଷ । ଭୁଲ୍ ଭଟକା ପ୍ରତି ପଦରେ ହୁଏ । ଘୃଣା ପରିବର୍ତ୍ତିରେ ସହାନୁଭୂତି ଲୋଡ଼ା । ଭଲରେ ଭଲରେ ଆଗରୁ ଚେତାଇ ଦେବା ଆବଶ୍ୟକ । ନେଡ଼ି ଗୁଡ଼ କହୁଣୀକୁ ଗଡ଼ିଲେ ଆଉ ବଳ ପାଇବ ନାହିଁ ।

ସବୁଦିନପରି ପରଦିନ ହାରୀ ଘର ଧନ୍ଦାରେ ମନ ପ୍ରାଣ ଢାଳି ଦେଲା । ତାର କେଉଁ କାମକୁ ଭଲ ମନରେ କିଏ ବାଛିଦେବ ? ସେ ଦିନ ସକାଳୁ ଶଶୁରେ କାହାର ଶ୍ରାଦ୍ଧ ଉପଲକ୍ଷରେ କେଉଁ ଦୂର ଗାଁକୁ ଚାଲିଗଲେ । ଖରାଏ ଖରାଏ ଫେରି ଆସିବେ ବୋଲି କହିଛନ୍ତି ସିନା, ଆସିବା ସେତେ ସମ୍ଭବ ନୁହେଁ । ଶାଶୁଙ୍କର ସେବା ଶେଷକରି ଶ୍ରୀନାଥକୁ ନିଜ ହାତରେ ଗାଧୋଇ ଦେଲା । କୋଳରେ ବସାଇ ବାପ ଲୋ, ଧନ ଲୋ, ସୁନା ଲୋ କହି ବଳେଇ ବଳେଇ ଭାତ ଖୁଆଇ ଦେଲା ।

ନାଥ ଅତି ଗେହ୍ଲାରେ ତାର ନୂଆବୋଉକୁ ଦି ପୁଳା ଚୁମିଦେଲା । ହାରୀର ଆଖିରେ ଲୁହ ଛଳ ଛଳ ହେଲା । କେତେ କଥା ତାର ପ୍ରାଣକୁ ଛୁଇଁ ଚାଲିଗଲା । ଶିଶୁ ସଭିଙ୍କର, ଶିଶୁକୁ ଯେ ଘୃଣାକରେ, ଶିଶୁମାନଙ୍କୁ ଯେ ପାତର ଅନ୍ତର କରେ, ସେ ମୂର୍ଖ, ତାର ମଣିଷପଣିଆଁ ନାହିଁ । ଖାଲି ଗେରସ୍ତର ଯୋଗେଇତର ହେଲେ ଘର ସୁନ୍ଦର ହୁଏ ନାହିଁ, ଗେରସ୍ତର ଅମୂଲ୍ୟ ନିଧିକୁ ସ୍ନେହ କଲେ ସବୁ ସୁନ୍ଦର । ଧିକ୍ ସେ ସ୍ତ୍ରୀ ଯାହାର ବକ୍ଷସୁଧା ଶିଶୁ ପାନ କରି ନାହିଁ, ଯାହାର କାନରେ ଶିଶୁର ଦିଓଟି ମଧୁର ଡାକ ମା ପଡ଼ି ନାହିଁ, ଯାହାର ଆଗ୍ରହୀ ଓଠ ଶିଶୁର କଅଁଳ କପାଳ ସ୍ପର୍ଶ କରି ନାହିଁ, ଯାହାର ବାହୁଦ୍ୱୟ ଶିଶୁ ଦେବତାକୁ ଆଲିଙ୍ଗନ କରି ନାହିଁ, ଯାହାର କଅଁଳ କୋଳ ଶିଶୁର ଝୁଲିବାର ଆସନ ହୋଇ ନାହିଁ । ତାର ନାରୀଜନ୍ମର ସାର୍ଥକତା ନାହିଁ ! ଯେ ବିଧବା, ପୁଣି ବାଲ୍ୟ ବିଧବା, ସେ ଏହି ସ୍ୱର୍ଗୀୟ ସୁଖ ଆନନ୍ଦରୁ, ଏପରି କି ଆଶାରୁ ମଧ୍ୟ ବଞ୍ଚିତ !

ହାରୀର ଆଖିରେ ଲୁହ ଦେଖି ନାଥର ଆଖି ଛଳ ଛଳ ହୋଇ ଆସିଲା । ସେ ଭୟରେ ହାରୀର ପିଠିରେ ଲଦି ହୋଇ ପଚାରିଲା, କାନ୍ଦୁଛ କାହିଁକି ?

ହାରୀ ନାଥକୁ କୋଳ କଲା । ତାର କଅଁଳ ମୁହଁରେ ଅଜସ୍ର ଚୁମ୍ବନର ଧାରା ଢାଳି ଦେଲା । ହସିଲା ମୁହଁରେ କହିଲା, ନାହିଁ ତ ତମେ ଯାଃଖଟ ଉପରେ ପାରି ଦେଇ ଆସିଛ, ତୁନି ହୋଇ ଶୋଇ ପଡ଼ିବ ।

ତମେ ଗିତ ନାହିଁ, କଥା କହିବ ପରା ?

ଦିନରେ କଥା କହିଲେ ଡାଆଣୀ ହୁଅନ୍ତି, ରାତିରେ କହିବି ।

ନୂଆ ଗୀତ ଲେଖିଦବ ନାହିଁ ? ଆଗ ଗୀତଟି ମୁଁ ମୁଖସ୍ଥ କରିଛି ।

କାଲି ଲେଖିଦେବ, ଯାଅ ।

ନାଥ ଯାଉଁ ଯାଉଁ ଫେରି ଆସି କହିଲା, ହଁ ନୂଆବୋଉ, କାହିଁକି କାନ୍ଦୁଛ, ମୁଁ ଜାଣିଲିଣି ଯେ, ସୁରେନ୍ ବାବୁ ମାଆଙ୍କୁ ଗୋଟାଏ ସୁନାହାର ଦେଇଛନ୍ତି ।

ହୀରାର ମୁହଁ ଶୁଖିଗଲା । କିଛି କହିଲା ନାହିଁ । ନାଥ ଭାବି ଭାବି ପୁଣି କହିଲା, ନଇଲେ ସୁରେନ୍ ବାବୁ ଆସନ୍ତୁ, ତମକୁ ଗୋଟାଏ ହାର ଦେବାପାଇଁ ତାଙ୍କୁ କହିବି ।

ହୀରା ଚମକି ଉଠିଲା । କହିଲା, ଛି, ମୋର ହାର ଦରକାର ନାହିଁ । ତମେ ପାଠ ପଢ଼ି ବଡ଼ ମଣିଷ ହୁଅ, ତମେ ରୋଜଗାର କଲେ ମତେ ଦବ ଯେ ମୁଁ ମୋ ଝିଅବୋହୂ ପାଇଁ ସାଇତି ରଖିବି । ସେ ଆମ ଘରକୁ ଆସିଲେ ତାକୁ ପିନ୍ଧାଇ ଦେବି । ତମେ ଯା ଶୋଇବ ।

ନାଥ ସନ୍ତୁଷ୍ଟ ହୋଇ ପାରିଲା ନାହିଁ । ଝିଅ ବୋହୂ ପୁଣି କିଏ, ସେ କେଉଁଠି ଅଛି, କେବେ ଆସିବ, ଏସବୁ ପ୍ରଶ୍ନ ତା ମନକୁ ଆସିଲା । ବେଶି କଥା ପଚାରିଲେ ନୂଆବୋଉ ବିରକ୍ତ ହୁଅନ୍ତି । ତେଣୁ ସେ ଧୀରେ ଧୀରେ ତାଙ୍କ ପାଖରୁ ଉଠି ଚାଲିଗଲା ।

## ନଅ

ହୀରା ଦି ପହରେ ଆଉ ନାଥକୁ ପଢ଼ାଏ ନାହିଁ । ଶାଶୁଙ୍କ ପାଖରେ ରହେ, ପାଦସେବା କରି ସମୟ କଟାଏ । କଣେଇ ଯେତେ ଅନୁରୋଧ କଲେ କି ବିରକ୍ତ ହେଲେ ସେ ପାଖରୁ ନଯାଇ ଶାସ୍ତ୍ର ପୁରାଣରୁ କଥା କହି ଶୁଣାଏ ।

ଖରାଦିନର ନିରାଟ ଖରାତାତିକୁ ଉପେକ୍ଷା କରି ସୁରେନ୍ଦ୍ର ଖୁସିବାସିରେ ଆଈଙ୍କ ସଙ୍ଗେ ଦି ପଦ ମିଠା କଥାଭାଷା ହୋଇ ସମୟ କଟାଇବାକୁ ଆସି ପହଞ୍ଚେ । ସେ ଦେଖେ ହୀରା କଣେଇଙ୍କ ପାଖରେ ବସିଛି । ଚିଡ଼ି ମାଡ଼େ । ଭରସି କରି ଆଗପରି କିଛି କହି ପାରେ ନାହିଁ । କଣେଇ ଆଦର ଅଭ୍ୟର୍ଥନା କରି ପାରନ୍ତି ନାହିଁ । ସୁରେନ୍ଦ୍ର କରଛଡ଼ା ଦେଇ ପାଞ୍ଚ ଦଶ ମିନିଟ ରହି ଫେରିଯାଏ । କେବେ କେବେ ନୂଆବୋହୂ ହିସାବରେ ହୀରାମଣିକୁ ଦି ଚାରିପଦ ଥଟ୍ଟା କରେ କିନ୍ତୁ ଉତ୍ତର ପାଏ ନାହିଁ । ଗମ୍ଭୀର ମୁହଁରେ ଯା ପଲା ଯା, ଗୃହିଣୀର ନିର୍ଦ୍ଦେଶ ପାଇ ସେ ପୃଷ୍ଠଭଙ୍ଗ ଦିଏ ।

ଏହିପରି କିଛିଦିନ କଟିଗଲା । ଯେ ଦୋଷୀ, ତାର ସବୁବେଳେ ସଂକୋଚ, ସବୁବେଳେ ଭୟ । କଣେଇ ମନେ ମନେ ହୀରା ଉପରେ ରକ୍ତଚାଉଳ ଚୋବାନ୍ତି । କିଛି କହି ପାରନ୍ତି ନାହିଁ । ତାଙ୍କ ମନର ଆକ୍ରୋଶ ଅନ୍ୟ ଉପାୟରେ ଶୁଝାନ୍ତି । ନାନାପ୍ରକାର ଖିଆଲ ଧରି, ଦୋଷ ଦେଖାଇ ମୁହେଁ ମୁହେଁ ଶୋଧନ୍ତି । ମୁହଁ

ସବୁବେଳେ ହାଣ୍ଡି ଉପରେ ଲଦିଥାନ୍ତି । କିନ୍ତୁ ହାଣ୍ଡିର କୌଣସି କଥାରେ ଛଳ ନ ଥାଏ । ସେ ମରମ ଜାଣେ, ତାକୁ ଖାଲି ହସ ମାଡ଼େ ।

ଦିନକର ଘଟଣା । ବିନା କାରଣରେ କଶୋଣ୍ଡି ଶୋଧୁଛନ୍ତି, ହାଣ୍ଡି ହସି ହସି କହିଲା, ମୋର ଯଦି ଭୁଲ୍ ହେଉଛି ତ ଭଲରେ ବତେଇ ଦେଲେ ମୁଁ ଭବିଷ୍ୟତ୍‌କୁ ସାବଧାନ ହେବି । ଉଚ୍ଛାରେ ବିରକ୍ତ ହେଲେ କ୍ଷତି ହେବ ତମର ବୋଉ ।"

ଗୃପଡ଼ା ଖାଇଲାପରି କଶୋଣ୍ଡି ତୁନି ରହିଲେ । ସାମାନ୍ୟ ଘଟଣାରୁ ଗୋଟିଏ ନୂଆ ଅଭିନୟର ସୂତ୍ରପାତ ହେଲା । ସ୍ୱାମୀଙ୍କ ପାଖରେ ସାକୁଲେଇ ହୋଇ କଥା କଥାକରେ ହାଣ୍ଡିର ଦୋଷ ବାହୁନିବା ହିଁ ହେଲା ତାଙ୍କର କାମ । ବେହିଆ, ହେରେସୀ, ଡବଡବୀ ଇତ୍ୟାଦି କେତେ ବିଶେଷଣ କ୍ରମେ ହାଣ୍ଡିର ଉପାଧି ରୂପେ ପରିଗଣିତ ହେଲା । ଖିରସ୍ତାନ ମାଇକିନିଆଙ୍କ ପରି କା'ହାକୁ ଆଡ଼ ହୁଏ ନାହିଁ, ବାର ଲୋକଙ୍କ ସଙ୍ଗେ ଲଜ୍ଜା ପଣରେ କଥାଭାଷା ହୁଏ । ଛୁଆଁ ଛୁତ ମାନେ ନାହିଁ । ଗୀତ ବୋଲେ । ପବିତ୍ର ବ୍ରାହ୍ମଣଘରବୋହୂର ଏପରି ଢଙ୍ଗ ଦେଖିଲେ ଲୋକେ ନିନ୍ଦିବେ, ଘରର ମହତ ଯିବ । ଦୁନିଆରେ ନାମ ପଡ଼ିବ । ଲୋକଙ୍କ କଥାକୁ ପଗୃରେ କିଏ ? ଧର୍ମ ସହିବ ନାହିଁ । ଇଷ୍ଟଦେବତାଙ୍କ ପୂଜା ସେ କରେ ନାହିଁ । ଅଲକ୍ଷଣୀ ଚନ୍ଦ୍ର ଅଛି । ଯେଉଁପୁରେ ପଶିବ ସେ ପୁର ନାଶିବ । ସେ ଗୃଲି ଜାଣେ ନାହିଁ, କଥା କହି ଜାଣେ ନାହିଁ । ଭଲରେ ମନ୍ଦରେ ପଦେ କହିଲେ ଖୁଣ୍ଟପରି ବସେ । ମନ ମୋଟ, କାଉଖୋର୍ । କାମ ବରଗିଲେ ତେଉ଼ି ଦିଏ ।

କଥାରେ ଅଛି, ପାଖରେ ଶୁଏ କାନରେ କହେ ତା କଥା କି ଅନ୍ୟଥା ହୁଏ ! ବିଶେଷତଃ ବୃଦ୍ଧସ୍ୟ ତରୁଣୀ ଭାର୍ଯ୍ୟା । ମିଶ୍ରେ ସ୍ତ୍ରୀଙ୍କ କଥାରେ ବିଶ୍ୱାସ କରନ୍ତି । ଅବଶ୍ୟ ପୂର୍ବୋକ୍ତ ଗୁଣମାନଙ୍କ ମଧ୍ୟରୁ କୌଣସିଟିର ନମୂନା ସେ ବୋହୂଙ୍କଠାରେ ଦେଖି ନାହାନ୍ତି, ତଥାପି ବିଶ୍ୱାସ ନ ଗଲେ ଯୁବତୀ କଶୋଣ୍ଡି ସତ୍ୟାଗ୍ରହ ଆରମ୍ଭ କରିବେ । ସେତେବେଳକୁ ଉପାୟ କଣ ? ମିଶ୍ରେ ମିଠାକଥା କହି ସ୍ତ୍ରୀଙ୍କର ରାଗ ଶାନ୍ତ କରିବାକୁ ଚେଷ୍ଟା କରନ୍ତି, ମାତ୍ର ଠାକୁରାଣୀଙ୍କୁ ଏତେ ସହଜରେ ସନ୍ତୋଷ କରିବା ଅସମ୍ଭବ । ଏଣୁ ମାଇଲେ ବ୍ରହ୍ମହତ୍ୟା ତେଣୁ ମାଇଲେ ଗୋହତ୍ୟା ! ମହାବିପଦ । ସବୁଠୁ ଚୁପ୍ ଭଲ ।

ଦିନକର ଘଟଣା—ଚୂଲି ଉପରେ ହାଣ୍ଡି କୁହୁଳି ଯାଉଛି, ତର ତର ହୋଇ ହାଣ୍ଡି ତେଲ ଘଡ଼ି ଆଉ ଘରୁ ନେଇ ଯେମିତି ତୁଣ ବଘାରିବାକୁ ବାହାରିଲା, ନାଥ— ଭାଇ ଜଞ୍ଜାଳିଆ ତ ସେ, ତାର ସବୁ ଜଞ୍ଜାଳ ତା ନୂଆବୋହୂ ପାଖରେ—କାନ ଧରି ଟିକିଏ ଓଟାରି ଦେଲା, ଉଦ୍ଦେଶ୍ୟ ହାଣ୍ଡି ଚେଁଷାଇ ନ କରି ତାକୁ ଅଗ ଅଙ୍କ ବତେଇ ଯିବ । ହାଣ୍ଡିମଣି ଦୁଆରବନ୍ଧ ଝୁଣ୍ଟି ପଡ଼ିଲା । ତେଲ ତ ଇଡ଼ିଗଲା, ଚୌକାଠରେ ମୁଣ୍ଡ ବାଜି ରକ୍ତ ବାହାରିଲା । ନାଥ ଏ ଦୃଶ୍ୟ ଦେଖି ତାଟଙ୍ଗା । ତାର୍ ଭ୍ରୋଟ ଭ୍ରୋଟ ଆଖି

ଧଓଟି ଲୁହ ଛଳ ଛଳ ହୋଇ ଆସିଲା । ହାସ୍‌ ତା ମୁହଁକୁ ଗ୍ରହି ନଜର ସବୁ ଦୁଃଖ ଭୁଲି ତାକୁ କୋଳ କରି ବୁଝାଇଲା । ପରେ ଅଧିକା ତେଲ ନେଇ ତରକାରି ବଘାରିଲା ।

ଏ ଦୃଶ୍ୟ କଣୋସ୍ତାଙ୍କ ଆଖିକୁ ଠକ ଦେଇ ପାରିଲା ନାହିଁ । ରାତିରେ ସ୍ୱାମୀଙ୍କ ଆଗରେ କେତେ ଗୁଣ ନିସ୍ୱନ ପକାଇ, ଦେହକୁ ଛୁଇଁ ଟିକି ଟିକି କରି ସବୁ କହି ମତ ପ୍ରକାଶ କଲେ, ବୋହୂଟା ଅଭଲ, ଅଥରପୀ । ଗୃଲି ଯାଉଁ ଯାଉଁ ଦଶ ଥର ଗୋଡ଼ ବାଜିବ । ରୁଚ୍ଛା କଥାରେ ବୋଲଣା ହେବ । ଜିନିଷପତ୍ର ପ୍ରତି ଯତ୍ନ ନାହିଁ । ସ୍ୱା ଭାଙ୍ଗ, ତା ଭାଙ୍ଗ, ସେରକ ଜାଗାରେ ପାଞ୍ଚପା ଖର୍ଚ୍ଚ । ଦାତାପଣକୁ କର୍ଣ୍ଣ । କିଏ ଶାଗପତରଟାଏ ମାଗିଲେ ତାକୁ କଦଳୀ ଫେଣାଏ ନୋହିଲେ ସାରୁ ବିଶାଏ ଦେବ । କେଉଁ ପାଣି କେଉଁ ସୁଅରେ ଆସୁଛି ସେ କଣ ବୁଝିଛି ନା ତା ଗଣ୍ଠିକି କିଛି ଲାଗିଛି ? କୁଣିଆଁ ପରି ଧନ କଟାଇବା ସାର ମନେ କରୁଛି । ଶ୍ୱଶୁରେ ଯେ କୁଟୁମ୍ବ ପୋଷିବା ପାଇଁ ଧନ ନାହିଁ ରାତି ନାହିଁ, ଖରା ନାହିଁ ବର୍ଷା ନାହିଁ ସବୁବେଳେ ବୁଲୁଛନ୍ତି, ଏ ଚିନ୍ତା କଣ ଦଣ୍ଡେ ହେଲେ ସେ କରେ ?

ସ୍ୱାମୀଙ୍କର ଗୋଡ଼ ଘସି ଦେଉଣୁ ମନକୁମନ ବ୍ୟସ୍ତ ହୋଇ ସେ ପୁଣି କହିଲେ, ଅହା, ଅଜ ଏ ନିରାଟ ଖରାରେ କେତେ ବୁଲିଥିବ ତ, ଗୋଡ଼କୁ ଭାରି ବାଧା ହୋଇଥିବ । ନା, ଆଉ ଏଥର ତମକୁ ମୁଁ ଖରାବେଳେ କୁଆଡ଼େ ଗ୍ଛାଡ଼ିଦେବ ନାହିଁ । ଖରା ନଇଁଲେ କି ଗ୍ଛାଇ ଲେଉଟିଲେ ପଛେ ଗଣ୍ଡାଏ ଜଳଖିଆ କରି ଯୁଆଡ଼େ ଯାଇ ବୁଲୁଥାଅ ।

ସ୍ତ୍ରୀଙ୍କ ତୁଣ୍ଡରୁ ଏପରି ପ୍ରେମିଳ ମିଠା କଥା ଶୁଣି ମିଶ୍ରେ ମନେ କଲେ ସେ ଅଧା ସ୍ୱର୍ଗରେ । ତାଙ୍କ ଆଡ଼ୁ ପୁଣି ଅଗାଧ ପ୍ରୀତିର ଗୋଟାଏ ପରିଚୟ ଦେବା ଦରକାର, ନୋହିଲେ ରସିକତା ହାନି ହେବ ଯେ ! ମିଶ୍ରେ ତାଙ୍କର ଦୁଇଟି ଦୁର୍ବଳ ହାତରେ କଣୋସ୍ତାଙ୍କର ଦେହକୁ ଗୁଡ଼ାଇ ଧରି ଶୁଖିଲା ମୁହଁଟି ତାଙ୍କ ମୁହଁରେ ଲଗାଇ କହିଲେ, କଣ କହୁଥିଲ ?

ସେଇ ତମ ଚୂଲି ଗାତ ନିଆଁ ପାଉଁଶ ପାଠୋଇ ବୋହୂଙ୍କ କଥା । ଘରେ ଆଉ ବେଶି ଧନ ରହିଲେ ଘରକୁ ଉଜାଡ଼ ସତ୍ୟାନାଶ କରି ଦେବ । କାହିଁକି, ତାଙ୍କୁ ବାପଘରକୁ ବିଦା କରି ଦଉନା ? ସେ ନଥିଲାବେଳେ କଣ ଆମର କୋଉ କାମ ବାକିଆ ପଡ଼ୁଥିଲା କି ? ଆଜିକାଲି ଏ ମହଙ୍ଗା କାଳରେ ଗୋଟାଏ ମଣିଷ ପୋଷିଲେ ଯାହା ଗୋଟାଏ ହାତୀ ପୋଷିଲେ ତାହା । କି ଯୋଗରେ ପୁଅକୁ ଏ ଅଲକ୍ଷଣୀକି ବାହା କଲି, ଯେ ସୁଖ ବେଳକୁ ଦାଇବ ମୁଣ୍ଡରେ କାଠେ ଦେଲା । ଆଉ ତା ସଙ୍ଗେ ଆମର ‘କେ ସମ୍ପର୍କ, ରୁଚ୍ଛା ଅପବାଦର ବୋଝ ମୁଣ୍ଡରେ ଲଦି ହେବା କଥା ।

କଶୋଣୀ ଅତି ତୀକ୍ଷ୍ଣ ଦୃଷ୍ଟିରେ ମିଶ୍ରଙ୍କ ମୁହଁକୁ ଚାହିଁ ତାଙ୍କ ମନକଥା ବୁଝିବାକୁ ଚେଷ୍ଟା କଲେ । ଯେତେହେଲେ ଭଗବାନ ମିଶ୍ରେ ପୋରଖା ଲୋକ । କୌଣସି କଥାରେ ଅଣ୍ଡାପର ନ ଦେଖି ସେ ଡେଇଁ ପଡ଼ନ୍ତି ନାହିଁ । ବୁଝି ସମଝି କାମ କଲେ ପ୍ରମାଦ ନ ପଡ଼ଇ ଭଲେ । ତଥାପି ଘରଣୀଙ୍କ ମନ ରଖି ପଦେ ନ କହିଲେ ନ ଚଳେ । ସେ କହିଲେ, ବୋହୂଙ୍କୁ ସିନା ତମେ ସବୁ କଥାରେ ଆକଟିବ, ଆମେ ମରଦପଣିଆ ଲୋକ, ସେଥିକ କଣ କରି ପାରିବୁ ?

କଶୋଣୀ ବିରକ୍ତ ସହକାରେ ମୁହଁ ମୋଡ଼ି କହିଲେ, ଏତେ ଆକଟାଆକଟି କାହିଁକି ? ମୂଳୁ ମାଇଲେ ସିଂ ସରି ଦେବଙ୍କ ସଙ୍ଗେ କମ୍ପା କଲ । ଗୋଡ଼ରେ କଣ୍ଟା ପଶିଗଲେ କଣ୍ଟାକୁ ଟାଣି ଫୋପାଡ଼ି ନ ଦିଏ କିଏ ? ଆମର ଏ ସୁଖର ସଂସାରରେ ଏ ନଥାଁ ଲାଗି ପୋଡ଼ାକପାଳୀ ସେମିତି ଗୋଟାଏ କଣ୍ଟା । ଭଲରେ ଭଲରେ ବାପଘରକୁ ବିଦାକରି ଦେଲେ ତ ଯାଏ ।

ମିଶ୍ରେ କହିଲେ, ସୁଲକ୍ଷଣୀ ହେଉ କି ଅଲକ୍ଷଣୀ ହେଉ ପୁଅର ସେ ହାତ ଧରିଥିଲା । ସେ କୁଳର ବୋହୂ । ଘରୁ ତଡ଼ି ଦେଲେ ଦାଣ୍ଡ ଲୋକେ କହିବେ, ଦେଖ, ଅମୁକ ମିଶ୍ରେ ବିନାଦୋଷରେ ବୋହୂଟାକୁ ଘରୁ ତଡ଼ି ଦେଲା । ଘର ଭିତରେ ଆମର କଣ ହେଉଛି ଦେଖୁଛି କିଏ ? ତୁମେ ତାଙ୍କୁ ଶାସନ କର, କାମ ଶିଖାଅ, ଢଙ୍ଗ ଶିଖାଅ ।

କଶୋଣୀ ମୁହଁ ଲଦି ଅଭିମାନରେ ବୁଲି ଶୋଇଲେ, କିନ୍ତୁ ମନରୁ ଅଳୁହା ଆଶାଟିକୁ ତଡ଼ି ପାରିଲେ ନାହିଁ ।

ସୁବିଧା ପାଇଲେ ଦିନେ ଦିନେ ଏହିପରି ପଦେଅଧେ କହି ବୋହୂକୁ ବାପଘରକୁ ପଠାଇବାର ପ୍ରସ୍ତାବ ବାଢ଼ନ୍ତି । ଶ୍ୱଶୁରଙ୍କ ନିକଟରେ ହାରିକୁ ଓଲେଇ, ନିଗ୍ରହଣୀ, ଖୋରଣୀ ଏପରି କେତେ ନାମରେ ପରିଚିତ କରାନ୍ତି । କିନ୍ତୁ ହାରିର ନାଥ ପ୍ରତି ପ୍ରଗାଢ଼ ସ୍ନେହ ଦେଖି ମିଶ୍ରେ ଏ ସବୁ କଥାକୁ ଗ୍ରହଣ କରନ୍ତି ନାହିଁ । ତୁଣ୍ଡରେ ନ କହିଲେ ମଧ୍ୟ ହାରିର ଢଙ୍ଗ, କାର୍ଯ୍ୟନିଷ୍ଠା, ବୁଦ୍ଧି ଓ ନାଥ ପ୍ରତି ସ୍ନେହ ଦେଖି ମିଶ୍ରେ ସନ୍ତୁଷ୍ଟ ହୁଅନ୍ତି ।

ଶାଶୁଙ୍କର ଉଦ୍ଦେଶ୍ୟ ଓ ଚକ୍ରାନ୍ତ ହାରାମଣି ବୁଝି ପାରିଛି । କଣ କରିବ, କର୍ମ କଠିଣ ଦେହ ସହେ ଅରଣ୍ୟେ ଅଜଗର ପ୍ରାୟେ । ସୁଖ ଦୁଃଖ ଯାହା ଆସୁ ସବୁ ଦହିବାକୁ ହେବ । ଘରେ ଯେପରି ବ୍ୟଭିଗ୍ରହ ନ ପଶେ ସେଥିପ୍ରତି ସ୍ୱତର୍କ ହେବାକୁ ହିଁ ହେବ । ସମ୍ପର୍କରେ ଶାଶୁ ହେଲେ ବି କଶୋଣୀ ଛଳ ଛଳ ମତ ଯୁବତୀ, ତାଙ୍କର ମନ ପକ୍ଷୀରାଜ ଘୋଡ଼ା ଚଢ଼ି ଉଡ଼ିବାକୁ ଚାହେଁ ।

ସୁରେନ୍ଦ୍ର ଆଖିମିଟିକା ମାରୁଛି, ଆଉ ହିସାବ କରି କେବଳ ଅଙ୍କ ନକଲ କରି ସନ୍ତୁଷ୍ଟ ହେଉ ନାହିଁ । ଉପହାର ଦେଇ କଶୋଣୀଙ୍କୁ ବଶ କରୁଛି । ଟିକିଏ

ବେଲ କି ସୁବିଧା ପାଇଲେ ଧରାପଡ଼ା ହେଉଛନ୍ତି । ଏ କି ପ୍ରକାର ଅଣ୍ଡା ? ଏତେ ରଜଘସ, ଯୁବତୀ ସ୍ତ୍ରୀ ଅନ୍ୟର ଘରଣୀ ପାଖରେ ଶୋଭାପାଏ ନାହିଁ । ଯାହା ହେବାର ଥିଲେ ହେଉ, ମିଶ୍ର ବଂଶର ମର୍ଯ୍ୟାଦା ରକ୍ଷା ପାଇଁ ଦୁହିଁଙ୍କର ଲୁଚକାଲି ଖେଳ ସେ ବନ୍ଦ କରିବ ।

ହାରାମଣି ଏହି ନିଷ୍ପତ୍ତି କଲା—

## ଦଶ

ହାରା ଦିନକିନ ହେଲା ବାଧକା ପଡ଼ୁଛି । ରୋଗ ବୈରାଗ କପାଳ ଘେନି କେବେ ଆସେ, କେବେ ଯାଏ । ଜରୁଆ ଦେହରେ ସବୁ ପାଇଟି ଆଗ ପରି ସେ ତୁଲଉଛି । ହେଲେ ଦିପହର ବେଳେ ଶାଶୁଙ୍କ ପାଖକୁ ନ ଯାଇ ନାଥ ପାଖରେ କଟାଉଛି । ନାଥ ମନ ମାରି ତା ନୂଆବୋହୂକୁ ଆଉଜି ବସେ । କେତେ ପିଲାଳିଆ ଗପ କରୁଥାଏ । ଦେଖେ, ତା ନୂଆବୋହୂର ଆଖିରେ ଲୁହ ଢଳ ଢଳ ହୁଏ । ନାଥ ବିକଳ ହୋଇ ହାରାର ଗ୍ରୀବା ଉପରେ ଲେଟିଯାଏ । ପଚାରେ, ତମେ କାନ୍ଦୁଛ କାହିଁକି ? ହାରା ପିଲାଟିକୁ କୋଳକୁ ନେଇ ଗେଲ କରେ ।

ଆଉ କାହାର ଯାଏ କେତେ ଆସେ କେତେ ? ବୋହୂ ବାଧକା ପଡ଼ୁଛି ବୋଲି ଶାଶୁ ଜାଣି ମଧ୍ୟ ଜାଣନ୍ତି ନାହିଁ । ତାଙ୍କ ଆଖିକି ଦିଶେ ସତେ କି ହାରା ଛଟାଗାଲି ପଡ଼ିଚ । ଭଲ କଥା, ସେ ମରୁ କି ସରୁ କଣେଇଙ୍କର କି ଥାଏ ? ତାଙ୍କର ତ କଟେଇବାର । ନାତି ପିଲା ସଙ୍ଗେ କଥାଭାଷା, ଅଣ୍ଡାତାମସା କରି ବେଳ କଟାଇ ଦେବାରେ ଦିପହର ଆଖିପିଞ୍ଚୁଡ଼ା ପରି କଟି ଯାଉଛି । ଆକଟ କରି ପଦେ କହିବାକୁ କି କଡ଼ା ନଜର ଦେବାକୁ କେହି ନାହିଁ ।

ଦିନେ ସୁରେନ୍ଦ୍ର ପ୍ରାୟ ଦିନ-ଗୋଟାଏ ବେଳେ ପହଞ୍ଚିଲା । ଗତଦିନ ପରି କଣେଇ ଅତି ଆଗ୍ରହରେ କବାଟ ଖୋଲି ତାଙ୍କ ଶୋଇଲା ଘରକୁ ଡାକି ଆଣିଲେ । ଯେତେ ରହସ୍ୟପୂର୍ଣ୍ଣ କଥା କହି ତାକୁ ପ୍ରଫୁଲ୍ଲ କରିବାକୁ ଚେଷ୍ଟା କଲେ, ହେଲା ନାହିଁ । ସୁରେନ୍‌ର ମୁହଁ ସେଦିନ ବିଷାଦ, ମଳିନ । ମନ ମରି ଯାଇଛି । ଆଖି ଦିଟା ତରଙ୍ଗ ତରଙ୍ଗ ହୋଇ ଯେପରି କାହାର ଅନ୍ୱେଷଣ କରୁଛି । ପାଞ୍ଚପଦ କହିଲେ ସେ ପଦେ ଉତ୍ତର ଦେଉ ନାହିଁ । ହସ କଥାରେ ହସୁ ନାହିଁ ଅଥଚ ବାଜେ କଥାରେ ବାଧ୍ୟ ହୋଇ ହସିବାକୁ ଚେଷ୍ଟା କରୁଛି । ପିକ ପକାଇବା ବାହାନାରେ କମ୍ବା ସିଙ୍ଘାଣି ପୋଛିବା ବାହାନାରେ ବାରମ୍ବାର ପଦାକୁ ଯାଇ ଏପାଖ ସେପାଖ ଅନାଉଛି । କଣେଇଙ୍କର ତୁଣ୍ଡରୁ ପଦେ କଥା ଶୁଣିବାକୁ ଯାହାର ଆଖି କାନ ସବୁବେଳେ ସତେଜ, ସେ ଆଜି ଏତେ ଅନ୍ୟମନସ୍କ କାହିଁକି ? ଏ ଭିତରେ ନିଶ୍ଚୟ କିଛି ରହସ୍ୟ ଅଛି ।

ରହସ୍ୟ କଣ କଣୋଖାଙ୍କୁ ଅନୁମାନ କରିବାକୁ ବେଶି ମୁଣ୍ଡ ଖରଚ କରିବାକୁ ପଡ଼ିଲା ନାହିଁ । କଥାଟି ଅନୁମାନ କରିବା ସଙ୍ଗେ ସଙ୍ଗେ ତାଙ୍କ ପେଟ ଭିତର କଣ ହୋଇଗଲା । ଆହା, ଏ ମଣିଷ ଜାତିଟା ଏଇଆ, ଖାଲି ନିଜ ସ୍ୱାର୍ଥ ପାଇଁ ବ୍ୟସ୍ତ ! ଜଣକ ଉପରେ ତାଙ୍କର ରାଗ ହେଲା । କଣ କରିବେ, ଆପେ ମୋଡ଼ି ମାଡ଼ି ହୋଇ ରହିଲେ । ଅଭିମାନରେ ମୁହଁ ଲିବ ଅନ୍ୟମନସ୍କ ହୋଇ କହିଲେ, ତମେ ଆଜି ଯାଅ ସୁର, ତମ ସଙ୍ଗେ କଥାଭାଷା ହେବାକୁ ମୋର ବେଳ ନାହିଁ ।

ସୁରେନ୍ଦ୍ର ବିଚଳିତ ହେଲା । ଆଈଙ୍କ ମୁହଁକୁ ଚାହିଁଲା । ହସ ହସ ହୋଇ କହିଲା, ଘରେ ମନ ଲାଗିଲା ନାହିଁ ବୋଲି ଉଦୁଉଦିଆ ଦିପହରେ ତତଲା ବାଲିରେ ତରବର ହୋଇ ଚାଲି ଆସିଥିଲି ଆଈ ସାନ୍ତାଣୀଙ୍କ ପାଖକୁ ଯେ ଆଈ କହିଲେ ବେଳ ନାହିଁ ।

କଣୋଖା ମୁହଁ ଫଣଫଣ କରି କହିଲେ, ତମେ ଯାଅ, ବୋହୂଙ୍କ ଧିଅ ଅସୁଖ, ଉନଦିନ ହେଲା ଖିଆପିଆ ନାହିଁ । ମୁଁ ଯାଏଁ ପଥି ବସାଇବି । ଯିବାକୁ ଉଦ୍ୟତ ହେଲେ । ସୁରେନ୍ଦ୍ର ଦ୍ୱାର ନିକଟକୁ ଘୁଞ୍ଚି ଯାଇ କହିଲା, ଓହୋ, ଆଜି ତ କାହିଁକି ଭାରି ସ୍ନେହ !

ମୋ ଧିଅ ମୁଣ୍ଡକୁ ସିଏ ଜଗେ, ଏତେବେଳେ ଯଦି ତା ଧିଅ ମୁଣ୍ଡକୁ ମୁଁ ନ ଜଗିବି ଲୋକେ କହିବେ କଣ ? ଧର୍ମଦ୍ୱାରରେ ଦୋଷୀ ହେବି । ତମେ ଯିବଟି !

ସୁରେନ୍ଦ୍ର ହସ ହସ ହୋଇ କଣୋଖାଙ୍କର ହାତ ଧରିଲା । କଣୋଖା ଧୀରେ ଧୀରେ ହାତ ଖସାଇ ନେଲେ । ଭ୍ରୂଲତା ଟେକି ଆଖିର ଇସାରାରେ ଆଉ ଖଞ୍ଜାଆଡ଼େ ଚାହିଁଲେ । କହିଲେ, ବୋହୂଟା ଜରରେ ତେଣେ ଛଟପଟ ହେଉଛି ମ, ମୁଁ ଯାଇ ତା କଥା ବୁଝେଁ ।

ସୁରେନ୍ଦ୍ର କହିଲା, ଆଜି କଂସ ଭିଣ୍ଡରେ କୃଷ୍ଣନାମ ? ଆଈ, ମଧୁ ବାପାଲେ କଟକ ଯାଇଥିଲେ । ତମେ ଯାହା କହିଥିଲ ତାଙ୍କ ହାତରେ ମୁଁ ମଗାଇ ଆଣିଛି ଦେଖ ।

ସୁରେନ୍ଦ୍ର ପକେଟରୁ ଗୋଟିଏ ଗ୍ରେଟ କାଗଜପୁଡ଼ିଆ ବାହାର କଲା । ପୁଡ଼ିଆ ଖୋଲି ଦି ହଳ ସୁନାର କାନ-ଝୁମୁକା ଦେଖାଇ ପୁଣି କହିଲା, ଏ ହଳକ ତମର, ଆଉ ଏ ହଳକ ନୂଆବୋହୂର ।

ନୂଆବୋଉ ନାମ ଶୁଣି ଘୃଣାରେ କଣୋଖା ନାକ ଟେକିଲେ । ମନ ମାରି କହିଲେ, ଥାଉ, ମୋର ଲୋଡ଼ା ନାହିଁ । ଯାଅ, ତମ ନୂଆବୋହୂଙ୍କୁ ଦିଅ ।

ସୁରେନ୍ଦ୍ର ଅଭିମାନର କାରଣ ବୁଝିପାରି କହିଲା, ଆଗ ତମେ ନା ଆଗ ସେ ?

କେଜାଣି ଲୋ ମା କିଏ ଆଗ କିଏ ପଛ ତମେ ଜାଣିଥିବ । ରାଣ୍ଡ ଅଲକ୍ଷଣୀ ହେଲେ ବି ସେଇଟା ତ ନାହିଁ-ନଥିଲା ରୂପ ପାଇଛି, ନିଏଁ ପରି ଦାଉ ଦାଉ ଜଳୁଛି । ଓଠରେ ଅଲତା, ଆଖିରେ କଜଳ ଝଟକ, ଚାଲିଚୋଛଟକ ।

ସେ ଦିନ ଏହିପରି ଅଭିମାନରେ କଟିଲା । ସୁରେନ୍ଦ୍ର କାନ ଝୁମୁକା ଦି ହଳ କିଶୋରୀଙ୍କ ପାଖରେ ଥୋଇ ମନ ମାରି ଘରକୁ ଫେରିଲା । ଭାବିଲା, ଯାହା କିଶୋରୀ କହିଲେ ସେଥିରେ ମିଛ ନାହିଁ । ହାରାମଣି ଖାଲି ଜଳନ୍ତା ଅନଳ ନୁହେଁ, ଫଣାଟେକା ନାଗୁଣୀ । କେଉଁ ମନ୍ତ୍ର ପଢ଼ିଲେ ସେ ବଶ ହେବ, ଫଣା ନୋଇଁବ ? କି ପ୍ରକାର ଗନ୍ଧ ତାକୁ ଆୟତ୍ତ କରିବ ?

କିଶୋରୀ ଖଟ ଉପରେ ମୁହଁମାଡ଼ି ପଡ଼ି ରୁନି ରୁନି କାନ୍ଦିଲେ । ଗେହ୍ଲା ମା ନ କାନ୍ଦେ, ଯେବେ କାନ୍ଦେ ରୁନି ରୁନି କାନ୍ଦେ, ନୋହିଲେ କାନ୍ଥବାଡ଼ର ଆଶ୍ରୟରେ କାନ୍ଦେ । ତାଙ୍କର ସୁରେନ୍ଦ୍ର ଉପରେ, ନା ମଣିଷ ଜାତି ଉପରେ କ୍ରୋଧ ହେଲା । ଭାବିଲେ, ଏଡ଼େ ଅବିଶ୍ୱାସୀ, ଏଡ଼େ ସ୍ୱାର୍ଥପର, ପ୍ରତାରଣାଗୁଡ଼ା ସତେ ଯେପରି ପାଣିର ଗାର ଲେ ମା । କେତେ କାକୁତିମିନତି, କେତେ ଉହାଳବିକଳ, କେତେ ଆଖି ଲୁହ, ଗୋଡ଼ଧରା, ଖରା ନିଶ୍ୱାସ, କୁଆଡ଼େ ସପନପରି ଉଭେଇଯାଏ । ତମେ ସେହି ସୁରେନ୍ଦ୍ର ଟି, ଦିନ କେଇଟାରେ ଏମିତି ବଦଳିଗଲ ?

ଏଥିପାଇଁ ଦାୟୀ ତୁମେ ନୁହଁ ସୁରେନ୍, ଦାୟୀ ସେହି ରାଣ୍ଡୀ, ତାର ରୂପ, ଆଖି, ମୁଖ ଭଙ୍ଗୀ, କଥାର ଗୁରୁତ୍ୱ ! ଏଥିପାଇଁ ଅବଶ୍ୟ ତାକୁ ଅନୁତାପ କରିବାକୁ ପଡ଼ିବ । କେଉଁ ପାଣି କେଉଁ ସୁଅରେ ଯାଉଛି ଥରେ ମୁଁ ଦେଖେଁ । କିଶୋରୀ ଉଠିଲେ । ଝୁମୁକା ଦୋଟି ଧରି ହାରା ଶୋଇଥିବା ଘରେ ଉପସ୍ଥିତ ହେଲେ । ଅତି କଅଁଳ ସ୍ୱରରେ ଡାକିଲେ, ବୋହୂ, ବୋହୂ, ନାଥ—

ସଙ୍ଗେ ସଙ୍ଗେ ଘର ଭିତରକୁ ପଶିଗଲେ । ଶାଶୁଙ୍କୁ ଦେଖି ହାରା ଅସ୍ତବ୍ୟସ୍ତ ହୋଇ ଉଠିଲା । ହସ ହସ ହୋଇ କିଶୋରୀ ତା ପାଖରେ ବସିଲେ । ଦେହର ତାତି ପରୀକ୍ଷା କଲେ । ପିଠିରେ ହାତ ବୁଲାଇ କହିଲେ, ଜର କମିଛି । ହଇଗୋ ବୋହୂ, ତବ ମନ କେମିତି ବା, ଦିନଦିନ କାଳି ଧିଅ ଖରାପ ହେଲାଣି, କୁହା ନାହିଁ ବୋଲା ନାହିଁ, ଜରରେ ଜରରେ ଏତେ ଧନ୍ଦା କରୁଛ ? କାହିଁକି, ମତେ କହିଥିଲେ କଣ ମୁଁ ଏଇ କେଇଟା ଦିନ ଚଳେଇ ଦେଇ ନ ଥାନ୍ତି ? ଦିନଦିନ ହେଲା ମୋ ପାଖକୁ ଟିକିଏ ଯାଉନା ! କହିଲ ଭଲ, ଏଥିରେ ମୋ ମନ କେମିତି ଭଲ ରହିବ ?

ଶାଶୁଙ୍କର କଅଁଳ କଥା ଶୁଣି ହାରା ବିସ୍ମିତ ହେଲା । ସୂର୍ଯ୍ୟ ଆଜି କେଉଁ ଦିଗରେ ଉଇଁଥିଲେ କେଜାଣି ? ସେ ମନକୁମନ ହସି କହିଲା, କାମ ମୋତେ ବଳେଇ ପଡ଼ିଥିଲେ ତମୁକୁ କହିଥାନ୍ତି, ଏ ଘରର କାମ କେତେ ଯେ, ହାତ ହଲେଇଲେ ଦାଣ୍ଡକୁ ନାହିଁ । ଦେହ କସମସ୍ ହୁଏ ବୋଲି ଦିପହରେ ଟିକିଏ ଶୋଇପଡ଼େ ।

କିଶୋରୀ ହାରାର ହାତ ଆଉଁଷିଲେ । ହାତ ଚପିବାରୁ ହାରା ଧୀରେ ଧୀରେ ହାତ ଟାଣି ନେଲା ।

କିଶୋରୀ କହିଲେ, ସେଥିରେ କଣ ଅଛି ହାରା, ସମ୍ପର୍କରେ ସିନା ମୁଁ ତମର ଶାଶୁ, ବୟସରେ ତ ସାନ ଭଉଣୀ ପରି । ଆମର ଏ କର୍ମଭୂଇଁ । ଦି ଭଉଣୀ ପରି ଯଦି ନ ରହିବା ଘର ଚଳିବ କେମିତି ? ଶାଶୁ ବୋହୂ ମାନଂକରି ଚଳିଲେ କାହା ମନକଥା କେହି ବୁଝି ପାରିବା ନାହିଁ । ଭୁଛାରେ ଘରବେଷ, ଅଶାନ୍ତି । ବାଣ୍ଡ ଲୋକେ ଦଶକଥା କହିବେ । କହନ୍ତୁ । ଆମ ମନ ଯଦି ମିଳିଥିବ, କାହା କଥାରୁ ଆମକୁ ମିଳିବ କଣ ?

ହାରା ଶାଶୁଙ୍କ କଥାର ଅର୍ଥ ବୁଝିବାକୁ ଚେଷ୍ଟାକଲା । କେଜାଣି ଶାଶୁବୋହୂ ସମ୍ପର୍କ ଛାଡ଼ି ଯଦି ଦୁହେଁ ଦୁଇ ବନ୍ଧୁ ପରି ଦୁଇ ଭଉଣୀପରି ଚଳନ୍ତି, ହାରା ତାଙ୍କୁ ବୁଝାବୁଝି କରି ଅବାଟରୁ ବାଟକୁ ଆଣି ପାରିବ ।

ହାରା କହିଲା, ଯେ ଯାହା କହୁ ବୟସର ପ୍ରଭାବ କେହି ଏଡ଼େଇ ଦେଇ ପାରିବ ନାହିଁ । ତମେ ମୋଠାରୁ ବୟସରେ ସାନ । ତମର ପିଲା ବୁଦ୍ଧି ପିଲାକଥା କଥା । ମୁହଁରେ ମୁଁ ବୋଉ ଡାକେ କିନ୍ତୁ ମୋ ମନ ମତେ କହୁଥାଏ, ସେ ତୋର ସାନ ଭଉଣୀ ପରି !

କିଶୋରୀ କହିଲେ, ତମେ ମତେ ବୋଉ ଡାକିଲେ କେମିତି ଖରାପ ଲାଗେ, ଲାଜ ମାଡ଼େ । ଏଣିକି ମୋତେ ମୋ ନାଁ ଧରି ଡାକିବ ।

ହାରା କହିଲା, ପେଟରୁ ଜନମିଲା ପିଲାକୁ ତ ମାଆ ବୋଲି ଲୋକେ ଡାକନ୍ତି, ତମକୁ ବୋଉ ବୋଲି ଡାକିଲେ ମୋ ବୟସ ଊଣା ହୋଇ ଯିବ ନାହିଁ, ସମ୍ପର୍କରେ ତୁମେ ମୋର ବୋଉ ।

ସୁରେନ୍ଦ୍ର ସଙ୍ଗେ ଅବାଧରେ ମିଳାମିଶା କରିବାକୁ ହାରାକୁ କିଶୋରୀ ସୁବିଧା ଦେଲେ । ସେ ଭାବିଥିଲେ ହାରାର କେବେ ବେଢ଼ଙ୍ଗ ଦେଖିଲେ ସେ ବାଘ ପରି ମାଡ଼ି ବସିବେ । ଦୁନିଆଁ ରେ ଚହଲ ପକାଇବେ । ହାରାକୁ ଏ ଘରୁ ବିଦାୟ ଦେବାକୁ କଷ୍ଟ ପଡ଼ିବ ନାହିଁ । ତାକୁ ତାର ବାପ ଘରକୁ ବିଦାୟ କଲେ କିଶୋରୀ ନିଷ୍କଣ୍ଟକ ହେବେ ।

କିଶୋରୀ ହତାଶ ହେଲେ । ସୁରେନ୍ଦ୍ର ସଙ୍ଗେ ହାରାର ଅବାଧ ମିଳାମିଶା, କଥାଭାଷା, ବିତର୍କ ଭିତରେ ସେ ଯେଉଁ କିନ୍ତୁଟି ଖୋଜିବାକୁ ବସନ୍ତି ତାର ସନ୍ଧାନ ପାଆନ୍ତି ନାହିଁ । ସୁରେନ୍ଦ୍ର ସଙ୍ଗେ କଥାଭାଷା ହେଲାବେଳେ ହାରା କଥାକୁ ବୁଲାଇ ଆଣି ଅନ୍ୟ ସୁଅରେ ଛାଡ଼େ । ସେ ସୁରେନ୍ଦ୍ରର ମନରେ ଦୃଢ଼ମୂଳ କରିବାକୁ ଚାହେଁ ଯେ ସମାଜର ଉନ୍ନତି ନାରୀଜାତିର ଶିକ୍ଷା ଓ ସ୍ୱାଧୀନତା ବିନା ସମ୍ଭବ ନୁହେଁ । ବିଧବା ହେବା ଭଗବାନଙ୍କର ଦଣ୍ଡ ନୁହେଁ । ମଣିଷ ନିଜ ବାହୁବଳରେ ଯାହା କରି ପାରୁଛି କରୁ । ମଣିଷ ଯାହା ନ କରି ପାରିବ ସେଥିପାଇଁ ଭଗବାନଙ୍କୁ ଲୋଡ଼ିବ ସିନା ।

ବେଳେ ବେଳେ ଏହିସବୁ ବିଷୟ ନେଇ ସୁରେନ୍ଦ୍ର ସଙ୍ଗେ ତାର ବି ତର୍କ ଚାଲେ । କିଶୋରୀ କାଠ ପିତୁଳା ପରି ବସି ସବୁ ଶୁଣୁଥାନ୍ତି । କିଶୋରୀଙ୍କର ମନ ବିତର୍କରେ ନ ଥାଏ । ସେ ଦେଖୁଥାନ୍ତି କିଏ କାହା ଆଡ଼କୁ କିପରି ଚାହିଁଲା, କିଏ କିପରି ହସିଲା । ସୁରେନ୍ଦ୍ରର ଆଖିରୁ କଥାରୁ ହସ ଓ ଢଙ୍ଗଢାଙ୍ଗରୁ ସେ କେତେ ଇସାରା ପାଆନ୍ତି, କିନ୍ତୁ ହାରା ସବୁଦିନେ ଯେପରି ଆଜି ମଧ୍ୟ ସେହିପରି — ସଙ୍କୋଚ ନାହିଁ ଡର ନାହିଁ ଆଗ୍ରହ ନାହିଁ ଅନୁରୋଧ ନାହିଁ, ଆଦର କି ଅନାଦର ନାହିଁ ।

ସୁରେନ୍ଦ୍ର ଚାଲିଗଲା ପରେ ତାର ପ୍ରଶଂସା କରି ବୋହୂକୁ କିଶୋରୀ କହନ୍ତି, ସେ ଖୁବ ଭଲପିଲା, ସ୍ନେହୀ, ପର ଆପଣା ଭେଦ ନାହିଁ । ପର ପାଇଁ ଜୀବନ ଦେଇ ପାରେ । ହାରାମଣିକୁ ସେ ଭଲପାଏ ।

ହାରା ଉତ୍ତରରେ ସାମାନ୍ୟ ହସି କହେ, ମୋର ମନେ ହେଉଛି, ସେ ସୁଧାର ପିଲା ନୁହନ୍ତି । ତାଙ୍କଠାରୁ ସବୁ ସମ୍ପର୍କ ତୁଟାଇ ଦେବା ଭଲ । ତାଙ୍କ ଆଖିରେ ବିଷ ଚହଟେ ବୋଉ, କଥାରେ ସର୍ବନାଶିଆ ସଙ୍କେତ ଥାଏ । ସେ ଭଲ ମଣିଷ ନୁହନ୍ତି — ସୁରେନ୍ଦ୍ର ଯେଉଁ ଉପହାର ଆଣେ ସବୁ ହାରାମଣି ପାଇଁ । ହାରା କୌଣସି ଉପହାର ଦ୍ଵାରା ଅନୁଗୃହୀତ ନ ହୋଇ ସବୁ ଫେରାଇ ଦିଏ । ଏହାଦ୍ଵାରା କିଶୋରୀଙ୍କର ମନରେ ଦୁହିଁଙ୍କ ପ୍ରତି ରାଗ ହୁଏ । ହାରା ପ୍ରତି ଈର୍ଷା ହୁଏ । ଯେଉଁ ନିର୍ବୋଧ ଦେଉଛି ଦେଉଥାଉ, ଫେରାଇ ଦେଲେ ଲାଭ କଅଣ ? ଏଠୁ ଯାଇ ହୁଏ ତ ଆଉ କେଉଁଠି ଉଠିବ ।

ସୁରେନ୍ଦ୍ରର ଅନାସ୍ଥା ଭାବ କିଶୋରୀ ଅନୁଭବ କରୁଛନ୍ତି । ପୂର୍ବର ସ୍ନେହ ଆଉ ନାହିଁ । ହସିବା ଦରକାର ବୋଲି କିଶୋରୀଙ୍କୁ ଦେଖିଲେ ମୁହଁରେ ହସ ସେ ଫୁଟାଏ । କହିବାର ଲୋଡ଼ା ବୋଲି ପଦେ ସେ କହେ । କିଶୋରୀ ଅନୁଭବ କରନ୍ତି, ଏ ଘରକୁ ସୁରେନ୍ଦ୍ର ଆସେ କେବଳ ହାରା ପାଇଁ ।

କିଶୋରୀଙ୍କର ହିଂସାର ଅନଳ ଅତୃପ୍ତ ମନ ଭିତରେ ଜଳି ଉଠିଲା । ସେ ବୁଝି ପାରିଲେ, ସୁରେନ୍ଦ୍ର କେବଳ ହାରାମଣି ସଙ୍ଗେ କଥାଭାଷା ହେବାକୁ ଆସେ, କିନ୍ତୁ ହାରା ସୁରେନ୍ଦ୍ରର କଥା ଜାଲରେ ବାନ୍ଧି ହୁଏ ନାହିଁ । କୌଣସି ଉପାୟରେ ଏ ଘରୁ ହାରାକୁ ନ ତଡ଼ିଲେ କିଶୋରୀଙ୍କର ସ୍ଵାଧୀନତା ଉପରେ ବାଧା ପଡ଼ିବ । ଯେତେ ଆପଣାର କଲେ ସେ ଆପଣାର ହୋଇ ପାରିବ ନାହିଁ ।

ଉପାୟ ?

ସେଦିନ ମିଶ୍ର ମହାଶୟଙ୍କ ପିଠିରୁ ଘିମିରି ମାରୁଣୁ ସେ ଅତି ବ୍ୟସ୍ତ ହୋଇ ଆରମ୍ଭ କଲେ, ନାଇଁ ଚନ୍ଦ୍ରର ମା, ଆଉ ଏ ଘରେ ରହି ହେବ ନାହିଁ । ଗୋଟିକର ଭାତ ଗଣ୍ଡିଏ ରାନ୍ଧିବା ନାହିଁ, ବଣ୍ଟାମଣଲା, ହାଣ୍ଡିଫୁଟା ଯାଏ ବାଢ଼ି କରି ହାତରେ ପାଣି କରିବା କଥା । ହିନ୍ଦୁ ଘରୁ ଓଳେଇଗିରୁ କରି ପାଟିରେ ମୁଗଟାଏ, ବରଟାଏ ଦେବା ଅଲଗା

କଥା; ଏଥିପାଇଁ ଯେଉଁ ନନ୍ଦା ସେ ନନ୍ଦା ସହ୍ୟ ହୁଏ । ଛୁଆଟିଲେ ଛୁଆ, ପରପୁଅକୁ ଆଡ଼େଇ ଆଡ଼େଇ ଗୁହାଇବା ଏପରି ଢଙ୍ଗ ଆଉ ମୁଁ କେଉଁଠି ଦେଖି ନାହିଁ । ଶୁଣିଲେ ଶୁଣ ନଇଲେ ନାହିଁ, ମୋର କହିବାର କଥା, ଚେତେଇ ଦବାର କଥା, ମୁଁ କହିଦେଲି । ନନ୍ଦା ହେଲେ ଏକା ମତେ ହବ କି ଗୋ ?

ଭଗବାନ ମିଶ୍ରେ ବ୍ୟସ୍ତ ହୋଇ ଉଠି ବସିଲେ । ଆଖି ରଙ୍ଗ କରି କହିଲେ,' ତମେ ମତେ ଏ ସବୁ ଆଉ କେବେ କହି ନାହଁ । ଦୁଧ ଦେଇ ଘରେ ସାପ ପୋଷା ହେଉଛି ବୋଲି ମୁଁ ଜାଣି ନ ଥିଲି ।

ତୁପଚାପ ନ କରି ନିଜ ଦେଖିଲା କାମ କରି ଦେଲେ ଯାଏ । ଦାଣ୍ଡଲୋକଙ୍କ ଯାଏ କଥା ଯିବ କାହିଁକି ? ତାଙ୍କୁ ତାଙ୍କ ବାପଘରକୁ ବିଦା କରିଦିଅ ।

ମିଶ୍ରେ ଚିନ୍ତା କରି କହିଲେ, ଭଲ ଉପାୟ, କିନ୍ତୁ ପ୍ରମାଣ ନ ପାଇଲେ ମୁଁ ଏହା କରି ପାରିବି ନାହିଁ ।

କଶୋରୀ ପ୍ରମାଣ ଚିନ୍ତା କଲେ ।

## ଏଗାର

ସୁରେନ୍ଦ୍ର ଗୁହ୍ୟିଲା, ପ୍ରଲୋଭନ କିମ୍ବା ଛଳନା ଦ୍ୱାରା ହୀରାମଣିକୁ ଭୁଲାଇବା ସହଜ ନୁହେଁ । ସେ ଅନ୍ୟ ପନ୍ଥା ଆବିଷ୍କାର କଲା । ତା ନାମରେ ଅପବାଦ ଦେଇ ତାକୁ ମିଶ୍ର ଘରୁ ତଡ଼ି ପାରିଲେ ସହଜରେ ମନକାମନା ପୂର୍ଣ୍ଣ ହେବ । କଶୋରୀଙ୍କ ତୁଣ୍ଡରୁ କଥାଟା କାଢ଼ି ନେବାକୁ ସୁରେନ୍ଦ୍ରକୁ ଅଳପ ସମୟ ଲାଗିଲା । ସେ ତାର ପୂର୍ବ ପ୍ରକୃତି ନମ୍ରତାରେ କ୍ଷମା ମାଗିଲା । କହିଲା, ଏହାକୁ ଘରୁ ନ ତଡ଼ିଲେ ରକ୍ଷା ନାହିଁ । ରହ, ମୁଁ ଉପାୟ ଫାନ୍ଦୁଛି ।

କଶୋରୀ ସୁରେନ୍ଦ୍ରର ହାତ ଗୁପ୍ତିଧରି ସମର୍ଥନ ଜଣାଇଲେ । ତାର ନର୍ଗ ଆସିଲା ହସିଲା ମୁହଁ ଓ ଥରିଲା ଓଠରେ ଆଗ୍ରହକୁ ଅଟକ ରହିବାକୁ ବାଧା ଦେଲେ ନାହିଁ ।

ଦିନେ ସୁରେନ୍ଦ୍ର ତାଙ୍କ ଦାଣ୍ଡରେ ବସିଛି, ନାଥ ଖଣ୍ଡେ କାଗଜ ଧରି ସେଠାରେ ଉପସ୍ଥିତ ହେଲା । ପଗୁରିବାରୁ ସେ କହିଲା, ନୂଆବୋଉ ଏ ଗୀତ ଲେଖି ରଖି ଦେଇଥିଲେ, ମୁଁ ଗୋଟାଇ ଆଣିଛି । ତମେ ପରା ତାଙ୍କ ଲେଖା ଆଣିବାକୁ କହିଥିଲ, ହେଇଟି ନିଅ, ମତେ ଖଣ୍ଡେ ଚୁଡ଼ି ଦେବ ବୋଲି କହିଥିଲ, ଦିଅ ।

ସୁରେନ୍ଦ୍ର ପଗୁରିଲା ନୂଆବୋହୂ କଣ ଆଉ ଗୀତ ଲେଖି ଜାଣନ୍ତି ?

ନାଥ କହିଲା, ସେଂକେତେ ଗୀତ ଲେଖନ୍ତି, ନିଜେ ପଢ଼ନ୍ତି, ଆଖିରୁ ଲୁହ ଗଡ଼ାନ୍ତି, ପୁଣି ଚିରି ପକାନ୍ତି । ସୁରେନ୍ଦ୍ର ଗୀତଟି ନାଥଠାରୁ ରଖିଲା । ତାକୁ ଖଣ୍ଡେ ଚୁଡ଼ି ଦେଇ କହିଲା, ନେ ଏମିତି ତୋତେ ଦେଲି । ଚୁଡ଼ି ନେଇ ନାଥ ଚାଲିଗଲା ଛୁଟି ପଳାଇଲା ।

ସୁରେନ୍ଦ୍ର ଗୀତଟି ପଢ଼ିଲା—

ମୁଁ ଯେ ହତଭାଗିନୀ, ମମ ଜୀବନ ଯାମିନୀ
ଅମା ତମିର ଘେରା ଆକାଶ ସାରା ସ୍ତବ୍ଧ ମେଦନୀ ।

ବିଜୁଳି ଚମକିଲା, ମନେ ବିଉଦ ଧମକେ,
କିଏ ଭାବନା ବନେ ଆଶାର ସନେ ଧାଏଁ ଗୋ ପୁଲକେ ।

କେ ତୁମେ ପ୍ରବାସୀ ଏଥେଁ ଘେରର ପର ଆସି
ବନେ ହରଣୀ ବଣା ଆଗୋ ଅଜଣା ବୃଥା ଉପବାସୀ ।

ହୃଦୟସ୍ଥ ସଞ୍ଚିତ ବାତି ଆନେ ଅରପିତ
କି ଯେ, ପ୍ରହରୀବତ ମୁଁ ତ ସତତ ଦୁଆରେ ଜାଗ୍ରତ ।

ପଢ଼ କି ମନ୍ତ୍ରର ଆଗୋ କର କି ଯନ୍ତ୍ରର
କିଗୋ ରଖା ଯତନେ ବାଧବା-ଧନେ କରିବ ଅନ୍ତର ?

ଯାଅ ନା ଲେଉଟି ନାଅ ନାଅ ଧନ ଲୁଟି
ହୃଦ ଭଗନପୁରେ ଯାତନାତୁରେ ରଖିଛୁ ସାଉଁଟି ।

ଗୀତଟିକୁ ଥରକୁଥର ପଢ଼ି ସୁରେନ୍ଦ୍ର ତାର ମର୍ମ ବୁଝିଲା । ମନ କେବଳ ଖୁଣ୍ଟି ହେଲା, କିଏ ସେ ପ୍ରବାସୀ, ଯିଏ ହାରର ହୃଦୟ ଜୟ କରି ପାରିଛୁ ? କିଏ ସେ, ଯାହାକୁ ସେ ନିଜର ସର୍ବସ୍ୱ ଲୁଣ୍ଠନ କରି ନେବାକୁ ଆହ୍ୱାନ କରୁଛୁ ? ସୁରେନ୍ଦ୍ର ଦୀର୍ଘଶ୍ୱାସ ଛାଡ଼ିଲା । ଓଠରେ ଚମକି ଉଠିଲା ହସ । ମନ ଯାହା କହିଲା ବିଶ୍ୱାସ କରିବାକୁ ସାହସ ହେଲା ନାହିଁ । ମନ ପୁଣି ନାହିଁନାହିଁ କରି ଉଠିଲା । କବିତାଟିକୁ ଯତ୍ନ ସହକାରେ ରଖି ଭାବିଲା, ହାରର ମନ-ଘେରର ଯିଏ ପଛେ ହେଉ ତାକୁ ଶାସନ କରି ତା'ର ମୁଣ୍ଡ ନୁଆଁଇବାକୁ ଭଲ ଅସ୍ତ୍ର ଖଣ୍ଡେ ମିଳିଛୁ । ପାଖରେ ଥାଉ, ଦରକାର ହେଲେ କର୍ମରେ ଲାଗିବ । ପୋଷ୍ଟ ପିଅନ୍‌ଠାରୁ ଚିଠି ଖଣ୍ଡି ହସ୍ତଗତ କରି ସୁରେନ୍ଦ୍ର ଅତି ସତର୍କତାର ସହିତ ଖୋଲିଲା । ଲଫାଫା ଭିତରେ ଭିନ୍ନ ଭିନ୍ନ ହସ୍ତାକ୍ଷରରେ ଦୁଇଖଣ୍ଡି ଚିଠି । ହାରର ଠିକଣାରେ ଆସିଛୁ । ଖୋଲିବାକୁ ଟିକିଏ ହେଲେ ସଙ୍କୋଚ ବୋଧକଲା ନାହିଁ । ଚିଠି ଦୁଇଖଣ୍ଡି ପଢ଼ିସାରି କିଛି ସମୟ ଚିନ୍ତିତ ହୋଇ ବସିଲା । ମନରେ ପାଶବିକ ପ୍ରବୃତ୍ତି ପୁଣି ତେଜି ଉଠିଲା । ମନକାମନା ପୂର୍ଣ୍ଣ କରିବାକୁ ଏହି ଚିଠି ଦୁଇଖଣ୍ଡି ବି ଦୁଇଟି ପ୍ରଧାନ ଅସ୍ତ୍ର ହେବ ।

ଦ୍ୱିପ୍ରହରରେ ଲକ୍ଷ୍ମୀଶୋଭାଙ୍କ ସଙ୍ଗେ ଦେଖା । ମିଶ୍ରେ ଘରେ ନାହାନ୍ତି, ସତ୍ୟନାରାୟଣ ପୂଜା କରିବାକୁ କେଉଁ ଦୂର ଗାଆଁକୁ ଯାଇଛନ୍ତି । ହାର ଏତେବେଳେ ନାଅଁକୁ ପଢ଼ାଉଛି । ଆଉ ଭାବନା କଣ ? ନିଷ୍ଟିନ୍ତରେ ନିରୋଳାରେ ଦୁଇଜଣ

ବୃଦ୍ଧପଦ କଥାଭାଷା ହେବାକୁ ସୁବିଧା ପାଇଲେ । କେତେ ଦିନର ରାଗରୋଷ ଅଭିମାନ ସବୁ କ୍ଷଣକରେ ଝଡ଼ିଗଲା । ଦୁଇଜଣଙ୍କର ଉଦ୍ଦେଶ୍ୟ ଏକ, ପ୍ରକାଶ ପାଇବାରୁ ଆଉ ସନ୍ଦେହର କାରଣ ରହିଲା ନାହିଁ ।

ସୁରେନ୍ଦ୍ର ଚିଠି ଦୁଇଖଣ୍ଡି ଓ ନାଥଠାରୁ ପାଇଥିବା କବିତାଟି କଣୋରୀଙ୍କୁ ଦେଇ ତାଙ୍କ କାନରେ ଫୁସ୍‌ଫୁସ୍ କରି କେତେ କଥା କହିଲା । ପରସ୍ପର ମୁହଁକୁ ଚାହିଁ ହସାହସି ହେଲେ । ସୁରେନ୍ଦ୍ର କଣୋରୀଙ୍କ ପିଠିରେ ସ୍ନେହରେ ଗୁପଡ଼ା ମାରି କହିଲା, ବାଟରୁ କଣ୍ଟା ସଫା କରିବା ବୁଦ୍ଧିମାନର କାର୍ଯ୍ୟ । ତମକୁ ବେଶି ମୁଣ୍ଡଖର୍ଚ୍ଚ କରିବାକୁ ପଡ଼ିବ ନାହିଁ । ମୁଁ ଯାହା ବତାଉଛି କର । ମଜାଟା ଦେଖିବା, ଟୋକାର ମୁହଁଖଣ୍ଡ ଭାରି ଟାଣ କି ନା ?

କଣୋରୀ କହିଲେ, ପ୍ରମାଣ ତ ହାତରେ । ପୁଣି ଚିଠି ଲେଖିଛନ୍ତି ମା ଓ ବାହୁଲା ।

ମିଶ୍ରେ ଫେରୁ ଫେରୁ ରାତି ଅଧ ବଳି ଯାଇଥିଲା । କଣୋରୀ କିଛି କହିବାର ସୁଯୋଗ ପାଇଲେ ନାହିଁ । ପରଦିନ ବଡ଼ି ସକାଳେ ଯେତେବେଳେ ମିଶ୍ରେ ନିତ୍ୟକର୍ମ ସାରିବାକୁ ବାହାରିଲେ ସେ ଧୀରେ ଧୀରେ ବୋହୂଙ୍କ କଥା ଆରମ୍ଭ କଲେ । ହାରି ଯେ ଗ୍ରେରଣୀ, ଖୋରଣୀ, ଓଲେଇ, ଅଥରପୀ, ହେଟେରେସୀ, ଉଡଉବା—ଏ ସବୁ ଆଗରୁ କଣୋରୀ ଅନେକଥର ବନେଇ ଚୂନେଇ ବଖାଣ କରିଛନ୍ତି । ଆଜିକୁ ବାକି ଥିଲା ଗୋଟିଏ କଥା । ସେ ଦିନ ପରି ମିଶ୍ରେ ପ୍ରମାଣ ଚାହିଁଥିଲେ, ଏବେ ପ୍ରମାଣ ଦେଖି ପ୍ରତିକାର କରନ୍ତୁ ।

କଣୋରୀ ଚିଠି ଦିଖଣ୍ଡି ଓ କବିତା ଲେଖା ହୋଇଥିବା କାଗଜ ଖଣ୍ଡି ସ୍ୱାମୀଙ୍କ ହାତକୁ ବଢ଼ାଇ ଦେଲେ । ମୁରୁକି ହସାଦେଇ ମୁହଁମୋଡ଼ି କହିଲେ, ଏ ମିଣିପିଗୁଡ଼ାଙ୍କର ବୁଝିବାର ତ ଶକ୍ତି ନାହିଁ, ଆମେ ଯଦି କିଛି କହୁଁ ଖୋଜିବେ ପ୍ରମାଣ । ଏତେ ଅବିଶ୍ୱାସ ! ହେଇ ନିଅ ତମ ପ୍ରମାଣ । ଯାହାକୁ ଥରେ ଦେଖିଥିବ ତା ପେଟର କଥା କହିବ । ବୋହୂ, ବୋହୂ, ହେଉଥାଅ ଯେ ବୋହୂଙ୍କ ପଛରେ ବୋଟେ ମଇଳା ।

ମିଶ୍ରେ ବ୍ୟସ୍ତ ହୋଇ ପଚାରିଲେ, କଥା କଣ ଶୁଣେ ?

କଣୋରୀ ଉତ୍ସାହିତ ହୋଇ କହିଲେ, ତାଙ୍କର କେଉଁ ଗୁଣଟା ନାହିଁ ଯେ ମୁଁ ଅଧିକା କହିବି ? ତମକୁ ବା କଣ ନ କହିଛି ? ବୋହୂ ତମର ଆଜକୁ ତାକୁ ଆଖି ଠାରୁଛନ୍ତି ସ୍ୱା ତା ସଙ୍ଗେ କଥାଭାଷା ହେଉଛନ୍ତି, ଏହା ତୁମକୁ ଅଜଣା ନାହିଁ । ବାପଘରୁ ନାଁ ପକେଇ ଥିଲେ ବୋଲି ବାପ ମା ଆଗରୁ ଲୋକନିନ୍ଦାକୁ ଡରି ବାଟ କାଟି ଏଠିକି ବିଦା କରିଦେଲେ । କହନ୍ତି, ପରା, ସର୍ପରେ ଜନ୍ମ ହେଲୁ ମୋତେ, ସ୍ୱଭାବ ଛାଡ଼ିବ କେମନ୍ତେ । ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନ କୁଟିବ । ତମ ମୁହଁରେ ଚୂନକାଳି

ବୋଲିବାକୁ ସେ ଏଠାକୁ ଆସିଛି । ମୁଁ ନିଜେ ଦେଖିଛି, ସେଦିନ ସନ୍ତୁରୁଡ଼େ ନିଧି ବିଶ୍ୱାଳଙ୍କ ଭେଣ୍ଡାପୁଅ,......ଛି, ଛି...... । ସେ କଥା ତୁଣ୍ଡରେ ଧରି ଯୋଗାଏ ନାହିଁ । ଚିଠି ଦେଖିଲେ ସବୁ ବୁଝି ପାରିବ ଯେ ।

ଗମ୍ଭୀର ହୋଇ ମିଶ୍ରେ ଚିଠିପଢ଼ା ଆରମ୍ଭ କଲେ —

"ଦେଁଠେଇ, ତମେ ଯଦି ବଉଳକୁ ଆକଟ ନ କର ତ ଭଲ ହେବ ନାହିଁ । ପୂର୍ବଜନ୍ମ ପାପ ଫଳରୁ ଠାକୁରେ ତାର କପାଳ ଫଟାଇଛନ୍ତି । ଆକଟ ନ କଲେ ଆମର ବି ସର୍ବନାଶ ହେବ । ବ୍ରଜ ସବୁକଥା ମୋ ଆଗରେ ପ୍ରକାଶ କରିଛନ୍ତି । ଜାଗର ଅମାବାସ୍ୟା, ଅଶୋକାଷ୍ଟମୀ ପ୍ରଭୃତି ପର୍ବମାନଙ୍କରେ ବ୍ରଜ ବରାବର ଭୁବନେଶ୍ୱର ଯାଆନ୍ତି, ଆମେ ଜାଣୁ ସେ ଦିଅଁ ଦର୍ଶନ କରିବାକୁ ଯାଉଛନ୍ତି, କିନ୍ତୁ ସେ କାହାର ଦର୍ଶନ ଜାଣ ତ ?

ବଉଳ ବ୍ରଜଙ୍କ ପାଖକୁ ଦେଇଥିବା କେଇଖଣ୍ଡ ଚିଠି ମୁଁ ନିଜେ ପଢ଼ି ବୁଝି ପାରିଛି, ବ୍ରଜ ଖାସ୍ ଭୁବନେଶ୍ୱର ଏତେ ଦଉଡ଼ନ୍ତି ବଉଳଙ୍କ ସଙ୍ଗେ କଥାଭାଷା ହେବାକୁ ।

ଝିଅ ବୋଲି ସ୍ନେହରେ ଅନ୍ଧ ହୋଇ ତମେ ସିନା ବଉଳକୁ ଦିନରେ ହେଉ କି ରାତିରେ ହେଉ ଠାକୁର ଦର୍ଶନ କରିବାକୁ ଏକୁଟିଆ ଛାଡ଼ିଦିଅ, ସେ ବାହାରେ ବାହାରେ ଚାଲିଆସେ କେଦାର-ଗୌରୀ ପାଖକୁ । ସେଇଠି ଦି ଜଣଙ୍କର ଭେଟ ହୁଏ ।

ଭାବୁଥିଲି, ତା ଚିଠି ତମ ପାଖକୁ ପଠେଇବି, ପୁଣି ଭାବିଲି ତମେ ମୋତେ ଦେଠେଇ, ବଉଳର ମା, ଏପରି ଅସନା ଚିଠି ତମ ପାଖକୁ ପଠାଇ ପାରିବି ନାହିଁ । ବ୍ରଜ ଏବେ ଝିଅଙ୍କ ଧରିଛନ୍ତି, ବିଧବା ବିବାହ କରିବେ । ସେ କିଛି ପିଲା ନୁହନ୍ତି ଯେ କୁହାର ବୋଲର ହୋଇ ରହିବେ ! ତମେ ଯଦି ଏହାର ପ୍ରତିକାର ନ କର, ବଉଳକୁ ଯଦି ଆକଟ ନ କର, ଦୁଇ କୁଳର ସର୍ବନାଶ ହେବ । ଆଉ ଅଧିକ କି ଲେଖିବି ।"

। ଇତି ।
ଇନ୍ଦିରା

"ହାରି, ତୋ ବଉଳର ଚିଠି ଖଣ୍ଡି ପଢ଼ିଲି । ତୋ ନନା ପଢ଼ି ଅଗ୍ନିଶର୍ମା ହୋଇଛନ୍ତି । କହିଲେ, ତୋ ମୁହଁ ଚାହିଁବେ ନାହିଁ । ବ୍ରାହ୍ମଣ ଘର ଝିଅ, ବ୍ରାହ୍ମଣ ଘର ବୋହୂ, ଏ କି ବେହିଆ ପଣ ? କୁଳରେ କଳଙ୍କ ଲଗାଇବାକୁ ଠାକୁରେ ତୋତେ ଏ ଘରେ ଜନ୍ମ ଦେଇଥିଲେ ? ଯାହା ହେବାର ତ ହୋଇ ସାରିଛି, ତୁ ଏବେ ନୂଆ ସଂସାରରେ ନୂଆ କରି ତୋର ଜୀବନକୁ ଗଢ଼ । ଏଠାକାର ଘଟଣା ଭୁଲି ଯା । ତତେ ସାବଧାନ କରି ଦେଉଛି । ମା'ଆଣି ପରି, ବ୍ରଜଫ୍ରଜ କାହା ପାଖକୁ ଚିଠିପତ୍ର ଦେବୁ ନାହିଁ ।"

। ଇତି ।
ତୋ ମା

ଚଠି ଢଖଣ୍ଡି ପଢ଼ି ମିଶ୍ରେ ଚନ୍ତାମଗ୍ନ ହେଲେ । ମନ ବିମ୍ଫୁଟରେ ପୂର୍ଣ୍ଣ ହେଲା । କହିଲେ, ଏତେ ଅଳେଇ ବଳେଇ ଆମେ କାହିଁକି ମୁଣ୍ଡ ଉପରକୁ ନେବା ? ଭଲରେ ଭଲରେ ତାଙ୍କୁ ତାଙ୍କ ବାପଘରକୁ ବିଦା କରି ଦେଲେ ଯାଏ । ମିଶ୍ରେ ଦାଣ୍ଡକୁ ଗଲେ ।

କଶୋରୀ ହସି ହସି ଆସି ହୀରାକୁ କହିଲେ, ହୀରା, ତମ ମାଆଙ୍କ ଦେହ ଅସୁଖ ଅଛି ଯେ ତମକୁ ପଠାଇବାକୁ ସମୁଦ ଚଠି ଲେଖିଛନ୍ତି ।

ସତେ ?

ବାସୀ ମୁହଁରେ ପାଣି ନ ଦେଉଣୁ ମୁଁ କଣ ଆଉ ମିଛ କହିବି ?

ମା ଦେହ କଣ ହୋଇଛି ବୋଲି ବାପା ଲେଖିଛନ୍ତି ? ହୀରାମଣିର ଆଖିରୁ ଲୁହ ଗଡ଼ି ଆସିଲା । ସେ ପୂଜା କୋଥଲି ବନ୍ଦ କଲା ।

କଶୋରୀ ସ୍ୱର ଲମ୍ବାଇ କହିଲେ, ଜା—ର !

ତହିଁ ଆରଦିନ ବଡ଼ି ସକାଳୁ ଖୁଣ୍ଟେ ଗଉଡ଼ ଦାଣ୍ଡ ସଙ୍ଖାରୁ ସବାରୀ କାଢ଼ିଲେ । ନାଥ ଦାଣ୍ଡପିଣ୍ଡାରେ ବସି ଦାନ୍ତ ଘଷୁଥିଲା । ଏତେ ଲୋକଙ୍କୁ ଦେଖି ସେ ବାଲୁ ବାଲୁ କରି କ୍ଷଣକାଳ ଚାହିଁ ରହିଲା । ସାହସ କରି ଜଣକୁ ପଚାରି ବୁଝିଲା ଯେ ନୂଆବୋହୂ ବାପଘର ଯାଉଛନ୍ତି । ଅଭିମାନରେ ତା ଆଖି ଛଳ ଛଳ ହେଲା । ଏ କଥା ଆଗରୁ ତାକୁ କେହି କହି ନାହିଁ ।

ନାଥ ଘର ଭିତରକୁ ଯାଇ ହୀରାକୁ କହିଲା, ନୂଆଈ ତମ ସଙ୍ଗେ ଯିବି ।

କୁଆଡ଼େ ଯିବ ବାବୁ, ମୁଁ ତ କେଉଁଠିକି ଯାଉନାହିଁ ।

ମୋତେ ଲୁଚକରି ଚାଲିଯିବାକୁ ବସିଛ ନା ? ସମସ୍ତେ ଜାଣିଲେଣି ଯେ, ଦାଣ୍ଡରେ କେତେ ଗଉଡ଼ ସବାରୀ ସଜାଡ଼ୁଛନ୍ତି । ଆଇଲ ଦେଖିବ ।

ହୀରା ସନ୍ଦେହରେ ପଡ଼ିଲା । କାଲି ଶାଶୁଙ୍କ କଥାକୁ ପରିହାସ ମନେ କରିଥିଲା । ସତେ କଣ ତା'ର ଯିବାପାଇଁ ସବାରୀ ସଜଡ଼ା ହେଉଛି ? ନନା ଜଣେ ଲୋକ ପଠାଇ ପାରନ୍ତେ ନାହିଁ ?

ହୀରାକୁ ନୀରବ ଦେଖି ନାଥ ଜୋରରେ ଧରି କହିଲା, ମୁଁ ନିଶ୍ଚେ ତମ ସଙ୍ଗେ ଯିବି ନୂଆଈ, ନୋହିଲେ ମୋତେ ଏଠି ନୂଆ ମା ମାରିବ ।

ହୀରା ନାଥକୁ କୋଳକରି କହିଲା, ହେଉ ଯିବ ।

କଶୋରୀ ପାଖରେ ପହଞ୍ଚିଗଲେ । ମୁହଁରେ ଲୁଗା ଦେଇ ହସି ହସି କହିଲେ, ହୀରା, ବାପଘରକୁ ଯିବ ପରା, ଦାଣ୍ଡରୁ ଡାକରା ପଡ଼ିଲାଣି । ସବାରୀ ସଜଡ଼ା ହୋଇ ରହିଛି । ଟିକିଏ ସହଳ ସହଳ ବାହାରି ପଡ଼ । ଦୂର ବାଟ । ଖରା ଗୁଡ଼ିଉଁ ଗୁଡ଼ିଉଁ ମାଡ଼ି ଆସୁଛି ।

ହାବୁର ମନ କେଉଁ ଅଜଣା ଭୟରେ ଥର ଉଠିଲା । ସେ ଦୀର୍ଘଶ୍ୱାସ ଛାଡ଼ି ନାଥକୁ କାଖରୁ ଓହ୍ଲାଇ ଦେଲା । ଶାଶୁଙ୍କ ମୁହଁରେ ହସ ଦେଖି ବଡ଼କ୍ରଭରେ କହିଲା, ମୋର ଆଜ୍ଞା ଡେରି କଣ । ନାଥ ମୋ ସଙ୍ଗେ ଚାଲନ୍ତୁ ।

ନାଥକୁ ନାଲି ଆଖି ଦେଖାଇ କଶୋରୀ କହିଲେ, ନା, ସେ ଯିବ ନାହିଁ । ତମେ ଯଦି ଖୁସିରେ ଯାଉଥାନ୍ତ ତେବେ ସେ ଯାଆନ୍ତା ସିନା । ମା ତମର ବାଧକା ପଡ଼ିଛନ୍ତି—

ହାବୁ ସବାରୀରେ ବସିଲା । ମନ ଉପରେ ଉଚ୍ଚାଟ ହେଉଥାଏ । କଣ ଗୋଟେ ଆସିଲା ପରି ଲାଗୁଥାଏ । କାନ୍ଦ ମାଡ଼ୁଥାଏ । ନାଥର ଲୁହଭରା ଆଖି, ଶ୍ୱଶୁରଙ୍କର ଗମ୍ଭୀର ମଳିନ ମୁଖ ଓ କଶୋରୀଙ୍କର ବଦ୍ରୂପ ହସ ଦେଖି ତାର ମନ ଛଟପଟ ହୋଇ ଉଠୁଥାଏ ।

ନାଥର ଛଳ ଛଳ ଆଖି ଦୁଇଟି, ତା କରୁଣ ଗୁଡ଼ଫଟା ଅନୁରୋଧ, 'ନୋହିଲେ ନୂଆମା ମାରିବ', ହାବୁର ଗୁଡ଼ ଭିତରେ ଛଟପଟ ହେବାକୁ ଲାଗିଲା । ହତଭାଗିଂର ଦୁର୍ଦ୍ଦଶା ଭାବିଲାରୁ ଆଖି କୋଣରୁ ଧାର ଧାର ଲୁହ ଗଡ଼ି ପଡ଼ିଲା । ବିଲ, ବଣ, ଦଣ୍ଡା ଅତିକ୍ରମ କରି ସବାରୀ ଚାଲିଛି । ଖରା ତାଉ ବେଳୁବେଳ ବଢ଼ୁଛି । ଗଉଡ଼ମାନଙ୍କର ଡାକ ଅବଶ ହୋଇ ଆସୁଛି । ସୂର୍ଯ୍ୟ ମୁଣ୍ଡ ଉପରେ ହେଲେ । ଭଙ୍ଗା ଭଙ୍ଗା କଳାମେଘ ଭାସି ଆସି ପଶ୍ଚିମ ଦିଗରେ ଜମାଟ ବାନ୍ଧିଲେ ।

ହାବୁ ତକିଆଟି ପିଠିତଳେ ଦେଇ ଆଉଜି ବସିଲା । କବାଟ ଫାଙ୍କରେ ଦୁଇ ପାଖର ଦିଗନ୍ତ ବିସ୍ତାରୀ ଶ୍ୟାମଳ କ୍ଷେତ । ସେହି କ୍ଷେତ ମଝିରେ ଶଗଡ଼ ଦଣ୍ଡା ସାପପରି ବଙ୍କେଇ ବଙ୍କେଇ ପଡ଼ିଛି । କିଛିଦୂର ଯାଇ ସେମାନେ ଗୋଟିଏ ନିର୍ଜ୍ଜନ ମଶାଣିରେ ଉପସ୍ଥିତ ହେଲେ । ଦଣ୍ଡାର ବାଁହାତ ମଶାଣି, ଡାହାଣହାତ ବଡ଼ ଉଚ୍ଚା ବରଗଛ । ବଡ଼ଗଛ ତଳେ ଛୋଟ ଗୁବଟିଏ । ସବାରୀ ରହିଲା । ଗଉଡ଼େ ଦମ୍ ନେବାକୁ ବରଗଛ ତଳ ଉଷୁମ ବାଲି ଉପରେ ବସିଲେ । କେହି କେହି ଝରକୁକରେ ପିକା ଲଗାଇ କଳେ କଳେ ପେଟ ପୂରାଇ ଟାଣିନେଲେ ।

ଦୀନା ଭଣ୍ଡାରୀ ସବାରୀ ପାଖକୁ ଆସି କହିଲା, ସାନ୍ତାଣି, ଗଉଡ଼େ ଖରାତାତିକୁ ଡରି ସବାରୀ ଛାଡ଼ିଲେଣି । ନପଟ ଅଲସୁଆ । ବାଟ ଦି କୋଶ ବାକି, ଚାଲିଥିଲେ ଘଡ଼ିକେ ଯାଇଁ ପହଞ୍ଚନ୍ତେ ।

ହାବୁ କବାଟକୁ ଭଲକରି ଖୋଲି କହିଲା, ଭାରି ଖରା, ଯେତେ ହେଲେ ମଣିଷ ଜନମ, ଖରା ତାତିରେ ଧାଇଁ ଧାଇଁ ତାଙ୍କୁ ଝୋଲି ମାରିଲାଣି । ବାଟ ଦି କୋଶ ତ, ଛାଇ ଲେଉଟି ଯାଉ, ଯିବେ ।

ଦୀନା କହିଲା, ମୁଁ ତେବେ ଆଗରେ ଯାଉଛି । ଆମେ ଭଣ୍ଡାରୀ ପୁଅ, ଆମକୁ ଖରା ବର୍ଷା ବାଧେନାହିଁ ।

ଆରେ, ମୋ ସାନକୁନ୍ଦା ମାନ, ଟିକଏ ବସି ଯା !

ନାଇଁ ସାନ୍ତାଣି, ମୁଁ ଆପଣଙ୍କ ଘରୁ ଫେରିଲେ ବିଶ୍ୱାଳଙ୍କ ଝିଅଘରକୁ ବେଗର ନେଇ ଯିବ । ଜରୁରୀ କାମ । ଧାନା ବଟୁଆରୁ ଖଣ୍ଡେ ସାଦା ବନ୍ଦ ଲଫାଫା କାଢ଼ି ହାତକୁ ଦେଇ କହିଲା, ଆପଣଙ୍କ ଶ୍ୱଶୁର ସାଆନ୍ତେ ଅଧବାଟରେ ଆପଣଙ୍କୁ ଏ ଚିଠି ଖଣ୍ଡି ଦେବାକୁ କହିଥିଲେ । ଆଉ ଏ ଚିଠି ଆପଣଙ୍କ ବାପାଙ୍କର । ବୁଢ଼ାଙ୍କର ତାଗିଦ୍, ଏ ଖଣ୍ଡି ଯେପରି ଆପଣଙ୍କ ହାତରେ ନ ପଡେ । ଧାନା ଦ୍ୱିତୀୟ ଚିଠିଖଣ୍ଡି ବଟୁଆରେ ରଖି ସିଧା ସିଧା ଦଣ୍ଡାଏ ଦଣ୍ଡାଏ ଚାଲିଲା ।

ହୀରାମଣି ଲଫାଫା ଖୋଲି ତିନିଖଣ୍ଡ ଲେଖା କାଗଜ ବାହାର କରି ଆଣିଲା । ତା ଗ୍ରୁଡରୁ ନିଆଁ ଖସି ପଡ଼ିଲା । ମୁଣ୍ଡ ଭ୍ରମିବାକୁ ଲାଗିଲା । ପରିଚିତ ହସ୍ତାକ୍ଷରରେ ଲେଖା ହୋଇଥିବା ପତ୍ର ତିନିଖଣ୍ଡି ପଢ଼ିବାକୁ ସାହସ ହେଲା ନାହିଁ । ହାତ ଥରିବାକୁ ଲାଗିଲା । ସେଥିମଧ୍ୟରୁ ଖଣ୍ଡେ ତାଆରି ଲେଖା, ପଦ୍ୟଟିଏ । କାଗଜଟିର ଅନ୍ୟ ପାଖରେ ବଡ଼ ବଡ଼ ଅସୁନ୍ଦର ଅକ୍ଷରରେ ଲେଖା ହୋଇଛି, ପଥ ସୁମର ପିତା ଘର ଯିବ, ଆଉ ଆଇଲେ ମନେ ନ କରିବ ।

ଘୃଣାରେ ହୀରାମଣିର ନାକ ଫୁଲି ଉଠିଲା । ରାଗରେ ଆଖି ଲାଲ୍ ହେଲା ! ଏତେ କାଣ୍ଡ କରିଛନ୍ତି କିଶୋରୀ ! ଅନ୍ୟ ପତ୍ର ଦୁଇଖଣ୍ଡି ଏକ ନିଶ୍ୱାସରେ ପଢ଼ି ପକାଇଲା ! ବାରମ୍ବାର ପଢ଼ି ସବୁ ଭିତିର କଥା ବୁଝିନେଲା । କାହା ଉପରେ ରାଗିବ, କାହାକୁ ବା ମନର ଦୁଃଖ କହିବ, ତାର ଅଛି କିଏ ? ଭଗବାନ ! ସେ ତ ବଧିରାର ଗୁହାରି ଶୁଣିବେ ନାହିଁ । କାହାରି ଦୋଷ ନାହିଁ । ଦୋଷ ମଣିଷ ଜାତିର, ଲଙ୍ଗଳା ସ୍ୱାର୍ଥପରତାର । ଦଣ୍ଡକ ଭିତରେ ଅଶୀତର କାର୍ଣ୍ଣପୃଷ୍ଠାଗୁଡ଼ିକ ଆଖି ଆଗରେ ଖୋଲିଗଲା । ଦେହ ହାତ ଥରି ଉଠିଲା । ଜନ୍ମ ଦେଇ ମଧ୍ୟ ବାପ ମାଆଙ୍କର କଠୋର ପ୍ରାଣ ବଧିବାପାଇଁ ଟିକିଏ ତରିଲେ ନାହିଁ ? ମାନ ଯିବା ଭୟରେ ବାପ ମା ତାକୁ ନିର୍ଦ୍ଦୟ ଭାବରେ ଶାଶୁଘରକୁ ବିଦାୟ କଲେ ! ଏତେ ମିଛ, କଞ୍ଚା ମିଛ !

ଇନ୍ଦିରା, ତାର ପିଲାଦିନର ଖେଳସାଥୀ, ପ୍ରାଣର ବଉଳ ଇନ୍ଦିରା, ମିଛରେ ତା ମନରେ ଏତେ ଦୁର୍ନାମ ରଟନା କରିଛି । ଶାଶୁଘରେ କେତିଟି ଦିନ ସେ କଟାଇ ଆସିଲା, କେହି ତାର ଆପଣାର ହୋଇ ପାରିଲେ ନାହିଁ । କେହି ତାକୁ ପଦେ ମିଠା କଥା କହିଲେ ନାହିଁ । ତାର ଚରିତ୍ର ଉପରେ ଦୋଷାରୋପ ଯେଉଁମାନେ କରିଛନ୍ତି, କଥାର ସତ୍ୟାସତ୍ୟ ବୁଝିବାକୁ ସେମାନଙ୍କର ମନ ହେଲା ନାହିଁ । ସେ ଆଜ ବାଟରେ ଠିଆ । ନିର୍ଦ୍ଦୋଷ ନିଷ୍କଳଙ୍କ ହୋଇ ମଧ୍ୟ ସେ ଆଜି କଳଙ୍କିନୀ ।

ବ୍ରଜକିଶୋର ! ତମରି ହିଁ ସବୁ ଦୋଷ । ତମେ କାହିଁକି ବଧିବାର ଦୁଃଖରେ ଆଖିରୁ ଲୁହ ଗଡ଼ାଇଲ ? କାହିଁକି ବଧିବାର ମନକୁ, ବଧିବାର ଜଳିଲା ହୃଦୟକୁ ସଂସାର ଆଗରେ ଖୋଲି ରଖିଦେଲ ? ବଧିବାକୁ ଆଶ୍ରୟ ଦେବାର ସାହସ କରି

ତମର ଅଛି ? ତମେ ନାରୀଠାରୁ ଆହୁରି ଦୁର୍ବଳ, ନୋହିଲେ ଅରଣ୍ୟେ ରୋଦନ କରି ବିଧବାର ସର୍ବନାଶ କେଉଁଠୁ କାହିଁକି ? ସାହସ ଅଛି ତ ପଦାକୁ ବାହାରି ଆସ, ମାତୃଜାତିର ମଙ୍ଗଳ ପାଇଁ, ମୁକ୍ତି ପାଇଁ, ସମ୍ମାନ ପାଇଁ, ଜୀବନ ପାଇଁ, ସୁଖ ଶାନ୍ତି ଓ ଧର୍ମ ପାଇଁ ବିଦ୍ରୋହ କର ! ପାରିବ ନାହିଁ ? ପାରିବ କିଏ ଜାଣେ ?

ହାୟ ! ଅନେକ ଦିନ ସେ ସହିଛି । ଆଉ ସହି ପାରିବ ନାହିଁ । ଯୁଗ ଯୁଗ ଧରି ସେ ନରର ପଦ ଲେହନ କରି ଆସିଛି । ସହସ୍ର ଲାଞ୍ଛନା ସହି, ଅପବାଦ, ଅପମାନର ବୋଝ ମୁଣ୍ଡରେ ବୋହି ନୀରବରେ ଅଶ୍ରୁ ଗଡ଼ାଇଛି । ଜନନୀ, କନ୍ୟା, ଭଗିନୀ, ଗୃହିଣୀ ରୂପେ ଜଗତର କଲ୍ୟାଣ ସାଧନ କରି ଆସିଛି । ଏଣିକି ଆଉ ହାରି ମଣିଷର ପୂଜା କରିବ ନାହିଁ, କରିବ ସେ ଶକ୍ତିର ପୂଜା, ନିଜ ଶକ୍ତିର ଉପାସନା । ତାର ଦୁଃଖର ସୀମା ନାହିଁ କି ଭାବନାର ଅନ୍ତ ନାହିଁ ।

ତାର ଆଖି ଦୂରଗତ ଗୋଟିଏ ନାରୀ ଉପରେ ପଡ଼ିଲା । ସେ ଚମକି ଉଠିଲା । ଭାବନା ଅନ୍ତର୍ହିତ ହେଲା । ସ୍ଥିର ଚକ୍ଷୁରେ ଚାହିଁ ରହିଲା । ତାର କେଶ ଅଡ଼ୁଆ ହୋଇ ଫୁର ଫୁର ଉଡ଼ୁଛି । ଦେହରେ ଛିଣ୍ଡା ମଇଳା ଲୁଗା । ଅଧଲଙ୍ଗଳା ଦେହରେ ହାଡ଼ ଚମ ଛଡ଼ା ରକ୍ତ ମାଂସ ନାହିଁ । ଆଖି ଦିଓଟି ପଶି ଯାଇଛି । ଗାଲୁ ଗାଲୁ ଟଳି ପଡ଼ୁଛି । କାଖରେ ଗୋଟିଏ ଦୁର୍ବଳ ଦରମଲା ଶିଶୁ ! ଗଉଡ଼ମାନେ ତା ସଙ୍ଗେ ଥଟ୍ଟା ତାମସା ଲଗାଇଲେ । କିଏ କହିଲା, ମଶାଣି ଚଣ୍ଡୀ, କିଏ କହିଲା ଯୋଗିନୀ, ପ୍ରେତନୀ, ଚିରଚୁଣୀ । କେହି ବା ବାଲି ମୁଠାଏ ତା ଉପରକୁ ଫୋପାଡ଼ି ତାକୁ ଚଡ଼େଇବାକୁ ଚେଷ୍ଟା କଲା ।

ସେ କିଛି ନ କହି ସିଧା ସିଧା ସବାରୀ ପାଖକୁ ଆସିଲା । କାହାର ତୁଣ୍ଡରୁ ଆହା ବୋଲି ପଦେ ବାହାରିଲା ନାହିଁ । କାହାର ଆଖିରୁ ଲୁହ ବି ବୁନ୍ଦା ଗଡ଼ିଲା ନାହିଁ । ଏ ଦୃଶ୍ୟରେ ହାରିର ଆଖିପତା ଓଦା ହୋଇ ଆସିଲା । ଅନୁକମ୍ପାରେ ହୃଦୟ ବିଚଳିତ ହେଲା । ସେ ସବାରୀ ଭିତରୁ ପଦାକୁ ଆସିଲା । ସ୍ତ୍ରୀ ଲୋକଟି ହାରିକୁ କଣ ଖାଇବାକୁ ମାଗିଲା । ତା ପାଖରେ ତ କିଛି ନାହିଁ, ସେ ଦେବ କଣ ? ନାହିଁ କରିବାକୁ ତୁଣ୍ଡ ଖୋଲିଲା ନାହିଁ । କୌଣସି କଥା ପଚାରିବାକୁ ସାହସ କଲା ନାହିଁ ।

ସେ କ୍ଷୀଣ ସ୍ୱରରେ ତା ନିଜ ଦୁଃଖ ବର୍ଣ୍ଣନା କଲା, ସେ ବାଲ୍ୟ ବିଧବା, ବ୍ରାହ୍ମଣଘର ଝିଅ, ତାଙ୍କ ଗାଁର ଗୋଟାଏ ଟୋକା ସନା ତାକୁ ଭବିଷ୍ୟତ୍ ସୁଖର ଆଶା ଦେଖାଇ କାଳିମାଟି ନେଇଗଲା । ମୋଟେ ସେ ତିନୋଟି ମାସ କାଳିମାଟିରେ ସୁଖରେ କଟାଇଛି, ପୁଣି ତାକୁ ଘରୁ ବାହାର କରିଦେଲା । ଜୀବନ ରକ୍ଷାର ଉପାୟ ନ ଦେଖି ବାପ ଘରକୁ ଫେରିଆସିଲା । କେହି ତାକୁ ପାଖରେ ପୂରାଇଲେ ନାହିଁ । ସମସ୍ତେ ଦୂର ଦୂର କଲେ । ସବୁ ଲାଜ ସରମ ପଦାରେ ପକାଇ ସେ ଭିକ୍ଷା କରି ବୁଲିଲା ।

ଛନମାସ କଟିଗଲା । ତେଣିକ ଭିକ ମାଗିବାକୁ ବି ଡରି ମାଡ଼ଲା । ପେଟର ବୋଝ ବୋହି ସେ ଯିବ କୁଆଡ଼େ ? ଲୋକେ ଭିକ ନ ଦେଇ ଅଟ୍ଟା ତାମସା ଲଗାଇଲେ । କିଏ ତା ବାଳ ଝିଙ୍କିଲା, କିଏ ତାକୁ ଠେକା ପକାଇଲା ।

ଗଛମୂଳେ ରାତି କଟାଏ । କାହାର ପିଣ୍ଡାରେ ଶୋଇବାକୁ ମନା । ସେ ପତିତା, ଜାତି ଯିବ, ଧର୍ମ ନଷ୍ଟ ହେବ । ଶେଷକୁ ଏଇ ମଶାଣି ହେଲା ତାର ଆଶ୍ରୟ-ସ୍ଥଳୀ । କୁକୁର, ବିଲୁଆ, ଶାଗୁଣା, ପେଚା ହେଲେ ତାର ଆତ୍ମୀୟ । ସେହି ନିର୍ଜ୍ଜନ ମଶାଣିରେ ତାର ହତଭାଗ୍ୟ ବାଳକ ଶିଶୁଟିର ଜନ୍ମ ।

ସ୍ତ୍ରୀ ଲୋକଟି ଶିଶୁର ମୁଖ ଚୁମ୍ବନ କଲା । ଏତେ ଦୁଃଖରେ ଏହି ଚୁମ୍ବନଟି ମାତ୍ର ତା ପ୍ରାଣର ସାନ୍ତ୍ୱନା, ମନର ଆନନ୍ଦ । ଆହା, ଖାଦ୍ୟ ଅଭାବରୁ କିପରି ସେ ତାର ନୟନର ତାରା, ଜୀବନର ସମ୍ବଳକୁ ବଞ୍ଚାଇ ରଖିବ ?

ହାରାମଣି ତାକୁ ଟଙ୍କାଟିଏ ଦେଇ ବିଦା କଲା ।

ଗ୍ଲୁଇ ନେଉଥିଲା । ଖବରଦେଜ ମଉଳା ଆସିଲା । ଗଛଡ଼େ ସବାସ ଠେକି ବାହାରିଲେ । ଯେତେ ଚେଷ୍ଟା କଲା ମନକୁ ସେ ଭୁଲାଇ ପାରିଲା ନାହିଁ । ସେହି ହତଭାଗିନୀ ନାରୀ ଓ ତାର ଉନ୍ନାଣି ପିଲାର ଛବି ଆଖି ଆଗରେ ନାଚିଲା । ପିତାମାତା ଯଦି ଘରେ ଆଶ୍ରୟ ନ ଦିଅନ୍ତି ସେ କରିବ କଣ ? ନିର୍ଦ୍ଦୋଷ ବୋଲି କହିଲେ ତା କଥା ଲୋକେ ବିଶ୍ୱାସ କରିବେ ନାହିଁ । ଦାଣ୍ଡ ବଜାରରେ ତା ନାମରେ ହାଟ ବସିଯିବ । ଦୁର୍ନାମ ରଟିବ । ଲୋକେ ଘୃଣାରେ ନାକ ଟେକିବେ ଶେଷକୁ କଣ ପଥ ଆଶ୍ରା ? ଦ୍ୱାର ଦ୍ୱାର ବୁଲି ପେଟ ଗୃଖଣ୍ଡିକ ପାଇଁ ଭିକ୍ଷା ? ବାଟ କଡ଼ରେ ଗଛମୂଳେ ରାତି କଟାଇବାକୁ ହେବ । ଲୋକେ ଆହା ବୋଲି ପଦେ କହିବେ ନାହିଁ । ଭିକ ନ ଦେଇ ମାରିବାକୁ ଛୁଞ୍ଚୁଣୀ ଧରି ଗୋଡ଼େଇବେ । ସେହି ହତଭାଗିନୀ ପରି ମଶାଣିରେ ବିଲୁଆ କୁକୁରଙ୍କର ସାଥୀ ହେବ ସେ ?

ନିଜ ଭାବନାର ଜ୍ୱାଳା ସେ ସହି ପାରିଲା ନାହିଁ । ଅଜଣା ଭୟରେ ହୃଦୟ ଥରି ଉଠିଲା । କାହିଁକି ? ରୂପ ଅଛି, ଯୌବନ ଅଛି, ରୂପର ପସରା ମେଲି ବସିଲେ ପେଟ ଗୃଖଣ୍ଡିକ ଅପୋଷା ରହିବ ନାହିଁ ।

ଛି, ଛି, ବରଂ ମରଣ ଭଲ, ସେ ନାହିଗତ ପାଇଯିବ !

ଅନ୍ୟ ଉପାୟ ନାହିଁ । ନାରୀ ପାଇଁ ସବୁ ପଥ ରୁଦ୍ଧ ! ନିଜ ପେଟ ପୋଷିବାକୁ ସେ ଅକ୍ଷମ ! ଏଡ଼େ ଦୁର୍ବଳ ନିଃସହାୟ ତାକୁ କରିଛି କିଏ ? ଏହି ସ୍ୱାର୍ଥପର ସମାଜ ନେତାମାନେ ! ପାଠ ପଢ଼ିଲେ ସେ ନିର୍ଲଜ୍ଜା ହେବ, ପଦାକୁ ବାହାରିଲେ ସେ ଦୁଶ୍ଚରିତ୍ରା ହେବ, ନରର ପ୍ରଭୁତ୍ୱ ଅସ୍ୱୀକାର କରିବ, ତେଣୁ ସେ ଘରକୋଣରେ ପଡ଼ିଥାଉ । ଘରର କାମଧନ୍ଦା କରି ନିଜେ ନ ଖାଇ ପୁଅ-ଗେରସ୍ତଙ୍କୁ ଖୁଆଇ ତାରି ଉପରେ ଅତ୍ୟାଚାର କରିବାକୁ ତାକୁ ବଳିଷ୍ଠ କରୁ, ଆଉ ନିଷ୍ଠୁର ମନ ତୃପ୍ତି କରୁ !

ହୀରା ଅଧୀର ହୋଇ ଉଠିଲା । କଣ କରିବ କିଛି ସ୍ଥିର କରି ପାରିଲା ନାହିଁ । ସଞ୍ଜ ସରିକି ସବାରୀ ଆସି ଭୁବନେଶ୍ୱର ଦାଣ୍ଡରେ ପହଞ୍ଚିଲା । ଆଖିରୁ ଲୁହ ପୋଛି ଅଦୂର ଭବିଷ୍ୟତର ଅଜଣା ଭୟପାଇଁ ହୀରା ପ୍ରସ୍ତୁତ ହୋଇ ରହିଲା ।

## ବାର

ନେତ୍ରମଣି ଧାନାଠାରୁ ସବୁ ଖବର ବୁଝିଥିଲେ । ଧାନା ଏସବୁ କାଣ୍ଡର ଭିତରେ କଥା କିଛି କହିପାରିଲା ନାହିଁ । ରଥ ମହାଶୟଙ୍କ ନିକଟକୁ ଆସିଥିବା ପତ୍ର ଖଣ୍ଡି ଖୋଲି ପଢ଼ିଥାନ୍ତେ, ମାତ୍ର ଲଫାପା ଉପରେ ଲେଖା ଅଛି, ଅନ୍ୟ କେହି ଖୋଲି ପଢ଼ିବା ନିଷେଧ । ରଥେ ଆଣ୍ଠୁଆ ଲୋକ । ଘରେ ନାହାନ୍ତି । ମଧୁପୁର ଜମିଦାରଙ୍କ ଘରେ ଚୁଡ଼ାଦହିର ବ୍ୟବସ୍ଥା କରିବାକୁ ସକାଳୁ ଚାଲି ଯାଇଛନ୍ତି । ତାଙ୍କ ବିନାନୁମତିରେ ଚିଠିଟି ଖୋଲି ପକାଇଲେ ସେ ଚିଡ଼ିବେ ।

ନେତ୍ରମଣିଙ୍କୁ ବୁଦ୍ଧି ଦିଶିଲା ନାହିଁ । ଛୁଆଝିଅ ବାଲେଇ ଦିନ ଏପାଖ ସେପାଖ ହେବାକୁ ଲାଗିଲେ । କେତେବେଳେ ତାଙ୍କ ପ୍ରାଣର ପ୍ରତିମା ଆସିବଟି ! ଦାଣ୍ଡକୁ ଯାଇ ଦଶଥର ସବାରୀକୁ ଅନାଇଁ ଆସିବା ହିଁ ସାର ହେଲା !

ସଞ୍ଜ ବୁଡ଼ିଲା । ସବାରୀ ଆସି ଦାଣ୍ଡରେ ଭିଡ଼ାହେଲା । ନେତ୍ରମଣିଙ୍କ ଛାତିରୁ କିଆଁ ଖସି ପଡ଼ିଲା । ଲୁହଭରା ଆଖିରେ ସେ ତାଙ୍କ ହତଭାଗିନୀ କନ୍ୟାର ହାତ ଧରି ଘରକୁ ନେଲେ । ହୀରାକୁ ଛାତିରେ ଜାକି କେତେ କାନ୍ଦିଲେ । ଭରସି କରି କୌଣସି କଥା ପଚାରି ପାରିଲେ ନାହିଁ । ହୀରା ମଧ୍ୟ ଭୟରେ କିଛି କହି ପାରିଲା ନାହିଁ ।

ଖିଆପିଆ ସରିଲା । ନେତ୍ରାନନ୍ଦ ଦ୍ୱାରା ଗରୁଡ଼ ଭଣ୍ଡାରଙ୍କର ଚର୍ଚ୍ଚା କରାଗଲା । ରାତି ଅଧ, ତଥାପି ରଥେ ଆସିଲେ ନାହିଁ । କନ୍ୟାକୁ କୋଳରେ ପୂରାଇ ନେତ୍ରମଣି ଶୋଇବାକୁ ଚେଷ୍ଟା କଲେ । ନିଛାଟିଆ ନିଦ ତାଙ୍କର ଶତ୍ରୁ ହେଲା । ଦାଉ ସାଧିବାକୁ ସେ ଆଉ ଧରାଛୁଆଁ ଦେଲା ନାହିଁ । ନାନାପ୍ରକାର ଦୁର୍ଭାବନାରେ ନେତ୍ରମଣିଙ୍କର ମନ ବିକଳ ହେଲା । ସେ ଖାଲି ଛଟପଟ ହେବାକୁ ଲାଗିଲେ । ହୀରାମଣିର ଅବସ୍ଥା ମଧ୍ୟ ତଦ୍ରୂପ । ଆଖିରୁ ଧାରଧାର ଲୁହ ବୋହି ଯାଉଥାଏ ।

ନେତ୍ରମଣି ଅତି କୋମଳ ସ୍ୱରରେ ପଚାରିଲେ, ଶୋଇ ପଡ଼ିଲୁ କି ମା ?

ନା ବୋଉ, ଶୋଇ ନାହିଁ ।

ମୁଁ ତ କିଏ ପଠାଇ ନାହିଁ, ତୁ ଆସିଲୁ କାହିଁକି ?

ଅଭିମାନରେ ହୀରାର କଣ୍ଠ ରୁଦ୍ଧ ହୋଇ ଆସିଲା । ଏତେ ମିଛ ? ଲୋକେ ମିଛରେ ଏତେ କଥା-କପଟ ଫାନ୍ଦି ଯାଆନ୍ତି । ସତ କଥା କହି ଘରୁ ବିଦା କରି ଦେଇଥିଲେ ତାଙ୍କୁ କିଏ ଡରୁଥିଲା ? ମା ବେମାର ପଡ଼ିଛି, ଏହି ଅଜବ ମିଛ ସମ୍ବାଦ ଦେଇ ସେମାନଙ୍କୁ କେଉଁ ଦଉଲତ ମିଳିଲାଟି ! ଆଉ, ବୋଉ କିଣ କିଏ ପଠାଇ

ନାହିଁ ? ତାର ଚିଠିଖଣ୍ଡ କଣ୍ଠରୁ ବଳି କଣ୍ଟକ ହେଲା ! ଦୁଃଖେ ସୁଖେ ସେ ତାର କର୍ତ୍ତବ୍ୟ କରି ଯାଉଥିଲା । ଧନେ ହେଲେ କେବେ ମୁହଁ ଖୋଲି କାହା ଆଗରେ ନିଜ ଦୁଃଖକଷ୍ଟ ଗୁହାରି କରି ନାହିଁ । କାଳ ହେଲା ବୋହୂର ସେହି ଚିଠିଖଣ୍ଡି ।

ହୀରାମଣି କହିଲା, ଆସିଲି କାହିଁକି କହି ବସିଲେ ପ୍ରମାଣ ହେବ ନେ ନୋଉ, କହିଲେ ବିଶ୍ୱାସ କରିବ କିଏ ? ଲୋକେ କହିବେ, ପରର ସୁଖ ଦେଖି ନ ପାରି ମୁଁ ପର ନାଁରେ ମିଛ ଦୁର୍ନାମ ରଟାଉଛି । ବୟସରେ ସାନ ହେଲେ ବି ସେ ମୋର ମାନ୍ୟର ଲୋକ, ଶାଶୁ । ତାଙ୍କ ବିରୁଦ୍ଧରେ ତୁଣ୍ଡ ଖୋଲିଲେ ପାପ ! ପିଠିରେ ମାଡ଼ ସହି ତୁନି ରହିବା ଭଲ ।

ନେତ୍ରମଣି ଘଟଣାଟି ଭଲରୂପେ ବୁଝି ନ ପାରି କହିଲେ, ତୋ କଥା ମୁଁ କେବେ ଅବିଶ୍ୱାସ କରିନାହିଁ କି କରିବି ନାହିଁ । ମା ପାଖରେ ଘଟଣା ଲୁଗ୍ରାଇବା ଭଲ ନୁହେଁ ହୀରା, ସବୁ ଖୋଲି କରି କହ !

ମୋ କଥା ଯଦି ତୁ ବିଶ୍ୱାସ କରିଥାନ୍ତୁ ମୋର ଏ ଦୁରବସ୍ଥା ହୋଇ ନ ଥାନ୍ତା । ଆଜଯାଏ ଯଦି ମୋ କଥାରେ ତୋର ହୃଦବୋଧ ହୋଇ ପାରିଲା ନାହିଁ ଆଜି ହେବ ବୋଲି କେଉଁ ବିଶ୍ୱାସ ?

କେଉଁ କଥାରେ ମୋର ହୃଦବୋଧ ହେଲା ନାହିଁ ବୋଲି ତୁ ଜାଣିଲୁ ?

ହୀରାର କ୍ରୋଧ ବଢ଼ିଲା । କହିଲା, ଏତେ ଚଞ୍ଚଳ ତୁ କେମିତି ଭୁଲିଯାଉ ବୋଉ ? ହୃଦବୋଧ ହେଲା ନାହିଁ ମୋ ଉପରେ ତୋର ପରତେ ଆସିଲା ନାହିଁ ବୋଲି ଦୁର୍ନାମରେ ବିଶ୍ୱାସ କରି ମୋତେ ତୋ ପାଖରୁ ଅନ୍ତର କଲୁ । ବଉଳର ଯେଉଁ ଚିଠିଖଣ୍ଡ, ସେଥିରେ ତୋର ମନ ମାନିଲା ବୋଲି ଶ୍ୱଶୁରଙ୍କ ପାଖକୁ ମୋତେ ପଠାଇ ଦେଇଥିଲୁ । କଥା ସତ କି ମିଛ ଥରେ ବୁଝିବାକୁ ଚେଷ୍ଟା କଲୁ ନାହିଁ । ବ୍ରଜକିଶୋର ମୋର କେଉଁ ଚୁଲିପାଉଁଶ ଯେ ମୁଁ ତାଙ୍କ ସଙ୍ଗେ ଦେଖା କରିବାକୁ କେଦାର-ଗୌରୀକି ଦଉଡ଼ି ଯାଉଥିଲି ? ତାଙ୍କ ପାଖକୁ କୁଆଡ଼େ ଚିଠି ଲେଖୁଥିଲି ? ସେ ଚିଠିରୁ ଖଣ୍ଡେ ଆଗ ମଗାଇଲୁ ନାହିଁ ? ଯିଏ ଏତେ ମିଛ ମୋ ନାମରେ ବାନେଇ ଚୂନେଇ ଲେଖିଛି ତା ଉପରେ ନିଶ୍ଚେ ଧନେ ମୋର ଏ ବିଶ୍ୱାସ ପଡ଼ିବ । ବଞ୍ଚିଥିଲେ ପୁଣି ଦେଖିବୁ ।

ନେତ୍ରମଣି ଦୀର୍ଘଶ୍ୱାସ ଛାଡ଼ି ପଚାରିଲେ, ଇନ୍ଦିରା ପରୀକ୍ଷା, ସେ ପୁଣି ତୋର ବଉଳ, ମୋତେ ମିଛ ଲେଖିଲା ?

ହୀରା କାନ୍ଦଣା ସ୍ୱରରେ କହିଲା, ତମକୁ ସତ ମୋତେ ମିଛ । ଶାଶୁ ଶ୍ୱଶୁର ତୋ ଚିଠି ପାଇ ଛଳନା କରି ମୋତେ ଘରୁ ତଡ଼ିଛନ୍ତି । ପୂର୍ବଜନ୍ମ ତପସ୍ୟାର ଫଳ ! ତମେ ପରି ବାପ ମା, ଜନ୍ମ ଦେଇ ପିଲାଦିନୁ ପାଳି ବଡ଼େଇ କଲ, ତମର ଟିକିଏ ବିଗ୍ରର ହେଲା ନାହିଁ ? ଅନୁତପ୍ତଶାଳାରୁ ତଣ୍ଟି ଚିପି ଦେଇଥିଲେ ବି ଭଲ ହୋଇଥାନ୍ତା,

ତମର ମାନ ମହତ୍ତ୍ୱ ସେମିତ ଜଳି ଜଳି ହୋଇ ଜଳୁଥାନ୍ତା । ମୋତେ ବ ଦହଗଞ୍ଜ ହେବାକୁ ଏବଂ ଜୀବନସାକ କାନ୍ଦିବାକୁ ପଡ଼ି ନ ଥାନ୍ତା ।

ନେତ୍ରମଣି କନ୍ୟାକୁ କୋଳକୁ ଟାଣିଆଣିଲେ । ଭାବିଲେ, ସତ କଥା ତ, ଲୋକଙ୍କ ତୁଣ୍ଡରୁ ସବୁବେଳେ ପରର ଦୁର୍ନାମ ବାହାରେ । ସେମାନେ ନ ବୁଝି ନସୁଝି ବିଶ୍ୱାସ କଲେ, ଏଥିରେ ତାଙ୍କର ଯେଉଁ ମଣିଷପଣିଆଁ ରହିଲା ?

କହିଲେ, ମା ମୋର, ତୋ ଦୁଃଖର କାରଣ ହେଉଛି ମୁଁ ଏଥିଁ ଲାଗି । ଯାହା ହେବାର ହୋଇ ସାରିଛି । ମୋ ରାଣ, ମୋ ମୁଣ୍ଡ ଖାଇବୁ, ସେ ସବୁ କଥା ଆଉ ମନରେ ଧରନା । ଗତକଥା ପାସୋର ପକା, ମୁଁ ବଞ୍ଚିଥିବା ଯାଏ ତୁ ମୋର ପାଖରେ ରହିବୁ । ମୁଁ ମରିଗଲେ ତେଣିକି ତୋ ଭାଗ୍ୟ ।

ଗତକଥା ସିନା ମୁଁ ପାସୋରିବି, ନୋହିଲେ ତୁ ପାସୋରିବୁ, ଆଉମାନେ ପାସୋରିବେ କିପରି ? ଯେଉଁ ଦିନ ଯେତେବେଳେ ତୋ ପାଖରୁ ମତେ ଦୂରକୁ ଠେଲି- ଦେଲୁ ମୁଁ ଜାଣିଲି ମୋ କପାଳରେ ସ୍ଥାନାବସ୍ଥା ଅଛି । ସେଥିକି ମୁଁ ଡର ନାହିଁ । ଏଣିକି ମୋର ସାହସ ବଢ଼ି ଲାଣି । ତୋ କୋଳରେ ସିନା ମୋପାଇଁ ଥାନ ନାହିଁ, ଲୋକେ ଥାନ କରେଇ ଦେବେ ନାହିଁ, ଏ ଦୁନିଆଁରେ କଣ କୋଳର ଅଭାବ ? ସଂସାରରେ ଏତେ କୂଅପୋଖରୀ ଅଛି, ତାଙ୍କର ଶୀତଳ କୋଳ ମେଲାଇ ମୋର ପାଇଁ ମୋର ପରି ଶହ ଶହଙ୍କ ପାଇଁ ଦିନ ରାତି ସେମାନେ ଅପେକ୍ଷା କରି ରହିଛନ୍ତି । ତମରିମାନଙ୍କ ଦାଉରୁ, ସମାଜର ଅତ୍ୟାଚାରରୁ, ମୋର ପରି କେତେ ତ ତାଙ୍କର ଦୁଃଖକଷ୍ଟ ଛପାଇ ଦେଇଛନ୍ତି କୂଅପୋଖରୀର ଶୀତଳ କୋଳରେ । ମୋତେ ଆଶ୍ରା ଦେବାକୁ ସେମାନେ ନାହିଁ କରିବେ ନାହିଁ ।

ହୀରାର ଧୈର୍ଯ୍ୟ ଭାଙ୍ଗିଲା । କୋହ ସମ୍ଭାଳି ନ ପାରି ସେ କାଇଁ କାଇଁ ହୋଇ କାନ୍ଦି ଉଠିଲା । ନେତ୍ରମଣି ମଧ୍ୟ ମନର ବେଦନା ସହି ପାରିଲେ ନାହିଁ । ଝିଅର ମୁଣ୍ଡ ଆଉଁସି ବିକଳ ହୋଇ କହିଲେ ଶୁନ ହ ମା—, କିନ୍ତୁ ନିଜେ କାଇଁ କାଇଁ ହୋଇ କାନ୍ଦି ଉଠିଲେ । ରାତି ପାହିଲା । ନେତ୍ରମଣିଙ୍କ ନିଦ ଆଗ ଭାଙ୍ଗିଲା । ହୀରାମଣି ଶୋଇ ପଡ଼ିଛି । ନେତ୍ରମଣି ଘଡ଼ିଏ କାଳ ହତଭାଗିନୀ ଝିଅଟିର ମୁହଁକୁ ଚାହିଁ ରହିଲେ । କାନ୍ଦି କାନ୍ଦି ତାର ଆଖି ଫୁଲି ଯାଇଛି, ଭାବିଲେ, ଆହା, ମୋ ସୁନା କଣ୍ଢେଇଟିର କପାଳରେ ଏତେ ଦହଗଞ୍ଜ ଥିଲା ? ତାଙ୍କ ଆଖିରୁ ଲୁହ ଗଡ଼ିଗଲା । ନଇଁପଡ଼ି ହୀରାର ଗଣ୍ଡ ଚୁମ୍ବନ କଲେ । ହୀରା କଡ଼ ମୋଡ଼ି ଦୀର୍ଘଶ୍ୱାସ ଛାଡ଼ିଲା । ନେତ୍ରମଣି ଆଖିରୁ ଲୁହ ପୋଛି ବାସି ପାଇଟି କରିବାକୁ ଚାଲିଗଲେ ।

ରଥମଣି ଘରକୁ ଫେରିଲେ । ଦାଣ୍ଡ ଆଗରେ ଖଣ୍ଡେ ସବାରି ଓ ଏତେ ଲୋକ ଜମା ହୋଇଥିବାର ଦେଖି କିଛି ବୁଝି ପାରିଲେ ନାହିଁ । ପରେ ଘଟଣାଟି ବୁଝି ମନେ ମନେ ଗଣିଲେ । ଯେତେହେଲେ ପଣ୍ଡିତ ମଣିଷ, ଚାରିଆଡ଼କୁ ନଜର ରଖି ବୁଝି

ବିଗ୍ରୀର କାମ କରିବା ତାଙ୍କର ଅଭ୍ୟାସ । ବନ୍ଧୁ ଘର ଲୋକେ, ତାଙ୍କ ଖବର ଆଗ ବୁଝିବା ଆବଶ୍ୟକ ।

ଯଥା ସମୟରେ ଗଉଡ଼ ଭଣ୍ଡାର ବନ୍ଦ ହୋଇ ଗଲା । ରଥେ ନିଶ୍ୱାସ ଛାଡ଼ିଲେ । ହାରି ସଜଳ ନେତ୍ରରେ ପିତାଙ୍କୁ ପ୍ରଣାମ କଲା, କିନ୍ତୁ ରଥେ ଗ୍ରାମ କି ବସ୍ତି, କିଛି ନ କହି ମୁହଁକୁ ଭ୍ରୁକୁଣ୍ଡା କରି ବସିଲେ । ହାରି ଭୟରେ ଧୀରେ ଧୀରେ ସେ ଘରୁ ଗ୍ରାଲିଥସି କାନ୍ଥକୁ ଆଉଜି ପଦାରେ ଠିଆହୋଇଲ, ଉଦ୍ଦେଶ୍ୟ ତାଙ୍କ ଶ୍ୱଶୁରଙ୍କ ଦେଇଥିବା ଚିଠି ଖଣ୍ଡର ମର୍ମ ବୁଝି ପାରିବ । ନେତ୍ରମଣି ଚିଠିଖଣ୍ଡି ଥରିଲା ହାତରେ ସ୍ୱାମୀଙ୍କ ହାତକୁ ବଢ଼ାଇ ଦେଲେ । ଟିକିଏ ଆଡ଼ ହୋଇ ଠିଆ ହୋଇ ରହିଲେ ।

ଚିଠି ଖୋଲିଗଲା । ପଢ଼ୁ ପଢ଼ୁ ରଥଙ୍କ ଆଖି ରଙ୍ଗ ହୋଇଗଲା । ମୁଣ୍ଡର ଚୁଟିକୁ ବାମ ହାତରେ ଝାଣ୍ଟି ଝାଣ୍ଟି କ୍ରୋଧରେ ସେ ଗର୍ଜି ଉଠିଲେ । ଘର ଭିତରେ ନେତ୍ରମଣି ଓ ବାହାରେ ହାରି ରଥଙ୍କର ଗର୍ଜନରେ ଚମକି ଉଠିଲେ । ହାରିର ଗୋଡ଼ହାତ ବରଡ଼ାପତ୍ର ପରି ଥରିବାକୁ ଲାଗିଲା । ଠିଆ ହେବାକୁ ଯେତେ ଚେଷ୍ଟା କଲା, ହେଲା ନାହିଁ । ପଳାଇଯିବାକୁ ଗୋଡ଼ ଚଳିଲା ନାହିଁ । ସେ ଥରି ଥରି ସେହିଠାରେ ବସି ପଡ଼ିଲା ।

ରଥେ ଚିଠିଖଣ୍ଡି ଯେତିକି ପଢ଼ୁଥାନ୍ତି, ତାଙ୍କର କ୍ରୋଧର ମାତ୍ରା ସେତିକି ବଢ଼ୁଥାଏ । ତାଙ୍କ ସ୍ତ୍ରୀଙ୍କୁ ଲକ୍ଷ୍ୟ କରି ସେ କହି ଉଠିଲେ, ମୋତେ ନ ପଚାରି ତାକୁ ଏ ଘରେ ପୂରାଇଲ କାହିଁକି ?

ନେତ୍ରମଣି ବୁଝି ନ ବୁଝିଲା ପରି ପଚାରିଲେ, କାହାକୁ ?

କାହାକୁ ? ତମର ସେହି କୁଳ-କଳଙ୍କିନୀ ହତଭାଗିନୀ କନ୍ୟାକୁ ।

ତମର ସେ କିଛି ନୁହେଁ ପରା ?

ନା, ପବିତ୍ର ରଥକୁଳର ରକ୍ତ ଯଦି ତାର ଦେହରେ ଥାଆନ୍ତା ଆଜି ମୋ ଆଖିରେ ଏପରି ପତ୍ର ପଡ଼ି ନ ଥାନ୍ତା ।

ନେତ୍ରମଣି ସ୍ମିତ ହସି କହିଲେ, ହୋଇଥିବ ଲୋ ମା, ମୁଁ ତ ମୂର୍ଖ ଲୋକ, କି ଜାଣେ ତା ଧିଅରେ କି ରକ୍ତ ଅଛି ?

ରୋଷ ଖେଙ୍କିଲା ପରି ଖେଙ୍କି ଉଠି ମୁଖ ବକ୍ରିତ କରି ରଥେ ଚନ୍ଦ୍ରଙ୍କି ଆଖି ବଖାଣିଲେ, ମୁଁ ଯାହା ପଚାରୁଛି ତାର ଉତ୍ତର ଦିଅ, ଏଣେତେଣେ ବକୁଛ କଣ ? କୁମ୍ଭୀର ନେଇ ଅଧ ନଈରେ କଲଣି ମାଆଙ୍କର ନିଦ ଭାଙ୍ଗିଲା ନାହିଁ ।

ଏଁ, କଣ ମାଇଲା ପରି ହେଉଛ ! ମା ଲୋ, ମତେ କଣ ତମ ଗୁହାଳପିଲା ପରି ପାଇଲ କି ? କୁମ୍ଭୀର ନେଇ ଅଧନଈରେ କଲା କି ପୂରାନଈ ପାରି କରି ଆରପାଖରେ ଛାଡ଼ିଲା ମୋର କି ଗରଜ ଅଛି ଏତେ ଖବର ରଖିବି ? ଝିଅ ବାପଘରକୁ ଆସିଲା, ତାକୁ ଘରେ ପୂରାଇଲି, ଏହା ତ ସବୁ ମାଆଙ୍କର କର୍ତ୍ତବ୍ୟ ! ମୁଁ କିଛି ନୂଆ

କଥା କର ନାହିଁ । ଏଣିକି ତେବେ ଘର ପଚ୍ଛିଁରବାଠାରୁ ଚୂଲିରେ ଜାଳ ମୋହିଁବାଯାଏ ସବୁଥିରେ ତମର ଅନୁମତି ଲୋଡ଼ା ହେବ ପରା !

ଭାରି କର୍ତ୍ତବ୍ୟ ଜ୍ଞାନ ତୁମର ଅଛି ! ଆରେ, ତମ ଝିଅ ଶ୍ୱଶୁରଘରକୁ ଯାଇ କି ନାଁ ପକାଇ ଆସିଛନ୍ତି ଯେ ତାଙ୍କ ନାମରେ ଦାଣ୍ଡ ବଜାରରେ ହାଟ ବସିଛି । ଭଗବାନ ମିଶ୍ରେ ହଟୋଟ ଲୋକ, ନୈଷ୍ଠିକ ବ୍ରାହ୍ମଣ, ସେ କାହିଁକି ଏପରି ଅଳଆଗଦା ମୁଣ୍ଡରେ ବୋହି ବଂଶ ମର୍ଯ୍ୟାଦା ହାନୀ କରିବେ ? ସାବଧାନ ହୋଇ ଆଗରୁ ବାଟ କାଟି ତାକୁ ବିଦା କରିଦେଲେ । ତମେ ସିନା ମାଇପିଲୋକ, ତମର ବୁଦ୍ଧି ଶୁଦ୍ଧି ନାହିଁ, ଆମେ ଯେ ଆହାର ନିଦ୍ରା ଭୁଲି ଏତେ ବର୍ଷ ଶାସ୍ତ୍ର ପୁରାଣ ଘୋଷି କାବ୍ୟତୀର୍ଥ ଉପାଧି ପାଇଲୁ, ସବୁ କଣ ବୃଥା ?

ତାର ଅପରାଧ କଣ ?

ତମ ମୁହଁରେ ଚୂନକାଳି ବୋଳି ତୁମକୁ ବାଛନ୍ଦ କରିବା ହେଲା ତାର ଅପରାଧ ।

ତମେ ଯଦି ମନକୁ ନିଜ ମୁହଁରେ ଚୂନକାଳି ବୋଳି ହୋଇ ଦାଣ୍ଡରେ ଥେଇ ଥେଇ ନାଚ ସେଥିକି କିଏ କଅଣ କରିବ ? ଲୋକେ ହସିବା ସାର ହେବ ।

ଲୋକେ କଣ ଆଜିଯାଏ ହସି ନାହାନ୍ତି ? ହାରିର ମନ୍ଦ ସ୍ୱଭାବ ବିଷୟରେ ଚର୍ଚ୍ଚା କରିବାକୁ ଯାଇ ଶାସନରେ ଦଶଥର ସଭା ହୋଇଗଲା । ଲୋକେ କଣ ଆଖି ବୁଜି କାନରେ ତୁଳାବିଣ୍ଡା ମାରି ଘୁମାଉଥିଲେ ?

ଘୁମାଉଥିଲେ କି ଚେଇଁଥିଲେ ଏ କଥା କିଏ କହି ପାରିବ ?

ରଥେ ଘଡ଼ିଏ କାଳ ବକାଙ୍କ ପରି ବସି ରହିଲେ । କଣ ଭାବି ମୁଣ୍ଡ ହଲାଇ ଉଚ୍ଚସ୍ୱରରେ କହିଲେ, ନା, ଏ ଘରେ ଆଉ ଆମର ସ୍ଥାନ ନାହିଁ । ଏ ଘରେ ହାରି ଥିବାଯାଏ ଏଠାରେ ଜଳ ଛୁଇଁଲେ କାୟା ନଷ୍ଟ । ପ୍ରାୟଶ୍ଚିତ୍ତ, ପ୍ରାୟଶ୍ଚିତ୍ତ ଲେଖିଛି, ଅତଏବ ସ୍ଥାନତ୍ୟାଗେନ ଦୁର୍ଜନ ।

ହାରିକୁ ଆଶ୍ରୟ ଦେବ କିଏ ?

ଯାହା ପାଇଁ ସେ ତାର ସ୍ୱଭାବ ନଷ୍ଟ କରିଛି ସେଇ, ନୋହିଲେ ବୃକ୍ଷମୂଳ !

ବାପ ହୋଇ ଏପରି କଥା ତମେ ତୁଣ୍ଡରେ ଧରି ପାରୁଛ ? ମନରେ ସ୍ନେହ ସହାନୁଭୂତି ଟିକିଏ ହୋଇ ନାହିଁ ତମର ?

ନେତ୍ରମଣିଙ୍କର ଆଖିରେ ବ୍ୟାକୁଳତା, କଥାରେ ଅନୁନୟ ବିନୟଭାବ । ସେ ଜାଣନ୍ତି, ସ୍ୱାମୀ ତାଙ୍କର ନିଷ୍ଠୁର ଓ ବିତଣ୍ଡିହ ହେଲେ ବି ସେ ପଥର ନୁହନ୍ତି, ସେ ମଣିଷ, ଗୃହସ୍ଥ, ପିତା ।

ରଥଙ୍କର ମୁହଁରେ ରୁକ୍ଷ ଭାବ । ସେ ଚିନ୍ତାମଗ୍ନ । ଟିକିଏ ରହି ସେ କହି ଉଠିଲେ, କାରଣ ବଚ୍ଛିଇରେ ଦାଏ ନା ପୁଅରେ ଧାଏ ? ସମାଜର ମାନରକ୍ଷା ପାଇଁ,

ବଂଶର ମର୍ଯ୍ୟାଦା ରକ୍ଷା ପାଇଁ, ଦୁଷ୍ଟଚରିତ୍ରା କନ୍ୟାକୁ ତ୍ୟାଗ କଲେ ଧର୍ମତଃ କୌଣସି ଦୋଷ ନାହିଁ ।

ଦୃଢ଼ କଣ୍ଠରେ ନେତ୍ରମଣି କହିଲେ, ଯଦି ଏହା ହିଁ ତମର ଇଚ୍ଛା, ମୋତେ ମଧ ତା ସଙ୍ଗେ ଯିବାକୁ ହେବ । ହାରିକୁ ବାଟରେ ଛାଡ଼ି ମୁଁ ନିଶ୍ଚିନ୍ତରେ ତମର ସେବା କରିବାକୁ ରହି ପାରିବି ନାହିଁ ।

ନେତ୍ରମଣି କହିଁ କହିଁ ହୋଇ କାନ୍ଦି ଉଠିଲେ ।

ରଥେ କହିଲେ, ସେଥିରେ ମୋର ତିଳେହୋଇ ଆପତ୍ତି ନାହିଁ । ସମାଜର ସଂସ୍କାର ଓ ବଂଶ ଏବଂ ଜାତିର ମାନମର୍ଯ୍ୟାଦା ପାଇଁ ମଣିଷକୁ ସବୁ ସହିବାକୁ ପଡ଼ିବ ।

ପିତାଙ୍କର ନିଷ୍ଠୁର କଥା ଶୁଣି ହାରି ଥକା ହୋଇ ଠିଆ ହୋଇ ରହିଲା । ଦୁଇ ଆଖିରୁ ଝରିପଡ଼ିଲା ଲୋତକ ଧାରା । ସେ ଜାଣେ, ସେ ନିର୍ଦ୍ଦୋଷ । ପରର କଥା ଶୁଣି ତା ପାଇଁ ପିତା ଯେ ଏପରି କଠୋର ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରିବେ, ଏହା ସେ ପୂର୍ବରୁ ଅନୁମାନ କରିଥିଲା । ପର କଥାରେ ଅନ୍ଧ ହୋଇ ନିରୀହର, ନିର୍ଦ୍ଦୋଷର ସର୍ବନାଶ କରିବାକୁ ସମାଜ ତିଳେ ହୋଇ କୁଣ୍ଠାବୋଧ କରେନାହିଁ ।

ହାରିର ଭୟ କ୍ରୋଧରେ ପରିଣତ ହେଲା । ମରିବାକୁ ତ ହେବ, ଥରେ ଶେଷ ଚେଷ୍ଟା କରି ପିତାଙ୍କର ମନ ବଦଳାଇବାକୁ ଯତ୍ନ କଲେ କ୍ଷତି କଣ ? ସେ ଥରି ଥରି ଘର ଭିତରକୁ ଗଲା । ରଥଙ୍କର ଦୁଇପାଦ ଚାପି ଧରି କାନ୍ଦଣା ସ୍ୱରରେ କହିଲା, ମୋର କିଛି ଦୋଷ ନାହିଁ ନନା, ମୁଁ ଆପଣଙ୍କର ଗୋଡ଼ ଧରି ଶପଥ କରୁଛି, ସବୁ ମିଛ କଥା ! ମୋ ନାମରେ ଲୋକେ ମିଛରେ ଏପରି କୁତ୍ସା ରଟନା କରୁଛନ୍ତି ।

ସମାଜନେତା ଭଗବାନ ମିଶ୍ରେ ମିଛ ଲେଖି ପାରନ୍ତି ନାହିଁ । ମୁଁ ଅନ୍ଧ ନୁହେଁ । ନିଜ ଆଖିରେ 'ମୁକୁର' ପ୍ରେସରେ ତୋର ହାତଲେଖା ମୁଁ ଦେଖି ଆସିଛି । ରଥେ ମୁହଁ ବୁଲାଇଲେ ।

ହାରି ଉଠିଲା । ତା ହୃଦୟ ଭିତରେ ଆଗ୍ନେୟଗିରିର ପ୍ରଳୟ ଶିଖା ଜଳୁଥିଲା । କ୍ଷଣେ, କ୍ଷଣେ ମାତ୍ର ସେ ତାର ନିର୍ମମ ପିତାର ଅଗ୍ନିଚକ୍ଷୁ ଓ ଗମ୍ଭୀର ମୁହଁକୁ ଚାହିଁ ରହିଲା । ତା ଚକ୍ଷୁରୁ ଆଉଥରେ ଅଶ୍ରୁଧାରା ଝରିପଡ଼ିଲା । ହାରି ତାର ପିତାଙ୍କୁ ପ୍ରଣାମ କଲା । କେତେ କଣ କହିବାକୁ ବସିଥିଲା ତୁଣ୍ଡ ଖୋଲିଲା ନାହିଁ । ତାର କଣ୍ଠ ରୁଦ୍ଧ ହୋଇ ଆସିଲା । କମ୍ପିତ ପଦରେ ସେ ଦ୍ୱାର ନିକଟକୁ ଗଲା । ମୁହୂର୍ତ୍ତେ— ମୁହୂର୍ତ୍ତିକ ପାଇଁ କରୁଣ ଦୃଷ୍ଟିରେ ପିତାଙ୍କ ମୁହଁକୁ ଚାହିଁ ଅତି କଷ୍ଟରେ, ଅତି ଧୀରେ ଧୀରେ, ଅସ୍ପଷ୍ଟ ଭାଷାରେ କହିଲା, ମୁଁ ନିର୍ଦ୍ଦୋଷ ନନା, ମୁଁ କିଛି ଜାଣେ ନାହିଁ ।

ତତ୍ପରେ ସେ ତାର ମୁହ୍ୟମାନା ସ୍ନେହମୟୀ ମା ଆଡ଼କୁ ଚାହିଁଲା । ଥରଥର ପାଦରେ ଚାଲିଆସିଲା ରାଧାମାଧବଙ୍କ ପାଖକୁ । ବିଗ୍ରହ ଆଗରେ ମୁଣ୍ଡ ଲଗାଇ ଦୁଇ ଆଖିରୁ ଲୋତକରଧାର ଗଡ଼ାଇ ସେ ପ୍ରାର୍ଥନା କଲା, ମୋତେ ବାଟ ଦେଖାଅ ଭଗବାନ, ଚିନ୍ତପୁର ମତେ ଅନ୍ଧାର ଦିଶୁଛି ।

# ଫେରାର

ନିଶା ଗର୍ଜୁଛି, ସତେ କି ଡାକ ଛାଡ଼ୁଛି, ଚାଲିଆ, ଚାଲିଆ, ଏ ଘରେ ଏ ସମାଜରେ ତୋର ସ୍ଥାନ ନାହିଁ, ସମସ୍ତେ ତୋତେ ପରିତ୍ୟାଗ କରିଛନ୍ତି, ବାଟକଡ଼ ହିଁ ତୋର ଆଶ୍ରା, ଅନ୍ଧାର ହିଁ ତୋର ଏକମାତ୍ର ଆଶା । ଆଖିର ଲୁହ ନୁହେ, ଓଠର ହସ ହିଁ ତୋର ଏକମାତ୍ର ଭରସା । ଚାଲିଆ—

ହାବ୍ ଉଠିଲା । ଆଖିରୁ ଲୋତକ ପୋଛିଲା । ଅନ୍ଧକାରରେ ରାଧାମାଧବଙ୍କୁ ପ୍ରଣାମ କଲା । ମନ କହିଲା, ଶୁଣ କି ନ ଶୁଣ, ମୁଁ ନିର୍ଦ୍ଦୋଷ ଏ କଥା ତୁମେ ଜାଣ । ତୁମେ ମୋର ସହାୟ ହେଲ ନାହିଁ । ଅନିଶ୍ଚିତତା ହିଁ ମୋର ସହାୟ । ମୁଁ ଯାଉଛି । କୁଆଡ଼େ ଯାଉଛି ଜାଣେ ନାହିଁ । ଯିବା ହିଁ ମୋର ପନ୍ଥା ।

ଅନ୍ଧାର, ପଛରେ ଯେପରି କିଏ ଗୋଡ଼ାଉଛି ।

ବନ୍ଧୁ ସାଗର ନିମନ୍ତ୍ରଣ କରୁଛି ।

ଆଗକୁ ଚାଲିଲା । ମାଉସୀ ମା ଘର । ଅନ୍ଧାରିଆ ଗଛ ଗହଳି । ସେମାନେ ଡାକୁଛନ୍ତି, ଓହ୍ଲାଇ ପଡ଼ିଲେ ସବୁ ଦୁଃଖ ଯିବ । ଆଗରେ ଷ୍ଟେସନ । ରେଲଗାଡ଼ି ।

ହାବ୍ ଗାଡ଼ି ଭିତରେ ପଶିଲା । ଛାତି ଦାଉଁ ଦାଉଁ । ଘରୁ ସେ ପଳାଇ ଆସିଛି । ନିର୍ଦ୍ଦୋଷ ନିଷ୍କଳଙ୍କ ହୋଇ ମଧ୍ୟ ସେ ଗଞ୍ଜଣା ସହିଛି । ଅପମାନ ପାଇଛି । ଶ୍ୱଶୁର ତାକୁ ଘରୁ ତଡ଼ି ଦେଇଛନ୍ତି । ତା ନାମରେ ଦୁର୍ନାମ ରଟାଇଛନ୍ତି । ପିତା ତାଙ୍କର କଥା ବିଶ୍ୱାସ କରିଛନ୍ତି । ନିର୍ଦ୍ଦୟ ନିଷ୍ଠୁର ହୋଇ ସେ ମଧ୍ୟ ତାକୁ ତ୍ୟାଗ କରିଛନ୍ତି । ଆଶ୍ରୟ ଦେବାକୁ ଦୁଇ କୂଳରେ ତାର କେହି ନାହିଁ । ମରଣ ତାକୁ ନିମନ୍ତ୍ରଣ କରିଛି । ଜୀବନର ମୋହ ସେ ନିମନ୍ତ୍ରଣକୁ ଉପେକ୍ଷା କରିଛି, ଟାଣି ଆଣିଛି ଦୁନିଆଁର ଅଚିହ୍ନା ବାଟକୁ । ଅନିର୍ଦ୍ଦିଷ୍ଟ ତାର ଗତି !

ଗାଡ଼ି ଚାଲିଛି । ଷ୍ଟେସନ ପରେ ଷ୍ଟେସନ ଅତିକ୍ରମ କରୁଛି । ଟିକେଟ୍ କଲେକ୍ଟର କୋଠରିରେ ପଶିଲେ । ବେଶି ଲୋକ ନ ଥିଲେ । ମାଇପେ ମିଶିପେ ମିଶି ଦଶ ବାର ଜଣ । ଲୋକେ ଟିକେଟ୍ କାଢ଼ି ଟିକେଟକଲେକ୍ଟରଙ୍କ ହାତକୁ ବଢ଼ାଇ ଦେଲେ, କିନ୍ତୁ ଟିକେଟ୍‌କଲେକ୍ଟରଙ୍କ ଡାକ ଜଣକର କାନରେ ପଡ଼ିଲା ନାହିଁ । ସେ ଝରକା ବାଟେ ପଦାକୁ ଚାହିଁ ହଲି ହଲି ବଡ଼ ପାଟି କରି ଗୀତ ବୋଲୁଥିଲା, ତାଳ ଦେଉଥିଲା ଚଳନ୍ତି ଗାଡ଼ିର ଶବ୍ଦ । ଗାଡ଼ିର ଶବ୍ଦକୁ ଭଦ୍ର ଲୋକଟିର କଣ୍ଠସ୍ୱର ବୁଡ଼ାଇ ଦେବାକୁ ଚେଷ୍ଟା କରୁଥିଲା ।

ପୂଜାର ଡାଲା ସାଜି,
ଯାଅ ଲଲନେ    ଶୁଭ ଲଗନେ    ଶକ୍ତି ଭବନେ ଆଜି
ଶକ୍ତିମନ୍ତ୍ରୀର କର ଉପାସନା,
ବିଶ୍ୱ ବିଜୟ ତୁମର ବାସନା,
କପାଁ ଲାଞ୍ଛିତ ପର    ରହ ଅପସର    ବର ଅପମାନରାଶି ।
ରକ୍ତ କମଳ କଳି,
ଅରପି ରକ୍ତ    କରବୀ ଭକ୍ତ    ଚୂଆ-ଚନ୍ଦନ ଗୋଳି
ପ୍ରଳୟ ବହ୍ନି କର ଲୋ ଆରତି,
ହୃଦୟ ରକ୍ତ ବାଢ଼ିଦିଅ ସତୀ,
ମଣୋହି ଲାଗି,    ଲୋ ହତଭାଗି,    ଦିଅ ଜୀବନ ବଳି ।
ମାଗ ବିଜୟ ବର,
ନର ପଦ ଲେହନ    ତେଜି ବହନ    ସାମ୍ୟକେତନ ଧର
ଜନନୀ କନ୍ୟା ଭଗିନୀ ଭାମିନୀ,
ରୂପେ ବିଶ୍ୱ ହିତକାରିଣୀ,
ସହିବ ଆଉ    ସମାଜ ଦାଉ    କେତେ ପଦ ପ୍ରହାର ?

ତାଙ୍କର ସେହି ସ୍ୱର ଲୁହରଁରି ଆଖିରେ ଶୁଣୁଥିଲା ଦୂରେଇ ହୋଇ ବସିଥିବା ଜଣେ ତରୁଣୀ । ଆଖିରେ ପଲକ ନାହିଁ, ଅଙ୍ଗରେ ନାହିଁ ସ୍ପନ୍ଦନ ।

ଟିକେଟ୍ ବାବୁ ବ୍ରଜକିଶୋରଙ୍କୁ ହଲାଇ ଦେଇ ଟିକେଟ୍ ଟିକେଟ୍ କହି ହାତ ବଢ଼ାଇଲେ । ବ୍ରଜକିଶୋର ଟିକେଟ୍ ଖଣ୍ଡି ପକେଟରୁ କାଢ଼ି ତାଙ୍କ ହାତକୁ ଦେଲା । ଚେକ୍ କରି ସେଇଟି ଫେରାଇ ଦେଇ ହାରାମଣି ପାଖକୁ ଯାଇ ଟିକେଟ୍ ମାଗିଲେ । ହାରା ପୂର୍ବପରି ନିଶ୍ଚଳ ହୋଇ ବସିଥାଏ । ପାଖରେ ଟିକେଟ ନାହିଁ, କଅଣ ସେ କରିବ ?

ବାରମ୍ବାର ମାଗି ଟିକେଟ୍ ନ ପାଇବାରୁ ରେଳ କର୍ମଚାରୀ ବିରକ୍ତ ହେଲେ । ହାରାକୁ ଧମକ ଦେଇ ହିନ୍ଦି ଇଂରାଜି ମିଶା ଭାଷାରେ ଗାଳି ଦେବାକୁ ଆରମ୍ଭ କଲେ । ତଥାପି ହାରା ନିରୁତ୍ତର । ଭୟ ଓ ଅନୁତାପର ରେଖା ଫୁଟି ଉଠିଲା ତାର ସୁନ୍ଦର ମୁହଁରେ । ଦେଖୁ ଦେଖୁ ସୁନ୍ଦର ଆଖି ଦିଓଟିରେ ପୂର୍ଣ୍ଣ ହେଲା ଲୋତକ ।

ଏ ଦୃଶ୍ୟରେ ବ୍ରଜକିଶୋରଙ୍କ ତରୁଣ କୁତୂହଳୀ ମନ ତରଳି ଗଲା । ସେ ଟିକେଟ୍ ବାବୁଙ୍କୁ ଇଂରେଜୀରେ କହିଲେ, ଆପଣଙ୍କ ଗାଳି ବୋଧହୁଏ ସେ ବୁଝିପାରୁ ନାହିଁ । ଦୟାକରି ଅଭଦ୍ର ଭାଷା ମଦଖଟି ପାଇଁ ଗଚ୍ଛିତ ରଖିଥାନ୍ତୁ । ମୁଁ ତାଙ୍କୁ ପଦେ ପଚାରେ । ଅବଶ୍ୟ ତାଙ୍କ ପାଖରେ ଟିକେଟ୍ ଥିବ ଅବା ତାଙ୍କର ଅଭିଭାବକଙ୍କ ପାଖରେ ଥିବ । ସେ ଆଉ କେଉଁଠି ବସିଥିବେ ।

ଟିକେଟବାବୁ ସ୍ନେହ-ପୂର୍ଣ୍ଣ ଚକ୍ଷୁରେ ବ୍ରଜକିଶୋରଙ୍କୁ ଥରେ ଅନାଇଁ ହୀରାମଣି ଉପରେ ଦୃଷ୍ଟି ନିବଦ୍ଧ କଲେ । ମୁଣ୍ଡ ହଲାଇ କହିଲେ, ଆଚ୍ଛା, ଆପଣ ଚେଷ୍ଟା କରନ୍ତୁ । ଅଠର ଊଣେଇଶି ବର୍ଷର ତରୁଣୀ ବିଧବା । ପାନପତ୍ର ପରି ମୁହଁ । ସୁନ୍ଦର ଉଜ୍ଜ୍ୱଳ । ସରୁ ସରୁ ଭ୍ରୂଲତା ତଳେ ପୃଥୁଳ ପୃଥୁଳ ଆଖି । ଚଳ ଚଳ କରୁଣ । ଖଣ୍ଡାଧାର ପରି ନାକ । ସମତୁଲ ଚିକ୍କଣ ଗାଲ ! ଗ୍ରେଟ ପାଟିଟିର ପତଳା ରଙ୍ଗିଲା ଓଠପତା ଦିଓଟି ଥରି ଉଠୁଛି । କାହାର ଝିଅ ସେ କୁଆଡ଼େ ଯାଉଛି ? କାହିଁକି ? ସଙ୍ଗରେ ତାର କିଏ ଅଛି ? କେତେ ପ୍ରଶ୍ନ ଗୁମୁରି ଉଠୁଛି ମନରେ । ପଚାରିବାକୁ ମୁହଁ ଫିଟୁ ନାହିଁ । ବ୍ରଜକିଶୋର କଅଁଳେଇ ପଚାରିଲେ, ଟିକେଟ୍ ନାହିଁ ?

ହୀରା ମୁଣ୍ଡ ହଲାଇ ନାହିଁ କଲା ।

ବ୍ରଜକିଶୋର ପଚାରିଲେ, ଗାଡ଼ିରେ କେଉଁଠୁ ଚଢ଼ିଲ ?

ଲୁହ ପୋଛି ହୀରାମଣି କହିଲା, ଭୁବନେଶ୍ୱରରୁ ।

ଅନ୍ୟ କେଉଁ ଡବାରେ ସାଙ୍ଗଲୋକ ଅଛନ୍ତି କି ?

ନାଇଁ ।

ବ୍ରଜକିଶୋର ବିସ୍ମିତ ହୋଇ ପଚାରିଲେ, ଏକା ? ଯିବ କୁଆଡ଼େ ?

ହୀରାର ଆଖି ପୁଣି ଛଳ ଛଳ ହେଲା । ସତେ, ସେ କୁଆଡ଼େ ଯିବ ? ଦୁନିଆଁରେ ସେ କାହାକୁ ଚିହ୍ନେ ? ତାର ଆପଣାର ହୋଇ କେହି ନାହିଁ । ସେ ପବନରେ ଉଡ଼ିଲା ପତର, ସ୍ରୋତରେ ଭାସିଲା କୁଟା ଖଣ୍ଡେ ।

ବୁକ ବେଦନାକୁ ଚାପି ରଖି ହୀରା କହିଲା, ଏ ଗାଡ଼ି ଯୁଆଡ଼େ ଯିବ ମୁଁ ସେଇଠିକି ଯିବି । ଗାଡ଼ିରେ ବସିଲା ବେଳେ ମୁଁ କେଉଁଠିକି ଯିବି ଚିନ୍ତାକରି ନ ଥିଲି ।

ବ୍ରଜକିଶୋର ବୁଝିଲେ, କେଉଁ ଦୁଃଖରେ ପଡ଼ି କେଜାଣି ଝିଅଟି ଘର ସଂସାର ଛାଡ଼ି ପଳାଇ ଆସିଛି । ଦୁନିଆଁକୁ ସେ ଚିହ୍ନି ନାହିଁ । ହୁଏତ ସେ କେଉଁ ନରକପଥକୁ ଛୁଟିଛି ନିଜେ ଜାଣେ ନାହିଁ । ମନ ହାହାକାର କରି ଉଠିଲା । କହିଲେ, ଗାଡ଼ିତ କଟକ ବାଟେ କଲିକତା ଯିବ ।

ମୁଁ ତାହାହେଲେ କଟକ ଯିବି ।

ଟିକେଟ୍ ଅଛି ।

ନା, ପାଖରେ ପଇସା ନଥିଲା, ଟିକେଟ୍ କରି ନାହିଁ ।

ବ୍ରଜକିଶୋର ଥଙ୍ଗେଇ ଥଙ୍ଗେଇ ଟିକେଟ୍ ବାବୁଙ୍କୁ କହିଲେ, ତରତର ହୋଇ ଗାଡ଼ିରେ ବସିଥିବାରୁ ସେ ଟିକେଟ୍ କରି ପାରି ନାହାନ୍ତି । କଟକ ଷ୍ଟେସନ ଯାଏ ଆପଣ ଟିକେଟ୍ କରି ଦିଅନ୍ତୁ ।

ଟିକେଟ୍ ବାବୁ ଟିକେଟ୍ କାଟିଲେ । ବ୍ରଜକିଶୋର ପଇସା ଦେଲେ । ସେ ରସିଦ୍ ଆଣି ହୀରାମଣି ପାଖକୁ ଆସିଲେ । ହୀରା ଉଠି ଠିଆ ହେଲା । ବ୍ରଜ ରସିଦଟି

ତା ହାତକୁ ବଢ଼ାଇ ଦେଲେ । ବିନା ଆପତ୍ତିରେ ହୀରାମଣି ରସିଦ ଖଣ୍ଡି ନେଇ ପୁଣି ବସିଲା । ଗୃହିଁ ରହିଲା ବ୍ରଜଙ୍କର ମୁହଁକୁ । ଚିନ୍ତାକଲା କିଏ ସେ, କାହିଁକି ତାଙ୍କର ଏ ଅଯାଚିତ କରୁଣା ? ଯେଉଁ କବିତାଟି ଗ୍ରୁତିର ସ୍ପନ୍ଦନ ଓ ଆଖିର ଲୁହ ଦେଇ ସେ ଦିନେ ଲେଖିଥିଲା ଏ ତାକୁ ପାଇଲେ କେଉଁଠୁ ? ମନ କହିଲା, ହୁଏତ ଅପରିଚିତ ବ୍ରଜକିଶୋର ତାର ଏହି କବିତା କେଉଁ ମାସିକ ପତ୍ରିକାରେ ଛପାଇଛନ୍ତି । ଏହି ଭଦ୍ର ଲୋକଟି ସେହି କବିତା ମୁଦ୍ରିତ କରିଛନ୍ତି, କେଜାଣି ବା ଏ ସେହି ବ୍ରଜକିଶୋର ହୋଇଥିବେ ।

ବ୍ରଜକିଶୋର ପଚାରିଲେ, ତମର ଘର କଣ ଭୁବନେଶ୍ୱରରେ ?

ହୀରାମଣି ମୁହଁ ଶୁଖାଇଲା । ଟିକିଏ ରହି ଉତ୍ତର ଦେଲା, ହଁ । ମନର କୋହ ଆଖିରେ ଆଣିଲା ଲୁହ । ଘରୁ ପାଦ କାଢ଼ି ସେ ଦାଣ୍ଡକୁ ଆସିଛି । ମାନମହତ୍ତ୍ୱକୁ ପଛରେ ଥୋଇ ଆସିଛି । ଲାଜ, ଭୟ ଓ ସଙ୍କୋଚ ବାଟର ମଣିଷ ଭିଖାରୁଣୀଠାରେ ସାଜେ ନାହିଁ । ସେ ଆଜି ପ୍ରଥମ କରି ଭିକ୍ଷା ଗ୍ରହଣ କରିଛି । ଆଉ ତାର ଲାଜ କଅଣ ? ଦୁନିଆଁର ଲୋକେ ତା ଜୀବନର କରୁଣ କାହାଣୀ ଜାଣନ୍ତୁ । ଦୁଃଖ କରନ୍ତୁ କି ଉପହାସ କରନ୍ତୁ ତାର କ୍ଷତି ନାହିଁ । ଜୀବନକୁ ସେ ହାତ ମୁଠାରେ ଧରି ଗ୍ଲିଲିଛି ।

ବ୍ରଜ ପଚାରିଲେ, ତମର ପିତା ?

ସେ ମୋତେ ପରିତ୍ୟାଗ କରିଛନ୍ତି । ମୋର ଶ୍ୱଶୁର ମଧ୍ୟ ମୋତେ ବିଦାୟ ଦେଇଛନ୍ତି । ସ୍ୱାମୀଙ୍କୁ ଚିହ୍ନିବା ଆଗରୁ ମୁଁ ବିଧବା ହୋଇଛି, ଏତିକି ମୋର ଇତିହାସ ।

କାହିଁକି ସେମାନେ ଏପରି କଲେ ?

ମୁଁ ପତିତା । ସେମାନଙ୍କର ଧାରଣା ଯେ ମୁଁ ଦୁଶ୍ଚରିତ୍ରା ।

ବ୍ରଜକିଶୋର ଆଶ୍ଚର୍ଯ୍ୟ ହୋଇ ଅନାଇ ରହିଲେ । ଭାବିଲେ ଆରେ, ଏ ଝିଅଟି କହୁଛି କଅଣ ? ଅନାବିଲ ଅମଳିନ ସଜ ଟଗର ଫୁଲଟି ପରି ଯେ ସୁନ୍ଦର, ସେ କି କେବେ ଚରିତ୍ରହୀନା ହୋଇପାରେ ? ଓଠର ସ୍ମିତ, ଛଳ ଛଳ ନୟନର ସରଳ ମନଃପ୍ରାଣୀ ଗୃହାଣୀ, ଭିତରର ନିର୍ଭୀକ ସ୍ପଷ୍ଟ କଥା କହିଦେଉଛି ଯେ ସେ ନିଷ୍ପାପ, ସେ ନିଷ୍କଳଙ୍କ ।

ପଚାରିଲେ, ସେମାନେ ନିର୍ବୋଧ, ଏପରି ଭୁଲ୍ ଧାରଣା ସେମାନଙ୍କର କେହି ଦୂର କରି ପାରିଲେ ନାହିଁ ?

ସେମାନଙ୍କର ଧାରଣା ତ ଭୁଲ୍ ନୁହେଁ ।

ଚମକି ଉଠିଲେ ବ୍ରଜକିଶୋର । ମନ ଚିତ୍କାର କରି ଉଠିଲା, ଭୁଲ୍, ନିଶ୍ଚୟ ଭୁଲ୍, କିନ୍ତୁ କିଏ ଏ ଯୁବତୀ ବାଳିକାଟି, ମୁଖର ଭାଷା ଓ କହିବାର ଭଙ୍ଗୀରୁ ପରିଚିତ ହେଉଛି ସେ ବିଦୁଷୀ, ବୁଦ୍ଧିମତୀ । ବ୍ରଜ ପୁଣି କହିଲେ, ଅବଶ୍ୟ ଭୁଲ୍ ।

ମୁଣ୍ଡ ହଲାଇ ହାରି କହିଲା, ମନର ଧାରଣା ଉପରେ ବାଦ ପ୍ରତିବାଦ ଚଳେ ନାହିଁ । ଯାହା ଦେଖି ଯାହା ଶୁଣି ସେମାନଙ୍କର ମନରେ ଏପରି ଧାରଣା ହେଲା, ଅନ୍ୟ ଯେ କେହି ହୋଇଥିଲେ ମଧ୍ୟ ତା ମନରେ ସେପରି ଧାରଣା ହୋଇଥାନ୍ତା । ବାପ ହୋଇ କନ୍ୟାର କଥାରେ ବିଶ୍ୱାସ ନ କରିବା ହିଁ ମୋର ଦୁର୍ଭାଗ୍ୟ । ସେମାନଙ୍କର ବିଶ୍ୱାସ ହେଲା ଯେ ମୁଁ ଜଣେ ଭଦ୍ରଲୋକ ପାଖକୁ ଚିଠି ଲେଖେ ଓ କବିତା ଲେଖି ପଠାଏ ।

ଏପରି ବିଶ୍ୱାସ ହେବାର କାରଣ କଅଣ ?

ଯେଉଁ ଗୀତଟି ଆପଣ ଏବେ ବୋଲୁଥିଲେ, ମୁଁ ତାକୁ ଲେଖିଛି । ମନ ଖରାପ ହେଲେ ଘର କୋଣରେ ବସି ଏହିପରି କେତେ ଗୀତ ମୁଁ ଖଣ୍ଡେ ଖାତାରେ ଲେଖି ରଖିଥିଲି । କାଳେ କିଏ ପଢ଼ିବ ବୋଲି ଭୟରେ ଦିନେ ସେ ଖାତା ଖଣ୍ଡି ଚିରିଫାଳି କରି ଝରକାବାଟେ ପଦାକୁ ପକାଇ ଦେଇଥିଲି । କିଏ ଜଣେ ତାକୁ ପାଇ ତହିଁରୁ ଗୋଟିଏ ଗୋଟିଏ ଗୀତ ମାସିକ ପତ୍ରିକାକୁ ମୋ ନାମରେ ଦେଉଛନ୍ତି । କହନ୍ତୁ ଭଲା, ମୁଁ ବ୍ରାହ୍ମଣଘରର ଝିଅ, ବାଲ୍ୟବିଧବା, ମୋ ନାମ ପଦାରେ ପକାଇ ତାଙ୍କର କି ଲାଭ ହେଲା ? ଫଳରେ ଲୋକେ ବାରକଥା ମୋ ନାମରେ ଲଗାଇ ପ୍ରଚାର କଲେ ଯେ ମୁଁ କଳଙ୍କିନୀ, ଦୁଶ୍ଚରିତ୍ରା । ସତ କଥାଟି କହିଲେ ମଧ୍ୟ କେହି ମୋ କଥାରେ ବିଶ୍ୱାସ କଲେ ନାହିଁ । ତେଣୁ ମୋର ଆଜି ଏ ଅବସ୍ଥା । ଆପଣ ଏ ପଦ୍ୟଟି କେଉଁ ପତ୍ରିକାରୁ ପଢ଼ିଥିଲେ କହିବେ କି ?

ବ୍ରଜକିଶୋରଙ୍କର ତୁଣ୍ଡରୁ ବଚନ ବାହାରିଲା ନାହିଁ । ଓଠ ଥର ଥର ହୋଇ କମ୍ପି ଉଠିଲା । ଆଗରେ ବସି ତାଙ୍କୁ ପ୍ରଶ୍ନ ପଚାରୁଥିବା ଦେବୀ ପ୍ରତିମା ପାଖରେ ସେ ଆଜି କେଡ଼େ ଶ୍ରେଷ୍ଠ, ନିକେଡ଼େ ନଗଣ୍ୟ । ମନ ଇଚ୍ଛାକରି ଦେଉଛି, ପାଦ ଦିଓଟି ଧରି ନିଜ ଦୋଷ ଓ ଅବିବେକତା ପାଇଁ କ୍ଷମା ଭିକ୍ଷା କରିବେ । କିନ୍ତୁ ଏତିକି କଲେ ତ ତାଙ୍କର ଦୋଷର ପ୍ରାୟଶ୍ଚିତ୍ତ ହେବ ନାହିଁ, କି ଏଇ ସୁନ୍ଦର ସରଳ ସ୍ପଷ୍ଟବାଦିନୀ ଝିଅଟିର ଦୁଃଖ ଯିବ ନାହିଁ ? ବ୍ରଜକିଶୋର ହତବୁଦ୍ଧି ହୋଇ ହାରାମଣିକୁ ଅପଲକ ନେତ୍ରରେ ଚାହିଁ ରହିଲେ । ତୁଣ୍ଡରୁ ବଚନ ବାହାରିଲା ନାହିଁ । କୃତକର୍ମର ଅନୁଶୋଚନା ତାଙ୍କର ବିବେକକୁ ବାରମ୍ବାର ଦଂଶନ କରିବାକୁ ଲାଗିଲା ।

ଏଇ ତାଙ୍କର ସପନ ପ୍ରତିମା ! ସପନରେ ମଧ୍ୟ ଏ ରୂପ ସେ ଆଙ୍କି ପାରି ନଥିଲେ । ସେଇ ରୂପଟିର ଆଉ ରୂପ ତଳେ ଯେଉଁ ସୁନ୍ଦର ସରସ ଆତ୍ମାଟି, ତାଆର କଳନା କରିବା ସମ୍ଭବ ହୋଇପାରି ନାହିଁ । କିପରି ମୁହଁ ଖୋଲି କହିବେ, ଲୋକଙ୍କର ଧାରଣା ମିଛ ନୁହେଁ; ବ୍ରଜକିଶୋରଙ୍କୁ ତମେ ଚିହ୍ନି ନ ଥିଲେ ବି ସେ ତମରି ପ୍ରେମରେ ପଡ଼ିଛି, ତମକୁ ହିଁ ସେ ତାର ଜୀବନସଙ୍ଗିନୀ କରି ବାଛିନେଇଛି । ସମାଜ ଅନୁମୋଦନ କରିବ ନାହିଁ, ଦେଶରେ ଚହଳ ପଡ଼ିବ, କୁଟୁମ୍ବର ଲୋକେ ପଛେଇ

ଯିବେ । କିନ୍ତୁ ବ୍ରଜକିଶୋର ପଛେଇ ରହିବ ନାହିଁ । ତଥାପି ତମର ମତ କଅଣ ହୀରାମଣି ?

ମନର ପ୍ରଶ୍ନ ମନରେ ହିଁ ମଥା ନୋଇଁଲା । ଦେହରୁ ରକ୍ତ ଶୁଖିଗଲା । ସେ ବିହ୍ୱଳ ହୋଇ ହୀରାମଣି ମୁହଁକୁ ଚାହିଁ ରହିଲେ । ଏଡ଼େ ସୁନ୍ଦରୀ, ଏଡ଼େ ଶିକ୍ଷିତା ତାଙ୍କ ପ୍ରାଣର ହୀରା, ହୃଦୟର ହୀରାମଣି ! ଯାହା କଥା ଭାବି ଭାବି ସେ ଆତ୍ମହରା ହୋଇ ରାତି ଉନିଦ୍ର ହୁଏ, ଏଇ ସେ ଦେଖା ପ୍ରତିମା ତରୁଣୀ କବି ହୀରାମଣି ? ନୀରସ ଚିନ୍ତା ତ ଏଡ଼େ ସୁନ୍ଦର ଛବି କେବେ ହେଲେ ମନରେ ଆଙ୍କି ପାରି ନାହିଁ !

ବ୍ରଜକିଶୋର ମୁହଁ ଖୋଲିଲେ, କୌଣସି ପତ୍ରିକାରୁ ମୁଁ ଏ କବିତା ପଢ଼ି ନାହିଁ । ବ୍ରଜକିଶୋର ମୋର ଜଣେ ଅନ୍ତରଙ୍ଗ ବନ୍ଧୁ । ତାଙ୍କର ପାଖରୁ ମୁଁ ଶିଖିଥିଲି । ହୀରାମଣି ଦେଖି, ମୋର ବନ୍ଧୁଙ୍କର ମନ ଓ ବଚନରେ ବସା ବାନ୍ଧିଛନ୍ତି । ସେ କେବେ ଅନୁମାନ କରି ପାରି ନାହାନ୍ତି ଯେ କବି ହୀରାମଣି ନିଜର ଦୁଃଖ, ଅନୁଭୂତି ଓ କଳ୍ପନାକୁ ପଦ୍ୟରେ ଜୀବନ ଦେଇଛନ୍ତି । ଏହା ଜାଣିଲେ ସେ ଅବଶ୍ୟ ସୁଖୀ ହେବେ ।

ସୁଖୀ ହେବେ ? ସେ ଜାଣନ୍ତୁ ବା ନ ଜାଣନ୍ତୁ ତାଙ୍କର ଅବିବେକି ପଣ ପାଇଁ ମୋର ଏହି ଦୁରବସ୍ଥା । ତାଙ୍କର ପାଇଁ ମୁଁ ଆଜ ବାଟରେ ଠିଆ । ତାଙ୍କର ପାଇଁ ହୁଏ ତ ଦିନେ ମୋତେ ଆତ୍ମହତ୍ୟା କରିବାକୁ ପଡ଼ିବ ।

ବ୍ରଜକିଶୋର ଭୟରେ ଅସ୍ଥିର ହେଲେ । ଆତ୍ମହତ୍ୟା ! କାହିଁକି ? ଏଡ଼େ ବଡ଼ ଦୁନିଆରେ ଗୋଟାଏ ପେଟ ପୋଷିବାର ବ୍ୟବସ୍ଥା କରିବାକୁ ଲୋକର ଅଭାବ ହେବ ନାହିଁ । ସେ କଣ ଏହି ଦାୟିତ୍ୱ ନିଜ ମୁଣ୍ଡକୁ ନେଇ ନିଜକୁ ଭାଗ୍ୟବାନ୍ ମଣିବ ନାହିଁ ?

ଅସମ୍ଭବ ! ଏଣେ ସମାଜ, ତେଣେ ତାଙ୍କ ନୂଆବୋହୂଙ୍କ ଟାପରା ବଡ଼ ଭାଇଙ୍କ ଘୃଣା ! ଏତେ ଅଗ୍ନି ପରୀକ୍ଷା ଭିତରେ ଦେଇ ସେ ସଂସାରରେ ମୁଣ୍ଡ ଟେକି ଚାଲିବ କିପରି ? ସେ ଦରିଦ୍ର । ସମାଜ ବିରୁଦ୍ଧରେ ଖୋଲା ଛାତି ଦେଖାଇ ଦମ୍ଭ ହୋଇ ଠିଆ ହୋଇ ପାରିବ ନାହିଁ । ତେବେ ପରର ଜୀବନ ଉପରେ ହସ୍ତକ୍ଷେପ ସେ କଲା କାହିଁକି ? ଜାଣୁ ଜାଣୁ ପର ଝିଅକୁ ବିନା ଦୋଷରେ ପତିତା, କଳଙ୍କିନୀ କଲା କାହିଁକି ? ଯଦି ସେ ଆତ୍ମହତ୍ୟା କରେ, ନାରୀ ହତ୍ୟା ପାପର ଭାଗୀ ହେବ କିଏ ? ନ୍ୟାୟତଃ, ଧର୍ମତଃ, ଭାଗୀ ହେବ ଅବିବେକି ବ୍ରଜକିଶୋର !

ବ୍ରଜକିଶୋର କହିଲେ, ତମେ ଯାହା ମନେକର ପଛେ; ବ୍ରଜକିଶୋର ତମରି ପାଇଁ ପାଗଳ । ମୁଁ ଜାଣେ, ସେ ତମକୁ କେବେ ଦେଖି ନାହାନ୍ତି, ତମ ସଙ୍ଗେ ତାଙ୍କର ପରିଚୟ ନାହିଁ କିନ୍ତୁ ତମ ମନକୁ ସେ ଭଲକରି ଚିହ୍ନନ୍ତି । ତମେ ସୁନ୍ଦରୀ କି ଅସୁନ୍ଦରୀ ଏହା ସେ ଜାଣିବାକୁ ଇଚ୍ଛା କରନ୍ତି ନାହିଁ । ସେ ଦୃଢ଼ପ୍ରତିଜ୍ଞ, ନିଶ୍ଚୟ ବିଧବା ବିବାହ କରିବେ ।

ସେଥିରେ ମୋର କିଛି ଯାଏ ଆସେ ନାହିଁ । ଆପଣ ଦୟାକରି ଆପଣଙ୍କ ବନ୍ଧୁଙ୍କୁ କହିବେ, ସେ ମୋର ଲେଖାତକ ଫେରାଇ ଦେବେ ।

କେଉଁ ଠିକଣାରେ ପଠାଇବେ ?

ହାସି ନୀରବ ହୋଇ ରହିଲା । ଆଖିରେ ଲୋତକ ଢଳ ଢଳ ହେଲା । ମୁଖ ଗମ୍ଭୀର କରି କହିଲା, ମୋ ପାଖକୁ ପଠାଇବା ଆବଶ୍ୟକ ନାହିଁ । ମୋର ଲେଖାତକ ପୋଡ଼ି ପକାଇବେ ।

ବ୍ରଜକିଶୋରଙ୍କର ପ୍ରାଣ ଛଟପଟ ହେଲା । ସେ କହିଲେ, ଏବେ କଟକରେ ଗୋଟିଏ "ନାରୀମଙ୍ଗଳ ସମିତି" ଖୋଲିଛି । ମୋର ଜଣେ ବନ୍ଧୁ ସେହି ସମିତିର ଉଦ୍ୟୋକ୍ତା । ତମେ ସେହି ସମିତି ଗୃହରେ ଆଶ୍ରୟ ଗ୍ରହଣ କର ।

ସମିତିର ଉଦ୍ଦେଶ୍ୟ କଣ ?

ପର୍ଦ୍ଦା ଦୂରୀକରଣ, ସ୍ତ୍ରୀ ଶିକ୍ଷାର ବିସ୍ତାର, ବାଳିକା ବିବାହ ନିଷେଧ, ବିଧବା ବିବାହ ଚଳଣ, ସ୍ତ୍ରୀ ସ୍ୱାଧୀନତା ପ୍ରଚାର । କେବଳ ଏତିକି ନୁହେ, ଏହା ସଙ୍ଗେ ସଙ୍ଗେ ଗୋଟିଏ ଅନାଥାଶ୍ରମ ମଧ୍ୟ ଖୋଲିଛି । ତହିଁରେ ଅରକ୍ଷଣୀୟା ନାରୀମାନେ ରହନ୍ତି । ଜୀବିକାନିର୍ବାହ କରିବାପାଇଁ ସେମାନଙ୍କୁ ସୂତାକଟା, ଲୁଗାବୁଣା, ହଲ୍ କାମ ଇତ୍ୟାଦି ଅନେକ ପ୍ରକାର କାମ ଶିକ୍ଷା ଦିଆଯାଏ । ଅନାଥ ବାଳକ ବାଳିକାମାନଙ୍କ ପାଇଁ ରହିବାର ମଧ୍ୟ ସୁବିଧା କରାଯାଇଛି । ତୁମେ ସେଇଠିକି ଯାଅ ।

ସମିତି କେଉଁଠି ଓ ସମ୍ପାଦକ କିଏ ମୁଁ ଜାଣିବି କିପରି ? ମୋତେ ତାଙ୍କର ଆଶ୍ରମରେ ସେ ସ୍ଥାନ ଦେବେ ତ ?

ଚିନ୍ତା ନାହିଁ । ମୁଁ ଚିଠି ଖଣ୍ଡିଏ ଲେଖି ଦେଉଛି । ଚିଠି ଖଣ୍ଡି ତାଙ୍କୁ ଦେଲେ ସେ ଆଗ୍ରହରେ ତମକୁ ସ୍ଥାନ ଦେବେ ।

କଟକ ସହର ମୁଁ ଦେଖି ନାହିଁ, ଶୁଣିଛି, ବଡ଼ ସହର । କେଉଁଠି ତାଙ୍କୁ ଖୋଜି ପାଇବି ?

ତେବେ ମୋତେ ହିଁ ଛାଡ଼ି ଦେଇ ଆସିବାକୁ ପଡ଼ିବ । ହେଉ ।

କୃତଜ୍ଞତାରେ ହାସିମଣିର ମୁଣ୍ଡ ନଇଁ ଆସିଲା । ଜଣେ ଅପରିଚିତ ଭଦ୍ରଲୋକ ଯେ ତାକୁ ଏପରି ଅକୁଣ୍ଠିତ ଭାବରେ ସାହାଯ୍ୟ କରି ତାର ଲକ୍ଷ୍ୟହୀନ ଜୀବନକୁ ଆଶାର ଆଲୋକ ଦେଖାଇବେ, ଏହା ସେ ସ୍ୱପ୍ନରେ ଭାବି ନ ଥିଲା । ସେ ସଜଳ ଚକ୍ଷୁରେ କହିଲା, ଆପଣ ମୋର ଯେତେ ଉପକାର କଲେ ବଞ୍ଚିଥିବାଯାଏ ତାହା ଭୁଲି ପାରିବି ନାହିଁ କି ଶୁଝାଇ ପାରିବି ନାହିଁ । କିନ୍ତୁ ଆପଣଙ୍କର ନାମ ଧାମ ତ ମୁଁ ଜାଣି ପାରିଲି ନାହିଁ ?

କି ଉପକାର କଲି ମୁଁ ? ମୋ ନାମ କିଶୋରଚନ୍ଦ୍ର, ମୁଁ ବ୍ରଜବାବୁଙ୍କର ସହପାଠୀ ।

ରେଲଗାଡ଼ି କାଠଯୋଡ଼ି ନଦୀର ପୋଲ ଉପରେ ଗଲା । ସେମାନଙ୍କର କଥୋପକଥନରେ ବାଧା ଦେଲା ଘଡ଼ ଘଡ଼ ଶବ୍ଦ । କଟକ ଷ୍ଟେସନ ପାଖେଇ ଆସିଲା ।

## ଚଉଦ

ଦୁଇମାସ ଅତୀତ ହେଲାଣି ।

ବ୍ରଜକିଶୋର କଲେଜ ଛାଡ଼ି କଟକ ନୂଆ ସଡ଼କରେ ଖଦଡ଼ ଲୁଗାର ଗୋଟିଏ ଦୋକାନ ଦେଇ ବସିଛନ୍ତି । ଆତ୍ମୀୟସ୍ୱଜନ କହୁଛନ୍ତି, ଏତେ ପାଠ ପଢ଼ି ଶେଷକୁ ସେ ଏଇଆ କଲା ? ଲୋକେ ଘୃଣାରେ ନାକ ଟେକୁଛନ୍ତି । ଡେପୋଟି ହୋଇଥାନ୍ତା କି ଓକିଲ ହୋଇଥାନ୍ତା, ନୋହିଲା ବେଳକୁ କେଉଁଠି କିରାଣିଗିରି କରିଥିଲେ ଅବଶ୍ୟ ମାସ ଶେଷକୁ ଶହେ ଷାଠିଏ ଟଙ୍କା ଠୋକ୍ ଗଣି ଆଣୁଥାନ୍ତା । ସେଥିରେ କେତେ ମାନ, କେତେ ମହତ୍ତ୍ୱ ! ଯିଏ ହେଲେ କହନ୍ତା, ବାବୁ ! ଛି ଛି, ଶେଷକୁ ସେ ହେଲା ଦୋକାନୀଟାଏ ? ଆରେ, ଆମ ଗାଁର ରାମା, ଶାମା, ଦାମା ବିନା ପାଠରେ କଣ ଦୋକାନ ସଜେଇ ବସି ପାରନ୍ତେ ନାହିଁ ?

କିଏ କହିବ ? ଆଜକାଲିକା ଟୋକା ! ତାଙ୍କ ଭିତରେ ସ୍ୱାଧୀନତାର ଢେଉ ଖେଳି ଯାଇଛି ଯେ ପେଟରେ ଓଦାକନା ଦେଇ ସ୍ୱାଧୀନ ହେବାକୁ ଆଗୁସାର ହେଉଛନ୍ତି । ଚାକିରି କଲେ ମନର ସ୍ୱାଧୀନତା ଲୋପ ପାଏ । ଲୋକେ ଗ୍ରେଟ ନକରିଆ ହୋଇ ଯାଆନ୍ତି ହାତଗୋଡ଼, ବାନ୍ଧିହୋଇ ପଡ଼ନ୍ତି । ପଦେ କହିବାର ସ୍ୱାଧୀନତା ନ ଥାଏ । କେଉଁଠିକି ଯିବା ଆସିବାର ଶକ୍ତି ନ ଥାଏ । ସବୁବେଳେ ହାକିମଙ୍କ ଗୋଡ଼ ସୁନ୍ଦର, ମୁହଁ ସୁନ୍ଦର କହିବାକୁ ହୁଏ । ହସ ନ ମାଡ଼ିଲେ ହସିବାକୁ ପଡ଼େ । ହାକିମେ ହେବେ ଚାକିରିଆଙ୍କ ଚଲନ୍ତି ବିଷ୍ଣୁ । ବ୍ରଜକିଶୋର ଏହି ସବୁ ଭାବିଚନ୍ତି ଦୋକାନ ଦେଇ ବସିଛନ୍ତି । ଦେଶର ଦଶର ଚାରିକାମ କରିବାହିଁ ତାଙ୍କର ଭବିଷ୍ୟତ କର୍ମପନ୍ଥା ।

ତାଙ୍କର କାମ ବଡ଼ଭାଇ ରାଜକିଶୋରଙ୍କ ମନକୁ ପାଇଛି । ଚାକିରି କରି ସେ ପ୍ରତିଦିନ ଦିଲ୍ଲୀକା ଲଡ଼ୁ ଚାଖୁଛନ୍ତି ! କିନ୍ତୁ ଇନ୍ଦିରା ଏଥିରେ ଅସନ୍ତୁଷ୍ଟ । ବ୍ରଜ ଗୋଟାଏ ଭଲ କାମଦାମ କରୁଥାନ୍ତେ, ପାଞ୍ଚ ଜାଗାରେ ନାଁ ପଡ଼ୁଥାନ୍ତା, ପଛରେ ପାଞ୍ଚଜଣ ବାବୁ ବାବୁ କହି ଗୋଡ଼ାଇଥାନ୍ତେ, ଇନ୍ଦିରାଙ୍କର ମନ ଗର୍ବରେ ଫୁଲି ଉଠନ୍ତା !

ବ୍ରଜକିଶୋରଙ୍କର ଦୋକାନ ଗୋଟାଏ ଆଡ଼୍ଡାର ସ୍ଥଳ ହୋଇଛି । ବିକିବଟା ଯାହା ହେବାର ତ ଘଡ଼ିକ କାମ, ଗରାକି ଜୁଟିଲେ ବେକ୍‌ଠୋକ୍ ପଦ ପଦକରେ ଲୁଗା ବିକ୍ରୟ ହୁଏ । ଅନ୍ୟ ଦୋକାନମାନଙ୍କ ପରି ଦିନ ଖରିଦଦାରଙ୍କ

ସଙ୍ଗେ ଧିକ୍‌ଚକ୍ ହୋଇ ଦରଦାମ ଠିକ୍ କରିବାକୁ ବୃଥା ସମୟ ନଷ୍ଟ କରନ୍ତି ନାହିଁ । ହିସାବକରି ଯେଉଁ ଲୁଗାର ଯେତିକି ମୂଲ୍ୟ ଆଗରୁ ଲୁଗା ଦେହରେ ଲେଖି ରଖିଥାନ୍ତି । ସେଥିରୁ ଊଣା ଅଧିକେ ଦେବାର ପ୍ରଶ୍ନ ଉଠେ ନାହିଁ । ଲୁଗା ବିକା ସରିଲେ ସେ ଖବରକାଗଜ ପଢ଼ା ଓ ବନ୍ଧୁମାନଙ୍କ ସଙ୍ଗେ ବିତର୍କରେ ସମୟ କଟାନ୍ତି । ବେଳ ମିଳିଲେ କେବେ କେବେ ଖବରକାଗଜରେ ପ୍ରକାଶିତ ହେବାକୁ ସେ ସୁଚିନ୍ତିତ ପ୍ରବନ୍ଧ ଲେଖନ୍ତି ।

ସେଦିନ ବିତର୍କର ବିଷୟ—ସ୍ତ୍ରୀ ସ୍ୱାତନ୍ତ୍ର୍ୟ । ବକ୍ତା ମୋଟେ ଦୁଇଜଣ, ବ୍ରଜକିଶୋର ଓ ତାଙ୍କ ବନ୍ଧୁ ମଧୁସୂଦନ । ଶ୍ରୋତା ଅନେକ । ପ୍ରାୟ ଦୁଇଘଣ୍ଟା ବିତର୍କ ଚାଲିଲା ।

ମଧୁବାବୁ କହିଲେ, ଯାହା କହ ପଛେ, ପ୍ରତ୍ୟକ୍ଷରେ ନ ହେଲେ ମଧ୍ୟ ପରୋକ୍ଷରେ ନାରୀ ନରର ପ୍ରଭୁ । ନାରୀର ଅଙ୍ଗୁଳି ନିର୍ଦ୍ଦେଶରେ ନର ସର୍ବଦା ଚାଳିତ । କେବଳ ନାରୀର ମନସ୍ତୁଷ୍ଟି ପାଇଁ ନରର କଠୋର କର୍ମ ସାଧନା । ନାରୀ ଗୃହରେ ଥାଇ ମନ ଆନନ୍ଦରେ ଜୀବନ ଅତିବାହିତ କରେ । ନର ତାରି ଆନନ୍ଦ ପାଇଁ କର୍ମ କରି ମରେ । ନାରୀକୁ ଯେତିକି ସ୍ୱାଧୀନତା ଦିଆହୋଇଛି ସେତିକିରେ ତ ସମ୍ଭାଳି ହେଉ ନାହିଁ ଆଉ ଅଧିକ ସ୍ୱାତନ୍ତ୍ର୍ୟରେ ସେମାନଙ୍କୁ ଆଉ ପାରି ହେବ କି ? ବେଶ୍ ଅଛୁ ବାବା, ନାରୀ ସ୍ୱାଧୀନତା ପାଇଁ ଏ ଯେଉଁ ଚହଲ ପଡ଼ିଚି, ଯଦି ସତରେ ସେମାନଙ୍କୁ ଅଧିକ ସ୍ୱାଧୀନତା ଦିଆ ହେବ, ତାର ଫଳ ବିଷମୟ ହେବ ।

ବ୍ରଜକିଶୋର କହିଲେ, ଏହାର ନାମ ଅକୃତଜ୍ଞତା ! ନର ସର୍ବଦା ନାରୀ ନିକଟରେ କୃତଜ୍ଞ । ନରର ମଙ୍ଗଳ ପାଇଁ ନାରୀର ଶେଷ ପ୍ରାଣବାୟୁ ବ୍ୟୟିତ ହୁଏ, ତଥାପି ନାରୀ ପ୍ରତି ମନରେ ଦୟାର ଲେଶମାତ୍ର ସଞ୍ଚାର ହୁଏ ନାହିଁ !

ସମାଜର ଅମଙ୍ଗଳର ହେତୁ କିଏ ଗାଇ ? ଭ୍ରାତୃ-ବିବାଦରେ ନାରୀର କୁମନ୍ତ୍ରଣା ନିହିତ ଥାଏନି ? ମଣିଷ ପାଗଳ ହୁଏ କାହିଁକି ? ନାରୀର ବିଷାକ୍ତ ବିଶ୍ୱାସର ଜ୍ୱାଳା ସହେ କିଏ ? ନାରୀଠାରୁ ବଳି ଅଧିକ ଅବିଶ୍ୱାସୀ ଜଗତରେ ଆଉ କେହି ନାହିଁ । ସେଇଥିପାଇଁ ଏ ସ୍ତ୍ରୀ ଜାତିଟାକୁ ମୁଁ ଏତେ ଘୃଣା କରେ ।

ମୂର୍ଖ ଓ ନିର୍ବୋଧ ଗଛରେ ଫଳନ୍ତି ନାହିଁ । କରେ, ସ୍ତ୍ରୀ ଜାତିକୁ ଯଦି ଏତେ ଘୃଣା, ଏତେ ଅଗ୍ରହରେ ସେଥିରୁ ଗୋଟାଏ ନେଇ ବେକରେ ବାନ୍ଧିଛୁ କାହିଁକି ?

ସେଥିପାଇଁ ମୁଁ ଦାୟୀ ନୁହେଁ । ବାପା ବାରମ୍ବାର କହିଲେ । ତାଙ୍କ ମନରେ ଦୁଃଖ ନ ଦେବାକୁ ମୁଁ ହାତ ଲମ୍ବାଇ ଦେଲି । ଜାଣ, ବାପା ମୋତେ ବାଧ୍ୟ କଲେ ।

ତୋ ପୂଅଟିକୁ ବର୍ଷ ପୂରିଲାଣି, ସେ ବି ବାପାଙ୍କ ବାଧ୍ୟରୁ ? ଆରେ, ନରନାରୀର ସମ୍ପର୍କ ପବିତ୍ର ଓ ସୁନ୍ଦର ! ନାରୀ ବିନା ନରର ଜୀବନ ନୀରସ, ଅପୂର୍ଣ୍ଣ ।

ନାରୀକୁ ଛାଡ଼ି ସଂସାର ଚଳିବ ନାହିଁ । ନାରୀକୁ ଶିକ୍ଷା ଦିଅ, ସ୍ୱାଧୀନତା ଦିଅ, ତାର ମନରୁ ସଂକୀର୍ଣ୍ଣତା ଦୂର କର, ସବୁପ୍ରକାର ମୀରତା ତା ମନରୁ ଦୂର ହେବ ।

ତାର ନିଶ୍ୱାସ ଆଉ ବିଷାକ୍ତ ହେବ ନାହିଁ ମଧୁବାବୁ, ମନ୍ତ୍ରଣା କୁଟିଳ ହେବ ନାହିଁ । ଅବିଶ୍ୱାସ ତା ପାଖରୁ ଦୂରରେ ରହିବ । ତାକୁ ନିର୍ଜୀବ କରି ଅନ୍ଧ ବଧିର ମୂକ କରି ଘରକୋଣକୁ ଠେଲିଦେଲେ ସେ କରିବ କଣ ? ପୁଣି ସେହି ବିଷାକ୍ତ ନିଶ୍ୱାସ ଛାଡ଼ି ଗରଳ ଉଦ୍‌ଗାରିବ ।

ସମାଜର ସହସ୍ର କୁସଂସ୍କାରକୁ ଗୋଡ଼ରେ ଠେଲି ଦିଅ । ଦେଶକାଳପାତ୍ରକୁ ଚାହିଁ ଚାଲି ଆମେ ଆମର ନୂଆ ନିୟମ ଗଢ଼ିବା । ପୁରାତନର ସମାଧି ଉପରେ ନୂତନ ଦୃଢ଼ ଭାବରେ ଠିଆ ହେବ । ତେବେ ଯାଇଁ ସମାଜର ମୁକ୍ତି ଦେଶର ମୁକ୍ତି ।

ମଧୁସୂଦନ ମୃଦୁ ମୃଦୁ ହସି ମୁଣ୍ଡ ହଲାଇ ଉଠିଲେ । ଯୋଡ଼ହସ୍ତ ହୋଇ ପ୍ରଣାମ କରି କହିଲେ, ବିତର୍କରେ ଆଉ ପ୍ରୟୋଜନ ନାହିଁ ବ୍ରଜବାବୁ, ହାରିବାକୁ ମୋର ଆଗ୍ରହ ହୋଇଛି । ମୁଁ ଅନୁମାନ କରୁଛି ଶୀଘ୍ର ଆପଣଙ୍କ ପାଖରୁ ପ୍ରୀତି ଭୋଜନର ନିମନ୍ତ୍ରଣ ପତ୍ର ମିଳିବ । ଶୁଭସ୍ୟ ଶୀଘ୍ରମ୍ । ଭୁଲିବେ ନାହିଁ । ନମସ୍କାର ।

## ପନ୍ଦର

ନମସ୍କାର ! ଆସନ୍ତୁ, ଖବର କଣ ?

ବ୍ରଜକିଶୋର ଆଗନ୍ତୁକଙ୍କ ପାଇଁ ଚଉକି ଛାଡ଼ି ବେଞ୍ଚରେ ବସିଲେ ।

ରାଧାଗୋବିନ୍ଦବାବୁ ହସି ହସି ହୋଇ କହିଥିଲେ, ଖବର ତ ସବୁ ଆପଣଙ୍କଠାରେ ।

ମୋଠାରେ କିପରି ?

ରାଧାଗୋବିନ୍ଦବାବୁ ବସିଲେ । ସେ ଦରବୁଢ଼ା, ସୁନ୍ଦର ରୂପ ଓ ସ୍ୱାସ୍ଥ୍ୟ । ତାଙ୍କର ଲମ୍ବ ଲମ୍ବ ନିଶଦାଢ଼ୀ, ବାବୁରି ବାଳ, ଆଖିରେ ଚଷମା, ଦେହରେ କାମିଜ, ହାତରେ ଝୁଲିମୁଣି ।

କହିଲେ ସେଦିନ ଖଣ୍ଡେ ଚିଠି ଲେଖି ଆପଣ ଶ୍ରୀମତୀ ହାରାମଣିକୁ ମୋ ପାଖକୁ ପଠାଇ ଦେଲେ । ବାସ୍, ସେହି ଦିନଠାରୁ ଚିଠିପତ୍ରରେ ହିଁ ବି ଆପଣଙ୍କ ସଙ୍ଗେ ସାକ୍ଷାତ୍ ନାହିଁ ।

ଯିବାକୁ ମତେ ବେଳ ମିଳୁ ନାହିଁ । ଖବର ନେଇ ବୁଝିଥିଲି ଯେ ନିଃସହାୟା ହାରାମଣି ଆପଣଙ୍କ କରୁଣାର କଣିକା ଲାଭ କରିଛି । ଆଶ୍ରମରେ ଆଶ୍ରା ପାଇଛି । ସେଥିକରେ ମୋର କର୍ତ୍ତବ୍ୟ ଓ ଦାୟିତ୍ୱ ସରିଲା ।

ରାଧାଗୋବିନ୍ଦ କହିଲେ, ହୀରାମଣିର ପ୍ରତିଭା ଓ ସବୁକାର୍ଯ୍ୟରେ ବିଚକ୍ଷଣତା ଦେଖି ମୁଁ ମୁଗ୍ଧ ହୋଇଛି । ଆପଣ ମଧ୍ୟ ମୋତେ ଗୋଟାଏ ଦାୟିତ୍ୱରୁ ରକ୍ଷା କଲେ । ଆପଣ ଜାଣନ୍ତି, ମୋର ଅନେକ କାର୍ଯ୍ୟ, ସରକାର ଘରେ କିରାଣିଗିରି, ପିଲାଛୁଆଙ୍କ ନେଣ୍ଟାରା, ଘରେ ପୁଣି ରୁଗ୍ଣା ସ୍ତ୍ରୀ, ତାଙ୍କର ସେବା । ବେଳ ମିଳିଲେ ଘର ଘର ବୁଲି ନାରୀମଙ୍ଗଳ ସମିତି ପାଇଁ ଚାନ୍ଦା ଅସୁଲ କରିବା । ଯେଉଁ କାର୍ଯ୍ୟରେ ଆମେ ହାତ ଦେଇଛୁ ସେଇଥିପାଇଁ ଚାନ୍ଦା ଦେବାକୁ ଲୋକେ ତ ଅମଙ୍ଗ, ସେମାନଙ୍କ ସଙ୍ଗେ ତର୍କ କରି ସେମାନଙ୍କ ମନ ତରଳାଇ ଚାନ୍ଦା ଅସୁଲ କରିବା ଅତି କଷ୍ଟ ପୁଣି ସମୟ ସାପେକ୍ଷ ।

ବ୍ରଜକିଶୋର ସମ୍ମତିସୂଚକ ମୁଣ୍ଡ ହଲାଇଲେ ।

ରାଧାଗୋବିନ୍ଦ ପୁଣି କହିଲେ, ଯେଉଁ ସାତଜଣ ବିଧବା ଝିଅ ସମିତିରେ ଆଶ୍ରୟ ଗ୍ରହଣ କରିଛନ୍ତି, ସେମାନଙ୍କ ପାଇଁ ପାତ୍ର ଖୋଜିବା ଆହୁରି କଷ୍ଟକର କାର୍ଯ୍ୟ । ଆପଣମାନଙ୍କ ପରି ଶହ ଶହ ଶିକ୍ଷିତ ଯୁବକ ଖାଲି ମୁହଁରେ ସହାନୁଭୂତି ଦେଖାଇ ଲମ୍ବା ଲମ୍ବା ବକ୍ତୃତା ଦେଇ ପାରନ୍ତି, ପ୍ରବନ୍ଧମାନ ଲେଖି ଖବରକାଗଜର ପୃଷ୍ଠା ପୂର୍ଣ୍ଣ କରିପାରନ୍ତି, କିନ୍ତୁ ମ୍ୟାଉଁ ବେଳକୁ କେହି ଧରିଛୁଆଁ ଦିଅନ୍ତି ନାହିଁ । ମୁଁ ଜାଣେ ଏ ସବୁ ଆପଣମାନଙ୍କର କ୍ଷଣିକ ଉତ୍ତେଜନାର ଫଳ । ଆରେ ବାବା, ଯଦି ନୈତିକ ସାହସ ଅଛି, ଯଦି ବାଲ୍ୟ-ବିଧବାମାନଙ୍କ ପାଇଁ ତମର ଛାତି ଭିତର ସତେ କାନ୍ଦି ଉଠୁଛି ତ ବାହାରି ପଡ଼, ଦେଖିବା କେଉଁ ସମାଜକର୍ତ୍ତାମାନେ ତମୁକୁ ଏକଘରକିଆ କରି କଣ କରି ପକାଇବେ । ପନ୍ଦରକିଆ ବିଲୁଆଙ୍କ ପରି ଟିକିଏ ବୋବେଇ ଉଠି ପୁଣି ଘୁମେଇଁ ପଡ଼ିବା ଅପେକ୍ଷା ଏକାଥରେ ନଦୀରେ ଶୋଇପଡ଼ିବା ଭଲ ।

ଏହା ଭିତରେ ଗଣ୍ଡା ଦୁଇ ବାଲ୍ୟ-ବିଧବାଙ୍କର ବାହାଘର କଲି, କିନ୍ତୁ ବରପାତ୍ରଗୁଡ଼ିକ ଅଧାପାଠୁଆ ମଳମୁଣ୍ଡିଆ । ଆପଣମାନଙ୍କ ପରି ଅନେକ ଧୋବ-ଧାଉଳିଆ ଶିକ୍ଷିତ ଭେଣ୍ଡିଆ ବାହାଘରରେ ଯୋଗ ଦେଇ ବାହା ବାହା କରି ଫେରନ୍ତି । ମୋ ମନରେ ଦୁଃଖ ହୁଏ, ହସ ବି ମାଡ଼େ ।

ବ୍ରଜକିଶୋର ରାଧାଗୋବିନ୍ଦଙ୍କ ଉତ୍ତେଜିତ କଥାର ସ୍ରୋତକୁ ଅନ୍ୟ ଆଡ଼କୁ ଟାଣି ନେବାକୁ ପଚାରିଲେ; କି ଦାୟିତ୍ୱରୁ ରକ୍ଷା କଲି କହିଲେ ନାହିଁ ତ ?

ରାଧାଗୋବିନ୍ଦ କହିଲେ, ଶୁଣନ୍ତୁ ! ହୀରାମଣି ଏବେ ନାରୀମଙ୍ଗଳ-ସମିତିର ସମ୍ପାଦିକା ହେଲଣି । ଅବଶ୍ୟ ସ୍ୱଇଚ୍ଛାରେ ସେ ଏହି ଦାୟିତ୍ୱକୁ ନିଜେ ଗ୍ରହଣ କରିଛି । ବୟସରେ ତରୁଣୀ ହେଲେ ବି ସେ ବୁଦ୍ଧିମତୀ ଓ ଶିକ୍ଷିତା । ବିନୟୀ ହେଲେ ବି ସେ ନିର୍ଭୀକା । ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ସେ ବଦ୍ଧପରିକର । ଅତି କୋମଳ ଓ ସ୍ନେହଶୀଳ ତାଙ୍କ ମନ । ଅନ୍ୟ ଝିଅମାନେ ବୟସରେ ତାଠାରୁ ସାନ ହେବେ । ସମସ୍ତଙ୍କୁ ସେ ନିଜର କନିଷ୍ଠ ଭଉଣୀଗୁଡ଼ିକ ପରି ସ୍ନେହ କରେ । ମୁଁ ନିଶ୍ଚିନ୍ତ । ଯାହା

ହେଉ ଗୋଟାଏ ଅଦ୍ଭୁତ ରକ୍ଷା ମିଳିଲା । ନାରୀ-ମଙ୍ଗଳ ସମିତିର ସମ୍ପାଦିକା ଜଣେ ନାରୀ ହେବା ଆବଶ୍ୟକ, କଣ କହୁଛନ୍ତି ? ଏଥର ଗୃହିଣୀ ଆବିଷ୍କାର କରିବା ପାଇଁ ଓ ପାତ୍ର ଖୋଜିବା ପାଇଁ ମୋତେ ଅଧିକ ସମୟ ମିଳିବ । କିନ୍ତୁ ଆପଣମାନଙ୍କ ସାହାଯ୍ୟ ଓ ସହାନୁଭୂତି ନ ପାଇଲେ ଏତେ ବଡ଼ କାମରେ ଆଗେଇ ହେବ ନାହିଁ ।

ରାଧାଗୋବିନ୍ଦ ଓ ବ୍ରଜକିଶୋରଙ୍କର କଥୋପକଥନ ଶୁଣି ବସିଥିବା ଭଦ୍ରଲୋକମାନେ ଧୀରେ ଧୀରେ ଉଠି ଚାଲିଗଲେ । ନିରୋଳା ହେଲାରୁ ରାଧାଗୋବିନ୍ଦ ହସି ହସି ପୁଣି କହିଲେ, ଦେଖିଲେ ତ ଲୋକଙ୍କ ଢଙ୍ଗ । ଏତେବେଳଯାଏ ବସି ଖୁସିଗପ କରୁଥିଲେ, ଯେମିତି ଗୃହିଣୀ ନାମ ଶୁଣିଲେ ଯେ କିଆଡ଼େ ଚାଲି ପରିଲେ । କିରେ ବାପା, ତମ ପକେଟ୍‌ରେ ହାତ ଭରି କିଏ ତମଠୁ ପଇସା ଛଡ଼େଇ ନେଉଛି ?

ବ୍ରଜ ଟିକିଏ ହସି କହିଲେ, ଆପଣଙ୍କର ଆଗମନର ଉଦ୍ଦେଶ୍ୟ ଏବେ କୁହନ୍ତୁ ।

କାଲି ଗୋଟିଏ ବିବାହର ଆୟୋଜନ ହେଉଛି । ସେଥିପାଇଁ କେତେଖଣ୍ଡି ଲୁଗା କିଣିବା ଅଭିପ୍ରାୟରେ ଆପଣଙ୍କ ଦୋକାନକୁ ଆସିବାର କଥା । କନ୍ୟାର ନାମ ଇନ୍ଦୁମତୀ । ସାତ ବର୍ଷ ବୟସରେ ପଚାଶ ବର୍ଷ ଜଣେ ବିପତ୍ନୀକ ତିନୋଟି ସନ୍ତାନଙ୍କର ଜନକ ବୃଦ୍ଧ ବ୍ରାହ୍ମଣଙ୍କୁ ସେ ବାହା ହୋଇଥିଲା । ଏଗାର ବର୍ଷରେ ବିଧବା ହେଲା । ବାପ ମା ଧରିବସିଲେ ଯେ ତାର ପୁନର୍ବିବାହ କରାଇବେ । ବିବାହ ପୂର୍ବରୁ ତାଙ୍କ ଉପରେ ଲୋକେ ଯେଉଁ ଅତ୍ୟାଚାର କରିଛନ୍ତି, ଶୁଣିଲେ ଆପଣ କାନ୍ଦି ପକାଇବେ । ତଥାପି ସେମାନେ ତାଙ୍କର ସିଦ୍ଧାନ୍ତରେ ଅଟଳ । ଯାହା ହେଉ, ଭାଗ୍ୟକୁ ଜଣେ ଶିକ୍ଷିତ ବ୍ରାହ୍ମଣ ଯୁବକ ବିବାହ କରିବାକୁ ପ୍ରତିଶ୍ରୁତି ଦେଇଛନ୍ତି । ଇନ୍ଦୁମତୀର ବୟସ ମୋଟେ ସତର । କାଲି ବିବାହ ସ୍ଥଳରେ ଆପଣ ସବୁ ଜାଣି ପାରିବେ ।

ରାଧାଗୋବିନ୍ଦ କେତେଖଣ୍ଡି ଶାଢ଼ୀ ଓ ଲୁଗା ବାଛି ଟେବୁଲ ଉପରେ ରଖିଲେ । ବ୍ରଜ ଖଣ୍ଡେ କାଗଜରେ ସେଗୁଡ଼ିକର ମୂଲ୍ୟ ହିସାବ କରିବାରେ ମନ ଦେଲେ ।

ରାଧାଗୋବିନ୍ଦ ପଚାରିଲେ, ବ୍ରଜବାବୁ ଆପଣ ସେଦିନ ଯେଉଁ ପ୍ରତିଜ୍ଞା କରିଥିଲେ ମନେ ଅଛି ତ ?

ବ୍ରଜ ହିସାବ ଶେଷ କରି ମୃଦୁ ହସି କହିଲେ, ଏତେ ଶୀଘ୍ର ଭୁଲିଯିବି ?

ଡେରି କାହିଁକି ? ସମାଜର ନାଲି ଆଖିକୁ ଡରୁଛନ୍ତି ପରା !

ସମାଜ ତ ଆମେ ନିଜେ, ଡର କାହାକୁ ? ବିଳମ୍ବର ଅନ୍ୟ କାରଣ ଅଛି ।

ଯଥା ?

ପାତ୍ରୀ ମନୋନୀତ ହେଲେ ତ ।

ପାତ୍ରୀ ! ସୁନ୍ଦରୀ ଗୃହାନ୍ତୁ ? ଶିକ୍ଷିତା ଗୃହାନ୍ତୁ ? ଆଉ କଣ ଗୃହାନ୍ତୁ ? ଯାଆନ୍ତୁ ଥରେ ଏଇ ଦରିଦ୍ର ସମିତିକୁ । ଯାହାକୁ ଇଚ୍ଛା ତାକୁ ବାଛି ନିଅନ୍ତୁ । ମୋର ଆପତ୍ତି ନାହିଁ । ଏହା ପଛେ ପଛେ ଆପଣଙ୍କର ଶୁଭପରିଣୟର ବନ୍ଦୋବସ୍ତ କରାଯିବ ।

ମୁଣ୍ଡ ହଲାଇ ବ୍ରଜକିଶୋର କହିଲେ, ଯାହାକୁ ମୁଁ ମନୋନୀତ କରିବି ତାକୁ ମୋ ହାତକୁ ଟେକି ଦେବାକୁ ଆପଣ କୁଣ୍ଠିତ ହୋଇ ପାରନ୍ତି ।

ସାବଧାନ, ବ୍ରାହ୍ମଣ ପ୍ରତିଜ୍ଞା କରି ସାରିଛି ।

ସାବଧାନ ଆପଣ ଚମକି ପଡ଼ିବେ ନାହିଁ ।

କୁହନ୍ତୁ ।

ଆଜି ମୋ ବିବାହର ବନ୍ଦୋବସ୍ତ କରନ୍ତୁ । ମୁଁ ପାତ୍ରୀ ମନୋନୀତ କରି ସାରିଛି । ପାତ୍ରୀ ଆପଣଙ୍କ ସମିତିରେ ଅଛି ।

ଖୁସି ହୋଇ ରାଧାଗୋବିନ୍ଦ କହିଲେ, ଆଜି କହୁଛନ୍ତି କାହିଁକି, ବର୍ତ୍ତମାନ କହନ୍ତୁ ମୁଁ ଚାଲିଲି, ଆୟୋଜନ କରିବି । କିନ୍ତୁ ବ୍ରଜବାବୁ, ସେ ଭାଗ୍ୟବତୀଟି କିଏ ପ୍ରକାଶ କରି ମୋର ଉତ୍କଣ୍ଠା ଦୂର କରନ୍ତୁ ତ !

ବ୍ରଜକିଶୋର କହିଲେ, ନାରୀ ମଙ୍ଗଳ ସମିତିର ସମ୍ପାଦିକା ଶ୍ରୀମତୀ ହୀରାମଣି ଦେବୀ । ଆପଣ ଭାବନ୍ତୁ ନାହିଁ ଯେ ଏତଦ୍ଦ୍ୱାରା ପୂର୍ବର ଦାୟିତ୍ୱ ପୁଣି ଆପଣଙ୍କ ମୁଣ୍ଡ ଉପରକୁ ଚାଲିଆସିବ । ନା, ତା ନୁହେଁ । ହୀରାମଣି ଯାହାକୁ ନିଜର କର୍ତ୍ତବ୍ୟ ବୋଲି ବରଣ କରିଛନ୍ତି, ସେ ତାହା ନିର୍ବିଘ୍ନରେ କରିପାରିବେ । ମୁଁ ପ୍ରତିଜ୍ଞା କରୁଛି, ତାଙ୍କର ଆଗ୍ରହ ଓ କାର୍ଯ୍ୟରେ ମୁଁ କେବେହେଁ ବାଧା ଦେବି ନାହିଁ, ବରଂ ଯଥାଶକ୍ତି ସାହାଯ୍ୟ କରି ନିଜକୁ ଗୌରବାନ୍ୱିତ ମନେ କରିବି ।

ସତେ ! ରାଧାଗୋବିନ୍ଦ ଚମକି ଉଠିଲେ । ପରମୁହୂର୍ତ୍ତରେ ଆନନ୍ଦରେ ଅଧୀର ହୋଇ ସେ ବ୍ରଜକିଶୋରଙ୍କର ହାତଧରି ହଲାଇ ଦେଲେ । ପ୍ରକୃତିସ୍ଥ ହୋଇ କହିଲେ, ଆପଣ କଣ ମୋତେ ଏତେ ସ୍ୱାର୍ଥପର ମନେ କରିଛନ୍ତି ବ୍ରଜବାବୁ ? କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ମୁଁ ସବୁପ୍ରକାର ଦାୟିତ୍ୱ ନିଜ ଉପରକୁ ଟାଣି ନେବାକୁ ପ୍ରସ୍ତୁତ ହୋଇ ରହିଛି । ସତରେ ମୁଁ ଆପଣଙ୍କ ପାଖରେ ଆଜି ପରାଜୟ ସ୍ୱୀକାର କରୁଛି, କିନ୍ତୁ ହୀରାମଣିର ସ୍ୱାଧୀନ ଇଚ୍ଛା ବିରୁଦ୍ଧରେ ମୁଁ କିଛି କରିପାରିବି ନାହିଁ । କାରଣ ତାର ମତାମତ ବୁଝିବାକୁ ଯଥେଷ୍ଟ ସମୟ ଲାଗିବ । ନୂଆ ଜୀବନ ଓ ନୂଆ ପରିସ୍ଥିତି ତାକୁ ଆଗେଇ ଯାଉ, ତାପରେ ତାର ମତ ବୁଝିବାକୁ ମୁଁ ଚେଷ୍ଟା କରିବି ।

ବ୍ରଜକିଶୋର ଗମ୍ଭୀର ହେଲେ । ମନର ମମତା ପ୍ରକାଶ କରି ଥିବାରୁ ସେ ଲଜ୍ଜିତ ହେଲେ । ରାଧାଗୋବିନ୍ଦ ତାଙ୍କର ମନକଥା ବୁଝିଲେ । କହିଲେ, ଆପଣଙ୍କୁ ପାଇଲେ ହୀରାମଣି ନିଜକୁ ଭାଗ୍ୟବତୀ ମଣିବ । ମୁଁ ଓ ମୋର ସ୍ତ୍ରୀ ଅତ୍ୟନ୍ତ ପ୍ରୀତ ହେବୁ । ଦେଖାଯାଉ ଭଗବାନଙ୍କର କଅଣ ଇଚ୍ଛା ।

# ଷୋହଳ

ରଥମହାଶୟ ଭୁବନେଶ୍ୱର ରେଲଷ୍ଟେସନରେ ଗାଡ଼ିରୁ ଓହ୍ଲାଇ ଉଦ୍‌ବିଗ୍ନଚିତ୍ତର ସହିତ ଘରମୁହାଁ ହୋଇ ଚାଲିଲେ । ଭୟ ଓ ବିରକ୍ତି ଯୁଗପତ୍ ତାଙ୍କ ମନକୁ ଅସ୍ଥିର କଲା । ଅର୍ଥ ଯେ କେତେ କଷ୍ଟରେ ଉପାର୍ଜନ କରାଯାଏ, ତାହାକି ଲୋକେ ବୁଝିବେ । ପରିହାଣିଲା କୋଡ଼ି ପାଣି ପରି ବୋହିଯାଏ । ଅଳ୍ପ ନୁହେଁ, ଅଣା ଅଣା ହୋଇ ବାର ଅଣା, ପଇସା ପଇସା ହୋଇ ଅଠଚାଳିଶ ପଇସା ! ଗୋଟିଏ ଦିନର ଛ ଘଣ୍ଟା ଅବିଶ୍ରାନ୍ତ ଗର୍ଜନର ମୂଲ୍ୟ, ଖେଳିଲା ପରି ଡାକଘରେ ଫୋପାଡ଼ି ଦିଆ ହୋଇଛି ! ତିନି ପଇସାର ଖଣ୍ଡେ ପୋଷ୍ଟକାର୍ଡ଼ ଦେହରେ କେତେ ଖବର ଧରିଥାନ୍ତା; ବୃଥାରେ ପତ୍ନୀ ଟେଲିଗ୍ରାମ କରାଇ ଡକାଇ ଆଣିଲେ କଟକରୁ !

ସ୍କୁଲ ସମ୍ପାଦକଙ୍କ ଧମକ, ଏପରି ଯଦି ବାରମ୍ବାର ଛୁଟି ନେବ, ଆମକୁ ଅନ୍ୟ ବ୍ୟବସ୍ଥା କରିବାକୁ ହେବ । ଲୋକଙ୍କର ଟିକିଏ ଦୟାମାୟା ନାହିଁ । ଦେହ ମୁଣ୍ଡ କଥା, ସେ ତ ମଣିଷ ହାତରେ ନାହିଁ, ବିଧି-ନିର୍ବନ୍ଧ । ସେ ଆଡ଼କୁ ସମ୍ପାଦକ ମହାଶୟଙ୍କର ଦୃଷ୍ଟି ନାହିଁ । ଧନ୍ୟରେ ଗୋଲାମୀ ! ତଥାପି ପେଟ ପୂରିଲା ନାହିଁ ! ଏତେକାଳଯାଏ ପୋଥି ଘୋଷି ଘୋଷି ଉପାଧିମାନ ଲାଭ କରି ଶେଷକୁ ପଚିଶ ଟଙ୍କା ଦରମା ! ସେତକ ବି ସୁରୁଖୁରୁରେ ଲାଭ କରିବାର ଉପାୟ ନାହିଁ । ଏଣେ କର୍ତ୍ତା, ଉପକର୍ତ୍ତାଙ୍କଠାରୁ ଆରମ୍ଭ କରି ଗୁରୁଭକ୍ତ ଛାତ୍ରମାନଙ୍କର ପ୍ରତ୍ୟହ ଧମକ୍ ଚମକ୍, ତହିଁରେ ପୁଣି କୈଫିୟତ୍ ଲେଖା ! ଧନ୍ୟରେ ଚାକିରି, ଜୟସ୍ତୁ, ଜୟସ୍ତୁ, କଷ୍ଟୋଽୟଂ ଖଳୁ ଭୃତ୍ୟଭାବଃ !

ଦାମା, ଶାମା, ହରିଆ—ପଚାରିଲେ ବାପ ନାଁ ଆସିବ ନାହିଁ । ବାଉରି, କଣ୍ଡରା, ପାଣ—କଲିକତା, କାଲମାଟି, ଖଡ଼ଗପୁରରେ କାମ କରି ଦିନକୁ ତିନିଟଙ୍କା ଲେଖାଏଁ ଉପାର୍ଜନ କରନ୍ତି । ବାପରେ, ମାସକୁ ନବେ, ଶହେ ଟଙ୍କାରୁ ମୋଟେ ଦଶ ଟଙ୍କା ଊଣା ! ପଣ୍ଡିତଙ୍କ ପରି ପ୍ରାୟ ପୁଞ୍ଜାଏ । କାଳ ଓଲଟି ଗଲା, ଓଲଟି ଗଲା ! ଗୁଣ କେହି ଚିହ୍ନିଲେ ନାହିଁ ! ଘୋର କଳିକାଳ ଉପସ୍ଥିତ । ଘରେ ବସି ବଟାଳି ଠକ୍ ଠକ୍ କରି ମାଧ ବଢ଼େଇ ଦିନକୁ ଅଢ଼େଇ ଟଙ୍କା, ଲଗାଇ ଲୁହା ପିଟି ଚଇଁ କମାର ଦିନକୁ ଦଶଣା ବାରଣା ରୋଜଗାର କରନ୍ତି, ଆଉ ବର୍ଷବର୍ଷ ପଢ଼ି ପୋଥିପୁସ୍ତକ ଘୋଷି କାବ୍ୟତୀର୍ଥ ହୋଇ ଦିନକୁ ରୋଜଗାର ବାରଅଣା । କେବଳ ରୋଜଗାର ହୁଏ ଗୁଡ଼ିଏ ଓଳକ । ତା ବି ଦିନକୁ ଦିନ ମହଙ୍ଗା ହେଲାଣି ।

ଏହିପରି ଚିନ୍ତା କରି ପଣ୍ଡିତ ମହାଶୟ ଛତାକାଠି କାନ୍ଧରେ ଝୁଲାଇ ଆଗକୁ ଚାଲିଛନ୍ତି । ରାସ୍ତାର ଦୁଇଆଖରେ କୋଚଲା ବଣ, ଅଭ୍ୟାସଗ୍ରସ୍ତ ହୋଇଥିବାରୁ ସେଆଡ଼କୁ ମୋଟେ ନଜର ନାହିଁ । ସ୍ତ୍ରୀଙ୍କ କଥା ପୁଣି ମନେ ପଡ଼ିଲା । ଏପରି କଣ ହୋଇଛି ଯେ ଟେଲିଗ୍ରାମ୍ କରିବା ଯାଏ ତର ସହିଲା ନାହିଁ ! ଦୈହ ଟେବେ ଶକ୍ତ

ବେମାର—ଯିବା ଆସିବା ଉପରେ କଥା ? ହଇରାଣିଆ ଯୋଗ ! କଣ କରାଯିବ, ଗ୍ରହଫଳ ଭୋଗିବାକୁ ତ ପଡ଼ିବ !

କଲଙ୍କିନୀ ବିଧବା କନ୍ୟାକୁ ପରିତ୍ୟାଗ କରିଛନ୍ତି ବୋଲି ସମାଜର କର୍ତ୍ତାମାନେ ତାଙ୍କର ଭୂରି ଭୂରି ପ୍ରଶଂସା କରୁଛନ୍ତି । ସଭା ସମିତିରେ କଥା କଥାକେ ତାଙ୍କରି ଉପଲକ୍ଷ୍ୟ ଦେଉଛନ୍ତି । ମନୁଷ୍ୟ ଜନ୍ମ ସାର୍ଥକ ହୁଏ କିପରି ? ପାଞ୍ଚମୁହଁରୁ ପ୍ରଶଂସା ଶୁଣିଲେ ତ'! ମାଟିର ଦେହ ମାଟିରେ ମିଶିବ, କିନ୍ତୁ ଗୁଣର ଗାଥା ରହିଯିବ କାଳ କାଳକୁ । ସେ ପଣ୍ଡିତ, କାବ୍ୟତୀର୍ଥ, ତାଙ୍କୁ ସବୁ ଶାସ୍ତ୍ର ଜଣା । ଶ୍ରୀରାମଚନ୍ଦ୍ର ଲୋକାପବାଦକୁ ଡରି ମହାସତୀ ସୀତାଙ୍କୁ ପରିତ୍ୟାଗ କରିଥିଲେ । ସେ ପରିତ୍ୟାଗ କରିଛନ୍ତି କନ୍ୟାକୁ । ଆଦର୍ଶର ଅନୁଗତ ଦାସ ସେ । ସନାତନ ଧର୍ମର ରକ୍ଷକ ! ବୁଦ୍ଧିମାନର କର୍ମ—ଭବିଷ୍ୟତ୍‌କୁ ଅନୁମାନ କରି ଆଗରୁ ଉପାୟ ସ୍ଥିରକରି ପଥ ପ୍ରସ୍ତୁତ କରିବା ।

ନେତ୍ରମଣି ବୋଧହୁଏ ଶକ୍ତ ବେମାର । ଗ୍ରହ ଚଳନ ଅଶୁଭ, କେତେବେଳେ କେଉଁ କଥା । କପାଳ ଲିଖନ କେ କରିବ ଆନ ? କାହାର ହାତରେ ନାହିଁ । ଭଲ ଥାଏ କି ମନ୍ଦ ଥାଏ ଆଗରୁ ପ୍ରସ୍ତୁତ ହେବା ଆବଶ୍ୟକ ।

ଭଗବାନ ନ କରନ୍ତୁ ଯଦି ସେପରି ଗୋଟାଏ ବିପଦ ଆସି ଭେଟିଯିବ, ପଣ୍ଡିତେ କଣ ଘର ଭାଙ୍ଗି ଲେଙ୍ଗୁଟି ମାରି ଜଙ୍ଗଲକୁ ପଳାଇବେ ? ନେତ୍ରାନନ୍ଦର ଅବସ୍ଥା ହେବ କଣ ? ସେ ତ ଆଉ ଚେଲା ହୋଇ ଗୋଡ଼ାଇ ଯିବ ନାହିଁ । ଲୋକେ କଣ କହିବେ ? ପଣ୍ଡିତେ କଣ ଏସବୁ ବିଷୟ ଭାବୁ ନାହାନ୍ତି ? ଭଣ୍ଡାରୀ ମୁଁଥ ଅଣ୍ଟାରେ ଦି ପଇସା ଖୋସିଲେ ପୁଣି ଟୋକା ହେବାକୁ କେତେବେଳ । ଭଗବାନ୍ ମିଶ୍ରଙ୍କ ପରି ଶହ ଶହ ଲୋକ ଏ ଉନ୍ନତ ସମାଜରେ ଗୃହ ସଂସାର କରୁଛନ୍ତି କିପରି ?

ରାତ୍ରି ଲେଉଟିଲା, ରଥେ ଘରେ ପହଞ୍ଚିଲେ । ଘରୁ ସତେ କି ଲକ୍ଷ୍ମୀ ଛାଡ଼ି ଯାଇଛନ୍ତି । କେତେଦିନ ହେଲା କେଜାଣି ଘର ଦୁଆରେ ବଢ଼ିଣା ତ ବାଜି ନାହିଁ, ଅଳିଆ ଏଠି ସେଠି ଜମାହୋଇ ରହିଛି । ଛି ଛି, ବ୍ରାହ୍ମଣ ଘର ନା ହାଡ଼ୀଘର ! ଘୃଣାରେ ପଣ୍ଡିତେ ନାକ ଟେକିଲେ । କାହା ଉପରେ କେଜାଣି ତାଙ୍କର କ୍ରୋଧ ହେଲା । ଅଗଣା ଭିତରକୁ ପଶିଯାଇ ଶୁଣିଲେ, ତାଙ୍କ ସ୍ତ୍ରୀ ଅତି କ୍ଷୀଣ ସ୍ୱରରେ କାନ୍ଦି କାନ୍ଦି କହୁଛନ୍ତି, ହାୟ ଲୋ, ମୋ ମାଆ ଲୋ !

ପଣ୍ଡିତ ମହାଶୟ ଚକିତ ହେଲେ । ତାଙ୍କର ବିନାନୁମତିରେ ହାୟକୁ ଘରେ ସ୍ଥାନ ଦିଆ ହୋଇଛି । ସେଥିପାଇଁ ଲକ୍ଷ୍ମୀ ଛାଡ଼ି ପଳାଇଛନ୍ତି । ଓହୋ, ଏଡ଼େ ବଡ଼ ଅନ୍ୟାୟ ! ପଣ୍ଡିତଙ୍କ ଆଖି ଦିଟା ରାଗରେ ରଙ୍ଗ ହୋଇଗଲା । ସେ ଗମ୍ଭୀର ଘର ପାଖକୁ ଯାଇ ରୁକ୍ଷ ସ୍ୱରରେ ଡାକିଲେ, ନେତ୍ରାନନ୍ଦ ?

ନେତ୍ରାନନ୍ଦ ମାଆର ମୁଣ୍ଡ ପାଖରେ ବସି ନୀରବରେ ଅଶ୍ରୁ ତ୍ୟାଗ କରୁଥିଲା । ଘରେ ଆଉ କେହି ନାହାନ୍ତି । ନନାଙ୍କ କଣ୍ଠସ୍ୱର ବାରି ସେ ଉତ୍ସାହରେ ଅଧୀର ହୋଇ

ସଜଳ ନେତ୍ରରେ ପଦାକୁ ଆସି ପିତାଙ୍କୁ ପ୍ରଣାମ କଲ୍ । ରଥେ ମୁଖ ଗମ୍ଭୀର କରି ପୂର୍ବପରି ରୁକ୍ଷ ସ୍ୱରରେ ପଚାରିଲେ, ଘର ଭିତରେ ଆଉ କିଏ ?

ନେତ୍ରାନନ୍ଦ ଉତ୍ତର ଦେଲା, ବୋଉ, ଆଉ କେହି ନାହାନ୍ତି ।

ପଣ୍ଡିତଙ୍କ ମୁଣ୍ଡରୁ ପିଢ଼ି ଖସି ପଡ଼ିଲା । ସେ ଦୀର୍ଘଶ୍ୱାସ ଛାଡ଼ି ନମ୍ର ସ୍ୱରରେ ପଚାରିଲେ, ବୋଉର ଦେହ କେମିତି ?

ନେତ୍ରାନନ୍ଦର ମନରେ ସାହସ ହେଲା । ସେ କହିଲା, ନାନୀ ଗଲାଦିନୁ ମାଆ ଖିଆପିଆ ଛାଡ଼ିଛି । ଘରେ ବି ଚୁଲି ଜଳୁନାହିଁ । ଠାକୁରଙ୍କ ସେବା ବନ୍ଦ । ସଞ୍ଜ ଦିଆ ହେଉ ନାହିଁ । ବୋଉ ସବୁବେଳେ ନାନୀକୁ ଡାକି କାନ୍ଦୁଛି । ଚାରିଦିନ ହେଲା ବିଛଣା ଛାଡ଼ି ନାହିଁ । ଦିନ କଣ ରାତି କଣ ସବୁବେଳେ ଖାଲି 'ହାରି—ହାରି' ଡାକୁଛି ।

ପଣ୍ଡିତ ମହାଶୟ ଘର ଭିତରକୁ ଗଲେ । ନେତ୍ରାନନ୍ଦ ଅନୁଗମନ କଲା । ରଥେ କିଛି କହିବା ଆଗରୁ ସେ ଆନନ୍ଦରେ ତା'ର ବୋଉକୁ ହଲାଇ ଦେଇ କହିଲା, ବୋଉ, ନନା ଆସିଛନ୍ତି ।

ନେତ୍ରମଣି ଚକ୍ଷୁ ଖୋଲି ବଲବଲେଇଲା ପରି କହି ଉଠିଲେ, ଏଁ, ନନା ! ମୋ ହାରି କାହିଁ ?

ଆଖି କୋଣରୁ ଦିଧାର ଲୁହ ଗଡ଼ି ପଡ଼ିଲା । ସ୍ୱାମୀଙ୍କୁ ଦେଖି ସେ ଅସ୍ତବ୍ୟସ୍ତ ହୋଇ ଉଠି ବସିଲେ । ଅନଶନରୁ ଦେହ ଦୁର୍ବଳ ହୋଇ ପଡ଼ିଥିଲା । ସିଧା ବସି ନ ପାରି କାନ୍ଥକୁ ଆଉଜି ପଡ଼ିଲେ ।

ରଥେ ବ୍ୟସ୍ତ ହୋଇ ପଚାରିଲେ, ଏପରି ପିଲାଙ୍କ ପରି ହେଉଛ କାହିଁକି ? ଏସବୁ ଭଗାରିହସା କଥା !

ନେତ୍ରମଣି ନ ଶୁଣିଲା ପରି କାନ୍ଦଣା ସ୍ୱରରେ କହିଲେ, ମୋ ହାରି କାହିଁ ମୋତେ କହ ?

ରଥେ ବିରକ୍ତ ହୋଇ କହିଲେ, ହାରି ! ତାର ଖବର ମୁଁ ରଖି ନାହିଁ । ମନେକର ସେ ମରି ଯାଇଛି । ତା ସଙ୍ଗରେ ତ କେହି ଗୋଡ଼ାଇ ଯିବେ ନାହିଁ ?

ତାଙ୍କ କଥା ଶେଷ ହେବା ପୂର୍ବରୁ ନେତ୍ରମଣି କହିଲେ, ମରି ଯାଇଛି, ହାରି ମୋର ମରି ଯାଇଛି ! ମୁଁ ଯାହା ସପନ ଦେଖିଥିଲି ତେବେ ସତ । ହଉ, ମୁଁ ସେଇଆ ଚାହେଁ । ଦିନରାତି ଲୋକନାଥଙ୍କ ପାଖରେ ମୋର ସେହି ଜଣାଣ । ହାରି ମରୁ । ଛତରରେ ପଶିବା ଠାରୁ, ବାର ଦୁଆରେ ଛେଲୁଆ ଟେକି ଭିକ ମାଗିବା ଠାରୁ, ବାଉରି କଣ୍ଡରା ହାଣ୍ଡିରୁ ପେଜ ଟିକେ କି ସଢ଼ା ତୋରାଣି ମନ୍ଦେ ମାଗି ପିଇବା ଠାରୁ ମରିବା ଭଲ । ଗାଁ ଦାଣ୍ଡରେ ମଶାଣି ଲୁଗା ପିନ୍ଧି ଅଧଲଙ୍ଗଳା ହୋଇ ବୁଲିବାଠାରୁ, ନଗୁଟିଆ ଗଛମୂଳେ କୁକୁର ବିଲୁଆଙ୍କ ସାଙ୍ଗେ ଲଙ୍ଗୁଳା ଦେହରେ ଧୂଳି କାକରି ସହି ରାତି କଟେଇବାଠାରୁ, ଗାଁ ଭେଣ୍ଡିଆଙ୍କ ଟହିଟାପରି ସହିବାଠାରୁ

ମରିବା ଭଲ । ହାରି ତେବେ ମରିଛି ! ଆତ୍ମହତ୍ୟା କରି ମରିଛି ! ମଶାଣି ବରଗଛରେ ଦଉଡ଼ା ଦେଇ ମରିଛି, କୂଅ କି ପୋଖରୀକି ଡେଇଁ ପଡ଼ି ମରିଛି—ସତ କହ, ସେ ମରିଛି ?

ପଣ୍ଡିତେ ବିଷମ ସମସ୍ୟାରେ ପଡ଼ିଲେ । ତାଙ୍କର ହୃଦ ଭିତର ଥରି ଉଠିଲା । ଯେତେହେଲେ ମଣିଷର ହୃଦ ଲୁହା ପଥରରେ ଗଢ଼ା ନୁହେଁ । ପଥର କଣ ଭାଙ୍ଗୁନାହିଁ ନା ଲୁହା ତରଳୁ ନାହିଁ ? ସେ ଦବିଯାଇ ସାନ୍ତ୍ୱନା ଦେବାକୁ ନମ୍ର ହୋଇ କହିଲେ, ଏତେ ବ୍ୟସ୍ତ ହେଉଛ କାହିଁକି ? କହିଲି ପରା ସେ ଯାଇଛି ତା ସଙ୍ଗରେ ଆଉ କେହି ଗୋଡ଼ାଇ ଯିବେ ନାହିଁ । କର୍ମଫଳ ଭୁଞ୍ଜିବାକୁ ହେବ ।

ନେତ୍ରମଣିଙ୍କ ଶୁଖିଲା ଓଠରେ କ୍ଷୀଣ ହସର ରେଖା ଫୁଟି ଉଠିଲା । ସେ କହିଲେ, ସତ କଥା, ଆଉ କେହି ଗୋଡ଼ାଇ ଯିବେ ନାହିଁ; କିନ୍ତୁ ମୋର ଏହି କୋଳରେ ତାକୁ ଅଲିଅଲି କରି ଏଡ଼େଟିରୁ ଏଡ଼େ କଲି । ଦିନେ ତା ତୁଣ୍ଡରୁ ପଦେ ମିଛକଥା ଶୁଣି ନାହିଁ । ମୁଁ ଜାଣେ, ହାରି ମୋର ମିଛ କୁହେ ନାହିଁ । ପର କଥାରେ ପଡ଼ି ତୁମେ ତାକୁ ଘରୁ ତଡ଼ିଲ । ପର କଥାରେ ତୁମର ଏତେ ପତିଆରା ? ହାରି ମୋର ମରିଛି । ମରି ନାହିଁ ଯେ ଏ ସଂସାରର ଦହଗଞ୍ଜରୁ ତରି ଯାଇଛି । ମୁଁ ଆଉ ଏ ନରକରେ ଘଣ୍ଟି ହେବି ନାହିଁ । ଭଗବାନ ମିଶ୍ରେ ଘର କରିଛନ୍ତି । ତୁମେ ବି ଘର କର । ମୁଁ ମୋ ହାରିର ବାଟ ଖୋଜି ଯିବି । ନେତ୍ରମଣି କାନ୍ଥରେ ମୁଣ୍ଡ ପିଟି ଦେଲେ । କପାଳ ଉପରେ ଖଣ୍ଡିଆ ହୋଇ ରକ୍ତର ଧାର ଝରିଲା । ସେ ଆହୁରି ଥରେ ଚେଷ୍ଟା କରୁଥିଲେ, କିନ୍ତୁ ନେତ୍ରାନନ୍ଦ ଖାଡ଼ା ହୋଇ କାନ୍ଦ କାନ୍ଦ ନେତ୍ରମଣିଙ୍କୁ ଧରିଲେ ।

ରଥେ ଅସ୍ଥିର ହୋଇ କହିଲେ, ଏ ସବୁ ପିଲାମି ମୋତେ ଭଲ ଲାଗେ ନାହିଁ । କଥା ନ ଶୁଣି ଏପରି ଅଧୀର ହେବା ପଶୁତ୍ୱ ସଙ୍ଗେ ସମାନ । ଆରେ, ମୋର କହିବାର ଉଦ୍ଦେଶ୍ୟ, ହାରି ବିଷୟରେ ମୁଁ କିଛି ଜାଣେ ନାହିଁ । ଚରିତ୍ର ନଷ୍ଟକରି ଯେଉଁ ବିଧବା ନାରୀ କୁଳତ୍ୟାଗିନୀ ହେଲା, ତାକୁ ମୃତା ବୋଲି କହିଲେ ଚଳେ । ସ୍ତ୍ରୀଜାତି ନିର୍ବୋଧ ! କଥାର ଭାବ, ଭାବର ତାତ୍ପର୍ଯ୍ୟତା କିଛି ଉପଲବ୍ଧି ନ କରି ବୃଥାରେ ଅଧୀରା ହୁଅନ୍ତି । ଯେ କୁଳକଳଙ୍କିନୀ, କୁଳତ୍ୟାଗିନୀ ତାକୁ ମୃତା କହିଲେ ଭୁଲ ହୁଏ ନାହିଁ ! ସେ ଜୀବିତା ଥାଉ ବା ନ ଥାଉ, ତା ପାଇଁ ଅନୁଶୋଚନା କରିବା ମୂର୍ଖତା ।

ନେତ୍ରମଣି ପଚାରିଲେ, ହାରି ତେବେ ବଞ୍ଚିଛି ? ସତ କହ ।

ସେ କଥା ମୁଁ କହିପାରିବି ନାହିଁ । ତାର ନାମ ମୋତେ ବିଷ ପରି ଲାଗୁଛି । ମୁଁ ତାର କୌଣସି ଖବର ରଖି ନାହିଁ । ଆବଶ୍ୟକ ମଧ୍ୟ ମଣି ନାହିଁ ।

ବାପ ହୋଇ ତମେ ଏପରି କଥା କହୁଛ ? ଆବଶ୍ୟକ ନାହିଁ ? ତମ ହୃଦୟ କେଡ଼େ କଠିଣ ! ଭଗବାନ ତମ ପରି ଲୋକଙ୍କୁ ଝିଅ ଦିଅନ୍ତି କାହିଁକି ? ତମ ପାଠଶାଳରେ, ଧର୍ମ ବୁଦ୍ଧି ଉପରେ କିଏ ନିଆଁ ଲୁଚାଉ ନାହିଁ ? ପରି କଥାରେ

ମୋ ନିର୍ଦ୍ଦୋଷୀ ଝିଅଟାକୁ ଘରୁ ବାହାର କରି ଦେଲେ, ପୁଣି ପାଠର ବଡ଼େଇ କରୁଛ ? ତମ ମୁହଁକୁ ଲାଜ ସରମ ନାହିଁ ?

ସ୍ୱାମୀ ଦେବତାଙ୍କୁ ତିରସ୍କାର କରିବା ନେତ୍ରମଣିଙ୍କର ଆଜି ପ୍ରଥମ । କଣ କରିବେ, ମଣିଷ ଧୈର୍ଯ୍ୟର, ମଣିଷର ସହିବାର ସୀମା ଅଛି ! ପଣ୍ଡିତ ମହାଶୟ ମଧ୍ୟ ଏପରି ଗାଳି ସହି ଚୁପ୍ ରହିବାର ଲୋକ ନୁହନ୍ତି । ବିଶେଷତଃ ତାଙ୍କ . ବୁଦ୍ଧି ଓ ପାଣ୍ଡିତ୍ୟ ବିପକ୍ଷରେ ଅଭିଯୋଗ ଶୁଣିଲେ ରାଗରେ ତାଙ୍କର ଚୁଟି ଠିଆ ହୋଇ ଯିବାର କଥା, କିନ୍ତୁ ଆଜି ସବୁକଥା ସେ ବରଦାସ୍ତ କରିନେଲେ । ହିଁରା ନିର୍ଦ୍ଦୋଷ, ଏହି କଥା ବାରମ୍ବାର ତାଙ୍କ ମନକୁ ଘାଣ୍ଟି ଚକଟି ପକାଇଲା । ଅପତ୍ୟର କ୍ଷୀଣରେଖା ବଜ୍ରପରି ତାଙ୍କର ହୃଦୟକୁ ଆଘାତ କଲା । କିନ୍ତୁ ଭଗବାନ ମିଶ୍ରେ ମିଛ ଲେଖିବେ କହିଁକି ? ଇନ୍ଦିରା ମିଛ ଲେଖିବ ବା କାହିଁକି ? ସଂସାରଯାକ ସମସ୍ତେ ମିଥ୍ୟାବାଦୀ ?

ରଥେ କହିଲେ, ହୀରା ନିର୍ଦ୍ଦୋଷ ବୋଲି କିଏ କହିଲା ?

ହୀରାମଣିର ଛଳଛଳ ଆଖି ଦିଓଟି ମୋତେ କହିଲା । ମୋର ମନ ମୋତେ କହିଲା, ହୀରା ମୋର ନିର୍ଦ୍ଦୋଷ ।

ଅସମ୍ଭବ ! ସେ ଚରିତ୍ରହୀନା । ତୁମର ମାତୃ ହୃଦୟ ସତ୍ୟକୁ ଗ୍ରହଣ କରି ପାରୁନାହିଁ ।

କଅଣ ବକୁଛ ?

ନାରୀ ଜାତିକୁ ବିଶ୍ୱାସ କରିବ ନାହିଁ । ତୁମେ ନାରୀ; ତୁମର କନ୍ୟା ମଧ୍ୟ ନାରୀ, କିନ୍ତୁ ପଣ୍ଡିତ ଭଗବାନ ମିଶ୍ର ପୁରୁଷ—

ତୁମେ ଅତି ନିର୍ଲଜ, ଅତି ଅବିବେକ । ଇନ୍ଦିରାର ପତ୍ରକୁ ବିଶ୍ୱାସ କଲ । ଇନ୍ଦିରା ସ୍ତ୍ରୀ କି ପୁରୁଷ ବିଚାର କଲ ନାହିଁ ?

## ସତର

କାଳୀଗଳିରେ ଅବସ୍ଥିତ ଗୋଟାଏ ଛୋଟ ପକ୍କା ଘର 'ତରୁଣ ନିବାସ' ନାମରେ ଅଭିହିତ । ବ୍ରଜକିଶୋରଙ୍କ ପରି ଆହୁରି ଦୁଇ ତିନିଜଣ ଯୁବକ ସେଠାରେ ବାସ କରନ୍ତି । ଟାକାଳିଆ ଶୀତ, କାମଦାମ ଶେଷ କରି ରାତିରେ ବିଶ୍ରାମ ନେବା ପୂର୍ବରୁ ତାସ୍ ଖେଳ ଚାଲେ । ଖେଳାଳି ନିଅଣ୍ଟ ପଡ଼ିଲେ ଗପ ଓ ତର୍କରେ ଘଡ଼ିଏ ବିତେଇ ନ ଦେଲେ ସେମାନଙ୍କୁ ସତେ ନିଦ ହୁଏ ନାହିଁ ।

ସେଦିନ ବ୍ରଜକିଶୋର ତାଙ୍କର ବନ୍ଧୁମାନଙ୍କ ଆହ୍ୱାନରେ ସମ୍ମତ ହୋଇ ପାରିଲେ ନାହିଁ । ଆରପାଖ ବାରଣ୍ଡାରେ ବନ୍ଧୁମାନଙ୍କର ବିନ୍ତି ଖେଳ ଚାଲିଥିଲା, ବ୍ରଜ ତାଙ୍କର ଏକୁଟିଆ କୋଠରିରେ ନୀରବରେ ବସିଥିଲେ । ତାଙ୍କ ନୂଆବୋହୂଙ୍କ ଛୋଟ ଚିଠି ଉପରେ ତାଙ୍କର ଚକ୍ଷୁ ନ୍ୟସ୍ତ ଥିଲା ।

—ତମର ନୀରବତା• ଦେଖି ମୁଁ ବିସ୍ମିତ ହୋଇଛୁ ବ୍ରଜ, ମୋର ଅପରାଧ କଣ ? ତମ ଲେଖାରେ ତମ ନୂଆବୋହୂ ମଲାଣି । ହଉ, ମୁଁ ମରେ ପଛେ ଠାକୁରେ ତମକୁ ସୁଖରେ ରଖିଥାନ୍ତୁ । ତମ ଭାଇଙ୍କ ପାଖକୁ ଚିଠି ଦିଅ, ନ କହ ସେଇଥିରେ ନୂଆବୋହୂ ପାଖକୁ ଦି ପଦ ଲେଖିଦେଏଁ । କାହିଁକି ଲେଖିବ, ମୁଁ ତ ଆଉ ତମର ଉଉଣୀ ନୁହେଁ ଯେ ତମ ମନ ଟଳିବ ! ଯେତେହେଲେ ପର ଝିଅଟା । ମୁଁ ଜାଣେ ସେଦିନର ସେହି ଗ୍ରେଟ ଘଟଣା ପାଇଁ ମୋ ଉପରେ ତମର ରାଗ ! ମୁଁ ତୁମରି ଭଲ ପାଇଁ କହୁଥିଲି । ଯଦି ତମକୁ ଭଲ ନ ଲାଗିଲା ମୋ କଥା ମୋତେ ଫେରାଇ ଦେବ । ପର ପାଇଁ କେତେ ଦିନ ମୋ ଉପରେ ରାଗ କରି ରହିବ ? ମୋ ରାଣ, ମୋ ସୁନା ଭାଇଟି, ନିଶ୍ଚୟ ଫେରନ୍ତା ଡାକରେ ମୋ ପାଖକୁ ଚିଠି ଦେବ ।—

ବ୍ରଜ ଅଭିମାନ କରି ଭାବିଥିଲେ, ପର ପାଇଁ ? ସଂସାରରେ କିଏ ଆପଣାର ହୋଇଅଛି ! ସମସ୍ତେ ପର । ପରର କାର୍ଯ୍ୟକୁ ସମାଲୋଚନା କରିବାକୁ, ପରର କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ତୁମର ମନ କାହିଁକି ବଳିଲା ନୂଆବୋହୂ ? ମୁଁ ତମର ଦିଅର, ବୟସରେ ବଡ଼ ହେଲେ ବି ସମ୍ବନ୍ଧରେ ସାନ, ତମର ସ୍ନେହ ପାଇଛି, ତମର ଭର୍ତ୍ସନା ସହିବି । ତମର ଆକଟ କରିବାର ଅଧିକାର ଅଛି । ହାରାମଣି ଉପରେ କି ଅଧିକାର ତମର ଅଛି ? ସେ ବିଧବା, ହତଭାଗିନୀ ! ତା ପ୍ରତି ସହାନୁଭୂତି ଓ ଦୟା ଦେଖାଇବା ପରିବର୍ତ୍ତେ ଅଜବ ମିଛ କଥା ଲେଖି ତାର ସର୍ବନାଶ କଲ କାହିଁକି ?

ବ୍ରଜକିଶୋରଙ୍କ ଚକ୍ଷୁ ଲୋତକରେ ଛଳ ଛଳ ହେଲା । ସେ ପତ୍ରଖଣ୍ଡି ବାରମ୍ବାର ପାଠକରି ତକିଆ ତଳେ ରଖି ଦେଲେ । ନୂଆବୋହୂଙ୍କ ପାଖକୁ ଖଣ୍ଡେ ଚିଠି ତରତର କରି ଲେଖି ମନେ ମନେ ପଢ଼ିଲେ । କେଜାଣି କଣ ଚିନ୍ତା କରି ପତ୍ରଟି ଚିରି ଚିରି କରି ଚିରି ପକାଇଲେ । ଭାବିଲେ—ସବୁ ଦୋଷ ତୁମର ନୂଆନ୍ତ ! ମୋର ଚରିତ୍ର ଉପରେ ନ ବୁଝି ନ ଶୁଝି ତମେ ମିଛରେ ସନ୍ଦେହ କରିଛ । କେବଳ ସେତିକି ନୁହେଁ, ଜଣେ ନିର୍ଦ୍ଦୋଷ ନିଃସହାୟା, ସରଳା, ବିଧବା ବାଳିକାର ଅସୀମ ଦୁଃଖରେ ଆହା ପଦେ କହିବା ତ ଦୂରର କଥା, ମିଥ୍ୟା ଅପବାଦର ଜାଲ ବୁଣି ତାକୁ ଘରୁ ବାହାର କରିଛ । ତୁମ ପାଖକୁ ପତ୍ର ଲେଖିବା ଉଚିତ ନୁହେଁ । ତୁମେ ଅନୁତାପ କର । ଯେଉଁ ଅନ୍ୟାୟ ତୁମେ କରିଛ, ଯଦି ସମ୍ଭବ ତାକୁ ସୁଧାରି ନେବାକୁ ମୋତେ ସମୟ ଦିଅ ।

ବ୍ରଜକିଶୋର ତାଙ୍କ ଭାଇଙ୍କ ଚିଠିର ଉତ୍ତର ଲେଖି ବସିଲେ । ଉତ୍ତେଜନାର ଶିହରେ କେତେ କଣ ଲେଖିଗଲେ, ସେ ନିଜେ ଜାଣିଲେ ନାହିଁ । ଚିଠିଖଣ୍ଡି ଲଫାଫାରେ ବନ୍ଦ କରି ତକିଆ ତଳେ ରଖିଦେଲେ । ଦୋକାନର ହିସାବପତ୍ର ମିଳାଇ ଖଟ ଉପରେ ଲମ୍ବ ହୋଇ କ୍ଳାନ୍ତ ଅବଶ ଶରୀର ଲମ୍ବାଇ ଦେଲେ । ଘୋଟିଆସିଲା

ନିଦ୍ରା, ଛପି ଛପି ଉଙ୍କି ମାରିଲା ସପନ ଭିତରେ ତାଙ୍କର ମାନସ ପ୍ରତିମା ଅଶ୍ରୁମୁଖୀ ହୀରାମଣି, ନିଜର ଅବିବେକିତା ପାଇଁ ଯାହାର ସେ ସର୍ବନାଶ କରିଛନ୍ତି—

ମତେ କ୍ଷମାକର ଦେବୀ, ଭୟ ଓ ଅନୁତାପରେ ମୁଁ ତୁମକୁ ମିଥ୍ୟା କହିଥିଲି । ମୁଁ ବ୍ରଜକିଶୋର ! ମୁଁ ଯେଉଁ ଭୁଲ କରିଛି, ଯାହାର ପରିଣାମ ପାଇଁ ତୁମେ ଆଜି ଘର ଛାଡ଼ି ବାଟରେ ଠିଆ ହୋଇଛ, ସେଇ ଭୁଲକୁ ମୁଁ ସଂଶୋଧନ କରିବି । ମୋତେ ସାହାଯ୍ୟ କରିବ ?

ସପନ ମଝିରେ ଉଜ୍ଜ୍ୱଳ ଦିବାଲୋକରେ କେଉଁ ମନ୍ଦିର ଆଗ ପୁଷ୍କରିଣୀ କୂଳରେ ରୂପର ପସରା ହାସ୍ୟମୁଖୀ ହୀରାମଣି ଠିଆ ହୋଇଛି ତାର ଅତି ପାଖରେ । ପ୍ରଶ୍ନ ଶୁଣି ସେ ମୁହଁ ଫେରାଇଲା । କହିଲା, ଭୁଲର ସଂଶୋଧନ ତ କରି ସାରିଛ । ମରଣ ଯାହାର ପରିଥିଲା ତାକୁ ଭଲ ଜାଗାରେ ଆଶ୍ରା ଦିଆଇଛ । ଶୁଭକାର୍ଯ୍ୟରେ ଜୀବନକୁ ନିୟୋଜିତ କରିବାକୁ ସୁବିଧା ଓ ସୁଯୋଗ ଦେଇଛ । ଆଉ କି ସାହାଯ୍ୟ ମୋ ଠାରୁ ଲୋଡ଼ୁଛ ?

ନିଜକୁ ଭୁଲି ବ୍ରଜକିଶୋର କହିଲେ, ବନ୍ଧୁ ମେଳରେ ମଧ୍ୟ ଦୁନିଆରେ ତୁମରି ପରି ମୁଁ ଏକାକୀ । ତୁମରି ହାତ ଧରି ଦୁନିଆର ବାଟରେ ଆନନ୍ଦରେ ଚାଲିବାକୁ ତୁମେ ମୋତେ ସୁଯୋଗ ଦେବ ?

ଲଜ୍ଜାଶୀଳା ହୀରାମଣିର ମୁହଁରେ ଗୋଲାପର ଆଭା ଉକୁଟିଲା, ଆଖିରେ ସଙ୍କେତ ସମ୍ମତି । ଦିବାଲୋକ ଅନ୍ତର୍ହିତ ହେଲା । ହସି ଉଠିଲା ଜ୍ୟୋତ୍ସ୍ନାମୟୀ ରଜନୀ । ଆକାଶରେ ପୂର୍ଣ୍ଣିମା ଚନ୍ଦ୍ର । କେଉଁ କୁସୁମିତ ଉପବନର ମନୋହର ଶୋଭା, ମଧୁର ଗନ୍ଧ । ବ୍ରଜକିଶୋର ହୀରାମଣିର ହାତ ଧରିଲେ । ସେ ବାଧା ଦେଲା ନାହିଁ । ଧୀରେ, ଅତି ଧୀରେ ସେ ତାକୁ ଛାତି ଉପରକୁ ଟାଣି ଆଣୁଣୁ, ଚିତ୍କାର କରି ହୀରା ଦୂରେଇ-ଗଲା । କହିଲା, ଛୁଅଁ ନା, ଛୁଅଁ ନା, ମୁଁ ବିଧବା !

ସପନ ଭାଙ୍ଗିଲା । ବ୍ରଜ ଆଖି ଖୋଲିଲେ । ଅନ୍ଧାର ରାତି, ନିଶା ଗର୍ଜୁଛି ।

## ଅଠର

ବିନା ଆଡ଼ମ୍ବରରେ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । କଟକ ସହରର ନାମଜାଦା ଭଦ୍ରଲୋକମାନଙ୍କ ମଧ୍ୟରୁ ଅନେକ ଉପସ୍ଥିତ ହୋଇଥିଲେ । କରେ, ରାଓ, ରଥେ, ମିଶ୍ରେ, ରାଏ ଇତ୍ୟାଦି । ଅନେକ ଭଦ୍ରମହିଳା ମଧ୍ୟ ଉପସ୍ଥିତ ଥାଇ ବିବାହ ସଭାର ମର୍ଯ୍ୟାଦା ଏବଂ ସୌନ୍ଦର୍ଯ୍ୟ ବଢ଼ାଉଥିଲେ । ସମସ୍ତେ ଯେ କେବଳ ସହାନୁଭୂତି ଦେଖାଇବାକୁ ଏହି ଶୁଭକାର୍ଯ୍ୟରେ ଯୋଗଦାନ କରି ରାଧାଗୋବିନ୍ଦବାବୁଙ୍କୁ ଚିରବାଧିତ କରିଥିଲେ ଏପରି ନୁହେ, ଅନେକେ ତାର ତୀବ୍ର ପ୍ରତିବାଦ କରିବାକୁ କି

ମଜା ଦେଖିବାକୁ ଏବଂ କେହି କେହି କୌତୁହଳ ମେଣ୍ଟାଇବାକୁ ଉପସ୍ଥିତ ହୋଇଥିଲେ ।

ସବୁ କଟାକ୍ଷକୁ ପଛରେ ପକାଇ, ବୃଥା ବାକ୍‌ବିତଣ୍ଡାରେ ଯୋଗ ନ ଦେଇ, ନାନା ସମାଲୋଚନା ଓ କୁତ୍ସାରଟନାରେ କର୍ଣ୍ଣପାତ ନ କରି, ନୀରବ କର୍ମୀ ରାଧାଗୋବିନ୍ଦ କନ୍ୟାକର୍ତ୍ତା ହୋଇ କନ୍ୟା ବେଦମତେ ସମର୍ପଣ କଲେ ।

ହୀରାମଣିର ଉତ୍ସାହ କହିଲେ ନ ସରେ । ସେ ଯେ ଲଜ୍ଜାଶୀଳା ବିଧବା ତରୁଣୀ ଏହା ଯେପରି ଭୁଲିଯାଇ ସ୍ୱାଧୀନ ଓ ନିଃସଙ୍କୋଚ ଭାବରେ ଭଦ୍ର ବ୍ୟକ୍ତି ଏବଂ ଭଦ୍ରମହିଳାମାନଙ୍କର ଚର୍ଚ୍ଚାରେ ନିଜକୁ ନିୟୋଜିତ କରିଥିଲା ।

ଦୀନବନ୍ଧୁ ବାବୁ ଓ ବିଶ୍ୱମ୍ଭର ବାବୁଙ୍କ ପରି ଶିକ୍ଷିତ ଅଥଚ ରକ୍ଷଣଶୀଳ ଭଦ୍ରବ୍ୟକ୍ତିମାନଙ୍କୁ ଏ ସବୁ ଅଡ଼ୁଆ ଲାଗୁଥାଏ । ବିଧବା ବିବାହ ଓ ନାରୀ-ସ୍ୱାଧୀନତା ଯେ ଦେଶରେ ବିଭ୍ରାଟ ଜନ୍ମାଇବ ଏହା ହିଁ ସେମାନେ ବିଚାର କରୁଥିଲେ । ସେମାନଙ୍କ ପରି ଝାଣୁଆ ସମାଜକର୍ତ୍ତାମାନଙ୍କ ଆଖିରେ ଧୂଳି ପକାଇ ଏପରି କେତେଜଣ ଧର୍ମଛଡ଼ା, ଜାତିଦ୍ରୋହୀ ନିର୍ଲଜ-ନିର୍ଲଜ୍ଜୀ ସୁପ୍ରତିଷ୍ଠିତ ହିନ୍ଦୁ ସମାଜର ସ୍ତମ୍ଭଗୁଡ଼ିକ ଦୋହଲାଇ ଦେବେ ? ହୀରାମଣିର ଉତ୍ସାହ ଓ କାର୍ଯ୍ୟ ଦେଖି ସେମାନେ ନୀଚ ଉଚ୍ଚସ୍ୱରରେ ନାନାପ୍ରକାର ସମାଲୋଚନା କଲେ । ହୀରାମଣି ଶୁଣି ନ ଶୁଣିଲା ପରି ଦ୍ୱିଗୁଣ ଉତ୍ସାହରେ ନିଜ କାର୍ଯ୍ୟରେ ଲାଗିଗଲା ।

ସୁଦୂର ମୋଫସଲ ମଧୁପୁର ଶାସନର ଦରିଦ୍ର ବ୍ରାହ୍ମଣ କଣ୍ଠୁରିଚରଣ ଦାସଙ୍କର ଅଲିଅଳି କନ୍ୟା ପ୍ରିୟମ୍ବଦା । ନଅବର୍ଷ ବୟସରେ ତାକୁ ଅଶୋକ ଶାସନର ଧନୀ ବ୍ରାହ୍ମଣ ହାଡ଼ିବନ୍ଧୁ କରଙ୍କର ଜ୍ୟେଷ୍ଠ ପୁତ୍ର ପନ୍ଦର ବର୍ଷର ତରୁଣ କାଙ୍ଗାଳି ପ୍ରସାଦକୁ ବିବାହ କରାଇଥିଲେ । ତେର ବର୍ଷ ବୟସରେ ପ୍ରିୟମ୍ବଦା ବିଧବା ହେଲା । ଦୁଇବର୍ଷ ପରେ ତାର ପିତା ଓ ଶ୍ୱଶୁର ଏକମତ ହୋଇ ପ୍ରିୟମ୍ବଦାର ପୁନର୍ବିବାହ ହେବ ବୋଲି ସ୍ଥିର କଲେ । ଗୋବିନ୍ଦ ପାଟଣାର ଉତ୍ସାହୀ ଯୁବକ ଚାଣକ୍ୟ ନନ୍ଦ । ଛେଉଣ୍ଡ ହେଲେ ବି ତେଇଶି ବର୍ଷର ସେହି ମେଧାବୀ ଛାତ୍ର ପ୍ରିୟମ୍ବଦାକୁ ବିବାହ କରିବାକୁ ସମ୍ମତ ହେଲେ । ଚାଣକ୍ୟଙ୍କୁ ହାଡ଼ିବନ୍ଧୁ ସ୍ନେହପୁତ୍ର କରିଛନ୍ତି । ଚାଣକ୍ୟ ବି. ଏ. ପାସ୍ କଲେ ତାର ଅଧିକ ଅଧ୍ୟୟନର ଦାୟିତ୍ୱ ସେ ନେବେ ବୋଲି କଥା ଦେଇଛନ୍ତି । ଚାଣକ୍ୟ ସଙ୍ଗେ ପ୍ରିୟମ୍ବଦାର ବିଭାଘର ହେଲା । ଦିଶୁଛନ୍ତି ଲକ୍ଷ୍ମୀ-ନୃସିଂହ ପରି ।

ବ୍ରଜକିଶୋର ଯୋଗାଟିଏ ଅନ୍ଧାରିଆ ସ୍ଥାନରେ ଠିଆ ହୋଇ ବିଭାଘର ଦେଖିଲେ । ନବ-ଦମ୍ପତିଙ୍କୁ ଦେଖି ଆନନ୍ଦରେ ଆତ୍ମହରା ହେଲେ । ତାଙ୍କର ଦୃଷ୍ଟି ପୁଣି ନିବଦ୍ଧ ହେଲା କର୍ମରତା ହୀରାମଣି ଉପରେ । ସେ ଚିନ୍ତା କରୁଥିଲେ, କିଏ କହିବ ହୀରା ବିଧବା ? ଠିକ୍ ଯେପରି ଅବିବାହିତା ତରୁଣୀ ! ଅତି ସୁନ୍ଦର, ତାର

ମୁଖଶ୍ରୀ, ଚଳନ ଭଙ୍ଗୀରୁ ସ୍ୱର୍ଗୀୟ ମାଧୁରୀ ଝରି ପଡ଼ୁଛୁ । ବ୍ରଜକିଶୋର ମୁଗ୍ଧ ହେଲେ । ଆନନ୍ଦରେ ତାଙ୍କର ପ୍ରାଣ ପୁଲକି ଉଠିଲା, କିନ୍ତୁ ପରକ୍ଷଣରେ ସେ ବିମର୍ଷ ହେଲେ । ଭାବିଲେ, ସତେ କଣ ହାରୀ ସମ୍ମତ ହେବ ?

ବିବାହର କାର୍ଯ୍ୟ ବଢ଼ିଗଲା । ବୋହୂ ପ୍ରିୟମ୍ବଦା ମୁଣ୍ଡରେ ଓଢ଼ଣା ନାହିଁ । ସୁଗଠଣ ସୁନ୍ଦର ମୁହଁରେ ସୁମିଷ୍ଟ ସରଳ ହସଟିଏ ଫୁଟି ଉଠିଛୁ । ସଙ୍କୋଚ ନାହିଁ । ଧୀରେ ଧୀରେ କଥା କହୁଛୁ । ଗୃଣକ୍ୟର ତେଜୀସ୍ୱାନ୍ ମୁଖରେ ହସ, କିନ୍ତୁ ସେ ଗମ୍ଭୀର ହେବାକୁ ଚେଷ୍ଟିତ । ଲୋକେ ଏପରି ଦୃଶ୍ୟ ଦେଖି ଆଚମ୍ବିତ ହେଲେ । କେଇଜଣ ଦେଖେଣାହାରୀ ଭଦ୍ରମହିଳା କହି ଉଠିଲେ, ଛୁଆଲେ, କି ଅଭିଲ ମ ଏ ଦୁଇଟା, ଆଉ ସେ ଝିଅର ଧର୍ମଛଡ଼ା ବାପ, ଧର୍ମଛଡ଼ା ଶଶୁର !

ବିବାହର ଶେଷ ହେଲା । ରାଧାଗୋବିନ୍ଦ ସମବେତ ଭଦ୍ରମଣ୍ଡଳୀଙ୍କୁ ଅଳ୍ପ କଥାରେ ବିଧବା ବିବାହ, ପର୍ଦ୍ଦା ନିବାରଣ ଓ ନାରୀ-ସ୍ୱାଧୀନତାର ଉପକାରିତା ଓ ଆବଶ୍ୟକୀୟତା ସମ୍ବନ୍ଧରେ ବୁଝାଇ ଦେଲେ । ଦେଶର ଜନସାଧାରଣ ବିଶେଷତଃ ବ୍ରାହ୍ମଣ ସମାଜର ନେତାମାନଙ୍କର ଶୁଭଦୃଷ୍ଟି ଓ ସହାନୁଭୂତି ଆକର୍ଷଣ କଲେ ।

କେତେଜଣ ବାଳିକା ବିନା ଯନ୍ତ୍ର ସାହାଯ୍ୟରେ ଗୋଟିଏ ଗୀତ ଗାଇ ସମସ୍ତଙ୍କୁ ଚମକୃତ କରିଥିଲେ । ଗୀତଟି ଆଗରୁ ଛପା ହୋଇ ବଣ୍ଟା ହୋଇଥିଲା । ଲେଖିକା ଶ୍ରୀମତୀ ହୀରାମଣି ଦେବୀ ।

ରାଧାଗୋବିନ୍ଦବାବୁଙ୍କର ଚଉଦ ବର୍ଷର ଅବିବାହିତା ଝିଅ ନଳିନୀ ଓ ବିଶ୍ୱମ୍ଭରବାବୁଙ୍କର ତେର ବର୍ଷର ଅବିବାହିତା କନ୍ୟା ବିଦ୍ୟା ନିର୍ଭୟରେ ସେହି କବିତାଟି ପାଠ କଲେ—

—ଜାଗ୍ରତ ହୁଅ, ଜାଗ୍ରତ ହୁଅ, ବିଶ୍ୱ ଡାକେ ଆଜ,
ମୁକ୍ତି ଗୃହେଁ ଶକ୍ତିମୟୀ ସ୍ୱପ୍ନତନ୍ଦ୍ରା ଭାଙ୍ଗି
ଅନ୍ଧକାର ଅନ୍ତରାଳେ
ମୁକ୍ତି ତାର ଦୀପ୍ତି ଜାଳେ,
ଦୀର୍ଣ୍ଣ ହେଉ ଅନ୍ଧକାର ଶକ୍ତି-ଅସି ବାଜ ।
ସୁପ୍ତ ନୁହ, ସୁପ୍ତ ନୁହ, ତ୍ୟକ୍ତ ପଛେ ପ୍ରାଣ,
ଲୁପ୍ତ କର ଦୃପ୍ତ କରେ କ୍ଷିପ୍ର ନର ଟାଣ,
ଘୃଣ୍ୟ ପ୍ରଥା ଚୂର୍ଣ୍ଣ କର
ଧୈର୍ଯ୍ୟ ପ୍ରାଣେ ପୂର୍ଣ୍ଣ ଭର,
ସତ୍ୟ ପାଇଁ, ମୁକ୍ତି ପାଇଁ, ଶକ୍ତି-ଅସି ଶାଣ ।
ଶାନ୍ତ ନୁହଁ, ଶାନ୍ତ ନୁହଁ ? ଭ୍ରାନ୍ତ ପରିହର,
ଶିକ୍ଷା ନୁହେଁ ଭିକ୍ଷା, କର ଦୀକ୍ଷା ଜୀବନର ।

ସାମ୍ୟ ମୈତ୍ରୀ କାମ୍ୟ ତବ,
କର୍ମୀହବେ ସିଦ୍ଧି ଲଭ,
ମୁକ୍ତି ନୁହେଁ ମୁକ୍ତ ପଥ, ଶକ୍ତି-ଅସି ଧର ।

ବ୍ରଜକିଶୋର ପଦ୍ୟଟିର ଅର୍ଥ ଚିନ୍ତା କଲେ । ବିଧବା ବିବାହ ସଙ୍ଗରେ ଏ କବିତାର ସମ୍ପର୍କ ନାହିଁ, ତେବେ ବିବାହ ଉପଲକ୍ଷରେ ଅନର୍ଥକ ଏପରି କବିତା ପଠନର କି ଉଦ୍ଦେଶ୍ୟ ଥିଲା ? ବ୍ରଜକିଶୋର ଭାବିଲେ, ହୁଏ ତ କେବଳ ନାରୀ-ଶକ୍ତିକୁ ଜାଗ୍ରତ କରିବା ପାଇଁ ଗୋଟିଏ ଆହ୍ୱାନ ! ହୀରାମଣି ତାର ପଦ୍ୟମାନଙ୍କରେ ନରସମାଜ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିଛି । ସେ ନର ସମାଜକୁ ଘୃଣା କରେ । ନାରୀର ମୁକ୍ତି ପାଇଁ ପୁରୁଷର ଦର୍ପ ଚୂର୍ଣ୍ଣ କରିବାକୁ ବ୍ୟଗ୍ର । ଯେ ଘୃଣା କରେ, ସେ ନିଜେ ଘୃଣାର ପାତ୍ର । ଯାହା ହେଉ, ଜଣେ ଗ୍ରାମ୍ୟ ବାଳିକାର ଏ ତ ଅଳ୍ପ ସାହସର କଥା ନୁହେଁ ! ତାର ଗର୍ବର ସୀମା ନାହିଁ । ଅତି ଭ୍ରାନ୍ତ ସେ । ନରର ସହାନୁଭୂତି ଲଭ କରିବାକୁ ଚେଷ୍ଟା ନ କରି ନରର ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ସେ କଣ ଜୟୀ ହୋଇ ପାରିବ ?

ବ୍ରଜକିଶୋର ଭାବିବାକୁ ଲଗିଲେ, ଅସମ୍ଭବ ! ଶିଶୁ 'ସମାଜଟି' ଚାଲି ନ ଜାଣି ଦଉଡ଼ିବାକୁ ଚେଷ୍ଟା କଲେ ଲଭ ହେବ କଚଡ଼ା ଖାଇ ପଡ଼ିବା । ବ୍ରଜକିଶୋର ବି ନର । ତାଙ୍କର ତ ଆତ୍ମସମ୍ମାନ ଅଛି । ହୀରାମଣି ପ୍ରକାରାନ୍ତରେ ତାଙ୍କ ବିରୁଦ୍ଧରେ ମଧ୍ୟ ଅଭିଯୋଗ କରିଛି । ସେ ତେବେ ହୀରାମଣିଙ୍କୁ ବିବାହ କରିବାକୁ ଏତେ ଲାଳାୟିତ କାହିଁକି ?

ନିଜର ପରିଚୟ ଦେଇ ହୀରାମଣି ଓ ରାଧାଗୋବିନ୍ଦଙ୍କୁ କେତେ କଥା ପଚାରିବାକୁ ବ୍ରଜକିଶୋର ଆଗ୍ରହୀ ହେଲେ । ନାରୀମଙ୍ଗଳ ସମିତି ଗୃହର ଅଗଣାରୁ ସେ ଧୀରେ ଧୀରେ ପଦାକୁ ବାହାରି ଆସିଲେ । ରାତି ଦଶଟା ହେଲାଣି । ଅନ୍ଧକାର ଆଚ୍ଛାଦି ରହିଛି । ଦୂରରେ ରାସ୍ତାକଡ଼ର କିରାସିନି ଆଲୁଅ ଖମ୍ବ ଉପରେ ଧପ୍‌ଧପ୍ ହେଉଛି । ଭଦ୍ରଲୋକ ଓ ଭଦ୍ରମହିଳାମାନେ ରାଧାଗୋବିନ୍ଦଙ୍କ ସମାଲୋଚନା କରି ଦୁଇ ଦିଗକୁ ଆଗେଇ ଯାଉଛନ୍ତି । ବ୍ରଜକିଶୋର ନିଜ ଆଗ୍ରହକୁ ମନରେ ଚାପିରଖି ରାସ୍ତା ଉପରକୁ ଓହ୍ଲାଇଲେ ।

## ଊଣେଇଶ

ପୁରୀ ସହର । ଟ୍ରେସଗୌରୀ ସାହିରେ ଧାଡ଼ିଏ ଭଡ଼ା ଘର, ଛୋଟ ଛୋଟ ବଖରା, ଉପରେ ଚାଳ । ପଣ୍ଡିତ ମହାଶୟ ଦିନକୁ ଚାରିପଇସା ଭଡ଼ାରେ ସେହି ଘର ଗୁଡ଼ିକରୁ ଗୋଟିକରେ ଆଶ୍ରୟ ନେଇଛନ୍ତି । ଘଣ୍ଟାକର କାମ ଜଗନ୍ନାଥଙ୍କ ଦର୍ଶନ,

ସେତକ ସରଲେ ପୁରୀର ପାଇଟି ଶେଷ, ଏଥିକୁ ବେଶି ଭଡ଼ା ଦେଇ ବଡ଼ଘର ନେବା ଆବଶ୍ୟକ ନାହିଁ । ଗୋଟାଏ ଧର୍ମଶାଳାରେ ଓହ୍ଲାଇଥିଲେ ଅବଶ୍ୟ ଧନକୁ ବାର ପାହୁଲା ଅର୍ଥାତ୍ ଦମାଣ ଦ୍ରବ୍ୟ ଅରୁଆ ଗୁଡ଼ଲର ମୂଲ୍ୟ ବୃଥା ଦଣ୍ଡ ଦେବାକୁ ହୋଇ ନ ଥାନ୍ତା । ପଣ୍ଡିତଙ୍କ ସୂକ୍ଷ୍ମ ବୁଦ୍ଧିରେ ଯେ ଅର୍ଥନୀତିର ଏହି ଶ୍ରେଷ୍ଠ କଥାଟି (ଦେଶକାଳକୁ ଅନାଇଁ) ନ ପଡ଼ିଛି ଏହା ନୁହେଁ, ତେବେ କଥା ହେଉଛି, ଯେଉଁ ନେତ୍ରମଣି ତାଙ୍କୁ ହାବକା ଦେଇ ଆଣିଲା ପରେ ଏତେ ଖର୍ଚ୍ଚାନ୍ତ କରାଇ ଆଣିଛନ୍ତି, ସେ ଅମଙ୍ଗ ହେଲେ ।

କେତେ ବାଦ ପ୍ରତିବାଦ ପରେ ନେତ୍ରମଣିଙ୍କୁ ପୁରୀ ସହରକୁ ଥରେ ଆଣି ତୀର୍ଥ କରାଇ ନେବାକୁ ସେ ସମ୍ମତ ହେଲେ । ଭୁବନେଶ୍ୱରରୁ ପୁରୀ ବହେ ବାଟ କିନା ! ପିଲା ଦିନ ବାପଘରେ ଧୂଳି ଖେଳରେ କଟିଥିଲା । ହେତୁ ପାଇଲା ଦିନୁ ରଥଙ୍କ ଘରେ ଗୋଡ଼ ଦେଇ ନେତ୍ରମଣିଙ୍କର ବଳ ବୟସ ଘର ଧନ୍ଦାରେ କଟିଲା । ଭୁବନେଶ୍ୱର ବୃଖଣ୍ଡକ ଛଡ଼ା ତାଙ୍କ ପାଦ ଆଉ କେଉଁଠି ପଡ଼ି ନଥିଲା । ସେ ଯେ ରଥଘର ବୋହୂ ! ଯାହା କହନ୍ତି ରୁକୁଣା ରଥ ଅଣଲେଉଟା ।

କେବେ କେବେ ରଥଙ୍କୁ ସେ ପୁରୀ ଯିବାକୁ ଅନୁରୋଧ କରନ୍ତି; କିନ୍ତୁ ପଣ୍ଡିତ ମହାଶୟ ଦର୍ଶନ ଶାସ୍ତ୍ରର ଗୂଢ଼ ତତ୍ତ୍ୱମାନ ବୁଝାଇ ସ୍ତ୍ରୀଙ୍କୁ ସମଝାଇ ଦେଇ ଉପଦେଶ ଦିଅନ୍ତି ଯେ ମନ ଦୃଢ଼ କଲେ ଗାଡ଼ିଆ ଗଙ୍ଗା । ବିନ୍ଦୁସାଗରଠୁଁ ବଳି ବଡ଼ ଓ ପବିତ୍ର ଗାଡ଼ିଆ ନାହିଁ, ବୃଥା ଅର୍ଥ ବ୍ୟୟ କରି ଲାଭ କଣ ? ପତିଭକ୍ତିର ଫଳ ଯେ ଶତ ଶତ ତୀର୍ଥଦର୍ଶନର ଫଳଠାରୁ ବଡ଼, ରସଯୁକ୍ତ ଏବଂ ଅତୀବ ସ୍ୱାଦୁ, ଏହି ବିଷୟ ବୁଝାଉ ବୁଝାଉ ଶର୍ମାଏ କହିଥାନ୍ତି,— ସକଳ ତୀର୍ଥ ତୋ ଚରଣେ, ଦ୍ୱାରକା ଯିବୁ କି କାରଣେ ।

'ତୋ'ର ଅର୍ଥ ନାରାୟଣ, ବିଷ୍ଣୁ । ସ୍ୱାମୀ ଦେବତା, ସାକ୍ଷାତ ଚଳନ୍ତି ବିଷ୍ଣୁ ! ନେତ୍ରମଣିଙ୍କୁ ତାଙ୍କ ସ୍ୱାମୀଙ୍କର ଉପଦେଶ ବେଦର ଗାର ପରି ଲାଗୁଥିଲା । ତାଙ୍କ କଥାରେ ପ୍ରତିବାଦ କରିବା ସେ ଭାବୁଥିଲେ ମହାପାପ; କିନ୍ତୁ ଯେଉଁଦିନ ତାଙ୍କ ମାନ୍ତୁ ବକ୍ଷରୁ ସ୍ନେହର ହାରକୁ ଟାଣି ନେଇ ରଥେ ବାଟକୁ ପକାଇ ଦେଲେ, ସେହିଦିନ ଠାରୁ ସେ ଜାଣିଲେ ନାରୀ ମୂକ ପଶୁ ନୁହେ, ପଶୁଠାରୁ ହୀନ ନିର୍ଜ୍ଜୀବ ପଦାର୍ଥ ନୁହେ, ସେ ଦାସୀ ନୁହେ ଯେ କେବଳ ସେବା କରି ସହସ୍ର ଯାତନା ସହି ନୀରବ ରହିବ । ତାର ହୃଦୟ ଅଛି, ମନ ଅଛି, ବୁଦ୍ଧି ମଧ୍ୟ ଟିକିଏ ଅଛି । ଉପଦେଶ ଦେବାର, ମନ୍ତ୍ରଣା ଦେବାର କ୍ଷମତା ଅଛି, ପ୍ରତିବାଦ କରିବାର ଅଧିକାର ଅଛି । ନେତ୍ରମଣି ସ୍ୱାମୀଙ୍କର ସବୁ ଉପଦେଶ ଅଗ୍ରାହ୍ୟ କରି ତାଙ୍କର ବେଦସମ୍ମତ ବିରକ୍ତିକୁ ଉପେକ୍ଷା କରି ଏବେ ତାଙ୍କୁ ପୁରୀ ଆଣିବାକୁ ବାଧ୍ୟ କରିଛନ୍ତି । ନେତ୍ରାନନ୍ଦ ସଙ୍ଗରେ ଆସିଛି ।

ପଣ୍ଡିତେ ଜାଣନ୍ତି ନେତ୍ରମଣି ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନ କରିବାକୁ ପୁରୀ ଆସିଛନ୍ତି; କିନ୍ତୁ ତାଙ୍କର ଆସିବାର ଉଦ୍ଦେଶ୍ୟ ଥିଲା ଭିନ୍ନ । ହୀରାମଣି, ତାଙ୍କ ସ୍ନେହର କନ୍ୟା ହୀରାମଣି, ଦୁଶ୍ଚରିତ୍ରା ବୋଲି ଦୁଇକୂଳରୁ ବିତାଡ଼ିତା ! ସେ ଆଜି ପଥର ଭିଖାରୁଣୀ, କିନ୍ତୁ ଯେଉଁ ଇନ୍ଦିରାର କଥାରେ ବିଶ୍ୱାସ କରି ତାଙ୍କର ଦୁଲାଳୀ କନ୍ୟାର ଜୀବନ ଉପରେ ଏ ଘୋର ଦଣ୍ଡ ଲଦି ଦିଆଗଲା, ସେହି ଇନ୍ଦିରାଠାରୁ ସବୁ ପ୍ରମାଣ ସଂଗ୍ରହ କରିବା ଲୋଡ଼ା, ନୋହିଲେ ନେତ୍ରମଣିଙ୍କର କୋମଳ ମାତୃହୃଦୟ ସ୍ଥିର ହୋଇ ଏତେ ବଡ଼ ଆଘାତ ଆଉ ବେଶି ଦିନ ସହି ପାରିବ ନାହିଁ ।

ଇନ୍ଦିରା ଲେଖିଥିଲା, ହୀରା ବ୍ରଜଙ୍କ ନିକଟକୁ ପ୍ରେମପତ୍ର ଦିଏ । ଇନ୍ଦିରା ସେହି ପତ୍ରରୁ କେତେ ଖଣ୍ଡି ହସ୍ତଗତ କରି ପାଖରେ ରଖିଛି । ନେତ୍ରମଣି ଇଚ୍ଛା କରିଛନ୍ତି, ଇନ୍ଦିରା ନିକଟରୁ ସେହି ସବୁ ପତ୍ର ଦେଖି ସ୍ଥିର ଭାବରେ ଜାଣିବେ ଯେ ତାଙ୍କର କନ୍ୟା ଦୁଶ୍ଚରିତ୍ରା ! ଏତିକି ଜାଣିଲେ ତାଙ୍କ ମନରେ ଟିକିଏ ଶାନ୍ତି ଆସିବ, କୁଳ-କଳଙ୍କିନୀ ଦୁଶ୍ଚରିତ୍ରା କନ୍ୟା ଯେ ଘରୁ ବାହାରି ଯାଇ ଆତ୍ମହତ୍ୟା କରିଛି କି ଭିକ୍ଷା କରି ଦାଣ୍ଡରେ କେଉଁଠି ବୁଲୁଛି ସେଥିପାଇଁ ଆଉ ମନରେ ଅନୁତାପ ଆସିବ ନାହିଁ ।

ନେତ୍ରମଣିଙ୍କର ପ୍ରସ୍ତାବକ୍ରମେ ସ୍ଥିର ହେଲା ଯେ ସେହି ଦିନ ସନ୍ଧ୍ୟା ସମୟରେ ପଣ୍ଡିତେ ତାଙ୍କୁ ସଙ୍ଗରେ ନେଇ ରାଜକିଶୋର ବାବୁଙ୍କ ବସାକୁ ଯିବେ ।

ରାଜକିଶୋର ବାବୁ ମିସନ୍‌ରୁ ଫେରି ବୁଲିବାକୁ ସମୁଦ୍ରକୂଳ ଆଡ଼େ ଯାଇଛନ୍ତି । ଇନ୍ଦିରା ଚାକର ଟୋକାକୁ କାମରେ ବରଗିଛନ୍ତି । ଏହି ସମୟରେ ନେତ୍ରମଣି ଉପସ୍ଥିତ ହେଲେ । ସଜଳ ନେତ୍ରରେ ଭକ୍ତି ସହକାରେ ଇନ୍ଦିରା ଦେଢ଼ୀ ଓ ଦେଠେଇଙ୍କୁ ପ୍ରଣାମ କରି ବସିବାକୁ ଆସନ ପାରି ଦେଲେ । ରଥେ ଆସନ ଅଧିକାର କଲେ । ଦାସୀକୁ ଲଣ୍ଠଣି ଲଗାଇବାକୁ କହି ଦେଠେଇଙ୍କୁ ନେଇ ଘର ଭିତରକୁ ଗଲେ । ରଥେ ଭିତର ପିଣ୍ଡାରେ ବସିଲେ । ନେତ୍ରମଣି ଘର ଭିତରେ ଝଣ୍ଟେ ସପ ଉପରେ ବସିଲେ । ଇନ୍ଦିରା ପାନ ଭାଙ୍ଗିଲେ ।

କେବେ ଆସିଲେ, ପୁରୀରେ କେଉଁଠି ଅଛନ୍ତି, ଦେଢ଼ାଙ୍କୁ ଛାଡ଼ି ସଙ୍ଗରେ ଆଉ କିଏ ଆସିଛନ୍ତି, ଦେହ ପା କିପରି ଅଛି, ଭୁବନେଶ୍ୱରର ହାଲଚାଲ କଣ ? ଇନ୍ଦିରା ଦେବୀଙ୍କର ଏହି ସବୁ ପ୍ରଶ୍ନର ଯଥାଯଥ ଉତ୍ତର ଅଳପ କଥାରେ ନେତ୍ରମଣି ଦେଲେ କିନ୍ତୁ ସେ ଆକୁଳ ପ୍ରାଣରେ ଚିନ୍ତା କରୁଥିଲେ, କିପରି ଭାବରେ କଥାଟି ପଚାରିବେ, ମନରୁ ସନ୍ଦେହ ଦୂର କରିବେ ।

ଇନ୍ଦିରା ମୁଣ୍ଡର ଓଢ଼ଣା ଟାଣି ରଥ ମହାଶୟଙ୍କୁ ପାନ ଦେଲେ । ରଥେ ସାମାନ୍ୟ ହସି କହିଲେ, ମୁଁ ପାନ ଖାଏ ନାହିଁ ମା, ପାନ ଖାଇଲେ ଦାନ୍ତ ନଷ୍ଟ ହୁଏ, ବୃଥାରେ ଧନ ବ୍ୟୟ ହୁଏ; ପୁଣି ଚୂନ ଯେ ଆମିଷ, ପୋଡ଼ା ଶାମୁକାରେ

ଢଥାର । ରଥଙ୍କର ବାଘୁଆ ପାଟି । କଥା କହିଲ ବେଳେ ପାଞ୍ଚହାତ ଦୂରରେ ଠିଆ ହୋଇଥିବା ଲୋକ କାନରେ ହାତ ଦେବ ।

ଇନ୍ଦିରା ଦେଠେଣିଙ୍କ ପାଖକୁ ଫେରି ଆସି ପଚାରିଲେ, ବଉଳ କପରି ଅଛି ?

ନେତ୍ରମଣିଙ୍କର ଚକ୍ଷୁ ପୁଣି ସଜଳ ହେଲା । ସେ ଧୈର୍ଯ୍ୟଧରି କହିଲେ, ଯେପରି ରଖିଛ ସେପରି ସେ ଅଛି ମା । ତା କଥା କାହିଁକି ପଚାରୁଛୁ ଲୋ ଝିଅ, ତା କପାଳକୁ ବିଧାତା ସିନା ବାମ ହୋଇଥିଲା, ତା ଦୁଃଖରେ ମଣିଷର ହୃଦୟ ବି ଲୁହାଠୁ କଠିଣ ହେଲା । ପୋଡ଼ା କରମ ଯାହାର, ତାର ଦହଗଞ୍ଜର କେଉଁ ସୀମା ଅଛି ଯେ ମୁଁ କହିବି ହାରା କେମିତି ଅଛି ? .

ବଉଳ ଘର ଗ୍ରାମରୁ କେବେ ଲୋକବାକ ଆସନ୍ତି ନାହିଁକି ?

ଅଞ୍ଚଳରେ ଲୋତକ ପୋଛି ନେତ୍ରମଣି କହିଲେ, ଲୋକବାକ କାହିଁକି ଆସିବେ, ସେ ତ ନିଜେ ଆସିଥିଲା । ତାର ଜଳଜଳା ଶ୍ୱଶୁର ବୁଢ଼ା ତାକୁ ଘରୁ ବାହାର କରି ଦେଇଥିଲା ଲୋ !

ବିସ୍ମୟରେ ଇନ୍ଦିରା ପଚାରିଲେ, ବାହାର କରି ଦେଇଥିଲା ? ଅପରାଧ?

ନେତ୍ରମଣିଙ୍କର ଅଧରରେ ଅଭିମାନର ହାସ୍ୟରେଖା ଫୁଟି ଉଠିଲା । ସେ କହିଲେ, ଅପରାଧ କଣ ମୁଁ ଜାଣେ ନାହିଁ, ତେବେ ଏତକ ଜାଣେ ଯେ ଯାହାର କପାଳ ପୋଡ଼ି ଯାଇଥାଏ, ଯେ ସରଳ, ଯେ ଦୁର୍ବଳ, ତାର ଦୋଷ ନ ଥିଲେ ବି ଖଳ ଲୋକେ ଦୋଷ ଗଢ଼ି ତା ମୁଣ୍ଡରେ ଲଦି ଦିଅନ୍ତି । ଢଳ ପ୍ରମାଣେ ଦୋଷ ଥିଲେ ତାକୁ ତାଳ ପ୍ରମାଣେ କରନ୍ତି । ଯାହାର ମୁଣ୍ଡ ଅଛି, ଯାହାର ତୁଣ୍ଡ ଅଛି, ତା ବିରୁଦ୍ଧରେ କହିବାକୁ କାହାର ଗ୍ରୁଢ ସିନା ପଡାଇବ ନାହିଁ :

ଇନ୍ଦିରା ଗମ୍ଭୀର ହେଲେ । ତାଙ୍କର ହସ ହସ ମୁହଁ ମଳିନ ଦେଖାଗଲା । ସେ କହିଲେ, ଯାହା କହିଲ ସବୁ ସତ ବଡ଼ମା, ତେବେ ଅନେକ ସମୟରେ ଭୁଲରେ ଅନେକ କଥା ହୋଇଥାଏ । ସଂସାରକୁ ଯେଉଁମାନେ ନ ଚହ୍ନନ୍ତି, ଖେଳରେ ଖେଳରେ ହେଉ କି ଅଛା ନକଲରେ ହେଉ, ଅବା କ୍ଷଣିକ ରାଗରୋଷରେ ହେଉ, ସେମାନେ ବେଳେ ବେଳେ ଭୁଲ କରି ପକାଇଥାନ୍ତି, କିନ୍ତୁ ଯେଉଁମାନେ ମୁରବୀ, ଯେଉଁମାନେ ଅଭିଜ୍ଞ, ବୁଦ୍ଧିମାନ, ଧୈର୍ଯ୍ୟବାନ ସେହିମାନେ ହିଁ ଭାବି ବିଚାରି ଭୁଲକୁ ସୁଧାରି ନିଅନ୍ତି । ବଉଳକୁ ମୋର ଡମ ସଙ୍ଗରେ ପୁରୀ ଆଣିଛନ୍ତି, ଏଠିକି ନ ଆଣିଲ କାହିଁକି ?

ନେତ୍ରମଣି ତ୍ରସ୍ତ ହୋଇ କହିଲେ, ସେ ଯଦି ମରି ଯାଇଥାନ୍ତା କି ମରିଯାଇଛି ବୋଲି ମୁଁ ଜାଣିଥାନ୍ତି, ତେବେ ଏତେ କଷ୍ଟ ସହି ପୁରୀ ସହରକୁ ତୋ ପାଖକୁ ଛଟପଟ ହୋଇ ମୁଁ ଆସି ନ ଥାନ୍ତି ଲୋ ଝିଅ । ହଟହଟା ଜୀବନ ଯାହାର, ସେ ମରିଗଲେ ତ ତରିଯିବ । କପାଳ ଲିଖନ ତାର ଭୁଞ୍ଜିବ କିଏ ? ସେମାନେ ସିନା ପର ଲୋକ, ଯେଉଁମାନେ ଆପଣାର ଲୋକ ତାଙ୍କ ମନ ବି ତାପାଇଁ ତରଳିଲା ନାହିଁ । ଏତେ

ଶାସ୍ତ୍ର-ପୁରାଣ ପଢ଼ି ପଣ୍ଡିତ ହୋଇଛନ୍ତି ତୋର ଦେଠା, ମୂର୍ଖଙ୍କ ପରି, ପର କଥାରେ ବିଶ୍ୱାସ କରି, ଆଖି ଥାଉଣୁ ଅନ୍ଧ ହୋଇ ଯାହାକଲେ କିପରି ମୁଁ ତୁଣ୍ଡରେ କହିବି ?

ନେତ୍ରମଣିଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଇନ୍ଦିରାର ଡାହାଣ ହାତକୁ କଟମଟ କରି ଧରି ଭଗ୍ନସ୍ୱରରେ ପୁଣି କହିଲେ, ତମ ଦେଠା ଧର୍ମ ଭୟରେ, ଜାତି ଭୟରେ, ଦୁର୍ନାମ ଭୟରେ ମୋର ହୀରାମଣିକୁ ଘରୁ ତଡ଼ି ଦେଇଛନ୍ତି । ମୁଁ ମାଇପି ଲୋକ, ମଲା ସାପ, କଅଣ କରି ପାରନ୍ତି ? ହୀରା ମୋର ଦୁଇ କୂଳରେ ନାହିଁ । ଏ ସଂସାରରେ ସେ ବଞ୍ଚି ରହିଛି କି ନା ମୁଁ ଜାଣେ ନାହିଁ । ନେତ୍ରମଣି କହିଁ କହିଁ ହୋଇ କାନ୍ଦି ଉଠିଲେ ।

ଅଚଳ ପଥର ମୂର୍ତ୍ତି ପରି ଇନ୍ଦିରା ମୁହୂର୍ତ୍ତେ ନେତ୍ରମଣିଙ୍କ ମୁହଁକୁ ଅନାଇଁ ରହିଲେ । ଦୁଇ ଆଖିରୁ ଦୁଇ ଧାର ଲୁହ ଗଡ଼ି ଆସିଲା । ଥରିଲା ସ୍ୱରରେ ଡରି ଡରି ସେ ପଚାରିଲେ, ତଡ଼ି ଦେଲେ ? କାହିଁକି ?

ନେତ୍ରମଣି ଉତ୍ତର ଦେଇ ପାରିଲେ ନାହିଁ । ତୀବ୍ର ମାନସିକ ବେଦନାରେ ତାଙ୍କର ଦୁର୍ବଳ ମସ୍ତିଷ୍କ ଘୂରିବାକୁ ଲାଗିଲା । ସଙ୍ଗେ ସଙ୍ଗେ ଜ୍ୱରର ପ୍ରକୋପ ଓ ତାତି ବଢ଼ି ଗଲା । ସେ ତଳେ ମୁଣ୍ଡ ଲଗାଇ କହିଁ କହିଁ ହୋଇ କାନ୍ଦି ଉଠିଲେ ।

ଇନ୍ଦିରା ତାଙ୍କ ଦେହରେ ହାତ ମାରି ଖୁବ ବିଜଡ଼ିତ ସ୍ୱରରେ ପୁଣି କହିଲେ, ତମେ ଟିକିଏ ଶୋଇପଡ଼ ବଡ଼ମା, ମୁଁ ତମ ଗୋଡ଼ ଚିପିଦିଏଁ । ଓଃ, ତାତି ତ ଭାରି ହୋଇଗଲାଣି ! ଥାଉ ଥାଉ, ବାଉଳା କଥା ପଚାରି ତମ ମନରେ ଆଉ କଷ୍ଟ ଦେବି ନାହିଁ ।

ମୁଣ୍ଡ ଟେକି ନେତ୍ରମଣି କହିଲେ, ନ ପଚାରିଲେ କଣ କଷ୍ଟ ହେବ ନାହିଁ ଭାବିଛୁ ଟିଅ ? ମୁଁ ତୋଠାରୁ ସବୁ ହାଲ ବୁଝିବାକୁ ଆସିଛି ଲୋ ! ଛଅ ମାସରୁ ଉପର ହେବ, ହୀରାକୁ ଏ ଘରୁ ତଡ଼ି ଦେଲେ । ବାପ ହୋଇ ଛୁଆକୁ ପଥର କଲେ କିପରି ତାଙ୍କୁ ହିଁ ଜଣା । ତାଙ୍କ ସମୁଧୀଙ୍କର ଚିଠିରେ ବିଶ୍ୱାସ କରି, ତୋ ଚିଠିରେ ପଢ଼ିଆରା ଆଣି ହୀରାର କଥାକୁ ଘେନଲେ ନାହିଁ । ମୁଁ ଯେତେ ଗୋଡ଼ ହାତ ଧରି କହିଲି, ପରକଥାରେ ବିଶ୍ୱାସ ନ ଯାଇ ଅପେକ୍ଷା କର, ତାଙ୍କୁ ଭୂତ ଲାଗିଲା ପରି ସେ କିଛି ନ ଶୁଣି, ତାକୁ ଘରୁ ଚାଲିଯିବାକୁ ନୋହିଲେ ମରିବାକୁ ଆଦେଶ ଦେଲେ । କହିଲେ, ଭଗବାନ୍ ମିଶ୍ରେ ଓ ଇନ୍ଦିରା ପରିଚିଅ ନାମରେ ମିଛରେ ଲେଖନ୍ତେ ନାହିଁ । ହୀରା କୁଆଡ଼େ ତୋ ଦଅର ବ୍ରଜଙ୍କ ପାଖକୁ ଚିଠି ଦିଏ, ତୁ ସେ ଚିଠି ଯତ୍ନ କରି ପାଖରେ ରଖିଛୁ ।

ମୁଁ ରଖିଛି କିଏ କହିଲା ? ଇନ୍ଦିରା ଭୀତା ହୋଇ ପଚାରିଲା ।

ତୁ ମୋ ପାଖକୁ ଚିଠି ଲେଖିଥିଲୁ ! ତୋ ଲେଖାକୁ ସତ ମଣି ହୀରାକୁ ସାବଧାନ କରାଇଦେବାକୁ ତୋର ସେ ଚିଠିଖଣ୍ଡି ମୁଁ ତା ପାଖକୁ ପଠାଇ ଦେଲି ।

ମୁଁ ନିଆଁ ଲଗାଇ ତ ସର୍ବନାଶ କରିଛୁ, ଦୋଷ ଦେବ କାହାର ? ଚିଠି ଖଣ୍ଡିକ ତା ଶ୍ୱଶୁର ହାତରେ ପଡ଼ିଲା ।

ଟିକିଏ ରହି ନେତ୍ରମଣି ଗ୍ରୁରର କୋହକୁ ସଂଯତ କରି ପୁଣି କହିଲେ, ଯାହା ହେବାର ତ ହୋଇ ଯାଇଛି, ସେ କଥା ଭାବି ଆଉ କେତେ ମୁଣ୍ଡ କୋଡ଼ି ହେଲେ ଲାଭ ନାହିଁ ମୁଁ ଜାଣେ । ହାସି ମରିଥାଉ କି ବଞ୍ଚିଥାଉ ଥରେ ଯେତେବେଳେ ସେ ମୋ କୋଡ଼ରୁ ପଦାକୁ ଗୋଡ଼ କାଢ଼ିଛି, ସେ ଆଉ ଫେରି ଆସିବ ନାହିଁ । ତେବେ ମୋ ମନରେ ଗୋଟିଏ ଅଶାନ୍ତି ରହିଯିବ ମା, ମରିବାକୁ ତ ଦିନେ ହେବ, ଯେତେ ଶୀଘ୍ର ମୋର ମରଣ ହେବ ସେତେ ଶୀଘ୍ର ଏ ଦହଗଞ୍ଜରୁ, ପୋଡ଼ାଜାଳାରୁ ମୁକ୍ତି ଲଭିବି ।

ସେପରି କାହିଁକି ଭାବୁଛ ବଡ଼ମା, ହାସି ମୋର ବଉଳ । ଗୃହତ୍ୟାଗ କରିଛି ବୋଲି ସମସ୍ତେ ତା ପଛରେ ଗୋଡ଼େଇ ଯିବେ ନାହିଁ ତ ?

ସତ କହିଲୁ ଲୋ ଝିଅ, ମୁଁ ତ ସମସ୍ତଙ୍କ ସଙ୍ଗେ ଗଣା ନୁହେଁ, ମୁଁ ତା ମାଆ । ହାସି ବ୍ରଜଙ୍କ ପାଖକୁ ଯେଉଁ ସବୁ ଚିଠି ଦିଏ ବୋଲି ତୁ ଲେଖିଥିଲୁ, ସେ ସବୁ ପତ୍ର ତୁ ପାଖରେ ରଖିଛୁ ! ମତେ ଥରେ ଦେଖା । ମୁଁ ଆଉ କିଛି ମାଗୁ ନାହିଁ । ସେତିକି ଦେଖିଲେ ବୁଝିପାରିବି ଯେ ହାସି ପ୍ରକୃତରେ ଦୋଷୀ, କଳଙ୍କିନୀ, ଅସଚ୍ଚରିତ୍ରା, ଅସତୀ । ହାସି ଉପରେ ତାର ପିତା ଯେଉଁ ଦଣ୍ଡ ବିଧାନ କରିଛନ୍ତି ତାହା ଯଥାର୍ଥ । ଏତିକି ହେଲେ ମରିବା ଆଗରୁ ଦୁଃଖ କରି, ଅନୁତାପ କରି, ଝୁରି ଝୁରି ମୋତେ ମରିବାକୁ ହେବ ନାହିଁ । ନେତ୍ରମଣି ଆକୁଳ ହୋଇ ଇନ୍ଦିରାର ହାତ ଧରିଲେ ।

ଇନ୍ଦିରା କଣ କରିବେ କିଛି ବୁଝିପାରିଲେ ନାହିଁ । ଭୟରେ ପ୍ରାଣ ଥରି ଉଠିଲା । ଅନୁକମ୍ପାରେ ହୃଦୟ କାନ୍ଦି ଉଠିଲା । ଆହା ! ଜୀବନରେ ସେ କେଡ଼େ ଭୁଲଟାଏ କରି ନ ପକାଇଛନ୍ତି ! କ୍ଷଣିକ ଉତ୍ତେଜନାରେ, କ୍ଷଣିକ କ୍ରୋଧରେ ଅନ୍ଧ ହୋଇ ସେ ଗୋଟିଏ ନିରୀହା ବାଳିକାର ସର୍ବନାଶ କରିଛନ୍ତି ! ଖଣ୍ଡେ ନିର୍ଜୀବ ପତ୍ରର ଏତେ କରାମତି ବୋଲି ସେ ଜାଣି ନ ଥିଲେ । ପଦେ ଦୁଇପଦ ମିଛ କଥାରେ ସୁଖର ସଂସାର ନିମିଷକେ ପୋଡ଼ିଗଲା ! ମିଛର ଆବରଣରେ ନିରାଟ ସତ୍ୟକୁ ମଣିଷ କେତେ କାଳ ଘୋଡ଼ାଇ ରଖି ପାରିବ ? ସତ୍ୟ ଅବିନଶ୍ୱର, ଟିକିଏ ଛିଦ୍ର ପାଇଲେ ସେ ତାର ପୂର୍ଣ୍ଣ ପ୍ରଭା ଘେନି ପଦାକୁ ଫୁଟି ବାହାରିବ ।

ଇନ୍ଦିରା ନେତ୍ରମଣିଙ୍କର ଗୋଡ଼ଧରି ନୀରବରେ ଅଶ୍ରୁ ତ୍ୟାଗ କଲେ, ଅନ୍ତରର ଗଭୀର ବେଦନାଜନିତ ସେ ଅଶ୍ରୁ ଅତି ତପ୍ତ, ଅତି ଉଷ୍ଣ ! ଉତ୍ତର ଦେବାକୁ ସାହସ ହେଲା ନାହିଁ ।

ନେତ୍ରମଣି ଇନ୍ଦିରାର ପିଠିରେ ହାତ ମାରି କାନ୍ଦଣାଂ ସ୍ୱରରେ କହିଲେ, ଉଠ ମା, ହାସି ତୋର ବଡ଼ ଭଉଣୀ, ହାସି ତୋର ବାଲ୍ୟସଙ୍ଗିନୀ, ତୋର ପ୍ରାଣର ବଉଳ,

ତାର ଦୁରବସ୍ଥା ଦେଖି ତୋର ପ୍ରାଣ କାନ୍ଦି ଉଠିବା ସ୍ୱାଭାବିକ; କିନ୍ତୁ ଆଉ କାନ୍ଦିବା ଦରକାର ନାହିଁ । ସେ କୁଳ କଳଙ୍କିନୀ, ସେ ପତିତା, ବ୍ୟଭିଚାରିଣୀ ସେ ।

ଇନ୍ଦିରା ଚମକି ଉଠି ଉଚ୍ଚସ୍ୱରରେ କହିଲେ, ମିଛ କଥା, ସେ କଳଙ୍କିନୀ ନୁହେଁ, ସେ ପତିତା ନୁହେଁ, ସେ ସତୀ, ସେ ଅତି ପବିତ୍ର !

ତୋ ମୁହଁରୁ ଏପରି ଅସମ୍ଭବ କଥା ଶୁଣିବି ବୋଲି ମୁଁ ଆଶା କରି ନ ଥିଲି ଝିଅ । ନେଡ଼ିଗୁଡ଼ କହୁଣୀକୁ ବହି ଯାଇଛି । ଆଉ ଲୁଚାଇବା ଆବଶ୍ୟକ ନାହିଁ । ସେ ଚିଠିତକ ମୋତେ ଥରେ ଦେଖା, ମୋ ମନରୁ ସନ୍ଦେହ ଦୂରକରି ମାଆ ।

ଇନ୍ଦିରା ଅଟକି ଅଟକି ଉତ୍ତର ଦେଲେ, ବଡ଼ମା, ସବୁ ଦୋଷ ମୋର, ମୁଁ ବଉଳକୁ ଭବିଷ୍ୟତ୍‌ରେ ସାବଧାନ ହେବାକୁ ଏବଂ ତୁମକୁ ସତର୍କ କରିବାକୁ ସେ ଚିଠିଖଣ୍ଡି ଲେଖିଥିଲି ।

ବ୍ରଜ ପାଖକୁ ସେ ଚିଠି ଦେଇଛି ବୋଲି ଲେଖିଥିଲୁ ଯେ ?

ଦିନେ ବ୍ରଜ ଆମ ଘରୁ ତମ ଘରବାଟେ ଦେଉଳକୁ ଯିବା ସମୟରେ ତମ ଝିରକା ପାଖରୁ ଖଣ୍ଡେ ଚିରା ଖାତା ପାଇଥିଲେ । ସେଥିରେ ଅନେକ ଗୁଡ଼ାଏ ଶ୍ରେଷ୍ଠ ଶ୍ରେଷ୍ଠ କବିତା ଲେଖା ହୋଇଥିଲା । ବ୍ରଜକିଶୋର ସେହି କବିତା ଗୁଡ଼ିକରୁ ଗୋଟିଏ ଲେଖାଏଁ ଖାତାରୁ ଛଣ୍ଡାଇ ଛାପିବାକୁ ମାସିକ ପତ୍ରିକାକୁ ପଠାନ୍ତି । ସେଥିରୁ ଖଣ୍ଡିଏ ପଦ୍ୟ ଦେଖି ମୁଁ ଭୁଲରେ ଅନୁମାନ କରିଥିଲି ଯେ, ବଉଳ ବ୍ରଜଙ୍କୁ କପରି ଜାଣେ ଓ ତାଙ୍କ ପାଖକୁ ପତ୍ର ଦିଏ । ସେହି ସନ୍ଦେହକୁ ସତବୋଲି ମଣି ମୁଁ ଚିଠି ଖଣ୍ଡେ ଲେଖି ଦେଇଥିଲି । ଦିନେ ବ୍ରଜଙ୍କୁ ରାଣ ପକାଇ ପଚାରିଲାରୁ ସେ କବିତା ଖାତା କଥା କହିଲେ । ତମ ଜ୍ୱାଇଁ ଏ କଥା ଶୁଣି ତାଙ୍କ ଭାଇ ବ୍ରଜଙ୍କୁ ଲେଖିବାରୁ ସେ କବିତା ଖାତାଟିକୁ ଏଠାକୁ ପଠାଇ ଦେଇଥିଲେ । ସତ କଥାଟି ତାଙ୍କ ଭାଇଙ୍କୁ ମଧ୍ୟ ଲେଖିଥିଲେ । ସେ କବିତାଗୁଡ଼ିକ ପଢ଼ି କେତେ କାନ୍ଦିଛନ୍ତି; ମୁଁ କହିଲେ ତୁମେ ବିଶ୍ୱାସ ଯିବ ନାହିଁ ବଡ଼ମା, ପଢ଼ୁ ପଢ଼ୁ ମୁଁ ବି କାନ୍ଦି ପକାଏ ।

ତୁ ଚିଠିରେ ଯେଉଁ ସବୁ ଘଟଣା ଲେଖିଥିଲୁ ସବୁ ମିଛ ?

ସବୁ ମିଛ, ସବୁ ମୋର ଅନୁମାନ । ମୋତେ କ୍ଷମାକର ବଡ଼ମା, ତମ ଶରଣ ପଶୁଛି । ମୁଁ ଅଜାଣତରେ ଭୁଲ୍ କରି ପକାଇଛି । ସେଥିପାଇଁ ବହୁତ ଗଞ୍ଜଣା ସହିଲିଣି । ତମ ଜ୍ୱାଇଁତ ସବୁଦିନେ ଖୁଣ୍ଟା ଦେଉଛନ୍ତି । ବ୍ରଜକିଶୋର ମୋ ଉପରେ ରାଗି ଚିଠିପତ୍ର ଦେବା ତ ଦୂରର କଥା, ତାଙ୍କ ଭାଇଙ୍କ ଚିଠିରେ ମୋ ବିଷୟରେ ପଦେ ପଚାରୁ ନାହାନ୍ତି । ସେ ଆଉ ପୁରୀ ଆସୁ ନାହାନ୍ତି ।

ଚିରାଖାତା ଖଣ୍ଡି କେଉଁଠି ଅଛି ମୋତେ ଦେବୁକି ମା ?

ତୁମ ଜ୍ୱାଇଁ ବ୍ରଜଙ୍କ ପାଖକୁ ଫେରସ୍ତ ପଠାଇଁ ଦେଇଛନ୍ତି ।

ରାଗରେ ନେତ୍ରମଣିଙ୍କର ଦେହ ସତେକି ଜଳି ଉଠିଲା ! ସେ ତୀକ୍ଷ୍ଣ ଦୃଷ୍ଟିରେ ଇନ୍ଦିରାଙ୍କର ଲୋତକସିକ୍ତ ମଳିନ ଅବନତ ମୁଖକୁ କ୍ଷଣକାଳ ଚାହିଁ ରହିଲେ । ଇଚ୍ଛା ହେଲା, ତାହାଂର ଆଗରେ ମୁଣ୍ଡପିଟି ନିଜର ପ୍ରାଣ ବାହାର କରିଦେବେ, ତାର ଗର୍ବର ଅବିବେକିତାର ପ୍ରତିଶୋଧ ନେବେ । ଦୁଇ ହାତରେ ମୁହଁ ଲୁଚାଇ ସେ କେବଳ କାନ୍ଦିବାକୁ ଲାଗିଲେ ।

ରଥ ମହାଶୟ କମ୍ପିତ ପଦରେ ଘର ଭିତରକୁ ଆସିଲେ । ଇନ୍ଦିରାଙ୍କୁ ଆକୁଳ ଭଗ୍ନ ସ୍ୱରରେ ପଚାରିଲେ, ଇନ୍ଦି, ତୁ ଯାହା ସବୁ ତୋ ବଡ଼ମାଙ୍କ ପାଖକୁ ଲେଖିଥିଲୁ ସବୁ ତେବେ ମିଛ ?

ନେତ୍ରମଣି ଚମକି ଉଠି କ୍ରୋଧରେ ରଥଙ୍କୁ କଟମଟ କରି ଚାହିଁ ରହିଲେ ।

ଇନ୍ଦିରା ଭୟରେ, ସଂକୋଚରେ ମୁଣ୍ଡର ଓଢ଼ଣା ଟାଣି ନୀରବ ରହିଲେ । ଭାବିଲେ, ସେହି ମୁହୂର୍ତ୍ତରେ ତାଙ୍କର ମୃତ୍ୟୁ ହୋଇଥିଲେ ସେ ଅତି ସୁଖୀ ହୋଇଥାନ୍ତେ । ତାଙ୍କର ସର୍ବାଙ୍ଗ ଥରିବାକୁ ଲାଗିଲା ।

କହ ଇନ୍ଦି, ସତ କହ !

ପଣ୍ଡିତଙ୍କର କଣ୍ଠରୁଦ୍ଧ ହୋଇ ଆସିଲା । ତାଙ୍କର ପାଷାଣ ହୃଦୟ ବିଗଳିତ ହେଲା । ଦୁଃଖରେ ଚକ୍ଷୁରୁ ଲୋତକ ଝରିଲା । କ୍ରୋଧରେ ମୁଣ୍ଡର ଚୂଟି ଟାଣି ପଚାରିଲେ, ସତ କହ, ହାରି ମୋର ନିର୍ଦ୍ଦୋଷ, ତୁ ଯାହା ଲେଖିଥିଲୁ ସବୁ ମିଛ ?

ତଥାପି ଇନ୍ଦିରା ନୀରବ । ଏ କଠୋର ପ୍ରଶ୍ନର କି ଉତ୍ତର ବା ସେ ଦିଅନ୍ତେ !

ପଣ୍ଡିତେ ଅଧୀର ହୋଇ ଉତ୍ତେଜନାରେ କହିଲେ, ସବୁ ମିଛ, ସବୁ ମିଛ ! ଘୋର ଷଡ଼ଯନ୍ତ୍ର ! ତୋର ଏ ପାପର ପ୍ରାୟଶ୍ଚିତ୍ତ କଣ ଜାଣୁ ଇନ୍ଦି ? ଯେଉଁ ହାତରେ ମୋ ସ୍ନେହର ମଣି, ମୋ ପ୍ରାଣର ହାରି ବିରୁଦ୍ଧରେ ମିଥ୍ୟାରୁ ଜାଲ ବୁଣି ତାକୁ ଘରୁ ବହିଷ୍କାର କରାଇଛୁ ସେହି କଳଙ୍କିତ ନିର୍ମମ ହସ୍ତରେ ତୋର ବଡ଼ମାଆର, ତୋର ବଡ଼ ବାପାର ମୁଖରେ ସ୍ୱର୍ଗଦ୍ୱାରରେ ମୁଖାଗ୍ନି ଦେବୁ । ପଣ୍ଡିତେ ଅଧୀର ଅସ୍ଥିର ହୋଇ କାନ୍ଥରେ ମୁଣ୍ଡ ପିଟିଦେଲେ ।

ଇନ୍ଦିରା ଦୁଃଖରେ ସଜ୍ଞାହୀନା ହୋଇ ନେତ୍ରମଣିଙ୍କ କୋଡ଼ରେ ଢଳି ପଡ଼ିଲେ । ନେତ୍ରମଣି ତାଙ୍କୁ ଛାତିକୁ ଆଉଜାଇ ଆଣି ତୀବ୍ର ସ୍ୱରରେ ପଣ୍ଡିତଙ୍କୁ କହିଲେ, ପାପ ଇନ୍ଦିରାର ନୁହେ, ପାପ ତମର, ସବୁ ଦୋଷ ତମର । ତମରି ଦୋଷରୁ ହାରି ଆଜି ବାଟର ଭିକାରୁଣୀ । ତମରି ଦୋଷରୁ ଇନ୍ଦିରାର... । ସେ ଇନ୍ଦିରାର ମୁଖ ଚୁମ୍ବନ କଲେ ।

ଦୋଷ ମୋର ?

ହଁ, ତମର । ଆହୁରି ଦଶବର୍ଷ ପୋଥି ଘୋଷିଥିଲେ ତମର ବୁଦ୍ଧି ଫିଟିଥାନ୍ତା । ତମେ ନ ବୁଝି ନ ଶୁଝି ହାରିକୁ ମୋର ପାଖରୁ ଛଡ଼ାଇଛ । ହାରି ମୋର ନିର୍ଦ୍ଦୋଷ ! ତାକୁ ଦାଣ୍ଡରୁ ଆଣି ତୁମେ ପୁଣି ମୋର କୋଳରେ ଥୁଇବ ।

ସଂସାର ତାଙ୍କୁ ଗ୍ରହଣ ନ କଲେ ନାହିଁ, ମୁଁ ତାଙ୍କୁ ଗ୍ରହଣ କରିବି, ଆଉ ତମର ପବିତ୍ର ଘରେ ପଛେ ମୁଁ ଗୋଡ଼ ଦେବି ନାହିଁ । ଏହି ଶ୍ରୀକ୍ଷେତ୍ରରେ ପତିତପାବନ ଜଗନ୍ନାଥଙ୍କର ବାନା ଉଡ଼ୁଛି । ତାଙ୍କରି ଆଶ୍ରା ଧରି ତାଙ୍କରି ସେବା କରି ମା ଝିଅ ଦୁହେଁ ଆମେ ଜୀବନ ବିତାଇବୁ । ତୁମେ ଯାଅ, ତୁମେ ଏଠୁ ଯାଅ । ମୋ ହୀରାମଣିକୁ ମୋତେ ଆଣିଦିଅ ।

ନେତ୍ରମଣି ମୂର୍ଚ୍ଛମାନ ଇନ୍ଦୁଦତ୍ତର ମୁଣ୍ଡରେ ମୁଣ୍ଡ ଲଗାଇଲେ । ନେତ୍ରାନନ୍ଦ ତାର ପିତାଙ୍କର ମୁଣ୍ଡର କ୍ଷତ ଓ ଗଡ଼ି ଆସୁଥିବା ରକ୍ତର ଧାର ଦେଖି ତାଙ୍କର ହାତ ଧରି ଉଚ୍ଚସ୍ୱରରେ ରୋଦନ କଲା ।

## କୋଡ଼ିଏ

ଶ୍ରୀନାଥ ତାର ଦୁର୍ବଳ ହାତ ଦିଓଟି ଉପରକୁ ଟେକିଲା । ତାର ଦୀପ୍ତିହୀନ ଚକ୍ଷୁରୁ ଦିବୁନ୍ଦା ଲୁହ ଝରି ପଡ଼ିଲା । ତାର ସେ ଲୁହ କେହି ଦେଖିଲେ ନାହିଁ । ସନ୍ଧ୍ୟାର ଅନ୍ଧକାର ଧୀରେ ଧୀରେ ସାରା ବିଶ୍ୱକୁ ଗ୍ରାସକଲା । ଆକାଶରେ ନକ୍ଷତ୍ର ଫୁଟି ଉଠିଲେ । ଗାଁ ଝିଅ ବୋହୂମାନେ ସଞ୍ଜବତି ଲଗାଇ ପ୍ରତି ଘର ଦ୍ୱାରବନ୍ଧ ଉପରେ ରଖି କଅଣ ମନାସି ଦେବତାଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ । ମନ୍ଦିରରେ ସନ୍ଧ୍ୟା ଆରତିର ଘଣ୍ଟା ବାଜି ଉଠିଲା । ଶ୍ରୀନାଥର ମନେ ପଡ଼ିଗଲା ତା ସ୍ନେହମୟୀ ନୂଆବୋହୂ ।

ଯେତେବେଳେ ମନ୍ଦିରରୁ ସନ୍ଧ୍ୟାର ଘଣ୍ଟାରବ ଶୁଭେ, ହୀରାମଣି ଠାକୁରଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରେ, କେଜାଣି କାହିଁକି ତାର ଦୁଇ ଆଖି ସଜଳ ହୋଇ ଉଠେ । ନାଥ ତାର କାରଣ ପଚାରିଲେ ହୀରା ହାଁରେଇ କହେ, ଠାକୁରଙ୍କୁ ମୁଣ୍ଡିଆ ମାର ବାବୁ !

ନାଥ ପଚାରେ, କଅଣ କହି ମୁଣ୍ଡିଆ ମାରିବି ନୂଆବୋହୂ ?

କହ, ମତେ ବିଦ୍ୟା ଦିଅ, ବୁଦ୍ଧି ଦିଅ, ମୋ ନୂଆବୋହୂର ମରଣ ହେଉ ।

ନାଥ ରାଗିଯାଇ କହେ, ତମେ ଭାରି ଦୁଷ୍ଟ ନୂଆବୋହୂ, ମୁଁ ସେକଥା କହିବି ନାହିଁ ।

ଆଉ କଣ କହିବ ?

ମୁଁ କଣ ଜାଣେ ନାହିଁ କି ତମେ କାହିଁକି କାନ୍ଦୁଛ ? କହିବି, କହିବି····· ।

କହିଲ ଭଲା ?

ଭାଇ ମରି ଯାଇଛନ୍ତି ବୋଲି ତମେ କାନ୍ଦୁଛ । ମୁଁ ଜାଣେ ଯେ, ଗାଁରେ ସମସ୍ତେ କହନ୍ତି । ମୁଁ ଯାଉଛି ଠାକୁରଙ୍କୁ କହିବି, ମୋ ଭାଇକି ସେ ଫେରାଇ ଦେବେ, ମୁଁ ତାଙ୍କୁ ଦେଖିବି ।ମୋ ନୂଆଉ ଆଉ କାନ୍ଦିବ ନାହିଁ ।

ସତକୁ ସତ ନାଥ ସେଇଆ କହେ । ତାର ଶ୍ରେଷ୍ଠ ମନଟି ହାରାମଣିର ଦୁଃଖରେ ସବୁବେଳେ ଘାଣ୍ଟି ହୁଏ । ଏହା ହାରା ଭଲକରି ବୁଝି ପାରିଥିଲା । ଶିଶୁର ସରଳ ନିର୍ବୋଧତା ପାଇଁ ତାକୁ ହସ ମାଡ଼େ । ସେ ନାଥକୁ କାଖକରି ତାର ମୁହଁରେ ଚୋକ ଦେଉଁଣୁ କାନ୍ଦି ପକାଏ । ଆତୁର ଗେଲକରି କହେ, ତମ ମୁହଁ ତମେ ଆଇନାରେ ଦେଖିଛଟି ? ତମ ଭାଇ ତମରି ପରି ଥିଲେ । ନାଥ ମୋର ଗେହ୍ଲା ପୁଅ, ଗେହ୍ଲା ଦିଅର । ଠାକୁରେ ଆଇସ ଦେବେ । ପାଠ ପଢ଼ି ନାଥ ମୋର ବଡ଼ ମଣିଷ ହେବ ।

ସେଦିନ ନାଥ ତାର ·ନୂଆବୋହୂକୁ ମନେ ପକାଇ କେତେ କାନ୍ଦିଲା । ନୂଆବୋହୂ କାହିଁକି ଆସୁନାହିଁ, ଏ କଥା ଯାହାକୁ ପଚାରେ ସେ କିଛି କହେ ନାହିଁ । ନୂଆମାଆଙ୍କୁ ପଚାରିଲେ ସେ ହସି ହସି ଗଡ଼ିଯାଆନ୍ତି । ବିଦ୍ରୂପ କରି କହନ୍ତି, ମଲା ମର, ନୂଆବୋହୂ ତୋର ମଲା କି ହଜିଲା ମୁଁ କପରି ଜାଣିବି ବା ! ନାଥ କେବେ ଅଝଟ ହେଲେ ତାକୁ ବୋଧଦେଇ କହନ୍ତି, ତା କଥା ତୋତେ କାହିଁକି ଲାଗିଛି ? ଉଡ଼ିଲା ଚଢ଼େଇ, ଏ ଘରେ ବସିଥିଲା, ପୁଣି ଉଡ଼ି ପଳାଇଲା । ସେଥିରେ ତୋର କଣ ଥାଏ ?

ଅନେକ ଦିନ ବିତିଗଲା । ଦିନେ ସୁରେନ୍ଦ୍ରକୁ ଏକୁଟିଆ ଦେଖି ସେ କାନ୍ଦ କାନ୍ଦ ହୋଇ ଅତି ଗୁପ୍ତରେ ପଚାରିଲା, ତମେ ଯେଉଁଦିନ ମାଆକୁ ଚିଠିଦେଇ ତାକୁ ଶିଖାଇଲ, ସେହିଦିନ ତ ମୋ ନୂଆବୋହୂ ତା ବାପଘରକୁ ଗଲା, ଆଜିଯାଏ କାହିଁକି ଆସିଲା ନାହିଁ ?

ସୁରେନ୍ଦ୍ର କଟମଟ କରି ଘଡ଼ିଏ କାଳ ତା ମୁହଁକୁ ଚାହିଁଲା । ଦୀର୍ଘଶ୍ୱାସ ପକାଇ କହିଲା, ସେ କଲିକତା ପଳାଇଛି, ଆଉ ଆସିବ ନାହିଁ ।

ନାଥ ମୁହଁ ଶୁଖେଇ ପଚାରିଲା, କଲିକତା କାହିଁକି ପଳାଇଛି ?

ସୁରେନ୍ଦ୍ର ଉତ୍ତର ଦେବା ପୂର୍ବରୁ କଣେଶ୍ୱରୀ ଉପସ୍ଥିତ ହେଲେ । ମୁହଁକୁ ଅନ୍‌ଅନ ହୋଇ ଉଭୟେ ହସିଲେ ।

ଶ୍ରୀନାଥ ନିରସ୍ତ ହେଲା ନାହିଁ । ସାହସ କରି ଥରେ ନୁହେଁ ଅନେକ ଥର ସେ ଭଗବାନ ମିଶ୍ରଙ୍କୁ ଏ କଥା ପଚାରିଛି । ମିଶ୍ରେ ପୁଅର କଥା ଶୁଣି ମନରେ ବେଦନା ଅନୁଭବ କରନ୍ତି । ହାରାକୁ ବିତାଡ଼ିତ କରି ତାଙ୍କ ମନରେ ଯେତେ ଦୁଃଖ ହୋଇ ନ ଥିଲା, ତତୋଽଧିକ ଦୁଃଖ ହେଲା ଯେଉଁଦିନ ସେ ଶୁଣିଲେ ଯେ ରଥେ କେବଳ ତାଙ୍କର ପତ୍ର ଉପରେ ବିଶ୍ୱାସ କରି କନ୍ୟାକୁ କୁଳଟା ବୋଲି ପରିତ୍ୟାଗ କରିଛନ୍ତି । ଉତ୍ତେଜନାରେ ପ୍ରଭାବରେ ସେ ପତ୍ରରେ ଯେଉଁସବୁ ମିଛକଥା ଲେଖିଥିଲେ, ସେଥିପାଇଁ ତାଙ୍କ ମନରେ ଅନୁତାପ ଆସେ । କଣ କରିବେ, ଯାହା ହୋଇ ଯାଇଛି ତାହା ତ ଆଉ ଫେରିବ ନାହିଁ, ବରଂ ସେ ଯାହା ଲେଖିଛନ୍ତି, ତାହାର ସତ୍ୟତା

ପ୍ରମାଣ କରିବାକୁ ଆହୁରି ଅନେକ ମିଥ୍ୟା ଫାନ୍ଦିବାକୁ ହେବ । ଯେତେ ଯାହା ଭାବନ୍ତୁ, ମିଶ୍ରଙ୍କ ମନରେ ବେଳେ ବେଳେ ଅନୁତାପ ଆସେ । ନାଥର ପ୍ରଶ୍ନର ଉତ୍ତର ସ୍ୱରୂପ ସେ କୃତ୍ରିମ କ୍ରୋଧ ପ୍ରକାଶ କରନ୍ତି ।

ଦିନେ ମିଶ୍ରେ ଏ ବୃତ୍ତାନ୍ତ ସ୍ତ୍ରୀଙ୍କୁ ପଚାରିବାରୁ ସେ ହସି ହସି ଉତ୍ତର ଦେଲେ, ଦେଖିଲ ଭ ଏବେ ଫଳ ' କଥା କହିଲେ ପଛ ପ୍ରମାଣ ଲୋଡ଼, ମୁହଁ ନେଫେଡ଼ି ଚାଲିଯାଅ, ଏବେ କଣ ବୁଝୁଛ ? କୁଆ ବୋଲି ବକଟେ, ତାକୁ ପୁଣି ସେ କୃପାଶ୍ୟ କରିଛ । ଆଗରୁ ତାକୁ ଭଲରେ ବଦା କରି ଦିଆ ହୋଇଛୁ, ରକ୍ଷା ମିଳିଛୁ ।

ମିଶ୍ରେ ଏକମତ ହେଲେ ।

ରଘୁ ବିଶ୍ୱାଳେ ମିଶ୍ରଙ୍କର ଦୁଷ୍‌ମନ୍ । ଦିନେ ତାଙ୍କ ଦାଣ୍ଡବାଟେ ମିଶ୍ରଙ୍କୁ ଯାଉଥିବାର ଦେଖି ସେ ଦିନେଇ ସାହୁଙ୍କୁ ଡାକି କହିଲେ, ହଇ କହେ ବାଭେ, ଆରେ, ଗାଁରେ ଗୋଟାଏ କେଉଁଠି ଆଣି ଫାଇ ସଜିଲ୍ କରି ମ, ମୋର ଏ ପାକୁଆ ପାଟିଟା ଅଛା ତାମସା ଅଭାବରେ ଊନ ହୋଇ ହୋଇ ଗନ୍ଧେଇ ଗଲା । କହେ, ପାରିବ ?

ଉତ୍ତର ଆସିଲା, ଏଡ଼େ ବ୍ୟସ୍ତ କାହିଁକି ? ମୁଁ ସବୁ ସଜିଲ୍ କରିଦେବି । ଆମ ଘର ମଣିଷଙ୍କଠୁଁ ଆମର ମନ ଗୁଡ଼ି ଗଲଣି । ଆମର ତ ପିଲା ଉମର, ମୋଟେ ଛନକୋଡ଼ ଛନ, ଦାନ୍ତ ଉଠି ନାହିଁ, ଭାବିଛୁ ଏହି ମାର୍ଗଶିରରେ ଶୁଭ କାର୍ଯ୍ୟଟା ବଢ଼ାଇ ନେବି । ଯାହାକୁ ଆଣିବି ତାକୁ ତମେ ଆଣି ଡାକିବ ମ ବିଶ୍ୱାଳେ ।

ବିଶ୍ୱାଳେ କହିଲେ, ମିଶ୍ରେ ଆପଣେ, ପୂର୍ବୋକ୍ତ ହବଟି !

ସାହୁଏ କହିଲେ, ଓଳକ ପଣ୍ଡିତ ମହାଶୟ ! ତମ ନାଉଟୋକା ସୁରିଆ ଆଚାର୍ଯ୍ୟ ତା ଟୋକା ଆଣିଙ୍କୁ ଭାରି ସୁଖ ପାଏ । ଭକଟ ଗଦ ଗଦ । ପ୍ରଶଂସା କରେ ଯେ ପାଟିରେ ବାଟୁଳି ବାଜେ ନାହିଁ ।

ଭଗବାନ ମିଶ୍ରଙ୍କ ମୁହଁ କେଶେରି ପଡ଼ିଗଲା । ସେ ସାରୁ ଖାଇଲା ପରି ମୁହଁ କରି ବାଟେ ବାଟେ ଚାଲିଲେ । କାହା ଆଡ଼କୁ ଫେରି ଚାହିଁଲେ ନାହିଁ କି ପଦେ ଉତ୍ତର ଦେଲେ ନାହିଁ । ଚିନ୍ତା କଲେ, ଆମ ଆଗରେ କାଲି ଲଙ୍ଗଳା ହୋଇ ଡେଉଁଥିଲା ଯେଉଁ ସୁରେନ୍ ସେ ଆମ ଘରେ କାରବାର ହେଉଛୁ । କଣୋଣି ତାର ଆଣି ସମ୍ପର୍କ । ପଦେ କେବେ କିଏ ପରିହାସ ଛଳରେ କଣ କହି ଦେଇଥିବ । ସେଥିପାଇଁ ଖଲ ଲୋକେ ଚଳାଇ କହୁଛନ୍ତି । କହୁଥାଆନ୍ତୁ, ଛଲ କଲେ ଲାଭ ନାହିଁ ?

ମିଶ୍ରେ ଚାଲିଯାଉଣୁ ଚିନ୍ତା କରିବାକୁ ଲାଗିଲେ, ଆଚାର୍ଯ୍ୟପୁତ୍ର ସୁରେନ୍ଦ୍ରର ଦୁର୍ନାମ ଲୋକେ ଦିନେ କରୁଥିଲେ । ସେ ଦୁଷ୍ଟ ଥିଲା । କିନ୍ତୁ ଏବେ ତାର ପରିବର୍ତ୍ତନ ହୋଇଛୁ । ଯେଉଁଠି ଦେଖାହେଲେ ମୁଣ୍ଡ ନୁଆଁଇ ସେ ପ୍ରଣାମ କରୁଛୁ । ସେ ବନସ୍ତୀ

ଓ ଭଦ୍ର । କଶୋରୀମଣିଙ୍କୁ ସେ ସମ୍ମାନ କରେ । ମଥା ନୁଆଁଇ ପ୍ରଣାମ କରେ । ସେ ନିଜେ ଦେଖିଛନ୍ତି, ଉପହାସ ଛଳରେ କଶୋରୀ ତାର କାନମୋଡ଼ି ଆକଟ କରନ୍ତି । ସୁରେନ୍ଦ୍ର ତାଙ୍କର ଶାସନକୁ ମାନି ନଏ । କଶୋରୀଙ୍କର ଅନୁରୋଧକୁ ସେ ତଳେ ପକାଏ ନାହିଁ । ଆଦେଶ ବୋଲି ଗ୍ରହଣ କରେ ।

ସେହି କଥା ତ ପଡ଼ପଡ଼ୀଙ୍କୁ ଶୁଣାଇ କଶୋରୀ କହନ୍ତି । ସୁରେନ୍ଦ୍ରର ବୁଦ୍ଧିକୁ ପ୍ରଶଂସା କରନ୍ତି । ସୁରେନ୍ଦ୍ର ବି ଘରର ଚଳନ ପାଇଁ କୌଣସି ଅଭାବ ରଖାଇ ଦିଏ ନାହିଁ । ଧନୀ ଜମିଦାରର ପୁତ୍ର, ତାଙ୍କର ବା କେଉଁଥିରେ ଊଣା ? ଲୋକେ ଈର୍ଷା ପ୍ରଣୋଦିତ ହୋଇ ଉପହାସ କରୁଛନ୍ତି । ମନଇଚ୍ଛା କରନ୍ତୁ, ତାଙ୍କର କି ଯାଏ ?

## ଏକୋଇଶ

ସୁରେନ୍ଦ୍ରର ଆଈନାଥ ରହସ୍ୟ ଶେଷ ସୀମାରେ ପହଞ୍ଚିଲା । ତହିଁରେ ତାଳ ଦେବାକୁ କଶୋରୀ ହଟିଲେ ନାହିଁ ।

ହୀରାମଣିକୁ ଝୁରି ଝୁରି ନାଥର କଣ୍ଠା ଦୋହଲିଲା । ରୋଗୀ ହୋଇ ସେ ବିଛଣାରେ ପଡ଼ି ରହିଲା, ତଥାପି କଶୋରୀଙ୍କ ମନ ବିକଳ ହେଲା ନାହିଁ । ପରର ଦୁଃଖରେ ସାତପରର ପ୍ରାଣ କାନ୍ଦି ଉଠୁଛି । ଯେତେ ନିଷ୍ଠୁର ହେଲେ ଲୋକେ ଆହା ବୋଲି ପଦେ କହନ୍ତି, କିନ୍ତୁ କଶୋରୀ, ସେ ଅନ୍ୟ ସ୍ୱପ୍ନରେ ମଗ୍ନ ।

ଆର ଘରେ ନାଥ ଆକୁଳ ହୋଇ ଚିତ୍କାର କରୁଛି । ଏ ଘରେ କଶୋରୀ ହସି ହସି ଖଞ୍ଜା ଫଟାଇ ଦେଉଥାନ୍ତି । କେବେ ଭଗବାନ ମିଶ୍ରେ କି ଗ୍ରାମର ଆଉ କେହି ମାଇପେ ଉପସ୍ଥିତ ହେଲେ କଶୋରୀ ଲୋକଦେଖାଣ ସୋହାଗ ଦେଖାଇ ଆଖିରୁ ଲୁହ ଧାର ଗଡ଼ାନ୍ତି, ସ୍ନେହ ଦେଖାଇ ନାଥ ପାଖରେ ବସି ତା ମୁଣ୍ଡରେ ହାତ ମାରନ୍ତି । ଔଷଧ ଆଣିବାକୁ ସୁରେନ୍ଦ୍ରକୁ ଅନୁରୋଧ କରି କବିରାଜଙ୍କ ପାଖକୁ ପଠାନ୍ତି । ଲୋକେ ବୁଝନ୍ତି, ଏ ସବୁ ବାହାରିଆ । ମିଶ୍ରେ ସନ୍ଦେହ ଦୋଳରେ ଝୁଲନ୍ତି । କିଛି କହନ୍ତି ନାହିଁ । ମନର ସନ୍ଦେହ ଓ କ୍ରୋଧ ଗୁପ୍ତି ରଖି ନାଥର ସେବାରେ ଲାଗିଯାନ୍ତି ।

କଶୋରୀଙ୍କ ଉପରକୁ ପ୍ରତି କଥାରେ ଏବେ ମିଶ୍ରେ ଚଡ଼ି ଚଡ଼ି ହୁଅନ୍ତି, ଚଡ଼ନ୍ତି ନାହିଁ । ଉପରେ ପଡ଼ି ନାଥର କୌଣସି କାମ କରିବାକୁ ଆସିଲେ ହସ ହସ ହୋଇ, କେବେ ଗମ୍ଭୀର ହୋଇ ମିଶ୍ରେ ବାରଣ କରନ୍ତି । କଶୋରୀଙ୍କୁ ପାଖକୁ ନ ଯାଇ ସେ ନାଥ ପାଖରେ ରାତ୍ରିଯାପନ କରନ୍ତି । ତାର ସେବା କରିବାକୁ ଓ ଯତ୍ନ ନେବାକୁ ଚେଷ୍ଟା କରନ୍ତି ।

ରାତି ଅଧରେ ମଧ୍ୟ କେତେବେଳେ ଶ୍ରୀନାଥ ଚମକି ଉଠେ । ହାତ ଅଣ୍ଡାଳି, ନୂଆଉ ନୂଆଉ ହୋଇ ଡାକି ଉଠେ । ଆଖି ଖୋଲି ମିଶ୍ରଙ୍କୁ ଡବ ଡବ ଆଖିଅରେ

ଦେଖେ । ଆଖିରୁ ଲୁହ ଝରାଇଁ ପଗ୍ଭରେ, ନନା, ନୂଆଭ କାହିଁ ? ଏଇଠି ଠିଆ ହୋଇଥିଲ ତ !

ମିଶ୍ରେ ତାର ମୁଣ୍ଡରେ ହାତ ମାରି କହନ୍ତି, ଶୋଇପଡ଼ ବାବା !

ଔଷଧରେ କିଛି ଫଳ ହେଲା ନାହିଁ । କବିରାଜ ଦୟାନିଧି ଆଗ୍ଭର୍ଯ୍ୟେ ଦୁର୍ବଳତା ଏବଂ ରୋଗୀର ସମସ୍ତ ସମୟରେ ମସ୍ତିଷ୍କ ବିକୃତ କଥା ଶୁଣି ଗୋଟିଏ ବିଷୟ ଅନୁମାନ କଲେ । ଲମ୍ବ ଦାଢ଼ିରେ ହାତ ମାରି ମୁହଁ ଗମ୍ଭୀର କରି ମିଶ୍ରଙ୍କୁ କହିଲେ, ତାର ନୂଆବୋହୂଙ୍କୁ ଦେଖିଲେ ତାର ମାନସିକ ବିକୃତ କମିଯିବ । ସେ ଅଚିରେ ଆରୋଗ୍ୟ ହେବ । ଔଷଧରେ ଭଲ ହେବା ସମ୍ଭବ ନୁହେଁ ।

ଭଗବାନ ମିଶ୍ରେ ନାଥକୁ କୋଳକୁ ଆଉଜାଇ ବସିଥିଲେ । ଆଗ୍ଭର୍ଯ୍ୟଙ୍କ କଥାରେ ତାଙ୍କର ଚକ୍ଷୁ ସଜଳ ହେଲା, ହତଭାଗିନୀ ବଧୂଟି ତାଙ୍କର ମନେ ପଡ଼ିଲା । ଭାବିଲେ, ଯେତେଦିନ ସେ ଘରେ ଆତଯାତ ହେଉଥିଲା ସବୁ ଥିଲା ସୁଶୃଙ୍ଖଳ । ସତେ କି ଘରେ ଲକ୍ଷ୍ମୀ ଠାକୁରାଣୀ ବିରାଜି ଥିଲେ । ସମସ୍ତଙ୍କର ଯତ୍ନ ସେ ନେଉଥିଲା । ଶ୍ରୀନାଥକୁ ପୁତ୍ରବତ୍ ସ୍ନେହ କରୁଥିଲା । ତାର ଢଙ୍ଗରେ, ଗ୍ଭଲିଚଳନରେ କେବେ ସେ କିମ୍ବା କିଛି ଦେଖି ନ ଥିଲେ । କଶୋଗ୍ଭଙ୍କ ମୁହଁରୁ କେବଳ ହାରାମଣିର ମନ୍ଦ ପ୍ରକୃତି ଓ ଚରିତ୍ରଗତ ଦୁର୍ବଳତା ସମ୍ବନ୍ଧରେ ସେ ଶୁଣିଥିଲେ, ବିଶ୍ୱାସ କରି କୁଳବଧୂକୁ ବହିଷ୍କାର କଲେ । ତାଙ୍କରି କଥାରେ ବିଶ୍ୱାସ କରି ପିତା ହୋଇ ମଧ୍ୟ ରଥଣମୀ କନ୍ୟା ପ୍ରତି କଠୋର ହେଲେ । ମିଶ୍ରେ ସମ୍ବାଦ ପାଇଛନ୍ତି ଯେ ହାରାମଣି ଗୃହତ୍ୟାଗ କରିଛି । କେଉଁଠି ସେ ଆଶ୍ରା ନେଇଛି କି ଆତ୍ମହତ୍ୟା କରିଛି ଲୋକେ ଜାଣନ୍ତି ନାହିଁ । ସତ କଣ ନାଥ ତାକୁ ନ ଦେଖି ଝୁରି ଝୁରି ରହିବ, ଆଉ ଭଲ ହେବ ନାହିଁ ?

ମିଶ୍ରେ ବିଚଳିତ ହେଲେ ।

## ବାଇଶ

ଖଣ୍ଡିଏ ପତ୍ର—

ପାପର ଭାଗୀ ହେବେ ଆପଣ । ଆପଣଙ୍କ କଥାରେ ନିର୍ଭର କରି ପିତା ହୋଇ ମଧ୍ୟ ମୁଁ କିଛି ନ ବିଗ୍ଭରି ଏପରି ଜଘନ୍ୟ କାର୍ଯ୍ୟ କରିଛି । ହାରାକୁ ଘରୁ ତଡ଼ି ଦେଇଛି । ସେଥିପାଇଁ ଦାୟୀ ଆପଣ । ମୋର ଧାରଣା ଥିଲା, ସମାଜନେତା ପଣ୍ଡିତ ଶ୍ରୀଯୁକ୍ତ ଭଗବାନ ମିଶ୍ରେ ନିଜର କୁଳବଧୂ ଓ ଜଣେ ଅସହାୟା ବାଳିକାକୁ କଦାପି କଳଙ୍କିନୀ ବୋଲି ଲେଖି ନ ଥାନ୍ତେ, ଯଦି ତାହାଠାରେ ସେପରି କିଛି ଢଙ୍ଗ ଦେଖି ନ ଥାନ୍ତେ । ମୋର ଏ ବିଶ୍ୱାସ, ମୋର ସ୍ତ୍ରୀ ଏକାଥରେ ଚୂନା କରି ଦେଇଛନ୍ତି । ଇନ୍ଦିରା ଯେଉଁ ଚିଠିଖଣ୍ଡି ଲେଖିଥିଲା ତହିଁରେ ସତ୍ୟତା ନାହିଁ । ମୁଁ ନିଜେ ଏହାର ପ୍ରମାଣ ପାଇଛି । ଇନ୍ଦିରା ନିଜ ମୁଖରେ ସ୍ୱୀକାର କରିଛି ।

ଆପଣଙ୍କର ସମ୍ବନ୍ଧୁଣୀ ବର୍ତ୍ତମାନ ମୃତ୍ୟୁଶଯ୍ୟାରେ । ହାରିକୁ ଝୁରି ଝୁରି ତାଙ୍କର ଏପରି ଅବସ୍ଥା ହୋଇଛି । ହାରି କେଉଁଠାରେ ଅଛି, ବଞ୍ଚିଛି କି ନାହିଁ, ମୁଁ ଜାଣେ ନାହିଁ । ଦିନେ ଓଳିକରେ ମୋର ପତ୍ନୀ ମଧ୍ୟ ସଂସାର ଛାଡ଼ି ଚାଲିଯାଇ ପାରନ୍ତି । ତେଣିକି ମୋ ଜୀବନରେ କେଉଁ ଆଶା ? ଏ ସଂସାରେ ଆପଣ ମୋର ଚୂନା କରିଛନ୍ତି ।

ମୋର ଆଶା, ଆପଣ ଦୟାକରି ଥରେ କଟକ ଆସିବେ । ଆପଣଙ୍କୁ ଦେଖିବାକୁ ମୋ ସ୍ତ୍ରୀଙ୍କର ପ୍ରବଳ ଆଗ୍ରହ । ମରିବା ଆଗରୁ ଥରେ ଦେଖା କରି ସେ ଆପଣଙ୍କୁ କଅଣ ପଚାରିବେ । ଆପଣଙ୍କର ଇଚ୍ଛା ।

ସୁରେନ୍ଦ୍ର ତାର ଜଣେ ବନ୍ଧୁଙ୍କ ପାଖକୁ ଖଣ୍ଡେ ପତ୍ର ଲେଖିଥିଲା । ଅକସ୍ମାତ୍ ସେ ପତ୍ର ଖଣ୍ଡି ମୋର ହସ୍ତଗତ ହେଲା । ସେଥିରୁ ମୁଁ ସ୍ପଷ୍ଟ ପ୍ରମାଣ ପାଇଛି ଯେ, ହାରି ମୋର ନିର୍ଦ୍ଦୋଷ । ପରମେଶ୍ୱର ନିଶ୍ଚୟ ପ୍ରକୃତ ସତ୍ୟକୁ ଉଦ୍‌ଘାଟନ କରନ୍ତି । ତାହାହିଁ ହୋଇଛି । ମଣିଷ ପାପକରେ । ପାପକୁ ଘୋଡ଼ାଇ ରଖିବାକୁ ଚେଷ୍ଟା କରେ, କିନ୍ତୁ ଦୟାମୟ ପରମେଶ୍ୱର ତାହା କରିଇ ଦିଅନ୍ତି ନାହିଁ । ସୁରେନ୍ଦ୍ର ମୋର ଗ୍ରାମ ଥିଲା । ତାର ମନ୍ଦ ଚରିତ୍ର ମୋତେ ଏବଂ ରଘୁ ବାବୁଙ୍କୁ ଭଲକରି ଜଣା । ସେ ତାର ପାପାଭିଳାଷ କିବଦନ୍ତୀରେ ଚରିତାର୍ଥ କରିବ ବୋଲି ଆପଣଙ୍କ ସ୍ତ୍ରୀଙ୍କ ସଙ୍ଗେ ମିଶି ଷଡ଼ଯନ୍ତ୍ର କରି ଏ ଘୋର ଅନ୍ୟାୟର କାରଣ ହୋଇଛି । ଗ୍ଭଡ଼ନ୍ତୁ, ମୁଁ ଏ ସବୁ ଲେଖି ନିଜେ ଲଜ୍ଜିତ । ଥରେ କଟକ ଆସିଲେ ସୁରେନ୍ଦ୍ରର ପତ୍ର ଦେଖି ସବୁ ବୁଝି ପାରିବେ ।

ବେଳ ରତରତ । ପୋଷ୍ଟ ଅଫିସରୁ ପତ୍ରଖଣ୍ଡି ନେଇ ମିଶ୍ରେ ତରତର କରି ଘରେ ଓଲଟାଇ ଗଲେ । ଗୋଡ଼ ଆଗକୁ ଚାଲୁଥାଏ । ସେ ଦୟାନିଧି ଆତ୍ମୀୟ ଉପକାରୀନଙ୍କ ଘରକୁ ଗ୍ଭଲିଛନ୍ତି, ଆହୁରି ଦୁଇ କୋଶ ବାଟ ବାକି ଅଛି । ପଥରେ ଅଟକି ପଡ଼ନ୍ତି ଆହୁରି ଥରେ ପଢ଼ିଲେ । ଭୟରେ, କ୍ରୋଧରେ, ଲଜ୍ଜାରେ ତାଙ୍କର ଗୋଡ଼ ଅବଶ ହୋଇ ପଡ଼ିଲା । ଦୀର୍ଘଶ୍ୱାସ ଛାଡ଼ି ପତ୍ରଟିକୁ ବଟୁଆରେ ରଖିଲେ । ମନରେ ତୀବ୍ର ବେଦନା ଅନୁଭବ କଲେ । ସୁରେନ୍ଦ୍ର ! କାଲିକାର ପିଲା ଗ୍ଭଖଣ୍ଡେ, ତାର ଏତେ ସାହସ ! ଷଡ଼ଯନ୍ତ୍ର, ଘୋର ଷଡ଼ଯନ୍ତ୍ର ! ସୁରେନ୍ଦ୍ର ପାପାଚାରୀ ?

ଭଗବାନ୍ ମିଶ୍ରେ ଚିନ୍ତା କରୁ କରୁ ବିଚଳିତ ହେଲେ । ଅସମ୍ଭବ ! ମିଥ୍ୟା ! ରଘୁ ପରିର ସ୍ତ୍ରୀ ବିରୁଦ୍ଧରେ ମିଥ୍ୟାପବାଦ ପ୍ରଚାର କରିବାକୁ ଗ୍ଭହାନ୍ତି । ଏଡ଼େ ସାହସ ! ଘୃଣାରେ ତାଙ୍କର ନାସିକା କୁଞ୍ଚିତ ହେଲା ! ଏହି ଅପମାନର ଭୀଷଣ ପ୍ରତିଶୋଧ ତାଙ୍କୁ ନେବାକୁ ହେବ !

ମିଶ୍ରଙ୍କ ସନ୍ଦେହୀ ମନରେ ଗତରାତ୍ରିର ଘଟଣାଟି ଆସି ଉଭା ହେଲା । ଶ୍ରୀନାଥକୁ କୋଳରେ ପୂରାଇ ସେ ଶୋଇଥିଲେ । ଅଧ ରାତିରେ ହାତ ଗୋଡ଼ ନାଚି କରି ସେ ବଲବଲେଇ ଉଠିଲା, ନୂଆବୋହୂ, ନୂଆବୋହୂ, ମୋତେ ଧରି—

ମିଶ୍ରେ ପୁଅକୁ କୁଣ୍ଡାଇଁ ଧରି ଧୀରେ ଧୀରେ ତାର ମୁଣ୍ଡରେ ହାତ ମାରଲେ । ନାଥ ଶାନ୍ତ ହେଲାରୁ ସେ ତାକୁ ପଗ୍ଭରଲେ, ବାପା, ନୂଆବୋହୂକୁ ଆଣିବାକୁ ଲୋକ ପଠାଇଛୁ, ତୁ ଶୋଇପଡ଼ । ସେ ଆସିବେ ଯେ ।

ନାଥର ମୁଖ ଉଜ୍ଜ୍ୱଳ ଦେଖାଗଲା । ସେ ଆଖି ମେଲି କରି ପଗ୍ଭରିଲା, ନନା, ସେ କାହିଁ ?

ସେ ପୁଣି ବାପଘରକୁ ଯାଇଛି !

ମିଛ କହୁଛ, ସୁରେନ୍‌ବାବୁ କହୁଥିଲେ ସେ କାହା ସଙ୍ଗେ କଲିକତା ପଳାଇଛି । ସତ କି ନନା ?

ମିଶ୍ରେ ଗମ୍ଭୀର ହେଲେ । କଥାରେ ସତ୍ୟତା କେତେ ବୁଝିପାରଲେ ନାହିଁ । ହୁଏତ ସୁରେନ୍ଦ୍ର ମିଛରେ କହିଥିବ ।

ନାଥ ପୁଣି କହିଲା, ନନା, ମୁଁ ନୂଆବୋହୂ ପାଖକୁ କଲିକତା ଯିବି ।

ମିଶ୍ରେ କହିଲେ, ନାଇଁରେ, ସୁରେନ୍ ତୋତେ ମିଛରେ କହିଛି । ତୋ ନୂଆବୋଉ ବାପଘରେ ଅଛନ୍ତି ।

ମିଛକଥା, ତମେ ତ ତାକୁ ଘରୁ ତଡ଼ି ଦେଇଛ । ସେଥିପାଇଁ ତା ସଙ୍ଗେ ଯିବାକୁ ମତେ ସେ ଦିନ ତମେ ମନା କରିଥିଲ । ମୁଁ କଣ ଜାଣିନାହିଁ କି ?

ମିଶ୍ରେ ନାଥର କଥା ଶୁଣି ଅବାକ୍ ହେଲେ ! ଗ୍ଛୋଟ ମୁଣ୍ଡଟି ଭିତରେ ସେ ଏତେ କଥା ପୂରାଇ ରଖିଛି ! କଣ କହି ତାକୁ ସାନ୍ତ୍ୱନା ଦେବେ ?

ନାଥ ପୁଣି କହିଲା, ମୁଁ ଯିବି ନନା, କଲିକତା ଯିବି । ମୋ ନୂଆବୋଉଙ୍କୁ ତମେ ଆଉ ଆଣିବ ନାହିଁ ।

ନାଥର ମନ ବଦଳାଇବାକୁ ସେ କହିଲେ, ତୋ ବୋଉକୁ ଡାକିବି ?

ନାଇଁ ନନା; ସେ ମତେ ମାରିବ । ସେ ମତେ ଭଲ ପାଏ ନାହିଁ । ତମେ ଘରୁ ଗ୍ଭଲିଗଲେ ସେ ଆଉ ମୋ ପାଖକୁ ଆସେ ନାହିଁ । ସେ ଓ ସୁରେନ୍‌ବାବୁ ସେ ଘରେ ଧରାପରା ହୁଅନ୍ତି, ହସନ୍ତି । ମତେ ଶୋଷ କରେ । ପାଣି ପାଇଁ ଯେତେ ଡାକେ କେହି ଶୁଣନ୍ତି ନାହିଁ ।

ମିଶ୍ରେ ପୁଣି ଚକିତ ହେଲେ । ସୁରେନ୍ ହସେ ! ସେ ହସନ୍ତି ! ପାଣି ଦିଅନ୍ତି ନାହିଁ । ଧରାପରା ହୁଅନ୍ତି ! ଏଡ଼େ ସାହସ ! ବାଘର ଘରେ ମିରିଗର ନାଟ ! ଯାହା ପାଇଁ ଏତେ କଥା, ତାର ପୁଣି ଅବହେଳା !

ସେ ନୀରବ ହେଲେ ।

ସେ ଓ ସୁରେନ୍ ହସୁଥାନ୍ତି, ଏହି ବାକ୍ୟଟି ସଙ୍କେତ ଯେପରି ତାଙ୍କର ଗ୍ଭତି ଭିତରେ ଦାଉ ଦାଉ କରି ନିଆଁ ହୁଲା ଜାଳି ଦେଲା । ମନକୁ ବୁଝାଇଲେ, ହସିବାର କଣ କାରଣ ନାହିଁ, ତମେ ଆମ୍ଭେ କଣ ହସୁ ନ ଥାଇଁ, ହସକଥା ପଡ଼ିଲେ ହସକୁ କିଏ ଅଟକାଇ ପାରିବ ?

ମନ କେତେ ନରକରେ ବୁଲିଲା । ବାରଣ କରିବ କିଏ ? ଆଉ କଣ ହସିବାର ବେଳ ନ ଥିଲା ? ସୁରେନ୍ ମିଶ୍ରଙ୍କୁ ଦେଖିଲେ ଏବେ ଗ୍ରେଚ ପରି ହୁଏ କାହିଁକି ? ଆଗରେ ଠିଆ ହୋଇ ମୁହଁକୁ ଅନାଇ ପାରେ ନାହିଁ । କୌଣସି ଆଳ୍ପ ଧରି ଅନ୍ୟତ୍ର ଚାଲିଯାଏ ।

ଥରେ ମନରେ ସନ୍ଦେହ ପଶିଲେ ମନ କି ସ୍ଥିର ହୋଇ ରହେ ? ଲୋକେ ଭଲ କଥାର ଖରାପ ଅର୍ଥ ବାହାର କରନ୍ତି । ନିଉଦ୍ଦେଶ୍ୟହୀନ କର୍ମ ଭିତରେ ମନଗଢ଼ା ଉଦ୍ଦେଶ୍ୟର ସନ୍ଧାନ କରନ୍ତି । ଭଲ ମନ୍ଦ ବିଚାରିବାର ବେଳ ନ ଥାଏ । କାର୍ଯ୍ୟ ଶେଷ ହୁଏ । ମନରେ ଅନୁତାପ ଆସେ । ମଣିଷ ଆକାଶ ଉପରୁ ଖସିପଡ଼େ ପାତାଳ ତଳକୁ ।

ରଥଙ୍କର ଚିଠି ପାଇ ତାଙ୍କର ସନ୍ଦେହ ଘନୀଭୂତ ହେଲା । ଯାହାହେଉ, କବିରାଜଙ୍କ ଘରକୁ ନ ଗଲେ ନ ଚଳେ । ତାଙ୍କ କୂଳରେ ଦୀପ ଜାଳି ବଡବଡୁଆଙ୍କୁ ଯେ ପାଣି ଟେକିବ ଆଗ ତା କଥା, ପରେ ଆଉ ସବୁ ।

ମିଶ୍ରେ ମନ ଦୃଢ଼କରି ଉଠିଲେ । ଆଗକୁ ଦୁଇ ପାଦ ନ ଯାଉଣୁ ସତେ ଯେପରି ତାଙ୍କ କାନରେ ପଡ଼ିଲା-ନାଥର ସେହି ଆକୁଳ ଅନୁରୋଧ, ପାଣି ଦିଅ, ପାଣି, ସେ ଫେରିଲେ ନନା ?

ଖଣ୍ଡେଦୂର ଅସି ବଟୁଆରୁ ଚିଠିଟି କାଢ଼ି ଆଉଥରେ ପଢ଼ିଲେ । ଶେଷରେ ଲେଖାଥିଲା, ପୁନଶ୍ଚ—, ହୀରାମଣିର ସନ୍ଧାନ ପାଇଛି । ସେ ଏହି କଟକ ସହରରେ ପବିତ୍ର ଭାବରେ ଜୀବନ ଅତିବାହିତ କରୁଛି । କଣ କରୁଛି ବର୍ତ୍ତମାନ ମୁଁ ଲେଖିବି ନାହିଁ ଆପଣ କଟକ ଆସିଲେ ମୁଁ ଆପଣଙ୍କୁ କେତୋଟି କଥା ପଚାରିବି । ତା ପରେ ମୁଁ ଆଉ ସମାଜର ଶତ ପ୍ରତିବାଦ ମାନିବି ନାହିଁ । ଦିନେ ମୁଁ ସମାଜ ସମାଜ ହୋଇ ପାଗଳ ହୋଇଥିଲି; କିନ୍ତୁ ଆଜି ମୋର ହୃଦୟ ନିକଟରେ ସମାଜ-ଚିନ୍ତା ପରାସ୍ତ ହୋଇଛି ।

ମିଶ୍ରେ ପତ୍ରର ଏହି ଅଂଶଟି ପାଠକରି ବିଚଳିତହେଲେ । ତାଙ୍କ ଆଖିକୁ ସତକଥା-ଗୁଡ଼ିକ ଜଳଜଳ ହୋଇ ଦେଖାଗଲା । ହୀରା ଗଲାଦିନୁ ସତେ କି ତାଙ୍କ ଘରୁ ଲକ୍ଷ୍ମୀ ଚାଲିଯାଇଛନ୍ତି । ଘର ପୂର୍ବପରି ଅପରିଷ୍କାର । କୌଣସି କାର୍ଯ୍ୟରେ ଶୃଙ୍ଖଳା ନାହିଁ । ଜିନିଷପତ୍ରର ଯତ୍ନ ନାହିଁ । ଯାହା ଯେଉଁଠି ପଡ଼ିଛି ସେଇଠି । ଖର୍ଚ୍ଚବାର୍ଚ୍ଚ ପ୍ରତି କାହାର ନିଘା ନାହିଁ । ସତକୁ ସତ ସେରକ ଜାଗାରେ ଦୁଇସେର ଖରଚ । କଣୋଗ୍ରାମଣି ସାକୁଲେଇ ହୋଇ ହୀରାମଣି ନାମରେ ପୂର୍ବରୁ ଯେତେ ଯାହା କହୁଥିଲେ, ମିଶ୍ରେ ସ୍ତ୍ରୀଙ୍କ ବାକ୍ୟରେ ବିଶ୍ୱାସ କରୁଥିଲେ ସିନା ନିଜେ କିଛି ଦେଖି ନ ଥିଲେ କି ଅନୁଭବ କରି ନ ଥିଲେ । ହୀରାମଣି ଚାଲିଯିବା ପରେ ସବୁ କଥା ସେ ନିଜ ଅଙ୍ଗରେ ଲିଭାଇଛନ୍ତି ।

ମିଶ୍ରେ ଆଗକୁ ଚାଲିଲେ ।

# ତେଇଶ

ସନ୍ଧ୍ୟା, ଅନ୍ଧାର ମାଡ଼ି ଆସିଲା । ବିଲ ବାଟ । କେଉଁଠି ହିଡ଼ ଉପରେ, କେଉଁଠି ବିଲ ମଝିରେ ଧାନଗଛର ଥୁଣ୍ଟାମୂଳ ଡେଇଁ ଡେଇଁ ମିଶ୍ରେ ଘରମୁହାଁ ହୋଇ ଚାଲିଛନ୍ତି । ନେଲେବେଲେ ପାଚିଲା ଗୋବମଟା ବେତ ବାଡ଼ିଖଣ୍ଡି ତଳେ ଜୋରରେ ପ୍ରହାର କରି ଦୀର୍ଘଶ୍ୱାସ ଛାଡ଼ୁଛନ୍ତି । ନଅଁ ନୁଆଣି ପଲ ପଲ; କିନ୍ତୁ ଆଜି ମିଶ୍ରେ ସେମାନଙ୍କ କଥା ଭୁଲି ଯାଇଛନ୍ତି ।

ଆକାଶ ପାତାଳ ଚିନ୍ତାକରି ସେ ଆସି ଗାଁ ମୁଣ୍ଡ ମଠପାଖ ଦାଣ୍ଡାରେ ହେଲେ । ଝଙ୍କା ବରଗଛ ତଳେ ଦାଣ୍ଡାଟି ବଙ୍କେଇ ହୋଇ ପୋଖରୀ ଉପର ଦେଇ ଗ୍ରାମ ଭିତରକୁ ପଶି ଯାଇଛି । ମିଶ୍ରେ ଉତ୍ତେଜନାର ସହିତ ଚିନ୍ତା କଲେ, ହୀରାମଣି ତାଙ୍କର କୁଳବଧୂ, କୁଳଲକ୍ଷ୍ମୀ । ଜନ୍ମ କରିଛନ୍ତି ବୋଲି ରଥଙ୍କର ତ ଆଉ ତା ଉପରେ ଅଧିକାର ପାଏ ନାହିଁ । ମାଇକିନିଆ ଝିଅ, ପରଘର ମଣ୍ଡନ କରିବାକୁ ତାର ଜନ୍ମ । ପରଘରକୁ ପଠାଇବାଯାଏ ବାପର ଅଧିକାର । ତେଣିକି ତାଙ୍କର ଥାଏ କଣ ? ଦେଲା ନାଗ, ହେଲା ପାରି । କେଉଁ ସାହସରେ ରଥେ ହୀରାମଣିକୁ ନେଇ ଘରେ ରଖିବେ ? ଦଶମାସିଆ ପୁଅ ସେ, ଆଉ ମିଶ୍ରେ ସାତମାସିଆ ଯେ ନୁଆଁଣିଆ ହେବେ ?

ଦଣ୍ଡିବା ଶକ୍ତି ଯା'ର ଥାଇ, ସେ ପୁଣି କ୍ଷମା ଆଚରଇ । ମଣିଷ ଜନ୍ମ ପାଇ ଜୀବନରେ ଭୁଲ୍‌ଭଟକା ହେବାର କଥା ! ଯେ ତ କିଛି ବୋହୂଙ୍କୁ ଚିରଜୀବନ ପାଇଁ ବିଦା କରି ଦେଇ ନ ଥିଲେ । ମିଛ ହେଉ ସତ ହେଉ, ପାଞ୍ଚଜଣଙ୍କ ତୁଣ୍ଡରୁ ପାଞ୍ଚପଦ ଶୁଣିଲେ ବୋଲି ରାଗରେ ମିଶ୍ରେ ବୋହୂଙ୍କୁ ବାପଘରକୁ ବିଦାକରି ଦେଇଥିଲେ । ସେ କହି ନ ଥିଲେ ଯେ ହୀରାମଣି ଘରେ ଗୋଡ଼ ଦେଉଁଣୁ ତାଙ୍କୁ ଗୋଇଠା ମାରି ବାଟରେ ଠିଆକରି ଦିଅ । ଯେ ନ ବୁଝି ନ ଶୁଝି ଏପରି କାମ କରି ପକାଇଛନ୍ତି, ବାପ ହେଉନ୍ତୁ କି ଯେ ହେଉ, ସବୁ ବିଶୃଙ୍ଖଳା ପାଇଁ ସେ ଦାୟୀ ।

ଏହି ଚିନ୍ତା କରି ମିଶ୍ରେ ଆଶ୍ୱସ୍ତି ଲଭ କଲେ । ମୋକଦ୍ଦମା ପଛେ ହେଉ ସମ୍ପତ୍ତିବାଡ଼ି ସବୁ ବନ୍ଧା ପକାଇ ସେ ପଛେ ହାଇକୋର୍ଟ ଯାକେ ଯିବେ, ହୀରାମଣିଙ୍କ ଉପରେ ତାଙ୍କର ଅଧିକାର ସେ ନିଶ୍ଚୟ ସାବ୍ୟସ୍ତ କରିବେ । ନାଥିକୁ ସେ ତାର ନୂଆବୋହୂକୁ ଫେରାଇ ଦେବେ ।

ମିଶ୍ରେ ଗାମୁଛା ବଦଳିବାକୁ ଇଚ୍ଛା କରୁଛନ୍ତି, ଏହି ସମୟରେ ତାଙ୍କୁ ଶୁଭିଲା, କିଏ ଅନତିଦୂରରେ ଥରି ଥରି କରି ଅନ୍ୟ ଜଣେ କାହାକୁ କହୁଛି, ଆରେ ଯା'ମ, ସୁରେନ୍ କଥା ଆଉ କେହି ଜାଣୁ ନ ଜାଣୁ ଆମକୁ ଅଛପା ନାହିଁ । ଚୁଲାମୁହାଁ କାଙ୍କ ପରି କି ବଲେଇ ବୈଷ୍ଣବ ପରି ନିଜେ ବାହାରକୁ ଗୋଟାପଣ ସାଧୁ, କିନ୍ତୁ ବାବା, ସେ ପହଁର ପହଁର ପାଣି ପିଇଲେ ଆମେ ବୁଡ଼ ବୁଡ଼ ପାଣି ପିଉ ଟି !

ସ୍ୱର୍ଗକୁ ନିଶୁଣୀ ନାହିଁ କି ବଡ଼ଲୋକଙ୍କୁ କଥା ନାହିଁ ! ଯାହାର ମୁଣ୍ଡ ଅଛି, ଯାହାର ତୁଣ୍ଡ ଅଛି, ସେ ତ ଖାଇ ସବୁ ବିପଦରୁ ପାର । ଝିଅମାନେ ତ ସମସ୍ତେ, କିନ୍ତୁ ତମ ଆମ ଭଳିଆ ଲୋକ ଝିଅ ଗ୍ଲିଲେ ଲୋକହସା ହେବା ସଂସାର କଥା ।

ଭଗବାନ ମିଶ୍ରଙ୍କର ଏବେ କେଉଁ ମଣିଷପଣିଆଁ ଟା ଅଛି ଯେ ସବୁ ଦୋଷ ତାଙ୍କ ମୁଣ୍ଡରେ ନେଇ ଥୋଉଛୁ ? ବିଲେଇ ହାତରେ ଶୁଖୁଆ ପୋଡ଼ା ପରି ଆଗ୍ରର୍ଣ୍ଣ ପୁଅଙ୍କ ହାତରେ ଘରର ଭାର ଥୋଇଦେଇ ସେ ନିଶ୍ଚିନ୍ତରେ ଗସ୍ତକରି ଗ୍ଲଲଯାନ୍ତି । ଏଟା କେଉଁକଥା ?

ଏଟା ପରି ଆଖି ଥାଉଁ ଥାଉଁ ଅନ୍ଧ ହେବା କଥା । ଦେଖୁନ, ନିର୍ଦ୍ଦୋଷ ବୋହୂଟାକୁ କିଏଥା ମାଇପ କଥାରେ ପଡ଼ି ଘରୁ ତଡ଼ି ଦେଇଛନ୍ତି । ପାଖରେ ଶୁଏ, କାନରେ କହେ, ତା କଥା କି ଅନ୍ୟଥା ହୁଏ ? ନିଜେ ସୁରେନ୍ ବାବୁଙ୍କ ତୁଣ୍ଡରୁ ଶୁଣିଛି ଯେ ହାରାମଣି ବିଚାରି ନିର୍ଦ୍ଦୋଷ ।

ତାଙ୍କ ବୋହୂଙ୍କର ମୁହଁ ଫିଟିଲା ନାହିଁ । ମାଇକିନିଆଁ ଜାତି ମୁହଁରେ ସବୁବେଳେ କୋଲପ ପଡ଼ିବାର କଥା ।

ମିଶ୍ରେ ଆଉ ଅଧିକ ଶୁଣିବାକୁ ରହି ପାରିଲେ ନାହିଁ । ଦୁଃଖରେ ପ୍ରାଣ କାନ୍ଦି ଉଠିଲା । ସେ ଘରକୁ ଗ୍ଲଲେ । ନିର୍ଦ୍ଦୋଷ ହାରାମଣି ପ୍ରତି ଯେ ସେ ଘୋର ଅନ୍ୟାୟ କରିଛନ୍ତି, ଏହା ସେ ଭଲକରି ବୁଝି ପାରିଲେ । ତଥାପି, ବିଚଳିତ ହେବାର ଲୋକ ସେ ନୁହନ୍ତି ।

ଦାଣ୍ଡ ଦୁଆର ମୁହଁରେ ଗୋଡ଼ ଦେବା ସଙ୍ଗେ ସଙ୍ଗେ ମିଶ୍ରେ ଚମକି ଉଠିଲେ । ଗୋଟିଏ ଘରୁ ଉତ୍କଟ ହାସ୍ୟର ରୋଳ, ଆର ଘରୁ କାତର ଆକୁଳ କ୍ଷୀଣ ପ୍ରାର୍ଥନା— ପାଣି ଦିଅ !

ମିଶ୍ରେ ହତାଶ ହୋଇ ମୁଣ୍ଡରେ ହାତ ଦେଇ ଦାଣ୍ଡ ଚଉରା ପାଖରେ ବସି ପଡ଼ିଲେ ।

କିଛି ସମୟ ପରେ କବାଟ ଖୋଲିବାର ଶବ୍ଦ ହେଲା । ମିଶ୍ରେ କବାଟ ପାଖକୁ ଗଲେ । ସେ ଦେଖିଲେ, ସୁରେନ୍ଦ୍ର କବାଟ ଖୋଲି ପଦାକୁ ଆସିବାକୁ ଚେଷ୍ଟା କରୁଛି । ଡିବିରି ଧରି ତା ପଛରେ କିଶୋରୀ ହାସ୍ୟଭରା ମୁଖରେ ଅନୁଗମନ କରୁଛନ୍ତି ।

ସେ କିଛି ନ କହି ଅଶ୍ରୁପୂର୍ଣ୍ଣ ନେତ୍ରରେ ଘର ଭିତରକୁ ପଶିଗଲେ । ଦାଣ୍ଡକବାଟ ବନ୍ଦକରି ସେ ଭଗ୍ନକଣ୍ଠରେ କିଶୋରୀଙ୍କୁ କହିଲେ, ବୁଝିଛ ପରା ବିଲେଇ ସବୁଦିନେ ଆଖି ବୁଜି ଦୁଧ ପିଉଥିବ ? ସୁରେନ୍‌କୁ ଗ୍ଲହିଁ କହିଲେ, ଭଗବାନ ମିଶ୍ରେ ସବୁ ଜାଣନ୍ତି । ଘର ଜିଆଁଙ୍କୁ ସେ ଆଖି ବୁଜି ଅଣ୍ଟିରେ ପୂରାଇଛନ୍ତି କାହିଁକି ଜାଣ ସୁରେନ୍ଦ୍ର ? ମାନ ଭୟରେ, ଲୋକହସା ନ ହେବା ଭୟରେ । କିନ୍ତୁ ସବୁଥିରେ ଗୋଟାଏ ସୀମା ଅଛି ।

ଆରଘରୁ ନାଥ ବଲବଲେଇ ଉଠିଲା, ମୁଁ ନୂଆବୋଉ ପାଖକୁ ଯିବ।

ମିଶ୍ରେ ନାଥ ଶୋଇଥିବା ଘରକୁ ଯାଉଁଣୁ କହିଲେ, ବାପରେ ! ମହତ୍ତ୍ୱ ପଛେ ଯାଉ, ତୋ ନୂଆବୋଉକୁ ମୋ କୁଳଲକ୍ଷ୍ମୀକୁ ମୁଁ ତୋ ପାଖରେ ଆଣି ନିଶ୍ଚୟ ଛାଡ଼ିବ।

କ୍ଷେତ୍ରୋଶୀଙ୍କ ଆଡ଼କୁ ମୁହଁ ବୁଲାଇ ଅଳ୍ପ ହସି ମିଶ୍ରେ କହିଲେ, ଶାଶୁ ଆମର ଶକ୍ତ ବେରାମ। କାଲି ସୁରେନ୍ ତମକୁ ତାଙ୍କ ପାଖରେ ଛାଡ଼ିଦେଇ ଆସିବ, ବୁଝିଲ ? ଆର ଘରକୁ ଯାଅ।

ସୁରେନ୍ଦ୍ର ଚାଲି ଯାଇଥିଲା।

କଶୋଷୀ ସପ ପର ଫଁ ଫଁ ହୋଇ କହି ଉଠିଲେ, ସତେ ! ଏତେ ସାହସ ତୁମର ? ମୁଁ ବିଧବା ବୋଉ ନୁହେଁ ମ, ଯୋଇଲା କ ପୋଇଲା ନୁହେଁ, ମୋ ହାତ ଧରି ବୁଢ଼ା ବୟସରେ ବାହା ହୋଇ ଘରଣୀ କରି ଏ ଘରକୁ ଆଣିଛ। ଏ ଘର ମୋର, କିଏ ମତେ ଏଠାରୁ ବିଦା କରିବ ? ମୋ ବୋଉ ବେମାର ଅଛି ତ ତମୁକୁ ଯାଇଁ ଆଗ ତାଙ୍କୁ ଆଣି ଏଠାରେ ଛାଡ଼ିବାକୁ ହେବ। ମୁଁ ଏଇଠି ତାର ସେବା କରି ତାକୁ ଭଲ କରିବ। ସୁରେନ୍ଦ୍ର ଯିବେ କାହିଁକି ? ଏତିକି କହି କଶୋଷୀ ରାଗ ତମତମ ହୋଇ ଆର ଘରକୁ ଚାଲିଗଲେ।

## ଚବିଶ

ସକାଳ ହେଲା। ବାଳକାମାନେ ନିତ୍ୟକର୍ମ ସାରି ନିଜ ନିଜର ନିର୍ଦ୍ଦିଷ୍ଟ କାର୍ଯ୍ୟରେ ଲାଗିବା ପୂର୍ବରୁ ଭଗବତ୍ ପ୍ରାର୍ଥନା କଲେ। ହାସି ସେମାନଙ୍କ ସଙ୍ଗେ ଯୋଗ ଦେଇ ବିଷ୍ଣୁ ମୂର୍ତ୍ତି ଆଗରେ ପ୍ରାର୍ଥନା କଲା। କେହି ଜଣେ ସଂସ୍କୃତରେ ଶ୍ଳୋକ ପାଠକଲା। ପ୍ରାର୍ଥନା ଶେଷ ହେଲାରୁ ହାସି ନୀତିଶିକ୍ଷା ଦେବାକୁ ବାଳକାମାନଙ୍କୁ ଗୋଟିଏ ଘରକୁ ନେଇଗଲା। ସେ ଘରଟିରେ ଆଗରୁ ସପ ପରା ହୋଇଥିଲା। ହାସି ମଝିରେ ବସିଲା। ବାଳକାମାନେ ତାର ଚାରିପାଖେ ଘେରି ବସିଲେ। କିଏ କହିଲା, ନାନୀ, ଆଜି ସତୀଙ୍କ କଥା କହ।

ସୁଶୀଳା ହାସିମଣିର ପିଠି ଉପରେ ଲଦିହୋଇ ଅଝଟଙ୍କ ପରି କହିଲା, ନାଇଁ ନାନୀ, ଆଜି ସାବିତ୍ରୀଙ୍କ କଥା କହ। ଓହୋ ସେ ଯେଉଁ ଉଆଁସ ରାତି, କଟି କଟି ଅନ୍ଧାର, ମେଘ ଘଡ଼ଘଡ଼ି, ବିଜୁଳି, ପୃଥିବୀକୁ ଉଡ଼ାଇ ନେଲା ଭଳି ପ୍ରବଳ ଝଡ଼, ବାଘ ଭାଲୁ, ଡାଆଣୀ ଚିର୍ଗୁଣୀଙ୍କ ମଝିରେ ଅଗନାଗିନ୍ ବଣରେ ଯେଉଁଠି ଭୁଲିହେଲେ କୁଆ କୋଇଲିର ରାବ ନ ଥାଏ, ସେଇଠି ସେତିକିବେଳେ ସାବିତ୍ରୀ ତାଙ୍କ ସ୍ୱାମୀଙ୍କର ମଲା ଦେହ କୋଳରେ ରଖି କାଳ-ପୁରୁଷ ଆଗରେ ବସିଥାନ୍ତି, ବୋଉ ଲୋ, ସେ ଯେଉଁ ଭୟଙ୍କର ଦୃଶ୍ୟ !

ସୁନ୍ଦରମଣି ବାଧାଦେଇ କହିଲା, ନାହିଁ ନାହିଁ; ସେ ଭୟଙ୍କର କଥା ଶୁଣିଲେ ମତେ ଡର ମାଡ଼େ । ସେ କଥା କହନା, କହ ସୀତା କିପରି ସ୍ୱାମୀଙ୍କ ସଙ୍ଗରେ ବନସ୍ତକୁ ଗଲେ ।

ଗଙ୍ଗା ଆଖିରୁ ଲୁହ ପୋଛି କହିଲା, ନାନୀ, ସେ କଥା ଆଉ କହନା । ରଜାର ଝିଅ, ରଜାର ବୋହୂ ହୋଇ ଜୀବନଟା ତାଙ୍କର ଖାଲି କଷ୍ଟରେ କଟିଲା । ଅଶୋକ ବନରେ ସେ ଯେଉଁ କଷ୍ଟ ! ଚାରିଆଡ଼େ ପଲ ପଲ ରାକ୍ଷସୀ । ତଥାପି ସେ ଡରିଲେ ନାହିଁ । ତାଙ୍କର ଅଟଳ ପ୍ରତିଜ୍ଞା ଭାଙ୍ଗିବାକୁ କାହାର ସାଧ୍ୟ ଅଛି ? କିନ୍ତୁ ରାମଚନ୍ଦ୍ର କଲେ କଣ ? ଥରେ ତାଙ୍କୁ ନିଆଁରେ ପରଖି ଲୋକନିନ୍ଦା ଭୟରେ ପ୍ରଜାଙ୍କ ମନ ନେବାକୁ ତାଙ୍କୁ ପୁଣି ଘରୁ ତଡ଼ି ଦେଲେ । ସେ କଥା ଶୁଣିଲେ ମତେ କାନ୍ଦ ମାଡେ, ରାମଚନ୍ଦ୍ରଙ୍କ ଉପରେ ରାଗ ହୁଏ ।

ହୀରାମଣି ହସି ହସି କହିଲେ, ଆଜି ତୁମକୁ ଏସବୁ କଥା କିଛି କହିବି ନାହିଁ । ମୁଁ ଯାହା କହୁଛି ଶୁଣ । ବାରମ୍ବାର ତମକୁ ମୁଁ ଏହି କଥା ସବୁଦିନେ କହି ଆସୁଛି । ଆଜି ମଧ୍ୟ କହୁଛି, ଶୁଣ । ମଣିଷ ଜନ୍ମ ପାଇ ଆମର ମନ ସବୁବେଳେ ବଦଳୁଥାଏ । ଯେତେ ବାଧାବିପତ୍ତି ଆସୁପଛେ, ସବୁବେଳେ ସତ କହିବାକୁ ଚେଷ୍ଟାକରିବ । ଆମ ଦେଶରେ କେତେ ଲୋକ ମିଛ କହନ୍ତି । ଲଗେଇ କରି ମନରୁ ଗଢ଼ି ପରନାମରେ କହିବା ତ କେତେକଙ୍କର ଅଭ୍ୟାସ । ତମେ ଏମିତି ଅନେକ ଲୋକ ଦେଖିଥିବ । ସେଥିରେ ତାଙ୍କର କିଛି ଲାଭ ହୁଏ ନାହିଁ । ଅଥଚ ପରର ଅନିଷ୍ଟ ହୁଏ । ଯଦି ଆମେ ପରର ଉପକାର କରି ନ ପାରିବା ଅନିଷ୍ଟ କରିବା କାହିଁକି ? ଆହୁରି ଗୋଟିଏ କଥା । ସତ କହିବାକୁ ହେବ ବୋଲି ଯେ, ଆଖିବୁଜି ସବୁବେଳେ କହିବାକୁ ହେବ, ଏହା ନୁହେ । ପରର ଅନିଷ୍ଟ ହେବାର ସମ୍ଭାବନା ଥିଲେ ତୁନି ରହିବା ଭଲ ।

ମଣିଷ ଜାତିର ଚାରୋଟି ମହତ୍ ଏବଂ ଆଦର୍ଶ ଗୁଣ ହେଉଛି ସତ୍ୟ, ଶାନ୍ତି, ଦୟା, କ୍ଷମା । ମଣିଷର ଜୀବନ ଗୋଟାଏ ଯୁଦ୍ଧକ୍ଷେତ୍ର ପରି । ସଂସାର ସଙ୍ଗେ ଯୁଦ୍ଧ କରୁ କରୁ ସବୁବେଳେ ସେ ଯୁଦ୍ଧରେ ଜୟ ଲାଭ କରିପାରେନାହିଁ । ହାରିଯାଏ ବି । ଦୁଃଖ ହେବ, କିନ୍ତୁ ସେ ଦୁଃଖ ଓ ପରାଜୟକୁ ଧୈର୍ଯ୍ୟର ସହିତ ସହିବ । ଧୈର୍ଯ୍ୟ ଧରି ପୁଣି ଆଗେଇବାକୁ ଚେଷ୍ଟା କରିବ । ଆମମାନଙ୍କ ପରି କୋମଳମନା ଝିଅମାନଙ୍କର ମତି ବେଳେ ବେଳେ ବିଚଳିତ ହୁଏ । ଯେ ସବୁ ପ୍ରଲୋଭନକୁ ଗୋଡ଼ରେ ଠେଲି ହସି ହସି ନିର୍ଭୟରେ ଆଗକୁ ଚାଲିପାରେ, ସେହି ଏକା ଜୟ କରେ ।

ଉଷା ପଚାରିଲା, ନାନୀ, ଯେ ଥରେ ପ୍ରଲୋଭନରେ ପଡ଼ି ଗୋଡ଼ ଖସାଇ ଦେଇଥାଏ, ତାର କଣ ଜୀବନଟା ପୋଡ଼ାଜଳା ପାଉଁଶ ହେବ ? ସମାଜ ତାକୁ କ୍ଷମା କରିଲେ କଣ ଭଲ ହୁଅନ୍ତା ନାହିଁ ?

ହୀରାମଣି କହିଲା, ସମାଜର କଥା କହିଲୁ ଯେ ସମାଜ ତ ଆଉ ସ୍ତ୍ରୀମାନଙ୍କର ନୁହେଁ, ପୁରୁଷଙ୍କର । ପୁରୁଷଙ୍କ ପାଇଁ ତିନିଖୁଣ ମାଫ୍ ଲୋ, ସମାଜ ଯଦି ଆମର ହୋଇ-

ଯାନ୍ତା, ଆମେ ଆଜ ଘରକଣରେ ପଡ଼ି ସଢ଼ୁଥାନ୍ତୁ କାହିଁକି ? ଛନବରଷର ଅଣ୍ଡିରି ପୁଅକୁ ଦେଖି ଦ ହାତ ଓଢ଼ଣା ଟାଣି ଘର କୋଣରେ ପଶନ୍ତୁ କାହିଁକି ? ସମାଜରେ ଯଦି ଆମର ସମାନ ଦାୟିତ୍ୱ, ସମାନ ମାନମର୍ଯ୍ୟଦା ଥାଅନ୍ତା, ଆମର ଆଉ ଭାବନା କରିବାର କାରଣ ନ ଥାଆନ୍ତା ।

ଥରେ ଯେ ଭୁଲ୍‌ରେ ଗୋଡ଼ ଖସାଇ ଚଳେ ପଡ଼ିଗଲା ତାକୁ ଗୋଡ଼ରେ ମାଡ଼ିଦଲ ଚକଟି ନ ଦେଇ, କଣ୍ଟା ବଣକୁ ଘୋସାଡ଼ି ଫୋପାଡ଼ି ନ ଦେଇ ତଳୁ ଗୋଟାଇ ନଅନ୍ତୁ । ତା ଦେହରୁ ଧୂଳି ଝାଡ଼ି ତାକୁ କୋଲକୁ ଟାଣି ନଅନ୍ତୁ । ତାକୁ ଘୃଣା ନ କରି ତା ପ୍ରତି ସହାନୁଭୂତି ଦେଖାଇ ବତାଇ ଦିଅନ୍ତୁ, ଭଲ କଅଣ, ମନ୍ଦ କଅଣ ! ବାଟବଣା ହୋଇ ପର କଥାରେ ଭୁଲ କଣ୍ଟା ବଣରେ, କାଦୁଅ ପଙ୍କରେ ସେ ଆଉ ପଶନ୍ତା ନାହିଁ । ଯେ ଥରେ ଖସିଯାଏ, ତାର ଆଉ ଖସିଯିବାର ଭୟ ନ ଥାଏ । ଯାହା ଉପରେ ନିର୍ଭର କରି, ଯାହା କଥାରେ ପଡ଼ି ଅଜାଣତରେ ସେ ଗୋଡ଼ ଖସାଏ ତାକୁ ତ ସେ ଚହ୍ନିଯାଏ । ଜୀବନ ଥିବାଯାଏ ଆଉ କେବେ ସେ ଭୁଲିବ କି ?

ନାନୀ, ଏ ସମାନ ଅଧିକାର କଣ କେବେ ସତରେ ଆସିବ ? ଲୋକେ ତ ବାଧା ଦେବେ ?

ବାଧା ତ ଦେବେ । ତା ବୋଲି ହତାଶ ହେବା ଭଲ ନୁହେଁ । ପର ଗୋଡ଼ରେ ଠିଆ ନ ହୋଇ ପର ଉପରେ ନିର୍ଭର ନ କରି ଯଦି କାର୍ଯ୍ୟ କରିଯାଏ, ତା ହେଲେ ଶୀଘ୍ର ଆମେ ଆମର ଅଧିକାର ପାଇବା । ଶିକ୍ଷାର ଅଭାବରୁ ଏହା ଟିକିଏ ଡେ଼ରି ହୋଇ ପାରେ । ପ୍ରଥମ କଥା, ନାରୀ ମହଲରେ ଶିକ୍ଷାର ପ୍ରଚଳନ ।

ଉଷା ପଚାରିଲା, କଣ କଲେ ହୋଇ ପାରିବ ?

ହୀରା କହିଲା, ସେ କଥା ପରେ କହିବି ଉଷା, ଏବେ ଯାଅ, ସମସ୍ତେ ନିଜର ପାଳି ଅନୁଯାୟୀ ନିଜ କାମରେ ଲାଗ ।

ହୀରାମଣିର ଆଦେଶ ପାଇ ବାଲ୍ୟ ବିଧବା ଝିଅଟିମାନେ ଉଠିଲେ, ପ୍ରତ୍ୟେକକୁ ଦିଆ ହୋଇଥିବା କାମ କରିବାକୁ ସେମାନେ ଜଣ ଜଣ ହୋଇ ଗଲେ । ହୀରା ହସ ହସ ହୋଇ ଚାହିଁ ରହିଥାଏ । ଭାବୁଥାଏ, ସମସ୍ତେ ତ ତାର ସାନ ଭଉଣୀ, ସମସ୍ତେ ଅବିବାହିତା ଝିଅପରି ଦିଶୁଛନ୍ତି । ହାତରେ କାଚ, କପାଳରେ ସିନ୍ଦୂରବିନ୍ଦୁ, ଆଖିରେ କଜଳ, ପାଦରେ ଅଳତା । ହଁ, ସମସ୍ତେ ସେମାନେ ଅଭିଆଡ଼ୀ ଝିଅ । ପିଲାଖେଳ ପରି ସେମାନଙ୍କୁ ବେଦିରେ ବସାଇ କଣ୍ଢେଇ ବାହାଘରପରି କାହା କାହା ହାତରେ ଛନ୍ଦି ଦେଇଥିଲେ, ସେମାନଙ୍କର ଜ୍ଞାନ ନ ଥିଲା ।

ନିଜକୁ ମେ ଚାହିଁଲା । ରାଧାଗୋବିନ୍ଦ ବାବୁଙ୍କର ସ୍ତ୍ରୀ, ଯାହାକୁ ସେମାନେ ସମସ୍ତେ ମା ବୋଲି ଡାକନ୍ତି, କେବଁଠୁଁ ସେ ହୀରାମଣିର ହାତରେ କାଚ ପିନ୍ଧାଇ

ଦେଇଛନ୍ତି । ଆଜି ସକାଳେ ତାକୁ ବି ସେ ସଜାଇ ଦେଇଛନ୍ତି । କହିଲେ, ତୁ ତ ମୋର ଅଭିଅଡ଼ୀ ବଡ଼ଝିଅ ଲୋ ହୀରା, ଅତୀତରେ କେବେ କେଉଁଠି କଅଣ ହୋଇଥିଲା, ସାତ ସପନପରି ସବୁ ତୁ ପାସୋରି ଯା ।

ନାରୀ-ମଙ୍ଗଳ ସମିତିର ପରିଚାଳନା ପାଇଁ ଧନ ଲୋଡ଼ା ହୁଏ ନାହିଁ । ଦାସ ଦାସୀ ରଖିବା ପ୍ରୟୋଜନ ହୁଏ ନାହିଁ । ଝିଅମାନେ ପାଳିକରି ସବୁ କରନ୍ତି । ଜଣେ ଘର ଓଳାଏ, ଦୁଇଜଣ ରାନ୍ଧନ୍ତି, ଦୁଇଜଣ ସୂତା କାଟନ୍ତି । କିଏ ବହି ପଢ଼େ, ଜାମା ବୁଣେ, ଚିତ୍ର କରେ । କିଏ ହାରମୋନିୟମ୍ ଧରି ଗୀତ ଶିଖେ । ହୀରାମଣି ଯଥାଶକ୍ତି ଚେଷ୍ଟାକରି ସେମାନଙ୍କୁ ଶିଖାଏ । ରାଧାଗୋବିନ୍ଦ ବାବୁ ଓ ତାଙ୍କ ସ୍ତ୍ରୀ ଇଚ୍ଛାମତ ଆସି ସାହାଯ୍ୟ କରନ୍ତି । ଆନନ୍ଦରେ ସେମାନଙ୍କର ସମୟ କଟିଯାଏ । ହିଂସା ବାଦ ନାହିଁ, କଳିଗୋଳ ନାହିଁ । ସମସ୍ତେ ସମସ୍ତଙ୍କୁ ଏକା ମା ପେଟର ଭଉଣୀ ପରି ମନେ କରନ୍ତି ।

ଧନୀଘର ଝିଅମାନଙ୍କ ପାଇଁ ଘରୁ ଇଚ୍ଛାମତ ଟଙ୍କା ଆସେ । ଗରିବ ଘର ଝିଅମାନେ ଟଙ୍କା ବା କାହୁଁ ପାଇବେ ? ଚାନ୍ଦାରୁ ଉଠୁଥିବା ଯତ୍ସାମାନ୍ୟ ଧନ ଓ ରାଧାଗୋବିନ୍ଦ ବାବୁଙ୍କର କଷ୍ଟଲବ୍ଧ ବେତନର ଏକ ଚତୁର୍ଥାଂଶରେ ସେମାନଙ୍କର ଖର୍ଚ୍ଚ ଚଳେ । ସମସ୍ତଙ୍କର ଏକା ଖାଦ୍ୟ, ଏକା ପରି ଲୁଗାପଟା ।

ଦୈନିକ କାମ ତୁଲେଇବାକୁ ବାଳିକାମାନେ ଚାଲିଗଲେ । ଉଷାର ସେଦିନ ସକାଳ ବେଳା ହାରମୋନିୟମ୍ ଶିଖାଇବାର ପାଳି । ରାଧାଗୋବିନ୍ଦ ବାବୁଙ୍କ ସ୍ତ୍ରୀଙ୍କଠାରୁ ସେ ଗୀତଗାଇ ଶିଖିଥିଲା । ଅସୁନ୍ଦର ବୋଲି ତାକୁ କେହି କହିପାରିବେ ନାହିଁ, କିନ୍ତୁ ସେ ସୁନ୍ଦର ନୁହେଁ । ହେଲେ ତାର ଗଳାଟି ସୁନ୍ଦର । ଉଷା ଗୀତ ଗାଇଲା ବେଳେ ଗଛ ପତ୍ର ବି କାନ ଡେରି ଶୁଣନ୍ତି ! ସମସ୍ତେ ଚାଲିଗଲାରୁ ଉଷା ହୀରାମଣିକୁ କହିଲା, ନାନୀ, ତମେ ବଜାଅ ମୁଁ ସେଇ ଗୀତଟି ଗାଇବି ।

ହୀରାମଣି ହସି ହସି କହିଲା, ନାଇଁ ଲୋ, ମୋତେ ତ ଭଲ ବଜେଇ ଆସେ ନାହିଁ, ତୁ ନିଜେ ବଜାଇ ଗା, ମୁଁ ଶୁଣୁଛି ।

ଉଷା ହାର୍‌ମୋନିୟମ୍‌ରେ ସ୍ୱର ଦେଇ ଆରମ୍ଭ କଲା—

ଉଠ ନାରୀ,
ପଥହରା ପତିତା ଲୋ ନାରୀ,
ନିକ୍ଷେପିତା ସାହାହୀନା    ନିର୍ଯାତିତା ନିଃସ୍ୱ ଦୀନା
ତନ୍ଦ୍ରା କୋଳେ ଖେଳେ ନୁହ ଘାରୀ
ଛିଟିଲି ଜୀବନ ସରଣୀ ଅନୁସର,
ଝିଣ୍ଟି ପଡ଼ିଛ ପର କରଣୀ ବୋଝ ଧର,
ଉଠ ନାରୀ, ଚଞ୍ଚଳେ    ପୋଛ ପୁଣ୍ୟ ଅଞ୍ଚଳେ
କଳଙ୍କ ପଙ୍କିଳ ବାରି ।

ଯା' ଶୀତଳ କରତଳ ଅଟଳ ଆଶ୍ରୟ
ଘେନିଛ ସେ ସମାଜ କଠୋର ନିର୍ଦ୍ଦୟ
ଉଠ, ନାହିଁ ନିର୍ଭର          କର ପର ଶକ୍ତିର
ହୁଅ, ଦୁର୍ଗମ କର୍ମପଥ ପାର ।

ଗୀତ ବୋଲି ଶେଷ ନ ହେଉଣୁ ବୃଦ୍ଧ ଦରବାନ୍ ଦାଶରଥି ଆସି ସମ୍ବାଦ ଦେଲା, କିଏ ଜଣେ ଗାନ୍ଧିବାଲା ଭଦ୍ରଲୋକ ଦାଣ୍ଡରେ ଠିଆ ହୋଇଛନ୍ତି, ତମ ସଙ୍ଗେ ଦେଖା କରିବାକୁ ସେ ଚାହାଁନ୍ତି ।

ହାସମଣି ଖଦଡ଼ ଲୁଗାର କାନି ମୁଣ୍ଡ ଉପରକୁ ଟାଣି ଆଣି କହିଲା, ଗାନ୍ଧିବାଲା କିଏ କି ଦାସ ମଉସା, ରାଧାଗୋବିନ୍ଦବାବୁ ନୁହନ୍ତି ତ !

ନା, ମୁଁ କଣ ଆଜିଯାଏ ମୋର ଅନ୍ନଦାତା ରାଧାଗୋବିନ୍ଦ ବାବୁଙ୍କୁ ଚିହ୍ନି ନାହିଁ ? ସେ ଆଉ କିଏ ହୋଇଥିବେ । ମୁଣ୍ଡରେ ଗାନ୍ଧି ଟୋପି ପିନ୍ଧିଛନ୍ତି ବୋଲି ଗାନ୍ଧିବାଲା କହିଲି ।

ତାଙ୍କୁ ଦାଣ୍ଡଘରକୁ ଡାକିଦିଅ, ମୁଁ ଯାଉଛି ।

ଦାଶରଥି ଚାଲିଯିବା ପରେ ହାସମଣି ଉଷାକୁ କହିଲା, ଉଷା, ସେମିଜ୍ ଖଣ୍ଡି ଦେହରେ ଗଳାଇ ଦେଇ ଆ ତ, ଦେଖିବା କିଏ ଆସିଛି ।

ଉଷା ସେମିଜ୍ ପିନ୍ଧି କହିଲା, ବୋଧହୁଏ କେହି କାହାକୁ ଏଠି ଛାଡ଼ିବାକୁ ଆସିଛନ୍ତି ।

କେଜାଣି, ଆ ଦେଖିବା, ସେ ଛାଡ଼ିବାକୁ ଆସିଛନ୍ତି କି ନେବାକୁ ଆସିଛନ୍ତି ।

ଉଷାର ହାତଧରି ହାସମଣି ଦାଣ୍ଡଘରକୁ ଆସିଲା ।

ତନ୍ମୟ ହୋଇ ବ୍ରଜକିଶୋର ଚାହିଁ ରହିଲେ, ଆଗରେ ଉଭା ହାସ୍ୟମୁଖୀ ହାସମଣି, ତାଙ୍କର ମାନସ ପ୍ରତିମା, ସପନ ପ୍ରେୟସୀ ! କିଏ କହିପାରିବ ଯେ ସେ ଦିନେ ବିଧବା ନାମରେ ପରିଚିତ ଥିଲା, ଜୀବନର ମମତା ଭୁଲି ନିରୁଦ୍ଦିଷ୍ଟ ହୋଇ ଗୃହତ୍ୟାଗ କରି ଚାଲି ଯାଉଥିଲା ! ଉଜ୍ଜ୍ୱଳ ଆଖିରେ ମନକିଣା ଦୃଷ୍ଟି ! ବ୍ରଜକିଶୋର ଚଉକିରୁ ଉଠି ଦୁଇହାତ ଯୋଡ଼ି ନମସ୍କାର କଲେ । ହସି ହସି ହୋଇ ନମ୍ରସ୍ୱରରେ ପଚାରିଲେ, ମୋତେ ଚିହ୍ନି ପାରୁଛନ୍ତି ? ଅନେକଦିନ ତଳେ ଥରେ ଦେଖା ହୋଇଥିଲା ।

ହାସମଣି ଚିହ୍ନି ପାରିଲା ନାହିଁ । ଲଜ୍ଜାରେ ମୁହଁ ନାଲି ପଡ଼ିଗଲା । ସେ ପ୍ରତି ନମସ୍କାର କଲା । ଖଣ୍ଡେ ଚଉକି ଟାଣିଆଣି ତହିଁରେ ବସିଲା । ଉଷା ଚଉକି ପଛରେ ତା ପିଠିକୁ ଆଉଜି ଠିଆ ହେଲା ।

ଚିନ୍ତା କରି ଧୀରେ ଧୀରେ ହାସମଣି କହିଲା, ଚିହ୍ନି ପାରୁ ନାହିଁ, ମତେ କ୍ଷମା କରନ୍ତୁ । କେଉଁଠି ଆପଣଙ୍କ ସଙ୍ଗେ ମୋର ଦେଖା ହୋଇଥିଲା ମନେପଡ଼ୁ ନାହିଁ ।

ବ୍ରଜକିଶୋର କହିଲେ, ଚିହ୍ନିବା ଏଡ଼େ ସହଜ ନୁହେଁ । ବହୁଦିନ ତଳେ ରେଲଗାଡ଼ିରେ ମୋ ସଙ୍ଗରେ ଆପଣଙ୍କର ଦେଖା ହୋଇଥିଲା, ବୋଧହୁଏ ଭୁଲିଗଲେଣି ।

ହୀରା ବିସ୍ମିତା ହୋଇ ପଚାରିଲା, ରେଲଗାଡ଼ିରେ ? ବ୍ରଜକିଶୋରଙ୍କର ମୁହଁକୁ ଭଲକରି ଚାହିଁ ପୁଣି କହିଲା, ଏବେ ଚିହ୍ନିଲି, ବୁଝିଲି । ଆପଣ ମୋର ପ୍ରଣାମ ଗ୍ରହଣ କରନ୍ତୁ । ଆପଣ ଚନ୍ଦ୍ରକିଶୋରବାବୁ । ବଞ୍ଚି ଥାଉଣୁ ମୁଁ ଆପଣଙ୍କର ଋଣ ଶୁଝି ପାରିବି ନାହିଁ । ଥରଟିଏ ମାତ୍ର ଦେଖା । ଆପଣଙ୍କର ବାହାରର ରୂପ ସିନା ପାସୋରିଗଲି; ଆପଣଙ୍କର ହୃଦୟର ବିଶାଳତା, ମନର ଉଦାରତା ମୋର ସ୍ମୃତିତଳେ ଗୋଟିଏ ଉଜ୍ଜ୍ୱଳ ପ୍ରଦୀପ ଜାଳି ଦେଇଛି ।

ବ୍ରଜକିଶୋର ମନକୁ ମନ ହସି ଚିନ୍ତା କଲେ । ବେଶ୍ ମନେ ରଖିଛନ୍ତି ତ ! ନାମଟାର ପରିବର୍ତ୍ତନ ହେଉଛି—ବ୍ରଜକିଶୋରରୁ କିଶୋରଚନ୍ଦ୍ର, କିଶୋରଚନ୍ଦ୍ରରୁ, ଚନ୍ଦ୍ରକିଶୋର, କାଲି ହୁଏ ତ ଚନ୍ଦ୍ରମଣି ହେବ । ନାମର ପରିବର୍ତ୍ତନ ବଡ଼ କ୍ଷିପ୍ର ଗତିରେ ଚାଲିଛି !

ବ୍ରଜକିଶୋର କହିଲେ, ମୋର ନାମ କିଶୋରଚନ୍ଦ୍ର ବୋଲି ମୁଁ କହିଥିଲି ! ମୁଁ ବ୍ରଜକିଶୋରଙ୍କ ବନ୍ଧୁ । ବହୁଦିନ ତଳର କଥା, ଆପଣ ଭୁଲି ଯାଇଛନ୍ତି, ଅତି ସ୍ୱାଭାବିକ । ଆପଣଙ୍କର ନାମ ମୁଁ ଭୁଲି ପାରିନାହିଁ । ତେବେ, ଆପଣ ହୀରାମଣି ଦେବୀ ଆସୁଛନ୍ତି, ଆଗରୁ ମୁଁ ଯଦି ଏହା ଜାଣି ନ ଥାନ୍ତି ମୁଁ ଆପଣଙ୍କୁ ଚିହ୍ନି ପାରି ନ ଥାନ୍ତି ।

ହୀରାମଣି ଲଜ୍ଜିତା ହେଲା । ସେ ଜାଣେ, ନନା, ବୋଉ ଓ ଶାଶୁ ଶ୍ୱଶୁରଙ୍କ ପାଖରୁ ଦୂରେଇ ଆସି ସେ ଏଠାରେ ନିଶ୍ଚିନ୍ତରେ, ମନ ଆନନ୍ଦରେ ରହୁଛି । ନୂଆ ବାପ ମା ଓ ନୂଆ ଭଉଣୀଗୁଡ଼ିକଙ୍କର ମେଳରେ ଥାଇ ସେ ତାର ଅତୀତକୁ ଭୁଲି ପାରିଛି । ତାର ସ୍ୱାସ୍ଥ୍ୟ ବଦଳିଛି, ରୂପ ଓ ବେଶଭୂଷା ବଦଳିଛି । ମୁହଁରେ ରଙ୍ଗ ଉଠୁଥାଇ ସେ ଧୀରେ ଧୀରେ କହିଲା, ଆପଣ ମୋ କବିତା ଖାତାଟି ବ୍ରଜବାବୁଙ୍କ ପାଖରୁ ଆଣିଦେବେ ବୋଲି କହିଥିଲେ, ଦୟାକରି ଆଣିଛନ୍ତି କି ?

ବ୍ରଜ ସେଖଣ୍ଡିକ ଦେବାକୁ ମନା କଲା । ମୁଁ ଚୋରାଇ ଆଣିବାକୁ ଚେଷ୍ଟା କରିଥିଲେ ତା ହାତରୁ ଆଣି ପାରିଥାନ୍ତି, କିନ୍ତୁ ଜାଣିଲି ତହିଁରେ କିଛି ଲାଭ ହେବ ନାହିଁ । ଆପଣଙ୍କ ଉଦ୍ଦେଶ୍ୟ ତଦ୍ଦ୍ୱାରା ସାଧିତ ହୋଇ ପାରିବ ନାହିଁ । ବ୍ରଜ କବିତା-ଗୁଡ଼ିକ ମୁଖସ୍ଥ କରି ପକାଇଛି । ମୁଁ ତ ଆଉ ତାର ମନକୁ ଚୋରାଇ ଆଣି ଆପଣଙ୍କୁ ଦେଇ ପାରିବି ନାହିଁ ?

ଆପଣ ତେବେ ପାରିଲେ ନାହିଁ ?

ଠିକ୍ ତାହା ନୁହେଁ, ନ ପାରିଥିଲେ ସାହସ କରି ଦେଖା କରିବାକୁ ଆସି ନ ଥାନ୍ତି । ବ୍ରଜ ପ୍ରତିଜ୍ଞା କରିଛି ଯେ, ସେ ଆପଣଙ୍କ କବିତା ଆଉ ଛପାଇବାକୁ ଦେବ ନାହିଁ ।

ମୋ ଖାତା ?

ଖାତା ତ ଆପଣ ଚିରି ନଷ୍ଟ କରି ଦେବାକୁ ପକାଇ ଦେଇଥିଲେ । ବ୍ରଜ କହି ପଠାଇଛି, ସେଥିରେ ଆପଣଙ୍କର ଅଧିକାର ନାହିଁ । ବୋଧହୁଏ ଖାତା ନଷ୍ଟ ହୋଇଯାଇଛି, ଅନ୍ତତଃ ଆପଣଙ୍କୁ ତାହାହିଁ ମନେ କରିବାକୁ ହେବ ।

ହୀରା ଆଉ କଣ କହିବ ବୁଝି ପାରିଲା ନାହିଁ । ସେ ହତାଶ ହେଲା, ଶୂନ ହୋଇ ରହିଲା । ଉଷାକୁ ଡାକରା ପଡ଼ିବାରୁ ସେ ଧୀରେ ଧୀରେ ସେଠାରୁ ଚାଲିଗଲା । ହୀରାମଣି ଅସ୍ୱସ୍ତି ଅନୁଭବ କଲା । ଆଗରେ ଯୁବକ କିଶୋରଚନ୍ଦ୍ର, ତାଆରି ମୁହଁକୁ ହସ ହସ ହୋଇ ଚାହିଁ ରହିଛନ୍ତି । ଦେଖୁଛନ୍ତି ପରି ରେଲଗାଡ଼ି ଭିତରର ସେହି ନିଃସହାୟା ବିତାଡ଼ିତା ବିଚଳିତା ଅଶ୍ରୁମୁଖୀ ବିଧବା ତରୁଣୀକୁ ଯାହାକୁ ସାହାଯ୍ୟ କରି ସେ ଲଜ୍ଜା, ଅପମାନ ଓ ନିର୍ଯ୍ୟାତନାରୁ ଉଦ୍ଧାର କରିଥିଲେ, ନିଜେ ଆଣି ଏହି ପବିତ୍ର ଆଶ୍ରମରେ ଆଶ୍ରା ଦିଆଇଥିଲେ । ଦେଖୁଛନ୍ତି ସେ ସେହି ତରୁଣୀର ପରିବର୍ତ୍ତନ !

ହୀରାମଣି କହିଲା, ଯାହା ହେବାର ତ ହୋଇଛି, ଦୟାକରି ବ୍ରଜବାବୁଙ୍କୁ କହିବେ ମୋ ଗୀତଗୁଡ଼ିକ ମନରୁ ସେ ପୋଛି ପକାଇବେ । ପରର ପଦାର୍ଥକୁ ଯେଉଁମାନେ ଆପଣାର କରିବାକୁ ବସନ୍ତି ସେମାନଙ୍କୁ ମୁଁ ଘୃଣା କରେ ।

କିଶୋର ଉତ୍ତର ଦେଲେ, ଆପଣ ସିନା ପର ବୋଲି ମଣନ୍ତି, ବ୍ରଜ ଆପଣଙ୍କୁ ଅତି ଆପଣାର ପରି ମନେ କରେ । ମୁଁ ଦେଖିଛି, ଆପଣଙ୍କ ବିଷୟରେ କଥା ପଡ଼ିଲେ ତାର ଚକ୍ଷୁ ସଜଳ ହୋଇ ଉଠେ । ମୁଁ ଦିନେ ଏହାର କାରଣ ପଚାରିଥିଲି । ସେ ବ୍ୟଥାତୁର ହୋଇ କହିଲା, ଭାଇରେ, ହୀରାମଣିଙ୍କୁ ମୁଁ କେବେହେଲେ ଦେଖି ନାହିଁ, କିନ୍ତୁ ତାଙ୍କୁ ମୁଁ ମୋ ପ୍ରାଣରେ ଅନୁଭବ କରିଛି, ସର୍ବଦା କରୁଛି । ମୁଁ କହିଲି, ହୀରାମଣି ତୋ ଉପରେ ବିରକ୍ତ । ସେ ଅତି ଦୁଃଖରେ କହିଲା, ଅବଶ୍ୟ ତାହା ମୋର ଦୁର୍ଭାଗ୍ୟ ! ତାଙ୍କର ଅନିଷ୍ଟ ହେଉ, ଏପରି ଚିନ୍ତାକରି ମୁଁ କିଛି କରି ନ ଥିଲି । ସେ ଯଦି ସେପରି ମନେ କରୁଛନ୍ତି, ତାଙ୍କର ସବୁ ଦୁଃଖ ଅସମ୍ମାନ ଅପମାନର ବୋଝ ମୁଁ ମୋ ମୁଣ୍ଡ ଉପରକୁ ଟେକି ନେବାକୁ ପ୍ରସ୍ତୁତ ଅଛି । କୌଣସି ସମାଜକର୍ତ୍ତାଙ୍କର ଆପତ୍ତି ଅଭିଯୋଗକୁ ମୁଁ ଶୁଣିବି ନାହିଁ । ବ୍ରଜକିଶୋର ତୀକ୍ଷ୍ଣ ଦୃଷ୍ଟିରେ ହୀରାକୁ ଚାହିଁ ରହିଲେ ।

ହୀରାମଣି ତାଙ୍କର ଉଦ୍ଦେଶ୍ୟ ବୁଝିପାରିଲା । କେତେଦିନ ତଳେ ନିଜେ ରାଧାଗୋବିନ୍ଦ ବାବୁ ପ୍ରକାରାନ୍ତରରେ ଯେଉଁ ବିଷୟଟି ଉଠାଇ ଥିଲେ କିଶୋର-ବାବୁଙ୍କର ପ୍ରସ୍ତାବ ତାରି ପ୍ରତିଧ୍ୱନି । ହୀରା ନିଃସଂକୋଚରେ ରାଧାଗୋବିନ୍ଦ ବାବୁଙ୍କୁ ଉତ୍ତର ଦେଇଥିଲା ଯେ ତାଙ୍କର ପ୍ରସ୍ତାବକୁ ସେ ଗ୍ରହଣ କରି ପାରିବ ନାହିଁ । ସମାଜର ନିଃସହାୟାମାନଙ୍କର ସେବାରେ ଜୀବନ କଟାଇ ନିଜକୁ ଧନ୍ୟ କରିବା ଏବଂ ଦେଶ ଓ ଦଶର ମଙ୍ଗଳ ପାଇଁ ଜୀବନ ଉତ୍ସର୍ଗ କରିବା ହେଉଛି ତାର ପଣ ।

ବ୍ରଜକିଶୋର କିଶୋର ବାବୁଙ୍କୁ ତା ନିକଟକୁ ଯେଉଁ ଉଦ୍ଦେଶ୍ୟରେ ପଠାଇଛନ୍ତି ସେ ବିଷୟ ଅଛପା ରହିଲା ନାହିଁ । ସେ ମୁହୂର୍ତ୍ତେ କିଶୋରଚନ୍ଦ୍ରଙ୍କୁ ଅନାଇଲା । ଆଗନ୍ତୁକଙ୍କର ଓଠରେ ହସ ଲାଖି ରହିଛି । ଆଖି ଦିଓଟିରୁ ଆଗ୍ରହ ଓ ଉଦ୍‌ବିଗ୍ନତାର ଆଭା ଝରି ପଡୁଛି । ସହସା ହୀରାମଣିର ମନରେ ଅଜଣା ସନ୍ଦେହର ଢେଉଟିଏ ମଥା ଟେକିଲା, ପ୍ରଶ୍ନେଇ ଉଠିଲା । ଆଗନ୍ତୁକ କିଶୋରଚନ୍ଦ୍ର ନିଜେ ବ୍ରଜକିଶୋର ନୁହନ୍ତି ତ ? ମନରେ ଏହି ପ୍ରଶ୍ନ ଉଠିବାରୁ ଗୋଟିଏ ଅଜଣା ଭୟ ଓ ଉତ୍ତେଜନାରେ ତାର ସାରା ଶରୀର ଥରି ଉଠିଲା, ଲଜ୍ଜାରେ ମୁଖ ଆରକ୍ତ ହେଲା । ଦୃଷ୍ଟି ହେଲା ଅବନତ । କପାଳରେ ବିନ୍ଦୁ ବିନ୍ଦୁ ଘର୍ମ ଫୁଟି ଉଠିଲା । ପଳାଇ ଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ସେ ଉଠି ପାରିଲା ନାହିଁ ।

ବ୍ରଜକିଶୋର ତାର ମନର ସନ୍ଦେହକୁ ଅନୁମାନ କରି କହିଲେ, ଆପଣଙ୍କ ମୁହଁରୁ ମୋ ବନ୍ଧୁ ବ୍ରଜର ପ୍ରସ୍ତାବର ଉତ୍ତର ଶୁଣି ମୁଁ ତାକୁ କହିଲେ ସେ ଏ ବିଷୟରେ ଉଦ୍‌ଯୋଗୀ ହେବ । ଆପଣଙ୍କର ଉତ୍ତରକୁ ଅପେକ୍ଷା କରି ଉତ୍କଣ୍ଠିତ ହୋଇ ସେ ବସିଥିବ । ଏ ମଧ୍ୟରେ ଅନେକ ଆଡ଼ୁ ତା ବିଷୟରେ ପ୍ରସ୍ତାବ ଆସିଲାଣି, କିନ୍ତୁ ସେ ପ୍ରତିଜ୍ଞା କରିଛି ଯେ ବିଧବା ବିବାହ କରିବ । ତେଣୁ ସବୁ ପ୍ରସ୍ତାବକୁ ସେ ଅଗ୍ରାହ୍ୟ କରିଛି । ମୁଁ ଜାଣେ ସେ ଆପଣଙ୍କୁ ଲାଭ କଲେ ସୁଖୀ ହୋଇ ପାରିବ ।

ହୀରାମଣିର ଛାତିରେ ଛନକା ପଶିଲା । କାନ୍ଦିବାକୁ ତାର ମନ ହେଲା । ଭାବିଲା, କିଶୋରଚନ୍ଦ୍ର ଯିଏ ପଛେ ହୋଇଥାଆନ୍ତୁ, ଅତି ଅଭଦ୍ରଭାବରେ ସେ ତାକୁ ଏପରି ପ୍ରଶ୍ନ ପଚାରିଛନ୍ତି । ସାହସର ସୀମା ଅଛି । ସେ ସୀମା କିଶୋରବାବୁ ଲଙ୍ଘନ କରିଛନ୍ତି । ହୀରାର କଣ୍ଠ ରୁଦ୍ଧ ହୋଇ ଆସିଲା । ଆଖିରେ ଛଳ ଛଳ ଲୁହ । ମୁହୂର୍ତ୍ତେକ କିଶୋରବାବୁଙ୍କୁ ଚାହିଁଲା । ସେ ଅନୁଭବ କଲା, ଯେପରି କିଶୋରବାବୁଙ୍କର ଚକ୍ଷୁଦ୍ୱୟ ମଧ୍ୟ ସଜଳ ହୋଇଛି । ଥରିଲା କଣ୍ଠରେ ସେ କହିଲା, କିଶୋରବାବୁ, ମୋର ଅନେକ କାମ ଅଛି, ଆପଣ ଏବେ ଆସନ୍ତୁ । ଆଉ କେବେ ଆସିଲେ କିମ୍ବା ନିଜେ ବ୍ରଜବାବୁଙ୍କୁ ପଠାଇ ଦେଲେ ମୁଁ ତାଙ୍କର ପ୍ରସ୍ତାବର ଜବାବ ଦେବି । ମୁଁ ଭାବୁଛି, ଉଷା ତାଙ୍କର ମନମାଫିକ ହେବ । ନମସ୍କାର । ଏତିକି କହି ସେ କମ୍ପିତ ପଦରେ ଉଠି ଚାଲିଗଲା । ହୀରାର ବ୍ୟବହାର ଦେଖି ଏବଂ କଥା ଶୁଣି ବ୍ରଜକିଶୋର ହତାଶ ହୋଇ ଫେରିଲେ । ତାଙ୍କର ଆଶାର ସୌଧ ଭାଙ୍ଗି ପଡ଼ିଲା । ସେ ଚିନ୍ତା କରିବାକୁ ଲାଗିଲେ, ଉଷା ବୋଧହୁଏ ଆଉ ବାଳିକାଟି । ସୁନ୍ଦରୀ ହେଉ କି ଅସୁନ୍ଦରୀ ହେଉ, ଶିକ୍ଷିତା ଅଶିକ୍ଷିତା ଯାହା ହେଉ, ତାକୁ ସେ ବିବାହ କରିବେ ନାହିଁ । ଯେଉଁ ପଦ୍ୟଗୁଡ଼ିକ ସେ ମୁଖସ୍ଥ କରିଛନ୍ତି ସବୁ ଭୁଲି ଯିବାକୁ ଚେଷ୍ଟା କରିବେ । ଜଣେ ଗ୍ରାମ୍ୟ ବାଳିକାର କି ଅସୀମ ଧୈର୍ଯ୍ୟ, କି ଆତ୍ମବିଶ୍ୱାସ ! ହାଣ୍ଡିଶାଳରେ, ଘରକୋଣରେ, ଅନ୍ଧାରରେ ବଢ଼ି ମଧ୍ୟ ପରିମାର୍ଜିତ ତାର ଶିକ୍ଷା ଓ ବ୍ୟବହାର, କେଡ଼େ ନିର୍ଭୀକ ଓ ବାକ୍ୟରେ ସଂଯତ ସେ ।

କଥା ତ କହନ୍ତି ସମସ୍ତେ, କିନ୍ତୁ ନାରୀ ହୋଇ କାହାର କଥାରେ ଏପରି ଶକ୍ତି ଅଛି ? ଏତେ ଜଗି ଭାଷାକୁ ଏତେ କ ଓଜନ କରି କହିପାରନ୍ତି କେତେଜଣ ? କାହାର ଚକ୍ଷୁରେ ଏପରି ଜ୍ୱଳନ୍ତ ଦୀପ୍ତି ସେ ଦେଖି ନାହାନ୍ତି । ସୁନ୍ଦରୀ ତ ଅନେକ ଅଛନ୍ତି, କିନ୍ତୁ ସୌନ୍ଦର୍ଯ୍ୟ ଭିତରୁ ତାର ଯେଉଁ ସରଳତା ଫୁଟି ଉଠିଲା, ବ୍ରଜକିଶୋର ମୁଗ୍ଧ ହେଲେ ।

ସାତଦିନ କଟିଲାଣି । ବ୍ରଜକିଶୋର ହାରି ବିଷୟରେ ଆଉ ଚିନ୍ତା କରିବାକୁ ଅବସର ପାଇ ନାହାନ୍ତି । ଦୋକାନ କାମରେ ଅତି ବ୍ୟସ୍ତ ରହିଲେ ।

ବ୍ରଜ ଦୋକାନର କାମ ସାରି ହିସାବପତ୍ର ମିଳାଇ ମନ ବଦଳାଇବାକୁ ସୁବିଖ୍ୟାତ, କର୍ତ୍ତବ୍ୟନିଷ୍ଠ ଓ ସ୍ନେହୀ ଡାକ୍ତର କୁଳମଣିଙ୍କ ଦୋକାନରେ ଉପସ୍ଥିତ ହେଲେ । କୁଳମଣିବାବୁ ଦୋକାନ ବନ୍ଦକରିବାକୁ ଉଠିଥିଲେ, ବ୍ରଜଙ୍କୁ ଦେଖି ସେ ପୁଣି ବସିଲେ । ବ୍ରଜ ଟେବୁଲ ପାଖରେ ଖଣ୍ଡେ ଚଉକିରେ ବସି ରାଜନୀତି ସମ୍ବନ୍ଧରେ ପଦେଅଧେ ଆରମ୍ଭ କଲେ । ବିଷୟ ହେଉଛି, ଭାରତର ଜାତୀୟ ଋଣ । ଏହି ସମୟରେ ପଣ୍ଡିତ ମହାଶୟ ଆସି ସେଠାରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ଡାକ୍ତରବାବୁ ହସ ହସ ମୁହଁରେ ନମସ୍କାର କରି ବସିବାକୁ ଆସନ ଦେଖାଇ ଦେଲେ ।

ପଣ୍ଡିତ ମହାଶୟଙ୍କ ମନରେ ସରାଗ ନାହିଁ, କେଉଁ ଗମ୍ଭୀର ଚିନ୍ତା ତାଙ୍କର ଚିର-ଗମ୍ଭୀର ମୁଖଟିକୁ ଘୋଡ଼ାଇ ରଖିଛି । ସେ ବ୍ୟସ୍ତ ହୋଇ କହିଲେ, କୁଳମଣି, ତମେ ଯେଉଁ ଔଷଧ ଦେଇଥିଲ, ତାକୁ ପ୍ରୟୋଗ କରି ଆଜି ସନ୍ଧ୍ୟା ପର୍ଯ୍ୟନ୍ତ ରୋଗର ଯତ୍‌ସାମାନ୍ୟ ଉପଶମ ହୋଇଥିଲା, କିନ୍ତୁ ସନ୍ଧ୍ୟା ସମୟରୁ ଜ୍ୱରର ଉତ୍ତାପ ପ୍ରବଳତର ହୋଇଛି, ପୂର୍ବପରି ସେ ବାଇବାଇଲେଇ ଉଠୁଛନ୍ତି ।

ଆପଣଙ୍କ ସମ୍ବନ୍ଧୀଙ୍କର ପ୍ରକୃତି କିପରି ଅଛି ?

ସାମାନ୍ୟ ଭଲ ଥିଲା, କିନ୍ତୁ ଆଜି ସକାଳେ ଭଗବାନ ମିଶ୍ରେ ମୋ ସଙ୍ଗେ କଳହ କରି ବିରକ୍ତ ହୋଇ ଅନ୍ୟତ୍ର ବସା କରି ରହିବାକୁ ଚାଲି ଯାଇଛନ୍ତି । ତାହା ବରଂ ଉଭୟଙ୍କ ପକ୍ଷରେ ମଙ୍ଗଳକର ହୋଇଛି । ବନ୍ଧୁ ବୋଲି ଜାଣି ମଧ୍ୟ ପ୍ରକାଶ୍ୟ ଭାବରେ ସେ ମୋତେ ସାହାଯ୍ୟ କରୁ ନ ଥିଲେ । କଟକ ସହରରେ ମୋ ପରି ଲୋକ ପକ୍ଷରେ ଦୁଇ କୁଟୁମ୍ବର ବ୍ୟୟଭାର ବହନ କରିବା କଷ୍ଟକର ।

କଳହର କାରଣ ?

ବୃଦ୍ଧ ବୟସରେ ସେ ବିବାହ କରିଥିଲେ । କୌଣସି ଅପ୍ରକାଶ୍ୟ କାରଣରୁ ତାଙ୍କର ସ୍ତ୍ରୀଙ୍କୁ ସେ ପିତୃଗୃହକୁ ପଠାଇ ଦେଇଛନ୍ତି । ମୋର ବିଧବା କନ୍ୟାକୁ ସେହିପରି ଦିନେ ଅସଚ୍ଚରିତ୍ରା ଆଖ୍ୟା ଦେଇ ମୋ ଗୃହକୁ ପଠାଇ ଦେଇଥିଲେ । ପତ୍ର ଲେଖିଥିଲେ ଯେପରି ସେ ଯଥେଷ୍ଟ ପ୍ରମାଣ ପାଇଛନ୍ତି । ଫଳରେ, ତାକୁ ମଧ୍ୟ ଦିନେ ମୋ ଅଜ୍ଞାତରେ ଘରୁ ବାହାରିଯିବାକୁ ପଡ଼ିଲା । ମୋର ସ୍ତ୍ରୀ ଏସବୁ ବିଷୟରେ

ଉତ୍ତେଜିତ ହୋଇ ମିତ୍ରଙ୍କୁ ତିରସ୍କାର କଲେ । ସେ ଧମକ ଦେଇଯାଇଛନ୍ତି ଯେ ମୋ ନାମରେ ମୋକଦ୍ଦମା କରିବେ ।

କାହିଁକି ?

କାଲି ସନ୍ଧ୍ୟାରେ ସମ୍ପୂର୍ଣ୍ଣ ତାଙ୍କ ପିଲାଟିକୁ ନେଇ ଗୋପାଳଜୀଙ୍କ ମନ୍ଦିରକୁ ଦର୍ଶନ କରିବାକୁ ଯାଇଥିଲେ । କଟକ ସହର, କେତେ ଲୋକ ଆସୁଛନ୍ତି, ଯାଉଛନ୍ତି । କାହାର ଗରଜ ପଡ଼ିଛି ସେସବୁର ତାଲିକା ରଖିବ ? ମନ୍ଦିରକୁ ଅନେକ ସ୍ତ୍ରୀଲୋକ ଦର୍ଶନ କରିବାକୁ ଆସିଥିଲେ । ତାଙ୍କର ଶିଶୁପୁତ୍ର ନାଥ କେଜାଣି କାହାକୁ ଦେଖି ନୂଆବୋହୂ, ନୂଆବୋହୂ ବୋଲି ଡାକ ପକାଇଲା । ପର ଘରର ପିଲା କୁଟୁମ୍ବ, ତାଙ୍କୁ ଏପରି ଡାକିବା ଅନ୍ୟାୟ ମନେ କରି ସେ ନାଥର ପାଟି ବନ୍ଦ କରି ଧରିଲେ । ସ୍ତ୍ରୀଲୋକମାନଙ୍କ ଆଡ଼କୁ ଚାହିଁ ଦେଖିଲେ, ମୋର କନ୍ୟା ହୀରାମଣି ପରି କିଏ ଜଣେ କରୁଣ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁଛି । ତା ଚକ୍ଷୁରେ କୁଆଡ଼େ ସେ ଲୋତକ ଦେଖିଲେ ।

ସେମାନେ ଗାଡ଼ିରେ ବସି କେଉଁଆଡ଼େ ଚାଲିଗଲେ । ମିତ୍ରେ କହୁଛନ୍ତି, ହୀରାମଣି ନିଶ୍ଚୟ କଟକରେ ଅଛି । ସେ ଯେଉଁଠି ଥାଉ, ମିତ୍ରେ କୁଆଡ଼େ ଲୋକଙ୍କ କଥାରେ ଭ୍ରୂକ୍ଷେପ ନ କରି ତାକୁ ଘରକୁ ନେବେ । ମୁଁ କହିଲି, ଦେଖନ୍ତୁ, ଆପଣ ଯେତେବେଳେ ତାକୁ ଘରୁ ତଡ଼ି ଦେଇଛନ୍ତି, ଆପଣଙ୍କର ତା ଉପରେ ଆଉ ଅଧିକାର ନାହିଁ । ମୋ ଝିଅ ପ୍ରତି ମୁଁ ଆଖି ବୁଜି ଅନ୍ୟାୟ କରିଛି, ତାକୁ ପାଇଲେ ମୋ ପାଖରୁ ଆଉ କେହି ନେଇ ପାରିବେ ନାହିଁ । ତା ପାଇଁ ମୁଁ ବାର ଲୋକଙ୍କଠାରୁ ବାର ନିନ୍ଦା ସହୁଛି । ଏହି କଥାରେ ତ କଜିଆ ଲାଗିଲା । ସେ ପୁଣି କହିଲେ, ଯଦି ଆବଶ୍ୟକ ପଡ଼େ, ସେ ମୋ ନାମରେ ନାଲିସ୍ କରି ତାଙ୍କର ଅଧିକାର ସାବ୍ୟସ୍ତ କରିବେ ।

ଆପଣ ଜାଣେ କହୁଥିଲେ, ହୀରାମଣି ଦେବୀ ନାରୀମଙ୍ଗଳ ସମିତିରେ ଆଶ୍ରୟ ନେଇଛନ୍ତି ? ଡାକ୍ତର ପଚାରିଲେ ।

ମୁଁ ସେପରି ଶୁଣିଥିଲି, ଏ ମଧ୍ୟରେ କେତେଥର ତା ସଙ୍ଗେ ଦେଖା କରିବାକୁ ଯାଇଥିଲି, କିନ୍ତୁ ସମ୍ପାଦିକା ଅନୁମତି ଦେଲେ ନାହିଁ ।

କୌତୂହଳୀ ହୋଇ ବ୍ରଜକିଶୋର ପଚାରିଲେ, ସମ୍ପାଦିକାଙ୍କ ସଙ୍ଗେ ଦେଖା ହୋଇଥିଲା କି ପଣ୍ଡିତ ମହାଶୟ ?

ନା, ଦ୍ୱାରରକ୍ଷକ ହାତରେ ସେ ବାରଣ କରି ସମ୍ବାଦ ପଠାନ୍ତି । ଶୁଣିଲି ସମ୍ପାଦିକାଙ୍କ ନାମ ମଧ୍ୟ ହୀରାମଣି ଦେବୀ । ସେ ଆଉ କେହି ହୋଇଥିବେ ।

ହୀରାମଣି ଥାଉ କି ନ ଥାଉ, ତା ପ୍ରତି ଆପଣ ଯେଉଁ ବ୍ୟବହାର କରିଛନ୍ତି, ସେ ଆପଣଙ୍କ ପାଖକୁ ଫେରିଯିବ ଏପରି ଆଶା କରିବା ବୃଥା ।

ପଣ୍ଡିତେ କହିଲେ, ମୁଁ ଅନୁତପ୍ତ । ମୁଁ ଖବର ପଠାଇଥିଲି, ଖାଲି ଥରେ ତାକୁ ଦେଖିବି, କିନ୍ତୁ ସମ୍ପାଦିକା ଉତ୍ତର ପଠାଇଲେ ଦ୍ୱାରରକ୍ଷକ ହାତରେ— ଯେଉଁଦିନ ହୀରାମଣିକୁ ଘରୁ ବାହାର କରିଦେଲେ, ସେଇ ଦିନରୁ ସେ ମରିଛି ବୋଲି ଗ୍ରହଣ କରନ୍ତୁ ।—ମୁଁ ହତାଶ ହୋଇ ଫେରିଲି ଡାକ୍ତରବାବୁ ।

କୁଳମଣିବାବୁ କହିଲେ, ଆପଣଙ୍କୁ ମୁଁ କହିଥିଲି, ରାଧାଗୋବିନ୍ଦବାବୁଙ୍କ ସଙ୍ଗେ ଦେଖା କରିବେ ।

ପଣ୍ଡିତ କହିଲେ, ଦେଖା କରିଥିଲି । ସେ ସବୁକଥା ଶୁଣି ହସିଲେ । କହିଲେ, ଯଦି ହୀରାମଣିକୁ ପୁନର୍ବାର ବିବାହ ଦେବାକୁ ପ୍ରସ୍ତୁତ ତ କୁହନ୍ତୁ, ତା ହେଲେ ଦେଖା ହେବ, ନୋହିଲେ ଧୀରେ ଧୀରେ ବାଟ ଦେଖନ୍ତୁ । ଆଚ୍ଛା କହି ତ କୁଳମଣି, ଏହା କି ନ୍ୟାୟସଙ୍ଗତ କଥା ? ବ୍ରାହ୍ମଣଘର ଝିଅ, ଥରେ ବିଧବା ହୋଇ ଆଉ ଥରେ ବିବାହ କରିବ କିପରି ? ମୁଁ ଚୁପ୍ ହୋଇ ଫେରିଲି ।

ବ୍ରଜକିଶୋର ଓ କୁଳମଣି ଏକ ସଙ୍ଗେ ହସି ଉଠିଲେ । ପଣ୍ଡିତେ ଅପ୍ରସ୍ତୁତ ହୋଇ ଗମ୍ଭୀର ହେଲାରୁ କୁଳମଣିବାବୁ କହିଲେ, ଏ ସବୁ କଥା ବୋଧହୁଏ ଆପଣଙ୍କ ସ୍ତ୍ରୀ ଶୁଣିଛନ୍ତି । ତାଙ୍କର ମାନସିକ ଉତ୍ତେଜନା ବଢ଼ି ଯାଇଛି । ଆଜି ଏତେ ରାତିରେ ମୁଁ ଆଉ ଯାଇ ପାରିବି ନାହିଁ । କାଲି ବଡ଼ସକାଳୁ ଯାଇ ଦେଖିବି ଓ ଔଷଧର ବ୍ୟବସ୍ଥା କରି ଆସିବି । ମୋର ମତ, ହୀରାମଣିଙ୍କ ସଙ୍ଗେ ଦେଖା ହେଲେ ବିନା ଔଷଧରେ ସେ ଆରୋଗ୍ୟ ହୋଇଯିବେ ।

ଦେଖା ହେବା ଯେ କଷ୍ଟ । ମୋର ସ୍ତ୍ରୀ ଶଯ୍ୟାଶାୟିନୀ, ପୁଣି ସମ୍ପାଦିକା ଅନୁମତି ଦେଉ ନାହାନ୍ତି ।

ବ୍ରଜକିଶୋର କହିଲେ, ବିଶେଷ କଷ୍ଟ ନୁହେଁ । ମୁଁ ଜାଣେ, ନାରୀମଙ୍ଗଳ ସମିତିର ସମ୍ପାଦିକା ହେଉଛନ୍ତି ଆପଣଙ୍କର ସେକାଳର ବିଧବା କନ୍ୟା ଶ୍ରୀମତୀ ହୀରାମଣି ଦେବୀ । ଯଦି ସେ ଜାଣନ୍ତି ଯେ ତାଙ୍କର ମାତା ଶ୍ରୀମତୀ ନେତ୍ରମଣି ଦେବୀ କେବଳ ତାଙ୍କୁ ଭାବି ଭାବି ମୃତ୍ୟୁ ମୁଖରେ ପଡ଼ିଛନ୍ତି, ସେ କାଳବିଳମ୍ବ ନ କରି ନିଜେ ମାତାଙ୍କୁ ଦେଖିବାକୁ ଆସିବେ ।

ପଣ୍ଡିତେ ବିସ୍ମିତ ହୋଇ ପଚାରିଲେ, ଆପଣ ମୋ ସ୍ତ୍ରୀଙ୍କୁ ଚିହ୍ନିଲେ କିପରି ?

ବ୍ରଜ ମୁରୁକେଇ ହସି କହିଲେ, ପଣ୍ଡିତ ରଥଶର୍ମାଙ୍କ ପରି ବିଦ୍ୱାନ ଓ ବିଖ୍ୟାତ ବ୍ୟକ୍ତିଙ୍କୁ ନ ଚିହ୍ନେ କିଏ ? ମୋର ନାମ ହିଁ ବ୍ରଜକିଶୋର । ମୁଁ ଇନ୍ଦିରା ଦେବୀଙ୍କର ଦେବର । 'ଆପଣମାନେ ପୁରୀରୁ ଫେରିଲା ପରେ ମୋର ଭାଉଜ ମୋ ପାଖକୁ ସବୁ ବୃତ୍ତାନ୍ତ ଲେଖି ଦୁଃଖପ୍ରକାଶ କରି ପତ୍ର ଦେଇଥିଲେ । ଯାହା ସେ ଆପଣମାନଙ୍କୁ କହିଥିଲେ ସବୁ ଅକ୍ଷରେ ସତ୍ୟ । ସମାଜ ସମାଜ ହୋଇ ଆପଣମାନେ ପାଗଳ

ହୋଇଛନ୍ତି । କୁସଂସ୍କାରକୁ ଧର୍ମ ଓ ନିଷ୍ଠା ବୋଲି ଗ୍ରହଣ କରିଛନ୍ତି । ବୃଥା ଦୋଷାରୋପ କରି ହୀରାମଣିକୁ ଘରୁ ତଡ଼ିଛନ୍ତି । ସେ ଦୁଷ୍ଟଚରିତ୍ରା କୁଳକଳଙ୍କିନୀ ନୁହେଁ କି ତା ସଙ୍ଗେ ଜଣାଶୁଣା ନ ଥିବା ବ୍ରଜକିଶୋର ଦୁଷ୍ଟଚରିତ୍ର ଓ ପାପାଗ୍ରସ୍ତ ନୁହେଁ । ହୀରାମଣି ଭଲରେ ଅଛି, ଭଲରେ ରହିବ, ଆପଣ ନିଶ୍ଚିନ୍ତ ରହନ୍ତୁ । ତାର ମା ଅର୍ଥାତ୍ ମୋ ମାଉସୀଙ୍କୁ ଏହା ଜଣାଇ ଦେବେ ।

ରଥଣମୀ ନିର୍ବାକ୍ ହୋଇ ବ୍ରଜକିଶୋରଙ୍କର କଥା ଶୁଣିଲେ ।

ଡାକ୍ତର କହିଲେ, ଘରକଥା ଆଉ ଦାଣ୍ଡରେ ଅଧିକା ଚର୍ଚ୍ଚା କରନ୍ତୁ ନାହିଁ । ରାତି ଅଧିକ ହେଲା, ଉଠନ୍ତୁ; ଦୋକାନ ବନ୍ଦ କରିବ ।

## ପଚାଶ

ହୀରାମଣିକୁ ପାଖକୁ ଡାକି ରାଧାଗୋବିନ୍ଦ ବୁଝାଇ କହିଲେ, ତୋ ପକ୍ଷରେ ଭାବପ୍ରବଣତା ଶୋଭା ପାଏ ନାହିଁ । ଭବିଷ୍ୟତରେ କଅଣ କେବେ ହେବ ତାହା ଜାଣିବା ତ ସମ୍ଭବ ନୁହେଁ, ଆଜିର ସୁବିଧାର ପୂର୍ଣ୍ଣ ସୁଯୋଗ ନେବା ଉଚିତ । ସୁଯୋଗ ଆସିଛି । ବିବାହ କରି ସୁଖରେ ସଂସାର କରିବା ଭଲ । ଅନିଶ୍ଚିତତାର କୁହୁଡ଼ି ପର୍ଦ୍ଦାର ଅନ୍ଧାରକୁ ଭାସିଯିବା ମୋଟେ ଉଚିତ ନୁହେଁ । ରୂପ ଓ ଯୌବନ ବେଶି ଦିନ ରହେ ନାହିଁ । ତେଣୁ ମୁଁ କହୁଛି, ମନ ନ ଚହଲି ଚିରଦିନ ଦୃଢ଼ପଣ ରଖିବା କଷ୍ଟ ମା ।

ଲଜେଇ ଲଜେଇ ହୀରାମଣି ଉତ୍ତର ଦେଲା, ମନର ଅବସ୍ଥା ମଣିଷର ଦୃଢ଼ତା ଉପରେ ନିର୍ଭର କରେ ।

ରାଧାଗୋବିନ୍ଦ ଚମତ୍କୃତ ହେଲେ । ସ୍ମିତ ହସି ମୁଣ୍ଡ ହଲାଇ କହିଲେ, ଆଲୋ ମା, ମୁଁ କଣ ସବୁଦିନେ ବୁଢ଼ା ଥିଲି ? ମୁଁ ମଧ୍ୟ ଦିନେ ତୋର ପରି ପିଲା ଥିଲି । ଆମର ଆଧୁନିକ ଶିକ୍ଷା ସଭ୍ୟତା ଭିତରେ ବଢ଼ି ମୁଁ କଣ ଉତ୍ତେଜନା ଉପଲବ୍ଧି କରି ନ ଥିଲି ? ଲଜ୍ଜାରେ ହେଉ ବା ସଙ୍କୋଚରେ ହେଉ, ମୋ ପାଖରେ ତୁ ତୋ ମନ ଛପେଇ ରଖିବାକୁ ଚେଷ୍ଟା କରୁଛୁ, କିନ୍ତୁ ମୁଁ ଯେ ତୋର ପିତା ! ତୋ ମନ ମୁଁ ତୋ ଅପେକ୍ଷା ଭଲକରି ଜାଣେ । ତୁ କଣ ମୋତେ ତୋ ମନକଥା କହିବୁ, ଭାବିଲୁ ?

ହୀରାମଣି ତୂନି ରହିଲା । ରାଧାଗୋବିନ୍ଦ ସମସ୍ତଙ୍କ ସଙ୍ଗେ ଅତି ଖୋଲାଖୋଲି ଭାବରେ ସବୁ ବିଷୟରେ କଥାଭାଷା ହୁଅନ୍ତି । ମନର କଥା ପ୍ରକାଶ କରିବାକୁ ସମସ୍ତଙ୍କୁ ଉପଦେଶ ଦିଅନ୍ତି । ତଥାପି, ହୀରାମଣି କେବେ ତାଙ୍କ ସଙ୍ଗେ ମନଖୋଲି କଥାଭାଷା କରିନାହିଁ ।

ରାଧାଗୋବିନ୍ଦ କହିଲେ, ମୁଁ ତୋର ମନକଥା ତୋର କେତୋଟି କବିତାରୁ ବୁଝି ପାରିଛି ।

ହୀରାମଣି ଲଜ୍ଜିତା ହୋଇ କହିଲା, କେବେ କଅଣ ଲେଖି ଦେଇଥିଲି ।

ମଣିଷ ଯାହା ଅଙ୍ଗରେ ଲଗାଇଥାଏ, ମନରେ ଭେଦାଇଥାଏ, ତାହା ହିଁ ବାକ୍ୟରେ ପ୍ରକାଶ କରେ ଲୋ ମା । ଯେ ନିଜେ କାନ୍ଦିଥାଏ ସେ ସିନା ପରକୁ କନ୍ଦାଇ ପାରେ । ମୁଁ ତୋର କବିତାଗୁଡ଼ିକ ପଢ଼ିଛି, ତୋ ପ୍ରାଣର ବ୍ୟଥା ଅନୁଭବ କରିଛି, ନିଜେ ମଧ୍ୟ କାନ୍ଦିଛି ।

ରାଧାଗୋବିନ୍ଦ ଟିକିଏ ନୀରବ ରହି ପୁଣି କହିଲେ, ଦିନେ ମୁଁ ତୋ ମାଆଙ୍କୁ ସଙ୍ଗରେ ନେଇ ମୋର ବନ୍ଧୁ ଶ୍ରୀ ରାଓଙ୍କ ଘରେ ପହଞ୍ଚିଲି । ବୃଦ୍ଧ ରାଓ ବ୍ରାହ୍ମ, କିନ୍ତୁ ସେ ଅତି ଉଦାର । ତାଙ୍କୁ ସବୁ କହିଲି । ତାଙ୍କ ଆଖିରେ ମୁଁ ଲୁହ ଦେଖିଲି ନାହିଁ । ମୋ ପିଠିରେ ହାତ ମାରି ସେ କହିଲେ, ଦେଶର ଭବିଷ୍ୟତ ଉଜ୍ଜ୍ୱଳ ରାଧୁ, କାନ୍ଦୁଛ କାହିଁକି ? ବିଧବାର ଦୁଃଖ ଓ ହିନ୍ଦୁ ସମାଜର କୁସଂସ୍କାର ଦୂର କରିବାକୁ ତୁମେ କାର୍ଯ୍ୟରେ ଲାଗିଯାଅ, ଭୟ କର ନାହିଁ । ମୁଁ ତୁମର ପଛରେ ଅଛି ।

ମୋତେ ସେ ଧୂଳିରୁ ଉଠାଇଲେ ହାରି । ଆଖିରୁ ଲୁହ ପୋଛି ବାଟ ଦେଖାଇ ଦେଲେ । ଏବେ ମୁଁ ଚାଲିଛି । ବାଟରୁ କେତେ ହାରିଙ୍କୁ ଗୋଟାଇ ଘରେ ରଖିଛି, କିନ୍ତୁ ଯାହାର ଦୁଇଧାଡ଼ି ଲେଖା ମୋ ଗ୍ରନ୍ଥରେ ଗମ୍ଭୀର ଦାଗ ପକାଇଥିଲା, ଆଖିରେ ଲୁହ ଆଣିଥିଲା, ତାକୁ ମୁଁ ପାଇ ନ ଥିଲି । ଏବେ ପାଇଛି । ମୋ ଗ୍ରନ୍ଥର ଗାରକୁ ତୁଇ ଲିଭାଇ ପାରିବୁ । ତୁ ମୋର ଅଳିଅଳି ଝିଅ, ଅଭିଆଡ଼ି ଝିଅ । ତୋତେ ମୁଁ ମୋ ମନଲାଖି କୋଉଁଠି ହାତରେ ଦେଲେ ସୁଖୀ ହେବି । ମନା କର ନା ମା, ତୋ ହାତକୁ ଦିହାତ କଲେ ବି ତୋତେ ତୋର ଦାୟିତ୍ୱରୁ ମୁକ୍ତ ଦେଇ ପାରିବି ନାହିଁ ।

ହାରି ନୀରବରେ ଅଶ୍ରୁତ୍ୟାଗ କଲା । ମୁହଁ ଖୋଲି ପ୍ରତିବାଦ କଲା ନାହିଁ ।

ଉଷା ଆସି ପ୍ରଣାମ କରି କହିଲା, ନନା, ତମେ କହିଥିଲ, ଆମକୁ ନଗର ଦେଖାଇ ନେବ ? ଆଉ କେବେ ନେବ ମ !

ରାଧାଗୋବିନ୍ଦ କହିଲେ, ମୋର ବେଳ ନାହିଁ ଲୋ ପାଗଳୀ, କଚେରୀ ବନ୍ଦ ହେଲେ ଯିବା ! ଡିନକୋଶ ବାଟ ଚାଲି ଚାଲି ଯାଇପାରିଲେ ତ ?

ଉଷା କହିଲା, କାହିଁକି ପାରିବୁ ନାହିଁ ? ତମେ ଏକା ଆଗେ ଆଗେ ଚାଲିବ ।

ମୁଁ ବୁଢ଼ା ଲୋକ, ଚାଲି ପାରିବି ନାହିଁ । ତୁ ମୋର ହାତ ଧରି ନେବୁ ?

ଉଷା କହିଲା, ହଉ, ତମେ ଏକା ବାଟରେ ଅଟକି ହେବ ନାହିଁ । ଉଷା ଚାଲିଗଲା ।

ଉଷା ଚାଲିଯିବାରୁ ରାଧାଗୋବିନ୍ଦ କହିଲେ, ମା, ତୋର ଅନୁମତି ନ ପାଇଲେ ମୁଁ ଆଗେଇ ପାରିବି ନାହିଁ ।

ହାରି ଅଭିମାନ କରି କହିଲା, ଆପଣ ଦୟାକରି ମୋତେ ଏଠାରେ ଆଶ୍ରୟ ଦେଇଛନ୍ତି, ମୁଁ ଆନନ୍ଦରେ ଅଛି, ପାଖରୁ ଅନ୍ତର କରିବାକୁ ଚାହୁଁଛନ୍ତି କାହିଁକି ?

ସଭିଙ୍କୁ ଦିନେ ଏଠାରୁ ଯିବାକୁ ପଡ଼ିବ ଲୋ ହୀରା, ତୁ ଆଜି ଯିବୁ, ତୋ ସ୍ଥାନ ଯେ ପୂରଣ କରିବ ସେ କାଲି ଯିବ। ଭଗବାନଙ୍କର ଦୟା ଥିଲେ, ତମ ନିଶ୍ୱାସର ଶକ୍ତି ଥିଲେ, ଏହିପରି ଚାଲିଥିବ। କାଲି ତମମାନଙ୍କୁ ଛାଡ଼ି ମୁଁ ଚାଲିଯିବି, ଗୌରୀ ଆସିବେ। ତାଙ୍କର ବେଳକାଳ ଆସିଲେ ସେ ବି ଯିବେ। ଆଉ କିଏ ଆସିବ। ସେଥିକି କାହିଁକି ଦୁଃଖ କରୁଛୁ ? ଏଠାରୁ ଚାଲିଗଲେ କଣ ଏହି ଅନୁଷ୍ଠାନ ପ୍ରତି ତୋର କର୍ତ୍ତବ୍ୟ ତୁ କରି ପାରିବୁ ନାହିଁ ଭାବୁଛୁ ? ପାରିବୁ, ମୁଁ ଜାଣେ। ବ୍ରଜକିଶୋର ତୋ ମନକୁ କିପରି ପାଏ କହିଲୁ ? ମୋ ଜାଣିବାରେ ସେ ଅତି ଭଲ ପିଲା — ସୁନ୍ଦର, ଶିକ୍ଷିତ, ବୁଦ୍ଧିମାନ, ଚରିତ୍ରବାନ୍, ନିର୍ଭୀକ।

ହୀରାମଣି ବିସ୍ମିତ ହେଲା। ବ୍ରଜକିଶୋର ! ଯାହା ମୁହଁରୁ ଶୁଣ କେବଳ ତାଙ୍କର ନାମ, ତାଙ୍କର ପ୍ରଶଂସା ! ସତେ କି ତାଙ୍କ ବ୍ୟତୀତ ସଂସାରରେ ଆଉ କେହି ନାହାନ୍ତି ! ବାହାରେ ତାଙ୍କର ନାମ, ମନରେ ବି ତାଙ୍କର ନାମ ! ଯାହାଙ୍କ ପାଇଁ ଏତେ କାଣ୍ଡ ଘଟିଗଲା କିପରି ତାଙ୍କୁ ଘେନି ସେ ସଂସାର କରିବ ? କେଡ଼େ ନିର୍ଲଜ ସେ, ନିଜେ ନ ଆସି ବନ୍ଧୁ କିଶୋରଚନ୍ଦ୍ରଙ୍କୁ ଦୂତ କରି ପଠାଇଥିଲେ। ଆଉ କିଶୋରଚନ୍ଦ୍ର, ସେଇ କଣ ବ୍ରଜକିଶୋର ? ତାର ମନର ପ୍ରଶ୍ନ ମନରେ ଛପିଲା। ରାଧାଗୋବିନ୍ଦଙ୍କୁ ପଚାରିବାକୁ ସାହସ ହେଲା ନାହିଁ।

ରାଧାଗୋବିନ୍ଦ ଗେହ୍ଲେଇ ପଚାରିଲେ, ଚୁପ ରହିଲୁ ଯେ ମା ?

ହୀରାମଣିର ଅଶ୍ରୁସିକ୍ତ ମୁଖ ଗୋଲାପୀ ଆଭାରେ ଅଲୋକିତ ହେଲା। ରାଧାଗୋବିନ୍ଦଙ୍କ ପାଖକୁ ଲାଗି ଆସି ସେ ଚୁପ ଚୁପ କହିଲା, ମୁଁ ଜାଣେ ନାହିଁ।

ଦରଓ୍ୱାନ ଖବର ଦେଲା, ଦାଣ୍ଡରେ କିଶୋରବାବୁ ଠିଆ ହୋଇଛନ୍ତି, ଭିତରକୁ ଡାକିବି ?

ଏକା ? ରାଧାଗୋବିନ୍ଦ ପଚାରିଲେ।

ସଙ୍ଗରେ ଆଉ ଦୁଇଜଣ ଭଦ୍ରଲୋକ ଓ ଗୋଟିଏ ପିଲା ଅଛନ୍ତି।

ଆଚ୍ଛା, ଭିତରକୁ ଡାକି ଆଣ।

ରାଧାଗୋବିନ୍ଦ ଭଦ୍ରଲୋକମାନଙ୍କର ପ୍ରତୀକ୍ଷାରେ ରହିଲେ। ହୀରାମଣି ସଙ୍କୁଚିତ ହୋଇ ଚାଲିଯିବାକୁ ଉଦ୍ୟତ ହେବାରୁ ସେ କହିଲେ, ରହ ମା, ଯାଉଛୁ କୁଆଡ଼େ ? ଏତେ ସଙ୍କୋଚ କଲେ କି ଜୀବନର ଉଦ୍ଦେଶ୍ୟ କେବେ ସାଧନ କରି ପାରିବୁ ?

କିଶୋରଚନ୍ଦ୍ରଙ୍କ ସଙ୍ଗେ ଭଗବାନ ମିଶ୍ର, ରଥ ଶର୍ମା ଓ ଶ୍ରୀନାଥ ବୈଠକ ଘରେ ପଶିଲେ। ରାଧାଗୋବିନ୍ଦ ଅଭ୍ୟାଗତମାନଙ୍କୁ ବସିବାକୁ ଚଉକି ଦେଲେ। ମୋଟେ ତିନିଖଣ୍ଡି ଚଉକି ଥିବାରୁ ହୀରାମଣି ରାଧାଗୋବିନ୍ଦବାବୁଙ୍କ ପାଖରେ ଠିଆ ହୋଇ ରହିଲା। ବ୍ରଜ ଚଉକିର ଅନ୍ୟ ପାଖରେ ଠିଆ ହେବାର ଦେଖି

ପଣ୍ଡିତେ କହିଲେ, ମୁଁ ଅନୁତପ୍ତ । ମୁଁ ଖବର ପଠାଇଥିଲି, ଖାଲି ଥରେ ତାକୁ ଦେଖିବି, କିନ୍ତୁ ସମ୍ପାଦିକା ଉତ୍ତର ପଠାଇଲେ ଦ୍ୱାରରକ୍ଷକ ହାତରେ— ଯେଉଁଦିନ ହୀରାମଣିକୁ ଘରୁ ବାହାର କରିଦେଲେ, ସେଇ ଦିନରୁ ସେ ମରିଛି ବୋଲି ଗ୍ରହଣ କରନ୍ତୁ ।—ମୁଁ ହତାଶ ହୋଇ ଫେରିଲି ଡାକ୍ତରବାବୁ ।

କୁଳମଣିବାବୁ କହିଲେ, ଆପଣଙ୍କୁ ମୁଁ ବତାଇଥିଲି, ରାଧାଗୋବିନ୍ଦବାବୁଙ୍କ ସଙ୍ଗେ ଦେଖା କରିବେ ।

ପଣ୍ଡିତ କହିଲେ, ଦେଖା କରିଥିଲି । ସେ ସବୁକଥା ଶୁଣି ହସିଲେ । କହିଲେ, ଯଦି ହୀରାମଣିକୁ ପୁନର୍ବାର ବିବାହ ଦେବାକୁ ପ୍ରସ୍ତୁତ ତ କୁହନ୍ତୁ, ତା ହେଲେ ଦେଖା ହେବ, ନୋହିଲେ ଧୀରେ ଧୀରେ ବାଟ ଦେଖନ୍ତୁ । ଆଚ୍ଛା କହ ତ କୁଳମଣି, ଏହା କି ନ୍ୟାୟସଙ୍ଗତ କଥା ? ବ୍ରାହ୍ମଣଘର ଝିଅ, ଥରେ ବିଧବା ହୋଇ ଆଉ ଥରେ ବିବାହ କରିବ କିପରି ? ମୁଁ ଚୁପ୍ ହୋଇ ଫେରିଲି ।

ବ୍ରଜକିଶୋର ଓ କୁଳମଣି ଏକ ସଙ୍ଗେ ହସି ଉଠିଲେ । ପଣ୍ଡିତେ ଅପ୍ରସ୍ତୁତ ହୋଇ ଗମ୍ଭୀର ହେଲରୁ କୁଳମଣିବାବୁ କହିଲେ, ଏ ସବୁ କଥା ବୋଧହୁଏ ଆପଣଙ୍କ ସ୍ତ୍ରୀ ଶୁଣିଛନ୍ତି । ତାଙ୍କର ମାନସିକ ଉତ୍ତେଜନା ବଢ଼ି ଯାଇଛି । ଆଜି ଏତେ ରାତିରେ ମୁଁ ଆଉ ଯାଇ ପାରିବି ନାହିଁ । କାଲି ବଡ଼ିସକାଳୁ ଯାଇ ଦେଖିବି ଓ ଔଷଧର ବ୍ୟବସ୍ଥା କରି ଆସିବି । ମୋର ମତ, ହୀରାମଣିଙ୍କ ସଙ୍ଗେ ଦେଖା ହେଲେ ବିନା ଔଷଧରେ ସେ ଆରୋଗ୍ୟ ହୋଇଯିବେ ।

ଦେଖା ହେବା ଯେ କଷ୍ଟ । ମୋର ସ୍ତ୍ରୀ ଶଯ୍ୟାଶାୟିନୀ, ପୁଣି ସମ୍ପାଦିକା ଅନୁମତି ଦେଉ ନାହାନ୍ତି ।

ବ୍ରଜକିଶୋର କହିଲେ, ବିଶେଷ କଷ୍ଟ ନୁହେଁ । ମୁଁ ଜାଣେ, ନାରୀମଙ୍ଗଳ ସମିତିର ସମ୍ପାଦିକା ହେଉଛନ୍ତି ଆପଣଙ୍କର ସେକାଳର ବିଧବା କନ୍ୟା ଶ୍ରୀମତୀ ହୀରାମଣି ଦେବୀ । ଯଦି ସେ ଜାଣନ୍ତି ଯେ ତାଙ୍କର ମାତା ଶ୍ରୀମତୀ ନେତ୍ରମଣି ଦେବୀ କେବଳ ତାଙ୍କୁ ଭାବି ଭାବି ମୃତ୍ୟୁ ମୁଖରେ ପଡ଼ିଛନ୍ତି, ସେ କାଳବ୍ୟୟ ନ କରି ନିଜେ ମାତାଙ୍କୁ ଦେଖିବାକୁ ଆସିବେ ।

ପଣ୍ଡିତେ ବିସ୍ମିତ ହୋଇ ପଚାରିଲେ, ଆପଣ ମୋ ସ୍ତ୍ରୀଙ୍କୁ ଚିହ୍ନିଲେ କିପରି ?

ବ୍ରଜ ମୁଣ୍ଡ ନୁଆଁଇ ହସି କହିଲେ, ପଣ୍ଡିତ ରଥଶର୍ମାଙ୍କ ପରି ବିଦ୍ୱାନ ଓ ବିଖ୍ୟାତ ବ୍ୟକ୍ତିଙ୍କୁ ନ ଚିହ୍ନେ କିଏ ? ମୋର ନାମ ହିଁ ବ୍ରଜକିଶୋର । ମୁଁ ଇନ୍ଦିରା ଦେବୀଙ୍କର ଦେବର । ଆପଣମାନେ ପୁରୀରୁ ଫେରିଲା ପରେ ମୋର ଭାଉଜ ମୋ ପାଖକୁ ସବୁ ବିଷୟ ଲେଖି ଦୁଃଖପ୍ରକାଶ କରି ପତ୍ର ଦେଇଥିଲେ । ଯାହା ସେ ଆପଣମାନଙ୍କୁ କହିଥିଲେ ସବୁ ଅକାଟ ସତ୍ୟ । ସମାଜ ସମାଜ ହୋଇ ଆପଣମାନେ ପାଗଳ

ହୋଇଛନ୍ତି । କୁସଂସ୍କାରକୁ ଧର୍ମ ଓ ନିଷ୍ଠା ବୋଲି ଗ୍ରହଣ କରିଛନ୍ତି । ବୃଥା ଦୋଷାରୋପ କରି ହୀରାମଣିକୁ ଘରୁ ତଡ଼ିଛନ୍ତି । ସେ ଦୁଶ୍ଚରିତ୍ରା କୁଳକଳଙ୍କିନୀ ନୁହେଁ କି ତା ସଙ୍ଗେ ଜଣାଶୁଣା ନ ଥିବା ବ୍ରଜକିଶୋର ଦୁଶ୍ଚରିତ୍ର ଓ ପାପାଗ୍ରସ୍ତ ନୁହେଁ । ହୀରାମଣି ଭଲରେ ଅଛି, ଭଲରେ ରହିବ, ଆପଣ ନିଶ୍ଚିନ୍ତ ରହନ୍ତୁ । ତାର ମା ଅର୍ଥାତ୍ ମୋ ମାଉସୀଙ୍କୁ ଏହା ଜଣାଇ ଦେବେ ।

ରଥଶର୍ମା ନିର୍ବାକ୍ ହୋଇ ବ୍ରଜକିଶୋରଙ୍କର କଥା ଶୁଣିଲେ ।

ଡାକ୍ତର କହିଲେ, ଘରକଥା ଆଉ ଦାଣ୍ଡରେ ଅଧିକା ଚର୍ଚ୍ଚା କରନ୍ତୁ ନାହିଁ । ରାତି ଅଧିକ ହେଲା, ଉଠନ୍ତୁ, ଦୋକାନ ବନ୍ଦ କରିବ ।

## ପଚିଶ

ହୀରାମଣିକୁ ପାଖକୁ ଡାକି ରାଧାଗୋବିନ୍ଦ ବୁଝାଇ କହିଲେ, ତୋ ପକ୍ଷରେ ଭାବପ୍ରବଣତା ଶୋଭା ପାଏ ନାହିଁ । ଭବିଷ୍ୟତ୍‌ରେ କଅଣ କେବେ ହେବ ତାହା ଜାଣିବା ତ ସମ୍ଭବ ନୁହେଁ, ଆଜିର ସୁବିଧାର ପୂର୍ଣ୍ଣ ସୁଯୋଗ ନେବା ଉଚିତ । ସୁଯୋଗ ଆସିଛି । ବିବାହ କରି ସୁଖରେ ସଂସାର କରିବା ଭଲ । ଅନିଶ୍ଚିତତାର କୁହୁଡ଼ି ପହଂରି ଅନ୍ଧାରକୁ ଭାସିଯିବା ମୋଟେ ଉଚିତ ନୁହେଁ । ରୂପ ଓ ଯୌବନ ବେଶି ଦିନ ରହେ ନାହିଁ । ତେଣୁ ମୁଁ କହୁଛି, ମନ ନ ବଦଳି ଚିରଦିନ ଦୃଢ଼ପଣ ରଖିବା କଷ୍ଟ ମା ।

ଲାଜେଇ ଲାଜେଇ ହୀରାମଣି ଉତ୍ତର ଦେଲା, ମନର ଅବସ୍ଥା ମଣିଷର ଦୃଢ଼ତା ଉପରେ ନିର୍ଭର କରେ ।

ରାଧାଗୋବିନ୍ଦ ଚମକିତ ହେଲେ । ସ୍ମିତ ହସି ମୁଣ୍ଡ ହଲାଇ କହିଲେ, ଆଲୋ ମା, ମୁଁ କଣ ସବୁଦିନେ ବୁଢ଼ା ଥିଲି ? ମୁଁ ମଧ୍ୟ ଦିନେ ତୋରି ପରି ପିଲା ଥିଲି । ଆମର ଆଧୁନିକ ଶିକ୍ଷା ସଭ୍ୟତା ଭିତରେ ବଢ଼ି ମୁଁ କଣ ଉତ୍ତେଜନା ଉପଲବ୍ଧି କରି ନ ଥିଲି ? ଲଜ୍ଜାରେ ହେଉ ବା ସଙ୍କୋଚରେ ହେଉ, ମୋ ପାଖରେ ତୁ ତୋ ମନ ଛପେଇ ରଖିବାକୁ ଚେଷ୍ଟା କରୁଛୁ, କିନ୍ତୁ ମୁଁ ଯେ ତୋର ପିତା ! ତୋ ମନ ମୁଁ ତୋ ଅପେକ୍ଷା ଭଲକରି ଜାଣେ । ତୁ କଣ ମୋତେ ତୋ ମନକଥା କହିବୁ, ଭାବିଲୁ ?

ହୀରାମଣି ତୁନି ରହିଲା । ରାଧାଗୋବିନ୍ଦ ସମସ୍ତଙ୍କ ସଙ୍ଗେ ଅତି ଖୋଲାଖୋଲି ଭାବରେ ସବୁ ବିଷୟରେ କଥାଭାଷା ହୁଅନ୍ତି । ମନର କଥା ପ୍ରକାଶ କରିବାକୁ ସମସ୍ତଙ୍କୁ ଉପଦେଶ ଦିଅନ୍ତି । ତଥାପି, ହୀରାମଣି କେବେ ତାଙ୍କ ସଙ୍ଗେ ମନଖୋଲି କଥାଭାଷା କରିନାହିଁ ।

ରାଧାଗୋବିନ୍ଦ କହିଲେ, ମୁଁ ତୋର ମନକଥା ତୋର କେତୋଟି କବିତାରୁ ବୁଝି ପାରିଛି ।

ହୀରାମଣି ଲଜ୍ଜିତା ହୋଇ କହିଲା, କେବେ କଅଣ ଲେଖି ଦେଇଥିଲି ।

ମଣିଷ ଯାହା ଅଙ୍ଗରେ ଲଭାଇଥାଏ, ମନରେ ଭେଦାଇଥାଏ, ତାହା ହିଁ ବାକ୍ୟରେ ପ୍ରକାଶ କରେ ଲୋ ମା । ଯେ ନିଜେ କାନ୍ଦିଥାଏ ସେ ସିନା ପରକୁ କନ୍ଦାଇ ପାରେ । ମୁଁ ତୋର କବିତାଗୁଡ଼ିକ ପଢ଼ିଛି, ତୋ ପ୍ରାଣର ବ୍ୟଥା ଅନୁଭବ କରିଛି, ନିଜେ ମଧ୍ୟ କାନ୍ଦିଛି ।

ରାଧାଗୋବିନ୍ଦ ଟିକିଏ ନୀରବ ରହି ପୁଣି କହିଲେ, ଦିନେ ମୁଁ ତୋ ମାଆଙ୍କୁ ସଙ୍ଗରେ ନେଇ ମୋର ବନ୍ଧୁ ଶ୍ରୀ ରାଓଙ୍କ ଘରେ ପହଞ୍ଚିଲି । ବୃଦ୍ଧ ରାଓ ବ୍ରାହ୍ମ, କିନ୍ତୁ ସେ ଅତି ଉଦାର । ତାଙ୍କୁ ସବୁ କହିଲି । ତାଙ୍କ ଆଖିରେ ମୁଁ ଲୁହ ଦେଖିଲି ନାହିଁ । ମୋ ପିଠିରେ ହାତ ମାରି ସେ କହିଲେ, ଦେଶର ଭବିଷ୍ୟତ ଉଜ୍ଜ୍ୱଳ ରାଧୁ, କାନ୍ଦୁଛ କାହିଁକି ? ବିଧବାର ଦୁଃଖ ଓ ହିନ୍ଦୁ ସମାଜର କୁସଂସ୍କାର ଦୂର କରିବାକୁ ତୁମେ କାର୍ଯ୍ୟରେ ଲାଗିଯାଅ, ଭୟ କର ନାହିଁ । ମୁଁ ତୁମର ପଛରେ ଅଛି ।

ମୋତେ ସେ ଧୂଳିରୁ ଉଠାଇଲେ ହାରି । ଆଖିରୁ ଲୁହ ପୋଛି ବାଟ ଦେଖାଇ ଦେଲେ । ଏବେ ମୁଁ ଚାଲିଛି । ବାଟରୁ କେତେ ହାରିଙ୍କୁ ଗୋଟାଇ ଘରେ ରଖିଛି, କିନ୍ତୁ ଯାହାର ଦୁଇଧାଡ଼ି ଲେଖା ମୋ ଛାତିରେ ଗହୀରଦାଗ ପକାଇଥିଲା, ଆଖିରେ ଲୁହ ଆଣିଥିଲା, ତାକୁ ମୁଁ ପାଇ ନ ଥିଲି । ଏବେ ପାଇଛି । ମୋ ଛାତିର ଦାଗକୁ ତୁଚ ଲଭାଇ ପାରିବୁ । ତୁ ମୋର ଅଲଅଲି ଝିଅ, ଅଭିଆଡ଼ି ଝିଅ । ତୋତେ ମୁଁ ମୋ ମନଲାଖି ଜୋଇଁଟି ହାତରେ ଦେଲେ ସୁଖୀ ହେବି । ମନା କରନା ମା, ତୋ ହାତକୁ ଦିହାତ କଲେ ବି ତୋତେ ତୋର ଦାୟିତ୍ୱରୁ ମୁକ୍ତ ଦେଇ ପାରିବି ନାହିଁ ।

ହାରି ନୀରବରେ ଅଶ୍ରୁତ୍ୟାଗ କଲା । ମୁହଁ ଖୋଲି ପ୍ରତିବାଦ କଲା ନାହିଁ ।

ଉଷା ଆସି ପ୍ରଣାମ କରି କହିଲା, ନନା, ତମେ କହିଥିଲ, ଆମକୁ ନଗରୀ ଦେଖାଇ ନେବ ? ଆଉ କେବେ ନେବ ମ !

ରାଧାଗୋବିନ୍ଦ କହିଲେ, ମୋର ବେଳ ନାହିଁ ଲୋ ପାଗଲୀ, କଚେରୀ ବନ୍ଦ ହେଲେ ଯିବା ! ଦିନକୋଶ ବାଟ ଚାଲି ଚାଲି ଯାଇପାରିବେ ତ ?

ଉଷା କହିଲା, କାହିଁକି ପାରିବୁ ନାହିଁ ? ତମେ ଏକା ଆଗେ ଆଗେ ଚାଲିବ ।

ମୁଁ ବୁଢ଼ା ଲୋକ, ଚାଲି ପାରିବି ନାହିଁ । ତୁ ମୋର ହାତ ଧରି ନେବୁ ?

ଉଷା କହିଲା, ହଉ, ତମେ ଏକା ବାଟରେ ଅଟକି ହେବ ନାହିଁ । ଉଷା ଚାଲିଗଲା ।

ଉଷା ଚାଲିଯିବାରୁ ରାଧାଗୋବିନ୍ଦ କହିଲେ, ମା, ତୋର ଅନୁମତି ନ ପାଇଲେ ମୁଁ ଆଗେଇ ପାରିବି ନାହିଁ ।

ହାରି ଅଭିମାନ କରି କହିଲା, ଆପଣ ଦୟାକରି ମୋତେ ଏଠାରେ ଆଶ୍ରୟ ଦେଇଛନ୍ତି, ମୁଁ ଆନନ୍ଦରେ ଅଛି, ପାଖରୁ ଅନ୍ତର କରିବାକୁ ଚାହୁଁଛନ୍ତି କାହିଁକି ?

ସଭିଙ୍କୁ ଦିନେ ଏଠାରୁ ଯିବାକୁ ପଡ଼ିବ ଲୋ ହୀରା, ତୁ ଆଜି ଯିବୁ, ତୋ ସ୍ଥାନ ଯେ ପୂରଣ କରିବ ସେ କାଲି ଯିବ । ଭଗବାନଙ୍କର ଦୟା ଥିଲେ, ତମ ନିଶ୍ୱାସର ଶକ୍ତି ଥିଲେ, ଏହିପରି ଚାଲିଥିବ । କାଲି ତମମାନଙ୍କୁ ଛାଡ଼ି ମୁଁ ଚାଲିଯିବି, ଯେଉଁ ଆସିବେ । ତାଙ୍କର ବେଳକାଳ ଆସିଲେ ସେ ବି ଯିବେ । ଆଉ କିଏ ଆସିବ । ସେଥିକି କାହିଁକି ଦୁଃଖ କରୁଛୁ ? ଏଠାରୁ ଚାଲିଗଲେ କିଣ ଏହି ଅନୁଷ୍ଠାନ ପ୍ରତି ତୋର କର୍ତ୍ତବ୍ୟ ତୁ କରି ପାରିବୁ ନାହିଁ ଭାବୁଛୁ ? ପାରିବୁ, ମୁଁ ଜାଣେ । ବ୍ରଜକିଶୋର ତୋ ମନକୁ କିପରି ପାଏ କହିଲୁ ? ମୋ ଜାଣିବାରେ ସେ ଅତି ଭଲ ପିଲା -- ସୁନ୍ଦର, ଶିକ୍ଷିତ, ବୁଦ୍ଧିମାନ, ଚରିତ୍ରବାନ୍, ନିର୍ଭୀକ ।

ହୀରାମଣି ବିସ୍ମିତ ହେଲା । ବ୍ରଜକିଶୋର ! ଯାହା ମୁହଁରୁ ଶୁଣ କେବଳ ତାଙ୍କର ନାମ, ତାଙ୍କର ପ୍ରଶଂସା ! ସତେ କି ତାଙ୍କ ବ୍ୟତୀତ ସଂସାରରେ ଆଉ କେହି ନାହାନ୍ତି ! ବାହାରେ ତାଙ୍କର ନାମ, ମନରେ ବି ତାଙ୍କର ନାମ ! ଯାହାଙ୍କ ପାଇଁ ଏତେ କାଣ୍ଡ ଘଟିଗଲା କିପରି ତାଙ୍କୁ ଘେନି ସେ ସଂସାର କରିବ ? କେଡ଼େ ନିର୍ଲଜ ସେ, ନିଜେ ନ ଆସି ବନ୍ଧୁ କିଶୋରଚନ୍ଦ୍ରଙ୍କୁ ଦୂତ କରି ପଠାଇଥିଲେ । ଆଉ କିଶୋରଚନ୍ଦ୍ର, ସେଇ କିଣ ବ୍ରଜକିଶୋର ? ତାର ମନର ପ୍ରଶ୍ନ ମନରେ ଛପିଲା । ରାଧାଗୋବିନ୍ଦଙ୍କୁ ପଚାରିବାକୁ ସାହସ ହେଲା ନାହିଁ ।

ରାଧାଗୋବିନ୍ଦ ଗେହ୍ଲେଇ ପଚାରିଲେ, ଚୁପ ରହିଲୁ ଯେ ମା ?

ହୀରାମଣିର ଅଶ୍ରୁସିକ୍ତ ମୁଖ ଗୋଲାପୀ ଆଭାରେ ଅଲୋକିତ ହେଲା । ରାଧାଗୋବିନ୍ଦଙ୍କ ପାଖକୁ ଲାଗି ଆସି ସେ ଚୁପ ଚୁପ କହିଲା, ମୁଁ ଜାଣେ ନାହିଁ ।

ଦରଓ୍ୱାନ ଖବର ଦେଲା, ଦାଣ୍ଡରେ କିଶୋରବାବୁ ଠିଆ ହୋଇଛନ୍ତି, ଭିତରକୁ ଡାକିବି ?

ଏକା ? ରାଧାଗୋବିନ୍ଦ ପଚାରିଲେ ।

ସଙ୍ଗରେ ଆଉ ଦୁଇଜଣ ଭଦ୍ରଲୋକ ଓ ଗୋଟିଏ ପିଲା ଅଛନ୍ତି ।

ଆଚ୍ଛା, ଭିତରକୁ ଡାକି ଆଣ ।

ରାଧାଗୋବିନ୍ଦ ଭଦ୍ରଲୋକମାନଙ୍କର ପ୍ରତୀକ୍ଷାରେ ରହିଲେ । ହୀରାମଣି ସଙ୍କୁଚିତ ହୋଇ ଚାଲିଯିବାକୁ ଉଦ୍ୟତ ହେଲାରୁ ସେ କହିଲେ, ରହ ମା, ଯାଉଛୁ କୁଆଡ଼େ ? ଏତେ ସଂକୋଚ କଲେ କି ଜୀବନର ଉଦ୍ଦେଶ୍ୟ କେବେ ସାଧନ କରି ପାରିବୁ ?

କିଶୋରଚନ୍ଦ୍ରଙ୍କ ସଙ୍ଗେ ଭଗବାନ ମିଶ୍ର, ରଥ ଶର୍ମା ଓ ଶ୍ରୀନାଥ ବୈଠକ ଘରେ ପଶିଲେ । ରାଧାଗୋବିନ୍ଦ ଆଗନ୍ତୁକମାନଙ୍କୁ ବସିବାକୁ ଚଉକି ଦେଲେ । ମୋଟେ ତିନିଖଣ୍ଡି ଚଉକି ଥିବାରୁ ହୀରାମଣି ରାଧାଗୋବିନ୍ଦବାବୁଙ୍କ ପାଖରେ ଠିଆ ହୋଇ ରହିଲା । ବ୍ରଜ ଚଉକିର ଅନ୍ୟ ପାଖରେ ଠିଆ ହେବାର ଦେଖି

ରାଧାଗୋବିନ୍ଦ ବ୍ୟସ୍ତ ହୋଇ କହିଲେ, ଠିଆ ହେଲ ଯେ ! ଡାକଲେ, ଅ଼ଲେ ଉଷା, ଉଷା !

ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୋର ଜରୁରୀ କାର୍ଯ୍ୟ ଅଛି, ମୁଁ ଚାଲିଯିବି । ଏମାନଙ୍କୁ ସଙ୍ଗରେ ନେଇ ଆସିଥିଲି । ଆପଣ ବୋଧହୁଏ ପଣ୍ଡିତ ମହାଶୟଙ୍କୁ ଚିହ୍ନନ୍ତି । ସେ ଶ୍ରୀମତୀ ହୀରାମଣି ଦେବୀଙ୍କର ପିତା । ଇଏ ଶ୍ରୀଯୁକ୍ତ ଭଗବାନ ମିଶ୍ର, ତାଙ୍କର ସମୁଧୀ ।

ନୂଆବୋହୂକୁ ଦେଖିବାକୁ ଜିଦ୍ କରି ଶ୍ରୀନାଥ ଆସିଥିଲା । ହୀରାମଣିଙ୍କୁ ଦେଖି ସେ ଆଗ ଚିହ୍ନି ପାରିଲା ନାହିଁ । ହୀରାର ସ୍ୱାସ୍ଥ୍ୟ ବଦଳିଛି, ରଙ୍ଗ ଫିଟିଛି, ଗହଣା ନାଇ ଆଖିରେ କଜଳ, ମଥାରେ ସିନ୍ଦୂର ଧରି ସେ ହୋଇଛି ନୂଆ ମଣିଷ । ଜନନୀ ଓ ଶ୍ୱଶୁରଙ୍କୁ ଦେଖି ଜୀବନହୀନ ମୂର୍ତ୍ତି ପରି ସେ ରାଧାଗୋବିନ୍ଦଙ୍କ ଚଉକୀକୁ ଆଉଜି ଠିଆ ହୋଇଛି । ଆତ୍ମୀୟଙ୍କୁ ଦେଖି ଆନନ୍ଦରେ ସେ ଅଧୀର ହେଉ ନାହିଁ । ଭକ୍ତିରେ ପ୍ରଣାମ କରିବାକୁ ମଧ୍ୟ ଭୁଲି ଯାଇଛି । ଭୟରେ ମଧ୍ୟ ତ୍ରସ୍ତ ଥରୁ ନାହିଁ । ଦୁହେଁ ସେମାନେ ଯମଦୂତ ହେଲେ ବି ଯିଏ ତାକୁ କନ୍ୟାରୂପେ ଆଶ୍ରୟ ଦେଇଛନ୍ତି, ଅଭୟ ଦେଇଛନ୍ତି, ତାଙ୍କ ପାଖରେ ସେମାନେ ପରାକ୍ରମହୀନ ।

ଶ୍ରୀନାଥ ହୀରାକୁ ଚାହିଁ ରହିଲା । ଚିହ୍ନି ପାରି ଚିତ୍କାର କରି ଉଠିଲା, ନୂଆଉ ! ଏତେ ଦୁର୍ବଳ ଦେହ, ତଥାପି ଟଳି ଟଳି ହୀରାକୁ ସେ କୁଣ୍ଢାଇ ଧରିଲା ।

ହୀରା ଲୋତକସିକ୍ତ ମୁଖରେ ନାଥର ଗୋଟିଏ ଦୁର୍ବଳ ହାତ ଧରି ରାଧାଗୋବିନ୍ଦବାବୁଙ୍କର ଆହୁରି ନିକଟକୁ ଘୁଞ୍ଚି ଆସିଲା । ଚଞ୍ଚଳ ଚାହାଣୀରେ ପିତା ଏବଂ ଶ୍ୱଶୁରଙ୍କ ମୁହଁକୁ ଥରେ ଅନାଇ ଭୟରେ, ଲଜ୍ଜାରେ ଓ କ୍ରୋଧରେ ସେ ତଳକୁ ମୁହଁ ପୋତି କଣେଇ ଚାହିଁଲା ।

କେଇଟା ମାସରେ ସେମାନଙ୍କର କି ପରିବର୍ତ୍ତନ ହୋଇଛି ! ପିତାଙ୍କର ଗମ୍ଭୀର ମୁଖ ବିଷାଦର ଛାୟାରେ ମଳିନ ହୋଇଛି । ଉଜ୍ଜ୍ୱଳ ଚକ୍ଷୁ ଦିଓଟି ଲୋତକ ଛଳଛଳ । ସ୍ଥିର ଦୃଷ୍ଟିରେ ସେ ତା ଆଡ଼କୁ ଚାହିଁ ରହିଛନ୍ତି । ସେ ଦୃଷ୍ଟିରୁ ଅନୁତାପ ଓ ଅନୁକମ୍ପା ଫୁଟି ଉଠୁଛି । ଶ୍ୱଶୁରଙ୍କର ମଧ୍ୟ ଅବସ୍ଥା ସେହିପରି ।

ନାଥର ଶୀର୍ଣ୍ଣ ମୁଖ ଓ କାତର ଚିତ୍କାର ପ୍ରାଣରେ କଠୋର ଆଘାତ ଦେଲା । ପ୍ରାଣ ତାର କାନ୍ଦି ଉଠିଲା । ଇଚ୍ଛା ହେଲା ନାଥକୁ କାଖ କରି ହୃଦୟରେ ଚାପି ଧରିବ । ତାର ଗଣ୍ଡ ଚୁମ୍ବନ କରି ପଚାରିବ, ତୋର କଣ ହୋଇଛି ବାବୁ ? ପାରିଲା ନାହିଁ । କିଶୋରବାବୁ ଆଗରେ ଠିଆ ହୋଇ ଆଗ୍ରହ ଅହଙ୍କାରରେ ତାକୁ ହିଁ ଅନାଇଛନ୍ତି, ସେ କଅଣ ଭାବିବେ ?

ଦ୍ୱାରବନ୍ଧ ପାଖରେ ଉଷା, ପ୍ରଭା, ମାଳତୀ ପ୍ରଭୃତି କେତେ ଜଣ ହସାହସି ହୋଇ କଣ କୁହାକୁହି ହେଉଛନ୍ତି । ଦରଓ୍ୱାନ୍ ଏକ ଲୟରେ ବଲବଲ କରି ଅନାଇ ରହିଛି ।

କ୍ଷଣକ ଭିତରେ ଅତୀତର ଜୀର୍ଣ୍ଣ ପୃଷ୍ଠାଗୁଡ଼ିକ ତାରାର ଆଖି ଆଗରେ ଖୋଲିଗଲା । ମାୟାବିନୀର ମାୟାରେ ପଡ଼ି ଏହି ଶ୍ୱଶୁର ତା ନାମରେ ମିଥ୍ୟା ଚିଠି ଲେଖି ତାକୁ କୌଶଳରେ ଘରୁ ତଡ଼ି ଦେଇଥିଲେ । ଏହି ପିତା, ଅନ୍ଧ ହୋଇ ତାକୁ ବାଟର ଭିଖାରୁଣୀ କରିଥିଲେ । ଆଜି ପୁଣି କାହିଁକି ଏମାନଙ୍କର ଆଗମନ ? ପୁଣି ତାକୁ ଏଠାରୁ ବାହାର କରିବାର ଅଭିପ୍ରାୟ ? ବୁଢ଼ୀ ଏକାଠି ହୋଇ ରାଧାଗୋବିନ୍ଦ ବାବୁଙ୍କ ଆଗରେ ମିଥ୍ୟା ଅପବାଦ ବର୍ଣ୍ଣନା କରି ତାକୁ ଅସଚ୍ଚରିତ୍ରା ଓ କଳଙ୍କିନୀ ବୋଲି ପ୍ରମାଣ କରିବେ ?

ଭୟ ଓ କ୍ରୋଧରେ ତାରାମଣିର ଦେହ ଥରି ଉଠିଲା । ସେ ନୀରବ ହାତ ଯୋଡ଼ି ଦୀର୍ଘଶ୍ୱାସ ପକାଇଲା । ଦୁଇ ଆଖିରୁ ଅବାଧ ଲୋତକର ଧାରା ଗଡ଼ିଲା । ସେହି ଲୋତକଧାରା ରାଧାଗୋବିନ୍ଦଙ୍କ ଦେହରେ ପଡ଼ିଲା । ସେ ସଜଳ ନେତ୍ରରେ ତାରାକୁ ଥରେ ଚାହିଁଲେ । ତାଙ୍କର କଣ୍ଠ ରୁଦ୍ଧ ହୋଇ ଆସିଲା । ସେ ଭଗ୍ନସ୍ୱରରେ କହିଲେ, ଏ କଣ ତାରା କାନ୍ଦୁଛୁ କାହିଁକି :

ତାରା ଅଞ୍ଚଳରେ ଲୋତକ ପୋଛିଲା । ରୁଦ୍ଧ ବେଦନାର ତପ୍ତ ଅଶ୍ରୁ ବାଧା ମାନିଲା ନାହିଁ । ସେ ତାର ଅଞ୍ଚଳରେ ମୁଖ ଲୁଚାଇ କହିଁ କହିଁ ହୋଇ କାନ୍ଦି ଉଠିଲା ।

ରାଧାଗୋବିନ୍ଦବାବୁ ତାର କ୍ରନ୍ଦନର କାରଣ ଅନୁମାନ କରି ପାରିଲେ । ଅଳ୍ପ ହସି ସେ କହିଲେ, ତୁ କାନ୍ଦୁଛୁ କାହିଁକି ତାରା, ତୋର ବାପ ମୁଁ, ମୋର ତ ମରଣ ହୋଇନାହିଁ, ତେଣୁ ତୋର କାନ୍ଦିବାର କାରଣ ନାହିଁ । ହଉ, ଆଉଟିକେ କାନ୍ଦ, ଲୁହର ଧାରାରେ ସେମାନଙ୍କର ବାକିଆ ଋଣ ପରିଶୋଧ କରିଦେ । ତୋ ମନରୁ ଭାବନାର ଭାର ତୋର ଏଇ ବୁଢ଼ାପୁଅ ସାମ୍ନାରେ ଫିଙ୍ଗିଦେ ସେଇମାନଙ୍କ ଉପରକୁ । କାନ୍ଦ, ହସି ହସି କାନ୍ଦ ମାଆ ମୋର ।

ଉତ୍ତେଜନାକୁ ଆୟତ୍ତ କରିବାକୁ ରାଧାଗୋବିନ୍ଦ ଦୁଇ ହାତରେ ମୁହଁ ଘୋଡ଼ାଇଲେ । ପ୍ରକୃତିସ୍ଥ ହୋଇ ମୁହଁରୁ ହାତ କାଢ଼ି ସେ ବ୍ରଜକିଶୋରଙ୍କୁ ପଚାରିଲେ, କାହିଁକି ଏମାନେ ଏଠାକୁ ଆସିଛନ୍ତି ?

ବ୍ରଜକିଶୋରଙ୍କର ଉତ୍ତରକୁ ଅପେକ୍ଷା ନ କରି ସେ ପୁଣି ଭଗବାନ ମିଶ୍ରଙ୍କୁ ପଚାରିଲେ, ଶୁଭାଗମନର ଉଦ୍ଦେଶ୍ୟ କଣ ମିଶ୍ର ମହାଶୟ ? କୌଣସି ଉତ୍ତର ଆପଣ ଦେବା ଆଗରୁ ମୁଁ ଆପଣଙ୍କୁ ସାବଧାନ କରି ଦେଉଛି, ମୋର ଏହି ପବିତ୍ର ମନ୍ଦିର ଭିତରେ ଆଉ କେବେ କୌଣସି ସମାଜନେତା ପଦାର୍ପଣ କରି ତର୍କବିଜ୍ଞାନର ତତ୍ତ୍ୱ ବ୍ୟାଖ୍ୟା କରି ନାହାନ୍ତି । ଯଦି କାହାର ବିପକ୍ଷରେ କହିବାର ଇଚ୍ଛା ଥାଏ, ଆଗ ଆପଣମାନେ ରାସ୍ତା ଉପରକୁ ଓହ୍ଲାଇ ତା ପରେ ଯାହା କହିବାର କହିବେ । ନୋହିଲେ ବୁଢ଼ା ଦରଓ୍ୱାନଟିକୁ ଆଜି ଟିକିଏ ପରିଶ୍ରମ କରିବାକୁ ପଡ଼ିବ ।

ରାଧାଗୋବିନ୍ଦବାବୁଙ୍କର ଅଯଥା କ୍ରୋଧ ଓ ହୀରାମଣିର ଭୟ ଦେଖି ମିଶ୍ରେ ଅବାକ୍ ହେଲେ । ସେ କହିଲେ, ଆପଣଙ୍କର ସେପରି ଭୟର କାରଣ ନାହିଁ । ମୁଁ ଆସିଛି ଆପଣଙ୍କୁ ଧନ୍ୟବାଦ ଦେଇ କ୍ଷମାପ୍ରାର୍ଥନା କରିବ । ମୋ ଘର ବିଷୟରେ ଆପଣଙ୍କୁ ଏବେ ବା କଣ କହିବି ? ସୁବିଧା ହେଲେ ଏକୁଟିଆ ବେଳେ ସବୁ କହିପାରେ । କଥା ହେଉଛି, ମୁଁ ମୋ ବୋହୂଙ୍କୁ ତାଙ୍କ ବାପଘରକୁ କୌଣସି କାରଣରୁ କିଛିଦିନ ପାଇଁ ପଠାଇ ଦେଇଥିଲି । ମୋତେ ଖବର ନ ଦେଇ, ରଥେ ତାଙ୍କୁ କଳଙ୍କିନୀ ଆଖ୍ୟା ଦେଇ ଘରୁ ବାହାର କରିଦେଲେ । ଆପଣ ଯେ ଦୟାକରି ମୋ କୁଳର ସତୀ ଲକ୍ଷ୍ମୀଙ୍କୁ ନିଜର ଘରେ ଆଶ୍ରୟ ଦେଇଛନ୍ତି, ଏ ସମ୍ବାଦ ପାଇ ମୁଁ ତାଙ୍କୁ ନେବାକୁ ଧାଇଁ ଆସିଛି । ପିଲାଟିର ଅବସ୍ଥା ଦେଖୁଛନ୍ତି ତ, ସେ ତାର ନୂଆବୋହୂଙ୍କୁ ଝୁରି ଏପରି ହେଲାଣି । କଣ୍ଟା ହୋଇଗଲାଣି । ମୋର ଗୃହଲକ୍ଷ୍ମୀ ଯେଉଁଦିନ ଘରୁ ଗୋଡ଼ କାଢ଼ିଲେ ସେହି ଦିନରୁ ତାର ଏ ଅବସ୍ଥା ।

ସରଳ ?

ଆଜିଯାଏ ଆପଣଙ୍କର ଯାହା କ୍ଷତି ହେଉଛି, ମୋ କହିବାର କଥା, ବୋହୂଙ୍କ ପିଛା ଅଦ୍ୟାବଧି ଆପଣ ଯାହା ଖର୍ଚ୍ଚ କରିଛନ୍ତି, ସବୁ ହିସାବ କରି ମୋ ପାଖରୁ ନେଉନ୍ତୁ । ମୁଁ ପ୍ରସ୍ତୁତ ହୋଇ ଆସିଛି ।

କ୍ଷମା କରିବେ, ମୁଁ ବେପାରୀ ନୁହେଁ ।

ସବୁ ଶୁଣି ରଥ ମହାଶୟ କହିଲେ, ଦେଖନ୍ତୁ ଗୋବିନ୍ଦବାବୁ, ଏଥିରେ ମୋର ଦୋଷ ନାହିଁ । ମୋର ବିଧବା କନ୍ୟା ହୀରାମଣି ସମ୍ବନ୍ଧରେ ମୁଁ ସେପରି କିଛି ଗୁରୁତର ସମାଜ ବିରୋଧୀ ସମ୍ବାଦ ପାଇ ନ ଥିଲେ ପିତା ହୋଇ ମୁଁ ଏପରି କାର୍ଯ୍ୟ କରନ୍ତି କାହିଁକି ? ମିଶ୍ରେ କ୍ଷୀରୀକୁ ତାଙ୍କ ଗୃହରୁ ବିତାଡ଼ିତ କରି ଯେଉଁ ପତ୍ର ମୋ ପାଖକୁ ଲେଖିଥିଲେ ହିଁରାର ମାତା ଅଦ୍ୟାବଧି ତାକୁ ସାଇତି ରଖିଛନ୍ତି । ମୁଁ ପ୍ରତିଜ୍ଞା କରି କହିପାରେ, ସମାଜରେ ବାସ କରି ଯେ କୌଣସି ମାନସମ୍ପନ୍ନ ପିତା ବ୍ରାହ୍ମଣ ଜାତିର ସମ୍ମାନ ରକ୍ଷାପାଇଁ, ଆର୍ଯ୍ୟ ସଂସ୍କୃତିର ମର୍ଯ୍ୟାଦା ରକ୍ଷାପାଇଁ, ମୁଁ ଯାହା କଲି ତାହା ହିଁ କରିଥାନ୍ତେ, ଆପଣ ମଧ୍ୟ ।

ରାଧାଗୋବିନ୍ଦ ହସି ହସି କହିଲେ, ଭଗବାନଙ୍କୁ ଧନ୍ୟବାଦ, ମୁଁ ଆପଣଙ୍କ ପରି ସମାଜ ନେତା ନୁହେଁ କି କାବ୍ୟତୀର୍ଥ ପାସ୍ କରି ଉପାଧି ପାଇ ନାହିଁ । କ୍ଷୀରୀକୁ ମୋର ବୁଦ୍ଧିରେ ପିଣ୍ଡିଆ ଦେଇ ମୁଁ ତାକୁ ଏଡ଼େ ଉଦାର କରିପାରି ନାହିଁ ।

ରଥେ ଅପ୍ରସ୍ତୁତ ହୋଇ ମୁହଁ ଲେଉଟାଇ ହୀରାମଣିକୁ ଚାହିଁଲେ, ଦେଖିଲେ, ହୀରା ତଳକୁ ଅନାଇ ନାଥର କେଶ ସାଉଁଳୁଛି ।

ରଥେ କହିଲେ, ହୀରାକୁ ନେଇ ହୋଇ ତାର ମା ବର୍ତ୍ତମାନ ମୃତ୍ୟୁଶଯ୍ୟାରେ । ତାଙ୍କର ଇଚ୍ଛା ହୀରାକୁ ଦେଖିବେ । ବିଶେଷ ଦୁର୍ବଳ ହୋଇଥିବାରୁ ସଙ୍ଗରେ ଆଣି

ପାଗଳ ନାହିଁ । ଆପଣ ଅନୁମତି ଦେଲେ ମୁଁ ମୋର କନ୍ୟାକୁ ସଙ୍ଗରେ ନେଇଯିବି । ଭଗବାନ ମିଶ୍ରଙ୍କର ବିବେକ ବୁଦ୍ଧିର ଯଥେଷ୍ଟ ପରିଚୟ ପାଇ ସାରିଛି । ମୁଁ ତାଙ୍କ ଘରକୁ ମୋର ନିଷ୍କଳଙ୍କ କନ୍ୟାକୁ ଆଉ ପଠାଇବି ନାହିଁ । ଏହା ହିଁ ମୋର ନିଷ୍ପତ୍ତି ।

ଭଗବାନ ମିଶ୍ରେ ଅଗ୍ନି ଶର୍ମା ହୋଇ ରଥଶର୍ମାଙ୍କୁ କହିଲେ, ପଣ୍ଡିତ ମହାଶୟ, ଦେଲି ନାସି ହେଲି ପାରି । ମୋ ବୋହୂ ଉପରେ ଆପଣଙ୍କର କି ଅଧିକାର ଅଛି ? ଆପଣଙ୍କୁ ଆଇନ୍ ମାଲୁମ୍ ନାହିଁ । ଦରକାର ପଡ଼ିଲେ ଭଗବାନ ମିଶ୍ର ମୋକଦ୍ଦମା କରିବାକୁ ପଶ୍ଚାତ୍‌ପଦ ହେବ ନାହିଁ ।

ରାଧାଗୋବିନ୍ଦବାବୁ ହାତଟେକି କହିଲେ କଳହ କରିବାର ସ୍ଥାନ ଏ ନୁହେଁ । ମୁଁ ଆପଣ ଦୁଇଜଣଙ୍କୁ ଗୋଟିଏ ପ୍ରଶ୍ନ ପଚାରିବି ।

କଣ ପଚାରନ୍ତୁ, ଉଭୟେ ଏକ ସଙ୍ଗରେ ଉତ୍ତର ଦେଲେ ।

ଆପଣମାନେ ହାରାକୁ ପରିତ୍ୟାଗ କରିଥିଲେ ପୁଣି ଯଦି ଘରକୁ ନିଅନ୍ତି, ଆପଣଙ୍କର ସମାଜ ସେଥିରେ ବାଧା ଦେବ ନାହିଁ ?

ରଥେ କହିଲେ, ଆମ୍ଭେ ଯେତେବେଳେ ତାକୁ ନିର୍ଦ୍ଦୋଷ ବୋଲି ଗ୍ରହଣ କରିବୁ, ସେଥିରେ ସମାଜ ବାଧା ଦେବ କାହିଁକି ?

ଯଦି ବାଧା ଦିଏ, ବୋଧହୁଏ ପୁଣି ତାକୁ ବିନ୍ଦୁସାଗରରେ ଆତ୍ମହତ୍ୟା କରିବାକୁ ଛାଡ଼ିଦେବେ ?

ମିଶ୍ରେ କହିଲେ, ଅସମ୍ଭବ ! ଭଗବାନ୍ ମିଶ୍ରେ ବାପର ପୁଅ । ସେ ସମାଜକୁ ସତ୍‌ଶିକ୍ଷା ଦେବାକୁ ଦୃଢ଼ପ୍ରତିଜ୍ଞ ।

ରଥେ ଉତ୍ତେଜିତ ହୋଇ ଉଚ୍ଚସ୍ୱରରେ କହିଲେ, ଅଭି ଥରେ ତାର ବାଡ଼ି ହଜାଏ । ଯଦି ଆବଶ୍ୟକ ହୁଏ ପ୍ରତିବାଦ କରି ସାମାଜିକ ପ୍ରଥାର ସଂସ୍କାର କରିବାକୁ ହେବ ।

ରାଧାଗୋବିନ୍ଦ ମୁଣ୍ଡ ହଲାଇ ସମ୍ମତି ଜଣାଇଲେ । ତୁଣ୍ଡ ଖୋଲିଲେ, ଯଦି ସଂସ୍କାର କରିବାକୁ ଏତେ ବ୍ୟାକୁଳ, ଆସନ୍ତୁ ମୁଁ ଆପଣଙ୍କର ପଦଧୂଳି ଗ୍ରହଣ କରିବି । ହାରାମଣିର ପୁନର୍ବିବାହ କରାଇବାକୁ ଆପଣ ଦୁହେଁ ମୋତେ ଅନୁମତି ଦିଅନ୍ତୁ ।

ରଥେ ଏବଂ ମିଶ୍ରେ ଏକ ସଙ୍ଗରେ କହି ଉଠିଲେ, ଅସମ୍ଭବ ! ଅସମ୍ଭବ !

## ଛବିଶ

ଉଷା ହାରମୋନିୟମ ବଜାଇ ଆର ଘରୁ ଗୀତ ଗାଇଲା —

ରମଣୀ ମନ କିଏ ଜାଣେ ଲୋ, କିଏ ଜାଣେ ?
ଅଧରେ ଯେବେ ଚପଳା ଖେଳେ
ମରମେ ତାର ବିଜୁଳି ମେଳେ
ତାମସ ଘନ ସନ୍ଧ୍ୟାବେଳେ ଗୁଏ ପ୍ରାଣେ ଲୋ ଗୁଏ ପ୍ରାଣେ ।

ରମଣୀ ବ୍ୟଥା କିଏ ବୁଝେ ଲୋ କିଏ ବୁଝେ,
ନୟନେ ଯେବେ ଶିଶିରବିନ୍ଦୁ
ମରମେ ଉଦେ ଶରତ-ଇନ୍ଦୁ
ଅନ୍ତରେ ବିଦ୍ରୋହୀ ସିନ୍ଧୁ ନିତି ଯୁଝେ ଲୋ ନିତି ଯୁଝେ ।
ରମଣୀ କଥା କିଏ କହେ ଲୋ କିଏ କହେ,
ଲଲାଟେ ଯଦି ରକ୍ତରେଖା
ନୟନେ ଦିଏ ତପନ ଦେଖା
ଭିତରେ ବାସ ମଳୟ ଏକା ଧୀରେ ବହେ ଲୋ ଧୀରେ ବହେ ।
ପ୍ରଭା ଉପହାସ କରି କହିଲା, ରମଣୀମନ ବ୍ରଜ ଜାଣେ ଲୋ ବ୍ରଜ ଜାଣେ !

ସନ୍ଧ୍ୟା ହୋଇ ଆସୁଛି । ଉଷାର ଗୀତଟି ତନ୍ମୟ ହୋଇ ସମସ୍ତେ ଶୁଣିଲେ । ଗୀତ ଶେଷ ହେଲା । ପ୍ରଭାର ଟାହୁଲି କଥା ଦପଦପ ରାଧାଗୋବିନ୍ଦ ବାବୁଙ୍କ କାନରେ ପଡ଼ିଲା । ନଳଟଣ ଲଗାଇ ପ୍ରଭା ଟେବୁଲ ଉପରେ ରଖି ଦେଇଗଲା ।

ରାଧାଗୋବିନ୍ଦ ବାବୁଙ୍କ ମନକୁ ଅଜଣା ଭାବ ଅଧିକାର କଲା । ଚକ୍ଷୁ ବିସ୍ଫାରିତ ହେଲା, ଉଜ୍ଜ୍ୱଳ ହେଲା, ସେ ଠିଆ ହେଲେ । ଗୋଟିଏ ହାତରେ ହୀରାମଣିର ଡାହାଣ ହାତଟି ଧରି ରଥ ଓ ମିଶ୍ରଙ୍କୁ କହିଲେ, ବୁଝିବା ହେଲେ, ଆପଣମାନଙ୍କର ସମ୍ଭାର ପ୍ରଭାଙ୍କର ମତଲବ ମୋତେ ବେଶ୍ ଜଣାଗଲାଣି । ଆପଣମାନଙ୍କର ଅପବିତ୍ରଚରିତ୍ରା କୁ- କଳଙ୍କିନୀ ହୀରାମଣି ମୋର ଏ ପବିତ୍ର ମନ୍ଦିର ଭିତରେ ନାହିଁ । ଯାଆନ୍ତୁ, ଅନ୍ୟ କେଉଁଠି ତାର ଅନ୍ୱେଷଣ କରିବେ । ଯାଆନ୍ତୁ—

ନାଥ ହୀରାମଣିକୁ କୁଣ୍ଢାଇ ଧରିଲା ।

ରଥେ ଉତ୍ତେଜିତ ହୋଇ କହିଲେ, ମୋର କନ୍ୟା ହୀରାମଣି ତ ସେଇଠି ଠିଆ ହୋଇଛି !

ଭଗବାନ ମିଶ୍ରେ କହିଲେ, ହଁ, ସେଇ ମୋର କୁଳର ବଧୂ !

ରାଧାଗୋବିନ୍ଦ ବାବୁ ବ୍ରଜକିଶୋରଙ୍କୁ ଚାହିଁ ହସିଲା ମୁହଁରେ କହିଲେ, ବ୍ରଜ କିଶୋର, ଏଣିକି ଆସିଲ —

ବ୍ରଜକିଶୋର ଭାବିଲେ ବୋଧହୁଏ କିଛି କହିବାକୁ ଡାକୁଛନ୍ତି । ସେ ପାଖକୁ ଆସିଲେ ।

ହୀରାମଣି ଚମକି ଉଠିଲା । ସେ ତାର ପରିଚିତ କିଶୋର ବାବୁଙ୍କୁ ଆଗ୍ରହ ଓ ବିସ୍ମୟରେ ଥରେ ମାତ୍ର ଅନାଇଲା । ମୁହଁରେ ରଙ୍ଗ ଉକୁଟିଲା, ମୁଣ୍ଡ ନୁଆଁଇ ଦୃଷ୍ଟି ତଳକୁ କଲା । ଭାବିଲା, ତାର ଅନୁମାନ ଭୁଲ ନୁହେଁ । ସେ ସତେ ଏଡ଼େ ଅଳିଜୁକ, ମୁରୁକେଇ ମୁରୁକେଇ ହସୁଛନ୍ତି ।

ରାଧାଗୋବିନ୍ଦ ଆଉ ହାତରେ ବ୍ରଜକିଶୋରର ଗୋଟିଏ ହାତ ଧରି କହିଲେ, ମିଶ୍ର ମହାଶୟ, ଯେଉଁଦିନ ଆପଣ ଆପଣଙ୍କର କୁଳବଧୂକୁ କଳଙ୍କିନୀ ବୋଲି ଗୃହରୁ ବିତାଡ଼ିତ କଲେ ସେହି ଦିନରୁ ସେ ଆପଣଙ୍କର ପବିତ୍ର ସମାଜର ବନ୍ଧନୀ ମଧ୍ୟରୁ ବାହାରି ଆସିଛି । ତା ଉପରେ ଆପଣଙ୍କର ଆଉ ଅଧିକାର ନାହିଁ । ଶୁଣନ୍ତୁ ରଥ ମହାଶୟ, ପିତା ହୋଇ ଯେଉଁଦିନ ଅସତୀ, କୁଳଟା ଇତ୍ୟାଦି ପଦବାଚ୍ୟରେ କୋମଳମତି ତରୁଣୀ କନ୍ୟାକୁ ଜୀବନ ହାରିବାକୁ ନୋହିଲେ ଗୃହତ୍ୟାଗ କରିବାକୁ ଆପଣ ଆଦେଶ ଦେଲେ, ସେହି ରାତିରେ ଆପଣଙ୍କର ସେହି କନ୍ୟା ବିନ୍ଦୁସାଗରରେ ବୁଡ଼ି ଆତ୍ମହତ୍ୟା କରିଛି । ତାକୁ ଆଉ ପାଇବେ କେଉଁଠୁ ?

ଟିକିଏ ନୀରବ ହୋଇ ପୁଣି କହିଲେ, ଇଏ ସେ ହୀରାମଣି ନୁହେଁ, ଇଏ ମୋର ଅନାଥିଳ କନ୍ୟା ହୀରାମଣି, ନିଷ୍ପାପ, ନିଷ୍କଳଙ୍କ । ହୀରା ମୋର ଅବିବାହିତା ଦୁହିତା । ଦେଖୁ ନାହାନ୍ତି, କପଟ ତାର ମା ତାକୁ ସଜାଇ ଦେଇଛି—ଗଳାରେ କୁସୁମର ମାଳା, ମଥାରେ ସିନ୍ଦୂର, ନୟନରେ କଜଳ । ଦେଖନ୍ତୁ, ଭଲକରି ଦେଖନ୍ତୁ, ମୋ ମାଆର ବେକରେ ଧବଳ ଶଙ୍ଖର ମାଳ, ହାତରେ ଶଙ୍ଖ ଚୂଡ଼ୀ, ପାଦରେ ଅଲତା ।

ହୀରାମଣି ଓ ବ୍ରଜକିଶୋରଙ୍କର ହାତଦୁଇଟି ଗୋଟିଏ ହାତରେ ଧରି ଏକାଠି କଲେ । ଛାତିରେ ଲଗାଇ ହସି ହସି କହିଲେ, ଆପଣମାନଙ୍କ ଆଗରେ ମୋର କନ୍ୟା ହୀରାମଣି, ମୋର ହୃଦୟର ମଣିଟିକୁ ଆଜି ବ୍ରଜକିଶୋରର ହାତରେ ଅର୍ପଣ କରୁଛି । କାଲି ସେମାନଙ୍କର ବିଭାଘର ହେବ । ସେହି ଶୁଭମିଳନ ଉତ୍ସବରେ ଯୋଗଦେବାକୁ ଆପଣମାନଙ୍କୁ ମୁଁ ନିମନ୍ତ୍ରଣ କରୁଛି ।

ରାଧାଗୋବିନ୍ଦ ବାବୁଙ୍କର ସ୍ତ୍ରୀ ଆନନ୍ଦରେ ଆଉ ଘରୁ ହୁଳହୁଳି ପକାଇଲେ । କୁଆଡ଼ୁ ଗୋଟିଏ ଶଙ୍ଖ ଆଣି ଉଷା ଫୁଙ୍କି ଦେଲା । ଫୁଲ ଗୁଚ୍ଛ! ଗୁଡ଼ି କେତେ ଜାଣିର ଫୁଲ ଦମୁଠା ଆଣି ପ୍ରଭା ବ୍ରଜ ଓ ହୀରାଙ୍କ ଉପରକୁ ପକାଇଦେଲା ।

କାଳୀ ମନ୍ଦିରରୁ ସନ୍ଧ୍ୟାଆରତିର ଘଣ୍ଟା ବାଜି ଉଠିଲା ।

